# ହିସାବ ଶାସ୍ତ୍ର

ପ୍ରଫେସର ପରେଶ ଚନ୍ଦ୍ର ରାୟ



ଓଡ଼ିଶା ରାଜ୍ୟ ପାଠ୍ୟପୁସ୍ତକ ପ୍ରଣୟନ ଓ ପ୍ରକାଶନ ସଂସ୍ଥା
ଭୁବନେଶ୍ୱର

# ହିସାବ ଶାସ୍ତ୍ର

ଲେଖକ

**ପ୍ରଫେସର ପରେଶଚନ୍ଦ୍ର ରାୟ**

ଅବସରପ୍ରାପ୍ତ ବାଣିଜ୍ୟ ପ୍ରାଧ୍ୟାପକ

୧୯୭୯



ପ୍ରକାଶକ

**ଓଡ଼ିଶା ରାଜ୍ୟ ପାଠ୍ୟପୁସ୍ତକ ପ୍ରଣୟନ ଓ ପ୍ରକାଶନ ସଂସ୍ଥା**

**ଭୁବନେଶ୍ୱର**

**ACCOUNTANCY**

(For Degree level Honours Students)

Published by the Orissa State Bureau of Text Book Preparation and Production under the centrally sponsored scheme of production of books and literature in Regional Language at the university level of the Government of India in the Ministry of Education and Social Welfare (Department of Education), New Delhi.

*Written by* :

**Prof. P. C. Ray**

Rtd. Professor of Commerce
Bhubaneswar

*Reviewed by* :

**Prof. Maj. B. K. Mohanty**

President,

Board of Secondary Education, Orissa, Cuttack.

First Edition-1979/2000

*Published by* :

**THE ORISSA STATE BUREAU OF TEXT BOOK PREPARATION AND PRODUCTION**
Bhubaneswar, Orissa

Publication No. 172

Paper used for the printing of this book was made available by the Government of Orissa at concessional rate.



*Printed at* :

**Sneha Press**, Cuttack.
**Nabajivan Press**, Cuttack.
**Majdoor Printers**, Cuttack.

**Price—Rs. 52-00**

# ଭୂମିକା

"ମାତୃଭାଷା ମାତୃଭୂମି ଯହିଁ ଜନନୀ,
ସେବ ତାଙ୍କୁ ଭକ୍ତିଭରେ ଦିବସ ରଜନୀ ।"—ମଧୁସୂଦନ

ଭାରତ ଏକ ବହୁ ଭାଷାଭାଷୀ ଦେଶ । ତେଣୁ ଭାଷା-ସମସ୍ୟା ଭାରତବର୍ଷରେ ଏକ ଜଟିଳ ସମସ୍ୟା । ଇଂରେଜମାନେ ସାରା ଭାରତବର୍ଷରେ ଇଂରାଜୀ ପ୍ରଚଳନ କରାଇଥିଲେ । କଲେଜ ଓ ବିଶ୍ୱବିଦ୍ୟାଳୟ ସ୍ତରରେ ଇଂରେଜ ଶାସନ ଅମଳରେ ଇଂରାଜୀ ହିଁ ଶିକ୍ଷାର ମାଧ୍ୟମ ଥିଲା । ଭାରତୀୟମାନେ ଇଂରାଜୀ ଭାଷାକୁ ଭଲରୂପେ ଆୟତ୍ତ କରି ସେ ଭାଷାରେ ଉଚ୍ଚ ଜ୍ଞାନ ଆହରଣ କରିବା ବଡ଼ ଆୟାସସାଧ୍ୟ ଥିଲା । ହିସାବରୁ ଜଣାପଡ଼ିଲା ଯେ, ଦୀର୍ଘ ଦୁଇଶହ ବର୍ଷ ଇଂରେଜ ରାଜତ୍ୱ ଶେଷରେ ଭାରତବର୍ଷର ଦୁଇ ହଜାର ଲୋକଙ୍କ ମଧ୍ୟରେ ମାତ୍ର ଦୁଇ ଜଣ ଲୋକ ଇଂରାଜୀରେ ଲେଖିପଢ଼ି ଜାଣିଛନ୍ତି । ଭାରତ ସ୍ୱାଧୀନ ହେଲା ପରେ, ଉଚ୍ଚଶିକ୍ଷା କ୍ଷେତ୍ରରେ କ'ଣ କ'ଣ ଉନ୍ନତି କରାଯିବ ସେଥିପାଇଁ କେନ୍ଦ୍ର ସରକାର ଡକ୍ଟର ଡ. ଏସ୍. କୋଠାରୀଙ୍କ ନେତୃତ୍ୱରେ ଏକ ଶିକ୍ଷା କମିସନ୍ ବସାଇଲେ । ଏହି କମିସନ୍ (୧୯୬୪-୬୬) ଅନେକଗୁଡ଼ିଏ ସୁଚିନ୍ତିତ ପରାମର୍ଶ ପ୍ରଦାନ କରିଥିଲେ । ଉଚ୍ଚଶିକ୍ଷା କ୍ଷେତ୍ରରେ ଭାରତୀୟ ଭାଷାଗୁଡ଼ିକ ଶିକ୍ଷାର ମାଧ୍ୟମ ହେବା ଉଚିତ ବୋଲି ସେମାନେ ମତ ଦେଲେ । ଭାରତୀୟ ଭାଷା ମାଧ୍ୟମରେ କଲେଜ ଓ ବିଶ୍ୱବିଦ୍ୟାଳୟଗୁଡ଼ିକରେ ଶିକ୍ଷା ପ୍ରଦାନ କରାଗଲେ ଶିକ୍ଷାର ମାନରେ ଗୁଣାତ୍ମକ ଅଭିବୃଦ୍ଧି ଘଟିବ । ବିଜ୍ଞାନ ଓ କାରିଗରୀ ଜ୍ଞାନରେ ଶିକ୍ଷିତ ଲୋକେ ସର୍ବସାଧାରଣଙ୍କୁ ଭାରତୀୟ ଭାଷା ମାଧ୍ୟମରେ ବୁଝାଇପାରିବେ । ତଦ୍ଦ୍ୱାରା ବିଜ୍ଞାନ ଓ ବୈଷୟିକ ଜ୍ଞାନ ଗ୍ରାମ ଗହଳରେ ପ୍ରସାରିତ କରିବ । ଭାରତୀୟ ଭାଷା, ଶିକ୍ଷାର ମାଧ୍ୟମ ହେଲେ ଉଚ୍ଚଶିକ୍ଷିତ ଓ ନିରକ୍ଷର ଜନତାଙ୍କ ମଧ୍ୟରେ ବୁଝାମଣା ସୁବିଧାରେ ହେବ । ସେମାନଙ୍କ ମଧ୍ୟରେ ଇଂରେଜ ଶାସନ ଅମଳର ଯେଉଁ ଅଭେଦ୍ୟ ପ୍ରାଚୀର ଗଢ଼ିଉଠିଛି ତାହା କ୍ରମଶଃ ଲୋପ ପାଇବ । ଭାରତୀୟ ଭାଷାଗୁଡ଼ିକର କ୍ରମୋନ୍ନତି ଘଟି ସେଗୁଡ଼ିକ ପୃଥିବୀର ଉନ୍ନତ ଭାଷା ସହିତ ସମକକ୍ଷ ହୋଇପାରିବ । ଭାରତୀୟ ଭାଷାଗୁଡ଼ିକର ବିକାଶ ହେଲେ ଭାରତବର୍ଷରେ ଗଣତନ୍ତ୍ର ଓ ସମାଜବାଦର ମୂଳଦୁଆ ଦୃଢ଼ୀଭୂତ ହେବ । ଏସବୁ ସୁଫଳଗୁଡ଼ିକ ଚିନ୍ତା କରି କେନ୍ଦ୍ର ସରକାର କୋଠାରୀ କମିସନ୍‌ଙ୍କ ସୁପାରିଶ ଅନୁଯାୟୀ ଭାରତୀୟ ଭାଷାଗୁଡ଼ିକ ଉଚ୍ଚଶିକ୍ଷା କ୍ଷେତ୍ରରେ ଶିକ୍ଷା ଓ ପରୀକ୍ଷାର ମାଧ୍ୟମ ହେବା ଉଚିତ ବୋଲି ଜାତୀୟ ଶିକ୍ଷାନୀତି ବର୍ଣ୍ଣନା କଲେ । ଏହି ଜାତୀୟ ଶିକ୍ଷାନୀତିକୁ ଭାରତ ପାର୍ଲିଆମେଣ୍ଟ ୧୯୬୮ ଜୁଲାଇ ୮ ତାରିଖ ଦିନ ସର୍ବସମ୍ମତିକ୍ରମେ ଅନୁମୋଦନ କଲେ ।

ଭାରତ ସରକାର ଚଉଦ ଗୋଟି ଭାରତୀୟ ଭାଷାରେ କଲେଜ ଓ ବିଶ୍ୱବିଦ୍ୟାଳୟ-ମାନଙ୍କରେ ପଠନୋପଯୋଗୀ ପାଠ୍ୟପୁସ୍ତକ ପ୍ରସ୍ତୁତ ପାଇଁ ପ୍ରାଦେଶିକ ସରକାରଙ୍କୁ ଆର୍ଥିକ ସାହାଯ୍ୟ ଦେବାର ଘୋଷଣା କଲେ । ତଦନୁସାରେ ଓଡ଼ିଶାରେ ' ଓଡ଼ିଶା ରାଜ୍ୟ ପାଠ୍ୟପୁସ୍ତକ ପ୍ରଣୟନ ଓ ପ୍ରକାଶନ ସଂସ୍ଥା'' ୧୯୬୦ ମାର୍ଚ୍ଚ ୧୧ ତାରିଖରେ ପ୍ରତିଷ୍ଠିତ ହେଲା । ଏହି ସଂସ୍ଥା ତରଫରୁ ଅଦ୍ୟାବଧି ଶତାଧିକ ଉଚ୍ଚକୋଟୀର ପାଠ୍ୟପୁସ୍ତକ ପ୍ରକାଶିତ ହେଲାଣି । କିନ୍ତୁ ଏ ପୁସ୍ତକଗୁଡ଼ିକର ଉପାଦେୟତା ଶିକ୍ଷକ ଓ ଛାତ୍ରମାନଙ୍କ ଆନ୍ତରିକ ସହଯୋଗ ଉପରେ ହିଁ ନିର୍ଭର କରେ । ଯେତେ ଶୀଘ୍ର ଅଧ୍ୟାପକମାନେ କଲେଜରେ ଓଡ଼ିଆ ଭାଷାରେ ପାଠ ପଢ଼ାଇବେ, ସେତେ ଶୀଘ୍ର ଛାତ୍ରମାନେ ଖୁବ୍ ଭଲରୂପେ ପାଠକୁ ଆୟତ୍ତ କରିପାରିବେ ଓ ପରୀକ୍ଷାରେ ଓଡ଼ିଆ ଭାଷା ମାଧ୍ୟମରେ ଉତ୍ତର ପ୍ରଦାନ କରିବାକୁ ଆଗ୍ରହୀ ହେବେ ।

ସଂସ୍ଥା ତରଫରୁ ମୁଁ ଏହି ପୁସ୍ତକର ଲେଖକ ପ୍ରଫେସର ପରେଶ ଚନ୍ଦ୍ର ରାୟ, ସମୀକ୍ଷକ ପ୍ରଫେସର ମେଜର ବି. କେ. ମହାନ୍ତି ଓ ଭାଷା ବିଶେଷଜ୍ଞା ଶ୍ରୀମତୀ ହରିପ୍ରିୟା ମହାପାତ୍ରଙ୍କୁ ହାର୍ଦ୍ଦିକ କୃତଜ୍ଞତା ଜ୍ଞାପନ କରୁଛି ।

ଭୁବନେଶ୍ୱର
ନଭେମ୍ବର ୩୦, ୧୯୭୮

ରାମକୃଷ୍ଣ କର
ନିର୍ଦ୍ଦେଶକ
ଓଡ଼ିଶା ରାଜ୍ୟ ପାଠ୍ୟପୁସ୍ତକ ପ୍ରଣୟନ ଓ ପ୍ରକାଶନ ସଂସ୍ଥା

# ମୁଖବନ୍ଧ

ହିସାବ ଶାସ୍ତ୍ର ପୁସ୍ତକରେ ବି.କମ୍. ପାସ୍ , ଅନର୍ସ ଓ Advanced Accounting—ଏହି ତିନିଗୋଟି Paper ର ପାଠ୍ୟକ୍ରମ ଅନ୍ତର୍ଭୁକ୍ତ ହୋଇଥିବାରୁ ଏହାର କଳେବର ବୃହତ୍ତ୍ ହେବା ସ୍ୱାଭାବିକ । ଛପା, ବନ୍ଧେଇ ଓ ନେବା ଆଣିବାର ସୁବିଧା ଦୃଷ୍ଟିରୁ ଏହାକୁ ଦୁଇ ଭାଗରେ ବିଭକ୍ତ କରାଯାଇଛି । କେତେକ ଅନିବାର୍ଯ୍ୟ କାରଣ ଯୋଗୁଁ ଏହି ପୁସ୍ତକର ପ୍ରକାଶନରେ ବହୁ ବିଳମ୍ବ ଘଟିଛି ।

ଆଇ. କମ୍. ପାଠ୍ୟକ୍ରମ ସକାଶେ ହିସାବ ଲିଖନ ପଦ୍ଧତି ପୁସ୍ତକ ଲେଖିବା ପରେ ହିସାବ ଶାସ୍ତ୍ର ଲେଖିବା ଅପେକ୍ଷାକୃତ ସହଜ ହୋଇଛି । ପାଣ୍ଡୁଲିପିରେ ବିଭିନ୍ନ ହିସାବଗୁଡ଼ିକର ଇଂରାଜି ପ୍ରତିଶବ୍ଦ ଲିପିବଦ୍ଧ କରାଯାଇଥିଲି । କିନ୍ତୁ ପାଠ୍ୟପୁସ୍ତକ ପ୍ରକାଶନ ସଂସ୍ଥାର କର୍ତ୍ତୃପକ୍ଷଙ୍କର ଏକ ନିଷ୍ପତ୍ତି ଫଳରେ ଏଗୁଡ଼ିକୁ ପ୍ରକାଶିତ ପୁସ୍ତକରୁ ବାଦ୍ ଦିଆଯାଇଛି । ହୁଏତ ଏଥିଯୋଗୁଁ ଛାତ୍ରମାନଙ୍କର କେତେକ ଅସୁବିଧା ହୋଇପାରେ ।

ଏହି ପୁସ୍ତକ ଲେଖିବା ସମୟରେ ପାଠ୍ୟପୁସ୍ତକ ପ୍ରକାଶନ ସଂସ୍ଥାଦ୍ୱାରା ପ୍ରଣୀତ ବାଣିଜ୍ୟ ପରିଭାଷା ପୁସ୍ତକରେ ପ୍ରଦତ୍ତ ପରିଭାଷାଗୁଡ଼ିକ ବ୍ୟବହାର କରିବା ପାଇଁ ଯଥାସାଧ୍ୟ ଚେଷ୍ଟା କରିଛି । ବିଭିନ୍ନ କଲେଜର ବାଣିଜ୍ୟ ବିଭାଗର ମୁଖ୍ୟମାନଙ୍କର ଗୋଟିଏ ଆଲୋଚନା ସଭାରେ କେତେକ ପରିଭାଷାର ବ୍ୟବହାର ସମାଲୋଚିତ ହୋଇଥିଲି । ବିଶେଷତଃ 'ଡେବିଟ୍' ଓ 'କ୍ରେଡିଟ୍' ଏହି ଦୁଇଟି ଶବ୍ଦର ଓଡ଼ିଆ ପରିଭାଷା 'ଦାୟୀ' ଓ 'ଦାତା'ର ବ୍ୟବହାର କେତେକ ମୁଖ୍ୟଙ୍କର ମନଃପୁତ ହୋଇନାହିଁ । ହିସାବ ଶାସ୍ତ୍ରରେ ଏହି ଦୁଇଟି ଶବ୍ଦର ବ୍ୟବହାର ବହୁତ ପରିମାଣରେ ଆବଶ୍ୟକ ହେଉଥିବାରୁ ଅନ୍ୟ କୌଣସି ବିକଳ୍ପ ପରିଭାଷା ପାଇବା ସକାଶେ ମୁଁ ମଧ୍ୟ ବହୁ ଚିନ୍ତା କରିଥିଲି, କିନ୍ତୁ ମୋତେ କୌଣସିଟି ସନ୍ତୋଷଜନକ ବୋଲି ବୋଧ ହେଲି ନାହିଁ । ଜମା, ଖର୍ଚ୍ଚ, ଆକଳନ, ବିକଳନ ପ୍ରଭୃତି କେତେକ ଶବ୍ଦ ଏହି ଅର୍ଥରେ ଓଡ଼ିଆରେ ହିସାବ ଲେଖୁଥିବା କୁମୁଟି ମହାଜନମାନେ ବ୍ୟବହାର କରୁଥିଲେ ହେଁ ଦ୍ୱିଲିଖନ ହିସାବ ପଦ୍ଧତି ସକାଶେ ଏଗୁଡିକ ଉପଯୁକ୍ତ ନୁହେଁ, କାରଣ ଏଗୁଡ଼ିକ ବିଭିନ୍ନ ଶ୍ରେଣୀର ହିସାବ ପ୍ରତି ପ୍ରଯୁଜ୍ୟ ହୋଇପାରିବ ନାହିଁ । ତେଣୁ 'ଦାୟୀ' ଓ 'ଦାତା' ଏହି ଶବ୍ଦ ଦୁଇଟି ବ୍ୟବହାର କରିବା ପାଇଁ ମୁଁ ନିଷ୍ପତ୍ତି ନେଇଥିଲି । ମୋର ଆଶା ଯେ ଓଡ଼ିଆ ମାଧ୍ୟମରେ ହିସାବ ରକ୍ଷଣ ଶିକ୍ଷାଲାଭ କରୁଥିବା ଶିକ୍ଷାର୍ଥୀମାନେ ଏଥିସକାଶେ କୌଣସି ଅସୁବିଧାର ସମ୍ମୁଖୀନ ହେବେ ନାହିଁ ଓ ଏହି ଶବ୍ଦ ଦୁଇଟିକୁ ଗ୍ରହଣ କରିବେ ।

ଏହି ପୁସ୍ତକଟି ରଚନା କରିବା ସମୟରେ ମୁଁ ଏହି ବିଷୟରେ ରଚିତ ମାନକ ପୁସ୍ତକଗୁଡ଼ିକର ସହାୟତା ଗ୍ରହଣ କରିଛି । ସେଥି ମଧ୍ୟରୁ Advanced Accounts by J. R. Batliboy, Advanced Accounts by R. R. Gupta, Introduction to Accountancy by T. S. Grewal, Hisab Sastra by S. S. Bhattacharya and B. Saha—ଏହି ପୁସ୍ତକଗୁଡ଼ିକର ନାମ ଉଲ୍ଲେଖଯୋଗ୍ୟ । ଉକ୍ତ ପୁସ୍ତକଗୁଡ଼ିକର ଗ୍ରନ୍ଥକାରମାନଙ୍କଠାରେ ମୁଁ କୃତଜ୍ଞତା ଜ୍ଞାପନ କରୁଛି । ମୋର ପ୍ରିୟ ବନ୍ଧୁ ଅଧ୍ୟାପକ ଶ୍ରୀ ବଟକୃଷ୍ଣ ମହାନ୍ତି, ଏ ପୁସ୍ତକର ପାଣ୍ଡୁଲିପି ପୁନଃ ପରୀକ୍ଷା କରି ବହୁ ମୂଲ୍ୟବାନ୍ ପରାମର୍ଶ ଦେଇଥିବାରୁ ମୁଁ ତାଙ୍କଠାରେ ମଧ୍ୟ ଋଣୀ । ଯେଉଁ ଶିକ୍ଷାର୍ଥୀମାନଙ୍କ ସକାଶେ ଏହି ଗ୍ରନ୍ଥଟି ଉଦ୍ଦିଷ୍ଟ ସେମାନେ ଏହାଦ୍ୱାରା ଉପକୃତ ହେଲେ ମୋର ଶ୍ରମ ସାର୍ଥକ ହେବ ।

**ଶ୍ରୀ ପରେଶ ଚନ୍ଦ୍ର ରାୟ**

# ସୂଚୀପତ୍ର

ବିଷୟ | ପୃଷ୍ଠା

ବିଷୟ ପୃଷ୍ଠା

ବିଷୟ | ପୃଷ୍ଠା

---

# ହିସାବ ଶାସ୍ତ୍ର

## ପ୍ରଥମ ପରିଚ୍ଛେଦ

### ହିସାବ ଶାସ୍ତ୍ର— ସଂଜ୍ଞା, ଉଦ୍ଦେଶ୍ୟ ଓ ମୌଳିକ ନୀତି :

ମନୁଷ୍ୟର ଅର୍ଥନୈତିକ ଜୀବନର ଇତିହାସ ସଦୃଶ ହିସାବ ଶାସ୍ତ୍ରର ଇତିହାସ ମଧ୍ୟ ଅତି ପ୍ରାଚୀନ । ଯେଉଁଦିନଠାରୁ ମନୁଷ୍ୟ ସମାଜବଦ୍ଧ ଭାବରେ ଗୃହଜୀବନ ଆରମ୍ଭ କରିଥିଲା ସେହିଦିନଠାରୁ ହିସାବ ଶାସ୍ତ୍ରର ସୃଷ୍ଟି ହୋଇଛି । ମନୁଷ୍ୟ ଏକ ସାମାଜିକ ଜୀବ, ସେ ଶତ ଚେଷ୍ଟା କଲେ ମଧ୍ୟ ସମ୍ପୂର୍ଣ୍ଣରୂପେ ଆତ୍ମନିର୍ଭରଶୀଳ ହୋଇପାରିବ ନାହିଁ । ଜୀବନଧାରଣର ଅପରିହାର୍ଯ୍ୟ ପ୍ରୟୋଜନ ହେତୁ ସେ ଯୁଗର ମନୁଷ୍ୟଙ୍କୁ ମଧ୍ୟ ଆର୍ଥିକ ଆଦାନ ପ୍ରଦାନ ସମ୍ପାଦନ କରିବାକୁ ପଡ଼ୁଥିଲା । ସେ ଯୁଗରେ ପ୍ରାୟ ସବୁ କ୍ଷେତ୍ରରେ ପଣ୍ୟର ବିନିମୟରେ ପଣ୍ୟ ଦ୍ୱାରା ପାରସ୍ପରିକ ଚାହିଦା ମେଣ୍ଟାଇବାକୁ ପଡ଼ୁଥିଲା । ଏହି କାରଣରୁ ବସ୍ତୁଗତ ଆଦାନ ପ୍ରଦାନ ସ୍ଥାନୀୟ ଗଣ୍ଡିରେ ସୀମାବଦ୍ଧ ଥିଲା ଓ ଏତତ୍‌ସଂକ୍ରାନ୍ତୀୟ ଆଦାନ ପ୍ରଦାନ ଲିପିବଦ୍ଧ କରିବାର ପ୍ରଣାଳୀ ଅର୍ଥାତ୍ ହିସାବ ସଂରକ୍ଷଣ ପ୍ରଣାଳୀ ମଧ୍ୟ ଅଦ୍ଭୁତ ଧରଣର ଥିଲା । କାନ୍ଥରେ ଗାର ଟାଣି, ପଥରରେ, କାଠରେ କିମ୍ବା ବାଉଁଶରେ ରେଖା ଖୋଦାଇ କରି, ରଜ୍ଜୁରେ ଗଣ୍ଠି ପକାଇ ସେ ଯୁଗରେ ହିସାବ ଲେଖାଯାଉଥିଲା । ମୁଦ୍ରା ମାଧ୍ୟମରେ ବିନିମୟ ପ୍ରଚଳିତ ହେବା ସଙ୍ଗେ ସଙ୍ଗେ ବିନିମୟର ଗଣ୍ଡି ପ୍ରସାରିତ ହେଲା ଓ ଫଳରେ ବିଭିନ୍ନ ବ୍ୟକ୍ତି, ପ୍ରତିଷ୍ଠାନ ଓ ଦେଶ ମଧ୍ୟରେ ବ୍ୟବସାୟ ବାଣିଜ୍ୟର ପ୍ରସାର ଲାଭ କଲା । ତେଣୁ ହିସାବ ରକ୍ଷଣର ପ୍ରୟୋଜନୀୟତା ଉତ୍ତରୋତ୍ତର ବୃଦ୍ଧି ପାଇଲା ।

ଉପରେ ବର୍ଣ୍ଣିତ ଆଦାନ ପ୍ରଦାନ କ୍ଷେତ୍ରରେ ଅର୍ଥର କିମ୍ବା ଅର୍ଥର ସମତୁଲ୍ୟ ପଣ୍ୟ, ସମ୍ପତ୍ତି ପ୍ରଭୃତିର ହସ୍ତାନ୍ତର ବୁଝାଏ ଓ ଏହାକୁ ସାଧାରଣତଃ ନେଣ ଦେଣ ବୋଲି କୁହାଯାଏ । ଯେଉଁ ଶାସ୍ତ୍ରରେ ସର୍ବପ୍ରକାର ଆର୍ଥିକ ନେଣଦେଣ ଲିପିବଦ୍ଧ କରିବାର ପଦ୍ଧତି ଓ ସାମୂହିକ ବା ସାମଗ୍ରିକ ଫଳାଫଳ ସମ୍ପର୍କରେ ପର୍ଯ୍ୟାଲୋଚନା କରାଯାଏ ତାହାକୁ ହିସାବ ଶାସ୍ତ୍ର କୁହାଯାଏ ।

## ହିସାବ ଶାସ୍ତ୍ର କଳା ନା ବିଜ୍ଞାନ :

ବିଜ୍ଞାନର ଆଲୋଚ୍ୟ ବିଷୟ ଜ୍ଞାନ ଓ ବାସ୍ତବକ୍ଷେତ୍ରରେ ସେହି ଜ୍ଞାନର ପ୍ରୟୋଗ କଳାର ଆଲୋଚ୍ୟ ବିଷୟ । ସମସ୍ତ ପ୍ରକାର ପ୍ରତିଷ୍ଠାନର ଆର୍ଥିକ ନେଣ ଦେଣର ସାମୂହିକ ଫଳାଫଳ ନିରୂପଣ କରିବା ନିମନ୍ତେ ହିସାବ ଶାସ୍ତ୍ରରେ କେତେକ ସୂତ୍ର ନିର୍ଦ୍ଧାରଣ କରାଯାଏ । ଅଭିଜ୍ଞତା, ପର୍ଯ୍ୟବେକ୍ଷଣ, ବିଶ୍ଳେଷଣ, ଶ୍ରେଣୀବିଭକ୍ତିକରଣ ପ୍ରଭୃତି ବୈଜ୍ଞାନିକ ପ୍ରଣାଳୀ ସାହାଯ୍ୟରେ ଏହି ସୂତ୍ରଗୁଡ଼ିକ ପ୍ରତିଷ୍ଠା କରାଯାଏ । ଏଥିଯୋଗୁଁ ହିସାବ ଶାସ୍ତ୍ର ବିଜ୍ଞାନ ପଦବାଚ୍ୟ । ପୁଣି ଯେହେତୁ ଏହି ସୂତ୍ରଗୁଡ଼ିକୁ ବାସ୍ତବକ୍ଷେତ୍ରରେ ପ୍ରୟୋଗ କରିବା ନିମନ୍ତେ କେତେକ ନିୟମାବଳୀ ବାନ୍ଧିଦିଆଯାଏ, ତେଣୁ ହିସାବ ଶାସ୍ତ୍ର କଳା ବୋଲି ମଧ୍ୟ ବିବେଚିତ ହୁଏ ।

## ହିସାବ ଶାସ୍ତ୍ରର ପରିଧି :

ଅନେକଙ୍କର ଧାରଣା ଯେ ହିସାବ ସଂରକ୍ଷଣ କେବଳ ବ୍ୟବସାୟୀମାନଙ୍କ ପକ୍ଷରେ ଆବଶ୍ୟକ; କିନ୍ତୁ ଏହା ଯଥାର୍ଥ ନୁହେଁ, କାରଣ ଅଣ-ବ୍ୟବସାୟୀ ପ୍ରତିଷ୍ଠାନ, ଯଥା ବିଦ୍ୟାଳୟ, ହାସପାତାଳ, କ୍ଲବ୍, ପାଠାଗାର ପ୍ରଭୃତି ମଧ୍ୟ ବାର୍ଷିକ ପ୍ରାପ୍ତି, ପରିଶୋଧ, ଆୟ, ବ୍ୟୟ ହିସାବ ରଖିବା ପ୍ରୟୋଜନ ମନେକରନ୍ତି, ନଚେତ୍ ଏହି ପ୍ରତିଷ୍ଠାନ ଗୁଡ଼ିକର ପରିଚାଳନା ବ୍ୟାହତ ହେବ । କୌଣସି ବ୍ୟକ୍ତି ନିଜର ଅର୍ଥ ଯେପରି ଭାବରେ ବ୍ୟୟ କରୁ ନା କାହିଁକି ସେଥିନିମନ୍ତେ କେହି ତାହାଙ୍କୁ ଦାୟୀ କରିବେ ନାହିଁ, ମାତ୍ର ଯେଉଁଠାରେ ଏକାଧିକ ବ୍ୟକ୍ତିଙ୍କର ଅର୍ଥ ଓ ଉଦ୍ୟୋଗରେ କୌଣସି ପ୍ରତିଷ୍ଠାନ ଗଢ଼ି ଉଠେ ସେଠାରେ କେତେ ଅର୍ଥ କାହାଠାରୁ ମିଳିଛି ଓ ତାହା କିପରି ଭାବରେ ବ୍ୟୟ କରାଯାଇଛି, ତାହା ଜାଣିବାର ଅଧିକାର ପ୍ରତିଷ୍ଠାନର ପ୍ରତ୍ୟେକ ସଭ୍ୟଙ୍କର ରହିଛି । ତେଣୁ ଯଦି ଯଥାଯଥ ଭାବରେ ହିସାବ ସଂରକ୍ଷିତ ନ ହୁଏ ତାହେଲେ ସଭ୍ୟମାନଙ୍କର ପ୍ରତିଷ୍ଠାନର ପରିଚାଳକମାନଙ୍କ ଉପରେ ଅହେତୁକ ଅବିଶ୍ୱାସ ଜନ୍ମିବ ଓ ସେହି ପ୍ରତିଷ୍ଠାନର ମୂଳଦୁଆ ଅଚିରେ ଭୁଶୁଡ଼ି ପଡ଼ିବ । ଏହାଛଡ଼ା ପ୍ରତ୍ୟେକ ବ୍ୟକ୍ତି ନିଜର ସନ୍ତୋଷ ନିମନ୍ତେ ନିଜ ନିଜର ଅନ୍ତତଃ ଆୟ ବ୍ୟୟ ହିସାବ ରଖିବା ଉଚିତ । ପାରିବାରିକ କ୍ଷେତ୍ରରେ ମଧ୍ୟ ହିସାବ ସଂରକ୍ଷଣର ପ୍ରୟୋଜନୀୟତା ରହିଛି, ଏଣୁ ହିସାବ ଶାସ୍ତ୍ରର ପରିଧି ଅତି ବିସ୍ତୃତ ।

## ଉଦ୍ଦେଶ୍ୟ :

(୧) ନଗଦ ତହବିଲ ହିସାବ ବା ରେକର୍ଡ଼ ବହିରୁ ବ୍ୟବସାୟୀ ବୁଝିପାରନ୍ତି ଯେ, କୌଣସି ଦିନ ସେ କେତେ ଟଙ୍କା ଆଦାୟ କଲେ ଓ କେତେ ଖର୍ଚ୍ଚ କଲେ ଏବଂ ଦିନ ଶେଷରେ ତାଙ୍କର କେତେଟଙ୍କା ମହଜୁଦ ରହିଲା । ହିସାବ ଅନୁଯାୟୀ ଯାହା ମହଜୁଦ ରହିଲା ପ୍ରକୃତରେ ତାଙ୍କଠାରେ ସେତିକି ଟଙ୍କା ଅଛି କି ନାହିଁ ତାହା ସେ ଗଣିତ କରି ମିଳାଇ ଦେଇ ପାରିବେ ।

(୨) କୌଣସି ବ୍ୟବସାୟୀ ଯଦି ହିସାବ ରଖନ୍ତି ତାହେଲେ ବର୍ଷ ଶେଷରେ ତାଙ୍କର ବ୍ୟବସାୟରେ କେତେ ଲାଭ ବା କ୍ଷତି ହେଲା ତାହା ସେ ଜାଣି ପାରିବେ ।

(୩) ବର୍ଷ ଶେଷରେ ସେ କାହାଠାରେ କେତେ ପରିମାଣରେ ଋଣୀ ଓ କାହାଠାରୁ ତାଙ୍କର ପ୍ରାପ୍ୟ କେତେ ତାହା ହିସାବ ଖାତାରୁ ହିଁ ଜାଣି ପାରିବେ ।

(୪) କୌଣସି ବ୍ୟବସାୟୀ ପ୍ରତିଷ୍ଠାନର ସମ୍ପତ୍ତିର ପରିମାଣ ଓ ଦାୟ ଦେଣାର ପରିମାଣ ଜାଣିବା ପାଇଁ ଉଦ୍‌ବୃତ୍ତ ପତ୍ର ପ୍ରସ୍ତୁତ କରିବା ଆବଶ୍ୟକ । ବିଧିବଦ୍ଧ ଭାବରେ ହିସାବ ସଂରକ୍ଷିତ ନ ହେଲେ ଉଦ୍‌ବୃତ୍ତ ପତ୍ର ପ୍ରସ୍ତୁତ କରାଯାଇ ପାରିବ ନାହିଁ ।

(୫) ହିସାବ ସଂରକ୍ଷିତ ହୋଇଥିଲେ ତାହା ପର୍ଯ୍ୟାଲୋଚନା ଏବଂ ବିଶ୍ଳେଷଣ କରି ଜଣାଯାଏ ଯେ କେଉଁ ସୂତ୍ରରୁ ବ୍ୟବସାୟର ଲାଭ ହୋଇଛି ବା କି କାରଣରୁ କ୍ଷତି ଘଟିଛି । ଅତୀତ ବର୍ଷର ହିସାବରୁ କେତେକ ତଥ୍ୟ ସଂଗୃହୀତ ହୋଇପାରେ ଯାହାକି ଭବିଷ୍ୟତ୍ ବର୍ଷର ଯୋଜନା ପ୍ରସ୍ତୁତ କରିବାରେ ସହାୟକ ହୁଏ ।

(୬) ହିସାବ ସଂରକ୍ଷିତ ହୋଇଥିଲେ ଯଦି କେହି ବ୍ୟବସାୟର ଅର୍ଥ ତୋଷରପାତ କରିଥାଏ ବା ଚୋରି କରିଥାଏ ତାହେଲେ କେତେ ପରିମାଣର ଅର୍ଥ ଚୋରି ଯାଇଛି ବା ତୋଷରପାତ ହୋଇଛି ତାହା ଜଣାଯିବ ଓ ଅଦାଲତରେ ହିସାବ ଖାତା ପ୍ରମାଣପତ୍ର ରୂପେ ଦାଖଲ କରାଯାଇ ପାରିବ ।

(୭) ଯଦି ବ୍ୟବସାୟରେ ସଂରକ୍ଷିତ ମାଲର ଲୋକସାନ ସକାଶେ ଅଗ୍ନି ବୀମା କରାଯାଇ-ଥାଏ ତାହେଲେ ବୀମା କୋମ୍ପାନୀଠାରୁ କ୍ଷତିପୂରଣ ଦାବୀ କଲାବେଳେ ହିସାବ ଖାତା ପ୍ରମାଣପତ୍ରରୂପେ ବ୍ୟବହୃତ ହୁଏ ।

(୮) ବ୍ୟବସାୟୀ ପ୍ରତିଷ୍ଠାନକୁ କେତେ ଆୟକର ଏବଂ ଅନ୍ୟାନ୍ୟ ସରକାରୀ କର ଦେବାକୁ ପଡ଼ିବ ତାହା ନିର୍ଣ୍ଣୟ କରିବା ନିମନ୍ତେ ହିସାବ ସଂରକ୍ଷଣ ଏକାନ୍ତ ଆବଶ୍ୟକ ।

## ମୌଳିକ ନୀତି :

### ନେଣଦେଣ

ପ୍ରତ୍ୟେକ ନେଣଦେଣକୁ ହିସାବ ବହିରେ ଯଥାଯଥ ଭାବରେ ଲିପିବଦ୍ଧ କରିବା ହିଁ ହିସାବରକ୍ଷକଙ୍କର ପ୍ରଧାନ କାର୍ଯ୍ୟ । ଏହି ନେଣଦେଣ ହିଁ ହିସାବରକ୍ଷଣର ଭିତ୍ତି । ତେଣୁ ନେଣଦେଣର ପ୍ରକୃତି ଓ ଗଠନ ବିଷୟରେ ସମ୍ୟକ୍ ଜ୍ଞାନ ଲାଭ ପ୍ରତ୍ୟେକ ହିସାବରକ୍ଷକଙ୍କର ଅବଶ୍ୟ କର୍ତ୍ତବ୍ୟ ।

ସଂଜ୍ଞା:— ଯେତେବେଳେ କୌଣସି ଅର୍ଥ ଅଥବା ଅର୍ଥର ସମତୁଲ୍ୟ ପଣ୍ୟ ବା ସମ୍ପତ୍ତି ବା ସେବା ବା କୃତ୍ୟକର ହସ୍ତାନ୍ତର ହୁଏ, ସେତେବେଳେ ତାହା ଏକ ନେଣଦେଣ ନାମରେ ଅଭିହିତ ହୁଏ ।

ନେଣଦେଣର ବୈଶିଷ୍ଟ୍ୟ ହେଉଛି ଏହି ଯେ, ଗୋଟିଏ ନେଣଦେଣ ସଂଘଟିତ ହେଲେ ବ୍ୟକ୍ତି ଅଥବା ବ୍ୟବସାୟ ପ୍ରତିଷ୍ଠାନର ଆର୍ଥିକ ଅବସ୍ଥାର ପରିବର୍ତ୍ତନ ଘଟେ । ଏହି ନେଣଦେଣ ଗୋଟିଏ ୫୦,୦୦୦ ଟଙ୍କା ମୂଲ୍ୟର ସଂଯନ୍ତ୍ର କ୍ରୟ ସଦୃଶ ଏକ ବଡ଼ ବ୍ୟାପାର ହୋଇପାରେ, ପୁଣି ବ୍ୟବସାୟର ଦପ୍ତର ସକାଶେ ୧ ଟଙ୍କା ମୂଲ୍ୟର ଦସ୍ତାଏ ଧଳା କାଗଜ କ୍ରୟ ସଦୃଶ ଏକ କ୍ଷୁଦ୍ର ବ୍ୟାପାର ମଧ୍ୟ ହୋଇପାରେ । ଏଠାରେ ଯାହା ତାତ୍ପର୍ଯ୍ୟପୂର୍ଣ୍ଣ ତାହା ହେଉଛି ଆର୍ଥିକ ଅବସ୍ଥାର ପରିବର୍ତ୍ତନ ।

ମନେକର ହରି ଜଣେ ବ୍ୟବସାୟୀ । କୌଣସି ଗୋଟିଏ ଦିନ ସକାଳେ ତାଙ୍କ ନଗଦ ତହବିଲ ବାକ୍ସରେ ୫୦ ଟଙ୍କା ଥିଲା । ସେ ୧ ଟଙ୍କା ମୂଲ୍ୟରେ ଦସ୍ତାଏ ବ୍ୟବସାୟର ଦପ୍ତର ସକାଶେ ଧଳା କାଗଜ କ୍ରୟ କଲେ । ଗାଡ଼ିଭଡ଼ା ବାବଦ ୪ ଟଙ୍କା ବ୍ୟୟ କଲେ, ଦପ୍ତରରେ କୌଣସି କାର୍ଯ୍ୟ କରିଥିବାରୁ ଜଣକୁ ୩ ଟଙ୍କା ମଜୁରି ଦେଲେ । ଏହି ପ୍ରତ୍ୟେକଟି ଘଟଣା ପରେ ହରିଙ୍କର ତହବିଲ ବାକ୍ସରେ ଥିବା ଟଙ୍କାର ପରିମାଣ ପ୍ରଥମେ ଟ ୫୦ ରୁ ଟ ୪୯, ତତ୍ପରେ ଟ ୪୫ ଓ ତତ୍ପରେ ଟ ୪୨ କୁ ହ୍ରାସ ପାଇଲା । ମୋଟ ଉପରେ ତାଙ୍କ ଆର୍ଥିକ ପରିସ୍ଥିତି ପ୍ରତ୍ୟେକ ଘଟଣା ପରେ ପରିବର୍ତ୍ତିତ ହେଲା । ତେଣୁ ଏହି ପ୍ରତ୍ୟେକଟି ଘଟଣକୁ ଗୋଟିଏ ଗୋଟିଏ ନେଣଦେଣ ବା କାରବାର ବୋଲି କୁହାଯାଇ ପାରେ । ସେହିଭଳି ସେ ଯଦି ବ୍ୟବସାୟ ସୂତ୍ରରେ କାହାରଠାରୁ କୌଣସି ଅର୍ଥ ଲାଭ କରନ୍ତି ଅଥବା ପଣ୍ୟ ବିକ୍ରୟ କରି ଅର୍ଥ ଲାଭ କରନ୍ତି ଅଥବା କମିସନ୍ ବାବଦ ଅର୍ଥ ଲାଭ କରନ୍ତି, ତାହା ହେଲେ ପ୍ରତି କ୍ଷେତ୍ରରେ ତାଙ୍କ ନଗଦ ତହବିଲ ବାକ୍ସରେ ଥିବା ଟଙ୍କାର ପରିମାଣ ବୃଦ୍ଧି ପାଇବ । ଯେହେତୁ ଏତଦ୍ଦ୍ୱାରା ତାଙ୍କ ଆର୍ଥିକ ଅବସ୍ଥାର ପରିବର୍ତ୍ତନ ଘଟିଛି; ତେଣୁ ଏହି ପ୍ରତ୍ୟେକଟି ଘଟଣା ଗୋଟିଏ ଗୋଟିଏ ନେଣଦେଣ ବୋଲି ବିବେଚିତ ହେବ ।

ଏହି ନେଣଦେଣଗୁଡ଼ିକ ଲିପିବଦ୍ଧ କରିବା ନିମନ୍ତେ ଦୁଇଟି ପଦ୍ଧତିର ପ୍ରଚଳନ ଦେଖାଯାଏ, ଯଥା ଏକ ଲିଖନ ପଦ୍ଧତି ଓ ଦ୍ୱିଲିଖନ ପଦ୍ଧତି ଏକ ଲିଖନ ପଦ୍ଧତି ଅନୁଯାୟୀ ନେଣଦେଣ ଗୁଡ଼ିକୁ ଲିପିବଦ୍ଧ କରାଗଲେ ସେହି ହିସାବ ବହି ନେଣଦେଣ ଗୁଡ଼ିକର ପୂର୍ଣ୍ଣାଙ୍ଗ ଚିତ୍ର ଦେବାକୁ ସମର୍ଥ ହୁଏ ନାହିଁ, ତେଣୁ ଏହା ବିଜ୍ଞାନ ସମ୍ମତ ନୁହେଁ । ( ଏ ବିଷୟରେ ପରେ ଆଲୋଚନା କରାଯିବ) ସୁତରାଂ ଏହା ପଦ୍ଧତି ପଦବାଚ୍ୟ ନୁହେଁ, ଏହାକୁ ଏକ ଧାରା ବା କାର୍ଯ୍ୟରୀତି କହିଲେ ଯଥେଷ୍ଟ ହେବ । ଦ୍ୱିଲିଖନ ହିସାବ ପଦ୍ଧତି ଏକମାତ୍ର ବିଜ୍ଞାନ ସମ୍ମତ ପଦ୍ଧତି ଅଟେ । କାରଣ ଏହା ପ୍ରତ୍ୟେକ ନେଣଦେଣର ପୂର୍ଣ୍ଣାଙ୍ଗ

ଚିତ୍ର ଦେବାକୁ ସମର୍ଥ ହୁଏ । ତେଣୁ ଏହି ହିସାବ ଶାସ୍ତ୍ରରେ ଦ୍ୱିଲିଖନ ହିସାବ ପଦ୍ଧତିରହିଁ ଆଲୋଚନା କରାଯିବ ।

## ଦ୍ୱିଲିଖନ ପଦ୍ଧତି :

ପ୍ରବାଦ ଅଛି ଯେ ଗୋଟିଏ ହାତରେ ତାଳି ବାଜେ ନାହିଁ, ଏଥି ନିମନ୍ତେ ଦୁଇଟି ହାତ ଆବଶ୍ୟକ । ଠିକ୍ ସେହିପରି ଭାବରେ ଗୋଟିଏ ନେଣଦେଣ ସକାଶେ ଦୁଇଟି ପକ୍ଷ ଆବଶ୍ୟକ । ଗୋଟିଏ ପକ୍ଷ କିଛି ଉପକାର ପ୍ରଦାନ କରେ ଓ ଅନ୍ୟ ପକ୍ଷଟି ତାହା ଗ୍ରହଣ କରେ । ଯେଉଁ ପକ୍ଷ ଉପକାର ପ୍ରଦାନ କରେ ସେ 'ଦାତା' ଓ ଯେଉଁ ପକ୍ଷ ତାହା ଗ୍ରହଣ କରେ ସେ 'ଦାୟୀ' । ତେଣୁ ପ୍ରତ୍ୟେକ ନେଣଦେଣ ବା କାରବାର ସକାଶେ ଗୋଟିଏ ପକ୍ଷ ଦାତା ଓ ଅନ୍ୟ ଏକ ପକ୍ଷ ଦାୟୀ ହୁଏ । ହରି ଯଦି ରାମଙ୍କ ଠାରୁ ୫୦ ଟଙ୍କା ପାଆନ୍ତି ତାହା ହେଲେ ହରି ଉପକାର (ଏଠାରେ ଅର୍ଥ) ଲାଭ କରୁଥିବାରୁ ସେ ଦାୟୀ ଅଟନ୍ତି ଓ ରାମ ଉପକାର ପ୍ରଦାନ କରୁଥିବାରୁ ସେ ଦାତା ଅଟନ୍ତି । ପରେ ହରି ଯଦି ରାମଙ୍କୁ ଏହି ୫୦ ଟଙ୍କା ଫେରସ୍ତ ଦଅନ୍ତି ତାହା-ହେଲେ ତାହା ଅନ୍ୟ ଗୋଟିଏ ନେଣଦେଣ ରୂପେ ବିବେଚିତ ହେବ ଏବଂ ସେହି ନେଣଦେଣରେ ରାମ ଉପକାର ବା ଅର୍ଥ ଲାଭ କରୁଥିବାରୁ ଦାୟୀ ଓ ହରି ସେହି ଉପକାର ପ୍ରଦାନ କରୁଥିବାରୁ ଦାତା ହେବେ । ସେହି ଭଳି ମଧ୍ୟ ଯଦି ଯଦୁଙ୍କଠାରୁ ୫୦ ଟଙ୍କା ମୂଲ୍ୟର ମାଲ ଆଣନ୍ତି (ମୂଲ୍ୟ ପ୍ରଦାନ ନ କରି, ଉଧାରରେ) ତାହାହେଲେ ମଧ୍ୟ ଏହି ନେଣଦେଣରେ ଦାୟୀ ଓ ଯଦୁ ଦାତା ହେବେ । କୌଣସି ସେବା ମଧ୍ୟ ଗୋଟିଏ ନେଣଦେଣର ବିଷୟବସ୍ତୁ ହୋଇପାରେ । ଉଦାହରଣ ସ୍ୱରୂପ, ବିକାଶ ଯଦି ସୁବାସଙ୍କର ମାଲ ମାଲଗୋଦାମରୁ ଗାଡ଼ିରେ ବୁହାଇ ଆଣି ତାଙ୍କ ଦୋକାନରେ ପହଞ୍ଚାଇ ଦଅନ୍ତି, ତାହା-ହେଲେ ବିକାଶ ସୁବାସଙ୍କୁ ପରିବହନ ସେବା ଯୋଗାଇବା ଦ୍ୱାରା ଦାତା ହେବେ ଓ ସୁବାସ ପରିବହନ ସେବା ଲାଭ କରିଥିବାରୁ ଦାୟୀ ହେବେ ।

ଦ୍ୱିଲିଖନ ହିସାବ ପଦ୍ଧତି ଗୋଟିଏ ନେଣଦେଣରେ ସଂଶ୍ଳିଷ୍ଟ ଥିବା ଦୁଇଟି ଦିଗ ବିଷୟରକୁ ନିଏ ଏବଂ ପ୍ରତ୍ୟେକ ନେଣଦେଣରେ ଏହି ପଦ୍ଧତି ଗୋଟିଏ ପକ୍ଷକୁ ଦାୟୀ ଓ ଅନ୍ୟ ଏକ ପକ୍ଷକୁ ଦାତା ରୂପେ ଲିପିବଦ୍ଧ କରେ । ଗୋଟିଏ ନେଣଦେଣର ପୂର୍ଣ୍ଣାଙ୍ଗ ଚିତ୍ର ଦେବାକୁ ସକ୍ଷମ ହେଉଥିବାରୁ ଦ୍ୱିଲିଖନ ହିସାବ ପଦ୍ଧତି ବିଜ୍ଞାନ ସମ୍ମତ ଓ ଶ୍ରେଷ୍ଠତର ଅଟେ । କେଉଁ ନେଣଦେଣରେ କାହାକୁ ଦାୟୀ ଓ କାହାକୁ ଦାତା ବୋଲି ସ୍ଥିର କରାଯିବ ତାହା ହିସାବ ରକ୍ଷକଙ୍କ ପକ୍ଷରେ ଜାଣିବା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଓ ଅତି ପ୍ରୟୋଜନସ୍ତ ଅଟେ । ଦାୟୀ ଓ ଦାତା ଚିହ୍ନଟ କରିବା ସକାଶେ ନିମ୍ନରେ କେତେଗୋଟି ସୂତ୍ର ପ୍ରଦତ୍ତ ହେଲା, ଯାହା ପ୍ରୟୋଗ କଲେ ହିସାବରକ୍ଷକ ସହଜରେ ଗୋଟିଏ ନେଣଦେଣରେ କେଉଁ ପକ୍ଷ ଦାୟୀ ଓ କେଉଁ ପକ୍ଷ ଦାତା ତାହା ନିର୍ଣ୍ଣୟ କରି ପାରିବେ ।

## ସୂତ୍ର :

(୧) ଦ୍ୱିଲିଖନ ପଦ୍ଧତି ଅନୁଯାୟୀ ଯେଉଁ ପକ୍ଷ କୌଣସି ଉପକାର ବା ସୁବିଧା ଲାଭ କରେ ସେ ଅର୍ଥାତ୍ ଋଣୀ ବା ଦାୟୀ ଓ ଯେଉଁ ପକ୍ଷ ସୁବିଧା ବା ଉପକାର ପ୍ରଦାନ କରେ ସେ ଅର୍ଥାତ୍ ଋଣ ଦାତା ବା ଦାତା ବୋଲି ବିବେଚିତହେବ । ମନେକର ହରି ମଧୁକୁ ୧୦ ଟଙ୍କା ଦେଲେ । ଏହି ନେଣଦେଣରେ ଯେହେତୁ ମଧୁ ଉପକାର ଲାଭ କରିଛି ତେଣୁ ମଧୁ ଋଣୀ ବା ଦାୟୀ ଓ ହରି ଏହି ଉପକାର ପ୍ରଦାନ କରିଥିବାରୁ ସେ ଋଣଦାତା ବା ଦାତା ବୋଲି ବିବେଚିତ ହେବ ।

(୨) ଯଦି ବ୍ୟବସାୟକୁ କୌଣସି ପଣ୍ୟ ବା ସମ୍ପତ୍ତି ବା ଅନ୍ୟ କିଛି ପଦାର୍ଥ ଆସେ ତାହେଲେ ବ୍ୟବସାୟକୁ ଯାହା ଆସିବ ତାହାକୁ ଦାୟୀ କରାଯିବ ଓ ଯେଉଁ ପଣ୍ୟ ସମ୍ପତ୍ତି ବା ପଦାର୍ଥ ବ୍ୟବସାୟରୁ ବାହାରିଯିବ ତାହାକୁ ଦାତା କରାଯିବ । ଯଦି ବ୍ୟବସାୟ ବିକ୍ରୟାର୍ଥେ କୌଣସି ପଣ୍ୟ କ୍ରୟ କରେ ତାହେଲେ ପଣ୍ୟ ବ୍ୟବସାୟକୁ ଆସୁଥିବାରୁ ପଣ୍ୟ କ୍ରୟ ବହିକୁ ଦାୟୀ କରାଯିବ ଓ ଯଦି ପଣ୍ୟ ବିକ୍ରୟ କରାଯାଏ ତାହେଲେ ପଣ୍ୟ ହିସାବକୁ ଦାତା କରାଯିବ ।

(୩) ଯଦି ବ୍ୟବସାୟ ନିମନ୍ତେ କୌଣସି ବାବଦରେ କିଛି ବ୍ୟୟ କରାଯାଏ ତାହେଲେ ସେହି ହିସାବ ଦାୟୀ ହେବ ଓ ଯଦି କୌଣସି ସୂତ୍ରରୁ ବ୍ୟବସାୟର କିଛି ଆୟ ହୁଏ ତାହେଲ ସେହି ଆୟ ହିସାବ ଦାତା ହେବ । ମନେକର କର୍ମଚାରୀଙ୍କୁ ବେତନ ଦେବା ବାବଦ ୧୦୦ ଟଙ୍କା ବ୍ୟୟ ହେଲା ତାହେଲେ ବେତନ ହିସାବ ୧୦୦ ଟଙ୍କା ପରିମାଣେ ଦାୟୀ ହେବ । ମନେକର ବ୍ୟବସାୟ ସକାଶେ ଗୋଟିଏ ବଡ଼ ଘର ଭଡ଼ା ନିଆଯାଇଛି ଓ ତହିଁର କେତେକ ଅଂଶ ଅନ୍ୟ ଜଣଙ୍କୁ ଭଡ଼ା ଦିଆଯାଇଛି; ସେହି ବ୍ୟକ୍ତିଠାରୁ ଯେଉଁ ଘରଭଡ଼ା ମିଳିବ ତାହା ଏକ ଆୟ ଓ ତେଣୁ ଘରଭଡ଼ା ହିସାବ ଘରଭଡ଼ା ମିଳିଥିବା ପରିମାଣ ନିମନ୍ତେ ଦାତା ହେବ ।

ଦ୍ୱିଲିଖନ ହିସାବ ପଦ୍ଧତିକୁ କାର୍ଯ୍ୟକାରୀ କରିବା ନିମନ୍ତେ ନିମ୍ନଲିଖିତ ତିନଗୋଟି ସୂତ୍ରକୁ ସର୍ବଦା ମନେରଖିବାକୁ ହେବ ।

(୧) ଯେ ଉପକାର ଲାଭ କରିବେ ସେ ଋଣୀ ବା ଦାୟୀ ହେବେ ଓ ଯେ ଉପକାର ପ୍ରଦାନ କରିବେ ସେ ଋଣଦାତା ବା ଦାତା ହେବେ ।

(୨) ଯେଉଁ ଅର୍ଥ, ବସ୍ତୁ ବା ସମ୍ପତ୍ତି ବ୍ୟବସାୟକୁ ଆସିବ ତାହାକୁ ଦାୟୀ କରାଯିବ ଓ ଯାହା ବ୍ୟବସାୟରୁ ବାହାରିଯିବ ତାହାକୁ ଦାତା କରାଯିବ ।

(୩) ସମସ୍ତ ବ୍ୟୟ ଓ ନୁକସାନକୁ ଦାୟୀ କରାଯିବ ଓ ସମସ୍ତ ଆୟ ଓ ଲାଭକୁ ଦାତା କରାଯିବ ।

ଗୋଟିଏ ବ୍ୟବସାୟରେ ନାନା ପ୍ରକାର ନେଣଦେଣ ସଂଘଟିତ ହୁଏ । ଏହି ନେଣଦେଣ ଗୁଡ଼ିକ ବିଶ୍ଳେଷଣ କଲେ ଦେଖାଯିବ ଯେ ଏଗୁଡ଼ିକ ହୁଏତ ନଗଦ ଟଙ୍କା ସମ୍ବନ୍ଧୀୟ, କିମ୍ବା କୌଣସି ବ୍ୟକ୍ତି ବା ପ୍ରତିଷ୍ଠାନ ସମ୍ବନ୍ଧୀୟ, କିମ୍ବା ଆୟ ବା ବ୍ୟୟ ସମ୍ବନ୍ଧୀୟ ଅଥବା ସମ୍ପତ୍ତି, ଦେଣା ବା ପାଉଣା ସମ୍ବନ୍ଧୀୟ ଅଟେ । ଏହି ବିଭିନ୍ନ ପ୍ରକାରର ନେଣଦେଣ ଗୁଡ଼ିକ ଯଥାଯଥ ଭାବରେ ଲିପିବଦ୍ଧ କରିବା ନିମନ୍ତେ କେତେଗୁଡ଼ିଏ ହିସାବ ଖୋଲାଯାଏ । ଯେପରି ନଗଦ ଟଙ୍କା ସଂପୃକ୍ତ ଯେତେ ନେଣଦେଣ ତାହା ନଗଦ ତହବିଲ ହିସାବରେ ଲେଖାଯାଏ ; ଯେଉଁ ବ୍ୟକ୍ତି ବା ପ୍ରତିଷ୍ଠାନ ସହିତ ନେଣଦେଣ ସଂଘଟିତ ହୁଏ ସେ ଗୁଡ଼ିକ ସେହି ବ୍ୟକ୍ତି ବା ପ୍ରତିଷ୍ଠାନର ହିସାବରେ ଲେଖାଯାଏ ଓ ନେଣଦେଣ ଗୁଡ଼ିକ ଆୟ ବା ବ୍ୟୟ ସମ୍ବନ୍ଧୀୟ ହୋଇଥିଲେ ବିଭିନ୍ନ ଆୟ ବା ବ୍ୟୟ ହିସାବରେ ଲେଖାଯାଏ ।

ଗୋଟିଏ ବ୍ୟବସାୟରେ ଘଟୁଥିବା ଯାବତୀୟ ନେଣଦେଣକୁ ତିନି ଶ୍ରେଣୀର ହିସାବରେ ଲିପିବଦ୍ଧ କରାଯାଇପାରେ; ଅର୍ଥାତ୍ ସମସ୍ତ ହିସାବକୁ ତିନୋଟି ଶ୍ରେଣୀରେ ଭେଦ କରାଯାଇପାରେ । ଏହି ଶ୍ରେଣୀ ବିଭାଗ ନିମ୍ନରେ ବୁଝାଇ ଦିଆଗଲା ।

(୧) ବ୍ୟକ୍ତି-ସମ୍ପର୍କୀୟ ହିସାବ :
ରାମ, ଶ୍ୟାମ, ଯଦୁ, ମଧୁ ପ୍ରଭୃତି ବ୍ୟକ୍ତି ଓ ବିଭିନ୍ନ ପ୍ରତିଷ୍ଠାନ ଗୁଡ଼ିକର ହିସାବ ଏହି ଶ୍ରେଣୀର ଅନ୍ତର୍ଗତ ।

(୨) ସମ୍ପତ୍ତି-ସମ୍ପର୍କୀୟ ହିସାବ :

ନଗଦ ତହବିଲ ହିସାବ, **ପଣ୍ୟ ବା** ମାଲ ହିସାବ, ଜମି, ବାଡ଼ି ବା କୋଠା ହିସାବ, କଳକବ୍ଜା ହିସାବ, ଆସ୍‌ବାବ୍ ପତ୍ର ହିସାବ ଏହି ଶ୍ରେଣୀର ଅନ୍ତର୍ଗତ ।

(୩) ଆୟ ଓ ବ୍ୟୟ-ସମ୍ପର୍କୀୟ ହିସାବ :
ସୁଧ ହିସାବ, ଘରଭଡ଼ା ହିସାବ, ମଜୁରି ହିସାବ, ବେତନ ହିସାବ, ଶୁଳ୍କ ଓ ଟିକସ ହିସାବ, କମିଶନ ହିସାବ ପ୍ରଭୃତି ଏହି ଶ୍ରେଣୀର ଅନ୍ତର୍ଗତ ।

## ଦାୟୀ ଓ ଦାତା କରଣର ନିୟମ :

ପୂର୍ବୋକ୍ତ ତିନି ଶ୍ରେଣୀର ହିସାବକୁ ଦାୟୀ ଓ ଦାତା କରିବାର ନିୟମ ନିମ୍ନରେ ବୁଝାଇ ଦିଆଗଲା ।

ଯେ କୌଣସି ନେଣଦେଣକୁ ହିସାବଭୁକ୍ତ କରିବା ପୂର୍ବରୁ ପ୍ରଥମେ ସେହି ନେଣଦେଣରେ ସଂପୃକ୍ତ ଥିବା ହିସାବ ଦୁଇଟିକୁ ନିର୍ଣ୍ଣୟ କରିବାକୁ ହେବ । ତତ୍‌ପରେ ହିସାବ ଦୁଇଟି କେଉଁ ଶ୍ରେଣୀର ତାହା ମଧ୍ୟ ସ୍ଥିର କରାଯିବ । ଏହାପରେ ନିୟମ ଅନୁଯାୟୀ ଗୋଟିଏ ହିସାବକୁ ଦାୟୀ ଓ ଅନ୍ୟଟିକୁ ଦାତା କରାଯିବ ।

(୧) ବ୍ୟକ୍ତି-ସମ୍ପର୍କୀୟ ହିସାବ—ଯଦି କୌଣସି ବ୍ୟକ୍ତି ବା ପ୍ରତିଷ୍ଠାନ ଉପକାର ଲାଭ କରେ ତାହେଲେ ସେହି ବ୍ୟକ୍ତି ବା ପ୍ରତିଷ୍ଠାନର ହିସାବ ଦାୟୀ ହେବ ଓ ଯଦି ସେହି ବ୍ୟକ୍ତି ବା ପ୍ରତିଷ୍ଠାନ ଉପକାର ପ୍ରଦାନ କରିଥାଏ ତାହେଲେ ସେହି ହିସାବ ଦାତା ହେବ ।

(୨) ସମ୍ପତ୍ତି-ସମ୍ପର୍କୀୟ ହିସାବ—ଯଦି କୌଣସି ସମ୍ପତ୍ତି ବ୍ୟବସାୟକୁ ଆଣାଯାଏ ତାହେଲେ ସେହି ସମ୍ପତ୍ତି ହିସାବକୁ ଦାୟୀ କରାଯିବ ଓ ଯଦି କୌଣସି ସମ୍ପତ୍ତି ବ୍ୟବସାୟରୁ ବାହାରଯାଏ ତାହେଲେ ସେହି ହିସାବକୁ ଦାତା କରାଯିବ ।

(୩) ଆୟ ଓ ବ୍ୟୟ-ସମ୍ପର୍କୀୟ ହିସାବ—ଯଦି ବ୍ୟବସାୟର କୌଣସି ଆୟ ହୁଏ ତାହେଲେ ଆୟ ହିସାବକୁ ଦାତା କରାଯାଏ ଓ ବ୍ୟୟ କ୍ଷେତ୍ରରେ ବ୍ୟୟ ହିସାବକୁ ଦାୟୀ କରାଯାଏ ।

ଯେଉଁ ଖାତାରେ ଗୋଟିଏ ହିସାବକୁ ଦାୟୀ ଓ ଅନ୍ୟ ହିସାବକୁ ଦାତା କରି ଲେଖାଯାଏ ତାହାକୁ ଜାବ୍‌ଦା ବା ରୋଜନାମା କୁହାଯାଏ । ଏହାର ଏକ ନମୁନା ନିମ୍ନରେ ପ୍ରଦତ୍ତ ହେଲା ।

## ଜାବ୍‌ଦା

| ତାରିଖ | ବିବରଣୀ | ଖତିୟାନ ପୃଷ୍ଠାଙ୍କ | ଦାୟୀ ଟଙ୍କା | ଦାତା ଟଙ୍କା |
|---|---|---|---|---|
| | | | | |

**ରୋଜନାମା ଲେଖିବାର ନିୟମ**—ଯେଉଁ ହିସାବକୁ ଦାୟୀ କରାଯାଏ ତାହାର ନାମ ପ୍ରଥମେ ଲେଖାଯାଏ ଓ ଏହି ଲେଖା ତାରିଖ ଓ ବିବରଣୀ ପ୍ରକୋଷ୍ଠର ମଧ୍ୟବର୍ତ୍ତୀ ରେଖା ନିକଟରୁ ଆରମ୍ଭ କରାଯାଏ ଓ ସେହି ପଂକ୍ତିର ଶେଷରେ ବିବରଣୀ ଓ ଖତିୟାନ ପୃଷ୍ଠାଙ୍କର ମଧ୍ୟବର୍ତ୍ତୀ ରେଖା ନିକଟରେ 'ଦାୟୀ' ଏହି ଶବ୍ଦଟି ଲେଖାଯାଏ । ଦାତା କରାଯାଉଥିବା ହିସାବର ନାମ ପୂର୍ବବର୍ତ୍ତୀ ପଂକ୍ତି ଆରମ୍ଭ ହୋଇଥିବା ସ୍ଥାନଠାରୁ କିଛିତ୍ ଡାହାଣ ପଟକୁ ଲେଖାଯାଏ ଓ ସେହି ପଂକ୍ତିର ଶେଷରେ 'ବାବଦ' ଏହି ଶବ୍ଦଟି ଲେଖାଯାଏ । ତାରିଖ ପ୍ରକୋଷ୍ଠରେ ପ୍ରଥମେ ବର୍ଷ, ତାହା ନିମ୍ନରେ ମାସର ନାମ ଓ ତାହାଣ

ପଟକୁ ତାରିଖ ଲେଖାଯାଏ । ଖତିୟାନ ପୃଷ୍ଠାଙ୍କ ପ୍ରକୋଷ୍ଠରେ ଖତିୟାନର ଯେଉଁ ପୃଷ୍ଠାରେ ଏହି ହିସାବ ଲେଖାଯାଇଛି ସେହି ପୃଷ୍ଠାର ଅଙ୍କ ଲେଖାଯାଏ । ଶେଷ ଦୁଇଟି ପ୍ରକୋଷ୍ଠରେ ଅର୍ଥର ପରିମାଣ ଲେଖାଯାଏ । ବିବରଣୀ ପ୍ରକୋଷ୍ଠରେ ଦାୟୀ ଓ ଦାତା କରାଯାଇଥିବା ହିସାବ ଦୁଇଟିର ନାମ ଲେଖି ତାହା ନିମ୍ନରେ ଅନ୍ୟ ପଂକ୍ତିରେ କାହିଁକି ଗୋଟିଏ ହିସାବକୁ ଦାୟୀ ଓ ଅନ୍ୟ ହିସାବକୁ ଦାତା କରାଯାଇଛି ତାହାର ବିବରଣୀ ସଂକ୍ଷେପରେ ଲେଖାଯାଏ ।

## ଦୃଷ୍ଟାନ୍ତ ( ୧ )

ନିମ୍ନଲିଖିତ ନେଣଦେଣ ଗୁଡ଼ିକ ନିମନ୍ତେ ଜାବଦା ପ୍ରସ୍ତୁତ କର :

୧୯୭୨

ଜାନୁଆରି-୨ ପ୍ରଶାନ୍ତ ସାହୁ ୮,୦୦୦ ଟଙ୍କା ମୂଳଧନ ଆଣି ବ୍ୟବସାୟ ଆରମ୍ଭ କଲେ ; ତନ୍ମଧ୍ୟରୁ ସେ ୫,୦୦୦ ଟଙ୍କା ବ୍ୟାଙ୍କରେ ଜମା ରଖି ଏକ ବ୍ୟାଙ୍କ ହିସାବ ଖୋଲିଲେ ।

„ ୩ ୫୦୦ ଟଙ୍କାର ଆସବାବ୍ କିଣିଲେ ।

„ ୫ ୩,୦୦୦ ଟଙ୍କା ମୂଲ୍ୟର ପଣ୍ୟ ଚେକ୍ ଦେଇ କ୍ରୟ କଲେ ।

„ ୭ ୫୦୦ ଟଙ୍କା ମୂଲ୍ୟର ପଣ୍ୟ ନଗଦ ମୂଲ୍ୟରେ ବିକ୍ରୟ କଲେ ।

„ ୯ ୭୦୦ ଟଙ୍କାର ଦପ୍ତର ସରଞ୍ଜାମ ରାମପ୍ରସାଦଙ୍କଠାରୁ ଉଧାରରେ କ୍ରୟ କଲେ ।

„ ୧୨ ୧,୫୦୦ ଟଙ୍କା ମୂଲ୍ୟର ପଣ୍ୟ ନଗଦ ମୂଲ୍ୟରେ ବିକ୍ରୟ କଲେ ।

„ ୨୦ ଟେଲିଫୋନ ବାବଦ ବାର୍ଷିକ ଭଡ଼ା ४୦୦ ଟଙ୍କା ଦେଲେ ।

„ ୨୫ ରାମ ପ୍ରସାଦଙ୍କୁ ୭୦୦ ଟଙ୍କା ପରିଶୋଧ କଲେ ।

„ ୨୮ କମଳ ସାମୋଡ଼ିଆଙ୍କଠାରୁ ଉଧାରରେ ୧,୦୦୦ ଟଙ୍କା ମୂଲ୍ୟର ପଣ୍ୟ କ୍ରୟ କଲେ ।

„ ୨୯ ଗାଡ଼ିଭଡ଼ା ବାବଦ ୩୦ ଟଙ୍କା ଖର୍ଚ୍ଚ ହେଲା ।

„ ୩୦ ଘରଭଡ଼ା ବାବଦ ୨୦୦ ଟଙ୍କା ଦେଲେ ।

„ ୩୧ ४୦୦ ଟଙ୍କା ମୂଲ୍ୟର ପଣ୍ୟ ହରିସାହୁଙ୍କୁ ବାକିରେ ବିକ୍ରୟ କଲେ ।

„ ୩୧ କମଳ ସାମୋଡ଼ିଅଙ୍କୁ ୧,୦୦୦ ଟଙ୍କାର ଚେକ୍ ଦିଆଗଲା ।

„ ୩୧ ବେତନ ବାବଦ କର୍ମଚାରୀଙ୍କୁ ୩୦୦ ଟଙ୍କା ଦିଆଗଲା ।

„ ୩୧ ବ୍ୟକ୍ତିଗତ ଖର୍ଚ୍ଚ ନିମନ୍ତେ ପ୍ରଶାନ୍ତ ସାହୁ ବ୍ୟାଙ୍କରୁ ୩୦୦ ଟଙ୍କା ଉଠାଇ ନେଲେ ।

## ସମାଧାନ :

| ତାରିଖ | | ବିବରଣୀ | ଖ: ପୃ: | ଦାୟୀ ପରିମାଣ ଟଙ୍କା | ଦାତା ପରିମାଣ ଟଙ୍କା |
|---|---|---|---|---|---|
| (୧) ୧୯୭୨ ଜାନୁ | ୨ | ନଗଦ ତହବିଲ ହିସାବ ଦାୟୀ<br>ମୂଳଧନ ହିସାବ ବାବଦ<br>( ବ୍ୟବସାୟ ଆରମ୍ଭ କରିବା ନିମନ୍ତେ ନଗଦ ତହବିଲ ବ୍ୟବସାୟକୁ ଅଣାଗଲା । ) | | ୮,୦୦୦ | ୮,୦୦୦ |
| (୨) | ୨ | ବ୍ୟାଙ୍କ୍ ହିସାବ ଦାୟୀ<br>ନଗଦ ତହବିଲ ହିସାବ ବାବଦ<br>( ବ୍ୟବସାୟରୁ ନଗଦ ତହବିଲ ନେଇ ବ୍ୟାଙ୍କ୍‌ରେ ଜମା ରଖାଗଲା । ) | | ୫,୦୦୦ | ୫,୦୦୦ |
| (୩) | ୩ | ଆସ୍‌ବାବ୍ ହିସାବ ଦାୟୀ<br>ନଗଦ ତହବିଲ ହିସାବ ବାବଦ<br>( ନଗଦ ମୂଲ୍ୟରେ ଆସ୍‌ବାବ୍ କ୍ରୟ କରାଗଲା । ) | | ୫୦୦ | ୫୦୦ |
| (୪) | ୪ | ପଣ୍ୟ ହିସାବ ଦାୟୀ<br>ବ୍ୟାଙ୍କ୍ ହିସାବ ବାବଦ<br>( ଚେକ୍ ବିନିମୟରେ ପଣ୍ୟ କ୍ରୟ କରାଗଲା । ) | | ୩,୦୦୦ | ୩,୦୦୦ |
| (୫) | ୭ | ନଗଦ ତହବିଲ ହିସାବ ଦାୟୀ<br>ପଣ୍ୟ ହିସାବ ବାବଦ<br>( ନଗଦ ମୂଲ୍ୟରେ ପଣ୍ୟ ବିକ୍ରୟ କରାଗଲା । ) | | ୫୦୦ | ୫୦୦ |

| ତାରିଖ | | ବିବରଣୀ | ଖ: ପୃ: | ଦାୟୀ ପରିମାଣ ଟଙ୍କା | ଦାତା ପରିମାଣ ଟଙ୍କା |
|---|---|---|---|---|---|
| (୭) ୧୯୭୨ ଜାନୁ | ୯ | ଦପ୍ତର ସରଞ୍ଜାମ ହିସାବ ଦାୟୀ<br>ରାମପ୍ରସାଦଙ୍କ ହିସାବ ବାବଦ<br>( ରାମପ୍ରସାଦଙ୍କଠାରୁ ଉଧାରରେ ଦପ୍ତର ସରଞ୍ଜାମ କିଣା କରାଗଲା । ) | | ୭୦୦ | ୭୦୦ |
| (୭) | ୧୨ | ନଗଦ ତହବିଲ ହିସାବ ଦାୟୀ<br>ପଣ୍ୟ ହିସାବ ବାବଦ<br>( ନଗଦ ମୂଲ୍ୟରେ ପଣ୍ୟ ବିକ୍ରୟ କରାଗଲା । ) | | ୧,୫୦୦ | ୧,୫୦୦ |
| (୮) | ୨୦ | ଟେଲିଫୋନ ଭଡ଼ା ହିସାବ ଦାୟୀ<br>ନଗଦ ତହବିଲ ହିସାବ ବାବଦ<br>( ଟେଲିଫୋନ ଭଡ଼ା ବାବଦ ନଗଦ ଟଙ୍କା ଦିଆଗଲା । ) | | ୪୦୦ | ୪୦୦ |
| (୯) | ୨୫ | ରାମପ୍ରସାଦଙ୍କ ହିସାବ ଦାୟୀ<br>ନଗଦ ତହବିଲ ହିସାବ ବାବଦ<br>( ରାମପ୍ରସାଦଙ୍କୁ ନଗଦ ଟଙ୍କା ଦିଆଗଲା । ) | | ୭୦୦ | ୭୦୦ |
| | | ପରପୃଷ୍ଠାକୁ ନିଆଗଲା | | ୧୦,୩୦୦ | ୧୦,୩୦୦ |

| | ତାରିଖ | | ବିବରଣୀ | ଖ: ପୃ: | ଦାୟୀ ପରିମାଣ ଟଙ୍କା | ଦାତା ପରିମାଣ ଟଙ୍କା |
|---|---|---|---|---|---|---|
| (୧୦) | ୧୯୬୨ ଜାନୁ | ୨୮ | ପୂର୍ବଦୃଷ୍ଟାନ୍ତରୁ ଅଣାଗଲା ପଣ୍ୟ ହିସାବ ଦାୟୀ<br>କମଳ ଯାଯୋଡ଼ିଆଙ୍କ ହିସାବ ବାବଦ<br>( କମଳ ଯାଯୋଡ଼ିଆଙ୍କ ଠାରୁ ଉଧାରରେ ପଣ୍ୟ କ୍ରୟ କରାଗଲା । ) | | ୨୦,୩୦୦<br>୧,୦୦୦ | ୨୦,୩୦୦<br>୧,୦୦୦ |
| (୧୧) | | ୨୯ | ଗାଡ଼ିଭଡ଼ା ହିସାବ ଦାୟୀ<br>ନଗଦ ତହବିଲ ହିସାବ ବାବଦ<br>( ଗାଡ଼ିଭଡ଼ା ବାବଦ ନଗଦ ଟଙ୍କା ଖର୍ଚ୍ଚ ହେଲା । ) | | ୩୦ | ୩୦ |
| (୧୨) | | ୩୦ | ଘରଭଡ଼ା ହିସାବ ଦାୟୀ<br>ନଗଦ ତହବିଲ ହିସାବ ବାବଦ<br>( ଘରଭଡ଼ା ବାବଦ ନଗଦ ଖର୍ଚ୍ଚ ହେଲା । ) | | ୨୦୦ | ୨୦୦ |
| (୧୩) | | ୩୧ | ହରସାହୁଙ୍କ ହିସାବ ଦାୟୀ<br>ପଣ୍ୟ ହିସାବ ବାବଦ<br>( ବାକିରେ ହରସାହୁଙ୍କୁ ପଣ୍ୟ ବିକ୍ରୟ କରାଗଲା ।) | | ୪୦୦ | ୪୦୦ |
| (୧୪) | | ୩୧ | କମଳ ଯାଯୋଡ଼ିଆଙ୍କ ହିସାବ ଦାୟୀ<br>ବ୍ୟାଙ୍କ୍ ହିସାବ ବାବଦ<br>( କମଳ ଯାଯୋଡ଼ିଆଙ୍କୁ ବ୍ୟାଙ୍କ୍‌ରୁ ଟଙ୍କା ଦିଆଗଲା ।) | | ୧,୦୦୦ | ୧,୦୦୦ |

| | ତାରିଖ | | ବିବରଣୀ | ଖ: ପୃ: | ଦାୟୀ ପରିମାଣ ଟଙ୍କା | ଦାତା ପରିମାଣ ଟଙ୍କା |
|---|---|---|---|---|---|---|
| (୧୫) | ୧୯୭୨ ଜାନୁ | ୩୧ | ବେତନ ହିସାବ ଦାୟୀ<br>ନଗଦ ତହବିଲ ହିସାବ ବାବଦ<br>( ବେତନ ବାବଦ ନଗଦ ଖର୍ଚ୍ଚ ହେଲା । ) | | ୩୦୦ | ୩୦୦ |
| (୧୭) | | ୩୧ | ଉଠାଣ ହିସାବ ଦାୟୀ<br>ବ୍ୟାଙ୍କ୍ ହିସାବ ବାବଦ<br>( ବ୍ୟକ୍ତିଗତ ଖର୍ଚ୍ଚ ନିମନ୍ତେ ବ୍ୟାଙ୍କ୍‌ରୁ ଟଙ୍କା ଉଠାଇ ନିଆଗଲା । ) | | ୩୦୦ | ୩୦୦ |
| | | | ମୋଟ | | ୨୩,୫୩୦ | ୨୩,୫୩୦ |

ଉପରୋକ୍ତ ନେଣଦେଣଗୁଡ଼ିକରେ ସଂପୃକ୍ତ ହିସାବଗୁଡ଼ିକୁ କାହିଁକି ଦାୟୀ ବା ଦାତା କରାଯାଇଛି ତାହା ନିମ୍ନରେ ବୁଝାଇ ଦିଆଗଲା ।

(୧) ପ୍ରଥମ ନେଣଦେଣରେ ନଗଦ ତହବିଲ ହିସାବ ଓ ମୂଳଧନ ହିସାବ ସଂପୃକ୍ତ ରହିଛି । ନଗଦ ତହବିଲ ହିସାବ ସମ୍ପତ୍ତି-ସମ୍ପର୍କୀୟ ହିସାବ ଶ୍ରେଣୀର ଅନ୍ତର୍ଭୁକ୍ତ ; ତେଣୁ ନଗଦ ତହବିଲ ବ୍ୟବସାୟକୁ ଆସୁଥିବାରୁ ସେହି ହିସାବକୁ ଦାୟୀ କରାଗଲା ମୂଳଧନ ହିସାବ ବ୍ୟକ୍ତି-ସମ୍ପର୍କୀୟ ହିସାବ,

ଅର୍ଥାତ୍ ଏହା ବ୍ୟବସାୟର ମାଲିକଙ୍କ ହିସାବ । ସେ ଉପକାର ପ୍ରଦାନ କରିଥିବାରୁ ମୂଳଧନ ହିସାବକୁ ଦାତା କରିଗଲା ।

(୨) ଏହି ନେଣଦେଣରେ ସଂପୃକ୍ତ ଥିବା ହିସାବ ଦୁଇଟିର ନାମ ବ୍ୟାଙ୍କ୍ ହିସାବ ଓ ନଗଦ ତହବିଲ ହିସାବ । ଏହି ଦୁଇଗୋଟି ହିସାବ ସମ୍ପତ୍ତି-ସମ୍ପର୍କୀୟ, ତେଣୁ ବ୍ୟାଙ୍କ୍‌ରେ ଟଙ୍କା ଜମା ହୋଇଥିବାରୁ ଏହି ହିସାବକୁ ଦାୟୀ କରାଯାଇଛି ଓ ନଗଦ ତହବିଲ୍ ବ୍ୟବସାୟରୁ ବାହାରକୁ ଯାଉଥିବାରୁ ନଗଦ ତହବିଲ ହିସାବକୁ ଦାତା କରାଯାଇଛି ।

(୩) ଏହି ନେଣଦେଣରେ ସଂପୃକ୍ତଥିବା ହିସାବ ଦୁଇଟି, ଅର୍ଥାତ୍ ଅସ୍‌ବାବ୍ ହିସାବ ଓ ନଗଦ ତହବିଲ ହିସାବ ସମ୍ପତ୍ତି-ସମ୍ପର୍କୀୟ । ଯେହେତୁ ଆସ୍‌ବାବ୍ ପତ୍ର ବ୍ୟବସାୟକୁ ଆସିଲା, ତେଣୁ ସେହି ହିସାବକୁ ଦାୟୀ କରାଯାଇଛି ଓ ନଗଦ ତହବିଲ ବ୍ୟବସାୟରୁ ବାହାରକୁ ଯାଇଥିବାରୁ ନଗଦ ତହବିଲ ହିସାବକୁ ଦାତା କରାଯାଇଛି ।

(୪) ଏହି ନେଣଦେଣରେ ମଧ୍ୟ ସଂପୃକ୍ତ ଥିବା ହିସାବ ଦୁଇଟି ସମ୍ପତ୍ତି-ସମ୍ପର୍କୀୟ । ତେଣୁ ପଣ୍ୟ ବ୍ୟବସାୟକୁ ଆସୁଥିବାରୁ ସେହି ହିସାବକୁ ଦାୟୀ ଓ ବ୍ୟାଙ୍କ୍‌ରୁ ଟଙ୍କା ଦିଆଯାଇଥିବାରୁ ବ୍ୟାଙ୍କ୍ ହିସାବକୁ ଦାତା କରାଯାଇଛି ।

(୫) ଏହି ନେଣଦେଣରେ ମଧ୍ୟ ସଂପୃକ୍ତ ଥିବା ପଣ୍ୟ ହିସାବ ଓ ନଗଦ ତହବିଲ ହିସାବ ସମ୍ପତ୍ତି-ସମ୍ପର୍କୀୟ । ନଗଦ ଟଙ୍କା ବ୍ୟବସାୟକୁ ଆସୁଥିବାରୁ ସେହି ହିସାବକୁ ଦାୟୀ କରାଯାଇଛି ଓ ପଣ୍ୟ ବ୍ୟବସାୟରୁ ବାହାରିଯାଇଥିବାରୁ ସେହି ହିସାବକୁ ଦାତା କରାଯାଇଛି ।

(୬) ଏହି ନେଣଦେଣରେ ଦପ୍ତର ସରଞ୍ଜାମ ହିସାବ ଓ ରାମପ୍ରସାଦଙ୍କ ହିସାବ ସଂପୃକ୍ତ ରହିଛି । ପ୍ରଥମଟି ସମ୍ପତ୍ତି-ସମ୍ପର୍କୀୟ ଓ ଦପ୍ତର ସରଞ୍ଜାମ ବ୍ୟବସାୟକୁ ଆସୁଥିବାରୁ ଏହି ହିସାବକୁ ଦାୟୀ କରାଯାଇଛି । ଦ୍ୱିତୀୟ ହିସାବଟି ବ୍ୟକ୍ତି-ସମ୍ପର୍କୀୟ ଓ ରାମପ୍ରସାଦ ଉପକାର ପ୍ରଦାନ କରିଥିବାରୁ ତାଙ୍କର ହିସାବକୁ ଦାତା କରାଯାଇଛି ।

(୭) ଏହି ନେଣଦେଣଟି ୫ ନମ୍ବର ନେଣଦେଣ ସହିତ ସମାନ; ତେଣୁ ଏହାର ବ୍ୟାଖ୍ୟା ନିଷ୍ପ୍ରୟୋଜନ ।

(୮) ଏହି ନେଣଦେଣରେ ଟେଲିଫୋନ ଭଡ଼ା ହିସାବ ଓ ନଗଦ ତହବିଲ ହିସାବ ଦୁଇଟି ସଂପୃକ୍ତ । ପ୍ରଥମ ହିସାବଟି ଆୟ-ବ୍ୟୟ ସମ୍ପର୍କୀୟ । ଭଡ଼ା ବାବଦ ବ୍ୟୟ

ହୋଇଥିବାରୁ ଏହି ହିସାବକୁ ଦାସ୍ତୀ କରାଗଲା । ଦ୍ୱିତୀୟ ହିସାବଟି ସମ୍ପତ୍ତି-ସମ୍ପର୍କୀୟ । ନଗଦ ତହବିଲ ବ୍ୟବସାୟରୁ ବାହାର ଯାଇଥିବାରୁ ଏହି ହିସାବକୁ ଦାତା କରାଯାଇଛି ।

(୯) ଏହି ନେଣଦେଣରେ ରାମପ୍ରସାଦଙ୍କ ହିସାବ ଓ ନଗଦ ତହବିଲ ହିସାବ ସଂପୃକ୍ତ । ପ୍ରଥମଟି ବ୍ୟକ୍ତି-ସମ୍ପର୍କୀୟ ଓ ସେ ଉପକାର ଲାଭ କରିଥିବାରୁ ତାଙ୍କ ହିସାବକୁ ଦାସ୍ତୀ କରାଯାଇଛି । ନଗଦ ତହବିଲ ହିସାବ ସମ୍ପତ୍ତି-ସମ୍ପର୍କୀୟ ଓ ନଗଦ ତହବିଲ ବ୍ୟବସାୟରୁ ବାହାର ଯାଉଥିବାରୁ ଏହି ହିସାବକୁ ଦାତା କରାଯାଇଛି ।

(୧୦) ଏହି ନେଣଦେଣରେ ସଂପୃକ୍ତ ଥିବା ପଣ୍ୟ ହିସାବ ସମ୍ପତ୍ତି ସମ୍ପର୍କୀୟ ଓ ପଣ୍ୟ ବ୍ୟବସାୟକୁ ଆସିଥିବାରୁ ଏହି ହିସାବକୁ ଦାସ୍ତୀ କରାଯାଇଛି । କମଳ ଯାଯେ ତିଅଙ୍କ ହିସାବ ବ୍ୟକ୍ତି-ସମ୍ପର୍କୀୟ ଓ ସେ ଉପକାର ପ୍ରଦାନ କରିଥିବାରୁ ତାଙ୍କ ହିସାବକୁ ଦାତା କରାଯାଇଛି ।

(୧୧) ଏହି ନେଣଦେଣରେ ସଂପୃକ୍ତ ହିସାବ ଦୁଇଟି ମଧ୍ୟରୁ ପ୍ରଥମଟି ଆୟ-ବ୍ୟୟ-ସମ୍ପର୍କୀୟ ଓ ଗାଡ଼ିଭଡ଼ା ବାବଦ ବ୍ୟୟ ହୋଇଥିବାରୁ ଏହି ହିସାବକୁ ଦାସ୍ତୀ କରାଯାଇଛି । ଦ୍ୱିତୀୟ ହିସାବ ସମ୍ପତ୍ତି-ସମ୍ପର୍କୀୟ ଓ ନଗଦ ତହବିଲ ବ୍ୟବସାୟରୁ ବାହାରିଯାଇଥିବାରୁ ଏହି ହିସାବକୁ ଦାତା କରାଯାଇଛି ।

(୧୨) ଏହି ନେଣଦେଣଟି ୧୧ ନମ୍ବର ନେଣଦେଣର ଅନୁରୂପ ।

(୧୩) ଏହି ନେଣଦେଣରେ ସଂପୃକ୍ତ ଥିବା ପ୍ରଥମ ହିସାବଟି ବ୍ୟକ୍ତି-ସମ୍ପର୍କୀୟ । ହରି ସାହୁ ଉପକାର ଲାଭ କରିଥିବାରୁ ତାଙ୍କ ହିସାବକୁ ଦାସ୍ତୀ କରାଯାଇଛି । ଦ୍ୱିତୀୟ ହିସାବଟି ସମ୍ପତ୍ତି-ସମ୍ପର୍କୀୟ । ପଣ୍ୟ ବ୍ୟବସାୟରୁ ବାହାରି ଯାଇଥିବାରୁ ଏହି ହିସାବକୁ ଦାତା କରାଯାଇଛି ।

(୧୪) ଏହି ନେଣଦେଣରେ କମଳ ଯାଯୋଡ଼ିଆଙ୍କ ହିସାବ ଓ ବ୍ୟାଙ୍କ୍ ହିସାବ ସଂପୃକ୍ତ । ପ୍ରଥମଟି ବ୍ୟକ୍ତି-ସମ୍ପର୍କୀୟ ଓ ଦ୍ୱିତୀୟଟି ସମ୍ପତ୍ତି-ସମ୍ପର୍କୀୟ । କମଳ ଯାଯୋଡ଼ିଆ ଉପକାର ଲାଭ କରିଥିବାରୁ ତାଙ୍କ ହିସାବକୁ ଦାସ୍ତୀ କରାଯାଇଛି ଓ ବ୍ୟାଙ୍କ୍‌ରୁ ଟଙ୍କା ବାହାରି ଯାଉଥିବାରୁ ଏହି ହିସାବକୁ ଦାତା କରାଯାଇଛି ।

(୧୫) ଏହି ନେଣଦେଣଟି ୧୨ ନମ୍ବର ନେଣଦେଣର ଅନୁରୂପ ।

(୧୬) ଏହି ନେଣଦେଣରେ ସଂପୃକ୍ତ ଉଠାଣ ହିସାବ ବ୍ୟକ୍ତି-ସମ୍ପର୍କୀୟ ହିସାବ ଗୋଷ୍ଠୀର ଅନ୍ତର୍ଗତ, ପ୍ରକୃତପକ୍ଷେ ଏହା ବ୍ୟବସାୟୀଙ୍କର ନିଜର ହିସାବ । ତେଣୁ ସେ ବ୍ୟବସାୟରୁ ଟଙ୍କା ଉଠାଇ ନେଇ ଉପକାର ଲାଭ କରୁଥିବାରୁ ଏହି ହିସାବକୁ ଦାସ୍ତୀ କରାଯାଇଛି । ବ୍ୟବସାୟୀଙ୍କର ଆଉ ଗୋଟିଏ ହିସାବ ଅଛି । ଯଥା

ମୂଳଧନ ହିସାବ । ସେ ଯେତେବେଳେ ବ୍ୟବସାୟକୁ ମୂଳଧନ ଯୋଗାଇ ଉପକାର ପ୍ରଦାନ କରନ୍ତି ସେତେବେଳେ ମୂଳଧନ ହିସାବକୁ ଦାତା କରାଯାଏ । ଅପର ସଂପୃକ୍ତ ହିସାବଟି ବ୍ୟାଙ୍କ୍ ହିସାବ ଯାହା କି ସମ୍ପତ୍ତି-ସମ୍ପର୍କୀୟ । ତେଣୁ ବ୍ୟାଙ୍କରୁ ଟଙ୍କା ବାହାରି ଯାଉଥିବାରୁ ବ୍ୟାଙ୍କ୍ ହିସାବକୁ ଦାତା କରାଯାଇଛି ।

ପ୍ରତ୍ୟହ ସଂଘଟିତ ହେଉଥିବା ନେଣଦେଣଗୁଡ଼ିକ ନିମନ୍ତେ କେବଳ ରୋଜନାମା ପ୍ରସ୍ତୁତ କଲେ ବ୍ୟବସାୟୀର ଉଦ୍ଦେଶ୍ୟ ସଫଳ ହେବ ନାହିଁ; କାରଣ ସେ ଯାହା ଜାଣିବାକୁ ଚାହାନ୍ତି, ତାହା ରୋଜନାମା ଯୋଗାଇ ପାରିବ ନାହିଁ । ଉଦାହରଣ ସ୍ୱରୂପ ସେ ମାସ ଶେଷସୁଦ୍ଧା କେତେ ଟଙ୍କାର ପଣ୍ୟ କ୍ରୟ ଓ ବିକ୍ରୟ କଲେ, ରାମ ପ୍ରସାଦ, କମଳ ଯାଯୋଡ଼ିଆ ଓ ହରିସାହୁଙ୍କୁ ସେ କିଛି ଟଙ୍କା ଦେବେ ନା ତାଙ୍କଠାରୁ କିଛି ଟଙ୍କା ପାଇବେ, ମଜୁରି, ବେତନ ବା ଗାଡ଼ିଭଡ଼ା ବାବଦ ସପ୍ତାହ ବା ମାସ ଶେଷରେ ସେ ମୋଟ କେତେ ଟଙ୍କା ଖର୍ଚ୍ଚ କଲେ ତାହା ସେ ହିସାବ ବହିର କୌଣସି ଗୋଟିଏ ବା ଦୁଇଟି ପୃଷ୍ଠାରେ ପାଇ ପାରିବେ ନାହିଁ । ଏଥି ସକାଶେ ତାଙ୍କୁ ପ୍ରତି ଦିନର ରୋଜନାମା ଲେଉଟାଇ ତଥ୍ୟ ଗୁଡ଼ିକ ସଂଗ୍ରହ କରିବାକୁ ପଡ଼ିବ। ତେଣୁ ଏହି ଅସୁବିଧା ଏଡ଼ିବା ପାଇଁ ସେ ରୋଜନାମାର ଶ୍ରେଣୀ ବିଭାଗ କରି କେତେଗୁଡ଼ିଏ ହିସାବ ଖୋଲିବେ । ଯହିଁରେ ଗୋଟିଏ ବ୍ୟକ୍ତି ଅଥବା ବସ୍ତୁ ଅଥବା ଆୟ-ବ୍ୟୟ ସଂକ୍ରାନ୍ତ ଏକ ନିର୍ଦ୍ଦିଷ୍ଟ କାଳ ଅନ୍ତର୍ଗତ ବିଭିନ୍ନ ସମୟରେ ଘଟିଥିବା ଯାବତୀୟ ନେଣଦେଣର ଫଳାଫଳକୁ ଗୋଟିଏ ସ୍ଥାନରେ ଲିପିବଦ୍ଧ କରାଯାଏ, ତାହାକୁ ସେହି ବ୍ୟକ୍ତି, ଅଥବା ବସ୍ତୁ ଅଥବା ଆୟ-ବ୍ୟୟର ହିସାବ କୁହାଯାଏ । ତାଙ୍କ ବ୍ୟବସାୟ ସହିତ ସଂପୃକ୍ତ ବ୍ୟକ୍ତି ବା ଅନ୍ୟାନ୍ୟ ବ୍ୟବସାୟ ପ୍ରତିଷ୍ଠାନମାନଙ୍କ ନିମନ୍ତେ ସେ ଗୋଟିଏ ଲେଖା ହିସାବ ଖୋଲିବେ । ସେହିପରି ପ୍ରତି ନେଣଦେଣ ସଂପୃକ୍ତ ସମ୍ପତ୍ତି, ପାଉଣା, ଦେଣା, ଆୟ, ବ୍ୟୟ ପ୍ରଭୃତି ସକାଶେ ସେ ଗୋଟିଏ ଲେଖା ହିସାବ ଖୋଲିବେ । ପ୍ରତି ରୋଜନାମାର ଫଳାଫଳ ଏହି ହିସାବମାନଙ୍କରେ ଲେଖାଯିବ । ତେଣୁ ପ୍ରତି ସପ୍ତାହ, ପକ୍ଷ, ମାସ ବା ବର୍ଷ ଶେଷରେ ସେହି ହିସାବଗୁଡ଼ିକ ଦେଖିଲେ ସେ ତହିଁରୁ ଏକ ସ୍ଥାନ ବା ପୃଷ୍ଠାରୁ ତାଙ୍କର ଜ୍ଞାତବ୍ୟ ବିଷୟ ଜାଣିପାରିବେ । ଏହା ଦ୍ୱାରା ବ୍ୟବସାୟୀ ବହୁ ସମୟ ବଞ୍ଚାଇ ପାରିବେ ଓ ଶ୍ରମ ମଧ୍ୟ ଲାଘବ କରିପାରିବେ ।

## ଖତିୟାନ ହିସାବ :

ଯେଉଁ ବହି ବା ଖାତାରେ ବ୍ୟବସାୟ ସଂପୃକ୍ତ ଯାବତୀୟ ହିସାବ ଲେଖାଯାଏ ତାହାକୁ ଖତିୟାନ କୁହାଯାଏ ଓ ହିସାବଗୁଡ଼ିକୁ ଖତିୟାନ ହିସାବ କୁହାଯାଏ । ପ୍ରତି ହିସାବର ନାମ ଶିରୋନାମାରେ ବଡ଼ ବଡ଼ ଅକ୍ଷରରେ ଲେଖାଯାଏ । ପ୍ରତି ହିସାବର ଦୁଇଟି ପାର୍ଶ୍ୱ ଅଛି; ଯଥା, ବାମ ଓ ଦକ୍ଷିଣ । ପ୍ରତି ହିସାବର ବାମ ପାର୍ଶ୍ୱକୁ ଦାୟୀ ଓ ଦକ୍ଷିଣ

ପାର୍ଶ୍ୱକୁ ଦାତା ପାର୍ଶ୍ୱ କୁହାଯାଏ । ପ୍ରତି ପାର୍ଶ୍ୱ ପୁଣି ଚାରି ଭାଗରେ ବିଭକ୍ତ, ଯଥା, ତାରିଖ, ବିବରଣୀ, ପୃଷ୍ଠାଙ୍କ ଓ ଅର୍ଥର ପରିମାଣ । ଗୋଟିଏ ହିସାବର ନମୁନା ନିମ୍ନରେ ପ୍ରଦତ୍ତ ହେଲା ।

ଦାୟୀ — ହିସାବ — ଦାତା

| ତାରିଖ | ବିବରଣୀ | ପୃଷ୍ଠାଙ୍କ | ପରିମାଣ ଟ: ପ: | ତାରିଖ | ବିବରଣୀ | ପୃଷ୍ଠାଙ୍କ | ପରିମାଣ ଟ: ପ: |
|---|---|---|---|---|---|---|---|
| | | | | | | | |

ପୂର୍ବ ବର୍ଣ୍ଣିତ ଦୃଷ୍ଟାନ୍ତର ରୋଜନାମା ଗୁଡ଼ିକ ନିମ୍ନଲିଖିତରୂପେ ଖତିୟାନକୁ ଅଣାଯିବ ।

ଦାୟୀ — ମୂଳଧନ ହିସାବ — ଦାତା

| | | | | | | | |
|---|---|---|---|---|---|---|---|
| | | | | ୧୯୭୨ ଜାନୁ-୨ | ନଗଦ ତହବିଲ ହିସାବ ବାବଦ | | ଟଙ୍କା ୮,୦୦୦ |

ଦାୟୀ — ଆସ୍‌ବାବ୍ ହିସାବ — ଦାତା

| | | | | | | | |
|---|---|---|---|---|---|---|---|
| ୧୯୭୨ ଜାନୁ-୩ | | ନଗଦ ତହବିଲ ହିସାବ ବାବଦ | | ଟଙ୍କା ୫୦୦ | | | ଟଙ୍କା |

ଦାସ୍ତୀ — ନଗଦ ଚଳବଳ ହିସାବ — ଦାତା

| ୧୯୭୨ | | ଟଙ୍କା | ୧୯୭୨ | | ଟଙ୍କା |
|---|---|---|---|---|---|
| ଜାନୁ-୨ | ମୂଳଧନ ହିସାବ ବାବଦ | ୮,୦୦୦ | ଜାନୁ- ୨ | ବ୍ୟାଙ୍କ୍ ହିସାବ ବାବଦ | ୫,୦୦୦ |
| ୬ | ପଣ୍ୟ ହିସାବ ବାବଦ | ୫୦୦ | ୩ | ଅସବାବ୍ ହିସାବ ବାବଦ | ୫୦୦ |
| ୧୨ | ପଣ୍ୟ ହିସାବ ବାବଦ | ୧,୫୦୦ | ୧୦ | ଟେଲିଫୋନ୍ ହିସାବ ବାବଦ | ୪୦୦ |
| | | | ୧୫ | ଭ୍ରମପ୍ରସାଦଙ୍କ ହିସାବ ବାବଦ | ୭୦୦ |
| | | | ୨୯ | ଗାଡ଼ିଭଡ଼ା ହିସାବ ବାବଦ | ୩୦ |
| | | | ୩୦ | ଘରଭଡ଼ା ହିସାବ ବାବଦ | ୨୦୦ |
| | | | ୩୧ | ବେତନ ହିସାବ ବାବଦ | ୩୦୦ |

ଦାସ୍ତୀ — ବ୍ୟାଙ୍କ୍ ହିସାବ — ଦାତା

| ୧୯୭୨ | | ଟଙ୍କା | ୧୯୭୨ | | ଟଙ୍କା |
|---|---|---|---|---|---|
| ଜାନୁ-୨ | ନଗଦ ଚଳବଳ ହିସାବ ବାବଦ | ୫,୦୦୦ | ଜାନୁ- ୫ | ପଣ୍ୟ ହିସାବ ବାବଦ | ୩,୦୦୦ |
| | | | ୩୧ | କମଳ ପାଯୋଡ଼ିଅଙ୍କ ହିସାବ ବାବଦ | ୧,୦୦୦ |
| | | | ୩୧ | ଉଠାଣ ହିସାବ ବାବଦ | ୩୦୦ |

| ଦାସ୍ତୀ | | | ପଣ୍ୟ ହିସାବ | | | | ଦାତା |
|---|---|---|---|---|---|---|---|
| ୧୯୭୨ | | | ଟଙ୍କା | ୧୯୭୨ | | | ଟଙ୍କା |
| ଜାନୁ- ୫ | ବ୍ୟାଙ୍କ ହିସାବ ବାବଦ | | ୩,୦୦୦ | ଜାନୁ- ୭ | ନଗଦ ତହବିଲ ହିସାବ ବାବଦ | | ୫୦୦ |
| ୧୮ | କମଳ ଯାଯୋଡ଼ିଆଙ୍କ ହିସାବ ବାବଦ | | ୧,୦୦୦ | ୧୧ | ନଗଦ ତହବିଲ ହିସାବ ବାବଦ | | ୧,୫୦୦ |
| | | | | ୩୧ | ହରପାତ୍ରଙ୍କ ହିସାବ ବାବଦ | | ୨୦୦ |

| ଦାସ୍ତୀ | | | ଦପ୍ତର ସରଞ୍ଜାମ ହିସାବ | | | | ଦାତା |
|---|---|---|---|---|---|---|---|
| ୧୯୭୨ | | | ଟଙ୍କା | | | | ଟଙ୍କା |
| ଜାନୁ- ୯ | ରାମ ପ୍ରସାଦଙ୍କ ହିସାବ ବାବଦ | | ୭୦୦ | | | | |

| ଦାସ୍ତୀ | | | ଟେଲିଫୋନ୍ ଭଡ଼ା ହିସାବ | | | | ଦାତା |
|---|---|---|---|---|---|---|---|
| ୧୯୭୨ | | | ଟଙ୍କା | | | | |
| ଜାନୁ- ୨୦ | ନଗଦ ତହବିଲ ହିସାବ ବାବଦ | | ୪୦୦ | | | | |

ଦାୟୀ — କମଲ ସାହୁ ଓ ପୁଅଙ୍କ ହିସାବ — ଦାତା

| | | | ଟଙ୍କା | | | | ଟଙ୍କା |
|---|---|---|---|---|---|---|---|
| ୧୯୭୨ ଜାନୁ-୩୧ | ବ୍ୟାଙ୍କ ହିସାବ ବାବଦ | | ୧,୦୦୦ | ୧୯୭୨ ଜାନୁ-୨୮ | ଦେଣା ହିସାବ ବାବଦ | | ୧,୦୦୦ |

ଦାୟୀ — ରାମପ୍ରସାଦଙ୍କ ହିସାବ — ଦାତା

| | | | | | | | ଟଙ୍କା |
|---|---|---|---|---|---|---|---|
| ୧୯୭୨ ଜାନୁ-୨୫ | ନଗଦ ତହବିଲ ହିସାବ ବାବଦ | | ୬୦୦ | ୧୯୭୨ ଜାନୁ-୯ | ଦପ୍ତର ସରଞ୍ଜାମ ହିସାବ ବାବଦ | | ୬୦୦ |

ଦାୟୀ — ଗାଡ଼ିଭଡ଼ା ହିସାବ — ଦାତା

| | | | ଟଙ୍କା | | | | ଟଙ୍କା |
|---|---|---|---|---|---|---|---|
| ୧୯୭୨ ଜାନୁ-୨୯ | ନଗଦ ତହବିଲ ହିସାବ ବାବଦ | | ୩୦ | | | | |

ଦାସ୍ୱୀ — ଘରଭଡ଼ା ହିସାବ — ଦାତା

| ୧୯୭୨ | | | ଟଙ୍କା | | | | ଟଙ୍କା |
|---|---|---|---|---|---|---|---|
| ଜାନୁ ୩୦ | ନଗଦ ତହବିଲ ହିସାବ ବାବଦ | | ୨୦୦ | | | | |

ଦାସ୍ୱୀ — ହରିସାହୁଙ୍କ ହିସାବ — ଦାତା

| ୧୯୭୨ | | | ଟଙ୍କା | | | | ଟଙ୍କା |
|---|---|---|---|---|---|---|---|
| ଜାନୁ-୩୧ | ପଣ୍ୟ ହିସାବ ବାବଦ | | [illegible]୦୦ | | | | |

ଦାସ୍ୱୀ — ବେତନ ହିସାବ — ଦାତା

| ୧୯୭୨ | | | ଟଙ୍କା | | | | ଟଙ୍କା |
|---|---|---|---|---|---|---|---|
| ଜାନୁ-୩୧ | ନଗଦ ତହବିଲ ହିସାବ ବାବଦ | | ୩,୦୦ | | | | |

| ଦାସ୍ତୀ | | ଉଠାଣ ହିସାବ | | | | | ଦାତା |
|---|---|---|---|---|---|---|---|
| ୧୯୭୨ ଜାନୁ-୩୧ | ବ୍ୟାଙ୍କ ହିସାବ ବାବଦ | | ଟଙ୍କା ୩୦୦ | | | | ଟଙ୍କା |

## ହିସାବର ସମତୁଲନ ବା ବାକୀ ନିର୍ଣ୍ଣୟ :

ରୋଜନାମାରୁ ବିଭିନ୍ନ ନେଣଦେଣ ଗୁଡ଼ିକ ଖତିଆନର ବିଭିନ୍ନ ହିସାବକୁ ଅଣାଯିବା ପରେ ହିସାବ ଗୁଡ଼ିକର ସମତୁଳନ କରିବା ଆବଶ୍ୟକ । ହିସାବର ଦାସ୍ତୀ ଓ ଦାତା ପାର୍ଶ୍ୱର ଅଙ୍କର ସମଷ୍ଟି ସ୍ଥିର କଲା ପରେ ଦେଖାଯିବ ଯେ ହୁଏତ ଦୁଇ ପାର୍ଶ୍ୱର ଅଙ୍କର ପରିମାଣ ସମାନ ହେବ କିମ୍ବା ଦାସ୍ତୀ ବା ଦାତା ପାର୍ଶ୍ୱର ଅଙ୍କର ପରିମାଣ ଅଧିକ ହେବ । କୌଣସି ଗୋଟିଏ ପାର୍ଶ୍ୱର ପରିମାଣ ଅଧିକ ହେଲେ ଊଣା ପରିମାଣ ଥିବା ପାର୍ଶ୍ୱରେ ଦୁଇ ପାର୍ଶ୍ୱର ସମଷ୍ଟିର ବିୟୋଗଫଳ ଲେଖାଯାଇ ଦୁଇ ପାର୍ଶ୍ୱର ମୋଟ ପରିମାଣକୁ ସମାନ କରାଯିବ । ମନେକର କୌଣସି ହିସାବର ଦାସ୍ତୀ ପାର୍ଶ୍ୱର ଅଙ୍କର ମୋଟ ପରିମାଣ ୫,୩୦୦ ଟଙ୍କା ଓ ଦାତା ପାର୍ଶ୍ୱର ଅଙ୍କର ପରିମାଣ ୩,୨୦୦ ଟଙ୍କା, ତେଣୁ ଦୁଇ ପାର୍ଶ୍ୱର ଅଙ୍କର ପରିମାଣ ସମାନ କରିବା ନିମନ୍ତେ (୫,୩୦୦ – ୩,୨୦୦ =) ୨,୧୦୦ ଟଙ୍କା ଦାତା ପାର୍ଶ୍ୱରେ ଲେଖାଯିବ । ଏହି ୨,୧୦୦ ଟଙ୍କା ହିଁ ହିସାବର ବାକି ବା ବଳକା ଏବଂ ଏ କ୍ଷେତ୍ରରେ ଏହା ଦାସ୍ତୀ ବାକି । ଯଦି ଦାତା ପାର୍ଶ୍ୱର ଅଙ୍କର ପରିମାଣ ଦାସ୍ତୀ ପାର୍ଶ୍ୱର ଅଙ୍କର ପରିମାଣଠାରୁ ଅଧିକ ହୋଇଥାନ୍ତା ତାହେଲେ ଏହି ହିସାବର ବାକି ଦାତା ବାକି ହୋଇଥାନ୍ତା ଓ ତାହା ଦାସ୍ତୀ ପାର୍ଶ୍ୱରେ ଲେଖାଯାଇ-ଥାଆନ୍ତା । ଆବଶ୍ୟକତା ଦୃଷ୍ଟିରୁ କେତେକ ହିସାବର ବାକି ପ୍ରତିଦିନ, କେତେକ ହିସାବର ବାକି ସପ୍ତାହ, ପକ୍ଷ, ମାସ ବା ବର୍ଷ ଶେଷରେ ନିର୍ଣ୍ଣୟ କରାଯାଏ । ହିସାବ ଦୈନିକ, ସାପ୍ତାହିକ, ପାକ୍ଷିକ ବା ବାର୍ଷିକ ସମତୁଳନ କଲାବେଳେ 'ବାକି ଗଡ଼ିଲା' ବୋଲି ଲେଖାଯାଏ ଓ ପରବର୍ତ୍ତୀ ସମୟର ହିସାବ ଲେଖିବା ପୂର୍ବରୁ 'ପୂର୍ବ ବାକି ବାବଦ' ଲେଖି ହିସାବ ଆରମ୍ଭ କରାଯାଏ । ଏହାର କେତୋଟି ଦୃଷ୍ଟାନ୍ତ ନିମ୍ନରେ ପ୍ରଦତ୍ତ ହେଲା ।

ପୂର୍ବ ଦୃଷ୍ଟାନ୍ତର ନଗଦ ତହବିଲ ହିସାବର ବାକି ନିର୍ଣ୍ଣୟ ।

ଡାହାଣି ନଗଦ ତହବିଲ ହିସାବ ବାମ

| ୧୯୭୨ | | | ଟଙ୍କା | ୧୯୭୪ | | | ଟଙ୍କା |
|---|---|---|---|---|---|---|---|
| ଜାନୁ | ୨ | ମୂଳଧନ ହିସାବ ବାବଦ | ୮,୦୦୦ | ଜାନୁ | ୨ | ବ୍ୟାଙ୍କ ହିସାବ ବାବଦ | ୫,୦୦୦ |
| | ୭ | ପଣ୍ୟ ହିସାବ ବାବଦ | ୫୦୦ | | ୩ | ଆସବାବ ହିସାବ ବାବଦ | ୫୦୦ |
| | ୧୨ | ପଣ୍ୟ ହିସାବ ବାବଦ | ୧,୫୦୦ | | ୨୦ | ଟେଲିଫୋନ ହିସାବ ବାବଦ | ୪୦୦ |
| | | | | | ୨୫ | ରାମପ୍ରସାଦଙ୍କ ହିସାବ ବାବଦ | ୭୦୦ |
| | | | | | ୨୯ | ଗାଡ଼ିଭଡ଼ା ହିସାବ ବାବଦ | ୩୦ |
| | | | | | ୩୦ | ଘରଭଡ଼ା ହିସାବ ବାବଦ | ୨୦୦ |
| | | | | | ୩୧ | ବେତନ ହିସାବ ବାବଦ | ୩୦୦ |
| | | | | | ୩୧ | ବାକି ଗଲା | ୨,୮୭୦ |
| | | | ୧୦,୦୦୦ | | | | ୧୦,୦୦୦ |
| ଫେବ୍ରୁ | ୧ | ପୂର୍ବ ବାକି ବାବଦ | ୨,୮୭୦ | | | | |

ପୂର୍ବ ଦୃଷ୍ଟାନ୍ତର ମୂଳଧନ ହିସାବର ବାକି ନିର୍ଣ୍ଣୟ ।

ମୂଳଧନ ହିସାବ

| ଦାୟୀ | | | | ଦାତା | | | |
|---|---|---|---|---|---|---|---|
| ୧୯୭୨ ଜାନୁ | ୩୧ | ବାକି ଗଲା | ଟଙ୍କା ୮,୦୦୦ | ୧୯୭୨ ଜାନୁ | ୨ | ନଗଦ ତହବିଲ ହିସାବ ବାବଦ | ଟଙ୍କା ୮,୦୦୦ |
| | | | ୮,୦୦୦ | | | | ୮,୦୦୦ |
| | | | | ଫେବ୍ରୁ | ୧ | ପୂର୍ବ ବାକି ବାବଦ | ୮,୦୦୦ |

ପୂର୍ବ ଦୃଷ୍ଟାନ୍ତର କମଳ ଯାଯୋଡ଼ିଆଙ୍କ ହିସାବର ବାକି ନିର୍ଣ୍ଣୟ ।

କମଳ ଯାଯୋଡ଼ିଆଙ୍କ ହିସାବ

| ଦାୟୀ | | | | ଦାତା | | | |
|---|---|---|---|---|---|---|---|
| ୧୯୭୨ ଜାନୁ | ୩୧ | ବ୍ୟାଙ୍କ ହିସାବ ବାବଦ | ଟଙ୍କା ୧,୦୦୦୦ | ୧୯୭୨ ଜାନୁ | ୨୮ | ପଣ୍ୟ ହିସାବ ବାବଦ | ଟଙ୍କା ୧,୦୦୦ |
| | | | ୧,୦୦୦ | | | | ୧,୦୦୦ |

ପୂର୍ବ ଦୃଷ୍ଟାନ୍ତର ହରିସାହୁଙ୍କ ହିସାବର ବାକି ନିର୍ଣ୍ଣୟ ।

| ଦାସ୍ତୀ | | ଋଣଦାତାଙ୍କ ହିସାବ | | | | | ଦାତା |
|---|---|---|---|---|---|---|---|
| ୧୯୭୨ ଜାନୁ | ୩୧ | ପଣ୍ୟ ହିସାବ ବାବଦ | ଟଙ୍କା ୪୦୦ | ୧୯୭୨ ଜାନୁ | ୩୧ | ବାକି ଗଡ଼ନ୍ତି | ଟଙ୍କା ୦୦୦ |
| | | | ୪୦୦ | | | | ୪୦୦ |
| ଫେବ୍ରୁ | ୧ | ପୂର୍ବ ବାକି ବାବଦ | ୪୦୦ | | | | |

ହିସାବ ଗୁଡ଼ିକର ବାକି ନିର୍ଣ୍ଣିତ ହେଲା ପରେ ବ୍ୟବସାୟୀ ଗୋଟିଏ ଦିନ, ସପ୍ତାହ, ପକ୍ଷ ବା ମାସ ପରେ ସେହି ସମୟରେ ଘଟିଥିବା ଯାବତୀୟ ନେଣଦେଣର ଫଳାଫଳ ଗୋଟିଏ ଗୋଟିଏ ହିସାବରୁ ଏକ ସ୍ଥାନରୁ ଜାଣି ପାରିବେ ।

ଏଥିରୁ ଜଣାଯିବ ଯେ ପ୍ରତ୍ୟେକ ବ୍ୟବସାୟରେ ପ୍ରତିଦିନ ଏହି ପ୍ରକାରର ବହୁ ନେଣଦେଣ ସଂଘଟିତ ହୁଏ । ଯଦି ପ୍ରତ୍ୟେକ ନେଣଦେଣ କ୍ରମରେ ରୋଜନାମା ଓ ଖତିୟାନ ହିସାବ କରାଯାଏ ତା ହେଲେ ବ୍ୟବସାୟୀଙ୍କର ବହୁ ମୂଲ୍ୟବାନ ସମୟ ନଷ୍ଟ ହେବ ଏବଂ ତାହାଙ୍କୁ ଅଯଥା ବହୁ ପରିଶ୍ରମ ମଧ୍ୟ କରିବାକୁ ପଡ଼ିବ । ତେଣୁ ପ୍ରକୃତ କ୍ଷେତ୍ରରେ ପ୍ରତି ନେଣଦେଣ ସକାଶେ ବ୍ୟବସାୟୀ ରୋଜନାମା ପ୍ରସ୍ତୁତ ନ କରି ସ୍ୱଳ୍ପ ପରିଶ୍ରମରେ ଅନ୍ୟ ଉପାୟରେ କାର୍ଯ୍ୟ ସିଦ୍ଧି କରନ୍ତି । ଏହାକୁ ବ୍ୟାବହାରିକ ଧାରା କୁହାଯାଏ । ଏହାର ବିସ୍ତୃତ ବିବରଣୀ ପରବର୍ତ୍ତୀ ପରିଚ୍ଛେଦରେ ବର୍ଣ୍ଣିତ ହୋଇଛି ।

## ପ୍ରଶ୍ନାବଳୀ (୧)

୧ । ହିସାବ ଶାସ୍ତ୍ର କାହାକୁ କହନ୍ତି ? ଏହାର ସଂଜ୍ଞା ଲେଖ ଓ ପରିସର ବର୍ଣ୍ଣନା କର ।

୨ । ହିସାବ ଶାସ୍ତ୍ର କଳା ନା ବିଜ୍ଞାନ ବୁଝାଅ ।

୩ । ହିସାବ ଲେଖିବାର ଉଦ୍ଦେଶ୍ୟ ବୁଝାଇ ଲେଖ ।

୪ । ଦ୍ୱି ଲିଖନ ପଦ୍ଧତି କହିଲେ କ'ଣ ବୁଝ ? ଏହାର ମୌଳିକ ନୀତି କ'ଣ ?

୫ । ନେଣଦେଣ କାହାକୁ କହନ୍ତି ? ଏହାର ପାଞ୍ଚଗୋଟି ଉଦାହରଣ ଦିଅ ।

୬ । ହିସାବର ଶ୍ରେଣୀ ବିଭାଗ ବୁଝାଅ ଓ ପ୍ରତି ଶ୍ରେଣୀର ପାଞ୍ଚଗୋଟି ଉଦାହରଣ ଲେଖ ।

୭ । ଜାବ୍‌ଦା ବା ରୋଜନାମା କାହାକୁ କହନ୍ତି ? ଏହା କାହିଁକି ଲେଖା ଯାଏ ?

୮ । ନିମ୍ନଲିଖିତ ନେଣଦେଣ ଗୁଡ଼ିକ ସକାଶେ ରୋଜନାମା ଲେଖ ; ୧୯୭୨ ସାଲ ଜାନୁ ୧ ତାରିଖରେ ବିକାଶ ଚୌଧୁରୀ ନଗଦ ୫,୦୦୦ ଟଙ୍କା ପୁଞ୍ଜି ଆଣି ବ୍ୟବସାୟ ଆରମ୍ଭ କଲେ ।

ଜାନୁ ୨—ସେ ୪,୫୦୦ ଟଙ୍କା ବ୍ୟାଙ୍କ୍‌ରେ ଜମା ଦେଲେ ।

,, ୩—ସେ ହରି ସାହୁଙ୍କଠାରୁ ୩,୦୦୦ ଟଙ୍କାର ପଣ୍ୟ କ୍ରୟ କଲେ ।

,, ୫—ମାଧବ ରାଉତ୍ରାୟଙ୍କଠାରୁ ନଗଦ ମୂଲ୍ୟ ଦେଇ ୨୦୦ ଟଙ୍କାର ପଣ୍ୟ କ୍ରୟ କଲେ ।

,, ୭—ସେ ନଗଦ ମୂଲ୍ୟ ଦେଇ ୫୦୦ ଟଙ୍କାର ପଣ୍ୟ ବିକ୍ରୟ କଲେ ।

,, ୯—ସେ ମଧୁସୂଦନ ମିଶ୍ରଙ୍କୁ ୧,୦୦୦ ଟଙ୍କା ମୂଲ୍ୟର ପଣ୍ୟ ବିକ୍ରୟ କଲେ ।

,, ୧୦—ବ୍ୟବସାୟ ନିମନ୍ତେ ସେ ୧,୦୦୦ ଟଙ୍କା ମୂଲ୍ୟର ଆସ୍‌ବାବ୍ କ୍ରୟ କରି ମୂଲ୍ୟ ବାବଦ ଚେକ୍ ଲେଖି ଦେଲେ ।

,, ,,—ସେ ଗାଡ଼ିଭଡ଼ା ବାବଦ ୩୦ ଟଙ୍କା ଖର୍ଚ୍ଚ କଲେ ।

୯ । ଶ୍ରୀ ଅରୁଣ ପଟ୍ଟନାୟକଙ୍କର ବ୍ୟବସାୟରେ ଘଟିଥିବା ୧୯୭୩ ସାଲ୍ ମାର୍ଚ୍ଚ ମାସର ଦେଣନେଣଗୁଡ଼ିକ ନିମ୍ନରେ ପ୍ରଦତ୍ତ ହେଲା । ତହିଁରୁ ତାଙ୍କର ରୋଜନାମା ପ୍ରସ୍ତୁତ କରି ସେଗୁଡ଼ିକ ଆବଶ୍ୟକୀୟ ଖତିୟାନ ହିସାବରେ ଲିପିବଦ୍ଧ କର ଓ ପ୍ରତି ହିସାବର ବାକୀ ନିର୍ଣ୍ଣୟ କର ।

୧୯୭୩—

ମାର୍ଚ୍ଚ—୧ ବିଶ୍ୱଜିତ୍ ଷ୍ଟୋରକୁ ୧,୫୦୦ ଟଙ୍କାର ପଣ୍ୟ ବାକିରେ ବିକ୍ରୟ କଲେ ।

୨ ରଥ ବ୍ରଦର୍ସଙ୍କୁ ନଗଦ ମୂଲ୍ୟରେ ୩୦୦ ଟଙ୍କାର ପଣ୍ୟ ବିକ୍ରୟ କଲେ ।

ମାର୍ଚ୍ଚ ୩ ରେଙ୍ଗୁନ ଷ୍ଟୋର୍ସଙ୍କଠାରୁ ୧,୨୦୦ ଟଙ୍କାର ପଣ୍ୟ ଉଧାରରେ କ୍ରୟ କଲେ ।

,, ୪ ଦପ୍ତର ସକାଶେ ମନୋହାରୀ ଦ୍ରବ୍ୟ ନଗଦ ୫୫ ଟଙ୍କା ଦେଇ କ୍ରୟ କରାଗଲା ।

,, ୭ ନଗଦ ମୂଲ୍ୟରେ ୧,୧୦୦ ଟଙ୍କାର ପଣ୍ୟ ବିକ୍ରୟ କରାଗଲା ।

,, ୯ ବିଶ୍ୱନାଥ ଷ୍ଟୋର ୮୦୦ ଟଙ୍କା ପରିଶୋଧ କଲେ ।

,, ୧୨ ରେଙ୍ଗୁନ ଷ୍ଟୋର୍ସଙ୍କୁ ୫୦୦ ଟଙ୍କା ପରିଶୋଧ କରାଗଲା ।

,, ୧୫ ଗତ ମାସର ଘରଭଡ଼ା ବାବଦ ୧୦୦ ଟଙ୍କା ଦେଲେ

,, ୧୮ ସିଟି ଫର୍ଣ୍ଣିସାର୍ସଙ୍କଠାରୁ ଉଧାରରେ ୭୦୦ ଟଙ୍କା ମୂଲ୍ୟରେ ଆସବାବ୍ କ୍ରୟ କଲେ ।

,, ୨୦ ନଗଦ ମୂଲ୍ୟରେ ୫୫୦ ଟଙ୍କାର ପଣ୍ୟ କ୍ରୟ କଲେ ।

,, ୨୨ ବିଶ୍ୱନାଥ ଷ୍ଟୋର ଉଧାରରେ ୩୦୦ ଟଙ୍କା ମୂଲ୍ୟର ପଣ୍ୟ କ୍ରୟ କଲେ ।

,, ୨୩ ନଗଦ ମୂଲ୍ୟରେ ४०० ଟଙ୍କାର ପଣ୍ୟ ବିକ୍ରୟ କରାଗଲା ।

,, ୨୫ ବିଶ୍ୱନାଥ ଷ୍ଟୋର ୫୦୦ ଟଙ୍କା ପରିଶୋଧ କଲେ

,, ୨୭ ସିଟି ଫର୍ଣ୍ଣିସାର୍ସଙ୍କୁ ४०० ଟଙ୍କା ପରିଶୋଧ କରାଗଲା ।

,, ୩୧ ଡାକ ଟିକଟ ବାବଦ ୫ ଟଙ୍କା ଖର୍ଚ୍ଚ ହେଲା ।

,, ୩୧ କର୍ମଚାରୀଙ୍କୁ ୨୦୦ ଟଙ୍କା ବେତନ ଦିଆଗଲା ।

## ଦ୍ୱିତୀୟ ପରିଚ୍ଛେଦ

### ବ୍ୟାବହାରିକ ପଦ୍ଧତି—ପ୍ରାଥମିକ ହିସାବ ବହି :

ଗୋଟିଏ ବ୍ୟବସାୟ ପ୍ରତିଷ୍ଠାନରେ ଅଧିକାଂଶ ନେଣଦେଣକୁ ତିନିଗୋଟି ଶ୍ରେଣୀରେ ବିଭକ୍ତ କରାଯାଇ ପାରେ, ଯଥା, ନଗଦ ଟଙ୍କା ପାଇବା ଓ ଦେବା, ପଣ୍ୟ କ୍ରୟ କରିବା ଓ ବିକ୍ରୟ କରିବା । ପ୍ରତିଦିନ ଏହି ଶ୍ରେଣୀର ନେଣଦେଣ ବହୁ ସଂଖ୍ୟାରେ ଘଟେ ; ଯଦି ଏହି ନେଣଦେଣଗୁଡ଼ିକ ସକାଶେ ରୋଜନାମା ପ୍ରସ୍ତୁତ କରାଯାଏ, ତାହାହେଲେ ସେଥି ନିମନ୍ତେ ବହୁ ସମୟ ଓ ଶ୍ରମ ଆବଶ୍ୟକ ହେବ । ଏହି ଲେଖାଟିର ଶ୍ରମ ଓ ସମୟ ବଞ୍ଚାଇବା ପାଇଁ ପ୍ରାଥମିକ ହିସାବ ବହିର ଉଦ୍‌ଭବ ହୋଇଛି । ଏହାର ପ୍ରଣାଳୀ ହେଉଛି ଗୋଟିଏ ଶ୍ରେଣୀର ନେଣଦେଣକୁ ଗୋଟିଏ ସ୍ୱତନ୍ତ୍ର ହିସାବ ବହିରେ ଲିପିବଦ୍ଧ କରିବା । ଏ ଭଳି ହିସାବ ବହିର ଅନ୍ୟ ଏକ ସୁବିଧା ହେଉଛି ଏହି ଯେ, ପ୍ରତ୍ୟେକ ନେଣଦେଣ ପରିବର୍ତ୍ତେ ଗୋଟିଏ ହିସାବ ବହିର ସାପ୍ତାହିକ, ପାକ୍ଷିକ ଅଥବା ମାସିକ ମୋଟ ପରିମାଣକୁ ସିଧା ସଳଖ ଖତିୟାନ ହିସାବରେ ଲିପିବଦ୍ଧ କରାଯାଇ ପାରିବ । ଏତଦ୍ୱାରା ବହୁ ସମୟ ଓ ଶ୍ରମର ସଞ୍ଚୟ ହୁଏ । ଏହି ପଦ୍ଧତିକୁ ବ୍ୟାବହାରିକ ପଦ୍ଧତି ବୋଲି କୁହାଯାଏ ।

ସୁତରାଂ ଯଦିଓ ନୀତି ଅନୁଯାୟୀ ପ୍ରତ୍ୟେକ ନେଣଦେଣକୁ ରୋଜନାମାରେ ଲିପିବଦ୍ଧ କରାଯାଇ ପାରେ, ତଥାପି ସୁବିଧା ଦୃଷ୍ଟିରୁ ତାହା କରା ନ ଯାଇ ଅଧିକାଂଶ ନେଣଦେଣ ସକାଶେ ପ୍ରାଥମିକ ହିସାବ ବହି ବ୍ୟବହୃତ ହୁଏ ଏବଂ ଅଳ୍ପ କେତେକ ବିଶିଷ୍ଟ ଧରଣର ନେଣଦେଣକୁ ଲିପିବଦ୍ଧ କରିବା ପାଇଁ ରୋଜନାମା ବ୍ୟବହୃତ ହୁଏ । ଏହି ପ୍ରାଥମିକ ହିସାବ ବହିଗୁଡ଼ିକ ରୋଜନାମାର କାର୍ଯ୍ୟ ସମ୍ପନ୍ନ କରୁଥିବା ଦୃଷ୍ଟିରୁ ସେଗୁଡ଼ିକୁ ରୋଜନାମାର ଅଂଶ କହିଲେ ଅତ୍ୟୁକ୍ତି ହେବ ନାହିଁ । କେତେଗୁଡ଼ିଏ ପ୍ରାଥମିକ ହିସାବ ବହିରେ ରୋଜନାମାକୁ ଭାଗ କରାଯିବ ତାହା ବ୍ୟବସାୟର ପ୍ରକୃତି, ପରିମାଣ ଓ ପ୍ରୟୋଜନୀୟତା ଉପରେ ସମ୍ପୂର୍ଣ୍ଣରୂପେ ନିର୍ଭର କରେ । ନିମ୍ନଲିଖିତ ପ୍ରାଥମିକ ହିସାବ ବହିଗୁଡ଼ିକ ସାଧାରଣତଃ ଅଧିକାଂଶ ବ୍ୟବସାୟ ପ୍ରତିଷ୍ଠାନରେ ପ୍ରୟୋଜନ ହୁଏ ।

**(୧) ରୋକଡ଼ ବହି :** ବ୍ୟବସାୟର ଯାବତୀୟ ନଗଦ କାରବାର ଏହି ବହିରେ ଲିପିବଦ୍ଧ ହୁଏ । ଉଦାହରଣ ସ୍ୱରୂପ, ବ୍ୟବସାୟୀ ଯେତେବେଳେ ବ୍ୟବସାୟ ଚଳାଇବା ନିମନ୍ତେ ପୁଞ୍ଜି ନଗଦ ଆକାରରେ ଆଣନ୍ତି, ସେ ଯେତେବେଳେ ନଗଦ ମୂଲ୍ୟ ଦେଇ ପଣ୍ୟ କ୍ରୟ କରନ୍ତି, ନଗଦ ମୂଲ୍ୟ ଦେଇ ପଣ୍ୟ ବିକ୍ରୟ କରନ୍ତି, ଶ୍ରମିକଙ୍କୁ ମଜୁରି ଦିଅନ୍ତି, ଗାଡ଼ିଭଡ଼ା ବାବଦ ନଗଦ ଖର୍ଚ୍ଚ କରନ୍ତି, କର୍ମଚାରୀଙ୍କୁ ବେତନ ଦିଅନ୍ତି, ନଗଦ ମୂଲ୍ୟ ଦେଇ ବ୍ୟବସାୟର ପରିସମ୍ପତ୍ତି କ୍ରୟ କରନ୍ତି, ସେହି ଯାବତୀୟ ନଗଦ ନେଣଦେଣ ଏହି ପ୍ରାଥମିକ ବହିରେ ଲିପିବଦ୍ଧ କରାଯିବ ।

**(୨) କ୍ରୟ ବହି :** ବ୍ୟବସାୟ ନିମନ୍ତେ ଉଧାରରେ ପଣ୍ୟ କ୍ରୟ କରାଗଲେ ତାହା ଏହି କ୍ରୟ ବହିରେ ଲିପିବଦ୍ଧ କରାଯାଏ । ଏଠାରେ ମନେରଖିବାକୁ ହେବ ଯେ ନଗଦ ମୂଲ୍ୟ ଦେଇ ପଣ୍ୟ କ୍ରୟ କରାଗଲେ ତାହା ରୋକଡ଼ ବହିରେ ଲିପିବଦ୍ଧ କରାଯିବ, କ୍ରୟ ବହିରେ ନୁହେଁ । ପଣ୍ୟ ବ୍ୟତୀତ ମନୋହାରୀ ଦ୍ରବ୍ୟ ଯନ୍ତ୍ରପାତି ବା ଅସବାବ୍ ପ୍ରଭୃତି ପରିସମ୍ପତ୍ତି ଉଧାରରେ କ୍ରୟ କରାଗଲେ ମଧ୍ୟ ତାହା ଏହି ବହିରେ ଲିପିବଦ୍ଧ କରାଯିବ ନାହିଁ ।

**(୩) ବିକ୍ରୟ ବହି :** କୌଣସି ଗ୍ରାହକ ବା ଖରିଦ୍ଦାରଙ୍କୁ ବ୍ୟବସାୟର ପଣ୍ୟ ଧାରରେ ବିକ୍ରୟ କରାଗଲେ ତାହା ଏହି ବିକ୍ରୟ ବହିରେ ଲିପିବଦ୍ଧ କରାଯିବ । ପଣ୍ୟ ବ୍ୟତୀତ ଅନ୍ୟ କୌଣସି ପରିସମ୍ପତ୍ତି ଧାରରେ ବିକ୍ରୟ କରାଗଲେ ମଧ୍ୟ ତାହା ବିକ୍ରୟ ବହିରେ ଲେଖାହେବ ନାହିଁ ।

**(୪) କ୍ରୟ ଫେରସ୍ତ ବା ବହିର୍ମୁଖୀ ଫେରସ୍ତ ବହି :** ଅନେକ ସମୟରେ କ୍ରୟ କରାଯାଇଥିବା ପଣ୍ୟ ପସନ୍ଦ ନ ହେଲେ ବ୍ୟବସାୟୀ ତାହା ବିକ୍ରେତାଙ୍କୁ ଫେରସ୍ତ ଦିଅନ୍ତି । ଏହି ଧରଣର ନେଣଦେଣକୁ ଲିପିବଦ୍ଧ କରିବା ନିମନ୍ତେ ବହିର୍ମୁଖୀ ଫେରସ୍ତ ବହି ବ୍ୟବହାର କରାଯାଏ ।

**(୫) ବିକ୍ରୟ ଫେରସ୍ତ ବା ଅନ୍ତର୍ମୁଖୀ ଫେରସ୍ତ ବହି :** ଗ୍ରାହକଙ୍କୁ ବିକ୍ରୟ କରାଯାଇଥିବା ପଣ୍ୟ ଯଦି କୌଣସି କାରଣରୁ ବ୍ୟବସାୟକୁ ଫେରସ୍ତ ଆସେ ତାହେଲେ ସେହି ନେଣଦେଣ ଏହି ବହିରେ ଲିପିବଦ୍ଧ କରାଯିବ ।

**(୬) ପ୍ରାପ୍ୟ ହୁଣ୍ଡି ବହି :** ସ୍ୱୀକୃତ ହୁଣ୍ଡି ମିଳିଲେ ତାହା ପ୍ରଥମେ ଏହି ବହିରେ ଲିପିବଦ୍ଧ କରାଯାଏ ।

**(୭) ଦେୟ ହୁଣ୍ଡି ବହି :** କୌଣସି ହୁଣ୍ଡି ସ୍ୱୀକାର କଲେ ତାହା ପ୍ରଥମେ ଏହି ବହିରେ ଲିପିବଦ୍ଧ କରାଯାଏ ।

(ମ) **ଖାସ୍ ରୋଜନାମା :** ଯଦି କୌଣସି ଦେଣଦେଣ ରେକଡ଼୍ ବହି କମ୍ବା ଉପରୋକ୍ତ ଅନ୍ୟ କୌଣସି ପ୍ରାଥମିକ ବହିରେ ଲିପିବଦ୍ଧ ନ ହୋଇପାରେ କେବଳ ସେହି ପ୍ରକାରର ଦେଣଦେଣ ନିମନ୍ତେ ରୋଜନାମା ପ୍ରସ୍ତୁତ କରାଯିବ । ଯଥା ସ୍ଥାନରେ ଏହାର ସବିସ୍ତର ଆଲୋଚନା କରାଯାଇଛି ।

ଏଠାରେ ମନେ ରଖିବାକୁ ହେବ ଯେ ଗୋଟିଏ ଦେଣନେଣ କେବଳ ଉପରୋକ୍ତ ବହିମାନଙ୍କ ମଧ୍ୟରୁ କୌଣସି ଗୋଟିଏ ବହିରେ ଲେଖାଯିବ ଏବଂ ପରେ ବିଭିନ୍ନ ଖତିୟାନ ହିସାବକୁ ଉଠାଯିବ । ଥରେ ଗୋଟିଏ ବହିରେ ଲେଖାଗଲେ ତାହା ଅନ୍ୟ କୌଣସି ବହିରେ ପୁଣି ଥରେ ଲେଖା ଯିବ ନାହିଁ ।

ଏହି ପ୍ରାଥମିକ ହିସାବ ବହିଗୁଡ଼ିକର ବିସ୍ତୃତ ବିବରଣୀ ନିମ୍ନରେ ପ୍ରଦତ୍ତ ହେଲା ।

## ରେକଡ଼୍ ବହି :

ପୂର୍ବ ପରିଚ୍ଛେଦରେ ନଗଦ ତହବିଲ ହିସାବ କିପରି ପ୍ରସ୍ତୁତ ହୁଏ ତାହା ବର୍ଣ୍ଣିତ ହୋଇଛି । ରେକଡ଼୍ ବହିର କକ୍ଷ ଗୁଡ଼ିକ ନଗଦ ତହବିଲ ହିସାବର ଅନୁରୂପ । ଏହି ବହି ଲେଖିବାର ନିୟମାବଳୀରେ ମଧ୍ୟ କୌଣସି ପାର୍ଥକ୍ୟ ନାହିଁ, ଯଥା, ନଗଦ ତହବିଲ ବ୍ୟବସାୟକୁ ଆସିଲେ ଅର୍ଥାତ୍ ଅର୍ଥର–ପ୍ରାପ୍ତିରେ ଯାହାଙ୍କଠାରୁ ବା ଯେଉଁ ହିସାବ ବାବଦ ଅର୍ଥ ମିଳିଛି ରେକଡ଼୍ ବହିର ବାମ ପାର୍ଶ୍ବ ବା ଦାୟୀ ପାର୍ଶ୍ବରେ ତାହାଙ୍କ ନାମ ବା ସେହି ହିସାବ ବାବଦ ଜେତିକ ପରିମାଣର ଅର୍ଥ ଲେଖାଯିବ । ସେହିପରି ଯଦି ବ୍ୟବସାୟରୁ ଅର୍ଥ ବାହାରକୁ ଯାଉଛି ଅର୍ଥାତ୍, ଅର୍ଥ କାହାରିକୁ ଦିଆଯାଉଛି ବା ପରିଶୋଧ କରାଯାଉଛି ବା କୌଣସି ହିସାବ ବାବଦ ଅର୍ଥ ଦିଆଯାଉଛି ତାହେଲେ ସେହି ବ୍ୟକ୍ତିଙ୍କର ନାମ ବା ହିସାବ ବାବଦ ଜେତିକ ପରିମାଣର ଅର୍ଥ ରେକଡ଼୍ ବହିର ଦକ୍ଷିଣ ପାର୍ଶ୍ବ ବା ଦାତା ପାର୍ଶ୍ବରେ ଲେଖାଯିବ । ନଗଦ ତହବିଲ ହିସାବରୁ ଯେପରି ସମ୍ପୃକ୍ତ ଖତିୟାନ ହିସାବକୁ ବିଷୟଗୁଡ଼ିକ ନିଆଯାଏ, ସେହିପରି ରେକଡ଼୍ ବହିରୁ ମଧ୍ୟ ବିଷୟଗୁଡ଼ିକୁ ସମ୍ପୃକ୍ତ ଖତିୟାନ୍ ହିସାବକୁ ନିଆଯାଏ । ଏହାର ପ୍ରଣାଳୀ ପରେ ଆଲୋଚିତ ହୋଇଛି । ପାର୍ଥକ୍ୟ କେବଳ ଏତିକି ଯେ ନଗଦ ତହବିଲ ହିସାବ ଲେଖିବା ପୂର୍ବରୁ ରୋଜନାମା ପ୍ରସ୍ତୁତ କରାଯାଏ, କିନ୍ତୁ ରେକଡ଼୍ ବହି ଲେଖିବା ସକାଶେ କୌଣସି ରୋଜନାମା ପ୍ରସ୍ତୁତ କରାଯାଏ ନାହିଁ । ରୋଜନାମାକୁ ବାଦ୍ ଦେବା ଉଦ୍ଦେଶ୍ୟରେ ପ୍ରାଥମିକ ହିସାବ ବହି ଲେଖା ଯାଉଥିବାରୁ ଏ କ୍ଷେତ୍ରରେ ରୋଜନାମା ନିଷ୍ପ୍ରୟୋଜନ । ନଗଦ ତହବିଲ ସମ୍ପୃକ୍ତ ଯଦି କୌଣସି ନେଣଦେଣ ଘଟେ ତାହାକୁ ସିଧାସଳଖ ରେକଡ଼୍ ବହିରେ ଲିପିବଦ୍ଧ କରାଯିବ । ଆବଶ୍ୟକ ହେଲେ ବୁଝାଇବା ନିମନ୍ତେ ବନ୍ଧନୀ ମଧ୍ୟରେ

ବ୍ୟାଖ୍ୟା ମଧ୍ୟ ଦିଆଯାଇ ପାରେ । ଯେହେତୁ ଏହି ବହିର ଉଭୟ ପାର୍ଶ୍ୱରେ ଅର୍ଥର ପରିମାଣ ଲେଖିବା ପାଇଁ କେବଳ ଗୋଟିଏ ଲେଖା କକ୍ଷ ଥାଏ ଏହାକୁ ଏକ କକ୍ଷ ବିଶିଷ୍ଟ ରୋକଡ଼ ବହି ବୋଲି କୁହାଯାଏ । ଏହିପରି ଏକ ରୋକଡ଼ ବହିର ଦୃଷ୍ଟାନ୍ତ ନିମ୍ନରେ ପ୍ରଦତ୍ତ ହେଲା ।

## ଦୃଷ୍ଟାନ୍ତ (୧)

୧୯୭୨

ଜାନୁଆରୀ— ୧ ୫,୦୦୦ ଟଙ୍କା ଆଣି ବ୍ୟବସାୟ ଆରମ୍ଭ କରାଗଲା ।

" ୨ ୩,୦୦୦ ଟଙ୍କା ବ୍ୟାଙ୍କକୁ ପଠାଗଲା ।

" ୩ ୫୦୦ ଟଙ୍କା ଖର୍ଚ୍ଚରେ ଆସବାବ୍ କିଣାଗଲା ।

" ୪ ୧,୦୦୦ ଟଙ୍କା ମୂଲ୍ୟର ପଣ୍ୟ କ୍ରୟ କରାଗଲା ।

" ୫ ୪୦୦ ଟଙ୍କା ମୂଲ୍ୟର ପଣ୍ୟ ବିକ୍ରୟ କରାଗଲା ।

" ୬ ଗାଡ଼ି ଭଡ଼ା ବାବଦ ୩୦ ଟଙ୍କା ଖର୍ଚ୍ଚ ହେଲା ।

" ୭ ୩୦୦ ଟଙ୍କା ମୂଲ୍ୟର ପଣ୍ୟ ବିକ୍ରୟ କରାଗଲା ।

" ୭ ୧୦୦ ଟଙ୍କା ମୂଲ୍ୟର ଦପ୍ତର ସରଞ୍ଜାମ କ୍ରୟ କରାଗଲା ।

" ୭ ଘରଭଡ଼ା ବାବଦ ୨୦୦ ଟଙ୍କା ଦିଆଗଲା ।

" ୭ ୧୦୦ ଟଙ୍କାର ମନୋହାରୀ ଦ୍ରବ୍ୟ କ୍ରୟ କରାଗଲା ।

" ୭ ୨୦୦ ଟଙ୍କାର ପଣ୍ୟ ନଗଦ ମୂଲ୍ୟ ଦେଇ କେଶବ ଚନ୍ଦ୍ରଙ୍କୁ ବିକ୍ରୟ କରାଗଲା ।

ଉପରୋକ୍ତ ନେଣଦେଣ ଗୁଡ଼ିକ ରୋକଡ଼ ବହିରେ ଲିପିବଦ୍ଧ କରି ସପ୍ତାହ ଶେଷର ବାକି ନିର୍ଣ୍ଣୟ କର ।

......ର ରୋକଡ଼ ବହି

| ଦାୟୀ | ପ୍ରାପ୍ତି | | | | | ପଣଶୋଧ | | | ଦାତା |
|---|---|---|---|---|---|---|---|---|---|
| ତାରିଖ | ବିବରଣ | ର: ନ: | ଖ: ପୃ: | ପରିମାଣ ଟଙ୍କା | ତାରିଖ | ବିବରଣ | ପ୍ରମାଣ କ.ନ: | ଖ: ପୃ: | ପରିମାଣ ଟଙ୍କା |
| ୧୯୭୨ ଜାନୁ ୧ | ମୂଳଧନ ହିସାବ ବାବଦ (ବ୍ୟବସାୟ ଆରମ୍ଭ କରିବାକୁ ନଗଦ ଟଙ୍କା ଅଣାଗଲା ।) | | | ୫,୦୦୦ | ୧୯୭୨ ଜାନୁ ୨ | ବ୍ୟାଙ୍କ୍ ହିସାବ ବାବଦ | | | ୩,୦୦୦ |
| | | | | | ୩ | ଆସବାବ୍ ହିସାବ ବାବଦ (ନଗଦ ମୂଲ୍ୟରେ ଆସବାବ୍ କ୍ରୟ କରାଗଲା — କ୍ୟାସ୍ ମେମୋ ନମ୍ବର ) | | | ୫୦୦ |
| ୫ | ପଣ୍ୟ ହିସାବ ବାବଦ (ନଗଦ ମୂଲ୍ୟରେ ପଣ୍ୟ ବିକ୍ରୟ କରାଗଲା— କ୍ୟାସ୍‌ମେମୋ ନମ୍ବର...) | | | ୪୦୦ | ୪ | ପଣ୍ୟ ହିସାବ ବାବଦ (କ୍ୟାସ୍‌ମେମୋ ନମ୍ବର....) | | | ୧,୦୦୦ |
| ୬ | ପଣ୍ୟ ହିସାବ ବାବଦ (ନଗଦ ମୂଲ୍ୟରେ ପଣ୍ୟ ବିକ୍ରୟ କରାଗଲା— କ୍ୟାସ୍‌ମେମୋ ନମ୍ବର....) | | | ୩୦୦ | ୬ | ଗାଡ଼ିଭଡ଼ା ହିସାବ ବାବଦ | ୨ | | ୩୦ |
| | | | | | ୬ | ଦପ୍ତର ସରଞ୍ଜାମ ହିସାବ ବାବଦ (କ୍ୟାସ୍‌ମେମୋ ନମ୍ବର....) | | | ୧୦୦ |
| ୭ | ପଣ୍ୟ ହିସାବ ବାବଦ (ନଗଦ ମୂଲ୍ୟରେ ପଣ୍ୟ ବିକ୍ରୟ କରାଗଲା— କ୍ୟାସ୍‌ମେମୋ ନମ୍ବର...) | | | ୨୦୦ | ୭ | ଘରଭଡ଼ା ହିସାବ ବାବଦ | ୩ | | ୨୦୦ |
| | | | | | ୭ | ମନୋହାରୀ ଦ୍ରବ୍ୟ ହିସାବ ବାବଦ (କ୍ୟାସ୍‌ମେମୋ ନମ୍ବର....) | | | ୧୦୦ |
| | | | | | ୭ | ବାକି ରହିଲା | | | ୯୭୦ |
| | | | | ୫,୯୦୦ | | | | | ୫,୯୦୦ |
| ୮ | ପୂର୍ବ ବାକି ବାବଦ | | | ୯୭୦ | | | | | |

ଏହି ଦୃଷ୍ଟାନ୍ତରୁ ଦେଖିବ ଯେ ନଗଦ ତହବିଲ ହିସାବରେ ଯେପରି ବାକି ନିର୍ଣ୍ଣୟ କରାଯାଏ ସେକଡ଼ ବହିର ବାକି ମଧ୍ୟ ଠିକ୍ ସେହିପରି କରାଯିବ । ଏହାର ବାକି ଦୈନିକ, ସାପ୍ତାହିକ ବା ମାସିକ ନିର୍ଣ୍ଣୟ କରାଯାଇପାରେ, କିନ୍ତୁ ଯଦି କାରବାରରେ ସଂଖ୍ୟା ଅଧିକ ହୁଏ ତାହେଲେ ଏହାର ବାକି ଦୈନିକ ନିର୍ଣ୍ଣୟ କରିବା ବାଞ୍ଛନୀୟ, କାରଣ ଦୈନିକ କାରବାର ଶେଷରେ କେତେ ତହବିଲ ବଳକା ରହିଲା ତାହା ଜାଣିଲେ କୋଷାଧ୍ୟକ୍ଷ ବା ଖଜାଞ୍ଚିଠାରେ ଠିକ ସେତିକ ପରିମାଣର ଟଙ୍କା ଅଛି କି ନାହିଁ ତାହା ଯାଞ୍ଚ କରାଯାଇପାରିବ । ପ୍ରତିଦିନ ନଗଦ ତହବିଲ ଯାଞ୍ଚ କରିବାର ଫଳ ଅନୁସନ୍ଧ ହେଲେ ଖଜାଞ୍ଚୀ ନିଜର ବ୍ୟକ୍ତିଗତ ଖର୍ଚ୍ଚ ପାଇଁ ବ୍ୟବସାୟର ଟଙ୍କା ବ୍ୟବହାର କରିବାକୁ ସାହସ କରିବ ନାହିଁ । ନଗଦ ତହବିଲ ହିସାବ ଭଳି ଏଥିରେ ମଧ୍ୟ ହୁଏତ ବାକି ଅଧୌ ରହିନ ନାହିଁ କିମ୍ବା ଯଦି ବାକି ରହେ ତାହେଲେ ତାହା ନିଷ୍ଟୟ ଦାୟୀ ବାକି ହେବ, ଅର୍ଥାତ୍ ବ୍ୟବସାୟରେ ଯେତେ ଟଙ୍କା ଥିବ ଅତି ବେଶି ହେଲେ ସେତିକ ଟଙ୍କା ପୁରା ଖର୍ଚ୍ଚ ହୋଇଯାଇ ପାରେ, ନତୁବା କିଛି ବଳକା ରହିବ, କିନ୍ତୁ ଯେତେ ଟଙ୍କା ଥିବ ତାହାଠାରୁ ଅଧିକା ଟଙ୍କା କଦାପି ଖର୍ଚ୍ଚ ହୋଇ ପାରିବ ନାହିଁ । ତେଣୁ ଏହି ବହିରେ ପାଓନା ବାକି ରହିବାର ପ୍ରଶ୍ନ ଉଠେ ନାହିଁ ।

## ନଗଦ ବଟ୍ଟା ବା ଛାଡ଼ :

ଦେୟ ତାରିଖ ପୂର୍ବରୁ ଯଦି ଟଙ୍କା ପରିଶୋଧ କରାଯାଏ ତାହେଲେ ସାହୁକାର, ମହାଜନ କିମ୍ବା ମୋଟା ବେପାରୀ ସାଧାରଣତଃ ପ୍ରାପ୍ୟ ଟଙ୍କାରୁ କିଛି ଛାଡ଼ି ଦିଅନ୍ତି । ମନେକର ହରି ମଧୁଠାରୁ ୨୦୦ ଟଙ୍କା ମୂଲ୍ୟର ପଣ୍ୟ ଉଧାରରେ କ୍ରୟ କରିଛନ୍ତି । ଏହି ଟଙ୍କା ଜୁନ ମାସର ୧୫ ତାରିଖରେ ଦେୟ । ଯଦି ହରି ଏହି ଟଙ୍କା ମଇ ମାସ ୩୧ ତାରିଖ କି ତାହା ପୂର୍ବରୁ ପରିଶୋଧ କରନ୍ତି ତାହେଲେ ମଧୁ ତାଙ୍କୁ ଶତକଡ଼ା ୨,୪ କିମ୍ବା ୫ ଛାଡ଼ିଦେଇ ପାରନ୍ତି । ଏହି ୪,୮ ବା ୧୦ ଟଙ୍କାକୁ ନଗଦ ବଟ୍ଟା କୁହାଯାଏ । ଟଙ୍କା ଶୀଘ୍ର ଫେରସ୍ତ ପାଇବା ଉଦ୍ଦେଶ୍ୟରେ ମହାଜନ ବା ମୋଟା ବେପାରୀ ଶତକଡ଼ା କେତେ ହାରରେ ବଟ୍ଟା ଦେବେ ତାହା ପୂର୍ବରୁ ଘୋଷଣା କରିଥାନ୍ତି । ଏପରି ବଟ୍ଟା ଦେବାରେ ମହାଜନ କିମ୍ବା ମୋଟା ବେପାରୀଙ୍କର କୌଣସି କ୍ଷତି ହୁଏ ନାହିଁ, କାରଣ ଟଙ୍କା ଶୀଘ୍ର ଫେରସ୍ତ ପାଇଲେ ସେମାନେ ସେହି ଟଙ୍କା ପୁଣି କାରବାରରେ ଖଟାଇ ବଟ୍ଟା ଅପେକ୍ଷା ଯଥେଷ୍ଟ ବେଶି ଟଙ୍କା ଲାଭ କରିପାରିବେ । ଯେପରି ବଟ୍ଟା ମିଳେ ସେହିପରି ମଧ୍ୟ ବଟ୍ଟା ଦେବାକୁ ହୁଏ । ଏହି ପ୍ରାପ୍ତ ବଟ୍ଟା ଓ ପ୍ରଦତ୍ତ ବଟ୍ଟା ଯେହେତୁ ଯଥାକ୍ରମେ ଟଙ୍କା ପରିଶୋଧ ବା ପ୍ରାପ୍ତି ସମୟରେ ମିଳେ କିମ୍ବା ଦେବାକୁ ପଡ଼େ ତେଣୁ ତାହା ଏହି ସେକଡ଼ ବହିରେ ଲିପିବଦ୍ଧ କରିବା ସୁବିଧାଜନକ । ଏହାକୁ ଲିପିବଦ୍ଧ କରିବା ନିମନ୍ତେ ସେକଡ଼ ବହିର ଉଭୟ ପାର୍ଶ୍ୱରେ ଅର୍ଥର ପରିମାଣ କକ୍ଷର ବାମ ପଟରେ ନଗଦ ବଟ୍ଟା ନାମକ ଆଉ ଗୋଟିଏ କକ୍ଷ ଖୋଲାଯାଏ ।

ପ୍ରାପ୍ତ ବା ପ୍ରଦତ୍ତ ବଟ୍ଟା ରେକର୍ଡବହିରେ ଲିପିବଦ୍ଧ କରାଗଲେ ସେଥି ନିମନ୍ତେ ଆଉ ରୋଜନାମା କରିବା ଅବଶ୍ୟକ ହୁଏ ନାହିଁ ଓ ବ୍ୟବସାୟୀର ପରିଶ୍ରମ ଲାଘବ ହୁଏ । ଏହା କପରି ଭାବରେ ଲିପିବଦ୍ଧ କରାଯିବ ତାହା ନିମ୍ନରେ ବୁଝାଇ ଦିଆ ଗଲା ।

ଯେତେବେଳେ ଟଙ୍କା ପରିଶୋଧ କରାଯାଏ ସେହି ସମୟରେ ମହାଜନ ବା ମୋଟା ବେପାରୀ ବଟ୍ଟା ବାବଦ କିଛି ଛାଡି ଦିଅନ୍ତି; ଯେହେତୁ ଟଙ୍କାର ପରିଶୋଧ ରେକର୍ଡ ବହିର ଦାତା ପାର୍ଶ୍ୱରେ ଲେଖାଯାଏ ତେଣୁ ସୁବିଧା ପାଇଁ ଏଣେ ବଟ୍ଟାବାବଦ ଯାହା ଛାଡ଼ ମିଳେ ତାହା ମଧ୍ୟ ସେହି ଦାତା ପାର୍ଶ୍ୱରେ ଥିବା ବଟ୍ଟା କକ୍ଷରେ ଲେଖାଯାଏ । ସେହିପରି ଅନ୍ୟ କୌଣସି ଖାତକ ବା ଖୁଚୁରା ବେପାରୀ ଯେତେବେଳେ ତାଙ୍କର ଋଣ ପରିଶୋଧ କରନ୍ତି ଅଥବା ବହୁକସ୍ତା ଟଙ୍କା ପରିଶୋଧ କରନ୍ତି ସେତେବେଳେ ତାଙ୍କୁ ବଟ୍ଟା ଛାଡ଼ିବାର ପ୍ରଶ୍ନ ଉଠେ; ଯେହେତୁ ଟଙ୍କାର ପ୍ରାପ୍ତି ରେକର୍ଡ଼ ବହିର ଦାୟୀ ପାର୍ଶ୍ୱରେ ଲେଖାଯାଏ ତେଣୁ ବଟ୍ଟା ବାବଦ ଯେଉଁ ଅର୍ଥ ଛାଡ଼ି ଦିଆଯାଏ ତାହା ଦାୟୀ ପାର୍ଶ୍ୱରେ ଖୋଲାଯାଇଥିବା 'ବଟ୍ଟା କକ୍ଷ'ରେ ଲେଖାଯିବ । ସୁତରାଂ ପ୍ରାପ୍ତ ବଟ୍ଟା ଦାତା ପାର୍ଶ୍ୱରେ ଓ ପ୍ରଦତ୍ତ ବଟ୍ଟା ଦାୟୀ ପାର୍ଶ୍ୱରେ ଲେଖାଯାଏ । ଯଦିଚ ଏହି ବଟ୍ଟା କକ୍ଷ ଦୁଇଟି ରେକର୍ଡ଼ ବହିରେ ବିନ୍ନିବିଷ୍ଟ ହୁଏ ତଥାପି ରେକର୍ଡ଼ ବହିର ଅର୍ଥର ପରିମାଣର ଯେପରି ବାକି ନିର୍ଣ୍ଣୟ କରାଯାଏ ବଟ୍ଟା କକ୍ଷର ସେପରି ବାକି ନିର୍ଣ୍ଣୀତ ହୁଏ ନାହିଁ । ଏହି ଦୁଇ କକ୍ଷର କେବଳ ମୋଟ ପରିମାଣ ସ୍ଥିରୀକୃତ ହୁଏ ଓ ତାହା ଖତିୟାନରେ ଖୋଲାଯାଇଥିବା 'ପ୍ରାପ୍ତ ବଟ୍ଟା ହିସାବ' ଓ ପ୍ରଦତ୍ତ ବଟ୍ଟା ହିସାବକୁ ସ୍ଥାନାନ୍ତରିତ କରାଯିବ । ବଟ୍ଟାକକ୍ଷ ବିଶିଷ୍ଟ ରେକର୍ଡ଼ ବହିକୁ ଦ୍ୱିକକ୍ଷ ବିଶିଷ୍ଟ ରେକର୍ଡ ବହି କୁହାଯାଏ । ଏହାର ଗୋଟିଏ ଦୃଷ୍ଟାନ୍ତ ନିମ୍ନରେ ପ୍ରଦତ୍ତ ହେଲା ।

## ଦୃଷ୍ଟାନ୍ତ (୨)

| ୧୯୭୨ | | | ଟଙ୍କା |
|---|---|---|---|
| ମାର୍ଚ୍ଚ - | ୧ | ତୁମଠାରେ ପୂର୍ବ ବାକି ବାବଦ ନଗଦ ତହବିଲ ଥିଲା— | ୩,୦୦୦ |
| ” | ୨ | ତୁମେ କାଳୀ ପ୍ରସାଦ ଦତ୍ତଙ୍କଠାରୁ ନଗଦ ପାଇଲ— | ୩୨୦ |
| ” | ୨ | ତାଙ୍କୁ ବଟ୍ଟା ବାବଦ ଛାଡ଼ିଲ— | ୧୦ |
| ” | ୪ | ପୂର୍ଣ୍ଣଚନ୍ଦ୍ର ମହାପାତ୍ର ନଗଦ ପରିଶୋଧ କଲେ— | ୭୮୫ |
| ” | ୪ | ତାଙ୍କୁ ବଟ୍ଟା ଦିଆଗଲା— | ୧୫ |
| ” | ୫ | ତୁମେ ପୂର୍ବ ବାକି ବାବଦ ଯମୁନାଲାଲ ଜୈନଙ୍କୁ ଦେଲ— | ୫୩୦ |
| ” | ୫ | ସେ ବଟ୍ଟା ଛାଡ଼ିଲେ — | ୨୦ |
| ” | ୭ | ତୁମେ ମନୋହର ପ୍ରସାଦ ଗୋକୁଳ ପ୍ରସାଦଙ୍କୁ ପରିଶୋଧ କଲ— | ୨୯୦ |
| ” | ୭ | ସେ ବଟ୍ଟା ଛାଡ଼ିଲେ— | ୧୦ |

ଏହି ଦେଣ ନେଣ ଗୁଡ଼ିକ ଦ୍ୱିକକ୍ଷ ବିଶିଷ୍ଟ ରେକର୍ଡ଼ ବହିରେ ଲିପିବଦ୍ଧ କର ।

ଦାସ୍ତୀ ……ର ଦ୍ୱିକକ୍ଷ ବିଶିଷ୍ଟ ରୋକଡ଼ ବହି ଦାତା

| ତାରିଖ | ବିବରଣ | ଫୋ: | ଖା: | ବଟା ଟଙ୍କା | ପରିମାଣ ଟଙ୍କା | ତାରିଖ | ବିବରଣ | ଫୋ: | ଖା: | ବଟା ଟଙ୍କା | ପରିମାଣ ଟଙ୍କା |
|---|---|---|---|---|---|---|---|---|---|---|---|
| ୧୯୭୨ ମାର୍ଚ୍ଚ ୧ | ପୂର୍ବ ବାକି ବାବଦ | | | | ୩,୦୦୦ | ୧୯୭୨ ମାର୍ଚ୍ଚ ୫ | ଯମୁନାଲାଲ ଜୈନଙ୍କ ହିସାବ ବାବଦ ଟଙ୍କା ପରିଶୋଧ କରାଗଲା ଓ ସେ ବଟି ଛାଡ଼ିଲେ | | | ୨୦ | ୫୩୦ |
| ୨ | କାଳୀ ପ୍ରସାଦଙ୍କ ହିସାବ ବାବଦ ଟଙ୍କା ମିଳିଲା ଓ ବଟା ଦିଆଗଲା | | | ୧୦ | ୩୨୦ | ୭ | ମନୋହର ପ୍ରସାଦ ଗୋକୁଳ ପ୍ରସାଦଙ୍କ ହିସାବ ବାବଦ ଟଙ୍କା ପରିଶୋଧ କରାଗଲା ଓ ସେ ବଟି ଛାଡ଼ିଲେ | | | ୧୦ | ୨୯୦ |
| ୪ | ପୂର୍ଣ୍ଣଚନ୍ଦ୍ର ମହାପାତ୍ରଙ୍କର ହିସାବ ବାବଦ ଟଙ୍କା ମିଳିଲା ଓ ବଟା ଦିଆଗଲା | | | ୧୫ | ୪୮୫ | ୭ | ବାକି ରହିଲା | | | | ୨,୯୮୫ |
| | | | | ୨୫ | ୩,୮୦୫ | | | | | ୩୦ | ୩,୮୦୫ |
| ୧୯୭୨ ମାର୍ଚ୍ଚ ୮ | ପୂର୍ବ ବାକି ବାବଦ | | | | ୨,୯୮୫ | | | | | | |

## ରୋକଡ଼ ବହିରୁ ଖତିୟାନ ହିସାବ ପ୍ରସ୍ତୁତ କରିବା —

କୌଣସି ଏକ ନେଣ ଦେଣକୁ ହିସାବଭୁକ୍ତ କରିବା ସକାଶେ ଯଦି ରୋଜନାମା ପ୍ରସ୍ତୁତ କରାଯାଏ, ତାହେଲେ ଗୋଟିଏ ହିସାବକୁ ଦାୟୀ ଓ ଅନ୍ୟ ଗୋଟିଏ ହିସାବକୁ ଦାତା କରିବାକୁ ପଡ଼େ । ତେବେ ଯାଇ ଦ୍ୱିଲେଖନ ହିସାବ ପଦ୍ଧତି ସମ୍ପୂର୍ଣ୍ଣ ହୁଏ । ରୋକଡ଼ ବହିରେ ଗୋଟିଏ ନେଣ ଦେଣର କେବଳ ଗୋଟିଏ ଦିଗ ଲିପିବଦ୍ଧ କରାଯାଇଛି । ଉଦାହରଣ ସ୍ୱରୂପ କାଳୀ ପ୍ରସାଦ ଦତ୍ତ ତୁମକୁ ୩୨୦ ଟଙ୍କା ଦେଲେ; ଏହି ନେଣଦେଣର କେବଳ ଗୋଟିଏ ଦିଗ ରୋକଡ଼ ବହିରେ ଲେଖା ଯାଇଛି, ଯଥା ରୋକଡ଼ ବହିକୁ (ଟଙ୍କା ବ୍ୟବସାୟକୁ ଆସୁଥିବାରୁ) ଦାୟୀ କରାଯାଇଛି କିନ୍ତୁ କାଳୀ ପ୍ରସାଦ ଉପକାର ପ୍ରଦାନ କରିଥିବା ହେତୁ ତାଙ୍କ ହିସାବକୁ ଏ ପର୍ଯ୍ୟନ୍ତ ଦାତା କରାଯାଇ ନାହିଁ । ବର୍ତ୍ତମାନ ତାହାହିଁ କରାଯିବ । ତେଣୁ ରୋକଡ଼ ବହିର ଦାୟୀ ପାର୍ଶ୍ୱରେ ଯେଉଁ ବ୍ୟକ୍ତି ବା ବସ୍ତୁର ହିସାବ ଲେଖା ଯାଇଛି ତାଙ୍କର ବା ସେହି ବସ୍ତୁର ହିସାବକୁ ଦାତା କରାଯିବ । ଏଥି ନିମନ୍ତେ ଖତିୟାନରେ ବିଭିନ୍ନ ବ୍ୟକ୍ତି ବା ବସ୍ତୁର ହିସାବ ଖୋଲାଯାଇ ତାଙ୍କର କିମ୍ବା ସେହି ହିସାବକୁ ଦାତା କରିବାକୁ ପଡ଼ିବ । କାଳୀ ପ୍ରସାଦ ଦତ୍ତଙ୍କର ହିସାବ ଖତିୟାନରେ ନିମ୍ନଲିଖିତ ରୂପେ ପ୍ରକାଶ ପାଇବ ।

ଦାୟୀ — କାଳୀ ପ୍ରସାଦ ଦତ୍ତଙ୍କର ହିସାବ — ଦାତା

| | | | | | | |
|---|---|---|---|---|---|---|
| | | | ୧୯୬୨ ମାର୍ଚ୍ଚ-୨ | ନଗଦ ତହବିଲ ବାବଦ | | ଟଙ୍କା ୩୨୦ |

ସେହିପରି ରୋକଡ଼ ବହିର ଦାତା ପାର୍ଶ୍ୱରେ ଯେଉଁ ବ୍ୟକ୍ତି ବା ବସ୍ତୁର ନାମ ଲେଖାଯାଇଛି ଖତିୟାନରେ ତାଙ୍କର ବା ସେହି ବସ୍ତୁର ହିସାବ ଖୋଲାଯାଇ ତାହାକୁ ଦାୟୀ କରାଯିବ । ଉଦାହରଣ ସ୍ୱରୂପ, ଯମୁନା ଲାଲ ଜୈନଙ୍କୁ ୫୩୦ ଟଙ୍କା ଦିଆଯାଇଛି । ଯେହେତୁ ସେ ଉପକାର ଲାଭ କରିଛନ୍ତି ତାଙ୍କର ହିସାବ ଦାୟୀ ହେବ । ଯଦି ୫୦୦ ଟଙ୍କା ନଗଦ ମୂଲ୍ୟରେ ଆସବାବ୍ କିଣା କରାଯାଇଥାଏ ତାହେଲେ ତାହା ରୋକଡ଼ ବହିର ଦାତା ପାର୍ଶ୍ୱରେ ଲିପିବଦ୍ଧ କରାଯାଇଥିବ, ବର୍ତ୍ତମାନ ଆସବାବ୍ ହିସାବ ଖତିୟାନରେ ଖୋଲାଯିବ ଓ ସେହି ହିସାବକୁ ୫୦୦ ଟଙ୍କା ସକାଶେ ଦାୟୀ କରାଯିବ । ଖତିୟାନରେ ସେହି ହିସାବ ଦୁଇଟି ନିମ୍ନଲିଖିତ ରୂପେ ପ୍ରକାଶ ପାଇବ ।

ଦାୟୀ — ଯମୁନା ଲାଲ ଜୈନଙ୍କର ହିସାବ — ଦାତା

| | | | | | | |
|---|---|---|---|---|---|---|
| ୧୯୬୨ ମାର୍ଚ୍ଚ-୫ | ନଗଦ ତହବିଲ ବାବଦ | | ଟଙ୍କା ୫୩୦ | | | ଟଙ୍କା |

| ଦାୟୀ | ଆୟବ୍ୟୟ ହିସାବ | | | | | ଦାତା |
|---|---|---|---|---|---|---|
| | ନଗଦ ଛାଡ଼ଦେଲୁ ବାବଦ | | ଟଙ୍କା<br>୧୦.୦୦ | | | ଟଙ୍କା |

ବଟା କକ୍ଷରେ ଲେଖାଯାଇଥିବା ଟଙ୍କାର ପରିମାଣ ମଧ୍ୟ ଏହି ସ୍ଥାନରେ ଲେଖାଯିବ, ମାତ୍ର ଏଥିରେ କିଛି ବିଶେଷତ୍ୱ ଅଛି । କାଳୀପ୍ରସାଦଙ୍କୁ ବଟା ବାବଦ ୧୦ ଟଙ୍କା ଛାଡ଼ି ଦିଆଯାଇଥିଲା । କିନ୍ତୁ ଏହା ରେକଡ଼ ବହିର ଦାୟୀ ପାର୍ଶ୍ୱରେ ଥିବାରୁ ଏହା କାଳୀପ୍ରସାଦଙ୍କ ହିସାବରେ ଦାତା ପାର୍ଶ୍ୱରେ ଲେଖାଯିବ । ଏହା ବ୍ୟତୀତ ଏହି ପ୍ରଦତ୍ତ ବଟାର ସାପ୍ତାହିକ, ପାକ୍ଷିକ ବା ମାସିକ ମୋଟ ପରିମାଣ ପ୍ରଦତ୍ତ ବଟା ହିସାବର ଦାୟୀ ପାର୍ଶ୍ୱରେ ଲେଖାଯିବ, କାରଣ ବ୍ୟବସାୟର ଏହା ଏକ କ୍ଷତି ବୋଲି ବିବେଚିତ ହୁଏ । ପ୍ରଶ୍ନ ଉଠିପାରେ ଯେ ପ୍ରଦତ୍ତ ବଟା ବାବଦ ପରିମାଣ କାହିଁକି ଦୁଇଥର ଦାୟୀ ପାର୍ଶ୍ୱରେ ଲେଖାଯିବ । ପ୍ରକୃତରେ ଦେଖିବାକୁ ଗଲେ ଏହା ଥରେ କାଳୀପ୍ରସାଦଙ୍କ ହିସାବରେ ଦାତା ପାର୍ଶ୍ୱରେ ଓ ପ୍ରଦତ୍ତ ବଟା ହିସାବର ଦାୟୀ ପାର୍ଶ୍ୱରେ ଲେଖାଗଲା । ଯେହେତୁ ଟଙ୍କା ପାଇଲାବେଳେ ବଟା ଦେବାର ପ୍ରଶ୍ନ ଉଠେ ସେତେବେଳେ ବଟା ହିସାବ ଖୋଲି ଏହା ଲିପିବଦ୍ଧ କରିବା ଅସୁବିଧାଜନକ ବୋଲି ରେକଡ଼ ବହିରେ ସ୍ମରଣିକା ଭାବରେ ଲେଖାଯାଇଛି । ସେଠାରେ ଲେଖାଯାଇଥିଲେ ସୁଦ୍ଧା ଏହି କାରଣରୁ ଏହି କକ୍ଷର ବାକୀ ନିର୍ଣ୍ଣୟ କରାଯାଏ ନାହିଁ ।

ସେହିପରି ରେକଡ଼ ବହିର ଦାତା ପାର୍ଶ୍ୱରେ ଲେଖାଥିବା ବଟା ଯମୁନା ଲାଲ୍ ଜୈନଙ୍କର ହିସାବରେ ଦାୟୀ ପାର୍ଶ୍ୱରେ ଲେଖାଯିବ ଓ ସପ୍ତାହ, ପକ୍ଷ ବା ମାସ ଶେଷରେ ଏହି କକ୍ଷର ମୋଟ ପରିମାଣ ପ୍ରାପ୍ତ ବଟା ହିସାବର ବା ମାସ ଶେଷରେ ଏହି କକ୍ଷର ମୋଟ ପରିମାଣ ପ୍ରାପ୍ତ ବଟା ହିସାବର ଦାତା ପାର୍ଶ୍ୱରେ ଲେଖାଯିବ, କାରଣ ଏହା ବ୍ୟବସାୟର ଲାଭ ବୋଲି ବିବେଚିତ ହୁଏ । ଏଣୁ ଏଥିରୁ ଦେଖାଗଲା ଯେ ବଟା ସମ୍ବନ୍ଧୀୟ ଦେଣନେଣ ଦ୍ୱିଲିଖନ ହିସାବ ନୀତି ଅନୁଯାୟୀ ଲିପିବଦ୍ଧ କରାଯାଇଛି । ରେକଡ଼ ବହିରୁ କିପରି ଖତିୟାନ ହିସାବ ପ୍ରସ୍ତୁତ କରାଯାଏ ତାହାର ଏକ ଦୃଷ୍ଟାନ୍ତ ନିମ୍ନରେ ପ୍ରଦତ୍ତ ହେଲା ।

## ଦୃଷ୍ଟାନ୍ତ (୩)

ଦୃଷ୍ଟାନ୍ତ (୨)ରେ ଲେଖାଥିବା ରେକଡ଼ ବହିରୁ ବିଭିନ୍ନ ଖତିୟାନ ହିସାବ ପ୍ରସ୍ତୁତ କର ।

ଦାଖି — ମୂଳଧନ ହିସାବ — ଦାତା

| | | | ଟଙ୍କା | | | | ଟଙ୍କା |
|---|---|---|---|---|---|---|---|
| | | | | ୧୯୭୨<br>ଜାନୁ-୧ | ନଗଦ ତହବିଲ ବାବଦ | | ୫,୦୦୦ |

ଦାଖି — ବ୍ୟାଙ୍କ୍ ହିସାବ — ଦାତା

| | | | ଟଙ୍କା | | | | ଟଙ୍କା |
|---|---|---|---|---|---|---|---|
| ୧୯୭୨<br>ଜାନୁଆରୀ-୨ | ନଗଦ ତହବିଲ ବାବଦ | | ୩,୦୦୦ | | | | |

ଦାଖି — ଆସବାବ୍ ହିସାବ — ଦାତା

| | | | ଟଙ୍କା | | | | ଟଙ୍କା |
|---|---|---|---|---|---|---|---|
| ୧୯୭୨<br>ଜାନୁ-୩ | ନଗଦ ତହବିଲ ବାବଦ | | ୫୦୦ | | | | |

ଦାୟୀ | ପଣ୍ୟ ହିସାବ | ଦାତା

| ୧୯୭୨ | | | ଟଙ୍କା | ୧୯୭୨ | | | ଟଙ୍କା |
|---|---|---|---|---|---|---|---|
| ଜାନୁ-୪ | ନଗଦ ତହବିଲ ବାବଦ | | ୧,୦୦୦ | ଜାନୁ-୫ | ନଗଦ ତହବିଲ ବାବଦ | | ୪୦୦ |
| | | | | ୬ | ନଗଦ ତହବିଲ ବାବଦ | | ୩,୦୦ |
| | | | | ୮ | ନଗଦ ତହବିଲ ବାବଦ | | ୨୦୦ |

ଦାୟୀ | ଗାଡ଼ିଭଡ଼ା ହିସାବ | ଦାତା

| ୧୯୭୨ | | | ଟଙ୍କା | | | | ଟଙ୍କା |
|---|---|---|---|---|---|---|---|
| ଜାନୁ-୬ | ନଗଦତହବିଲ ବାବଦ | | ୬୦ | | | | |

ଦାୟୀ | ଦପ୍ତର ସରଞ୍ଜାମ ହିସାବ | ଦାତା

| ୧୯୭୨ | | | ଟଙ୍କା | | | | ଟଙ୍କା |
|---|---|---|---|---|---|---|---|
| ଜାନୁ-୬ | ନଗଦ ତହବିଲ ବାବଦ | | ୧୦୦ | | | | |

ଡେବିଟ୍ — ଘରଭଡ଼ା ହିସାବ — କ୍ରେଡିଟ୍

| | | | | | | | |
|---|---|---|---|---|---|---|---|
| ୧୯୭୨ ଜାନୁ-୭ | ନଗଦ ତହବିଲ ବାବଦ | | ଟଙ୍କା ୧୦୦ | | | | |

ଡେବିଟ୍ — ମନୋହାରୀ ଦ୍ରବ୍ୟ ହିସାବ — କ୍ରେଡିଟ୍

| | | | | | | | |
|---|---|---|---|---|---|---|---|
| ୧୯୭୨ ଜାନୁ-୨ | ନଗଦ ତହବିଲ ବାବଦ | | ଟଙ୍କା ୧୦୦ | | | | |

## ଦୃଷ୍ଟାନ୍ତ (୪)

ଦୃଷ୍ଟାନ୍ତ (୨) ରେ ଲେଖାଥିବା ରେକର୍ଡ଼ ବହିରୁ ଖତିୟାନ ହିସାବ ପ୍ରସ୍ତୁତ କର ।

ଡେବିଟ୍ — କାଳୀ ପ୍ରସାଦଙ୍କ ହିସାବ — କ୍ରେଡିଟ୍

| | | | | | | | |
|---|---|---|---|---|---|---|---|
| | | | ଟଙ୍କା | ୧୯୭୨ ମାର୍ଚ୍ଚ-୨ | ନଗଦ ତହବିଲ ବାବଦ | | ଟଙ୍କା ୩୨୦ |
| | | | | ,, ,, | ବଟ୍ଟା ,, | | ୧୦ |

ଡେବିଟ୍ — ପୂର୍ଣ୍ଣଚନ୍ଦ୍ର ମହାପାତ୍ରଙ୍କ ହିସାବ — କ୍ରେଡିଟ୍

| | | | | | | | |
|---|---|---|---|---|---|---|---|
| | | | ଟଙ୍କା | ୧୯୭୨ ମାର୍ଚ୍ଚ-୪ | ନଗଦ ତହବିଲ ବାବଦ | | ଟଙ୍କା ୪୮୫ |
| | | | | ,, ,, | ବଟ୍ଟା ,, | | ୧୫ |

ଦାୟୀ — ଯମୁନା ଲାଲ୍ ଜୈନଙ୍କ ହିସାବ — ଦାତା

| | | | | | | | |
|---|---|---|---|---|---|---|---|
| ୧୯୭୨ | | | ଟଙ୍କା | | | | ଟଙ୍କା |
| ମାର୍ଚ୍ଚ-୫ | ନଗଦ ତହବିଲ ବାବଦ | | ୫୩୦ | | | | |
| ,, ,, | ବଟ୍ଟା ବାବଦ | | ୨୦ | | | | |

ଦାୟୀ — ମନୋହର ପ୍ରସାଦ ଗୋକୁଳ ପ୍ରସାଦଙ୍କ ହିସାବ — ଦାତା

| | | | | | | | |
|---|---|---|---|---|---|---|---|
| ୧୯୭୨ | | | ଟଙ୍କା | | | | ଟଙ୍କା |
| ମାର୍ଚ୍ଚ-୭ | ନଗଦ ତହବିଲ ବାବଦ | | ୨୯୦ | | | | |
| ,, ,, | ବଟ୍ଟା ବାବଦ | | ୧୦ | | | | |

ଦାୟୀ — ପ୍ରାପ୍ତ ବଟ୍ଟା ହିସାବ — ଦାତା

| | | | | | | | |
|---|---|---|---|---|---|---|---|
| | | | ଟଙ୍କା | ୧୯୭୨ | | | ଟଙ୍କା |
| | | | | ମାର୍ଚ୍ଚ ୭ | ବିବିଧ ହିସାବ ବାବଦ | | ୩୦ |

| ଦାୟୀ | | ପ୍ରଦତ୍ତ ବଟା ହିସାବ | | | | | ଦାତା |
|---|---|---|---|---|---|---|---|
| ୧୯୭୨ ମାର୍ଚ୍ଚ-୭ | ବିବିଧ ହିସାବ ବାବଦ | | ଟଙ୍କା ୨୫ | | | | ଟଙ୍କା |

## ଖୁଚୁରା ଖରଚ ରେକର୍ଡ଼ ବହି :

ବଡ଼ ବ୍ୟବସାୟରେ ଗାଡ଼ିଭଡ଼ା, ମଜୁରି, ଡାକ ଟିକଟ ପ୍ରଭୃତି ବାବଦ ଅନେକ ଖୁଚୁରା ଖର୍ଚ୍ଚ କରିବାକୁ ପଡ଼େ । ଯଦି ପ୍ରଧାନ ରେକର୍ଡ଼ ବହିରେ ଏହି ପ୍ରକାରର ଖୁଚୁରା ଖର୍ଚ୍ଚ ଲିପିବଦ୍ଧ କରାଯାଏ ତାହେଲେ ପ୍ରଧାନ ରେକର୍ଡ଼ ବହିର ଆକାର ଯେ କେବଳ ଅଯଥା ବୃଦ୍ଧି ପାଇବ ସେତିକି ନୁହେଁ ଖଜାଞ୍ଚିଙ୍କର କାର୍ଯ୍ୟ ଓ ପରିଶ୍ରମ ମଧ୍ୟ ବହୁ ପରିମାଣରେ ବୃଦ୍ଧି ପାଇବ ଏବଂ ସେ ଏହାର ବ୍ୟବସ୍ଥା କରିବାକୁ ଏତେ ବ୍ୟସ୍ତ ରହିବେ ଯେ ଅଧିକ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ ସକାଶେ ତାଙ୍କର ଅବକାଶ ରହିବ ନାହିଁ । ତେଣୁ ସାଧାରଣତଃ ଏହି ଖୁଚୁରା ଖର୍ଚ୍ଚ ନିମନ୍ତେ ଆଉ ଜଣେ ସହକାରୀ କର୍ମଚାରୀ ନିଯୁକ୍ତ କରାଯାଏ ଓ ତାଙ୍କ ଉପରେ ଏହି ଦାୟିତ୍ୱ ନ୍ୟସ୍ତ କରାଯାଏ । ଏପରି କ୍ଷେତ୍ରରେ ଖୁଚୁରା ଖର୍ଚ୍ଚ ନିମନ୍ତେ ଗୋଟିଏ ସୀମା ଧାର୍ଯ୍ୟ କରାଯାଏ, ଯଥା ୨୦ ଟଙ୍କା କିମ୍ବା ୨୫ ଟଙ୍କା ; ଅର୍ଥାତ୍ କୌଣସି ବାବଦ ସେ ଏକକାଳୀନ ୨୦ କିମ୍ବା ୨୫ ଟଙ୍କାରୁ ଅଧିକ ଖର୍ଚ୍ଚ କରିପାରିବେ ନାହିଁ । ଏହି ସୀମାଠାରୁ ଖର୍ଚ୍ଚ କରିବାର ପ୍ରୟୋଜନ ହେଲେ ତାହା ଖଜାଞ୍ଚି କରିବେ । ସାଧାରଣତଃ ଖୁଚୁରା ଖର୍ଚ୍ଚ ନିମନ୍ତେ ପ୍ରତି ସପ୍ତାହର ପ୍ରଥମରେ ଖଜାଞ୍ଚି ତାଙ୍କର ଅଧସ୍ତନ କର୍ମଚାରୀଙ୍କୁ କିଛି ଟଙ୍କା ଅଗ୍ରିମ ଦିଅନ୍ତି । ସେ କେତେଟଙ୍କା ଅଗ୍ରିମ ଦେବେ ତାହା ତାଙ୍କର ଅଭିଜ୍ଞତାରୁ ସେ ସ୍ଥିର କରନ୍ତି । ସପ୍ତାହ ଶେଷରେ ଅଧସ୍ତନ କର୍ମଚାରୀ ତାଙ୍କର ଖର୍ଚ୍ଚ ହିସାବ ଓ ପ୍ରମାଣକ ଖଜାଞ୍ଚିଙ୍କୁ ଯାଞ୍ଚ କରିବାକୁ ଦିଅନ୍ତି ଓ ଖଜାଞ୍ଚି ହିସାବ ପରୀକ୍ଷା କରି ସନ୍ତୁଷ୍ଟ ହେଲେ ପୁଣି ଆଗାମୀ ସପ୍ତାହ ସକାଶେ ଅଗ୍ରିମ ଟଙ୍କା ଦିଅନ୍ତି । ଯେଉଁ ବ୍ୟବସାୟରେ ଖୁଚୁରା ଖର୍ଚ୍ଚ ସୀମିତ ସଂଖ୍ୟାରେ ଆବଶ୍ୟକ ହୁଏ ସେଠାରେ ଖଜାଞ୍ଚି ନିଜେ ଖୁଚୁରା ଖର୍ଚ୍ଚ କରନ୍ତି ଓ ତାହା ଅନ୍ୟ ଗୋଟିଏ ବହିରେ ବିସ୍ତାରିତ ଭାବରେ ଲେଖାଯାଏ । ସପ୍ତାହ ଶେଷରେ ଖୁଚୁରା ଖର୍ଚ୍ଚର ମୋଟ ପରିମାଣ ରେକର୍ଡ଼ ବହିର ଦାତା ପାର୍ଶ୍ୱରେ "ଖୁଚୁରା ଖର୍ଚ୍ଚ ବାବଦ" ଲିପିବଦ୍ଧ କରନ୍ତି ।

ଯେଉଁ ବହିରେ ଖୁଚୁରା ଖର୍ଚ୍ଚ ଲିପିବଦ୍ଧ କରାଯାଏ ତାହାକୁ ଖୁଚୁରା ଖରଚ ରେକର୍ଡ଼ ବହି କୁହାଯାଏ । ଏହା ମଧ୍ୟ ଗୋଟିଏ ପ୍ରାଥମିକ ହିସାବ ବହି । ଯେଉଁ ବ୍ୟବସାୟ ପ୍ରତିଷ୍ଠାନରେ

ଅଧିକାଂଶ ଟଙ୍କା ଚେକ୍ ଆକାରରେ କରାଯାଏ ସେଠାରେ ଖୁଚୁରା ଖରଚ ରୋକଡ଼ ବହି ଅପରିହାର୍ଯ୍ୟ । ଯେହେତୁ ଏହି ଖୁଚୁରା ଟଙ୍କାଗୁଡ଼ିକ ପୁନଃ ପୁନଃ ସଂଘଟିତ ହୁଏ ତେଣୁ ଏହି ରୋକଡ଼ ବହିରେ ବିଭିନ୍ନ ପ୍ରକାର ଟଙ୍କା ସକାଶେ ଗୋଟିଏ ଲେଖାଏ କକ୍ଷ ରଖାଯାଏ ଓ ବିବିଧ ଟଙ୍କା ସକାଶେ ଆଉ ଗୋଟିଏ କକ୍ଷ ରଖାଯାଏ । ଏହି ପ୍ରକାର ବିଭିନ୍ନ କକ୍ଷ ବିଶିଷ୍ଟ ଖୁଚୁରା ଖରଚ ରୋକଡ଼ ବହିକୁ ବୈଶ୍ଳେଷିକ ଖୁଚୁରା ଖରଚ ରୋକଡ଼ ବହି କୁହାଯାଏ । ନିମ୍ନରେ ଏକ ଖୁଚୁରା ଖରଚ ରୋକଡ଼ ବହିର ଦୃଷ୍ଟାନ୍ତ ନିମ୍ନରେ ପ୍ରଦତ୍ତ ହେଲା ।

## ଦୃଷ୍ଟାନ୍ତ (୫)

ନିମ୍ନଲିଖିତ ନେଣଦେଣ ଗୁଡ଼ିକ ବୈଶ୍ଳେଷିକ ଖୁଚୁରା ଖରଚ ରୋକଡ଼ ବହିରେ ଲିପିବଦ୍ଧ କର ।

୧୯୭୨

ଜୁନ—୧ ଖାଜାଞ୍ଚିଙ୍କଠାରୁ ୨୫ ଟଙ୍କା ଅଣାଗଲା ।

,, ୨ ୫ ଟଙ୍କାର ବିଭିନ୍ନ ଡାକ ଟିକଟ କ୍ରୟ କରାଗଲା ।

,, ୨ ମଜୁରି ବାବଦ ୩ ଟଙ୍କା ଦିଆଗଲା ।

,, ୩ ଗାଡ଼ିଭଡ଼ା ବାବଦ ୪ ଟଙ୍କା ଦିଆଗଲା ।

,, ୪ ଟେଲିଗ୍ରାମ ଖର୍ଚ୍ଚ ବାବଦ ୩ ଟଙ୍କା ଦିଆଗଲା ।

,, ୫ ମଜୁରି ବାବଦ ୭ ଟଙ୍କା ଦିଆଗଲା ।

,, ୫ ୨ ଟଙ୍କା ରିକ୍ସା ଭଡ଼ା ଦିଆଗଲା ।

,, ୭ ୧ ଟଙ୍କାର ଡାକ ଟିକଟ କ୍ରୟ କରାଗଲା ।

ଖୁଚୁରା ଖର୍ଚ୍ଚ ରେକର୍ଡ଼ ବହି

| ତାରିଖ | ବିବରଣ | ରେ: ପୃ: | ପରିମାଣ ଟଙ୍କା | ତାରିଖ | ବିବରଣ | ଭାଉଚର | ମୋଟ ପରିମାଣ ଟଙ୍କା | ମଜୁରି | ଗାଡ଼ି ଭଡ଼ା | ଡାକ ଓ ତାର | ବିବିଧ | ଖ: ପୃ: |
|---|---|---|---|---|---|---|---|---|---|---|---|---|
| ୧୯୭୨ ଜୁନ-୧ | ନଗଦ ତହବିଲ ବାବଦ | | ୨୫ | ୧୯୭୨ ଜାନୁ ୨ | ଡାକ ଟିକଟ ବାବଦ | | ୫ | | | ୫ | | |
| | | | | ୨ | ମଜୁରି ବାବଦ | | ୩ | ୩ | | | | |
| | | | | ୩ | ଗାଡ଼ିଭଡ଼ା ବାବଦ | | ୪ | | ୪ | | | |
| | | | | ୪ | ତାର ବାବଦ | | ୩ | | | ୩ | | |
| | | | | ୫ | ମଜୁରି ବାବଦ | | ୬ | ୬ | | | | |
| | | | | ୫ | ରିକ୍ସା ଭଡ଼ା ବାବଦ | | ୨ | | ୨ | | | |
| | | | | ୬ | ଡାକ ଟିକଟ ବାବଦ | | ୧ | | | ୧ | | |
| | | | | | | | ୨୪ | ୯ | ୬ | ୯ | | |
| | | | | ୬ | ବାକି ଗଚ୍ଛିତ | | ୧ | | | | | |
| | | | ୨୫ | | | | ୨୫ | | | | | |

( ଏଠାରେ ବିଶେଷ ଦ୍ରଷ୍ଟବ୍ୟ ଯେ ଡାହାଣ ପାର୍ଶ୍ୱର ବିଭିନ୍ନ କଲମର ମୋଟ ସଂଖ୍ୟା ମୋଟ ପରିମାଣ କଲମର ମୋଟ ସଂଖ୍ୟା ସହିତ ସର୍ବଦା ସମାନ ହେବ, ତାହା ନ ହେଲେ ଲିପିବଦ୍ଧ କରିବାରେ ଭୁଲ ହୋଇଛି ବୋଲି ବୁଝିବାକୁ ହେବ । )

# ଅଗ୍ରଦତ୍ତ ପଦ୍ଧତି :

ଖୁଚୁରା ଖର୍ଚ୍ଚ ରୋକଡ଼ ବହି ସାଧାରଣତଃ ଅଗ୍ରଦତ୍ତ ପଦ୍ଧତି ଅନୁଯାୟୀ ଲେଖ ଯାଏ । ଏହାର ବିଶେଷତ୍ୱ ହେଲା ଏହି ଯେ ଖାଜାଞ୍ଚି ଆବଶ୍ୟକ ଅନୁଯାୟୀ ଏକ ନିର୍ଦ୍ଦିଷ୍ଟ ପରିମାଣର ଟଙ୍କା ତାଙ୍କର ଅଧସ୍ତନ କର୍ମଚାରୀଙ୍କୁ ଖୁଚୁରା ଖର୍ଚ୍ଚର ଦାୟିତ୍ୱ ତୁଲାଇବାକୁ ଦିଅନ୍ତି । ସପ୍ତାହ, ପକ୍ଷ ବା ମାସ ଶେଷରେ ସେ ଯେତେ ଟଙ୍କା ଖର୍ଚ୍ଚ କରିଥାଆନ୍ତି ପୁଣି ତାଙ୍କୁ ସେତିକି ଟଙ୍କା ପରବର୍ତ୍ତୀ କାଳ ସକାଶେ ଦିଆଯାଏ । ଉଦାହରଣ ସ୍ୱରୂପ ମନେକର ଯେ ତାହାଙ୍କୁ ପ୍ରତି ସପ୍ତାହ ନିମନ୍ତେ ୫୦ ଟଙ୍କା ଅଗ୍ରିମ ଦିଆଯାଏ । ଯଦି କୌଣସି ସପ୍ତାହ ଶେଷ ସୁଦ୍ଧା ସେ ୪୧ ଟଙ୍କା ଖର୍ଚ୍ଚ କରି ଥାଆନ୍ତି, ତାହାହେଲେ ଖଜାଞ୍ଚି ତାଙ୍କର ହିସାବ ପରୀକ୍ଷା କରିବା ପରେ ସେହି କର୍ମଚାରୀଙ୍କୁ କେବଳ ୪୧ ଟଙ୍କା ଦିଅନ୍ତି , ତେଣୁ ପରବର୍ତ୍ତୀ ସପ୍ତାହର ଆରମ୍ଭରେ ସେ ପୁଣି ୫୦ ଟଙ୍କା ସେ ସପ୍ତାହର ଖର୍ଚ୍ଚ ନିମନ୍ତେ ପାଇ ଯାଆନ୍ତି । ଏହି ୫୦ ଟଙ୍କାକୁ (ଏହି କ୍ଷେତ୍ରରେ) ଅଗ୍ରଦତ୍ତ ନଗଦ ତହବିଲ, ଅଗ୍ରଦତ୍ତ ଭଣ୍ଡାର ବା ପ୍ରବହମାନ ଅଗ୍ରଦତ୍ତ ନଗଦ ତହବିଲ କୁହାଯାଏ ।

ଅଗ୍ରଦତ୍ତ ପଦ୍ଧତିରେ ବୈଶ୍ଳେଷିକ ଖୁଚୁରା ଖର୍ଚ୍ଚ ରୋକଡ଼ ବହି ଲେଖାଗଲେ ତାହାର କେତେକ ସୁବିଧା ବ୍ୟବସାୟୀ ପାଇ ପାରନ୍ତି । ସେ ଗୁଡ଼ିକ ନିମ୍ନରେ ବର୍ଣ୍ଣିତ ହେଲା ।

(୧) ଗ୍ରେଟ ଖାଜାଞ୍ଚି ଯେ କୌଣସି ସମୟରେ ଖୁଚୁରା ଖର୍ଚ୍ଚ ନିମନ୍ତେ ଟଙ୍କା ଆଣି ପାରନ୍ତି ନାହିଁ, ତେଣୁ ଅଯଥା ତାଙ୍କ ନିକଟରେ ଅଧିକ ଟଙ୍କା ପଡ଼ି ରହେ ନାହିଁ, ଏତଦ୍ୱାରା ଟଙ୍କା ତୋଷରପାତ ହେବାର ଆଶଙ୍କା ନ ଥାଏ ।

(୨) ଗ୍ରେଟ ଖାଜାଞ୍ଚି ଏକ ନିର୍ଦ୍ଦିଷ୍ଟ ସମୟରେ ବଡ଼ ଖାଜାଞ୍ଚିଙ୍କଠାରୁ ଟଙ୍କା ଆଣିବା ପୂର୍ବରୁ ତାଙ୍କର ହିସାବ ପତ୍ର ଦାଖଲ କରନ୍ତି । ବଡ଼ ଖାଜାଞ୍ଚି ହିସାବ ପରୀକ୍ଷା କଲା ପରେ ପୁଣି ପରବର୍ତ୍ତୀ କାଳ ନିମନ୍ତେ ପୂର୍ବ ସମୟ ମଧ୍ୟରେ ଖର୍ଚ୍ଚ ହୋଇଥିବା ଟଙ୍କା ଭରଣା କରି ଦିଅନ୍ତି । ଏତଦ୍ୱାରା ହିସାବ ପରୀକ୍ଷିତ ହୋଇଯାଏ ଓ ଗ୍ରେଟ ଖାଜାଞ୍ଚିଙ୍କ ଉପରେ ତୀକ୍ଷ୍ଣ ଦୃଷ୍ଟି ରଖିବା ସମ୍ଭବପର ହୁଏ ।

(୩) ଯେ କୌଣସି ସମୟରେ ଗ୍ରେଟ ଖାଜାଞ୍ଚିଙ୍କଠାରେ ଥିବା ଅବଶିଷ୍ଟ ଟଙ୍କା ଓ ତାଙ୍କଠାରେ ପ୍ରମାଣକଗୁଡ଼ିକରେ ଲେଖାଥିବା ଟଙ୍କା ଯୋଗ କଲେ ସର୍ବଦା ତାହା ଅଗ୍ରଦତ୍ତ ଟଙ୍କା ସହିତ ସମାନ ହେବ । ଏହା ଠିକ ଅଛି କି ନାହିଁ ତାହା ପରୀକ୍ଷା କରିବା ନିମନ୍ତେ ମଧ୍ୟେ ମଧ୍ୟେ ଗ୍ରେଟ ଖାଜାଞ୍ଚିଙ୍କଠାରେ ଥିବା ଟଙ୍କା ଯାଞ୍ଚ କରାଯାଏ ।

(୪) ଯେହେତୁ ପୁନଃସ୍ଥ ଅଗ୍ରଦତ୍ତ ନଗଦ ତହବିଲ ଆଣିବା ସମୟରେ ଛୋଟ ଖଜାଞ୍ଚିଙ୍କୁ ହିସାବ ଦାଖଲ କରିବାକୁ ପଡ଼େ ତେଣୁ ତାଙ୍କ ହିସାବ ରଖୁବେଳେ ପରିଷ୍କାର ପରିଚ୍ଛନ୍ନ ରଖିବାକୁ ଓ ଦୈନନ୍ଦିନ ହିସାବ ଯଥାଯଥ ଭାବରେ ଲିପିବଦ୍ଧ କରିବାକୁ ସେ ବାଧ୍ୟ ହୁଅନ୍ତି ।

ଅଗ୍ରଦତ୍ତ ପଦ୍ଧତିରେ ବୈଶ୍ଳେଷିକ ଖୁଚୁରା ଖର୍ଚ୍ଚ ରେକର୍ଡ଼ ବହି କିପରି ଲେଖାଯାଏ ତାହାର ଏକ ଦୃଷ୍ଟାନ୍ତ ନିମ୍ନରେ ପ୍ରଦତ୍ତ ହେଲା ।

## ଦୃଷ୍ଟାନ୍ତ (୭)

ନିମ୍ନଲିଖିତ ବିବରଣୀରୁ ରଜନୀକାନ୍ତଙ୍କର ବୈଶ୍ଳେଷିକ ଖୁଚୁରା ଖର୍ଚ୍ଚ ରେକର୍ଡ଼ ବହି ଅଗ୍ରଦତ୍ତ ପଦ୍ଧତି ଅନୁଯାୟୀ ପ୍ରସ୍ତୁତ କରି ମାସ ଶେଷର ବାକି ନିର୍ଣ୍ଣୟ କର ଓ ଅପ୍ରେଲ ୧ ତାରିଖରେ ଛୋଟ ଖଜାଞ୍ଚି ପୁଣି କେତେ ଟଙ୍କା ଆଣିବେ ତାହା ଦର୍ଶାଅ ।

| ୧୯୭୨ | | ଟଙ୍କା |
|---|---|---|
| ମାର୍ଚ୍ଚ ୧ | ଛୋଟ ଖଜାଞ୍ଚି ଅଗ୍ରଦତ୍ତ ଟଙ୍କା ପାଇଲେ— | ୫୦.୦୦ |
| ୨ | ଡାକ ଟିକେଟ ସକାଶେ ଖର୍ଚ୍ଚ ହେଲା— | ୩-୫୦ |
| ୫ | କାଳି, କଲମ ଓ ଲଫାଫା କିଣିବାରେ ଖର୍ଚ୍ଚ ହେଲା— | ୭-୫୦ |
| ୧୨ | ବସ୍ ଭଡ଼ା ନିମନ୍ତେ ଖର୍ଚ୍ଚ ହେଲା— | ୨-୧୦ |
| ୧୫ | ରିକ୍ସା ଭଡ଼ା ଦିଆଗଲା— | ୧-୪୫ |
| ୨୨ | ଖବର କାଗଜ ସକାଶେ ଦିଆଗଲା— | ୮-୫୦ |
| ୨୫ | ଅଫିସ ନିମନ୍ତେ ଟୋକେଇ ଓ ଝାଡ଼ୁ କଣାଗଲା— | ୧୦-୪୫ |
| ୩୦ | ମଜୁରି ବାବଦ ଖର୍ଚ୍ଚ ହେଲା— | ୭-୦୦ |

ପ୍ରାପ୍ତି ରଜନୀ କାନ୍ତଙ୍କର ଖୁଚୁରା ଖରଚ ରୋକଡ଼ ବହି ଦାତା

| ତାରିଖ | ବିବରଣ | ଖ: ପୃ: | ପରିମାଣ | ତାରିଖ | ବିବରଣ | ଖ: ପୃ: | ମୋଟ ପରିମାଣ | ଡାକ ଓ ତାର ଖର୍ଚ୍ଚ | ମନୋହର ଦ୍ରବ୍ୟ | ଗାଡ଼ି ଭଡ଼ା | ଦପ୍ତର ଖର୍ଚ୍ଚ | ମଜୁରି | ଖ: ପୃ: |
|---|---|---|---|---|---|---|---|---|---|---|---|---|---|
| ୧୯୭୬ | | | ଟଙ୍କା | ୧୯୭୬ | | | ଟଙ୍କା | | | | | | |
| ମାର୍ଚ୍ଚ-୧ | ନଗଦ ତହବିଲ ମିଳିଲା | | ୫୦-୦୦ | ମାର୍ଚ୍ଚ-୨ | ଡାକ ଟିକଟ ବାବଦ | | ୩-୫୦ | ୩-୫୦ | | | | | |
| | | | | ୫ | ମନୋହରି ଦ୍ରବ୍ୟ ,, | | ୭-୫୦ | | ୭-୫୦ | | | | |
| | | | | ୧୨ | ବସ୍ ଭଡ଼ା ,, | | ୨-୧୦ | | | ୨-୧୦ | | | |
| | | | | ୧୫ | ରିକ୍ସା ଭଡ଼ା ,, | | ୧-୪୫ | | | ୧-୪୫ | | | |
| | | | | ୨୨ | ଦପ୍ତର ଖର୍ଚ୍ଚ ,, | | ୮-୫୦ | | | | ୮-୫୦ | | |
| | | | | ୨୫ | ଦପ୍ତର ଖର୍ଚ୍ଚ ,, | | ୧୦-୪୫ | | | | ୧୦-୪୫ | | |
| | | | | ୩୦ | ମଜୁରି ,, | | ୭-୦୦ | | | | | ୭-୦୦ | |
| | | | | | | | ୩୮-୫୦ | ୩-୫୦ | ୭-୫୦ | ୩-୫୫ | ୧୮-୯୫ | ୭-୦୦ | |
| | | | | ୩୧ | ବାକି ଗଡ଼ିଲା | | ୧୧-୫୦ | | | | | | |
| | | | ୫୦-୦୦ | | | | ୫୦-୦୦ | | | | | | |
| ଅପ୍ରେଲ୧ | ପୂର୍ବ ବାକି ବାବଦ | | ୧୧-୫୦ | | | | | | | | | | |
| | ନଗଦ ତହବିଲ ମିଳିଲା | | ୩୮-୫୦ | | | | | | | | | | |

ଛାତ୍ର ପାଠ

ଖୁଚୁରା ରେକଡ଼ ବହିର ଦାତା ପାର୍ଶ୍ୱରେ କେତେ ଗୋଟି କକ୍ଷ ରହିବ ତାହା ବ୍ୟବସାୟର ଆବଶ୍ୟକତା ଦୃଷ୍ଟିରୁ ସ୍ଥିର କରାଯାଏ । ଅନେକ ସମୟରେ ଖତିୟାନ ହିସାବ ନାମକ ଆଉ ଗୋଟିଏ କକ୍ଷ ଖୋଲାଯାଏ ଓ ତହିଁରେ ଏପରି ଖର୍ଚ୍ଚ, ଯାହାକି ଗୁରୁତ୍ୱପୂର୍ଣ୍ଣ ମାତ୍ର ଟଙ୍କାର ପରିମାଣ ଅଳ୍ପ ହୋଇଥିବାରୁ ତାହା ଛୋଟ ଖର୍ଚ୍ଚମାନଙ୍କଠାରୁ ଦିଆଯାଇଛି, ତାହା ସେହି କକ୍ଷରେ ଲିପିବଦ୍ଧ କରାଯାଏ । ଉଦାହରଣ ସ୍ୱରୂପ ବ୍ୟବସାୟର ଘରମରାମତି ସଂକ୍ରାନ୍ତ ଖର୍ଚ୍ଚ ବା କୌଣସି ବାଙ୍କ ସଂକ୍ରାନ୍ତ ଖର୍ଚ୍ଚ ଏହି କକ୍ଷରେ ଲିପିବଦ୍ଧ କରାଯାଏ ।

## ଖୁଚୁରା ଖରଚ ରେକଡ଼ ବହିରୁ ଖତିୟାନ ହିସାବ ପ୍ରସ୍ତୁତ କରିବା :

ରେକଡ଼ ବହିରୁ ଯେପରି ଭାବରେ ଖତିୟାନ ହିସାବ ପ୍ରସ୍ତୁତ କରାଯାଏ ଖୁଚୁରା ଖରଚ ରେକଡ଼ ବହିରୁ ଖତିୟାନ ପ୍ରସ୍ତୁତ କରିବାର ପଦ୍ଧତି ଅନୁରୂପ । ଦାୟୀ ପାର୍ଶ୍ୱରେ ଲେଖାଥିବା ଅଙ୍କ ଯେହେତୁ ରେକଡ଼ ବହିର ଦାତା ପାର୍ଶ୍ୱରେ 'ଖୁଚୁରା ଖରଚ ରେକଡ଼ ବହି' ବାବଦ ଲେଖାଯାଇଛି ଓ ଖୁଚୁରା ଖରଚ ରେକଡ଼ ବହିର ଦାୟୀ ପାର୍ଶ୍ୱରେ ଲେଖାଗଲା ଏଥିନିମନ୍ତେ କୌଣସି ଖତିୟାନ ହିସାବର ଆବଶ୍ୟକତା ନାହିଁ । ଏହାର ଦାତା ପାର୍ଶ୍ୱରେ ଥିବା ଭିନ୍ନ ଭିନ୍ନ କକ୍ଷର ମୋଟ ପରିମାଣ ଖତିୟାନରେ ଥିବା ସେହି ନାମର ହିସାବର ଦାୟୀ ପାର୍ଶ୍ୱରେ ଲେଖାଯିବ । ଉଦାହରଣ ସ୍ୱରୂପ, ଡାକ ଓ ତାର କକ୍ଷର ମୋଟ ପରିମାଣ ୩ ଟଙ୍କା ୫୦ ପଇସା ଖତିୟାନରେ ଥିବା ଡାକ ଓ ତାର ଖର୍ଚ୍ଚ ହିସାବର ଦାୟୀ ପାର୍ଶ୍ୱରେ ଲେଖାଯିବ ସେହିପରି ମନୋହାରୀ ଦ୍ରବ୍ୟ, ମଜୁରି, ଯାତାୟାତ ଖର୍ଚ୍ଚ ଓ ଦପ୍ତର ଖର୍ଚ୍ଚ କକ୍ଷମାନଙ୍କର ମୋଟ ପରିମାଣ ଯଥାକ୍ରମେ ଖତିୟାନସ୍ଥ ମନୋହାରୀ ଦ୍ରବ୍ୟ ହିସାବ, ମଜୁରି ହିସାବ, ଯାତାୟାତ ଖର୍ଚ୍ଚ ହିସାବ ଓ ଦପ୍ତର ଖର୍ଚ୍ଚ ହିସାବର ଦାୟୀ ପାର୍ଶ୍ୱରେ 'ନଗଦ ତହବିଲ ହିସାବ ବାବଦ' ବୋଲି ଲେଖାଯିବ । ଏପରି ଲିପିବଦ୍ଧ ହେବା ଫଳରେ ଡାକ ଓ ତାର ଖର୍ଚ୍ଚ ଆଦି ପ୍ରତିଟି ଖର୍ଚ୍ଚର ପରିମାଣ ଖୁଚୁରା ରେକଡ଼ ବହିର ଦାତା ପାର୍ଶ୍ୱରେ ଓ ଖତିୟାନ ହିସାବର ଦାୟୀ ପାର୍ଶ୍ୱରେ ଅନ୍ତର୍ଭୁକ୍ତ ହେଲା ଓ ଏହାଦ୍ୱାରା ଦ୍ୱିଲେଖନ ହିସାବ ପଦ୍ଧତିର ମତ ପାଳିତ ହେଲା ।

କେତେକ ବ୍ୟବସାୟୀ ଖୁଚୁରା ଖରଚ ରେକଡ଼ ବହିକୁ ପ୍ରାଥମିକ ବହି ବୋଲି ସ୍ୱୀକାର କରନ୍ତି ନାହିଁ, ସେ ଏହାକୁ ଏକ ବିବରଣୀ ବହି ବୋଲି ବିଚାର କରନ୍ତି । ସେପରି କ୍ଷେତ୍ରରେ ଖୁଚୁରା ଖରଚ ରେକଡ଼ ବହିରେ ଥିବା ସମସ୍ତ ଲେଖା ନିମନ୍ତେ ରୋଜନାମା ପ୍ରସ୍ତୁତ କରିବା ଆବଶ୍ୟକ ହେବ । ଅର୍ଥାତ୍ ଏ ବହିରେ ନେଣଦେଣଗୁଡ଼ିକ ଲିପିବଦ୍ଧ ନ ହୋଇଥିଲେ ଯାହା କରାଯାଇଥାନ୍ତା ତାହାହିଁ କରାଯିବ । ଉଦାହରଣ ସ୍ୱରୂପ ଖୁଚୁରା ରେକଡ଼ ବହିର ଦାୟୀ ପାର୍ଶ୍ୱର ୫୦ ଟଙ୍କା ସକାଶେ ନିମ୍ନଲିଖିତ ରୋଜନାମା କରାଯିବ ।

| | ଟଙ୍କା | ଟଙ୍କା |
|---|---|---|
| ଖୁଚୁରା ଖରଚ ତହବିଲ ହିସାବ ଦାୟୀ | ୫୦ | |
| ସାଧାରଣ ନଗଦ ତହବିଲ ବାବଦ | | ୫୦ |

ଦାତା ପାର୍ଶ୍ୱରେ ଥିବା ଲେଖାଗୁଡ଼ିକ ନିମନ୍ତେ ନିମ୍ନଲିଖିତ ରୋଜନାମା ପ୍ରସ୍ତୁତ କରାଯିବ ।

| | | | ଟଙ୍କା |
|---|---|---|---|
| | | | ୩.୫୦ |
| ଡାକ ଓ ତାର ଖର୍ଚ୍ଚ | ହିସାବ | ଦାୟୀ | ୩.୫୦ |
| ମନୋହାରୀ ଦ୍ରବ୍ୟ | ,, | ,, | ୬.୫୦ |
| ମଜୁରି | ,, | ,, | ୭.୦୦ |
| ଯାତାୟତ ଖର୍ଚ୍ଚ | ,, | ,, | ୩.୫୫ |
| ଦପ୍ତର ଖର୍ଚ୍ଚ | ,, | ,, | ୧.୯୫ |
| ଖୁଚୁରା ଖରଚ ତହବିଲ ହିସାବ ବାବଦ | | | [illegible].୫୦ |

ଏହା ପରେ ରୋଜନାମାରୁ ଯେପରି ଖତିୟାନ ହିସାବ ପ୍ରସ୍ତୁତ ହୁଏ ସେହିପରି ବିଭିନ୍ନ ହିସାବ ପ୍ରସ୍ତୁତ କରାଯିବ । ସାଧାରଣତଃ କିନ୍ତୁ ରୋକଡ଼ ବହି ସଦୃଶ ଖୁଚୁରା ଖରଚ ରୋକଡ଼ ବହି ମଧ୍ୟ ଏକ ପ୍ରାଥମିକ ହିସାବ ବହି ବୋଲି ବିବେଚିତ ହୁଏ ।

## ବ୍ୟାଙ୍କ୍ ସହିତ କାରବାର :

ବ୍ୟବସାୟୀ ଯେତେ ପୁଞ୍ଜି ଆଣି ବ୍ୟବସାୟ ଆରମ୍ଭ କରନ୍ତି ସେ ସମସ୍ତ ଟଙ୍କା ତାଙ୍କର ଏକାବେଳକେ ଆବଶ୍ୟକ ହୁଏ ନାହିଁ । ତେଣୁ ସେ ସାଧାରଣତଃ କିଛି ଟଙ୍କା ବ୍ୟବସାୟରେ ରଖନ୍ତି ଓ ସଙ୍ଗେ ସଙ୍ଗେ ଆବଶ୍ୟକ ହେଉ ନ ଥିବା ବଳକା ଟଙ୍କା ବ୍ୟାଙ୍କ୍‌ରେ ଜମା ରଖନ୍ତି । ବ୍ୟାଙ୍କ୍ ଗୋଟିଏ ଏପରି ପ୍ରତିଷ୍ଠାନ ଯେଉଁଠାରେ ଟଙ୍କା ନିରାପଦରେ ରଖାଯାଇପାରେ ଓ ପ୍ରୟୋଜନବେଳେ ପୁଣି ତାହା ଅଣାଯାଇ ପାରେ । ବ୍ୟାଙ୍କ୍ ବିଭିନ୍ନ ବ୍ୟକ୍ତି ଓ ପ୍ରତିଷ୍ଠାନମାନଙ୍କଠାରୁ ତାଙ୍କର ଳେକା ଟଙ୍କା ଜମା ରଖନ୍ତି ଓ ଯେଉଁ ବ୍ୟବସାୟୀଙ୍କର ପୁଞ୍ଜି ଆବଶ୍ୟକ ହୁଏ ତାହାଙ୍କୁ ଟଙ୍କା ଋଣ ଦିଅନ୍ତି । ଋଣ ଗ୍ରହୀତାଙ୍କଠାରୁ ଅଧିକ ହାରରେ ସୁଧ ଆଦାୟ କରି ବ୍ୟାଙ୍କ୍ ଜମିତକାରିଙ୍କୁ ଅପେକ୍ଷାକୃତ ଅଳ୍ପ ହାରରେ ସୁଧ ଦିଅନ୍ତି । ଏତଦ୍ୱାରା ଗଚ୍ଛିତକାରୀଙ୍କ ଟଙ୍କା ନିରାପଦରେ ରହେ । ଋଣଗ୍ରହୀତା ପ୍ରୟୋଜନ ଅନୁଯାୟୀ ଟଙ୍କା ଋଣ ପାଇପାରନ୍ତି ଓ ବ୍ୟାଙ୍କ ଉଭୟ ସୁଧହାର ମଧ୍ୟରେ ଥିବା ବ୍ୟବଧାନରୁ ମଧ୍ୟ ଲାଭବାନ ହୁଅନ୍ତି । ଏହା ବ୍ୟତୀତ ବ୍ୟାଙ୍କ୍ ଅନ୍ୟାନ୍ୟ ଅନେକ ପ୍ରକାର କାର୍ଯ୍ୟ କରନ୍ତି, ତନ୍ମଧ୍ୟରୁ ହୁଣ୍ଡି ଭଙ୍ଗାଇବା, ଦୂର ଦୂରାନ୍ତକୁ ଅଳ୍ପ ଖର୍ଚ୍ଚରେ ବ୍ୟାଙ୍କ୍ ଡ୍ରାଫ୍ଟ୍ ଜରିଆରେ ଟଙ୍କା ପଠାଇବା, ସୁନା, ରୁପା ଅଳଙ୍କାର ଓ ମୂଲ୍ୟବାନ ଦଲିଲପତ୍ର ନିରାପଦରେ ରଖିବା ପ୍ରଭୃତି ବିଷୟ ଉଲ୍ଲେଖ କରାଯାଇ ପାରେ ।

ବ୍ୟାଙ୍କ୍‌ରେ ସାଧାରଣତଃ ତିନି ପ୍ରକାରରେ ଟଙ୍କା ଜମା ରଖାଯାଇ ପାରେ, ଯଥା ମିଆଦି ଜମା, ସଞ୍ଚୟ ଜମା, ଓ ଚଳନ୍ତି ଜମା ନିର୍ଦ୍ଦିଷ୍ଟ କାଳ ନିମନ୍ତେ ନିର୍ଦ୍ଦିଷ୍ଟ ପରିମାଣର ଟଙ୍କା ବ୍ୟାଙ୍କ୍‌ରେ ଗଚ୍ଛିତ ରଖିବାକୁ ହେଲେ Fixed Deposit Account ଖୋଲିବାକୁ ପଡ଼େ । ଯେହେତୁ ନିର୍ଦ୍ଦିଷ୍ଟକାଳ ପୂର୍ବରୁ ସାଧାରଣତଃ ଏହି ଟଙ୍କା ବ୍ୟାଙ୍କରୁ ଉଠାଯା ନଆଯାଏ ନାହିଁ, ତେଣୁ ବ୍ୟାଙ୍କ ଏପରି ଜମା ସକାଶେ ଉଚ୍ଚ ହାରରେ ସୁଧ ଦିଅନ୍ତି । ଏହା ୬ ମାସରୁ ୭ ବର୍ଷ ପର୍ଯ୍ୟନ୍ତ ରଖାଯାଇ ପାରେ । ସମୟର ଦୀର୍ଘତା ଅନୁପାତରେ ସୁଧର ହାର ବୃଦ୍ଧି ପାଏ । ବ୍ୟବସାୟୀମାନେ ନ୍ୱଚିତ୍ ଏପରି ଜମା ରଖନ୍ତି, କାରଣ ସେହି ଟଙ୍କା ସେମାନେ ବ୍ୟବସାୟରେ ବିନିଯୋଗ କଲେ ବ୍ୟାଙ୍କ୍ ଦେଉଥିବା ସୁଧ ତୁଳନାରେ ଢେର ବେଶୀ ଟଙ୍କା ଲାଭ ସ୍ୱରୂପ ପାଇପାରିବେ ।

ସଞ୍ଚୟ ଜମା ( Savings Bank Account ) ମଧ୍ୟ ସାଧାରଣ ଲୋକଙ୍କ ନିମନ୍ତେ ସୁବିଧା ଜନକ । ତାଙ୍କର ସଞ୍ଚିତ ଟଙ୍କା ସେ ବ୍ୟାଙ୍କ୍‌ରେ ଜମା ରଖନ୍ତି ଓ ଆବଶ୍ୟକ ଅନୁଯାୟୀ ତହିଁରୁ ଚେକ୍ ଜରିଆରେ ବ୍ୟାଙ୍କରୁ ଉଠାଇ ଆଣନ୍ତି । ସାଧାରଣତଃ ସଞ୍ଚୟ ଜମାରୁ ବ୍ୟାଙ୍କ୍ ସପ୍ତାହରେ ଥରେ କିମ୍ବା ଦୁଇଥର ଟଙ୍କା ଉଠାଇବାର ସୁଯୋଗ ଦିଅନ୍ତି । ଏପରି ଜମା ସକାଶେ ସର୍ବନିମ୍ନ ଓ ସର୍ବୋଚ୍ଚ ପରିମାଣ ସୀମିତ ଥାଏ । ଏପରି ଜମା ସକାଶେ ବ୍ୟାଙ୍କ୍ ଅତି ଅଳ୍ପ ହାରରେ ସୁଧ ଦିଅନ୍ତି ।

ବ୍ୟବସାୟୀମାନେ ସାଧାରଣତଃ ତାଙ୍କର ଉଦ୍‌ବୃତ୍ତ ଟଙ୍କା ଚଳନ୍ତି ଜମା ( Current Account ) ଆକାରରେ ବ୍ୟାଙ୍କ୍‌ରେ ଜମା ରଖନ୍ତି । ଏହାର ସର୍ବନିମ୍ନ ପରିମାଣ ସୀମିତ ଥାଏ କିନ୍ତୁ ସର୍ବୋଚ୍ଚ ପରିମାଣ ସାଧାରଣତଃ ସୀମିତ ନ ଥାଏ । ଏପରି ଜମାରୁ ଯେ କୌଣସି ସମୟରେ ଟଙ୍କା ଉଠାଇ ନିଆଯାଇ ପାରେ ଓ ଜମା ରଖାଯାଇ ପାରେ । ଏପରି ଜମାରେ ସୁଧର ହାର ନ୍ୟୂନତମ, କାରଣ ବ୍ୟାଙ୍କକୁ ସବୁ ସମୟରେ ଏପରି ଗଚ୍ଛିତକାରୀଙ୍କ ଆବଶ୍ୟକତା ଦୃଷ୍ଟିରୁ କିଛି ପରିମାଣରେ ଟଙ୍କା ମହଜୁଦ ରଖିବାକୁ ପଡ଼େ । ଏ କ୍ଷେତ୍ରରେ ଯଦିଓ ସୁଧର ହାର ନ୍ୟୂନତମ, ତଥାପି ବ୍ୟବସାୟୀମାନେ ଏହିପରି ଜମା ରଖିବାକୁ ପସନ୍ଦ କରନ୍ତି, କାରଣ ଆବଶ୍ୟକ ଅନୁଯାୟୀ ଯେ କୌଣସି ଦିନ ଚେକ୍ ସାହାଯ୍ୟରେ ସେ ଟଙ୍କା ଉଠାଇ ପାରିବେ ଏବଂ ନିଜେ ନ ଯାଇ ଅନ୍ୟ ସାହାଯ୍ୟରେ ଚେକ୍ ଯୋଗେ ଟଙ୍କା ଉଠାଇ ପାରିବେ । ସାଧାରଣତଃ ବ୍ୟବସାୟୀ ଚଳନ୍ତି ଜମା ଆକାରରେ ଟଙ୍କା ଗଚ୍ଛିତ ରଖିଲେ ତାଙ୍କର ମହାଜନମାନଙ୍କର ଦେଣା ଚେକ୍ ମାଧ୍ୟମରେ ପରିଶୋଧ କରିପାରନ୍ତି । ଆବଶ୍ୟକ ହେଲେ ବ୍ୟାଙ୍କ ସହିତ ପୂର୍ବରୁ ଚୁକ୍ତି କରି ତାଙ୍କର ଯେତିକି ଟଙ୍କା ଜମା ଅଛି ତାହାଠାରୁ ଅଧିକ ଟଙ୍କା ଚେକ୍ ଜରିଆରେ ଉଠାଇ ପାରନ୍ତି । ଏହାକୁ ଅଧିକ ଉଠାଣ ( Overdraft ) କୁହାଯାଏ । ଏହା ଏକ ପ୍ରକାର ସ୍ୱଳ୍ପ ମିଆଦି ଋଣ । ଏହା ବ୍ୟତୀତ ଗଚ୍ଛିତକାରୀ ବ୍ୟାଙ୍କ୍‌ରୁ ଆହୁରି ଅନେକ ପ୍ରକାର ସୁଯୋଗ ସୁବିଧା ପାଇ ପାରନ୍ତି ।

## ଜମା ହିସାବ ଖୋଲିବା

ମିଆଦି ଜମା ହିସାବ ଖୋଲିବା ନିମନ୍ତେ ଗଚ୍ଛିତକୋରୀଙ୍କୁ ଗୋଟିଏ ଆବେଦନ ପତ୍ର ବ୍ୟାଙ୍କ୍‌କୁ ଲେଖିବାକୁ ପଡ଼େ । ବ୍ୟାଙ୍କ୍ ଏହା ମଞ୍ଜୁର କଲେ ଗଚ୍ଛିତକାରୀ ଟଙ୍କା ଜମା ଦିଅନ୍ତି ଓ ତାହା ପରିବର୍ତ୍ତେ ବ୍ୟାଙ୍କ୍ ତାହାଙ୍କୁ ଟଙ୍କାର ଗୋଟିଏ ରସିଦ ଦିଅନ୍ତି । ନିର୍ଦ୍ଦିଷ୍ଟ ସମୟରେ ଏହି ରସିଦଟି ବ୍ୟାଙ୍କ୍‌ରେ ଦାଖଲ କଲେ ସେ ତାଙ୍କର ମୂଳଜମା ଟଙ୍କା ଓ ତତ୍‌ସହିତ ପୂର୍ବ ଚୁକ୍ତି ଅନୁଯାୟୀ ସୁଧ ମଧ୍ୟ ପାଇ ପାରନ୍ତି ।

ସଞ୍ଚୟ ଜମା ହିସାବ ଖୋଲିବା ନିମନ୍ତେ ଗଚ୍ଛିତକାରୀଙ୍କୁ ଗୋଟିଏ ଆବେଦନ ପତ୍ରର ଫର୍ମ ପୂରଣ କରିବାକୁ ପଡ଼େ । ସେଥିରେ ତାଙ୍କ ନିଜ ବିଷୟରେ ବିଭିନ୍ନ ବିବରଣି ଦେବାକୁ ପଡ଼େ । ସାଧାରଣତଃ ସେହି ବ୍ୟାଙ୍କ୍‌ର ଜଣେ ଗଚ୍ଛିତକାରୀ ତାଙ୍କର ଦରଖାସ୍ତ ସମର୍ଥନ କରନ୍ତି । ସେହି ଦରଖାସ୍ତ ମଞ୍ଜୁର ହେଲେ ସେ ଟଙ୍କା ଜମା ଦିଅନ୍ତି । ଗଚ୍ଛିତକାରୀ ବ୍ୟାଙ୍କ୍‌ରୁ ତିନିଗୋଟି ବହି ପାଆନ୍ତି, ଯଥା (୧) ଟଙ୍କା ଜମା ଦେବା ବହି (୨) ଚେକ୍ ବହି ଓ (୩) ବ୍ୟାଙ୍କ ପାସ୍ ବହି । ପ୍ରଥମ ବହିର ଗୋଟିଏ ପୃଷ୍ଠା ପୂରଣ କରି ସେ ଟଙ୍କା ଜମା ଦିଅନ୍ତି ; ଦ୍ୱିତୀୟ ବହିରୁ ଖଣ୍ଡିଏ ଚେକ୍ ପୂରଣ କରି ସେ ଟଙ୍କା ଉଠାଇ ଆଣନ୍ତି ଓ ତୃତୀୟ ବହିରେ ବ୍ୟାଙ୍କ ସହିତ ତାଙ୍କର ଯାବତୀୟ ନେଣଦେଣ ଲିପିବଦ୍ଧ କରାଯାଏ । ଏହା ବ୍ୟାଙ୍କରେ ରଖାଥିବା ତାଙ୍କ୍‌ର ଖତିୟାନ ହିସାବର ଏକ ପ୍ରତିଲିପି କହିଲେ ଚଳେ ।

ଚଳନ୍ତି ଜମା ହିସାବ ଖୋଲିବା ନିମନ୍ତେ ଗଚ୍ଛିତକୋରୀଙ୍କୁ ଗୋଟିଏ ଫର୍ମ ପୂରଣ କରିବାକୁ ପଡ଼େ । ଏହା ବ୍ୟତୀତ ଜଣେ ପଦସ୍ଥ ବ୍ୟକ୍ତି, ସାଧାରଣତଃ ସେହି ବ୍ୟାଙ୍କ୍‌ର ଜଣେ ଗଚ୍ଛିତକାରୀ ନୂତନ ଗଚ୍ଛିତକାରୀଙ୍କୁ ପରିଚୟ କରାଇ ଦିଅନ୍ତି । ପରିଚୟକାରୀଙ୍କ ନାମ, ଧାମ ପ୍ରଭୃତି ବ୍ୟାଙ୍କ୍‌ରେ ସମ୍ବାଦ ରଖାଯାଏ । ନୂତନ ଗ୍ରାହକଙ୍କ ଚରିତ୍ର ବିଷୟରେ ସନ୍ତୁଷ୍ଟ ନ ହେବା ପର୍ଯ୍ୟନ୍ତ ବ୍ୟାଙ୍କ୍ ଚଳନ୍ତି ଜମା ହିସାବ ଖୋଲିବା ନିମନ୍ତେ ଅନୁମତି ଦିଅନ୍ତି ନାହିଁ । ନୂତନ ଗ୍ରାହକ କାଳେ ଭବିଷ୍ୟତରେ ବ୍ୟାଙ୍କ୍‌କୁ ଠକି ପାରନ୍ତି ତାହା ଆଶଙ୍କା କରି ବ୍ୟାଙ୍କ୍ ପୂର୍ବରୁ ଏହି ସାବଧାନତା ଅବଲମ୍ବନ କରନ୍ତି । ଚଳନ୍ତି ଜମା ହିସାବ ଖୋଲିଲେ ମଧ୍ୟ ଗଚ୍ଛିତକାରୀଙ୍କୁ ବ୍ୟାଙ୍କରୁ ତିନୋଟି ବହି ମିଳେ । ତାହାର ବ୍ୟବହାର ପୂର୍ବରୁ ବର୍ଣ୍ଣନା କରାଯାଇଛି । ଏହି ବହିଗୁଡ଼ିକର ନମୁନା ନିମ୍ନରେ ପ୍ରଦତ୍ତ ହେଲା ।

ପ୍ରତି ଜମା ହିସାବ ଖୋଲିଲା ବେଳେ, ବିଶେଷତଃ ଶେଷୋକ୍ତ ଦୁଇଟି ଜମା ହିସାବରେ, ଗଚ୍ଛିତକାରୀଙ୍କର ନମୁନା ଦସ୍ତଖତ ବ୍ୟାଙ୍କ୍‌ରେ ସମ୍ବାଦ ରଖାଯାଏ ଓ ପ୍ରତି ଚେକ୍‌ରେ ଥିବା ଗଚ୍ଛିତକାରୀଙ୍କର ଦସ୍ତଖତ ସହିତ ବ୍ୟାଙ୍କ୍ ଏହାକୁ ପରୀକ୍ଷା କରି ଦେଖନ୍ତି ଯେ ଏହା ପ୍ରକୃତ ଗଚ୍ଛିତକାରୀଙ୍କର କି ନୁହେଁ ।

ବ୍ୟାଙ୍କରେ ଟଙ୍କା ଜମାଦେବା ସକାଶେ ଫର୍ମର ନମୁନା

No 12-234/61

**PUNJAB NATIONAL BANK LTD.**

________ Office ________ 19 ___

________ A/c No. ________

Name ________

| Cheque No and Bank's Name | Rs. | P. |
|---|---|---|
| | | |
| | | |
| Total | | |

Accountant

---

Folio ________

**THE PUNJAB NATIONAL BANK LTD.**

Office 19

Paid in Rupees ________

to the credit of ________

in ________ Account No. ________

on realisation

| Cheque No. and Bank's Name | Rs. | P. |
|---|---|---|
| | | |
| | | |
| | | |
| Total | | |

Clerk Accountant Manager By ________

ଚେକ୍‌ର ନମୁନା

NO XYT

CODE NO

THE PUNJAB NATIONAL BANK LTD.

19......

PAY ............ OR BEARER

RUPEES ..............................................

............ Rs.

## ଟଙ୍କା ଜମା ଦେବା ଓ ଉଠାଇବା :

ବ୍ୟାଙ୍କ୍‌ରେ ଟଙ୍କା ଜମା ଦେବା ନିମନ୍ତେ ପୂର୍ବ ବର୍ଣ୍ଣିତ ଟଙ୍କା ଜମା ଦେବା ଫର୍ମ ପୂରଣ କରିବାକୁ ପଡ଼େ । ପୂରଣ କରିବା ପରେ ଏହି ଫର୍ମ ଓ ଟଙ୍କା ଖଜାଞ୍ଚିଙ୍କ ନିକଟରେ ଦାଖଲ କରାଯାଏ । ଫର୍ମର ଡାହାଣ ପଟ ଖଜାଞ୍ଚି ନିଜଠାରେ ରଖନ୍ତି ଓ ବାମ ପଟରେ ବ୍ୟାଙ୍କର ଷ୍ଟାମ୍ପ ମାରି ଦସ୍ତଖତ କରି ଗଚ୍ଛିତକାରୀଙ୍କୁ ଦେଇ ଦିଅନ୍ତି । ଏହାକୁ ପ୍ରତିଲିପି କୁହାଯାଏ । ବ୍ୟାଙ୍କ୍ ଯେ ଟଙ୍କା ପାଇଛନ୍ତି ଏହି ପ୍ରତିଲିପି ତାହାର ପ୍ରାପ୍ତି ସ୍ୱୀକାର । ଅନେକ ସମୟରେ ନଗଦ ଟଙ୍କା ଜମା ନ ଦିଆଯାଇ ଅନ୍ୟ ବ୍ୟାଙ୍କ୍‌ର ଚେକ୍ କିମ୍ବା ବ୍ୟାଙ୍କ୍ ଡ୍ରାଫ୍‌ଟ୍ ଅଦାୟ କରି ନିଜ ହିସାବରେ ଜମା କରିବା ପାଇଁ ଦିଆଯାଏ । ଏପରି କ୍ଷେତ୍ରରେ ମଧ୍ୟ ଜମା ଦେବାର ଫର୍ମ ପୂରଣ କରିବାକୁ ପଡ଼େ, ତେବେ ନଗଦ ଟଙ୍କା ଜମା ଦେବାର ଫର୍ମ ଓ ଏହି ଫର୍ମ ମଧ୍ୟରେ ସାମାନ୍ୟ ପାର୍ଥକ୍ୟ ଥାଏ ।

କେବଳ ନିର୍ଦ୍ଦିଷ୍ଟ ଦୀର୍ଘ ମିଆଦି ଜମା ବାବଦ ଟଙ୍କା ବ୍ୟାଙ୍କରୁ ଉଠାଇବା ନିମନ୍ତେ ବ୍ୟାଙ୍କରୁ ମିଳିଥିବା ଜମାର ରସିଦ ଦାଖଲ କରିବାକୁ ପଡ଼େ ନଚେତ୍ ଉଭୟ ସଞ୍ଚୟ ଜମା ଓ ଚଳନ୍ତି ଜମା ହିସାବରୁ ଟଙ୍କା ଉଠାଇବା ନିମନ୍ତେ ଚେକ୍ ବ୍ୟବହୃତ ହୁଏ । ଏହି ଚେକ୍‌ର ଏକ ନମୁନା ପ୍ରଦତ୍ତ ହୋଇଛି । କୌଣସି ନିର୍ଦ୍ଦିଷ୍ଟ ବ୍ୟକ୍ତିଙ୍କୁ କିମ୍ବା ତାଙ୍କର ଆଦେଶ ଅନୁଯାୟୀ ଅନ୍ୟ କାହାରିକୁ କିମ୍ବା ବାହକକୁ ଏକ ନିର୍ଦ୍ଦିଷ୍ଟ ପରିମାଣର ଟଙ୍କା ଦେବା ନିମନ୍ତେ ଚେକ୍ ବ୍ୟାଙ୍କ୍ ପ୍ରତି ଏକ ସର୍ତ୍ତବିହୀନ ଲିଖିତ ଆଦେଶ ।

ଚେକ୍ ଲେଖିବାବେଳେ ଏହାର ପ୍ରତିଲିପି ମଧ୍ୟ ଲେଖାଯାଏ । ଅବଶ୍ୟ ଏହି ପ୍ରତିଲିପି ଚେକ୍ ବହିରେ ଗଚ୍ଛିତକାରୀଙ୍କର ସ୍ମରଣିକା ସ୍ୱରୂପ ରଖାଯାଏ । ଚେକ୍ ଲେଖିଲାବେଳେ ପ୍ରଥମେ କୋଡ୍ ନମ୍ବର (ବ୍ୟାଙ୍କ ଦ୍ୱାରା ପ୍ରଦତ୍ତ) ଲେଖାଯାଏ । ଯେଉଁଦିନ ଚେକ୍ ଲେଖାଯାଇଛି ତାହାର ତାରିଖ ନିର୍ଭୁଲ ଭାବରେ ଲେଖିବା ଆବଶ୍ୟକ । ଯାହାଙ୍କୁ ଟଙ୍କା ଦିଆଯିବ ତାଙ୍କର ନାମ ପରିଷ୍କାର ଭାବରେ ଲେଖାଯିବ, ଯେତେ ଟଙ୍କା ଦିଆଯିବ ତାହା ଉଭୟ ଅକ୍ଷରରେ ଓ ଅଙ୍କରେ ଲେଖାଯିବ । ଗଚ୍ଛିତକାରୀ ଡାହାଣ ପଟ ତଳେ ନିଜେ ସ୍ୱାକ୍ଷର କରିବେ । ତାଙ୍କର ସ୍ୱାକ୍ଷର ବ୍ୟାଂକରେ ଥିବା ତାଂକର ନମୁନା ସ୍ୱାକ୍ଷର ସହିତ ମିଶିବା ଆବଶ୍ୟକ ନଚେତ୍ ବ୍ୟାଂକ ଚେକ୍ ବାବଦ ଟଂକା ଦେବେ ନାହିଁ । ବ୍ୟବହୃତ ନ ହୋଇଥିବା ଚେକ୍‌ଗୁଡ଼ିକ ନିରାପଦ ସ୍ଥାନରେ ରଖିବା ଗଚ୍ଛିତକାରୀଙ୍କ ପକ୍ଷରେ ସର୍ବଦା ବାଞ୍ଛନୀୟ । ଏହି ଚେକ୍ ବହିରୁ ଖଣ୍ଡିଏ ଚେକ୍ ଚୋରିଗଲେ ବି ଗଚ୍ଛିତକାରୀଙ୍କର ସ୍ୱାକ୍ଷର ଜାଲ କରି ତାଂକ ଜମା ଟଂକାରୁ ବହୁ ଟଂକା ଚୋରି ନେଇଯାଇ ପାରେ ।

## ଚେକ୍‌ରେ ରେଖା ଅଙ୍କନ :

ଚେକ୍‌ର ନିରାପତ୍ତା ସକାଶେ ଚେକ୍‌କୁ ଅନେକ ସମୟରେ ରେଖାଙ୍କିତ କରାଯାଏ । ସାଧାରଣତଃ ଚେକ୍‌ର ବାମ ପଟ ଉପର କଣରେ ଦୁଇଟି ସମାନ୍ତର ସରଳ ରେଖା ତର୍ଯ୍ୟକ୍ ଭାବରେ ଟାଣିଲେ ଚେକ୍ ରେଖାଙ୍କିତ ହୁଏ । ଚେକ୍‌କୁ ରେଖାଙ୍କିତ କଲେ ତାହାକୁ ବ୍ୟାଂକର କାଉଣ୍ଟରରେ ଭଙ୍ଗାଇ ହୁଏ ନାହିଁ । ପ୍ରଥମେ ଏହାକୁ କାହାର ହିସାବରେ ଜମା କରିବାକୁ ପଡ଼େ ଏବଂ ଅନ୍ୟ ଚେକ୍ ସାହାଯ୍ୟରେ ଯାହାଙ୍କ ହିସାବରେ ଟଂକା ଜମା ଥାଏ ସେ ତାହା ଉଠାଇ ପାରନ୍ତି । ରେଖାଅଂକନ ବହୁ ପ୍ରକାରର ହୋଇପାରେ ତାହାର ନମୁନା ନିମ୍ନରେ ପ୍ରଦତ୍ତ ହେଲା ।




(୧), (୨), (୩) ଓ (୪)କୁ ସାଧାରଣ ରେଖାଙ୍କନ ଓ (୫)କୁ ସ୍ୱତନ୍ତ୍ର ରେଖାଙ୍କନ କୁହାଯାଏ । (୧) ଓ (୨) କ୍ଷେତ୍ରରେ ଯେ କୌଣସି ବ୍ୟକ୍ତି ଯେ କୌଣସି ବ୍ୟାଂକ ଜରିଆରେ ଏହି ଚେକ୍ ବାବଦ ଟଂକା ଉଠାଇ ପାରନ୍ତି । (୩) କ୍ଷେତ୍ରରେ ଚେକ୍‌ରେ ଲେଖିଥିବା ପ୍ରାପ୍ୟ ତାଂକ ବ୍ୟାଂକ ଜରିଆରେ ଏହି ଚେକ୍ ବାବଦ ଟଙ୍କା ଉଠାଇ

ପାରିବେ । ସେ ଏହାକୁ ଅନ୍ୟ କାହାରିକୁ ମଧ୍ୟ ହସ୍ତାନ୍ତର କରିପାରିବେ । ମାତ୍ର ଏହା ଚେକ୍ ଦେଉଥିବା ବ୍ୟକ୍ତିଙ୍କୁ ସତର୍କ କରାଇ ଦିଏ । ସେ ଯାହାଠାରୁ ଚେକ୍ଟି ପାଉଛନ୍ତି ତାଙ୍କର ଯଦି ଚେକ୍ ଉପରେ ସ୍ୱତ୍ୱ ନ ଥାଏ କିମ୍ବା ସ୍ୱତ୍ୱ ଦୋଷଯୁକ୍ତ ହୁଏ ତାହେଲେ ସେ ଯାହାଙ୍କୁ ଚେକ୍ଟି ଦେବେ ତାଙ୍କର ମଧ୍ୟ ସ୍ୱତ୍ୱ ଦୋଷଯୁକ୍ତ ହେବ ଏବଂ ଆବଶ୍ୟକ ହେଲେ ସେ ଚେକ୍ ବାବଦ ଟଙ୍କା ଫେରସ୍ତ ଦେବାକୁ ବାଧ୍ୟ ହେବେ । (ୱ) କ୍ଷେତ୍ରରେ ଏହି ଚେକ୍କୁ ପ୍ରାପକ କେବଳ ନିଜେ ନିଜ ବ୍ୟାଙ୍କ୍ରେ ଜମା ଦେଇ ପାରିବେ, ସେ ଅନ୍ୟ କାହାରିକୁ ଏହି ଚେକ୍ ହସ୍ତାନ୍ତର କରିପାରିବେ ନାହିଁ । (ଝ) କ୍ଷେତ୍ରରେ ଏହି ଚେକ୍ଟି କେବଳ ଷ୍ଟେଟ୍ ବ୍ୟାଂକ ଅଫ୍ ଇଣ୍ଡିଆ ବ୍ୟାଙ୍କ୍ରେ ଜମା ହୋଇ ପାରିବ । ଅନ୍ୟ କୌଣସି ବ୍ୟାଙ୍କ୍ ଏହି ଚେକ୍ ବାବଦ ଟଙ୍କା ଅଦାୟ କରି ପାରିବେ ନାହିଁ । (ଞ) ବ୍ୟତୀତ ଅନ୍ୟ ସବୁ କ୍ଷେତ୍ରରେ ଯଦି ଜଣେ ବ୍ୟକ୍ତି ବିଶ୍ୱାସରେ କୌଣସି ମୂଲ୍ୟବାନ ବସ୍ତୁ ବା ସେବା ପରିବର୍ତ୍ତେ ଏହି ଚେକ୍ ପାଇଥାନ୍ତି ତା ହେଲେ ଏହି ଚେକ୍ ଉପରେ ତାଂକର ସ୍ୱତ୍ୱ ସୁଦୃଢ଼ ରହିବ ।

## ଚେକ୍ ପୃଷ୍ଠାଙ୍କନ କରିବା :

ଚେକ୍ର ପଛ ପଟେ ଉପଯୁକ୍ତ ନିର୍ଦ୍ଦେଶ ଦେଇ ସ୍ୱାକ୍ଷର କଲେ ଚେକ୍ ପୃଷ୍ଠାଙ୍କିତ କରାହୁଏ । ମନେକର 'କ' 'ଖ'ଙ୍କୁ ଚେକ୍ଟି ଦେବାକୁ ଇଚ୍ଛୁକ । ସେ ନିମ୍ନଲିଖିତ ରୂପେ ପୃଷ୍ଠାଂକନ କରିବେ ।

'ଖ'ଙ୍କୁ ଟଙ୍କା ଦିଅ ।

'କ'

ପୃଷ୍ଠାଙ୍କନରେ କେବଳ ଅନ୍ୟ କାହାରିକୁ ଚେକ୍ ବାବଦ ଟଙ୍କା ଦେବାପାଇଁ ନିର୍ଦ୍ଦେଶ ଥାଏ । ଚେକ୍ର ସ୍ୱତ୍ୱାଧିକାରୀ ବା ଧାରକ ପୃଷ୍ଠାଙ୍କନ ନିମ୍ନରେ ସ୍ୱାକ୍ଷର କରନ୍ତି ଏବଂ ଯାହାଙ୍କର ନାମ ପୃଷ୍ଠାଙ୍କନରେ ଲେଖାଯାଏ ତାହାଙ୍କୁ ଚେକ୍ଟି ହସ୍ତାନ୍ତର କରନ୍ତି । ଧାରକଂକର ନାମ ଚେକ୍ରେ ଯେପରି ଭାବରେ ଲେଖାଥାଏ ସେ ପୃଷ୍ଠାଂକନ ନିମ୍ନରେ ଠିକ୍ ସେହିପରି ବର୍ଣ୍ଣନରେ ସ୍ୱାକ୍ଷର କରିବେ ।

ରେଖାଂକନରେ ଯଦି 'A/C payce only' ଲେଖାଥାଏ ତାହେଲେ ସେ ଚେକ୍ କେବଳ ପ୍ରାପକ ନିଜ ବ୍ୟାଙ୍କ୍ରେ ଜମା ଦେଇ ଟଂକା ଉଠାଇ ପାରିବେ, ସେ ପୃଷ୍ଠାଂକନ ମାଧ୍ୟମରେ ଅନ୍ୟ କାହାରିକୁ ସେହି ଚେକ୍ ହସ୍ତାନ୍ତର କରି ପାରିବେ ନାହିଁ । ଅନ୍ୟ ସବୁ କ୍ଷେତ୍ରରେ ଚେକ୍ଟି ପୃଷ୍ଠାଙ୍କନ ସାହାଯ୍ୟରେ ୬ ମାସ ମଧ୍ୟରେ ବହୁଥର ହସ୍ତାନ୍ତରିତ ହୋଇପାରେ । ଯଦି ଚେକ୍ର ପଛ ପଟରେ ପୃଷ୍ଠାଂକନ ନିମନ୍ତେ ସ୍ଥାନ ଅଭାବ ହୁଏ ତା ହେଲେ ଅନ୍ୟ ଖଣ୍ଡିଏ

କାଗଜ ତଳିରେ ଅଠା ଦେଇ ଯୋଡ଼ି ଦିଆଯାଇ ପାରେ । ଏହାକୁ ଅନୁପର୍ଣ୍ଣୀ କୁହାଯାଏ । ଏହାର ସତ୍ୟତା ପ୍ରମାଣ କରିବା ନିମନ୍ତେ ଯେଉଁ ଧାରକ ଚେକ୍‌ର ପଛପଟେ ଶେଷରେ ସ୍ୱାକ୍ଷର କରିବେ ଯେ ତାଙ୍କର ସ୍ୱାକ୍ଷରର କିଛି ଅଂଶ ଚେକ୍‌ର ପଛ ପଟେ ଓ ଅବଶିଷ୍ଟ ଅଂଶ ଯୋଡ଼ା ହୋଇଥିବା କାଗଜରେ କରିବେ । ଯେଉଁ ବ୍ୟକ୍ତି ଚେକ୍‌ର ପ୍ରଥମେ ପୃଷ୍ଠାଙ୍କନ କରନ୍ତି ସେ ପରବର୍ତ୍ତୀ ସମସ୍ତ ପୃଷ୍ଠାଙ୍କନକାରୀଙ୍କଠାରେ ଚେକ୍ ଲିଖିତ ଟଙ୍କା ସକାଶେ ଦାୟୀ ହୁଅନ୍ତି । ମନେକର ଗୋଟିଏ ଚେକ୍‌ର ଗ୍ରାହକ 'କ' । ସେ ଏହି ଚେକ୍‌ଟିକୁ 'ଖ'ଙ୍କୁ ଓ 'ଖ' 'ଗ'ଙ୍କୁ ଓ 'ଗ' 'ଘ'ଙ୍କୁ ପୃଷ୍ଠାଙ୍କନ କରିବା ପରେ ହସ୍ତାନ୍ତର କରିଛନ୍ତି । ଏ କ୍ଷେତ୍ରରେ ଚେକ୍‌ଟି ଯଦି ଅବଶେଷରେ ଅସମ୍ମାନିତ ହୁଏ ତାହାହେଲେ 'କ' ଏହି ଚେକ୍ ବାବଦ ଟଙ୍କା ସକାଶେ 'ଖ', 'ଗ' ଓ 'ଘ'ଙ୍କଠାରେ ଦାୟୀ ଅଟନ୍ତି । ସେହିପରି 'ଖ', 'ଗ' ଓ 'ଘ'ଙ୍କଠାରେ ଓ 'ଗ' କେବଳ 'ଘ'ଙ୍କଠାରେ ଦାୟୀ ରହିବେ ।

## ପାସ୍ ବହି :

ପୂର୍ବରୁ କୁହାଯାଇଛି ଯେ ଚଳିତଖାତା ବ୍ୟାଙ୍କରେ ଟଙ୍କା ଦେଲେ ବ୍ୟାଙ୍କ ତାହାଙ୍କୁ ଖଣ୍ଡେ ପାସ୍ ବହି ଦିଅନ୍ତି । ଏଥିରେ ବ୍ୟାଙ୍କ୍ ସହିତ ତାଙ୍କର କାରବାରର ବୃତ୍ତାନ୍ତ ଲିପିବଦ୍ଧ ହୋଇଥାଏ । ଅବଶ୍ୟ ଏହି ପାସ୍ ବହିରେ କେବଳ ବ୍ୟାଙ୍କ୍ ଲେଖିପାରିବେ, ଗଚ୍ଛିତକାରୀ ନୁହେଁ । ଏହାର ଏକ ନମୁନା ନିମ୍ନରେ ପ୍ରଦତ୍ତ ହେଲା ।

ଷ୍ଟେଟ ବ୍ୟାଙ୍କ୍ ଅଫ୍ ଇଣ୍ଡିଆରେ ନିର୍ମଳଚନ୍ଦ୍ର ସାବତ୍‌ଙ୍କର ଚଳନ୍ତି ହିସାବ

| ତାରିଖ | | ବିବରଣ | ଉଠାଣ ଟଙ୍କା | ଜମା ଟଙ୍କା | ଦାୟୀ କିମ୍ବା ପାଉଣା | ବାକି ଟଙ୍କା | ସ୍ୱାକ୍ଷର |
|---|---|---|---|---|---|---|---|
| ୧୯୭୮ ମାର୍ଚ୍ଚ | ୧ | ନଗଦ ଜମା କଲେ | | ୫୦୦ | ପାଉଣା | ୫୦୦ | |
| | ୩ | ଅନ୍ଧ୍ର ବ୍ୟାଙ୍କ୍‌ର ଚେକ୍ | | ୩୦୦ | ପାଉଣା | ୮୦୦ | |
| | ୪ | ଚେକ୍ ନଂ ୧୪୫୭ ନିଜ ସକାଶେ········ | ୧୦୦ | | ପାଉଣା | ୭୦୦ | |
| | ୭ | ନଗଦ ଜମା····· | | ୪୦୦ | ପାଉଣା | ୧,୧୦୦ | |
| | ୯ | ଚେକ୍ ନଂ ୧୪୫୮ —ରମେଶ ସିଂହ | ୩୦୦ | | ପାଉଣା | ୮୦୦ | |

## ଚେକ ଅସମ୍ମାନ କରିବା :

କେତେକ ପରିସ୍ଥିତିରେ ବ୍ୟାଙ୍କ୍ ଚେକ୍ ବାବଦ ଟଙ୍କା ନ ଦେଇ ଚେକ୍ ଫେରାଇ ଦିଅନ୍ତି । ଏହାକୁ ଚେକ୍ ଅସମ୍ମାନ କରାଗଲା ବୋଲି କୁହାଯାଏ । ବ୍ୟାଙ୍କ୍ ଯେଉଁ ପରିସ୍ଥିତିରେ ଚେକ୍ ଅସମ୍ମାନ କରନ୍ତି ତାହା ନିମ୍ନରେ ପ୍ରଦତ୍ତ ହେଲା ।

(୧) ଯଦି ଚେକ୍‌ର ଲେଖକ ଚେକ୍ ବାବଦ ଟଙ୍କା ନ ଦେବାକୁ ନିର୍ଦ୍ଦେଶ ଦେଇଥାଆନ୍ତି ।

(୨) ଚେକ୍ ଭଙ୍ଗାଇବା ପୂର୍ବରୁ ବ୍ୟାଙ୍କ୍ ଯଦି ଲେଖକଙ୍କର ମୃତ୍ୟୁ ସମ୍ବାଦ ପାଇଥାନ୍ତି ।

(୩) ଲେଖକ ଦେବାଳିଆ ହୋଇଛନ୍ତି ବୋଲି ଯଦି ବ୍ୟାଙ୍କ୍ ଖବର ପାଆନ୍ତି ।

(୪) ଯଦି ଲେଖକଙ୍କର ମସ୍ତିଷ୍କ ବିକୃତ ହୋଇଛି ବୋଲି ବ୍ୟାଙ୍କ୍ ଜାଣିପାରନ୍ତି ।

(୫) ଯଦି ଜମା ହିସାବରୁ ଟଙ୍କା ନ ନେବା ଲାଗି କୋର୍ଟ ବ୍ୟାଙ୍କ୍‌କୁ ନିର୍ଦ୍ଦେଶ ଦିଅନ୍ତି । ଏହାକୁ ଗାର୍ନିସି ଆଦେଶ କୁହାଯାଏ ।

ଉଲ୍ଲିଖିତ ପରିସ୍ଥିତିରେ ବ୍ୟାଙ୍କର କୌଣସି ସ୍ୱାତନ୍ତ୍ର୍ୟ ନ ଥାଏ । ବ୍ୟାଙ୍କ୍ ଚେକ୍ ଅସମ୍ମାନ କରିବାକୁ ବାଧ୍ୟ । ନିମ୍ନଲିଖିତ ପରିସ୍ଥିତିରେ ବ୍ୟାଙ୍କ୍ ଚେକ୍ ବାବଦ ଟଙ୍କା ନ ଦେଇ ପାରନ୍ତି ।

(୧) ଯଦି ଜମା ହିସାବରେ ଚେକ୍ ଭଙ୍ଗାଇବା ଲାଗି ଯଥେଷ୍ଟ ଟଙ୍କା ନ ଥାଏ ।

(୨) ଯଦି ଚେକ୍‌ରେ କୌଣସି ତାରିଖ ଦିଆଯାଇ ନ ଥାଏ କିମ୍ବା ଆଗାମୀ ତାରିଖ ଦିଆଯାଇ ଥାଏ କିମ୍ବା ଚେକ୍‌ରେ ୬ ମାସ ପୂର୍ବର ତାରିଖ ଦିଆଯାଇ ଥାଏ ।

(୩) ଯଦି ପ୍ରାପକର ନାମ ନିର୍ଦ୍ଦିଷ୍ଟ ସ୍ଥାନରେ ଲେଖା ନ ଥାଏ (ଯଥା 'କ' କିମ୍ବା 'ଖ'କୁ ୧୦୦ ଟଙ୍କା ଦିଅ ।)

(୪) ଯଦି ଅକ୍ଷରରେ ଲେଖାଥିବା ଟଙ୍କାର ପରିମାଣ ଅଙ୍କରେ ଲେଖାଥିବା ପରିମାଣଠାରୁ ପୃଥକ୍ ହୁଏ ।

(୫) ଯଦି ଲେଖକଙ୍କର ସ୍ୱାକ୍ଷର ଠିକ୍ ଭାବରେ ଲେଖାଯାଇ ନ ଥାଏ କିମ୍ବା ବ୍ୟାଙ୍କ୍ ନଥିରେ ଥିବା ନମୁନା ସ୍ୱାକ୍ଷର ସହିତ ଏହା ନ ମିଶେ ।

ଚେକ୍ ଅସମ୍ମାନିତ ହେଲେ ତାହା ଲେଖକଙ୍କର ଖ୍ୟାତିରେ ଆଞ୍ଚ୍ ଆଣେ । କୌଣସି ବ୍ୟବସାୟ ପ୍ରତିଷ୍ଠାନ ଲେଖିଥିବା ଚେକ୍ ଯଦି କୌଣସି କାରଣରୁ ଅସମ୍ମାନିତ ହୁଏ ତାହେଲେ ଲୋକେ ସେ ପ୍ରତିଷ୍ଠାନ ଉପରେ ଆସ୍ଥା ହରାନ୍ତି ଓ ତାଙ୍କ ସହିତ କୌଣସି

ନେଣଦେଣ କରିବାକୁ କୁଣ୍ଠାବୋଧ କରନ୍ତି । ଏହା ପ୍ରତିଷ୍ଠାନର ଦୋଷ ନୁହେଁ । ତେଣୁ ଚେକ୍ ଲେଖିଲାବେଳେ ଯଥେଷ୍ଟ ପରିମାଣରେ ସାବଧାନ ହେବା ଉଚିତ । ଅନ୍ୟ ଯଦି ବ୍ୟାଙ୍କ୍ ଭୁଲବଶତଃ ଚେକ୍ ଅସମ୍ମାନ କରିଥାଆନ୍ତି ତା ହେଲେ ସେ କ୍ଷତିପୂରଣ ଦେବାକୁ ବାଧ୍ୟ ହୁଅନ୍ତି ।

## ତ୍ରିକକ୍ଷ ବିଶିଷ୍ଟ ରେକର୍ଡ ବହି :

ପୂର୍ବରୁ ଦ୍ୱିକକ୍ଷ ବିଶିଷ୍ଟ ରେକର୍ଡ ବହିର ବର୍ଣ୍ଣନା ଦିଆଯାଇଛି । ତହିଁରେ ଗୋଟିଏ କକ୍ଷ ନଗଦ ଆଦାନ ପ୍ରଦାନ ନିମନ୍ତେ ଓ ଅନ୍ୟ କକ୍ଷଟି ପ୍ରଦେୟ ଓ ପ୍ରାପ୍ୟ ବଟ୍ଟା ନିମନ୍ତେ ବ୍ୟବହୃତ ହୁଏ । ତ୍ରିକକ୍ଷ ବିଶିଷ୍ଟ ରେକର୍ଡ ବହିରେ ବ୍ୟାଙ୍କ୍ ସହିତ ଆଦାନ ପ୍ରଦାନ ଲିପିବଦ୍ଧ କରିବା ନିମନ୍ତେ ଏଥିରେ ଆଉ ଗୋଟିଏ କକ୍ଷ ଯୋଗ କରାଯାଏ । ବ୍ୟାଙ୍କ୍‌ରେ ଯେଉଁ ଟଙ୍କା ଜମା ଦିଆଯାଏ ତାହା ଦାୟୀ ପାର୍ଶ୍ୱର ବ୍ୟାଙ୍କ୍ କକ୍ଷରେ ଲେଖାଯାଏ, ଯଦି ବ୍ୟାଙ୍କ୍‌ରୁ ଟଙ୍କା ଉଠାଇ ଆଣିବା ସକାଶେ ଚେକ୍ ଲେଖାଯାଏ ତା ହେଲେ ତାହା ଦାତା ପାର୍ଶ୍ୱର ବ୍ୟାଙ୍କ୍ କକ୍ଷରେ ଲେଖାଯାଏ । ଅନେକ ସମୟରେ ଗ୍ରାହକ କିମ୍ବା ଖାତକଠାରୁ ବ୍ୟବସାୟୀଙ୍କ ନିଜ ବ୍ୟାଙ୍କ୍‌କୁ ଆଦିଷ୍ଟ ଚେକ୍ କିମ୍ବା ଅନ୍ୟ ବ୍ୟାଙ୍କ୍ ଉପରେ ଲେଖାଯାଇଥିବା ଚେକ୍ ପୂର୍ବ ହିସାବ ବାବଦ (on accout) ବ୍ୟବସାୟୀ ପାଇଥାନ୍ତି । ଚେକ୍ ନ ଭଙ୍ଗାଇଲେ କୌଣସି କାର୍ଯ୍ୟରେ ଲାଗେ ନାହିଁ (ଅବଶ୍ୟ ପୃଷ୍ଠାଙ୍କିତ କରି ଏହାକୁ ବ୍ୟବହାର କରିଯାଇ ପାରେ, କିନ୍ତୁ ତାହା କ୍ୱଚିତ୍ କରାଯାଏ ।) ତେଣୁ ବ୍ୟବସାୟୀ ସେହି ଚେକ୍ ବାବଦ ଟଙ୍କା ଆଦାୟ କରିବା ନିମନ୍ତେ ତାହା ନିଜ ବ୍ୟାଙ୍କ୍‌ରେ ଜମା ଦିଅନ୍ତି । ଯଦି ଯେଉଁ ଦିନ ଚେକ୍‌ଟି ଗ୍ରାହକଙ୍କଠାରୁ ମିଳେ ସେହିଦିନ ତାହାକୁ ବ୍ୟାଙ୍କ୍‌କୁ ଆଦାୟ କରିବା ଉଦ୍ଦେଶ୍ୟରେ ପଠାଯାଏ ତା ହେଲେ ତାହା ସିଧା ଦୈନିକ ଦାୟୀ ପାର୍ଶ୍ୱରେ ଥିବା ବ୍ୟାଙ୍କ୍ କକ୍ଷରେ ଲିପିବଦ୍ଧ କରାଯାଏ । ମାତ୍ର ଯଦି ଚେକ୍‌ଟି ସେହିଦିନ ବ୍ୟାଙ୍କ୍‌କୁ ପଠା ନ ଯାଏ ତା ହେଲେ ତାହା ପ୍ରଥମେ ଦାୟୀ ପାର୍ଶ୍ୱରେ ଥିବା ନଗଦ ପରିମାଣ କକ୍ଷରେ ଲେଖାଯିବ ଓ ଯେଉଁ ଦିନ ତାହା ବ୍ୟାଙ୍କ୍‌କୁ ପଠାଯିବ ସେଦିନ ଦାତା ପାର୍ଶ୍ୱର ନଗଦ କକ୍ଷରେ ସେହି ଅଙ୍କ ଲେଖାଯିବ । ପୁଣି ଏହି ଅଙ୍କ ଦାୟୀ ପାର୍ଶ୍ୱରେ ଥିବା ବ୍ୟାଙ୍କ କକ୍ଷରେ ଲେଖାଯିବ । ଏହାକୁ ପ୍ରତିଲିପି କୁହାଯାଏ । ବ୍ୟବସାୟ ନିଜ ଦପ୍ତରରୁ ଯଦି କିଛି ନଗଦ ତହବିଲ ବ୍ୟାଙ୍କରେ ଜମା ଦେବା ନିମନ୍ତେ ପଠାନ୍ତି ତା ହେଲେ ମଧ୍ୟ ତାହା ଥରେ ଦାତା ପାର୍ଶ୍ୱରେ ନଗଦ କକ୍ଷରେ ଓ ପୁଣି ଥରେ ଦାୟୀ ପାର୍ଶ୍ୱର ବ୍ୟାଙ୍କ କକ୍ଷରେ ଲେଖାଯିବ । ଏହା ମଧ୍ୟ ପ୍ରତିଲିପି । ବ୍ୟାଙ୍କ୍‌ରୁ ଯଦି ଦପ୍ତର ସକାଶେ ଟଙ୍କା ଅଣାଯାଏ ତା ହେଲେ ଦାତା ପାର୍ଶ୍ୱର ବ୍ୟାଙ୍କ୍ କକ୍ଷରେ ଓ ଦାୟୀ ପାର୍ଶ୍ୱର ନଗଦ ତହବିଲ କକ୍ଷରେ ତାହା ଲିପିବଦ୍ଧ କରାଯିବ । ଏହା ମଧ୍ୟ ପ୍ରତିଲିପି । ଏହି ପ୍ରତିଲିପିଗୁଡ଼ିକ ଦ୍ୱିଲିଖିତ ହିସାବ ପଦ୍ଧତିର ନୀତି ପାଳନ କରିବା ଉଦ୍ଦେଶ୍ୟରେ କରାଯାଏ ।

ରୋକଡ଼ ବହିର ନଗଦ ତହବିଲ କକ୍ଷର ଯେପରି ବାକି ନିର୍ଣ୍ଣୟ କରାଯାଏ । ବ୍ୟାଙ୍କ୍ କକ୍ଷର ମଧ୍ୟ ବାକି ଠିକ ସେହିପରି ନିର୍ଣ୍ଣୟ କରାଯିବ । ଏଥିରେ ମଧ୍ୟ ଦାୟୀ ପାର୍ଶ୍ବର ମୋଟ ପରିମାଣ ଅଧିକାଂଶ ସମୟରେ ଦାତା ପାର୍ଶ୍ବର ମୋଟ ପରିମାଣଠାରୁ ଅଧିକ ହେବ । ଦୁଇଟି ପରିମାଣର ବ୍ୟବଧାନ ଦାତା ପାର୍ଶ୍ବରେ 'ବାକି ଗଡ଼ିଲା' ବାବଦ ଲେଖାଯିବ ଓ ପରବର୍ତ୍ତୀ କାଳର ରୋକଡ଼ ବହିରେ 'ପୂର୍ବ ବାକି ବାବଦ' ଦାୟୀ ପାର୍ଶ୍ବର ବ୍ୟାଙ୍କ୍ କକ୍ଷରେ ଲେଖାଯିବ । କେତେକ ସମୟରେ ବ୍ୟାଙ୍କ୍ କକ୍ଷର ଦାତା ପାର୍ଶ୍ବର ମୋଟ ପରିମାଣ ଦାୟୀ ପାର୍ଶ୍ବର ବ୍ୟାଙ୍କ୍ କକ୍ଷର ମୋଟ ପରିମାଣଠାରୁ ଅଧିକ ହୁଏ । ଏପରି ହେଲେ ବୁଝାଯିବ ଯେ ବ୍ୟାଙ୍କ୍‌ରେ ଯେତେ ଟଙ୍କା ଜମା ଅଛି ତାହା ଅପେକ୍ଷା ଅଧିକ ଟଙ୍କା ଉଠାଯାଇଛି । ଏହାକୁ ଅଧିକ ଉଠାଣ ବୁଝାଯାଏ । ଏ ସମ୍ପର୍କରେ ବ୍ୟାଙ୍କ୍ ସହିତ ପୂର୍ବରୁ ଚୁକ୍ତି ନ କଲେ ବ୍ୟାଙ୍କ୍ ଜମା ଅପେକ୍ଷା ଅଧିକ ଟଙ୍କା ଉଠାଇବାକୁ ଅନୁମତି ଦିଏ ନାହିଁ । ଏହା ଏକ ପ୍ରକାର ଋଣ ଓ ଏଥି ନିମନ୍ତେ ବ୍ୟବସାୟୀଙ୍କୁ ନିର୍ଦ୍ଦିଷ୍ଟ ହାରରେ ସୁଧ ଦେବାକୁ ପଡ଼େ । ଅଧିକ ଉଠାଣ କ୍ଷେତ୍ରରେ ଦାୟୀ ପାର୍ଶ୍ବର ବ୍ୟାଙ୍କ୍ କକ୍ଷରେ 'ବାକି ଗଡ଼ିଲା' ବାବଦ ଦୁଇ ପାର୍ଶ୍ବର ମୋଟ ପରିମାଣର ବ୍ୟବଧାନ ଲେଖାଯିବ ଓ ପରବର୍ତ୍ତୀ କାଳର ରୋକଡ଼ ବହିରେ ଏହା ଦାତା ପାର୍ଶ୍ବରେ 'ପୂର୍ବ ବାକି ବାବଦ' ଲିପିବଦ୍ଧ କରାଯିବ ।

ରୋକଡ଼ ବହିର ନଗଦ ତହବିଲ କକ୍ଷରୁ ଯେପରି ଭାବରେ ଖତିୟାନ ହିସାବ ପ୍ରସ୍ତୁତ କରାଯାଏ ବ୍ୟାଙ୍କ୍ କକ୍ଷରୁ ମଧ୍ୟ ଠିକ୍ ସେହିପରି ଖତିୟାନ ହିସାବ ପ୍ରସ୍ତୁତ କରାଯାଏ । ମନୋଜର ହରି ଭୂମକୁ ୨୦୦ ଟଙ୍କାର ଗୋଟିଏ ଚେକ୍ ଦେଲେ । ଏହା ସଙ୍ଗେ ସଙ୍ଗେ ବ୍ୟାଙ୍କ୍‌କୁ ପଠାଗଲା । ଏହି ନେଣଦେଣଟି ରୋକଡ଼ ବହିର ଦାୟୀ ପାର୍ଶ୍ବରେ ହରିଙ୍କ ହିସାବ ବାବଦ ଲେଖାଯାଇ ବ୍ୟାଙ୍କ୍ କକ୍ଷରେ ଅଙ୍କ ଲେଖାଯିବ । ଖତିୟାନ ହିସାବ କଲାବେଳେ ହରିଙ୍କ ହିସାବର ଦାତା ପାର୍ଶ୍ବରେ ଚେକ୍ ବାବଦ ୨୦୦ ଟଙ୍କା ଲେଖାଯିବ । ରୋକଡ଼ ବହିର ଦାୟୀ ପାର୍ଶ୍ବରେ ଯାହାଙ୍କଠାରୁ ବା ଯେଉଁ ହିସାବ ବାବଦ ଚେକ୍ ମିଳିଛି ବୋଲି ଲେଖାଥିବା ସେହି ବ୍ୟକ୍ତି ବା ହିସାବକୁ ଖତିୟାନରେ ଦାତା କରାଯିବ । ସେହିପରି ରୋକଡ଼ ବହିର ଦାତା ପାର୍ଶ୍ବରେ ଯେଉଁ ବ୍ୟକ୍ତି ବା ହିସାବ ବାବଦ ଚେକ୍ ଦିଆଯାଇଛି ଖତିୟାନରେ ସେହି ବ୍ୟକ୍ତି ବା ହିସାବକୁ ଦାୟୀ କରାଯିବ । ଯଦି ଘରଭଡ଼ା ବାବଦ ୧୫୦ ଟଙ୍କାର ଗୋଟିଏ ଚେକ୍ ଘରର ମାଲିକଙ୍କୁ ଦିଆଯାଇଥାଏ ତା ହେଲେ ଖତିୟାନରେ ଘରଭଡ଼ା ହିସାବ ୧୫୦ ଟଙ୍କା ନିମନ୍ତେ ଦାୟୀ ହେବ ।

ପୂର୍ବରୁ ବୁଝାଯାଇଛି ଯେ ନଗଦ ତହବିଲ ଓ ବ୍ୟାଙ୍କ୍ ମଧ୍ୟରେ ଯଦି କୌଣସି ଆଦାନ ପ୍ରଦାନ ହୁଏ ତା ହେଲେ ସେଥିନିମନ୍ତେ ଖତିୟାନରେ କୌଣସି ପ୍ରକାର ହିସାବରେ ତାହା ଲିପିବଦ୍ଧ କରାଯିବ ନାହିଁ । ଏହି ପ୍ରକାର ନେଣଦେଣର ଦ୍ୱୈଲିଖନ ନୀତି, ପ୍ରତିଲିପି ଦ୍ୱାରା ସମ୍ପାଦିତ ହୁଏ ।

ଚେକ୍‌ର ଆଦାନପ୍ରଦାନ କାଳରେ ବଟ୍ଟା ଛାଡ଼ିବା ବା ବଟ୍ଟା ପାଇବା କ୍ୱଚିତ୍ ଘଟେ । ତେବେ ଯଦି ବଟ୍ଟା ଦିଆଯାଏ କିମ୍ବା ମିଳେ ତା ହେଲେ ତାହା ଯଥାକ୍ରମେ ଦାସ୍ତ୍ରୀ ଓ ଦାତା ପାର୍ଶ୍ୱରେ ବଟ୍ଟା କକ୍ଷରେ ଲିପିବଦ୍ଧ କରାଯିବ । ନଗଦ ନେଣଦେଣରେ ବଟ୍ଟା ଯେପରି ଲିପିବଦ୍ଧ ହୁଏ ଚେକ୍ ନେଣଦେଣରେ ମଧ୍ୟ ସେହି ପ୍ରଣାଳୀ ଅନୁସୃତ ହୁଏ ।

ତ୍ରିକକ୍ଷ ବିଶିଷ୍ଟ ରୋକଡ଼ ବହିର ଦୃଷ୍ଟାନ୍ତ ନିମ୍ନରେ ପ୍ରଦତ୍ତ ହେଲା ।

## ଦୃଷ୍ଟାନ୍ତ (୭)

ନିମ୍ନଲିଖିତ ନେଣଦେଣରୁ ଘନଶ୍ୟାମ ସାହୁଙ୍କର ତ୍ରିକକ୍ଷ ବିଶିଷ୍ଟ ରୋକଡ଼ ବହି ପ୍ରସ୍ତୁତ କର ।

୧୯୭୨

ମାର୍ଚ୍ଚ ୧ ହାତରେ ଥିବା ନଗଦ ତହବିଲ ୫୦୦ ଟଙ୍କା ବ୍ୟାଙ୍କରେ ଗଚ୍ଛିତ ୪,୫୫୦ ଟଙ୍କା

୧ କର୍ମଚାରୀଙ୍କୁ ଚେକ୍‌ରେ ବେତନ ଦିଆଗଲା—୪୦୦ ଟଙ୍କା

୨ ହରି ମିଶ୍ରଙ୍କୁ ପୂର୍ବ ବାକି ବାବଦ ୨୧୦ ଟଙ୍କା ଦିଆଗଲା, ସେ ୧୦ ଟଙ୍କା ବଟ୍ଟା ଛାଡ଼ିଲେ ।

୩ ନବକୃଷ୍ଣ ପୂର୍ବ ବାକୀ ବାବଦ ୬୧୫ ଟଙ୍କା ସ୍ଥଳେ ୬୦୦ ଟଙ୍କା ଦେଲେ ।

୩ ନଗଦ ମୂଲ୍ୟରେ ପଣ୍ୟ କ୍ରୟ କରାଗଲା ୫୦୦ ଟଙ୍କା

୩ ଗାଡ଼ିଭଡ଼ା ଦିଆଗଲା ୧୦ ଟଙ୍କା

୪ ନଗଦ ମୂଲ୍ୟରେ ପଣ୍ୟ ବିକ୍ରୟ ହେଲା, ୧,୫୦୦ ଟଙ୍କା

୪ ବ୍ୟାଙ୍କ୍‌ରେ ଜମା ଦିଆଗଲା, ୧,୨୦୦ ଟଙ୍କା

୫ ପୂର୍ବବାକୀ ବାବଦ ନରହରି ୫୦୦ ଟଙ୍କା ସ୍ଥଳେ ୩୮୫ ଟଙ୍କାର ଚେକ୍ ଦେଲେ, ଚେକଟି ସେହିଦିନ ବ୍ୟାଙ୍କ୍‌କୁ ପଠାଗଲା ।

୫ ନଗଦ ମୂଲ୍ୟରେ ଆସବାବ୍ କ୍ରୟ କରାଗଲା, ୫୫୦ ଟଙ୍କା

୬ ବ୍ୟାଙ୍କ୍‌ରୁ ଦପ୍ତର ସକାଶେ ଟଙ୍କା ଅଣାଗଲା, ୫୦୦ ଟଙ୍କା

୬ ନରହରିଙ୍କ ଚେକ୍ ଅସମ୍ମାନିତ ହୋଇ ଫେରସ୍ତ ଆସିଲା ।

ଗ୍ରହୀତା ପ୍ରାପ୍ତି ଶ୍ରୀ ଘନଶ୍ୟାମ ସାହୁଙ୍କର ରୋକଡ଼ ବହି ପରିଶୋଧ ଦାତା

| ତାରିଖ | ବିବରଣ | ଖ: ପୃ: | ବଟ୍ଟା ଟଙ୍କା | ନଗଦ ଟଙ୍କା | ବ୍ୟାଙ୍କ୍ ଟଙ୍କା | ତାରିଖ | ବିବରଣ | ଖ: ପୃ: | ବଟ୍ଟା ଟଙ୍କା | ନଗଦ ଟଙ୍କା | ବ୍ୟାଙ୍କ୍ ଟଙ୍କା |
|---|---|---|---|---|---|---|---|---|---|---|---|
| ୧୯୭୨ ମାର୍ଚ୍ଚ ୧ | ପୂର୍ବ ବାକି ବାବଦ | | | ୫୦୦ | ୪,୫୫୦ | ୧୯୭୨ ମାର୍ଚ୍ଚ ୧ | ବେତନ ହିସାବ ବାବଦ | | | | ୪୦୦ |
| ,, ୩ | ନବକୃଷ୍ଣଙ୍କ ହିସାବ ବାବଦ | | ୧୫ | ୭୦୦ | | ,, ୨ | ହରି ମିତ୍ରଙ୍କ ହିସାବ ବାବଦ | | ୧୦ | ୨୯୦ | |
| ,, ୪ | ବିକ୍ରୟ ହିସାବ ବାବଦ | | | ୧,୫୦୦ | | ,, ୩ | କ୍ରୟ ହିସାବ ବାବଦ | | | ୫୦୦ | |
| ,, ୪ | ନଗଦ ଉଠାଣ ବାବଦ | ପ୍ର | | | ୧,୨୦୦ | ,, ୩ | ଗାଡ଼ିଭଡ଼ା ହିସାବ ବାବଦ | | | ୧୦ | |
| ,, ୫ | ନରହରିଙ୍କ ହିସାବ ବାବଦ | | ୧୫ | | ୪୮୫ | ,, ୪ | ବ୍ୟାଙ୍କ୍ ହିସାବ ବାବଦ | ପ୍ର | | ୧,୨୦୦ | |
| ,, ୬ | ବ୍ୟାଙ୍କ୍ ହିସାବ ବାବଦ | ପ୍ର | | ୫୦୦ | | ,, ୫ | ଆସ୍‌ବାବ୍ ହିସାବ ବାବଦ | | | ୫୫୦ | |
| | | | | | | ,, ୬ | ନଗଦ ଉଠାଣ ବାବଦ | ପ୍ର | | | ୫୦୦ |
| | | | | | | ,, ୬ | ନରହରିଙ୍କ ହିସାବ ବାବଦ | | ୧୫ | | ୪୮୫ |
| | | | | | | ,, ୭ | ବାକି ଗଡ଼ନ୍ତି | | | ୫୫୦ | ୪,୮୫୦ |
| | | | ୩୦ | ୩,୨୦୦ | ୬,୩୩୫ | | | | ୨୫ | ୩,୧୦୦ | ୬,୩୩୫ |
| ୧୯୭୨ ମାର୍ଚ୍ଚ ୭ | ପୂର୍ବ ବାକି ବାବଦ | | | ୫୫୦ | ୪,୮୫୦ | | | | | | |

## ଦୃଷ୍ଟାନ୍ତ (୮)

ଉକ୍ତ ଦୃଷ୍ଟାନ୍ତରେ ପ୍ରସ୍ତୁତ ହୋଇଥିବା ରୋକଡ଼ ବହିରୁ ଖତିୟାନ ହିସାବ ପ୍ରସ୍ତୁତ କର ।

ଦାୟୀ — ନବକୃଷ୍ଣଙ୍କର ହିସାବ — ଦାତା

| ତାରିଖ | ବିବରଣ | ରୋ ପୃ | ପରିମାଣ ଟଙ୍କା | ତାରିଖ | ବିବରଣ | ରୋ ପୃ | ପରିମାଣ ଟଙ୍କା |
|---|---|---|---|---|---|---|---|
| | | | | ୧୯୭୨ ମାର୍ଚ୍ଚ-୩ | ନଗଦ ତହବିଲ ବାବଦ | | ୭୦୦ |
| | | | | ,, ୩ | ବଟ୍ଟା ବାବଦ | | ୧୫ |

ଦାୟୀ — ବିକ୍ରୟ ହିସାବ — ଦାତା

| ତାରିଖ | ବିବରଣ | ରୋ ପୃ | ପରିମାଣ | ତାରିଖ | ବିବରଣ | ରୋ ପୃ | ପରିମାଣ |
|---|---|---|---|---|---|---|---|
| | | | ଟଙ୍କା | ୧୯୭୨ ମାର୍ଚ୍ଚ-୪ | ନଗଦ ତହବିଲ ବାବଦ | | ଟଙ୍କା ୧,୫୦୦ |

ଦାୟୀ — ନରହରିଙ୍କର ହିସାବ — ଦାତା

| ତାରିଖ | ବିବରଣ | ରୋ ପୃ | ପରିମାଣ | ତାରିଖ | ବିବରଣ | ରୋ ପୃ | ପରିମାଣ |
|---|---|---|---|---|---|---|---|
| | | | ଟଙ୍କା | | | | |
| ୧୯୭୨ ମାର୍ଚ୍ଚ-୭ | ବ୍ୟାଙ୍କ ବାବଦ | | ୪୮୫ | ୧୯୭୨ ମାର୍ଚ୍ଚ-[illegible] | ବ୍ୟାଙ୍କ ବାବଦ | | ୪[illegible]୫ |
| ,, ୭ | ବଟ୍ଟା ବାବଦ | | ୧୫ | ,, [illegible] | ବଟ୍ଟା ବାବଦ | | ୧୫ |

ଦାୟୀ ବେତନ ହିସାବ ଦାତା

| ତାରିଖ | ବିବରଣ | ଖେ. ପୃ | ପରିମାଣ | ତାରିଖ | ବିବରଣ | ଖେ. ପୃ | ପରିମାଣ |
|---|---|---|---|---|---|---|---|
| ୧୯୭୨ ମାର୍ଚ୍ଚ-୧ | ବ୍ୟାଙ୍କ ବାବଦ | | ଟଙ୍କା ୪୦୦ | | | | ଟଙ୍କା |

ଦାୟୀ ହରିମିଶ୍ରଙ୍କର ହିସାବ ଦାତା

| ତାରିଖ | ବିବରଣ | ଖେ. ପୃ | ପରିମାଣ | ତାରିଖ | ବିବରଣ | ଖେ. ପୃ | ପରିମାଣ |
|---|---|---|---|---|---|---|---|
| ୧୯୭୨ | | | ଟଙ୍କା | | | | ଟଙ୍କା |
| ମାର୍ଚ୍ଚ-୨ | ନଗଦ ତହବିଲ ବାବଦ | | ୨୯୦ | | | | |
| " ୨ | ବଟା ବାବଦ | | ୧୦ | | | | |

ଦାୟୀ କ୍ରୟ ହିସାବ ଦାତା

| ତାରିଖ | ବିବରଣ | ଖେ. ପୃ | ପରିମାଣ | ତାରିଖ | ବିବରଣ | ଖେ. ପୃ | ପରିମାଣ |
|---|---|---|---|---|---|---|---|
| ୧୯୭୨ ମାର୍ଚ୍ଚ-୩ | ନଗଦ ତହବିଲ ବାବଦ | | ଟଙ୍କା ୫୦୦ | | | | ଟଙ୍କା |

ଦାୟୀ — ଗାଡ଼ିଭଡ଼ା ହିସାବ — ଦାତା

| ତାରିଖ | ବିବରଣ | ରେ ପୃ: | ପରିମାଣ | ତାରିଖ | ବିବରଣ | ରେ ପୃ: | ପରିମାଣ |
|---|---|---|---|---|---|---|---|
| ୧୯୭୨ ମାର୍ଚ୍ଚ ୩ | ନଗଦ ତହବିଲ ବାବଦ | | ଟଙ୍କା ୧୦ | | | | ଟଙ୍କା |

ଦାୟୀ — ଅସବାବ୍ ହିସାବ — ଦାତା

| ତାରିଖ | ବିବରଣ | ରେ ପୃ: | ପରିମାଣ | ତାରିଖ | ବିବରଣ | ରେ ପୃ: | ପରିମାଣ |
|---|---|---|---|---|---|---|---|
| ୧୯୭୨ ମାର୍ଚ୍ଚ-୫ | ନଗଦ ତହବିଲ ବାବଦ | | ଟଙ୍କା ୫୫୦ | | | | ଟଙ୍କା |

ଦାୟୀ — ପ୍ରଦତ୍ତ ବଟି ହିସାବ — ଦାତା

| ତାରିଖ | ବିବରଣ | ରେ ପୃ: | ପରିମାଣ | ତାରିଖ | ବିବରଣ | ରେ ପୃ: | ପରିମାଣ |
|---|---|---|---|---|---|---|---|
| ୧୯୭୨ ମାର୍ଚ୍ଚ ୩୧ | ବିବିଧ ହିସାବ ବାବଦ | | ଟଙ୍କା ୩୦ | | | | ଟଙ୍କା |

| ଦାୟୀ | | | | ପ୍ରାପ୍ତ ବଟା ହିସାବ | | | ଦାତା |
|---|---|---|---|---|---|---|---|
| ତାରିଖ | ବିବରଣ | ଖେ. ପୃ. | ପରିମାଣ | ତାରିଖ | ବିବରଣ | ଖେ. ପୃ. | ପରିମାଣ |
| | | | ଟଙ୍କା | ୧୯୭୨ ମାର୍ଚ୍ଚ ୧ | ବିବିଧ ହିସାବ ବାବଦ | | ଟଙ୍କା ୨୫ |

## ବିଶେଷ ଦ୍ରଷ୍ଟବ୍ୟ :

(୧) ଯେତେବେଳେ ପ୍ରଥମେ ନରହରିଙ୍କଠାରୁ ମାର୍ଚ୍ଚ ୫ ତାରିଖରେ ୪୮୫ ଟଙ୍କାର ଚେକ୍ ମିଳିଲା ଓ ତାଙ୍କୁ ୧୫ ଟଙ୍କା ବଟି ବାବଦ ଛାଡ଼ ଦିଆଗଲା ସେତେବେଳେ ତାଙ୍କ ହିସାବକୁ ସେତିକି ଟଙ୍କା ଜମାରେ ଦାତା କରାଗଲା, ମାତ୍ର ମାର୍ଚ୍ଚ ୬ ତାରିଖରେ ସେ ଦେଇଥିବା ଚେକ୍‌ଟି ଯେତେବେଳେ ଅସମ୍ମାନିତ ହୋଇ ଫେରନ୍ତ ଆସିଲା, ସେତେବେଳେ ତାଙ୍କ ହିସାବକୁ ଯେତେ ପରିମାଣରେ ଦାତା କରାଯାଇଥିଲା ପୁଣି ସେତେ ପରିମାଣରେ ଦାୟୀ କରାଗଲା, ଅର୍ଥାତ୍ ଏହି ସନ୍ଦନ୍ତ୍ର ପୂର୍ବ ଲେଖାକୁ ନାକଚ କରାଗଲା । ତେଣୁ ଚେକ୍ ଦେବା ପୂର୍ବରୁ ସେ ଯେଉଁ ୫୦୦ ଟଙ୍କା ଜମାରେ ଋଣୀ ଥିଲେ ଚେକ୍ ଅସମ୍ମାନିତ ହୋଇ ଫେରନ୍ତ ଆସିବାରୁ ସେ ପୂର୍ବପରି ପୁଣି ୫୦୦ ଟଙ୍କା ସକାଶେ ଋଣୀ ରହିଲେ ।

(୨) ରୋକଡ଼ ବହିରେ ବଟି କକ୍ଷର ଉଭୟ ପାର୍ଶ୍ୱର କେବଳ ମୋଟ ପରିମାଣ ସ୍ଥିର କରାଯାଇଛି । ବାକି ନିର୍ଣ୍ଣୀତ ହୋଇ ନାହିଁ । ବାମ ପାର୍ଶ୍ୱର ମୋଟ ପରିମାଣ ପ୍ରଦତ୍ତ ବଟି ବୁଝାଉଥିବାରୁ ତାହା ଏକ କ୍ଷତି, ତେଣୁ ଏହି ପରିମାଣ ସକାଶେ ପ୍ରଦତ୍ତ ବଟି ହିସାବକୁ ଦାୟୀ କରାଗଲା । ସେହିପରି ଦାତା ପାର୍ଶ୍ୱରେ ଥିବା ବଟି, ପ୍ରାପ୍ତ ବଟି ହୋଇଥିବାରୁ ତାହା ଏକ ଲାଭ, ତେଣୁ ପ୍ରାପ୍ତ ବଟିର ମୋଟ ପରିମାଣ ଜମାରେ ପ୍ରାପ୍ତ ବଟି ହିସାବକୁ ଦାତା କରାଗଲା ।

## ବ୍ୟାଙ୍କ ହିସାବ ସମନ୍ୱୟ ବିବରଣ :

ବ୍ୟାଙ୍କ ପାସ୍ ବହି ଓ ରୋକଡ଼ ବହିରେ ଖୋଲା ଯାଇଥିବା ବ୍ୟାଙ୍କ କକ୍ଷରେ ଏକା କାରବାର ଲିପିବଦ୍ଧ ହୁଏ । ତେଣୁ ଏହି ଦୁଇଟି ହିସାବର ବାକି ସମାନ ହେବା ଉଚିତ, କିନ୍ତୁ ତାହା କ୍ୱଚିତ୍ ସମାନ ହେବାର ଦେଖାଯାଏ । ଏହି ଦୁଇଟି ବାକିର ଅମେଳ ଘଟିବାର କାରଣମାନ ନିମ୍ନରେ ପ୍ରଦତ୍ତ ହେଲା ।

(୧) ବ୍ୟବସାୟୀ ଅନ୍ୟ ବ୍ୟକ୍ତିଠାରୁ ପାଇଥିବା ଚେକ୍ ନିଜ ହିସାବରେ ଜମା ଦେବା ନିମନ୍ତେ ବ୍ୟାଙ୍କ୍‌କୁ ପଠାନ୍ତି । ଏହିପରି ଚେକ୍ ବ୍ୟାଙ୍କ୍‌କୁ ପଠାଇବା ମାତ୍ରେ ତାହା ରୋକଡ଼ ବହିର ଦାୟୀ ପାର୍ଶ୍ୱରେ ଥିବା ବ୍ୟାଙ୍କ୍ କକ୍ଷରେ ଲେଖାଯାଏ, ଅର୍ଥାତ୍ ବ୍ୟବସାୟୀଙ୍କର ବ୍ୟାଙ୍କ୍‌ରେ ଯେତେ ଟଙ୍କା ଚଚ୍ଛିତ ଥିଲା ତାହା ସହିତ ଏହି ଚେକ୍ ବାବଦ ଟଙ୍କା ମିଶି ଗଚ୍ଛିତ ଟଙ୍କାର ପରିମାଣ ବୃଦ୍ଧି ପାଇଲା । କିନ୍ତୁ ବ୍ୟାଙ୍କ୍ ସେହି ଚେକ୍ ବାବଦ ଟଙ୍କା ଯେଉଁ ବ୍ୟାଙ୍କ୍ ଉପରେ ତାହା କଟାଯାଇଛି ତାଙ୍କଠାରୁ ଅଦାୟ ନ କରିବା ପର୍ଯ୍ୟନ୍ତ ବ୍ୟବସାୟୀଙ୍କ ହିସାବରେ ତାହା ଜମା ଦେବେ ନାହିଁ । ଯଦି ଚେକଟି ସ୍ଥାନୀୟ ବ୍ୟାଙ୍କ୍ ଉପରେ କଟା ଯାଇଥାଏ ତା ହେଲେ ସେହି ଚେକ୍ ବାବଦ ଟଙ୍କା ଶୀଘ୍ର ଅଦାୟ ହୋଇ ପାରେ, ମାତ୍ର ଯଦି ଏହି ଚେକ୍ ଅନ୍ୟ ସ୍ଥାନର ବ୍ୟାଙ୍କ୍ ଉପରେ କଟା ହୋଇଥାଏ ତା ହେଲେ ତାହା ବାବଦ ଟଙ୍କା ଆଦାୟ ହେବାକୁ କିଛି ବିଳମ୍ବ ଘଟେ । ଇତି ମଧ୍ୟରେ ଯଦି ଗଚ୍ଛିତ ଜମାର ମୋଟ ପରିମାଣ ତୁଳନା କରାଯାଏ ତା ହେଲେ ରୋକଡ଼ ବହିର ବାକି ସହିତ ବ୍ୟାଙ୍କ୍ ପାସ୍ ବହିର ବାକି ମିଶିବ ନାହିଁ ।

(୨) ବ୍ୟବସାୟୀ ତାଙ୍କର ଋଣ ପରିଶୋଧ କରିବାକୁ ବା ଅନ୍ୟ କୌଣସି କାରଣରେ ଯେଉଁଦିନ ଅନ୍ୟ କାହାରିକୁ ନିଜ ବ୍ୟାଙ୍କ୍ ଉପରେ କଟା ଯାଇଥିବା ଚେକ୍ ପ୍ରଦାନ କରନ୍ତି ସେହି ଦିନ ତାହା ରୋକଡ଼ ବହିର ଦାତା ପାର୍ଶ୍ୱରେ ଥିବା ବ୍ୟାଙ୍କ୍ କକ୍ଷରେ ଲିପିବଦ୍ଧ କରନ୍ତି । ଅର୍ଥାତ୍ ବ୍ୟାଙ୍କ୍‌ରେ ତାଙ୍କର ଗଚ୍ଛିତ ଥିବା ଟଙ୍କାରୁ ସେ ଚେକ୍‌ରେ ଲେଖାଯାଇଥିବା ଟଙ୍କା ଊଣା କରନ୍ତି, କିନ୍ତୁ ବ୍ୟାଙ୍କ୍ ସଙ୍ଗେ ସଙ୍ଗେ ତାହା ପାସ୍ ବହିରେ ଲିପିବଦ୍ଧ କରିଦେ ନାହିଁ । ଚେକ୍‌ଟି ପାଇଥିବା ବ୍ୟକ୍ତି ବ୍ୟାଙ୍କ୍‌କୁ ସେହି ଚେକ୍ ବାବଦ ଟଙ୍କା ନେବା ପାଇଁ ଆସିଲେ ବା ତାଙ୍କଠାରୁ ସେହି ଚେକ୍ ଅନ୍ୟ କେହି ପାଇ ବ୍ୟାଙ୍କ୍‌ରେ ତାହା ଭଙ୍ଗାଇଲେ, ଅର୍ଥାତ୍ ଚେକ୍ ବାବଦ ଟଙ୍କା କାହାରିକୁ ଦେଲେ ବ୍ୟାଙ୍କ୍ ତାହା ପାସ୍ ବହିରେ ଲିପିବଦ୍ଧ କରିବେ, ତାହା ପୂର୍ବରୁ ନୁହେଁ । ଯେଉଁ ବ୍ୟକ୍ତି ବ୍ୟବସାୟୀଠାରୁ ଚେକ୍‌ଟି ପାଇଲେ ସେ ତାହାକୁ ୬ ମାସ ମଧ୍ୟରେ ଭଙ୍ଗାଇ ପାରିବେ । ତେଣୁ ଇତି ମଧ୍ୟରେ ଯଦି ପାସ୍ ବହିର ବାକି ସହିତ ରୋକଡ଼ ବହିର ବାକି ତୁଳନା କରାଯାଏ, ତାହେଲେ ଉଭୟ ବାକି ମଧ୍ୟରେ ପାର୍ଥକ୍ୟ ରହିବା ସ୍ୱାଭାବିକ ।

(୩) ଗଚ୍ଛିତ ଜମା ବାବଦ ବ୍ୟାଙ୍କ୍ ଯେଉଁ ସୁଧ ଦିଏ, ଅଧିକ ଉଠାଣ ବାବଦ ବ୍ୟାଙ୍କ୍ ଯେଉଁ ସୁଧ ନିଏ, ଅନ୍ୟ ବ୍ୟାଙ୍କ୍ ଉପରେ ଲେଖା ଯାଇଥିବା ଚେକ୍ ଆଦାୟ କରିବାକୁ ବ୍ୟାଙ୍କ୍ ଯେଉଁ କମିସନ୍ ନିଏ, ନିର୍ଦ୍ଦେଶ ଅନୁଯାୟୀ ବ୍ୟାଙ୍କ୍ ଯଦି କିଛି

କାର୍ଯ୍ୟ କରିଥାଏ ସେଥି ନିମନ୍ତେ ଯଦି କମିସନ୍ ନିଏ ତାହେଲେ ବ୍ୟାଙ୍କ୍ ତାହା ପାସ୍ ବହିରେ ପ୍ରଥମେ ଲିପିବଦ୍ଧ କରେ ଓ ଗଚ୍ଛିତକାରୀଙ୍କୁ ତାହା ପରେ ଜଣାଏ । ଏହି ସମ୍ବାଦ ପାଇଲା ପରେ ଗଚ୍ଛିତକାରୀ ତାହା ନିଜ ରେକର୍ଡ଼ ବହିରେ ଲିପିବଦ୍ଧ କରନ୍ତି । ତାହା ପୂର୍ବରୁ ଯଦି ବ୍ୟାଙ୍କ୍ ପାସ ବହିର ବାକୀ ସହିତ ରେକର୍ଡ଼ ବହିର ବାକୀ ତୁଳନା କରାଯାଏ, ତାହେଲେ ଉଭୟ ବାକୀ ମଧ୍ୟରେ ପାର୍ଥକ୍ୟ ଦେଖାଯିବ ।

(୪) ଯଦି ବ୍ୟାଙ୍କ୍ ଗଚ୍ଛିତକାରୀଙ୍କ ନିର୍ଦ୍ଦେଶ ଅନୁଯାୟୀ ସରକାରୀ କିମ୍ବା କୌଣସି କମ୍ପାନୀର ଋଣପତ୍ର ଅଥବା ଅଂଶପତ୍ର ବା ଲଭ୍ୟାଂଶ ବାବଦ ସୁଧ ଆଦାୟ କରନ୍ତି କିମ୍ବା ଗଚ୍ଛିତକାରୀଙ୍କ ହିସାବରେ ତାଙ୍କର କୌଣସି ଖାତକ ଟଙ୍କା ଜମା କରନ୍ତି ତାହେଲେ ବ୍ୟାଙ୍କ୍ ତାହା ସିଧା ସଳଖ ପାସ୍ ବହିରେ ପ୍ରଥମେ ଲିପିବଦ୍ଧ କରନ୍ତି ଓ ପରେ ଗଚ୍ଛିତକାରୀଙ୍କୁ ତାହା ଜଣାଇ ଦିଅନ୍ତି । ତେଣୁ ବ୍ୟାଙ୍କ୍ ଗଚ୍ଛିତକାରୀଙ୍କୁ ଏହି ସମ୍ବାଦ ଦେବା ପୂର୍ବରୁ ଯଦି ପାସ୍ ବହିର ବାକୀ ସହିତ ରେକର୍ଡ଼ ବହିର ବାକୀ ତୁଳନା କରାଯାଏ ତାହେଲେ ଦୁଇ ବାକୀ ମଧ୍ୟରେ ବ୍ୟବଧାନ ରହିବା ସୁନିଶ୍ଚିତ ।

## ବ୍ୟାଙ୍କ୍ ହିସାବ ସମନ୍ୱୟ ବିବରଣୀ ପ୍ରସ୍ତୁତ କରିବାର ନିୟମ :

ପ୍ରଥମେ ପାସ୍ ବହି ସହିତ ରେକର୍ଡ଼ ବହିରେ ଥିବା ବ୍ୟାଙ୍କ୍ ଖାତାର ପ୍ରତିଟି ଲେଖା ମିଳାଇବାକୁ ପଡ଼ିବ । ଯେଉଁଗୁଡ଼ିକ ମିଳିଯିବ ତହିଁରେ ପେନ୍‌ସିଲରେ ଦାଗ ଦିଆଯିବ । ଯେଉଁ ଲେଖାଗୁଡ଼ିକରେ ଦାଗ ପଡ଼ିବ ନାହିଁ ସେହିଗୁଡ଼ିକ ଅମେଳ ଘଟାଉଛି ବୋଲି ବୁଝିବାକୁ ହେବ । ବ୍ୟାଙ୍କ୍ ପାସ୍ ବହିରେ ଧବା ବାକୀ କିମ୍ବା ରେକର୍ଡ଼ ବହିର ବ୍ୟାଙ୍କ୍ ଖାତାର ବାକୀ, ଯେ କୌଣସି ଗୋଟିଏ ବାକୀକୁ ଭିତ୍ତି କରି ତହିଁରୁ ଅମେଳ ଘଟାଉଥିବା ସଂଖ୍ୟା ଗୁଡ଼ିକ ଯୋଗ ବା ବିୟୋଗ କରିବାକୁ ହେବ, ତାହେଲେ ଅନ୍ୟ ବାକୀଟି ନିରୂପିତ ହେବ ।

ଯଦି ଧରାଯାଏ ଯେ ରେକର୍ଡ଼ ବହିର ବ୍ୟାଙ୍କ୍ ଖାତାର ବାକୀକୁ ପ୍ରଥମେ ଲେଖି ସମନ୍ୱୟ ଆରମ୍ଭ କରାଯିବ ତାହେଲେ ନିମ୍ନଲିଖିତ ପଦ୍ଧତି ଅନୁସରଣ କରାଯିବ ।

(୧) ଯଦି ଅନ୍ୟ ବ୍ୟାଙ୍କ୍ ଉପରେ ଲେଖା ଯାଇଥିବା ଚେକ୍ ବ୍ୟାଙ୍କ୍ ହିସାବରେ ଜମା ହେବା ପାଇଁ ପଠାଯାଇଛି ଓ ତାହା ଆଦାୟ ହୋଇ ନାହିଁ, ତାହେଲେ ଚେକ୍ ବାବଦ ଟଙ୍କା ବ୍ୟାଙ୍କ୍ ଖାତାର ବାକୀରୁ ବିୟୋଗ କରାଯିବ ।

(୨) ଯଦି କୌଣସି ବ୍ୟକ୍ତିଙ୍କୁ ଦିଆଯାଇଥିବା ଚେକ୍ ବ୍ୟାଙ୍କ୍‌ରେ ସମ୍ପୃକ୍ତ ତାରିଖ ସୁଦ୍ଧା ଭଙ୍ଗା ନ ହୋଇଥାଏ ତାହେଲେ ଚେକ୍ ବାବଦ ଟଙ୍କା ବ୍ୟାଙ୍କ୍ ଜମାର ବାକି ସହିତ ଯୋଗ କରାଯିବ ।

(୩) ଯଦି ବ୍ୟାଙ୍କ୍ କମିସନ କିମ୍ବା ସୁଧ ବାବଦ କିଛି ଦାବୀ କରିଥାଆନ୍ତି ତାହେଲେ ଦାବୀର ମୋଟ ପରିମାଣ ବ୍ୟାଙ୍କ୍ ଜମାର ବାକିରୁ ବିୟୋଗ କରାଯିବ ।

(୪) ଯଦି ବ୍ୟାଙ୍କ୍ ଗଚ୍ଛିତକାରୀଙ୍କ ନିର୍ଦ୍ଦେଶ ଅନୁଯାୟୀ ଋଣପତ୍ରର କିମ୍ବା ଅଂଶପତ୍ରର ସୁଧ ଆଦାୟ କରିଥାଆନ୍ତି କିମ୍ବା ଯଦି ଗଚ୍ଛିତକାରୀଙ୍କର କୌଣସି ଗ୍ରାହକ ତାଙ୍କ ହିସାବରେ କିଛି ଟଙ୍କା ତାଙ୍କୁ ନ ଜଣାଇ ସିଧା ସଳଖ ଜମା କରି ଥାଆନ୍ତି ତାହେଲେ ମୋଟ ଟଙ୍କା ବ୍ୟାଙ୍କ୍ ଜମାର ବାକି ସହିତ ଯୋଗ କରାଯିବ ।

ଏହି ନିୟମ ଅନୁସରଣ କଲେ ବ୍ୟାଙ୍କ୍ ପାସ୍ ବହିରେ ଲେଖା ଥିବା ବାକି ନିର୍ଣ୍ଣୀତ ହେବ । ଏଥିପାଇଁ ଏକ ଦୃଷ୍ଟାନ୍ତ ନିମ୍ନରେ ପ୍ରଦତ୍ତ ହେଲା ।

## ଦୃଷ୍ଟାନ୍ତ (୯)

ରାଧାଶ୍ୟାମଙ୍କର ରେକଡ଼ ବହିର ବ୍ୟାଙ୍କ୍ ଜମାର ବାକି ୧୯୭୨ ସାଲ ମାର୍ଚ୍ଚ ୩୧ ତାରିଖରେ ୮,୯୦୦ ଟଙ୍କା ଥିଲା । ବ୍ୟାଙ୍କ୍ ପାସ୍ ବହି ସହିତ ବ୍ୟାଙ୍କ୍ ଜମାକୁ ତୁଳନା କରିବାରେ ନିମ୍ନଲିଖିତ ପାର୍ଥକ୍ୟ ଦେଖାଗଲା ।

(୧) ସେ ମାର୍ଚ୍ଚ ୨୫ ତାରିଖରେ ଦୁଃଖିଶ୍ୟାମଙ୍କଠାରୁ ପାଇଥିବା ୩୦୦ ଟଙ୍କାର ଖଣ୍ଡିଏ ଚେକ୍, ଯାହାକି ସହରର ବାହାରେ ଥିବା ଗୋଟିଏ ବ୍ୟାଙ୍କ୍ ଉପରେ ଲେଖା ହୋଇଥିଲା, ଆଦାୟ କରି ତାଙ୍କ ହିସାବରେ ଜମା ଦେବା ଲାଗି ବ୍ୟାଙ୍କ୍‌କୁ ପଠାଇଥିଲେ । କିନ୍ତୁ ମାର୍ଚ୍ଚ ୩୧ ତାରିଖ ସୁଦ୍ଧା ଚେକ୍ ବାବଦ ଟଙ୍କା ବ୍ୟାଙ୍କ୍ ଆଦାୟ କରି ହିସାବରେ ଜମା ଦେଇ ନାହାନ୍ତି ।

(୨) ମାର୍ଚ୍ଚ ୨୮ ତାରିଖରେ ସେ ପୂର୍ବ ବାକି ବାବଦ ସୁରେନ୍ଦ୍ର ନାଥଙ୍କୁ ୪୦୦ ଟଙ୍କାର ଖଣ୍ଡିଏ ଚେକ୍ ଦେଇଥିଲେ ; କିନ୍ତୁ ମାର୍ଚ୍ଚ ୩୧ ତାରିଖ ସୁଦ୍ଧା ସେ ତାହା ବ୍ୟାଙ୍କ୍‌ରେ ଭଙ୍ଗାଇ ନାହାନ୍ତି ।

(୩) ବ୍ୟାଙ୍କ୍ ବିଭିନ୍ନ ସେବା ନିମନ୍ତେ ୩୫ ଟଙ୍କା ଦାବୀ କରି ବ୍ୟାଙ୍କ୍ ପାସ୍ ବହିରେ ଲେଖିଛନ୍ତି ; କିନ୍ତୁ ରେକଡ଼ ବହିରେ ଏ ବିଷୟ ଲିପିବଦ୍ଧ ହୋଇନାହିଁ ।

(୪) ବ୍ୟାଙ୍କ୍ ରାଧାଶ୍ୟାମଙ୍କର ପୂର୍ବ ନିର୍ଦ୍ଦେଶ ଅନୁଯାୟୀ ସରକାରୀ ଋଣପତ୍ରର ସୁଧ ବାବଦ ୫୦ ଟଙ୍କା ତାଙ୍କ ହିସାବରେ ଜମା ଦେଇଛନ୍ତି ମାତ୍ର ରେକଡ଼ ବହିରେ ଏହା ଲିପିବଦ୍ଧ ହୋଇନାହିଁ ।

୧୯୭୬ ସାଲ ମାର୍ଚ୍ଚ ୩୧ ତାରିଖରେ ବ୍ୟାଙ୍କ୍ ପାସ୍ ବହିର ବାକି ନିର୍ଣ୍ଣୟ କର ।

**ସମାଧାନ :**

୧୯୭୬ ସାଲ ମାର୍ଚ୍ଚ ୩୧ ତାରିଖର ବ୍ୟାଙ୍କ୍ ହିସାବ ସମନ୍ୱୟ ବିବରଣୀ

| | ଟଙ୍କା | ଟଙ୍କା |
|---|---|---|
| ରେକଡ଼ ବହିର ବାକି ... ... | | ୮,୯୦୦ |
| ଯୋଗ କର : | | |
| ବ୍ୟାଙ୍କ୍ ଉପରେ ଲେଖାଯାଇଥିବା ଚେକ୍ ପ୍ରାପକ ଏ ପର୍ଯ୍ୟନ୍ତ ବ୍ୟାଙ୍କ୍‌ରେ ଭଙ୍ଗାଇ ନାହାନ୍ତି ...... | ୪୦୦ | |
| ଆଦାୟ ହୋଇଥିବା ଋଣ ପତ୍ରର ସୁଧ ରେକଡ଼ ବହିରେ ଲିପିବଦ୍ଧ ହୋଇ ନାହିଁ । .... ... | ୫୦ | ୪୫୦ |
| | | ୯,୩୫୦ |
| ବିୟୋଗ କର : | | |
| ଆଦାୟ କରି ଜମା ଦେବା ନିମନ୍ତେ ପଠାଯାଇଥିବା ଚେକ୍ ଆଦାୟ ହୋଇ ନାହିଁ । .... ... | ୩୦୦ | |
| ବ୍ୟାଙ୍କ୍ କମିସନ୍ ରେକଡ଼ ବହିରେ ଲେଖାଯାଇ ନାହିଁ । | ୩୫ | ୩୩୫ |
| ବ୍ୟାଙ୍କ୍ ପାସ୍ ବହିର ବାକି ... ... ... .... | | ୯,୦୧୫ |

ଯଦି ବ୍ୟାଙ୍କ୍ ପାସ୍ ବହିର ବାକି ଦିଆଯାଇଥାଏ ଓ ରେକଡ଼ ବହିର ବ୍ୟାଙ୍କ୍ କକ୍ଷର ବାକି ନିର୍ଣ୍ଣୟ କରିବାକୁ ପଡ଼େ ତାହେଲେ ଏହି ନିୟମର ଠିକ୍ ବିପରୀତ କାର୍ଯ୍ୟ କରିବାକୁ ହେବ । ଯେଉଁ ସଂଖ୍ୟାଗୁଡ଼ିକ ଯୋଗ କରାଗଲା ତାହା ବିୟୋଗ କରାଯିବ ଓ ଯାହା ବିୟୋଗ କରାଯାଇଥିଲା ତାହା ଯୋଗ କରାଯିବ । ଏହାର ଦୃଷ୍ଟାନ୍ତ ନିମ୍ନରେ ପ୍ରଦତ୍ତ ହେଲା ।

## ଦୃଷ୍ଟାନ୍ତ (୧୦)

ମନେକର ଯେ ପୂର୍ବ ଦୃଷ୍ଟାନ୍ତରେ ରେକର୍ଡ଼ ବହିର ବ୍ୟାଙ୍କ୍ କଷର ବାକି ଦିଆ ନ ହୋଇ ବ୍ୟାଙ୍କ୍ ପାସ୍ ବହିର ବାକି ୯,୦୧୫ ଟଙ୍କା ଦିଆଯାଇଛି । ଅନ୍ୟାନ୍ୟ ବିଷୟଗୁଡ଼ିକ ପୂର୍ବ ଦୃଷ୍ଟାନ୍ତ ସଙ୍ଗେ ସମାନ ଏବଂ ମନେକର ୧୯୭୧ ସାଲ ମାର୍ଚ୍ଚ ୩୧ ତାରିଖରେ ରେକର୍ଡ଼ ବହିର ବ୍ୟାଙ୍କ୍ କଷର ବାକି ନିର୍ଣ୍ଣୟ କର ।

## ସମାଧାନ :

୧୯୭୧ ସାଲ ମାର୍ଚ୍ଚ ୩୧ ତାରିଖର ବ୍ୟାଙ୍କ୍ ହିସାବ ସମନ୍ୱୟ ବିବରଣୀ

| | ଟଙ୍କା | ଟଙ୍କା |
|---|---|---|
| ବ୍ୟାଙ୍କ୍ ପାସ୍ ବହିର ବାକି ... | | ୯,୦୧୫ |
| ଯୋଗ କର : | | |
| ଆଦାୟ କରି ଜମା ଦେବା ନିମନ୍ତେ ଆସିଥିବା ଚେକ୍ ଆଦାୟ ହୋଇନାହିଁ ... .. | ୩୦୦ | |
| ଦାବୀ କରାଯାଇଥିବା କମିସନ୍ ରେକର୍ଡ଼ ବହିରେ ଲେଖାଯାଇ ନାହିଁ ... ... ... ... | ୩୫ | ୩୩୫ |
| | | ୯,୩୫୦ |
| ବିୟୋଗ କର : | | |
| ଦିଆଯାଇଥିବା ଚେକ୍ ବ୍ୟାଙ୍କ୍‌କୁ ଭଙ୍ଗାଇବା ସକାଶେ ଆସି ନାହିଁ ... ... ... .... | ୪୦୦ | |
| ଋଣ ପତ୍ରର ସୁଧ ରେକର୍ଡ଼ ବହିରେ ଲିପିବଦ୍ଧ ହୋଇ ନାହିଁ । | ୫୦ | ୪୫୦ |
| ରେକର୍ଡ଼ ବହିର ବାକି .. | | ୮,୯୦୦ |

ପୂର୍ବରୁ କୁହ ଯାଇଛି ଯେ ବ୍ୟାଙ୍କ୍ ସହିତ ପୂର୍ବରୁ ଚୁକ୍ତି କଲେ ବ୍ୟାଙ୍କ୍ ଗଚ୍ଛିତ-କାରୀଙ୍କୁ ବ୍ୟାଙ୍କ୍‌ରେ ତାଙ୍କର ଜମାଥିବା ଟଙ୍କା ଅପେକ୍ଷା ଅଧିକ ଟଙ୍କା ଉଠାଇବା ପାଇଁ ଅନୁମତି ଦିଅନ୍ତି । ଏହାକୁ ଅଧିକ ଉଠାଣ (Bank Overdraft) କୁହାଯାଏ । ଯଦି ଜମା ଅପେକ୍ଷା ବ୍ୟାଙ୍କ୍‌ରୁ ଅଧିକ ଟଙ୍କା ଉଠାଇ ନିଆ ହୋଇଥାଏ ତାହେଲେ ରୋକଡ଼ ବହିରେ ବ୍ୟାଙ୍କ୍ କକ୍ଷର ବାକି ଦାୟୀ ନ ହୋଇ ଦାତା ହେବ । ଏପରି କ୍ଷେତ୍ରରେ ବ୍ୟାଙ୍କ୍ ହିସାବ ସମନ୍ୱୟ ବିବରଣୀ କିପରି ପ୍ରସ୍ତୁତ କରାଯିବ ତାହାର ନିୟମାବଳୀ ନିମ୍ନରେ ପ୍ରଦତ୍ତ ହେଲା । ରୋକଡ଼ ବହିରେ ଅଧିକ ଉଠାଣ ଦିଆ ଯାଇଥିଲେ—

(୧) ଯଦି ଅାଦାୟ କରି ଜମା କରିବା ନିମନ୍ତେ ଚେକ ପଠାଯାଇଥାଏ ଓ ସମନ୍ୱୟ ଦିବସ ପର୍ଯ୍ୟନ୍ତ ତାହା ଜମା ହୋଇ ନ ଥାଏ ତାହେଲେ ରୋକଡ଼ ବହିର ବ୍ୟାଙ୍କ୍ କକ୍ଷର ବାକି ସହିତ ଚେକ୍‌ର ପରିମାଣର ଟଙ୍କା ଯୋଗ କରାଯିବ ।

(୨) ଯଦି ଅନ୍ୟ କାହାକୁ ଦିଆଯାଇଥିବା ଚେକ୍ ସେ ବ୍ୟାଙ୍କ୍‌ରେ ସମନ୍ୱୟ ତାରିଖ ସୁଦ୍ଧା ଭଙ୍ଗାଇ ନ ଥାନ୍ତି ତାହେଲେ ବ୍ୟାଙ୍କ୍ କକ୍ଷର ବାକିରୁ ଚେକ୍ ବାବଦ ଟଙ୍କା ବିୟୋଗ କରାଯିବ ।

(୩) ବ୍ୟାଙ୍କ୍ ଦାବୀ କରିଥିବା କମିସନ୍ କିମ୍ବା ଅଧିକ ଉଠାଣ ଉପରେ ସୁଧ ଯଦି ସମନ୍ୱୟ ଦିବସ ପର୍ଯ୍ୟନ୍ତ ରୋକଡ଼ ବହିର ବ୍ୟାଙ୍କ୍ କକ୍ଷରେ ଲିପିବଦ୍ଧ କରାଯାଇ ନ ଥାଏ ତାହେଲେ କମିସନ୍ ବାବଦ ଟଙ୍କା ବ୍ୟାଙ୍କ୍ କକ୍ଷର ବାକି ସହିତ ଯୋଗ କରାଯିବ ।

(୪) ଯଦି ଗଚ୍ଛିତକାରୀଙ୍କ ପୂର୍ବ ନିର୍ଦ୍ଦେଶ କ୍ରମେ ବ୍ୟାଙ୍କ୍ ଋଣପତ୍ରର ସୁଧ କିମ୍ବା କମ୍ପାନିର ଅଂଶ ବାବଦ ଲଭ୍ୟାଂଶ ଆଦାୟ କରିଥାନ୍ତି ଓ ତାହା ସମନ୍ୱୟ ଦିବସ ପର୍ଯ୍ୟନ୍ତ ରୋକଡ଼ ବହିରେ ଲିପିବଦ୍ଧ କରାଯାଇ ନ ଥାଏ ତାହେଲେ ସୁଧ କିମ୍ବା ଲଭ୍ୟାଂଶ ବାବଦ ଟଙ୍କା ବ୍ୟାଙ୍କ୍ କକ୍ଷର ବାକିରୁ ବିୟୋଗ କରାଯିବ ।

ଯଦି ପୂର୍ବ ନିର୍ଦ୍ଦେଶ ଅନୁଯାୟୀ ବ୍ୟାଙ୍କ୍ ବୀମାର ପ୍ରିମିୟମ ଦେଇଥାନ୍ତି ତାହେଲେ ସେଥି ନିମନ୍ତେ (୩) ନମ୍ବର ନିୟମ ଅନୁସରଣ କରାଯିବ ।

ଯଦି କୌଣସି ଗ୍ରାହକ ଗଚ୍ଛିତକାରୀଙ୍କ ହିସାବରେ କିଛି ଟଙ୍କା ଜମା ଦେଇଥାନ୍ତି ଓ ତାହା ରୋକଡ଼ ବହିରେ ସମନ୍ୱୟ ଦିବସ ପର୍ଯ୍ୟନ୍ତ ଲିପିବଦ୍ଧ ହୋଇ ନ ଥାଏ ତାହେଲେ ସେଥି ନିମନ୍ତେ (୪) ନମ୍ବର ନିୟମ ଅନୁସୃତ ହେବ ।

ଏହାର ଏକ ଦୃଷ୍ଟାନ୍ତ ନିମ୍ନରେ ପ୍ରଦତ୍ତ ହେଲା ।

## ଦୃଷ୍ଟାନ୍ତ (୧୧)

ଜଣେ ବ୍ୟବସାୟୀଙ୍କର ୧୯୭୨ ସାଲ ମାର୍ଚ୍ଚ ୩୧ ତାରିଖରେ ରୋକଡ଼ ବହିରେ ଅଧିକ ଉଠାଣର ପରିମାଣ ୨,୮୦୦ ଟଙ୍କା ଥିଲା । ରୋକଡ଼ ବହିକୁ ବ୍ୟାଙ୍କ୍ ପାସ୍ ବହି ସହିତ ତୁଳନା କରିବାରେ ସେ ଦେଖିଲେ ଯେ :

| | | ଟଙ୍କା |
|---|---|---|
| (୧) | ଅନ୍ୟ ବ୍ୟକ୍ତିଙ୍କୁ ଦିଆ ଯାଇଥିବା ଚେକ୍ ସେମାନେ ଏ ପର୍ଯ୍ୟନ୍ତ ତାହା ବ୍ୟାଙ୍କ୍‌ରେ ଭଙ୍ଗାଇ ନାହାନ୍ତି— — — — | ୧,୩୦୦ |
| (୨) | ଆଦାୟ କରି ଜମା ଦେବା ପାଇଁ ବ୍ୟାଙ୍କ୍‌କୁ ପଠାଯାଇଥିବା ଚେକ୍ ଏ ପର୍ଯ୍ୟନ୍ତ ବ୍ୟାଙ୍କ୍ ହିସାବରେ ଜମା ଦିଆ ଯାଇନାହିଁ— — | ୧,୪୦୦ |
| (୩) | ବ୍ୟାଙ୍କ୍ ସୁଧ ଓ କମିଶନ ଦାବୀ କରି ତାହା ପାସ୍ ବହିରେ ଲିପିବଦ୍ଧ କରିଛନ୍ତି (ରୋକଡ଼ ବହିରେ ତାହା ଏ ପର୍ଯ୍ୟନ୍ତ ଲେଖାଯାଇ ନାହିଁ)— | ୧୦୦ |
| (୪) | ବ୍ୟାଙ୍କ୍ ପୂର୍ବ ନିର୍ଦ୍ଦେଶ ଅନୁଯାୟୀ କମ୍ପାନୀ ଅଂଶ ବାବଦ ୨୫୦ ଟଙ୍କା ଲଭ୍ୟାଂଶ ଆଦାୟ କରି ପାସ୍ ବହିରେ ଲିପିବଦ୍ଧ କରିଛନ୍ତି କିନ୍ତୁ ରୋକଡ଼ ବହିରେ ତାହା ଲେଖାଯାଇ ନାହିଁ । | |

ବ୍ୟାଙ୍କ୍ ପାସ୍ ବହିରେ ଅଧିକା ଉଠାଣର ପରିମାଣ ସେହି ତାରିଖରେ କେତେ ଥିଲା ତାହା ସାବ୍ୟସ୍ତ କର ।

**ସମାଧାନ :**

୧୯୭୨ ସାଲ୍ ମାର୍ଚ୍ଚ ୩୧ ତାରିଖର ବ୍ୟାଙ୍କ ହିସାବ ସମନ୍ୱୟ ବିବରଣୀ ।

| | ଟଙ୍କା | ଟଙ୍କା |
|---|---|---|
| ରୋକଡ଼ ବହି ଅନୁଯାୟୀ ଅଧିକା ଉଠାଣ .. | | ୨,୮୦୦ |
| ବିୟୋଗ କର : | | |
| ଅନ୍ୟ ବ୍ୟକ୍ତିଙ୍କୁ ଦିଆ ଯାଇଥିବା ଚେକ୍ ସେମାନେ ଏ ପର୍ଯ୍ୟନ୍ତ ଭଙ୍ଗାଇ ନାହାନ୍ତି... ... | ୧,୩୦୦ | |
| ବ୍ୟାଙ୍କ ଆଦାୟ କରିଥିବା କମ୍ପାନୀର ଅଂଶ ବାବଦ ଲଭ୍ୟାଂଶ ରୋକଡ଼ ବହିରେ ଲେଖା ଯାଇ ନାହିଁ.... | ୨୫୦ | ୧,୫୫୦ |
| | | ୨,୨୫୦ |
| ଯୋଗ କର : | | |
| ଆଦାୟ କରି ବ୍ୟାଙ୍କ୍‌ରେ ଜମା ଦେବା ସକାଶେ ପଠାଯାଇଥିବା ଚେକ୍ ଏ ପର୍ଯ୍ୟନ୍ତ ଆଦାୟ ହୋଇ ନାହିଁ.... .... | ୧,୪୦୦ | |
| ବ୍ୟାଙ୍କ୍ ଦାବୀ କରିଥିବା ସୁଧ ଓ କମିଶନ (ରୋକଡ଼ ବହିରେ ଲେଖାଯାଇ ନାହିଁ) ... | ୧୦୦ | ୧,୫୦୦ |
| ବ୍ୟାଙ୍କ୍ ପାସ୍ ବହି ଅନୁଯାୟୀ ଅଧିକା ଉଠାଣ | | ୨,୭୫୦ |

ଯଦି ବ୍ୟାଙ୍କ୍ ପାସ୍ ବହି ଅନୁଯାୟୀ ଅଧିକା ଉଠାଣର ପରିମାଣ ଦିଆଯାଇଥାଏ ଓ ରୋକଡ଼ ବହିରେ ଥିବା ଅଧିକା ଉଠାଣର ପରିମାଣ ସାବ୍ୟସ୍ତ କରିବାକୁ ହୁଏ ତାହେଲେ ପୂର୍ବ ବର୍ଣ୍ଣିତ ନିୟମର ବିପରୀତ କାର୍ଯ୍ୟକ୍ରମ ଅନୁସରଣ କରିବା ଆବଶ୍ୟକ ହେବ । ଏହାର ଏକ ଦୃଷ୍ଟାନ୍ତ ନିମ୍ନରେ ପ୍ରଦତ୍ତ ହେଲା ।

## ଦୃଷ୍ଟାନ୍ତ ( ୧୨ )

ନିମ୍ନଲିଖିତ ବିବରଣୀରୁ ବି: କର୍ମକାରଙ୍କର ୩୧-୧୨-୧୯୬୨ ତାରିଖରେ ରୋକଡ଼ ବହିର ବ୍ୟାଙ୍କ୍ କଲମରେ ଥିବା ଅଧିକା ଉଠାଣର ପରିମାଣ କେତେ ଥିଲା ତାହା ନିର୍ଦ୍ଧାରଣ କର :

| | | ଟଙ୍କା |
|---|---|---|
| (୧) | ବ୍ୟାଙ୍କ୍ ପାସ୍ ବହି ଅନୁଯାୟୀ ଅଧିକା ଉଠାଣ— — — | ୮,୭୦୦ |
| (୨) | ଆଦାୟ କରିବା ନିମନ୍ତେ ଦିଆଯାଇଥିବା ଖଣ୍ଡିଏ ଚେକ୍ ଜମା ଦିଆ ଯାଇନାହିଁ— — — — — | ୨,୧୦୦ |
| (୩) | ଆଦାୟ କରିବା ନିମନ୍ତେ ଦିଆ ଯାଇଥିବା ଖଣ୍ଡିଏ ଚେକ୍ ଅନାଦୃତ ହୋଇ ଫେରି ଆସିଛି— — — | ୧,୫୦୦ |
| (୪) | ଅନ୍ୟ ବ୍ୟକ୍ତିଙ୍କୁ ଦିଆଯାଇଥିବା ଚେକ୍ ଏ ପର୍ଯ୍ୟନ୍ତ ସେମାନେ ଭଙ୍ଗାଇ ନାହାନ୍ତି— — — — — | ୯୫୦ |
| (୫) | କମ୍ପାନୀରୁ ଅଂଶ ବାବଦ ଲଭ୍ୟାଂଶ ଆଦାୟ କରି ବ୍ୟାଙ୍କ୍ ହିସାବରେ ଜମା ଦେଇଛି— — — — — | ୩୫୦ |
| (୬) | ଅଧିକା ଉଠାଣ ସୁଧ ବାବଦ ବ୍ୟାଙ୍କ୍ ଦାବୀ କରି ପାସ୍ ବହିରେ ଲେଖିଛି— — — — — | ୨୨୦ |
| (୭) | ବ୍ୟାଙ୍କ୍ କମିସନ ବାବଦ ଦାବୀ କରି ପାସ୍ ବହିରେ ଲେଖିଛି— | ୩୦ |
| (୮) | ପୂର୍ବ ନିର୍ଦ୍ଦେଶାନୁଯାୟୀ ବ୍ୟାଙ୍କ୍ ବୀମାର ପ୍ରିମିୟମ୍ ଦେଇଛି— | ୧୫୦ |

## ସମାଧାନ :

୧୯୭୨ ସାଲ ଡିସେମ୍ବର ୩୧ ତାରିଖର ବ୍ୟାଙ୍କ ହିସାବ ସମନ୍ୱୟ ବିବରଣୀ ।

| | ଟଙ୍କା | ଟଙ୍କା |
|---|---|---|
| ବ୍ୟାଙ୍କ ପାସ୍ ବହି ଅନୁଯାୟୀ ଅଧିକା ଉଠାଣ— — | | [illegible],୭୦୦ |
| ବିୟୋଗ କର : | | |
| ଆଦାୟ କରିବା ନିମନ୍ତେ ଦିଆଯାଇଥିବା ଚେକ୍ ଏ ପର୍ଯ୍ୟନ୍ତ ଆଦାୟ ହୋଇ ନାହିଁ — — | ୨,୧୦୦ | |
| ଆଦାୟ କରିବା ନିମନ୍ତେ ଦିଆଯାଇଥିବା ଚେକ୍ ଅସମ୍ମାନିତ ହୋଇ ଫେରି ଆସିଛି — — | ୧,୫୦୦ | |
| ଅଧିକା ଉଠାଣରେ ସୁଧ— — — | ୨୨୦ | |
| ବ୍ୟାଙ୍କ କମିସନ— — — | ୩୦ | |
| ବ୍ୟାଙ୍କ ଦେଇଥିବା ବୀମାର ପ୍ରିମିୟମ୍— — | ୧୫୦ | ୪,୦୦୦ |
| | | ୮,୭୦୦ |
| ଯୋଗ କର : | | |
| ଅନ୍ୟ ବ୍ୟକ୍ତିଙ୍କୁ ଦିଆଯାଇଥିବା ଚେକ୍ ସେମାନେ ଏ ପର୍ଯ୍ୟନ୍ତ ଭଙ୍ଗାଇ ନାହାନ୍ତି— — | ୯୫୦ | |
| କମ୍ପାନୀରୁ ଅଂଶ ବାବଦ ଆଦାୟ ହୋଇଥିବା ଲଭ୍ୟାଂଶ — — — — | ୩୫୦ | ୧,୩୦୦ |
| ରୋକଡ଼ ବହିରେ ଅଧିକା ଉଠାଣର ପରିମାଣ— | | ୬,୦୦୦ |

## ବ୍ୟାଙ୍କ୍ ହିସାବ ସମନ୍ୱୟ ବିବରଣୀ—ରେକର୍ଡ଼ ବହିର ସଂଶୋଧନ ପଦ୍ଧତି :

ଏବେ ବ୍ୟବହାରିକ ଜଗତ ସହିତ ସାମଞ୍ଜସ୍ୟ ରକ୍ଷି ଉନ୍ନତତର ପ୍ରଣାଳୀରେ ବ୍ୟାଙ୍କ୍ ହିସାବ ସମନ୍ୱୟ ବିବରଣୀ ପ୍ରସ୍ତୁତ କରାଯାଏ । ଏହି ପଦ୍ଧତି ଅନୁଯାୟୀ ରେକର୍ଡ଼ ବହିର ବ୍ୟାଙ୍କ୍ କଷରେ ବାକି ଓ ପାସ୍ ବହିର ବାକିରେ ଥିବା ପାର୍ଥକ୍ୟର କାରଣ ଗୁଡ଼ିକୁ ନିମ୍ନଲିଖିତ ଦୁଇ ଶ୍ରେଣୀରେ ବିଭକ୍ତ କରାଯାଏ ।

(କ) ଯେଉଁ ବିଷୟଗୁଡ଼ିକ ରେକର୍ଡ଼ ବହିରେ ଲେଖାଯାଇ ନାହିଁ ମାତ୍ର ବ୍ୟାଙ୍କ୍ ପାସ୍ ବହିରେ ଲିପିବଦ୍ଧ କରାଯାଇଛି ସେଗୁଡ଼ିକ ପ୍ରଥମ ଶ୍ରେଣୀର ଅନ୍ତର୍ଗତ ବୋଲି ବିବେଚିତ ହେବ । ଉଦାହରଣ ସ୍ୱରୂପ, ବ୍ୟାଙ୍କ୍ କମିସନ୍, ଅଧିକା ଉଠାଣର ସୁଧ, କମ୍ପାନୀର ଅଂଶ ବାବଦ ବ୍ୟାଙ୍କ୍ ଦ୍ୱାରା ଆଦାୟ କରାଯାଇଥିବା ଲଭ୍ୟାଂଶ, ଗ୍ରାହକମାନଙ୍କଦ୍ୱାରା ବ୍ୟବସାୟୀ-ଙ୍କର ବ୍ୟାଙ୍କ୍ ହିସାବରେ ସିଧା ସଳଖ ଜମା କରାଯାଇଥିବା ଟଙ୍କା, ବ୍ୟବସାୟୀଙ୍କ ପକ୍ଷରେ ବ୍ୟାଙ୍କ୍ ଦ୍ୱାରା ପ୍ରିମିୟମ୍ ଆଦି ଦିଆଯାଇଥିବା ଟଙ୍କା, ଅସମ୍ମାନିତ ଚେକ୍ ବା ହୁଣ୍ଡି ନିମନ୍ତେ ବ୍ୟାଙ୍କ୍ ଦ୍ୱାରା ବ୍ୟବସାୟୀଙ୍କ ହିସାବକୁ ଦାୟୀ କରାଯାଇଥିବା ଟଙ୍କା ପ୍ରଭୃତି ବିଷୟଗୁଡ଼ିକର ନାମ ଉଲ୍ଲେଖ କରାଯାଇ ପାରେ । ଯେହେତୁ ରେକର୍ଡ଼ ବହି ବ୍ୟବସାୟୀଙ୍କର ନିଜସ୍ୱ ଓ ତାହା ତାଙ୍କର କର୍ତ୍ତୃତ୍ୱାଧୀନରେ ଥାଏ ସେଥିରେ ଅମେଳ ଘଟାଉଥିବା ବିଷୟଗୁଡ଼ିକ ଲିପିବଦ୍ଧ କରି ରେକର୍ଡ଼ ବହିର ବ୍ୟାଙ୍କ୍ କଷର ବାକିକୁ ସଂଶୋଧନ କରାଯାଇ ପାରେ । ଏହାଦ୍ୱାରା ଦୁଇ ବାକୀ ମଧ୍ୟରେ ଅମେଳ ଘଟାଉଥିବା କାରଣଗୁଡ଼ିକ ଦୂରୀଭୂତ କରି ହେବ । ଏହି ଶ୍ରେଣୀର ବିଷୟଗୁଡ଼ିକ ରେକର୍ଡ଼ ବହିରେ ଲିପିବଦ୍ଧ କଲାପରେ ବ୍ୟାଙ୍କ୍ କଷର ଯେଉଁ ବାକୀ ନିର୍ଦ୍ଧାରିତ ହୁଏ ତାହାକୁ ରେକର୍ଡ଼ ବହିର ସଂଶୋଧିତ ବ୍ୟାଙ୍କ୍ କଷର ବାକୀ ବୋଲି କୁହାଯାଏ ।

(ଖ) ଯେଉଁ ବିଷୟଗୁଡ଼ିକ ରେକର୍ଡ଼ ବହିର ବ୍ୟାଙ୍କ୍ କଷରେ ଲିପିବଦ୍ଧ କରାଯାଇଛି ମାତ୍ର ବ୍ୟାଙ୍କ୍ ପାସ୍ ବହିରେ ତାହା ଲେଖାଯାଇ ନାହିଁ ସେଗୁଡ଼ିକ ଦ୍ୱିତୀୟ ଶ୍ରେଣୀର ଅନ୍ତର୍ଗତ । ଉଦାହରଣ ସ୍ୱରୂପ, ଜମା କରିବା ନିମନ୍ତେ, ବ୍ୟାଙ୍କ୍‌କୁ ଦିଆଯାଇଥିବା ଚେକ୍ ଆଦାୟ ହୋଇନାହିଁ, ଅନ୍ୟ ବ୍ୟକ୍ତିଙ୍କୁ ଦିଆଯାଇଥିବା ଚେକ୍ ସେମାନେ ଭଙ୍ଗାଇ ନାହାନ୍ତି, ପ୍ରଭୃତି ବିଷୟଗୁଡ଼ିକର ନାମ ଉଲ୍ଲେଖଯୋଗ୍ୟ । ଯେହେତୁ ବ୍ୟାଙ୍କ୍ ପାସ୍ ବହି ବ୍ୟବସାୟୀ-ଙ୍କର କର୍ତ୍ତୃତ୍ୱାଧୀନ ନୁହେଁ ତେଣୁ ତହିଁରେ ସଂଶୋଧନ କରାଯାଇ ପାରିବ ନାହିଁ । ସୁତରାଂ ଉପରୋକ୍ତ ପ୍ରଣାଳୀ ଅନୁଯାୟୀ ବ୍ୟାଙ୍କ୍ ହିସାବ ସମନ୍ୱୟ ବିବରଣୀ ପ୍ରସ୍ତୁତ କରାଗଲେ ତହିଁରେ କେବଳ ମାତ୍ର ଉପରୋକ୍ତ ତିନିଗୋଟି ବିଷୟ ଅନ୍ତର୍ଭୁକ୍ତ କରାଯିବ । ଏହାର ଏକ ଦୃଷ୍ଟାନ୍ତ ନିମ୍ନରେ ପ୍ରଦତ୍ତ ହେଲା ।

## ଦୃଷ୍ଟାନ୍ତ (୧୩)

୧୯୭୨ ସାଲ ମାର୍ଚ୍ଚ ୩୧ ତାରିଖରେ ବାର୍ଷିକ ହିସାବ ପ୍ରସ୍ତୁତ କରିବା ସମୟରେ ଦେଖାଗଲା ଯେ ରେକର୍ଡ଼ ବହିର ବ୍ୟାଙ୍କ୍ ଖାତାର ବାକୀ ୧୦,୫୦୭ ଟଙ୍କା ଅଛି କିନ୍ତୁ ବ୍ୟାଙ୍କ୍ ପାସ୍ ବହିର ବାକୀ ସହିତ ଏହା ମିଶୁ ନାହିଁ । ଦୁଇଟି ବହିକୁ ତୁଳନା କରିବାରେ ନିମ୍ନଲିଖିତ ବିଷୟଗୁଡ଼ିକ ଦେଖାଗଲା :

| | | ଟଙ୍କା |
|---|---|---|
| (କ) | ଜମା କରିବା ସକାଶେ ବ୍ୟାଙ୍କ୍‌କୁ ପଠାଯାଇଥିବା ଚେକ୍ ଏ ପର୍ଯ୍ୟନ୍ତ ଆଦାୟ ହୋଇ ନାହିଁ — — — | ୨,୩୦୦ |
| (ଖ) | ଅନ୍ୟ ବ୍ୟକ୍ତିଙ୍କୁ ଦିଆଯାଇଥିବା ଚେକ୍ ସେମାନେ ଏ ପର୍ଯ୍ୟନ୍ତ ବ୍ୟାଙ୍କ୍‌ରେ ଭଙ୍ଗାଇ ନାହାନ୍ତି — — — | ୧,୪୦୦ |
| (ଗ) | ଜଣେ ଗ୍ରାହକ ବ୍ୟବସାୟୀଙ୍କ ହିସାବରେ ବ୍ୟାଙ୍କ୍‌ରେ ଜମା ଦେଇଛନ୍ତି — — — — | ୧,୦୦୦ |
| (ଘ) | ବ୍ୟାଙ୍କ୍ କମିସନ୍ ଦାବୀ କରି ପାସ୍ ବହିରେ ଲେଖିଛନ୍ତି — | ୩୦ |
| (ଙ) | ବ୍ୟାଙ୍କ୍ ବ୍ୟବସାୟୀଙ୍କ ସକାଶେ ବୀମାର ପ୍ରିମିୟମ୍ ଦେଇଛନ୍ତି — | ୧୨୦ |
| (ଚ) | ବ୍ୟାଙ୍କ୍ କମ୍ପାନୀର ଅଂଶ ବାବଦ ଲଭ୍ୟାଂଶ ଆଦାୟ କରି ହିସାବରେ ଜମା ଦେଇଛନ୍ତି — — — | ୪୦୦ |

ସେହି ତାରିଖରେ ବ୍ୟାଙ୍କ୍ ପାସ୍ ବହିରେ ବାକୀ କେତେ ଥିଲା ତାହା ନିର୍ଦ୍ଧାରଣ କର ।

ଏହି ବିଷୟଗୁଡ଼ିକ ପର୍ଯ୍ୟାଲୋଚନା କଲେ ଦେଖାଯିବ ଯେ (ଗ) (ଘ) (ଙ) ଓ (ଚ) ବିଷୟମାନ ପ୍ରଥମ ଶ୍ରେଣୀ ଭୁକ୍ତ । ଏହି ବିଷୟମାନ ବ୍ୟାଙ୍କ୍ ପାସ୍ ବହିରେ ଲେଖାଯାଇଛି ମାତ୍ର ରେକର୍ଡ଼ ବହିରେ ତାହା ଲିପିବଦ୍ଧ ହୋଇ ନାହିଁ । ତେଣୁ ଏ ଗୁଡ଼ିକ ରେକର୍ଡ଼ ବହିରେ ଲେଖି ବ୍ୟାଙ୍କ୍ ଖାତାର ସଂଶୋଧିତ ବାକୀ ନିର୍ଣ୍ଣୟ କରାଯିବ । ମାତ୍ର (କ) ଓ (ଖ) ରେ ଲେଖାଥିବା ବିଷୟଗୁଡ଼ିକ ଦ୍ୱିତୀୟ ଶ୍ରେଣୀର କାରଣ ସେଗୁଡ଼ିକ ରେକର୍ଡ଼ ବହିରେ ଲେଖାଥିଲେ ସୁଦ୍ଧା ବ୍ୟାଙ୍କ୍ ପାସ୍ ବହିରେ ଲେଖାଯାଇ ନାହିଁ । ଯେହେତୁ ବ୍ୟାଙ୍କ୍ ପାସ୍ ବହିର ଲେଖା ଅଦଳ ବଦଳ କରିବା ବ୍ୟବସାୟୀଙ୍କର କ୍ଷମତାର ବହିର୍ଭୂତ ତେଣୁ କେବଳ ଏହି ଦୁଇଟି ବିଷୟ ବ୍ୟାଙ୍କ୍ ହିସାବ ସମନ୍ୱୟ ବିବରଣୀରେ ଅନ୍ତର୍ଭୁକ୍ତ ହେବ ।

ଦାସ୍ତୀ — ବ୍ୟେଜକ୍ତ ବନ୍ଧ — ଦାତା

| ତାରିଖ | ବିବରଣ | ଖ: ପୃ: | ବ୍ୟାଙ୍କ୍ | ତାରିଖ | ବିବରଣ | ଖ: ପୃ: | ବ୍ୟାଙ୍କ୍ |
|---|---|---|---|---|---|---|---|
| ୧୯୭୨ | | | ଟଙ୍କା | ୧୯୭୨ | | | ଟଙ୍କା |
| ମାର୍ଚ୍ଚ-୩୧ | ପୂର୍ବ ବାକି ବାବଦ | | ୧୦,୫୦୭ | ମାର୍ଚ୍ଚ-୩୧ | ବ୍ୟାଙ୍କ୍ କମିସନ୍ ବାବଦ | | ୩୦ |
| ୩୧ | ଗ୍ରାହକଙ୍କ ହିସାବ ବାବଦ | | ୧,୦୦୦ | ୩୧ | ବୀମା ପ୍ରିମିୟମ ବାବଦ | | ୧୦ |
| ୩୧ | ଲଭାଂଶ ହିସାବ ବାବଦ | | ୪୦୦ | ୩୧ | ବାକି ଗଢ଼ନ୍ତି | | ୧୧,୮୬୭ |
| | | | ୧୧,୯୦୭ | | | | ୧୧,୯୦୭ |
| ୧୯୭୨ | | | | | | | |
| ଅପ୍ରେଲ-୧ | ପୂର୍ବ ବାକି ବାବଦ | | ୧୧,୮୬୭ | | | | |

୧୯୭୨ ସାଲ ମାର୍ଚ୍ଚ ୩୧ ତାରିଖର ବ୍ୟାଙ୍କ୍ ହିସାବ ସମନ୍ୱୟ ବିବରଣୀ

| | ଟଙ୍କା | ଟଙ୍କା |
|---|---|---|
| ରେକର୍ଡ଼ ବହିର ବ୍ୟାଙ୍କ୍ କକ୍ଷର ବାକି (ସମାଯୋଜିତ) | | ୧୧,୭୫୭ |
| ବିୟୋଗ କର : | | |
| ବ୍ୟାଙ୍କ୍‌ରୁ ଦିଆଯାଇଥିବା ଚେକ୍ ଏ ପର୍ଯ୍ୟନ୍ତ ଆଦାୟ ହୋଇନାହିଁ.... .. ... | | ୨,୩୦୦ |
| | | ୯,୪୫୭ |
| ଯୋଗ କର : | | |
| ଅନ୍ୟ ବ୍ୟକ୍ତିଙ୍କୁ ଦିଆଯାଇଥିବା ଚେକ୍ ସେମାନେ ଏ ପର୍ଯ୍ୟନ୍ତ ଭଙ୍ଗାଇ ନାହାନ୍ତି... | | ୧,୪୦୦ |
| ବ୍ୟାଙ୍କ୍ ପାସ୍ ବହିର ବାକି... | | ୧୦,୮୫୭ |

ବିଶେଷ ଦ୍ରଷ୍ଟବ୍ୟ—ରେକର୍ଡ଼ ବହିର ନଗଦ ତହବିଲ କକ୍ଷ ଅନାବଶ୍ୟକ ବୋଲି ଏଠାରେ ବାଦ୍ ଦିଆଯାଇଛି ।

## କେବଳ ବ୍ୟାଙ୍କ୍ କକ୍ଷ ବିଶିଷ୍ଟ ରେକର୍ଡ଼ ବହି :

କେତେକ ବ୍ୟବସାୟ ପ୍ରତିଷ୍ଠାନରେ ସମସ୍ତ ଆଦାନ ପ୍ରଦାନ ଚେକ୍ ଜରିଆରେ ସଂଘଟିତ ହୁଏ । ସେ କ୍ଷେତ୍ରରେ ରେକର୍ଡ଼ ବହିରେ କେବଳ ବ୍ୟାଙ୍କ୍ କକ୍ଷ ରଖାଯାଏ, କାରଣ ନଗଦ ତହବିଲ କକ୍ଷ ନିଷ୍ପ୍ରୟୋଜନ । ଅବଶ୍ୟ ଖୁଚୁରା ଖର୍ଚ୍ଚ ଲିପିବଦ୍ଧ କରିବା ନିମନ୍ତେ ଖୁଚୁରା ଖର୍ଚ୍ଚ ରେକର୍ଡ଼ ବହି ଖୋଲିବା ଅପରିହାର୍ଯ୍ୟ ହୁଏ । ଯଦି କୌଣସି ପ୍ରାପକ ଚେକ୍ ନେବାକୁ ଅନିଚ୍ଛୁକ ହୁଅନ୍ତି କେବଳ ଖୁଚୁରା ତହବିଲରୁ ନଗଦ ଦିଆଯାଏ । ଏଠାରେ ସମସ୍ତ ଆଦାନ ପ୍ରଦାନ ଚେକ୍ ଜରିଆରେ ହେଉଥିବାରୁ ଖଜାଞ୍ଚିଙ୍କୁ ନଗଦ ତହବିଲ ସ୍ପର୍ଶ କରିବାକୁ ପଡ଼େ ନାହିଁ । ଏହା ତାଙ୍କ ପକ୍ଷରେ ସୁବିଧା ଜନକ । ଏହାଦ୍ୱାରା ତାଙ୍କ ପକ୍ଷରେ ତହବିଲ ତୋସରଫ୍ କରିବା ସମ୍ଭବପର ହୁଏ ନାହିଁ । ବ୍ୟବସାୟ ପକ୍ଷରେ ଏହା ଅତ୍ୟନ୍ତ ନିରାପଦ ।

# ପ୍ରଶ୍ନାବଳୀ (୨)

୧। ପ୍ରାଥମିକ ହିସାବ ବହି କାହାକୁ କହନ୍ତି ? ଏହାର ଆବଶ୍ୟକତା ବୁଝାଇ ଲେଖ।

୨। ରୋକଡ଼ ବହିର ସଂଜ୍ଞା ଲେଖ ଓ ଏହାର ବିଭିନ୍ନ କକ୍ଷ ବର୍ଣ୍ଣନା କର।

୩। ନଗଦ ତହବିଲ ହିସାବ ଓ ରୋକଡ଼ ବହି ମଧ୍ୟରେ କୌଣସି ପାର୍ଥକ୍ୟ ଅଛି କି ? ଥିଲେ ତାହା ବର୍ଣ୍ଣନା କର।

୪। ପ୍ରଦତ୍ତ ବଟ୍ଟା ଓ ପ୍ରାପ୍ତ ବଟ୍ଟା ରୋକଡ଼ ବହିରେ କିପରି ଲିପିବଦ୍ଧ କରାଯାଏ ତାହା ଦୃଷ୍ଟାନ୍ତ ସହ ବର୍ଣ୍ଣନା କର।

୫। ଦ୍ୱିକକ୍ଷ ଓ ତ୍ରିକକ୍ଷ ବିଶିଷ୍ଟ ରୋକଡ଼ ବହି କହିଲେ କ'ଣ ବୁଝ ? ଏହା କିପରି ଲେଖାଯାଏ ତାହା ବର୍ଣ୍ଣନା କର।

୬। ଖୁଚୁରା ଖରଚ ରୋକଡ଼ ବହି କେତେ ପ୍ରକାରରେ ଲେଖାଯାଇ ପାରେ ? କେଉଁ ପଦ୍ଧତିରେ ଖୁଚୁରା ଖରଚ ରୋକଡ଼ ବହି ଲେଖିବା ବାଞ୍ଛନୀୟ ? ସେହି ପଦ୍ଧତିଟି ବର୍ଣ୍ଣନା କର।

୭। ନିମ୍ନଲିଖିତ ଉକ୍ତିଗୁଡ଼ିକ ପରୀକ୍ଷା କରି ସେମାନଙ୍କ ମଧ୍ୟରୁ ଯେଉଁଗୁଡ଼ିକ ଯଥାର୍ଥ ନୁହେଁ ତାହା ଉଲ୍ଲେଖ କର ଓ ତୁମ ମତକୁ ଯୁକ୍ତି ଦ୍ୱାରା ସମର୍ଥନ କର :

(କ) ରୋକଡ଼ ବହିରେ ଦାତା ବାକି ହୋଇପାରିବ ନାହିଁ।

(ଖ) ପ୍ରଦତ୍ତ ବଟ୍ଟା ସର୍ବଦା ପ୍ରାପ୍ତ ବଟ୍ଟାଠାରୁ ଊଣା ହେବ।

(ଗ) ପ୍ରତି ଦିନ, ସପ୍ତାହ, ପକ୍ଷ ବା ମାସ ଶେଷରେ ରୋକଡ଼ ବହିର ଅର୍ଥର ପରିମାଣ କକ୍ଷ ଓ ବଟ୍ଟା କକ୍ଷଗୁଡ଼ିକର ବାକି ନିର୍ଣ୍ଣୟ କରାଯାଏ।

(ଘ) ରୋକଡ଼ ବହି ଖୋଲାଗଲେ ଖତିୟାନରେ ନଗଦ ତହବିଲ ହିସାବ ଖୋଲାଯାଏ ନାହିଁ।

(ଙ) ଦ୍ୱିକକ୍ଷ ବିଶିଷ୍ଟ ରୋକଡ଼ ବହି ଖୋଲାଗଲେ ଖତିୟାନରେ ପ୍ରଦତ୍ତ ବଟ୍ଟା ହିସାବ ଓ ପ୍ରାପ୍ତ ବଟ୍ଟା ହିସାବ ଖୋଲିବା ଅନାବଶ୍ୟକ।

(ଚ) ଖୁଚୁରା ରୋକଡ଼ ବହି ଲେଖୁଥିବା ଲୋକଟି ଖଜାଞ୍ଚି ପ୍ରତି ସପ୍ତାହ, ପକ୍ଷ ବା ମାସରେ ଏକ ନିର୍ଦ୍ଦିଷ୍ଟ ପରିମାଣର ଅର୍ଥ ଖର୍ଚ୍ଚ କରନ୍ତି।

୮ । ବିନାୟକ ଏକ କକ୍ଷ ବିଶିଷ୍ଟ ରୋକଡ଼ ବହି ବ୍ୟବହାର କରନ୍ତି ଓ ପ୍ରତି ସପ୍ତାହରେ ତାହାର ବାକି ନିର୍ଣ୍ଣୟ କରନ୍ତି । ୧୯୭୨ ସାଲ ଜୁନ୍ ମାସ ୧ ତାରିଖରେ ତାଙ୍କର ରୋକଡ଼ ବହିର ଦାୟୀ ବାକି ୫,୭୦୩ ଟଙ୍କା ଥିଲା । ନିମ୍ନଲିଖିତ ନେଣଦେଣ ଗୁଡ଼ିକ ତାଙ୍କର ରୋକଡ଼ ବହିରେ ଲିପିବଦ୍ଧ କରି ୭-୬-୧୯୭୨ ତାରିଖରେ ରୋକଡ଼ ବହିରେ ଥିବା ବାକି ନିର୍ଣ୍ଣୟ କର :

| ୧୯୭୨ | | ଟଙ୍କା |
|---|---|---|
| ଜୁନ୍-୧ | ମାଧବଠାରୁ ପୂର୍ବ ବାକି ବାବଦ ପାଇଲେ— | ୧,୨୦୦ |
| ,, ୨ | ନଗଦ ମୂଲ୍ୟ ଦେଇ ପଣ୍ୟ କ୍ରୟ କଲେ— | ୮୦୦ |
| ,, ୨ | ଗାଡ଼ିଭଡ଼ା ବାବଦ ଖର୍ଚ୍ଚ କଲେ – | ୧୫ |
| ,, ୩ | ନଗଦ ମୂଲ୍ୟରେ ପଣ୍ୟ ବିକ୍ରୟ କଲେ— | ୬୦୭ |
| ,, ୪ | ଗତ ମାସର ଘରଭଡ଼ା ଦିଆଗଲା— | ୨୦୦ |
| ,, ୫ | ଚନ୍ଦନଠାରୁ ପୂର୍ବ ବାକି ବାବଦ ପାଇଲେ— | ୫୮୫ |
| ,, ୬ | କୁମାରଙ୍କୁ ପୂର୍ବ ବାକି ବାବଦ ପରିଶୋଧ କଲେ— | ୨୧୦ |
| ,, ୭ | ବ୍ୟବସାୟ ନିମନ୍ତେ ଅସବାବ୍ କ୍ରୟ କଲେ— | ୫୦୦ |

(ଉତ୍ତର—ଦାୟୀ ବାକି ୬,୩୭୦ ଟଙ୍କା)

୯ । ନିମ୍ନଲିଖିତ ବିବରଣୀରୁ ବାବୁଲାଲ୍‌ଙ୍କର ଦ୍ୱିକକ୍ଷ ବିଶିଷ୍ଟ ରୋକଡ଼ ବହି ଲେଖି ତାହାର ବାକି ନିର୍ଣ୍ଣୟ କର । ୧୯୭୨ ସାଲ ମଇ ୧ ତାରିଖରେ ଦାୟୀ ବାକି ୭,୮୦୫ ଟଙ୍କା ଥିଲା । ବଟା ହିସାବ ମଧ୍ୟ ପ୍ରସ୍ତୁତ କର ।

| ୧୯୭୨ | | ଟଙ୍କା |
|---|---|---|
| ମଇ-୧ | ନଗଦ ମୂଲ୍ୟରେ ପଣ୍ୟ କ୍ରୟ କଲେ— | ୧,୫୦୦ |
| ,, ୨ | ବିକାଶ ପୂର୍ବ ବାକି ବାବଦ ପରିଶୋଧ କଲେ— | ୪୯୦ |
| ,, ୨ | ତାଙ୍କୁ ବଟା ଦିଆଗଲା— | ୧୦ |
| ,, ୩ | ନଗଦ ମୂଲ୍ୟରେ ପଣ୍ୟ ବିକ୍ରୟ କରାଗଲା— | ୮୩୦ |
| ,, ୩ | ନରେନ୍ଦ୍ରଙ୍କୁ ପୂର୍ବ ବାକି ବାବଦ ପରିଶୋଧ କରାଗଲା— | ୬୮୦ |

| | | | |
|---|---|---|---|
| ମଇ-୩ | | ସେ ବଟ୍ଟା ଗ୍ରହିଲେ— | ୨୦ |
| ,, | ୪ | ମଜୁରି ବାବଦ ଖର୍ଚ୍ଚ ହେଲା— | ୧୪ |
| ,, | ୪ | ପ୍ରାଣନାଥଙ୍କୁ ପରିଶୋଧ କରାଗଲା— | ୨୧୦ |
| ,, | ୪ | ସେ ବଟ୍ଟା ଗ୍ରହିଲେ— | ୫ |
| ,, | ୬ | ଅଗ୍ନି ବୀମା ବାବଦ ପ୍ରିମିୟାମ୍ ଦିଆଗଲା— | ୧୨୦ |
| ,, | ୭ | ନଗଦ ମୂଲ୍ୟରେ ପଣ୍ୟ ବିକ୍ରୟ କରାଗଲା— | ୩୦୦ |

(ଉତ୍ତର—ଦାୟୀ ବାକୀ ୬,୯୦୧ ଟଙ୍କା, ପ୍ରଦତ୍ତ ବଟ୍ଟା ୧୦ ଟଙ୍କା ଓ ପ୍ରାପ୍ତ ବଟ୍ଟା ୨୫ ଟଙ୍କା)

୧୦ । ନିମ୍ନଲିଖିତ ବିବରଣୀରୁ କୃପାସିନ୍ଧୁଙ୍କର ତ୍ରିକଷ ବିଶିଷ୍ଟ ରୋକଡ଼ ବହି ପ୍ରସ୍ତୁତ କର ୧୯୭୨ ସାଲ ମାର୍ଚ୍ଚ ୨ ତାରିଖରେ ଥିବା ବାକୀ ନିର୍ଣ୍ଣୟ କର ଓ ପ୍ରାପ୍ତ ଓ ପ୍ରଦତ୍ତ ବଟ୍ଟା ହିସାବ ଦେଖାଅ ।

| ୧୯୭୨ | | | ଟଙ୍କା |
|---|---|---|---|
| ମାର୍ଚ୍ଚ-୧ | | ନଗଦ କକ୍ଷର ବାକୀ— | ୧,୨୦୩ |
| | | ବ୍ୟାଙ୍କ୍ କକ୍ଷର ବାକୀ— | ୮,୫୦୦ |
| ,, | ୧ | ହରିଶ୍ଚନ୍ଦ୍ରଙ୍କଠାରୁ ପଣ୍ୟ କ୍ରୟ କରି ଚେକ୍ ଦେଲେ— | ୩,୨୦୦ |
| ,, | ୧ | ଗାଡ଼ିଭଡ଼ା ଦେଲେ— | ୨୦ |
| ,, | ୨ | କେଶବଚନ୍ଦ୍ରଙ୍କୁ ନଗଦ ମୂଲ୍ୟରେ ପଣ୍ୟ ବିକ୍ରୟ କଲେ— | ୧,୩୦୦ |
| ,, | ୨ | କମଳ ଲୋଚନ ପୂର୍ବ ବାକୀ ବାବଦ ନଗଦ ଦେଲେ— | ୪୮.୫ |
| ,, | ୨ | ତାଙ୍କୁ ବଟ୍ଟା ଦେଲେ — | ୧.୫ |
| ,, | ୩ | ବ୍ୟାଙ୍କରୁ ଦପ୍ତରରୁ ପଠାଗଲା— | ୨,୦୦୦ |
| ,, | ୩ | ପଣ୍ୟ ବିକ୍ରୟ କରି ମିଳିଥିବା ଚେକ୍ ବ୍ୟାଙ୍କ୍‌କୁ ପଠାଇଲେ— | ୫୦୦ |
| ,, | ୪ | ଘରଭଡ଼ା ବାବଦ ନଗଦ ଦେଲେ— | ୨୦୦ |
| ,, | ୪ | ଜାହ୍ନବୀଙ୍କୁ ପୂର୍ବ ବାକୀ ବାବଦ ନଗଦ ଦେଲେ— | ୫୧୦ |

| | | | |
|---|---|---|---|
| ମଇ ୪ | | ମେ ବଟା ଗୁଡ଼ିକେ— | ୨୦ |
| ,, | ୫ | ଦପ୍ତର ଝରି୍ ନିମନ୍ତେ ବ୍ୟାଙ୍କରୁ ଅଣିଲେ— | ୧,୦୦୦ |
| ,, | ୬ | ନଗଦ ମୂଲ୍ୟରେ ପଣ୍ୟ କ୍ରୟ କଲେ— | ୫୨୫ |
| ,, | ୭ | ମଦନ ସାହୁ ପୂର୍ବ ବାକି ବାବଦ ନଗଦ ଦେଲେ— | ୩୧୬ |
| ,, | ୭ | ଡାକ୍ଟ ବଟା ଗୁଡ଼ିକେ— | ୧୦ |

(ଉତ୍ତର—ବାସ୍ତୀ ବାକି ନଗଦ କଷ— ୧,୦୪୮ ଟଙ୍କା
ବ୍ୟାଙ୍କ୍ କଷ— ୭,୮୦୦ ଟଙ୍କା
ପ୍ରଦତ୍ତ ବଟାର ମୋଟ ପରିମାଣ— ୨୫ ଟଙ୍କା
ପ୍ରାପ୍ତ ବଟାର ମୋଟ ପରିମାଣ— ୨୦ ଟଙ୍କା)

୧୧ । ୧୯୭୨ ସାଲ ଜୁନ୍ ୧ ତାରିଖରେ ଜୀବାନନ୍ଦଙ୍କର ତ୍ରିକଷ ବିଶିଷ୍ଟ ରୋକଡ଼ ବହିରେ ନଗଦ କଷର ବାକି ୨୫୦ ଟଙ୍କା ଥିଲା ଓ ବ୍ୟାଙ୍କ୍ କଷରେ ଅଧିକା ଉଠାଣର ପରିମାଣ ୩,୮୮୦ ଟଙ୍କା ଥିଲା । ମାସ ମଧ୍ୟରେ ସଂଘଟିତ ହୋଇଥିବା ନିମ୍ନଲିଖିତ ନେଣଦେଣ ଗୁଡ଼ିକୁ ତାଙ୍କର ରୋକଡ଼ ବହିରେ ଲିପିବଦ୍ଧ କରି ମାସ ଶେଷରେ ବାକି ନିର୍ଣ୍ଣୟ କର ।

| ୧୯୭୨ | | ଟଙ୍କା |
|---|---|---|
| ଜୁନ୍ ୩ | ଘରଭଡ଼ା ବାବଦ ମିଳିଥିବା ନଗଦ ଟଙ୍କା ସେହିଦିନ ବ୍ୟାଙ୍କ୍କୁ ପଠାଗଲା— | ୫୦୦ |
| ୭ | ଦପ୍ତର ସକାଶେ ବ୍ୟାଙ୍କ୍ରୁ ଅଣାଗଲା— | ୩୫୦ |
| ୮ | ବେତନ ବାବଦ ନଗଦ ଦିଆଗଲା— | ୨୭୫ |
| ୧୩ | ପୂର୍ବ ବାକି ବାବଦ ଗଣେଶ୍ୱରଙ୍କୁ ଦିଆଗଲା (ଚେକ୍) | ୪୮୭ |
| ୧୩ | ସେ ବଟା ଗୁଡ଼ିକେ— | ୧୪ |
| ୧୫ | ଘାରେଶ୍ୱର ପୂର୍ବ ବାକି ବାବଦ ନଗଦ ଦେଲେ— | ୨୫୦ |
| | ଓ ଚେକ୍ ଦେଲେ— | ୧,୨୫୦ |

| | | |
|---|---|---|
| ଜୁନ୍ ୧୫ | ତାଙ୍କୁ ବଟା ଦିଆଗଲା— | ୪୦ |
| ୧୮ | ସାରେଶ୍ୱରଙ୍କ ଚେକ୍ ବ୍ୟାଙ୍କ୍‌କୁ ପଠାଗଲା— | |
| ୨୨ | ପରମେଶ୍ୱରଙ୍କଠାରୁ ପୂର୍ବ ବାକୀ ବାବଦ ୧,୦୦୦ ଟଙ୍କା ଛାଡ଼ିଲେ ମିଳିଥିବା ଚେକ୍ ସେହିଦିନ ବ୍ୟାଙ୍କ୍‌କୁ ପଠାଗଲା— | ୯୯୦ |
| ୨୫ | ବ୍ୟାଙ୍କ୍ କମିସନ୍ ବାବଦ ଦାବୀ ଜଣାଇଲେ— | ୩.୫ |
| ୨୭ | ଦିନାୟକଙ୍କଠାରୁ ନଗଦ ମିଳିଲା— | ୧,୬୦୦ |
| ୨୮ | ବ୍ୟାଙ୍କ୍‌କୁ ଦପ୍ତରରୁ ପଠାଗଲା— | ୧,୦୦୦ |
| ୨୯ | ପରମେଶ୍ୱରଙ୍କ ଚେକ୍ ଅସମ୍ମାନିତ ହୋଇ ଫେରିଆସିଲା | |
| ୩୦ | ଘର ଖର୍ଚ୍ଚ ପାଇଁ ବ୍ୟାଙ୍କ୍‌ରୁ ଅଣାଗଲା— | ୧.୬୦ |

(ଉତ୍ତର—ନଗଦ ଜମା, ଦାୟୀ ବାକୀ ୧,୦୬୫ ଟଙ୍କା,

ବ୍ୟାଙ୍କ୍ ଜମା, ଅଧିକା ଉଠାଣ ୨,୧୫୧ ଟଙ୍କା,

ପ୍ରଦତ୍ତ ବଟା, — — ୫୦ ଟଙ୍କା

ପ୍ରାପ୍ତ ବଟା — — ୨୪ ଟଙ୍କା)

୧୨ । ଗୋଟିଏ ବ୍ୟବସାୟରେ ୧୯୭୨ ସାଲ ଜୁଲାଇ ୧ ତାରିଖରେ ଛୋଟ ଖାଜାଞ୍ଚି ଖୁଚୁରା ଖରଚ ନିମନ୍ତେ ବଡ଼ ଖାଜାଞ୍ଚିଙ୍କଠାରୁ ୧୭୫ ଟଙ୍କା ପାଇଲେ । ସପ୍ତାହ ମଧ୍ୟରେ ସେ ନିମ୍ନଲିଖିତ ଖର୍ଚ୍ଚ କଲେ :

| ୧୯୭୨ | | ଟଙ୍କା |
|---|---|---|
| ଜୁଲାଇ-୧ | ରସିଦ ବହି ଛପାଇବା ନିମନ୍ତେ ପ୍ରେସ୍‌କୁ ଦେଲେ— | ୨.୫ |
| | ଡାକ ଟିକଟ କ୍ରୟ କରିବା ନିମନ୍ତେ ଦେଲେ— | ୧୦ |
| ୨ | ତାର ଖର୍ଚ୍ଚ ବାବଦ ଦେଲେ— | ୫ |
| | ଚପରାଶୀଙ୍କୁ ବସ୍ ଭଡ଼ା ବାବଦ ଦେଲେ— | ୧୫ |
| ୩ | ଦପ୍ତର ନିମନ୍ତେ କାଗଜ ଓ କାଳି କ୍ରୟ କରାଗଲା— | ୧୭ |
| | ମ୍ୟାନେଜରଙ୍କୁ ଟ୍ୟାକ୍‌ସି ଭଡ଼ା ବାବଦ ଦେଲେ— | ୧୦ |

| | | |
|---|---|---|
| ଜୁଲାଇ-୪ | ମଜୁରି ଦେଲେ— | ୨୫ |
| | ରେଭିନ୍ୟୁ ଷ୍ଟାମ୍ପ୍ କିଣ୍ଗଲା— | ୫ |
| ୫ | ଚାଳି ଖରିଦ କରାଗଲା— | ୧୫ |
| | ରବର ଷ୍ଟାମ୍ପ୍ କିଣ୍ଗଲା— | ୧୦ |
| ୬ | ଗତ ମାସର ଇଲେକ୍ଟ୍ରିକ୍ ବିଲ ବାବଦ ଦିଆଗଲା— | ୨୨ |
| | ଚୂନ କାମ ବାବଦ ଚେକ୍ ଦିଆଗଲା— | ୧୦ |

ଅଗ୍ରଦତ୍ତ ପଦ୍ଧତି ଅନୁଯାୟୀ ବିଶ୍ଳେଷଣାତ୍ମକ ଖୁଚୁରା ରେକର୍ଡ଼ ବହି ପ୍ରସ୍ତୁତ କରି ବାକୀ ନିର୍ଣ୍ଣୟ କର ଓ ଆଗାମୀ ସପ୍ତାହ ସକାଶେ ସେ ବଡ଼ ଖଜାଞ୍ଚିଙ୍କଠାରୁ କେତେ ଟଙ୍କା ଆଣିବେ ତାହା ସ୍ଥିର କର ।

(ଉତ୍ତର – ଦାୟୀ ବାକୀ ୬ ଟଙ୍କା, ସେ ଆଣିବେ ୧୬୯ ଟଙ୍କା)

୧୩ । ଶ୍ରୀବସୁ ୧୯୭୨ ସାଲ ମାର୍ଚ୍ଚ ୩୧ ତାରିଖରେ ଦେଖିଲେ ଯେ ତାଙ୍କ ରେକର୍ଡ଼ ବହିର ବ୍ୟାଙ୍କ୍ କଲମର ଦାୟୀ ବାକୀ ୬, ୭୦୯ ଟଙ୍କା ଅଛି । ବ୍ୟାଙ୍କ୍ ପାସ୍ ବହି ସହିତ ତାଙ୍କର ରେକର୍ଡ଼ ବହି ମିଳାଇବାରେ ସେ ନିମ୍ନଲିଖିତ ପାର୍ଥକ୍ୟମାନ ଦେଖିଲେ :

(୧) ମାସ ମଧ୍ୟରେ ବିଭିନ୍ନ ବ୍ୟକ୍ତିଙ୍କୁ ଦିଆଯାଇଥିବା ୨,୫୦୩ ଟଙ୍କାର ଚେକ୍ ଏ ପର୍ଯ୍ୟନ୍ତ ସେମାନେ ବ୍ୟାଙ୍କ୍‌ରେ ଭଙ୍ଗାଇ ନାହାନ୍ତି ।

(୨) ଆଦାୟ କରି ଜମା କରିବା ସକାଶେ ବ୍ୟାଙ୍କ୍‌କୁ ପଠାଯାଇଥିବା ୩,୪୦୦ ଟଙ୍କାର ଚେକ୍ ବ୍ୟାଙ୍କ୍ ଏ ପର୍ଯ୍ୟନ୍ତ ଆଦାୟ କରି ନାହାନ୍ତି ।

(୩) ବ୍ୟାଙ୍କ୍ କମିସନ ବାବଦ ୩୫ ଟଙ୍କା ଦାବୀ କରି ବ୍ୟାଙ୍କ୍ ପାସ୍ ବହିରେ ଲେଖିଛନ୍ତି; କିନ୍ତୁ ତାହା ରେକର୍ଡ଼ ବହିରେ ଲେଖା ଯାଇ ନାହିଁ ।

(୪) ଜଣେ ଖାତକ ତାଙ୍କୁ ନ ଜଣାଇ ବ୍ୟାଙ୍କ୍‌ରେ ୩୦୦ ଟଙ୍କା ତାଙ୍କ ହିସାବରେ ଜମା ଦେଇଛନ୍ତି ।

ଏକ ବ୍ୟାଙ୍କ୍ ହିସାବ ସମନ୍ୱୟ ବିବରଣୀ ପ୍ରସ୍ତୁତ କରି ବ୍ୟାଙ୍କ୍ ପାସ ବହିରେ ଥିବା ବାକୀ ନିର୍ଣ୍ଣୟ କର ।

(ଉତ୍ତର—ବ୍ୟାଙ୍କ୍ ପାସ୍ ବହିର ବାକୀ-୬,୦୭୭ ଟଙ୍କା)

୧୪ । ନିମ୍ନଲିଖିତ ବିବରଣୀରୁ ୧୯୭୨ ସାଲ ଜୁନ୍ ୩୦ ତାରିଖର ବ୍ୟାଙ୍କ୍ ହିସାବ ସମନ୍ୱୟ ବିବରଣୀ ପ୍ରସ୍ତୁତ କର ।

| | | ଟଙ୍କା |
|---|---|---|
| (୧) | ବ୍ୟାଙ୍କ୍ ପାସ୍ ବହିର ଦାତା ବାକି (୩୦-୬-୧୯୭୨) | ୮,୬୦୫ |
| (୨) | ବ୍ୟାଙ୍କ୍କୁ ଅଦାୟ କରି ଜମା ଦେବା ନିମନ୍ତେ ପଠାଯାଇଥିବା ଚେକ୍‌ଗୁଡ଼ିକ ଏ ପର୍ଯ୍ୟନ୍ତ ବ୍ୟାଙ୍କ୍ ଆଦାୟ କରି ନାହାନ୍ତି— | ୩,୨୦୦ |
| (୩) | ବିଭିନ୍ନ ମହାଜନଙ୍କୁ ଦିଆଯାଇଥିବା ଚେକ୍ ସେମାନେ ଏ ପର୍ଯ୍ୟନ୍ତ ବ୍ୟାଙ୍କ୍‌ରେ ଭଙ୍ଗାଇ ନାହାନ୍ତି— | ୨,୪୦୦ |
| (୪) | ବ୍ୟାଙ୍କ୍ ଗଚ୍ଛିତକାରୀଙ୍କ ସକାଶେ ବୀମା ପ୍ରିମିୟମ୍ ବାବଦ ଜମା ଦେଇଛନ୍ତି; କିନ୍ତୁ ତାହା ରେକର୍ଡ଼ ବହିରେ ଲିପିବଦ୍ଧ ହୋଇନାହିଁ— | ୧୨୫ |
| (୫) | ବ୍ୟାଙ୍କ୍ ସରକାରୀ ଋଣପତ୍ରର ସୁଧ ଅଦାୟ କରି ବ୍ୟାଙ୍କ୍ ହିସାବରେ ଜମା ଦେଇଛନ୍ତି, କିନ୍ତୁ ସେ ବିଷୟ ଗଚ୍ଛିତକାରୀଙ୍କୁ ଜଣାଇ ନାହାନ୍ତି— | ୩୦୦ |

ରେକର୍ଡ଼ ବହିର ବ୍ୟାଙ୍କ୍ କକ୍ଷର ବାକି ସେହି ତାରିଖରେ କେତେ ଥିଲା ତାହା ନିର୍ଣ୍ଣୟ କର ।

(ଉତ୍ତର -ରେକର୍ଡ଼ ବହିର ବ୍ୟାଙ୍କ୍ କକ୍ଷର ଦାୟୀ ବାକି-୯,୨୩୦ ଟଙ୍କା )

୧୫ । ନିମ୍ନଲିଖିତ ବିବରଣୀରୁ ରମାକାନ୍ତଙ୍କର ବ୍ୟାଙ୍କ୍ ପାସ୍ ବହିରେ ୧୯୭୨ ସାଲ ଡିସେମ୍ବର ୩୧ ତାରିଖରେ ବାକି କେତେ ଥିଲା ତାହା ନିର୍ଣ୍ଣୟ କର :

| | | ଟଙ୍କା |
|---|---|---|
| (୧) | ରେକର୍ଡ଼ ବହି ଅନୁଯାୟୀ ୩୧-୧୨-୧୯୭୨ ତାରିଖରେ ଅଧିକା ଉଠାଣର ପରିମାଣ ଥିଲା— | ୫,୬୦୯ |
| (୨) | ଅଧିକା ଉଠାଣର ସୁଧ ବାବଦ ବ୍ୟାଙ୍କ୍ ପାସ୍ ବହିକୁ ଦାୟୀ କରାଯାଇଛି (ରେକର୍ଡ଼ ବହିରେ ଏହା ଲିପିବଦ୍ଧ ହୋଇ ନାହିଁ)— | ୧୫୦ |
| (୩) | ବ୍ୟାଙ୍କ୍ କମିସନ ବାବଦ ବ୍ୟାଙ୍କ୍ ପାସ୍ ବହିକୁ ଦାୟୀ କରାଯାଇଛି (ରେକର୍ଡ଼ ବହିରେ ଏହା ଲେଖାଯାଇ ନାହିଁ)— | ୩୫ |

(୪) ଆଦାୟ କରି ଜମା ଦେବା ନିମନ୍ତେ ବ୍ୟାଙ୍କ୍‌କୁ ପଠାଯାଇ ଥିବା ଚେକ୍ ଏ ପର୍ଯ୍ୟନ୍ତ ଆଦାୟ ହୋଇ ନାହିଁ— ୪,୨୦୦

(୫) ବିଭିନ୍ନ ମହାଜନଙ୍କୁ ଦିଆଯାଇଥିବା ଚେକ୍ ସେମାନେ ଏ ପର୍ଯ୍ୟନ୍ତ ଭଙ୍ଗାଇ ନାହାନ୍ତି— ୩,୪୦୦

(୬) ବ୍ୟାଙ୍କ୍ ସରକାରୀ ଋଣପତ୍ରର ସୁଧ ଆଦାୟ କରି ଜମା ଦେଇଛନ୍ତି (ରୋକଡ଼ ବହିରେ ଏହା ଲିପିବଦ୍ଧ ହୋଇନାହିଁ)— ୧,୨୦୦

(ଉତ୍ତର—ବ୍ୟାଙ୍କ୍ ପାସ୍ ବହି ଅନୁଯାୟୀ ଅଧିକା ଉଠାଣ—୫,୪୧୪ ଟଙ୍କା)

୧୬ । ୧୯୭୨ ସାଲ ମାର୍ଚ୍ଚ ୩୧ ତାରିଖରେ ବ୍ୟାଙ୍କ୍ ପାସ୍ ବହି ଅନୁଯାୟୀ କୃପାସିନ୍ଧୁଙ୍କର ଅଧିକା ଉଠାଣର ପରିମାଣ ୬,୬୦୩ ଟଙ୍କା ଥିଲା । ସେ ତାଙ୍କ ରୋକଡ଼ ବହି ସହିତ ବ୍ୟାଙ୍କ୍ ପାସ୍ ବହିକୁ ମିଳାଇବାରେ ନିମ୍ନଲିଖିତ କାରଣ ଯୋଗୁଁ ଅମେଳ ଘଟିଲା । ବ୍ୟାଙ୍କ୍ ହିସାବ ସମନ୍ୱୟ ବିବରଣୀ ପ୍ରସ୍ତୁତ କରି ତାଙ୍କର ରୋକଡ଼ ବହି ଅନୁଯାୟୀ ଅଧିକା ଉଠାଣର ପରିମାଣ ସ୍ଥିର କର :

(୧) ବିଭିନ୍ନ ମହାଜନଙ୍କୁ ଦିଆଯାଇଥିବା ଚେକ୍ ସେମାନେ ଏ ପର୍ଯ୍ୟନ୍ତ ଭଙ୍ଗାଇ ନାହାନ୍ତି— ୩,୨୦୫

(୨) ଆଦାୟ କରି ଜମା ଦେବା ନିମନ୍ତେ ବ୍ୟାଙ୍କ୍‌କୁ ପଠାଯାଇଥିବା ଚେକ୍ ଏ ପର୍ଯ୍ୟନ୍ତ ଆଦାୟ ହୋଇ ନାହିଁ— ୨,୪୦୮

(୩) ଅଧିକା ଉଠାଣର ୬ ମାସର ସୁଧ ବାବଦ ବ୍ୟାଙ୍କ୍ ପାସ୍ ବହିକୁ ଦାୟୀ କରାଯାଇଛି ; କିନ୍ତୁ ରୋକଡ଼ ବହିରେ ତାହା ଲିପିବଦ୍ଧ ହୋଇନାହିଁ— ୨୦୫

(୪) ଜଣେ ଗ୍ରାହକ କୃପାସିନ୍ଧୁଙ୍କୁ ନ ଜଣାଇ ବ୍ୟାଙ୍କ୍‌ରେ ପୂର୍ବ ବାକି ବାବଦ ଜମା ଦେଇଛନ୍ତି— ୧,୦୦୦

(୫) ବ୍ୟାଙ୍କ୍ କୃପାସିନ୍ଧୁଙ୍କର ବୀମାର ପ୍ରିମିୟମ୍ ଦେଇ ପାସ୍ ବହିକୁ ଦାୟୀ କରିଛନ୍ତି ; ଏହା ରୋକଡ଼ ବହିରେ ଲେଖାଯାଇ ନାହିଁ— ୨୯୦

(୬) ବ୍ୟାଙ୍କ୍ କମିସନ୍ ବାବଦ ପାସ୍ ବହିକୁ ଦାୟୀ କରିଛନ୍ତି; କିନ୍ତୁ ରୋକଡ଼ ବହିରେ ଏହାର ଉଲ୍ଲେଖ ନାହିଁ— ୪୫

(ଉତ୍ତର—ରୋକଡ଼ ବହି ଅନୁଯାୟୀ ଅଧିକା ଉଠାଣର ପରିମାଣ— ୮,୯୪୦ ଟଙ୍କା ଥିଲା ।)

୧୭। ୧୯୭୨ ସାଲ ମାର୍ଚ୍ଚ ୩୧ ତାରିଖରେ ଷ୍ଟାର ସାଇକେଲ୍ କମ୍ପାନିଙ୍କର ରେକର୍ଡ଼ ବହି ଅନୁଯାୟୀ ବ୍ୟାଙ୍କ୍ କକ୍ଷର ବାକୀ ୧୨,୫୦୯ ଟଙ୍କା ଥିଲା । ବ୍ୟାଙ୍କ୍ ପାସ୍ ବହି ସହିତ ରେକର୍ଡ଼ ବହିକୁ ତୁଳନା କରିବାରୁ ନିମ୍ନଲିଖିତ ବିଷୟଗୁଡ଼ିକ ଦୃଷ୍ଟିଗୋଚର ହେଲା :

(୧) ଆଦାୟ କରି ଜମା କରିବା ନିମନ୍ତେ ବ୍ୟାଙ୍କ୍‌କୁ ପଠାଯାଇଥିବା ୩,୪୦୦ ଟଙ୍କାର ଚେକ୍ ମାର୍ଚ୍ଚ ୩୧ ତାରିଖ ପର୍ଯ୍ୟନ୍ତ ଆଦାୟ ହୋଇନାହିଁ ।

(୨) ବିଭିନ୍ନ ମହାଜନଙ୍କୁ ଦିଆଯାଇଥିବା ଚେକ୍‌ଗୁଡ଼ିକ ମଧ୍ୟରୁ ୨,୮୦୦ ଟଙ୍କାର ଚେକ୍ ସେମାନେ ମାର୍ଚ୍ଚ ୩୧ ତାରିଖ ସୁଦ୍ଧା ଭଙ୍ଗାଇ ନାହାନ୍ତି ।

(୩) ବ୍ୟାଙ୍କ୍ ଖର୍ଚ୍ଚ ଓ କମିସନ ବାବଦ ୩୫ ଟଙ୍କା ପାସ୍ ବହିରେ ଲେଖା ଯାଇଛି କିନ୍ତୁ ରେକର୍ଡ଼ ବହିରେ ଲିପିବଦ୍ଧ ହୋଇନାହିଁ ।

(୪) ଜଣେ ଗ୍ରାହକ ବ୍ୟାଙ୍କ୍‌ରେ ଥିବା କମ୍ପାନିଙ୍କର ହିସାବରେ ୮୮୦ ଟଙ୍କା ଜମା ଦେଇଛନ୍ତି; କିନ୍ତୁ ରେକର୍ଡ଼ ବହିରେ ଏହା ଲିପିବଦ୍ଧ କରାଯାଇ ନାହିଁ ।

(୫) ଜମା କରିବାକୁ ଦିଆଯାଇଥିବା ଚେକ୍ ମଧ୍ୟରୁ ଖଣ୍ଡିଏ ୫୫୦ ଟଙ୍କାର ଚେକ୍ ଅସମ୍ମାନିତ ହୋଇ ଫେରିଛି । ଏହା ପାସ୍ ବହିରେ ଲେଖା ଯାଇଥିଲେ ସୁଦ୍ଧା ରେକର୍ଡ଼ ବହିରେ ଏହାର ଉଲ୍ଲେଖ ନାହିଁ ।

(କ) କମ୍ପାନିଙ୍କର ରେକର୍ଡ଼ ବହିରେ ଆବଶ୍ୟକୀୟ ସଂଶୋଧନ କରି ସଂଶୋଧିତ ବାକି ନିର୍ଣ୍ଣୟ କର ।

(ଖ) ଗୋଟିଏ ବ୍ୟାଙ୍କ୍ ହିସାବ ସମନ୍ୱୟ ବିବରଣୀ ପ୍ରସ୍ତୁତ କରି ୧୯୭୨ ସାଲ ମାର୍ଚ୍ଚ ୩୧ ତାରିଖର ବ୍ୟାଙ୍କ୍ ପାସ୍ ବହିର ବାକି ନିର୍ଦ୍ଧାରଣ କର ।

[ଉତ୍ତର—ରେକର୍ଡ଼ ବହିର ବ୍ୟାଙ୍କ୍ କକ୍ଷର ସଂଶୋଧିତ ଦାୟୀ ବାକି ୧୨,୮୦୪ ଟଙ୍କା ଓ ୩୧-୩-୧୯୭୨ ତାରିଖରେ ବ୍ୟାଙ୍କ୍ ପାସ୍ ବହିର ବାକି (ଦାତା) ୧୨,୨୦୪ ଟଙ୍କା ଥିଲା ।]

୧୮। ୧୯୭୨ ସାଲ ଅପ୍ରେଲ ୩୦ ତାରିଖରେ ବି. ବର୍ମା ଏଣ୍ଡ୍ କୋ : ଙ୍କ ରେକର୍ଡ଼ ବହିର ବ୍ୟାଙ୍କ୍ କକ୍ଷ ଅନୁଯାୟୀ ଅଧିକା ଉଠାଣର ପରିମାଣ ୨,୧୨୪ ଟଙ୍କା ଥିଲା; କିନ୍ତୁ ସେହି ତାରିଖରେ ବ୍ୟାଙ୍କ୍ ପାସ୍ ବହିର ଦାତା ବାକି ୪,୯୨୮ ଟଙ୍କା ଥିଲା । ରେକର୍ଡ଼ ବହି ସହିତ ବ୍ୟାଙ୍କ୍ ପାସ୍ ବହିକୁ ମିଳାଇବାରେ ନିମ୍ନଲିଖିତ ପାର୍ଥକ୍ୟ ଗୁଡ଼ିକ ଦୃଷ୍ଟିଗୋଚର ହେଲା :

(୧) ରେକଡ଼ ବହିର ଦାତା ପାର୍ଶ୍ୱର ଏକ ପୃଷ୍ଠାର ମୋଟ ପରିମାଣ ୨୧,୦୦୪ ଟଙ୍କା ସ୍ଥଳେ ୨୦,୧୦୪ ଟଙ୍କା ରୂପେ ପର ପୃଷ୍ଠାକୁ ନିଆଯାଇଛି ।

(୨) ୩୦-୪-୧୯୭୨ ତାରିଖରେ ଜମା କରିବା ସକାଶେ ଦପ୍ତରରୁ ପ୍ରେରିତ ୧,୩୯୭ ଟଙ୍କା ବ୍ୟାଙ୍କ୍ ପାସ୍ ବହିରେ ୧-୫-୧୯୭୨ ତାରିଖରେ ଅନ୍ତର୍ଭୁକ୍ତ ହୋଇଛି ।

(୩) କର୍ମୀମାନଙ୍କର ପୂର୍ବ ନିର୍ଦ୍ଦେଶ ଅନୁଯାୟୀ ବ୍ୟାଙ୍କ୍ ବୀମା ପ୍ରିମିୟମ୍ ବାବଦ ୧୮୨ ଟଙ୍କା ଦେଇ ପାସ୍ ବହିରେ ଲିପିବଦ୍ଧ କରିଛନ୍ତି ; କିନ୍ତୁ ଏହା ରେକଡ଼ ବହିରେ ଅନ୍ତର୍ଭୁକ୍ତ ହୋଇନାହିଁ ।

(୪) ରେକଡ଼ ବହିରେ ୧୮୮ ଟଙ୍କାର ଗୋଟିଏ ଖର୍ଚ୍ଚ ଦୁଇଥର ଲିପିବଦ୍ଧ ହୋଇଛି ।

(୫) ବ୍ୟାଙ୍କ୍ ଖର୍ଚ୍ଚ ଓ କମିଶନ୍ ବାବଦ ୧୧୪ ଟଙ୍କା ପାସ୍ ବହିରେ ଲେଖାଯାଇଛି କିନ୍ତୁ ରେକଡ଼ ବହିରେ ଏହାର ଉଲ୍ଲେଖ ନାହିଁ ।

(୬) ୨୮-୪-୧୯୭୨ ତାରିଖରେ ଜଣେ ଗ୍ରାହକ କର୍ମୀମାନଙ୍କ ହିସାବରେ ୬୮୨ ଟଙ୍କା ବ୍ୟାଙ୍କ୍‌ରେ ଜମା କରିଛନ୍ତି । ବ୍ୟାଙ୍କ୍ ଏ ବିଷୟ କର୍ମୀମାନଙ୍କୁ ୧-୫-୧୯୭୨ ତାରିଖରେ ଜଣାଇଛନ୍ତି ।

(୭) ୧୬-୪-୧୯୭୨ ତାରିଖରେ ବ୍ୟାଙ୍କ୍ ଭୁଲବଶତଃ କର୍ମୀମାନଙ୍କର ବ୍ୟାଙ୍କ୍ ହିସାବକୁ ୩,୧୨୦ ଟଙ୍କା ସକାଶେ ଦାତା କରିଛନ୍ତି ।

(୮) ଆୟକର ଜମା କରିବା ନିମନ୍ତେ ବ୍ୟାଙ୍କ୍‌କୁ ପଠାଯାଇଥିବା ଚେକ୍ ମଧ୍ୟରୁ ୨୦୦ ଟଙ୍କାର ଖଣ୍ଡିଏ ଚେକ୍ ଅସମ୍ମାନିତ ହୋଇ ଫେରିଛି । ବ୍ୟାଙ୍କ୍ ପାସ୍ ବହିରେ ଏହା ଅନ୍ତର୍ଭୁକ୍ତ ହୋଇଛି ମାତ୍ର ରେକଡ଼ ବହିରେ ହୋଇ ନାହିଁ ।

(୯) କେତେକ ମହାଜନଙ୍କୁ ଦିଆଯାଇଥିବା ଚେକ୍ ସେମାନେ ୩୦-୪-୧୯୭୨ ତାରିଖ ପର୍ଯ୍ୟନ୍ତ ବ୍ୟାଙ୍କ୍‌ରେ ଭଙ୍ଗାଇ ନାହାନ୍ତି ।

(କ) ବି. ବର୍ମା. ଏଣ୍ଡ୍ କୋ : ଙ୍କ ରେକଡ଼ ବହିର ବ୍ୟାଙ୍କ୍ କକ୍ଷର ୩୦-୪-୧୯୭୨ ତାରିଖର ସଂଶୋଧିତ ବାକୀ ନିର୍ଣ୍ଣୟ କର ।

(ଖ) ସେହି ତାରିଖର ବ୍ୟାଙ୍କ୍ ହିସାବ ସମନ୍ୱୟ ବିବରଣୀ ମଧ୍ୟ ପ୍ରସ୍ତୁତ କର ।

(ଉତ୍ତର—ରେକଡ଼ ବହିର ବ୍ୟାଙ୍କ୍ କକ୍ଷର ଦାୟୀ ବାକୀ ୨,୬୫୦ ଟଙ୍କା ଥିଲା ।)

(ନୋଟ—ଉପରୋକ୍ତ ଅଙ୍କର (୯) ନମ୍ବର ବିଷୟର ଟଙ୍କାର ଅଙ୍କ ଉହ୍ୟ ଅଛି । ଏହା ୫,୨୨୪ ଟଙ୍କା ହେବ ।)

## ତୃତୀୟ ପରିଚ୍ଛେଦ

## ବ୍ୟବହାରିକ ପଦ୍ଧତି –ପ୍ରାଥମିକ ହିସାବ ବହି ଓ ପ୍ରକୃତ ରୋଜନାମା

ପୂର୍ବ ପରିଚ୍ଛେଦରେ ନଗଦ ଓ ବ୍ୟାଙ୍କ୍ ସହିତ ନେଣଦେଣ ବିଷୟରେ ଆଲୋଚନା କରାଯାଇଛି । ମାତ୍ର ଜଣେ ବ୍ୟବସାୟୀଙ୍କର ପ୍ରକୃତ ନେଣଦେଣ ପର୍ଯ୍ୟାଲୋଚନା କଲେ ଦେଖାଯିବ ଯେ ନଗଦ ନେଣଦେଣ ତୁଳନାରେ ଉଧାରରେ ନେଣଦେଣର ସଂଖ୍ୟା ନଗଣ୍ୟ ନୁହେଁ, କାରଣ ସର୍ବଦା ନଗଦ କାରବାର କରିବା ସମ୍ଭବପର ନୁହେଁ । ବ୍ୟବସାୟୀଙ୍କୁ ଧାରରେ କ୍ରୟ ଓ ବିକ୍ରୟ କରିବାକୁ ପଡ଼େ । ସୁତରାଂ କିପରି ଭାବରେ ଏହି ପ୍ରକାରର କ୍ରୟ ଓ ବିକ୍ରୟ ପ୍ରତିଦିନ ନିୟମିତ ଭାବରେ ରୋଜନାମାର ସହାୟତା ବ୍ୟତୀତ ହିସାବରେ ଲିପିବଦ୍ଧ କରାଯାଏ ତାହାହିଁ ଏହି ପରିଚ୍ଛେଦର ଆଲୋଚ୍ୟ ବିଷୟ । ପ୍ରତିଦିନ ଧାରରେ ସଂଘଟିତ ହେଉଥିବା ପଣ୍ୟ କ୍ରୟ ଓ ବିକ୍ରୟ ପ୍ରଥମେ Day Book ବା ପ୍ରାଥମିକ ହିସାବର ଦୈନନ୍ଦିନ ବହିରେ ଲିପିବଦ୍ଧ କରାଯାଏ । ଧାରରେ ପଣ୍ୟ କ୍ରୟ କଲେ ତାହା କ୍ରୟ ବହି ( Purchases Day Book ) ଓ ଧାରରେ ପଣ୍ୟ ବିକ୍ରୟ କଲେ ତାହା ବିକ୍ରୟ ବହି ( Sales Day Book )ରେ ଲେଖାଯାଏ । ଏହାକୁ ସ୍ୱତନ୍ତ୍ର ରୋଜନାମା (Special Journal ମଧ୍ୟ କୁହାଯାଏ ।

ଯଦିଓ ରୋକଡ଼ ବହି ମଧ୍ୟ ଏକ ପ୍ରାଥମିକ ବହି ତଥାପି ଅନ୍ୟାନ୍ୟ ପ୍ରାଥମିକ ବହିଠାରୁ ଏହା ପୃଥକ୍, କାରଣ ଏହା ଖତିୟାନର ଏକ ଅଙ୍ଗ ମଧ୍ୟ । କିନ୍ତୁ କ୍ରୟ ବା ବିକ୍ରୟ ବହି କେବଳ ପ୍ରାଥମିକ ବହି ଏହା ଖତିୟାନ ହିସାବ ସ୍ୱରୂପ ଲେଖାଯାଏ ନାହିଁ । ପ୍ରତିଦିନ ଧାରରେ କ୍ରୟ ବିକ୍ରୟ ହେଉଥିବା ନେଣଦେଣଗୁଡ଼ିକ ଗୋଟିଏ ବହିରେ ଏକତ୍ର ଲେଖାହୋଇ ରହିଲେ ଖତିୟାନ ହିସାବରେ ଏହି ନେଣଦେଣଗୁଡ଼ିକ ସୁବିଧାରେ ଲିପିବଦ୍ଧ ହୋଇପାରିବ । କ୍ରୟ ବହିର ମୋଟ ପରିମାଣ ଖତିୟାନର କ୍ରୟ ହିସାବକୁ ଓ ବିକ୍ରୟ ବହିର ମୋଟ ପରିମାଣ ଖତିୟାନର ବିକ୍ରୟ ହିସାବକୁ ନିଆଯାଏ । ରୋକଡ଼ ବହିର ମୋଟ ପରିମାଣ କିନ୍ତୁ ଖତିୟାନର କୌଣସି ହିସାବକୁ ନିଆଯାଏ ନାହିଁ । ଏହି ଦିଗରୁ ଅନ୍ୟାନ୍ୟ ପ୍ରାଥମିକ ବହି ରୋକଡ଼ ବହିଠାରୁ ପୃଥକ୍ ।

## କ୍ରୟ ବହି :

ଧାରରେ ପଣ୍ୟ ଦ୍ରବ୍ୟ କିଣାଗଲେ ବିକ୍ରେତା ପଣ୍ୟ ସହିତ ଗୋଟିଏ ଚାଲାଣ ବା ବିଲ ପଠାନ୍ତି । ସେହି ଚାଲାଣରେ ବିବରଣୀ ଅନୁଯାୟୀ କ୍ରୟ ବହି ଲେଖାଯାଏ । ଏହି ବହିରେ ଥିବା କକ୍ଷଗୁଡ଼ିକର ନମୁନା ପ୍ରଦତ୍ତ ହେଲା :

କ୍ରୟ ବହି

| ତାରିଖ | ବିବରଣୀ | ଚାଲାଣ ନମ୍ବର | ଖ: ପୃ: | ବିସ୍ତାରିତ ବର୍ଣ୍ଣନା ଟଙ୍କା | ପରିମାଣ ଟଙ୍କା |
|---|---|---|---|---|---|
| (୧) | (୨) | (୩) | (୪) | (୫) | (୬) |

(୧) ଏହି କକ୍ଷରେ ସାମଗ୍ରୀ କ୍ରୟ କରାଯାଇଥିବା ତାରିଖ ଲେଖାଯାଏ ।

(୨) ଏହି କକ୍ଷରେ ଯାହାଙ୍କଠାରୁ ସାମଗ୍ରୀ ଉଧାରରେ କ୍ରୟ କରାଯାଇଛି ତାହାଙ୍କର ନାମ, ଠିକଣା ପ୍ରଭୃତି ଲେଖାଯିବ । ଯେହେତୁ ସାମଗ୍ରୀର ମୂଲ୍ୟ ତାହାଙ୍କୁ ପରେ ଦିଆଯିବ, ତେଣୁ ତାଙ୍କର ପୂର୍ଣ୍ଣ ବିବରଣ ରଖିବା ଆବଶ୍ୟକ ହୁଏ । ଏହା ବ୍ୟତୀତ ସାମଗ୍ରୀରର ବିବରଣ ମଧ୍ୟ ଏହି କକ୍ଷରେ ଲିପିବଦ୍ଧ କରାଯାଏ, ଯଥା

ମିତ୍ର ଏଣ୍ଡ୍ ପାର୍ଟନାର
୪୦ କ୍ୱିଣ୍ଟାଲ ଲୁହାଛଡ଼
ପ୍ରତି କ୍ୱିଣ୍ଟାଲ ୧୨୦୦ ଟଙ୍କା ଦରରେ

(୩) ବିକ୍ରେତା ସାମଗ୍ରୀ ସହିତ ଯେଉଁ ଚାଲାଣ ବା ବିଲ ପଠାନ୍ତି ତାହାର ନମ୍ବର ଏହି କକ୍ଷରେ ଲେଖାଯାଏ । ଅନେକ ବ୍ୟବସାୟୀ ଏହି ଚାଲାଣଗୁଡ଼ିକରେ ଏକ କ୍ରମିକ ନମ୍ବର ଦିଅନ୍ତି କାରଣ ତଦ୍ୱାରା ଭବିଷ୍ୟତରେ ଏହାର ଉଲ୍ଲେଖ କରିବା ସୁବିଧାଜନକ ହୁଏ । ସେ କ୍ଷେତ୍ରରେ ଦୁଇଟି ସଂଖ୍ୟା ମଧ୍ୟରେ ଗୋଟିଏ ରେଖା ଟାଣି ଏହା ଲେଖାଯାଏ, ଯଥା, ୨୧୩୫/୫ କିମ୍ବା ୫/୨୧୩୫ ।

(୪) ଖତିୟାନର ଯେଉଁ ପୃଷ୍ଠାରେ ଏହି ବ୍ୟକ୍ତି ବା ବ୍ୟବସାୟୀଙ୍କର ହିସାବ ଅଛି ସେଥିରେ ଏହି ନେଣଦେଣଟି ଲିପିବଦ୍ଧ କରାଯିବ ସେହି ପୃଷ୍ଠାର ଅଙ୍କ ଏହି କକ୍ଷରେ ଲେଖାଯାଏ ।

(୫) ଅନେକ ସମୟରେ ଜଣେ ବିକ୍ରେତାଙ୍କଠାରୁ ଏକାଧିକ ସାମଗ୍ରୀ କ୍ରୟ କରାଯାଏ । ସେପରି ସ୍ଥଳେ ବିଭିନ୍ନ ସାମଗ୍ରୀର ମୂଲ୍ୟ ଏହି କକ୍ଷରେ ଲେଖାଯାଏ ଓ ଯଦି ବିକ୍ରେତା କୌଣସି କାରବାରି ବଟା ପ୍ରଦାନ କରିଥାଆନ୍ତି ତାହା ମୋଟ ମୂଲ୍ୟରୁ ଏହି କକ୍ଷରେ ବାଦ୍ ଦିଆଯାଏ ଓ ନିଟ୍ ଅଙ୍କ ନିର୍ଣ୍ଣୟ କରି ତାହା ପରିମାଣ କକ୍ଷରେ ଲେଖାଯାଏ ।

(୬) ଏହି କକ୍ଷରେ ବିକ୍ରେତାଙ୍କର ପ୍ରାପ୍ୟ ନିଟ୍ ଅର୍ଥର ପରିମାଣ ଲେଖାଯାଏ ।

ପୂର୍ବରୁ କୁହାଯାଇଛି ଯେ କ୍ରୟ ବହି ବିକ୍ରେତାଙ୍କଠାରୁ ପ୍ରାପ୍ତ ଚାଲାଣ ବା ବିଲ ଭିତ୍ତିରେ ଲେଖାଯାଏ । ତେଣୁ ଏହି ଚାଲାଣର ଏକ ନମୁନା ନିମ୍ନରେ ପ୍ରଦତ୍ତ ହେଲା ।

ଟେଲିଫୋନ ନମ୍ବର—୧୬୩୪୫ ଟେଲିଗ୍ରାମ—ବିଦ୍ୟୁତ୍

ଚାଲାଣ ବା ବିଲ

ପ୍ରଭାତ ଇଲେକ୍‌ଟ୍ରିକ୍ ଷ୍ଟୋର୍ସ, କେନ୍ଦ୍ରାପଡ଼ା·······ଦାୟୀ

ଇଲେକ୍‌ଟ୍ରିକାଲ୍ ସେଲସ୍ ଏଣ୍ଡ୍ ସର୍ଭିସ୍, କଟକ ବାବଦ

ସର୍ତ୍ତ : ମାସକ ମଧ୍ୟରେ ପରିଶୋଧ କଲେ ୫% ବଟା ମିଳିବ

| | ଟଙ୍କା | ଟଙ୍କା |
|---|---|---|
| ୧୦ ଗୋଟି ଟେବୁଲ ଫ୍ୟାନ୍ | | |
| ପ୍ରତି ଫ୍ୟାନ୍ ୨୦୦ ଟଙ୍କା ଦରରେ | ୨,୦୦୦ | |
| ୧୦ ଗୋଟି ଟେବୁଲ ଲ୍ୟାମ୍ପ୍ | | |
| ପ୍ରତି ଲ୍ୟାମ୍ପ୍ ୧୫ ଟଙ୍କା ଦରରେ | ୧୫୦ | |
| | ୨,୧୫୦ | |
| ବାଦ୍ – ୧୦% ହାରରେ କାରବାରି ବଟା | ୨୧୫ | |
| | ୧,୯୩୫ | |
| ଯୋଗକର—ବନ୍ଧେଇ ଓ ପ୍ରେରଣ ଖର୍ଚ୍ଚ | ୧୫ | ୧,୯୫୦ |
| | | ୧,୯୫୦ |

ଚାଲାଣ ନମ୍ବର—୪୫୧ (ଏକ ହଜାର ନଅ ଶହ ପଚାଶ ଟଙ୍କା)

ତାରିଖ—୧ । ୫ । ୧୯୬୬

ଭୁଲ ଭ୍ରାନ୍ତି ଥିଲେ ପରେ ସଂଶୋଧନ କରାଯିବ

ଇଲେକ୍‌ଟ୍ରିକାଲ ସେଲସ୍ ଏଣ୍ଡ୍ ସର୍ଭିସ୍

## କରବାର ବଟ୍ଟା :

କ୍ରେତାଙ୍କୁ ଅଧିକ ପରିମାଣରେ ସାମଗ୍ରୀ କ୍ରୟ କରିବା ନିମନ୍ତେ ପ୍ରବର୍ତ୍ତାଇବାକୁ ବିକ୍ରେତା କାରବାର ବଟ୍ଟା ଦିଅନ୍ତି । ଏଥି ସକାଶେ ସେ ଗୋଟିଏ ନିୟମ ବାନ୍ଧି ଦେଇ ପାରନ୍ତି ଯାହାକୁ ସର୍ତ୍ତ କୁହାଯାଏ ୧୦୦ ଟଙ୍କାରୁ ଉର୍ଦ୍ଧ୍ୱ ପରିମାଣର ସାମଗ୍ରୀ କ୍ରୟ କଲେ ୩%, ୫୦୦ ଟଙ୍କାରୁ ଉର୍ଦ୍ଧ୍ୱ ପରିମାଣର ସାମଗ୍ରୀ କ୍ରୟ କଲେ ୫%, ଇତ୍ୟାଦି ସର୍ତ୍ତ କରି ପାରନ୍ତି । ଏହାଦ୍ୱାରା ଉଭୟ କ୍ରେତା ଓ ବିକ୍ରେତା ଲାଭବାନ୍ ହୁଅନ୍ତି । ଅଧିକ ପରିମାଣର ଦ୍ରବ୍ୟ କ୍ରୟ କଲେ କ୍ରେତା ସର୍ତ୍ତ ଅନୁଯାୟୀ କାରବାର ବଟ୍ଟା ପାଇବାଦ୍ୱାରା ତାଙ୍କର ଲାଭ ହୁଏ ଓ ବିକ୍ରେତାଙ୍କର ମାଲ ଶୀଘ୍ର ବିକ୍ରୟ ହେଲେ ସେ ତାଙ୍କର ନିର୍ଦ୍ଦିଷ୍ଟ ମୁନାଫା ପାଇ ପାରନ୍ତି । ବିକ୍ରୟଲବ୍ଧ ଅର୍ଥକୁ ପୁନର୍ବିନିଯୋଗ କରି ଭବିଷ୍ୟତରେ ଅଧିକା ମୁନାଫା ପାଇବାର ବ୍ୟବସ୍ଥା କରନ୍ତି । କାରବାର ବଟ୍ଟାର ହାର ମୁନାଫାର ସାଧାରଣ ହାର ଠାରୁ ଯଥେଷ୍ଟ ନ୍ୟୂନ ଥିବାରୁ ତାଙ୍କର କୌଣସି କ୍ଷତି ହୁଏ ନାହିଁ ।

ଏହି କାରବାର ବଟ୍ଟା ବିକ୍ରୟ ମୂଲ୍ୟର ମୋଟ ପରିମାଣରୁ ବାଦ୍ ଦିଆଯାଇ କ୍ରେତାଙ୍କଠାରୁ ନିଟ୍ ପରିମାଣର ଅର୍ଥ ଆଦାୟ କରାଯାଏ । ଯେହେତୁ କାରବାର ବଟ୍ଟା ବାବଦ ଟଙ୍କା ମୂଲ୍ୟରୁ ବାଦ୍ ଦିଆଯାଏ ତେଣୁ ତାହା ଭବିଷ୍ୟତରେ ଅନ୍ୟ କୌଣସି ହିସାବରେ ଲିପିବଦ୍ଧ କରାଯାଏ ନାହିଁ, କାରଣ ସେ ବାବଦରେ କେହି କାହାରିକୁ ଟଙ୍କା ଦେବେ ନାହିଁ କିମ୍ବା କେହି ସେ ବାବଦରେ କାହାରଠାରୁ ଟଙ୍କା ପାଇବେ ନାହିଁ । ଏହି ଦୃଷ୍ଟିରୁ ଏହା ନଗଦ ବଟ୍ଟା (Cash Discount) ଠାରୁ ସମ୍ପୂର୍ଣ୍ଣ ପୃଥକ୍, କାରଣ ନଗଦ ବଟ୍ଟା ରୋକଡ଼ ବହିର ସ୍ୱତନ୍ତ୍ର କକ୍ଷରେ ଲିପିବଦ୍ଧ ହୁଏ ଏବଂ ପ୍ରାପ୍ତ ବଟ୍ଟା ହିସାବ ଓ ପ୍ରଦତ୍ତ ବଟ୍ଟା ହିସାବରେ ଅନ୍ତର୍ଭୁକ୍ତ ହୋଇ ଖତିୟାନରେ ସ୍ଥାନ ପାଏ ।

କ୍ରୟ ବହି କିପରି ଲେଖାଯାଏ ତାହାର ଏକ ଦୃଷ୍ଟାନ୍ତ ନିମ୍ନରେ ପ୍ରଦତ୍ତ ହେଲା ।

### ଦୃଷ୍ଟାନ୍ତ ( ୧ )

ସ୍ପିଡ ଇଲେକ୍‌ଟ୍ରିକ୍ ହାଉସ୍, ବକ୍ସିବଜାର, କଟକ ବିଦ୍ୟୁତ୍ ସମ୍ପୃକ୍ତ ସାମଗ୍ରୀ ବିକ୍ରୟ କରନ୍ତି । ୧୯୭୬ ସାଲ ମାର୍ଚ୍ଚ ମାସରେ ଏହି ବ୍ୟବସାୟ ପ୍ରତିଷ୍ଠାନ ନିମ୍ନ

ବିକ୍ରେତାଙ୍କଠାରୁ ନିମ୍ନଲିଖିତ ସାମଗ୍ରୀଗୁଡ଼ିକ କ୍ରୟ କରିଥିଲେ । ତାହା ହେତୁ ପ୍ରତିଷ୍ଠାନର କ୍ରୟ ବହିରେ ଲିପିବଦ୍ଧ କର :

୧୯୭୬

ମାର୍ଚ୍ଚ-୫ ପି. ବାଳାଜିଙ୍କଠାରୁ କ୍ରୟ କଲେ—

ପ୍ରତି ଟୋଷ୍ଟର୍ (ପାଉଁରୁଟି ସେକା ଯନ୍ତ୍ର)
୮୦ ଟଙ୍କା ହାରରେ ୫ ଗୋଟି ଟୋଷ୍ଟର୍
ପ୍ରତି ଟେବୁଲ ଫ୍ୟାନ୍ ୧୨୦ ଟଙ୍କା ହାରରେ
୭ ଗୋଟି ଟେବୁଲ ଫ୍ୟାନ
କାରବାର ବଟ୍ଟା ୧୦%

,, ୯ କେ. କୁଆଲ୍ଲାଙ୍କଠାରୁ ଖରିଦ କଲେ—

ପ୍ରତି କେଟ୍‌ଲ୍ ୫୦ ଟଙ୍କା ହାରରେ ୧୦ଟି କେଟ୍‌ଲ୍
ପ୍ରତି କଫି ଗ୍ରାଇଣ୍ଡାର୍ ୭୦ ଟଙ୍କା ହାରରେ
୫ଟି କଫି ଗ୍ରାଇଣ୍ଡାର୍ ।

,, ୧୪ କଟକ ଏମ୍ପୋରିଅମ୍‌ରୁ ଖରିଦ କଲେ—

ପ୍ରତି ସିଲିଂ ଫ୍ୟାନ୍ ୨୦୦ ଟଙ୍କା ଦରରେ
୧୦ଟି ସିଲିଂ ଫ୍ୟାନ୍
କାରବାର ବଟ୍ଟା ୫%

,, ୧୭ ବେଙ୍ଗଲ୍ ବଲବ୍ କମ୍ପାନୀରୁ ଖରିଦ କଲେ—

୪୦ ଓ୍ୱାଟ୍‌ର ବଲବ୍ ପ୍ରତି ଡଜନ ୨୦ ଟଙ୍କା
ହାରରେ ୪ ଡଜନ
୧୦୦ ଓ୍ୱାଟ୍‌ର ବଲବ୍ ପ୍ରତି ଡଜନ ୫୦ ଟଙ୍କା
ହାରରେ ୩ ଡଜନ ।

**ସମାଧାନ :**

୧୯୭୨ ସାଲ ମାର୍ଚ୍ଚ ମାସର କ୍ରୟ ବହି

| ତାରିଖ | ବିବରଣ | ଚାଲାଣ ନମ୍ବର | ଖ: ପୃ: | ବିସ୍ତାରିତ ବର୍ଣ୍ଣନା ଟଙ୍କା | ପରିମାଣ ଟଙ୍କା |
|---|---|---|---|---|---|
| ୧୯୭୨ ମାର୍ଚ୍ଚ-୫ | ପି. ବାଜାଜ : | | | | |
| | ୫ ଗୋଟି ଟୋଷ୍ଟର୍ ୮୦ ଟଙ୍କା ହାରରେ | | | ୪୦୦·୦୦ | |
| | ୬ ଗୋଟି ଟେବୁଲ୍ ଫ୍ୟାନ୍ ୧୨୦ ଟଙ୍କା ହାରରେ | | | ୭୨୦·୦୦ | |
| | | | | ୧,୧୨୦·୦୦ | |
| | ବାଦ୍ ୧୦% କାରବାର ବଟା | | | ୧୧୨·୦୦ | ୧,୦୦୮·୦୦ |
| ,, -୯ | କେ. କ୍ରାଉଚ୍ଛା : | | | | |
| | ୧୦ ଗୋଟି କେଟ୍ଲି ୫୦ ଟଙ୍କା ହାରରେ | | | ୫୦୦·୦୦ | |
| | ୫ ଗୋଟି କଫି ଗ୍ରାଇଣ୍ଡାର୍—୬୦ ଟଙ୍କା ହାରରେ | | | ୩୦୦·୦୦ | ୮୦୦·୦୦ |
| ,, -୧୪ | କଟକ ଏମ୍ପୋରିଅମ୍ : | | | | |
| | ୧୦ ଗୋଟି ସିଲିଂ ଫ୍ୟାନ୍—୨୦୦ ଟଙ୍କା ଦରରେ | | | ୨,୦୦୦·୦୦ | |
| | ବାଦ୍ ୫% କାରବାର ବଟା | | | ୧୦୦·୦୦ | ୧,୯୦୦·୦୦ |
| ,, -୧୭ | ବେଙ୍ଗଲ୍ ବଲ୍ବ କମ୍ପାନୀ : | | | | |
| | ୪ ଡଜନ ୪୦ ଓ୍ୱାଟ୍ ବଲ୍ବ—୨୦ ଟଙ୍କା ହାରରେ | | | ୮୦·୦୦ | |
| | ୩ ଡଜନ ୧୦୦ ଓ୍ୱାଟ୍ ବଲ୍ବ ୫୦ ଟଙ୍କା ହାରରେ | | | ୧୫୦·୦୦ | ୨୩୦·୦୦ |
| | ମୋଟ ଟଙ୍କା | | | | ୩,୯୩୮·୦୦ |

ଏଠାରେ ମନେ ରଖିବାକୁ ହେବ ଯେ କେବଳ ଉଧାରରେ ପଣ୍ୟ କ୍ରୟ କରାଗଲେ ତାହା କ୍ରୟ ବହିରେ ଲେଖାଯିବ । ଯଦି ନଗଦ ମୂଲ୍ୟ ଦେଇ ପଣ୍ୟ କ୍ରୟ କରାଯାଏ ତାହେଲେ ତାହା ରୋକଡ଼ ବହିରେ ଲିପିବଦ୍ଧ କରାହେବ ।

## କ୍ରୟ ବହିରୁ ଖତିୟାନ ହିସାବ ପ୍ରସ୍ତୁତ କରିବା :

ପୂର୍ବରୁ କୁହାଯାଇଛି ଯେ ଅନ୍ୟାନ୍ୟ ପ୍ରାଥମିକ ବହି ରୋକଡ଼ ବହିଠାରୁ ସମ୍ପୂର୍ଣ୍ଣ ପୃଥକ୍ । ରୋକଡ଼ ବହିରୁ ଖତିୟାନ ହିସାବ ପ୍ରସ୍ତୁତ କଲାବେଳେ କେବଳ ଗୋଟିଏ ହିସାବରେ ନେଣଦେଣଟି ଲିପିବଦ୍ଧ କରାଯାଏ, ଯେହେତୁ ନେଣଦେଣର ଅପର ଦିଗଟି ରୋକଡ଼ ବହିରେ ଲିପିବଦ୍ଧ କରାଯାଇଥାଏ ଓ ରୋକଡ଼ ବହି ଖତିୟାନର ଅଙ୍ଗ ବିଶେଷ । ଯେପରି ହରି ଯଦି ଗୁରୁଙ୍କୁ ୧୦୦ ଟା ପୂର୍ବ ବାକି ବାବଦ ଦିଅନ୍ତି ତାହେଲେ ଖତିୟାନରେ କେବଳ ହରିଙ୍କର ହିସାବ ନଗଦ ତହବିଲ ବାବଦ ଦାତା ହେବ । ଅର୍ଥାତ୍ ଖତିୟାନରେ ଥିବା ହରିଙ୍କର ହିସାବର ଦାତା ପାର୍ଶ୍ୱରେ ନଗଦ ତହବିଲ ବାବଦ ୧୦୦ ଟଙ୍କା ଲେଖାଯିବ । ଏପରି କରାଯାଏ କାରଣ ଏହି ନେଣଦେଣର ଆଉ ଗୋଟିଏ ଦିଗ ରୋକଡ଼ ବହିରେ ଲେଖାଯାଇଛି, ଯଥା ରୋକଡ଼ ବହିର ଦାୟୀ ପାର୍ଶ୍ୱରେ ହରିଙ୍କ ହିସାବ ବାବଦ ୧୦୦ ଟଙ୍କା ଲେଖାଯାଇଛି । ଏହି ନେଣଦେଣରେ ୧୦୦ ଟଙ୍କା ରୋକଡ଼ ବହିର ଦାୟୀ ପାର୍ଶ୍ୱରେ ଓ ଖତିୟାନରେ ଥିବା ହରିଙ୍କ ହିସାବର ଦାତା ପାର୍ଶ୍ୱରେ ଲେଖାଯିବା ଦ୍ୱାରା ଦ୍ୱିଲିଖନ ହିସାବ ପଦ୍ଧତିର ନୀତି ପାଳିତ ହେଲା ।

କିନ୍ତୁ କ୍ରୟ ବହି ଏକ ଟିପା ଖାତା କହିଲେ ଅତ୍ୟୁକ୍ତି ହେବ ନାହିଁ । ଏହା ରୋକଡ଼ ବହି ତୁଲ୍ୟ ଖତିୟାନର ଅଂଶ ନୁହେଁ, ତେଣୁ କ୍ରୟ ବହିରୁ ଖତିୟାନ ହିସାବ ପ୍ରସ୍ତୁତ କଲାବେଳେ କ୍ରୟ ବହିର ମୋଟ ପରିମାଣ ଖତିୟାନର ଗୋଟିଏ ହିସାବର ଦାୟୀ ପାର୍ଶ୍ୱରେ ଓ ଅନ୍ୟ ଗୋଟିଏ ହିସାବର ଦାତା ପାର୍ଶ୍ୱରେ ଲିପିବଦ୍ଧ କରାଯିବ । ତାହେଲେ ଦ୍ୱିଲିଖନ ହିସାବ ପଦ୍ଧତିର ନୀତି ପାଳିତ ହେବ ।

ଯେଉଁ ବିକ୍ରେତାଙ୍କଠାରୁ ପଣ୍ୟ ଖରିଦ କରାଯାଏ, ତାଙ୍କର ହିସାବ ବ୍ୟକ୍ତିକ ହିସାବ ଶ୍ରେଣୀଭୁକ୍ତ । ଯେହେତୁ ସେ ପଣ୍ୟ ଉଧାରରେ ଦେବାଦ୍ୱାରା ଉପକାର ପ୍ରଦାନ କରିଛନ୍ତି ତେଣୁ ତାଙ୍କର ହିସାବକୁ ଦାତା କରାଯିବ । ଖରିଦ କରାଯାଇଥିବା ପଣ୍ୟ ବା ସାମଗ୍ରୀ ବସ୍ତୁବାଚକ ହିସାବ ଶ୍ରେଣୀଭୁକ୍ତ । ତେଣୁ ପଣ୍ୟ ବ୍ୟବସାୟକୁ ଆସିଥିବାରୁ କ୍ରୟ ହିସାବକୁ ଦାୟୀ କରାଯିବ । ଯଦିଓ ପ୍ରତି କ୍ରୟ କ୍ଷେତ୍ରେ ବିକ୍ରେତାଙ୍କର ହିସାବକୁ ଦାତା କରାଯାଏ, କ୍ରୟ ହିସାବକୁ ପ୍ରତି କ୍ରୟ କ୍ଷେତ୍ରେ ଦାୟୀ କରାଯାଏ ନାହିଁ । କ୍ରୟ ବହିର ସାପ୍ତାହିକ, ପାକ୍ଷିକ ବା ମାସିକ ମୋଟ ପରିମାଣ ସକାଶେ କ୍ରୟ ହିସାବକୁ ଦାୟୀ କରାଯାଏ ।

ମନେକର 'କ' ଠାରୁ ୧୦୦ ଟଙ୍କାର, 'ଖ' ଠାରୁ ୨୦୦ ଟଙ୍କାର ଓ 'ଗ' ଠାରୁ ୨୫୦ ଟଙ୍କାର ପଣ୍ୟ ସପ୍ତାହ ମଧ୍ୟରେ କ୍ରୟ କରାଯାଇଛି । ଏହି ନେଣଦେଣଗୁଡ଼ିକ କ୍ରୟ ବହିରେ ଯଥାରୀତି ଲିପିବଦ୍ଧ କରାଯାଇଛି । ଖତିୟାନ ପ୍ରସ୍ତୁତ କରିବା ସମୟରେ 'କ', 'ଖ' ଓ 'ଗ' ଙ୍କର ହିସାବକୁ ଯଥାକ୍ରମେ ୧୦୦, ୨୦୦ ଓ ୨୫୦ ଟଙ୍କା ନାମରେ ଦାତା କରାଯିବ ଓ କ୍ରୟ ବହିର ସାପ୍ତାହିକ ମୋଟ ପରିମାଣ ୫୫୦ ଟଙ୍କା ନାମରେ କ୍ରୟ ହିସାବକୁ ଦାୟୀ କରାଯିବ । ସୁତରାଂ ୫୫୦ ଟଙ୍କା ଗୋଟିଏ ହିସାବର ଦାୟୀ ପାର୍ଶ୍ୱରେ ଓ ମିଳିତ ଭାବରେ ତିନିଗୋଟି ହିସାବର ଦାତା ପାର୍ଶ୍ୱରେ ଲିପିବଦ୍ଧ ହେବା ଦ୍ୱାରା ଦ୍ୱିଲିଖନ ହିସାବ ପଦ୍ଧତିର ନୀତି ପାଳିତ ହେଲା । ଏହାର ଏକ ଦୃଷ୍ଟାନ୍ତ ନିମ୍ନରେ ପ୍ରଦତ୍ତ ହେଲା ।

## ଦୃଷ୍ଟାନ୍ତ (୨)

ରଥ ଏଣ୍ଡ୍ ସନସ୍ ୧୯୭୨ ସାଲ ଜୁନ୍ ମାସରେ ନିମ୍ନଲିଖିତ ବିକ୍ରେତାମାନଙ୍କଠାରୁ ବିଭିନ୍ନ ପଣ୍ୟ ଉଧାରରେ କ୍ରୟ କଲେ :

୧୯୭୨

ଜୁନ୍-୧ ସୁରଜିତ୍ ସାହୁଙ୍କଠାରୁ ପ୍ରତି କିଲୋ ଟ୧-୫୦ ପଇସା ଦରରେ ୫୦ କିଲୋଗ୍ରାମ୍ ଚାଉଳ ଖରିଦ କଲେ ।

୩ କମଳ ମିଶ୍ରଙ୍କଠାରୁ ପ୍ରତି ପେଟି ୫୫ ଟଙ୍କା ଦରରେ ୨୦ ପେଟି ସନ୍‌ଲାଇଟ୍ ସାବୁନ ଉଧାରରେ କ୍ରୟ କଲେ ।

୫ ସାମନ୍ତ ବ୍ରଦାର୍ସଙ୍କଠାରୁ ପ୍ରତି କିଲୋ ୨ ଟଙ୍କା ଦରରେ ୧୦୦ କିଲୋଗ୍ରାମ ହରଡ଼ ଡାଲି କ୍ରୟ କଲେ ।

୭ ହରିହର ନାୟକଙ୍କଠାରୁ ପ୍ରତି କିଲୋ ୪ ଟଙ୍କା ଦରରେ ୫୦ କିଲୋଗ୍ରାମ ଚିନି ଖରିଦ କଲେ ।

ଏହି ନେଣଦେଣଗୁଡ଼ିକ କ୍ରୟ ବହିରେ ଲିପିବଦ୍ଧ କର ଓ ତହିଁରୁ ଖତିୟାନ ହିସାବ ପ୍ରସ୍ତୁତ କର ।

୧୯୬୨ ସାଲ ଜୁନ୍ ମାସର କ୍ରୟ ବହି

| ତାରିଖ | ବିବରଣ | ଚାଲାଣ ନମ୍ବର | ଖ: ପୃ: | ବିସ୍ତାରିତ ବର୍ଣ୍ଣନା ଟଙ୍କା | ପରିମାଣ ଟଙ୍କା |
|---|---|---|---|---|---|
| ୧୯୬୨ ଜୁନ୍-୧ | ସୁରଜିତ୍ ସାହୁ :<br>୫୦ କଲେ ଚାଉଳ, ଟ୧-୫୦ ଦରରେ | | | | ୭୪-୦୦ |
| ୩ | କମଳ ମିଶ୍ର :<br>୨୦ ପେଟି ସନ୍‌ଲାଇଟ୍ ସାବୁନ ୫୫ ଟଙ୍କା ଦରରେ | | | | ୧,୧୦୦-୦୦ |
| ୫ | ସାମନ୍ତ ବ୍ରଦାର୍ସ :<br>୧୦୦ କଲେ ଅରହଡାଲି, ୨ ଟଙ୍କା ଦରରେ | | | | ୨୦୦-୦୦ |
| ୭ | ହରିହର ନାୟକ :<br>୫୦ କଲେ ମିଶ୍ରି, ୪ ଟଙ୍କା ଦରରେ | | | | ୨୦୦-୦୦ |
| | | | | | ୧,୫୭୪-୦୦ |

# ରଥ ଏଣ୍ଡ୍ ସନ୍ସଙ୍କର ଖତିୟାନ

ଦାୟୀ — ମୁରଚନ୍ଦ୍ର ସାହୁଙ୍କର ହିସାବ — ଦାତା

| | | | | ତାରିଖ | ବିବରଣୀ | ପୃଷ୍ଠା | ଟଙ୍କା |
|---|---|---|---|---|---|---|---|
| | | | | ୧୯୭୨ ଜୁନ୍-୧ | ନିସ୍ୱ ହିସାବ ବାବଦ | ପ୍ରା: ବ:ପୃ: | ୭୫.୦୦ |

ଦାୟୀ — କମଳ ମିଶ୍ରଙ୍କର ହିସାବ — ଦାତା

| | | | | ତାରିଖ | ବିବରଣୀ | ପୃଷ୍ଠା | ଟଙ୍କା |
|---|---|---|---|---|---|---|---|
| | | | | ୧୯୭୨ ଜୁନ୍-୩ | ନିସ୍ୱ ହିସାବ ବାବଦ | ପ୍ରା: ବ:ପୃ: | ୧,୧୦୦.୦୦ |

ଦାୟୀ — ସାମନ୍ତ ବ୍ରଦର୍ସଙ୍କ ହିସାବ — ଦାତା

| | | | | ତାରିଖ | ବିବରଣୀ | ପୃଷ୍ଠା | ଟଙ୍କା |
|---|---|---|---|---|---|---|---|
| | | | | ୧୯୭୨ ଜୁନ୍-୪ | ନିସ୍ୱ ହିସାବ ବାବଦ | ପ୍ରା: ବ:ପୃ: | ୨୦୦.୦୦ |

ଦାୟୀ — ହରିହର ନାୟକଙ୍କର ହିସାବ — ଦାତା

| | | | | ତାରିଖ | ବିବରଣୀ | ପୃଷ୍ଠା | ଟଙ୍କା |
|---|---|---|---|---|---|---|---|
| | | | | ୧୯୭୨ ଜୁନ୍-୬ | ନିସ୍ୱ ହିସାବ ବାବଦ | ପ୍ରା: ବ:ପୃ: | ୨୦୦.୦୦ |

ଧାରୀ — କ୍ରୟ ହିସାବ — ଦାତା

| | | | | | | | | |
|---|---|---|---|---|---|---|---|---|
| ୧୯୬୬ ଜୁନ୍ ୩୦ | ବିଭିନ୍ନ ହିସାବ ବାବଦ | ପ୍ରା: ବ.ପୃ: | ଟଙ୍କା ୧,୫୭୫ | | | | | ଟଙ୍କା |

ବିକ୍ରେତାମାନଙ୍କର ହିସାବରେ ଓ କ୍ରୟ ହିସାବରେ ପରିମାଣ କକ୍ଷର ପୂର୍ବବର୍ତ୍ତୀ କକ୍ଷରେ ପ୍ରା. ବ: ପୃ: ଲେଖାଯାଇଛି ; ଏହା ପ୍ରାଥମିକ ବହିର ପୃଷ୍ଠାର ସଂକ୍ଷିପ୍ତ ଚିହ୍ନ । କ୍ରୟ ବହିର ଯେଉଁ ପୃଷ୍ଠାରୁ ଏହି ହିସାବଗୁଡ଼ିକ ଖାତାସ୍ଥାନକୁ ଅଣାଯାଇଛି ସେହି ପୃଷ୍ଠାର ସଂଖ୍ୟା ଏହି କକ୍ଷରେ ଲେଖାଯିବ । ଭବିଷ୍ୟତରେ ଉଲ୍ଲେଖ କରିବା ସକାଶେ ଏହା ଆବଶ୍ୟକ ହୁଏ । ଅନେକ ପ୍ରା: ବ: ପୃ: ନ ଲେଖି ରୋ: ପୃ, ଅର୍ଥାତ୍ 'ରୋଜନାମା ପୃଷ୍ଠା' ଲେଖନ୍ତି । ଯେହେତୁ ପ୍ରାଥମିକ ବହିଗୁଡ଼ିକ ରୋଜନାମା ପରିବର୍ତ୍ତରେ ବ୍ୟବହୃତ ହୁଏ ତେଣୁ ଏହିପରି ଲେଖିବା ଯୁକ୍ତିଯୁକ୍ତ ବୋଲି ମନେ ହୁଏ ।

ଉଲ୍ଲିଖିତ କ୍ରୟ ହିସାବରେ କେବଳ ଉଧାରରେ କ୍ରୟ କରାଯାଇଥିବା ପଣ୍ୟର ମୋଟ ପରିମାଣ ଲେଖାଯାଇଛି । କିନ୍ତୁ ଏହା ମନେ ରଖିବାକୁ ହେବ ଯେ କ୍ରୟ ହିସାବରେ ଉଭୟ ଉଧାର ଓ ନଗଦ ମୂଲ୍ୟରେ କ୍ରୟ କରାଯାଇଥିବା ପଣ୍ୟର ମୋଟ ପରିମାଣ ଲିପିବଦ୍ଧ କରାଯିବ । ରୋକଡ଼ ବହିରୁ ଏହି ପରିମାଣ କ୍ରୟ ହିସାବକୁ ଅଣାଯିବ ।

## ବୈଶ୍ଳେଷିକ କ୍ରୟ ବହି :

କେତେକ ବ୍ୟବସାୟୀ ନିର୍ଦ୍ଦିଷ୍ଟ କେତେକ ପଣ୍ୟ କ୍ରୟ ଓ ବିକ୍ରୟ କରନ୍ତି । ସେମାନେ ସାଧାରଣତଃ ପ୍ରତି ପଣ୍ୟ ନିମନ୍ତେ ଗୋଟିଏ ଗୋଟିଏ ବିଭାଗ ସୃଷ୍ଟି କରନ୍ତି । କେଉଁ ବିଭାଗରେ କେତେ ପରିମାଣର ପଣ୍ୟ ଉଧାରରେ କ୍ରୟ କରାଗଲା ତାହା ସହଜରେ ଜାଣିବା ଉଦ୍ଦେଶ୍ୟରେ ପ୍ରତି ବିଭାଗର ପଣ୍ୟକୁ ପୃଥକ୍ ଭାବରେ କ୍ରୟ ବହିରେ ଓ କ୍ରୟ ହିସାବରେ ଲିପିବଦ୍ଧ କରନ୍ତି । କ୍ରୟ ବହିରେ 'ପରିମାଣ' କକ୍ଷ ପରେ ପ୍ରତି ବିଭାଗ ସକାଶେ ଗୋଟିଏ ଲେଖା ଅଧିକା କକ୍ଷ ସଂଯୋଜନ କରି ଏପରି କ୍ରୟ ବହି ପ୍ରସ୍ତୁତ କରନ୍ତି । ଏହାକୁ ବୈଶ୍ଳେଷିକ କ୍ରୟ ବହି ବୋଲି କୁହାଯାଏ । ଏହାର ଏକ ଦୃଷ୍ଟାନ୍ତ ନିମ୍ନରେ ପ୍ରଦତ୍ତ ହେଲା ।

## ଦୃଷ୍ଟାନ୍ତ (୩)

ଦୃଷ୍ଟାନ୍ତ (୨) ରେ ଥିବା ବିବରଣୀରୁ ଏକ ବୈଶ୍ଳେଷିକ କ୍ରୟ ବହି ପ୍ରସ୍ତୁତ କର ଓ ତହିଁରୁ ଖତିୟାନ ହିସାବ ପ୍ରସ୍ତୁତ କର ।

ବୈଶ୍ଳେଷିକ କ୍ରୟ ବହି

| ତାରିଖ | ବିବରଣ | ଚାଲଣ ନମ୍ବର | ଖ: ପୃ: | ବିଭାଗୀୟ ବର୍ଣ୍ଣନା ଟଙ୍କା | ପରିମାଣ ଟଙ୍କା | ଚାଉଳ ଟଙ୍କା | ସନ୍‌ଲାଇଟ୍ ସାବୁନ୍ ଟଙ୍କା | ହରଡ଼ ଡାଲି ଟଙ୍କା | ମିଶ୍ରି ଟଙ୍କା |
|---|---|---|---|---|---|---|---|---|---|
| ୧୯୭୨ ଜୁନ୍ ୧ | ସୁରକ୍ଷିତ୍ ସାହୁ : ୫୦ କଲେ ଚାଉଳ, ୧·୫୦ ଦରରେ | | | | ୭୫·୦୦ | ୭୫·୦୦ | | | |
| ୩ | କମଳ ମିଶ୍ର : ୨୦ ପେଟି ସନ୍‌ଲାଇଟ୍ ସାବୁନ୍, ଟ ୫୫ ଦରରେ | | | | ୧,୧୦୦·୦୦ | | ୧,୧୦୦·୦୦ | | |
| ୫ | ସାମନ୍ତ ଭ୍ରାତୃ : ୧୦୦ କଲେ ହରଡ଼ ଡାଲି ଟ ୨ ଦରରେ | | | | ୨୦୦·୦୦ | | | ୨୦୦·୦୦ | |
| ୭ | ହରିହର ନାୟକ : ୫୦ କଲେ ମିଶ୍ରି, ଟ ୪ ଦରରେ | | | | ୨୦୦·୦୦ | | | | ୨୦୦·୦୦ |
| | ମୋଟ | | | | ୧,୫୭୫·୦୦ | ୭୫·୦୦ | ୧,୧୦୦·୦୦ | ୨୦୦·୦୦ | ୨୦୦·୦୦ |
| | | | | | | ଖ:ପୃ: | ଖ.ପୃ: | ଖ:ପୃ: | ଖ:ପୃ: |

ଏଠାରେ ଗୋଟିଏ ବିଷୟ ମନେ ରଖିବାକୁ ହେବ, ତାହା ହେଲା ଏହି ଯେ, ପ୍ରତି ଜମାର ପରିମାଣ 'ପରିମାଣ' କକ୍ଷରେ ଲେଖାଯିବ ଓ ସେହି ପରିମାଣ ପୁଣି ସଂପୃକ୍ତ ବିଭାଗୀୟ କକ୍ଷରେ ଲେଖାଯିବ । ଉଦାହରଣ ସ୍ୱରୂପ ଉଧାରରେ ଜମା କରାଯାଇଥିବା ୭୫ ଟଙ୍କା ମୂଲ୍ୟର ଚାଉଳ 'ପରିମାଣ' କକ୍ଷରେ ଓ ଚାଉଳ ବିଭାଗ କକ୍ଷରେ ଲେଖା ଯାଇଛି । ପ୍ରତି ବିଭାଗୀୟ ପଣ୍ୟର ଜମା ଠିକ୍ ସେହିପରି ଥରେ 'ପରିମାଣ' କକ୍ଷରେ ଓ ପୁଣି ଥରେ ପଣ୍ୟ ବିଭାଗର ସ୍ୱତନ୍ତ୍ର କକ୍ଷରେ ଲିପିବଦ୍ଧ କରାଯିବ । ଏହାର ସୁବିଧା ହେଲା ଏହି ଯେ ବିଭିନ୍ନ ବିଭାଗୀୟ କକ୍ଷର ସମଷ୍ଟି 'ପରିମାଣ' କକ୍ଷର ମୋଟ ସଂଖ୍ୟା ସହିତ ସମାନ ହେବ । ତାହା ସମାନ ନ ହେଲେ ଜମା ବହି ଲେଖିବାରେ ତ୍ରୁଟି ଅଛି ବୋଲି ବୁଝାଯିବ ।

ପ୍ରତି ବିଭାଗୀୟ କକ୍ଷର ନିମ୍ନରେ ଖ: ପୃ ଲେଖାଯାଇଛି । ପ୍ରତ୍ୟେକ ବିଭାଗର ପଣ୍ୟ ନିମନ୍ତେ ସ୍ୱତନ୍ତ୍ର ଜମା ହିସାବ ପ୍ରସ୍ତୁତ କରାଯାଏ । ଖତିଆନର ଯେଉଁ ପୃଷ୍ଠାରେ ଏହି ବିଭାଗ ପଣ୍ୟର ହିସାବ ଲେଖାଯିବ ଏଠାରେ ସେହି ପୃଷ୍ଠାର ସଂଖ୍ୟା ଲେଖିବାକୁ ହେବ ।

ଜମା ବହିରୁ ଖତିଆନ ହିସାବ ପ୍ରସ୍ତୁତ କଲାବେଳେ ବିକ୍ରେତାମାନଙ୍କର ହିସାବରେ କୌଣସି ପରିବର୍ତ୍ତନ ହେବ ନାହିଁ । ଏ ଗୁଡ଼ିକ ପୂର୍ବ ଦୃଷ୍ଟାନ୍ତରେ ଯେପରି ଥିଲା ଠିକ୍ ସେହିପରି ରହିବ, ତେଣୁ ସେହି ହିସାବଗୁଡ଼ିକ ଏଠାରେ ପୁଣିଥରେ ଲେଖିବା ଅନାବଶ୍ୟକ । ମାତ୍ର ପ୍ରତି ବିଭାଗର ପଣ୍ୟ ନିମନ୍ତେ ସ୍ୱତନ୍ତ୍ର ଜମା ହିସାବ ଖୋଲାଯିବ । ଏହାର ନମୁନା ନିମ୍ନରେ ପ୍ରଦତ୍ତ ହେଲା ।

ଦାୟୀ — ଚାଉଳ ଜମା ହିସାବ — ଦାତା

| | | | | | | | |
|---|---|---|---|---|---|---|---|
| | | | ଟଙ୍କା | | | | ଟଙ୍କା |
| ୧୯୭୨ ଜୁନ ୩୦ | ସୁରେନ୍ଦ୍ର ସାହୁଙ୍କର ହିସାବ ବାବଦ | | ୭୫.୦୦ | | | | |

ଦାୟୀ ସନ୍‌ଲାଇଟ୍ ସାବୁନ ଜମା ହିସାବ ଦାତା

| | | | ଟଙ୍କା | | | | ଟଙ୍କା |
|---|---|---|---|---|---|---|---|
| ୧୯୭୨ ଜୁନ୍ ୩୦ | କମଳ ମିତ୍ରଙ୍କର ହିସାବ ବାବଦ | | ୧,୧୦୦.୦୦ | | | | |

ଦାୟୀ ହରଡ଼ ଡାଲି ଜମା ହିସାବ ଦାତା

| | | | ଟଙ୍କା | | | | ଟଙ୍କା |
|---|---|---|---|---|---|---|---|
| ୧୯୭୨ ଜନ୍ ୩୦ | ସାମନ୍ତ ବ୍ରଦାର୍ସଙ୍କର ହିସାବ ବାବଦ | | ୨୦୦.୦୦ | | | | |

ଦାୟୀ ମିଶ୍ରି ଜମା ହିସାବ ଦାତା

| | | | ଟଙ୍କା | | | | ଟଙ୍କା |
|---|---|---|---|---|---|---|---|
| ୧୯୭୨ ଜୁନ୍ ୩୦ | ହରିହର ନାୟକଙ୍କର ହିସାବ ବାବଦ | | ୨୦୦.୦୦ | | | | |

ଗୃହୀତ ଜମା ହିସାବରେ କେବଳ ଜଣେ ବିକ୍ରେତାଙ୍କଠାରୁ ଗ୍ରହଣ ଜମା କରାଯାଇଥିବାରୁ ତାଙ୍କର ନାମ ଉଲ୍ଲେଖ କରାଯାଇଛି । ମାତ୍ର ଯଦି ଏକାଧିକ ବିକ୍ରେତାଙ୍କ ଠାରୁ ଗୃହୀତ ଜମା କରାଯାଇଥାନ୍ତା ତାହେଲେ ବିକ୍ରେତାଙ୍କର ନାମ ଲେଖା ନ ଯାଇ ଦାୟୀ ପାର୍ଶ୍ୱରେ 'ବିଭିନ୍ନ ବିକ୍ରେତାଙ୍କର ହିସାବ ବାବଦ' ବୋଲି ଲେଖାଯାଇଥାନ୍ତା ।

ଯେଉଁ କ୍ଷେତ୍ରରେ ଖତିୟାନରେ ମଧ୍ୟ ବିଭିନ୍ନ କିଛି ବିଶିଷ୍ଟ ଜମା ବନ୍ଦି ଲେଖାଯାଏ ସେଠାରେ ଉପରୋକ୍ତ ଗୃହୀତ ହିସାବ ପରିବର୍ତ୍ତେ ବିଭିନ୍ନ କିଛି ବିଶିଷ୍ଟ ଗୋଟିଏ ଜମା ହିସାବ ଖୋଲାଯାଏ । ଏହାର ନମୁନା ନିମ୍ନରେ ପ୍ରଦତ୍ତ ହେଲା ।

ଦାୟୀ କ୍ରୟ ହିସାବ ଦାତା

| ତାରିଖ | ବିବରଣୀ | ପ୍ରା: ବା: ପୃ: | ସ୍କୁଟଳ | ସନ୍-ଲାଇଟ୍ | ହରଡ଼ି ଡାଲି | ଚିନି | ମୋଟ |
|---|---|---|---|---|---|---|---|
| | | | ଟଙ୍କା | ଟଙ୍କା | ଟଙ୍କା | ଟଙ୍କା | ଟଙ୍କା |
| ୧୯୭୬ ଜୁନ୍ ୩୦ | ବିଭିନ୍ନ ହିସାବ ବାବଦ | | ୭୫·୦୦ | ୧,[illegible]୦୦·୦୦ | [illegible]୦୦·୦୦ | [illegible]୦୦·୦୦ | ୧,୫୭୫·୦୦ |

## ବିକ୍ରୟ ବହି :

ପଣ୍ୟ ବିକ୍ରୟ କରିବା ବ୍ୟବସାୟୀଙ୍କର ପ୍ରଧାନ କାର୍ଯ୍ୟ । ଯେପରି ପଣ୍ୟର କ୍ରୟ ଉଭୟ ନଗଦ ମୂଲ୍ୟରେ ଓ ଉଧାରରେ କରାଯାଏ, ପଣ୍ୟର ବିକ୍ରୟ ମଧ୍ୟ ନଗଦ ମୂଲ୍ୟରେ ହୋଇପାରେ କିମ୍ବା ଧାରରେ ହୋଇପାରେ । ଯଦି କୌଣସି ବ୍ୟକ୍ତି ବା ପ୍ରତିଷ୍ଠାନକୁ ନଗଦ ମୂଲ୍ୟ ନେଇ ପଣ୍ୟ ବିକ୍ରୟ କରାଯାଏ ତାହେଲେ ତାହା ସିଧା ସଳଖ କ୍ୟାସ ବହିରେ ଲିପିବଦ୍ଧ କରାଯିବ । ଯଦି ଏହି ପଣ୍ୟ କୌଣସି ବ୍ୟକ୍ତି ବା ପ୍ରତିଷ୍ଠାନକୁ ଧାରରେ ବିକ୍ରୟ କରାଯାଏ ତାହେଲେ ତାହା ପ୍ରଥମେ କ୍ରୟ ବହି ଭଳି ବିକ୍ରୟ ବହିରେ ଲିପିବଦ୍ଧ କରାଯିବ ।

ବିକ୍ରୟ ବହିର କକ୍ଷଗୁଡ଼ିକ କ୍ରୟ ବହିର ଅନୁରୂପ । ସେ ଗୁଡ଼ିକର ବର୍ଣ୍ଣନା ନିମ୍ନରେ ପ୍ରଦତ୍ତ ହେଲା ।

(୧) ଏହି କକ୍ଷରେ ବିକ୍ରୟର ତାରିଖ ଲେଖାଯିବ ।

(୨) ଏହି କକ୍ଷରେ ଯେଉଁ ବ୍ୟକ୍ତି ବା ପ୍ରତିଷ୍ଠାନକୁ ପଣ୍ୟ ବିକ୍ରୟ କରାଗଲା ତାଙ୍କର ନାମ, ଠିକଣା ପ୍ରଭୃତି ଏହି ବିବରଣୀ କକ୍ଷରେ ଲେଖାଯିବ । କେତେ ପରିମାଣର ପଣ୍ୟ କେତେ ଦରରେ ବିକ୍ରୟ କରାଗଲା ତାହାର ବିବରଣ ମଧ୍ୟ ଏହି କକ୍ଷରେ ଲେଖାଯିବ ।

(୩) ଏହି କକ୍ଷରେ ଚାଲାଣ ବା ବିଲ୍ ନମ୍ବର ଲେଖାଯିବ ।

(୪) ଏହି କକ୍ଷରେ କ୍ରେତାଙ୍କର ହିସାବ ଖତିୟାନର ଯେଉଁ ପୃଷ୍ଠାରେ ଲିପିବଦ୍ଧ କରାଯିବ ସେହି ପୃଷ୍ଠାଙ୍କ ଏଠାରେ ଲେଖାଯିବ ।

(୫) ଏହି କକ୍ଷରେ ବିସ୍ତାରିତ ବର୍ଣ୍ଣନା ଲେଖାଯାଏ । ଯଦି କ୍ରେତାଙ୍କୁ କାରବାର ବଟା ଦିଆଯାଏ ତାହା ଏହି କକ୍ଷରେ ମୋଟ ପ୍ରାପ୍ୟ ପରିମାଣରୁ ବାଦ୍ ଦିଆଯିବ ।

(୬) ଏହି କକ୍ଷରେ କ୍ରେତାଙ୍କଠାରୁ ପ୍ରାପ୍ୟ ନିଟ୍ ପରିମାଣ ଲେଖାଯିବ ।

ବିକ୍ରୟ ବହିର ଦୃଷ୍ଟାନ୍ତ ନିମ୍ନରେ ପ୍ରଦତ୍ତ ହେଲା ।

## ଦୃଷ୍ଟାନ୍ତ ( ୪ )

ରେଙ୍ଗୁନ ଷ୍ଟୋର୍ସ୍ ନିମ୍ନଲିଖିତ ପଣ୍ୟ ବିଭିନ୍ନ ଗ୍ରାହକଙ୍କୁ ଧାରରେ ବିକ୍ରୟ କଲେ :

୧୯୭୨

ମଇ-୧ ସ୍ମିଥ୍ ବ୍ରଦାର୍ସଙ୍କୁ ପ୍ରତି ଡଜନ ୨୫ ଟଙ୍କା ଦରରେ ୧୦ ଡଜନ କାଚ ଗ୍ଲାସ୍ ବିକ୍ରୟ କଲେ । କାରବାର ବଟା ୪% ।

୩ ହରିଶଙ୍କରଙ୍କୁ ପ୍ରତି ପେଟି ୪୦ ଟଙ୍କା ଦରରେ ପେଟି ବିସ୍କୁଟ୍ ବିକ୍ରୟ କଲେ । ତାଙ୍କୁ ୧୦% କାରବାର ବଟା ଦିଆଗଲା ।

୫ କମଲାକାନ୍ତ ଷ୍ଟୋର୍ସ୍‌କୁ ପ୍ରତି କେଜି ୮ ଟଙ୍କା ଦରରେ ୧୦ କେଜି ଲଜେନସ୍ ବିକ୍ରୟ କରାଗଲା ; ପ୍ରତି କେଜି ୧୦ ଟଙ୍କା ଦରରେ ୧୨ କେଜି ଟପିଂ ବିକ୍ରୟ କରାଗଲା । ତାଙ୍କୁ ୪% କାରବାର ବଟା ଦିଆଗଲା ।

ଉପରୋକ୍ତ ବିକ୍ରୟଗୁଡ଼ିକ ରେଙ୍ଗୁନ ଷ୍ଟୋର୍ସ୍‌ଙ୍କର ବିକ୍ରୟ ବହିରେ ଲିପିବଦ୍ଧ କର ।

ରେଙ୍ଗୁନ୍ ଷ୍ଟୋର୍ସଙ୍କର ୧୯୭୨ ସାଲ ମଇ ମାସର ବିକ୍ରୟ ବହି

| ତାରିଖ | ବିବରଣ | ଚାଲାଣ ନମ୍ବର | ଖା: ପୃ: | ବିସ୍ତାରିତ ବର୍ଣ୍ଣନା | ପରିମାଣ |
|---|---|---|---|---|---|
| ୧୯୭୨ | | | | ଟଙ୍କା | ଟଙ୍କା |
| ମଇ-୧ | ସ୍ମିଥ୍ ବ୍ରଦର୍ସ : | | | | |
| | ୧୦ ଡଜନ କାଚ ଗ୍ଲାସ, | | | | |
| | ୨୫ ଟଙ୍କା ଦରରେ— | | | ୨୫୦.୦୦ | |
| | ବାଦ୍ କାରବାର ବଟା, ୪% | | | ୧୦.୦୦ | ୨୪୦.୦୦ |
| ୩ | ହରି ଶଙ୍କର : | | | | |
| | ୧୨ ପେଟି ବିସ୍କୁଟ୍, | | | | |
| | ୪୦ ଟଙ୍କା ଦରରେ | | | ୪୮୦.୦୦ | |
| | ବାଦ୍ କାରବାର ବଟା, ୧୦% | | | ୪୮.୦୦ | ୪୩୨.୦୦ |
| ୫ | କମଲାକାନ୍ତ ଷ୍ଟୋର୍ସ : | | | | |
| | ୧୦ କେଜି ଲଜେନ୍ସ, | | | | |
| | ୮ ଟଙ୍କା ଦରରେ— | | | ୮୦.୦୦ | |
| | ୧୨ କେଜି ଟପିଂ, | | | | |
| | ୧୦ ଟଙ୍କା ଦରରେ— | | | ୧୨୦.୦୦ | |
| | | | | ୨୦୦.୦୦ | |
| | ବାଦ୍ କାରବାର ବଟା, ୪% | | | ୮.୦୦ | ୧୯୨.୦୦ |
| | | | | | ୮୬୪.୦୦ |

## ବିକ୍ରୟ ବହିରୁ ଖତିୟାନ ହିସାବ ପ୍ରସ୍ତୁତ କରିବା :

କ୍ରୟ ବହିରୁ ଯେପରି ଖତିୟାନ ହିସାବ ପ୍ରସ୍ତୁତ କରାଯାଏ ବିକ୍ରୟ ବହିରୁ ମଧ୍ୟ ସେହିପରି ଖତିୟାନ ହିସାବ ପ୍ରସ୍ତୁତ କରିବା ଆବଶ୍ୟକ । ଯେଉଁ ତାରିଖରେ କୌଣସି କ୍ରେତାଙ୍କୁ ଧାରରେ ପଣ୍ୟ ବିକ୍ରୟ କରାଯାଏ ସେହି ତାରିଖରେ ଖତିୟାନରେ ଥିବା ତାଙ୍କ ହିସାବକୁ ତାଙ୍କଠାରୁ ପ୍ରାପ୍ୟ ମୋଟ୍ ପରିମାଣ ସକାଶେ ଦାୟୀ କରାଯିବ । କ୍ରେତାଙ୍କର ହିସାବ ବ୍ୟକ୍ତିକ ହିସାବ ଶ୍ରେଣୀଭୁକ୍ତ । ଯେହେତୁ ସେ ଉପକାର ବା ସୁବିଧା ଲାଭ କରୁଛନ୍ତି ତେଣୁ ତାଙ୍କ ହିସାବକୁ ଦାୟୀ କରାଯିବ ।

ସପ୍ତାହ, ପକ୍ଷ ବା ମାସ ଶେଷରେ ବିକ୍ରୟ ବହିର ମୋଟ ପରିମାଣ ସକାଶେ ବିକ୍ରୟ ହିସାବକୁ ଦାତା କରାଯିବ । କ୍ରୟ ଓ ବିକ୍ରୟ ହିସାବ ପଣ୍ୟ ହିସାବର ନାମାନ୍ତର ମାତ୍ର । ସେହି ଦୃଷ୍ଟିରୁ ବିକ୍ରୟ ହିସାବ ବସ୍ତୁଗତ ହିସାବ ଶ୍ରେଣୀଭୁକ୍ତ । ନିୟମ ଅନୁଯାୟୀ ପଣ୍ୟ ବ୍ୟବସାୟରୁ ବାହାରକୁ ଯାଉଥିବାରୁ ଏହି ହିସାବ ଦାତା ହେବ, ଠିକ୍ ଯେପରି ନଗଦ ତହବିଲ ବାହାରକୁ ଗଲେ ରୋକଡ଼ ବହିକୁ ଦାତା କରାଯାଏ । ଏହାର ଏକ ଦୃଷ୍ଟାନ୍ତ ନିମ୍ନରେ ପ୍ରଦତ୍ତ ହେଲ ।

### ଦୃଷ୍ଟାନ୍ତ ( ୫ )

ଦୃଷ୍ଟାନ୍ତ (୪) ରେ ପ୍ରସ୍ତୁତ ହୋଇଥିବା ବହିରୁ ଖତିୟାନ ହିସାବ ପ୍ରସ୍ତୁତ କର ।

### ରେଙ୍ଗୁନ୍ ଷ୍ଟୋର୍ସଙ୍କର ଖତିୟାନ ବହି

ଦାୟୀ — ଗୁପ୍ତ ବ୍ରଦାର୍ସଙ୍କର ହିସାବ — ଦାତା

| | | | | | | | |
|---|---|---|---|---|---|---|---|
| ୧୯୭୨ | | | | | | | ଟଙ୍କା |
| ମଇ-୧ | ବିକ୍ରୟ ହିସାବ ବାବଦ | | ୨୪୦-୦୦ | | | | |

ଦାୟୀ — ହରିଶଙ୍କରଙ୍କର ହିସାବ — ଦାତା

| | | | | | | | |
|---|---|---|---|---|---|---|---|
| ୧୯୭୨ | | | ଟଙ୍କା | | | | ଟଙ୍କା |
| ମଇ-୩ | ବିକ୍ରୟ ହିସାବ ବାବଦ | | ୪୩୨.୦୦ | | | | |

ଦାୟୀ କମଳକାନ୍ତ ଷ୍ଟୋର୍ସଙ୍କର ହିସାବ ଦାତା

| | | | ଟଙ୍କା | | | | ଟଙ୍କା |
|---|---|---|---|---|---|---|---|
| ୧୯୭୬ ମଇ-୫ | ବିକ୍ରୟ ହିସାବ ବାବଦ | | ୧୯୬.୦୦ | | | | |

ଦାୟୀ ବିକ୍ରୟ ହିସାବ ଦାତା

| | | | ଟଙ୍କା | | | | ଟଙ୍କା |
|---|---|---|---|---|---|---|---|
| | | | | ୧୯୭୬ ମଇ-୩୧ | ବିବିଧ ହିସାବ ବାବଦ | | ୬୪-୦୦ |

## ବୈଶ୍ଳେଷିକ ବିକ୍ରୟ ବହି :

ଅନେକ ବ୍ୟବସାୟୀ ତାଙ୍କର ପଣ୍ୟ ଗୁଡ଼ିକୁ କେତୋଟି ନିର୍ଦ୍ଦିଷ୍ଟ ବିଭାଗରେ ଶ୍ରେଣୀଭୁକ୍ତ କରିଥାଆନ୍ତି ଓ କେଉଁ ବିଭାଗରୁ କେତେ ପଣ୍ୟ ବିକ୍ରୟ କଲେ ତାହାର ସ୍ୱତନ୍ତ୍ର ପରିମାଣ ଜାଣିବାକୁ ଇଚ୍ଛା କରନ୍ତି । ସେପରି କ୍ଷେତ୍ରରେ ବୈଶ୍ଳେଷିକ ବିକ୍ରୟ ବହି ପ୍ରସ୍ତୁତ କରାଯାଏ । ଏଥିରୁ ପ୍ରତି ବିଭାଗର ବିକ୍ରୟ ପରିମାଣ ସ୍ୱତନ୍ତ୍ର ଭାବରେ ସହଜରେ ବୁଝାଯିବ । ଏହି ବହିର କଲମଗୁଡ଼ିକ ବୈଶ୍ଳେଷିକ କ୍ରୟ ବହି ତୁଲ୍ୟ । ବିକ୍ରୟ ବହି ସହିତ ପ୍ରତି ବିଭାଗ ନିମନ୍ତେ ଗୋଟିଏ ସ୍ୱତନ୍ତ୍ର କଲମ ସନ୍ନିବେଶ କରି ବୈଶ୍ଳେଷିକ ବିକ୍ରୟ ବହି ପ୍ରସ୍ତୁତ କରାଯାଏ । ପ୍ରତି ବିକ୍ରୟର ବିକ୍ରୟ ପରିମାଣ ପ୍ରଥମେ ପରିମାଣ କଲମରେ ଓ ପୁଣି ଥରେ ନିର୍ଦ୍ଦିଷ୍ଟ ବିଭାଗ ସକାଶେ ଖୋଲା ଯାଇଥିବା ସ୍ୱତନ୍ତ୍ର କଲମରେ ଲେଖାଯିବ । ତେଣୁ ବିଭିନ୍ନ ବିଭାଗର ସଂଯୁକ୍ତ ପରିମାଣ ମୋଟ ପରିମାଣ ସହିତ ସମାନ ହେବ । ଯଦି ଅସମାନ ହୁଏ ତାହେଲେ ଲେଖିବାରେ ତ୍ରୁଟି ଅଛି ବୋଲି ବୁଝାଯିବ । ଏହାର ଏକ ଦୃଷ୍ଟାନ୍ତ ନିମ୍ନରେ ପ୍ରଦତ୍ତ ହେଲା ।

### ଦୃଷ୍ଟାନ୍ତ ( ୭ )

ଦୃଷ୍ଟାନ୍ତ (୪) ର ବିବରଣୀ ବ୍ୟବହାର କରି ଏକ ବୈଶ୍ଳେଷିକ ବିକ୍ରୟ ବହି ପ୍ରସ୍ତୁତ କର ଓ ତହିଁରୁ ଖତିୟାନ ହିସାବ ପ୍ରସ୍ତୁତ କର ।

## ବୈଶ୍ଲେଷିକ ବିକ୍ରୟ ବହି

| ତାରିଖ | ବିବରଣ | ଚାଲାଣ ନମ୍ବର | ଖ: ପୃ: | ବିସ୍ତାରିତ ବର୍ଣ୍ଣନା | ପରିମାଣ | କାଚଗ୍ଲାସ୍ | ବିସ୍କୁଟ୍ | ଲଜେନସ୍ ଓ ଟଫି |
|---|---|---|---|---|---|---|---|---|
| | | | | ଟଙ୍କା | ଟଙ୍କା | ଟଙ୍କା | ଟଙ୍କା | ଟଙ୍କା |
| ୧୯୭୨ ମଇ-୧ | ଗ୍ଲାସ୍ ବ୍ରଦାର୍ସ : | | | | | | | |
| | ୧୦ ଡଜନ କାଚ ଗ୍ଲାସ୍ ୨୫ ଟଙ୍କା ଦରରେ | | | ୨୫୦-୦୦ | | | | |
| | ବାଦ୍—କାରବାର ବଟା, ୪% | | | ୧୦-୦୦ | ୨୪୦-୦୦ | ୨୪୦-୦୦ | | |
| ୬ | ହରିଶଙ୍କର : | | | | | | | |
| | ୧୨ ପେଟି ବିସ୍କୁଟ୍ ୪୦ ଟଙ୍କା ଦରରେ | | | ୪୮୦-୦୦ | | | | |
| | ବାଦ୍—କାରବାର ବଟା ୧୦% | | | ୪୮-୦୦ | ୪୩୨-୦୦ | | ୪୩୨-୦୦ | |
| ୯ | କମଲକାନ୍ତ ଷ୍ଟୋର୍ସ : | | | | | | | |
| | ୧୦ କେଜି ଲଜେନସ୍ ୮ ଟଙ୍କା ଦରରେ | | | ୮୦-୦୦ | | | | |
| | ୧୨ କେଜି ଟଫି ୧୦ ଟଙ୍କା ଦରରେ | | | ୧୨୦-୦୦ | | | | |
| | | | | ୨୦୦-୦୦ | | | | |
| | ବାଦ୍—କାରବାର ବଟା ୪% | | | ୮-୦୦ | ୧୯୨-୦୦ | | | ୧୯୨-୦୦ |
| | | | | ମୋଟ | ୮୬୪-୦୦ | ୨୪୦-୦୦ | ୪୩୨-୦୦ | ୧୯୨-୦୦ |
| | | | | | | ଖ: ପୃ: | ଖ: ପୃ: | ଖ: ପୃ: |

ନେତାମାନଙ୍କର ହିସାବ ଦୃଷ୍ଟାନ୍ତ (୫) ରେ ଯେପରି ଥିଲା ସେହିପରି ରହିବ । ତହିଁରେ କୌଣସି ପରିବର୍ତ୍ତନ ହେବ ନାହିଁ, କିନ୍ତୁ ବିକ୍ରୟ ହିସାବ ଗୋଟିଏ ପରିବର୍ତ୍ତେ ପ୍ରତି ବିଭାଗ ପାଇଁ ଗୋଟିଏ ଲେଖା ବିକ୍ରୟ ହିସାବ ପ୍ରସ୍ତୁତ କରାଯିବ । ଏହାର ନମୁନା ନିମ୍ନରେ ପ୍ରଦତ୍ତ ହେଲା ।

ଦାୟୀ — ନାଚଗ୍ଲ'ସ୍ ବିକ୍ରୟ ହିସାବ — ଦାତା

| | | | ଟଙ୍କା | ୧୯୬୨ | | | ଟଙ୍କା |
|---|---|---|---|---|---|---|---|
| | | | | ମଇ-୩୧ | ବିବିଧ ହିସାବ ବାବଦ | | ୧୪୦ |

ଦାୟୀ — ବସ୍ତ୍ର ବିକ୍ରୟ ହିସାବ — ଦାତା

| | | | ଟଙ୍କା | ୧୯୬୨ | | | ଟଙ୍କା |
|---|---|---|---|---|---|---|---|
| | | | | ମଇ-୩୧ | ବିବିଧ ହିସାବ ବାବଦ | | ୪୩[illegible]·୦୦ |

ଦାୟୀ ଲଜେଜନମ୍ ଓ ଝଡି ବେଶ୍ୟ ହ୍ୟାବ ଦାତା

| | | | ଟଙ୍କା | ୧୯୭୨ | ବିବିଧ ହିସାବ ବାବଦ | | ଟଙ୍କା |
|---|---|---|---|---|---|---|---|
| | | | | | | | |

ବ୍ୟବସାୟୀ ଯଦି ସେମାନଙ୍କରେ ବୈଶ୍ଲେଷିକ ବହୀ ରଖିବା ପ୍ରୟୋଜନ ମନେ କରନ୍ତି ତାହେଲେ ଉପରୋକ୍ତ ଢଙ୍ଗରେ ବେଶ୍ୟ ହିସାବ ପରିବର୍ତ୍ତେ ଗୋଟିଏ ବୈଶ୍ଲେଷିକ ବେଶ୍ୟ ହିସାବ ପ୍ରସ୍ତୁତ କରାଯିବ । ଏହାର ନମୁନା ନିମ୍ନରେ ପ୍ରଦତ୍ତ ହେଲ ।

ବେଶ୍ୟ ବହୀ (ଦାତା ପାର୍ଶ୍ୱ) ଦାତା

| ତାରିଖ | ବିବରଣ | ପ୍ରା: ବ: ପୃ. | କାଗଜ୍ପତ୍ର | ବସ୍ତ୍ର | ଲଜେଜନସ୍ ଓ ଝଡି | ପଶମ |
|---|---|---|---|---|---|---|
| ୧୯୭୨ ମର୍ଚ୍ଚ-୩୧ | ବିବିଧ ହିସାବ ବାବଦ | | ଟଙ୍କା ୨୪୦-୦୦ | ଟଙ୍କା ୪୩୨-୦୦ | ଟଙ୍କା ୧୯୨-୦୦ | ଟଙ୍କା ୮୬୪-୦୦ |

## ଫେରସ୍ତ ବହୀ :

ଅନେକ ସମୟରେ କ୍ରୀତ ଓ ବିକ୍ରୀତ ପଣ୍ୟ ଫେରସ୍ତ ଦିଆଯାଏ କାରଣ ପଣ୍ୟ ଦୋଷଯୁକ୍ତ ହୋଇପାରେ କିମ୍ବା ଆଦିଷ୍ଟ ପଣ୍ୟଠାରୁ ପୃଥକ୍ ହୋଇପାରେ । ଏହି

ଫେରନ୍ତ ପଣ୍ୟକୁ ଲିପିବଦ୍ଧ କରିବା ନିମନ୍ତେ ପ୍ରାଥମିକ ବହି ବ୍ୟବହୃତ ହୁଏ । କ୍ରୀତ ପଣ୍ୟକୁ ଫେରନ୍ତ ଦିଆଗଲେ ତାହା କ୍ରୟ ଫେରନ୍ତ ବହି ବା ବହିର୍ମୁଖୀ ଫେରନ୍ତ ବହିରେ ଲିପିବଦ୍ଧ କରାଯାଏ । ସେହିପରି ଯଦି କୌଣସି ଗ୍ରାହକ ବିକ୍ରୀତ ପଣ୍ୟ ଫେରନ୍ତ ଦିଅନ୍ତି ତାହେଲେ ତାହା ବିକ୍ରୟ ଫେରନ୍ତ ବହି ବା ଅନ୍ତର୍ମୁଖୀ ଫେରନ୍ତ ବହିରେ ଲିପିବଦ୍ଧ କରାଯାଏ ।

## ବହିର୍ମୁଖୀ ଫେରନ୍ତ ବହି :

ଅନେକ ସମୟରେ ବିକ୍ରେତା ଯେଉଁ ନମୁନା ଦେଖାଇ ଥାନ୍ତି ଓ ଯାହା ଭିତ୍ତିରେ କ୍ରେତା ପଣ୍ୟ କ୍ରୟ କରିବା ନିମନ୍ତେ ଆଦେଶ ଦିଅନ୍ତି, ପଣ୍ୟ ପାଇଲା ପରେ ଦେଖାଯାଏ ଯେ ପଣ୍ୟର, ରଙ୍ଗ, ଆକାର ପ୍ରକାର ବା ମାନ ନମୁନାଠାରୁ ପୃଥକ୍ ହୁଏ । କେତେକ ସମୟରେ ଦେଖାଯାଏ ଯେ ଭଲଭାବରେ ପ୍ୟାକିଂ ନ ହୋଇଥିବା ଯୋଗୁଁ କେତେକ ପଣ୍ୟ ଭଙ୍ଗାରୁଜା ଅବସ୍ଥାରେ ଆସି ପହଞ୍ଚିଛି । ଆଉ କେତେକ ସମୟରେ ଦେଖାଯାଏ ଯେ ବିକ୍ରେତା ନିମ୍ନ ମାନର ପଣ୍ୟ ପଠାଇ ଉନ୍ନତ ମାନର ମୂଲ୍ୟ ଦାବୀ କରିଛନ୍ତି କିମ୍ବା ଚୁକ୍ତି ଅନୁଯାୟୀ ପଣ୍ୟ ଆସି ନାହିଁ । ଏପରି କ୍ଷେତ୍ରରେ ଯଦି ପହଞ୍ଚିଥିବା ପଣ୍ୟ ବିକ୍ରୟ ଯୋଗ୍ୟ ବୋଲି ବିବେଚିତ ହୁଏ ତାହେଲେ କ୍ରେତା ତାହା ରଖନ୍ତି ମାତ୍ର ଯଦି ତାହା ବିକ୍ରୟଯୋଗ୍ୟ ନ ହୁଏ ତାହେଲେ ସେପରି ପଣ୍ୟକୁ କ୍ରେତା ବିକ୍ରେତାଙ୍କ ନିକଟକୁ ଫେରନ୍ତ ପଠାନ୍ତି ।

ମନେକର କ୍ରେତା ବିକ୍ରେତାଙ୍କଠାରୁ ୧,୦୦୦ ଟଙ୍କାର ପଣ୍ୟ କ୍ରୟ କରି ତାଙ୍କ ହିସାବକୁ ଦାତା କରି ସାରିଛନ୍ତି, କିନ୍ତୁ ପରେ ଦେଖାଗଲା ଯେ ୧୫୦ ଟଙ୍କାର ପଣ୍ୟ ଖରାପ ହୋଇଥିବା ଯୋଗୁଁ ଫେରନ୍ତ ଦେବାକୁ ପଡ଼ିବ । ଅନେକ ସମୟରେ କ୍ରେତା ପଣ୍ୟ ଫେରନ୍ତ ପଠାଇ ୧,୦୦୦ ଟଙ୍କାକୁ କାଟି ୮୫୦ ଟଙ୍କା ଲେଖି ଦିଅନ୍ତି । କିନ୍ତୁ ଏପରି କରିବା ଆଦୌ ଉଚିତ ନୁହେଁ, କାରଣ ହିସାବ ଖାତାରେ ଥରେ ଯାହା ଲେଖା ହୋଇଥାଏ ତାହାକୁ କାଟି ଅନ୍ୟ ସଂଖ୍ୟା ଲେଖିଲେ ତାହା ସନ୍ଦେହଜନକ ହୁଏ ଏବଂ ତାହା ଆବଶ୍ୟକ ବେଳେ କୋର୍ଟ କଚେରିରେ ଦାଖଲ କରାଗଲେ ଅଗ୍ରାହ୍ୟ ହୋଇପାରେ । ଆୟ କର କିମ୍ବା ବିକ୍ରୟ କର ସଂକାଶେ ହିସାବ ଖାତା ଯାଞ୍ଚ କଲା ସମୟରେ ମଧ୍ୟ ଏହା ଅଗ୍ରାହ୍ୟ ହୋଇପାରେ । ଅଧିକନ୍ତୁ ହିସାବ ଖାତାରେ ଥରେ କାଟ କଟିକୁ ପ୍ରଶ୍ରୟ ଦେଲେ ତାହାର ସୁଯୋଗ ନେଇ ବ୍ୟବସାୟର ହିସାବ ରକ୍ଷକ ବା କର୍ମଚାରୀମାନେ ହିସାବ ଖାତାର ଅଙ୍କ ପରିବର୍ତ୍ତନ କରି ଫାଇଦା ଉଠାଇ ପାରନ୍ତି । ଏଥି ନିମନ୍ତେ କ୍ରୀତ ପଣ୍ୟ ଫେରନ୍ତ ପଠାଗଲେ ତାହାକୁ ବହିର୍ମୁଖୀ ଫେରନ୍ତ ବହିରେ ଲେଖିବା ବାଞ୍ଛନୀୟ ।

ଏଠାରେ ମନେ ରଖିବାକୁ ହେବ ଯେ କେବଳ ଧାରରେ କ୍ରୟ କରାଯାଇଥିବା ପଣ୍ୟ ଫେରସ୍ତ ଦିଆଗଲେ ତାହା ବହିର୍ମୁଖୀ ଫେରସ୍ତ ବହିରେ ଲେଖାଯିବ । ନଗଦ ମୂଲ୍ୟରେ ଯଦି ପଣ୍ୟ କ୍ରୟ କରାଯାଇଥାଏ ତାହେଲେ ତହିଁରୁ ଫେରସ୍ତ ଦିଆଯାଇଥିବା ପଣ୍ୟ ନଗଦ ଅର୍ଥ ବିକ୍ରେତାଙ୍କଠାରୁ ଆଣାଯାଏ ଓ ତାହା ରୋକଡ଼ ବହିରେ ଲିପିବଦ୍ଧ କରାଯାଏ । ବହିର୍ମୁଖୀ ଫେରସ୍ତ ବହିର ନମୁନା ନିମ୍ନରେ ପ୍ରଦତ୍ତ ହେଲା ।

### ବହିର୍ମୁଖୀ ଫେରସ୍ତ ବହି

| ତାରିଖ | ବିବରଣ | ଦେଣାଲିପି ନମ୍ବର | ଖ: ପୃ: | ବିସ୍ତାରିତ ବର୍ଣ୍ଣନା | ପରିମାଣ |
|---|---|---|---|---|---|
| | | | | ଟଙ୍କା | ଟଙ୍କା |

ତାରିଖ—ଯେଉଁ ତାରିଖରେ ପଣ୍ୟ ଫେରସ୍ତ ପଠାଯାଏ ଏଠାରେ ସେହି ତାରିଖ ଲେଖାଯାଏ ।

ବିବରଣ—ଏହି କକ୍ଷରେ ଯେଉଁ ବିକ୍ରେତାଙ୍କ ନିକଟରୁ ପଣ୍ୟ କ୍ରୟ କରାଯାଇଥିଲା ଏବଂ ଯାହାଙ୍କ ନିକଟକୁ ପଣ୍ୟ ଫେରସ୍ତ ପଠାଯାଉଛି ତାଙ୍କର ନାମ ଲେଖାଯାଏ । ଯେତେ ପରିମାଣରେ ପଣ୍ୟ ଫେରସ୍ତ ଦିଆଯାଉଛି ତାହା ଏବଂ ଯେଉଁ ଦରରେ ଏହା କ୍ରୟ କରାଯାଇଥିଲା ସେହି ଦର ମଧ୍ୟ ଏଠାରେ ଲେଖାଯିବ । ଅଧିକନ୍ତୁ ଯେଉଁ କାରଣ ସକାଶେ ପଣ୍ୟ ଫେରସ୍ତ ପଠାଗଲା ସଂକ୍ଷେପରେ ତାହାର ସୂଚନା ମଧ୍ୟ ଏହିଠାରେ ଲେଖାଯିବ ।

ଦେଣା-ଲିପି—ଯେଉଁ ପଣ୍ୟ ଫେରସ୍ତ ଦିଆଯାଉଛି ତାହାର ମୂଲ୍ୟ ନିମନ୍ତେ ବିକ୍ରେତାଙ୍କୁ ଦାୟୀ କରାଯାଏ, କାରଣ ପୂର୍ବରୁ କ୍ରୀତ ପଣ୍ୟର ମୋଟ ମୂଲ୍ୟ ସକାଶେ ତାଙ୍କ ହିସାବକୁ ଦାତା କରାଯାଇଛି । ତାଙ୍କ ହିସାବକୁ ଦାୟୀ କରି ତାଙ୍କ ନିକଟକୁ ଏକ ଦେଣା-ଲିପି ପଠାଯାଏ । ତାହାର କ୍ରମିକ ନମ୍ବର ଏହି କକ୍ଷରେ ଲେଖାଯାଏ । ଦେଣା-ଲିପିର ବିସ୍ତାରିତ ବର୍ଣ୍ଣନା ନିମ୍ନରେ ପ୍ରଦତ୍ତ ହେଲା ।

ଅନ୍ୟ କକ୍ଷଗୁଡ଼ିକରେ କୌଣସି ବିଶେଷତ୍ୱ ନାହିଁ, ଏ ଗୁଡ଼ିକ କ୍ରୟ ବହିରେ ଥିବା କକ୍ଷ ସହିତ ସମାନ ଏବଂ ସେ ବହିରେ ଯେପରି ଲେଖାଯାଏ ଏହି ଫେରସ୍ତ ବହିରେ ମଧ୍ୟ ଠିକ୍ ସେହିପରି ଲେଖାଯିବ ।

## ଦେଣା-ଲିପି :

ଯେତେବେଳେ ବିକ୍ରେତାଙ୍କୁ ପଣ୍ୟ ଫେରନ୍ତ ପଠାଯାଏ ସେତେବେଳେ ଫେରନ୍ତ ଯାଉଥିବା ପଣ୍ୟ ସମ୍ବନ୍ଧ ଗୋଟିଏ ବିବରଣୀ ପଠାଯାଏ । ଏଥିରେ ବିକ୍ରେତାଙ୍କର ନାମ, ଠିକଣା, ବିକ୍ରେତାଙ୍କର ଚାଲାଣ ନମ୍ବର ଯାହା ସହିତ ବିକ୍ରେତା କ୍ରେତାଙ୍କୁ ପଣ୍ୟ ପଠାଇଥିଲେ, ସେହି ଚାଲାଣର ତାରିଖ, ପଣ୍ୟର ବିବରଣ, ପରିମାଣ, ମୂଲ୍ୟ, ଫେରନ୍ତ ଯାଇଥିବା ପଣ୍ୟର ପରିବହନ ବ୍ୟୟ ଓ ମୋଟ କେତେ ଟଙ୍କା ନିମନ୍ତେ ବିକ୍ରେତାଙ୍କ ହିସାବକୁ ଦାୟୀ କରାଗଲା ଓ ଅବଶେଷରେ କି କାରଣରୁ ପଣ୍ୟ ଫେରନ୍ତ ପଠାଗଲା ତାହା ଏହି ବିବରଣୀରେ ଲେଖାଥାଏ । ପଣ୍ୟ ଫେରନ୍ତ ଦେବା କାରଣ ଯୋଗୁଁ ହେଉ ବା ଅନ୍ୟ କୌଣସି କାରଣରୁ ହେଉ, ଯେତେବେଳେ ଜଣେ ବ୍ୟବସାୟୀ ଅନ୍ୟ ଜଣେ ବ୍ୟବସାୟୀଙ୍କର ହିସାବକୁ ଦାୟୀ କରନ୍ତି ସେତେବେଳେ ସେହି ବିଷୟ ସେହି ବ୍ୟବସାୟୀଙ୍କୁ ଜଣାଇ ଦେବାକୁ ହୁଏ । ଯେଉଁ କାଗଜରେ ଏହା ଜଣାଇ ଦିଆଯାଏ ତାହାକୁ ଦେଣା-ଲିପି କୁହାଯାଏ । ଏହାର ନମୁନା ନିମ୍ନରେ ପ୍ରଦତ୍ତ ହେଲା ।

### ଦେଣା-ଲିପି

ପ୍ରଗତି ଷ୍ଟୋରସ
ରାଣୀହାଟ, କଟକ-୩

ତାରିଖ—୧୫ ଜୁନ୍, ୧୯୭୨
ଦାୟୀ

ଜୟଶ୍ରୀ ଲୁଗା ଭଣ୍ଡାର,
କଚେରୀ ରୋଡ୍,
କେନ୍ଦ୍ରାପଡ଼ାଙ୍କ ହିସାବ ବାବଦ

| ୧୯୭୨ | | ଟଙ୍କା | ଟଙ୍କା |
|---|---|---|---|
| ଜୁନ୍-୧୫ | ୪ ଯୋଡ଼ା ପ୍ରିଣ୍ଟ ଶାଢ଼ୀ, ଯାହାକି ଆପଣଙ୍କର ଚାଲାଣ ନମ୍ବର ୧୫୭, ତା ୧-୬-୧୯୭୨ ସହିତ ପଠାଯାଇଥିଲା ତାହାର କପଡ଼ା ସୁପରଫାଇନ୍ ନ ହୋଇଥିବାରୁ ଯୋଡ଼ା ୫୦ ଟଙ୍କା ଦର ଏଥିପ୍ରତି ଲାଗୁ ହେବ ନାହିଁ । ତେଣୁ ଏହା ଫେରନ୍ତ ପଠାଗଲା ।...... | ୨୦୦·୦୦ | |
| | ଯୁକ୍ତ ପରିବହନ ଖର୍ଚ୍ଚ ... | ୫·୦୦ | ୨୦୫·୦୦ |

ଭୁଲ ଥିଲେ ସଂଶୋଧନ କରାଯିବ
ଶ୍ରୀଧର ସାହୁ
ମ୍ୟାନେଜର

ବହିର୍ମୁଖୀ ଫେରସ୍ତ ବହି କିପରି ଲେଖାଯିବ ତାହାର ଏକ ଦୃଷ୍ଟାନ୍ତ ନିମ୍ନରେ ପ୍ରଦତ୍ତ ହେଲା ।

## ଦୃଷ୍ଟାନ୍ତ (୬)

ନିମ୍ନଲିଖିତ ବିବରଣୀରୁ ଜୟଶ୍ରୀ ଲୁଗାଭଣ୍ଡାରଙ୍କର ବହିର୍ମୁଖୀ ଫେରସ୍ତ ବହି ଲେଖ :

୧୯୭୨

ଜୁନ୍-୧୫ ପୃଷ୍ଟି ଟେକ୍ସଟୋରିଅମ୍‌କୁ ୪ ଯୋଡ଼ା ପ୍ରିଣ୍ଟ୍ ଶାଢ଼ୀ ପ୍ରତି ଯୋଡ଼ା ୫୦ ଟଙ୍କା ଦରରେ ଫେରସ୍ତ ଦିଆଗଲା ଯେହେତୁ ଶାଢ଼ୀଗୁଡ଼ିକ ସୁପର୍‌ଫାଇନ୍ କପଡ଼ାରେ ପ୍ରିଣ୍ଟ୍ କରାଯାଇ ନାହିଁ । ପରିବହନ ଖର୍ଚ୍ଚ, ୫ ଟଙ୍କା ।

୨୦ ଜୟ ନାରାୟଣ ଏଣ୍ଡ୍ କୋ ଙ୍କୁ ସିଲାଇ ଦୋଷଯୁକ୍ତ ଥିବାରୁ ପ୍ରତିଖଣ୍ଡ ୧୨ ଟଙ୍କା ଦରରେ ୧୦ ଖଣ୍ଡ ଫ୍ରକ୍ ଫେରସ୍ତ ପଠାଗଲା । ପାର୍ଶେଲ ଖର୍ଚ୍ଚ ୪ ଟଙ୍କା ।

୩୦ ମେସର୍ସ କାଦମ୍ବିନୀଙ୍କୁ ପ୍ରତି ମିଟର ୧୪ ଟଙ୍କା ଦରରେ ୮ ମିଟର ଟେରିକଟ୍ କପଡ଼ା, ରଙ୍ଗ କଞ୍ଚା ଥିବାରୁ ଫେରସ୍ତ ପଠାଗଲା । ପରିବହନ ଖର୍ଚ୍ଚ ୫ ଟଙ୍କା ।

### ବହିର୍ମୁଖୀ ଫେରସ୍ତ ବହି

| ତାରିଖ | ବିବରଣ | ଦେଣାଲିପି ନମ୍ବର | ଖ ପୃ: | ବିସ୍ତାରିତ ବର୍ଣ୍ଣନା | ପରିମାଣ |
|---|---|---|---|---|---|
| ୧୯୭୨ | | | | ଟଙ୍କା | |
| ଜୁନ୍ ୧୫ | ପୃଷ୍ଟି ଟେକ୍ସଟୋରିଅମ୍ : | | | | ଟଙ୍କା |
| | ପ୍ରତି ଯୋଡ଼ା ୫୦ ଟଙ୍କା ଦରରେ ୪ ଯୋଡ଼ା ପ୍ରିଣ୍ଟ୍ ଶାଢ଼ୀ— କପଡ଼ା ସୁପର୍ ଫାଇନ୍ ନ ହୋଇଥିବାରୁ | | | ୨୦୦.୦୦ | |
| | (ଯୁକ୍ତ ପରିବହନ ଖର୍ଚ୍ଚ ..) | | | ୫.୦୦ | ୨୦୫.୦୦ |
| ୨୦ | ଜୟନାରାୟଣ ଏଣ୍ଡ୍ କୋ : | | | | |
| | ପ୍ରତି ଖଣ୍ଡ ୧୨ ଟଙ୍କା ଦରରେ ୧୦ ଖଣ୍ଡ ଫ୍ରକ୍—ସିଲାଇ ଦୋଷଯୁକ୍ତ ଥିବା ହେତୁ । | | | ୧୨୦.୦୦ | |
| | ଯୁକ୍ତ ପାର୍ଶେଲ ଖର୍ଚ୍ଚ .... | | | ୪.୦୦ | ୧୨୪.୦୦ |
| ୩୦ | ମେସର୍ସ କାଦମ୍ବିନୀ : | | | | |
| | ପ୍ରତି ମିଟର୍ ୧୪ ଟଙ୍କା ଦରରେ ୮ ମିଟର୍ ଟେରିକଟ୍ କପଡ଼ା— ରଙ୍ଗ କଞ୍ଚା ହୋଇଥିବାରୁ ... ... | | | ୧୧୨.୦୦ | |
| | ଯୁକ୍ତ ପରିବହନ ଖର୍ଚ୍ଚ .... .... | | | ୫.୦୦ | ୧୧୭.୦୦ |
| | | | | ମୋଟ | ୪୪୬.୦୦ |

## ବହିର୍ମୁଖୀ ଫେରସ୍ତ ବହିରୁ ଖତିୟାନ ହିସାବ ପ୍ରସ୍ତୁତ କରିବା :

ଯେଉଁ ବିକ୍ରେତାଙ୍କୁ ଯେଉଁ ତାରିଖରେ କ୍ରୀତ ପଣ୍ୟ ଫେରସ୍ତ ଦିଆଯାଏ ସେହି ତାରିଖରେ ସେହି ବିକ୍ରେତାଙ୍କ ହିସାବକୁ ଫେରସ୍ତ ବହିରେ ଲେଖାଯାଇଥିବା ପରିମାଣ ପକାଶେ ଦାୟୀ କରାଯିବ । ଯେହେତୁ ବିକ୍ରେତାଙ୍କର ହିସାବ ବ୍ୟକ୍ତିଗତ ହିସାବ ଶ୍ରେଣୀଭୁକ୍ତ ଓ ସେ ପଣ୍ୟ ପାଇବାଦ୍ୱାରା ଉପକାର ଲାଭ କରୁଛନ୍ତି ତେଣୁ ତାଙ୍କ ହିସାବକୁ ଦାୟୀ କରାଯିବ । ଅନ୍ୟ ଭାବରେ ଦେଖିଲେ ତାଙ୍କଠାରୁ ଯେତେବେଳେ ପଣ୍ୟ କ୍ରୟ କରାଯାଇଥିଲା ସେତେବେଳେ ତାଙ୍କ ହିସାବକୁ ଦାତା କରାଯାଇଥିଲା, ସୁତରାଂ ତାଙ୍କୁ ଯେତେବେଳେ ତନ୍ମଧ୍ୟରୁ କେତେକ ପରିମାଣର ପଣ୍ୟ ଫେରସ୍ତ ଦିଆଗଲା ସେତେବେଳେ ସେତିକ ପରିମାଣ ପକାଶେ ତାଙ୍କର ହିସାବ ଦାୟୀ ହେବ ।

ସପ୍ତାହ, ପକ୍ଷ ବା ମାସ ଶେଷରେ ବହିର୍ମୁଖୀ ଫେରସ୍ତ ବହିର ମୋଟ ପରିମାଣ ବହିର୍ମୁଖୀ ଫେରସ୍ତ ହିସାବର ଦାତା ପାର୍ଶ୍ୱରେ ଲିପିବଦ୍ଧ କରାଯିବ । ପଣ୍ୟ ହିସାବ ବସ୍ତୁସୂଚକ ହିସାବ ଶ୍ରେଣୀଭୁକ୍ତ, ତେଣୁ ବସ୍ତୁସୂଚକ ହିସାବ ଶ୍ରେଣୀର ନିୟମାନୁଯାୟୀ ପଣ୍ୟ ବ୍ୟବସାୟରୁ ବାହାରକୁ ଯାଉଥିବାରୁ ଏହି ହିସାବକୁ ଦାତା କରାଯିବ ।

ଖତିୟାନ ହିସାବ କିପରି ଲେଖାଯିବ ତାହାର ଦୃଷ୍ଟାନ୍ତ ନିମ୍ନରେ ପ୍ରଦତ୍ତ ହେଲା ।

### ଦୃଷ୍ଟାନ୍ତ ( ୮ )

ଦୃଷ୍ଟାନ୍ତ (୭) ରେ ଥିବା ବିବରଣୀରୁ ଖତିୟାନ ହିସାବ ଲେଖ ।

**ସମାଧାନ :**

### ଜୟଶ୍ରୀ ଲୁଗାଭଣ୍ଡାର ଖତିୟାନ

ଦାୟୀ ସୃଷ୍ଟି ଟେକ୍ସଟୋଗ୍ରଅମ୍‌ଙ୍କର ହିସାବ ଦାତା

| | | | | | | | |
|---|---|---|---|---|---|---|---|
| ୧୯୭୬ ଜୁନ୍ ୧୫ | ବହିର୍ମୁଖୀ ଫେରସ୍ତ ହିସାବ ବାବଦ | | ଟଙ୍କା ୨୦୫.୦୦ | | | | ଟଙ୍କା |

ଦାୟୀ ଜଗନ୍ନାଥପ୍ରସାଦ ଏଣ୍ଡ୍ କୋ :ଙ୍କର ହିସାବ ଦାତା

| | | | ଟଙ୍କା | | | | ଟଙ୍କା |
|---|---|---|---|---|---|---|---|
| ୧୯୭୨ ଜୁନ୍ ୨୦ | ବହିର୍ମୁଖୀ ଫେରସ୍ତ ହିସାବ ବାବଦ | | ୧୨୪·୦୦ | | | | |

ଦାୟୀ ମେସର୍ସ କାଦମ୍ବିନୀଙ୍କର ହିସାବ ଦାତା

| | | | ଟଙ୍କା | | | | ଟଙ୍କା |
|---|---|---|---|---|---|---|---|
| ୧୯୭୨ ଜୁନ୍ ୩୦ | ବହିର୍ମୁଖୀ ଫେରସ୍ତ ହିସାବ ବାବଦ | | ୧୧୬·୦୦ | | | | |

ଦାୟୀ ବହିର୍ମୁଖୀ ଫେରସ୍ତ ହିସାବ ଦାତା

| | | | ଟଙ୍କା | | | | ଟଙ୍କା |
|---|---|---|---|---|---|---|---|
| | | | | ୧୯୭୨ ଜୁନ୍ ୩୦ | ବିବିଧ ହିସାବ ବାବଦ | | ୪୪୬·୦୦ |

## ଅନ୍ତର୍ମୁଖୀ ଫେରସ୍ତ ବହି :

ଏହାକୁ ବିକ୍ରୟ ଫେରସ୍ତ ବହି ମଧ୍ୟ କୁହାଯାଏ । ଯେଉଁ କାରଣମାନଙ୍କରୁ ତମେ ବିକ୍ରେତାଙ୍କୁ କ୍ରୀତ ପଣ୍ୟ ଫେରସ୍ତ ଦିଅ ଠିକ୍ ସେହି ସମସ୍ତ କାରଣ ଯୋଗୁଁ ତୁମଠାରୁ ପଣ୍ୟ କ୍ରୟ କରିଥିବା ତୁମର ଗ୍ରାହକମାନେ ମଧ୍ୟ ତୁମକୁ ପଣ୍ୟ ଫେରସ୍ତ ପଠାଇ ପାରନ୍ତି । ତୁମ

ବ୍ୟବସାୟକୁ ବିକ୍ରୀତ ପଣ୍ୟ ଫେରସ୍ତ ଆସୁଥିବାରୁ ଏହାକୁ ଅନ୍ତର୍ମୁଖୀ ଫେରସ୍ତ ବା ବିକ୍ରୟ ଫେରସ୍ତ କୁହାଯାଏ । ଯେଉଁ ପ୍ରାଥମିକ ବହିରେ ଏହିଭଳି ଫେରସ୍ତ ଲିପିବଦ୍ଧ କରାଯାଏ ତାହାକୁ ଅନ୍ତର୍ମୁଖୀ ଫେରସ୍ତ ବହି ବା ବିକ୍ରୟ ଫେରସ୍ତ ବହି କୁହାଯାଏ । ଏହାର ଏକ ନମୁନା ନିମ୍ନରେ ପ୍ରଦତ୍ତ ହେଲା ।

## ଅନ୍ତର୍ମୁଖୀ ଫେରସ୍ତ ବହି

| ତାରିଖ | ବିବରଣ | ପାଉଣା-ଲିପି ନମ୍ବର | ଖ: ପୃ: | ବିସ୍ତାରିତ ବର୍ଣ୍ଣନା | ପରିମାଣ |
|---|---|---|---|---|---|
| | | | | ଟଙ୍କା | ଟଙ୍କା |
| | | | | | |

ପ୍ରଥମ କକ୍ଷରେ ପଣ୍ୟ ଫେରସ୍ତ ମିଳିଥିବାର ତାରିଖ ଲେଖାଯିବ । ଦ୍ୱିତୀୟ କକ୍ଷରେ ଯାହାଙ୍କଠାରୁ ପଣ୍ୟ ଫେରସ୍ତ ମିଳିଛି ତାଙ୍କର ନାମ, ଫେରସ୍ତ ପଣ୍ୟର ପରିମାଣ ଓ ଦର ଲେଖାଯିବ । ତୃତୀୟ କକ୍ଷରେ ଯେ ପଣ୍ୟ ଫେରସ୍ତ ଦେଲେ ତାଙ୍କ ହିସାବକୁ ଦାତା କରାଯାଇ ତାଙ୍କୁ ତାହା ଯେଉଁ ଚିଠିରେ ଜଣାଇ ଦିଆଯାଏ ତାହାର କ୍ରମିକ ନମ୍ବର ଏଠାରେ ଲେଖାଯିବ । ଚତୁର୍ଥ କକ୍ଷରେ ଫେରସ୍ତ ଦେଇଥିବା ଗ୍ରାହକଙ୍କର ହିସାବ ଖତିୟାନର ଯେଉଁ ପୃଷ୍ଠାରେ ଅଛି ସେହି ପୃଷ୍ଠାର ସଂଖ୍ୟା ଲେଖାଯିବ । ପଞ୍ଚମ କକ୍ଷରେ ମୋଟ ଅର୍ଥର ପରିମାଣ ଲେଖି ତହିଁରୁ ଯଦି ପୂର୍ବରୁ ବଟା ଦିଆଯାଇଥାଏ ତାହେଲେ ତାହା ବାଦ୍ ଦିଆଯିବ । ଶେଷ କକ୍ଷରେ ନିଟ୍ ଅର୍ଥର ପରିମାଣ, ଯାହା ସକାଶେ ଗ୍ରାହକଙ୍କର ହିସାବକୁ ଦାତା କରାଯିବ ତାହା ଲେଖାଯିବ ।

## ପାଉଣା-ଲିପି :

ଯେଉଁ ଗ୍ରାହକ ତୁମ ନିକଟକୁ ବିକ୍ରୀତ ପଣ୍ୟ ଫେରସ୍ତ ଦେବେ ପଣ୍ୟର ମୂଲ୍ୟ ସକାଶେ ତାଙ୍କ ହିସାବକୁ ଦାତା କରାଯିବ । ଗୋଟିଏ କାଗଜରେ ତାଙ୍କ ହିସାବକୁ ଦାତା କରାଗଲା ବୋଲି ଜଣାଇ ଦିଆଯିବ । ସେହି କାଗଜରେ ଉଭୟ ପକ୍ଷଙ୍କର ନାମ, ଠିକଣା, ଫେରସ୍ତ ଆସିଥିବା ପଣ୍ୟର ପରିମାଣ, ଦର, ମୋଟ ଓ ନିଟ୍ ମୂଲ୍ୟ ପ୍ରଭୃତି ଲେଖାଯାଇଥାଏ । ଏହି କାଗଜକୁ ପାଉଣା-ଲିପି କୁହାଯାଏ, ଅର୍ଥାତ୍ ଯାହାଙ୍କ ନିକଟକୁ ଏହି ଲିପି ପଠାଯାଏ ତାଙ୍କୁ ଏତଦ୍ୱାରା ଜଣାଇ ଦିଆଯାଏ ଯେ ବ୍ୟବସାୟଠାରେ ତାଙ୍କର କିଛି ପାଉଣା ବା ପ୍ରାପ୍ୟ ରହିଲା । ପଣ୍ୟ ଫେରସ୍ତ ବ୍ୟତୀତ ଅନ୍ୟ କାରଣ ସକାଶେ ମଧ୍ୟ ଅନ୍ୟ କୌଣସି ବ୍ୟବସାୟୀଙ୍କର ହିସାବକୁ ଦାତା କରିବାର ଆବଶ୍ୟକତା ପଡ଼ିପାରେ । ସେ

କ୍ଷେତ୍ରରେ ମଧ୍ୟ ତାଙ୍କ ହିସାବକୁ ଦାଖଲ କଲା ପରେ ସେ ବିଷୟ ତାଙ୍କୁ ଏହି ପାଉଣା-ଲିପି ଜରିଆରେ ଜଣାଇ ଦିଆଯାଏ ।

ଏହାର ଏକ ନମୁନା ନିମ୍ନରେ ପ୍ରଦତ୍ତ ହେଲା ।

ପାଉଣା-ଲିପି

ମେସର୍ସ ବିରଜା ଗ୍ଲାସ୍ ଡିଲର୍ସ୍
ଯାଜପୁର, କଟକ

ତାରିଖ ୧୫ ମଇ, ୧୯୭୨
ଦାଖଲ

କଟକ ଗ୍ଲାସ୍ ହାଉସ୍
ବକ୍ସି ବଜାର, କଟକଙ୍କ ବାବଦ

| | | ଟଙ୍କା | ଟଙ୍କା |
|---|---|---|---|
| ୧୯୭୨ ମଇ-୧୫ | ଚଲାଣ ନମ୍ବର ୧୫୭<br>ତା ୩୦-୪-୧୯୭୨ରେ ପଠାଯାଇଥିବା ୧୨୮ ବର୍ଗଫୁଟ କାଚ, ପ୍ରତି ବର୍ଗଫୁଟ ୨ ଟଙ୍କା ଦରରେ, ଘସା କାଚ ନ ହୋଇଥିବାରୁ ଫେରସ୍ତ ଆସିଲା ।<br>ବାଦ୍ କାରବାର ବଟା ୧୦% | ୨୫୬-୦୦<br>୨୫-୬୦ | ୨୩୦-୪୦ |

ଭୁଲ ଥିଲେ ପରେ ସଂଶୋଧନ କରାଯିବ
ପି. ମୃଷ୍ଟି
ମ୍ୟାନେଜର

## ଦୃଷ୍ଟାନ୍ତ ( ୯ )

ନିମ୍ନଲିଖିତ ବିବରଣୀରୁ କଟକ ଗ୍ଲାସ୍ ହାଉସ୍ଙ୍କର ଅନ୍ତର୍ମୁଖୀ ଫେରସ୍ତ ବହି ଲେଖ ।

୧୯୭୨
ମଇ-୧୫ 'ମେସର୍ସ ବିରଜା ଗ୍ଲାସ୍ ଡିଲର୍ସ୍'ଙ୍କଠାରୁ ଫେରସ୍ତ ଆସିଲା—
୧୨୮ ବର୍ଗଫୁଟ କାଚ, ପ୍ରତି ବର୍ଗଫୁଟ ୨ ଟଙ୍କା ଦରରେ, କାରଣ ଘସା କାଚ ପରିବର୍ତ୍ତେ ସାଧା କାଚ ପଠାଯାଇଥିଲା ।
ତାଙ୍କୁ କାରବାର ବଟା ୧୦% ଦିଆ ଯାଇଥିଲା ।

୨୦ ଭୁବନେଶ୍ୱର 'ରାଜଧାନୀ ଫଟୋ ବାଇଣ୍ଡରସ୍'ଙ୍କଠାରୁ ପ୍ରତି ବର୍ଗଫୁଟ ୨ ଟଙ୍କା ଦରରେ ୩୨ ବର୍ଗଫୁଟ କାଚ ଫେରସ୍ତ ଆସିଲା, କାରଣ କାଚ ଭୁଲ୍ ମାପରେ କଟା ଯାଇଛି ।

୨୫ ବାଲେଶ୍ୱର 'ପ୍ରିଣ୍ଟ ଫର୍ଣ୍ଣିସାର୍ସ'ଙ୍କଠାରୁ ୨ ଖଣ୍ଡ ଡ୍ରେସିଂ ଟେବୁଲ କାଚ ପ୍ରତି ଖଣ୍ଡ ୫୦ ଟଙ୍କା ଦରରେ ଫେରସ୍ତ ଆସିଲା, କାରଣ ପ୍ୟାକିଂ ଦୋଷରୁ କାଚ ଫାଟି ଯାଇଛି ।

ପ୍ରତି ବର୍ଗଫୁଟ ୪ ଟଙ୍କା ଦରରେ ୬୪ ବର୍ଗଫୁଟ କଲରେକ୍ସ କାଚ ଫେରସ୍ତ ଆସିଲା କାରଣ ନମୁନାଠାରୁ ଏହା ନିକୃଷ୍ଟ ।

ତାଙ୍କୁ ୧୦% କାରବାର ବଟା ଦିଆ ଯାଇଥିଲା ।

**ସମାଧାନ :**

ଅନ୍ତର୍ମୁଖୀ ଫେରସ୍ତ ବହି

| ତାରିଖ | ବିବରଣ | ପାଉଣା-ଲିପି ନମ୍ବର | ଖ: ପୃ: | ବିସ୍ତାରିତ ବର୍ଣ୍ଣନା | ପରିମାଣ |
|---|---|---|---|---|---|
| ୧୯୭୨ | | | | ଟଙ୍କା | ଟଙ୍କା |
| ମଇ ୧୫ | ମେସର୍ସ ବିରଜା ଗ୍ଲାସ୍ ଡିଲର୍ସ : | | | | |
| | ପ୍ରତି ବର୍ଗଫୁଟ ୨ ଟଙ୍କା ଦରରେ ୧୬୮ ବର୍ଗଫୁଟ କାଚ— ଘଷା କାଚ ପରିବର୍ତ୍ତେ ସାଧା କାଚ ପଠା ଯାଇଥିଲା । | | | ୨୫୬-୦୦ | |
| | ବାଦ୍ କାରବାର ବଟା ୧୦% | | | ୨୫-୬୦ | ୨୩୦-୦୦ |
| ୨୦ | ରାଜଧାନୀ ଫଟୋ ବାଇଣ୍ଡର୍ସ : | | | | |
| | ପ୍ରତି ବର୍ଗଫୁଟ ୨ ଟଙ୍କା ଦରରେ ୩୨ ବର୍ଗଫୁଟ କାଚ— କାଚ ଭୁଲ ମାପରେ କଟାଯାଇଛି । | | | | ୬୪-୦୦ |
| ୨୫ | ପ୍ରିଣ୍ଟ ଫର୍ଣ୍ଣିସାର୍ସ : | | | | |
| | ପ୍ରତି ଖଣ୍ଡ ୫୦ ଟଙ୍କା ଦରରେ ୨ ଖଣ୍ଡ କାଚ ପ୍ୟାକିଂ ଦୋଷରୁ ଫାଟି ଯାଇଛି । | | | ୧୦୦-୦୦ | |
| | ପ୍ରତି ବର୍ଗଫୁଟ ୪ ଟଙ୍କା ଦରରେ ୬୪ ବର୍ଗଫୁଟ 'କଲରେକ୍ସ' କାଚ ନମୁନାଠାରୁ ନିକୃଷ୍ଟ ବୋଲି ଫେରସ୍ତ ଆସିଛି | | | ୨୫୬-୦୦ | |
| | | | | ୩୫୬-୦୦ | |
| | ବାଦ୍ କାରବାର ବଟା ୧୦% | | | ୩୫-୬୦ | ୩୨୦-୦୦ |
| | | | | | ୬୧୪-୮୦ |

## ଅନ୍ତର୍ମୁଖୀ ଫେରସ୍ତ ବହିରୁ ଖତିୟାନ ହିସାବ ପ୍ରସ୍ତୁତ କରିବା :

ଯେଉଁ କ୍ରେତାମାନଙ୍କଠାରୁ ପଣ୍ୟ ଫେରସ୍ତ ଆସିଛି ତାଙ୍କର ହିସାବକୁ ତାରିଖ ଓ ପରିମାଣ ଅନୁଯାୟୀ ଦାତା କରାଯିବ । ତାଙ୍କର ହିସାବ ବ୍ୟକ୍ତିକ ହିସାବ ଶ୍ରେଣୀଭୁକ୍ତ ହେତୁ ଯେହେତୁ ପଣ୍ୟ ପଠାଇବା ଦ୍ୱାରା ସେମାନେ ଉପକାର ପ୍ରଦାନ କରିଛନ୍ତି ତାଙ୍କର ହିସାବକୁ ଦାତା କରାଯିବ । ଅନ୍ୟଭାବରେ ଦେଖିଲେ, ସେମାନଙ୍କୁ ଯେତେବେଳେ ପଣ୍ୟ ବିକ୍ରୟ କରାଯାଇଥିଲା ସେତେବେଳେ ତାଙ୍କର ହିସାବକୁ ଦାୟୀ କରାଯାଇଥିଲା । ବର୍ତ୍ତମାନ ସେମାନେ ଯେତେବେଳେ ପଣ୍ୟ ଫେରସ୍ତ ପଠାଇଲେ ତାଙ୍କର ହିସାବ କାର୍ଯ୍ୟତଃ ଦାତା ହେବ ।

ଅନ୍ତର୍ମୁଖୀ ଫେରସ୍ତ ବହିର ମୋଟ ପରିମାଣ ସହାରେ ଅନ୍ତର୍ମୁଖୀ ଫେରସ୍ତ ହିସାବକୁ ଦାୟୀ କରାଯିବ । ଏହା ବସ୍ତୁସୂଚକ ହିସାବ ଓ ପଣ୍ୟ ବ୍ୟବସାୟକୁ ଆସୁଥିବାରୁ ଏହି ହିସାବ ଦାୟୀ ହେବ ।

### ଦୃଷ୍ଟାନ୍ତ ( ୧୦ )

**ସମାଧାନ :**

### ଗ୍ଲାସ୍ ହାଉସ୍‌ଙ୍କର ଖତିୟାନ

ଦାୟୀ ମେସର୍ସ ବିରଜା ଗ୍ଲାସ୍ ଡିଲର୍ସଙ୍କର ହିସାବ ଦାତା

| | | | ଟଙ୍କା | ୧୯୭୬ ମଇ ୨୦ | ଅନ୍ତର୍ମୁଖୀ ଫେରସ୍ତ ହିସାବ ବାବଦ | ପ୍ରା: ବ:ପୃ: | ଟଙ୍କା ୨୩୦.୦୦ |
|---|---|---|---|---|---|---|---|
| | | | | | | | |

ଦାୟୀ ରାଜଧାନୀ ଫଟୋ ଷ୍ଟୋରଙ୍କର ହିସାବ ଦାତା

| | | | ଟଙ୍କା | | | ପ୍ରା: ବ:ପୃ: | ଟଙ୍କା |
|---|---|---|---|---|---|---|---|
| | | | | ୧୯୭୨ ମଇ ୨୦ | ଅନ୍ନପୂର୍ଣ୍ଣା ଷ୍ଟୋର୍ସ ହିସାବ ବାବଦ | | ୨୪·୦୦ |

ଦାୟୀ ସିଟି ଫାର୍ମାସିଙ୍କର ହିସାବ ଦାତା

| | | | ଟଙ୍କା | | | | ଟଙ୍କା |
|---|---|---|---|---|---|---|---|
| | | | | ୧୯୭୨ ମଇ ୨୫ | ଅନ୍ନପୂର୍ଣ୍ଣା ଷ୍ଟୋର୍ସ ହିସାବ ବାବଦ | | ୩୨୦·୮୦ |

ଦାୟୀ ଅନ୍ନପୂର୍ଣ୍ଣା ଷ୍ଟୋର୍ସ ହିସାବ ଦାତା

| | | | ଟଙ୍କା | | | | ଟଙ୍କା |
|---|---|---|---|---|---|---|---|
| ୧୯୭୨ ମଇ-୩୧ | ବିବିଧ ହିସାବ ବାବଦ | | ୨' ୪·୮୦ | | | | |

## ବାଣିଜ୍ୟିକ ହୁଣ୍ଡି :

ଲେଖକ କର୍ତ୍ତୃକ ସ୍ୱାକ୍ଷରିତ କୌଣସି ଲିଖିତ ଦଲିଲରେ ଉକ୍ତ ବ୍ୟକ୍ତି ଯଦି ଅନ୍ୟ ଜଣେ ନିର୍ଦ୍ଦିଷ୍ଟ ବ୍ୟକ୍ତିଙ୍କୁ ବା ତାଙ୍କର ଆଦିଷ୍ଟ ବ୍ୟକ୍ତିଙ୍କୁ କିମ୍ବା ଦଲିଲର ବାହାକଙ୍କୁ ନିର୍ଦ୍ଦିଷ୍ଟ ପରିମାଣର ଅର୍ଥ ପ୍ରଦାନ କରିବା ନିମନ୍ତେ କୌଣସି ଏକ ନିର୍ଦ୍ଦିଷ୍ଟ ବ୍ୟକ୍ତିଙ୍କୁ ସର୍ତ୍ତହୀନ ଆଦେଶ ଦିଅନ୍ତି ତାହେଲେ ଉକ୍ତ ଦଲିଲକୁ ବାଣିଜ୍ୟିକ ହୁଣ୍ଡି ବା ହୁଣ୍ଡି କୁହାଯାଏ ।

ହୁଣ୍ଡିରେ ତିନୋଟି ପକ୍ଷ ସମ୍ପୃକ୍ତ ଥାଆନ୍ତି । ଯେଉଁ ବ୍ୟକ୍ତି ହୁଣ୍ଡି କାଟନ୍ତି ବା ଲେଖି ସ୍ୱାକ୍ଷର କରନ୍ତି ତାହାଙ୍କୁ ଲେଖକ କୁହାଯାଏ । ସେ ଋଣଦାତା ବା ଉଧାରରେ ଅନ୍ୟ ପକ୍ଷଙ୍କୁ ପଣ୍ୟ ବା ଅନ୍ୟ କୌଣସି ସାମଗ୍ରୀ ପ୍ରଦାନ କରିଛନ୍ତି । ଯାହାଙ୍କ ନାମରେ ହୁଣ୍ଡି କଟାଯାଏ ବା ଯାହାଙ୍କୁ ଅର୍ଥ ପ୍ରଦାନ କରିବା ନିମନ୍ତେ ସର୍ତ୍ତହୀନ ଆଦେଶ ଦିଆଯାଏ ତାହାଙ୍କୁ ହୁଣ୍ଡିର ଗ୍ରହୀତା ବା ଗ୍ରାହକ କୁହାଯାଏ । ସେ ଋଣ ଗ୍ରହୀତା । ଯେଉଁ ନିର୍ଦ୍ଦିଷ୍ଟ ବ୍ୟକ୍ତିଙ୍କୁ ହୁଣ୍ଡି ବାବଦ ଟଙ୍କା ପ୍ରାପ୍ୟ ତାଙ୍କୁ ପ୍ରାପକ କୁହାଯାଏ ।

ମନେକର 'କ' ଜଣେ ମୋଟା ବ୍ୟବସାୟୀ ଓ 'ଖ' ଜଣେ ଖୁଚୁରା ବ୍ୟବସାୟୀ 'ଖ' 'କ'ଙ୍କ ଠାରୁ ଉଧାରରେ ୫୦୦ ଟଙ୍କା ମୂଲ୍ୟର ପଣ୍ୟ କ୍ରୟ କଲେ ଓ ଏହି ଋଣ ୧ ମାସ ପରେ ପରିଶୋଧ କରିବାକୁ ସ୍ୱୀକାର କଲେ । ଏହି ସ୍ୱୀକୃତି ଯଦି ସେ ଗୋଟିଏ ଦଲିଲରେ କରନ୍ତି ତାହେଲେ ତାହାକୁ ଦର୍ଶାଇ 'କ' ବ୍ୟାଙ୍କରୁ ଟଙ୍କା ପାଇ ପାରିବେ । ଏହିପରି ଦଲିଲର ଅନ୍ୟାନ୍ୟ ସୁବିଧା ଦୃଷ୍ଟିରୁ 'କ' 'ଖ'ଙ୍କ ଉପରେ ଗୋଟିଏ ଦଲିଲ ବା ହୁଣ୍ଡି କାଟନ୍ତି । ସେଥିରେ ସେ 'ଗ'ଙ୍କୁ ହୁଣ୍ଡି ବାବଦ ଟଙ୍କା ଦେବା ପାଇଁ 'ଖ'ଙ୍କୁ ଆଦେଶ ଦେଇ ପାରନ୍ତି । ଏପରି କ୍ଷେତ୍ରରେ 'କ' ଲେଖକ, 'ଖ' ଗ୍ରାହକ ଓ 'ଗ' ପ୍ରାପକ । 'କ' ହୁଣ୍ଡି ଲେଖି ତାହା 'ଖ'ଙ୍କ ନିକଟକୁ ସ୍ୱୀକୃତି ନିମନ୍ତେ ପଠାନ୍ତି । 'ଖ' ତାହା ହୁଣ୍ଡି ବାବଦ ଋଣ ସ୍ୱୀକାର କରି ହୁଣ୍ଡି ଉପରେ ତାହା ଲେଖି ସ୍ୱାକ୍ଷର କରନ୍ତି । ଏହି ସ୍ୱୀକୃତି ପରେ ଏହି ଦଲିଲ ହୁଣ୍ଡିରେ ପରିଣତ ହୁଏ । ତାହା 'କ'ଙ୍କ ନିକଟକୁ ଆସିଲା ପରେ ତାହା ପ୍ରାପ୍ୟ ହୁଣ୍ଡି ବହି ନାମକ ଏକ ପ୍ରାଥମିକ ବହିରେ ଲିପିବଦ୍ଧ କରିଯାଏ ।

## ପ୍ରାପ୍ୟ ହୁଣ୍ଡି ବହି :

ଏହି ବହିରେ ହୁଣ୍ଡି ସମ୍ପୃକ୍ତ ବିସ୍ତାରିତ ବିବରଣୀ ନିମନ୍ତେ ବିଭିନ୍ନ କକ୍ଷ ଥାଏ । ଏହାର ନମୁନା ନିମ୍ନରେ ପ୍ରଦତ୍ତ ହେଲା ।

ପ୍ରାପ୍ୟ ହୁଣ୍ଡି ବହି

| ହୁଣ୍ଡିର ନମ୍ବର | ପ୍ରାପ୍ତିର ତାରିଖ | କାହାଠାରୁ ପ୍ରାପ୍ତ | ଲେଖକଙ୍କର ନାମ | ଗ୍ରାହକଙ୍କର ନାମ | ଅର୍ଥ ପ୍ରାପ୍ତିର ସ୍ଥାନ | ହୁଣ୍ଡିର ତାରିଖ | ମିଆଦ | ନିର୍ଦ୍ଦିଷ୍ଟ ବା ଦେୟ ତାରିଖ | ଖ: ପୃ: | ପରିମାଣ | ହୁଣ୍ଡି କାହାକୁ ଦିଆଗଲା |
|---|---|---|---|---|---|---|---|---|---|---|---|
| | | | | | | | | | | | |

## ପ୍ରାପ୍ୟ ହୁଣ୍ଡି ବହିରୁ ଖତିୟାନ ହିସାବ ପ୍ରସ୍ତୁତ କରିବା :

ଏହି ହୁଣ୍ଡି ଯାହାଠାରୁ ମିଳିଛି ତାହାଙ୍କର ହିସାବକୁ ଦାତା କରାଯିବ । ହୁଣ୍ଡି ବାବଦ ଟଙ୍କା ଭବିଷ୍ୟତରେ ମିଳିବ ତେଣୁ ଏହା ଅର୍ଥ ବା ଅର୍ଥର ସମତୁଲ୍ୟ ବୋଲି ବିବେଚିତ ହୁଏ । ଯେଉଁ ବ୍ୟକ୍ତିଙ୍କଠାରୁ ଏହି ଦଲିଲ ମିଳେ ସେ ଉପକାର ପ୍ରଦାନ କରୁଥିବାରୁ ତାଙ୍କର ହିସାବକୁ ଦାତା କରାଯାଏ । ସପ୍ତାହ, ପକ୍ଷ ବା ମାସ ଶେଷରେ ଏହି ବହିର ମୋଟ ପରିମାଣ ସକାଶେ ଖତିୟାନରେ ଥିବା ପ୍ରାପ୍ୟ ହୁଣ୍ଡି ହିସାବକୁ ଦାୟୀ କରାଯିବ । ଏହା ଅର୍ଥର ସମତୁଲ୍ୟ ହୋଇଥିବାରୁ ବସ୍ତୁସୂଚକ ହିସାବ ଶ୍ରେଣୀଭୁକ୍ତ ଓ ଏହି ହିସାବ ଶ୍ରେଣୀର ନିୟମ ଅନୁସାରେ ଏହା ବ୍ୟବସାୟକୁ ଆସୁଥିବାରୁ ଏହି ହିସାବ ଦାୟୀ ହେବ ।

## ଦେୟ ହୁଣ୍ଡି ବହି :

ଯେଉଁ ହୁଣ୍ଡି ଲେଖକଙ୍କ ପକ୍ଷରେ ପ୍ରାପ୍ୟ ହୁଣ୍ଡି ତାହାହିଁ ଗ୍ରାହକଙ୍କ ପକ୍ଷରେ ଦେୟ ହୁଣ୍ଡି, କାରଣ ହୁଣ୍ଡି ବାବଦ ଅର୍ଥ ତାଙ୍କୁ ଲେଖକଙ୍କୁ କିମ୍ବା ତାଙ୍କ ଦ୍ୱାରା ଆଦିଷ୍ଟ ଅନ୍ୟ କୌଣସି ନିର୍ଦ୍ଦିଷ୍ଟ ବ୍ୟକ୍ତିଙ୍କୁ ଦେବାକୁ ପଡ଼ିବ । କୌଣସି ହୁଣ୍ଡିକୁ ଗ୍ରାହକ ସ୍ୱୀକାର କଲା ପରେ ତାହା ଦେୟ ହୁଣ୍ଡି ବହି ନାମକ ଏକ ପ୍ରାଥମିକ ବହିରେ ଲିପିବଦ୍ଧ କରାଯିବ । ଯେହେତୁ ତାଙ୍କୁ ହୁଣ୍ଡି ବାବଦ ଟଙ୍କା ମିଆଦ ସମୟ ପୂର୍ଣ୍ଣ ହେଲା ପରେ ନିର୍ଦ୍ଦିଷ୍ଟ ଦିବସରେ ନିର୍ଦ୍ଦିଷ୍ଟ ସ୍ଥାନରେ ଦେବାକୁ ପଡ଼ିବ ତେଣୁ ହୁଣ୍ଡି ସମ୍ପୃକ୍ତ ବିସ୍ତାରିତ ବିବରଣୀ ଏହି ବହିରେ ଲିପିବଦ୍ଧ କରାଯାଏ । ଏହି ବହିର ନମୁନା ନିମ୍ନରେ ପ୍ରଦତ୍ତ ହେଲା ।

| ହୁଣ୍ଡିର ନମ୍ବର | ସ୍ୱୀକୃତିର ତାରିଖ | କାହାକୁ ଦିଆଗଲା | ଲେଖକ-ଙ୍କର ନାମ | ପ୍ରାପକ-ଙ୍କର ନାମ | କେଉଁ ସ୍ଥାନରେ ଦେୟ | ହୁଣ୍ଡିର ତାରିଖ | ମିଆଦ | ନିର୍ଦ୍ଦିଷ୍ଟ ବା ଦେୟ ତାରିଖ | ଖ:ପୃ | ପରିମାଣ | କିପରି ପରିଶୋଧ କରାଗଲା |
|---|---|---|---|---|---|---|---|---|---|---|---|
| | | | | | | | | | | | |

## ଦେୟ ହୁଣ୍ଡି ବହିରୁ ଖତିୟାନ ହିସାବ ପ୍ରସ୍ତୁତ କରିବା :

ହୁଣ୍ଡି ସ୍ୱୀକାର କରାଗଲେ ହୁଣ୍ଡିର ଲେଖକଙ୍କର ହିସାବକୁ ଦାୟୀ କରାଯିବ । ପୂର୍ବରୁ କୁହାଯାଇଛି ଯେ ହୁଣ୍ଡି ନଗଦ ଅର୍ଥର ସମତୁଲ୍ୟ ବୋଲି ବିବେଚିତ ହୁଏ । ତେଣୁ ଯେହେତୁ ଲେଖକ ହୁଣ୍ଡିଟି ସ୍ୱୀକୃତ ହେବାଦ୍ୱାରା ଉପକାର ଲାଭ କରୁଛନ୍ତି ତେଣୁ ତାଙ୍କର ହିସାବକୁ ଦାୟୀ କରାଯାଏ । ସପ୍ତାହ, ପକ୍ଷ ବା ମାସ ଶେଷରେ ଦେୟ ହୁଣ୍ଡି ବହିର ମୋଟ ପରିମାଣ ସକାଶେ ଦେୟ ହୁଣ୍ଡି-ହିସାବକୁ ଦାତା କରାଯିବ । ହୁଣ୍ଡି ନଗଦ ଅର୍ଥର ସମତୁଲ୍ୟ ହୋଇଥିବାରୁ ଏହା ବସ୍ତୁସୂଚକ ହିସାବ ଶ୍ରେଣୀଭୁକ୍ତ ଅଟେ । ତେଣୁ ତାହା ବ୍ୟବସାୟରୁ ବାହାରକୁ ଯାଉଥିବାରୁ ସେହି ହିସାବକୁ ଦାତା କରାଯାଏ ।

ପ୍ରାପ୍ୟ ଓ ଦେୟ ହୁଣ୍ଡି ବିଷୟରେ ପରବର୍ତ୍ତୀ ପରିଚ୍ଛେଦରେ ବିସ୍ତାରିତ ଆଲୋଚନା କରାଯିବ, ତେଣୁ ଏଠାରେ ଅତି ସଂକ୍ଷେପରେ ବହି ଦୁଇଟି ସମ୍ବନ୍ଧରେ କେବଳ ଗୋଟିଏ ଧାରଣା ଦିଆଗଲା ।

## ପ୍ରକୃତ ରୋଜନାମା :

ପୂର୍ବରୁ କୁହାଯାଇଛି ଯେ ଯେଉଁ କେଣଦେଣ ଗୁଡ଼ିକ କୌଣସି ପ୍ରାଥମିକ ବହିରେ ଲିପିବଦ୍ଧ ହୋଇ ପାରେ ନାହିଁ କେବଳ ସେହିଗୁଡ଼ିକ ରୋଜନାମା ସାହାଯ୍ୟରେ ହିସାବରେ ଅନ୍ତର୍ଭୁକ୍ତ କରାଯିବ । ଯେ କୌଣସି ବ୍ୟବସାୟରେ ଏପରି ଅନେକ ପ୍ରକାରର କେଣଦେଣ ସଂଘଟିତ ହୁଏ ଯାହା ସକାଶେ କୌଣସି ପ୍ରାଥମିକ ବହି ଖୋଲା-ଯାଇ ନାହିଁ କିମ୍ବା ଖୋଲିବା ସୁବିଧାଜନକ ନୁହେଁ । ପ୍ରଥମରେ ସମସ୍ତ କେଣଦେଣ ନିମନ୍ତେ ରୋଜନାମା ବ୍ୟବହାର କରାଯାଉଥିଲା । ପରେ ଶ୍ରମ ଲାଘବ କରିବା ଉଦ୍ଦେଶ୍ୟରେ ଓ ଅନ୍ୟ କେତେକ ସୁବିଧା ଦୃଷ୍ଟିରୁ ପ୍ରାଥମିକ ବହି ପ୍ରଚଳିତ ହେଲା । ସୁତରାଂ ଯଦି କୌଣସି କେଣଦେଣ ସୁବିଧାଜନକ ଭାବରେ କୌଣସି ଗୋଟିଏ ପ୍ରାଥମିକ ବହିରେ ଲିପିବଦ୍ଧ କରାଯାଇ ପାରିବ ନାହିଁ ତେବେ କାର୍ଯ୍ୟତଃ ସେପରି କେଣଦେଣକୁ ଲିପିବଦ୍ଧ କରିବା ସକାଶେ ରୋଜନାମାର ସାହାଯ୍ୟ ନେବାକୁ ପଡ଼ିବ । ସାଧାରଣତଃ ପ୍ରକୃତ ରୋଜନାମା ନିମ୍ନଲିଖିତ ପରିସ୍ଥିତିରେ ବ୍ୟବହୃତ ହୁଏ ।

(୧) କୌଣସି ଗୋଟିଏ ହିସାବ ଖୋଲିବା ନିମନ୍ତେ ;

(୨) ବ୍ୟବସାୟ ସକାଶେ ଉଧାରରେ କୌଣସି ପରିସମ୍ପତ୍ତି (Assets) କ୍ରୟ କରିବା ନିମନ୍ତେ ;

(୩) ପଣ୍ୟ ବ୍ୟତୀତ ଅନ୍ୟ କୌଣସି ପରିସମ୍ପତ୍ତିକୁ ଧାରରେ ବିକ୍ରୟ କରିବା ନିମନ୍ତେ ;

(୪) ଭୁଲ ସଂଶୋଧନ ନିମନ୍ତେ ;

(୫) ସମାଯୋଜନ ନିମନ୍ତେ ;

(୬) ସ୍ଥାନାନ୍ତର କରିବା ନିମନ୍ତେ ;

(୭) ହିସାବ ବନ୍ଦ କରିବା ନିମନ୍ତେ ଓ

(୮) ଅବଶିଷ୍ଟ ନାନାଦି କାର୍ଯ୍ୟ ନିମନ୍ତେ ।

(୧) କୌଣସି ବ୍ୟବସାୟୀ ପ୍ରଥମେ ଯେତେବେଳେ ବ୍ୟବସାୟ ଆରମ୍ଭ କରନ୍ତି ସେତେବେଳେ ପ୍ରକୃତ ରୋଜନାମା ସାହାଯ୍ୟରେ ତାଙ୍କର ବିଭିନ୍ନ ହିସାବ ଖୋଲଯାଏ । ଏହାର ଏକ ଦୃଷ୍ଟାନ୍ତ ନିମ୍ନରେ ପ୍ରଦତ୍ତ ହେଲା ।

## ଦୃଷ୍ଟାନ୍ତ (୧୧)

ଶ୍ରୀ ଲକ୍ଷ୍ମୀଧର ମହାପାତ୍ର ନଗଦ ୪୫୦ ଟଙ୍କା, ବ୍ୟାଙ୍କରେ ଗଚ୍ଛିତ ୩,୫୦୦ ଟଙ୍କା, ୧,୫୦୦ ଟଙ୍କାର ଆସବାବ୍ ପତ୍ର ଓ ୧,୫୫୦ ଟଙ୍କାର ପଣ୍ୟ ଆଣି ୧୯୭୨ ସାଲ ଜାନୁଆରୀ ମାସ ୧ ତାରିଖରେ ଗୋଟିଏ ବ୍ୟବସାୟ ଆରମ୍ଭ କଲେ ।

ଏହାକୁ ରୋଜନାମା ସାହାଯ୍ୟରେ ଲିପିବଦ୍ଧ କର ।

**ସମାଧାନ :**

| ତାରିଖ | ବିବରଣ | | ଖ: ପୃ. | ପରିମାଣ | |
|---|---|---|---|---|---|
| | | | | ଦାୟୀ | ଦାତା |
| ୧୯୭୨ | | | | ଟଙ୍କା | ଟଙ୍କା |
| ଜାନୁ' | ନଗଦ ତହବିଲ ହିସାବ | ଦାୟୀ | | ୪୫୦ | |
| | ବ୍ୟାଙ୍କ୍ ହିସାବ | ଦାୟୀ | | ୩,୫୦୦ | |
| | ଆସ୍‌ବାବ୍ ପତ୍ର ହିସାବ | ଦାୟୀ | | ୧,୫୦୦ | |
| | ପଣ୍ୟ ହିସାବ | ଦାୟୀ | | ୧,୫୫୦ | |
| | ମୂଳଧନ ହିସାବ ବାବଦ | | | | ୭,୦୦୦ |
| | (ଏହି ତାରିଖର ପ୍ରାରମ୍ଭିକ ପରିସମ୍ପତ୍ତି ଓ ଦେଣା ହିସାବଭୁକ୍ତ କରାଗଲା) | | | ୭,୦୦୦ | ୭,୦୦୦ |

ବିଶେଷ ଦ୍ରଷ୍ଟବ୍ୟ :—ଏହି ଦୃଷ୍ଟାନ୍ତରେ ନେଣଦେଣର କେବଳ ଗୋଟିଏ ଦିଗ ଦିଆଯାଇଛି, ଅନ୍ୟ ଦିଗଟି ଉହ୍ୟ ଅଛି । ଏଠାରେ କେବଳ ପରିସମ୍ପତ୍ତିଗୁଡ଼ିକର ପରିମାଣ ଦିଆଯାଇଛି । ମୂଳଧନ ହିସାବ ସମ୍ବନ୍ଧରେ କୌଣସି ଉଲ୍ଲେଖ ନାହିଁ । ଏପରି କ୍ଷେତ୍ରରେ ବ୍ୟବସାୟୀ ଯେତେ ପରିମାଣର ସମ୍ପତ୍ତି ସଂଗ୍ରହ କରି ବ୍ୟବସାୟଟି ଆରମ୍ଭ କଲେ ବ୍ୟବସାୟରେ ସେ ସେତିକି ପରିମାଣର ମୂଳଧନ ବିନିଯୋଗ କଲେ ବୋଲି ଅନୁମାନ କରାଯିବ ।

ପରିସମ୍ପତ୍ତିଗୁଡ଼ିକ ବସ୍ତୁସୂଚକ ହିସାବ ଶ୍ରେଣୀଭୁକ୍ତ, ସେଗୁଡ଼ିକ ବ୍ୟବସାୟକୁ ଆସୁଥିବାରୁ ସେହି ହିସାବଗୁଡ଼ିକୁ ଦାୟୀ କରାଯାଇଛି । ପୂର୍ବରୁ କୁହାଯାଇଛି ଯେ ବ୍ୟବସାୟୀଙ୍କର ନାମ କୌଣସି ହିସାବରେ ଉଲ୍ଲିଖିତ ହେବ ନାହିଁ । ତେଣୁ ତାଙ୍କର ବ୍ୟକ୍ତିଗତ ହିସାବକୁ ମୂଳଧନ ହିସାବ କୁହାଯାଏ । ସୁତରାଂ ବାସ୍ତବିକ୍ ଦେଖିବାକୁ ଗଲେ ମୂଳଧନ ହିସାବ ତାଙ୍କର ବ୍ୟକ୍ତିଗତ ହିସାବ ଓ ତାହା ବ୍ୟକ୍ତିକ ହିସାବ ଶ୍ରେଣୀର ଅନ୍ତର୍ଗତ । ଯେହେତୁ ମୂଳଧନ ଦେବାଦ୍ୱାରା ସେ ବ୍ୟବସାୟକୁ ଉପକାର ପ୍ରଦାନ କରୁଛନ୍ତି ତେଣୁ ତାଙ୍କର ମୂଳଧନ ହିସାବକୁ ପରିସମ୍ପତ୍ତିର ମୋଟ ପରିମାଣ ସହକାରେ ଦାତା କରାଯିବ ।

କୌଣସି ବ୍ୟବସାୟର ବର୍ଷର ଆରମ୍ଭରେ ପୂର୍ବ ବର୍ଷରୁ ଅଣାଯାଇଥିବା ପରିସମ୍ପତ୍ତି ଓ ପାଉଣା, ମୂଳଧନ ଓ ଦେଣାକୁ ନୂତନ ବର୍ଷର ହିସାବରେ ଅନ୍ତର୍ଭୁକ୍ତ କରିବା ନିମନ୍ତେ ମଧ୍ୟ ଏହିପରି ରୋଜନାମା ପ୍ରସ୍ତୁତ କରାଯାଏ । ଏହାର ଏକ ଦୃଷ୍ଟାନ୍ତ ନିମ୍ନରେ ପ୍ରଦତ୍ତ ହେଲା ।

ନିମ୍ନଲିଖିତ ବିବରଣୀରୁ ଦେଓନାରାୟଣଙ୍କର ୧୯୭୨ ସାଲ ଜାନୁଆରୀ ୧ ତାରିଖରେ ପୂର୍ବ ବର୍ଷରୁ ଅଣାଯାଇଥିବା ପରିସମ୍ପତ୍ତି ଓ ପାଉଣା, ମୂଳଧନ ଓ ଦେଣାକୁ ଏ ବର୍ଷର ହିସାବରେ ଅନ୍ତର୍ଭୁକ୍ତ କରିବା ନିମନ୍ତେ ରୋଜନାମା ପ୍ରସ୍ତୁତ କର :

| | | | ଟଙ୍କା |
|---|---|---|---|
| ନଗଦ ତହବିଲ— | — | — | ୪୫୦ |
| ପଣ୍ୟ (ମହଜୁତ୍)— | — | — | ୧,୩୫୦ |
| ବିବିଧ ଖାତକ— | — | — | ୩,୨୦୦ |
| ଆସ୍‌ବାବ୍ ପତ୍ର — | — | — | ୧,୮୦୦ |
| ମୂଳଧନ— | — | — | ୨,୦୦୦ |
| ବିବିଧ ମହାଜନ— | — | — | ୮୦୦ |

ରୋଜନାମା

| ତାରିଖ | ବିବରଣ | | ଖ: ପୃ. | ଦାୟୀ | ଦାତା |
|---|---|---|---|---|---|
| | | | | ଟଙ୍କା | ଟଙ୍କା |
| ୧୯୭୬ ଜୁନ୍-୧ | ନଗଦ ତହବିଲ ହିସାବ | ଦାୟୀ | | ୪.୫୦ | |
| | ମହଜୁଦ୍ ପଣ୍ୟ ହିସାବ | ଦାୟୀ | | ୧,୩୫୦ | |
| | ବିବିଧ ଖାତକ ହିସାବ | ଦାୟୀ | | ୩,୬୦୦ | |
| | ଆସ୍‌ବାବ୍ ପତ୍ର ହିସାବ | ଦାୟୀ | | ୧,୮୦୦ | |
| | ମୂଳଧନ ହିସାବ | ବାବଦ | | | ୬,୦୦୦ |
| | ବିବିଧ ମହାଜନ ହିସାବ | ବାବଦ | | | ୮୦୦ |
| | (ଏହି ତାରିଖରେ ବ୍ୟବସାୟର ପରିସମ୍ପତ୍ତି, ପାଉଣା, ଦେଣା ଓ ମୂଳଧନ ଏ ବର୍ଷର ହିସାବକୁ ଅଣାଗଲା ।) | | | | |
| | | | | ୬,୮୦୦ | ୬,୮୦୦ |

(୬) ଯେଉଁ ବସ୍ତୁ ବା ସାମଗ୍ରୀକୁ ବିକ୍ରୟ କରିବା ଉଦ୍ଦେଶ୍ୟରେ ବ୍ୟବସାୟୀ କ୍ରୟ କରନ୍ତି ତାହାକୁ ମାଲ ବା ପଣ୍ୟ କୁହାଯାଏ । ଏହା ବ୍ୟବସାୟର ଏକ ପରିସମ୍ପତ୍ତି, ମାତ୍ର ଏହାର କ୍ରୟ ଓ ବିକ୍ରୟ ଲିପିବଦ୍ଧ କରିବା ନିମନ୍ତେ ସ୍ୱତନ୍ତ୍ର ପ୍ରାଥମିକ ବହିର ବ୍ୟବସ୍ଥା କରାଯାଇଛି । କିନ୍ତୁ ଅନ୍ୟାନ୍ୟ ପରିସମ୍ପତ୍ତିର କ୍ରୟ ବା ବିକ୍ରୟ ବହୁଳ ପରିମାଣରେ ଘଟୁ ନଥିବାରୁ ଏଥି ନିମନ୍ତେ କୌଣସି ପ୍ରାଥମିକ ବହିର ବ୍ୟବସ୍ଥା କରାଯାଇ ନାହିଁ । ତେଣୁ ଏହି ପ୍ରକାରର ନେଣଦେଣକୁ ଲିପିବଦ୍ଧ କରିବା ସକାଶେ ରୋଜନାମାର ସାହାଯ୍ୟ ନେବାକୁ ପଡ଼େ । ଏହାର ଏକ ଦୃଷ୍ଟାନ୍ତ ନିମ୍ନରେ ପ୍ରଦତ୍ତ ହେଲା :

## ଦୃଷ୍ଟାନ୍ତ (୧୩)

ଦେଓନାରାୟଣ ଉଧାରରେ ନିମ୍ନଲିଖିତ ପରିସମ୍ପତ୍ତି ମାଧବ ଜି ଲିଭଙ୍କଠାରୁ କ୍ରୟ କଲେ :

| | | ଟଙ୍କା |
|---|---|---|
| ୧୯୭୬ ମାର୍ଚ୍ଚ-୫ | ଯନ୍ତ୍ରପାତି... ... | ୪,୫୦୦ |
| | ଉପକରଣ... ... | ୫୦୦ |

ଏଥି ନିମନ୍ତେ ରୋଜନାମା ପ୍ରସ୍ତୁତ କର ।

### ରୋଜନାମା

| ତାରିଖ | ବିବରଣ | ଖ: ପୃ: | ଦାୟୀ | ଦାତା |
|---|---|---|---|---|
| ୧୯୭୨ | | | ଟଙ୍କା | ଟଙ୍କା |
| ମାର୍ଚ୍ଚ-୫ | ଯନ୍ତ୍ରପାତି ହିସାବ ଦାୟୀ | | ୪,୫୦୦ | |
| | ଉପକରଣ ହିସାବ ଦାୟୀ | | ୫୦୦ | |
| | ମାଧବଙ୍କ ଲଭଙ୍କ ହିସାବ ବାବଦ (ଉଧାରରେ କ୍ରୀତ ପରିସମ୍ପତ୍ତିକୁ ହିସାବଭୁକ୍ତ କରାଗଲା ।) | | | ୫,୦୦୦ |
| | | | ୫,୦୦୦ | ୫,୦୦୦ |

(ଗ) ଉଧାରରେ ପରିସମ୍ପତ୍ତି କ୍ରୟ କରିବା ନିମନ୍ତେ ଯେପରି ରୋଜନାମା ବ୍ୟବହାର କରାଯାଏ ପରିସମ୍ପତ୍ତିକୁ ଧାରରେ ବିକ୍ରୟ କରାଗଲେ ମଧ୍ୟ ଠିକ୍ ସେହିପରି ରୋଜନାମା ବ୍ୟବହୃତ ହେବ । ଯଦି ନଗଦ ମୂଲ୍ୟରେ ଏହା କ୍ରୟ ବା ବିକ୍ରୟ ହୋଇଥାଆନ୍ତା ତାହା ରୋକଡ଼ ବହିରେ ଲିପିବଦ୍ଧ କରି ଯାଆନ୍ତା । ଏହାର ଏକ ଦୃଷ୍ଟାନ୍ତ ନିମ୍ନରେ ପ୍ରଦତ୍ତ ହେଲା ।

## ଦୃଷ୍ଟାନ୍ତ (୧୪)

ଦେଓନାରାୟଣ ନିମ୍ନଲିଖିତ ପରିସମ୍ପତ୍ତି ଧାରରେ ମଣିଲାଲ୍‌ଙ୍କୁ ବିକ୍ରୟ କଲେ କାରଣ ତାହାର କାର୍ଯ୍ୟକାରିତା ହ୍ରାସ ପାଇଥିଲା :

| ୧୯୭୨ | | ଟଙ୍କା |
|---|---|---|
| ଜୁନ୍-୨ | ଅସ୍‌ବାବ୍ ପତ୍ର — — — | ୧,୨୦୦ |
| | ଉପକରଣ — — — | ୨୭୦ |

ଏହାକୁ ଲିପିବଦ୍ଧ କରିବା ନିମନ୍ତେ ରୋଜନାମା ପ୍ରସ୍ତୁତ କର ।

ରୋଜନାମା

| ତାରିଖ | ବିବରଣ | ଖ: ପୃ: | ଦାୟୀ | ଦାତା |
|---|---|---|---|---|
| ୧୯୭୨ ଜୁନ-୨ | ମଣିଲାଲ୍ଙ୍କ ହିସାବ ଦାୟୀ<br>ଆସ୍‌ବାବ୍ ପତ୍ର ହିସାବ ବାବଦ<br>ଉପକରଣ ହିସାବ ବାବଦ<br>(କେତେକ ପରିସମ୍ପତ୍ତି ଧାରରେ ବିକ୍ରିତ୍ କରାଗଲା ।) | | ଟଙ୍କା<br>୧,୪୦୦ | ଟଙ୍କା<br><br>୧,୨୦୦<br>୨୦୦ |
| | | | ୧,୪୦୦ | ୧,୪୦୦ |

(୪) ଅନେକ ସମୟରେ ହିସାବରକ୍ଷକ କୌଣସି ନେଣଦେଣକୁ ଯଥାଯଥ ଭାବରେ ଲିପିବଦ୍ଧ ନ କରି ଭୁଲ ହିସାବକୁ ଦାୟୀ ବା ଦାତା କରିଥାନ୍ତି । ଏହି ଭୁଲ ଯେତେବେଳେ ଦୃଷ୍ଟିଗୋଚର ହୁଏ ସେତେବେଳେ ତାହାର ସଂଶୋଧନ କରିବା ଆବଶ୍ୟକ ହୁଏ । ଏଥି ନିମନ୍ତେ ପ୍ରକୃତ ରୋଜନାମା ବ୍ୟବହାର କରିବାକୁ ପଡ଼େ । ମନେକର ହରିଶ ବ୍ୟବସାୟୀକୁ ୧୦୦ ଟଙ୍କା ନଗଦ ଦେଲେ । ଏଥି ନିମନ୍ତେ ରୋକଡ ବହିରେ ୧୦୦ ଟଙ୍କା ଦାୟୀ ପାର୍ଶ୍ୱରେ ହରିଶଙ୍କର ହିସାବ ବାବଦ ଲେଖାଯିବ ଓ ଖତିୟାନସ୍ଥ ହରିଶଙ୍କର ହିସାବକୁ ନଗଦ ତହବିଲ ବାବଦ ୧୦୦ ଟଙ୍କା ନିମନ୍ତେ ଦାତା କରାଯିବ । ହିସାବରକ୍ଷକ କିନ୍ତୁ ଭୁଲ୍‌ବଶତଃ ହରିଶଙ୍କର ହିସାବ ପରିବର୍ତ୍ତେ ଗିରିଶଙ୍କର ହିସାବକୁ ଦାତା କରିଛନ୍ତି । ଏହି ଭୁଲଟି କିଛିଦିନ ପରେ ଆବିଷ୍କୃତ ହେଲା । ଏପରି କ୍ଷେତ୍ରରେ ହୁଏତ ତୁମେ କହିପାର ଯେ ଗିରିଶଙ୍କର ହିସାବରୁ ୧୦୦ ଟଙ୍କାର ଲେଖାଟି କାଟି ହରିଶଙ୍କର ହିସାବରେ ତାହା ଲେଖିଦେଲେ ହିସାବ ଠିକ୍ ହୋଇଯିବ, କିନ୍ତୁ ହିସାବ ଖାତାରେ ଏପରି କଟାକଟି କରିବା ଆଦୌ ବାଞ୍ଛନୀୟ ନୁହେଁ । ତେଣୁ ଏହି ଭୁଲକୁ ରୋଜନାମା ସାହାଯ୍ୟରେ ସଂଶୋଧନ କରାଯିବା ଉଚିତ । ସଂଶୋଧନ କରିବା ଉଦ୍ଦେଶ୍ୟରେ ଗିରିଶଙ୍କୁ ଅଯଥା ଯେଉଁ ୧୦୦ ଟଙ୍କା ନିମନ୍ତେ ଦାତା କରାଯାଇଛି ତାଙ୍କ ହିସାବକୁ ଯଦି ୧୦୦ ଟଙ୍କା ନିମନ୍ତେ ଦାୟୀ କରାଯାଏ ତାହେଲେ ତାହା ପୂର୍ବବତ୍ ରହିବ ଓ ସେତିକି ପରିମାଣ ସକାଶେ ହରିଶଙ୍କର ହିସାବକୁ ଦାତା କରାଗଲେ ଭୁଲର ସଂଶୋଧନ ହୋଇଯିବ । ଏହା କେବଳ ଗୋଟିଏ ପ୍ରକାରର ଭୁଲ, ଏହି ପରି ନାନାପ୍ରକାରର ଭୁଲ ହିସାବରେ ଲିପିବଦ୍ଧ ହୋଇପାରିଥାଏ ।

ଯଦି ହିସାବରେ କୌଣସି ଭୁଲ ଦୃଷ୍ଟିଗୋଚର ହେବା ମାତ୍ରେ ତାହାକୁ ରୋଜନାମା ସାହାଯ୍ୟରେ ସଂଶୋଧନ କରାଯିବ ।

ଏହାର ଏକ ଦୃଷ୍ଟାନ୍ତ ନିମ୍ନରେ ପ୍ରଦତ୍ତ ହେଲା ।

## ଦୃଷ୍ଟାନ୍ତ ( ୧୫ )

(କ) ହରିଶ ମଇ ମାସ ୧୦ ତାରିଖରେ ୧୦୦ ଟଙ୍କା ବ୍ୟବସାୟକୁ ପୂର୍ବ ବାକି ବାବଦ ପରିଶୋଧ କରିଥିଲେ । ହିସାବ ରକ୍ଷକ ହରିଶଙ୍କର ହିସାବ ପରିବର୍ତ୍ତେ ସେହି ପରିମାଣର ଅର୍ଥ ନିମନ୍ତେ ଭୁଲବଶତଃ ଗିରୀଶଙ୍କର ହିସାବକୁ ଦାତା କରିଥିଲେ । ଏହି ଭୁଲଟି ଜୁନ୍ ମାସ ୪ ତାରିଖରେ ଧରାପଡ଼ିଲା । ଏହି ଭୁଲ ସଂଶୋଧନ କର ।

(ଖ) କେଶବଙ୍କୁ ଘରଭଡ଼ା ବାବଦ ଦିଆଯାଇଥିବା ୨୦୦ ଟଙ୍କା ସକାଶେ ତାଙ୍କର ବ୍ୟକ୍ତିଗତ ହିସାବକୁ ମଇ ମାସ ୧୨ ତାରିଖରେ ଦାୟୀ କରାଯାଇଛି । ଏହି ଭୁଲ ଜୁନ୍ ମାସ ୪ ତାରିଖରେ ଜଣାଗଲା । ରୋଜନାମା ସାହାଯ୍ୟରେ ଏହି ଭୁଲ ମଧ୍ୟ ସଂଶୋଧନ କର ।

ରୋଜନାମା

| ତାରିଖ | ବିବରଣ | ଖ: ପୃ: | ଦାୟୀ | ଦାତା |
|---|---|---|---|---|
| ୧୯୭୨ ଜୁନ୍-୪ | ଗିରୀଶଙ୍କର ହିସାବ ଦାୟୀ<br>ହରିଶଙ୍କର ହିସାବ ବାବଦ<br>(ମଇ ୧୦ ତାରିଖରେ ହରିଶ ପରିଶୋଧ କରିଥିବା ୧୦୦ ଟଙ୍କା ନିମନ୍ତେ ଭୁଲବଶତଃ ଗିରୀଶଙ୍କର ହିସାବକୁ ଦାତା କରାଯାଇଥିବା ଭୁଲ ସଂଶୋଧିତ ହେଲା । ) | | ଟଙ୍କା<br>୧୦୦ | ଟଙ୍କା<br>୧୦୦ |
| ୪ | ପ୍ରଦତ୍ତ ଘରଭଡ଼ା ହିସାବ ଦାୟୀ<br>କେଶବଙ୍କର ହିସାବ ବାବଦ<br>( ମଇ ୧୨ ତାରିଖରେ ଘରଭଡ଼ା ଦିଆଯାଇଥିବା ଟଙ୍କା ସକାଶେ ଘରଭଡ଼ା ହିସାବକୁ ଦାୟୀ ନ କରି ଘରର ମାଲିକଙ୍କ ହିସାବକୁ ଭୁଲବଶତଃ ଦାୟୀ କରାଯାଇଥିଲା । ତାହା ସଂଶୋଧନ କରାଗଲା । ) | | ୨୦୦ | ୨୦୦ |

(୬) ଯେ କୌଣସି ବ୍ୟବସାୟରେ ବର୍ଷ ଶେଷରେ ଚୂଡ଼ାନ୍ତ ହିସାବ କରିବା ପୂର୍ବରୁ ବହୁ ପ୍ରକାର ସମାଯୋଜନ ଆବଶ୍ୟକ ହୁଏ । ଏହାର କେତେକ ଉଦାହରଣ ନିମ୍ନରେ ଆଲୋଚିତ ହେଲା ।

(କ) ବ୍ୟବସାୟର କର୍ମଚାରୀଙ୍କ ପ୍ରତିମାସର ବେତନ ପରବର୍ତ୍ତୀ ମାସର ୧ ତାରିଖରେ ଦିଆଯାଏ । ହିସାବ ବର୍ଷ ମଧ୍ୟରେ ଏଥି ନିମନ୍ତେ କୌଣସି ଅସୁବିଧା ହୁଏ ନାହିଁ, ମାତ୍ର ବର୍ଷର ଶେଷ ମାସର ବେତନ ଯଦି ପରବର୍ତ୍ତୀ ହିସାବ ବର୍ଷରେ ଦିଆଯାଏ ତାହେଲେ ଅସୁବିଧା ହେବ, କାରଣ ଏ ବର୍ଷର ପ୍ରକୃତ ବ୍ୟୟ ଯଥାଯଥ ଭାବରେ ଲିପିବଦ୍ଧ ହୋଇପାରିବ ନାହିଁ । ମନେକର ଗୋଟିଏ ବ୍ୟବସାୟର ହିସାବ ଜାନୁଆରି ୧ ତାରିଖରୁ ଆରମ୍ଭ ହୋଇ ଡିସେମ୍ବର ୩୧ ତାରିଖରେ ଶେଷ ହୁଏ । ଯଦି ଡିସେମ୍ବର ମାସର ବେତନ ପର ବର୍ଷର ଜାନୁଆରି ୧ ତାରିଖରେ ଦିଆଯାଏ ତାହେଲେ ଏ ବର୍ଷର ବ୍ୟୟ ପରବର୍ତ୍ତୀ ହିସାବ ବର୍ଷରେ ଲିପିବଦ୍ଧ ହେବ । ତେଣୁ ଏ ବର୍ଷର ଲାଭ, ଯାହା କି ବେତନ ବାବଦ ବ୍ୟୟକୁ ଉପେକ୍ଷା କରି ନିର୍ଣ୍ଣୀତ ହୋଇଛି ତାହା ଭ୍ରମାତ୍ମକ ହେବ । ତେଣୁ ଚୂଡ଼ାନ୍ତ ହିସାବ କରିବା ପୂର୍ବରୁ ଏହାର ସମାଯୋଜନ ଆବଶ୍ୟକ । ଏହି ସମାଯୋଜନ ନିମନ୍ତେ ନିମ୍ନଲିଖିତ ରୋଜନାମା କରାଯିବ :

ବେତନ ହିସାବ ଦାୟୀ

ଦେୟ ବେତନ ହିସାବ ବାବଦ

(ଖ) ଏହିପରି ଏ ବର୍ଷର ଯାହା ଅର୍ଜିତ ଆୟ ତାହା ଯଦି ପ୍ରକୃତରେ ନ ମିଳିଥାଏ ତାହେଲେ ସେଥିପାଇଁ ସମାଯୋଜନ ଆବଶ୍ୟକ । ମନେକର ସରକାରୀ ଋଣପତ୍ରର ସୁଧ ବାବଦ ସରକାରଙ୍କଠାରୁ ଡିସେମ୍ବର ୩୧ ତାରିଖ ସୁଦ୍ଧା ୬୦ ଟଙ୍କା ପ୍ରାପ୍ୟ । ଯଦି ସେହି ତାରିଖ ସୁଦ୍ଧା ସୁଧ ବାବଦ ଟଙ୍କା ନ ମିଳେ ତାହେଲେ ସେଥି ନିମନ୍ତେ ସମାଯୋଜନ ଆବଶ୍ୟକ । ତାହାର ରୋଜନାମା ନିମ୍ନରେ ଦିଆଗଲା :

| | ଟଙ୍କା | ଟଙ୍କା |
|---|---|---|
| ପ୍ରାପ୍ୟ ସୁଧ ହିସାବ ଦାୟୀ | ୬୦ | |
| ସୁଧ ହିସାବ ବାବଦ | | ୬୦ |

(ଗ) ଯଦି କୌଣସି ଆୟ ଅର୍ଜିତ ହେବା ପୂର୍ବରୁ ମିଳିଛି ତାହେଲେ ସେହି ବର୍ଷର ଯେତିକ ଆୟ ପ୍ରାପ୍ୟ ସେତିକ ସେହି ବର୍ଷର ହିସାବକୁ ନିଆଯିବ ଓ ବଳକା ପରିମାଣକୁ ବାଦ୍ ଦିଆଯିବ । ମନେକର ତୁମେ ଘରଭଡ଼ା ବାବଦ ପ୍ରତି ମାସର ୧୫୦ ଟଙ୍କା ତୁମର ଭଡ଼ାଟିଆଙ୍କଠାରୁ ପାଅ କିନ୍ତୁ ସେ ଯଦି ସେପ୍ଟେମ୍ବର ମାସରେ ୬ ମାସର ଭଡ଼ା ଏକକାଳୀନ ଦିଅନ୍ତି ତାହେଲେ ଅଗ୍ରିମ ପ୍ରାପ୍ତ ୨ ମାସର ଭଡ଼ା ବାବଦ ୩୦୦ ଟଙ୍କା ସେହି ବର୍ଷର ହିସାବରୁ ନିମ୍ନଲିଖିତ ରୋଜନାମା ସାହାଯ୍ୟରେ ବାଦ୍ ଦିଆଯିବ :

| | | |
|---|---|---|
| ପ୍ରାପ୍ତ ଘରଭଡ଼ା ହିସାବ | ଦାଖଲ | ଟ ୩୦୦ |
| ଅଗ୍ରିମ ପ୍ରାପ୍ତ ଘରଭଡ଼ା ହିସାବ ବାବଦ | | ଟ ୩୦୦ |

ଏହି ପ୍ରକାରର ବହୁ ପରିସ୍ଥିତିରେ ସମାଯୋଜନ ଆବଶ୍ୟକ ହୁଏ ; ସେ ସମସ୍ତ ଯଥା ସ୍ଥାନରେ ଆଲୋଚିତ ହେବ ।

ଏହାର ଏକ ଦୃଷ୍ଟାନ୍ତ ନିମ୍ନରେ ପ୍ରଦତ୍ତ ହେଲା :

## ଦୃଷ୍ଟାନ୍ତ (୧୬)

୧୯୬୨ ସାଲ ଡିସେମ୍ବର ୩୧ ତାରିଖରେ ଚୂଡ଼ାନ୍ତ ବାର୍ଷିକ ହିସାବ କରିବା ସମୟରେ ଦେଖାଗଲା ଯେ ନିମ୍ନଲିଖିତ ବିଷୟଗୁଡ଼ିକ ସକାଶେ ବ୍ୟବସ୍ଥା ହୋଇ ନାହିଁ :

(କ) ଡିସେମ୍ବର ମାସର ବେତନ ବାବଦ କର୍ମଚାରୀଙ୍କୁ ୩୦୦ ଟଙ୍କା ଦିଆଯିବ ।

(ଖ) ସରକାରୀ ଋଣପତ୍ରର ସୁଧ ବାବଦ ୫୦ ଟଙ୍କା ଅର୍ଜିତ ହୋଇଛି କିନ୍ତୁ ତାହା ଏ ପର୍ଯ୍ୟନ୍ତ ମିଳି ନାହିଁ ।

(ଗ) ଭଡ଼ାଟିଆଙ୍କଠାରୁ ୧୯୬୩ ସାଲ ଜାନୁଆରୀ ଓ ଫେବୃଆରୀ ମାସର ଘରଭଡ଼ା ମାସିକ ୧୫୦ ଟଙ୍କା ହାରରେ ଅଗ୍ରିମ ମିଳିଛି ।

(ଘ) ଆସ୍‌ବାବ୍ ପତ୍ରରୁ ମୂଲ୍ୟ ହ୍ରାସ ବାବଦ ଶତକଡ଼ା ୧୦ ବାଦ୍ ଦିଆଯିବ (ଆସ୍‌ବାବ୍ ପତ୍ର ହିସାବର ବାକି—୨,୪୦୦ ଟଙ୍କା )

ପୂର୍ବୋକ୍ତ ବିଷୟଗୁଡ଼ିକର ସମାଯୋଜନ ନିମନ୍ତେ ରୋଜନାମା ପ୍ରସ୍ତୁତ କର ।

ରୋଜନାମା

| ତାରିଖ | ବିବରଣ | ଖ:ପୃ: | ଦାୟୀ | ଦାତା |
|---|---|---|---|---|
| (୧୯୭୨) | | | ଟଙ୍କା | ଟଙ୍କା |
| ଡିସେ-୩୧ | ବେତନ ହିସାବ ଦାୟୀ | | ୩୦୦ | |
| | ଦେୟ ବେତନ ହିସାବ ବାବଦ | | | ୩୦୦ |
| | (କର୍ମଚାରୀଙ୍କୁ ଡିସେମ୍ବର ମାସ ସକାଶେ ଦେୟ ବେତନ ପାଇଁ ବ୍ୟବସ୍ଥା କରାଗଲା) | | | |
| ,, ୩୧ | ପ୍ରାପ୍ୟ ସୁଧ ହିସାବ ଦାୟୀ | | ୫୦ | |
| | ସୁଧ ହିସାବ ବାବଦ | | | ୫୦ |
| | (ସରକାରୀ ଋଣପତ୍ରର ସୁଧ ଅର୍ଜିତ ହୋଇଛି ମାତ୍ର ତାହା ନ ମିଳିଥିବାରୁ ଏହି ଆୟ ହିସାବକୁ ଅଣାଗଲା) | | | |
| ,, ୩୧ | ପ୍ରାପ୍ତ ଘରଭଡ଼ା ହିସାବ ଦାୟୀ | | ୩୦୦ | |
| | ଅଗ୍ରିମ ପ୍ରାପ୍ତ ଘରଭଡ଼ା ହିସାବ ବାବଦ | | | ୩୦୦ |
| | (ଅଗ୍ରିମ ପ୍ରାପ୍ତ ଘରଭଡ଼ା ଏ ବର୍ଷ ଆୟରୁ ବାଦ୍ ଦିଆଗଲା) | | | |
| ,, ୩୧ | ମୂଲ୍ୟହ୍ରାସ ହିସାବ ଦାୟୀ | | ୧୫୦ | |
| | ଆସବାବ୍ ପତ୍ର ହିସାବ ବାବଦ | | | ୧୫୦ |
| | (ଆସବାବ୍ ପତ୍ର ହିସାବର ବାକିରୁ ମୂଲ୍ୟହ୍ରାସ ବାବଦ ଶତକଡ଼ା ୧୦ ବାଦ୍ ଦିଆଗଲା) | | | |
| | | | ୮୦୦ | ୮୦୦ |

(୭) ଅନେକ ସମୟରେ ଗୋଟିଏ ହିସାବର ବାକିକୁ ଅନ୍ୟ ଏକ ହିସାବକୁ ସ୍ଥାନାନ୍ତରିତ କରିବା ଆବଶ୍ୟକ ହୁଏ । ସେତେବେଳେ ତାହା ରୋଜନାମା ସାହାଯ୍ୟରେ କରାଯାଏ । ଏହାର ଏକ ଦୃଷ୍ଟାନ୍ତ ନିମ୍ନରେ ପ୍ରଦତ୍ତ ହେଲା ।

## ଦୃଷ୍ଟାନ୍ତ (୧୭)

ବ୍ୟବସାୟୀ ନିଜର ଖର୍ଚ୍ଚ ନିମନ୍ତେ ବ୍ୟବସାୟରୁ ୧୦୦ ଟଙ୍କା ନେଇଥିଲେ । ତାହା ଉଠାଣ ହିସାବରେ ଲିପିବଦ୍ଧ କରାଯାଇଥିଲା । ୧୯୭୨ ସାଲ ଡିସେମ୍ବର ୩୧ ତାରିଖରେ ଏହା ସାବ୍ୟସ୍ତ ହେଲା ଯେ ତାଙ୍କର ଉଠାଣ ହିସାବର ବାକି ତାଙ୍କର ମୂଳଧନ ହିସାବକୁ ସ୍ଥାନାନ୍ତରିତ କରାଯିବ । ଏଥିନିମନ୍ତେ ରୋଜନାମା ପ୍ରସ୍ତୁତ କର ।

ରୋଜନାମା

| ତାରିଖ | ବିବରଣ | ଖା:ପୃ: | ଦାୟୀ | ଦାତା |
|---|---|---|---|---|
| ୧୯୭୨ | | | ଟଙ୍କା | ଟଙ୍କା |
| ଡିସେ-୩୧ | ମୂଳଧନ ହିସାବ ଦାୟୀ | | ୧୦୦ | |
| | ଉଠାଣ ହିସାବ ବାବଦ | | | ୧୦୦ |
| | (ଉଠାଣ ହିସାବର ବାକି ମୂଳଧନ ହିସାବକୁ ସ୍ଥାନାନ୍ତରିତ କରାଗଲା) | | | |

(୬) ବର୍ଷ ଶେଷରେ ଯେତେବେଳେ ବ୍ୟବସାୟର ବାର୍ଷିକ ବା ବୃତ୍ତାନ୍ତ ହିସାବ ପ୍ରସ୍ତୁତ ହୁଏ ସେତେବେଳେ ଖତିୟାନରେ ଥିବା ଯାବତୀୟ ହିସାବକୁ ବନ୍ଦ କରି ଏହାର ବାକିକୁ ମୋଟ ଲାଭ ଓ କ୍ଷତି ହିସାବ କିମ୍ବା ନିଟ୍ ଲାଭ ଓ କ୍ଷତି ହିସାବ କିମ୍ବା ହିସାବ ପତ୍ର (Balance Sheet)କୁ ନିଆଯାଏ । ଏଥିନିମନ୍ତେ ରୋଜନାମା ବ୍ୟବହାର କରିବା ଆବଶ୍ୟକ ହୁଏ । ଏହାର ଏକ ଦୃଷ୍ଟାନ୍ତ ନିମ୍ନରେ ପ୍ରଦତ୍ତ ହେଲା ।

## ଦୃଷ୍ଟାନ୍ତ (୧୮)

୧୯୭୨ ସାଲ ଡିସେମ୍ବର ୩୧ ତାରିଖରେ ବିଭିନ୍ନ ଆୟ ଓ ବ୍ୟୟ ହିସାବର ବାକି ନିମ୍ନରେ ପ୍ରଦତ୍ତ ହେଲା । ସେହି ହିସାବଗୁଡ଼ିକ ବନ୍ଦ କରି ତାହାର ବାକି ମୋଟ କିମ୍ବା ନିଟ୍ ଲାଭ ଓ କ୍ଷତି ହିସାବକୁ ନିଅ ।

| | | | ଟଙ୍କା |
|---|---|---|---|
| କ୍ରୟ ହିସାବ | — | — | ୫,୭୦୮ |
| ମଜୁରି ହିସାବ | — | — | ୧୩୨ |
| ବେତନ ହିସାବ | — | — | ୨,୪୦୦ |
| ଘରଭଡ଼ା ହିସାବ | — | — | ୧,୮୦୦ |

ରୋଜନାମା

| ତାରିଖ | ବିବରଣ | ଖ. ପୃ: | ଦାୟୀ | ଦାତା |
|---|---|---|---|---|
| ୧୯୭୨ | | | ଟଙ୍କା | ଟଙ୍କା |
| ଡିସେ-୩୧ | ମୋଟ ଲାଭ-କ୍ଷତି ହିସାବ ଦାୟୀ | | ୫,୮୪୦ | |
| | କ୍ରୟ ହିସାବ ବାବଦ | | | ୫,୭୦୮ |
| | ମଜୁରି ହିସାବ ବାବଦ | | | ୧୩୨ |
| | (କ୍ରୟ ହିସାବ ଓ ମଜୁରି ହିସାବକୁ ବନ୍ଦ କରାଯାଇ ସେ ହିସାବଗୁଡ଼ିକର ବାକି ମୋଟ ଲାଭ-କ୍ଷତି ହିସାବକୁ ଅଣାଗଲା ।) | | | |
| ୩୧ | ନିଟ୍ ଲାଭ-କ୍ଷତି ହିସାବ ଦାୟୀ | | ୪,୨୦୦୦ | |
| | ବେତନ ହିସାବ ବାବଦ | | | ୨,୪୦୦ |
| | ଘରଭଡ଼ା ହିସାବ ବାବଦ | | | ୧,୮୦୦ |
| | (ବେତନ ଓ ଘରଭଡ଼ା ହିସାବକୁ ବନ୍ଦ କରଯାଇ ବାକି ନିଟ୍ ଲାଭ-କ୍ଷତି ହିସାବକୁ ଅଣାଗଲା ।) | | | |
| | | | ୧୦,୦୪୦ | ୧୦,୦୪୦ |

(୮) ଯଦି ଏପରି କୌଣସି ନେଣଦେଣ ସଂଘଟିତ ହୁଏ ଯାହା କି କୌଣସି ପ୍ରାଥମିକ ବହିରେ ଲିପିବଦ୍ଧ ହୋଇ ପାରିବ ନାହିଁ କିମ୍ବା ଯାହା (୧) ରୁ (୭) ରେ ବର୍ଣ୍ଣିତ ଶ୍ରେଣୀରେ ଅନ୍ତର୍ଭୁକ୍ତ ହୋଇ ପାରିବ ନାହିଁ ତାହାକୁ ଲିପିବଦ୍ଧ କରିବା ସକାଶେ ଯେଉଁ ରୋଜନାମା ଲେଖାଯିବ ତାହା ଏହି ଅବଶିଷ୍ଟ ଶ୍ରେଣୀଭୁକ୍ତ ହୋଇ ବିବେଚିତ ହେବ । ଏହାର ଏକ ଦୃଷ୍ଟାନ୍ତ ନିମ୍ନରେ ପ୍ରଦତ୍ତ ହେଲା ।

## ଦୃଷ୍ଟାନ୍ତ (୧୯)

ରାମଙ୍କର ଓ ହରିଙ୍କର ଗୋଟିଏ ଅଂଶୀଦାରୀ କାରବାରର ସମାନ ଅଂଶୀଦାର । ସେମାନେ ଉମାଙ୍କରକୁ ଲାଭର ୧/୩ ଅଂଶ ଦେଇ ନୂତନ ଅଂଶୀଦାର ରୂପେ ବ୍ୟବସାୟକୁ ଆଣିବା ସକାଶେ ସ୍ୱୀକୃତ ହେଲେ । ଅବଶ୍ୟ ଏଥିପାଇଁ କେତେକ ସର୍ତ୍ତ ଥିଲା, ତନ୍ମଧ୍ୟରୁ ଗୋଟିଏ ହେଲା ଏହି ଯେ ବ୍ୟବସାୟର ସୁନାମର ମୂଲ୍ୟ ୪,୦୦୦ ଟଙ୍କା

ହେବ ଓ ତାହାକୁ ପୂର୍ବତନ ଅଂଶୀଦାର ସମାନ ଅଂଶରେ ଭାଗ କରିଦେବେ । ୧୯୭୨ ସାଲ ମାର୍ଚ୍ଚ ୧ ତାରିଖରେ ଏହି ସର୍ତ୍ତ କାର୍ଯ୍ୟକାରୀ ହେଲା । ଏଥି ସକାଶେ ରୋଜନାମା ଲେଖ ।

ରୋଜନାମା

| ତାରିଖ | ବିବରଣ | ଖ: ପୃ: | ଦାୟୀ | ଦାତା |
|---|---|---|---|---|
| ୧୯୭୨ | | | ଟଙ୍କା | ଟଙ୍କା |
| ମାର୍ଚ୍ଚ-୧ | ସୁନାମ ହିସାବ ଦାୟୀ | | ୪,୦୦୦ | |
| | ରାମଙ୍କରଙ୍କର ମୂଳଧନ ହିସାବ ବାବଦ | | | ୨,୦୦୦ |
| | ହରିଶଙ୍କରଙ୍କର ,, ,, ,, | | | ୨,୦୦୦ |
| | (ସୁନାମ ହିସାବ ଖୋଲାଗଲା ଓ ପୂର୍ବତନ ଅଂଶୀଦାରମାନେ ତାହା ସମାନ ଅଂଶରେ ବାଣ୍ଟି ଦେଲେ ।) | | | |

## ରୋଜନାମାରୁ ଖତିୟାନ ହିସାବ ପ୍ରସ୍ତୁତ କରିବା :

ରୋଜନାମାରୁ ଖତିୟାନ ହିସାବ କିପରି ପ୍ରସ୍ତୁତ କରାଯାଏ ତାହା ପୂର୍ବ ପରିଚ୍ଛେଦରେ ବର୍ଣ୍ଣିତ ହୋଇଛି । ତେଣୁ ଏଠାରେ ସେ ବିଷୟରେ ସଂକ୍ଷିପ୍ତ ଆଲୋଚନା କରାଯିବ ।

ରୋଜନାମାରୁ ଖତିୟାନ ପ୍ରସ୍ତୁତ କରିବା ଅତି ସହଜ । ଯେଉଁ ହିସାବର ନାମ ପ୍ରଥମରେ ରୋଜନାମାରେ ଲେଖାଯାଏ ତାହା ଦାୟୀ ଓ ଯେଉଁ ହିସାବ ପରେ ଲେଖା-ଯାଏ ତାହା ଦାତା । ଯେଉଁ ହିସାବର ନାମ ପ୍ରଥମରେ ଲେଖାଥାଏ ଖତିୟାନରେ ସେହି ହିସାବଟି ପୃଷ୍ଠାଙ୍କ ଦେଖି ବାହାର କରାଯିବ ଓ ସେହି ହିସାବର ଦାୟୀ ପାର୍ଶ୍ୱରେ ଅପର ହିସାବଟିର ନାମ ଲେଖି "ବାବଦ" ଏହି ଶବ୍ଦଟି ଲେଖାଯିବ । ମନେକର ତୁମେ ପଟ୍ଟନାୟକ କମ୍ପାନୀରୁ ବ୍ୟବସାୟରେ ବ୍ୟବହାର ନିମନ୍ତେ ଗୋଟିଏ ଇସ୍ପାତ୍‌ର ଟେବୁଲ୍ ଉଧାରରେ କିଣି କଲ, ଯାହାର ମୂଲ୍ୟ ୪୫୦ ଟଙ୍କା । ଏହାର ରୋଜନାମା କରିବାକୁ ଗଲେ ନିମ୍ନୋକ୍ତ ପ୍ରକାର ହେବ :

| | | ଟଙ୍କା | ଟଙ୍କା |
|---|---|---|---|
| ଇସ୍ପାତ୍ ଟେବୁଲ୍ ହିସାବ | ଦାୟୀ | ୪୫୦ | |
| ପଟ୍ଟନାୟକ କମ୍ପାନୀଙ୍କର ହିସାବ ବାବଦ | | | ୪୫୦ |

ଖତିୟାନରେ ଥିବା ଇସ୍ପାତ୍ ଟେବୁଲ୍ ହିସାବର ଦାୟୀ ପାର୍ଶ୍ୱରେ ଲେଖାଯିବ "ପଟ୍ଟନାୟକ କମ୍ପାନୀଙ୍କର ହିସାବ ବାବଦ ।" ପଟ୍ଟନାୟକ କମ୍ପାନୀଙ୍କର ହିସାବରେ

ସେହିପରି ଲେଖାଯିବ "ଇଷ୍ଟ ଭ୍ ଟେବୁଲ୍ ବାବଦ", କିନ୍ତୁ ଏହା ସେହି ହିସାବର ଦାତା ପାର୍ଶ୍ୱରେ ଲେଖାଯିବ । ରୋଜନାମାର ତାରିଖ ଉଭୟ ଖତିୟାନ ହିସାବର ତାରିଖ କକ୍ଷରେ ଲେଖାଯିବ । ବିବରଣୀ କକ୍ଷରେ ଅପର ହିସାବଟିର ନାମ, ଯେପରି ବର୍ଣ୍ଣିତ ହେଲା ସେହିପରି ଲେଖାଯିବ । ତାହାର ପରବର୍ତ୍ତୀ କକ୍ଷରେ ରୋଜନାମାର ଯେଉଁ ପୃଷ୍ଠାରୁ ବିବରଣୀ ଆଣି ଖତିୟାନ ହିସାବ ଲେଖାଗଲା ସେହି ପୃଷ୍ଠାଙ୍କ ଲେଖାଯିବ । ପରିମାଣ କକ୍ଷରେ ରୋଜନାମାରେ ଲେଖାଥିବା ପରିମାଣ ଲେଖାଯିବ ।

ଏହାର କେତେକ ଦୃଷ୍ଟାନ୍ତ ନିମ୍ନରେ ପ୍ରଦତ୍ତ ହେଲା ।

## ଦୃଷ୍ଟାନ୍ତ ( ୨୦ )

ଦୃଷ୍ଟାନ୍ତ (୧୩)ରେ ଥିବା ରୋଜନାମା ସକାଶେ ଖତିୟାନ ହିସାବ ଲେଖ ।

ଦାୟୀ    ଯନ୍ତ୍ରପାତି ହିସାବ    ଦାତା

| ତାରିଖ | ବିବରଣ | ରୋ: ପୃ: | ପରିମାଣ | ତାରିଖ | ବିବରଣ | ରୋ:ପୃ. | ପରିମାଣ |
|---|---|---|---|---|---|---|---|
| ୧୯୭୨ ମାର୍ଚ୍ଚ ୫ | ମାଧବଜି ଲିଭଜିଙ୍କର ହିସାବ ବାବଦ | | ଟଙ୍କା ୪,୫୦୦ | | | | ଟଙ୍କା |

ଦାୟୀ    ଉପକରଣ ହିସାବ    ଦାତା

| ତାରିଖ | ବିବରଣ | ରୋ: ପୃ: | ପରିମାଣ | ତାରିଖ | ବିବରଣ | ରୋ: ପୃ: | ପରିମାଣ |
|---|---|---|---|---|---|---|---|
| ୧୯୭୨ ମାର୍ଚ୍ଚ ୫ | ମାଧବଜି ଲିଭଜିଙ୍କର ହିସାବ ବାବଦ | | ଟଙ୍କା ୫୦୦ | | | | ଟଙ୍କା |

ଦାୟୀ ମାଧବଙ୍କ ଲଭ୍ୟଙ୍କର ହିସାବ ଦାତା

| ତାରିଖ | ବିବରଣ | ରେ: ପୃ: | ପରିମାଣ | ତାରିଖ | ବିବରଣ | ରେ: ପୃ: | ପରିମାଣ |
|---|---|---|---|---|---|---|---|
| | | | ଟଙ୍କା | ୧୯୬୨ | | | ଟଙ୍କା |
| | | | | ମାର୍ଚ୍ଚ ୫ | ଯନ୍ତ୍ରପାତି ହିସାବ ବାବଦ | | ୪,୫୦୦ |
| | | | | ,, ୫ | ଉପକରଣ ହିସାବ ବାବଦ | | ୫୦୦ |

# ଦୃଷ୍ଟାନ୍ତ (୨୧)

ଦୃଷ୍ଟାନ୍ତ (୧୪) ରେ ଥିବା ରୋଜନାମା ସକାଶେ ଖତିୟାନ ହିସାବ ପ୍ରସ୍ତୁତ କର ।

ଦାୟୀ ମଣିଲାଲ୍ଙ୍କର ହିସାବ ଦାତା

| ତାରିଖ | ବିବରଣ | ରେ: ପୃ: | ପରିମାଣ | ତାରିଖ | ବିବରଣ | ରେ: ପୃ: | ପରିମାଣ |
|---|---|---|---|---|---|---|---|
| ୧୯୬୨ | | | ଟଙ୍କା | | | | ଟଙ୍କା |
| ଜୁନ୍-୨ | ଆସ୍ବାବ୍ପତ୍ର ହିସାବ ବାବଦ | | ୧,୨୦୦ | | | | |
| ,, ୨ | ଉପକରଣ ହିସାବ ବାବଦ | | ୨୦୦ | | | | |

ଦାୟୀ ଆସ୍ବାବ୍ ପତ୍ର ହିସାବ ଦାତା

| ତାରିଖ | ବିବରଣ | ରେ: ପୃ: | ପରିମାଣ | ତାରିଖ | ବିବରଣ | ରେ: ପୃ: | ପରିମାଣ |
|---|---|---|---|---|---|---|---|
| | | | ଟଙ୍କା | ୧୯୬୨ | | | ଟଙ୍କା |
| | | | | ଜୁନ୍-୨ | ମଣିଲାଲ୍ଙ୍କର ହିସାବ ବାବଦ | | ୬୪·୦୦ |

ଦାୟୀ ଉପକରଣ ହିସାବ ଦାତା

| ତାରିଖ | ବିବରଣ | ଖେ: ପୃ: | ପରିମାଣ | ତାରିଖ | ବିବରଣ | ଖେ ପୃ | ପରିମାଣ |
|---|---|---|---|---|---|---|---|
| | | | ଟଙ୍କା | ୧୯୬୨<br>ଜୁନ୍-୨ | ମଣିଲାଲଙ୍କର ହିସାବ ବାବଦ | | ଟଙ୍କା<br>୨୦୦ |

## ପ୍ରଶ୍ନମାଳା (୩)

୧। ଚାଲାଣ ବା ବିଲ୍ କହିଲେ କଣ ବୁଝ । ଏହାର ଏକ ନମୁନା ଦେଖାଅ ।

୨। କ୍ରୟ ବହିର ପ୍ରୟୋଜନୀୟତା କଅଣ ? ଏହା ପରିବର୍ତ୍ତେ ରୋଜନାମା ବ୍ୟବହାର କଲେ କି ଅସୁବିଧା ହେବ ?

୩। କାରବାର ବଟା କାହାକୁ କୁହାଯାଏ । ଏହାଦ୍ୱାରା ବ୍ୟବସାୟୀ କିପରି ଉପକୃତ ହୁଅନ୍ତି ? ଏହା ସହିତ ନଗଦ ବଟାର ପାର୍ଥକ୍ୟ ବ୍ୟାଖ୍ୟା କର ।

୪। ଦେଣା-ଲିପି କାହାକୁ କହନ୍ତି ? ଏହାର ଏକ ନମୁନା ଦେଖାଅ ଓ ଏହାର ପ୍ରୟୋଜନୀୟତା ବର୍ଣ୍ଣନା କର ।

୫। ବିକ୍ରୟ ବହିରେ କ’ଣ ଲିପିବଦ୍ଧ କରାଯାଏ ? ନଗଦ ମୂଲ୍ୟରେ ବିକ୍ରୟ ହୋଇଥିବା ପଣ୍ୟର ବିବରଣୀ ଏହି ବହିରେ ଲିପିବଦ୍ଧ କରାଯାଏ କି ?

୬। ପାଉଣା-ଲିପି କେତେବେଳେ ବ୍ୟବହୃତ ହୁଏ ? ଏହା କ୍ରେତାର ହିସାବ ଉପରେ କି ପ୍ରଭାବ ପକାଏ ?

୭। କ୍ରୟ ଓ ବିକ୍ରୟ ବହିରୁ ଖତିୟାନ ହିସାବ କିପରି ପ୍ରସ୍ତୁତ ହୁଏ ତାହା ବୁଝାଇ ଲେଖ ।

୮। ଅନ୍ତର୍ମୁଖୀ ଓ ବହିର୍ମୁଖୀ ଫେରନ୍ତ ବହି କାହିଁକି ଓ କିପରି ବ୍ୟବହୃତ ହୁଏ ତାହା ବର୍ଣ୍ଣନା କର ।

୯ । ଅନ୍ତର୍ମୁଖୀ ଓ ବହିର୍ମୁଖୀ ଫେରସ୍ତ ବହିରୁ କିପରି ଖତିୟାନ ହିସାବ ପ୍ରସ୍ତୁତ କରାଯାଏ ତାହା ବର୍ଣ୍ଣନା କର ।

୧୦ । ପ୍ରକୃତ ରୋକଡନାମା କିପରି ପରିସ୍ଥିତିରେ ବ୍ୟବହାର କରାଯାଏ ତାହା ବୁଝାଇ ଲେଖ ।

୧୧ । ନିମ୍ନଲିଖିତ ବିବରଣୀରୁ ବାରିପଦାର ମେସର୍ସ ଗୁପ୍ତ ଷ୍ଟୋର୍ସଙ୍କର କ୍ରୟ ଓ ବିକ୍ରୟ ବହି ପ୍ରସ୍ତୁତ କର :

୧୯୭୨

ମାର୍ଚ୍ଚ-୨ କଟକର ଇଷ୍ଟାର୍ଣ୍ଣ ଏଜେନ୍‌ସିଙ୍କଠାରୁ କ୍ରୟ କଲେ :

୧୦୦ ରିମ୍ ଧଳା କାଗଜ, ପ୍ରତି ରିମ୍ ୩୦ ଟଙ୍କା ଦରରେ
୫୦ ରିମ୍ ଛପେଇ କାଗଜ, ପ୍ରତି ରିମ୍ ୩୫ ଟଙ୍କା ଦରରେ
୪୦ ରିମ୍ ମଲ୍‌ଟ କାଗଜ, ପ୍ରତି ରିମ୍ ୧୨ ଟଙ୍କା ଦରରେ
ତାଙ୍କଠାରୁ ୧୦% କାରବାର ବଟା ମିଳିଲା ।

ମାର୍ଚ୍ଚ-୪ କେନ୍ଦୁଝରର ଭେରାଇଟି ଷ୍ଟୋରକୁ ବିକ୍ରୟ କଲେ :

୨୦ ରିମ୍ ଧଳା କାଗଜ, ପ୍ରତି ରିମ୍ ୩୨ ଟଙ୍କା ଦରରେ
୧୦ ରିମ୍ ମଲ୍‌ଟ କାଗଜ, ପ୍ରତି ରିମ୍ ୧୫ ଟଙ୍କା ଦରରେ
୧୦ ଡଜନ ରୁଲ୍ ଟଣା ଖାତା, ପ୍ରତି ଡଜନ ୬ ଟଙ୍କା ଦରରେ

ମାର୍ଚ୍ଚ-୧୦ କଲିକତାର ଷ୍ଟେସନାରୀ ହାଉସ୍‌ଙ୍କଠାରୁ କ୍ରୟ କଲେ :

୧୦୦ ଗ୍ରସ୍ ରୁଲ୍ ଟଣା ଖାତା, ପ୍ରତି ଗ୍ରସ୍ ୩୨ ଟଙ୍କା ଦରରେ
୫ ଡଜନ କୁଆଡ, ପ୍ରତି ଡଜନ ୧୨ ଟଙ୍କା ଦରରେ
୫ ଗ୍ରସ୍ ପେନ୍‌ସିଲ, ପ୍ରତି ଗ୍ରସ୍ ୨୦ ଟଙ୍କା ଦରରେ

ମାର୍ଚ୍ଚ-୧୫ ରାୟରଙ୍ଗପୁରର ଷ୍ଟୁଡେଣ୍ଟ୍‌ସ୍ ଷ୍ଟୋରକୁ ବିକ୍ରୟ କଲେ :

୧୦ ରିମ୍ ଛପେଇ କାଗଜ, ପ୍ରତି ରିମ୍ ୩୮ ଟଙ୍କା ଦରରେ
୧୦ ଗ୍ରସ୍ ରୁଲ୍ ଟଣା ଖାତା, ପ୍ରତି ଗ୍ରସ୍ ୩୪ ଟଙ୍କା ଦରରେ
୪ ଡଜନ କୁଆଡ, ପ୍ରତି ଡଜନ ୧୪ ଟଙ୍କା ଦରରେ
୨ ଗ୍ରସ୍ ପେନ୍‌ସିଲ, ପ୍ରତି ଗ୍ରସ୍ ୨୨ ଟଙ୍କା ଦରରେ
ତାଙ୍କୁ ୫% କାରବାର ବଟା ଦିଆଗଲା ।
ପରିବହନ ଖର୍ଚ୍ଚ ୨୫ ଟଙ୍କା ଦିଆଯାଇଛି ।

୧୯୭୨

ମାର୍ଚ୍ଚ-୨୫ କ୍ୟାଲ୍‌କାଟା ପେନ୍ ଡିପୋଙ୍କଠାରୁ କ୍ରୟ କଲେ :

୧୦ ଗ୍ରସ୍ ଫାଉଣ୍ଟେନ୍, ପ୍ରତି ଗ୍ରସ୍ ୩୨ ଟଙ୍କା ଦରରେ
୬ ଗ୍ରସ୍ ଡଟ୍‌ପେନ୍, ପ୍ରତି ଗ୍ରସ୍ ୨୦୦ ଟଙ୍କା ଦରରେ
୫ ଗ୍ରସ୍ କପିଇଂ ପେନ୍‌ସିଲ, ପ୍ରତି ଗ୍ରସ୍ ୩୦ ଟଙ୍କା ଦରରେ
ତାଙ୍କଠାରୁ ୧୦% କାରବାର ବଟା ମିଳିଲା ।

ମାର୍ଚ୍ଚ-୨୮ ବଡ଼ବିଲ ଷ୍ଟେସନାରିଙ୍କୁ ବିକ୍ରୟ କଲେ :

୨୫ ରିମ୍ ଧଳା କାଗଜ, ପ୍ରତି ରିମ୍ ୩୨ ଟଙ୍କା ଦରରେ
୫ ରିମ୍ ଛପେଇ କାଗଜ, ପ୍ରତି ରିମ୍ ୩୮ ଟଙ୍କା ଦରରେ
୩ ଡଜନ ଦୁଆତ, ପ୍ରତି ଡଜନ ୧୪ ଟଙ୍କା ଦରରେ
୩ ଗ୍ରସ୍ ପେନ୍‌ସିଲ୍, ପ୍ରତି ଗ୍ରସ୍ ୨୨ ଟଙ୍କା ଦରରେ
୧ ଗ୍ରସ୍ କପିଇଂ ପେନ୍‌ସିଲ୍, ପ୍ରତି ଗ୍ରସ୍ ୩୨ ଟଙ୍କା ଦରରେ;
ତାଙ୍କୁ ୧୦% କାରବାର ବଟା ଦିଆଗଲା ।

ପ୍ରତି କ୍ରୟ ଓ ବିକ୍ରୟ ଧାରରେ ହୋଇଥିଲା ।

(ଉତ୍ତର—କ୍ରୟ ବହିର ମୋଟ—୯,୫୭୦ ଟଙ୍କା
ବିକ୍ରୟ ବହିର ମୋଟ—୨,୭୭୧ ଟଙ୍କା);

୧୨ । ନିମ୍ନଲିଖିତ ବିବରଣୀରୁ ବହିର୍ମୁଖୀ ଫେରସ୍ତ ବହି ଲେଖ ।

୧୯୭୨

ଜୁନ୍-୧ କଟକ କାର୍ପେଣ୍ଟାର୍ସଙ୍କୁ ଫେରସ୍ତ ପଠାଗଲା :

୨ଟି ବେତବୁଣା ସାଗୁଆନ କାଠର ସୋଫା, ପ୍ରତି ସୋଫା ୧୫୦ ଟଙ୍କା ଦରରେ, ଆଦେଶ ଅନୁଯାୟୀ ନ ହୋଇଥିବାରୁ ୫% କାରବାର ବଟା ମିଳିଥିଲା ।

ଜୁନ୍-୪ ବାଲେଶ୍ବରର ଦାସ୍‌ବ୍ରଦାର୍ସଙ୍କୁ ଫେରସ୍ତ ଦିଆଗଲା :

୪ ଗୋଟି ବେତବୁଣା ଚୌକି, ପ୍ରତି ଚୌକି ୧୫ ଟଙ୍କା ଦରରେ, ୫ ଗୋଟି ଟେବୁଲ୍, ପ୍ରତି ଟେବୁଲ୍ ୨୦ ଟଙ୍କା ଦରରେ, ନମୁନା ଅନୁଯାୟୀ ନ ହୋଇଥିବାରୁ । କାରବାର ବଟା ୧୦% ଥିଲା ।

୧୯୭୬

ଜୁନ୍-୭ କୃଷ୍ଣଚନ୍ଦ୍ର ମହାରଣା, କଟକଙ୍କୁ ଫେରସ୍ତ ଦିଆଗଲା ;

୮ଟି କାଠ ପଟା ବାଲ୍ ଖଟ, ପ୍ରତି ଖଟ ୬୫ ଟଙ୍କା ଦରରେ । କାରବାର ବଟା ୫% ମିଳିଥିଲା ।

ପିଆଶାଳ ପରିବର୍ତ୍ତେ କସି କାଠର ପଟା ଦିଆଯାଇ ଥିବାରୁ ଫେରସ୍ତ ପଠାଗଲା ।

(ଉତ୍ତର—ବହିର୍ମୁଖୀ ଫେରସ୍ତ ବହିର ମୋଟ ପରିମାଣ—୭୧୯ ଟଙ୍କା)

୧୩ । ନିମ୍ନଲିଖିତ ବିବରଣୀରୁ ମେସର୍ସ ସାହୁ ଏଣ୍ଡ୍ କୋ: ଙ୍କର ଅନ୍ତର୍ମୁଖୀ ଫେରସ୍ତ ବହି ଲେଖ :

ମଇ-୮ ବ୍ରହ୍ମପୁରର ଦାସ୍ ଏଣ୍ଡ ସନସ୍ ଫେରସ୍ତ ପଠାଇଲେ :

୩ ଡଜନ କବାଟ ପର୍ଦ୍ଦା ପ୍ରତି ଡଜନ ୧୪୪ ଟଙ୍କା ଦରରେ—ନକସା ନମୁନା ଅନୁଯାୟୀ ନ ହୋଇ ଥିବାରୁ । କାରବାର ବଟା ୫% ଦିଆଯାଇଥିଲା ।

ମଇ-୧୦ ରାଇରଙ୍ଗପୁରର ମାଝି ଷ୍ଟୋର୍ସ ଫେରସ୍ତ ପଠାଇଲେ ;

୩ ଯୋଡ଼ା ବିଛଣା ଚାଦର (୧-୫×୨-୫ ମିଟର), ପ୍ରତି ଯୋଡ଼ା ୨୭ ଟଙ୍କା ଦରରେ—ରଙ୍ଗ ପକ୍କା ନ ହୋଇଥିବାରୁ । ତାଙ୍କୁ ୫% କାରବାର ବଟା ଦିଆଯାଇଥିଲା ।

ମଇ-୧୫ କେନ୍ଦ୍ରାପଡ଼ାର କମଳାକାନ୍ତ କ୍ଲଥ୍ ଏମ୍ପୋରିଅମ୍ ଫେରସ୍ତ ଦେଲେ :

୪ ଡଜନ ଝରକା ପର୍ଦ୍ଦା, ପ୍ରତି ଡଜନ ୬୦ ଟଙ୍କା ଦରରେ । ତାଙ୍କୁ ୧୦% କାରବାର ବଟା ଦିଆଯାଇଥିଲା । ଆଦେଶ ଅନୁଯାୟୀ ନ ହୋଇ ଥିବାରୁ ।

(ଉତ୍ତର—ଅନ୍ତର୍ମୁଖୀ ଫେରସ୍ତ ବହିର ମୋଟ ପରିମାଣ—ଟ୭୦୦-୫୦ ପଇସା)

୧୪ । (କ) ଆମୂଳକ ହିସାବ ଲିଖନ ପଦ୍ଧତିରେ ରୋଜନାମା କ ଉଦ୍ଦେଶ୍ୟ ସାଧନ କରେ ?

(ଖ) ନିମ୍ନଲିଖିତ ଭୁଲ ସଂଶୋଧନ କରିବା ନିମନ୍ତେ ଆବଶ୍ୟକ ରୋଜନାମା ପ୍ରସ୍ତୁତ କର '

(କ) ଦପ୍ତର ସକାଶେ ନଗଦ ମୂଲ୍ୟରେ କ୍ରୟ କରାଯାଇଥିବା ୨୮୦ ଟଙ୍କା ମୂଲ୍ୟର ଇସ୍ପାତ୍ ଟେବୁଲ କ୍ରୟ ହିସାବରେ ଲିପିବଦ୍ଧ କରାଯାଇଛି ।

(ଖ) କମଳ ଦାସଙ୍କୁ ଧାରରେ ବିକ୍ରୟ କରାଯାଇଥିବା ୧୫୦ ଟଙ୍କାର ପଣ୍ୟ ସକାଶେ ବିମଳ ଦାସ୍‌ଙ୍କର ହିସାବକୁ ଦାୟୀ କରାଯାଇଛି ।

(ଗ) ବ୍ୟବସାୟର କର୍ମଚାରୀ ଶ୍ରୀ ରଞ୍ଜନ ରାଉତଙ୍କୁ ବେତନ ବାବଦ ଦିଆ ଯାଇଥିବା ୧୫୦ ଟଙ୍କା ସକାଶେ ତାଙ୍କର ବ୍ୟକ୍ତିଗତ ହିସାବକୁ ଦାୟୀ କରାଯାଇଛି ।

୧୫ । ନିମ୍ନଲିଖିତ ବିଷୟଗୁଡ଼ିକର ସମାଯୋଜନ ନିମନ୍ତେ ଆବଶ୍ୟକ ରୋଜନାମା ଲେଖ :

(କ) ୧୯୭୨ ସାଲ ଡିସେମ୍ବର ମାସର ବେତନ ବାବଦ ៣୦୦ ଟଙ୍କା ବାକି ଅଛି । ହିସାବ ବର୍ଷ ଡିସେମ୍ବର ୩୧ ତାରିଖରେ ଶେଷ ହୁଏ ।

(ଖ) ସରକାର ଋଣ ପତ୍ରର ସୁଧ ବାବଦ ୧୨୦ ଟଙ୍କା ଅର୍ଜିତ ହୋଇଥିଲେ ମଧ୍ୟ ହିସାବ ବର୍ଷର ଶେଷ ସୁଦ୍ଧା ମିଳିନାହିଁ ।

(ଗ) ଯନ୍ତ୍ରର ମୂଲ୍ୟ ହ୍ରାସ ବାବଦ ଶତକଡ଼ା ୨୫ ବାଦ୍ ଦିଆଯିବ, ଯନ୍ତ୍ର ହିସାବରେ ବାକି ୧୦,୦୦୦ ଟଙ୍କା ।

(ଘ) ହିସାବ ବର୍ଷର ଶେଷ ସୁଦ୍ଧା ମଜୁରି ବାବଦ ୨୫ ଟଙ୍କା ବାକି ଅଛି ।

## ଚତୁର୍ଥ ପରିଚ୍ଛେଦ

### ବାକୀ ମେଲ ବା ଟେଓ୍ୟା ମେଲ :

ପ୍ରଥମ ପରିଚ୍ଛେଦରେ କୁହାଯାଇଛି ଯେ କୌଣସି ବ୍ୟବସାୟରେ ଘଟୁଥିବା ଯାବତୀୟ ନେଣଦେଣକୁ ହିସାବଭୁକ୍ତ କରିବା ନିମନ୍ତେ ରୋଜନାମା ପ୍ରସ୍ତୁତ କରାଯିବ । ରୋଜନାମା ପ୍ରସ୍ତୁତ କରିବା ସକାଶେ ନେଣଦେଣରେ ସଂପୃକ୍ତ ଦୁଇଟି ହିସାବ ମଧ୍ୟରୁ ଗୋଟିଏ ହିସାବକୁ ଦାୟୀ ଓ ଅନ୍ୟ ହିସାବକୁ ଦାତା କରାଯିବ ; ଯେହେତୁ ରୋଜନାମାରୁ ବ୍ୟବସାୟୀ ଆବଶ୍ୟକ ଯାବତୀୟ ସମ୍ବାଦ କୌଣସି ଗୋଟିଏ ପୃଷ୍ଠାରୁ ପାଇପାରନ୍ତି ନାହିଁ, ତେଣୁ ରୋଜନାମାରୁ ଖତିୟାନ ହିସାବ ପ୍ରସ୍ତୁତ କରାଯାଏ । କହିବାକୁ ଗଲେ ଖତିୟାନ ହିଁ ଯେ କୌଣସି ବ୍ୟବସାୟର ପ୍ରଧାନ ହିସାବ ବହି, ଯହିଁରୁ ବ୍ୟବସାୟ ସମ୍ପର୍କୀୟ ଯାବତୀୟ ବିବରଣୀ ଲାଭ କରାଯାଏ । ପ୍ରତି ନେଣଦେଣ ସକାଶେ ଖତିୟାନରେ ଲେଖା ଯାଇଥିବା ଗୋଟିଏ ହିସାବକୁ ଦାୟୀ ଓ ଅନ୍ୟ ଗୋଟିଏ ହିସାବକୁ ଦାତା କରାଯିବ ।

ଦ୍ୱିତୀୟ ଓ ତୃତୀୟ ପରିଚ୍ଛେଦରେ ଆଲୋଚିତ ହୋଇଛି ଯେ ଯେହେତୁ ପ୍ରତି ନେଣଦେଣ ନିମନ୍ତେ ରୋଜନାମା ଲେଖିବା ବହୁ ସମୟ ଓ ଶ୍ରମସାପେକ୍ଷ ତେଣୁ ଅଧିକାଂଶ ନେଣଦେଣକୁ ରୋଜନାମା ପରିବର୍ତ୍ତେ କେତେଗୁଡ଼ିଏ ପ୍ରାଥମିକ ହିସାବ ବହିରେ ଲିପିବଦ୍ଧ କରାଯିବ । ଯେଉଁ କେତୋଟି ନେଣଦେଣ ପ୍ରାଥମିକ ବହିରେ ଲିପିବଦ୍ଧ କରାଯାଇ ପାରେ ନାହିଁ, ଅର୍ଥାତ୍ ଯେଉଁ ଶ୍ରେଣୀର ନେଣଦେଣ ସକାଶେ ସ୍ୱତନ୍ତ୍ର ପ୍ରାଥମିକ ବହିର ବ୍ୟବସ୍ଥା ନାହିଁ ସେଗୁଡ଼ିକ 'ପ୍ରକୃତ' ରୋଜନାମାରେ ଲିପିବଦ୍ଧ କରାଯିବ । ରୋଜନାମାରୁ ନେଣଦେଣଗୁଡ଼ିକ ଯେପରି ଖତିୟାନ ହିସାବକୁ ନିଆଯାଏ ଠିକ୍ ସେହିଭଳି ପ୍ରାଥମିକ ବହିର ମୋଟ ପରିମାଣ ମଧ୍ୟ ଖତିୟାନ ହିସାବକୁ ନିଆଯିବ । ଅର୍ଥାତ୍ ଏହି ପ୍ରଣାଳୀ ଅନୁଯାୟୀ ମଧ୍ୟ ପ୍ରତି ନେଣଦେଣ ସକାଶେ ଖତିୟାନର ଗୋଟିଏ ହିସାବ ଦାୟୀ ଓ ଅନ୍ୟ ଗୋଟିଏ ହିସାବ ଦାତା ହେବ । ଏପରି କରାଗଲେ ଦ୍ୱିଲିଖନ ହିସାବ ପଦ୍ଧତିର ନୀତି ପାଳିତ ହେବ ।

ପୂର୍ବରୁ ଆଲୋଚିତ ହୋଇଛି ଯେ ନେଣଦେଣଗୁଡ଼ିକୁ କେବଳ ଖତିୟାନ ହିସାବରେ ଅନ୍ତର୍ଭୁକ୍ତ କଲେ କିଛି ଲାଭ ହୁଏ ନାହିଁ, କାରଣ ଯେଉଁ ଉଦ୍ଦେଶ୍ୟରେ ଖତିୟାନ ପ୍ରସ୍ତୁତ କରାଯାଇଛି ତାହା ସାଧିତ ହୁଏ ନାହିଁ । ଆବଶ୍ୟକ ସମ୍ବାଦ ଯୋଗାଇବା ସକାଶେ ଖତିୟାନ ହିସାବର କାଳାନ୍ତିକ ସମତୁଳନ ଆବଶ୍ୟକ । ତେଣୁ ଦୈନିକ ବା ସାପ୍ତାହିକ ବା ମାସିକ ବା ବାର୍ଷିକ ସମତୁଳନ କରି ପ୍ରତି ହିସାବର ବାକି ବା ବଳକା ନିର୍ଣ୍ଣୟ କରାଯାଏ । ବାକି ନିର୍ଣ୍ଣିତ ହେଲା ପରେ ଆବଶ୍ୟକ ସମସ୍ତ ସମ୍ବାଦ ଖତିୟାନ ହିସାବରୁ ମିଳି ପାରିବ ।

ଯେହେତୁ ପ୍ରତି ନେଣଦେଣର ଟଙ୍କାର ଅଙ୍କକୁ ଖତିୟାନର ଗୋଟିଏ ହିସାବର ଦାୟୀ ପାର୍ଶ୍ୱରେ ଓ ଅପର ଏକ ହିସାବର ଦାତା ପାର୍ଶ୍ୱରେ ଲେଖାଯାଇଛି; ତେଣୁ ଯେ କୌଣସି ସମୟରେ ଯଦି ସମସ୍ତ ହିସାବର ଦାୟୀ ପାର୍ଶ୍ୱର ମୋଟ ପରିମାଣ ସହିତ ଦାତା ପାର୍ଶ୍ୱର ମୋଟ ପରିମାଣକୁ ତୁଳନା କରାଯାଏ ତାହେଲେ ଦେଖାଯିବ ଯେ ଉଭୟ ପାର୍ଶ୍ୱର ମୋଟ ପରିମାଣ ସମାନ । ସେହିପରି ଯେତେ ଦାୟୀ ବାକି ଅଛି ତାହାର ଅଙ୍କଗୁଡ଼ିକୁ ଏକତ୍ର ଯୋଗ କଲେ ଯୋଗଫଳ ଯାହା ହେବ ତାହା ସମସ୍ତ ଦାତା ବାକି ଅଙ୍କର ଯୋଗଫଳ ସହିତ ସମାନ ହେବ । ପୂର୍ବରୁ କୁହାଯାଇଛି ଯେ ଦ୍ୱିଲିଖନ ହିସାବ ପଦ୍ଧତି ଅନୁଯାୟୀ ହିସାବ ଲେଖାଗଲେ ଯେ କୌଣସି ନିର୍ଦ୍ଦିଷ୍ଟ ଦିବସରେ ସମସ୍ତ ଦାୟୀ ବାକିର ସମଷ୍ଟି ସମସ୍ତ ଦାତା ବାକିର ସମଷ୍ଟି ସହିତ ସମାନ ହେବ । ଯଦି ଦୁଇଟିର ସମଷ୍ଟି ସମାନ ହୁଏ ତାହେଲେ ସାଧାରଣତଃ ବୁଝାଯିବ ଯେ ରୋଜନାମା ଲେଖିବାରେ କିମ୍ବା ପ୍ରାଥମିକ ହିସାବ ବହିର ଟଙ୍କାର ଅଙ୍କଗୁଡ଼ିକୁ ଖତିୟାନ ହିସାବକୁ ସ୍ଥାନାନ୍ତର କରିବାରେ କୌଣସି ଲେଖାଗତ ଭୁଲ ହୋଇ ନାହିଁ । ପ୍ରକୃତ ପକ୍ଷେ ଦ୍ୱିଲିଖନ ହିସାବ ପଦ୍ଧତିର ଏହା ଏକ ଉପକାରିତା ।

ବାସ୍ତବିକ ସମସ୍ତ ଦାୟୀ ବାକିର ସମଷ୍ଟି ସହିତ ସମସ୍ତ ଦାତା ବାକିର ସମଷ୍ଟି ମିଶୁଛି କି ନାହିଁ ତାହା ପରୀକ୍ଷା କରି ଦେଖିବା ନିମନ୍ତେ ଗୋଟିଏ ସ୍ୱତନ୍ତ୍ର କାଗଜରେ ପ୍ରତି ହିସାବର ଦାୟୀ ଓ ଦାତା ବାକିକୁ ପୃଥକ୍ ଭାବରେ ଲେଖି ଗୋଟିଏ ବିବରଣୀ ପ୍ରସ୍ତୁତ କରାଯାଏ ଓ ଅଙ୍କଗୁଡ଼ିକ ପୃଥକ୍ ଭାବରେ ଯୋଗ କରି ଉଭୟର ଯୋଗଫଳ ସମାନ ହେଲା କି ନାହିଁ ତାହା ଦେଖାଯାଏ । ଏହି ବିବରଣୀକୁ ବାକି ମେଳ ବା ରେଓ୍ୟା ମେଳ କୁହାଯାଏ ।

ବାକି ମେଳ ଖତିୟାନ ବହିରେ ଲେଖାଯାଏ ନାହିଁ କିମ୍ବା ଏହା କୌଣସି ଖତିୟାନ ହିସାବର ଅଙ୍ଗ ନୁହେଁ । ଏହା ଏକ ବିବରଣୀ ମାତ୍ର ଏବଂ ଏହା ସାଧାରଣତଃ ମାସିକ ଅଥବା ଷାଣ୍ମାସିକ ଅଥବା ବାର୍ଷିକ ପ୍ରସ୍ତୁତ କରାଯାଏ । ପୂର୍ବରୁ କୁହାଯାଇଛି ଯେ ଗାଣିତିକ ଶୁଦ୍ଧତା ପ୍ରମାଣ କରିବା ଉଦ୍ଦେଶ୍ୟରେ ଏହା ପ୍ରସ୍ତୁତ କରାଯାଏ ।

## ବାକୀ ମେଳ କିପରି ପ୍ରସ୍ତୁତ କରାଯାଏ :

ବାକୀ ମେଳ କିପରି ପ୍ରସ୍ତୁତ କରାଯାଏ ତାହା ନିମ୍ନରେ ଆଲୋଚିତ ହେଲା । ଏହା ତିନି ପ୍ରକାରରେ ପ୍ରସ୍ତୁତ ହୋଇପାରେ ।

(୧) ମୋଟ ଅଙ୍କର ବାକୀ ମେଳ । ଏହି ପ୍ରଣାଳୀ ଅନୁଯାୟୀ ପ୍ରତି ଖତିୟାନ ହିସାବର ମୋଟ ପରିମାଣ (ସମତୁଳନ କରିବା ପୂର୍ବରୁ), ଅର୍ଥାତ୍ ଦାୟୀ ପାର୍ଶ୍ୱର ମୋଟ ଅଙ୍କ ଓ ଦାତା ପାର୍ଶ୍ୱର ମୋଟ ଅଙ୍କ ପୃଥକ୍ ଭାବରେ ଲେଖାଯାଏ । ଏହାର ଏକ ନମୁନା ନିମ୍ନରେ ପ୍ରଦତ୍ତ ହେଲା ।

୧୯୬୨ ସାଲ ଡିସେମ୍ବର ୩୧ ତାରିଖର ବାକୀ ମେଳ ।

| ବିବରଣ | ଖ:ପୃ: | ଦାୟୀ | ଦାତା |
|---|---|---|---|
| | | ଟଙ୍କା | ଟଙ୍କା |
| ନରହରିଙ୍କର ମୂଳଧନ ହିସାବ— — | ୧ | ୩୦୦ | ୩,୦୦୦ |
| କେଶବ ସାହୁଙ୍କର ହିସାବ — — | ୨ | ୨,୨୦୦ | ୫୦୦ |
| ବେତନ ହିସାବ— — — | ୩ | ୧,୬୦୦ | |
| ବିକ୍ରୟ ହିସାବ— — — | ୪ | | ୧,୫୪୦ |
| ନଗଦ ତହବିଲ — — — | ରୋ: ବ: | ୧,୭୨୮ | ୭୮୮ |
| | | ୫,୮୨୮ | ୫,୮୨୮ |

## (୨) ବାକୀ ମେଳ :

ଏହି ପ୍ରଣାଳୀ ଅନୁଯାୟୀ ପ୍ରତି ଖତିୟାନ ହିସାବର କେବଳ ବାକୀଗୁଡ଼ିକ (ସମତୁଳନ ପରେ) ଏହି ବିବରଣୀକୁ ଅଣାଯାଏ । ଦାୟୀ ବାକୀ ଦାୟୀ କକ୍ଷରେ ଓ ଦାତା ବାକୀ ଦାତା କକ୍ଷରେ ଲେଖାଯାଇ ଉଭୟ କକ୍ଷର ଅଙ୍କ ଗୁଡ଼ିକ ଯୋଗ କରାଯାଏ । ଏହାର ଏକ ନମୁନା ନିମ୍ନରେ ପ୍ରଦତ୍ତ ହେଲା ।

୧୯୭୨ ସାଲ ଡିସେମ୍ବର ୩୧ ତାରିଖର ବାକୀ ମେଳ

| ବିବରଣ | ଖ: ପୃ: | ଦାୟୀ | ଦାତା |
|---|---|---|---|
| | | ଟଙ୍କା | ଟଙ୍କା |
| ନରହରିଙ୍କର ମୂଳଧନ ହିସାବ .. | ୧ | ....... | ୨,୭୦୦ |
| କେଶବ ସାହୁଙ୍କର ହିସାବ ... ... .... | ୨ | ୧,୭୦୦ | ...... |
| ବେତନ ହିସାବ ... ... ... ... ... | ୩ | ୧,୬୦୦ | |
| ବିକ୍ରୟ ହିସାବ .... .... .... ... .... | ୪ | | ୧,୫୪୦ |
| ନଗଦ ତହବିଲ .... ... .... .... .... | ରୋ: ବ: | ୯୪୦ | |
| | | ୪,୨୪୦ | ୪,୨୪୦ |

## (୩) ମୋଟ ଅଙ୍କ ଓ ବାକୀ ଯୁକ୍ତ ବାକୀ ମେଳ :

ଏହି ପ୍ରଣାଳୀ ଅନୁଯାୟୀ ପ୍ରତି ଖତିୟାନ ହିସାବର ଉଭୟ ମୋଟ ଅଙ୍କ ଓ ବାକି ଅଙ୍କ ବିବରଣୀକୁ ଅଣାଯାଇ ପ୍ରତି କକ୍ଷର ଅଙ୍କକୁ ଯୋଗ କରାଯାଏ । ଏହା ନୂତନ କୌଣସି ପ୍ରଣାଳୀ ନୁହେଁ । ଏହା ପ୍ରଥମ ଓ ଦ୍ୱିତୀୟ ପ୍ରଣାଳୀର ସଂମିଶ୍ରଣ । ଏହାର ଏକ ନମୁନା ନିମ୍ନରେ ପ୍ରଦତ୍ତ ହେଲା ।

୧୯୬୨ ସାଲ୍ ଡିସେମ୍ବର ୩୧ ତାରିଖର ବାକି ମେଳ

| ବିବରଣ | ଖ:ପୃ: | ମୋଟ ଅଙ୍କ | | | |
|---|---|---|---|---|---|
| | | ଦାୟୀ | ଦାତା | ଦାୟୀ | ଦାତା |
| | | ଟଙ୍କା | ଟଙ୍କା | ଟଙ୍କା | ଟଙ୍କା |
| ନରହରିଙ୍କର ମୂଳଧନ ହିସାବ .. ... | ୧ | ୩୦୦ | ୩,୦୦୦ | ... ... | ୨,୭୦୦ |
| କେଶବ ସାହୁଙ୍କର ହିସାବ ... .... | ୨ | ୨,୨୦୦ | ୫୦୦ | ୧,୭୦୦ | ........ |
| ବେତନ ହିସାବ ... ... | ୩ | ୧,୬୦୦ | ....... | ୧,୫୦୦ | ... ... |
| ବିକ୍ରୟ ହିସାବ ... | ୪ | ...... | ୧,୫୪୦ | ... ... | ୧,୫୪୦ |
| ନଗଦ ତହବିଲ ... | ରୋ:ବ | ୧,୭୨୮ | ୭୮୮ | ୯୪୦ | ..... |
| | | ୫,୮୨୮ | ୫,୮୨୮ | ୪,୨୪୦ | ୪,୨୪୦ |

ଏହି ତିନଗୋଟି ପ୍ରଣାଳୀ ମଧ୍ୟରୁ ଆଧୁନିକ ବ୍ୟବସାୟମାନଙ୍କରେ କେବଳ ଦ୍ୱିତୀୟ ପ୍ରଣାଳୀଟି ପ୍ରଚଳିତ ହୁଏ । ପ୍ରଥମ ପ୍ରଣାଳୀଟି ବ୍ୟବହୃତ ନ ହେବାର କାରଣ ହେଲା ଏହି ଯେ ସାଧାରଣତଃ ଖତିୟାନ ହିସାବ ଗୁଡ଼ିକର ସମତୁଲନ କରାଯାଇ ବାକି ନିର୍ଣ୍ଣୀତ ହେଲା

ପରେ ବାକୀ ମେଳ ବିବରଣୀ ପ୍ରସ୍ତୁତ ହୋଇଥିବାରୁ ପୁଣି ହିସାବଗୁଡ଼ିକର ଉଭୟ ପାର୍ଶ୍ୱର ମୋଟ ଅଙ୍କ ଗଣନା କରିବା ସମସ୍ତ ସାପେକ୍ଷ ଓ ଅନାବଶ୍ୟକ ମଧ୍ୟ । ଉକ୍ତ ସମସ୍ତ ପ୍ରଣାଳୀ ବ୍ୟବହାର କରିବାରେ ଅଧିକା କୌଣସି ତଥ୍ୟ ମିଳେ ନାହିଁ ତେଣୁ ଅଯଥା ପରିଶ୍ରମ କରି ଏତେଗୁଡ଼ିଏ ଅଙ୍କ ଲେଖିବା ଅନାବଶ୍ୟକ ।

## କେଉଁ ପ୍ରକାର ଭୁଲ ବାକୀ ମେଳ ଦ୍ୱାରା ଧରା ପଡ଼େ :

ପୂର୍ବରୁ କୁହାଯାଇଛି ଯେ ଲେଖାଗତ କୌଣସି ଭୁଲ ନ ଥିଲେ ବାକୀ ମେଳର ଦାୟୀ ପାର୍ଶ୍ୱର ମୋଟ ଅଙ୍କ ସହିତ ଦାତା ପାର୍ଶ୍ୱର ମୋଟ ଅଙ୍କ ମିଶିଯିବ ଅର୍ଥାତ୍ ସମାନ ହେବ । ଅନେକ ସମୟରେ କିନ୍ତୁ ଦେଖାଯାଏ ଯେ ଦୁଇ ପାର୍ଶ୍ୱର ଅଙ୍କର ସମଷ୍ଟି ବିଭିନ୍ନ ହୋଇଛି । ଏଥିରୁ ବୁଝାଯିବ ଯେ କୌଣସି ଲେଖାଗତ ତ୍ରୁଟି ରହିଛି । କେତେ ପ୍ରକାର ଭୁଲ ବାକୀ ମେଳରୁ ଧରା ପଡ଼େ, ଅର୍ଥାତ୍ ଯେଉଁ ପ୍ରକାର ଭୁଲ ଥିଲେ ବାକୀ ମେଳରେ ଅମେଳ ଘଟେ ତାହା ନିମ୍ନରେ ଆଲୋଚିତ ହେଲା ।

(୧) ଖତିୟାନରୁ ବିଭିନ୍ନ ହିସାବର ବାକୀ, ବାକୀ ମେଳର ବିବରଣୀକୁ ଆଣିବାରେ ଭୁଲ । ଖତିୟାନରୁ ହିସାବର ବାକୀ ବିବରଣୀକୁ ଆଣିବାବେଳେ ଦାୟୀ ବାକୀକୁ ଦାତା କକ୍ଷରେ କିମ୍ବା ଦାତା ବାକୀକୁ ଦାୟୀ କକ୍ଷରେ ଯଦି ଭୁଲ କ୍ରମେ ଲେଖ ଯାଇ ଥାଏ ତାହେଲେ ତାହା ବାକୀ ମେଳରେ ଅମେଳ ଘଟାଇବା ସୁନିଶ୍ଚିତ । ଏହିପରି ସ୍ଥାନାନ୍ତରବେଳେ ବାକୀର ଅଙ୍କ ମଧ୍ୟ ଭୁଲ ହୋଇପାରେ, ଯେପରି ୭୮୦ ଅଙ୍କ ସ୍ଥଳରେ ୮୭୦ ଅଙ୍କ ଭୁଲରେ ବିବରଣୀକୁ ଅଣାଯାଇ ପାରିଥାଏ ।

ଏପରି ଭୁଲ ହୋଇଥିଲେ ତାହା ସହଜରେ ଜାଣି ହେବ । ଏହା ଜାଣିବା ନିମନ୍ତେ ଖତିୟାନର ପ୍ରତି ହିସାବର ବାକୀ ସହିତ ବାକୀ ମେଳର ବିବରଣୀରେ ଅନ୍ତର୍ଭୁକ୍ତ ବାକୀର ଅଙ୍କଗୁଡ଼ିକୁ ଥରେ କିମ୍ବା ଦୁଇଥର ମିଶାଇଲେ ଏହିପରି ଭୁଲ ଜଣାପଡ଼େ ।

(୨) ପ୍ରାଥମିକ ବହିରୁ ଖତିୟାନ ହିସାବକୁ ଅଙ୍କ ନେଲାବେଳେ ଭୁଲ । ଅନେକ ସମୟରେ ପ୍ରାଥମିକ ବହିରୁ ଅଙ୍କଗୁଡ଼ିକ ଖତିୟାନ ହିସାବକୁ ଆଣିଲାବେଳେ ତହିଁରେ ଭୁଲ ଥାଇପାରେ । ପ୍ରାଥମିକ ବହିର ଯୋଗଫଳରେ ଭୁଲ ଥାଇ ପାରେ । ଯଦି ସେପରି ଭୁଲ ହୋଇଥାଏ ତାହେଲେ ଖତିୟାନ ହିସାବରେ ମଧ୍ୟ ସେହି ଭୁଲ ରହିବ । ଅନେକ ସମୟରେ ସେକେଡ଼ ବହିର ଗୋଟିଏ ପାର୍ଶ୍ୱରେ ଲେଖାଯାଇଥିବା ଅଙ୍କ ଖତିୟାନର କୌଣସି ହିସାବରେ ଲିପିବଦ୍ଧ ନ ହୋଇ

ପାଇଥାଏ । ଉଦାହରଣ—ହରିଠାରୁ ପାଇଥିବା ୧୨୦ ଟଙ୍କା ରୋକଡ଼ ବହିର ଦାୟୀ ପାର୍ଶ୍ୱରେ ଲିପିବଦ୍ଧ କରାଯାଇଛି; ମାତ୍ର ଖତିୟାନରେ ହରିଙ୍କର ହିସାବକୁ ଦାତା କରାଯାଇ ନାହିଁ; କିମ୍ବା କେବଳ ୨୦ ଟଙ୍କା ସକାଶେ ଦାତା କରାଯାଇଛି, କିମ୍ବା ୧୨୦ ଟଙ୍କା ସକାଶେ ତାଙ୍କ ହିସାବକୁ ଦାତା ନ କରି ଦାୟୀ କରାଯାଇଛି ।

ଏପରି ଭୁଲ ଠିକ୍ କେଉଁ ହିସାବରେ ହୋଇଛି ତାହା ନିରୂପଣ କରିବା ଅପେକ୍ଷାକୃତ କଠିନ । ତଥାପି ପ୍ରାଥମିକ ହିସାବ ବହି ଓ ବିଶେଷତଃ ରୋକଡ଼ ବହିକୁ ଭଲ ଭାବରେ ପରୀକ୍ଷା କଲେ ଓ ଏଥିରେ ଲେଖାଥିବା ପ୍ରତି ବିଷୟ ଖତିୟାନ ହିସାବକୁ ସଠିକ ଭାବରେ ନିଆଯାଇଛି କି ନାହିଁ ତାହା ଉତ୍ତମରୂପେ ପରୀକ୍ଷା କଲେ ଏପରି ଭୁଲ ଧରା ପଡ଼େ ।

(ଙ) ଯୋଗ ବିୟୋଗର ଭୁଲ । ଏହି ପ୍ରକାର ଭୁଲ ପ୍ରାଥମିକ ହିସାବ ବହି ଯୋଗ କରିବା ସମୟରେ, ଅଥବା—ଖତିୟାନ ହିସାବରେ ବିଭିନ୍ନ ଅଙ୍କ ଯୋଗ କରିବାରେ ଅଥବା ଖତିୟାନ ହିସାବର ବାକୀ ନିର୍ଣ୍ଣୟ କରିବା ସମୟରେ ଅଥବା ବାକୀ ମେଳର ବିଭିନ୍ନ ଅଙ୍କକୁ ଯୋଗ କରିବା ସମୟରେ ଘଟିପାରେ । ତେଣୁ ବାକୀ ମେଳର ଦୁଇ ପାର୍ଶ୍ୱର ସମଷ୍ଟି ସମାନ ନ ହେଲେ ସର୍ବପ୍ରଥମେ ଏହାର ଯୋଗ ପ୍ରଣାଳୀକୁ ପୁନଶ୍ଚ ପରୀକ୍ଷା କରାଯାଏ ।

ପୂର୍ବୋକ୍ତ ନିର୍ଦ୍ଦେଶ ଅନୁଯାୟୀ ପ୍ରତି ପ୍ରାଥମିକ ହିସାବ ବହିର ପ୍ରତି ଲେଖା ଓ ଏହାର ଯୋଗଫଳ, ଖତିୟାନର ପ୍ରତି ହିସାବର ପ୍ରତ୍ୟେକ ଲେଖା, ଏହାର ଯୋଗଫଳ, ବାକୀ ନିର୍ଣ୍ଣୟ ଓ ବାକୀ ମେଳର ପ୍ରତି ବିଷୟ ଓ ଏହାର ଯୋଗଫଳ ଉତ୍ତମରୂପେ ପରୀକ୍ଷା କଲେ ଏହି ପ୍ରକାର ଭୁଲ ନିଶ୍ଚୟ ଧରା ପଡ଼ିବ, ମାତ୍ର ଦୁର୍ଭାଗ୍ୟବଶତଃ ଏ ସମସ୍ତ ପ୍ରକ୍ରିୟା ସମ୍ପାଦନ କଲା ପରେ ମଧ୍ୟ ଯଦି ଭୁଲ ଧରା ନ ପଡ଼େ ତାହେଲେ ଭୁଲର ପରିମାଣ ବା ଅଙ୍କକୁ 'ଅନିଶ୍ଚିତ ହିସାବ' ନାମକ ଏକ ହିସାବ କିମ୍ବା 'ହିସାବର ବ୍ୟବଧାନ' ନାମକ ହିସାବ ଖୋଲି ତହିଁରେ ଲିପିବଦ୍ଧ କରାଯିବ । ଉଦାହରଣ ସ୍ୱରୂପ, ମନେକର ଯେ ବାକୀ ମେଳର ଦାୟୀ କକ୍ଷର ମୋଟ ପରିମାଣ ୧୨,୫୦୦ ଟଙ୍କା ଓ ଦାତା କକ୍ଷର ମୋଟ ପରିମାଣ ୧୨,୩୦୦ ଟଙ୍କା ହୋଇଛି । ଏପରି କ୍ଷେତ୍ରରେ ଦାତା କକ୍ଷରେ ନିଅଣ୍ଟ ପଡ଼ୁଥିବା ୨୦୦ ଟଙ୍କା ଅନିଶ୍ଚିତ ହିସାବର ଦାତା ପାର୍ଶ୍ୱରେ ଲେଖାଯାଇ ସେହି ଦାତା ବାକୀକୁ ବାକୀ ମେଳର ଦାତା ପାର୍ଶ୍ୱକୁ ଅଣାଯିବ । ଯଦି ଦାତା ପାର୍ଶ୍ୱର ମୋଟ ପରିମାଣ ଅଧିକ ଓ ଦାୟୀ ପାର୍ଶ୍ୱର ମୋଟ ପରିମାଣ ଊଣା ହୋଇଥାଏ ତାହେଲେ ଦାୟୀ ପାର୍ଶ୍ୱର ନିଅଣ୍ଟ ପରିମାଣ ଅନିଶ୍ଚିତ ହିସାବର ଦାୟୀ ପାର୍ଶ୍ୱରେ

ଲେଖାଯାଇ ସେହି ହିସାବର ଦାୟୀ ବାକିକୁ ବାକି ମେଳକୁ ଅଣାଯିବ । ଏପରି କଲେ ଆପାତତଃ ବାକି ମେଳର ଉଭୟ କକ୍ଷର ସମଷ୍ଟି ସମାନ ହେବ ; କିନ୍ତୁ ସର୍ବଦା ମନେରଖିବାକୁ ପଡ଼ିବ ଯେ ଏହା ଏକ ସ୍ୱଳ୍ପକାଳୀନ ବ୍ୟବସ୍ଥା ଏବଂ ଯେତେ ଶୀଘ୍ର ସମ୍ଭବ ଭୁଲ ନିରୂପଣ କରି ଅନିଶ୍ଚିତ ହିସାବକୁ ବନ୍ଦ କରିବାକୁ ପଡ଼ିବ । ଯେତେବେଳେ ଭୁଲ ନିରୂପିତ ହେବ ସେତେବେଳେ ପ୍ରକୃତ ରୋଜନାମା ସାହାଯ୍ୟରେ ଅନିଶ୍ଚିତ ହିସାବର ବାକିକୁ ଶୂନ୍ୟରେ ପରିଣତ କରିବାକୁ ହେବ ।

ଯଦି ବାର୍ଷିକ ହିସାବ ପ୍ରସ୍ତୁତ କରିବା ପର୍ଯ୍ୟନ୍ତ ଅନିଶ୍ଚିତ ହିସାବରେ କୌଣସି ବାକି ରହିଥାଏ ତାହେଲେ ସେହି ବାକିର ପରିମାଣ ସାମାନ୍ୟ ହେଲେ ତାହା ନିଟ୍ ଲାଭ ଓ କ୍ଷତି ହିସାବକୁ ଓ ଗୁରୁତ୍ୱପୂର୍ଣ୍ଣ ହେଲେ ଉଦ୍‌ବୃତ୍ତ ପତ୍ରକୁ ନିଆଯିବ । ଅନିଶ୍ଚିତ ହିସାବର ବାକି ଦାୟୀ ହେଲେ ତାହା ନିଟ୍ ଲାଭ ଓ କ୍ଷତି ହିସାବର ଦାୟୀ ପାର୍ଶ୍ୱକୁ କିମ୍ବା ଉଦ୍‌ବୃତ୍ତ ପତ୍ରର ପରିସମ୍ପତ୍ତି ପାର୍ଶ୍ୱକୁ ଓ ବାକି ଦାତା ହେଲେ ତାହା ନିଟ୍ ଲାଭ ଓ କ୍ଷତି ହିସାବର ଦାତା ପାର୍ଶ୍ୱକୁ କିମ୍ବା ଉଦ୍‌ବୃତ୍ତ ପତ୍ରର ଦେଣା ଓ ମୂଳଧନ ପାର୍ଶ୍ୱକୁ ନିଆଯିବ ।

## ଯେଉଁ ପ୍ରକାର ଭୁଲ ବାକୀ ମେଳ ଦ୍ୱାରା ଧରା ପଡ଼େ ନାହିଁ :

ବାକି ମେଳ ସକାଶେ ପ୍ରସ୍ତୁତ କରାଯାଇଥିବା ବିବରଣୀର ଦାୟୀ କକ୍ଷର ଯୋଗ-ଫଳ ଦାତା କକ୍ଷର ଯୋଗଫଳ ସହିତ ମିଳିଗଲେ ସାଧାରଣତଃ ଅନୁମାନ କରାଯାଏ ଯେ ପ୍ରାଥମିକ ବହି ଓ ଖତିୟାନ ହିସାବ ପ୍ରସ୍ତୁତ କରିବାରେ କୌଣସି ଲେଖାଗତ ଭୁଲ ହୋଇନାହିଁ, କାରଣ ଯଦି କୌଣସି ଭୁଲ ଥାଆନ୍ତା ତାହେଲେ ବାକି ମେଳ ବିବରଣୀର ଉଭୟ କକ୍ଷର ସମଷ୍ଟିରେ ବ୍ୟବଧାନ ରହନ୍ତା । ମାତ୍ର ଏପରି ଅନୁମାନ ସର୍ବଦା ଯଥାର୍ଥ ନୁହେଁ, କାରଣ ଏପରି କେତେକ ଶ୍ରେଣୀର ତ୍ରୁଟି ସଂଘଟିତ ହୋଇପାରେ ଯାହା ବାକି ମେଳରେ କୌଣସି ବାଧା ସୃଷ୍ଟି କରିବ ନାହିଁ । ଏହିପରି ତ୍ରୁଟି ପାଞ୍ଚଗୋଟି ଶ୍ରେଣୀରେ ବିଭକ୍ତ । ଯେଗୁଡ଼ିକ ନିମ୍ନରେ ଆଲୋଚିତ ହେଲା ।

### (୧) ବର୍ଜନମୂଳକ ତ୍ରୁଟି :

ଅନେକ ସମୟରେ କୌଣସି ଗୋଟିଏ ନେଣଦେଣ କୌଣସି ପ୍ରାଥମିକ ବହି କିମ୍ବା ରୋଜନାମାରେ ଆଦୌ ଲିପିବଦ୍ଧ ହୋଇ ନ ଥାଏ । ସୁତରାଂ ଏହି ନେଣଦେଣଟି ଖତିୟାନର କୌଣସି ହିସାବରେ ଅନ୍ତର୍ଭୁକ୍ତ ହେବ ନାହିଁ ଓ ଫଳତଃ ବାକି ମେଳ ବିବରଣୀର ଉଭୟ କକ୍ଷରେ ଏହି ନେଣଦେଣ ବାବଦ ଅଙ୍କ ଅପ୍ରକାଶିତ ରହିବ । ଏପରି କ୍ଷେତ୍ରରେ ବାକି ମେଳ ବିବରଣୀର ଉଭୟ କକ୍ଷର ସମଷ୍ଟି ସମାନ ରହିବ; କିନ୍ତୁ

ତଥାପି ଲେଖାଗତ ତ୍ରୁଟି ରହିବ । ଉଦାହରଣ ସ୍ୱରୂପ, ମନେ କର ଯେ ତୁମେ ହରିଙ୍କୁ ୫୦ ଟଙ୍କା ମୂଲ୍ୟର ପଣ୍ୟ ଧାରରେ ବିକ୍ରୟ କରିଛ, କିନ୍ତୁ ତାହା ବିକ୍ରୟ ବହିରେ ଲିପିବଦ୍ଧ କରାଯାଇ ନାହିଁ, କିମ୍ବା ରାମ ତୁମକୁ ୧୦୦ ଟଙ୍କା ମୂଲ୍ୟର କ୍ରୀତ ପଣ୍ୟ ଫେରସ୍ତ ଦେଲେ; କିନ୍ତୁ ଭୁଲ ବଶତଃ ତାହାକୁ ତୁମେ ଅନ୍ତର୍ମୁଖୀ ଫେରସ୍ତ ବହିରେ ଲିପିବଦ୍ଧ କରିନାହିଁ । ଯେହେତୁ ଏହି ନେଣଦେଣ ଦୁଇଟି ପ୍ରାଥମିକ ବହିରେ ଲେଖାଯାଇ ନାହିଁ; ତେଣୁ ଖତିୟାନରେ ବିକ୍ରୟ ହିସାବର ଦାତା ପାର୍ଶ୍ୱର ମୋଟ ପରିମାଣ ୫୦ ଟଙ୍କା ଊଣା ହେବ ଓ ହରିଙ୍କ ହିସାବକୁ ଦାୟୀ କରାଯାଇ ନ ଥିବାରୁ ଖାତକଙ୍କର ହିସାବର ଦାୟୀ ପାର୍ଶ୍ୱର ମୋଟ ପରିମାଣ ମଧ୍ୟ ୫୦ ଟଙ୍କା ଊଣା ହେବ । ବାକୀ ମେଳର ଉଭୟ କକ୍ଷରୁ ୫୦ ଟଙ୍କା ଊଣା ହେଲେ ମଧ୍ୟ ଦୁଇଟିର ଯୋଗଫଳ ସମାନ ହେବ । ସେହିପରି ଅନ୍ତର୍ମୁଖୀ ଫେରସ୍ତ ବହିର ମୋଟ ପରିମାଣ ୧୦୦ ଟଙ୍କା ଊଣା ହୋଇଥିବାରୁ ଅନ୍ତର୍ମୁଖୀ ଫେରସ୍ତ ହିସାବର ଦାୟୀ ପାର୍ଶ୍ୱର ମୋଟ ପରିମାଣ ୧୦୦ ଟଙ୍କା ଊଣା ହେବ ଓ ଗ୍ରାହକଙ୍କର ହିସାବକୁ ଦାତା କରାଯାଇ ନଥିବାରୁ ତାଙ୍କ ହିସାବର ଦାତା ପାର୍ଶ୍ୱର ମୋଟ ପରିମାଣ ୧୦୦ ଟଙ୍କା ଊଣା ହେବ । କିନ୍ତୁ ତଥାପି ବାକୀ ମେଳ ବିବରଣୀର ଉଭୟ କକ୍ଷର ସମଷ୍ଟି ସମାନ ରହିବ । ଏଥିରୁ ବୁଝାଯିବ ଯେ ଏହି ପ୍ରକାର ଭୁଲ ଥିଲେ ତାହା ବାକୀ ମେଳରୁ ଧରା ପଡ଼ିବ ନାହିଁ । ଏହାକୁ ବର୍ଜନମୂଳକ ତ୍ରୁଟି ବୋଲି କୁହାଯାଏ ।

## (୨) କାର୍ଯ୍ୟମୂଳକ ତ୍ରୁଟି :

କୌଣସି ନେଣଦେଣକୁ ପ୍ରାଥମିକ ହିସାବ ବହିରେ ଲେଖିଲାବେଳେ ଯଦି ଅର୍ଥର ପରିମାଣ ବା ଅଙ୍କ ଅଧିକ ବା ଊଣା ଲେଖାଯାଏ ତାହେଲେ ସେହି ଅଙ୍କ ଖତିୟାନର ଦୁଇଟି ହିସାବରେ ଗୋଟିକର ଦାୟୀ ଓ ଅନ୍ୟଟିର ଦାତା ପାର୍ଶ୍ୱରେ ଲିପିବଦ୍ଧ ହେବ, ତେଣୁ ବାକୀ ମେଳର ଉଭୟ କକ୍ଷର ସମଷ୍ଟି ସମାନ ହେଲେ ପୁଣି ଲେଖାଗତ ତ୍ରୁଟି ରହିବ ।

ଉଦାହରଣ ସ୍ୱରୂପ, ମନେକର ଯେ ତୁମେ ହରିଙ୍କଠାରୁ ପାଇଥିବା ୧୫୦ ଟଙ୍କା ଭୁଲକ୍ରମେ ରୋକଡ଼ ବହିରେ ୫୦ ଟଙ୍କା ଲେଖାଗଲା । ତେଣୁ ରୋକଡ଼ ବହିର ଦାୟୀ ବାକୀ ୧୦୦ ଟଙ୍କା ଊଣା ହେବ । ସେହିପରି ରୋକଡ଼ ବହିରୁ ହରିଙ୍କର ହିସାବ ଖତିୟାନରେ ଲେଖା ଯାଉଥିବାରୁ ତାଙ୍କ ହିସାବକୁ ୧୫୦ ଟଙ୍କା ପରିବର୍ତ୍ତେ କେବଳ ୫୦ ଟଙ୍କା ସକାଶେ ଦାତା କରାଯିବ । ତେଣୁ ଉଭୟ ଦାୟୀ ଓ ଦାତା ପାର୍ଶ୍ୱରୁ ୧୦୦ ଟଙ୍କା ଊଣା ହେବ । ସୁତରାଂ ଏପରି କ୍ଷେତ୍ରରେ ଲେଖାଗତ ତ୍ରୁଟି ଥିବା ସତ୍ତ୍ୱେ ବାକୀ ମେଳର ଉଭୟ ପଟର ମୋଟ ପରିମାଣ ସମାନ ହେବ । ଏହି ପ୍ରକାର ତ୍ରୁଟିକୁ କାର୍ଯ୍ୟମୂଳକ ତ୍ରୁଟି ବୋଲି କୁହାଯାଏ ।

## (୩) ଖତିୟାନ ହିସାବ ପ୍ରସ୍ତୁତ କରିବାରେ ତ୍ରୁଟି :

ଅନେକ ସମୟରେ ପ୍ରାଥମିକ ବହିରେ ନେଣଦେଣଟି ଯଥାଯଥ ଭାବେ ଲିପିବଦ୍ଧ କରାଯାଇଥାଏ, ମାତ୍ର ତହିଁରୁ ଖତିୟାନ ହିସାବ ପ୍ରସ୍ତୁତ କଲାବେଳେ ଲେଖାଗତ ତ୍ରୁଟି ହୋଇ ପାରେ । ମନେକର ଭ୍ରମେ ସୁରେନ୍ଦ୍ର ମହାପାତ୍ରଙ୍କଠାରୁ ୧୦୦ ଟଙ୍କା ନଗଦ ପାଇଲ । ଏହା ରୋକଡ଼ ବହିର ଦାୟୀ ପାର୍ଶ୍ୱରେ ମଧ୍ୟ ଠିକ୍ ଭାବରେ ଲିପିବଦ୍ଧ କରାଗଲା । ମାତ୍ର ଖତିୟାନକୁ ଏହି ଅଙ୍କ ଉଠାଇଲାବେଳେ ସୁରେନ୍ଦ୍ର ମାହାପାତ୍ର ପରିବର୍ତ୍ତେ ସୁରେନ୍ଦ୍ର ପାତ୍ରଙ୍କ ହିସାବକୁ ୧୦୦ ଟଙ୍କା ସକାଶେ ଦାତା କରାଯାଇଛି । ଏପରି କ୍ଷେତ୍ରରେ ୧୦୦ ଟଙ୍କା ଉଭୟ ଦାୟୀ ଓ ଦାତା ପାର୍ଶ୍ୱରେ ରହିଥିବାରୁ ବାକି ମେଳର ଉଭୟ କକ୍ଷର ସମଷ୍ଟି ମିଳିଯିବାରେ କୌଣସି ଅସୁବିଧା ଘଟିବ ନାହିଁ, କିନ୍ତୁ ଲେଖାଗତ ତ୍ରୁଟି ରହିଯିବ ।

## (୪) ସ୍ୱୟଂ ସଂଶୋଧକ ତ୍ରୁଟି :

କେତେକ ସମୟରେ ଦାୟୀ ପାର୍ଶ୍ୱର ଗୋଟିଏ ତ୍ରୁଟି ଦାତା ପାର୍ଶ୍ୱର ଏକ କମ୍ବା ତତୋଧିକ ତ୍ରୁଟି ଦ୍ୱାରା ଅପେ ଅପେ ସଂଶୋଧିତ ହୋଇଯାଏ । ଉଦାହରଣ ସ୍ୱରୂପ ମନେକର ଯେ ଗୋବିନ୍ଦ ତୁମକୁ ୧୯୭ ଟଙ୍କା ପରିଶୋଧ କଲେ ଓ ତାହା ରୋକଡ଼ ବହିରେ ଠିକ୍ ଭାବରେ ଲିପିବଦ୍ଧ କରାଗଲା କିନ୍ତୁ ଖତିୟାନରେ ଗୋବିନ୍ଦଙ୍କର ହିସାବକୁ ୧୭୯ ଟଙ୍କା ସକାଶେ ଦାତା କରାଯାଇଛି । ଏପରି ତ୍ରୁଟି ବାକି ମେଳରେ ଧରା ପଡ଼ିଥାନ୍ତା କିନ୍ତୁ (୧୯୭ – ୧୭୯ =) ୧୮ ଟଙ୍କା ଦାତା ପାର୍ଶ୍ୱରେ ଯେପରି ଊଣା ହୋଇଛି ସେହିପରି ମନେକର କ୍ରୟ ହିସାବ ବହିର ମୋଟ ପରିମାଣ ୧୨,୨୮୭ ଟଙ୍କା ସ୍ଥଳେ ୧୨,୨୬୯ ଟଙ୍କା, ଅର୍ଥାତ୍ (୧୨,୨୮୭ – ୧୨,୨୬୯ =) ୧୮ ଟଙ୍କା ଊଣା ଲେଖାଯାଇଛି । ତେଣୁ ଦାୟୀ ଓ ଦାତା ଉଭୟ ପାର୍ଶ୍ୱରେ ୧୮ ଟଙ୍କା ଊଣା ହୋଇଛି, ମାତ୍ର ବାକି ମେଳ ବିବରଣୀର ଦାୟୀ ଓ ଦାତା କକ୍ଷର ସମଷ୍ଟି ସମାନ ରହିଛି । ଦୁଇ ପାର୍ଶ୍ୱରେ ସମପରିମାଣର ଅଙ୍କ ଊଣା ହୋଇଥିବାରୁ ଏହି ତ୍ରୁଟି ବାକି ମେଳରେ ଧରା ପଡ଼ିବ ନାହିଁ ।

## (୫) ନୀତିମୂଳକ ତ୍ରୁଟି :

କେତେକ ସମୟରେ ହିସାବ ଲେଖିବାରେ ନୀତିମୂଳକ ତ୍ରୁଟି ଥିବା ସତ୍ତ୍ୱେ ବାକି ମେଳ ବିବରଣୀର ଦୁଇ କକ୍ଷର ସମଷ୍ଟି ମିଳିଯାଇ ପାରେ । ଉଦାହରଣ ସ୍ୱରୂପ ମନେକର ବ୍ୟବସାୟ ସକାଶେ ବ୍ୟବହାର ଲାଗି ଶ୍ୟାମସୁନ୍ଦରଙ୍କଠାରୁ ୫୦୦ ଟଙ୍କା ମୂଲ୍ୟର ଅସ୍‌ବାବ୍ ପତ୍ର ଉଧାରରେ କ୍ରୟ କରାଯାଇଛି । ଏଥି ସକାଶେ ନିୟମାନୁଯାୟୀ ଅସ୍‌ବାବ୍ ପତ୍ର ହିସାବ ଦାୟୀ ହେବ ଓ ଶ୍ୟାମସୁନ୍ଦରଙ୍କର ହିସାବକୁ ଦାତା କରାଯିବ । ମାତ୍ର ଅସ୍‌ବାବ୍ ପତ୍ର ହିସାବ ପରିବର୍ତ୍ତେ କ୍ରୟ ହିସାବ ବହିରେ ଏହାକୁ ଲିପିବଦ୍ଧ କରାଯାଇଛି । ଯେହେତୁ ୫୦୦ ଟଙ୍କା ଗୋଟିଏ ହିସାବର ଦାୟୀ ପାର୍ଶ୍ୱରେ ଓ ଅନ୍ୟ ଗୋଟିଏ ହିସାବର ଦାତା ପାର୍ଶ୍ୱରେ

ଲିପିବଦ୍ଧ କରାଯାଇଛି ବାକୀ ମେଳ ବିବରଣୀର ଉଭୟ ଦିଗର ସମଷ୍ଟି ମିଳିଯିବାରେ କୌଣସି ଅସୁବିଧା ହେବ ନାହିଁ, କିନ୍ତୁ ଯେହେତୁ ଆସ୍‌ବାବ୍ ପତ୍ର ବିକ୍ରୟ କରିବା ଉଦ୍ଦେଶ୍ୟରେ କ୍ରୟ କରାଯାଇ ନାହିଁ ତେଣୁ ତାହା କ୍ରୟ ହିସାବ ବହିରେ ଲିପିବଦ୍ଧ ହୋଇଥିବାର ନୀତିମୂଳକ ତ୍ରୁଟି ଅପ୍ରକାଶିତ ହେବ ।

ଉପରୋକ୍ତ ପାଞ୍ଚ ପ୍ରକାରର ତ୍ରୁଟି ବାକୀ ମେଳରୁ ଧରାପଡ଼େ ନାହିଁ ; କିନ୍ତୁ ଏହା ବ୍ୟତୀତ ଅନ୍ୟାନ୍ୟ ବହୁ ଶ୍ରେଣୀର ତ୍ରୁଟି ବାକୀ ମେଳରୁ ଧରାପଡ଼େ, ତେଣୁ ବାର୍ଷିକ ହିସାବ ପ୍ରସ୍ତୁତ କରିବା ପୂର୍ବରୁ ସାଧାରଣତଃ ପ୍ରତି ବ୍ୟବସାୟ ପକ୍ଷରେ ବାକୀ ମେଳ ପ୍ରସ୍ତୁତ କରିବା ପ୍ରୟୋଜନୀୟ ।

ବାକୀ ମେଳ କିପରି ପ୍ରସ୍ତୁତ କରାଯାଏ ତାହାର କେତେକ ଦୃଷ୍ଟାନ୍ତ ନିମ୍ନରେ ପ୍ରଦତ୍ତ ହେଲା ।

## ଦୃଷ୍ଟାନ୍ତ (୧)

ବିଜୟ ସାହୁଙ୍କ ଖତିୟାନ ହିସାବରୁ ୧୯୭୨ ସାଲ ଡିସେମ୍ବର ୩୧ ତାରିଖରେ ନିମ୍ନଲିଖିତ ବାକୀଗୁଡ଼ିକ ଉଦ୍ଧୃତ କରାଯାଇଛି । ତହିଁରୁ ବାକୀ ମେଳ ପ୍ରସ୍ତୁତ କର ।

| | ଟଙ୍କା |
|---|---|
| ମୂଳଧନ ହିସାବ | ୧୨,୦୦୦ |
| ଆଦ୍ୟ ମହଜୁଦ୍ ପଣ୍ୟ (୧ ୧-୧୯୭୨) | ୩,୪୫୫ |
| କ୍ରୟ | ୮,୪୬୦ |
| ବିକ୍ରୟ | ୧୨,୮୪୦ |
| ଅନ୍ତର୍ମୁଖୀ ଫେରସ୍ତ | ୪୪୦ |
| ବହିର୍ମୁଖୀ ଫେରସ୍ତ | ୧,୨୨୪ |
| ବେତନ | ୧,୮୦୦ |
| ଘରଭଡ଼ା | ୨,୪୦୦ |
| ବୀମା | ୩୦୦ |
| ମନୋହାରୀ ଦ୍ରବ୍ୟ | ୫୦୦ |
| ଆସ୍‌ବାବ୍ ପତ୍ର | ୨,୦୦୦ |
| ବିବିଧ ଖାତକ | ୫,୮୫୫ |
| ବିବିଧ ମହାଜନ | ୧,୯୩୬ |
| ବ୍ୟାଙ୍କରେ ଗଚ୍ଛିତ | ୨,୫୦୦ |
| ନଗଦ ତହବିଲ | ୨୯୦ |

**ସମାଧାନ :**

## ବିଜୟ ପାତ୍ରଙ୍କ ହିସାବ ଖାତାରେ

୧୯୬୨ ସାଲ ଡିସେମ୍ବର ୩୧ ତାରିଖର ବାକି ମେଳ

| ବିବରଣ | ଖ. ପୃ: | ଦାୟୀ | ଦାତା |
|---|---|---|---|
| | | ଟଙ୍କା | ଟଙ୍କା |
| ମୂଳଧନ ହିସାବ— — | | | ୧୨,୦୦୦ |
| ଆଦ୍ୟ ମହଜୁଦ ପଣ୍ୟ (୧-୧-୧୯୬୨) | | ୩,୪୫୫ | |
| କ୍ରୟ— — — | | ୮,୪୬୦ | |
| ବିକ୍ରୟ— — — | | | ୧୨,୮୪୦ |
| ଅନ୍ତର୍ମୁଖୀ ଫେରନ୍ତ— — | | ୪୪୦ | |
| ବହିର୍ମୁଖୀ ଫେରନ୍ତ— — | | | ୧,୨୨୪ |
| ବେତନ— — — | | ୧,୮୦୦ | |
| ଘରଭଡ଼ା— — — | | ୨,୪୦୦ | |
| ଖାମା— — — | | ୩୦୦ | |
| ମନୋହରଣ ଦ୍ରବ୍ୟ — — | | ୫୦୦ | |
| ଆସବାବ୍ ପତ୍ର— — | | ୨,୦୦୦ | |
| ବିବିଧ ଖାତକ — — | | ୫,୮୫୫ | |
| ବିବିଧ ମହାଜନ — — | | | ୧,୯୩୬ |
| ବ୍ୟାଙ୍କରେ ଗଚ୍ଛିତ— — | | ୨,୫୦୦ | |
| ନଗଦ ତହବିଲ — — | | ୨୯୦ | |
| | | ୨୮,୦୦୦ | ୨୮,୦୦୦ |

## ଦୃଷ୍ଟାନ୍ତ (୨)

ରମେଶ ମହାପାତ୍ରଙ୍କର ହିସାବ ଖାତାରୁ ୩୧-୧୨-୧୯୬୨ ତାରିଖର ବାକି ମେଳ ନିମ୍ନରେ ଉଦ୍ଧୃତ ହେଲା । ତନ୍ମଧ୍ୟରେ ଯଦି କୌଣସି ତ୍ରୁଟି ଥାଏ ତାହେଲେ ତାହା ସଂଶୋଧନ କର ।

### ବାକି ମେଳ

| | ଟଙ୍କା | | ଟଙ୍କା |
|---|---|---|---|
| ଆଦ୍ୟ ମହଜୁଦ ପଣ୍ୟ — — | ୪,୬୦୩ | ମୂଳଧନ— — | ୧୦,୦୦୦ |
| କ୍ରୟ— — — | ୧୨,୮୦୦ | ବିକ୍ରୟ— — | ୨୦,୮୧୦ |

| | | | | |
|---|---|---|---|---|
| ଅନ୍ତର୍ମୁଖୀ ଫେରସ୍ତ— | — | ୨୯୦ | ବହିର୍ମୁଖୀ ଫେରସ୍ତ — | ୧,୬୦୦ |
| ପ୍ରାପ୍ତ ବଟା — | — | ୨୯୦ | ବହିର୍ମୁଖୀ ଗାଡ଼ି ଭଡ଼ା— | ୨୨୦ |
| ଅନ୍ତର୍ମୁଖୀ ଗାଡ଼ିଭଡ଼ା— | — | ୯୮୦ | ପ୍ରଦତ୍ତ ବଟା— — | ୧୯୦ |
| ବିବିଧ ଖାତକ — | — | ୫,୮୦୦ | ଆସ୍‌ବାବ୍ ପତ୍ର— — | ୨,୬୦୦ |
| ବେତନ— | — | ୨,୪୦୦ | ବିବିଧ ମହାଜନ— | ୨,୯୮୦ |
| ବ୍ୟାଙ୍କରେ ଗଚ୍ଛିତ — | — | ୫,୨୦୦ | | |
| ନଗଦ ତହବିଲ— | — | ୫୬୭ | | |
| ଅନ୍ୟ ମହଜୁଦ ପଣ୍ୟ— | | ୫,୨୪୦ | | |
| | | ୩୭,୩୨୦ | | ୩୭,୩୨୦ |

**ସମାଧାନ :**

## ରାମଚନ୍ଦ୍ର ମହାପାତ୍ରଙ୍କ ହିସାବ ଖାତାରେ

୧୯୭୨ ସାଲ ଡିସେମ୍ବର ୩୧ ତାରିଖର ବାକୀ ମେଳ

| ବିବରଣ | ଖ: ପୃ: | ଦେୟୀ | ବିବରଣ | ଖ. ପୃ: | ଦାତା |
|---|---|---|---|---|---|
| | | ଟଙ୍କା | | | ଟଙ୍କା |
| ଆଦ୍ୟ ମହଜୁଦ ପଣ୍ୟ (୧-୧-୧୯୭୨) | | ୪,୬୦୩ | ମୂଳଧନ | | ୧୦,୦୦୦ |
| କ୍ରୟ | | ୧୧,୮୦୦ | ବିକ୍ରୟ | | ୨୦,୮୯୦ |
| ଅନ୍ତର୍ମୁଖୀ ଫେରସ୍ତ | | ୨୯୦ | ବହିର୍ମୁଖୀ ଫେରସ୍ତ | | ୧,୬୦୦ |
| ପ୍ରଦତ୍ତ ବଟା | | ୧୯୦ | ପ୍ରାପ୍ତ ବଟା | | ୨୯୦ |
| ଅନ୍ତର୍ମୁଖୀ ଗାଡ଼ିଭଡ଼ା | | ୯୮୦ | ବିବିଧ ମହାଜନ | | ୨,୯୮୦ |
| ବହିର୍ମୁଖୀ ଗାଡ଼ିଭଡ଼ା | | ୨୨୦ | | | |
| ବେତନ | | ୨,୪୦୦ | | | |
| ଆସ୍‌ବାବ୍ ପତ୍ର | | ୨,୬୦୦ | | | |
| ବିବିଧ ଖାତକ | | ୫,୮୦୦ | | | |
| ବ୍ୟାଙ୍କରେ ଗଚ୍ଛିତ | | ୫,୨୦୦ | | | |
| ନଗଦ ତହବିଲ | | ୫୬୭ | | | |
| | | ୩୪,୬୦୦ | | | ୩୪,୬୦୦ |

ଅନ୍ୟ ମହଜୁଦ ପଣ୍ୟ (୩୧-୧୨-୧୯୭୬), ୫,୬୪୦ ଟଙ୍କା ସକାଶେ ସମାଯୋଜନ ରୋଜନାମା ଆବଶ୍ୟକ, ଯଥା :

| | | ଟଙ୍କା | ଟଙ୍କା |
|---|---|---|---|
| ଅନ୍ତ୍ୟ ମହଜୁଦ ପଣ୍ୟ ହିସାବ | ଦାୟୀ | ୫,୬୪୦ | |
| ମୋଟ ଲଭ ଓ କ୍ଷତି ହିସାବ ବାବଦ | | | ୫,୬୪୦ |

ଅନ୍ତ୍ୟ ମହଜୁଦ ପଣ୍ୟ ବାଙ୍କି ମେଳରେ ଅନ୍ତର୍ଭୁକ୍ତ ହୁଏ ନାହିଁ ।

## ଦୃଷ୍ଟାନ୍ତ ( ୩ )

ନିମ୍ନଲିଖିତ ହିସାବର ବାଙ୍କିଗୁଡ଼ିକ ଶ୍ରୀମନ୍ତ ସାହୁଙ୍କର ଖତିୟାନରୁ ୩୦-୬-୧୯୭୬ ତାରିଖରେ ଉଦ୍ଧୃତ ହୋଇଛି । ତହିଁରୁ ବାଙ୍କି ମେଳ ପ୍ରସ୍ତୁତ କର ।

| | ଟଙ୍କା |
|---|---|
| ମୂଳଧନ | ୬୫,୦୦୦ |
| ଇମାରତ | ୬୦,୦୦୦ |
| ଯନ୍ତ୍ର | ୧୬,୫୦୦ |
| ଆଦ୍ୟ ମହଜୁଦ୍ ପଣ୍ୟ | ୪,୮୦୦ |
| କ୍ରୟ | ୨୫,୬୦୦ |
| ବିକ୍ରୟ | ୬୯,୫୦୦ |
| ଅନ୍ତର୍ମୁଖୀ ଫେରସ୍ତ | ୬୫୮ |
| ବହିର୍ମୁଖୀ ଫେରସ୍ତ | ୮୪୦ |
| ଅନ୍ତର୍ମୁଖୀ ଗାଡ଼ିଭଡ଼ା | ୧୬୦ |
| ବହିର୍ମୁଖୀ ଗାଡ଼ିଭଡ଼ା | ୩୬୦ |
| ପ୍ରାପ୍ତ ବଟା | ୭୬୫ |
| ପ୍ରଦତ୍ତ ବଟା | ୨୩୦ |
| ପ୍ରାପ୍ତ କମିଶନ | ୩୦୦ |
| ବେତନ | ୩,୦୦୦ |
| ମଜୁରି | ୨,୬୦୦ |
| ବିଦ୍ୟୁତ୍ ଶକ୍ତି | ୬୬୦ |
| ବିବିଧ ଖାତକ | ୮,୭୦୦ |
| ବିବିଧ ମହାଜନ | ୪,୩୦୦ |
| ଶିକ୍ଷା ନବଶଙ୍କଠାରୁ ପ୍ରାପ୍ତ ଅର୍ଥ | ୧,୫୦୦ |
| ବ୍ୟାଙ୍କରୁ ଅଧିକା ଉଠାଣ | ୯,୦୦୦ |
| ନଗଦ ତହବିଲ | ୮୯୦ |

**ସମାଧାନ :**

ଏହି ବିବରଣୀ ଅନୁଯାୟୀ ବାଙ୍କି ମେଳ ପ୍ରସ୍ତୁତ କଲେ ଦେଖାଯିବ ଯେ ଦାୟୀ ବାଙ୍କି ଦାତା ବାକୀଠାରୁ ୭୦୦ ଟଙ୍କା ଅଧିକ ହେଉଛି । ତେଣୁ ଭୁଲ ବାକୀର ମେଳ କରିବା ଉଦ୍ଦେଶ୍ୟରେ ଉଭୟ ବାକୀ ମଧ୍ୟରେ ଥିବା ବ୍ୟବଧାନ ସକାଶେ ଅନିର୍ଦ୍ଦିଷ୍ଟ ହିସାବକୁ ଦାତା କରାଗଲା ।

# ଶ୍ରୀମନ୍ତ ସାହୁଙ୍କର ହିସାବ ଖାତାରେ

୧୯୬୨ ସାଲ ୩୦ ଡିସେମ୍ବର ବାକୀ ମେଳ

| ବିବରଣ | ଖ:ପୃ: | ଦ ସ୍ଥୀ | ଦାତା |
|---|---|---|---|
| | | ଟଙ୍କା | ଟଙ୍କା |
| ମୂଳଧନ | | | ୨୫,୦୦୦ |
| ଇମାରତ | | ୨୦,୦୦୦ | |
| ଯନ୍ତ୍ର | | ୧୨,୫୦୦ | |
| ଆଦ୍ୟ ମହଜୁଦ୍ ପଣ୍ୟ (୧-୭-୧୯୬୧) | | ୪,୮୦୦ | |
| କ୍ରୟ | | ୧୫,୨୦୦ | |
| ବିକ୍ରୟ | | | ୨୫,୫୦୦ |
| ଅନ୍ତର୍ମୁଖୀ ଫେରସ୍ତ | | ୨୪୦ | |
| ବହିର୍ମୁଖୀ ଫେରସ୍ତ | | | ୮୪୦ |
| ଅନ୍ତର୍ମୁଖୀ ଗାଡ଼ିଭଡ଼ା | | ୧୨୦ | |
| ବହିର୍ମୁଖୀ ଗାଡ଼ିଭଡ଼ା | | ୩୫୦ | |
| ପ୍ରାପ୍ତ ବଟ୍ଟା | | | ୨୨୫ |
| ପ୍ରଦତ୍ତ ବଟ୍ଟା | | ୧୩୦ | |
| ପ୍ରାପ୍ତ କମିଶନ | | | ୩୦୦ |
| ବେତନ | | ୩,୦୦୦ | |
| ମଜୁରି | | ୧,୨୦୦ | |
| ବିଦ୍ୟୁତ୍ ଶକ୍ତି | | ୨୨୦ | |
| ବିବିଧ ଖାତକ | | ୮,୬୦୦ | |
| ବିବିଧ ମହାଜନ | | | ୪,୩୨୦ |
| ଶିକ୍ଷାନବିଶଙ୍କଠାରୁ ପ୍ରାପ୍ତ ଅର୍ଥ | | | ୧,୫୦୦ |
| ବ୍ୟାଙ୍କରୁ ଅଧିକା ଉଠାଣ | | | ୯,୦୦୦ |
| ନଗଦ ତହବିଲ | | ୮୯୦ | |
| ଅନିର୍ଣ୍ଣିତ ହିସାବ | | | ୬୯୫ |
| | | ୬୭,୩୬୦ | ୬୭,୩୬୦ |

(ବାକି ମେଳ ପ୍ରସ୍ତୁତ କରିବାର ବିଧିବଦ୍ଧ ପ୍ରଣାଳୀ ଓ ତହିଁର ଦୃଷ୍ଟାନ୍ତ ବର୍ଣ୍ଣିତ ହେଲା । ଯଦି ବାକି ମେଳ ପ୍ରସ୍ତୁତ କରିବା ନିମନ୍ତେ ନିର୍ଦ୍ଦେଶ ଥାଏ ତାହେଲେ ସେହି ପ୍ରଣାଳୀ ଅନୁଯାୟୀ ବର୍ଣ୍ଣିତ ଫର୍ମରେ ତାହା ପ୍ରସ୍ତୁତ କରାଯିବ । କିନ୍ତୁ ଅନେକ ସମୟରେ ପ୍ରଶ୍ନରେ ଖତିୟାନ ହିସାବର ବାକୀଗୁଡ଼ିକ ଦିଆଯାଇ ଥାଏ ଓ ତହିଁରୁ କାଳାନ୍ତିକ ହିସାବ ବା ଚୂଡ଼ାନ୍ତ ହିସାବ ପ୍ରସ୍ତୁତ କରିବା ନିମନ୍ତେ ନିର୍ଦ୍ଦେଶ ଦିଆଯାଇଥାଏ । ସେପରି କ୍ଷେତ୍ରରେ ଯଦିଓ ବାକୀ ମେଳ ପ୍ରସ୍ତୁତ କରିବାର ନିର୍ଦ୍ଦେଶ ନ ଥାଏ ତଥାପି ପରୀକ୍ଷାର୍ଥୀ ନିଜର ସୁବିଧା ସକାଶେ ପ୍ରଥମରୁ ଏକ ସହଜ ଉପାୟରେ ଅତି ସଂକ୍ଷେପରେ ଏକ ବାକୀ ମେଳ ପ୍ରସ୍ତୁତ କରି ଦାୟୀ ବାକୀ ସହିତ ଦାତା ବାକୀ ମିଶୁଛି କି ନାହିଁ ତାହା ପରୀକ୍ଷା କରି ଦେଖିନେବା ଆବଶ୍ୟକ । ଯଦି ବାକୀ ମେଳରେ ଗରମିଲ ଦେଖାଯାଏ ତାହେଲେ ପ୍ରଶ୍ନ ଭୁଲ ଅଛି ବୋଲି ବୁଝିବାକୁ ହେବ ଏବଂ ଏପରି କ୍ଷେତ୍ରରେ ଚୂଡ଼ାନ୍ତ ହିସାବ କଲେ ଉଦ୍‌ବୃତ୍ତ ପତ୍ରର ପରିସମ୍ପତ୍ତି ପାର୍ଶ୍ୱର ମୋଟ ପରିମାଣ ମୂଳଧନ ଓ ଦେୟ ପାର୍ଶ୍ୱର ମୋଟ ପରିମାଣ ସହିତ ମିଶିବ ନାହିଁ । ବାକି ମେଳରେ ଯଦି ଗରମିଲ ନ ଥାଏ ତାହେଲେ ଉଦ୍‌ବୃତ୍ତ ପତ୍ରର ଦୁଇ ପାର୍ଶ୍ୱର ମୋଟ ପରିମାଣ ନିଶ୍ଚୟ ସମାନ ହେବ ।)

ପୂର୍ବ ବର୍ଣ୍ଣିତ ବାକି ମେଳଗୁଡ଼ିକ ପର୍ଯ୍ୟାଲୋଚନା କଲେ ଦେଖାଯିବ ଯେ ସାଧାରଣତଃ ନିମ୍ନଲିଖିତ ଖତିୟାନ ହିସାବଗୁଡ଼ିକର ବାକି ଦାୟୀ ହେବ :

ଇମାରତ ହିସାବ, ଜମି ବାଡ଼ି ହିସାବ, ଯନ୍ତ୍ର ହିସାବ, ଉପକରଣ ହିସାବ, ଆସବାବ୍ ପତ୍ର ହିସାବ, ଆଦ୍ୟ ସମ୍ଭାର ବା ଆଦ୍ୟ ମହଜୁଦ୍ ପଣ୍ୟ, କ୍ରୟ ହିସାବ, ମଜୁରି ହିସାବ, ଗାଡ଼ିଭଡ଼ା ବେତନ ହିସାବ, ମନୋହାରୀ ହିସାବ, ଡାକ ଟିକଟ ହିସାବ, ବିଦ୍ୟୁତ୍ ଶକ୍ତି ହିସାବ, ଟିକସ୍ ହିସାବ, ଛପେଇ ଓ ପ୍ରଚାର ହିସାବ, ବୀମା ପ୍ରିମିୟାମ୍ ହିସାବ, ପ୍ରଦତ୍ତ ବଟା ହିସାବ, ପ୍ରଦତ୍ତ କମିଶନ ହିସାବ, ପ୍ରଦତ୍ତ ସୁଧ ହିସାବ, ପ୍ରଦତ୍ତ ଘରଭଡ଼ା ହିସାବ ଅନ୍ତର୍ମୁଖୀ ଫେରସ୍ତ ହିସାବ, ବ୍ୟାଙ୍କରେ ଗଚ୍ଛିତ ତହବିଲ ହିସାବ, ନଗଦ ତହବିଲ ହିସାବ, ବିବିଧ ଖାତକ ହିସାବ, ଇତ୍ୟାଦି ।

ସେହିପରି ନିମ୍ନଲିଖିତ ଖତିୟାନ ହିସାବର ବାକୀ ଦାତା ହେବ ।

ମୂଳଧନ ବା ପୁଞ୍ଜି ହିସାବ, ବିବିଧ ମହାଜନ ହିସାବ, ବ୍ୟାଙ୍କ୍ ଋଣ ହିସାବ, ଅଧିକା ଉଠାଣ ହିସାବ, ବିକ୍ରୟ ହିସାବ, ବହିର୍ମୁଖୀ ଫେରସ୍ତ ହିସାବ, ପ୍ରାପ୍ତ ବଟା ହିସାବ, ପ୍ରାପ୍ତ କମିଶନ୍ ହିସାବ, ପ୍ରାପ୍ତ ସୁଧ ହିସାବ, ପ୍ରାପ୍ତ ଘରଭଡ଼ା ହିସାବ, ଶିକ୍ଷାନବିଶଙ୍କଠାରୁ ପ୍ରାପ୍ତ ଅର୍ଥ ହିସାବ ଇତ୍ୟାଦି ।

ଯଦି ବାକୀ ମେଳରେ ଗରମିଲ ଦେଖାଯାଏ ତାହେଲେ ତ୍ରୁଟି ନିରୂପଣ କରିବାକୁ ନିମ୍ନଲିଖିତ କାର୍ଯ୍ୟାନୁଷ୍ଠାନ କରିବାକୁ ପଡ଼ିବ ।

(୧) ନିସ୍ବ ବହି, ବନିସ୍ବ ବହି, ଅନ୍ତର୍ମୁଖୀ ଓ ବହିର୍ମୁଖୀ ଫେରସ୍ତ ବହିର ମୋଟ ପରିମାଣ ଠିକ୍ ଅଛି କି ନାହିଁ ତାହା ପ୍ରଥମେ ପରୀକ୍ଷା କରାଯିବ ।

(୨) ଏହି ପ୍ରାଥମିକ ହିସାବ ବହିରୁ ମୋଟ ପରିମାଣ ଖତିୟାନର ଅନୁରୂପ ହିସାବକୁ ଯଥାଯଥ ଭାବରେ ନିଆଯାଇଛି କି ନାହିଁ ଏବଂ ନିଆଯାଇଥିଲେ ନିୟମାନୁଯାୟୀ ତାହା ହିସାବର ଉପଯୁକ୍ତ ପାର୍ଶ୍ବରେ ଲେଖାଯାଇଛି କି ନାହିଁ ତାହା ପରୀକ୍ଷା କରାଯିବ ।

(୩) ରୋକଡ଼ ବହିର ମୋଟ ପରିମାଣ ଓ ବାକୀ ଠିକ୍ ଭାବରେ ନିର୍ଣ୍ଣୀତ ହୋଇଛି କି ନାହିଁ ତାହା ପରୀକ୍ଷା କରାଯିବ, ତତ୍ପରେ ରୋକଡ଼ ବହିର ପ୍ରତି ଲେଖା ସକାଶେ ଖତିୟାନର ଅନ୍ତତଃ କୌଣସି ଗୋଟିଏ ହିସାବର ବିପରୀତ ପାର୍ଶ୍ବରେ ସମ ଅର୍ଥର ପରିମାଣ ଲିପିବଦ୍ଧ ହୋଇଛି କି ନାହିଁ ତାହା ପରୀକ୍ଷା କରାଯିବ ।

(୪) ଖତିୟାନର ପ୍ରତି ହିସାବର ବାକୀ ଠିକ୍ ଭାବରେ ନିର୍ଣ୍ଣୀତ ହୋଇଛି କି ନାହିଁ ତାହା ପରୀକ୍ଷା କରାଯିବ ।

(୫) ଖତିୟାନର ପ୍ରତି ହିସାବର ବାକୀ, ବାକୀ ମେଳର ବିବରଣୀର ଉପଯୁକ୍ତ ପାର୍ଶ୍ବକୁ ନିଆଯାଇଛି କି ନାହିଁ ତାହା ପରୀକ୍ଷା କରାଯିବ ଓ ଏହି ବିବରଣୀର ଦାୟୀ ଓ ଦାତା ସ୍ତମ୍ଭରେ ଲେଖାଥିବା ଅଙ୍କଗୁଡ଼ିକର ଯୋଗଫଳ ଠିକ୍ ଅଛି କି ନାହିଁ ତାହା ପୁଣି ଥରେ ପରୀକ୍ଷା କରାଯିବ ।

ଏହିପରି କାର୍ଯ୍ୟାନୁଷ୍ଠାନ କରାଗଲେ ଅଧିକାଂଶ କ୍ଷେତ୍ରରେ ତ୍ରୁଟି ଧରାପଡ଼େ । ତଥାପି ଯଦି ତ୍ରୁଟି ନିରୂପିତ ନ ହୋଇପାରେ ତାହେଲେ ଅନିଶ୍ଚିତ ହିସାବ ମାଧ୍ୟମରେ ବାକୀ ମେଳ ପ୍ରସ୍ତୁତ କରାଯିବ ଓ ପରେ ତ୍ରୁଟି ଜଣାପଡ଼ିଲେ ରୋଜନାମା ସାହାଯ୍ୟରେ ଅନିଶ୍ଚିତ ହିସାବର ବାକୀ ନିଃଶେଷ କରି ଏହି ହିସାବକୁ ବନ୍ଦ କରାଯିବ ।

ମନେକର ବାକୀ ମେଳର ଦାୟୀ ବାକୀର ମୋଟ ପରିମାଣ ୫,୦୦୦ ଟଙ୍କା ଓ ଦାତା ବାକୀର ପରିମାଣ ୪,୭୦୦ ଟଙ୍କା ହୋଇଛି । ଯେଉଁ ପାର୍ଶ୍ବର ବାକୀ ଊଣା ଥିବ ତାହାକୁ ଅନିଶ୍ଚିତ ହିସାବର ବାକୀ ଦ୍ୱାରା ସମତୁଲ କରାଯିବ । ସୁତରାଂ ଏ କ୍ଷେତ୍ରରେ ଅନିଶ୍ଚିତ ହିସାବକୁ ଦୁଇଟି ମୋଟ ପରିମାଣର ଅନ୍ତରଫଳ ୩୦୦ ଟଙ୍କା ସକାଶେ ଦାତା କରାଯିବ । ଏହି ପ୍ରବିଷ୍ଟି ପରେ ଉଭୟ ପାର୍ଶ୍ବର ମୋଟ ପରିମାଣ ୫,୦୦୦ ଟଙ୍କା ହେବ ଓ ଏହା ଫଳରେ ବାକୀ ମେଳରେ ଗରମେଳ ହେବ ନାହିଁ । ପରେ ଯେତେବେଳେ ତ୍ରୁଟି ଆବିଷ୍କୃତ ହେବ ସେତେବେଳେ ସଂପୃକ୍ତ ହିସାବକୁ ଦାତା କରାଯାଇ ଅନିଶ୍ଚିତ ହିସାବକୁ ଦାୟୀ କରାଯିବ ।

ମନେକର ବିକ୍ରୟ (ହିସାବ) ବହିର ମିଶାଣରେ ୩୦୦ ଟଙ୍କା ଊଣା ହୋଇ-ଥିଲା । ତାହା ହେଲେ ବିକ୍ରୟ ହିସାବକୁ ଦାତା କରାଯିବ ଓ ଅନିଶ୍ଚିତ ହିସାବକୁ ଦାୟୀ କରାଯିବ ।

ଉପରୋକ୍ତ ନେଣଦେଣର ଜାବ୍ଦା ବା ରୋଜନାମଚା ନିମ୍ନରେ ପ୍ରଦତ୍ତ ହେଲା :

| | | ଦାୟୀ | ଦାତା |
|---|---|---|---|
| | ଅନିଶ୍ଚିତ ହିସାବ ଦାୟୀ<br>ବିକ୍ରୟ ହିସାବ ବାବଦ<br>(ବାକୀ ମେଳର ଉଭୟ ପାର୍ଶ୍ୱର ମୋଟ ପରିମାଣକୁ ସମତୁଲ କରିବା ପାଇଁ ଦାତା କରାଯାଇଥିବା ଅନିଶ୍ଚିତ ହିସାବକୁ ଦାୟୀ କରାଯାଇ ଊଣା ଦାତା କରା-ଯାଇଥିବା ବିକ୍ରୟ ହିସାବକୁ ୩୦୦ ଟଙ୍କା ସକାଶେ ଦାତା କରାଯାଇ ପ୍ରକୃତ ତ୍ରୁଟିର ସଂଶୋଧନ କରାଗଲା ) | ଟଙ୍କା<br>୩୦୦ | ଟଙ୍କା<br>୩୦୦ |

ଅନିଶ୍ଚିତ ହିସାବରେ ବାକୀ ଥିବା ପର୍ଯ୍ୟନ୍ତ ଅନ୍ୟ କୌଣସି ତ୍ରୁଟି ରହିଛି ବୋଲି ବୁଝିବାକୁ ହେବ । ଯେତେବେଳେ ସବୁ ତ୍ରୁଟି ଆବିଷ୍କୃତ ହୋଇଯିବ, ସେତେବେଳେ ଅନିଶ୍ଚିତ ହିସାବରେ ଆଉ ବାକୀ ରହିବ ନାହିଁ ।

ଏଠାରେ ମନେ ରଖିବାକୁ ହେବ ଯେ ଯେଉଁ ଧରଣର ତ୍ରୁଟି ବାକୀ ମେଳରେ ଗରମେଳ ସୃଷ୍ଟି କରେ ନାହିଁ ତାହାର ସଂଶୋଧନ ନିମନ୍ତେ ଅନିଶ୍ଚିତ ହିସାବର ସାହାଯ୍ୟ ନେବା ଆବଶ୍ୟକ ହେବ ନାହିଁ । ତାହାର ସଂଶୋଧନ ଜାବ୍ଦା ସାହାଯ୍ୟରେ ହେବ । ଏହା ଖାସ୍ ଜାବ୍ଦାର ଆଲୋଚନାବେଳେ ଆଲୋଚିତ ହୋଇଛି ।

କେତେକ ସମୟରେ ଦେଖାଯାଏ ଯେ ଅନେକଗୁଡ଼ିଏ ତ୍ରୁଟି ମିଳିତ ହୋଇ ବାକୀ ମେଳରେ ଗରମେଳ ସୃଷ୍ଟି କରିଥାଏ । ସେପରି କ୍ଷେତ୍ରରେ ସମାଧାନ ସକାଶେ ଅନେକଗୁଡ଼ିଏ ଜାବ୍ଦା ଆବଶ୍ୟକ ହୁଏ । ଏହାର ଏକ ଦୃଷ୍ଟାନ୍ତ ନିମ୍ନରେ ପ୍ରଦତ୍ତ ହେଲା,

# ଦୃଷ୍ଟାନ୍ତ (୪)

ଜାବ୍‌ଦା ସାହାଯ୍ୟରେ ନିମ୍ନଲିଖିତ ଭ୍ରମଗୁଡ଼ିକ ସଂଶୋଧନ କର ଓ ଅନିଷ୍ଟିତ ହିସାବ ପ୍ରସ୍ତୁତ କର । ବାକୀ ମେଳରେ ଦାତା ବାକୀ ଦାୟୀ ବାକୀଠାରୁ ଟ ୬୪୪ ଅଧିକ ଥିଲା । ଏହି ପାର୍ଥକ୍ୟକୁ ଅନିଷ୍ଟିତ ହିସାବରେ ଦେଖାଇ ବାକୀ ମେଳ ପ୍ରସ୍ତୁତ କରାଗଲା । ପରେ ନିମ୍ନଲିଖିତ ତ୍ରୁଟିଗୁଡ଼ିକ ଜଣାପଡ଼ିଲା ।

(କ) ରୋକଡ଼ ବହିର ଦାତା ପାର୍ଶ୍ୱସ୍ଥିତ ବଟା ସ୍ତମ୍ଭର ମୋଟ ପରିମାଣ ୭୮ ଟଙ୍କା ଖତିୟାନ ଭୁକ୍ତ ହୋଇ ନାହିଁ ।

(ଖ) କ୍ରୟ ବହିର ମୋଟ ପରିମାଣ ୮୯୨ ଟଙ୍କା ଊଣା ଅଛି ।

(ଗ) ବିନୋଦଙ୍କୁ ୩୨୫ ଟଙ୍କା ପଣ୍ୟ ବିକ୍ରୟ କରାଯାଇଥିଲା କିନ୍ତୁ ବିକ୍ରୟ ବହିରେ ଏହା ୨୩୫ ଟଙ୍କା ରୂପେ ଲିପିବଦ୍ଧ କରାଯାଇଛି ।

(ଘ) କ୍ରୟ ବହିରୁ ସୁକାନ୍ତଙ୍କ ହିସାବକୁ ୧୭୫ ଟଙ୍କା ସକାଶେ ଦାୟୀ କରାଯାଇଛି ।

(ଙ) ରଘୀନ ପୂର୍ବରୁ ଉଧାରରେ କିଛି ପଣ୍ୟ ନେଇଥିଲେ, ତାଙ୍କଠାରୁ ଅବଶିଷ୍ଟ ୨୫୦ ଟଙ୍କା ଆଦାୟ ହୋଇ ନ ପାରିବାରୁ ତାହାକୁ ଅନାଦାୟୀ ଋଣ ରୂପେ ହିସାବରୁ ବାଦ୍ ଦିଆଯାଇଥିଲା । ପରେ ତାଙ୍କଠାରୁ ମିଳିଥିବା ୨୫୦ ଟଙ୍କା ସକାଶେ ତାଙ୍କ ହିସାବକୁ ଦାତା କରାଯାଇଛି ।

(ଚ) ଉଧାରରେ କଟକ ଆସ୍‌ବାବ୍ ଭବନରୁ କ୍ରୟ କରାଯାଇଥିବା ୭୫୦ ଟଙ୍କା କ୍ରୟ ବହିରେ ଲିପିବଦ୍ଧ କରାଯାଇଛି ।

(ଛ) ବିକ୍ରୟ ବହିର ଗୋଟିଏ ପୃଷ୍ଠାରୁ ପର ପୃଷ୍ଠାକୁ ମୋଟ ପରିମାଣ ନେବାବେଳେ ୧୧,୩୫୮ ଟଙ୍କା ୧୧,୫୩୮ ଟଙ୍କା ରୂପେ ଲେଖାଯାଇଛି ।

(ଜ) ବ୍ୟବସାୟର ମାଲିକ ନିଜସ୍ୱ ଘର ଖର୍ଚ୍ଚ ସକାଶେ ବ୍ୟବସାୟରୁ ନେଇଥିବା ୧୫୦ ଟଙ୍କା ମୂଲ୍ୟର ପଣ୍ୟ ସକାଶେ କୌଣସି ପ୍ରବିଷ୍ଟି କରାଯାଇ ନାହିଁ ।

(ଝ) ବ୍ୟବସାୟ ମାଲିକଙ୍କ ମଟରଗାଡ଼ି ୪୧୦ ଟଙ୍କା ବ୍ୟୟରେ ମରାମତି କରାଯାଇଥିଲା । ସେହି ପରିମାଣର ଅର୍ଥ ବ୍ୟବସାୟରୁ ଦିଆଯାଇ ମରାମତି ହିସାବକୁ ଦାୟୀ କରାଯାଇଛି ।

(ଞ) କରିମ୍ ଖାଁଙ୍କୁ ବିକ୍ରି କରାଯାଇଥିବା ୭୦୦ ଟଙ୍କାର ପଣ୍ୟ କ୍ରୟ ବହିରେ ଲିପିବଦ୍ଧ ହୋଇଛି ।

**ସମାଧାନ :**

## ଜାବଦା

| | ବିବରଣ | ଖ: ପୃ: | ଦାୟୀ | ଦାତା |
|---|---|---|---|---|
| | | | ଟଙ୍କା | ଟଙ୍କା |
| (କ) | ଅନିଶ୍ଚିତ ହିସାବ ଦାୟୀ<br>ବଟା ହିସାବ ବାବଦ<br>(ଭୋକଡ଼ ବହିରୁ ବଟା ହିସାବକୁ ଦାତା କରାଯାଇ ନ ଥିବା ଭ୍ରମ ସଂଶୋଧିତ ହେଲା) | | ୨୮ | ୨୮ |
| (ଖ) | କ୍ରୟ ହିସାବ ଦାୟୀ<br>ଅନିଶ୍ଚିତ ହିସାବ ବାବଦ<br>(ମିଶାଣରେ ୮୯୨ ଟଙ୍କା ଊଣା ଥିବାରୁ କ୍ରୟ ହିସାବକୁ ସେହି ପରିମାଣ ଅଧିକାରେ ଦାୟୀ କରାଗଲା । ) | | ୮୯୨ | ୮୯୨ |
| (ଗ) | ବିକ୍ରୟ ହିସାବ ଦାୟୀ<br>ବିକ୍ରମଙ୍କ ହିସାବ ବାବଦ<br>(୩୭୫ ଟଙ୍କା ସ୍ଥଳେ ବିକ୍ରୟ ପରିମାଣ ୬୩୫ ଟଙ୍କା ରୂପେ ଲିପିବଦ୍ଧ ହୋଇଥିବାରୁ ତାହା ସଂଶୋଧନ କରାଗଲା) | | ୩୬୦ | ୩୬୦ |
| (ଘ) | ଅନିଶ୍ଚିତ ହିସାବ ଦାୟୀ<br>ସୁକାନ୍ତଙ୍କ ହିସାବ ବାବଦ<br>(ସୁକାନ୍ତ ଉଧାରରେ ପଣ୍ୟ ଯୋଗାଇ ଥିବା ହେତୁ ଦାତା ହେବା ପରିବର୍ତ୍ତେ ଦାୟୀ ହୋଇଥିବାରୁ ଦ୍ୱିଗୁଣ ପରିମାଣରେ ତାଙ୍କ ହିସାବକୁ ଦାତା କରାଯାଇ ଭ୍ରମ ସଂଶୋଧନ କରାଗଲା) | | ୩୫୦ | ୩୫୦ |

| | | ଦାୟୀ | ଦାତା |
|---|---|---|---|
| | | ଟଙ୍କା | ଟଙ୍କା |
| (ଙ) | ବଣିକଙ୍କ ହିସାବ ଦାୟୀ<br>ସଂରକ୍ଷିତ ଅନାଦାୟୀ ଋଣ ହିସାବ ବାବଦ<br>(ବଣିକଙ୍କଠାରୁ ବକେୟା ଟଙ୍କା ଆଦାୟ ନ ହେବାରୁ ତାଙ୍କୁ ଦାତା କରି ଅନାଦାୟୀ ଋଣ ହିସାବକୁ ଦାୟୀ କରାଯାଇ ଥିଲା, ତାଙ୍କ ଠାରୁ ବକେୟା ଆଦାୟ ହେବାରୁ ବଣିକଙ୍କ ହିସାବକୁ ଦାୟୀ କରି ସଂରକ୍ଷିତ ଅନାଦାୟୀ ଋଣ ହିସାବକୁ ଦାତା କରାଗଲା) | ୨୫୦ | ୨୫୦ |
| (ଚ) | ଆସବାବ୍ ହିସାବ ଦାୟୀ<br>କ୍ରୟ ହିସାବ ବାବଦ<br>(ଆସବାବ୍ କ୍ରୟ ସକାଶେ କ୍ରୟ ହିସାବକୁ ଦାୟୀ କରାଯାଇଥିବାରୁ ତାହାକୁ ଦାତା କରାଯାଇ ଓ ଆସବାବ୍ ହିସାବକୁ ଦାୟୀ କରାଯାଇ ତ୍ରୁଟି ସଂଶୋଧନ କରାଗଲା) | ୬୫୦ | ୬୫୦ |
| (ଛ) | ବିକ୍ରୟ ହିସାବ ଦାୟୀ<br>ଅନିଶ୍ଚିତ ହିସାବ ବାବଦ<br>(ବିକ୍ରୟ ହିସାବର ପରିମାଣକୁ ଭୁଲ ମିଶାଣ ଯୋଗୁଁ ଅଯଥା ବୃଦ୍ଧି କରାଯାଇ ଥିବାରୁ ସେହି ହିସାବକୁ (୧୧,୫୩୮–୧୧,୩୫୮) ଟଙ୍କା ସକାଶେ ଦାୟୀ କରାଯାଇ ତ୍ରୁଟି ସଂଶୋଧନ କରାଗଲା) | ୧୮୦ | ୧୮୦ |
| (ଜ) | ମୂଳଧନ ହିସାବ ଦାୟୀ<br>କ୍ରୟ ହିସାବ ବାବଦ<br>(ମାଲିକ ନିଜର ଖର୍ଚ୍ଚ ସକାଶେ ବ୍ୟବସାୟରୁ ନେଇଥିବା ମାଲ ସକାଶେ ତାଙ୍କ ହିସାବକୁ ଦାୟୀ କରାଯାଇ କ୍ରୟ ହିସାବକୁ ଦାତା କରାଗଲା) | ୧୫୦ | ୧୫୦ |

| | | | ଦାତା | ଦାୟୀ |
|---|---|---|---|---|
| | | | ଟଙ୍କା | ଟଙ୍କା |
| (ଝ) | ମୂଳଧନ ହିସାବ ଦାୟୀ<br>ମରାମତି ହିସାବ ବାବଦ<br>(ମାଲିକଙ୍କର ନିଜସ୍ୱ ଗାଡ଼ିର ମରାମତି ସକାଶେ ବ୍ୟବସାୟର ମରାମତି ହିସାବକୁ ଦାୟୀ କରାଯାଇଥିବାରୁ ସେହି ହିସାବକୁ ଦାତା କରାଯାଇ ମୂଳଧନ ହିସାବକୁ ଦାୟୀ କରାଗଲା ) | | ୪୧୦ | ୪୧୦ |
| (ଞ) | କରିମ୍ ଖାଁଙ୍କ ହିସାବ ଦାୟୀ<br>କ୍ରୟ ହିସାବ ବାବଦ<br>(ବିକ୍ରୟ କରାଯାଇଥିବା ନେଣଦେଣକୁ କ୍ରୟ ରୂପେ ଗଣ୍ୟ କରି ଯେଉଁ ଜାବ୍ଦା କରାଯାଇଥିଲା ତାହାର ବିପରୀତ ଜାବ୍ଦା କରାଯାଇ ଭୁଲ ଜାବ୍ଦାର ଫଳକୁ ନାକଚ କରାଗଲା ) | | ୬୦୦ | ୬୦୦ |
| | କରିମ୍ ଖାଁଙ୍କ ହିସାବ ଦାୟୀ<br>ବିକ୍ରୟ ହିସାବ ବାବଦ<br>(କରିମ୍ ଖାଁଙ୍କୁ ବିକ୍ରୟ କରାଯାଇଥିବା ପଣ୍ୟ ସକାଶେ ତାଙ୍କ ହିସାବକୁ ଦାୟୀ କରାଯାଇ ବିକ୍ରୟ ହିସାବକୁ ଦାତା କରାଗଲା ) | | | |

ଦାୟୀ ଅନିଶ୍ଚିତ ହିସାବ ଦାତା

| | ଟଙ୍କା | | ଟଙ୍କା |
|---|---|---|---|
| ବାକୀ ମେଳର ବ୍ୟବଧାନ ବାବଦ | ୬୪୪ | କ୍ରୟ ହିସାବ ବାବଦ | ୮୯୨ |
| ବଟା ହିସାବ ବାବଦ | ୭୮ | ବିକ୍ରୟ ହିସାବ ବାବଦ | ୧୮୦ |
| ସୁଦାମଙ୍କ ହିସାବ ବାବଦ | ୩୫୦ | | |
| | ୧,୦୭୨ | | ୧,୦୭୨ |

ନୋଟ୍ : ଉପରୋକ୍ତ ଦୃଷ୍ଟାନ୍ତଟି ବିଶ୍ଳେଷଣ କଲେ ଦେଖାଯିବ ଯେ ସବୁଗୁଡ଼ିକ ତ୍ରୁଟିର ସଂଶୋଧନ ସକାଶେ ଅନିର୍ଦ୍ଧିଷ୍ଟ ହିସାବର ସାହାଯ୍ୟ ନିଆଯାଇ ନାହିଁ, କାରଣ ସେ ସବୁ କ୍ଷେତ୍ରରେ ସାମାନ୍ୟ ଚିନ୍ତା କଲେ ଅନ୍ୟ ଏକ ହିସାବ ଦୃଷ୍ଟିଗୋଚର ହେବ ଯାହାକୁ ଦାଖ୍ଲୀ ବା ଦାଖ୍ଲା କରାଯାଇ ତ୍ରୁଟିର ସଂଶୋଧନ ହୋଇ ପାରିବ । ଯେତେବେଳେ ଅନ୍ୟ ଗୋଟିଏ ହିସାବ ବିଦ୍ୟମାନ ନ ଥାଏ ସେତେ-ବେଳେ ଅନିର୍ଦ୍ଧିଷ୍ଟ ହିସାବର ସାହାଯ୍ୟ ନିଆଯାଏ । ଉଦାହରଣ ସ୍ୱରୂପ କୌଣସି ହିସାବକୁ ନ୍ୟାଯ୍ୟ ପରିମାଣଠାରୁ ଊଣା ବା ଅଧିକ ପରିମାଣ ସକାଶେ ଦାଖ୍ଲୀ ବା ଦାଖ୍ଲା କରିଯାଇଥିଲେ ଓ ସଂପୃକ୍ତ ଅନ୍ୟ ପକ୍ଷର ହିସାବକୁ ଯଥାଯଥ ରୂପେ ଦାଖ୍ଲୀ ବା ଦାଖ୍ଲା କରାଯାଇଥିଲେ ଅନିର୍ଦ୍ଧିଷ୍ଟ ହିସାବର ସାହାଯ୍ୟ ନେଇ ଭ୍ରମ ସଂଶୋଧନ କରାଯାଏ । (ଖ) ଓ (ଘ) ରେ ବର୍ଣ୍ଣିତ ତ୍ରୁଟିର ନାମ ଉଦାହରଣ ସ୍ୱରୂପ ଉଲ୍ଲେଖ କରାଯାଇ ପାରେ ।

## ପ୍ରଶ୍ନାବଳୀ (୪)

୧ । ବାକୀ ମେଳ କାହାକୁ କହନ୍ତି ? ଏହା କାହିଁକି ପ୍ରସ୍ତୁତ କରାଯାଏ ? ଏହା କ'ଣ ସର୍ବଦା ହିସାବ ବହିର ଅଙ୍କ ଶୁଦ୍ଧତା ପ୍ରମାଣ କରେ ?

୨ । କି ପ୍ରକାର ତ୍ରୁଟି ବାକୀ ମେଳ ଦ୍ୱାରା ଧରା ପଡ଼େ ତାହା ବର୍ଣ୍ଣନା କର ।

୩ । କେଉଁ ପ୍ରକାର ତ୍ରୁଟି ବାକୀ ମେଳ ସାହାଯ୍ୟରେ ଧରା ପଡ଼େ ନାହିଁ, ଉଦାହରଣ ସହ ତାହା ବୁଝାଅ ।

୪ । ବାକୀ ମେଳରେ ଯଦି ତ୍ରୁଟି ଅଛି ବୋଲି ଜଣାଯାଏ ତାହେଲେ ତାହା ଠିକ୍ କେଉଁଠାରେ ଅଛି ତାହା କପରି ଜଣାଯିବ ?

୫ । ନିମ୍ନଲିଖିତ ହିସାବର ବାକୀଗୁଡ଼ିକ ବାକୀ ମେଳର କେଉଁ ପାର୍ଶ୍ୱରେ ରହିବ ବୋଲି ତୁମେ ଆଶାକର ତାହା କାରଣ ସହ ବ୍ୟକ୍ତ କର : କ୍ରୟ ହିସାବ, ବିକ୍ରୟ ହିସାବ, ମୂଳଧନ ହିସାବ, ଆସ୍‌ବାବ୍ ପତ୍ର ହିସାବ, ବେତନ ହିସାବ ଓ ପ୍ରଦତ୍ତ ଘରଭଡ଼ା ହିସାବ ।

୬ । ନିମ୍ନଲିଖିତ ହିସାବଗୁଡ଼ିକର ବାକୀ, ବାକୀ ମେଳ ବିବରଣୀର ଦାତା ପାର୍ଶ୍ୱରେ ଅନ୍ତର୍ଭୁକ୍ତ ହୋଇଛି ; ତହିଁରେ ଯଦି ଭ୍ରମ ଥାଏ ତାହେଲେ କାରଣ ଦର୍ଶାଇ ସଂଶୋଧନ କର .

ବହିର୍ମୁଖୀ ଗାଡ଼ିଭଡ଼ା, ବହିର୍ମୁଖୀ ଫେରସ୍ତ, ଇମାରତ, ବିକ୍ରୟ, ପ୍ରଦତ୍ତ ବଟା, ପ୍ରାପ୍ତ ସୁଧ ଓ ନଗଦ ତହବିଲ ।

୭ । ନିମ୍ନଲିଖିତ ବିବରଣୀରୁ ଓମ୍‌ପ୍ରକାଶଙ୍କର ୩୧-୧୨-୧୯୬୨ ତାରିଖର ବାକୀ ମେଳ ପ୍ରସ୍ତୁତ କର :

| | ଟଙ୍କା | | ଟଙ୍କା |
|---|---|---|---|
| ମୂଳଧନ | ୨୯,୦୦୦ | ଯନ୍ତ୍ର | ୧୨,୦୦୦ |
| ଆଦ୍ୟ ସମ୍ଭାର | ୪,୮୦୦ | ଉପକରଣ | ୩,୦୦୦ |
| କ୍ରୟ | ୧୨,୯୦୦ | ବେତନ | ୨,୪୦୦ |
| ଅନ୍ତର୍ମୁଖୀ ଗାଡ଼ିଭଡ଼ା | ୧୩୫ | ମଜୁରି | ୧,୨୦୦ |
| ବିକ୍ରୟ | ୧୮,୬୨୫୫ | ଅନ୍ତର୍ମୁଖୀ ଫେରସ୍ତ | ୨୧୫ |
| ବହିର୍ମୁଖୀ ଗାଡ଼ିଭଡ଼ା | ୨୫୦ | ବହିର୍ମୁଖୀ ଫେରସ୍ତ | ୩୫୫ |
| ପ୍ରଦତ୍ତ ଘରଭଡ଼ା | ୧,୮୦୦ | ପ୍ରଦତ୍ତ ବଟା | ୧୨୦ |
| ପ୍ରାପ୍ତ କମିଶନ | ୨୧୦ | ପ୍ରାପ୍ତ ବଟା | ୨୩୦ |
| ବିବିଧ ଖାତକ | ୪,୫୦୦ | ବୀମା ପ୍ରିମିୟମ | ୩୦୦ |
| ବ୍ୟାଙ୍କରେ ଗଚ୍ଛିତ | ୫,୫୦୦ | ଇମାରତ | ୧୦,୦୦୦ |
| ନଗଦ ତହବିଲ | ୧,୦୩୦ | ବିବିଧ ମହାଜନ | ୧୨,୮୦୦ |
| | | ସାଧାରଣ ବ୍ୟୟ | ୧,୨୦୦ |

(ଉତ୍ତର—ବାକୀ ମେଳର ମୋଟ ପରିମାଣ – ୭୧,୩୫୦ ଟଙ୍କା)

୮ । ନିମ୍ନଲିଖିତ ବାକୀ ମେଳରେ ଭ୍ରମ ଥିଲେ ତାହା ସଂଶୋଧନ କର ।

| ବିବରଣ | ଦାୟୀ | ଦାତା |
|---|---|---|
| | ଟଙ୍କା | ଟଙ୍କା |
| ଅଦ୍ୟ ସମ୍ଭାର | ୯,୮୦୦ | |
| କ୍ରୟ | ୧୮,୯୦୦ | |
| ଅନ୍ତର୍ମୁଖୀ ଫେରସ୍ତ | | ୬୦୦ |
| ବହିର୍ମୁଖୀ ଫେରସ୍ତ | ୧,୨୦୦ | |
| ପ୍ରଦତ୍ତ ବଟା | | ୨୨୫ |
| ପ୍ରାପ୍ତ ବଟା | ୩୨୫ | |
| ଅନ୍ତର୍ମୁଖୀ ଗାଡ଼ିଭଡ଼ା | ୭୫ | |
| ବହିର୍ମୁଖୀ ଗାଡ଼ିଭଡ଼ା | | ୨୫୦ |
| ମୂଳଧନ | | ୧୫,୦୦୦ |
| ଆସବାବ୍ ପତ୍ର | ୩,୭୨୫ | |
| ଯନ୍ତ୍ର | ୭,୦୦୦ | |
| ସାଧାରଣ ବ୍ୟୟ | ୨,୦୦୦ | |
| ବିକ୍ରୟ | | ୨୫,୫୦୦ |
| ବ୍ୟାଙ୍କ୍‌ରେ ଗଚ୍ଛିତ | | ୧୧,୭୦୦ |
| ନଗଦ ତହବିଲ | | ୭୫୦ |
| ବିବିଧ ମହାଜନ | ୧୨,୦୦୦ | |
| | ୫୪,୦୨୫ | ୫୪,୦୨୫ |

(ଉତ୍ତର—ସଂଶୋଧିତ ବାକୀ ମେଳର ମୋଟ ପରିମାଣ ୫୪,୦୨୫ ଟଙ୍କା)

୯ । ନିମ୍ନଲିଖିତ ବିବରଣୀରୁ ୧୯୭୨ ସାଲ ଜୁନ୍ ୩୦ ତାରିଖର ବାକୀ ମେଳ ପ୍ରସ୍ତୁତ କର ।

| | ଟଙ୍କା | | ଟଙ୍କା |
|---|---|---|---|
| ଅଦ୍ୟ ସମ୍ଭାର | ୨,୩୫୫ | ମୂଳଧନ | ୧୦,୫୦୦ |
| କ୍ରୟ | ୧୧,୫୨୫ | ଉଠାଣ | ୧,୫୦୦ |
| ବିକ୍ରୟ | ୧୫,୪୨୮ | ମଜୁରି | ୩୦ |

| | | | |
|---|---|---|---|
| ଅନ୍ତର୍ମୁଖୀ ଗାଡ଼ିଭଡ଼ା | ୧୨୨ | ବେତନ | ୧,୨୦୦ |
| ବହିର୍ମୁଖୀ ଗାଡ଼ିଭଡ଼ା | ୨୦୫ | ପରିସ୍ଥି ବଟା | ୭୫ |
| ପାପ୍ତ ବଟା | ୧୨୫ | ମନୋହାରୀ ଦ୍ରବ୍ୟ | ୩୨୫ |
| ପ୍ରାପ୍ତ କମିଶନ୍ | ୨୫୦ | ଆସ୍‌ବାବ୍ ପତ୍ର | ୧,୮୦୦ |
| ଅନ୍ତର୍ମୁଖୀ ଫେରସ୍ତ | ୧୬୦ | ବହିର୍ମୁଖୀ ଫେରସ୍ତ | ୨୨୫ |
| ବିବିଧ ଖାତକ | ୨,୩୦୦ | ବିବିଧ ମହାଜନ | ୧,୬୦୦ |
| ବ୍ୟାଙ୍କ୍‌ରେ ଚଳିତ | ୫,୫୦୦ | ନଗଦ ତହବିଲ | ୧୧୧ |

(ଉତ୍ତର—ଅନିଶ୍ଚିତ ହିସାବର ଦାୟୀ ବାକୀ, ୧,୦୦୦ ଟଙ୍କା ;
ବାକୀ ମେଲର ମୋଟ ପରିମାଣ, ୨୮,୨୯୮ ଟଙ୍କା)

୧୦ । ଗୋଟିଏ ବ୍ୟବସାୟ ପ୍ରତିଷ୍ଠାନର ବାକୀ ମେଲ ପ୍ରସ୍ତୁତ କରିବାରେ ଦେଖାଗଲା ଯେ ଦାୟୀ ବାକୀର ମୋଟ ପରିମାଣ ଦାତା ବାକୀର ମୋଟ ପରିମାଣଠାରୁ ୨,୬୭୮ ଟଙ୍କା ଅଧିକ ହୋଇଛି । ପରେ ନିମ୍ନଲିଖିତ ତ୍ରୁଟି ଗୁଡ଼ିକ ଆବିଷ୍କୃତ ହେଲା । ଅବଶ୍ୟ ଅନିଶ୍ଚିତ ହିସାବକୁ ଦାତା କରି ବାକୀ ମେଲ ପ୍ରସ୍ତୁତ କରାଯାଇଛି । ତ୍ରୁଟିଗୁଡ଼ିକ ସଂଶୋଧନ କରିବା ନିମନ୍ତେ ଆବଶ୍ୟକୀୟ ରୋଜନାମା ଲେଖ ଓ ଅନିଶ୍ଚିତ ହିସାବ ପ୍ରସ୍ତୁତ କର ।

(୧) ଅନ୍ତର୍ମୁଖୀ ଫେରସ୍ତ ବହିର ଡିସେମ୍ବର ମାସର ମୋଟ ପରିମାଣ ୧୦୦ ଊଣା ଅଛି ।

(୨) ରାମମୂର୍ତ୍ତିଙ୍କଠାରୁ କ୍ରୟ କରାଯାଇଥିବା ୬୭୧ ଟଙ୍କା ମୂଲ୍ୟର ପଣ୍ୟ ସକାଶେ ତାଙ୍କ ହିସାବକୁ ୬୧୭ ଟଙ୍କା ପାଇଁ ଦାୟୀ କରାଯାଇଛି ।

(୩) ଦପ୍ତରରେ ବ୍ୟବହାର ସକାଶେ କ୍ରୟ କରାଯାଇଥିବା ୪୫୦ ଟଙ୍କା ମୂଲ୍ୟର ଆସ୍‌ବାବ୍ କ୍ରୟ ହିସାବ ବହିରେ ଅନ୍ତର୍ଭୁକ୍ତ ହୋଇଛି ।

(୪) କୃଷ୍ଣଚନ୍ଦ୍ରଙ୍କୁ ବିକ୍ରୟ କରାଯାଇଥିବା ୧୫୫ ଟଙ୍କା ମୂଲ୍ୟର ପଣ୍ୟ ସକାଶେ ତାଙ୍କ ହିସାବକୁ ଦାତା କରାଯାଇଛି ।

(୫) ୧,୦୦୦ ଟଙ୍କା ମୂଲ୍ୟର ପଣ୍ୟ ଧାରରେ ବିକ୍ରୟ କରାଯାଇଥିଲା, ମାତ୍ର ତାହା କ୍ରୟ ବହିରେ ଲିପିବଦ୍ଧ ହୋଇଛି, କିନ୍ତୁ ଗ୍ରାହକଙ୍କର ହିସାବକୁ ଦାୟୀ କରାଯାଇଛି ।

(ଉତ୍ତର—ଅନିଶ୍ଚିତ ହିସାବର ମୋଟ ପରିମାଣ-ଟ ୩,୨୮୮ ଙ୍କା)

# ପଞ୍ଚମ ପରିଚ୍ଛେଦ

## ଚୂଡ଼ାନ୍ତ ହିସାବ

### (୧ ମୂଳଧନ ଓ ମୁନାଫା ଜାତୀୟ ବ୍ୟୟ ମଧ୍ୟରେ ପାର୍ଥକ୍ୟ :

ଖତିୟାନରେ ଥିବା ସମସ୍ତ ହିସାବର ବାକୀଗୁଡ଼ିକ ଆଣି ବାକୀ ମେଳ ପ୍ରସ୍ତୁତ କରିବା ବିଷୟ ପୂର୍ବବର୍ତ୍ତୀ ପରିଚ୍ଛେଦରେ ବର୍ଣ୍ଣିତ ହୋଇଛି । ବାକୀ ମେଳରେ ଯଦି କୌଣସି ଗରମିଳ ନ ଥାଏ ତାହେଲେ ସାଧାରଣତଃ ଅନୁମାନ କରାଯାଏ ଯେ ହିସାବ ଲେଖିବାରେ କୌଣସି ତ୍ରୁଟି ନାହିଁ । ଏହାପରେ ଚୂଡ଼ାନ୍ତ ହିସାବ ବା କାଳାନ୍ତିକ ହିସାବ ପ୍ରସ୍ତୁତ କରାଯାଏ । ସାଧାରଣତଃ ଏହି ହିସାବ ବର୍ଷ ଶେଷରେ ପ୍ରସ୍ତୁତ କରାଯାଏ । ବ୍ୟବସାୟିକ ପ୍ରତିଷ୍ଠାନ ଯଦି ବୃହତ୍ ହୁଏ ଏବଂ ନେଣଦେଣର ସଂଖ୍ୟା ଅତ୍ୟଧିକ ହୁଏ ତାହେଲେ ଆବଶ୍ୟକ ହେଲେ ୬ ମାସ ପରେ ମଧ୍ୟ ଚୂଡ଼ାନ୍ତ ହିସାବ ପ୍ରସ୍ତୁତ କରାଯାଇ ପାରେ । କମ୍ପାନୀ ମାନଙ୍କରେ କମ୍ପାନୀର ଅଂଶଧାରୀମାନଙ୍କୁ ମଧ୍ୟବର୍ତ୍ତୀକାଳୀନ ଲଭ୍ୟାଂଶ ପ୍ରଦାନ କରିବା ନିମନ୍ତେ କେତେକ ସମୟରେ ୬ ମାସ ପରେ ଚୂଡ଼ାନ୍ତ ହିସାବ ପ୍ରସ୍ତୁତ କରାଯାଏ । ଏହି ବାର୍ଷିକ ବା ଷାଣ୍ମାସିକ ହିସାବ ପଞ୍ଜିକାର ବର୍ଷ ଅନୁଯାୟୀ ନ ହୋଇ ପାରେ । ବ୍ୟବସାୟ ଯେଉଁ ତାରିଖରେ ଆରମ୍ଭ କରାଯାଇଥାଏ ସେହି ତାରିଖର ୬ ମାସ ବା ବର୍ଷକ ପରେ ଏହି ବାର୍ଷିକ ବା ଷାଣ୍ମାସିକ ହିସାବ ପ୍ରସ୍ତୁତ କରାଯାଏ । ଉଦାହରଣ ସ୍ୱରୂପ ଯଦି କୌଣସି ବ୍ୟବସାୟିକ ପ୍ରତିଷ୍ଠାନ ମାର୍ଚ୍ଚ ମାସ ୧ ତାରିଖରେ ବ୍ୟବସାୟ ଆରମ୍ଭ କରିଥାଏ ତାହେଲେ ଏହି ପ୍ରତିଷ୍ଠାନର ଚୂଡ଼ାନ୍ତ ହିସାବ ପରବର୍ତ୍ତୀ ବର୍ଷର ଫେବୃୟାରୀ ମାସର ୨୮ ବା ୨୯ ତାରିଖରେ, ଜୁଲାଇ ମାସ ୧ ତାରିଖରେ ବ୍ୟବସାୟ ଆରମ୍ଭ କରାଯାଇଥିଲେ ପରବର୍ତ୍ତୀ ବର୍ଷର ଜୁନ୍ ୩୦ ତାରିଖରେ ଚୂଡ଼ାନ୍ତ ହିସାବ ପ୍ରସ୍ତୁତ କରାଯିବ । ଏହି ମାର୍ଚ୍ଚ ୧ ତାରିଖରୁ ପରବର୍ତ୍ତୀ ବର୍ଷର ଫେବୃୟାରୀ ୨୮ ବା ୨୯ ତାରିଖ ଓ ଜୁଲାଇ ୧ ତାରିଖରୁ ପରବର୍ତ୍ତୀ ବର୍ଷର ଜୁନ୍ ୩୦ ତାରିଖରେ ପୂର୍ଣ୍ଣ ହେଉଥିବା ବର୍ଷକୁ ହିସାବ-ବର୍ଷ କୁହାଯାଏ ।

ଏହି ଚୂଡ଼ାନ୍ତ ହିସାବ ପ୍ରସ୍ତୁତ କରିବାର ଉଦ୍ଦେଶ୍ୟ ଦ୍ୱିବିଧ ଯଥା, ବର୍ଷେ ବ୍ୟବସାୟ ପରିଚାଳନା କଲା ପରେ ବ୍ୟବସାୟରେ ଲାଭ ବା କ୍ଷତି ହୋଇଛି ତାହା ଜାଣିବା ଏବଂ

ବ୍ୟବସାୟର ଆର୍ଥିକ ଅବସ୍ଥା ସମ୍ବନ୍ଧରେ ସଠିକ ଓ ବିସ୍ତାରିତ ଜ୍ଞାନ ଲାଭ କରିବା, ଅର୍ଥାତ୍ ବ୍ୟବସାୟ ପ୍ରତିଷ୍ଠାନର ପରିସମ୍ପତ୍ତି କେତେ, ଅନ୍ୟମାନଙ୍କଠାରୁ ପ୍ରାପ୍ୟ ବା ପାଉଣା କେତେ ଏବଂ ଅନ୍ୟମାନଙ୍କୁ ଦେୟ ବା ଦେଣା କେତେ ଓ ବ୍ୟବସାୟୀ ବା ବ୍ୟବସାୟର ମାଲିକଙ୍କୁ ଦେୟ (ମୂଳଧନ ବାବଦ) କେତେ ତାହା ଜାଣିବା । ଏହି ଉଦ୍ଦେଶ୍ୟ ସାଧନ କରିବା ନିମନ୍ତେ ବ୍ୟବସାୟୀଙ୍କୁ ଦୁଇଟି ହିସାବ ଓ ଗୋଟିଏ ବିବରଣୀ ପ୍ରସ୍ତୁତ କରିବାକୁ ପଡ଼େ । ଅନ୍ୟ ଭାଷାରେ କହିବାକୁ ଗଲେ ଏହି ଚୂଡ଼ାନ୍ତ ହିସାବ ତିନି ଭାଗରେ ବିଭକ୍ତ ଯଥା, (କ) ମୋଟ ଲାଭ ଓ କ୍ଷତି ହିସାବ, (ଖ) ନିଟ୍ ଲାଭ ଓ କ୍ଷତି ହିସାବ ଓ (ଗ) ଉଦ୍‌ବୃତ୍ତ ପତ୍ର ।

ପଣ୍ୟ କ୍ରୟ କରିବାରେ କେତେ ବ୍ୟୟ କରାଗଲା, କେତେ ମୂଲ୍ୟରେ ତାହା ବିକ୍ରୟ କରାଗଲା ଏବଂ ଏହି କ୍ରୟ ବିକ୍ରୟରେ ଲାଭ ହେଲା ବା କ୍ଷତି ହେଲା ତାହା ମୋଟ ଲାଭ ଓ କ୍ଷତି ହିସାବରୁ ଜଣା ପଡ଼େ । ବ୍ୟବସାୟ ପରିଚାଳନା କରିବା ନିମନ୍ତେ ଅର୍ଥାତ୍ ମୋଟ ଲାଭ ଅର୍ଜନ କରିବା ନିମନ୍ତେ କି କି ବ୍ୟୟ କରାଗଲା ଓ ମୋଟ ଲାଭରୁ ସେହି ବ୍ୟୟ ବାଦ୍ ଦେଇ ଲାଭ ହେଲା କି କ୍ଷତି ହେଲା ତାହା ନିଟ୍ ଲାଭ ଓ କ୍ଷତି ହିସାବରୁ ଜଣାଯାଏ । ପରିସମ୍ପତ୍ତି ଓ ପାଉଣା ଏବଂ ଦେଣା ଓ ମୂଳଧନର ପରିମାଣ ଉଦ୍‌ବୃତ୍ତ ପତ୍ରରୁ ଜଣାଯାଏ ।

ମୋଟ ଲାଭ ଓ କ୍ଷତି ହିସାବ ପ୍ରସ୍ତୁତ କରିବା ସକାଶେ ବିଶେଷ କୌଣସି ସମସ୍ୟା ଉପୁଜେ ନାହିଁ, ମାତ୍ର ନିଟ୍ ଲାଭ ଓ କ୍ଷତି ହିସାବ ପ୍ରସ୍ତୁତ କରିବା ସମୟରେ କୌଣସି ଏକ ବ୍ୟୟ ବା ଆୟ ସେହି ହିସାବରେ ଅନ୍ତର୍ଭୁକ୍ତ କରାଯିବ କି ନାହିଁ ତାହାର ବିଚାର ତେତେ ସରଳ ନୁହେଁ । ପୂର୍ବରୁ କୁହାଗଲା ଯେ ମୋଟ ଲାଭ ଅର୍ଜନ କରିବା ନିମନ୍ତେ ଯେଉଁ ବ୍ୟୟ ସଂଘଟିତ ହୁଏ କେବଳ ସେହି ଶ୍ରେଣୀର ବ୍ୟୟ ଲାଭ ଓ କ୍ଷତି ହିସାବରେ ଅନ୍ତର୍ଭୁକ୍ତ ହେବ । ଏହାର ବିଚାର କିପରି କଠିନ ତାହା କେତୋଟି ଉଦାହରଣରୁ ଜଣାଯିବ ।

ମନେକର ଜଣେ ବ୍ୟବସାୟୀ ଦୋକାନରେ ବ୍ୟବହାର କରିବା ଉଦ୍ଦେଶ୍ୟରେ ୪୦୦ ଟଙ୍କା ମୂଲ୍ୟର ଆସ୍‌ବାବ୍ ପତ୍ର କ୍ରୟ କଲେ, କର୍ମଚାରୀଙ୍କୁ ୨୦୦ ଟଙ୍କା ବେତନ ଦେଲେ, ୨୫୦ ଟଙ୍କା ଘରଭଡ଼ା ଦେଲେ, ଗୋଟିଏ ଯନ୍ତ୍ର ୫,୦୦୦ ଟଙ୍କା ମୂଲ୍ୟ ଦେଇ କ୍ରୟ କଲେ । ଏହିପରି ଯେ କୌଣସି ବ୍ୟବସାୟ ପ୍ରତିଷ୍ଠାନରେ ବିଭିନ୍ନ ପ୍ରକାର ବ୍ୟୟ କରାଯାଏ । ଏ ଗୁଡ଼ିକ ବ୍ୟବସାୟ ସକାଶେ ବ୍ୟୟ କରାଯାଇଛି ଓ ବ୍ୟବସାୟ ପରିଚାଳିତ ହେବା ଫଳରେ ଲାଭ ଅର୍ଜିତ ହୋଇଛି । ବର୍ତ୍ତମାନ ପ୍ରଶ୍ନ ହେଉଛି ଯେ ଉପରୋକ୍ତ ସବୁଗୁଡ଼ିକ ବ୍ୟୟ ନିଟ୍ ଲାଭ ଓ କ୍ଷତି ହିସାବରେ ଅନ୍ତର୍ଭୁକ୍ତ କରାଯିବ କି ? ତେବେପରି ବ୍ୟବସାୟରେ ବିଭିନ୍ନ

ସୂତ୍ରରୁ ଅର୍ଥର ଆଗମ ହୁଏ, ଯେପରି ବ୍ୟବସାୟର ପରିସର ବୃଦ୍ଧି କରିବା ନିମନ୍ତେ ବ୍ୟବସାୟୀ ବ୍ୟାଙ୍କରୁ ୫,୦୦୦ ଟଙ୍କା ଋଣ ଆଣିଲେ, ତାଙ୍କର ଜଣେ ଗ୍ରାହକ ପୂର୍ବ ବାକି ବାବଦ ୪୦୦ ଟଙ୍କା ପରିଶୋଧ କଲେ, ଦପ୍ତରର ଗୋଟିଏ ଟାଇପ୍ ଯନ୍ତ୍ର ଅକାମି ହେବାରୁ ତାହାକୁ ୨୦୦ ଟଙ୍କା ମୂଲ୍ୟରେ ବିକ୍ରୟ କଲେ, ଅନ୍ୟ ଜଣେ ବେପାରୀଙ୍କର ପଣ୍ୟ ବିକ୍ରୟ କରିଦେବାରୁ ସେ ୭୦ ଟଙ୍କା କମିଶନ୍ ଦେଲେ । ଏହି ଆୟଗୁଡ଼ିକ ଲାଭ ଓ କ୍ଷତି ହିସାବରେ ଅନ୍ତର୍ଭୁକ୍ତ କରାଯିବ କି ନାହିଁ ତାହା ଏକ ସମସ୍ୟା ।

ଯଦି ଏହି ସମସ୍ୟାର ଯଥାଯଥ ଭାବରେ ସମାଧାନ ନ ହୁଏ ତାହେଲେ କିନ୍ତୁ ଲାଭ ଓ କ୍ଷତି ହିସାବ ଯେଉଁ ଲାଭ ବା କ୍ଷତି ଦର୍ଶାଇବ ତାହା ଦୋଷଯୁକ୍ତ ହେବ । ତେଣୁ କେଉଁ ଆୟ ଓ ବ୍ୟୟ ଲାଭ ଓ କ୍ଷତି ହିସାବରେ ଅନ୍ତର୍ଭୁକ୍ତ ହେବ ଓ କେଉଁଗୁଡ଼ିକ ଉଦ୍‌ବୃତ୍ତ ପତ୍ରରେ ପ୍ରକାଶିତ ହେବ ତାହା ନିର୍ଣ୍ଣୟ କରିବା ଏକାନ୍ତ ପ୍ରୟୋଜନ, ନଚେତ୍ ଉଭୟ ଭ୍ରମାତ୍ମକ ହେବ ଓ ଯେଉଁ ଉଦ୍ଦେଶ୍ୟରେ ଚୂଡ଼ାନ୍ତ ହିସାବ ପ୍ରସ୍ତୁତ କରାଯାଏ ତାହା ସାର୍ଥକ ହେବ ନାହିଁ ।

ଉପରୋକ୍ତ ଆୟ ଓ ବ୍ୟୟଗୁଡ଼ିକ ପର୍ଯ୍ୟାଲୋଚନା କଲେ ଦେଖାଯିବ ଯେ ସେଗୁଡ଼ିକ ଦୁଇଟି ଶ୍ରେଣୀର ଅନ୍ତର୍ଗତ, ଯଥା, ମୂଳଧନ ଜାତୀୟ ଓ ମୁନାଫା ଜାତୀୟ । ବସ୍ତୁତଃ ଯେ କୌଣସି ବ୍ୟବସାୟରେ ଯେତେ ପ୍ରକାର ବ୍ୟୟ ସଂଘଟିତ ହୁଏ ତାହା ହୁଏତ ମୂଳଧନ ଜାତୀୟ କିମ୍ବା ମୁନାଫା ଜାତୀୟ । ସେହିପରି ବ୍ୟବସାୟର ଯାବତୀୟ ଅର୍ଥାଗମ ବା ପ୍ରାପ୍ତି ତାହା ମୂଳଧନ ଜାତୀୟ କିମ୍ବା ମୁନାଫା ଜାତୀୟ । ଏଥି ମଧ୍ୟରୁ କେବଳ ମୁନାଫାଜାତୀୟ ଆୟ ଓ ବ୍ୟୟ ଲାଭ ଓ କ୍ଷତି ହିସାବରେ ଓ ମୂଳଧନ ଜାତୀୟ ଆୟ ଓ ବ୍ୟୟ ଉଦ୍‌ବୃତ୍ତ ପତ୍ରରେ ଅନ୍ତର୍ଭୁକ୍ତ ହେବ । ଏହି ଦୁଇ ଶ୍ରେଣୀର ଆୟ ଓ ବ୍ୟୟର ସଂଜ୍ଞା ଓ ପ୍ରକୃତି ନିମ୍ନରେ ଆଲୋଚିତ ହେଲା ।

ଯେଉଁ ବ୍ୟୟ ମାଧ୍ୟମରେ କୌଣସି ପରିସମ୍ପତ୍ତିର ସତ୍ତ୍ୱ ଅଧିକାର କରାଯାଏ, ଅର୍ଥାତ୍ କ୍ରୟ କରାଯାଏ ତାହା ସ୍ପର୍ଶନୀୟ କିମ୍ବା ଅସ୍ପର୍ଶନୀୟ ହେଉ ତାହାକୁ ମୂଳଧନ ଜାତୀୟ ବ୍ୟୟ କୁହାଯାଏ । ଅନ୍ୟ ଭାବରେ କହିଲେ ଯେଉଁ ବ୍ୟୟ ସାହାଯ୍ୟରେ ଏପରି କିଛି ଘଟେ ଯାହା ବ୍ୟବସାୟର ଉପାର୍ଜନ ଶକ୍ତିକୁ ବୃଦ୍ଧି କରେ ତାହାକୁ ମୂଳଧନ ଜାତୀୟ ବ୍ୟୟ କୁହାଯାଏ । ଏହି ପ୍ରକାର ବ୍ୟୟ ଦ୍ୱାରା ବ୍ୟବସାୟକୁ ଯେଉଁ ଉପକାର ବା ସୁଯୋଗ ସୁବିଧା ମିଳେ ତାହା ଚିରସ୍ଥାୟୀ ବା ଦୀର୍ଘକାଳ ସ୍ଥାୟୀ ହୁଏ । ଉଦାହରଣ ସ୍ୱରୂପ ଯଦି ବ୍ୟବସାୟ ନିମନ୍ତେ ଜମି, ଇମାରତ, ଯନ୍ତ୍ରପାତି, ଆସବାବ୍ ପତ୍ର କ୍ରୟ କରାଯାଏ ତାହେଲେ ବ୍ୟବସାୟ ତାହାକୁ ବର୍ଷ ବର୍ଷ ଧରି ବ୍ୟବହାର କରି ଲାଭବାନ୍ ହୋଇପାରିବ ।

ଯେଉଁ ବ୍ୟୟ ସାହାଯ୍ୟରେ ପ୍ରାପ୍ତ ଉପକାର ଅଳ୍ପଦିନ ସ୍ଥାୟୀ ହୁଏ ଓ ବର୍ଷକରୁ ଉର୍ଦ୍ଧ୍ୱ ହୁଏ ନାହିଁ ତାହାକୁ ମୁନାଫା ଜାତୀୟ ବ୍ୟୟ କୁହାଯାଏ । ଉଦାହରଣ ସ୍ୱରୂପ ମଜୁରି, ବେତନ, ଘରଭଡ଼ା, ଟିକସ, ସୁଧ ଇତ୍ୟାଦି ବ୍ୟୟର ନାମ ଉଲ୍ଲେଖ କରାଯାଇ ପାରେ । ଯଦି ଜଣେ ଶ୍ରମିକଙ୍କୁ କୌଣସି ଶ୍ରମ ବିନିମୟରେ ମଜୁରି ଦିଆଯାଏ ତାହେଲେ ମଜୁରି ବାବଦ ପ୍ରଦତ୍ତ ଅର୍ଥର ଉପକାର ସେହିଠାରେ ଶେଷ ହୋଇଯାଏ, ଅର୍ଥାତ୍ ଶ୍ରମିକ ଯଦି ଗୋଟିଏ ଦିନ ଶ୍ରମର ବିନିମୟରେ ୩ ଟଙ୍କା ପାଏ ତାହେଲେ ଏହି ତିନି ଟଙ୍କା ବ୍ୟୟର ଉପକାର ସେହିଦିନ ନିଃଶେଷ ହୁଏ, ପୁଣି ୩ ଟଙ୍କା ମଜୁରି ନ ପାଇଲେ ସେହି ଶ୍ରମିକ ଦ୍ୱିତୀୟ ଦିନ ପୁଣି କାର୍ଯ୍ୟ କରିବ ନାହିଁ । ସେହିପରି ଗୋଟିଏ ମାସ ବ୍ୟବସାୟରେ କାର୍ଯ୍ୟ କରିବା ହେତୁ ଜଣେ କର୍ମଚାରୀଙ୍କୁ ଯେଉଁ ବେତନ ଦିଆଯାଏ ତାହାର ଉପକାର ସେହି ମାସ ଶେଷରେ ନିଃଶେଷ ହୋଇଯାଏ, ପରବର୍ତ୍ତୀ ମାସରେ ପୁଣି ବେତନ ଦିଆ ନ ଗଲେ ସେହି କର୍ମଚାରୀ ପରବର୍ତ୍ତୀ ମାସରେ ବ୍ୟବସାୟରେ କାର୍ଯ୍ୟ କରିବେ ନାହିଁ । ସେହିପରି ଘରଭଡ଼ା, ଟିକସ ପ୍ରଭୃତି ବ୍ୟୟର ଉପକାର ଅତି ଅଳ୍ପକାଳ ସ୍ଥାୟୀ ହୁଏ, ତେଣୁ ଏହି ବ୍ୟୟଗୁଡ଼ିକ ମୁନାଫା ଜାତୀୟ ।

ବ୍ୟବସାୟରେ ବ୍ୟବହୃତ ହେବା ନିମନ୍ତେ ଟାଇପ ମେସିନ୍ କ୍ରୟ କରାଗଲେ ସେହି ବ୍ୟୟ ମୂଳଧନ ଜାତୀୟ ହେବ; କିନ୍ତୁ ଖରାପ ହୋଇଗଲେ ତାହାର ମରାମତି ସକାଶେ ଯେଉଁ ବ୍ୟୟ କରାଯିବ ତାହା ମୁନାଫା ଜାତୀୟ ବୋଲି ବିବେଚିତ ହେବ । ଗୋଟିଏ ଯନ୍ତ୍ର ୫,୦୦୦ ଟଙ୍କା ମୂଲ୍ୟରେ କ୍ରୟ କରାଗଲା ଏବଂ ଯନ୍ତ୍ରଟିକୁ କାରଖାନାରେ ସ୍ଥାପନ କରିବାକୁ ୫୦ ଟଙ୍କା ମଜୁରି ସ୍ୱରୂପ ବ୍ୟୟ କରାଗଲା । ଯେହେତୁ ଯନ୍ତ୍ରଟି ଥରେ କ୍ରୟ କରାଗଲେ ବହୁଦିନ ଯାବତ୍ ବ୍ୟବସାୟରେ ବ୍ୟବହୃତ ହୋଇ ପାରିବ ଏବଂ ଏହାଦ୍ୱାରା ବ୍ୟବସାୟ ପୂର୍ବାପେକ୍ଷା ଅଧିକ ପରିମାଣରେ ପଣ୍ୟ ଉତ୍ପାଦନ କରିପାରିବ ଓ ତାହା ବିକ୍ରୟ କରି ଅଧିକ ଲାଭବାନ୍ ହୋଇପାରିବ ତେଣୁ ୫,୦୦୦ ଟଙ୍କାର ବ୍ୟୟ ମୂଳଧନ ଜାତୀୟ । ସାଧାରଣତଃ ମଜୁରି ସ୍ୱରୂପ ଦିଆଯାଇଥିବା ଟଙ୍କାର ବ୍ୟୟ ମୁନାଫା ଜାତୀୟ ହୁଏ, ମାତ୍ର ଏହି କ୍ଷେତ୍ରରେ ଯେହେତୁ ବ୍ୟବସାୟର ଏକ ପରିସମ୍ପତ୍ତିକୁ ସ୍ଥାପନ କରିବା ନିମନ୍ତେ ମଜୁରି ଦିଆଯାଇଛି ତେଣୁ ତାହା ମୂଳଧନ ଜାତୀୟ ହେବ । ଏହି ବ୍ୟୟର ଉପକାର ତତ୍‌କ୍ଷଣାତ୍ ନିଃଶେଷ ହେବ ନାହିଁ, ଯନ୍ତ୍ରଟି ବ୍ୟବସାୟରେ ଥିବା ପର୍ଯ୍ୟନ୍ତ ବ୍ୟବସାୟ ତହିଁରୁ ଉପକାର ଲାଭ କରିବ । ଗୋଟିଏ ସିନେମା ପ୍ରେକ୍ଷାଗାରରେ ଗୋଟିଏ ଗ୍ୟାଲେରୀ ସ୍ଥାପନ କରାଗଲା ଓ କେତେକ ଚେୟାର ଭାଙ୍ଗି-ଯାଇଥିବାରୁ ମରାମତି କରାଗଲା, ଏଥି ସକାଶେ ଯଥାକ୍ରମେ ୩,୦୦୦ ଟଙ୍କା ଓ ୬୦୦ ଟଙ୍କା ଖର୍ଚ୍ଚ ହେଲା । ଏ କ୍ଷେତ୍ରରେ ନୂତନ ଗ୍ୟାଲେରୀ ସ୍ଥାପନ କରାଯିବାରୁ ଉପସ୍ଥିତ ସଂଖ୍ୟକ 'ସିଟ୍' (ସ୍ଥାନ) ଅପେକ୍ଷା ସିନେମାର ପ୍ରେକ୍ଷାଗାରରେ ଅଧିକ ସିଟ୍ ହେଲା । ଏହାଦ୍ୱାରା ସିନେମା କମ୍ପାନୀ ଅଧିକ ଦର୍ଶକଙ୍କ ସକାଶେ ଟିକେଟ ବିକ୍ରୟ କରି ଲାଭବାନ୍ ହେବ, ତେଣୁ

୩,୦୦୦ ଟଙ୍କାର ବ୍ୟୟ ମୂଳଧନ ଜାତୀୟ ହେବ । ଯେହେତୁ ୩୦୦ ଟଙ୍କା ବ୍ୟୟରେ କେବଳ କେତୋଟି ଚୌକି ମରାମତି କରାଗଲା ଓ ଏହାଦ୍ୱାରା ଦର୍ଶକଙ୍କର ସୁବିଧା ହେଲେ ମଧ୍ୟ ପ୍ରେକ୍ଷାଗାରର ଆସନ ସଂଖ୍ୟା ବୃଦ୍ଧି ପାଇ ନ ଥିଲା ତେଣୁ ଏହି ବ୍ୟୟ ମୁନାଫା ଜାତୀୟ ବୋଲି ବିବେଚିତ ହେବ ।

ସମୟର ଗତି ଯୋଗୁଁ କିମ୍ବା କ୍ରମାନ୍ୱୟ ଭାବରେ ବ୍ୟବହୃତ ହେବା ଯୋଗୁଁ ପରିସମ୍ପତ୍ତିର ମୂଲ୍ୟ ହ୍ରାସ ଘଟେ । ଉଦାହରଣ ସ୍ୱରୂପ ମନେକର ବ୍ୟବସାୟ ସକାଶେ ଗୋଟିଏ ନୂତନ ଯନ୍ତ୍ର କ୍ରୟ କରାଗଲା । ପ୍ରଥମ ବର୍ଷ ଏହି ଯନ୍ତ୍ରଟି ଖୁବ୍ ଭଲ କାର୍ଯ୍ୟ କରିବ, କିନ୍ତୁ ସମୟର ଗତି ସଙ୍ଗେ ସଙ୍ଗେ ଏହା କ୍ରମେ ପୁରାତନ ହୋଇଯିବ ଏବଂ ଏହି ର କାର୍ଯ୍ୟ କ୍ଷମତା ହ୍ରାସ ପାଇବ । କାର୍ଯ୍ୟ କ୍ଷମତା ହ୍ରାସ ପାଇଲେ ଏହାର ମୂଲ୍ୟ ମଧ୍ୟ ହ୍ରାସ ପାଏ । ପ୍ରତ୍ୟେକ ଜୀବର ଯେପରି ଆୟୁ ସୀମିତ ସେହିପରି ପ୍ରତ୍ୟେକ ପରିସମ୍ପତ୍ତିର କାର୍ଯ୍ୟକାଳ ଏବଂ ସ୍ଥାୟିତ୍ୱ ମଧ୍ୟ ସୀମିତ । ଏପରି ଏକ ସମୟ ଆସେ ଯେତେବେଳେ କୌଣସି ଏକ ପରିସମ୍ପତ୍ତି ସମ୍ପୂର୍ଣ୍ଣରୂପେ ଅକାମୀ ହୋଇଯାଏ ଓ ତାହା ସଙ୍ଗେ ସଙ୍ଗେ ଏହାର ମୂଲ୍ୟ ମଧ୍ୟ କ୍ରମେ ହ୍ରାସ ପାଇ ନିଃଶେଷ ହୋଇଯାଏ । ଏଥିନିମନ୍ତେ ବ୍ୟବସାୟର ପରିସମ୍ପତ୍ତିର ପ୍ରତି ବର୍ଷ ଯେଉଁ ମୂଲ୍ୟ ହ୍ରାସ ଘଟେ ତାହାକୁ ହିସାବକୁ ଅଣାଯାଏ । ଏ ବିଷୟରେ ପରବର୍ତ୍ତୀ ଏକ ପରିଚ୍ଛେଦରେ ବିସ୍ତାରିତ ଆଲୋଚନା କରାଯିବ । ଏହି ମୂଲ୍ୟ ହ୍ରାସ ମୁନାଫା ଜାତୀୟ ବ୍ୟୟ ବୋଲି ବିବେଚିତ ହୁଏ ।

ମୂଳଧନ ଜାତୀୟ ବ୍ୟୟ ଓ ମୁନାଫା ଜାତୀୟ ବ୍ୟୟର କେତେକ ନିର୍ଦ୍ଦିଷ୍ଟ ଲକ୍ଷଣ ନିମ୍ନରେ ବର୍ଣ୍ଣିତ ହେଲା ।

**(୧) ବାସ୍ତବ ଅସ୍ତିତ୍ୱ**— ମୂଳଧନ ଜାତୀୟ ବ୍ୟୟ ବିନିମୟରେ ଯେଉଁ ପରିସମ୍ପତ୍ତି କ୍ରୟ କରାଯାଏ ବା ତାହାର ସତ୍ତ୍ୱାଧିକାର ଲାଭ କରାଯାଏ ସାଧାରଣତଃ ତାହାର ଅସ୍ତିତ୍ୱ ଥାଏ ଏବଂ ଏହାକୁ ସ୍ପର୍ଶ କରାଯାଇ ପାରେ । ଅବଶ୍ୟ କେତେକ କ୍ଷେତ୍ରରେ ଏହାର ବ୍ୟତିକ୍ରମ ଦେଖାଯାଏ ଯେପରି ସୁନାମ, ପ୍ରାରମ୍ଭିକ ବ୍ୟୟ, ଇତ୍ୟାଦି ।

ମୁନାଫା ଜାତୀୟ ବ୍ୟୟର କୌଣସି ଅସ୍ତିତ୍ୱ ନ ଥାଏ । ସାଧାରଣତଃ କୌଣସି ସେବାର ବିନିମୟରେ ଏହି ବ୍ୟୟ ସଂଘଟିତ ହୁଏ, ତେଣୁ ଏହାର ଅସ୍ତିତ୍ୱ ଦେଖିବାକୁ ମିଳେ ନାହିଁ ।

(୨) **ସ୍ଥାୟିତ୍ୱ** — ମୂଳଧନ ଜାତୀୟ ବ୍ୟୟ ବିନିମୟରେ ଯେଉଁ ପରିସମ୍ପତ୍ତି ଲାଭ କରାଯାଏ ବା କ୍ରୟ କରାଯାଏ ତାହା ଦୀର୍ଘକାଳ ସ୍ଥାୟୀ ହୁଏ । ବ୍ୟବସାୟ ଏହି ପରିସମ୍ପତ୍ତିର ଉପକାର ବହୁକାଳ ଯାବତ୍ ଲାଭ କରିପାରେ ।

କିନ୍ତୁ ମୁନାଫା ଜାତୀୟ ବ୍ୟୟର ଉପକାର ତତ୍‌କ୍ଷଣାତ୍ ନିଃଶେଷ ହୁଏ, ଅନ୍ତତଃ ବର୍ଷକ ମଧ୍ୟରେ ନିଶ୍ଚୟ ନିଃଶେଷ ହୋଇଯାଏ

(୩) **ଭବିଷ୍ୟତ୍ ଲାଭ** — ମୂଳଧନ ଜାତୀୟ ବ୍ୟୟର ଲାଭ ଭବିଷ୍ୟତରେ ଆଶା କରାଯାଇପାରେ ; କିନ୍ତୁ ମୁନାଫା ଜାତୀୟ ବ୍ୟୟରେ ଭବିଷ୍ୟତ୍‌ରେ କୌଣସି ଲାଭ ଆଶା କରାଯାଇ ପାରେ ନାହିଁ ।

(୪) **କ୍ଷୟ ପ୍ରାପ୍ତି** — ମୂଳଧନ ଜାତୀୟ ବ୍ୟୟ ବିନିମୟରେ ଲବ୍ଧ ପରିସମ୍ପତ୍ତିର କ୍ଷୟ ପ୍ରାପ୍ତି ହୁଏ, ଅବଶ୍ୟ ଏହା କ୍ରମେ କ୍ରମେ ଏବଂ ଅତି ଧୀରେ ଧୀରେ କ୍ଷୟ ପ୍ରାପ୍ତ ହୁଏ ।

ମୁନାଫା ଜାତୀୟ ବ୍ୟୟ ବିନିମୟରେ ବସ୍ତୁ ଲାଭ କରାଯାଉ ନ ଥିବାରୁ ଏହାର କ୍ଷୟ ପ୍ରାପ୍ତିର ପ୍ରଶ୍ନ ଉଠେ ନାହିଁ ।

(୫) **ଆବର୍ତ୍ତନ** — ମୂଳଧନ ଜାତୀୟ ବ୍ୟୟର ଆବର୍ତ୍ତନ କ୍ୱଚିତ୍ ଘଟେ କିମ୍ବା ଦୀର୍ଘକାଳ ପରେ ଘଟେ ।

କିନ୍ତୁ ମୁନାଫା ଜାତୀୟ ବ୍ୟୟ ପୁନଃ ପୁନଃ ସଂଘଟିତ ହୁଏ ।

(୬) **ସମ୍ଭୋଗ** — ମୂଳଧନ ଜାତୀୟ ବ୍ୟୟ ବିନିମୟରେ ଲବ୍ଧ ବସ୍ତୁ ବହୁ କାଳ ବ୍ୟାପୀ ସମ୍ଭୋଗ କରାଯାଇ ପାରେ ।

ମୁନାଫା ଜାତୀୟ ବ୍ୟୟ ବିନିମୟରେ ପ୍ରାପ୍ତ ସେବା ସଙ୍ଗେ ସଙ୍ଗେ ଭୋଗ ବା ବ୍ୟବହାର କରାଯାଏ ।

## ବିଳମ୍ବିତ ମୁନାଫା ଜାତୀୟ ବ୍ୟୟ :

ବ୍ୟବସାୟ ପ୍ରତିଷ୍ଠାନରେ ଆଉ ଏକ ପ୍ରକାର ବ୍ୟୟ ଦେଖାଯାଏ ଯାହା ମୁନାଫା ଜାତୀୟ କିନ୍ତୁ ଏହି ବ୍ୟୟିତ ଅର୍ଥର ବିନିମୟରେ ପ୍ରାପ୍ତ ଉପକାର ଏକ ବର୍ଷ ମଧ୍ୟରେ ନିଃଶେଷ ନ ହୋଇ ଦୁଇ, ତିନି କିମ୍ବା ଚାରି ବର୍ଷ ପର୍ଯ୍ୟନ୍ତ ରହେ । କେତେ କାଳ ପର୍ଯ୍ୟନ୍ତ ଏହାର ଉପକାର ରହିବ ତାହା ନିର୍ଦ୍ଦିଷ୍ଟ ନୁହେଁ, ତେବେ ସାଧାରଣତଃ ଏହା ପାଞ୍ଚ ବର୍ଷରୁ ଊର୍ଦ୍ଧ୍ୱ ହୁଏ ନାହିଁ । ଉଦାହରଣ ସ୍ୱରୂପ ବିଜ୍ଞାପନ, ଯନ୍ତ୍ରପାତିର ବିଶେଷ ଧରଣର ମରାମତି, ବ୍ୟବସାୟର ଏକ ସ୍ଥାନରୁ ଅନ୍ୟ ଏକ ସୁବିଧାଜନକ ସ୍ଥାନକୁ ସ୍ଥାନାନ୍ତର କରିବାର ବ୍ୟୟର ନାମ ଉଲ୍ଲେଖ କରାଯାଇପାରେ । ଯେହେତୁ ଏହାର ଉପକାର ବହୁଦିନ ଯାବତ୍ ରହେ ତେଣୁ ଏହି ବ୍ୟୟର ମୋଟ ଅର୍ଥକୁ ଗୋଟିଏ ବର୍ଷର ବ୍ୟୟ ରୂପେ ବିବେଚନା ନ କରି ଉପକାର ଲାଭ କରୁଥିବା ସମୟ ମଧ୍ୟରେ ଭାଗ କରି ଦିଆଯାଏ ।

ମନେକର ଗୋଟିଏ ନୂତନ ପଣ୍ୟକୁ ବଜାରରେ ବିକ୍ରି କରିବା ସକାଶେ ପ୍ରଥମ ବର୍ଷ ୫,୦୦୦ ଟଙ୍କା ବିଜ୍ଞାପନ ଓ ପ୍ରଚାର ନିମନ୍ତେ ବ୍ୟୟ କରାଗଲା । ଏହା ଅନୁମାନ କରାଗଲା ଯେ ପାଞ୍ଚ ବର୍ଷ ପର୍ଯ୍ୟନ୍ତ ବିଜ୍ଞାପନ ଓ ପ୍ରଚାର ନିମନ୍ତେ ଆଉ କୌଣସି ବ୍ୟୟ କରାଯିବ ନାହିଁ । ଏହି କ୍ଷେତ୍ରରେ ପ୍ରତି ବର୍ଷ ୧,୦୦୦ ଟଙ୍କାର ବ୍ୟୟ ହିସାବକୁ ଅଣାଯିବ । ପାଞ୍ଚ ବର୍ଷ ପର୍ଯ୍ୟନ୍ତ ଏହି ବ୍ୟୟର ଉପକାର ବ୍ୟବସାୟ ଭୋଗ କରୁଥିବାରୁ ଏହାକୁ ବିଳମ୍ବିତ ମୁନାଫା ଜାତୀୟ ବ୍ୟୟ କୁହାଯାଏ ।

## ବିକାଶମୂଳକ ବ୍ୟୟ :

କେତେକ ବ୍ୟବସାୟରେ କେତେ ବର୍ଷ ଧରି ପ୍ରଥମେ କେବଳ ବ୍ୟୟ କରିବାକୁ ପଡ଼େ । ସେ ସମୟରେ ବ୍ୟବସାୟର କୌଣସି ଆୟ ନ ଥାଏ । ଉଦାହରଣ ସ୍ୱରୂପ ଚା, କଫି, ରବର ବଗିଚାର ନାମ ଉଲ୍ଲେଖ କରାଯାଇ ପାରେ । ଯଦିଓ ଗଛ ଲଗାଇବା, ବଗିଚା ଓ ଗଛର ଯତ୍ନ ନେବା, ଗଛଗୁଡ଼ିକରେ ପାଣି ଦେବା ପ୍ରଭୃତି କାର୍ଯ୍ୟର ବ୍ୟୟ ସାଧାରଣ କ୍ଷେତ୍ରରେ ମୁନାଫା ଜାତୀୟ ହୁଏ ଏହି ସବୁ କ୍ଷେତ୍ରରେ ତାହା ମୂଳଧନ ଜାତୀୟ ବୋଲି ବିବେଚିତ ହେବ । ଗଛଗୁଡ଼ିକ ବଢ଼ିଲା ପରେ ଏଥିରୁ ଯେଉଁ ପତ୍ର, ଫଳ ବା ରସ ସଂଗୃହୀତ ହେବ ତାହା ପଣ୍ୟ ରୂପେ ବିକ୍ରୟ କରାଯିବ । ତେଣୁ ପ୍ରାଥମିକ ଅବସ୍ଥାରେ ବଗିଚାଗୁଡ଼ିକ ସକାଶେ ଯାହା କିଛି ବ୍ୟୟ କରାଯିବ ତାହା ମୂଳଧନ ଜାତୀୟ ବ୍ୟୟ ବୋଲି ବିବେଚିତ ହେବ ।

## ମୂଳଧନ ଜାତୀୟ ଅର୍ଥର ପ୍ରାପ୍ତି ଓ ମୂଳଧନ ଜାତୀୟ ଆୟ :

ବ୍ୟବସାୟ ପ୍ରତିଷ୍ଠାନର ମାଲିକ ବ୍ୟବସାୟ ଆରମ୍ଭ କରିବାକୁ ମୂଳଧନ ସ୍ୱରୂପ ଯେଉଁ ଅର୍ଥ ବ୍ୟବସାୟକୁ ଆଣନ୍ତି ତାହା ମୂଳଧନ ଜାତୀୟ ପ୍ରାପ୍ତି ବୋଲି କୁହାଯାଏ ।

ଆବଶ୍ୟକ ବେଳେ ବ୍ୟବସାୟରେ ନିୟୋଗ କରିବା ନିମନ୍ତେ ବ୍ୟବସାୟୀ ଯଦି ବ୍ୟାଙ୍କରୁ କିମ୍ବା ଅନ୍ୟ କୌଣସି ସୂତ୍ରରୁ ଋଣ ସଂଗ୍ରହ କରନ୍ତି ତାହେଲେ ସେହି ଅର୍ଥ ମଧ୍ୟ ମୂଳଧନ ଜାତୀୟ ପ୍ରାପ୍ତି ବୋଲି ବିବେଚିତ ହେବ । ଯଦି ବ୍ୟବସାୟୀ କୌଣସି ସ୍ଥାୟୀ ସମ୍ପତ୍ତି ବିକ୍ରୟ କରନ୍ତି ତାହେଲେ ସେହି ବିକ୍ରୟ ଲବ୍ଧ ଧନ ମଧ୍ୟ ମୂଳଧନ ଜାତୀୟ ପ୍ରାପ୍ତି ବୋଲି ପରିଗଣିତ ହେବ ।

ଯଦି ହିସାବ ଖାତାରେ ଲେଖାଥିବା ମୂଲ୍ୟ ଅପେକ୍ଷା ଉକ୍ତ ସମ୍ପତ୍ତିର ବିକ୍ରୟ ଲବ୍ଧ ଅର୍ଥ ଅଧିକ ହୁଏ ତାହେଲେ ଉଭୟ ପରିମାଣର ବ୍ୟବଧାନକୁ ମୂଳଧନ ଜାତୀୟ ଆୟ ବୋଲି କୁହାଯାଏ ।

## ମୁନାଫା ଜାତୀୟ ପ୍ରାପ୍ତି ଓ ଆୟ :

ପଣ୍ୟ ବିକ୍ରୟ ଲବ୍ଧ ଅର୍ଥ, ପ୍ରାପ୍ତ ଘରଭଡ଼ା, ପ୍ରାପ୍ତ କମିଶନ, ଅପର ବ୍ୟକ୍ତିଙ୍କୁ ଦିଆଯାଇଥିବା ଋଣ ବାବଦ ପ୍ରାପ୍ତ ସୁଧ, ପ୍ରାପ୍ତ ବଟ୍ଟା ପ୍ରଭୃତିକୁ ମୁନାଫା ଜାତୀୟ ପ୍ରାପ୍ତି ବୋଲି କୁହାଯାଏ । ହିସାବ ବର୍ଷ ସଂକ୍ରାନ୍ତ ମୁନାଫା ଜାତୀୟ ପ୍ରାପ୍ତ ଅର୍ଥକୁ ସେହି ହିସାବ ବର୍ଷର ମୁନାଫା ଜାତୀୟ ଆୟ କୁହାଯାଏ । କେବଳ ମୁନାଫା ଜାତୀୟ ଆୟ ଲାଭ ଓ କ୍ଷତି ହିସାବରେ ଅନ୍ତର୍ଭୁକ୍ତ ହେବ । ମୂଳଧନ ଜାତୀୟ ପ୍ରାପ୍ତି କିମ୍ବା ଆୟ ଲାଭ ଓ କ୍ଷତି ହିସାବରେ ଅନ୍ତର୍ଭୁକ୍ତ ନ ହୋଇ ଉଦ୍‌ବୃତ୍ତି ପତ୍ରରେ ପ୍ରକାଶିତ ହେବ ।

ମୂଳଧନ ଜାତୀୟ ଓ ମୁନାଫା ଜାତୀୟ ବ୍ୟୟର ଦୃଷ୍ଟାନ୍ତ ନିମ୍ନରେ ପ୍ରଦତ୍ତ ହେଲା ।

### ଦୃଷ୍ଟାନ୍ତ (୧)

ନିମ୍ନଲିଖିତ ବ୍ୟୟଗୁଡ଼ିକ ମୂଳଧନ ଜାତୀୟ କି ମୁନାଫା ଜାତୀୟ ତାହା ସ୍ଥିର କର :

(କ) କାରଖାନା ସ୍ଥାପନ କରିବା ଉଦ୍ଦେଶ୍ୟରେ ୫,୦୦୦ ଟଙ୍କା ମୂଲ୍ୟରେ ଜମି କ୍ରୟ କରାଗଲା । ସେହି ଜମିରେ ଥିବା କୋଠା ଘର ସକାଶେ ୧୦,୦୦୦ ଟଙ୍କା ଦିଆଗଲା ; ଏହି କୋଠାକୁ ଆମୂଳଚୂଳ ପରିବର୍ତ୍ତନ, ପରିବର୍ଦ୍ଧନ ଓ ମରାମତି ନିମନ୍ତେ ४,୦୦୦ ଟଙ୍କା ବ୍ୟୟ କରାଗଲା ।

(ଖ) ୫,୫୦୦ ଟଙ୍କା ମୂଲ୍ୟରେ ଏକ ନୂତନ ଯନ୍ତ୍ର କ୍ରୟ କରାଗଲା ; ଏହି ଯନ୍ତ୍ରକୁ କାରଖାନାରେ ସ୍ଥାପନ କରିବା ନିମନ୍ତେ ଇଞ୍ଜିନିୟରଙ୍କୁ ४୦୦ ଟଙ୍କା ପାରିଶ୍ରମିକ

ଓ ଶ୍ରମିକଙ୍କୁ ମଜୁରି ବାବଦ ୧୦୦ ଟଙ୍କା ଦିଆଗଲା । ଏହି ଯନ୍ତ୍ରଟି କାରଖାନାକୁ ଆଣିବା ନିମନ୍ତେ ୫୦ ଟଙ୍କା ଟ୍ରକ୍ ଭଡ଼ା ପଡ଼ିଥିଲା ।

(ଗ) ପୁରାତନ ଯନ୍ତ୍ରର ମୂଲ୍ୟ ହ୍ରାସ ବାବଦ ୫୦୦ ଟଙ୍କା ଯନ୍ତ୍ରର ମୂଲ୍ୟରୁ ବାଦ୍ ଦିଆଗଲା । କାରଖାନାରେ ଉତ୍ପାଦନ କାର୍ଯ୍ୟରେ ନିଯୁକ୍ତ ଶ୍ରମିକଙ୍କୁ ସପ୍ତାହ ଶେଷରେ ୧୫୦ ଟଙ୍କା ମଜୁରି ଦିଆଗଲା, ମିସ୍ତ୍ରୀ ଓ କାର୍ଯ୍ୟର ତତ୍ତ୍ୱାବଧାରକଙ୍କୁ ବେତନ ସ୍ୱରୂପ ଯଥାକ୍ରମେ ୧୭୫ ଟଙ୍କା ଓ ୨୨୫ ଟଙ୍କା ଦିଆଗଲା ।

(ଘ) ଜମିର ଖଜଣା ବାବଦ ୩୦ ଟଙ୍କା, ଘରର ମ୍ୟୁନିସିପାଲିଟି ଟିକସ ବାବଦ ୩୦୦ ଟଙ୍କା ଦେଇ ଦେଲେ । ଅଗ୍ନି ବୀମା ବାବଦ ୫୦ ଟଙ୍କା ପ୍ରିମିୟମ ଦିଆଗଲା । ମୋଟା ଦେପାରୀଙ୍କୁ ୫୫ ଟଙ୍କା ବଟା ଓ ପଣ୍ୟ ବିକ୍ରୟକାରୀଙ୍କୁ ୧୫୦ ଟଙ୍କା କମିଶନ ଦିଆଗଲା ।

## ସମାଧାନ :

| ବିବରଣ | ବ୍ୟୟ | |
|---|---|---|
| | ମୂଳଧନ ଜାତୀୟ | ମୁନାଫା ଜାତୀୟ |
| | ଟଙ୍କା | ଟଙ୍କା |
| (କ) ଜମି କ୍ରୟ | ୬,୦୦୦ | |
| କୋଠାଘରର ମୂଲ୍ୟ | ୧୦,୦୦୦ | |
| * ଘରର ପରିବର୍ତ୍ତନ ପ୍ରଭୃତି | ୪,୦୦୦ | |
| (ଖ) ନୂତନ ଯନ୍ତ୍ରର କ୍ରୟ | ୨,୫୦୦ | |
| + ଇଞ୍ଜିନିଆରଙ୍କର ପାରିଶ୍ରମିକ | ୪୦୦ | |
| + ଯନ୍ତ୍ର ସ୍ଥାପନ ମଜୁରି | ୧୦୦ | |
| + ଯନ୍ତ୍ରର ପରିବହନ | ୫୦ | |
| (ଗ) ପୁରାତନ ଯନ୍ତ୍ରର ମୂଲ୍ୟ ହ୍ରାସ | | ୫୦୦ |
| ଶ୍ରମିକଙ୍କର ମଜୁରି | | ୧୫୦ |
| ମିସ୍ତ୍ରୀଙ୍କର ବେତନ | | ୧୭୫ |
| ତତ୍ତ୍ୱାବଧାରକଙ୍କର ବେତନ | | ୨୨୫ |
| (ଘ) ଜମିର ଖଜଣା | | ୩୦ |
| ମ୍ୟୁନିସିପାଲିଟି ଟିକସ | | ୩୦୦ |
| ଅଗ୍ନିବୀମାର ପ୍ରିମିୟମ | | ୫୦ |
| ମୋଟା ଦେପାରୀଙ୍କ ବଟା | | ୫୫ |
| ବିକ୍ରୟକାରୀଙ୍କୁ କମିଶନ | | ୧୫୦ |

ମନ୍ତବ୍ୟ : * ଘରେ ପରିବର୍ତ୍ତନ, ପରିବର୍ଦ୍ଧନ ଓ ବିଶେଷ ମରାମତି କରାଯାଇଥିବାରୁ ତାହାର ଉପକାର ଦୀର୍ଘକାଳ ସ୍ଥାୟୀ ହେବ, ତେଣୁ ସେହି ସଂକ୍ରାନ୍ତ ବ୍ୟୟ ମୂଳଧନ ଜାତୀୟ ବୋଲି ବିବେଚିତ ହେବ । କିନ୍ତୁ ଘରର ବାର୍ଷିକ ମରାମତି, ସଫେଇ, ଚୂନକାମ ପ୍ରଭୃତି ମୁନାଫା ଜାତୀୟ ରୂପେ ପରିଗଣିତ ହେବ । ଯନ୍ତ୍ରର ହେତୁପର ସାଧାରଣ ମରାମତି ବ୍ୟୟ ମୁନାଫା ଜାତୀୟ କିନ୍ତୁ ଯଦି ବିଶେଷ ଧରଣର ମରାମତି ହୁଏ ଯଦ୍ଦ୍ୱାରା ଯନ୍ତ୍ରର ଉତ୍ପାଦନ ଶକ୍ତି ବୃଦ୍ଧି ପାଏ ଓ ଏହା-ଦ୍ୱାରା ବ୍ୟବସାୟ ଅଧିକ ଲାଭବାନ୍ ହୁଏ ଓ ଏହି ଉପକାର ଦୀର୍ଘକାଳ ସ୍ଥାୟୀ ହୁଏ ତାହେଲେ ସେହି ବ୍ୟୟ ମୂଳଧନ ଜାତୀୟ ବୋଲି ବିବେଚିତ ହେବ ।

+ ନୂତନ ଯନ୍ତ୍ର କ୍ରୟ କରି ତାହାକୁ କାରଖାନାକୁ ଆଣି ସ୍ଥାପନ କରି ଚାଲୁ କରିବା ପର୍ଯ୍ୟନ୍ତ ଯାବତୀୟ ବ୍ୟୟ ମୂଳଧନ ଜାତୀୟ ବୋଲି ବିବେଚିତ ହେବ ।

## ଦୃଷ୍ଟାନ୍ତ (୨)

ନିମ୍ନଲିଖିତ ଅର୍ଥର ପ୍ରାପ୍ତି ମୂଳଧନ ଜାତୀୟ ଅବା ମୁନାଫା ଜାତୀୟ ତାହା ସ୍ଥିର କର ।

(କ) ବ୍ୟବସାୟର ମାଲିକ ବ୍ୟବସାୟ ଆରମ୍ଭ କରିବା ସକାଶେ ୫,୦୦୦ ଟଙ୍କା ଆଣିଲେ । (ଖ) ପଣ୍ୟ ବିକ୍ରୟ କରି ସେ ୮୦୦ ଟଙ୍କା ପାଇଲେ । (ଗ) ଯୁଗଳ କିଶୋର ବ୍ୟବସାୟରୁ ନେଇଥିବା ୧,୦୦୦ ଟଙ୍କା ପରିଶୋଧ କଲେ । (ଘ) ତାଙ୍କଠାରୁ ୩୦ ଟଙ୍କା ସୁଧ ମିଳିଲା । (ଙ) ବ୍ୟବସାୟକୁ ଚନ୍ଦ୍ରକାନ୍ତ ଯୋଶିଙ୍କଠାରୁ ୧୮ ଟଙ୍କା ବଟା ମିଳିଲା । (ଚ) ଅନ୍ୟ ଏକ ବ୍ୟବସାୟୀଙ୍କର କେତେକ ପଣ୍ୟ ବିକ୍ରୟ କରିବାରୁ ସେ ୫୫ ଟଙ୍କା କମିଶନ ଦେଲେ । (ଛ) ଘରଭଡ଼ା ବାବଦ ୬୫ ଟଙ୍କା ମିଳିଲା ।

**ସମାଧାନ :**

| ବିବରଣ | ଅର୍ଥର ପ୍ରାପ୍ତି | |
|---|---|---|
| | ମୂଳଧନ ଜାତୀୟ | ମୁନାଫା ଜାତୀୟ |
| | ଟଙ୍କା | ଟଙ୍କା |
| * (କ) ବ୍ୟବସାୟ ଆରମ୍ଭ କରିବାକୁ ଆଣିଥିବା ଅର୍ଥ | ୫,୦୦୦ | |
| + (ଖ) ପଣ୍ୟ ବିକ୍ରୟର ଅର୍ଥ | | ୮୦୦ |
| × (ଗ) ପ୍ରାପ୍ତ ଋଣ ପରିଶୋଧର ଅର୍ଥ | ୧,୦୦୦ | |
| (ଘ) ଋଣ ବାବଦ ପ୍ରାପ୍ତ ସୁଧ | | ୩୦ |
| (ଙ) ପ୍ରାପ୍ତ ବଟା | | ୧୮ |
| (ଚ) ପ୍ରାପ୍ତ କମିଶନ୍ | | ୫୫ |
| (ଛ) ପ୍ରାପ୍ତ ଘରଭଡ଼ା | | ୬୫ |

ମନ୍ତବ୍ୟ (୧) : ✳ ବ୍ୟବସାୟ ଆରମ୍ଭ କରିବା ନିମନ୍ତେ ଯେଉଁ ଅର୍ଥ ଅଣାଯାଏ ତାହାକୁ ମୂଳଧନ କୁହାଯାଏ, ସୁତରାଂ ତାହା ମୂଳଧନ ଜାତୀୟ ପ୍ରାପ୍ତି ।

+ ପଣ୍ୟ ବିକ୍ରୟରୁ ଯେଉଁ ଅର୍ଥାଗମ ହୁଏ ତାହା ମୁନାଫା ଜାତୀୟ ।

× ଋଣ ବାବଦ ଟଙ୍କା ଆଣିବା ଏବଂ ଅନ୍ୟ ବ୍ୟକ୍ତିଙ୍କୁ ଦିଆ ଯାଇଥିବା ଋଣର ପରିଶୋଧ ବାବଦ ମିଳିଥିବା ଟଙ୍କା ଉଭୟ ମୂଳଧନ ଜାତୀୟ ।

ମନ୍ତବ୍ୟ (୨) : ଏକା ବସ୍ତୁ ଗୋଟିଏ ବ୍ୟବସାୟ ପକ୍ଷରେ ପଣ୍ୟ ଓ ଅନ୍ୟ ଏକ ବ୍ୟବସାୟ ପକ୍ଷରେ ପରିସମ୍ପତ୍ତି ହୋଇପାରେ । ଉଦାହରଣ ସ୍ୱରୂପ, ଗୋଟିଏ ଟାଇପ୍ କରିବା ଯନ୍ତ୍ର ନିଆଯାଉ, ଯେଉଁ ବ୍ୟବସାୟ ଦପ୍ତରରେ ବ୍ୟବହାର କରିବା ନିମନ୍ତେ ଏହାକୁ କ୍ରୟ କରିବ ତାହା ପକ୍ଷରେ ଏହା ଏକ ପରିସମ୍ପତ୍ତି ବୋଲି ବିବେଚିତ ହେବ ଏବଂ ଏହି ବ୍ୟବସାୟ ପକ୍ଷରେ ଏହି ପରିସମ୍ପତ୍ତିର କ୍ରୟ ମୂଲ୍ୟ ଏକ ମୂଳଧନ ଜାତୀୟ ବ୍ୟୟ । କିନ୍ତୁ ଟାଇପ କରିବା ଯନ୍ତ୍ର ବିକ୍ରୟ କରୁଥିବା କମ୍ପାନି ପକ୍ଷରେ ଏହା ଏକ ପଣ୍ୟ ବୋଲି ବିବେଚିତ ହେବ ଓ ସେହି ପଣ୍ୟ-ବିକ୍ରୟ-ଲବ୍ଧ ଅର୍ଥ ମୁନାଫା ଜାତୀୟ ବୋଲି ପରିଗଣିତ ହେବ ।

## ଦୃଷ୍ଟାନ୍ତ ( ୩ )

ପ୍ୟାରଡାଇଜ୍ ପିକ୍‌ଚର କମ୍ପାନି ଲିମିଟେଡ୍ ୧୯୬୨ ସାଲ ଡିସେମ୍ବର ୩୧ ତାରିଖରେ ଶେଷ ହେଉଥିବା ବର୍ଷରେ ଗୋଟିଏ ସିନେମା ଘର ନିର୍ମାଣ କରିବା ନିମନ୍ତେ ନିମ୍ନଲିଖିତ ବ୍ୟୟ କଲେ :

( ) ୨,୦୦୦ ଟଙ୍କା ବ୍ୟୟରେ ସିନେମା ହଲ୍ ସକାଶେ ପୁରାତନ ଆସ୍‌ବାବ୍ କ୍ରୟ କରାଗଲା । ଏହାର ମରାମତି ନିମନ୍ତେ ୫୦୦ ଟଙ୍କା ବ୍ୟୟିତ ହେଲା ଓ ଏହାକୁ ସିନେମା ହଲ୍‌ରେ ସ୍ଥାପନ କରିବା ସକାଶେ ମଜୁରି ବାବଦ ୧୦୦ ଟଙ୍କା ଖର୍ଚ୍ଚ ହେଲା ।

(୨) ସିନେମା ଚାଲୁ କରିବା ସକାଶେ ଆବଶ୍ୟକୀୟ ଲାଇସେନ୍‌ସ ପାଇବା ସକାଶେ ୮,୦୦୦ ଟଙ୍କା ବ୍ୟୟ ହେଲା । ସେହି ବର୍ଷ ମଧ୍ୟରେ ଆଇନ ଲଙ୍ଘନ କରିଥିବାରୁ ୧୦୦ ଟଙ୍କା ଜୋରିମାନା ଦେବାକୁ ପଡ଼ିଲା ଓ ଆସନ୍ତା ବର୍ଷ ସକାଶେ ଲାଇସେନ୍‌ସର ନବୀକରଣ ନିମନ୍ତେ ୨୦୦ ଟଙ୍କା ଦିଆଗଲା ।

(୩) ୧-୭-୧୯୭୨ ତାରିଖରେ ୨୦୦ ଟଙ୍କା ଅଗ୍ନିବୀମା ବାବଦ ବର୍ଷକର ପ୍ରିମିୟମ୍ ଦିଆଗଲା ।

(୪) ସିନେମା ଘର ନିର୍ମାଣ ହେବା ପୂର୍ବରୁ ୮୦୦ ଟଙ୍କା ବ୍ୟୟରେ ଗୋଟିଏ ଶୁଲଘର ନିର୍ମାଣ କରାଯାଇଥିଲା ଓ ସିନେମା ଘରର ନିର୍ମାଣ କାର୍ଯ୍ୟ ଶେଷ ହେବାରୁ ଏହି ଶୁଲ ଘରକୁ ଭାଙ୍ଗି ଦିଆଗଲା ।

(୫) ସିନେମା ଖୋଲା ହେବାର ପ୍ରଥମ ସପ୍ତାହରେ ୩,୦୦୦ ଟଙ୍କା ମୂଲ୍ୟର ଟିକେଟ ବିନା ମୂଲ୍ୟରେ ବାଣ୍ଟି ଦିଆଗଲା ।

ଉପରୋକ୍ତ ବ୍ୟୟଗୁଡ଼ିକ କପରି ଭାବରେ ଶ୍ରେଣୀଭୁକ୍ତ କରାଯିବ ତାହା ବ୍ୟାଖ୍ୟା କର ।

## ସମାଧାନ :

(୧) ସିନେମା କମ୍ପାନୀ ସକାଶେ ଆସବାବ୍ ଏକ ପରିସମ୍ପତ୍ତି, ତେଣୁ ୫,୦୦୦ ଟଙ୍କା ମୂଲ୍ୟରେ କ୍ରୟ କରାଯାଇଥିବା ଆସବାବ୍, ପୁରାତନ ହେଲେ ମଧ୍ୟ ଏକ ମୂଳଧନ ଜାତୀୟ ବ୍ୟୟ । ଏହାର ମରାମତି ଖର୍ଚ୍ଚ ୫୦୦ ଟଙ୍କା ମଧ୍ୟ ମୂଳଧନ ଜାତୀୟ ହେବ, କାରଣ ଏହି ମରାମତି ଦ୍ୱାରା ଆସବାବ୍‌ର ମୂଲ୍ୟ ବୃଦ୍ଧି ପାଇବ ଓ ଏହାର ଉପକାର ଦୀର୍ଘକାଳ ସ୍ଥାୟୀ ହେବ । ବାର୍ଷିକ ମରାମତି ବ୍ୟୟ ଅବଶ୍ୟ ମୁନାଫା ଜାତୀୟ ବ୍ୟୟ, କିନ୍ତୁ ଏହି ସ୍ୱତନ୍ତ୍ର ମରାମତି ବ୍ୟୟ ମୂଳଧନ ଜାତୀୟ ରୂପେ ପରିଗଣିତ ହେବ । ଏହି ଆସବାବ୍‌କୁ ସ୍ଥାପନ କରିବାର ମଜୁରି ବାବଦ ମଧ୍ୟ ୧୦୦ ଟଙ୍କା ମୂଳଧନ ଜାତୀୟ ବ୍ୟୟ । ସାଧାରଣତଃ ଶ୍ରମିକର ମଜୁରି ମୁନାଫା ଜାତୀୟ; କିନ୍ତୁ କୌଣସି ପରିସମ୍ପତ୍ତିକୁ ସ୍ଥାପନ କରିବାର ବ୍ୟୟ ମୂଳଧନ ଜାତୀୟ ବୋଲି ବିବେଚିତ ହେବ ।

(୨) ଯେହେତୁ ବିନା ଲାଇସେନ୍‌ସରେ ସିନେମା ଖୋଲି ହେବ ନାହିଁ ଏବଂ କୌଣସି ଆୟ ହୋଇ ପାରିବ ନାହିଁ, ତେଣୁ ଏଥିନିମନ୍ତେ ବ୍ୟୟିତ ୮,୦୦୦ ଟଙ୍କା ମୂଳଧନ ଜାତୀୟ ବୋଲି ବିବେଚିତ ହେବ । ଜୋରିମାନା ବାବଦ ଦିଆଯାଇଥିବା ୧୦୦ ଟଙ୍କା ମୁନାଫା ଜାତୀୟ ଓ ଆସନ୍ତା ବର୍ଷ ସକାଶେ ଲାଇସେନ୍‌ସର ନବୀକରଣ ନିମନ୍ତେ ବ୍ୟୟ କରଯାଇଥିବା ୨୦୦ ଟଙ୍କା ମୁନାଫା ଜାତୀୟ ବ୍ୟୟ ସତ କିନ୍ତୁ ଯେହେତୁ ଏହା ଚଳନ୍ତି ବର୍ଷର ବ୍ୟୟ ନୁହେଁ ତେଣୁ ଏହା ଏକ ପରିସମ୍ପତ୍ତି ରୂପେ ଗଣିତ ହେବ ଓ ଏହା ଲାଭ ଓ କ୍ଷତି ହିସାବରେ ଅନ୍ତର୍ଭୁକ୍ତ ନ ହୋଇ ଉଦ୍‌ବୃତ୍ତ ପତ୍ରରେ ପ୍ରକାଶିତ ହେବ ।

(ଗ) ଅଗ୍ରିମ ବା ଯେ କୌଣସି ବୀମାର ପ୍ରିମିୟମ ମୁନାଫା ଜାତୀୟ ବ୍ୟୟ । କିନ୍ତୁ ଯେହେତୁ ଏହି କମ୍ପାନୀର ହିସାବ ବର୍ଷ ଜାନୁୟାରୀ ପହିଲାରୁ ଆରମ୍ଭ ହୋଇ ଡିସେମ୍ବର ୩୧ ତାରିଖରେ ଶେଷ ହେଉଛି ତେଣୁ ୧-୬-୧୯୬୬ ତାରିଖଠାରୁ ୩୧-୧୨-୧୯୬୬ ତାରିଖ ପର୍ଯ୍ୟନ୍ତ ୬ ମାସର ପ୍ରିମିୟମ୍ ଅର୍ଥାତ୍ ୧୦୦ ଟଙ୍କା ଏହି ହିସାବ ବର୍ଷର ଲାଭ ଓ କ୍ଷତି ହିସାବକୁ ନିଆଯିବ, ଅବଶିଷ୍ଟ ୧୦୦ ଟଙ୍କା 'ଅଗ୍ରିମ ପ୍ରଦତ୍ତ ପ୍ରିମିୟମ' ରୂପେ ଉଦ୍‌ବୃତ୍ତ ପତ୍ରର ପରିସମ୍ପତ୍ତି ପାର୍ଶ୍ୱରେ ପ୍ରକାଶିତ ହେବ ।

(ଘ) ସିନେମାର ଚିରସ୍ଥାୟୀ ଗୃହ ନିର୍ମାଣ କାର୍ଯ୍ୟରେ ସହାୟତା କରିବା ନିମନ୍ତେ ଏହି ଗୃହଘର ନିର୍ମିତ ହୋଇଥିବାରୁ ଏହି ସଂକ୍ରାନ୍ତ ଟ ୮୦୦ ଙ୍କାର ବ୍ୟୟ ମୂଳଧନ ଜାତୀୟ ବ୍ୟୟ ରୂପେ ପରିଗଣିତ ହେବ ।

(ଙ) ସିନେମା ଗୃହକୁ ଜନପ୍ରିୟ କରିବା ଉଦ୍ଦେଶ୍ୟରେ ଏହି ବ୍ୟୟ କରାଯାଇଛି ବା ଆୟ ତ୍ୟାଗ କରାଯାଇଛି । ଏହାର ଫଳାଫଳ ବିଜ୍ଞାପନ ଓ ପ୍ରଚାର କାର୍ଯ୍ୟ ସହିତ ସମାନ । ବିଜ୍ଞାପନ ଓ ପ୍ରଚାର କାର୍ଯ୍ୟର ବ୍ୟୟ ସାଧାରଣତଃ ମୁନାଫା ଜାତୀୟ, କିନ୍ତୁ ଏପରି କାର୍ଯ୍ୟର ଉପକାର ଯଦି ବର୍ଷକରୁ ଅଧିକ କାଳ ସ୍ଥାୟୀ ହୁଏ ତାହେଲେ ତାହା ବିଳମ୍ବିତ ମୁନାଫା ଜାତୀୟ ବୋଲି ବିବେଚିତ ହୁଏ । ଏ କ୍ଷେତ୍ରରେ ମଧ୍ୟ ଏହା ଆଶା କରାଯାଇ ପାରେ ଯେ ଏହି ୩,୦୦୦ ଟଙ୍କାର ବ୍ୟୟର ଉପକାରିତା ଗୋଟିଏ ବର୍ଷରେ ନିଃଶେଷ ହେବ ନାହିଁ । ତେଣୁ ଏହି ବ୍ୟୟକୁ ବିଳମ୍ବିତ ମୁନାଫା ଜାତୀୟ ବ୍ୟୟ ବୋଲି ବିବେଚନା କରାଯିବ ଓ ଏହାର ଉପକାର ଅନ୍ତତଃ ୩ ବର୍ଷ ପର୍ଯ୍ୟନ୍ତ ସ୍ଥାୟୀ ହେବ, ଏହି ଅନୁମାନରେ ପ୍ରତି ବର୍ଷ ୧,୦୦୦ ଟଙ୍କା ଲାଭ ଓ କ୍ଷତି ହିସାବକୁ ଅଣାଯିବ ଓ ଅବଶିଷ୍ଟ ୨,୦୦୦ ଟଙ୍କା 'ଅଗ୍ରିମ ପ୍ରଦତ୍ତ ପ୍ରଚାର ବ୍ୟୟ' ବା 'ଅସମାଯୋଜିତ ପ୍ରଚାର ବ୍ୟୟ' ରୂପେ ଉଦ୍‌ବୃତ୍ତ ପତ୍ରର ପରିସମ୍ପତ୍ତି ପାର୍ଶ୍ୱରେ ପ୍ରକାଶିତ ହେବ ।

## ଦୃଷ୍ଟାନ୍ତ (୪)

ନିମ୍ନଲିଖିତ ବ୍ୟୟଗୁଡ଼ିକ ମଧ୍ୟରୁ କେଉଁଟି ମୂଳଧନ ଜାତୀୟ ଓ କେଉଁଟି ମୁନାଫା ଜାତୀୟ ତାହା ବ୍ୟକ୍ତ କର :

(୧) ଗୋଟିଏ କାରଖାନାରୁ ଯନ୍ତ୍ରପାତି ଉଠାଇ ନେଇ ଅଧିକ ସୁବିଧାଜନକ ସ୍ଥାନରେ ଅବସ୍ଥିତ ଏକ କାରଖାନାରେ ସ୍ଥାପନ କଲେ । ଏଥିନିମନ୍ତେ ୨,୪୦୦ ଟଙ୍କା ବ୍ୟୟ କରାଗଲା ।

(୨) ପୁରାତନ କାରଖାନାରୁ ନୂତନ କାରଖାନାକୁ କଞ୍ଚାମାଲ, ପ୍ରଭୃତି ଆଣିବା ସକାଶେ ୨୦୦ ଟଙ୍କା ବ୍ୟୟିତ ହେଲା ।

(୩) ଯନ୍ତ୍ରପାତିକୁ ସ୍ଥାନାନ୍ତରିତ କରିବା ପୂର୍ବରୁ ଗୋଟିଏ ଯନ୍ତ୍ର ଅକାମି ହୋଇଯାଇଥିବାରୁ ଏହାକୁ ୮୦୦ ଟଙ୍କାରେ ବିକ୍ରୟ କରାଗଲା, ମାତ୍ର ହିସାବଖାତାରେ ଏହାର ମୂଲ୍ୟ ସେତେବେଳେ ୧,୫୦୦ ଟଙ୍କା ଥିଲା । ନୂତନ କାରଖାନାରେ ୩,୫୦୦ ଟଙ୍କା ମୂଲ୍ୟରେ ଏକ ନୂତନ ଯନ୍ତ୍ର ସ୍ଥାପନ କରାଗଲା ।

(୪) ନୂତନ ଯନ୍ତ୍ରକୁ ସ୍ଥାପନ କରିବା ନିମନ୍ତେ ୩୦୦ ଟଙ୍କା ଖର୍ଚ୍ଚ ହେଲା ।

(୫) ନୂତନ କାରଖାନାଟି ଅନ୍ୟ ଏକ କମ୍ପାନୀ ୫ ବର୍ଷ ବ୍ୟବହାର କରିବା ପରେ ବିକ୍ରୟ କରିଥିଲେ । ତେଣୁ ଏହାର ମରାମତି ଓ ଆବଶ୍ୟକ ପରିବର୍ତ୍ତନ କରିବା ନିମନ୍ତେ ୧,୮୦୦ ଟଙ୍କା ବ୍ୟୟିତ ହେଲା ।

## ସମାଧାନ :

(୧) ଓ (୨) ଏହି ଉଭୟ ବ୍ୟୟ କାରଖାନାର ସ୍ଥାନାନ୍ତର ଯୋଗୁଁ ସଂଘଟିତ ହୋଇଛି ଏବଂ ଏହାର ଉପକାର ବର୍ଷକରୁ ଅଧିକ କାଳ ସ୍ଥାୟୀ ହେବ, ତେଣୁ ଏହା ବିଲମ୍ବିତ ମୁନାଫା ଜାତୀୟ ବ୍ୟୟ ବୋଲି ବିବେଚିତ ହେବ ଓ ସମସ୍ତ ବ୍ୟୟ ତିନି କିମ୍ବା ଚାରି ବର୍ଷ ମଧ୍ୟରେ ହ୍ରାସ କରାଯିବ । ପ୍ରତି ବର୍ଷ ଏକ ଚତୁର୍ଥାଂଶ ବ୍ୟୟ ଲାଭ ଓ କ୍ଷତି ହିସାବକୁ ଅଣାଯାଇ ଅବଶିଷ୍ଟ ପରିମାଣ ଉଦ୍‌ବୃତ୍ତ ପତ୍ରରେ ପ୍ରକାଶ ପାଇବ । ଏହି ଅବଶିଷ୍ଟାଂଶ ପରିମାଣ 'ଅଗ୍ରିମ ଦତ୍ତ ଖର୍ଚ୍ଚ' ହିସାବ କିମ୍ବା 'ଅନିଶ୍ଚିତ ହିସାବ'ର ଦାୟୀ ବାକି ରୂପେ ଉଦ୍‌ବୃତ୍ତ ପତ୍ରର ପରିସମ୍ପତ୍ତି ପାର୍ଶ୍ୱରେ ପ୍ରଦର୍ଶିତ ହେବ ।

(୩) ଅକାମି ଯନ୍ତ୍ରକୁ ହିସାବ ଖାତାରେ ଥିବା ମୂଲ୍ୟ ଅପେକ୍ଷା ଊଣା ମୂଲ୍ୟରେ ବିକ୍ରୟ କରିବା ଦ୍ୱାରା ଯେଉଁ ୭୦୦ ଟଙ୍କା କ୍ଷତି ହେଲା ତାହା ମୁନାଫା ଜାତୀୟ କ୍ଷତି ବୋଲି ବିବେଚିତ ହେବ । (କିନ୍ତୁ ଯଦି କୌଣସି ପରିସ୍ଥିତିରେ କୌଣସି ପରିସମ୍ପତ୍ତି ହିସାବ ଖାତାରେ ଥିବା ମୂଲ୍ୟ ଅପେକ୍ଷା ଅଧିକ ମୂଲ୍ୟରେ ବିକ୍ରୟ କରାଯାଏ ତାହେଲେ ତାହା ମୂଳଧନ ଜାତୀୟ ଆୟ ରୂପେ ବିବେଚିତ ହେବ । )

ଯେହେତୁ ୩,୫୦୦ ଟଙ୍କା ମୂଲ୍ୟରେ ନୂତନ ଯନ୍ତ୍ର କ୍ରୟ କରାଯାଇଛି ତେଣୁ ଏହି ବ୍ୟୟ ମୂଳଧନ ଜାତୀୟ ଅଟେ ।

(୪) ନୂତନ ଯନ୍ତ୍ର ସ୍ଥାପନ କରିବା ନିମନ୍ତେ ଯେଉଁ ବ୍ୟୟ ସଂଘଟିତ ହୁଏ ତାହା ମୂଳଧନ ଜାତୀୟ ବ୍ୟୟ ବୋଲି ବିବେଚିତ ହେବ, କାରଣ ଏହି ଖର୍ଚ୍ଚ ବିନା

ଯନ୍ତ୍ର କୌଣସି ଉତ୍ପାଦନ କାର୍ଯ୍ୟ କରିବାକୁ ସକ୍ଷମ ହେବ ନାହିଁ ଏବଂ ଏହି ବ୍ୟୟ ବିକ୍ରୟରେ ଯେଉଁ ଉପକାର ମିଳିବ ତାହା ଦୀର୍ଘକାଳ ସ୍ଥାୟୀ ହେବ ।

(୫) କୌଣସି ପରିସମ୍ପତ୍ତିର ବିଶେଷ ମରାମତି, ପରିବର୍ତ୍ତନ ଓ ପରିବର୍ଦ୍ଧନ ନିମନ୍ତେ ସଂଘଟିତ ବ୍ୟୟ ମୂଳଧନ ଜାତୀୟ ବୋଲି ବିବେଚିତ ହେବ କାରଣ ଏହା ପରିସମ୍ପତ୍ତିର କାର୍ଯ୍ୟଦକ୍ଷତା ଓ ଆୟୁ ବୃଦ୍ଧି କରେ ।

## ୨ । ମୋଟ ଲାଭ ଓ କ୍ଷତି ହିସାବ :

ପ୍ରତ୍ୟେକ ବ୍ୟବସାୟ ଲାଭ କରିବା ଉଦ୍ଦେଶ୍ୟରେ ଗଢ଼ାଯାଏ । ସାଧାରଣତଃ କୃତି ବ୍ୟବସାୟିକ ପ୍ରତିଷ୍ଠାନ ପଣ୍ୟ ଦ୍ରବ୍ୟ ଉତ୍ପାଦନକାରୀ କିମ୍ବା ମୋଟା ବେପାରୀଙ୍କଠାରୁ ଏକକାଳୀନ ଥୋକ୍‌ରେ ବା ବେଶୀ ପରିମାଣରେ ପଣ୍ୟ ଦ୍ରବ୍ୟ କ୍ରୟରେ କ୍ରୟ କରି ଖରିଦ୍‌ଦାର ବା ଗ୍ରାହକମାନଙ୍କୁ କ୍ରୟ ମୂଲ୍ୟ ଅପେକ୍ଷା ଅଧିକ ମୂଲ୍ୟରେ ବିକ୍ରୟ କରନ୍ତି । କ୍ରୟ ମୂଲ୍ୟ ଓ ବିକ୍ରୟ ମୂଲ୍ୟ ମଧ୍ୟରେ ଥିବା ବ୍ୟବଧାନହିଁ ଲାଭର ଉତ୍ସ । ଅବଶ୍ୟ ବ୍ୟବଧାନର ସମ୍ପୂର୍ଣ୍ଣ ପରିମାଣ ଯେ ପ୍ରତିଷ୍ଠାନର ଲାଭ ଏପରି ନୁହେଁ, କାରଣ ଏହି ଲାଭରୁ ମାଲ ବୋଝେଇ କରିବା ଖର୍ଚ୍ଚ, ଗାଡ଼ିଭଡ଼ା, ନଗର ଶୁଳ୍କ, ମାଲ ଉତାରିବାର କୁଲି ଖର୍ଚ୍ଚ ପ୍ରଭୃତି ପ୍ରତ୍ୟକ୍ଷ ବ୍ୟୟ ବାଦ୍ ଦିଆଯିବ । ଏହି ସମସ୍ତ ଖର୍ଚ୍ଚ ବାଦ୍‌ଦେବା ପରେ ଯାହା ଅବଶିଷ୍ଟ ରହିବ ତାହାକୁ ମୋଟ ଲାଭ କୁହାଯାଏ ।

ଯଦି ବ୍ୟବସାୟିକ ପ୍ରତିଷ୍ଠାନ ପଣ୍ୟ ଦ୍ରବ୍ୟ ଉତ୍ପାଦନ କରି ବିକ୍ରୟ କରେ ତାହେଲେ ଉତ୍ପାଦନ କରିବା ସକାଶେ ଅଧିକା ଆଉ କେତେକ ବ୍ୟୟ କରିବା ଆବଶ୍ୟକ ହେବ, ଯେପରି ମଜୁରି, କାରଖାନାର ଭଡ଼ା, ବିଦ୍ୟୁତ୍ ଶକ୍ତି, ଜାଳେଣି ତେଲ, କୋଇଲା, କିମ୍ବା ପୋଡ଼ା କୋଇଲା ଇତ୍ୟାଦି । ଉତ୍ପାଦନ ହିସାବରେ ଏହାର ସବିଶେଷ ଆଲୋଚନା କରାଯିବ ।

ସାଧାରଣତଃ ମୋଟ ଲାଭ ଓ କ୍ଷତି ହିସାବରେ ନିମ୍ନଲିଖିତ ହିସାବର ବାକି ଅନ୍ତର୍ଭୁକ୍ତ ହୁଏ :

(୧) ଆଦ୍ୟ ସମ୍ଭାର,

(୨) କ୍ରୟ ହିସାବ,

(୩) ବହିର୍ମୁଖୀ ଫେରସ୍ତ ହିସାବ,

(୪) ଅନ୍ତର୍ମୁଖୀ ଗାଡ଼ିଭଡ଼ା ହିସାବ,

(୫) ମଜୁରି ହିସାବ,

(୬) ବିକ୍ରୟ ହିସାବ,

(୭) ବହିମୁଖୀ ଫେରନ୍ତ ହିସାବ ଓ

(୮) ଅନ୍ୟ ସମ୍ଭାର ।

(୧) ଆଦ୍ୟ ସମ୍ଭାର । ବ୍ୟବସାୟ ଆରମ୍ଭ କରିବାର ପ୍ରଥମ ବର୍ଷ ଆଦ୍ୟ ସମ୍ଭାର ହେବ ନାହିଁ, ମାତ୍ର ପରବର୍ତ୍ତୀ ହିସାବ ବର୍ଷମାନଙ୍କରେ ଏହା ସାଧାରଣତଃ ହେବ, କାରଣ ବ୍ୟବସାୟିକ ପ୍ରତିଷ୍ଠାନରେ ବିକ୍ରୟ କ୍ରମରେ ଯେତେ ପଣ୍ୟ ରଖାଯାଇଥାଏ ସମ୍ପୂର୍ଣ୍ଣରୂପେ ତାହା କ୍ୱଚିତ୍ ବିକ୍ରୟ ହୁଏ । କେତେକ ପରିମାଣରେ ପଣ୍ୟ ଅବିକ୍ରୀତ ରହିଯାଏ । ଯାହା ଅବଶିଷ୍ଟ ରହେ ପରବର୍ତ୍ତୀ ହିସାବ ବର୍ଷରେ ତାହାକୁହିଁ ଆଦ୍ୟ ସମ୍ଭାର କୁହାଯାଏ । ଏହା ମୋଟ ଲାଭ ଓ କ୍ଷତି ହିସାବର ଦାୟୀ ପାର୍ଶ୍ୱରେ ସବୁ ପ୍ରଥମେ ଲେଖାଯାଏ ।

(୨) କ୍ରୟ ହିସାବ । ପୂର୍ବରୁ କୁହାଯାଇଛି ଯେ ଉଭୟ ନଗଦ ଓ ଧାରରେ କ୍ରୟ କରାଯାଇଥିବା ପଣ୍ୟର ହିସାବ କ୍ରୟ ହିସାବକୁ ଆଣାଯିବ । ଏହି ହିସାବର ଦାୟୀ ବାକି ମୋଟ ଲାଭ ଓ କ୍ଷତି ହିସାବକୁ ଆଣାଯିବ । କ୍ରୀତ ପଣ୍ୟ ମଧ୍ୟରୁ ଯଦି କୌଣସି ପଣ୍ୟ ଯୋଗାଣଦାର ବା ବିକ୍ରେତାଙ୍କୁ ଫେରନ୍ତ ଦିଆଯାଇଥାଏ ତାହେଲେ ତାହା କ୍ରୟ ହିସାବର ମୋଟ ପରିମାଣରୁ ବାଦ୍ ଦିଆଯାଇ ନିଟ୍ କ୍ରୟର ପରିମାଣ ମୋଟ ଲାଭ ଓ କ୍ଷତି ହିସାବରେ ଅନ୍ତର୍ଭୁକ୍ତ ହେବ । ଯଦି ପଣ୍ୟ କ୍ରୟ ସଂପୃକ୍ତ କୌଣସି ବିଲ୍ ବା ଚାଲାଣ ବିକ୍ରେତାଙ୍କଠାରୁ ମିଳିଥାଏ; କିନ୍ତୁ ପଣ୍ୟ ଆସି ପହଞ୍ଚି ନ ଥାଏ ତାହେଲେ ଏହି ବିଲ୍ ସଂପୃକ୍ତ ପଣ୍ୟ ପରବର୍ତ୍ତୀ ହିସାବ ବର୍ଷରେ ଅନ୍ତର୍ଭୁକ୍ତ ହେବ । ଯଦି ଏହାକୁ ଅନ୍ତର୍ଭୁକ୍ତ କରିବା ଆବଶ୍ୟକ ହୁଏ ତାହେଲେ 'ଅପ୍ରାପ୍ତ ପ୍ରେରିତ ପଣ୍ୟ ହିସାବ' ନାମକ ଏକ ହିସାବକୁ ଦାୟୀ କରି ବିକ୍ରେତାଙ୍କର ହିସାବକୁ ଦାତା କରାଯିବ । ଏହି 'ଅପ୍ରାପ୍ତ ପ୍ରେରିତ ପଣ୍ୟ' ହିସାବ ମଧ୍ୟ ମୋଟ ଲାଭ ଓ କ୍ଷତି ହିସାବକୁ ଆଣାଯିବ ।

ଯଦି ଭୁଲ ବଶତଃ କ୍ରୟ ହିସାବରେ କୌଣସି ପରିସମ୍ପତ୍ତିର କ୍ରୟ ଅନ୍ତର୍ଭୁକ୍ତ ହୋଇଥାଏ ତାହାକୁ ରୋଜନାମା ସାହାଯ୍ୟରେ କ୍ରୟ ହିସାବରୁ ବାଦ୍ ଦେବାକୁ ପଡ଼ିବ । ସେହିପରି ବ୍ୟବସାୟୀଙ୍କର ବ୍ୟକ୍ତିଗତ ସ୍ୱାର୍ଥରେ ଯଦି କୌଣସି ପଣ୍ୟ କ୍ରୟ କରାଯାଇ କ୍ରୟ ହିସାବରେ ଅନ୍ତର୍ଭୁକ୍ତ ହୋଇଥାଏ ତାହେଲେ ତାହାକୁ ରୋଜନାମା ସାହାଯ୍ୟରେ ଉଠାଣ ହିସାବକୁ ସ୍ଥାନାନ୍ତରିତ କରାଯିବ । ଯଦି ପଣ୍ୟ

ଓ ସଂପୃକ୍ତ ବିଲ୍ ବ୍ୟବସାୟକୁ ଆସିବା ସତ୍ତ୍ୱେ ଭୁଲବଶତଃ ତାହା କ୍ରୟ ହିସାବରେ ଅନ୍ତର୍ଭୁକ୍ତ ନ ହୋଇଥାଏ ତାହେଲେ ତାହା କ୍ରୟ ହିସାବରେ ଅନ୍ତର୍ଭୁକ୍ତ କରାଯିବ ।

(୩) ବହିର୍ମୁଖୀ ଫେରସ୍ତ ବା କ୍ରୟ ଫେରସ୍ତ ହିସାବ ସର୍ବଦା ମୋଟ କ୍ରୟ ହିସାବରୁ ବାଦ୍ ଦିଆଯାଇ ନିଟ୍ କ୍ରୟର ପରିମାଣ ମୋଟ ଲାଭ ଓ କ୍ଷତି ହିସାବରେ ଅନ୍ତର୍ଭୁକ୍ତ କରାଯିବ ।

(୪) ପଣ୍ୟ କ୍ରୟ କରାଯାଇ ବ୍ୟବସାୟକୁ ଆଣିବାର ପରିବହନ ବ୍ୟୟକୁ ଅନ୍ତର୍ମୁଖୀ ଗାଡ଼ିଭଡ଼ା କୁହାଯାଏ । ଯେହେତୁ ଏହା ଏକ ପ୍ରତ୍ୟକ୍ଷ ବ୍ୟୟ ତେଣୁ ଏହାକୁ ମୋଟ ଲାଭ ଓ କ୍ଷତି ହିସାବର ଡାହାଣୀ ପାର୍ଶ୍ୱକୁ ଅଣାଯିବ । ଯଦି ପରିସମ୍ପତ୍ତି କ୍ରୟ କରି ବ୍ୟବସାୟକୁ ଆଣିବାର ଗାଡ଼ିଭଡ଼ା ଏହି ହିସାବରେ ଭୁଲବଶତଃ ଅନ୍ତର୍ଭୁକ୍ତ ହୋଇଥାଏ ତାହେଲେ ତାହାକୁ ପରିସମ୍ପତ୍ତି ହିସାବକୁ ରୋଜନାମା ମାଧ୍ୟମରେ ସ୍ଥାନାନ୍ତରିତ କରାଯିବ ।

(୫) କ୍ରୀତ ପଣ୍ୟକୁ ଗାଡ଼ିରେ ଲଦିବା ଓ ଉତାରି ବ୍ୟବସାୟର ଗୋଦାମରେ ସମ୍ପାଦି ରଖିବା ନିମନ୍ତେ ଆବଶ୍ୟକୀୟ ମଜୁରି ଲାଭ ଓ କ୍ଷତି ହିସାବର ଡାହାଣୀ ପାର୍ଶ୍ୱରେ ଅନ୍ତର୍ଭୁକ୍ତ ହେବ । ଯେଉଁ ବ୍ୟବସାୟରେ ପଣ୍ୟ ଉତ୍ପାଦିତ ହୁଏ ସେ ବ୍ୟବସାୟରେ ଉତ୍ପାଦନ ସଂକ୍ରାନ୍ତ ମଜୁରି ଏହି ହିସାବରେ ଅନ୍ତର୍ଭୁକ୍ତ ହେବ ।

ପରିସମ୍ପତ୍ତିକୁ କାରଖାନାରେ ସ୍ଥାପନ କରିବାକୁ ବ୍ୟୟ ହୋଇଥିବା ମଜୁରି ଯଦି ଏହି ହିସାବରେ ଅନ୍ତର୍ଭୁକ୍ତ ହୋଇଥାଏ ତାହେଲେ ତାହା ରୋଜନାମା ସାହାଯ୍ୟରେ ଏହି ହିସାବରୁ ପରିସମ୍ପତ୍ତି ହିସାବକୁ ସ୍ଥାନାନ୍ତରିତ କରାଯିବ ।

(୬) ବିକ୍ରୟ ହିସାବ । ପୂର୍ବରୁ କୁହାଯାଇଛି ଯେ ବିକ୍ରୟ ହିସାବରେ ଉଭୟ ନଗଦ ଓ ଧାରରେ ବିକ୍ରୟ କରାଯାଇଥିବା ପଣ୍ୟର ମୂଲ୍ୟ ଏହି ହିସାବରେ ଅନ୍ତର୍ଭୁକ୍ତ ହେବ । ଯଦି ତାହା ନ ହୋଇଥାଏ ତାହେଲେ ଉଭୟ ପ୍ରକାର ବିକ୍ରୟ ଏଥିରେ ଅନ୍ତର୍ଭୁକ୍ତ କରାଯିବ । ଯଦି କୌଣସି ଗ୍ରାହକ ପଣ୍ୟ ଫେରସ୍ତ ଦେଇ ଥାଆନ୍ତି ତାହେଲେ ଫେରସ୍ତ ମିଳିଥିବା ପଣ୍ୟର ମୂଲ୍ୟ ମୋଟ ବିକ୍ରୟ ମୂଲ୍ୟରୁ ବାଦ୍ ଦିଆଯିବ ; ଅର୍ଥାତ୍ ଅନ୍ତର୍ମୁଖୀ ଫେରସ୍ତ ହିସାବର ବାଙ୍କି ମୋଟ ବିକ୍ରୟ ମୂଲ୍ୟରୁ ବାଦ୍ ଦିଆଯାଇ କେବଳ ନିଟ୍ ବିକ୍ରୟର ମୂଲ୍ୟ ମୋଟ ଲାଭ ଓ କ୍ଷତି ହିସାବର ଡାହାଣୀ ପାର୍ଶ୍ୱକୁ ଅଣାଯିବ । କୌଣସି ପରିସମ୍ପତ୍ତିର ବିକ୍ରୟ ମୂଲ୍ୟ ଯଦି ଭୁଲ-ବଶତଃ ବିକ୍ରୟ ହିସାବରେ ଅନ୍ତର୍ଭୁକ୍ତ ହୋଇଥାଏ ତାହେଲେ ରୋଜନାମା ସାହାଯ୍ୟରେ ତାହା ପରିସମ୍ପତ୍ତି ହିସାବକୁ ନିଆଯିବ । ସମସ୍ତ ବିଲ୍ ବା ଚାଲାଣ

ସଂଯୁକ୍ତ ଖରଚ୍ଚ ପରିମାଣ ବଜେଟ୍ ହିସାବକୁ ଅଣା ଯାଇଛି କି ନାହିଁ ତାହା ଏହି ସମୟରେ ପରୀକ୍ଷା କରି ଦେଖାଯିବ ଓ ଯଦି କୌଣସି ବିଲ୍ ବାବଦ ପଣ୍ୟ ବଜେଟ୍ ହିସାବକୁ ଅଣା ନ ଯାଇଥାଏ ତାହେଲେ ତାହା ଅନ୍ତର୍ଭୁକ୍ତ କରାଯିବ ।

(୭) ଅନ୍ତର୍ମୁଖୀ ଫେରନ୍ତ ହିସାବ । ଏହି ହିସାବର ବାଙ୍କି ମୋଟ ବଜେଟ୍ ହିସାବରୁ ବାଦ୍ ଦିଆଯାଇ କେବଳ ନେଟ୍ ବଜେଟ୍ ମୂଲ୍ୟ ମୋଟ ଲାଭ ଓ କ୍ଷତି ହିସାବର ଦାତା ପାର୍ଶ୍ୱକୁ ଅଣାଯିବ ।

(୮) ଅନ୍ତ୍ୟ ସମ୍ଭାର—ହିସାବ ବର୍ଷ ଶେଷରେ ଯଦି କୌଣସି ପଣ୍ୟ ଅବିକ୍ରୀତ ଥାଏ ତାହାର ମୂଲ୍ୟାୟନ କରାଯାଇ ମୋଟ ପରିମାଣ ମୋଟ ଲାଭ ଓ କ୍ଷତି ହିସାବର ଦାତା ପାର୍ଶ୍ୱକୁ ଅଣାଯିବ । ଅନ୍ତ୍ୟ ସମ୍ଭାରର ମୂଲ୍ୟାୟନ କଲାବେଳେ ସର୍ବଦା ମନେ ରଖିବାକୁ ପଡ଼େ ଯେ ପ୍ରତି ଅବିକ୍ରୀତ ପଣ୍ୟର କ୍ରୟ ମୂଲ୍ୟ ଓ ତାହାର ବଜାର ଦର ମଧ୍ୟରୁ ଯେଉଁଟି ନ୍ୟୂନ ତାହାହିଁ ଏହାର ମୂଲ୍ୟରୂପେ ସ୍ଥିରିକୃତ ହେବ । ଯଦି ଅବିକ୍ରୀତ ପଣ୍ୟର ମୂଲ୍ୟାୟନ ବିକ୍ରୟ ମୂଲ୍ୟ ଭିତ୍ତିରେ କରାଯାଏ ତାହେଲେ ପ୍ରକୃତ ବିକ୍ରୟ ହେବା ପୂର୍ବରୁ ଏହାର ଲାଭ ହିସାବକୁ ଅଣାଯିବ ଯାହା ଆଦୌ ବାଞ୍ଛନୀୟ ନୁହେଁ । ତେଣୁ ଏହା ହିସାବ ନୀତି ବିରୁଦ୍ଧ ।

ମୂଲ୍ୟାୟନ କରିବା ସମୟରେ ଯଦି ଗୋଦାମରେ ଏପରି କୌଣସି ପଣ୍ୟ ରହିଥାଏ ଯାହା ସକାଶେ ବିଲ ପ୍ରସ୍ତୁତ ହୋଇ ସାରିଛି ଏବଂ ଗ୍ରାହକଙ୍କର ହିସାବକୁ ବିଲ୍‌ର ପରିମାଣ ସକାଶେ ଦାୟୀ କରାଯାଇଛି; କିନ୍ତୁ ପଣ୍ୟ ଏ ପର୍ଯ୍ୟନ୍ତ ପ୍ରେରଣ କରାଯାଇ ନାହିଁ ତାହେଲେ ସେପରି ପଣ୍ୟକୁ ସ୍ୱତନ୍ତ୍ର ଭାବରେ ରଖାଯିବ ଓ ଏହାର ମୂଲ୍ୟାୟନ କରାଯିବ ନାହିଁ; କାରଣ ଏହା ଥରେ ବିକ୍ରୟ ହିସାବରେ ଅନ୍ତର୍ଭୁକ୍ତ ହୋଇ ସାରିଛି ।

## ପ୍ରତ୍ୟକ୍ଷ ବ୍ୟୟ :

ପୂର୍ବରୁ କୁହାଯାଇଛି ଯେ କେବଳ ପ୍ରତ୍ୟକ୍ଷ ବ୍ୟୟ ମୋଟ ଲାଭ ଓ କ୍ଷତି ହିସାବକୁ ଅଣାଯିବ । କେଉଁଟି ପ୍ରତ୍ୟକ୍ଷ ଓ କେଉଁଟି ପରୋକ୍ଷ ବ୍ୟୟ ତାହା ଜାଣିବା ନିମନ୍ତେ ଏକ ସହଜ ସୂତ୍ର ନିମ୍ନରେ ପ୍ରଦତ୍ତ ହେଲା ।

ଆବର୍ତ୍ତନ ( Gross turnover ) ସହିତ ଯେଉଁ ବ୍ୟୟଗୁଡ଼ିକ ସମାନୁପାତରେ ପରିବର୍ତ୍ତିତ ହୁଏ ତାହାକୁ ପ୍ରତ୍ୟକ୍ଷ ବ୍ୟୟ ବୋଲି କୁହାଯାଏ । ଉଦାହରଣ ସ୍ୱରୂପ ଅନ୍ତର୍ମୁଖୀ ଗାଡ଼ିଭଡ଼ା ଓ ବେତନ ବା ଘରଭଡ଼ା ନିଆଯାଉ । ଯଦି ବସ୍ତୁର ପରିମାଣ ବୃଦ୍ଧି ପାଏ ତାହେଲେ ଅନ୍ତର୍ମୁଖୀ ଗାଡ଼ିଭଡ଼ା ମଧ୍ୟ ପ୍ରାୟ

ସମାନୁପାତରେ ବୃଦ୍ଧି ପାଇବ ; କିନ୍ତୁ ବିକ୍ରୟର ପରିମାଣରେ ବୃଦ୍ଧି ହେଲେ କର୍ମଚାରୀଙ୍କର ବେତନ ବା ଘରଭଡ଼ା ବୃଦ୍ଧି ପାଇବ ନାହିଁ । ଏ ଗୁଡ଼ିକ କେତେକ ସୀମା ପର୍ଯ୍ୟନ୍ତ ଅପରିବର୍ତ୍ତନୀୟ ବା ନିର୍ଦ୍ଦିଷ୍ଟ କହିଲେ ଅତ୍ୟୁକ୍ତି ହେବ ନାହିଁ । ଏହିପରି ମଜୁରି, ନଗର ଶୁଳ୍କ ପ୍ରଭୃତି ବ୍ୟୟ ପ୍ରତ୍ୟକ୍ଷ ଓ ଏ ଗୁଡ଼ିକ ମୋଟ ଲାଭ ଓ କ୍ଷତି ହିସାବରେ ଅନ୍ତର୍ଭୁକ୍ତ ହେବ ।

ମୋଟ ଲାଭ ଓ କ୍ଷତି ହିସାବ ଯେଉଁ ଫର୍ମାରେ ପ୍ରସ୍ତୁତ କରାଯାଏ ତାହାର ଏକ ନମୁନା ନିମ୍ନରେ ପ୍ରଦତ୍ତ ହେଲା ।

୧୯୭୨ ସାଲ ଡିସେମ୍ବର ୩୧ ତାରିଖରେ ଶେଷ ହେଉଥିବା

ଦାୟୀ ବର୍ଷର ମୋଟ ଲାଭ ଓ କ୍ଷତି ହିସାବ ଦାତା

| | ଟଙ୍କା | | ଟଙ୍କା |
|---|---|---|---|
| ଆଦ୍ୟ ସମ୍ଭାର ବାବଦ | | ବିକ୍ରୟ ହିସାବ ବାବଦ | |
| କ୍ରୟ ହିସାବ ବାବଦ | | ବାଦ୍ : ଅନ୍ତର୍ମୁଖୀ ଫେରସ୍ତ | |
| ବାଦ୍; ବହିର୍ମୁଖୀ ଫେରସ୍ତ | | ଅନ୍ତ୍ୟ ସମ୍ଭାର ବାବଦ | |
| ଅନ୍ତର୍ମୁଖୀ ଗାଡ଼ିଭଡ଼ା ବାବଦ | | ମୋଟ କ୍ଷତି, ନିଟ୍ ଲାଭ ଓ କ୍ଷତି ହିସାବକୁ ସ୍ଥାନାନ୍ତରିତ ହେଲା | |
| ମଜୁରି ହିସାବ ବାବଦ | | | |
| ମୋଟ ଲାଭ, ନିଟ୍ ଲାଭ ଓ କ୍ଷତି ହିସାବକୁ ସ୍ଥାନାନ୍ତରିତ ହେଲା | | | |

ଏହି ହିସାବରେ ଯଦି ଦାତା ପାର୍ଶ୍ୱର ମୋଟ ପରିମାଣ ଦାୟୀ ପାର୍ଶ୍ୱର ମୋଟ ପରିମାଣଠାରୁ ଅଧିକ ହୁଏ ତାହେଲେ ଦୁଇ ସଂଖ୍ୟାର ବ୍ୟବଧାନକୁ ମୋଟ ଲାଭ କୁହାଯାଏ ଓ ଯଦି ଦାୟୀ ପାର୍ଶ୍ୱର ମୋଟ ପରିମାଣ ଦାତା ପାର୍ଶ୍ୱର ମୋଟ ପରିମାଣଠାରୁ ଅଧିକ ହୁଏ ତାହେଲେ ଦୁଇ ସଂଖ୍ୟାର ବ୍ୟବଧାନକୁ ମୋଟ କ୍ଷତି କୁହାଯାଏ । ମୋଟ ଲାଭ ଦାୟୀ ପାର୍ଶ୍ୱରେ ଓ ମୋଟ କ୍ଷତି ଦାତା ପାର୍ଶ୍ୱରେ ଲେଖାଯିବ । ଲାଭ ବା କ୍ଷତି ଯାହା ହେଉ, ତାହା ନିଟ୍ ଲାଭ ଓ କ୍ଷତି ହିସାବକୁ ସ୍ଥାନାନ୍ତରିତ କରାଯିବ, ଲାଭ ହେଲେ ସେହି ହିସାବର ଦାତା ପାର୍ଶ୍ୱରେ ଓ କ୍ଷତି ହେଲେ ସେହି ହିସାବର ଦାୟୀ ପାର୍ଶ୍ୱରେ ଏହା ଲେଖାଯିବ ।

## ମୋଟ ଲାଭ ଓ କ୍ଷତି ହିସାବ ପ୍ରସ୍ତୁତ କରିବାର ସୁବିଧା :

ଅନେକ ମନେ କରି ପାରନ୍ତି ଯେ କେବଳ ଗୋଟିଏ ଲାଭ ଓ କ୍ଷତି ହିସାବ ପ୍ରସ୍ତୁତ କଲେ ଏଥିରୁ ନିଟ୍ ଲାଭ ବା କ୍ଷତି ନିର୍ଣ୍ଣୟ କରାଯାଇ ପାରନ୍ତା, ଏଥି ନିମନ୍ତେ ଦୁଇଟି ହିସାବ, ଯଥା ମୋଟ ଲାଭ ଓ କ୍ଷତି ହିସାବ ଏବଂ ନିଟ୍ ଲାଭ ଓ କ୍ଷତି ହିସାବ ପ୍ରସ୍ତୁତ କରିବା ଅନାବଶ୍ୟକ । କିନ୍ତୁ ମୋଟ ଲାଭ ଓ କ୍ଷତି ହିସାବ ପ୍ରସ୍ତୁତ କରିବା ଦ୍ୱାରା ଯେଉଁ ସୁବିଧାଗୁଡ଼ିକ ମିଳେ ତାହା ନିମ୍ନରେ ପ୍ରଦତ୍ତ ହେଲା :

(୧) ପଣ୍ୟ କ୍ରୟ ଓ ବିକ୍ରୟ ଉପରେ ଲାଭ ହେଲା କି କ୍ଷତି ହେଲା ତାହା ଏଥିରୁ ଜଣାଯିବ ।

(୨) ଆବର୍ତ୍ତନ ଉପରେ ମୋଟ ଲାଭର ଶତକଡ଼ା ହାର ଏଥିରୁ ଜଣାଯିବ ଓ ତହିଁରୁ ବ୍ୟବସାୟର ଉନ୍ନତି ବା ଅବନତି ଘଟିଛି ତାହାର ସୂଚନା ମିଳିବ ।

(୩) ଏ ବର୍ଷର ମୋଟ କ୍ରୟ, ବିକ୍ରୟ ଓ ପ୍ରତ୍ୟକ୍ଷ ବ୍ୟୟ ସହିତ ଗତ ବର୍ଷର ଅନୁରୂପ ସଂଖ୍ୟାଗୁଡ଼ିକ ତୁଳନା କରାଯାଇ ପାରେ ଏବଂ ତହିଁରୁ ବ୍ୟବସାୟର ଗତି-ପ୍ରକୃତି ସମ୍ବନ୍ଧରେ ଗୋଟିଏ ଧାରଣା ମିଳେ ।

(୪) ମୋଟ ଲାଭର ପ୍ରତ୍ୟକ୍ଷ ବ୍ୟୟ ଶତକଡ଼ା କେତେ ହାର ତାହା ଜଣାଯାଏ ଏବଂ ତାହା ଅଧିକ ହୋଇଥିଲେ ତାହାକୁ ହ୍ରାସ କରିବା ଦିଗରେ ପଦକ୍ଷେପ ନିଆଯାଇ ପାରେ ।

(୫) ନିଟ୍ ଲାଭ ମୋଟ ଲାଭର ଶତକଡ଼ା କେତେ ଭାଗ ତାହା ମଧ୍ୟ ଏଥିରୁ ଜଣାଯିବ, ଏବଂ ଯଦି ତାହା ଅତ୍ୟଧିକ ନ୍ୟୂନ ହୁଏ ତାହେଲେ ବିଭିନ୍ନ ବ୍ୟୟ (ଯାହା ନିଟ୍ ଲାଭ ଓ କ୍ଷତି ହିସାବରେ ଅନ୍ତର୍ଭୁକ୍ତ ହେବ)କୁ ନିୟନ୍ତ୍ରଣ କରିବା ପାଇଁ ପଦକ୍ଷେପ ନିଆଯିବ ।

## ବିକ୍ରୀତ ଦ୍ରବ୍ୟର ପରିବ୍ୟୟ :

ପଣ୍ୟ ଦ୍ରବ୍ୟକୁ ବିକ୍ରୟଯୋଗ୍ୟ ଅବସ୍ଥାକୁ ଆଣିବା ପାଇଁ ଯେଉଁ ବ୍ୟୟ ସଂଘଟିତ ହୁଏ ତାହାକୁ ବିକ୍ରୀତ ଦ୍ରବ୍ୟର ପରିବ୍ୟୟ କୁହାଯାଏ । ଏହି ବ୍ୟୟଗୁଡ଼ିକୁ ପ୍ରତ୍ୟକ୍ଷ ବ୍ୟୟ ବୋଲି ପୂର୍ବରୁ ଆଖ୍ୟା ଦିଆଯାଇଛି । ଏହି ପରିବ୍ୟୟ ନିର୍ଣ୍ଣୟ କରିବା ସକାଶେ ବହିର୍ମୁଖୀ ଫେରସ୍ତ ବାଦ୍ ଦେଇ ନିଟ୍ କ୍ରୟ, କ୍ରୀତ ପଣ୍ୟକୁ ବ୍ୟବସାୟକୁ ଆଣିବାର ଅନ୍ତର୍ମୁଖୀ ଗାଡ଼ିଭଡ଼ା, ପଣ୍ୟ ଲଦେଇ କରିବା ଓ ଖଲାସ କରିବାର ମଜୁରି, ନଗର ଶୁଳ୍କ, ଚୁଙ୍ଗିଶୁଳ୍କକୁ ଯୋଗ କରିବାକୁ ହେବ । ଏଥିରେ ଆଦ୍ୟ ସମ୍ଭାର ଯୋଗ କରାଯିବ ଓ ତହିଁରୁ ଅନ୍ତ୍ୟ ସମ୍ଭାର ବିୟୋଗ କରାଯିବ । ଅନ୍ୟ ଉପାୟରେ ମଧ୍ୟ ଏହା ନିର୍ଣ୍ଣୟ କରିହେବ ; ଯଥା

କିନ୍ତୁ ବିକ୍ରୟରୁ ମୋଟ ଲାଭ ବାଦ୍ ଦିଆଗଲେ ମଧ୍ୟ ବିକ୍ରୟର ପରିବ୍ୟୟ ନିର୍ଣ୍ଣୀତ ହୋଇପାରିବ । ଏହି ବିକ୍ରୀତ ଦ୍ରବ୍ୟର ପରିବ୍ୟୟ କିପରି ନିର୍ଣ୍ଣୟ କରାଯିବ ତାହାର ଏକ ଦୃଷ୍ଟାନ୍ତ ନିମ୍ନରେ ପ୍ରଦତ୍ତ ହେଲା ।

## ଦୃଷ୍ଟାନ୍ତ (୫)

ନିମ୍ନଲିଖିତ ଖତିୟାନ ହିସାବମାନଙ୍କର ବାକିରୁ ପ୍ରଧାନ ଏଣ୍ଡ୍ କୋ. ଙ୍କର ବିକ୍ରୀତ ଦ୍ରବ୍ୟର ପରିବ୍ୟୟର ଏକ ବିବରଣୀ ପ୍ରସ୍ତୁତ କର ।

| | ଟଙ୍କା | | ଟଙ୍କା |
|---|---|---|---|
| ନଗଦ କ୍ରୟ | ୫,୭୦୮ | ନଗଦ ବିକ୍ରୟ | ୮,୩୦୦ |
| ଉଧାରରେ କ୍ରୟ | ୩,୨୦୨ | ଧାରରେ ବିକ୍ରୟ | ୪,୮୦୦ |
| ଆଦ୍ୟ ସମ୍ଭାର | ୧,୫୯୦ | ଅନ୍ତ୍ୟ ସମ୍ଭାର | ୧,୨୦୦ |
| ମଜୁରି | ୧୫୦ | ଅନ୍ତର୍ମୁଖୀ ଫେରସ୍ତ | ୧୨୦ |
| ଅନ୍ତର୍ମୁଖୀ ଗାଡ଼ିଭଡ଼ା | ୨୫୦ | ବହିର୍ମୁଖୀ ଫେରସ୍ତ | ୧୫୦ |
| ନଗର ଶୁଳ୍କ | ୪୦ | | |

**ସମାଧାନ :**

ବିକ୍ରୀତ ଦ୍ରବ୍ୟର ପରିବ୍ୟୟର ବିବରଣୀ

| | | ଟଙ୍କା | ଟଙ୍କା |
|---|---|---|---|
| ଆଦ୍ୟ ସମ୍ଭାର | | | ୧,୫୯୦ |
| ଯୁକ୍ତ କ୍ରୟ : | ନଗଦ | ୫,୭୦୮ | |
| | ଉଧାର | ୩,୨୦୨ | |
| | | ୮,୯୧୦ | |
| ବିଯୁକ୍ତ ବହିର୍ମୁଖୀ ଫେରସ୍ତ | | ୧୫୦ | ୮,୭୬୦ |
| ଯୁକ୍ତ ପ୍ରତ୍ୟକ୍ଷ ବ୍ୟୟ : | | | |
| ଅନ୍ତର୍ମୁଖୀ ଗାଡ଼ିଭଡ଼ା | | ୨୫୦ | |
| ନଗର ଶୁଳ୍କ | | ୪୦ | |
| ମଜୁରି | | ୧୫୦ | ୪୪୦ |
| | | | ୧୦,୭୯୦ |
| ବିଯୁକ୍ତ ଅନ୍ତ୍ୟ ସମ୍ଭାର | | | ୧,୨୦୦ |
| ବିକ୍ରୀତ ଦ୍ରବ୍ୟର ପରିବ୍ୟୟ | | | ୯,୫୯୦ |

## ବିକଳ୍ପ ପଦ୍ଧତି :

| | | | |
|---|---|---|---|
| ବିକ୍ରୟ : | ନଗଦ | ୮,୩୦୦ | |
| | ଧାର | ୪,୮୦୦ | |
| | | ୧୩,୧୦୦ | |
| ବିଯୁକ୍ତ ଅନ୍ତର୍ମୁଖୀ ଫେରସ୍ତ | | ୧୨୦ | |
| | | | ୧୨,୯୮୦ |
| ବିଯୁକ୍ତ ମୋଟ ଲାଭ (୧୪,୧୮୦ – ୧୦,୭୯୦) | | | ୩,୩୯୦ |
| ବିକ୍ରୀତ ଦ୍ରବ୍ୟର ପରିବ୍ୟୟ | | | ୯,୫୯୦ |

## ଆବର୍ତ୍ତନ ଉପରେ ମୋଟ ଲାଭର ଶତକଡ଼ା ହାର :

ପୂର୍ବରୁ କୁହାଯାଇଛି ଯେ ମୋଟ ଲାଭ ଓ କ୍ଷତି ହିସାବ ସ୍ୱତନ୍ତ୍ର ଭାବରେ ରଖିବାର ଗୋଟିଏ ସୁବିଧା ହେଲା ଯେ ତହିଁରୁ ମୋଟ ଲାଭ ନିର୍ଣ୍ଣୀତ ହେଲା ପରେ ଏହା ଆବର୍ତ୍ତନ ବା ବିକ୍ରୟ ମୂଲ୍ୟର ଶତକଡ଼ା କେତେ ଭାଗ ତାହା ଜଣାଯାଇ ପାରିବ । ଏତଦ୍ୱାରା ବ୍ୟବସାୟର ଉନ୍ନତି ବା ଅବନତି ବିଷୟରେ କିଛି ସୂଚନା ମିଳେ । ଏହି ଶତକଡ଼ା ହାର କିପରି ନିରୂପିତ ହେବ ତାହାର ସୂତ୍ର ନିମ୍ନରେ ପ୍ରଦତ୍ତ ହେଲା ।

$$\frac{\text{ମୋଟ ଲାଭ} \times ୧୦୦}{\text{ଆବର୍ତ୍ତନ}} = \text{ଆବର୍ତ୍ତନ ଉପରେ ମୋଟ ଲାଭର \% ହାର}$$

ପୂର୍ବ ଦୃଷ୍ଟାନ୍ତର ସଂଖ୍ୟାଗୁଡ଼ିକ ଯଦି ଏଠାରେ ପ୍ରୟୋଗ କରାଯାଏ ତାହେଲେ ଶତକଡ଼ା ହାର ନିମ୍ନ ପ୍ରକାରେ ନିରୂପିତ ହେବ ।

$$\frac{୩,୩୯୦ \times ୧୦୦}{୧୨,୯୮୦} = ୨୬\cdot୧୨\%$$

ଅର୍ଥାତ୍ ବିକ୍ରୟ ମୂଲ୍ୟର ୨୬·୧୨% ହେଉଛି ମୋଟ ଲାଭ ।

## ମୋଟ ଲାଭ ଓ କ୍ଷତି ହିସାବ ଓ ଦ୍ୱିଲିଖନ ହିସାବ ପଦ୍ଧତି :

ମୋଟ ଲାଭ କ୍ଷତି ହିସାବ ଅନ୍ୟାନ୍ୟ ଖତିୟାନ ହିସାବ ତୁଲ୍ୟ ଗୋଟିଏ ହିସାବ । ଏହାର ଦାୟୀ ଓ ଦାତା ପାର୍ଶ୍ୱ ଅଛି । ମୋଟ ଲାଭ ବା କ୍ଷତି ନିର୍ଣ୍ଣୟ କରିବା ନିମନ୍ତେ ଖତିୟାନର ସଂପୃକ୍ତ ହିସାବର ବାକିଗୁଡ଼ିକୁ ଖାସ୍ ରୋଜନାମା ସାହାଯ୍ୟରେ ମୋଟ ଲାଭ ଓ କ୍ଷତି ହିସାବକୁ ସ୍ଥାନାନ୍ତରିତ କରାଯିବ । ଯେଉଁ ହିସାବଗୁଡ଼ିକର ବାକି ସ୍ଥାନାନ୍ତରିତ କରାଯିବ ସେହି ହିସାବମାନଙ୍କରେ ବାକି ଶୂନ ହେବ, ଅର୍ଥାତ୍ ତହିଁରେ ଆଉ କୌଣସି ବାକି ରହିବ ନାହିଁ । ଗୋଟିଏ ବିଷୟ ସବୁବେଳେ ସ୍ମରଣ ରଖିବା ଉଚିତ ଯେ ଯେଉଁ

ହିସାବର ବାକି ଦାୟୀ ଥିବ ତାହା ଯେଉଁ ହିସାବକୁ ସ୍ଥାନାନ୍ତରିତ କରାଯିବ ସେହି ହିସାବର ଦାୟୀ ପାର୍ଶ୍ୱରେ ତାହା ଲେଖାଯିବ । ସେହିପରି କୌଣସି ହିସାବର ଦାତା ବାକି ଯଦି ଅନ୍ୟ ଏକ ହିସାବକୁ ସ୍ଥାନାନ୍ତରିତ କରାଯାଏ ତାହେଲେ ଏହି ଦାତା ବାକି ସେହି ହିସାବର ଦାତା ପାର୍ଶ୍ୱରେ ହିଁ ଲେଖା ଯିବ ।

ମୋଟ ଲାଭ ଓ କ୍ଷତି ହିସାବକୁ ସମ୍ପୃକ୍ତ ହିସାବର ବାକି ଉପରେ ଅଣାଯାଏ ଓ ଯେଥି ନିମନ୍ତେ ଯେଉଁ ଖାସ୍ ରୋଜନାମା ପ୍ରସ୍ତୁତ କରାଯାଏ ତାହାର ନମୁନା ନିମ୍ନରେ ପ୍ରଦତ୍ତ ହେଲା ।

| ତାରିଖ | ବିବରଣ | ଖ: ପୃ: | ଦାୟୀ | ଦାତା |
|---|---|---|---|---|
| (୧୯୭୨) | | | ଟଙ୍କା | ଟଙ୍କା |
| ଡିସେ-୩୧ | ମୋଟ ଲାଭ ଓ କ୍ଷତି ହିସାବ ଦାୟୀ | | | |
| | ଆଦ୍ୟ ସମ୍ଭାର ହିସାବ ବାବଦ | | | |
| | କ୍ରୟ ହିସାବ ବାବଦ | | | |
| | ଅନ୍ତର୍ମୁଖୀ ଗାଡ଼ିଭଡ଼ା ହିସାବ ବାବଦ | | | |
| | ନଗର ଶୁଳ୍କ ହିସାବ ବାବଦ | | | |
| | ମଜୁରି ହିସାବ ବାବଦ | | | |
| | ଅନ୍ତର୍ମୁଖୀ ଫେରସ୍ତ ହିସାବ ବାବଦ | | | |
| | (ଚୂଡ଼ାନ୍ତ ହିସାବ ପ୍ରସ୍ତୁତ କରିବା ଉଦ୍ଦେଶ୍ୟରେ ଆଦ୍ୟ ସମ୍ଭାର, କ୍ରୟ, ଅନ୍ତର୍ମୁଖୀ ଗାଡ଼ିଭଡ଼ା, ନଗର ଶୁଳ୍କ, ମଜୁରି ଓ ଅନ୍ତର୍ମୁଖୀ ଫେରସ୍ତ ହିସାବ ଗୁଡ଼ିକ ବନ୍ଦ କରାଯାଇ ତହିଁର ବାକି ମୋଟ ଲାଭ ଓ କ୍ଷତି ହିସାବକୁ ସ୍ଥାନାନ୍ତରିତ କରାଗଲା ।) | | | |

| ତାରିଖ | ବିବରଣ | ଖ: ପୃ: | ଦାୟୀ | ଦାତା |
|---|---|---|---|---|
| ୧୯୭୨<br>ଡିସେ-୩୧ | ବିକ୍ରୟ ହିସାବ ଦାୟୀ<br>ବହିର୍ମୁଖୀ ଫେରସ୍ତ ହିସାବ ଦାୟୀ<br>ମୋଟ ଲାଭ ଓ କ୍ଷତି ହିସାବ ବାବଦ<br>(ଚୂଡ଼ାନ୍ତ ହିସାବ ପ୍ରସ୍ତୁତ କରିବା ଉଦ୍ଦେଶ୍ୟରେ ବିକ୍ରୟ ହିସାବ, ବହିର୍ମୁଖୀ ଫେରସ୍ତ ହିସାବ ବନ୍ଦ କରି ସେହି ହିସାବ ଗୁଡ଼ିକର ବାକି ମୋଟ ଲାଭ ଓ କ୍ଷତି ହିସାବକୁ ସ୍ଥାନାନ୍ତରିତ କରାଗଲା ।) | | ଟଙ୍କା | ଟଙ୍କା |
| | ଅନ୍ୟ ସମ୍ଭାର ହିସାବ ଦାୟୀ<br>ମୋଟ ଲାଭ ଓ କ୍ଷତି ହିସାବ ବାବଦ<br>(ଅବିକ୍ରୀତ ପଣ୍ୟ ଦ୍ରବ୍ୟର ମୂଲ୍ୟାଙ୍କନ କରାଯାଇ ଅନ୍ୟ ସମ୍ଭାର ହିସାବକୁ ଦାୟୀ ଓ ମୋଟ ଲାଭ ଓ କ୍ଷତି ହିସାବକୁ ଦାତା କରାଗଲା ।) | | | |
| | ମୋଟ ଲାଭ ଓ କ୍ଷତି ହିସାବ ଦାୟୀ<br>ନିଟ୍ ଲାଭ ଓ କ୍ଷତି ହିସାବ ବାବଦ<br>(ମୋଟ ଲାଭ ନିଟ୍ ଲାଭ ଓ କ୍ଷତି ହିସାବକୁ ସ୍ଥାନାନ୍ତରିତ କରାଗଲା ।)<br>ଅଥବା<br>ନିଟ୍ ଲାଭ ଓ କ୍ଷତି ହିସାବ ଦାୟୀ<br>ମୋଟ ଲାଭ ଓ କ୍ଷତି ହିସାବ ବାବଦ<br>(ମୋଟ କ୍ଷତି ନିଟ୍ ଲାଭ ଓ କ୍ଷତି ହିସାବକୁ ସ୍ଥାନାନ୍ତରିତ କରାଗଲା ।) | | | |

ମନ୍ତବ୍ୟ : (୧) ବହିର୍ମୁଖୀ ଫେରସ୍ତ ହିସାବର ବାକି ଫର୍ଦ୍ଦ ଦାତା ଓ ଅନ୍ତର୍ମୁଖୀ ଫେରସ୍ତ ହିସାବର ବାକି ଫର୍ଦ୍ଦ ଦାୟୀ ହେବ । ତେଣୁ ପ୍ରଥମଟି ମୋଟ ଲାଭ ଓ କ୍ଷତି ହିସାବର ଦାତା ପାର୍ଶ୍ୱରେ ଓ ଦ୍ୱିତୀୟଟି ମୋଟ ଲାଭ ଓ କ୍ଷତି ହିସାବର ଦାୟୀ ପାର୍ଶ୍ୱରେ ଅନ୍ତର୍ଭୁକ୍ତ ହେବାର କଥା ; ସୁତରାଂ ରୋଜନାମାରେ ସେହିପରି କରାଯାଇଛି । ମାତ୍ର ପ୍ରକୃତ କ୍ଷେତ୍ରରେ ବହିର୍ମୁଖୀ ଫେରସ୍ତ ବା କ୍ରୟ ଫେରସ୍ତ ହିସାବ ମୋଟ ଲାଭ ଓ କ୍ଷତି ହିସାବର ଦାତା ପାର୍ଶ୍ୱରେ ଅନ୍ତର୍ଭୁକ୍ତ ନ ହୋଇ କ୍ରୟର ମୋଟ ପରିମାଣରୁ ବାଦ୍ ଦିଆଯାଇ ଲେଖାଯାଏ । ସେହିପରି ଅନ୍ତର୍ମୁଖୀ ଫେରସ୍ତ ବା ବିକ୍ରୟ ଫେରସ୍ତ ହିସାବ ମୋଟ ଲାଭ ଓ କ୍ଷତି ହିସାବର ଦାୟୀ ପାର୍ଶ୍ୱରେ ଅନ୍ତର୍ଭୁକ୍ତ ନ ହୋଇ ମୋଟ ବିକ୍ରୟ ପରିମାଣରୁ ବାଦ୍ ଦିଆଯାଇ ଲେଖାଯାଏ । ଏପରି କରିବା ଦ୍ୱାରା ନିଟ୍ କ୍ରୟ ଓ ନିଟ୍ ବିକ୍ରୟର ପରିମାଣ ହିସାବ ଦେଖିଲେ ମାତ୍ରେ ଜଣାଯାଏ । ଏହି ସୁବିଧା ପାଇବା ଉଦ୍ଦେଶ୍ୟରେ ବ୍ୟବସାୟୀମାନେ ଦୁଇଟି ଫେରସ୍ତ ହିସାବକୁ ଅନ୍ତରସ୍ଥ ସ୍ତମ୍ଭରେ ଯଥାକ୍ରମେ କ୍ରୟ ଓ ବିକ୍ରୟର ପରିମାଣରୁ ବିୟୋଗ କରି ବହିସ୍ଥ ସ୍ତମ୍ଭରେ ନିଟ୍ କ୍ରୟ ଓ ନିଟ୍ ବିକ୍ରୟ ଲେଖନ୍ତି ।

(୨) ଅନ୍ତ୍ୟ ସମ୍ଭାରର କୌଣସି ଖତିୟାନ ହିସାବ ପୂର୍ବରୁ ନ ଥାଏ । ହିସାବ ବର୍ଷ ଶେଷରେ ଯେଉଁ ପଣ୍ୟ ଦ୍ରବ୍ୟ ଅବିକ୍ରୀତ ରହିଯାଏ ତାହାକୁ କ୍ରୟ ମୂଲ୍ୟ ଓ ବଜାର ଦର ମଧ୍ୟରୁ ଯେଉଁଟି ଊଣା ସେହି ହାରରେ ମୂଲ୍ୟାୟନ କରାଯାଇ ଅନ୍ତ୍ୟ ସମ୍ଭାର ହିସାବ ଖୋଲାଯାଏ । ଏହା ଏକ ସମାୟୋଜନ ଓ ଏହାକୁ କାର୍ଯ୍ୟକାରୀ କରିବା ନିମନ୍ତେ ଖାତ୍ ଜାବ୍ଦା ବା ପ୍ରକୃତ ରୋଜନାମା ପ୍ରସ୍ତୁତ କରିବାକୁ ପଡ଼େ । ଯେହେତୁ ଅନ୍ତ୍ୟ ସମ୍ଭାର ଅବିକ୍ରୀତ ପଣ୍ୟ ଦ୍ରବ୍ୟର ନାମାନ୍ତର ମାତ୍ର ଏହା ବ୍ୟବସାୟର ଏକ ପରିସମ୍ପତ୍ତି ରୂପେ ବିବେଚିତ ହେବ ଓ ବସ୍ତୁ ସୂଚକ ହିସାବର ନିୟମାନୁଯାୟୀ ଏହି ହିସାବକୁ ଦାୟୀ କରିଯିବ । ଏବଂ ଏହା ଅବିକ୍ରୀତ ଅବସ୍ଥାରେ ଥିବା ହେତୁ ମୋଟ ଲାଭ ଓ କ୍ଷତି ହିସାବକୁ ଦାତା କରାଯିବ । ଦାୟୀ ବାକି ରୂପେ ଅନ୍ତ୍ୟ ସମ୍ଭାର ଉଦ୍ବର୍ତ୍ତ ପତ୍ରର ପରିସମ୍ପତ୍ତି ଓ ପାଉଣା ପାର୍ଶ୍ୱରେ (ଯହିଁରେ କେବଳ ଉଦ୍ବର୍ତ୍ତ ରହିଥିବା ଦାୟୀ ବାକି ଗୁଡ଼ିକ ସ୍ଥାନ ପାଏ) ପ୍ରକାଶିତ ହେବ ।

ପୂର୍ବୋକ୍ତ ରୋଜନାମାର ପ୍ରଭାବ ଖତିୟାନ ହିସାବ ଉପରେ କିପରି ପଡ଼େ ତାହା ଏକ ଦୃଷ୍ଟାନ୍ତ ସାହାଯ୍ୟରେ ବୁଝାଇ ଦିଆଗଲା ।

ମନେକର ୧୯୭୨ ସାଲ ଡିସେମ୍ବର ୩୧ ତାରିଖରେ ଗୋଟିଏ ବ୍ୟବସାୟରେ ମୋଟ କ୍ରୟ ପରିମାଣ ୫,୭୦୦ ଟଙ୍କା ଥିଲା ।

### ମୋଟ ଲଭ ଓ କ୍ଷତି ହିସାବକୁ ସ୍ଥାନାନ୍ତରିତ ହେବା ପୂର୍ବରୁ

ଦାୟୀ — ଜଗୁ ହିସାବ — ଦାତା

| | | | ଟଙ୍କା | | | | ଟଙ୍କା |
|---|---|---|---|---|---|---|---|
| ୧୯୭୬ ଡିସେ-୩୧ | ବାକୀ ବାବଦ | | ୫,୭୦୦ | | | | |

## ରୋଜନାମା ପରେ

ଦାୟୀ — ଜଗୁ ହିସାବ — ଦାତା

| | | | ଟଙ୍କା | | | | ଟଙ୍କା |
|---|---|---|---|---|---|---|---|
| ୧୯୭୬ ଡିସେ-୩୧ | ବାକୀ ବାବଦ | | ୫,୭୦୦ | ୧୯୭୬ ଡିସେ-୩୧ | ମୋଟ ଲଭ ଓ କ୍ଷତି ହିସାବ ବାବଦ | | ୫,୭୦୦ |

### ୧୯୭୬ ସାଲ ଡିସେମ୍ବର ୩୧ ତାରିଖରେ ଶେଷ ହେଉଥିବା ବର୍ଷର

ଦାୟୀ — ମୋଟ ଲଭ ଓ କ୍ଷତି ହିସାବ — ଦାତା

| | | ଟଙ୍କା | | |
|---|---|---|---|---|
| ଜଗୁ ହିସାବ ବାବଦ | | ୫,୭୦୦ | | |

ମୋଟ ଲଭ ଓ କ୍ଷତି ହିସାବ କିପରି ପ୍ରସ୍ତୁତ କରାଯିବ ତାହାର ଦୃଷ୍ଟାନ୍ତ ନିମ୍ନରେ ପ୍ରଦତ୍ତ ହେଲା ।

## ଦୃଷ୍ଟାନ୍ତ (୭)

୧୯୭୬ ସାଲ ଡିସେମ୍ବର ୩୧ ତାରିଖରେ 'ଦାସ୍ ଏଣ୍ଡ୍ ସନ୍ସ'ଙ୍କର ବ୍ୟବସାୟର ଝଡ଼ତିୟାନ ବାକୀଗୁଡ଼ିକ ନିମ୍ନରେ ପ୍ରଦତ୍ତ ହେଲା । ତହିଁରୁ ୧୯୭୬ ସାଲ ଡିସେମ୍ବର ୩୧ ତାରିଖରେ ଶେଷ ହେଉଥିବା ବର୍ଷର ମୋଟ ଲଭ ଓ କ୍ଷତି ହିସାବ ପ୍ରସ୍ତୁତ କର । ଆବଶ୍ୟକ ରୋଜନାମା ଓ ଖତିୟାନ ହିସାବ ମଧ୍ୟ ଦର୍ଶାଅ ।

| | ଟଙ୍କା | | ଟଙ୍କା |
|---|---|---|---|
| ଆଦ୍ୟ ସମ୍ଭାର | ୩,୨୦୦ | ଅନ୍ତର୍ମୁଖୀ ଫେରସ୍ତ | ୧୦୮ |
| କ୍ରୟ | ୧୧,୪୦୦ | ବହିର୍ମୁଖୀ ଫେରସ୍ତ | ୧୪୫ |
| ବିକ୍ରୟ | ୧୭,୯୪୫ | ମଜୁରି | ୫୮ |
| ଅନ୍ତର୍ମୁଖୀ ଗାଡ଼ିଭଡ଼ା | ୧୨୫ | ନଗର ଶୁଳ୍କ | ୫୦ |

୧୯୭୨ ସାଲ ଡିସେମ୍ବର ୩୧ ତାରିଖରେ ଅବିକ୍ରୀତ ପଣ୍ୟ ଦ୍ରବ୍ୟ ବା ଅନ୍ତ୍ୟ ସମ୍ଭାରର ମୂଲ୍ୟ ୨,୪୦୦ ଟଙ୍କା ଥିଲା ।

## ଦାସ ଏଣ୍ଡ ସନ୍ସଙ୍କର ରୋଜନାମା

| ତାରିଖ | ବିବରଣ | ଖ:ପୃ: | ଦାୟୀ | ଦାତା |
|---|---|---|---|---|
| ୧୯୭୨ | | | ଟଙ୍କା | ଟଙ୍କା |
| ଡିସେ ୩୧ | ମୋଟ ଲାଭ ଓ କ୍ଷତି ହିସାବ ଦାୟୀ | | ୧୪,୯୩୫ | |
| | ଆଦ୍ୟ ସମ୍ଭାର ହିସାବ ବାବଦ | | | ୩,୨୦୦ |
| | କ୍ରୟ ହିସାବ ବାବଦ | | | ୧୧,୪୦୦ |
| | ଅନ୍ତର୍ମୁଖୀ ଗାଡ଼ିଭଡ଼ା ହିସାବ ବାବଦ | | | ୧୨୫ |
| | ଅନ୍ତର୍ମୁଖୀ ଫେରସ୍ତ ହିସାବ ବାବଦ | | | ୧୦୫ |
| | ମଜୁରି ହିସାବ ବାବଦ | | | ୫୫ |
| | ନଗର ଶୁଳ୍କ ହିସାବ ବାବଦ | | | ୫୦ |
| | ( ବିଭିନ୍ନ ଖତିୟାନ ହିସାବର ବାକି ଗୁଡ଼ିକ ମୋଟ ଲାଭ ଓ କ୍ଷତି ହିସାବକୁ ସ୍ଥାନାନ୍ତରିତ କରାଗଲା । ) | | | |
| ୩୧ | ବିକ୍ରୟ ହିସାବ ଦାୟୀ | | ୧୭,୯୪୫ | |
| | ବହିର୍ମୁଖୀ ଫେରସ୍ତ ହିସାବ ଦାୟୀ | | ୧୪୫ | |
| | ମୋଟ ଲାଭ ଓ କ୍ଷତି ହିସାବ ବାବଦ | | | ୧୮,୦୯୦ |
| | (ଖତିୟାନ ହିସାବର ବାକି ଦୁଇଟିକୁ ମୋଟ ଲାଭ ଓ କ୍ଷତି ହିସାବକୁ ସ୍ଥାନାନ୍ତରିତ କରାଗଲା । ) | | | |

| ତାରଖ | ବିବରଣ | ଖ: ପୃ: | ଦାସ୍ଥୀ | ଦାଭା |
|---|---|---|---|---|
| ୧୯୭୨ | | | ଟଙ୍କା | ଟଙ୍କା |
| ଡିସେ-୩୧ | ଅନ୍ତ୍ୟ ସମ୍ଭାର ହିସାବ ଦାସ୍ଥୀ | | ୨,୪୦୦ | |
| | ମୋଟ ଲଭ ଓ କ୍ଷତି ହିସାବ ବାବଦ | | | ୨,୪୦୦ |
| | (ଏହି ତାରଖରେ ଅନ୍ତ୍ୟ ସମ୍ଭାରର ମୂଲ୍ୟାୟନ କରଗଲା ।) | | | |
| ୩୧ | ମୋଟ ଲଭ ଓ କ୍ଷତି ହିସାବ ଦାସ୍ଥୀ | | ୪,୫୫୫ | |
| | ନିଟ୍ ଲଭ ଓ କ୍ଷତି ହିସାବ ବାବଦ | | | ୪,୫୫୫ |
| | ମୋଟ ଲଭ ନିଟ୍ ଲଭ ଓ କ୍ଷତି ହିସାବକୁ ସ୍ଥାନାନ୍ତରିତ କରାଗଲା ।) | | | |

## ଡାସ୍ ଏଣ୍ଡ୍ ସନ୍ସଙ୍କର ଖତିୟାନ

ଦାସ୍ଥୀ — ସମ୍ଭାର ହିସାବ — ଦାଭା

| ୧୯୭୨ | | ଟଙ୍କା | ୧୯୭୨ | | ଟଙ୍କା |
|---|---|---|---|---|---|
| ଜାନୁ-୧ | ପୂର୍ବ ବାକି ବାବଦ | ୩,୨୦୦ | ଡିସେ-୩୧ | ମୋଟ ଲଭ ଓ କ୍ଷତି ହିସାବ ବାବଦ | ୩,୨୦୦ |
| ଡିସେ ୩୧ | ମୋଟ ଲଭଓ କ୍ଷତି ହିସାବ ବବାଦ | ୨,୪୦୦ | ଡିସେ-୩୧ | ବାଙ୍କି ରହିଲା·· ··· | ୨,୪୦୦ |
| | | ୫,୬୦୦ | | | ୫,୬୦୦ |
| ୧୯୭୩ | | | | | |
| ଜାନୁ-୧ | ପୂର୍ବ ବାକି ବାବଦ | ୨,୪୦୦ | | | |

ଦାସ୍ଥୀ — କ୍ରୟ ହିସାବ — ଦାଭା

| ୧୯୭୨ | | ଟଙ୍କା | ୧୯୭୨ | | ଟଙ୍କା |
|---|---|---|---|---|---|
| ଡିସେ-୩୧ | ବାକି ବାବଦ | ୧୧,୪୦୦ | ଡିସେ-୩୧ | ମୋଟ ଲଭ ଓ କ୍ଷତି ହିସାବ ବାବଦ | ୧୧,୪୦୦ |

**ଦାୟୀ ଅନ୍ତର୍ମୁଖୀ ଗାଡ଼ିଭଡ଼ା ହିସାବ ଦାତା**

| ୧୯୭୨ | | ଟଙ୍କା | ୧୯୭୨ | | ଟଙ୍କା |
|---|---|---|---|---|---|
| ଡିସେ ୩୧ | ବାକି ବାବଦ | ୧୨୫ | ଡିସେ-୩୧ | ମୋଟ ଲାଭ ଓ କ୍ଷତି ହିସାବ ବାବଦ | ୧୨୫ |

**ଦାୟୀ ଅନ୍ତର୍ମୁଖୀ ଫେରସ୍ତ ହିସାବ ଦାତା**

| ୧୯୭୨ | | ଟଙ୍କା | ୧୯୭୨ | | ଟଙ୍କା |
|---|---|---|---|---|---|
| ଡିସେ-୩୧ | ବାକି ବାବଦ | ୧୦୫ | ଡିସେ-୩୧ | ମୋଟ ଲାଭ ଓ କ୍ଷତି ହିସାବ ବାବଦ | ୧୦୫ |

**ଦାୟୀ ମଜୁରି ହିସାବ ଦାତା**

| ୧୯୭୨ | | ଟଙ୍କା | ୧୯୭୨ | | ଟଙ୍କା |
|---|---|---|---|---|---|
| ଡିସେ ୩୧ | ବାକି ବାବଦ | ୫୫ | ଡିସେ ୩୧ | ମୋଟ ଲାଭ ଓ କ୍ଷତି ହିସାବ ବାବଦ | ୫୫ |

ଦାୟୀ — ନଗର ଶୁଳ୍କ ହିସାବ — ଦାତା

| ୧୯୭୨ | | | ଟଙ୍କା | ୧୯୭୨ | | | ଟଙ୍କା |
|---|---|---|---|---|---|---|---|
| ଡିସେ ୩୧ | ବାଙ୍କ ବାବଦ | | ୫୦ | ଡିସେ ୩୧ | ମୋଟ ଲଭ ଓ କ୍ଷତି ହିସାବ ବାବଦ | | ୫୦ |

ଦାୟୀ — ବନ୍ଧସ୍ଥ ହିସାବ — ଦାତା

| ୧୯୭୨ | | | ଟଙ୍କା | ୧୯୭୨ | | | ଟଙ୍କା |
|---|---|---|---|---|---|---|---|
| ଡିସେ ୩୧ | ମୋଟ ଲଭ ଓ କ୍ଷତି ହିସାବ ବାବଦ | | ୧୬,୯୪୫ | ଡିସେ ୩୧ | ବାଙ୍କ ବାବଦ | | ୧୬,୯୪୫ |

ଦାୟୀ — ବନ୍ଧମୂର୍ଦ୍ଧି ଫେରସ୍ତ ହିସାବ — ଦାତା

| ୧୯୭୨ | | | ଟଙ୍କା | ୧୯୭୨ | | | ଟଙ୍କା |
|---|---|---|---|---|---|---|---|
| ଡିସେ ୩୧ | ମୋଟ ଲଭ ଓ କ୍ଷତି ହିସାବ ବାବଦ | | ୧୪୫ | ଡିସେ ୩୧ | ବାଙ୍କ ବାବଦ | | ୧୪୫ |

୧୯୬୨ ସାଲ ଡିସେମ୍ବର ୩୧ ତାରିଖରେ ଶେଷ ହେଉଥିବା ବର୍ଷର

ଦାୟୀ ମୋଟ ଲାଭ ଓ କ୍ଷତି ହିସାବ ଦାତା

| | ଟଙ୍କା। | ଟଙ୍କା। | | ଟଙ୍କା। | ଟଙ୍କା। |
|---|---|---|---|---|---|
| ଆଦ୍ୟ ସମ୍ଭାର ବାବଦ | | ୩,୨୦୦ | ବିକ୍ରୟ ହିସାବ ବାବଦ | ୧୬,୯୪୫ | |
| କ୍ରୟ ହିସାବ ବାବଦ | ୧୧,୪୦୭ | | ବାଦ୍ : | | |
| ବାଦ୍-ବହିର୍ମୁଖୀ ଫେରସ୍ତ | ୧୪·୫ | ୧୧,୨୫୫ | ଅନ୍ତର୍ମୁଖୀ ଫେରସ୍ତ | ୧୦·୫ | ୧୬,୮୪୦ |
| ଅନ୍ତର୍ମୁଖୀ ଗାଡ଼ିଭଡ଼ା ହିସାବ ବାବଦ | | ୧୨୫ | ଅନ୍ତ୍ୟ ସମ୍ଭାର ବାବଦ | | ୨,୪୦୦ |
| ମଜୁରି ହିସାବ ବାବଦ | | ୫୫ | | | |
| ନଗର ଶୁଳ୍କ ହିସାବ ବାବଦ | | ୫·୦ | | | |
| ମୋଟ ଲାଭ ନିଟ୍ ଲାଭ ଓ କ୍ଷତି ହିସାବକୁ ନିଆଗଲା | | ୪,୫୫୫ | | | |
| | | ୧୯,୨୪୦ | | | ୧୯,୨୪୦ |

ଏହି ଦୃଷ୍ଟାନ୍ତରେ ପ୍ରଥମେ ମୋଟ ଲାଭ ଓ କ୍ଷତି ହିସାବ ପ୍ରସ୍ତୁତ କରିବା ପୂର୍ବରୁ ରୋଜନାମା ଓ ଖତିୟାନ ହିସାବ ପ୍ରସ୍ତୁତ କରାଗଲା ଓ ତାହା ନିରଚଳ ଭାବରେ କରିବା ଧେୟ, ତଥାପି ଏହା ବ୍ୟତୀତ ମଧ୍ୟ ମୋଟ ଲାଭ ଓ କ୍ଷତି ହିସାବ ପ୍ରସ୍ତୁତ କରାଯାଇ ପାରେ । ତାହାର ଏକ ଦୃଷ୍ଟାନ୍ତ ନିମ୍ନରେ ପ୍ରଦତ୍ତ ହେଲା ।

## ଦୃଷ୍ଟାନ୍ତ (୭)

ନିମ୍ନଲିଖିତ ହିସାବର ବାକିଗୁଡ଼ିକ ବଣିକଭୂ ଷ୍ଟୋରର ଖତିୟାନରୁ ୧୯୬୩ ସାଲ ଜୁନ୍ ୩୦ ତାରିଖରେ ନିଆଯାଇଛି । ତହିଁରୁ ବଣିକଭୂ ଷ୍ଟୋରର ୧୯୬୩ ସାଲ ଜୁନ୍ ୩୦ ତାରିଖରେ ଶେଷ ହେଉଥିବା ବର୍ଷର ମୋଟ ଲାଭ ଓ କ୍ଷତି ହିସାବ ପ୍ରସ୍ତୁତ କର ।

| | ଟଙ୍କା | | ଟଙ୍କା |
|---|---|---|---|
| ଆଦ୍ୟ ସମ୍ଭାର (୧-୭-୭୨) | ୬,୩୦୦ | ବିକ୍ରୟ | ୨୩,୪୦୦ |
| କ୍ରୟ | ୧୫,୨୦୦ | ଅନ୍ତର୍ମୁଖୀ ଫେରସ୍ତ | ୧୨୫ |
| ବହିର୍ମୁଖୀ ଫେରସ୍ତ | ୧୮୦ | ମଜୁରି | ୬୦ |
| ଅନ୍ତର୍ମୁଖୀ ଗାଡ଼ିଭଡ଼ା | ୩୨୦ | | |

୩୦-୬-୧୯୭୩ ତାରିଖରେ ଅନ୍ତ୍ୟ ସମ୍ଭାରର ମୂଲ୍ୟ ୪,୮୦୦ ଟଙ୍କା ଥିଲା ।

## ସମାଧାନ :

୧୯୭୩ ସାଲ ଜୁନ୍ ୩୦ ତାରିଖରେ ଶେଷ ହେଉଥିବା ବର୍ଷର

ଦାୟୀ ମୋଟ ଲାଭ ଓ କ୍ଷତି ହିସାବ ପାଉଣା

| | ଟଙ୍କା | ଟଙ୍କା | | ଟଙ୍କା | ଟଙ୍କା |
|---|---|---|---|---|---|
| ଆଦ୍ୟ ସମ୍ଭାର ବାବଦ | | ୬,୩୦୦ | ବିକ୍ରୟ ହିସାବ ବାବଦ | ୨୩,୪୦୦ | |
| କ୍ରୟ ହିସାବ ବାବଦ | ୧୫,୨୦୦ | | ବାଦ୍ : ଅନ୍ତର୍ମୁଖୀ ଫେରସ୍ତ | ୧୨୫ | ୨୩,୨୭୫ |
| ବାଦ୍ : ବହିର୍ମୁଖୀ ଫେରସ୍ତ | ୧୮୦ | ୧୫,୦୨୦ | ଅନ୍ତ୍ୟ ସମ୍ଭାର ବାବଦ | | ୪,୮୦୦ |
| ଅନ୍ତର୍ମୁଖୀ ଗାଡ଼ିଭଡ଼ା ହିସାବ ବାବଦ | | ୩୨୦ | | | |
| ମଜୁରି ହିସାବ ବାବଦ | | ୬୦ | | | |
| ମୋଟ ଲାଭ, ନିଟ୍ ଲାଭ ଓ କ୍ଷତି ହିସାବକୁ ସ୍ଥାନାନ୍ତରିତ କରାଗଲା । | | ୬,୩୭୫ | | | |
| | | ୨୮,୦୭୫ | | | ୨୮,୦୭୫ |

# ଦୃଷ୍ଟାନ୍ତ (୮)

ମିଶ୍ର ବ୍ରଦାର୍ସଙ୍କର ବ୍ୟବସାୟର ଖତିୟାନରୁ ନିମ୍ନଲିଖିତ ହିସାବ ବାକିଗୁଡ଼ିକ ୧୯୬୨ ସାଲ ଡିସେମ୍ବର ୩୧ ତାରିଖରେ ନିଆଯାଇଛି, ତହିଁରୁ ତାଙ୍କର ସେହି ତାରିଖରେ ଶେଷ ହେଉଥିବା ବର୍ଷର ମୋଟ ଲଭ ଓ କ୍ଷତି ହିସାବ ପ୍ରସ୍ତୁତ କର ।

| | ଟଙ୍କା | | ଟଙ୍କା |
|---|---|---|---|
| ଆଦ୍ୟ ସମ୍ଭାର | ୨,୩୦୦ | ଅନ୍ତର୍ମୁଖୀ ଗାଡ଼ିଭଡ଼ା | ୩୧୮ |
| କ୍ରୟ | ୮,୬୦୦ | ଅନ୍ତର୍ମୁଖୀ ଫେରସ୍ତ | ୨୧୦ |
| ବିକ୍ରୟ | ୯,୯୦୦ | ବହିର୍ମୁଖୀ ଫେରସ୍ତ | ୧୧୨ |
| ମଜୁରି | ୧୨୦ | ନଗର ଶୁଳ୍କ | ୫୦ |

୩୧-୧୨-୧୯୬୨ ତାରିଖରେ ଅନ୍ତ୍ୟ ସମ୍ଭାରର ମୂଲ୍ୟ ୧,୬୪୦ ଟଙ୍କା ଥିଲା ।

## ମିଶ୍ର ବ୍ରଦାର୍ସଙ୍କର

୧୯୬୨ ସାଲ ଡିସେମ୍ବର ୩୧ ତାରିଖରେ ଶେଷ ହେଉଥିବା ବର୍ଷର

ଦାୟୀ ମୋଟ ଲଭ ଓ କ୍ଷତି ହିସାବ ଦାତା

| | ଟଙ୍କା | ଟଙ୍କା | | ଟଙ୍କା | ଟଙ୍କା |
|---|---|---|---|---|---|
| ଆଦ୍ୟ ସମ୍ଭାର ବାବଦ | | ୨,୩୦୦ | ବିକ୍ରୟ ହିସାବ ବାବଦ | ୯,୯୦୦ | |
| କ୍ରୟ ହିସାବ ବାବଦ | ୮,୬୦୦ | | ବାଦ୍ : ଅନ୍ତର୍ମୁଖୀ ଫେରସ୍ତ | ୨୧୦ | ୯,୬୯୦ |
| ବାଦ୍ : ଅନ୍ତର୍ମୁଖୀ ଫେରସ୍ତ | ୧୧୨ | ୮,୪୮୮ | ଅନ୍ତ୍ୟ ସମ୍ଭାର ବାବଦ | | ୧,୬୪୦ |
| ମଜୁରି ହିସାବ ବାବଦ | | ୧୨୦ | ମୋଟ କ୍ଷତି, ନିଟ୍ ଲଭ ଓ କ୍ଷତି ହିସାବକୁ ସ୍ଥାନାନ୍ତରିତ କରାଗଲା । | | ୪୬ |
| ଅନ୍ତର୍ମୁଖୀ ଗାଡ଼ିଭଡ଼ା ହିସାବ ବାବଦ | | ୩୧୮ | | | |
| ନଗର ଶୁଳ୍କ ହିସାବ ବାବଦ | | ୫୦ | | | |
| | | ୧୧,୩୭୬ | | | ୧୧,୩୭୬ |

## ୩ । ନିଟ୍ ଲାଭ ଓ କ୍ଷତି ହିସାବ :

ମୋଟ ଲାଭ ଓ କ୍ଷତି ହିସାବରୁ ବ୍ୟବସାୟର ମୋଟ ଲାଭ ବା କ୍ଷତି କିପରି ନିର୍ଣ୍ଣୟ କରାଯାଏ ତାହା ପୂର୍ବବର୍ତ୍ତୀ ପୃଷ୍ଠାମାନଙ୍କରେ ଆଲୋଚିତ ହେଲା । ମାତ୍ର କୌଣସି ବ୍ୟବସାୟ ପ୍ରତିଷ୍ଠାନ ପକ୍ଷରେ କେବଳ ଏତିକି ଜ୍ଞାନ ଯଥେଷ୍ଟ ନୁହେଁ, କାରଣ ମୋଟ ଲାଭ ବା ମୋଟ କ୍ଷତିରୁ ବ୍ୟବସାୟର ପ୍ରକୃତ ଲାଭ ବା କ୍ଷତି ଜଣାଯାଏ ନାହିଁ । ଏପରି ଦୃଷ୍ଟାନ୍ତ ଅନେକ ସମୟରେ ଦେଖାଯାଏ ଯେ କୌଣସି କାରଣବଶତଃ ମୋଟ ଲାଭର ପରିମାଣ ଯଥେଷ୍ଟ ଥାଇ ମଧ୍ୟ ବ୍ୟବସାୟରେ ନିଟ୍ କ୍ଷତି ହୁଏ ବା ମୋଟ କ୍ଷତି ଥିବା ସତ୍ତ୍ୱେ ନିଟ୍ ଲାଭ ହୋଇପାରେ । ତେଣୁ ବ୍ୟବସାୟର ନିଟ୍ ଲାଭ ବା ନିଟ୍ କ୍ଷତି ଜାଣିବା ସକାଶେ ବ୍ୟବସାୟୀଙ୍କୁ ନିଟ୍ ଲାଭ ଓ କ୍ଷତି ହିସାବ ପ୍ରସ୍ତୁତ କରିବାକୁ ପଡ଼େ ।

ଯେ କୌଣସି ଏକ ବାକି ମେଳ ପର୍ଯ୍ୟାଲୋଚନା କଲେ ଦେଖାଯିବ ଯେ ତହିଁରୁ ମାତ୍ର ସାମାନ୍ୟ କେତୋଟି ବାକି ମୋଟ ଲାଭ ଓ କ୍ଷତି ହିସାବକୁ ଅଣାଯାଇଛି । ତହିଁରେ ମୂଳଧନ, ଦେଣା, ପାଉଣା ଓ ଚରସମ୍ପତ୍ତି ବ୍ୟତୀତ ଆହୁରି ଅନେକ ଆୟ ବ୍ୟୟ ସୂଚକ ହିସାବର ବାକି ବର୍ତ୍ତମାନ ରହିଛି । ମୋଟ ଲାଭ ଓ କ୍ଷତି ହିସାବ ପ୍ରସ୍ତୁତ କରିବାବେଳେ ଆମେ ଦେଖିଛୁ ଯେ କେବଳ ପ୍ରତ୍ୟକ୍ଷ ବ୍ୟୟଗୁଡ଼ିକ, ଯଥା ଅନ୍ତର୍ମୁଖୀ ଗାଡ଼ିଭଡ଼ା, ମଜୁରି, ନଗର ଶୁଳ୍କ ସେହି ହିସାବକୁ ଅଣାଯାଇଛି । ଅପ୍ରତ୍ୟକ୍ଷ ବ୍ୟୟ ଯାହା କି କ୍ରୟ, ବିକ୍ରୟର ପରିମାଣ ସହିତ ପ୍ରତ୍ୟକ୍ଷ ଭାବରେ ସଂପୃକ୍ତ ନୁହେଁ ତାହା ଏହି ହିସାବରେ ଅନ୍ତର୍ଭୁକ୍ତ ହୋଇ ନାହିଁ । ତେଣୁ ଏହି ଅପ୍ରତ୍ୟକ୍ଷ ବ୍ୟୟ ଓ କ୍ଷତି ଏବଂ ଅପ୍ରତ୍ୟକ୍ଷ ଆୟ ମଧ୍ୟ ନିଟ୍ ଲାଭ ଓ କ୍ଷତି ହିସାବରେ ଅନ୍ତର୍ଭୁକ୍ତ କରାଯିବ । ଏହି ବ୍ୟୟଗୁଡ଼ିକ ସାଧାରଣତଃ ଚାରିଗୋଟି ଶ୍ରେଣୀରେ ବିଭକ୍ତ । ଏହି ଶ୍ରେଣୀ ବିଭାଗ ନିମ୍ନରେ ବୁଝାଇ ଦିଆଗଲା ।

(୧) ବିକ୍ରୟ ଓ ବଣ୍ଟନ ସଂକ୍ରାନ୍ତ ବ୍ୟୟ । ବହିର୍ମୁଖୀ ଗାଡ଼ିଭଡ଼ା, ରେଳଭଡ଼ା, ଜାହାଜ ଭଡ଼ା, ବୀମା, ବିକ୍ରୟକାରୀଙ୍କ ବେତନ, କମିଶନ, ବୋନାସ୍, ରପ୍ତାନୀ ଶୁଳ୍କ, ପ୍ରଚାର ଓ ବିଜ୍ଞାପନ ପ୍ରଭୃତି ବ୍ୟୟ ଏହି ଶ୍ରେଣୀ ଅନ୍ତର୍ଗତ ।

(୨) ବ୍ୟବସ୍ଥାପନା ବା ପରିଚାଳନା ସଂକ୍ରାନ୍ତ ବ୍ୟୟ । ଦପ୍ତର ଭଡ଼ା, ଦପ୍ତର ସରଞ୍ଜାମ, ଡାକ ଟିକଟ, ଟେଲିଫୋନ ଓ ଟେଲିଗ୍ରାମ ବ୍ୟୟ, କର୍ମଚାରୀଙ୍କର ବେତନ, ଟିକସ, ବୀମା, ପରିଚାଳକଙ୍କର ବେତନ, ଭତ୍ତା, ଅନାଦାୟୀ ଋଣ, ଆଇନ ସଂକ୍ରାନ୍ତ ବ୍ୟୟ, ହିସାବ ସମୀକ୍ଷକଙ୍କର ବେତନ ବା ଭତ୍ତା ବା

ପାରିଶ୍ରମିକ, ଗସ୍ତ ଖର୍ଚ୍ଚ, ଛପେଇ ଖର୍ଚ୍ଚ, ସାଧାରଣ ବ୍ୟୟ ପ୍ରଭୃତି ଏହି ଶ୍ରେଣୀର ଅନ୍ତର୍ଗତ ।

(୩) ମୂଳଧନ ସଂଗ୍ରହ ସଂକ୍ରାନ୍ତ ବ୍ୟୟ । ପ୍ରଦତ୍ତ ସୁଧ, ପ୍ରଦତ୍ତ ବଟା ପ୍ରଭୃତି ବ୍ୟୟ ଏହି ଶ୍ରେଣୀର ଅନ୍ତର୍ଗତ ।

(୪) ସଂରକ୍ଷଣ ଓ ମୂଲ୍ୟ ହ୍ରାସ ସଂକ୍ରାନ୍ତ ବ୍ୟୟ । ମରାମତି, ପରିସମ୍ପତ୍ତିର ମୂଲ୍ୟ ହ୍ରାସ ପ୍ରଭୃତି ବ୍ୟୟ ବା କ୍ଷତି ଏହି ଶ୍ରେଣୀର ଅନ୍ତର୍ଗତ ।

ନିଟ୍ ଲାଭ ଓ କ୍ଷତି ହିସାବ ପ୍ରସ୍ତୁତ କରିବାବେଳେ ଏହା ସ୍ମରଣ ରଖିବାକୁ ହେବ ଯେ ଯେଉଁ ପରିମାଣର ଆୟ ବା ବ୍ୟୟ ଏହି ହିସାବ ବର୍ଷ ସହିତ ସଂପୃକ୍ତ କେବଳ ସେତିକି ପରିମାଣର ଆୟ ବା ବ୍ୟୟ ଏହି ହିସାବକୁ ଆଣିବ । ଉଦାହରଣ ସ୍ୱରୂପ, ମନେକର ଯେ ଗୋଟିଏ ବ୍ୟବସାୟର ହିସାବ ଜାନୁୟାରୀ ମାସରେ ଆରମ୍ଭ ହୋଇ ଡିସେମ୍ବର ମାସରେ ଶେଷ ହୁଏ । ବ୍ୟବସାୟ ଯେଉଁ ଗୃହରେ ପ୍ରତିଷ୍ଠିତ ହୋଇଛି ତାହା ସକାଶେ ମାସିକ ୨୦୦ ଟଙ୍କା ଘରଭଡ଼ା ଦିଆଯାଏ । ମନେକର ଜୁଲାଇ ମାସ ୧ ତାରିଖରେ ବ୍ୟବସାୟୀ ଘରର ମାଲିକଙ୍କୁ ୧ ବର୍ଷର ଘରଭଡ଼ା ବାବଦ ୨,୪୦୦ ଟଙ୍କା ଦେଲେ । ପ୍ରତି ବର୍ଷ ଏହି ସମୟରେ ଏକକାଳୀନ ବାର୍ଷିକ ଭଡ଼ା ଦିଆଯାଏ । ବର୍ତ୍ତମାନ ପ୍ରଶ୍ନ ହେଉଛି ଯେ ଘରଭଡ଼ା ବାବଦ ବ୍ୟୟ କରାଯାଇଥିବା ମୋଟ ୨,୪୦୦ ଟଙ୍କା ନିଟ୍ ଲାଭ ଓ କ୍ଷତି ହିସାବରେ ଅନ୍ତର୍ଭୁକ୍ତ ହେବ କି ନାହିଁ । ଅବଶ୍ୟ ଘରଭଡ଼ା ଏକ ଅପ୍ରତ୍ୟକ୍ଷ ବ୍ୟୟ ଓ ଏହା ବ୍ୟବସ୍ଥାପନା ସଂକ୍ରାନ୍ତ ବ୍ୟୟ ହୋଇଥିବା ଦୃଷ୍ଟିରୁ ନିଟ୍ ଲାଭ ଓ କ୍ଷତି ହିସାବକୁ ଆଣାଯିବ । ମାତ୍ର ଯେହେତୁ ଏହି ହିସାବ ଏକ ନିର୍ଦ୍ଦିଷ୍ଟ ହିସାବ ବର୍ଷର ଲାଭ ବା କ୍ଷତି ନିର୍ଣ୍ଣୟ କରିବା ସକାଶେ କରାଯାଉଛି; ତେଣୁ ଏହି ବ୍ୟୟର କେବଳ ଯେଉଁ ଅଂଶ ଏହି ହିସାବ ବର୍ଷ ସହିତ ସଂପୃକ୍ତ ସେତିକି ବ୍ୟୟ, ଅର୍ଥାତ୍ ଜୁଲାଇଠାରୁ ଡିସେମ୍ବର ମାସ ବା ୬ ମାସର ଘରଭଡ଼ା ଏହି ବର୍ଷର ନିଟ୍ ଲାଭ ଓ କ୍ଷତି ହିସାବକୁ ଆଣାଯିବ । ବଳକା ୬ ମାସର ଘରଭଡ଼ା ବାବଦ ୧,୨୦୦ ଟଙ୍କା ଅଗ୍ରିମ ପ୍ରଦତ୍ତ ବ୍ୟୟ ହିସାବକୁ ନିଆଯାଇ ଉଦ୍ବର୍ତ୍ତ ପତ୍ରରେ ପରିସମ୍ପତ୍ତିରୂପେ ପ୍ରକାଶିତ ହେବ । ଏ ବିଷୟରେ ବିଶଦ ଆଲୋଚନା ପରେ କରାଯିବ ।

ଆଉ ଗୋଟିଏ ଉଦାହରଣ ନିଆଯାଉ । ମନେକର ଭ୍ରମର ବ୍ୟବସାୟିକ ପ୍ରତିଷ୍ଠାନ ସୁଧାକର ମିଶ୍ରଙ୍କୁ ୧,୦୦୦ ଟଙ୍କା ଋଣ ଦେଇଛି । ଏହି ଋଣ ବାବଦ ସେ ଭ୍ରମରର ବ୍ୟବସାୟକୁ ୧୨% ହାରରେ ସୁଧ ଦିଅନ୍ତି । କୌଣସି ଅସୁବିଧା ବଶତଃ ସେ ଗତ ବର୍ଷର ଅକ୍ଟୋବର, ନଭେମ୍ବର ଓ ଡିସେମ୍ବର ମାସର ସୁଧ ଦେଇ

ନ ଥିଲେ । ଏହି ତିନି ମାସ ଓ ଏ ବର୍ଷର ତିନି ମାସ ଏହିପରି ୬ ମାସର ସୁଧ ବାବଦ ୭୨ ଟଙ୍କା ଅପ୍ରେଲ ୧ ତାରିଖରେ ଦେଲେ । ବର୍ତ୍ତମାନ ପ୍ରଶ୍ନ ହେଉଛି ଯେ ଏହି ହିସାବ ବର୍ଷରେ ପ୍ରାପ୍ତ ସୁଧ ବାବଦ ଏହି ଆୟ ଏହି ବର୍ଷର ଲଭ ଓ କ୍ଷତି ହିସାବରେ ଅନ୍ତର୍ଭୁକ୍ତ ହେବ କି ନାହିଁ । ଯେହେତୁ ଏହା ଏକ ମୂଳାଙ୍ଗ ଜାତୀୟ ଆୟ ତେଣୁ ଏହା ଏହି ବର୍ଷର ନିଟ୍ ଲଭ ଓ କ୍ଷତି ହିସାବକୁ ଆଣିବ ଯତ ମାତ୍ର ୬ ମାସ ସ୍ଥଳେ କେବଳ ତିନି ମାସର ସୁଧ, ଅର୍ଥାତ୍ ଜାନୁୟାରୀ, ଫେବ୍ରୁଆରୀ ଓ ମାର୍ଚ୍ଚ ଏହି ତିନି ମାସର ସୁଧ ବାବଦ ୩୬ ଟଙ୍କା ଏହି ବର୍ଷର ନିଟ୍ ଲଭ ଓ କ୍ଷତି ହିସାବକୁ ଆଣିବ, କାରଣ କେବଳ ଏହି ତିନି ମାସ ଚଳିତ ହିସାବ ବର୍ଷ ସହିତ ସଂପୃକ୍ତ । ସୁତରାଂ ଆୟ ବା ବ୍ୟୟ, ଯାହା ହେଉ ନା କାହିଁକି, ଚଳିତ ହିସାବ ବର୍ଷରେ ଯଥାକ୍ରମେ ପ୍ରାପ୍ତ ବା ପ୍ରଦତ୍ତ ହୋଇଥିଲେ ମଧ୍ୟ ତାହା ସମ୍ପୂର୍ଣ୍ଣରୂପେ ସେହି ବର୍ଷର ଆୟ ବା ବ୍ୟୟ ରୂପେ ବିବେଚିତ ହେବ ନାହିଁ । ଏଥିନିମନ୍ତେ ଏକମାତ୍ର ବିଚାରର ମାନଦଣ୍ଡ ବା ଭିତ୍ତି ହେଲ ଏହା ଏହି ହିସାବ ବର୍ଷ ସହିତ ସଂପୃକ୍ତ କି ନୁହେଁ । ଯଦି ସଂପୃକ୍ତ ହୁଏ, ଯେତିକି ଅଂଶ ସଂପୃକ୍ତ କେବଳ ସେତିକି ଅଂଶ ଏହି ହିସାବ ବର୍ଷର ଆୟ ବା ବ୍ୟୟ ରୂପେ ବିବେଚିତ ହେବ ।

ସେହିପରି ଆଉ ଏକ ବିଷୟ ସ୍ମରଣ ରଖିବା ଉଚିତ. ତାହା ହେଲ ଏହି ଯେ, ଯେହେତୁ ଏକ ନିର୍ଦ୍ଦିଷ୍ଟ ହିସାବ ବର୍ଷର ନିଟ୍ ଲଭ ବା କ୍ଷତି ନିର୍ଣ୍ଣୟ କରିବା ସକାଶେ ନିଟ୍ ଲଭ ଓ କ୍ଷତି ହିସାବ ପ୍ରସ୍ତୁତ କରାଯାଉଛି; ତେଣୁ ଏହି ହିସାବ ବର୍ଷର ଯାହା ନ୍ୟାଯ୍ୟ ଆୟ ବା ନ୍ୟାଯ୍ୟ ବ୍ୟୟ ତାହା ମିଳି ଥାଉ ବା ନ ଥାଉ କିମ୍ବା ଦିଆଯାଇ ଥାଉ ବା ନ ଥାଉ, ଏ ବର୍ଷର ହିସାବରେ ତାହା ଅନ୍ତର୍ଭୁକ୍ତ ହେବ ।

ଉଦାହରଣ ସ୍ୱରୂପ, ମନେକର ଯେ ଡିସେମ୍ବର ୩୧ ତାରିଖରେ ହିସାବ ବର୍ଷ ଶେଷ ହେବ, କିନ୍ତୁ ଡିସେମ୍ବର ମାସ ସକାଶେ କର୍ମଚାରୀମାନଙ୍କର ବେତନ ପରବର୍ତ୍ତୀ ବର୍ଷର ଜାନୁୟାରୀ ମାସରେ ଦିଆଯିବ । ବର୍ତ୍ତମାନ ପ୍ରଶ୍ନ ହେଲ ଯେ ନ ଦିଆଯାଇଥିବା ଏହି ବେତନ ଏ ବର୍ଷର ନିଟ୍ ଲଭ ଓ କ୍ଷତି ହିସାବରେ ଅନ୍ତର୍ଭୁକ୍ତ ହେବ କି ନାହିଁ । କେହି କେହି ହୁଏତ ଯୁକ୍ତି କରି ପାରନ୍ତି ଯେ ଯେହେତୁ ଚଳିତ ହିସାବ ବର୍ଷରେ ଏହି ବ୍ୟୟ ସଂଘଟିତ ହୋଇ ନାହିଁ; ତେଣୁ ଏହା ଏ ବର୍ଷର ହିସାବକୁ କାହିଁକି ଆଣିବ । ମାତ୍ର ଦିଆଯାଇଥାଉ ବା ନ ଥାଉ ଏହି ବ୍ୟୟ ଚଳିତ ବର୍ଷର ନ୍ୟାଯ୍ୟ ବ୍ୟୟ କି ନୁହେଁ ତାହାହିଁ ବିଚାରର ମାନଦଣ୍ଡ । ଯେହେତୁ କର୍ମଚାରୀମାନେ ଡିସେମ୍ବର ମାସ, ଅର୍ଥାତ୍ ଚଳିତ ବର୍ଷ ସେମାନଙ୍କର ଶ୍ରମ ଦ୍ୱାରା ବ୍ୟବସାୟକୁ ଉପକୃତ କରିଛନ୍ତି ତେଣୁ ସେମାନଙ୍କର ବେତନ ଚଳିତ ବର୍ଷର

ନ୍ୟାଯ୍ୟ ବ୍ୟୟ ରୂପେ ବିବେଚିତ ହେବ ଓ ଦିଆ ନ ଯାଇଥିଲେ ମଧ୍ୟ ଏହା ଏହି ବର୍ଷର ନଟ୍ ଲାଭ ଓ କ୍ଷତି ହିସାବରେ ଅନ୍ତର୍ଭୁକ୍ତ ହେବ ।

ଯେଉଁପରି ମନେକର ଗୋଟିଏ ବ୍ୟବସାୟିକ ପ୍ରତିଷ୍ଠାନ ୫,୦୦୦ ଟଙ୍କାର ସରକାରୀ ଋଣପତ୍ର କ୍ରୟ କରିଛନ୍ତି । ଏଥିନିମନ୍ତେ ସରକାର ବାର୍ଷିକ ୫% ହାରରେ ସୁଧ ଦେବେ, କିନ୍ତୁ ପ୍ରତି ବର୍ଷର ସୁଧ ଅପ୍ରେଲ ୧ ତାରିଖରେ ମିଳିବ ଅର୍ଥାତ୍ ସରକାରୀ ଆର୍ଥିକ ବର୍ଷ ଶେଷରେ ମିଳିବ । ତେଣୁ ବର୍ତ୍ତମାନ ପ୍ରଶ୍ନ ହେଉଛି ଯେ ଅପ୍ରେଲ ୧ ତାରିଖଠାରୁ ଡିସେମ୍ବର ୩୧ ତାରିଖ ପର୍ଯ୍ୟନ୍ତ ଏହି ୯ ମାସର ସୁଧ, ଯାହାକି ଅର୍ଜିତ ହୋଇଛି ମାତ୍ର ଏ ପର୍ଯ୍ୟନ୍ତ ମିଳି ନାହିଁ ତାହା ଏହି ହିସାବ ବର୍ଷର ଆୟ ରୂପେ ବିବେଚିତ ହେବ କି ନାହିଁ । ହୁଏତ କେହି କେହି ଯୁକ୍ତି ଦେଖାଇ ପାରନ୍ତି ଯେ ଏହି ସୁଧ ଯେହେତୁ ବ୍ୟବସାୟକୁ ଆସି ନାହିଁ ତେଣୁ ଏହାକୁ ଏହି ହିସାବ ବର୍ଷର ନଟ୍ ଲାଭ ଓ କ୍ଷତି ହିସାବକୁ ଅଣାଯିବ କିପରି ? କିନ୍ତୁ ଏପରି ଯୁକ୍ତି ଯଥାର୍ଥ ନୁହେଁ । ଆୟ ପ୍ରାପ୍ତ କି ଅପ୍ରାପ୍ତ ହୋଇଛି ତାହା ଅପ୍ରାସଙ୍ଗିକ, ଏଠାରେ ବିଚାରର ମାନଦଣ୍ଡ ହେଲା ଏହା ଯେ, ଏହି ଆୟ ଏହି ହିସାବ ବର୍ଷରେ ଅର୍ଜିତ ହୋଇଛି କି ନାହିଁ । ଯଦି ଅର୍ଜିତ ହୋଇଥାଏ ତାହେଲେ ତାହା ମିଳି ଥାଉ ବା ନ ଥାଉ ନଟ୍ ଲାଭ ଓ କ୍ଷତି ହିସାବରେ ଅନ୍ତର୍ଭୁକ୍ତ ହେବ ।

ସୁତରାଂ ଦେଖାଗଲା ଯେ ଯଦି ହିସାବ ବର୍ଷର ପୂର୍ବବର୍ତ୍ତୀ ବା ପରବର୍ତ୍ତୀ ସମୟ ସକାଶେ ଚଳିତ ହିସାବ ବର୍ଷ ମଧ୍ୟରେ କୌଣସି ଆୟ ବ୍ୟବସାୟକୁ ଆସିଛି ତାହେଲେ ତାହା ଏହି ହିସାବ ବର୍ଷର ନଟ୍ ଲାଭ ଓ କ୍ଷତି ହିସାବରେ ସ୍ଥାନ ପାଇବ ନାହିଁ । ଯଦି ତହିଁରେ ଏହି ହିସାବ ବର୍ଷ ସହିତ କୌଣସି ଆୟ ସଂପୃକ୍ତ ଥାଏ ତାହେଲେ କେବଳ ସେହି ସଂପୃକ୍ତ କାଳର ଆୟ ନଟ୍ ଲାଭ ଓ କ୍ଷତି ହିସାବରେ ଅନ୍ତର୍ଭୁକ୍ତ ହେବ । ସେହିପରି ଯଦି ଏହି ହିସାବ ବର୍ଷର ପୂର୍ବବର୍ତ୍ତୀ ବା ପରବର୍ତ୍ତୀ କାଳ ସକାଶେ କୌଣସି ବ୍ୟୟ କରାଯାଇଛି ତାହେଲେ ତାହା ଏ ବର୍ଷର ନଟ୍ ଲାଭ ଓ କ୍ଷତି ହିସାବରେ ଅନ୍ତର୍ଭୁକ୍ତ ହେବ ନାହିଁ । ଯଦି ତହିଁରେ ଏ ବର୍ଷର କିଛି ସମୟ ସକାଶେ କିଛି ବ୍ୟୟ ମିଳିତ ଥାଏ ତାହେଲେ ସେହି ସଂପୃକ୍ତ ସମୟର ନ୍ୟାଯ୍ୟ ବ୍ୟୟ ଚଳିତ ହିସାବ ବର୍ଷର ନଟ୍ ଲାଭ ଓ କ୍ଷତି ହିସାବକୁ ଅଣାଯିବ । ପୁଣି ଏହି ବର୍ଷର ନ୍ୟାଯ୍ୟ ଆୟ ମିଳିଥାଉ ବା ନ ଥାଉ କିମ୍ବା ନ୍ୟାଯ୍ୟ ବ୍ୟୟ ଦିଆଯାଇ ଥାଉ ବା ନ ଥାଉ ତାହା ନଟ୍ ଲାଭ ଓ କ୍ଷତି ହିସାବରେ ଅନ୍ତର୍ଭୁକ୍ତ ହେବ ।

କୌଣସି ଆୟ ବା ବ୍ୟୟକୁ କାଟ୍ ଛାଣ୍ କରି ଊଣା ବା ଅଧିକ କରି ଉପଯୁକ୍ତ ପରିମାଣର ଆୟ ବା ବ୍ୟୟକୁ ନଟ୍ ଲାଭ ଓ କ୍ଷତି ହିସାବକୁ ଆଣିବାର

ନାମ ସମାଯୋଜନ ଅଟେ । ଯେଉଁପରି ଯଦି କୌଣସି ନ୍ୟାଯ୍ୟ ଅୟ ଅଦୌ ମିଳି ନାହିଁ କମ୍ବା ନ୍ୟାଯ୍ୟ ବ୍ୟୟ ଆଦୌ ଦିଆଯାଇ ନାହିଁ ତାହେଲେ ସେଥି-ନିମନ୍ତେ ନିଟ୍ ଲଭ ଓ କ୍ଷତି ହିସାବରେ ବ୍ୟବସ୍ଥା କରିବାର ନାମ ମଧ୍ୟ ସମାଯୋଜନ । ଏହା ବ୍ୟତୀତ ହିସାବରେ ଠିକ୍ ଭାବରେ ନ ଥାଏ, ତାହାକୁ ଠିକ୍ ଠାକ୍ କରିବା ନିମନ୍ତେ ରୋଜନାମାର ସାହାଯ୍ୟ ନେବାକୁ ପଡ଼େ । ଏହାକୁ ସମାଯୋଜନ ରୋଜନାମା କୁହାଯାଏ । ବିଭିନ୍ନ ପ୍ରକାର ସମାଯୋଜନ ଓ ସେଥି ନିମନ୍ତେ ଆବଶ୍ୟକ ରୋଜନାମା ନିମ୍ନରେ ପ୍ରଦତ୍ତ ହେଲା ।

## (୧) ବକେୟା ବ୍ୟୟ :

ଅନେକ ସମୟରେ ଚୂଡ଼ାନ୍ତ ବା କାଲାନ୍ତିକ ହିସାବ ପ୍ରସ୍ତୁତ କରିବା ସମୟରେ ଦେଖାଯାଏ ଯେ ଚଳିତ ହିସାବ ବର୍ଷର କେତେକ ନ୍ୟାଯ୍ୟ ବ୍ୟୟ ବାବଦ ଟଙ୍କା ଦିଆଯାଇ ନାହିଁ । ଉଦାହରଣ ସ୍ୱରୂପ ବେତନ, ଘରଭଡ଼ା, ଋଣର ସୁଧ, ମଜୁରି ପ୍ରଭୃତି ବ୍ୟୟର ନାମ ଉଲ୍ଲେଖ କରାଯାଇ ପାରେ । ତେଣୁ ନିଟ୍ ଲଭ ବା କ୍ଷତି ହିସାବ ପ୍ରସ୍ତୁତ କରିବା ସମୟରେ ଏହି ସବୁ ବ୍ୟୟ ନିମନ୍ତେ ବ୍ୟବସ୍ଥା କରିବା ଆବଶ୍ୟକ ହୁଏ । ସେଥିନିମନ୍ତେ ନିମ୍ନଲିଖିତ ରୋଜନାମା ପ୍ରସ୍ତୁତ କରାଯାଏ, ଯଥା:—

ବେତନ ହିସାବ ଦାୟୀ
ବକେୟା ବେତନ ହିସାବ ବାବଦ
( ବାକି ଥିବା ବେତନର ବ୍ୟବସ୍ଥା କରାଗଲା )

## ଦୃଷ୍ଟାନ୍ତ ( ୯ )

ବସ୍ତ୍ରକଳା ଷ୍ଟୋର୍ସ ତାଙ୍କର କର୍ମଚାରୀଙ୍କର ୧୯୭୨ ସାଲ ଡିସେମ୍ବର ମାସର ବେତନ ବାବଦ ୨୦୦ ଟଙ୍କା ଦେଇ ନାହାନ୍ତି, ମାସିକ ୧୫୦ ଟଙ୍କା ହାରରେ ୨ ମାସର ଘରଭଡ଼ା ଦେଇ ନାହାନ୍ତି । ଋଣର ସୁଧ ବାବଦ ୧୦୦ ଟଙ୍କା ମଧ୍ୟ ଡିସେମ୍ବର ୩୧ ତାରିଖ ପୁଦ୍ଧା ଦିଆଯାଇ ନାହିଁ । ତାଙ୍କର ହିସାବ ବର୍ଷ ଜାନୁଆରୀ ୧ ତାରିଖରୁ ଆରମ୍ଭ ହୋଇ ଡିସେମ୍ବର ୩୧ ତାରିଖରେ ଶେଷ ହୁଏ । ଆବଶ୍ୟକ ରୋଜନାମା ପ୍ରସ୍ତୁତ କର ।

**ସମାଧାନ :**

| ତାରିଖ | ବିବରଣୀ | ଖ: ପୃ: | ଦାୟୀ | ଦାତା |
|---|---|---|---|---|
| | | | ଟଙ୍କା | ଟଙ୍କା |
| ୧୯୭୧ ଡିସେ-୩୧ | ବେତନ ହିସାବ ଦାୟୀ<br>ବକେୟା ବେତନ ହିସାବ ବାବଦ<br>( କର୍ମଚାରୀଙ୍କର ଡିସେମ୍ବର ମାସର ବକେୟା ବେତନ ପାଇଁ ବ୍ୟବସ୍ଥା କରଗଲା । ) | | ୨୦୦ | ୨୦୦ |
| ୩୧ | ଦୋକାନ ଘରଭଡ଼ା ହିସାବ ଦାୟୀ<br>ବକେୟା ଦୋକାନ ଘରଭଡ଼ା ହିସାବ ବାବଦ<br>( ମାସିକ ୧୫୦ ଟଙ୍କା ହାରରେ ଦୁଇ ମାସର ବକେୟା ଦୋକାନ ଘରଭଡ଼ା ନିମନ୍ତେ ବ୍ୟବସ୍ଥା କରଗଲା । ) | | ୩୦୦ | ୩୦୦ |
| ୩୧ | ଦୋକାନ ସୁଧ ହିସାବ ଦାୟୀ<br>ବକେୟା ଦୋକାନ ସୁଧ ହିସାବ ବାବଦ<br>( ବକେୟା ଦୋକାନ ସୁଧ ନିମନ୍ତେ ବ୍ୟବସ୍ଥା କରଗଲା । ) | | ୧୦୦ | ୧୦୦ |

ପ୍ରଥମ ନମ୍ବର ରୋଜନାମାରେ ଦାୟୀ ହୋଇଥିବା ବେତନ ହିସାବ ଲାଭ ଲୋକସାନ ହିସାବର ଦାୟୀ ପାର୍ଶ୍ୱରେ ଅନ୍ତର୍ଭୁକ୍ତ ହେବ । ଏହା ସ୍ୱତନ୍ତ୍ର ଭାବରେ ବାହାରୁ ସ୍ତମ୍ଭରେ ଲେଖା ନ ଯାଇ ସାଧାରଣତଃ ଦିଆଯାଇଥିବା ୧୧ ମାସର ବେତନ ସହିତ ଅନ୍ତରସ୍ଥ ସ୍ତମ୍ଭରେ ଯୋଗ କରାଯିବ । ବକେୟା ବେତନ ହିସାବ ଦେଣା ସ୍ୱରୂପ ଉଦ୍‌ବୃତ୍ତ ପତ୍ରର ଦେଣା ଓ ମୂଳଧନ ପାର୍ଶ୍ୱରେ ପ୍ରକାଶିତ ହେବ । ଅନ୍ୟ ରୋଜନାମା ଗୁଡ଼ିକରେ ଥିବା ହିସାବମାନ ଅନୁରୂପ ଭାବରେ ପ୍ରକାଶିତ ହେବ ।

## (୨) ପ୍ରାପ୍ୟ ଆୟ :

ଯଦି କୌଣସି ଆୟ ଅର୍ଜିତ ହୋଇଛି ମାତ୍ର ତାହା ଚଳିତ ହିସାବ ବର୍ଷ ମଧ୍ୟରେ ଅପ୍ରାପ୍ତ ରହିଛି ତାହେଲେ ସେହି ଆୟକୁ ରୋଜନାମା ସାହାଯ୍ୟରେ ଚଳିତ ବର୍ଷର ହିସାବରେ ଅନ୍ତର୍ଭୁକ୍ତ କରିବାକୁ ପଡ଼ିବ । ନିମ୍ନରେ ଏକ ଉଦାହରଣ ପ୍ରଦତ୍ତ ହେଲା ।

### ଦୃଷ୍ଟାନ୍ତ (୧୦)

ହରିଶଙ୍କର ଏଣ୍ଡ୍ ସନ୍ସ ୧୯୬୦ ସାଲରେ ୧୦,୦୦୦ ଟଙ୍କାର କମ୍ପାନୀ ଋଣପତ୍ର କ୍ରୟ କଲେ । କମ୍ପାନୀ ଏଥିରେ ୬% ସୁଧ ଦିଅନ୍ତି ଓ ତାହା ପ୍ରତି ବର୍ଷ ଜୁଲାଇ ମାସ ତା ୧ ରିଖରେ ମିଳେ । ହରିଶଙ୍କର ଏଣ୍ଡ୍ ସନ୍ସଙ୍କର ବ୍ୟବସାୟ ଜାନୁୟାରୀ ତା ୧ ରିଖରେ ଆରମ୍ଭ ହୋଇ ଡିସେମ୍ବର ତା ୩୧ ରିଖରେ ଶେଷ ହୁଏ । (କ) ୧୯୭୨ ସାଲ ଜୁଲାଇ ତା ୧ ରିଖରେ ୧୯୭୧-୭୨ ସାଲର ସୁଧ କମ୍ପାନୀଠାରୁ ମିଳିଛି; କିନ୍ତୁ ଜୁଲାଇଠାରୁ ଡିସେମ୍ବର ପର୍ଯ୍ୟନ୍ତ ସମୟର ସୁଧ ମିଳି ନାହିଁ । (ଖ) ୧୯୭୧-୭୨ ସାଲର ସୁଧ ଜୁଲାଇ ତା ୧ ରିଖରେ ମିଳିନାହିଁ ଏବଂ ଜୁଲାଇ ମାସଠାରୁ ଡିସେମ୍ବର ମାସ ପର୍ଯ୍ୟନ୍ତ ସମୟର ସୁଧ ମଧ୍ୟ ମିଳି ନାହିଁ । ଆବଶ୍ୟକୀୟ ସମାଯୋଜନ ରୋଜନାମା ପ୍ରସ୍ତୁତ କର ।

## ସମାଧାନ :

| ତାରିଖ | ବିବରଣୀ | ଖାଃପୃଃ | ଦାୟୀ | ଦାତା |
|---|---|---|---|---|
| (କ) ୧୯୭୨ ଡିସେ ୩୧ | ପ୍ରାପ୍ୟ ସୁଧ ହିସାବ ଦାୟୀ | | ଟଙ୍କା ୩୦୦ | ଟଙ୍କା |
| | ସୁଧ ହିସାବ ବାବଦ | | | ୩୦୦ |
| | ( ଋଣ ପତ୍ର ବାବଦ ୬% ହାରରେ ୬ ମାସର ଅର୍ଜିତ ସୁଧ ହିସାବକୁ ଅଣାଗଲା । ) | | | |
| (ଖ) ଡିସେ-୩୧ | ପ୍ରାପ୍ୟ ସୁଧ ହିସାବ ଦାୟୀ | | ୬୦୦ | |
| | ସୁଧ ହିସାବ ବାବଦ | | | ୬୦୦ |
| | ( ଋଣପତ୍ର ବାବଦ ଜାନୁୟାରୀ ଠାରୁ ଜୁନ ପର୍ଯ୍ୟନ୍ତ ୬ ମାସର ବକେୟା ସୁଧ ଓ ଜୁଲାଇଠାରୁ ଡିସେମ୍ବର ପର୍ଯ୍ୟନ୍ତ ୬ମାସର ୬%ହାରରେ ଅର୍ଜିତ ସୁଧ ହିସାବକୁ ଅଣାଗଲା । ) | | | |

(କ) ଦାୟୀ କରାଯାଇଥିବା 'ପ୍ରାପ୍ୟ ସୁଧ ହିସାବ' ବାବଦ ୩୦୦ ଟଙ୍କା ଉଦ୍‌ବୃତ୍ତ ପତ୍ରର ସମ୍ପତ୍ତି ପାର୍ଶ୍ୱରେ ପାଉଣା ସ୍ୱରୂପ ପ୍ରକାଶିତ ହେବ ଓ ଦାତା କରାଯାଇଥିବା 'ସୁଧ ହିସାବ' ବାବଦ ୩୦୦ ଟଙ୍କା ନିଟ୍ ଲାଭ ଓ କ୍ଷତି ହିସାବର ଦାତା ପାର୍ଶ୍ୱରେ ଅନ୍ତର୍ଭୁକ୍ତ ହେବ । ଏହା ବାହ୍ୟସ୍ଥ ସ୍ତମ୍ଭ ବା କଲମରେ ଲେଖା ନ ଯାଇ ଅନ୍ତରସ୍ଥ ସ୍ତମ୍ଭରେ ଅନ୍ୟ ପ୍ରାପ୍ତ ସୁଧ ସହିତ ( ଯଦି ଥାଏ ) ଯୋଗ କରାଯିବ ।

(ଖ) ଏହି ରୋଜନାମାରେ ଲେଖାଥିବା ପ୍ରାପ୍ୟ ସୁଧ ହିସାବ ଓ ସୁଧ ହିସାବ ଯଥାକ୍ରମେ ଉଦ୍‌ବୃତ୍ତ ପତ୍ର ଓ ନିଟ୍ ଲାଭ ଓ କ୍ଷତି ହିସାବରେ (କ) ର ଅନୁରୂପ ପଦ୍ଧତିରେ ଅନ୍ତର୍ଭୁକ୍ତ ହେବ । କେବଳ ପାର୍ଥକ୍ୟ ଏତିକି ଯେ ୩୦୦ ଟଙ୍କା ସ୍ଥଳେ ଏ କ୍ଷେତ୍ରରେ ୬୦୦ ଟଙ୍କା ହେବ ।

ଆଉ ଏକ ସୂକ୍ଷ୍ମ ପାର୍ଥକ୍ୟ ରହିଛି, ତାହା ହେଉଛି ୧-୧-୭୨ ଠାରୁ ୩୦-୬-୭୨ ପର୍ଯ୍ୟନ୍ତ ୬ମାସର ସୁଧର ପ୍ରାପ୍ତିର ତାରିଖ ଗଡ଼ିଯାଇ ଥିବାରୁ ତାହାକୁ ବକେୟା ସୁଧ କୁହାଯିବ ଓ ୧-୭-୭୨ ଠାରୁ ୩୧-୧୨-୭୨ ପର୍ଯ୍ୟନ୍ତ ୬ ମାସର ସୁଧର ପ୍ରାପ୍ତିର ସମୟ (୧-୭-୭୩) ଅତିକ୍ରାନ୍ତ ହୋଇ ନ ଥିବାରୁ ଏହାକୁ ପ୍ରାପ୍ୟ ସୁଧ ବୋଲି କୁହାଯିବ । ଏ କ୍ଷେତ୍ରରେ ୧୯୭୧ ସାଲର ହିସାବ କରିବାବେଳେ ୧-୭-୭୧ ଠାରୁ ୩୧-୧୨-୭୧ ପର୍ଯ୍ୟନ୍ତ ୬ ମାସର ସୁଧ ହିସାବକୁ ପୂର୍ବ ବର୍ଷରେ ଅଣାଯାଇଥିବ ।

ଯେତେବେଳେ ପ୍ରକୃତରେ ପ୍ରାପ୍ୟ ସୁଧ ବାବଦ ଟଙ୍କା ମିଳିବ ସେତେବେଳେ ତାହା ରୋକଡ଼ ବହିର ଦାୟୀ ପାର୍ଶ୍ୱରେ 'ପ୍ରାପ୍ୟ ସୁଧ ବାବଦ' ୩୦୦ ଟଙ୍କା ଲେଖାଯିବ ଓ ଖତିୟାନରେ ପ୍ରାପ୍ୟ ସୁଧ ହିସାବର ଦାତା ପାର୍ଶ୍ୱରେ ନଗଦ ତହବିଲ । ବ୍ୟାଙ୍କ୍ ହିସାବ ବାବଦ ୩୦୦ ଟଙ୍କା ଲେଖାଯିବ । ଏହା ପରେ 'ପ୍ରାପ୍ୟ ସୁଧ ହିସାବ' ଆଉ ଉଦ୍‌ବୃତ୍ତ ପତ୍ରରେ ଲେଖାଯିବ ନାହିଁ । ସେ ବାବଦର ଟଙ୍କା ନଗଦ ତହବିଲ କିମ୍ବା ବ୍ୟାଙ୍କରେ ଚଳିତ ତହବିଲ ସହିତ ମିଶିଯିବ ।

ଅର୍ଜିତ ମାତ୍ର ଅପ୍ରାପ୍ତ କମିଶନ୍, ପାରିଶ୍ରମିକ, ଘରଭଡ଼ା (ପ୍ରାପ୍ୟ) ପ୍ରଭୃତି ଅନ୍ୟାନ୍ୟ ଆୟ ସକାଶେ ଅନୁରୂପ ବ୍ୟବସ୍ଥା କରାଯିବ ।

## (୩) ଅଗ୍ରିମ ପ୍ରଦତ୍ତ ବ୍ୟୟ :

ବୀମାର ପ୍ରିମିୟମ, ଘରଭଡ଼ା, ଋଣର ସୁଧ ପ୍ରଭୃତି କେତେକ ବ୍ୟୟ ଅନେକ ସମୟରେ ଅଗ୍ରିମ ଦିଆଯାଇଥାଏ । ଉଦାହରଣ ସ୍ୱରୂପ, ସେପ୍ଟେମ୍ବର

୧ ତାରିଖରେ ୬ ମାସର ଘରଭଡ଼ା ଏକକାଳୀନ ଦିଆଯାଇପାରେ । ଯଦି ହିସାବ ବର୍ଷ ଡିସେମ୍ବର ୩୧ ତାରିଖରେ ଶେଷ ହେଉଥାଏ ତାହେଲେ ୨ ମାସର ଘରଭଡ଼ା ଏହି ହିସାବ ବର୍ଷର ବ୍ୟୟରୁ ବାଦ୍ ଦିଆଯିବ, କାରଣ ଏହା ଏହି ହିସାବ ବର୍ଷ ସହିତ ସଂପୃକ୍ତ ନୁହେଁ । ସାଧାରଣତଃ ବୀମାର ପ୍ରିମିୟମ୍ ୧୨ମାସ କମ୍ପା ବର୍ଷକ ସକାଶେ ଦିଆଯାଏ । ଯଦି ଏହା ହିସାବ ବର୍ଷଠାରୁ ପୃଥକ୍ ହୁଏ ତାହେଲେ ସମାଯୋଜନ ଆବଶ୍ୟକ ହୁଏ । ନିମ୍ନଲିଖିତ ଦୃଷ୍ଟାନ୍ତରୁ ଏହା ପରିଷ୍କାର ବୁଝାଯିବ ।

## ଦୃଷ୍ଟାନ୍ତ (୧୧)

ସୁବୁଦ୍ଧି ଏଣ୍ଡ୍ ସନ୍ସ୍ ତାଙ୍କର ବ୍ୟବସାୟ ସକାଶେ ବୀମା ପଲିସି କରିଛନ୍ତି । ଏଥିନିମନ୍ତେ ପ୍ରତି ବର୍ଷ ମାର୍ଚ୍ଚ ୧ ତାରିଖରେ ବର୍ଷକର ପ୍ରିମିୟମ୍ ବାବଦ ୬୦୦ ଟଙ୍କା ବୀମା କମ୍ପାନୀକୁ ଦିଆଯାଏ । ସୁବୁଦ୍ଧି ଏଣ୍ଡ୍ ସନ୍ସ୍‌ଙ୍କର ହିସାବ ବର୍ଷ ଜାନୁୟାରୀ ୧ ତାରିଖରେ ଆରମ୍ଭ ହୋଇ ଡିସେମ୍ବର ୩୧ ତାରିଖରେ ଶେଷ ହୁଏ । ସେମାନେ ୧-୩-୧୯୬୨ ରେ ବର୍ଷକର ବୀମା ପ୍ରିମିୟମ ବାବଦ ୬୦୦ ଟଙ୍କା ଦେଇଛନ୍ତି । ଆବଶ୍ୟକୀୟ ସମାଯୋଜନ ରୋଜନାମା ପ୍ରସ୍ତୁତ କର ।

**ସମାଧାନ :**

| ତାରିଖ | ବିବରଣ | ଖ: ପୃ: | ଦାୟୀ | ଦାତା |
|---|---|---|---|---|
| ୧୯୬୨ | | | ଟଙ୍କା | ଟଙ୍କା |
| ଡିସେ-୩୧ | ଅଗ୍ରିମ ପ୍ରଦତ୍ତ ବୀମା ପ୍ରିମିୟାମ ହିସାବ ଦାୟୀ | | ୧୦୦ | |
| | ବୀମା ପ୍ରିମିୟାମ ହିସାବ ବାବଦ | | | ୧୦୦ |
| | (ପରବର୍ତ୍ତୀ ହିସାବ ବର୍ଷର ୨ମାସ ସକାଶେ ଅଗ୍ରିମ ପ୍ରଦତ୍ତ ବୀମା ପ୍ରିମିୟାମ୍ ଏ ବର୍ଷ ହିସାବରୁ ବାଦ୍ ଦିଆଗଲା ।) | | | |

ଅଗ୍ରିମ ପ୍ରଦତ୍ତ ବୀମା ପ୍ରିମିୟାମ ହିସାବକୁ ଦାୟୀ କରାଯାଇଥିବା ୧୦୦ଟଙ୍କା ହିଦବୃତ୍ତ ପତ୍ରର ପରିସମ୍ପତ୍ତି ପାର୍ଶ୍ୱରେ ଅନ୍ତର୍ଭୁକ୍ତ ହେବ ଓ ଦାତା କରାଯାଇଥିବା

ବୀମା ପ୍ରିମିୟମ ହିସାବ ନଟ୍ ଲାଭ ଓ କ୍ଷତି ହିସାବର ଦାୟୀ ପାର୍ଶ୍ୱରେ ଥିବା ବୀମା ପ୍ରିମିୟମ ହିସାବର ଦାୟୀ ବାକି ୬୦୦ ଟଙ୍କାରୁ ଅନ୍ତରସ୍ଥ ସ୍ତମ୍ଭରେ ବାଦ୍ ଦିଆଯାଇ ବହିସ୍ଥ ସ୍ତମ୍ଭରେ ୫୦୦ ଟଙ୍କା ଲେଖାଯିବ । ନଟ୍ ଲାଭ ଓ କ୍ଷତି ହିସାବରେ ଏହା କିପରି ଲେଖାଯିବ ତାହା ନିମ୍ନରେ ପ୍ରଦର୍ଶିତ ହେଲା ।

ଦାୟୀ — ନଟ୍ ଲାଭ ଓ କ୍ଷତି ହିସାବ — ଦାତା

| | ଟଙ୍କା | ଟଙ୍କା | |
|---|---|---|---|
| ବୀମା ପ୍ରିମିୟମ ହିସାବ ବାବଦ | ୬୦୦ | | |
| ବାଦ୍ ଅଗ୍ରିମ ପ୍ରଦତ୍ତ | ୧୦୦ | ୫୦୦ | |

## (୪) ଅଗ୍ରିମ ପ୍ରାପ୍ତ ଆୟ :

ଅନେକ ସମୟରେ ପରବର୍ତ୍ତୀ ହିସାବ ବର୍ଷର ଆୟ ଚଳିତ ହିସାବ ବର୍ଷରେ ମିଳିଥାଏ । କେବଳ ଚଳିତ ହିସାବ ବର୍ଷରେ ମିଳିଛି ବୋଲି ଏହାକୁ ଏହି ବର୍ଷର ଆୟ ବୋଲି ବିବେଚନା କରାଯାଇ ପାରିବ ନାହିଁ । ତେଣୁ ଏହି ଆୟର ଯେତିକି ପରିମାଣ ଚଳିତ ହିସାବ ବର୍ଷ ସହିତ ସଂପୃକ୍ତ କେବଳ ସେତିକି ପରିମାଣ ନଟ୍ ଲାଭ ଓ କ୍ଷତି ହିସାବକୁ ଯିବ ଓ ଯେଉଁ ପରିମାଣ ପରବର୍ତ୍ତୀ ହିସାବ ବର୍ଷ ସହିତ ସଂପୃକ୍ତ ତାହା ଦେଣା ବା ଦାୟ ସ୍ୱରୂପ ଉଦ୍‌ବୃତ୍ତ ପତ୍ରର ଦେଣା ଓ ମୂଳଧନ ପାର୍ଶ୍ୱରେ ଅନ୍ତର୍ଭୁକ୍ତ ହେବ । ଉଦାହରଣ ସ୍ୱରୂପ, ମନେକର ତୁମର ବ୍ୟବସାୟିକ ପ୍ରତିଷ୍ଠାନ ସକାଶେ ତୁମେ ଗୋଟିଏ ବହୁ କକ୍ଷ ବିଶିଷ୍ଟ ବଡ଼ ଇମାରତ ଭଡ଼ା ନେଇଛ ଓ ତହିଁରୁ ଗୋଟିଏ ଅଂଶ ମାସିକ ୧୦୦ ଟଙ୍କାରେ ଅନ୍ୟ ଜଣଙ୍କୁ ଭଡ଼ା ଦେଇଛ । ସେ ଗତ ସେପ୍ଟେମ୍ବର ମାସରେ ତୁମ ବ୍ୟବସାୟକୁ ୬ମାସର ଘରଭଡ଼ା ବାବଦ ୬୦୦ ଟଙ୍କା ଦେଇଛି ଏବଂ ତୁମ ବ୍ୟବସାୟର ହିସାବ ବର୍ଷ ଡିସେମ୍ବର ୩୧ ତାରିଖରେ ଶେଷ ହେଉଥାଏ ତାହେଲେ ପରବର୍ତ୍ତୀ ବର୍ଷର ଦୁଇ ମାସ ସକାଶେ ମିଳିଥିବା ଟଙ୍କା, ୬୦୦ ଟଙ୍କାରୁ ବାଦ୍ ଦିଆଯାଇ କେବଳ ୪୦୦ ଟଙ୍କା ନଟ୍ ଲାଭ ଓ କ୍ଷତି ହିସାବରେ ଅନ୍ତର୍ଭୁକ୍ତ ହେବ । ଏଥିନିମନ୍ତେ ରୋଜନାମାର ସାହାଯ୍ୟ ନେବାକୁ ପଡ଼ିବ । ଏହି ରୋଜନାମାର ଏକ ଦୃଷ୍ଟାନ୍ତ ନିମ୍ନରେ ପ୍ରଦତ୍ତ ହେଲା ।

## ଦୃଷ୍ଟାନ୍ତ ( ୧୨ )

କୁମାର ଏଣ୍ଡ୍ କୋ: ପଦ୍ମନାଭ ସାହୁଙ୍କୁ ୩,୦୦୦ ଟଙ୍କା ଋଣ ଦେଇଛନ୍ତି । ଏଥିନିମନ୍ତେ ଶ୍ରୀ ସାହୁ ୯% ହାରରେ ସୁଧ ଦଅନ୍ତି । ସେ ୧-୧୧-୭୨ ତାରିଖରେ ୬ ମାସର ସୁଧ ଏକ କାଳୀନ ଦେଲେ । କୁମାର ଏଣ୍ଡ୍ କୋ: ଙ୍କର ବାର୍ଷିକ ହିସାବ ଡିସେମ୍ବର ୩୧ ତାରିଖରେ ପ୍ରସ୍ତୁତ କରାଯାଏ । ଅବଶ୍ୟକ ସମାଯୋଜନ ରୋଜନାମା ଲେଖ ।

| ତାରିଖ | ବିବରଣ | ଖ: ପୃ: | ଦାୟୀ | ଦାତା |
|---|---|---|---|---|
| ୧୯୭୨ | | | ଟଙ୍କା | ଟଙ୍କା |
| ଡିସେ-୩୧ | (ପ୍ରାପ୍ୟ) ସୁଧ ହିସାବ ଦାୟୀ | | ୯୦ | |
| | ଅଗ୍ରିମ ପ୍ରାପ୍ତ ସୁଧ ହିସାବ ବାବଦ | | | ୯୦ |
| | ( ୪ ମାସର ଅଗ୍ରିମ ପ୍ରାପ୍ତ ସୁଧ ହିସାବରୁ ବାଦ୍ ଦିଆଗଲେ ) | | | |

ଦାୟୀ କରାଯାଇଥିବା ( ପ୍ରାପ୍ୟ ) ସୁଧ ହିସାବର ୯୦ ଟଙ୍କା ନିଟ୍ ଲାଭ ଓ କ୍ଷତି ହିସାବର ଦାୟୀ ପାର୍ଶ୍ୱରେ ଲେଖା ନ ଯାଇ ଦାତା ପାର୍ଶ୍ୱରେ ସେଇଠି ପ୍ରାପ୍ତ ସୁଧ ଲେଖାଯାଇଛି ତହିଁରୁ ବାଦ୍ ଦିଆଯିବ । ପୂର୍ବ ଦୃଷ୍ଟାନ୍ତ ଭଳି ଏହା ମଧ୍ୟ ଅନ୍ତର୍ଲେଖ ସ୍ତମ୍ଭରେ ବିୟୋଗ କରାଯାଇ ନିଟ୍ ସୁଧ ବହିସ୍ଥ ସ୍ତମ୍ଭରେ ଲେଖାଯିବ । ଦାତା କରାଯାଇଥିବା ଅଗ୍ରିମ ପ୍ରାପ୍ତ ସୁଧ ହିସାବ ବାବଦ ୯୦ଟଙ୍କା ଦେଣାରୂପେ ଉଦ୍‌ବୃତ୍ତ ପତ୍ରର ଦେଣା ଓ ମୂଳଧନ ପାର୍ଶ୍ୱରେ ପ୍ରକାଶିତ ହେବ । ପରବର୍ତ୍ତୀ ହିସାବ ବର୍ଷରେ ନିମ୍ନଲିଖିତ ରୋଜନାମା ସାହାଯ୍ୟରେ ଏହା ପୁଣି ସେହି ବର୍ଷର ହିସାବକୁ ଅଣାଯିବ

| | | ଟଙ୍କା | ଟଙ୍କା |
|---|---|---|---|
| ଅଗ୍ରିମ ପ୍ରାପ୍ତ ସୁଧ ହିସାବ | ଦାୟୀ | ୯୦ | |
| (ପ୍ରାପ୍ୟ) ସୁଧ ହିସାବ ବାବଦ | | | ୯୦ |

ଏହି ଶ୍ରେଣୀର ସମାଯୋଜନ ବ୍ୟତୀତ ଅନ୍ୟାନ୍ୟ କେତେ ପ୍ରକାର ସମଯୋଜନ ଚୂଡ଼ାନ୍ତ ବା କାଳାନ୍ତିକ ହିସାବ କରିବା ସମୟରେ ଆବଶ୍ୟକ ହୁଏ । ସେଗୁଡ଼ିକ ନିମ୍ନରେ ଆଲୋଚିତ ହେଲା ।

## (କ) ମୂଲ୍ୟ ହ୍ରାସ :

ବ୍ୟବସାୟମାନଙ୍କର ଯେଉଁସବୁ ପରିସମ୍ପତ୍ତି ବ୍ୟବହୃତ ହୁଏ ତାହା ପ୍ରତ୍ୟହ ନିୟମିତ ଭାବରେ ବ୍ୟବହୃତ ହେଉଥିବାରୁ ଏହାର ମୂଲ୍ୟ ହ୍ରାସ ପାଏ । ଏହି ପୃଥିବୀରେ ଯେପରି କୌଣସି ପ୍ରାଣୀ ଅମର ନୁହେଁ ସେହିପରି କୌଣସି ପଦାର୍ଥ ବା ବସ୍ତୁ ଚିରସ୍ଥାୟୀ ନୁହେଁ । ପ୍ରତ୍ୟେକ ପ୍ରାଣୀର ଆୟୁ ସଦୃଶ ପ୍ରତ୍ୟେକ ବସ୍ତୁର ମଧ୍ୟ ଗୋଟିଏ ନିର୍ଦ୍ଦିଷ୍ଟ ଆୟୁ ଅଛି ଯାହାପରେ ଏହା ଅକାମୀ ହୋଇ ପଡ଼େ । ଉଦାହରଣ ସ୍ୱରୂପ, କାରଖାନାର ଯନ୍ତ୍ର ନିଆଯାଉ । ଏହାର ପରମାୟୁ ଅତି ଅଧିକ ହେଲେ ୧୦ କିମ୍ବା ୧୫ ବର୍ଷ, ଯେଉଁ କାଳ ପରେ ଏହା ସମ୍ପୂର୍ଣ୍ଣରୂପେ ଅକାମୀ ହୋଇ ପଡ଼ିବ । ମନେକର ଏହି ଯନ୍ତ୍ରଟି ଉତ୍ପାଦନକାରୀ ୧୦,୦୦୦ଟଙ୍କା ମୂଲ୍ୟରେ କ୍ରୟ କରି, କାରଖାନାରେ ସ୍ଥାପନ କରିଥିଲେ । ଏହା ଆନୁମାନିକ ୧୦ ବର୍ଷ ପର୍ଯ୍ୟନ୍ତ କାର୍ଯ୍ୟକ୍ଷମ ରହିବ ଓ ତାହା ପରେ ଏହାକୁ ହୁଏତ ଓଜନ ଦରରେ ଭଙ୍ଗା ରୁଜା ଲୁହା ଟିଣକୁ ବିକେତାଙ୍କୁ ବିକ୍ରୟ କରିଦେବାକୁ ପଡ଼ିବ । ଏହି ଯନ୍ତ୍ରର ମୂଲ୍ୟ ୧୦ ବର୍ଷ ପରେ ପ୍ରାୟ ଶୂନରେ ପରିଣତ ହେବ । ଏହା ନିଶ୍ଚିତ ଯେ ଯେଉଁ ଯନ୍ତ୍ରର ମୂଲ୍ୟ ହିସାବ ଖାତା ଅନୁଯାୟୀ ୧୦,୦୦୦ ଟଙ୍କା ଅଛି ୧୦ ବର୍ଷ ପରେ ତାହା ଶୂନରେ ପରିଣତ ହେବ । ତେଣୁ ପ୍ରଶ୍ନ ହେଉଛି ଯେ ୧୦ ବର୍ଷ ପରେ ହିସାବ ଖାତାରୁ ଏହି ୧୦,୦୦୦ ଟଙ୍କା ଏକ କାଳୀନ ବାଦ୍ ଦିଆଯିବ ନା ପ୍ରତି ବର୍ଷ ୧,୦୦୦ ଟଙ୍କା ଲେଖା ଏଥିରୁ ବାଦ୍ ଦେଇ ହିସାବ ଖାତାରେ ଲେଖାଥିବା ଯନ୍ତ୍ରର ମୂଲ୍ୟକୁ ପ୍ରତି ବର୍ଷ ହ୍ରାସ କରି ୧୦ ବର୍ଷ ପରେ ଶୂନକୁ ଅଣାଯିବ । ପୂର୍ବରୁ କୁହାଯାଇଛି ଯେ ପରିସମ୍ପତ୍ତି ବିକ୍ରୟରେ ଯେଉଁ କ୍ଷତି ହୁଏ ତାହା ମୁନାଫା କାରବାର କ୍ଷତି ଓ ତେଣୁ ତାହା ନିଟ୍ ଲାଭ ଓ କ୍ଷତି ହିସାବର ଦାୟୀ ପାର୍ଶ୍ୱକୁ ଅଣାଯିବ । ସୁତରାଂ ପ୍ରଥମ ପଦ୍ଧତି ଅନୁଯାୟୀ ୧୦,୦୦୦ ଟଙ୍କାର କ୍ଷତି ଦଶମ ବର୍ଷର ନିଟ୍ ଲାଭ ଓ କ୍ଷତି ହିସାବରେ ଅନ୍ତର୍ଭୁକ୍ତ ହେବ; କିନ୍ତୁ ହଠାତ୍ ଗୋଟିଏ ବର୍ଷରେ ଏତେ ଅଧିକ ପରିମାଣର କ୍ଷତି ବ୍ୟବସାୟ ପକ୍ଷରେ ସମ୍ଭାଳିବା କଷ୍ଟକର ଓ ଅବାଞ୍ଛନୀୟ ମଧ୍ୟ । ଅନ୍ୟ ଭାବରେ ଦେଖିବାକୁ ଗଲେ ପ୍ରତି ବର୍ଷ ଯେଉଁ ମୂଲ୍ୟ ହ୍ରାସ ହେଉଛି ତାହା ବ୍ୟବସାୟ ସକାଶେ ଆୟ କରିବା ନିମନ୍ତେ ଘଟୁଛି; ତେଣୁ ଯନ୍ତ୍ରର ଏହି ମୂଲ୍ୟ ହ୍ରାସକୁ ଯନ୍ତ୍ର ବ୍ୟବହାରର ଏକ ନ୍ୟାଯ୍ୟ ମୂଲ୍ୟ ସ୍ୱରୂପ ବିବେଚନା କରାଯାଇ ପାରେ, ଠିକ୍

କର୍ମଚାରୀଙ୍କର କର୍ମ ବା ସେବା ବଦଳରେ ଯେପରି ବେତନ ଦେବାକୁ ପଡ଼େ ବା ଶ୍ରମ ବଦଳରେ ଶ୍ରମିକଙ୍କୁ ଯେପରି ମଜୁରି ଦେବାକୁ ପଡ଼େ, ତେଣୁ ଯଦି ପ୍ରତି ବର୍ଷର ହିସାବ ଯନ୍ତ୍ରର ବ୍ୟବହାର ଦ୍ୱାରା ଉପକୃତ ହୁଏ ତାହେଲେ ଏହା ଏହାର ନ୍ୟାଯ୍ୟ ବ୍ୟୟ ବହନ କରିବା ଉଚିତ୍ । ଦଶବର୍ଷର ହିସାବ ଯେହେତୁ ଯନ୍ତ୍ରର ବ୍ୟବହାର ଦ୍ୱାରା ଉପକୃତ ହେବ; ତେଣୁ କେବଳ ଦଶମ ବର୍ଷର ହିସାବ ସମସ୍ତ ବ୍ୟୟ ବା କ୍ଷତି ବହନ କରିବା ଉଚିତ୍ ନୁହେଁ । ଏହା ଅନୁଚିତ୍ ଓ ଅଯଥା ବିଚୁତି ଏବଂ ଏହା କରିବା ଦ୍ୱାରା ଦଶମ ବର୍ଷର ପ୍ରକୃତ ଲାଭର ପରିମାଣ ଅଯଥା ହ୍ରାସ ପାଇବ, ତେଣୁ ଦ୍ୱିତୀୟ ପଦ୍ଧତି ହିଁ ପ୍ରକୃତ ପଦ୍ଧତି ଓ ପ୍ରତି ବର୍ଷ ୧,୦୦୦ ଟଙ୍କା ଲେଖା ମୂଲ୍ୟ ହ୍ରାସ ବାବଦ କ୍ଷତି ସେହି ବର୍ଷର ଲାଭ ଓ କ୍ଷତି ହିସାବକୁ ଯିବ । ପରିସମ୍ପତ୍ତିଗୁଡ଼ିକର ମୂଲ୍ୟ ହ୍ରାସ କି କାରଣରୁ ଘଟେ ଓ ପ୍ରତି ବର୍ଷର ମୂଲ୍ୟ ହ୍ରାସର ପ୍ରକୃତ ପରିମାଣ କିପରି ଗଣନା କରାଯାଏ ତାହା ପରବର୍ତ୍ତୀ ଏକ ପରିଚ୍ଛେଦରେ ବର୍ଣ୍ଣିତ ହୋଇଛି ।

ଏହି ମୂଲ୍ୟ ହ୍ରାସକୁ ଏକ ସମାଯୋଜନ ରୋଜନାମା ସାହାଯ୍ୟରେ ହିସାବଭୁକ୍ତ କରାଯାଏ । ଏହାର ଏକ ଦୃଷ୍ଟାନ୍ତ ନିମ୍ନରେ ଦିଆଗଲା ।

## ଦୃଷ୍ଟାନ୍ତ (୧୩)

ଶ୍ରୀ ନଟବର ପ୍ରଧାନଙ୍କର ବ୍ୟବସାୟରେ ଥିବା ନିମ୍ନଲିଖିତ ପରିସମ୍ପତ୍ତି-ଗୁଡ଼ିକର ଦିଆଯାଇଥିବା ନିର୍ଦ୍ଦେଶ ଅନୁଯାୟୀ ୩୧-୧୨-୧୯୭୨ ତାରିଖରେ ମୂଲ୍ୟ ହ୍ରାସକୁ କାର୍ଯ୍ୟକାରୀ କରିବା ପାଇଁ ରୋଜନାମା ପ୍ରସ୍ତୁତ କର ।

| ପରିସମ୍ପତ୍ତି | ଚିଠାସ୍ଥାନ ହିସାବରେ ଲେଖାଥିବା ମୂଲ୍ୟ ଟଙ୍କା | ମୂଲ୍ୟ ହ୍ରାସର ଶତକଡ଼ା ହାର |
|---|---|---|
| ଯନ୍ତ୍ର | ୧୦,୦୦୦ | ୧୦% |
| ଅସ୍‌ବାବ୍ | ୫,୦୦ | ୨୦% |
| ଉପକରଣ | ୩,୦୦୦ | ୧୫% |

| ତାରିଖ | ବିବରଣ | ଖ: ପୃ: | ଦାୟୀ | ଦାତା |
|---|---|---|---|---|
| ୧୯୭୨ ଡିସେ-୩୧ | ମୂଲ୍ୟ ହ୍ରାସ ହିସାବ ଦାୟୀ | | ଟଙ୍କା ୨,୪୫୦ | |
| | ଘର ହିସାବ ବାବଦ. | | | ୧,୦୦୦ |
| | ଅଟ୍‌ଡାବ ହିସାବ ବାବଦ | | | ୧,୦୦୦ |
| | ଉପକରଣ ହିସାବ ବାବଦ | | | ୪୫୦ |
| | ( ୧୦,୦୦୦ ଟଙ୍କାର ୧୦%, ୫,୦୦୦ ଟଙ୍କାର ୨୦% ଓ ୩,୦୦୦ ଟଙ୍କାର ୧୫% ମୂଲ୍ୟ ହ୍ରାସ କରଗଲା । ) | | | |

| ତାରିଖ | ବିବରଣ | ଖ: ପୃ: | ଦାୟୀ | ଦାତା |
|---|---|---|---|---|
| ୧୯୭୨ ଡିସେ-୩୧ | ନାଟ୍ ଲଭ ଓ କ୍ଷତି ହିସାବ ଦାୟୀ | | ଟଙ୍କା | ଟଙ୍କା |
| | ମୂଲ୍ୟ ହ୍ରାସ ହିସାବ ବାବଦ | | | |
| | ମୂଲ୍ୟ ହ୍ରାସ ହିସାବ ବନ୍ଦ କରି ବାକୀ ନାଟ୍ ଲଭ ଓ କ୍ଷତି ହିସାବକୁ ସ୍ଥାନାନ୍ତରିତ କରଗଲା । ) | | | |

ଖତିୟାନ ହିସ ଦରେ ଏହା ନିମ୍ନଲିଖିତ ରୂପେ ପ୍ରକାଶ ପାଇବ

ଦାୟୀ — ଘର ହିସାବ — ଦାତା

| ତାରିଖ | ବିବରଣ | | ଟଙ୍କା | ତାରିଖ | ବିବରଣ | | ଟଙ୍କା |
|---|---|---|---|---|---|---|---|
| ୧୯୭୨ ଡିସେ ୩୧ | ବାକୀ ବାବଦ | | ୧୦,୦୦୦ | ୧୯୭୨ ଡିସେ ୩୧ | ମୂଲ୍ୟ ହ୍ରାସ ହିସାବ ବାବଦ | | ୧,୦୦୦ |
| | | | | ଡିସେ-୩୧ | ବାକୀ ଗଡ଼ିଲ | | ୯,୦୦୦ |
| | | | ୧୦,୦୦୦ | | | | ୧୦,୦୦୦ |

ଦାୟୀ — ଆସବାବ୍ ହିସାବ — ଦାତା

| ୧୯୭୨ | | ଟଙ୍କା | ୧୯୭୨ | | ଟଙ୍କା |
|---|---|---|---|---|---|
| ଡିସେ ୩୧ | ବାକି ବାବଦ | ୫,୦୦୦ | ଡିସେ-୩୧ | ମୂଲ୍ୟ ହ୍ରାସ ହିସାବ ବାବଦ | ୧,୦୦୦ |
| | | | ଡିସେ-୩୧ | ବାକି ଚଳିଲା | ୪,୦୦୦ |
| | | ୫,୦୦୦ | | | ୫,୦୦୦ |

ଦାୟୀ — ଉପକରଣ ହିସାବ — ଦାତା

| ୧୯୭୨ | | ଟଙ୍କା | ୧୯୭୨ | | ଟଙ୍କା |
|---|---|---|---|---|---|
| ଘ-୩୧ | ବାକି ବାବଦ | ୩,୦୦୦ | ଡିସେ-୩୧ | ମୂଲ୍ୟ ହ୍ରାସ ହିସାବ ବାବଦ | ୪୫୦ |
| | | | ଡିସେ-୩୧ | ବାକି ଚଳିଲା | ୨,୫୫୦ |
| | | ୩,୦୦୦ | | | ୩,୦୦୦ |

ଦାୟୀ — ମୂଲ୍ୟ ହ୍ରାସ ହିସାବ — ଦାତା

| ୧୯୭୨ | | ଟଙ୍କା | ୧୯୭୨ | | ଟଙ୍କା |
|---|---|---|---|---|---|
| ଡିସେ ୩୧ | ଯନ୍ତ୍ର ହିସାବ ବାବଦ | ୧,୦୦୦ | ଡିସେ-୩୧ | ନଟ୍ ଲାଭ ଓ କ୍ଷତି ହିସାବ ବାବଦ | ୨,୪୫୦ |
| ,, ୩୧ | ଆସବାବ୍ ହିସାବ ବାବଦ | ୧,୦୦୦ | | | |
| ,, ୩୧ | ଉପକରଣ ହିସାବ ବାବଦ | ୪୫୦ | | | |
| | | ୨,୪୫୦ | | | ୨,୪୫୦ |

| ଦାବୀ | ନିଟ୍ ଲାଭ ଓ କ୍ଷତି ହିସାବ | | | | ଜମା |
|---|---|---|---|---|---|
| ୧୯୭୨ | | ଟଙ୍କା | | | ଟଙ୍କା |
| ଡିସେ ୩୧ | ମୂଲ୍ୟ ହ୍ରାସ ହିସାବ ବାବଦ | ୨,୪୫୦ | | | |

## (୭) ଅନାଦେୟ ଋଣ :

ଯଦିଓ ପ୍ରତ୍ୟେକ ବ୍ୟବସାୟରେ ନଗଦ କାରବାର ସର୍ବତୋଭାବେ ବାଞ୍ଛନୀୟ, ତଥାପି ବ୍ୟବସାୟୀ ମୋଟା ବେପାରୀଙ୍କଠାରୁ ଯେପରି ଉଧାରରେ ପଣ୍ୟ ଦ୍ରବ୍ୟ କ୍ରୟ କରନ୍ତି, ସେହିପରି ଗ୍ରାହକମାନଙ୍କୁ ଧାରରେ ପଣ୍ୟ ଦ୍ରବ୍ୟ ବିକ୍ରୟ କରିବାକୁ ବାଧ୍ୟ ହୁଅନ୍ତି । ଅବଶ୍ୟ ବ୍ୟବସାୟୀ ବହୁ ବିଚାର ବିବେଚନା କରି, ଯାହାଙ୍କଠାରୁ ଋଣ ଅଦାୟ ହୋଇ ପାରିବ ସେହିପରି ବ୍ୟକ୍ତିଙ୍କୁ ଧାରରେ ପଣ୍ୟ ଦ୍ରବ୍ୟ ବିକ୍ରୟ କରନ୍ତି । କିନ୍ତୁ ତଥାପି କେତେକ ସମୟରେ ଋଣର ସମସ୍ତ ପରିମାଣ କିମ୍ବା ଆଂଶିକ ପରିମାଣ ବିଭିନ୍ନ କାରଣରୁ କେତେକ ଗ୍ରାହକଙ୍କଠାରୁ ଆଦାୟ ହୋଇ ପାରେ ନାହିଁ, ଏହାକୁ ଅନାଦେୟ ଋଣ କୁହାଯାଏ । ସାଧାରଣତଃ ଯଦି କୌଣସି ଗ୍ରାହକ ଦେବାଳିଆ ହୋଇ ଯାଆନ୍ତି କିମ୍ବା ଅସମୟରେ ତାଙ୍କର ମୃତ୍ୟୁ ଘଟେ, କିମ୍ବା କୌଣସି କାରଣରୁ ହଠାତ୍ ତାଙ୍କର ସଙ୍ଗତି ହରାଇ ସେ ଦୁରବସ୍ଥା ଭୋଗ କରନ୍ତି ସେତେବେଳେ ସେ ବ୍ୟବସାୟରୁ ଉଧାରରେ କ୍ରୟ କରିଥିବା ପଣ୍ୟର ମୂଲ୍ୟ ଦେବାକୁ ସମ୍ପୂର୍ଣ୍ଣରୂପେ କିମ୍ବା ଆଂଶିକ ଭାବରେ ଅକ୍ଷମ ହୁଅନ୍ତି । ଏପରି କ୍ଷେତ୍ରରେ ଅନାଦେୟ ଋଣର ପରିମାଣ ଋଣର ମୋଟ ପରିମାଣରୁ ବାଦ୍ ଦେବା ଉଚିତ ସଙ୍ଗତ । ଏହା ବେପାରର ଏକ ଆନୁଷଙ୍ଗିକ କ୍ଷତି ଓ ଏହା ପ୍ରତି ବର୍ଷ ଅଳ୍ପାଧିକେ ଘଟେ । ଏହି କ୍ଷତି ମୁନାଫାଜାତୀୟ କ୍ଷତି ବୋଲି ବିବେଚିତ ହେବ ଓ ସେହି ବର୍ଷର ଲାଭରୁ ତାହା ବାଦ୍ ଦିଆଯିବ । ସାଧାରଣତଃ କାଳାନ୍ତିକ ହିସାବ ପ୍ରସ୍ତୁତ କରିବା ସମୟରେ ଅନାଦେୟ ଋଣର ପରିମାଣ ସାବ୍ୟସ୍ତ କରାଯାଏ ଓ ରୋଜନାମା ସାହାଯ୍ୟରେ ଏହାକୁ ହିସାବଭୁକ୍ତ କରିବାକୁ ପଡ଼େ ।

ଏଥିନିମନ୍ତେ ନିମ୍ନଲିଖିତ ରୋଜନାମା ପ୍ରସ୍ତୁତ କରାଯାଏ ।

| | | | |
|---|---|---|---|
| (କ) | ଅନାଦେୟ ଋଣ ହିସାବ | ଦାୟୀ | |
| | ଖାତକଙ୍କର/ ଗ୍ରାହକଙ୍କର ହିସାବ | | ବାକଦ |
| (ଖ) | ନିଟ ଲଭ ଓ କ୍ଷତି ହିସାବ | ଦାୟୀ | |
| | ଅନାଦେୟ ଋଣ ହିସାବ | | ବାକଦ |

ଅନାଦେୟ ଋଣର ପରିମାଣ ନିଟ୍ ଲଭ ଓ କ୍ଷତି ହିସାବର ଦାୟୀ ପାର୍ଶ୍ୱରେ ଅନ୍ତର୍ଭୁକ୍ତ ହେବ ଓ ତାହା ହୋଇଥିବା ଖାତକଙ୍କର ହିସାବ ମୋଟ ଖାତକଙ୍କର ପରିମାଣରୁ ବାଦ୍ ଦିଆଯାଇ ନିଟ୍ ପରିମାଣ ଉଦ୍‌ବୃତ୍ତ ପତ୍ରରେ ପ୍ରକାଶିତ ହେବ ।

ଯଦି ପରବର୍ତ୍ତୀ ହିସାବ ବର୍ଷରେ ଅନାଦେୟ ଋଣ ବାବଦ ଟଙ୍କା ଆଦାୟ ହୁଏ ତାହେଲେ ସେହି ଟଙ୍କା ରୋକଡ଼ ବହିର ଦାୟୀ ପାର୍ଶ୍ୱରେ ଲେଖାଯିବ ଓ 'ଆଦାୟୀକୃତ ଅନାଦେୟ ଋଣ ହିସାବ'କୁ ତାହା କଟାଯିବ । ଆଦାୟୀକୃତ ଅନାଦେୟ ଋଣ ହିସାବର ଦାତା ବାକୀ ପରେ ନିଟ୍ ଲଭ ଓ କ୍ଷତି ହିସାବର ଦାତା ପାର୍ଶ୍ୱକୁ ନିଆଯିବ ।

ଅନାଦେୟ ଋଣ ସଂକ୍ରାନ୍ତ ରୋଜନାମା ଓ ଖତିୟାନ ହିସାବର ଦୃଷ୍ଟାନ୍ତ ନିମ୍ନରେ ପ୍ରଦତ୍ତ ହେଲା ।

## ଦୃଷ୍ଟାନ୍ତ ( ୧୪ )

ରବିନଳ ଅଗ୍ରୱାଲ ୧୯୭୨ ସାଲ ଡିସେମ୍ବର ୩୧ ତାରିଖରେ ତାଙ୍କର ବ୍ୟବସାୟର ଅନାଦେୟ ଋଣର ପରିମାଣ ୩୫୦ ଟଙ୍କା ବୋଲି ସାବ୍ୟସ୍ତ କଲେ । ଆବଶ୍ୟକୀୟ ରୋଜନାମା ସାହାଯ୍ୟରେ ଏହି ଅନାଦେୟ ଋଣ ହିସାବରୁ ବାଦ୍ ଦିଅ ଓ ଖତିୟାନରେ ଏହା କପରି ପ୍ରକାଶିତ ହେବ ତାହା ଦର୍ଶାଅ ।

ମୋଟ ଖାତକଙ୍କର ପରିମାଣ ୩,୫୦୦ ଟଙ୍କା ଥିଲା ।

| ତାରିଖ | ବିବରଣ | ଖ. ପୃ. | ଦାୟୀ | ଦାତା |
|---|---|---|---|---|
| ୧୯୭୨<br>ଡିସେ-୩୧ | ଅନାଦେୟ ଋଣ ହିସାବ ଦାୟୀ<br>ଖାତକମାନଙ୍କର ହିସାବ ବାବଦ<br>( ୩୫୦ ଟଙ୍କା ପରିମାଣର ଅନାଦେୟ ଋଣ ଖାତକମାନଙ୍କର ହିସାବରୁ ବାଦ୍ ଦିଆଗଲା । ) | | ଟଙ୍କା<br>୩୫୦ | ଟଙ୍କା<br>୩୫୦ |
| ଡିସେ-୩୧ | ନିଟ୍ ଲାଭ ଓ କ୍ଷତି ହିସାବ ଦାୟୀ<br>ଅନାଦେୟ ଋଣ ହିସାବ ବାବଦ<br>( ଅନାଦେୟ ଋଣ ହିସାବ ବନ୍ଦ କରିଯାଇ ବାକୀ ନିଟ୍ ଲାଭ ଓ କ୍ଷତି ହିସାବକୁ ସ୍ଥାନାନ୍ତରିତ କରିଗଲା । ) | | ୩୫୦ | ୩୫୦ |

ଉବନଲ୍ ଆକ୍ତ'ରଙ୍କର ଖତିୟାନ

ଦାୟୀ — ଅନାଦେୟ ଋଣ ହିସାବ — ଦାତା

| ତାରିଖ | ବିବରଣ | ଟଙ୍କା | ତାରିଖ | ବିବରଣ | ଟଙ୍କା |
|---|---|---|---|---|---|
| ୧୯୭୨<br>ଡିସେ ୩୧ | ଖାତକମାନଙ୍କର ହିସାବ ବାବଦ | ୩୫୦ | ୧୯୭୨<br>ଡିସେ ୩୧ | ନିଟ୍ ଲାଭ ଓ କ୍ଷତି ହିସାବ ବାବଦ | ୩୫୦ |

ଦାୟୀ — ଖାତକମାନଙ୍କର ହିସାବ — ଦାତା

| ତାରିଖ | ବିବରଣ | ଟଙ୍କା | ତାରିଖ | ବିବରଣ | ଟଙ୍କା |
|---|---|---|---|---|---|
| ୧୯୭୨<br>ଡିସେ-୩୧ | ବାକୀ ବାବଦ | ୩,୫୦୦ | ୧୯୭୨<br>ଡିସେ-୩୧ | ଅନାଦେୟ ଋଣ ହିସାବ ବାବଦ | ୩୫୦ |
| | | | ଡିସେ-୩୧ | ବାକୀ ଗଲା | ୩,୧୫୦ |
| | | ୩,୫୦୦ | | | ୩,୫୦୦ |

ଡାହାଣୀ ନଟ ଲାଭ ଓ କ୍ଷତି ହିସାବ ଦାତା

| ୧୯୭୨ | | ଟଙ୍କା | | | ଟଙ୍କା |
|---|---|---|---|---|---|
| ଡିସେ-୩୧ | ଅନାଦେୟ ଋଣ ହିସାବ ବାବଦ | ୩୫୦ | | | |

## (୭) ଅନାଦେୟ ଓ ଅନିଶ୍ଚିତ ଋଣର ସଞ୍ଚିତ :

ବ୍ୟବସାୟରେ କ୍ଷତିକୁ ଦୁଇଭାଗରେ ବିଭକ୍ତ କରାଯାଇପାରେ, ଯଥା ଜ୍ଞାତ ବା ଅଜ୍ଞାତ । କେତେକ ଶ୍ରେଣୀର କ୍ଷତି ପୂର୍ବରୁ ଜଣାଯାଏ ଏବଂ ଆଉ କେତେକ କ୍ଷତି ହଠାତ୍ ହୁଏ ଏବଂ ଏପରି କ୍ଷତି ଯେ ଘଟିବ ତାହା ପୂର୍ବରୁ ଜଣାଯାଏ ନାହିଁ । ତେଣୁ ହିସାବ ନୀତି ଅନୁଯାୟୀ ଯେଉଁ କ୍ଷତି ବିଷୟ ପୂର୍ବରୁ ଜଣାଅଛି ସେଥିନିମନ୍ତେ ସଞ୍ଚିତ ଗଢ଼ାଯାଏ ଓ ଅଜଣା କ୍ଷତି ସକାଶେ ସାଧାରଣ ପାଣ୍ଠି ଗଢ଼ାଯାଏ ।

ଅନାଦେୟ ଓ ଅନିଶ୍ଚିତ ଋଣ ବାବଦ କ୍ଷତି ପ୍ରତିବର୍ଷ ଘଟୁଥିବାରୁ ଏଥିନିମନ୍ତେ ଏକ ସଞ୍ଚିତ ଗଢ଼ାଯାଏ । ଏଥି ନିମନ୍ତେ ନିମ୍ନଲିଖିତ ରୋଜନାମା ପ୍ରସ୍ତୁତ କରିଯିବ ।

ନଟ୍ ଲାଭ ଓ କ୍ଷତି ହିସାବ ଦାୟୀ
ଅନାଦେୟ ଓ ଅନିଶ୍ଚିତ ଋଣ ସଞ୍ଚିତ ହିସାବ ବାବଦ

ସାଧାରଣତଃ ଏହି ସଞ୍ଚିତ ବିବିଧ ଖାତକ ପରିମାଣର ଶତକଡ଼ା ୩,୪ ବା ୫ ରଖାଯାଏ । ରୋଜନାମାର ଦାୟୀ ବାବଦ ଟଙ୍କା ନଟ୍ ଲାଭ ଓ କ୍ଷତି ହିସାବର ଦାୟୀ ପାର୍ଶ୍ୱରେ ଅନ୍ତର୍ଭୁକ୍ତ କରିଯିବ ଓ ଦାତା ବାବଦ ଟଙ୍କା ଉଦ୍ବୃତ୍ତ ପତ୍ରରେ ମୋଟ ବିବିଧ ଖାତକ ପରିମାଣରୁ ବାଦ୍ ଦିଆଯାଇ ବିବିଧ ଖାତକର ନଟ୍ ପରିମାଣ ଉଦ୍ବୃତ୍ତ ପତ୍ରରେ ପ୍ରକାଶିତ ହେବ

ଯଦି କୌଣସି ପ୍ରଶ୍ନରେ ଉଭୟ ଅନାଦେୟ ଋଣ ବାଦ୍ ଦେବାକୁ ଓ ଅନାଦେୟ ଓ ଅନିଶ୍ଚିତ ଋଣର ସଞ୍ଚିତ ଗଢ଼ିବାକୁ ଦିଆଯାଇ ଥାଏ ତାହେଲେ ତାହା ଦୁଇଟି ଧାରା ଅନୁଯାୟୀ କରାଯାଇ ପାରିବ ।

(କ) ପ୍ରଥମ ଧାରା ଅନୁଯାୟୀ ଅନାଦେୟ ଋଣ ସ୍ୱତନ୍ତ୍ର ଭାବରେ ନିଟ୍ ଲଭ ଓ କ୍ଷତି ହିସାବର ଦାୟୀ ପାର୍ଶ୍ୱରେ ଅନ୍ତର୍ଭୁକ୍ତ ହେବ ଓ ସଞ୍ଚିତ ବାବଦ ଟଙ୍କା ମଧ୍ୟ ନିଟ୍ ଲଭ ଓ କ୍ଷତି ହିସାବର ଦାୟୀ ପାର୍ଶ୍ୱରେ ଅନ୍ତର୍ଭୁକ୍ତ ହେବ । ଏହାର ରୋଜନାମା ନମୂନରେ ପ୍ରଦତ୍ତ ହେଲା ।

(୧) ଅନାଦେୟ ଋଣ ହିସାବ ଦାୟୀ
ବିବିଧ ଖାତକ ହିସାବ ବାବଦ

(୨) ନିଟ୍ ଲଭ ଓ କ୍ଷତି ହିସାବ ଦାୟୀ
ଅନାଦେୟ ଋଣ ହିସାବ ବାବଦ

(୩) ନିଟ୍ ଲଭ ଓ କ୍ଷତି ହିସାବ ଦାୟୀ
ଅନାଦେୟ ଓ ଅନିଶ୍ଚିତ ଋଣ ସଞ୍ଚିତ ହିସାବ ବାବଦ

(ଖ) ଦ୍ୱିତୀୟ ଧାରା ଅନୁଯାୟୀ ଅନାଦେୟ ଋଣ ହିସାବର ବାକୀ ନିଟ୍ ଲଭ ଓ କ୍ଷତି ହିସାବକୁ ସ୍ଥାନାନ୍ତରିତ ନ ହୋଇ ଅନାଦେୟ ଓ ଅନିଶ୍ଚିତ ଋଣରେ ସଞ୍ଚିତ ହିସାବକୁ ସ୍ଥାନାନ୍ତରିତ କରାଯିବ । ଏହି ସଞ୍ଚିତର ପରିମାଣକୁ ନୂତନ ସଞ୍ଚିତ ପରିମାଣ ସ୍ତରକୁ ଆଣିବା ସକାଶେ ନିର୍ଣ୍ଣ ହେଉଥିବା ଅର୍ଥ ସକାଶେ ନିଟ୍ ଲଭ ଓ କ୍ଷତି ହିସାବକୁ ଦାୟୀ କରାଯିବ । ଏହାର ରୋଜନାମା ନମୂନରେ ପ୍ରଦତ୍ତ ହେଲା ।

(୧) ଅନାଦେୟ ଋଣ ହିସାବ ଦାୟୀ
ବିବିଧ ଖାତକ ହିସାବ ବାବଦ

(୨) ଅନାଦେୟ ଓ ଅନିଶ୍ଚିତ ଋଣ
ସଞ୍ଚିତ ହିସାବ ଦାୟୀ
ଅନାଦେୟ ଋଣ ହିସାବ ବାବଦ

(୩) ନିଟ୍ ଲଭ ଓ କ୍ଷତି ହିସାବ ଦାୟୀ
ଅନାଦେୟ ଓ ଅନିଶ୍ଚିତ ଋଣ
ସଞ୍ଚିତ ହିସାବ ବାବଦ

ଏହାର କେତେକ ଦୃଷ୍ଟାନ୍ତ ନମୂନରେ ପ୍ରଦତ୍ତ ହେଲା ।

# ଦୃଷ୍ଟାନ୍ତ ( ୧୫ )

୧୯୭୨ ସାଲ ଜାନୁୟାରୀ ୧ ତାରିଖରେ ଅନାଦେୟ ଓ ଅନିଶ୍ଚିତ ଋଣର ସଞ୍ଚିତର ପରିମାଣ ୧୫,୦୦୦ ଟଙ୍କା ଥିଲା ।

ବର୍ଷ ମଧ୍ୟରେ ଅନାଦେୟ ଋଣର ପରିମାଣ ୫୦୦ ଟଙ୍କା ଥିଲା । ୧୯୭୨ ସାଲ ଡିସେମ୍ବର ୩୧ ତାରିଖରେ ବିବିଧ ଖାତକଙ୍କର ପରିମାଣ ୩୨,୦୦୦ଟଙ୍କା ଥିଲା । ବିବିଧ ଖାତକଙ୍କର ମୋଟ ପରିମାଣର ଶତକଡ଼ା ୭ ଅନାଦେୟ ଓ ଅନିଶ୍ଚିତ ଋଣର ସଞ୍ଚିତ ବାବଦ ରଖାଯିବ ।

ଆବଶ୍ୟକ ରୋଜନାମା ପ୍ରସ୍ତୁତ କର ଓ ଏହା ଖତିୟାନ ହିସାବ-ମାନଙ୍କରେ, ନିଟ୍ ଲାଭ ଓ କ୍ଷତି ହିସାବରେ ଓ ଉଦ୍‌ବୃତ୍ତ ପତ୍ରରେ କିପରି ପ୍ରକାଶିତ ହେବ ତାହା ଦର୍ଶାଅ ।

(ପ୍ରଥମ ଧାରା ଅନୁଯାୟୀ)

## ସମାଧାନ :

ରୋଜନାମା

| ତାରିଖ | ବିବରଣ | ଖ:ପୃ: | ଦେୟୀ | ଦାତା |
|---|---|---|---|---|
| | | | ଟଙ୍କା | ଟଙ୍କା |
| ୧୯୭୨ ଡିସେ-୩୧ | ଅନାଦେୟ ଋଣ ହିସାବ ଦାୟୀ<br>ବିବିଧ ଖାତକଙ୍କର ହିସାବ ବାବଦ<br>(ଅନାଦେୟ ଋଣ ବିବିଧ ଖାତକଙ୍କର ହିସାବରୁ ବାଦ୍ ଦିଆଗଲା ।) | | ୫୦୦ | ୫୦୦ |
| ,, ୩୧ | ନିଟ୍ ଲାଭ ଓ କ୍ଷତି ହିସାବ ଦାୟୀ<br>ଅନାଦେୟ ଋଣ ହିସାବ ବାବଦ<br>(ଅନାଦେୟ ଋଣ ହିସାବର ବାକି ନିଟ୍ ଲାଭ ଓ କ୍ଷତି ହିସାବକୁ ସ୍ଥାନାନ୍ତରିତ କରାଗଲା ।) | | ୫୦୦ | ୫୦୦ |

| ତାରିଖ | ବିବରଣ | ଖ: ପୃ: | ଦାୟୀ | ଦାତା |
|---|---|---|---|---|
| ,, ୩୧ | ନିଟ୍ ଲାଭ ଓ କ୍ଷତି ହିସାବ ଦାୟୀ<br>ଅନାଦେୟ ଓ ଅନିଶ୍ଚିତ ଋଣର ସଞ୍ଚିତ ହିସାବ ବାବଦ<br>( ମୋଟ ବିବିଧ ଖାତକଙ୍କର ମୋଟ ପରିମାଣରୁ ଅନାଦେୟ ଋଣ ବାଦ୍ ଯାଇ ନିଟ୍ ପରିମାଣର ୭% ଅର୍ଥାତ୍ ସଞ୍ଚିତର ପରିମାଣ ୧,୮୯୦ ରଖିବା ନିମନ୍ତେ ଆବଶ୍ୟକ ବଳକା ଟଙ୍କା ସକାଶେ ନିଟ୍ ଲାଭ ଓ କ୍ଷତି ହିସାବକୁ ଦାୟୀ କରଗଲା ।) | | ୩୯୦ | ୩୯୦ |

ଖତିୟାନ

ଦାୟୀ — ଅନାଦେୟ ଋଣ ହିସାବ — ଦାତା

| ୧୯୭୨ | | ଟଙ୍କା | ୧୯୭୨ | | ଟଙ୍କା |
|---|---|---|---|---|---|
| ଡିସେ-୩୧ | ବିବିଧ ଖାତକ ହିସାବ ବାବଦ | ୫୦୦ | ଡିସେ-୩୧ | ନିଟ୍ ଲାଭ ଓ କ୍ଷତି ହି: ବାବଦ | ୫୦୦ |

ଦାୟୀ — ଅନାଦେୟ ଓ ଅନିଶ୍ଚିତ ଋଣର ସଞ୍ଚିତ ହିସାବ — ଦାତା

| ୧୯୭୨ | | ଟଙ୍କା | ୧୯୭୨ | | ଟଙ୍କା |
|---|---|---|---|---|---|
| ଡିସେ-୩୧ | ବାକି ଗଡ଼ିଲା | ୧,୮୯୦ | ଜାନୁ-୧ | ପୂର୍ବ ବାକି ବାବଦ | ୧,୫୦୦ |
| | | | ଡିସେ-୩୧ | ନିଟ୍ ଲାଭ ଓ କ୍ଷତି ହିସାବ ବାବଦ | ୩୯୦ |
| | | ୧,୮୯୦ | | | ୧,୮୯୦ |
| | | | ୧୯୭୩<br>ଜାନୁ-୧ | ପୂର୍ବ ବାକି ବାବଦ | ୧,୮୯୦ |

ଡାଏଁ      **ବିବିଧ ଖାତକ ହିସାବ**      ବାଆଁ

| ୧୯୭୨ | | | ଟଙ୍କା | ୧୯୭୨ | | | ଟଙ୍କା |
|---|---|---|---|---|---|---|---|
| ଡିସେ-୩୧ | ବାକି ବାବଦ | | ୩୨,୦୦୦ | ଡିସେ-୩୧ | ଅନାଦେୟ ଋଣ ହିଃ ବାବଦ | | ୫୦୦ |
| | | | | ଡିସେ-୩୧ | ବାକି ଗଡ଼ିଲା | | ୩୧,୫୦୦ |
| | | | ୩୨,୦୦୦ | | | | ୩୨,୦୦୦ |

ଡାଏଁ      **ନିଟ୍ ଲାଭ ଓ କ୍ଷତି ହିସାବ**      ବାଆଁ

| | ଟଙ୍କା | ଟଙ୍କା | | ଟଙ୍କା | ଟଙ୍କା |
|---|---|---|---|---|---|
| ଅନାଦେୟ ଋଣ ହିଃ ବାବଦ | | ୫୦୦ | | | |
| ଅନାଦେୟ ଓ ଅନିଶ୍ଚିତ ଋଣରେ ସଞ୍ଚିତ ହିସାବ ବାବଦ ୩୧,୫୦୦ ଟଙ୍କାର ୬% | ୧,୮୯୦ | | | | |
| ବାଦ୍: ପୂର୍ବ ବାକି | ୧,୫୦୦ | ୩୯୦ | | | |

**୧୯୭୨ ସାଲ ଡିସେମ୍ବର ୩୧ ତାରିଖରେ ଉଦ୍ବର୍ତ୍ତ ପତ୍ର**

| ଦେଣା | ଟଙ୍କା | ଟଙ୍କା | ପରିସମ୍ପତ୍ତି | ଟଙ୍କା | ଟଙ୍କା |
|---|---|---|---|---|---|
| | | | ବିବିଧ ଖାତକ | ୩୨,୦୦୦ | |
| | | | ବାଦ୍: ଅନାଦେୟ ଋଣ | ୫୦୦ | |
| | | | | ୩୧,୫୦୦ | |
| | | | ବାଦ୍: ଅନାଦେୟ ଓ ଅନିଶ୍ଚିତ ଋଣର ସଞ୍ଚିତ ୬% ହାରରେ | ୧,୮୯୦ | ୨୯,୬୧୦ |

( ବିକଳ୍ପ ଧାର ଅନୁଯାୟୀ )

## ରୋଜନାମା

| ତାରିଖ | ବିବରଣ | ଖା।ପୃ | ଦାୟୀ | ଦାତା |
|---|---|---|---|---|
| | | | ଟଙ୍କା | ଟଙ୍କା |
| ୧୯୭୨<br>ଡିସେ-୩୧ | ଅନାଦେୟ ଋଣ ହିସାବ ଦାୟୀ<br>ବିବିଧ ଖାତକ ହିସାବ ବାବଦ<br>( ଅନାଦାୟୀ ଋଣ ବିବିଧ ଖାତକ ହିସାବରୁ ବାଦ୍ ଦିଆଗଲା । ) | | ୫୦୦ | ୫୦୦ |
| ଡିସେ-୩୧ | ଅନାଦେୟ ଓ ଅନିଶ୍ଚିତ ଋଣର ସଞ୍ଚିତ ହିସାବ ଦାୟୀ<br>ଅନାଦେୟ ଋଣ ହିସାବ ବାବଦ<br>( ଅନାଦେୟ ଋଣ ହିସାବର ବାକି ସଞ୍ଚିତ ହିସାବକୁ ସ୍ଥାନାନ୍ତରିତ କରାଗଲା । ) | | ୫୦୦ | ୫୦୦ |
| ଡିସେ-୩୧ | ନିଟ୍ ଲାଭ ଓ କ୍ଷତି ହିସାବ ଦାୟୀ<br>ଅନାଦେୟ ଓ ଅନିଶ୍ଚିତ ଋଣର ସଞ୍ଚିତ ହିସାବ ବାବଦ<br>( ସଞ୍ଚିତର ପରିମାଣ ୧,୫୦୦-୫୦୦ = ୧,୦୦୦ ଟଙ୍କାରୁ ୩୨,୦୦୦-୫୦୦ = ୩୧,୫୦୦ ଟଙ୍କାର ୬% ଅର୍ଥାତ୍ ୧,୮୯୦ ଟଙ୍କା ରଖିବା ନିମନ୍ତେ ଆବଶ୍ୟକ ୮୯୦ ଟଙ୍କା ସକାଶେ ନିଟ୍ ଲାଭ ଓ କ୍ଷତି ହିସାବକୁ ଦାୟୀ କରାଗଲା । ) | | ୮୯୦ | ୮୯୦ |

## ଖତିୟାନ

ଦାସ୍ୱୀ — ଅନାଦେୟ ଋଣ ହିସାବ — ଦାତା

| ୧୯୭୨ | | ଟଙ୍କା | ୧୯୭୨ | | ଟଙ୍କା |
|---|---|---|---|---|---|
| ଡିସେ-୩୧ | ବିବିଧ ଖାତକ ହିସାବ ବାବଦ | ୫୦୦ | ଡିସେ ୩୧ | ଅନାଦେୟ ଓ ଅନିଶ୍ଚିତ ଋଣର ସଞ୍ଚିତ ହିସାବ ବାବଦ | ୫୦୦ |

ଦାସ୍ୱୀ — ବିବିଧ ଖାତକ ହିସାବ — ଦାତା

| ୧୯୭୨ | | ଟଙ୍କା | ୧୯୭୨ | | ଟଙ୍କା |
|---|---|---|---|---|---|
| ଡିସେ-୩୧ | ବାକି ବାବଦ | ୩୨,୦୦୦ | ଡିସେ-୩୧ | ଅନାଦେୟ ଋଣ ହିସାବ ବାବଦ | ୫୦୦ |
| | | | ଡିସେ-୩୧ | ବାକି ଗଲା | ୩୧,୫୦୦ |
| | | ୨,୦୦୦ | | | ୩୨,୦୦୦ |

ଦାସ୍ୱୀ — ଅନାଦେୟ ଓ ଅନିଶ୍ଚିତ ଋଣର ସଞ୍ଚିତ ହିସାବ — ଦାତା

| ୧୯୭୨ | | ଟଙ୍କା | ୧୯୭୨ | | ଟଙ୍କା |
|---|---|---|---|---|---|
| ଡିସେ-୩୧ | ଅନାଦେୟ ଋଣ ହିସାବ ବାବଦ | ୫୦୦ | ଜାନୁ-୧ | ପୂର୍ବ ବାକି ବାବଦ | ୧,୫୦୦ |
| ଡିସେ-୩୧ | ବାକି ପଡ଼ିଲା | ୧,୮୯୦ | ଡିସେ-୩୧ | ନିଟ୍ ଲାଭ ଓ କ୍ଷତି ହିସାବ ବାବଦ | ୮୯୦ |
| | | ୨,୩୯୦ | | | ୨,୩୯୦ |
| | | | ୧୯୭୩ ଜାନୁ-୧ | ପୂର୍ବ ବାକି ବାବଦ | ୧,୮୯୦ |

ଦାୟୀ ନିଟ୍ ଲାଭ ଓ କ୍ଷତି ହିସାବ ଦାତା

| | ଟଙ୍କା | ଟଙ୍କା | | ଟଙ୍କା | ଟଙ୍କା |
|---|---|---|---|---|---|
| ଅନାଦେୟ ଓ ଅନିଶ୍ଚିତ ଋଣର ସଞ୍ଚିତ ହିସାବ ବାବଦ ୩୧,୫୦୦ ଟଙ୍କାର ୬% | ୧,୮୯୦ | | | | |
| ବାଦ୍ ପୂର୍ବ ବାକି ୧,୫୦୦-୫୦୦ | ୧,୦୦୦ | ୮୯୦ | | | |

୧୯୭୨ ସାଲ ଡିସେମ୍ବର ୩୧ ତାରିଖର ଉଦ୍‌ବୃତ୍ତ ପତ୍ର

| ଦେଣା | ଟଙ୍କା | ଟଙ୍କା | ପରିସମ୍ପତ୍ତି | ଟଙ୍କା | ଟଙ୍କା |
|---|---|---|---|---|---|
| | | | ବିବିଧ ଖାତକ | ୩୨,୦୦୦ | |
| | | | ବାଦ୍ : ଅନାଦେୟ ଋଣ | ୫୦୦ | |
| | | | | ୩୧,୫୦୦ | |
| | | | ବାଦ୍ : ଅନାଦେୟ ଓ ଅନିଶ୍ଚିତ ଋଣର ସଞ୍ଚିତ ହାରରେ ୬% | ୧,୮୯୦ | ୨୯,୬୧୦ |

**ବିଶେଷ ଦ୍ରଷ୍ଟବ୍ୟ**—ଯେ କୌଣସି ଧାରା ଅନୁଯାୟୀ ସମସ୍ୟାର ସମାଧାନ କରଯାଉ ନା କାହିଁକି ନିଟ୍ ଲାଭ ଓ କ୍ଷତି ହିସାବକୁ ସମ ପରିମାଣରେ ଦାୟୀ କରିଯିବ ଏବଂ ଉଭୟ ଧାରା ଅନୁଯାୟୀ ଉଦ୍‌ବୃତ୍ତ ପତ୍ରରେ ବିବିଧ ଖାତକଙ୍କର ନିଟ୍ ପରିମାଣ ସମାନ ରହିବ । ଦୁଇଟି ଧାରା ମଧ୍ୟରୁ ଦ୍ୱିତୀୟ ଧାରାଟି ଅଧିକ ଯୁକ୍ତିଯୁକ୍ତ ବୋଲି ମନେ ହୁଏ, କାରଣ ଅନାଦେୟ ଓ ଅନିଶ୍ଚିତ ଋଣରେ ସଞ୍ଚିତ ଗଢ଼ାଯିବା ପରେ ଅନାଦେୟ ଋଣ ବାବଦ ଦାୟୀ ବାକି ପ୍ରତ୍ୟକ୍ଷ ଭାବରେ ନିଟ୍ ଲାଭ ଓ କ୍ଷତି ହିସାବକୁ ନଆଗଲେ ସଞ୍ଚିତ ହିସାବ ଖୋଲିବା ନିରର୍ଥକ ହେବ ।

ଅନେକ ସମୟରେ ଯେତେ ପରିମାଣର ସଞ୍ଚିତ ଗଢ଼ା ଯାଇଥାଏ ପରବର୍ତ୍ତୀ ବର୍ଷରେ ତେତେ ପରିମାଣର ସଞ୍ଚିତ ଅନାବଶ୍ୟକ ହୋଇପାରେ । ସେ କ୍ଷେତ୍ରରେ ସଞ୍ଚିତ ହିସାବର ବଳକା ଟଙ୍କା ପୁଣି ନିଟ୍ ଲାଭ ଓ କ୍ଷତି ହିସାବକୁ ଫେରସ୍ତ ଦିଆଯିବ, ଅର୍ଥାତ୍ ଏହି ପରିମାଣ ସକାଶେ ନିଟ୍ ଲାଭ ଓ କ୍ଷତି ହିସାବକୁ ଦାତା କରାଯିବ । ଏହି ସଞ୍ଚିତ ଗଢ଼ିବା ନିମନ୍ତେ ନିଟ୍ ଲାଭ ଓ କ୍ଷତି ହିସାବକୁ ଦାୟୀ କରାଯାଇଥିଲା, ତେଣୁ ଯଦି ସଞ୍ଚିତ ହିସାବର ପରିମାଣକୁ ହ୍ରାସ କରାଯାଏ ତା ହେଲେ ବଳକା ଟଙ୍କା ସକାଶେ ନିଟ୍ ଲାଭ ଓ କ୍ଷତି ହିସାବକୁ ଦାତା କରିବା ନ୍ୟାୟ୍ୟ ଓ ଯୁକ୍ତିସଙ୍ଗତ । ଏଥିନିମନ୍ତେ ନିମ୍ନଲିଖିତ ରୋଜନାମା ପ୍ରସ୍ତୁତ କରାଯିବ ।

| | |
|---|---|
| ଅନାଦେୟ ଓ ଅନିଶ୍ଚିତ ଋଣର ସଞ୍ଚିତ ହିସାବ | ଦାୟୀ |
| ନିଟ୍ ଲାଭ ଓ କ୍ଷତି ହିସାବ | ବାବଦ |

ଏହାର ଏକ ଦୃଷ୍ଟାନ୍ତ ନିମ୍ନରେ ପ୍ରଦତ୍ତ ହେଲା ।

## ଦୃଷ୍ଟାନ୍ତ (୧୭)

ଶ୍ରୀ ଦୟାନିଧି ସାହୁଙ୍କର ବ୍ୟବସାୟରେ ୧୯୭୨ ସାଲ ଜାନୁୟାରି ୧ ତାରିଖରେ ଅନାଦେୟ ଓ ଅନିଶ୍ଚିତ ଋଣର ସଞ୍ଚିତ ହିସାବର ଦାତା ବାକି ୧,୫୦୦ ଟଙ୍କା ଥିଲା । ୧୯୭୨ ସାଲ ଡିସେମ୍ବର ୩୧ ତାରିଖ ସୁଦ୍ଧା ୩୦୦ ଟଙ୍କାର ଋଣ ଅନାଦେୟ ହେବାରୁ ତାହା ବିବିଧ ଖାତକଙ୍କର ହିସାବରୁ ବାଦ୍ ଦିଆଗଲା । ସେହି ତାରିଖରେ ବିବିଧ ଖାତକଙ୍କର ମୋଟ ପରିମାଣ ୯,୩୦୦ ଟଙ୍କା ଥିଲା । ଏହି ବ୍ୟବସାୟରେ ଅନାଦେୟ ଓ ଅନିଶ୍ଚିତ ଋଣର ସଞ୍ଚିତ ବିବିଧ ଖାତକଙ୍କର ମୋଟ ପରିମାଣର ଶତକଡ଼ା ୮ ରଖାଯାଏ । ଆବଶ୍ୟକୀୟ ରୋଜନାମା ପ୍ରସ୍ତୁତ କର ।

| ତାରିଖ | ବିବରଣ | ଖ:ପୃ: | ଦା:ସ୍ତୀ | ଦାତା |
|---|---|---|---|---|
| | | | ଟଙ୍କା | ଟଙ୍କା |
| ୧୯୬୨ ଡିସେ-୩୧ | ଅନାଦେୟ ଋଣ ହିସାବ ଦାସ୍ତୀ<br>ବିବିଧ ଖାତକ ହିସାବ ବାବଦ୍<br>( ଅନାଦେୟ ଋଣ ବିବିଧ ଖାତକ ହିସାବରୁ ବାଦ୍ ଦିଆଗଲା । ) | | ୩୦୦ | ୩୦୦ |
| ,, ୩୧ | ଅନାଦେୟ ଓ ଅନିଶ୍ଚିତ ଋଣର ସଞ୍ଚିତ ହିସାବ ଦାସ୍ତୀ<br>(ଅନାଦେୟ ଋଣ ହିସାବ ବାବଦ<br>ଅନାଦେୟ ଋଣ ହିସାବର ବାକି ସଞ୍ଚିତ ହିସାବକୁ ସ୍ଥାନାନ୍ତରିତ କରାଗଲା । ) | | ୩୦୦ | ୩୦୦ |
| ଡିସେ-୩୧ | ଅନାଦେୟ ଓ ଅନିଶ୍ଚିତ ଋଣର ସଞ୍ଚିତ ହିସାବ ଦାସ୍ତୀ<br>ନିଟ୍ ଲାଭ ଓ କ୍ଷତି ହିସାବ ବାବଦ<br>( ୯,୩୦୦ ଟଙ୍କାରୁ ୩୦୦ ଟଙ୍କା ବାଦ୍ ଦେଇ ୮% ହାରରେ ସଞ୍ଚିତ ୭୨୦ ଟଙ୍କା ରଖି ବଳକା ଟଙ୍କା ନିଟ୍ ଲାଭ ଓ କ୍ଷତି ହିସାବକୁ ଦାତା କରାଗଲା ।) | | ୪୮୦ | ୪୮୦ |

## ଦୃଷ୍ଟାନ୍ତ (୧୬)

୧୯୬୨ ସାଲ ଜାନୁୟାରି ୧ ତାରିଖରେ ପୃଷ୍ଟି, ସାହୁ ଏଣ୍ଡ୍ କୋ.ଙ୍କର ଅନାଦେୟ ଓ ଅନିଶ୍ଚିତ ଋଣର ସଞ୍ଚିତ ୭୦୦ ଟଙ୍କା ଥିଲା । ୧୯୬୨ ସାଲ ଡିସେମ୍ବର ୩୧ ତାରିଖରେ ବିବିଧ ଖାତକଙ୍କର ମୋଟ ପରିମାଣ ୧୯,୫୦୦ ଟଙ୍କା ଥିଲା । ଏଥି ମଧ୍ୟରୁ ୫୦୦ଟଙ୍କାର ଋଣ ଅନାଦେୟ ହୋଇଥିବାରୁ ଏହାକୁ ବିବିଧ ଖାତକଙ୍କର ହିସାବରୁ ବାଦ୍ ଦିଆଗଲା । ଏହି ବ୍ୟବସାୟ ଅନାଦେୟ ଓ ଅନିଶ୍ଚିତ ଋଣର ସଞ୍ଚିତ ବିବିଧ ଖାତକଙ୍କର ମୋଟ ପରିମାଣର ଶତକଡ଼ା ୫ ହାରରେ ରଖନ୍ତି ।

୧୯୭୩ ସାଲ ଡିସେମ୍ବର ୩୧ ତାରିଖରେ ବିବିଧ ଖାତକଙ୍କର ମୋଟ ପରିମାଣ ୧୧,୩୦୦ ଟଙ୍କା ଥିଲା । ଏଥିମଧ୍ୟରୁ ୩୦୦ ଟଙ୍କା ଅନାଦେୟ ସ୍ୱରୂପ ବାଦ୍ ଦିଆଗଲା । ଅନାଦେୟ ଓ ଅନିଶ୍ଚିତ ଋଣର ସଞ୍ଚିତ ବିବିଧ ଖାତକ ପରିମାଣର ଶତକଡ଼ା ୫ ହାରରେ ରଖାଯିବ ।

ଆବଶ୍ୟକ ରୋଜନାମା ପ୍ରସ୍ତୁତ କର, ଅନାଦେୟ ଋଣ ହିସାବ ଓ ଅନାଦେୟ ଓ ଅନିଶ୍ଚିତ ଋଣର ସଞ୍ଚିତ ହିସାବ ପ୍ରସ୍ତୁତ କର ।

## ସମାଧାନ

| ତାରିଖ | ବିବରଣ | ଖ:ପୃ: | ଦାୟୀ | ଦାତା |
|---|---|---|---|---|
| ୧୯୭୨ | | | ଟଙ୍କା | ଟଙ୍କା |
| ଡିସେ-୩୧ | ଅନାଦେୟ ଋଣ ହିସାବ ଦାୟୀ<br>ବିବିଧ ଖାତକ ହିସାବ ବାବଦ<br>( ଅନାଦେୟ ଋଣ ବିବିଧ ଖାତକ ହିସାବରୁ ବାଦ୍ ଦିଆଗଲା । ) | | ୫୦୦ | ୫୦୦ |
| ଡିସେ-୩୧ | ଅନାଦେୟ ଓ ଅନିଶ୍ଚିତ ଋଣର ସଞ୍ଚିତ ହିସାବ ଦାୟୀ<br>ଅନାଦେୟ ଋଣ ହିସାବ ବାବଦ<br>( ଅନାଦେୟ ଋଣ ହିସାବର ବାକି ସଞ୍ଚିତ ହିସାବକୁ ସ୍ଥାନାନ୍ତରିତ କରାଗଲା । ) | | ୫୦୦ | ୫୦୦ |
| ଡିସେ-୩୧ | ନିଟ୍ ଲାଭ ଓ କ୍ଷତି ହିସାବ ଦାୟୀ<br>ଅନାଦେୟ ଓ ଅନିଶ୍ଚିତ ଋଣର ସଞ୍ଚିତ ହିସାବ ବାବଦ<br>( ୧୯,୫୦୦ ଟଙ୍କାରୁ ୫୦୦ ଟଙ୍କା ବାଦ୍ ଦେଇ ବିବିଧ ଖାତକଙ୍କର ନିଟ୍ ପରିମାଣର ୫% ଅର୍ଥାତ୍ ୯୫୦ ଟଙ୍କାର ସଞ୍ଚିତ ରଖିବା ନିମନ୍ତେ ନିଅଣ୍ଟ ଟଙ୍କା ସକାଶେ ନିଟ୍ ଲାଭ ଓ କ୍ଷତି ହିସାବକୁ ଦାୟୀ କରାଗଲା । ) | | ୭୫୦ | ୭୫୦ |

| ତାରିଖ | ବିବରଣ | ଖ: ପୃ: | ଦାୟୀ | ଦାତା |
|---|---|---|---|---|
| ୧୯୭୩ | | | ଟଙ୍କା | ଟଙ୍କା |
| ଡିସେ-୩୧ | ଅନାଦେୟ ଋଣ ହିସାବ ଦାୟୀ<br>ବିବିଧ ଖାତକ ହିସାବ ବାବଦ<br>( ଅନାଦେୟ ଋଣ ବିବିଧ ଖାତକ ପରିମାଣରୁ ବାଦ୍ ଦିଆଗଲା । ) | | ୩୦୦ | ୩୦୦ |
| ଡିସେ-୩୧ | ଅନାଦେୟ ଓ ଅନିଶ୍ଚିତ ଋଣର ସଞ୍ଚିତ ହିସାବ ଦାୟୀ<br>ଅନାଦେୟ ଋଣ ହିସାବ ବାବଦ<br>(ଅନାଦେୟ ଋଣ ହିସାବର ବାକି ସଞ୍ଚିତ ହିସାବକୁ ସ୍ଥାନାନ୍ତରିତ କରାଗଲା । ) | | ୩୦୦ | ୩୦୦ |
| ଡିସେ-୩୧ | ଅନାଦେୟ ଓ ଅନିଶ୍ଚିତ ଋଣର ସଞ୍ଚିତ ହିସାବ ଦାୟୀ<br>ନିଟ୍ ଲାଭ ଓ କ୍ଷତି ହିଃ ବାବଦ<br>( ୧୧,୩୦୦ ଟଙ୍କାରୁ ୩୦୦ ଟଙ୍କା ବାଦ୍ ଦେଇ ନିଟ୍ ବିବିଧ ଖାତକ ପରିମାଣ, ଅର୍ଥାତ୍ ୧୧,୦୦୦ ଟଙ୍କାର ୫% ସଞ୍ଚିତ ହିସାବର ବଳକା ଟଙ୍କା ସକାଶେ ନିଟ୍ ଲାଭ ଓ କ୍ଷତି ହିସାବକୁ ଦାତା କରାଗଲା । ) | | ୧୦୦ | ୧୦୦ |

## ଖତିୟାନ

ଦାୟୀ — ଅନାଦେୟ ଓ ଅନିଶ୍ଚିତ ଋଣର ସଞ୍ଚିତି ହିସାବ — ଦାତା

| ୧୯୭୨ | | ଟଙ୍କା | ୧୯୭୨ | | ଟଙ୍କା |
|---|---|---|---|---|---|
| ଡିସେ-୩୧ | ଅନାଦେୟ ଋଣ ହିଃ ବାଃ | ୫୦୦ | ଜାନୁ-୧ | ପୂର୍ବ ବାକି ବାବଦ | ୭୦୦ |
| ଡିସେ-୩୧ | ବାକି ଗଡ଼ିଲ | ୯୫୦ | ଡିସେ-୩୧ | ନଟ୍ ଲାଭ ଓ କ୍ଷତି ହିଃ ବାଃ | ୭୫୦ |
| | | ୧,୪୫୦ | | | ୧,୪୫୦ |
| ୧୯୭୩ | | | ୧୯୭୩ | | |
| | | | ଜାନୁ-୧ | ପୂର୍ବ ବାକି ବାବଦ | ୯୫୦ |
| ଡିସେ-୩୧ | ଅନାଦେୟ ଋଣ ହିଃ ବାଃ | ୩୦୦ | | | |
| ଡିସେ-୩୧ | ନଟ୍ ଲାଭ ଓ କ୍ଷତି ହିଃ ବାଃ | ୧୦୦ | | | |
| ଡିସେ-୩୧ | ବାକି ଗଡ଼ିଲ | ୫୫୦ | | | |
| | | ୯୫୦ | | | ୯୫୦ |
| | | | ୧୯୭୪ | | |
| | | | ଜାନୁ-୧ | ପୂର୍ବ ବାକି ବାବଦ | ୫୫୦ |

ଦାୟୀ — ଅନାଦେୟ ଋଣ ହିସାବ — ଦାତା

| ୧୯୭୨ | | ଟଙ୍କା | ୧୯୭୨ | | ଟଙ୍କା |
|---|---|---|---|---|---|
| ଡିସେ-୩୧ | ବିବିଧ ଖାତକ ହିସାବ ବାବଦ | ୫୦୦ | ଡିସେ-୩୧ | ଅନାଦେୟ ଓ ଅନିଶ୍ଚିତ ଋଣର ସଞ୍ଚିତ ହିଃ ବାଃ | ୫୦୦ |
| ୧୯୭୩ | | | ୧୯୭୩ | | |
| ଡିସେ-୩୧ | ବିବିଧ ଖାତକ ହିସାବ ବାବଦ | ୩୦୦ | ଡିସେ-୩୧ | ଅନାଦେୟ ଓ ଅନିଶ୍ଚିତ ଋଣର ସଞ୍ଚିତ ହିଃ ବାବଦ | ୩୦୦ |

## (୮) ବିବିଧ ଖାତକଙ୍କୁ ଦେୟ ବଟ୍ଟାର ସଞ୍ଚିତ : —

ଯେପରି ବିବିଧ ଖାତକ ପରିମାଣରୁ ଅନାଦେୟ ଋଣ ବାଦ୍ ଦିଆଯାଏ ଠିକ୍ ସେହିପରି ଯେଉଁ ଖାତକମାନେ ନିର୍ଦ୍ଦିଷ୍ଟ ସମୟରେ ତାଙ୍କର ଋଣ ବା ଦେୟ ଅର୍ଥ ପରିଶୋଧ କରନ୍ତି ତାଙ୍କୁ ବଟ୍ଟା ଦେବାକୁ ପଡ଼େ । ବଟ୍ଟା ଦେବାର ପ୍ରୟୋଜନୀୟତା ସମ୍ବନ୍ଧରେ ପୂର୍ବରୁ ବ୍ୟାଖ୍ୟା କରିଯାଇଛୁ । ବର୍ତ୍ତମାନ ଏହି ଦେୟ ବଟ୍ଟା ସକାଶେ କିପରି ସଂଚିତ ରଖାଯାଏ ତାହା ଆଲୋଚନା କରାଯିବ । ଯେହେତୁ ପ୍ରତିବର୍ଷ ଖାତକମାନଙ୍କ ମଧ୍ୟରୁ ଅଧିକାଂଶ ଖାତକ ନିର୍ଦ୍ଦିଷ୍ଟ ସମୟରେ ତାଙ୍କର ଦେୟ ଅର୍ଥ ପରିଶୋଧ କରିବେ ଓ ତାଙ୍କୁ ସେଥିନିମନ୍ତେ ବଟ୍ଟା ଦେବାକୁ ପଡ଼ିବ; ତେଣୁ ପ୍ରତିବର୍ଷ ବିବିଧ ଖାତକ ପରିମାଣରେ ଶତକଡ଼ା କେତେକ ଅଂଶ ବଟ୍ଟା ବାବଦ ଏକ ସଂଚିତ ହିସାବରେ ରଖାଯାଏ ଓ ଯେତେବେଳେ ପ୍ରକୃତ ବଟ୍ଟା ଦିଆଯାଏ ସେତେବେଳେ ସେହି ସଂଚିତ ହିସାବରୁ ତାହା ବ୍ୟବସ୍ଥା କରାଯାଏ । ସାଧାରଣତଃ ବିବିଧ ଖାତକ ପରିମାଣରେ ଶତକଡ଼ା ୨ରୁ ୪ ପର୍ଯ୍ୟନ୍ତ ଏହି ସଂଚିତର ପରିମାଣ ରଖାଯାଏ । ଏହାକୁ ବିବିଧ ଖାତକଙ୍କୁ ଦେୟ ବଟ୍ଟାର ସଂଚିତ କୁହାଯାଏ । ଅନ୍ୟାନ୍ୟ ସଂଚିତ ତୁଳନା ଏହି ସଂଚିତ ମଧ୍ୟ ନିଟ୍ ଲାଭ ଓ କ୍ଷତି ହିସାବକୁ ଦାୟୀ କରି ଗଢ଼ାଯାଏ । ଏହାର ରୋଜନାମା ନିମ୍ନରେ ପ୍ରଦତ୍ତ ହେଲା ।

| | |
|---|---|
| ନିଟ୍ ଲାଭ ଓ କ୍ଷତି ହିସାବ | ଦାୟୀ |
| ଦେୟ ବଟ୍ଟା ସଂଚିତ ହିସାବ | ବାବଦ |

ଯେତେବେଳେ ବଟ୍ଟା ଦିଆଯାଏ ସେତେବେଳେ ପ୍ରଦତ୍ତ ବଟ୍ଟା ହିସାବକୁ ଦାୟୀ ଓ ନଗଦ ତହବିଲ ହିସାବକୁ ଦାତା କରାଯାଏ । ପ୍ରଦତ୍ତ ବଟ୍ଟା ହିସାବର ଦାୟୀ ବାକିକୁ ନିଟ୍ ଲାଭ ଓ କ୍ଷତି ହିସାବକୁ ସ୍ଥାନାନ୍ତରିତ କରାଯାଇ ପାରେ କିମ୍ବା ବିକଳ୍ପ ଧାରା ଅନୁଯାୟୀ ଏହାକୁ ଦେୟ ବଟ୍ଟାର ସଂଚିତ ହିସାବକୁ ସ୍ଥାନାନ୍ତରିତ କରାଯାଇ ପାରେ । ପ୍ରଥମ ଧାରା ତୁଳନାରେ ଦ୍ୱିତୀୟ ଧାରାଟି ଅପେକ୍ଷାକୃତ ଅଧିକ ଯୁକ୍ତିଯୁକ୍ତ ହୋଇଥିବାରୁ ନିମ୍ନ ପ୍ରଦତ୍ତ ଦୃଷ୍ଟାନ୍ତ ସେହି ଧାରା ଅନୁଯାୟୀ କରାଯାଉଛି ।

ଏଠାରେ ଗୋଟିଏ ବିଷୟ ସ୍ମରଣ ରଖିବାକୁ ହେବ ଯେ ବଟ୍ଟାର ସଂଚିତର ପରିମାଣ ଗଣନା କରିବା ସମୟରେ ବିବିଧ ଖାତକଙ୍କର ମୋଟ ପରିମାଣରୁ ପ୍ରଥମେ ଅନାଦେୟ ଋଣର ପରିମାଣ ଓ ତତ୍ପରେ ଅନାଦେୟ ଓ ଅନିଶ୍ଚିତ ଋଣର ସଂଚିତ ବାବଦ ସଂଖ୍ୟା ବାଦ୍ ଦିଆଯାଇ ନିଟ୍ ଖାତକ ପରିମାଣ ଉପରେ ବଟ୍ଟା ହିସାବ କରାଯିବ । ମନେକର ବର୍ଷ ଶେଷରେ ବିବିଧ

ଖାତକଙ୍କର ପରିମାଣ ୫,୩୦୦ ଟଙ୍କା ଥିଲା ଓ ବର୍ଷ ମଧ୍ୟରେ ଅନାଦେୟ ଋଣରେ ପରିମାଣ ୩୦୦ ଟଙ୍କା ହେଲା । ଅନାଦେୟ ଓ ଅନିଶ୍ଚିତ ଋଣର ସଂଚୟ ଶତକଡ଼ା ୫ ଓ ଦେୟ ବଟାର ସଂଚୟ ଶତକଡ଼ା ୨ ହାରରେ ରଖାଯିବ । ବଟା ବାବଦ ସଂଚୟ ନିମ୍ନ ପ୍ରକାରରେ ଗଣନା କରାଯିବ ।

| | ଟଙ୍କା |
|---|---|
| ବିବିଧ ଖାତକଙ୍କର ମୋଟ ପରିମାଣ | ୫,୩୦୦ |
| ବିଯୁକ୍ତ : ଅନାଦେୟ ଋଣ | ୩୦୦ |
| | ୫,୦୦୦ |
| ବିଯୁକ୍ତ : ଅନାଦେୟ ଓ ଅନିଶ୍ଚିତ ଋଣର ସଂଚୟ, ୫% ହାରରେ | ୨୫୦ |
| | ୪,୭୫୦ |
| ବିଯୁକ୍ତ : ଖାତକଙ୍କୁ ଦେୟ ବଟାର ସଂଚୟ ୨% ହାରରେ | ୯୫ |
| ବିବିଧ ଖାତକଙ୍କର ନିଟ୍ ପରିମାଣ | ୪,୬୫୫ |

**ବିଶେଷ ଦ୍ରଷ୍ଟବ୍ୟ** — ଏପରି ଗଣନା କରିବାର କାରଣ ହେଲା ଏହି ଯେ ବଟା କେବଳ ସେହି ଖାତକ ବା ଗ୍ରାହକମାନଙ୍କୁ ଦିଆଯିବ ଯେଉଁମାନେ ନିର୍ଦ୍ଦିଷ୍ଟ ଅବଧିରେ କିମ୍ବା ତାହା ପୂର୍ବରୁ ତାଙ୍କର ଦେୟ ଋଣ ବା ଅର୍ଥ ପରିଶୋଧ କରିବେ । ଅନ୍ୟ ଭାବରେ କହିବାକୁ ଗଲେ କେବଳ ଉତ୍ତମ ଖାତକମାନଙ୍କର ଏହି ବଟା ପ୍ରାପ୍ୟ । ତେଣୁ ଉତ୍ତମ ଖାତକଙ୍କର ପରିମାଣ ନିର୍ଣ୍ଣୟ କରିବା ନିମନ୍ତେ ବିବିଧ ଖାତକଙ୍କର ମୋଟ ପରିମାଣରୁ ଅନାଦେୟ ଋଣ ଓ ଅନାଦେୟ ଓ ଅନିଶ୍ଚିତ ଋଣର ସଂଚୟର ପରିମାଣ ବାଦ୍ ଦିଆଯିବ । ଏହାର ଏକ ଦୃଷ୍ଟାନ୍ତ ନିମ୍ନରେ ପ୍ରଦତ୍ତ ହେଲା ।

## ଦୃଷ୍ଟାନ୍ତ ( ୧୮ )

ଶ୍ରୀ ହରିହର ମିଶ୍ରଙ୍କର ବ୍ୟବସାୟରେ ୧୯୭୨ ସାଲ ଜାନୁୟାରୀ ୧ ତାରିଖରେ ଅନାଦେୟ ଓ ଅନିଶ୍ଚିତ ଋଣର ସଞ୍ଚିତ ୧,୫୦୦ ଟଙ୍କା ଥିଲା ଓ ଉତ୍ତମ ଖାତକଙ୍କୁ ଦେୟ ବଟାର ସଞ୍ଚିତ ୪୦୦ ଟଙ୍କା ଥିଲା । ବର୍ଷ ମଧ୍ୟରେ ଅନାଦେୟ ଋଣର ପରିମାଣ ୫୦୦ ଟଙ୍କା ଓ ପ୍ରଦତ୍ତ ବଟାର ପରିମାଣ ୨୦୦ ଟଙ୍କା ଥିଲା । ବର୍ଷ ଶେଷରେ କିଛୁ ବାଦ୍ ଦିଆ ନ ଯାଇ ବିବିଧ ଖାତକଙ୍କର ମୋଟ

ପରିମାଣ ୩୨,୫୦୦ ଟଙ୍କା ଥିଲା । ଏହି ବ୍ୟବସାୟରେ ଅନାଦେୟ ଓ ଅନିଶ୍ଚିତ ଋଣର ସଞ୍ଚିତ ବିବିଧ ଖାତକ ପରିମାଣର ଶତକଡ଼ା ୫ ଓ ଦେୟ ବଟାର ସଞ୍ଚିତ ଶତକଡ଼ା ୨ ହାରରେ ରଖାଯାଏ । ଆବଶ୍ୟକ ରୋଜନାମା, ଅନାଦେୟ ଋଣ ହିସାବ, ଅନାଦେୟ ଓ ଅନିଶ୍ଚିତ ଋଣର ସଞ୍ଚିତ ହିସାବ, ପ୍ରଦତ୍ତ ବଟା ହିସାବ ଓ ଦେୟ ବଟାର ସଂଚିତ ହିସାବ ପ୍ରସ୍ତୁତ କର ।

## ସମାଧାନ :

ରୋଜନାମା

| ତାରିଖ | ବିବରଣ | ଖଃ ପୃଃ | ଦାୟୀ | ଦାତା |
|---|---|---|---|---|
| ୧୯୬୨ | | | ଟଙ୍କା | ଟଙ୍କା |
| ଡିସେ-୩୧ | ଅନାଦେୟ ଋଣ ହିସାବ ଦାୟୀ | | ୫୦୦ | |
| | ବିବିଧ ଖାତକ ହିସାବ ବାବଦ | | | ୫୦୦ |
| | (ଅନାଦେୟ ଋଣର ପରିମାଣ ବିବିଧ ଖାତକ ପରିମାଣରୁ ବାଦ୍ ଦିଆଗଲା) | | | |
| ଡିସେ ୩୧ | ଅନାଦେୟ ଓ ଅନିଶ୍ଚିତ ଋଣ ସଂଚିତ ହିସାବ ଦାୟୀ | | ୫୦୦ | |
| | ଅନାଦେୟ ଋଣ ହିସାବ ବାବଦ | | | ୫୦୦ |
| | (ଅନାଦେୟ ଋଣ ହିସାବର ବାକି ସଂଚିତ ହିସାବକୁ ସ୍ଥାନାନ୍ତରିତ କରାଗଲା) | | | |
| ଡିସେ-୩୧ | ନିଟ୍ ଲାଭ ଓ କ୍ଷତି ହିସାବ ଦାୟୀ | | ୨୦୦ | |
| | ଅନାଦେୟ ଓ ଅନିଶ୍ଚିତ ଋଣ ସଂଚିତ ହିସାବ ବାବଦ | | | ୨୦୦ |
| | (ସଂଚିତର ପରିମାଣ ୧,୨୦୦ ଟଙ୍କାକୁ ନେବା ନିମନ୍ତେ ନିଅଣ୍ଟ ପରିମାଣ ସହାଇଣ ନିଟ୍ ଲାଭ ଓ କ୍ଷତି ହିସାବକୁ ଦାୟୀ କରାଗଲା ।) | | | |

| ତାରିଖ | ବିବରଣ | ଖଃ ପୃଃ | ଦାୟୀ | ଦାତା |
|---|---|---|---|---|
| ୧୯୭୨ | | | ଟଙ୍କା | ଟଙ୍କା |
| ଡିସେ–୩୧ | ଦେୟ ବଟ୍ଟା ଫଚଡ ହିସାବ ଦାୟୀ<br>ପ୍ରଦତ୍ତ ବଟ୍ଟା ହିସାବ ବାବଦ<br>(ପ୍ରଦତ୍ତ ବଟ୍ଟା ହିସାବର ବାକି ଦେୟ ବଟ୍ଟାର ଫଚଡ ହିସାବକୁ ସ୍ଥାନାନ୍ତରିତ କରାଗଲା ।) | | ୧୦୦ | ୧୦୦ |
| ଡିସେ-୩୧ | ନିଟ୍ ଲାଭ ଓ କ୍ଷତି ହିସାବ ଦାୟୀ<br>ଦେୟ ବଟ୍ଟା ଫଚଡ ହିସାବ ବାବଦ<br>(ଫଚଡ ପରିମାଣକୁ ୩୦,୪୦୦ ଟଙ୍କାର ୨% ଅର୍ଥାତ୍ ୬୦୮ ଟଙ୍କାକୁ ଆଣିବା ନିମନ୍ତେ ଆବଶ୍ୟକ ଅଧିକ ଟଙ୍କା ପକାଇ ନିଟ୍ ଲାଭ ଓ କ୍ଷତି ହିସାବକୁ ଦାୟୀ କରାଗଲା ।) | | ୪୦୮ | ୪୦୮ |

# ଖତିୟାନ

ଦାୟୀ ଅନାଦେୟ ଋଣହିସାବ ଦାତା

| | | ଟଙ୍କା | | | ଟଙ୍କା |
|---|---|---|---|---|---|
| ୧୯୭୨<br>ଡିସେ ୩୧ | ବିବିଧ ଖାତକ ହିସାବ ବାବଦ | ୬୦୦ | ୧୯୭୨<br>ଡିସେ–୩୧ | ଅନାଦେୟ ଓ ଅନିଶ୍ଚିତ ଋଣରେ ଫଚଡ ହିଃ ବାବଦ | ୬୦୦ |

| ଦାୟୀ | ଅନାଦେୟ ଓ ଅନିଶ୍ଚିତ ଋଣର ସଞ୍ଚିତ ହିସାବ | | | | ଦାତା |
|---|---|---|---|---|---|
| ୧୯୭୨ | | ଟଙ୍କା | ୧୯୬୨ | | ଟଙ୍କା |
| ଡିସେ-୩୧ | ଅନାଦେୟ ଋଣ ହିସାବ ବାବଦ | ୫୦୦ | ଜାନୁ-୧ | ପୂର୍ବ ବାକି ବାବଦ | ୧,୫୦୦ |
| ଡିସେ-୩୧ | ବାକି ଚଳନ୍ତି | ୧,୬୦୦ | ଡିସେ-୩୧ | ନିଟ୍ ଲାଭ ଓ କ୍ଷତି ହିସାବ ବାବଦ | ୬୦୦ |
| | | ୨,୧୦୦ | | | ୨,୧୦୦ |
| | | | ୧୯୭୩<br>ଜାନୁ-୧ | ପୂର୍ବ ବାକି ବାବଦ | ୧,୬୦୦ |

| ଦାୟୀ | ପ୍ରଦତ୍ତ ବଟ୍ଟା ହିସାବ | | | | ଦାତା |
|---|---|---|---|---|---|
| ୧୯୭୨ | | ଟଙ୍କା | ୧୯୭୨ | | ଟଙ୍କା |
| ଡିସେ-୩୧ | ବାକି ବାବଦ | ୨୦୦ | ଡିସେ-୩୧ | ଦେୟ ବଟ୍ଟାର ସଞ୍ଚିତ ହିସାବ ବାବଦ | ୨୦୦ |

| ଦାୟୀ | ଦେୟ ବଟ୍ଟାର ସଞ୍ଚିତ ହିସାବ | | | | ଦାତା |
|---|---|---|---|---|---|
| ୧୯୭୨ | | ଟଙ୍କା | ୧୦୭୨ | | ଟଙ୍କା |
| ଡିସେ-୩୧ | ପ୍ରଦତ୍ତ ବଟ୍ଟା ହିସାବ ବାବଦ | ୨୦୦ | ଜାନୁ-୧ | ପୂର୍ବ ବାକି ବାବଦ | ୪୦୦ |
| ଡିସେ-୩୧ | ବାକି ଚଳନ୍ତି | ୬୦୮ | ଡିସେ-୩୧ | ନିଟ୍ ଲାଭ ଓ କ୍ଷତି ହିସାବ ବାବଦ | ୪୦୮ |
| | | ୮୦୮ | | | ୮୦୮ |
| | | | ୧୯୭୩<br>ଜାନୁ-୧ | ପୂର୍ବ ବାକି ବାବଦ | |

## (୯) (ମହାଜନଙ୍କଠାରୁ) ପ୍ରାପ୍ୟ ବଟ୍ଟାର ସଞ୍ଚିତ :

ଯେଉଁ ଖାତକମାନେ ନିର୍ଦ୍ଦିଷ୍ଟ ସମୟରେ ତାଙ୍କର ଦେୟ ଅର୍ଥ ପରିଶୋଧ କରନ୍ତି ତାଙ୍କୁ ଯେପରି ବଟ୍ଟା ଦିଆଯାଏ ମହାଜନଙ୍କୁ ତାଙ୍କର ଦେୟ ଅର୍ଥ ନିର୍ଦ୍ଦିଷ୍ଟ ଅବସରେ ପରିଶୋଧ କଲେ ମହାଜନମାନେ ମଧ୍ୟ ସେହିପରି ବଟ୍ଟା ଦିଅନ୍ତି । ଦେୟ ବଟ୍ଟା ନିମନ୍ତେ ଯେପରି ସଞ୍ଚିତ ଗଢ଼ାଯାଏ ପ୍ରାପ୍ୟ ବଟ୍ଟା ନିମନ୍ତେ ମଧ୍ୟ ଠିକ୍ ସେହିପରି ଏକ ସଞ୍ଚିତ ଗଢ଼ାଯାଏ । ଏହି ସଞ୍ଚିତକୁ ପ୍ରାପ୍ୟ ବଟ୍ଟାର ସଞ୍ଚିତ କୁହାଯାଏ । ଏହା ନିଟ୍ ଲାଭ ଓ କ୍ଷତି ହିସାବକୁ ଦାତା କରିବା ଦ୍ୱାରା ଗଢ଼ାଯାଏ । ଏହାର ରୋଜନାମା ନିମ୍ନରେ ପ୍ରଦତ୍ତ ହେଲା ।

| | |
|---|---|
| ପ୍ରାପ୍ୟ ବଟ୍ଟାର ସଞ୍ଚିତ ହିସାବ | ଦାୟୀ |
| ନିଟ୍ ଲାଭ ଓ କ୍ଷତି ହିସାବ | ବାବଦ |

ପ୍ରାପ୍ତ ବଟ୍ଟାର ବାକି ନିଟ୍ ଲାଭ ଓ କ୍ଷତି ହିସାବକୁ କିମ୍ବା ପ୍ରାପ୍ୟ ବଟ୍ଟାର ସଂଚିତ ହିସାବକୁ ସ୍ଥାନାନ୍ତରିତ କରାଯାଏ । ଶେଷୋକ୍ତ ପ୍ରଣାଳୀ ଅଧିକ ଯୁକ୍ତିଯୁକ୍ତ ହୋଇଥିବାରୁ ଦୃଷ୍ଟାନ୍ତରେ ସେହି ପ୍ରଣାଳୀ ଅନୁସୃତ ହୋଇଛି । ଏହାର ଏକ ଦୃଷ୍ଟାନ୍ତ ନିମ୍ନରେ ପ୍ରଦତ୍ତ ହେଲା ।

### ଦୃଷ୍ଟାନ୍ତ (୧୯)

୧୯୭୬ ସାଲ ଜାନୁଆରୀ ୧ ତାରିଖରେ ମହାଜନଙ୍କଠାରୁ ପ୍ରାପ୍ୟ ବଟ୍ଟାର ସଂଚିତର ପରିମାଣ ୧,୧୦୦ ଟଙ୍କା ଥିଲା । ବର୍ଷ ମଧ୍ୟରେ ପ୍ରାପ୍ତ ବଟ୍ଟାର ପରିମାଣ ୨,୦୦୦ ଟଙ୍କା ଥିଲା । ୧୯୭୬ ସାଲ ଡିସେମ୍ବର ୩୧ ତାରିଖରେ ମହାଜନମାନଙ୍କର ମୋଟ ପରିମାଣ ୫୦,୦୦୦ ଟଙ୍କା ଥିଲା । ଏହି ସଂଚିତ ଶତକଡ଼ା ୨·୫ ହାରରେ ଗଢ଼ାଯିବ । ଆବଶ୍ୟକ ରୋଜନାମା, ପ୍ରାପ୍ତ ବଟ୍ଟାର ହିସାବ, ମହାଜନଙ୍କଠାରୁ ପ୍ରାପ୍ୟ ବଟ୍ଟାର ସଂଚିତ ହିସାବ ପ୍ରସ୍ତୁତ କର ।

## ସମାଧାନ :

| ତାରିଖ | ବିବରଣ | ଖ: ପୃ: | ଦାୟୀ | ଦାତା |
|---|---|---|---|---|
| | | | ଟଙ୍କା | ଟଙ୍କା |
| ୧୯୭୨ ଡିସେ-୩୧ | ପ୍ରାପ୍ତ ବଟ୍ଟା ହିସାବ ଦାୟୀ | | ୧,୦୦୦ | |
| | ପ୍ରାପ୍ୟ ବଟ୍ଟା ସଞ୍ଚିତ ହିସାବ ବାବଦ | | | ୧,୦୦୦ |
| | (ପ୍ରାପ୍ତ ବଟ୍ଟା ହିସାବର ବାକି ପ୍ରାପ୍ୟ ବଟ୍ଟାର ସଞ୍ଚିତ ହିସାବକୁ ସ୍ଥାନାନ୍ତରିତ କରାଗଲା ।) | | | |
| ଡିସେ-୩୧ | ପ୍ରାପ୍ୟ ବଟ୍ଟା ସଞ୍ଚିତ ହିସାବ ଦାୟୀ | | ୧,୧୫୦ | |
| | ନିଟ୍ ଲାଭ ଓ କ୍ଷତି ହିସାବ ବାବଦ | | | ୧,୧୫୦ |
| | (ସଞ୍ଚିତର ପରିମାଣ ୧,୨୫୦ ଟଙ୍କାକୁ ଉଠାଇବା ପାଇଁ ଆବଶ୍ୟକ ଟଙ୍କା ସକାଶେ ନିଟ୍ ଲାଭ ଓ କ୍ଷତି ହିସାବକୁ ଦାତା କରାଗଲା ।) | | | |

### ଖତିୟାନ

ଦାୟୀ — ପ୍ରାପ୍ତ ବଟ୍ଟା ହିସାବ — ଦାତା

| ତାରିଖ | ବିବରଣ | ଟଙ୍କା | ତାରିଖ | ବିବରଣ | ଟଙ୍କା |
|---|---|---|---|---|---|
| ୧୯୭୨ ଡିସେ-୩୧ | ପ୍ରାପ୍ୟ ବଟ୍ଟା ସଞ୍ଚିତି ହିସାବ ବାବଦ | ୧,୦୦୦ | ୧୯୭୨ ଡିସେ-୩୧ | ବାକୀ ବାବଦ | ୧,୦୦୦ |

ଦାୟୀ ମହାଜନଙ୍କଠାରୁ ପ୍ରାପ୍ୟ ବଟାର ସମ୍ପୃକ୍ତ ହିସାବ ଦାତା

| ୧୯୭୨ | | ଟଙ୍କା | ୧୯୭୨ | | ଟଙ୍କା |
|---|---|---|---|---|---|
| ଜାନୁ-୧ | ପୂର୍ବ ବାକି ବାବଦ | ୧,୧୦୦ | ଡିସେ-୩୧ | ପ୍ରାପ୍ତ ବଟା ହିଃ ବାବଦ | ୧,୦୦୦ |
| ଡିସେ ୩୧ | ନିଟ୍ ଲାଭ ଓ କ୍ଷତି ହିଃ ବାବଦ | ୧,୧୫୦ | ଡିସେ-୩୧ | ବାକି ଜଳିକ | ୧,୨୫୦ |
| | | ୨,୨୫୦ | | | ୨,୨୫୦ |
| ୧୯୭୩ | | | | | |
| ଜାନୁ-୧ | ପୂର୍ବ ବାକି ବାବଦ | ୧,୨୫୦ | | | |

ଏହି ସଂଚିତ ହିସାବ ଉଦ୍ବୃତ୍ତ ପତ୍ରରେ ମହାଜନମାନଙ୍କର ମୋଟ ପରିମାଣରୁ ବାଦ୍ ଦିଆଯାଏ ଓ ମହାଜନଙ୍କର ନିଟ୍ ପରିମାଣ ଉଦ୍ବୃତ୍ତ ପତ୍ରର ଦାୟିତ୍ୱ ସ୍ତମ୍ଭରେ ଲେଖାଯାଏ । ଏହା ଉଦ୍ବୃତ୍ତ ପତ୍ରରେ ନିମ୍ନ ପ୍ରକାର ଲେଖାଯିବ ।

ଉଦ୍ବୃତ୍ତ ପତ୍ର

| ଦେଣା | ଟଙ୍କା | ଟଙ୍କା | ପରିସମ୍ପତ୍ତି |
|---|---|---|---|
| ବିବିଧ ମହାଜନ | ୫୦,୦୦୦ | | |
| ବାଦ୍ ପ୍ରାପ୍ୟ ବଟାର ସଞ୍ଚିତି | ୧,୨୫୦ | | |
| | | ୪୮,୭୫୦ | |

## ଦୃଷ୍ଟାନ୍ତ ( ୨୦ )

ଗୋଟିଏ ବ୍ୟବସାୟ ଅନାଦେୟ ଋଣର ସଂଚିତ ଓ ଦେୟ ବଟାର ସଂଚିତ ଖାତକମାନଙ୍କର ମୋଟ ପରିମାଣର ଯଥାକ୍ରମେ ୫% ଓ ୨% ହାରରେ

ରଖନ୍ତି । ଏହି ବ୍ୟବସାୟ ମହାଜନଙ୍କର ମୋଟ ପରିମାଣର ୨% ହାରରେ ପ୍ରାପ୍ୟ ବଟ୍ଟାର ସଂଚୟ ରଖନ୍ତି ।

ନିମ୍ନଲିଖିତ ବିବରଣୀରୁ ଏହି ବ୍ୟବସାୟର ତିନ ବର୍ଷର ସଂଚୟ ହିସାବ ପ୍ରସ୍ତୁତ କର ।

| ୧୯୭୦ ସାଲ ଜାନୁୟାରୀ ୧ ତାରିଖର ବାକି : | ଟଙ୍କା |
|---|---|
| ଅନାଦେୟ ଋଣର ସଂଚୟ | ୪୦୦ |
| ଖାତକମାନଙ୍କୁ ଦେୟ ବଟ୍ଟାର ସଂଚୟ | ୩୦୦ |
| ମହାଜନଙ୍କଠାରୁ ପ୍ରାପ୍ୟ ବଟ୍ଟାର ସଂଚୟ | ୨୦୦ |

ବିବିଧ ଖାତକମାନଙ୍କର ମୋଟ ପରିମାଣ :

୩୧ ତାରିଖ ଡିସେମ୍ବର, ୧୯୭୦ — ୧୧,୦୦୦ ଟଙ୍କା, ଅନାଦେୟ ଋଣ ବାବଦ ୨୦୦ ଟଙ୍କା ବାଦ୍‌ଦେଇ ଓ ବଟ୍ଟା ବାବଦ ୨୫୦ ଟଙ୍କା ଦେବା ପରେ ।

୩୧ ତାରିଖ ଡିସେମ୍ବର, ୧୯୭୧ — ୭,୦୦୦ ଟଙ୍କା, ଅନାଦେୟ ଋଣ ବାବଦ ୧୫୦ ଟଙ୍କା ବାଦ ଦେଇ ଓ ବଟ୍ଟା ବାବଦ ୧୨୦ ଟଙ୍କା ଦେବା ପରେ ।

୩୧ ତାରିଖ ଡିସେମ୍ବର, ୧୯୭୨ — ୯,୦୦୦ ଟଙ୍କା, ଅନାଦେୟ ଋଣ ବାବଦ ୨୫୦ ଟଙ୍କା ବାଦ୍ ଦେଇ ଓ ବଟ୍ଟା ବାବଦ ୧୫୦ ଟଙ୍କା ଦେଲା ପରେ ।

୧୯୭୦, ୧୯୭୧ ଓ ୧୯୭୨ ସାଲ୍ ଶେଷରେ ବିବିଧ ମହାଜନମାନଙ୍କର ମୋଟ ପରିମାଣ ଯଥାକ୍ରମେ ୯,୦୦୦; ୭,୦୦୦ ଓ ୭,୦୦୦ ଟଙ୍କା ଥିଲା । ଏହି ବର୍ଷମାନଙ୍କରେ ଯଥାକ୍ରମେ ୨୦୦ ଟଙ୍କା, ୧୫୦ ଟଙ୍କା ଓ ୧୮୦ ଟଙ୍କା ମହାଜନମାନଙ୍କଠାରୁ ବଟ୍ଟା ମିଳିଥିଲା ।

## ସମାଧାନ :

ଧାର୍ଯ୍ୟ — ଅନାଦେୟ ଋଣ ସଞ୍ଚିତ ହିସାବ — ଦାତା

| ତାରିଖ | ବିବରଣୀ | ଟଙ୍କା | ତାରିଖ | ବିବରଣୀ | ଟଙ୍କା |
|---|---|---|---|---|---|
| ୧୯୭୦ | | | ୧୯୭୦ | | |
| ଡିସେ-୩୧ | ଅନାଦେୟ ଋଣ ହିସାବ ବାବଦ | ୨୦୦ | ଜାନୁ-୧ | ପୂର୍ବ ବାକି ବାବଦ | ୪୦୦ |
| ୩୧ | ବାକି ଗଡ଼ିଲା | ୫୫୦ | ଡିସେ-୩୧ | ନିଟ୍ ଲାଭ ଓ କ୍ଷତି ହିଃ ବାବଦ | ୩୫୦ |
| | | ୭୫୦ | | | ୭୫୦ |
| ୧୯୭୧ | | | ୧୯୭୧ | | |
| ଡିସେ-୩୧ | ଅନାଦେୟ ଋଣ ହିସାବ ବାବଦ | ୧୫୦ | ଜାନୁ-୧ | ପୂର୍ବ ବାକି ବାବଦ | ୫୫୦ |
| ୩୧ | ନିଟ୍ ଲାଭ ଓ କ୍ଷତି ହିସାବ ବାବଦ | ୫୦ | | | |
| ୩୧ | ବାକି ଗଡ଼ିଲା | ୩୫୦ | | | |
| | | ୫୫୦ | | | ୫୫୦ |
| ୧୯୭୨ | | | ୧୯୭୨ | | |
| ଡିସେ-୩୧ | ଅନାଦେୟ ଋଣ ହିସାବ ବାବଦ | ୨୫୦ | ଜାନୁ-୧ | ପୂର୍ବ ବାକି ବାବଦ | ୩୫୦ |
| ୩୧ | ବାକି ଗଡ଼ିଲା | ୪୫୦ | ଡିସେ-୩୧ | ନିଟ୍ ଲାଭ ଓ କ୍ଷତି ହିଃ ବାବଦ | ୩୫୦ |
| | | ୭୦୦ | | | ୭୦୦ |
| | | | ୧୯୭୩ | | |
| | | | ଜାନୁ ୧ | ପୂର୍ବ ବାକି ବାବଦ | ୪୫୦ |

ଦାୟୀ — ଦେୟ ବଟା ସଞ୍ଚିତ ହିସାବ — ଦାତା

| ତାରିଖ | ବିବରଣୀ | ଟଙ୍କା | ତାରିଖ | ବିବରଣୀ | ଟଙ୍କା |
|---|---|---|---|---|---|
| ୧୯୭୦ | | | ୧୯୭୦ | | |
| ଡିସେ-୩୧ | ପ୍ରଦତ୍ତ ବଟା ହିଃ ବାବଦ | ୨୫୦ | ଜାନୁ-୧ | ପୂର୍ବ ବାକି ବାବଦ | ୩୦୦ |
| ୩୧ | ବାକି ଗଡ଼ିଲା | ୨୦୯ | ଡିସେ-୩୧ | ଲାଭ ଓ କ୍ଷତି ହିଃ ବାବଦ | ୧୫୯ |
| | | ୪୫୯ | | | ୪୫୯ |
| ୧୯୭୧ | | | ୧୯୭୧ | | |
| ଡିସେ-୩୧ | ପ୍ରଦତ୍ତ ବଟା ହିଃ ବାବଦ | ୧୨୦ | ଜାନୁ-୧ | ପୂର୍ବ ବାକି ବାବଦ | ୨୦୯ |
| ୩୧ | ବାକି ଗଡ଼ିଲା | ୧୩୩ | ଡିସେ-୩୧ | ଲାଭ ଓ କ୍ଷତି ହିଃ ବାବଦ | ୪୪ |
| | | ୨୫୩ | | | ୨୫୩ |
| ୧୯୭୨ | | | ୧୯୭୨ | | |
| ଡିସେ-୩୧ | ପ୍ରଦତ୍ତ ବଟା ହିଃ ବାବଦ | ୧୫୦ | ଜାନୁ-୧ | ପୂର୍ବ ବାକି ବାବଦ | ୧୩୩ |
| ୩୧ | ବାକି ଗଡ଼ିଲା | ୧୬୧ | ଡିସେ-୩୧ | ଲାଭ ଓ କ୍ଷତି ହିଃ ବାବଦ | ୧୭୮ |
| | | ୩୧୧ | | | ୩୧୧ |
| | | | ୧୯୭୩ | | |
| | | | ଜାନୁ-୧ | ପୂର୍ବ ବାକି ବାବଦ | ୧୬୧ |

ଦାୟୀ — ପ୍ରାପ୍ୟ ବଟା ସଞ୍ଚିତ ହିସାବ — ଦାତା

| ତାରିଖ | ବିବରଣୀ | ଟଙ୍କା | ତାରିଖ | ବିବରଣୀ | ଟଙ୍କା |
|---|---|---|---|---|---|
| ୧୯୭୦ | | | ୧୯୭୦ | | |
| ଜାନୁ-୧ | ପୂର୍ବ ବାକି ବାବଦ | ୨୦୦ | ଡିସେ-୩୧ | ପ୍ରାପ୍ତ ବଟା ହିଃ ବାବଦ | ୨୦୦ |
| ଡିସେ-୩୧ | ଲାଭ ଓ କ୍ଷତି ହିଃ ବାବଦ | ୧୮୦ | ୩୧ | ବାକି ଗଡ଼ିଲା | ୧୮୦ |
| | | ୩୮୦ | | | ୩୮୦ |
| ୧୯୭୧ | | | ୧୯୭୧ | | |
| ଜାନୁ-୧ | ପୂର୍ବ ବାକି ବାବଦ | ୧୮୦ | ଡିସେ-୩୧ | ପ୍ରାପ୍ତ ବଟା ହିଃ ବାବଦ | ୧୫୦ |
| ଡିସେ-୩୧ | ଲାଭ ଓ କ୍ଷତି ହିଃ ବାବଦ | ୧୧୦ | ୩୧ | ବାକି ଗଡ଼ିଲା | ୧୪୦ |
| | | ୨୯୦ | | | ୨୯୦ |
| ୧୯୭୨ | | | ୧୯୭୨ | | |
| ଜାନୁ-୧ | ପୂର୍ବ ବାକି ବାବଦ | ୧୪୦ | ଡିସେ-୩୧ | ପ୍ରାପ୍ତ ବଟା ହିଃ ବାବଦ | ୧୮୦ |
| ଡିସେ-୩୧ | ଲାଭ ଓ କ୍ଷତି ହିଃ ବାବଦ | ୧୬୦ | ୩୧ | ବାକି ଗଡ଼ିଲା | ୧୨୦ |
| | | ୩୦୦ | | | ୩୦୦ |
| ୧୯୭୩ | | | | | |
| ଜାନୁ-୧ | ପୂର୍ବ ବାକି ବାବଦ | ୧୨୦ | | | |

## (୧୦) ଦୁର୍ଘଟଣା ଜନିତ କ୍ଷତି :

ଆଉ ଏକ ଶ୍ରେଣୀର ସମାଯୋଜନ ନିୟମିତ ଭାବରେ ପ୍ରତିବର୍ଷ ଆବଶ୍ୟକ ନ ହୋଇ ସାମୟିକ ଭାବରେ କେବେ କେବେ ଆବଶ୍ୟକ ହୁଏ । ଦୁର୍ଘଟଣାଜନିତ କ୍ଷତି ତନ୍ମଧ୍ୟରୁ ଅନ୍ୟତମ । ଅଗ୍ନିକାଣ୍ଡ ହେତୁ କାରଖାନାର ଯନ୍ତ୍ରପାତିର କ୍ଷତି କିମ୍ବା ଗୋଦାମସ୍ଥିତ କଞ୍ଚାମାଲର କ୍ଷତି କିମ୍ବା ଗୋଦାମ ସ୍ଥିତ ଅବିକ୍ରୀତ ପଣ୍ୟ ଦ୍ରବ୍ୟର କ୍ଷତି ପ୍ରଭୃତିର ନାମ ଉଦାହରଣ ସ୍ୱରୂପ ଉଲ୍ଲେଖ କରାଯାଇପାରେ ।

ଅଗ୍ନିକାଣ୍ଡ ହେତୁ ଯଦି ଯନ୍ତ୍ରପାତି ବିନଷ୍ଟ ହୋଇଥାଏ ତେବେ ନିମ୍ନଲିଖିତ ରୋଜନାମା ଲେଖାଯିବ :

| | |
|---|---|
| ଅଗ୍ନିକାଣ୍ଡ ହେତୁ କ୍ଷତି ହିସାବ | ଦାୟୀ |
| ଯନ୍ତ୍ରପାତି ହିସାବ | ବାବଦ |
| (ଅଗ୍ନିକାଣ୍ଡ ହେତୁ ଘଟିଥିବା ଯନ୍ତ୍ରପାତିର କ୍ଷତି ଯନ୍ତ୍ରପାତି ହିସାବରୁ ବାଦ୍ ଦିଆଗଲା ।) | |

ଯଦି ଯନ୍ତ୍ରପାତି ପରିବର୍ତ୍ତେ ପଣ୍ୟ ଦ୍ରବ୍ୟ ବିନଷ୍ଟ ହୋଇଥାଏ ତା ହେଲେ ନିମ୍ନଲିଖିତ ରୋଜନାମା ପ୍ରସ୍ତୁତ କରାଯିବ :

| | |
|---|---|
| ଅଗ୍ନିକାଣ୍ଡ ହେତୁ କ୍ଷତି ହିସାବ | ଦାୟୀ |
| ମୋଟ ଲାଭ ଓ କ୍ଷତି ହିସାବ | ବାବଦ |
| (ଅଗ୍ନିକାଣ୍ଡ ହେତୁ ଘଟିଥିବା ପଣ୍ୟ ଦ୍ରବ୍ୟର କ୍ଷତି ସକାଶେ ମୋଟ ଲାଭ ଓ କ୍ଷତି ହିସାବକୁ ଦାତା କରାଗଲା ।) | |

ଏହି କ୍ଷତି ସକାଶେ ମୋଟ ଲାଭ ଓ କ୍ଷତି ହିସାବକୁ ଦାତା କରିବାର ଉଦ୍ଦେଶ୍ୟ ହେଲା ଏହା ଯେ ମୋଟ ଲାଭର ପ୍ରକୃତ ପରିମାଣ ଅଗ୍ନିକାଣ୍ଡ ଘଟି ନ ଥିଲେ କେତେ ହୋଇଥାନ୍ତା ତାହା ଜାଣିବା । ଯଦି ଏହି ପଣ୍ୟ ଦ୍ରବ୍ୟ ସକାଶେ ଅଗ୍ନି ବୀମା କରାଯାଇଥାଏ ତା ହେଲେ ବୀମା କମ୍ପାନୀଠାରୁ କ୍ଷତିର ଆଂଶିକ କିମ୍ବା ପୂର୍ଣ୍ଣ ପରିମାଣ ମିଳିବ । ଯଦି ଚୁକ୍ତି ଅନୁଯାୟୀ ବୀମା କମ୍ପାନୀ ସମସ୍ତ କ୍ଷତି ପୂରଣ କରିବାର କଥା, ତା ହେଲେ ନିମ୍ନଲିଖିତ ରୋଜନାମା ପ୍ରସ୍ତୁତ କରାଯିବ :

| | |
|---|---|
| ଅଗ୍ନିବୀମା କମ୍ପାନୀ | ଦାୟୀ |
| ଅଗ୍ନିକାଣ୍ଡ ହେତୁ କ୍ଷତି ହିସାବ ବାବଦ | |
| (ଅଗ୍ନିକାଣ୍ଡ ହେତୁ କ୍ଷତି ଚୁକ୍ତି ଅନୁଯାୟୀ ଅଗ୍ନିବୀମା କମ୍ପାନୀ ବହନ କରିବେ ।) | |

ଯଦି ବୀମା କମ୍ପାନୀ କୌଣସି କାରଣ ବଶତଃ ଆଂଶିକ କ୍ଷତି ବହନ କରନ୍ତି ତା ହେଲେ କ୍ଷତି ହିସାବର ଅବଶିଷ୍ଟ ପରିମାଣ ନିଟ୍ ଲାଭ ଓ କ୍ଷତି ହିସାବକୁ ସ୍ଥାନାନ୍ତରିତ କରାଯିବ । ଏଥି ନିମନ୍ତେ ଆବଶ୍ୟକ ରୋଜନାମା ନିମ୍ନରେ ପ୍ରଦତ୍ତ ହେଲା :

| | |
|---|---|
| ଅଗ୍ନିବୀମା କମ୍ପାନୀ | ଦାୟୀ |
| ନିଟ୍ ଲାଭ ଓ କ୍ଷତି ହିସାବ | ଦାୟୀ |
| ଅଗ୍ନିକାଣ୍ଡ ହେତୁ କ୍ଷତି ହିସାବ ବାବଦ | |
| (ଅଗ୍ନିବୀମା କମ୍ପାନୀ ବହନ ନ କରୁଥିବା କ୍ଷତି ନିଟ୍ ଲାଭ ଓ କ୍ଷତି ହିସାବକୁ ସ୍ଥାନାନ୍ତରିତ କରାଗଲା ।) | |

ଯଦି ପଣ୍ୟ ଦ୍ରବ୍ୟ ବା ଅନ୍ୟାନ୍ୟ ପରିସମ୍ପତ୍ତିର ନିରାପତ୍ତା ସକାଶେ ଅଗ୍ନିବୀମା କରା ନ ଯାଇଥାଏ ତା ହେଲେ କ୍ଷତିର ସମ୍ପୂର୍ଣ୍ଣ ପରିମାଣ ଲାଭ ଓ କ୍ଷତି ହିସାବକୁ ସ୍ଥାନାନ୍ତରିତ କରାଯିବ ଓ ଯେହେତୁ ସମୁଦାୟ କ୍ଷତି ଗୋଟିଏ ବର୍ଷରେ ବହନ କରିବା କଷ୍ଟକର ହୁଏ ତେଣୁ ପରିମାଣର ଗୁରୁତ୍ୱ ଅନୁଯାୟୀ ଏହି କ୍ଷତିକୁ ୨ କିମ୍ବା ୩ ବର୍ଷ ମଧ୍ୟରେ ପ୍ରସାରିତ କରାଯିବ, ଅର୍ଥାତ୍ ଏହା ଏକ ବିଳମ୍ବିତ ମୁନାଫା ଜାତୀୟ ବ୍ୟୟ ବୋଲି ପରିଗଣିତ ହେବ ।

## (୧୨) ଲାଭ ବାବଦ ଦେୟ କମିଶନ୍ :

ଅନେକ ସମୟରେ ବ୍ୟବସାୟର ପରିଚାଳକ ବା ତତ୍ତ୍ୱାବଧାରକଙ୍କୁ ବ୍ୟବସାୟ ସମ୍ବନ୍ଧୀୟ କାର୍ଯ୍ୟ ପରିଚାଳନାରେ ଅଧିକ ମନଯୋଗୀ କରିବାକୁ ପ୍ରବର୍ତ୍ତାଇବା ନିମନ୍ତେ ବେତନ ବ୍ୟତୀତ ଏକ କମିଶନ ଦିଆଯାଏ । ଏହି କମିଶନ ଲାଭର ଶତକଡ଼ା ହିସାବରେ ଗଣନା କରାଯାଏ । ଯଦି ଏହି କମିଶନ୍ ନିଟ୍ ଲାଭର ଶତକଡ଼ା ହିସାବରେ ଦିଆଯାଏ ତା ହେଲେ ମୋଟ ଲାଭ ପରିମାଣରୁ ସମସ୍ତ ମୁନାଫା ଜାତୀୟ ଖର୍ଚ୍ଚ ବାଦ୍ ଦେଇ ଯେଉଁ ନିଟ୍ ଲାଭ ଅବଶିଷ୍ଟ ରହେ ସେହି ପରିମାଣରେ ଶତକଡ଼ା ୪ ବା ୫ ବା ନିର୍ଦ୍ଦିଷ୍ଟ ହାର ହିସାବ କରାଯିବ । ମନେକର

ସେ ନିଟ୍ ଲାଭର ଶତକଡ଼ା ୫ ହାରରେ କମିଶନ୍ ପାଇବେ ଓ ନିଟ୍ ଲାଭର ପରିମାଣ ୧୦,୦୦୦ ଟଙ୍କା ଥିଲା । ତା ହେଲେ ନିମ୍ନଲିଖିତ ରୋଜନାମା ଲେଖାଯିବ :

ନିଟ୍ ଲାଭ ଓ କ୍ଷତି ହିସାବ ଦାୟୀ ୫୦୦

ତତ୍ତ୍ୱାବଧାରକଙ୍କର ବ୍ୟକ୍ତିଗତ

ହିସାବ ବାବଦ ୫୦୦

(ନିଟ୍ ଲାଭର ଶତକଡ଼ା ୫ ହାରରେ
ତତ୍ତ୍ୱାବଧାରକଙ୍କୁ ଦେୟ କମିଶନ୍
ସକାଶେ ବ୍ୟବସ୍ଥା କରାଗଲା ।)

ଅନେକ ସମୟରେ କମିଶନ୍ ବାଦ୍ ଦେଲା ପରେ ନିଟ୍ ଲାଭର ଯାହା ପରିମାଣ ରହିଲା ତାହାର ଶତକଡ଼ା ୫ ହାରରେ ଯଦି କମିଶନ୍ ଦେବାକୁ ପଡ଼େ ତା ହେଲେ କମିଶନ୍ ନିମ୍ନଲିଖିତ ରୂପେ ନିର୍ଣ୍ଣୟ କରାଯିବ ।

ସୂତ୍ର : $\frac{\text{କମିଶନ୍‌ର ଶତକଡ଼ା ହାର}}{\text{୧୦୦} + \text{କମିଶନ୍‌ର ଶତକଡ଼ା ହାର}} \times$ ନିଟ୍ ଲାଭର ପରିମାଣ

ପୂର୍ବ ଉଦାହରଣର ସଂଖ୍ୟାଗୁଡ଼ିକ ଏହି ସୂତ୍ରରେ ପ୍ରତିକଳନ କଲେ ଏହା ନିମ୍ନ ରୂପ ହେବ :

$$\frac{\text{୫}}{\text{୧୦୫}} \times \text{୧୦,୦୦୦} = \text{୪୭୬ କମିଶନ୍}$$

ଅର୍ଥାତ୍ ୧୦,୦୦୦ ଟଙ୍କାରୁ ୪୭୬ ଟଙ୍କା କମିଶନ୍ ବାଦ୍ ଦେଲେ ୯,୫୨୪ ଟଙ୍କା ରହିବ ଓ ଏହାର ୫% ୪୭୬ ଟଙ୍କା ଅଟେ ।

## (୪) ହିସାବ ବନ୍ଦ କରିବାର ରୋଜନାମା :

ପୂର୍ବରୁ କୁହାଯାଇଛି ଯେ ମୁନାଫା ଜାତୀୟ ସମସ୍ତ ବ୍ୟୟ ଓ କ୍ଷତି ନିଟ୍ ଲାଭ ଓ କ୍ଷତି ହିସାବର ଦାୟୀ ପାର୍ଶ୍ୱରେ ଓ ମୁନାଫା ଜାତୀୟ ଆୟ ଏହି ହିସାବର ଦାତା ପାର୍ଶ୍ୱରେ ଅନ୍ତର୍ଭୁକ୍ତ ହୁଏ, କାରଣ ନିଟ୍ ଲାଭ ଓ କ୍ଷତି ହିସାବ ଆୟ-ବ୍ୟୟ ସୂଚକ ହିସାବ ଗୋଷ୍ଠୀର ଅନ୍ତର୍ଗତ । ବିଭିନ୍ନ ଆୟ, ବ୍ୟୟ ଓ କ୍ଷତି ହିସାବଗୁଡ଼ିକର ବାକି, ଯାହାକି ମୋଟ ଲାଭ ଓ କ୍ଷତି ହିସାବରେ ଅନ୍ତର୍ଭୁକ୍ତ ନ ହୋଇ ବର୍ତ୍ତମାନ ସୁଦ୍ଧା ବାକି ମେଳରେ ରହିଛି ସେହି ବାକିଗୁଡ଼ିକୁ ନିଟ୍ ଲାଭ ଓ

ଦାୟୀ — ମୋଟ ଓ ନିଟ୍ ଲାଭ ଓ କ୍ଷତି ହିସାବ — ଦାତା

| | ଟଙ୍କା | | ଟଙ୍କା |
|---|---|---|---|
| ବେତନ ଓ ମଜୁରି ହିସାବ ବାବଦ | ୧୨,୮୦୦ | ମୋଟ ଲାଭ ବାବଦ- ମୋଟ ଲାଭ ଓ କ୍ଷତି ହିସାବରୁ ସ୍ଥାନାନ୍ତରିତ | ୫୩,୧୦୦ |
| ଘରଭଡ଼ା ଓ ଟିକସ ହିସାବ ବାବଦ | ୩,୬୦୦ | ବଟ୍ଟା ହିସାବ ବାବଦ | ୪୫୦ |
| ଛପେଇ ଓ ବିଜ୍ଞାପନ ହିସାବ ବାବଦ | ୧,୫୦୦ | ମହାଜନଙ୍କଠାରୁ ପ୍ରାପ୍ୟ ବଟ୍ଟାର ସଞ୍ଚିତ ହିସାବ ବାବଦ | ୧୦୨ |
| ବାଣିଜ୍ୟ ବ୍ୟୟ ହିସାବ ବାବଦ | ୨,୫୦୦ | ସୁଧ ହିସାବ (ପ୍ରାପ୍ୟ) ବାବଦ | ୪୦୦ |
| ବୀମା ପ୍ରିମିୟମ ହିସାବ ବାବଦ ୪୫୦<br>ବାଦ୍ : ଅଗ୍ରିମ ପ୍ରଦତ୍ତ ୫୦ | ୪୦୦ | | |
| ମୂଲ୍ୟ ହ୍ରାସ ହିଃ ବାବଦ<br>ଗୃହ ୧,୫୦୦<br>ଆସବାବ୍ ୪୦୦ | ୧,୯୦୦ | | |
| ଅନିଶ୍ଚିତ ଋଣର ସଞ୍ଚିତ ହିସାବ ବାବଦ<br>ଆବଶ୍ୟକ ୮୫୦<br>ଅନାଦେୟ ଋଣ ୫୦୦<br>୧,୩୫୦<br>ବାଦ୍ . ଉପସ୍ଥିତ ସଞ୍ଚିତ ୫୦୦ | ୮୫୦ | | |
| ବହୁମୁଖୀ ପରିବହନ ହିସାବ ବାବଦ | ୧,୨୦୦ | | |
| ଖାତକ ମାନଙ୍କୁ ଦେୟ ବଟ୍ଟାର ସଞ୍ଚିତ ହିଃ ବାବଦ | ୩୨୩ | | |
| ନିଟ୍ ଲାଭ ବାବଦ : ମୂଳଧନ ହିସାବକୁ ସ୍ଥାନାନ୍ତରିତ କରାଗଲା | ୨୮,୯୬୯ | | |
| | ୫୪,୦୫୨ | | ୫୪,୦୫୨ |

## ଶ୍ରୀ ଉପେନ୍ଦ୍ର ମହାନ୍ତିଙ୍କର
## ୧୯୭୨ ସାଲ ଡିସେମ୍ବର ୩୧ ତାରିଖର
## ଉଦବୃତ୍ତ ପତ୍ର

| ଦେଣା | | ଟଙ୍କା | ପରିସମ୍ପତ୍ତି | | ଟଙ୍କା |
|---|---|---|---|---|---|
| ବିବିଧ ମହାଜନ | ୫,୧୦୦ | | ନଗଦ ତହବିଲ | | ୧,୩୦୦ |
| ବାଦ୍ : ପ୍ରାପ୍ୟ | | | ବ୍ୟାଙ୍କରେ ଗଚ୍ଛିତ ତହବିଲ | | ୨୦,୦୦୦ |
| ବଟ୍ଟାର ସଞ୍ଚିତ | ୧୦୨ | ୪,୯୯୮ | ବିନିଯୁକ୍ତ ଅର୍ଥ | ୧୬,୦୦୦ | |
| ଶ୍ରୀ ବାଜାଜ୍ | | ୫,୦୦୦ | ଯୁକ୍ତ : ପ୍ରାପ୍ୟ ସୁଧ | ୪୦୦ | ୧୬,୪୦୦ |
| ମୂଳଧନ : | | | ବିବିଧ ଖାତକ | ୧୭,୫୦୦ | |
| | | | ବାଦ୍ : ଅନାଦେୟ ଋଣ | ୫୦୦ | |
| ବାକି | ୭୦,୦୦୦ | | | | |
| ଯୁକ୍ତ : ଲାଭ | ୧୮,୯୭୯ | | | ୧୭,୦୦୦ | |
| | ୮୮,୯୭୯ | ୮୩,୯୭୯ | ବାଦ୍ : ଅନିଶ୍ଚିତ | | |
| ବାଦ୍ : ଉଠାଣ | ୫,୦୦୦ | | ଋଣର ସଞ୍ଚିତ | ୮୫୦ | |
| | | | | ୧୬,୧୫୦ | |
| | | | ବାଦ୍ ବଟ୍ଟାର ସଞ୍ଚିତ | ୩୨୩ | ୧୫,୮୨୭ |
| | | | ସମ୍ଭାର | | ୧୨,୮୦୦ |
| | | | ଯନ୍ତ୍ର ୧-୧-୭୨ | ୧୫,୦୦୦ | |
| | | | ଯୁକ୍ତ କ୍ରୀତ ୨୫-୧୨-୭୨ | ୫,୦୦୦ | |
| | | | | ୨୦,୦୦୦ | |
| | | | ବାଦ୍ : ମୂଲ୍ୟ ହ୍ରାସ | ୧,୫୦୦ | ୧୮,୫୦୦ |
| | | | ଆସ୍ବାବ | ୮,୦୦୦ | |
| | | | ବାଦ୍ : ମୂଲ୍ୟହ୍ରାସ | ୪୦୦ | ୭,୬୦୦ |
| | | | ଅଗ୍ରିମ ପ୍ରଦତ୍ତ ପ୍ରିମିୟମ | | ୫୦ |
| | | | ବୀମା କମ୍ପାନୀ | | ୧,୫୦୦ |
| | | ୯୩,୯୭୭ | | | ୯୩,୯୭୭ |

**ବିଶେଷ ଦ୍ରଷ୍ଟବ୍ୟ :**

(ଡ) ଶ୍ରୀ ବାଜାଜ୍ ଯଦିଓ ଜଣେ ମହାଜନ, ଚୁକ୍ତି ଅନୁଯାୟୀ ସେ କୌଣସି ନଗଦ ବଟ୍ଟା ଦେଉ ନ ଥିବାରୁ ବଟ୍ଟାର ସଞ୍ଚିତ ହିସାବ କଲାବେଳେ ମହାଜନଙ୍କର ମୋଟ ପରିମାଣରେ ଶ୍ରୀ ବାଜାଜ୍ଙ୍କୁ ଦେୟ ୫,୦୦୦ ଟଙ୍କା ଅନ୍ତର୍ଭୁକ୍ତ ହୋଇ ନାହିଁ ।

(ଖ) ବିବିଧ ଖାତକ ପରିମାଣରୁ ପ୍ରଥମେ ଅନାଦେୟ ଋଣ ବାଦ୍ ଦେଇ ଅବଶିଷ୍ଟ ୧୮,୦୦୦ ଟଙ୍କା ଉପରେ ୫% ହାରରେ ଅନିଶ୍ଚିତ ଋଣର ସଞ୍ଚିତ ହିସାବ କରାଯାଇଛି । ୧୭,୫୦୦ ଟଙ୍କାରୁ ଉଭୟ ଅନାଦେୟ ଋଣ ଓ ଅନିଶ୍ଚିତ ଋଣର ସଞ୍ଚିତ ବାଦ ଦିଆଯାଇ ଅବଶିଷ୍ଟ ୧୬,୧୫୦ ଟଙ୍କା ଉପରେ ୨% ହାରରେ ବଟାର ସଞ୍ଚିତ ହିସାବ କରାଯାଇଛି, କାରଣ ବଟା କେବଳ ଉତ୍ତମ ଖାତକମାନଙ୍କୁ ଦିଆଯିବ ।

(ଗ) ଯଦିଓ ୧,୫୦୦ ଟଙ୍କା ମୂଲ୍ୟର ସମ୍ଭାର ଅଗ୍ନିକାଣ୍ଡ ହେତୁ ନଷ୍ଟ ହୋଇ-ଯାଇଛି, ତଥାପି ତାହା ଅନ୍ତ୍ୟ ସମ୍ଭାରରୁ ବାଦ୍ ଦିଆଯାଇ ନାହିଁ, କାରଣ ଅଗ୍ନିକାଣ୍ଡ ଡିସେମ୍ବର ମାସ ୨୦ ତାରିଖରେ ଘଟିଛି, ମାତ୍ର ଅନ୍ତ୍ୟ ସମ୍ଭାରର ମୂଲ୍ୟାୟନ ଡିସେମ୍ବର ୩୧ ତାରିଖରେ କରାଯାଇଛି, ଅର୍ଥାତ୍ ଅଗ୍ନିକାଣ୍ଡ ଯୋଗୁଁ ନଷ୍ଟ ହୋଇଥିବା ସମ୍ଭାର ବାଦ୍ ଗିବା ପରେ ମଧ୍ୟ ଅନ୍ତ୍ୟ ସମ୍ଭାରର ମୂଲ୍ୟ ୧୨,୮୦୦ ଟଙ୍କା ଥିଲା । ତେଣୁ ଉଦ୍ବୃତ୍ତ ପତ୍ରରେ ସମ୍ଭାରର ମୂଲ୍ୟ ୧୨,୮୦୦ ଟଙ୍କା ରଖାଯାଇଛି ।

ପ୍ରଶ୍ନ ଉଠିପାରେ ଯେ ତାହେଲେ ବିନଷ୍ଟ ହୋଇଥିବା ସମ୍ଭାରର ମୂଲ୍ୟ ବାବଦ ୧,୫୦୦ ଟଙ୍କା ମୋଟ ଲାଭ ଓ କ୍ଷତି ହିସାବରେ ଅନ୍ତର୍ଭୁକ୍ତ ହେଲା କାହିଁକି ? ଏହାର ଉତ୍ତର ସ୍ୱରୂପ ଏତିକି କହିଲେ ଯଥେଷ୍ଟ ହେବ ଯେ ଯଦି ଏହି ସମ୍ଭାର ନଷ୍ଟ ହୋଇ ନ ଥାଆନ୍ତା ତା'ହେଲେ ତାହା ହୁଏତ ବିକ୍ରୟ ପରିମାଣରେ ଅନ୍ତର୍ଭୁକ୍ତ ହୋଇ ଥାଆନ୍ତା, ନଚେତ୍ ଅନ୍ତ୍ୟ ସମ୍ଭାରରେ ଅନ୍ତର୍ଭୁକ୍ତ ହୋଇ ଥାଆନ୍ତା । ଦ୍ୱିତୀୟତଃ ଏହି ସମ୍ଭାର ସକାଶେ ପୂର୍ବରୁ ଅଗ୍ନିବୀମା ପଲିସି କରା ଯାଇ ଥିବାରୁ ସମ୍ଭାରର କ୍ଷତି ଅଗ୍ନିବୀମା କମ୍ପାନୀ ପୂରଣ କରିବେ, ଏବଂ ଏହି କ୍ଷେତ୍ରରେ ବୀମା କମ୍ପାନୀ ଏହି କ୍ଷତି ସ୍ୱୀକାର କରିଛନ୍ତି । ତେଣୁ ୧,୫୦୦ ଟଙ୍କା ମୋଟ ଲାଭ ଓ କ୍ଷତି ହିସାବର ଦାତା ପାର୍ଶ୍ୱରେ ଓ ବୀମା କମ୍ପାନୀଙ୍କଠାରୁ ପ୍ରାପ୍ୟ ସ୍ୱରୂପ ଉଦ୍ବୃତ୍ତ ପତ୍ରରେ ଅନ୍ତର୍ଭୁକ୍ତ ହୋଇଛି ।

(ଘ) ଯେହେତୁ ୫,୦୦୦ ଟଙ୍କାର ଯନ୍ତ୍ର ଶ୍ରୀ ବାଜାଜଙ୍କଠାରୁ ୨୫–୧୨–୧୯୭୨ ତାରିଖରେ କ୍ରୟ କରାଯାଇଛି, ତେଣୁ ଏଥିରୁ ମୂଲ୍ୟ ହ୍ରାସ ବାଦ୍ ଦିଆଯାଇ ନାହିଁ ।

## ଦୃଷ୍ଟାନ୍ତ ( ୨୫ )

ନିମ୍ନଲିଖିତ ବାକି ମେଳ ଶ୍ରୀ ହରେନ୍ଦ୍ର ମିଶ୍ରଙ୍କର ହିସାବ ଖାତାରୁ ୩୧-୧୨-୧୯୭୨ ତାରିଖରେ ପ୍ରସ୍ତୁତ ହୋଇଛି । ତହିଁରୁ ନିମ୍ନଲିଖିତ ସମାଯୋଜନ ପ୍ରତି ଦୃଷ୍ଟି ରଖି ୩୧-୧୨-୧୯୭୨ ତାରିଖରେ ଶେଷ ହେଉଥିବା ବର୍ଷର ମୋଟ ଓ ନିଟ୍ ଲାଭ ଓ କ୍ଷତି ହିସାବ ଓ ସେହି ତାରିଖର ଉଦ୍ବୃତ୍ତ ପତ୍ର ପ୍ରସ୍ତୁତ କର ।

| ବାକି ମେଳ | | | ଦାୟୀ | ଦାତା |
|---|---|---|---|---|
| | | | ଟଙ୍କା | ଟଙ୍କା |
| କ୍ରୟ | — | — | ୬୦,୦୦୦ | |
| ବିକ୍ରୟ | — | — | | ୧,୧୦,୬୦୦ |
| ଅନ୍ତର୍ମୁଖୀ ଫେରସ୍ତ | — | — | ୫,୨୦୦ | |
| ବହିର୍ମୁଖୀ ଫେରସ୍ତ | — | — | | ୬,୪୦୦ |
| ଅନିଶ୍ଚିତ ଋଣର ସଞ୍ଚିତ | — | — | | ୪,୦୦୦ |
| ବିବିଧ ଖାତକ | — | — | ୩୦,୦୦୦ | |
| ବିବିଧ ମହାଜନ | — | — | | ୧୫,୦୦୦ |
| ଦେୟ ହୁଣ୍ଡି | — | — | | ୩,୫୦୦ |
| ଆଦ୍ୟ ସମ୍ଭାର | — | — | ୧୫,୩୦୦ | |
| ମଜୁରି | — | — | ୧,୫୦୦ | |
| ବେତନ | — | — | ୧୨,୦୦୦ | |
| ଆସ୍‌ବାବ୍ ପତ୍ର (ବର୍ଷ ଆରମ୍ଭରେ) | — | — | ୮,୫୦୦ | |
| ଆସ୍‌ବାବ୍ ପତ୍ର ୩୧-୧୨-୧୯୬୨ ରେ କ୍ରୀତ | | — | ୨,୫୦୦ | |
| ଦୋକାନର ପରିବର୍ଦ୍ଧନ | — | — | ୧୫,୦୦୦ | |
| ଡାକ, ତାର, ମନୋହାରୀ ଓ ବୀମା | — | — | ୫,୪୦୦ | |
| ବ୍ୟବସାୟିକ ବ୍ୟୟ | — | — | ୩,୧୦୦ | |
| ଉତ୍ତାପ ଓ ଆଲୋକ | — | — | ୨,୮୦୦ | |
| ଘରଭଡ଼ା ଓ ଟିକସ | — | — | ୬,୨୦୦ | |
| ଅନାଦେୟ ଋଣ | — | — | ୬୦୦ | |
| ଗଗନ ବିହାରୀଙ୍କଠାରୁ ଅଣାଯାଇଥିବା ଋଣ ୧-୯-୬୨ ସୁଧର ହାର ୬% | | — | | ୮,୦୦୦ |
| ପ୍ରାପ୍ୟ ହୁଣ୍ଡି | — | — | ୪,୮୦୦ | |
| ନଗଦ ତହବିଲ | — | — | ୨,୭୬୫ | |
| ବ୍ୟାଙ୍କରେ ଗଚ୍ଛିତ | — | — | ୧୧,୬୦୦ | |
| ମୂଳଧନ ହିସାବ | — | — | | ୪୪,୦୦୦ |
| ଉଠାଣ | — | — | ୬,୫୦୦ | |
| ଅଗ୍ରିମ ପ୍ରଦତ୍ତ ବୀମାର ପ୍ରିମିୟମ | — | — | ୨୨୫ | |
| ପ୍ରଦେୟ ମଜୁରି | — | — | | ୪୦୦ |
| ଦେୟ ଘରଭଡ଼ା (ଦିଆଯାଇ ନାହିଁ) | | — | | ୧,୮୦୦ |
| | | | ୧,୯୩,୬୦୦ | ୧,୯୩,୬୦୦ |

ନିମ୍ନଲିଖିତ ବିଷୟଗୁଡ଼ିକର ସମାଯୋଜନ ଆବଶ୍ୟକ :

୧। ୩୧-୧୨-୧୯୭୨ ତାରିଖରେ ଅନ୍ତିମ ସମ୍ଭାରର ମୂଲ୍ୟ ୨୦,୫୦୦ ଟଙ୍କା ।

୨। ଆସବାବ୍ ପତ୍ରରୁ ଶତକଡ଼ା ୧୦ ହାରରେ ମୂଲ୍ୟ ହ୍ରାସ ବାଦ୍ ହେବ ।

୩। ବିବିଧ ଖାତକ ପରିମାଣ ମଧ୍ୟରେ ବ୍ୟବସାୟର ମାଲିକ ନେଇଥିବା ୫୦୦ ଟଙ୍କାର ମାଲ ଏଥିରେ ଅନ୍ତର୍ଭୁକ୍ତ ରହିଛି । ଜଣେ ଖାତକଙ୍କଠାରୁ ୫୦୦ ଟଙ୍କା ପ୍ରାପ୍ୟଥିଲା ମାତ୍ର ସେ ଦେବାଳିଆ ହେବାର ସମ୍ବାଦ ମିଳିଛି ।

୪। ବିବିଧ ଖାତକ ପରିମାଣର ଶତକଡ଼ା ୫ ସଦାଶେ ଅନିଶ୍ଚିତ ଋଣର ସଞ୍ଚିତ ଗଢ଼ାଯିବ ।

୫। ପରିବର୍ତ୍ତନ ବ୍ୟୟର ଏକ ତୃତୀୟାଂଶ ବାଦ୍ ଦିଆଯିବ ।

୬। ଅଗ୍ନିକାଣ୍ଡ ହେତୁ ୨,୦୦୦ ଟଙ୍କାର ସମ୍ଭାର ନଷ୍ଟ ହୋଇଛି ମାତ୍ର ବୀମା କମ୍ପାନୀ ୧,୫୦୦ ଟଙ୍କାର କ୍ଷତି ପୂରଣ କରିବାକୁ ସ୍ୱୀକୃତ ହୋଇଛନ୍ତି ।

୭। ପ୍ରାପ୍ୟ ହୁଣ୍ଡି ମଧ୍ୟରେ ୨,୫୦୦ ଟଙ୍କାର ଗୋଟିଏ ହୁଣ୍ଡି ଅମାନ୍ୟକୃତ ହୋଇଛି ।

## ସମାଧାନ :

ଶ୍ରୀ ହରେନ୍ଦ୍ର ମିଶ୍ରଙ୍କର
୧୯୭୨ ସାଲ ଡିସେମ୍ବର ୩୧ ତାରିଖରେ ଶେଷ ହେଉଥିବା ବର୍ଷର
ମୋଟ ଓ ନିଟ୍ ଲାଭ ଓ କ୍ଷତି ହିସାବ

ଦାୟୀ — ଦାତା

| ଦାୟୀ | | ଟଙ୍କା | ଦାତା | | ଟଙ୍କା |
|---|---|---|---|---|---|
| ସମ୍ଭାର ବାବଦ | | ୧୫,୩୦୦ | ବିକ୍ରୟ ବାବଦ | ୧,୧୦,୬୦୦ | |
| କ୍ରୟ ବାବଦ | ୬୦,୦୦୦ | | ବାଦ୍ : ଫେରସ୍ତ | ୫,୨୦୦ | ୧,୦୫,୪୦୦ |
| ବାଦ୍ : ଫେରସ୍ତ | ୬,୪୦୦ | ୫୩,୬୦୦ | ଅନ୍ତିମ ସମ୍ଭାର ବାବଦ | | ୨୦,୫୦୦ |
| ମଜୁରି ବାବଦ | | ୧,୫୦୦ | ଅଗ୍ନିକାଣ୍ଡ ଯୋଗୁଁ ନଷ୍ଟ ହୋଇଥିବା ସମ୍ଭାର ବାବଦ | | ୨,୦୦୦ |
| ମୋଟ ଲାଭ ବାବଦ— ନିଟ୍ ଲାଭ ଓ କ୍ଷତି ହିସାବକୁ ସ୍ଥାନାନ୍ତରିତ କରାଗଲା | | ୫୭,୫୦୦ | | | |
| | | ୧,୨୭,୯୦୦ | | | ୧,୨୭,୯୦୦ |

| ଦାୟୀ | ଟଙ୍କା | ଦାତା | ଟଙ୍କା |
|---|---|---|---|
| ବେତନ ବାବଦ | ୧୨,୦୦୦ | ମୋଟ ଲାଭ ବାବଦ—ମୋଟ ଲାଭ ଓ କ୍ଷତି ହିସାବରୁ ସ୍ଥାନାନ୍ତରିତ | ୫୭,୫୦୦ |
| ଡାକ, ତାର, ମନୋହରୀ ଓ ବୀମା ବାବଦ | ୫,୪୦୦ | ଅନିଶ୍ଚିତ ଋଣର ସଞ୍ଚିତି ବାବଦ—ପୂର୍ବବାକି ୪,୦୦୦ | |
| ଘରଭଡ଼ା ଓ ଟିକସ୍ ବାବଦ | ୬,୨୦୦ | ବାଦ୍ : ଅନାଦେୟ ଋଣ ୧,୧୦୦ | |
| ବ୍ୟବସାୟିକ ବ୍ୟୟ ବାବଦ | ୩,୧୦୦ | ୨,୯୦୦ | |
| ହିଗ୍ରପ ଓ ଆଲୋକ ବାବଦ | ୨,୮୦୦ | ବଦ୍ : ଆବଶ୍ୟକ ସଞ୍ଚିତି ୧,୫୭୫ | ୧,୩୨୫ |
| ମୂଲ୍ୟ ହ୍ରାସ : ଆସ୍‌ବାବ୍ ୮,୫୦୦ ର ୧୦% | ୮୫୦ | | |
| ଦୋକାନର ପରିବର୍ଦ୍ଧନ | ୫,୦୦୦ | | |
| ଗଗନ ବେହେରାଙ୍କ ଋଣର ଦେୟ ସୁଧ | ୧୬୦ | | |
| ଅଗ୍ନିକାଣ୍ଡ ହେତୁ କ୍ଷତି | ୫୦୦ | | |
| ନିଟ୍ ଲାଭ ବାବଦ—ମୂଳଧନ ହିସାବକୁ ସ୍ଥାନାନ୍ତରିତ କରାଗଲା | ୨୨,୮୧୫ | | |
| | ୫୮,୮୨୫ | | ୫୮,୮୨୫ |

### ଶ୍ରୀ ହରେନ୍ଦ୍ର ମିଶ୍ରଙ୍କର
### ୧୯୭୨ ସାଲ ଡିସେମ୍ବର ୩୧ ତାରିଖର ଉଦ୍ବୃତ୍ତ ପତ୍ର

| ଦେଣା | ଟଙ୍କା | ପରିସମ୍ପତ୍ତି | ଟଙ୍କା |
|---|---|---|---|
| ବିବିଧ ମହାଜନ | ୧୫,୦୦୦ | ନଗଦ ତହବିଲ | ୨,୩୭୫ |
| ଗଗନ ବିହାରୀଙ୍କ ଋଣ ହିସାବ | | ବ୍ୟାଙ୍କରେ ଗଚ୍ଛିତ ତହବିଲ | ୧୧,୬୦୦ |
| ବାକି ୮,୦୦୦ | | ପ୍ରାପ୍ୟ ହୁଣ୍ଡି ୪,୮୦୦ | |
| ଯୁକ୍ତ : ଦେୟ ସୁଧ ୧୬୦ | ୮,୧୬୦ | ବାଦ୍ : ଅମାନ୍ୟକୃତ ୨,୫୦୦ | ୨,[illegible]୦୦ |
| ଦେୟ ହୁଣ୍ଡି | ୩,୫୦୦ | ବିବିଧ ଖାତକ ୩୧,୫୦୦ | |
| ପ୍ରଦେୟ ମଜୁରି | ୪୦୦ | ବାଦ୍ : ଅନିଶ୍ଚିତ ଋଣର | |
| ଦେୟ ଘରଭଡ଼ା | ୧,୮୦୦ | ସଞ୍ଚିତ ୧,୫୭୫ | ୨୯,୯୨୫ |
| ମୂଳଧନ : ବାକି ୪୪,୦୦୦ | | ଅନ୍ତ୍ୟ ସମ୍ଭାର | ୨୦,୫୦୦ |
| ଯୁକ୍ତ : ଲାଭ ୨୨,୮୧୫ | | ବୀମା କମ୍ପାନୀଠାରୁ ପ୍ରାପ୍ୟ | ୧,୫୦୦ |
| ୬୬,୮୧୫ | | ଆସବାବ୍ ୮,୫୦୦ | |
| ବାଦ୍ : ଉଠାଣ : | | ୩୧-୧୨-୭୨ ରେ | |
| ନଗଦ ୬,୫୦୦ | | କ୍ରୀତ ୨,୫୦୦ | |
| ମାଲ ୫୦୦ ୭,୦୦୦ | ୫୯,୮୧୫ | ୧୧,୦୦୦ | |
| | | ବାଦ୍ : ମୂଲ୍ୟ ହ୍ରାସ ୮୫୦ | ୧୦,୦୫୦ |
| | | ଅଗ୍ରିମ ପ୍ରଦତ୍ତ ପ୍ରିମିୟମ୍ | ୬୨୫ |
| | | ଦୋକାନର | |
| | | ପରିବର୍ତ୍ତନ ୧୫,୦୦୦ | |
| | | ବାଦ୍ ହିସାବଭୁକ୍ତ ୫,୦୦୦ | ୧୦,୦୦୦ |
| | ୮୮,୬୭୫ | | ୮୮,୬୭୫ |

## ବିଶେଷ ଦ୍ରଷ୍ଟବ୍ୟ :

(୧) ଅଗ୍ନିକାଣ୍ଡ ଯୋଗୁଁ ବିନଷ୍ଟ ହୋଇଥିବା ସମ୍ଭାରର ମୂଲ୍ୟ ମୋଟ ଲାଭ ଓ କ୍ଷତି ହିସାବର ଦାତା ପାର୍ଶ୍ୱରେ ଅନ୍ତର୍ଭୁକ୍ତ ହେବ । ଏଥି ମଧ୍ୟରୁ ବୀମା କମ୍ପାନୀ ୧,୫୦୦ ଟଙ୍କାର କ୍ଷତି ସ୍ୱୀକାର କରିଥିବାରୁ ସେହି ଅର୍ଥର ପରିମାଣ ଉଦ୍ବୃତ୍ତ ପତ୍ରର ପରିସମ୍ପତ୍ତି ପାର୍ଶ୍ୱରେ ଅନ୍ତର୍ଭୁକ୍ତ କରାଯାଇଛି । ଯେଉଁ କ୍ଷତି ବ୍ୟବସାୟୀଙ୍କୁ ସହିବାକୁ ପଡ଼ିବ ସେହି ୫୦୦ ଟଙ୍କା ନିଟ୍ ଲାଭ ଓ କ୍ଷତି ହିସାବର ଦାୟୀ ପାର୍ଶ୍ୱକୁ ନିଆ ଯାଇଛି ।

(୨) ଗଗନ ବହାଘ୍ଘ ଦେଇଥିବା ଋଣ ବାବଦ ଶତକଡ଼ା ୬ ହାରରେ ୪ ମାସର ସୁଧ ଦେୟ ଅଛୁ, ତେଣୁ ତାହା ଉଦ୍‌ବୃତ୍ତ ପତ୍ରର ଦେଣା ପାର୍ଶ୍ୱରେ ଅନ୍ତର୍ଭୁକ୍ତ ହୋଇଛୁ ।

(୩) ବିବିଧ ଖାତକଙ୍କର ମୋଟ ପରିମାଣ ନିମ୍ନରେ ଦିଆଗଲା ।

| | | ଟଙ୍କା |
|---|---|---|
| ବାଙ୍କି ମେଳର ସଂଖ୍ୟା | | ୩୦,୦୦୦ |
| ବାଦ୍ : ଉଠାଣ ହିସାବକୁ ନିଆଗଲା | ୫୦୦ | |
| ଅନାଦେୟ ବୋଲି କାଟି ଦିଆଗଲା | ୫୦୦ | ୧,୦୦୦ |
| | | ୨୯,୦୦୦ |
| ଯୁକ୍ତ : ଅମାନ୍ୟକୃତ ହୁଣ୍ଡି ବାବଦ | | ୨,୫୦୦ |
| ବିବିଧ ଖାତକଙ୍କର ମୋଟ ପରିମାଣ | | ୩୧,୫୦୦ |

(୪) ଅନିଶ୍ଚିତ ଋଣରେ ସଞ୍ଚିତ :

| | ଟଙ୍କା |
|---|---|
| ବାଙ୍କି ମେଳରେ ପ୍ରଦତ୍ତ ସଞ୍ଚିତର ପରିମାଣ | ୪,୦୦୦ |
| ବାଦ୍ . ଅନାଦେୟ ଋଣ (୬୦୦+୫୦୦) | ୧,୧୦୦ |
| | ୨,୯୦୦ |
| ବାଦ୍ . ଆବଶ୍ୟକ ସଞ୍ଚିତ ୩୧,୫୦୦ର ୫% | ୧,୫୭୫ |
| ଅନାବଶ୍ୟକ ସଞ୍ଚିତ ନିଟ୍ ଲାଭ ଓ କ୍ଷତି ହିସାବର ଦାତା ପାର୍ଶ୍ୱକୁ ନିଆଗଲା | ୧,୩୨୫ |

(୫) ୩୧-୧୨-୭୨ ତାରିଖରେ କୀତ ଆସ୍‌ବାବ୍‌ର ପରିମାଣରୁ ମୂଲ୍ୟ ହ୍ରାସ ବାବଦ କିଛୁ ବାଦ୍ ଦିଆଯାଇ ନାହିଁ ।

(୬) କେତେଗୁଡ଼ିଏ ବିଷୟ ସାଧାରଣତଃ ସମାଯୋଜନ ତାଲିକାରେ ଥାଏ, ଯେପରି ବକେୟା ମଜୁରି ବା ବେତନ, ବକେୟା ଘରଭଡ଼ା, ଅଗ୍ରିମ ପ୍ରଦତ୍ତ ପ୍ରିମିୟମ ପ୍ରଭୃତି । ମାତ୍ର ତାହା ପରିବର୍ତ୍ତେ ଯଦି ଏହି ବିଷୟଗୁଡ଼ିକ ବାଙ୍କି ମେଳରେ ଅନ୍ତର୍ଭୁକ୍ତ ହୋଇଥାଏ ତାହେଲେ ବୁଝିବାକୁ ହେବ ଯେ ଏଗୁଡ଼ିକୁ ହିସାବ ଭୁକ୍ତ କରିବା ନିମନ୍ତେ ପୂର୍ବରୁ ରୋଜନାମା କରାଯାଇଛୁ, ସୁତରାଂ ସେଗୁଡ଼ିକ ସକାଶେ ପୁନର୍ବାର ରୋଜନାମା ପ୍ରସ୍ତୁତ କରିବାର ଆବଶ୍ୟକତା

ନାହିଁ । ତେଣୁ ସାଧାରଣ ମତ ଅନୁଯାୟୀ ବାକି ମେଳରେ ଅନ୍ତର୍ଭୁକ୍ତ ଅନ୍ୟାନ୍ୟ ବାକି ଗୁଡ଼ିକ ସଦୃଶ ଏଗୁଡ଼ିକ ମଧ୍ୟ ଚୂଡ଼ାନ୍ତ ହିସାବର କୌଣସି ଗୋଟିଏ ପାର୍ଶ୍ୱରେ ଅଥବା କେବଳ ଉଦ୍‌ବୃତ୍ତ ପତ୍ରରେ ଅନ୍ତର୍ଭୁକ୍ତ ହେବ । ଯଦି ଏହାର ବାକି ଦାତା ଶ୍ରେଣୀର ହୁଏ ତାହେଲେ ତାହା ଉଦ୍‌ବୃତ୍ତ ପତ୍ରର ଦେଣା ପାର୍ଶ୍ୱରେ ଓ ଯଦି ଦାୟୀ ଶ୍ରେଣୀର ହୁଏ ତାହେଲେ ପରିସମ୍ପତ୍ତି ପାର୍ଶ୍ୱରେ ପ୍ରକାଶିତ ହେବ ।

## ଦୃଷ୍ଟାନ୍ତ ( ୨୭ )

ରାମ ଦୟାଲଙ୍କ ହିସାବ ଖାତାରୁ ଉଦ୍ଧୃତ ହୋଇଥିବା ନିମ୍ନଲିଖିତ ବାକି ମେଳରୁ ତାଙ୍କର ୩୧-୧୨-୧୯୭୨ ତାରିଖରେ ଶେଷ ହେଉଥିବା ବର୍ଷର ମୋଟ ଓ ନିଟ୍ ଲାଭ ଓ କ୍ଷତି ହିସାବ ଏବଂ ସେହି ତାରିଖର ଉଦ୍‌ବୃତ୍ତ ପତ୍ର ପ୍ରସ୍ତୁତ କର ।

ଚୂଡ଼ାନ୍ତ ହିସାବ ପ୍ରସ୍ତୁତ କରିବା ପୂର୍ବରୁ ନିମ୍ନଲିଖିତ ବିଷୟ ଗୁଡ଼ିକର ସମାଯୋଜନ ଆବଶ୍ୟକ ।

(୧) ଜମି ଓ ଇମାରତର ମୂଲ୍ୟରୁ ୨½% ହାରରେ, ଯନ୍ତ୍ରର ମୂଲ୍ୟରୁ ୧୦% ହାରରେ ଓ ଆସ୍‌ବାବ୍ ପତ୍ରର ମୂଲ୍ୟରୁ ୧୦% ହାରରେ ମୂଲ୍ୟ ହ୍ରାସ ବାଦ୍ ଦିଅ ।

(୨) ଅନାଦେୟ ଋଣ ନିମନ୍ତେ ବିବିଧ ଖାତକ ପରିମାଣରେ ଶତକଡ଼ା ୫ ହାରରେ ସଞ୍ଚିତ ଗଢ଼ ।

(୩) ଆଗାମୀ ବର୍ଷର ହିସାବକୁ ନିଆଯିବ— ଟଙ୍କା

| | | |
|---|---|---|
| ଅଗ୍ନି ବୀମାର ପ୍ରିମିୟମ— | — | ୨୦୦ |
| ଶୁଳ୍କ ଓ ଟିକସ— | — | ୩୫୦ |
| ଶିକ୍ଷାର୍ଥୀଙ୍କଠାରୁ ପ୍ରାପ୍ତ ପ୍ରିମିୟମ | — | ୪୦୦ |

(୪) ବ୍ୟବସାୟିକ ବ୍ୟୟ ବାବଦ ୨୫୦ ଟଙ୍କା ବକେୟା ଅଛି ।

(୫) ମଜୁରି ହିସାବର ବାକିରେ ନୂତନ ଯନ୍ତ୍ର ସ୍ଥାପନ ବାବଦ ୪୦୦ ଟଙ୍କାର ମଜୁରି ଅନ୍ତର୍ଭୁକ୍ତ ଅଛି । ଏହା ୧-୧-୧୯୭୨ ରେ ଘଟିଥିଲା ।

(୬) ମୂଳଧନ ଉପରେ ଶତକଡ଼ା ୫ ହାରରେ ସୁଧ ଦିଆଯିବ, ମାତ୍ର ଉଠାଣ ଉପରେ ସୁଧ କଷାଯିବ ନାହିଁ ।

| ବାଙ୍କି ମେଳ | ଦାୟୀ | ଦାତା |
|---|---|---|
| | ଟଙ୍କା | ଟଙ୍କା |
| ଜମି ଓ ଇମାରତ | ୨୦,୦୦୦ | |
| ଯନ୍ତ୍ର | ୧୮,୫୦୦ | |
| ଆସ୍‌ବାବ୍ ପତ୍ର | ୯,୪୦୦ | |
| ବିବିଧ ଖାତକ | ୨୫,୭୦୦ | |
| ଅନାଦେୟ ଋଣର ସଞ୍ଚିତ | | ୧,୦୦୦ |
| ଅଗ୍ନିବୀମାର ପ୍ରିମିୟାମ | ୫୦୦ | |
| ଶୁଳ୍କ ଓ ଟିକସ | ୧,୪୫୦ | |
| ଶିକ୍ଷାର୍ଥୀଙ୍କଠାରୁ ପ୍ରାପ୍ତ ପ୍ରିମିୟାମ | | ୧,୨୦୦ |
| ବ୍ୟବସାୟିକ ବ୍ୟୟ | ୧,୨୫୦ | |
| ମଜୁରି (ଉତ୍ପାଦନକାରୀ) | ୧,୭୦୦ | |
| ମୂଳଧନ ହିସାବ | | ୫୦,୦୦୦ |
| ଉଠାଣ ହିସାବ | ୭,୦୦୦ | |
| କ୍ରୟ (ସମାଯୋଜିତ) | ୫୫,୫୦୦ | |
| ବିକ୍ରୟ | | ୧,୩୦,୦୦୦ |
| ଅନ୍ତର୍ମୁଖୀ ଗାଡ଼ିଭଡ଼ା | ୨,୩୦୦ | |
| ଅନ୍ତ୍ୟ ସମ୍ଭାର (୩୧-୧୨-୭୨) | ୧୨,୫୦୦ | |
| ବେତନ | ୧୨,୦୦୦ | |
| ଅନ୍ତର୍ମୁଖୀ ଫେରସ୍ତ | ୫,୩୦୦ | |
| ବ୍ୟାଙ୍କର କମିଶନ୍ ପ୍ରଭୃତି | ୪୦୦ | |
| କୋଇଲା, ଗ୍ୟାସ୍ ଓ ଜଳ | ୧,୨୦୦ | |
| ଅନାଦେୟ ଋଣ | ୪୦୦ | |
| ପ୍ରାପ୍ୟ ହୁଣ୍ଡି | ୬,୮୦୦ | |
| ନଗଦ ତହବିଲ | ୧,୭୦୦ | |
| ବ୍ୟାଙ୍କରେ ଗଚ୍ଛିତ | ୧୦,୫୦୦ | |
| ବିବିଧ ମହାଜନ | | ୧୧,୩୦୦ |
| ବଟା (ବାଙ୍କି) | | ୪୦୦ |
| | ୧,୯୩,୯୦୦ | ୧,୯୩,୯୦୦ |

ରାମ ଦାସ୍ଙ୍କର
୧୯୭୨ ସାଲ ଡିସେମ୍ବର ୩୧ ତାରିଖରେ ଶେଷ ହେଉଥିବା ବର୍ଷର

ଦାୟୀ ମୋଟ ଓ ନେଟ୍ ଲାଭ ଓ କ୍ଷତି ହିସାବ ଦାତା

| | | ଟଙ୍କା | | | ଟଙ୍କା |
|---|---|---|---|---|---|
| କ୍ରୟ ବାବଦ (ସମାଯୋଜିତ) | | ୫୫,୫୦୦ | ବିକ୍ରୟ ବାବଦ | ୧,୩୦,୦୦୦ | |
| ଅନ୍ତର୍ମୁଖୀ ଗାଡ଼ି ଭଡ଼ା ବାବଦ | | ୨,୩୦୦ | ବାଦ୍: ଫେରସ୍ତ | ୫,୩୦୦ | ୧,୨୪,୭୦୦ |
| ମଜୁରି ବାବଦ | ୧,୭୦୦ | | | | |
| ବାଦ୍: ଘର ହିସାବକୁ ସ୍ଥାନାନ୍ତରିତ | ୪୦୦ | ୧,୩୦୦ | | | |
| କୋଇଲା, ଗ୍ୟାସ ଓ ଜଳ ବାବଦ | | ୧,୨୦୦ | | | |
| ମୋଟ ଲାଭ ବାବଦ— ନେଟ୍ ଲାଭ ଓ କ୍ଷତି ହିସାବକୁ ସ୍ଥାନାନ୍ତରିତ | | ୬୪,୪୦୦ | | | |
| | | ୧,୨୪,୭୦୦ | | | ୧,୨୪,୭୦୦ |
| | | | ମୋଟ ଲାଭ ବାବଦ— ମୋଟ ଲାଭ ଓ କ୍ଷତି ହିସାବରୁ ସ୍ଥାନାନ୍ତରିତ | | ୬୪,୪୦୦ |
| | | | ବଟା ବାବଦ | | ୪୦୦ |
| ବେତନ ବାବଦ | | ୧୨,୦୦୦ | ଶିକ୍ଷାର୍ଥୀଙ୍କଠାରୁ ପ୍ରାପ୍ତ ପ୍ରିମିୟମ ବାବଦ | ୧,୨୦୦ | |
| ବ୍ୟବସାୟିକ ବ୍ୟୟ ବାବଦ | ୧,୨୫୦ | | ବାଦ: ଅଗ୍ରିମ ପ୍ରାପ୍ତ | ୪୦୦ | ୮୦୦ |
| ଯୁକ୍ତ: ବକେୟା | ୨୫ | ୧,୫୦୦ | | | |
| ଶୁଳ୍କ ଓ ଟିକସ ବାବଦ | ୧,୪୫୦ | | | | |
| ବାଦ୍: ଅଗ୍ରିମ ପ୍ରଦତ୍ତ | ୩୫୦ | ୧,୧୦୦ | | | |
| ଅଗ୍ନିବୀମା ପ୍ରିମିୟମ ବାବଦ | ୫୦୦ | | | | |
| ବାଦ: ଅଗ୍ରିମ ପ୍ରଦତ୍ତ | ୨୦୦ | ୩୦୦ | | | |

ଦାୟୀ ମୋଟ ଓ ନିଟ୍ ଲାଭ ଓ କ୍ଷତି ହିସାବ ଦାତା

| | | ଟଙ୍କା | | ଟଙ୍କା |
|---|---|---|---|---|
| ବ୍ୟାଙ୍କ୍ କମିଶନ ବାବଦ | | ୪୦୦ | | |
| ଅନିଶ୍ଚିତ ଋଣର ସଞ୍ଚିତ ବାବଦ— | | | | |
| ଆବଶ୍ୟକ | ୧,୨୮୦ | | | |
| ଯୁକ୍ତ : ଅନାଦେୟ ଋଣ | ୪୦୦ | | | |
| | ୧,୬୮୦ | | | |
| ବାଦ୍ : ଉପସ୍ଥିତ ସଞ୍ଚିତ | ୧,୦୦୦ | ୬୮୦ | | |
| ମୂଲ୍ୟ ହ୍ରାସ ବାବଦ : | | | | |
| ଜମି ଓ ଇମାରତ୍ | ୫୦୦ | | | |
| ଯନ୍ତ୍ର | ୧,୮୯୦ | | | |
| ଆସ୍‌ବାବ୍ ପତ୍ର | ୯୪୦ | ୩,୩୩୦ | | |
| ମୂଳଧନର ସୁଧ ବାବଦ | | ୨,୫୦୦ | | |
| ନିଟ୍ ଲାଭ ବାବଦ— | | | | |
| ମୂଳଧନ ହିସାବକୁ ସ୍ଥାନାନ୍ତରିତ | | ୪୩,୨୯୦ | | |
| | | ୬୫,୬୦୦ | | ୬୫,୬୦୦ |

ଶ୍ରୀ ରାମ ଦୟାଳଙ୍କର
୧୯୭୨ ସାଲ ଡିସେମ୍ବର ୩୧ ତାରିଖର
ଉଦ୍ବର୍ତ୍ତ ପତ୍ର

| ଦେଣା | | ଟଙ୍କା | ପରିସମ୍ପତ୍ତି | | ଟଙ୍କା |
|---|---|---|---|---|---|
| ବିବିଧ ମହାଜନ | | ୧୧,୩୦୦ | ନଗଦ ତହବିଲ | | ୧,୬୦୦ |
| ବକେୟା ବ୍ୟୟ | | ୨୫୦ | ବ୍ୟାଙ୍କରେ ଗଚ୍ଛିତ ତହବିଲ | | ୧୦,୫୦୦ |
| ଅଗ୍ରିମ ପ୍ରାପ୍ତ ପ୍ରିମିୟମ— ଶିକ୍ଷାର୍ଥୀଙ୍କଠାରୁ | | ୪୦୦ | ବିବିଧ ଖାତକ | ୨୫,୬୦୦ | |
| ମୂଳଧନ : | | | ବାଦ୍: ଅନିଶ୍ଚିତ ଋଣର ସଞ୍ଚିତ | ୧,୨୮୦ | ୨୪,୩୨୦ |
| ପୂର୍ବବାକି | ୫୦,୦୦୦ | | ପ୍ରାପ୍ୟ ହୁଣ୍ଡି | | ୬,୮୦୦ |
| ଯୁକ୍ତ : ସୁଧ | ୨,୫୦୦ | | ଅନ୍ୟ ସମ୍ଭାର | | ୧୨,୫୦୦ |
| ଯୁକ୍ତ: ନିଟ୍ ଲାଭ | ୪୩,୭୯୦ | | ଜମି ଓ ଇମାରତ | ୨୦,୦୦୦ | |
| | ୯୬,୨୯୦ | | ବାଦ୍ . ମୂଲ୍ୟ ହ୍ରାସ | ୫୦୦ | ୧୯,୫୦୦ |
| ବାଦ୍: ଉଠାଣ | ୭,୦୦୦ | ୮୯,୨୯୦ | ଯନ୍ତ୍ର | ୧୮,୫୦୦ | |
| | | | ଯୁକ୍ତ : ଯନ୍ତ୍ର ସ୍ଥାପନ ବ୍ୟୟ | ୪୦୦ | |
| | | | | ୧୮,୯୦୦ | |
| | | | ବାଦ୍: ମୂଲ୍ୟହ୍ରାସ | ୧,୮୯୦ | ୧୭,୦୧୦ |
| | | | ଆସବାବ୍ ପତ୍ର | ୯,୪୦୦ | |
| | | | ବାଦ୍: ମୂଲ୍ୟହ୍ରାସ | ୯୪୦ | ୮,୪୬୦ |
| | | | ଅଗ୍ରିମ ପ୍ରଦତ୍ତ ବ୍ୟୟ: | | |
| | | | ବୀମା ପ୍ରିମିୟମ | ୨୦୦ | |
| | | | ଶୁଳ୍କ ଓ ଟିକସ | ୩୫୦ | ୫୫୦ |
| | | ୧,୦୧,୨୪୦ | | | ୧,୦୧,୨୪୦ |

**ବିଶେଷ ଦ୍ରଷ୍ଟବ୍ୟ :—**

(କ) ବାକି ମେଳରେ ଅନ୍ୟ ସମ୍ଭାର, ଯାହା କି ସାଧାରଣତଃ ସମାଯୋଜନ ତାଲିକାରେ ଅନ୍ତର୍ଭୁକ୍ତ ହୁଏ, ତାହା ଅନ୍ତର୍ଭୁକ୍ତ ହୋଇଛି । ଏଥିରୁ ବୁଝିବାକୁ ହେବ ଯେ ଅନ୍ୟ ସମ୍ଭାର ସମ୍ପୃକ୍ତ ରୋଜନାମା ପୂର୍ବରୁ ସମ୍ପାଦିତ ହୋଇଛି ଏବଂ ବାକି ମେଳରେ ଜମା (ସମାଯୋଜିତ) ଲେଖା ହୋଇଥିବାରୁ ଏହି ଅନୁମାନ

ସମର୍ଥିତ ହେଉଛି । ଏହି ସନ୍ଧାନ୍ତ ରୋଜନାମା ନିମ୍ନ ପ୍ରକାର ହୋଇ ପାରଥାଏ, ଯଥା—

| | | |
|---|---|---|
| ଅନ୍ୟ ସମ୍ପାର ହିସାବ | ଦାୟୀ | ୧୬,୫୦୦ |
| ଜମି ହିସାବ ବାବଦ | | ୧୬,୫୦୦ |

ଅନ୍ୟ ସମ୍ପାର ସାଧାରଣତଃ ମୋଟ ଲଭ ଓ କ୍ଷତି ହିସାବର ଦାତା ପାର୍ଶ୍ୱକୁ ନିଆଯାଏ, ଏଠାରେ ବାକି ମେଳରେ 'ମୋଟ ଲଭ ଓ କ୍ଷତି ହିସାବ'ର ବାକି ବୋଲି କୌଣସି ବିଷୟ ନ ଥିବା ହେତୁ ଏହା ଜମି ହିସାବର ଦାତା ପାର୍ଶ୍ୱକୁ ଅଣାଯାଇଛି, ଅର୍ଥାତ୍ ଜମି ହିସାବର ଦାୟୀ ବାକିରୁ ୧୬,୫୦୦ ଟଙ୍କା ବିୟୋଗ କରାଯାଇଛି । ଦ୍ୱିଲିଖନ ନୀତି ଏହାଦ୍ୱାରା ଲଙ୍ଘିତ ହୋଇନାହିଁ । ଉଦାହରଣ ସ୍ୱରୂପ ବହିର୍ମୁଖୀ ଫେରନ୍ତ ବିଷୟ ବିଚାର କରାଯାଉ । ଏହାର ବାକି ଦାତା ଶ୍ରେଣୀର କିନ୍ତୁ ଏହାକୁ ମୋଟ ଲଭ ଓ କ୍ଷତି ହିସାବର ଦାୟୀ ପାର୍ଶ୍ୱରେ ଜମି ହିସାବରୁ ବାଦ୍ ଦିଆଯାଇ ଅନ୍ତର୍ଭୁକ୍ତ କରାଯାଏ । ଏତଦ୍ୱାରା ପ୍ରତିକ୍ରିୟାରେ କୌଣସି ପରିବର୍ତ୍ତନ ହୁଏ ନାହିଁ ।

(ଖ) ଅନାଦେୟ ଋଣ ବାକି ମେଳରେ ଅନ୍ତର୍ଭୁକ୍ତ ଥିବା ହେତୁ ଏହା ବିବିଧ ଖାତକ ପରିମାଣରୁ ପୂର୍ବରୁ ବାଦ୍ ଦିଆଯାଇଛି ବୋଲି ଅନୁମାନ କରାଯାଇ ପାରେ । ତେଣୁ ତାହା କେବଳ ସମ୍ପୃକ୍ତ ହିସାବକୁ ଅଣାଯାଇଛି ।

(ଗ) ଆଦ୍ୟ ସମ୍ପାରର କୌଣସି ଉଲ୍ଲେଖ ବାକି ମେଳରେ ନାହିଁ । ସମ୍ଭବତଃ ଏହା ମଧ୍ୟ ଜମି ହିସାବରେ ସମାଯୋଜିତ ହୋଇଛି । ସ୍ୱତନ୍ତ୍ର ବାକି ରୂପେ ଏହା ବାକି ମେଳରେ ନ ଥିବା ହେତୁ ଏ ସମ୍ବନ୍ଧରେ ଅନ୍ୟ କିଛି କରଣୀୟ ନାହିଁ ।

(ଘ) ମଜୁରି ସାଧାରଣତଃ ଉତ୍ପାଦନକାରୀ ହୁଏ ଓ ଏହା ମୋଟ ଲଭ ଓ କ୍ଷତି ହିସାବର ଦାୟୀ ପାର୍ଶ୍ୱକୁ ନିଆଯାଏ, ମାତ୍ର ଯଦି 'ମଜୁରି ଓ ବେତନ' ଏକତ୍ରିତ ଥାଏ ତାହେଲେ ତାହା ଅନୁତ୍ପାଦୀ ବୋଲି ପରିଗଣିତ ହୋଇ ନିଟ୍ ଲଭ ଓ କ୍ଷତି ହିସାବର ଦାୟୀ ପାର୍ଶ୍ୱରେ ଅନ୍ତର୍ଭୁକ୍ତ ହେବ ।

(ଙ) ସାଧାରଣତଃ ବଟା ହିସାବ ଦୁଇ ଭାଗରେ ବିଭକ୍ତ ହୋଇ ଲେଖାଯାଏ, ଯଥା— ପ୍ରାପ୍ତ ବଟା ହିସାବ ଓ ପ୍ରଦତ୍ତ ବଟା ହିସାବ । ମାତ୍ର ବଟା ହିସାବରେ

ହିଭସ୍ଥ ପ୍ରାପ୍ତ ଓ ପ୍ରଦତ୍ତ ବଟା ଲିପିବଦ୍ଧ କରାଯାଇ ପାରେ; ଏପରି କ୍ଷେତ୍ରରେ ପ୍ରାପ୍ତ ବଟା, ବଟା ହିସାବର ଦାତା ପାର୍ଶ୍ୱରେ ଓ ପ୍ରଦତ୍ତ ବଟା ଏହି ହିସାବର ଦାୟୀ ପାର୍ଶ୍ୱରେ ଲେଖାଯାଏ । ଏହି ହିସାବର ବାକି ଦାୟୀ ହେଲେ ତାହା ନିଟ୍ ଲାଭ ଓ କ୍ଷତି ହିସାବର ଦାୟୀ ପାର୍ଶ୍ୱରେ ଓ ବାକି ଦାତା ହେଲେ ଦାତା ପାର୍ଶ୍ୱରେ ଲେଖାଯାଏ । ଏ କ୍ଷେତ୍ରରେ ବଟା ହିସାବର ବାକି ଦାତା ହୋଇ-ଥିବାରୁ ଏହା ନିଟ୍ ଲାଭ ଓ କ୍ଷତି ହିସାବର ଦାତା ପାର୍ଶ୍ୱକୁ ନିଆ ଯାଇଛି ।

(ଚ) ଅନେକ ସମୟରେ କାରଖାନାରେ କାର୍ଯ୍ୟ ଶିକ୍ଷା କରିବା ନିମନ୍ତେ ଶିକ୍ଷାର୍ଥୀ ବା ଶିକ୍ଷାନବିସ ଗ୍ରହଣ କରାଯାଏ । ଏମାନେ କାରଖାନାରେ କାର୍ଯ୍ୟ କରି ତହିଁରୁ ପ୍ରକୃତ ବ୍ୟବହାରିକ ଜ୍ଞାନ ଅର୍ଜନ କରନ୍ତି । ଏହିପରି କାର୍ଯ୍ୟ ଶିକ୍ଷା କରିବା ସକାଶେ ଶିକ୍ଷାର୍ଥୀମାନେ ଏକକାଳୀନ ବ୍ୟବସାୟ ପ୍ରତିଷ୍ଠାନକୁ କିଛି ଅର୍ଥ ପ୍ରଦାନ କରନ୍ତି, ଏହାକୁ 'ପ୍ରିମିୟମ୍' କୁହାଯାଏ । ଯଦି ସେମାନେ ବର୍ଷକର ପ୍ରିମିୟମ ଦିଅନ୍ତି ତାହେଲେ ତାହାର ମୋଟ ପରିମାଣ ସେହି ବର୍ଷର ନିଟ୍ ଲାଭ ଓ କ୍ଷତି ହିସାବରେ ଦାତା ପାର୍ଶ୍ୱକୁ ନିଆଯାଏ । ଯଦି ସେମାନେ ଦୁଇ ବା ତିନି ବର୍ଷର ପ୍ରିମିୟମ୍ ଏକକାଳୀନ ଦିଅନ୍ତି ତାହେଲେ ସମସ୍ତ ପରିମାଣ ଗୋଟିଏ ବର୍ଷର ହିସାବକୁ ନିଆ ନ ଯାଇ ଆନୁପାତିକ ହାରରେ ପ୍ରତି ବର୍ଷ ହିସାବକୁ ଉପଯୁକ୍ତ ପରିମାଣ ନିଆଯାଏ । ବଳକା ପରିମାଣ ଅନର୍ଜିତ ମାତ୍ର ପ୍ରାପ୍ତ ଅର୍ଥ ସ୍ୱରୂପ ଉଦ୍‌ବୃତ୍ତ ପତ୍ରର ଦେଣା ପାର୍ଶ୍ୱରେ ପ୍ରକାଶିତ ହୁଏ ।

## ଦୃଷ୍ଟାନ୍ତ (୨୭)

ଶ୍ରୀ ରମେଶ ଶର୍ମାଙ୍କ ହିସାବ ଖାତାରୁ ୩୧-୧୨-୧୯୬୨ ତାରିଖରେ ଉଦ୍ଧୃତ ହୋଇଥିବା ନିମ୍ନଲିଖିତ ଖତିୟାନ ହିସାବର ବାକିଗୁଡ଼ିକରୁ ଆବଶ୍ୟକ ସମାଯୋଜନ ପରେ ସେହି ତାରିଖରେ ଶେଷ ହେଉଥିବା ବର୍ଷର ମୋଟ ଓ ନିଟ୍ ଲାଭ ଓ କ୍ଷତି ହିସାବ ଓ ୩୧-୧୨-୧୯୬୨ ତାରିଖର ଉଦ୍‌ବୃତ୍ତ ପତ୍ର ପ୍ରସ୍ତୁତ କର ।

| | ଟଙ୍କା | | ଟଙ୍କା |
|---|---|---|---|
| ମୂଳଧନ ହିସାବ .. | ୧,୦୫,୦୦୦ | ବଟା ହିସାବ (ଦାୟୀ) | ୮୦୦ |
| ଉଠାଣ ହିସାବ.... | ୨,୦୦୦ | ବିବିଧ ଖାତକ | ୧୮,୪୦୭ |

| | ଟଙ୍କା | | ଟଙ୍କା |
|---|---|---|---|
| କ୍ରୟ.... | ୭୪,୦୦୦ | ରାମଚନ୍ଦ୍ର ମିଶ୍ରଙ୍କୁ | |
| ଅନ୍ତର୍ମୁଖୀ ଫେରସ୍ତ ... | ୧,୪୦୦ | ଦିଆଯାଇଥିବା ଶତକଡ଼ା ବାର୍ଷିକ | |
| ବିକ୍ରୟ.... | ୧,୯୫,୩୨୦ | ୭ ହାର ସୁଧରେ | |
| ବହିର୍ମୁଖୀ ଫେରସ୍ତ... | ୩,୬୦୦ | ୧-୧-୭୨ର | |
| | | ଋଣ ହିସାବ | ୧୦,୦୦୦ |
| ସ୍ଥିତିବାନ୍ ଜମି... | ୨୦,୦୦୦ | ଦେୟ ହୁଣ୍ଡି | ୧୪,୦୦୦ |
| ଯନ୍ତ୍ର... | ୭୦,୦୦୦ | ସମ୍ଭାର (୧-୧-୭୨) | ୧୫,୪୦୦ |
| ବେତନ.... | ୯,୬୦୦ | ମଜୁରି | ୭,୬୦୦ |
| ଦପ୍ତର ଖର୍ଚ୍ଚ.... | ୧,୪୦୦ | ବିବିଧ ମହାଜନ | ୨୨,୩୦୦ |
| ଆସ୍‌ବାବ୍ ପତ୍ର... | ୪,୦୦୦ | ଡାକ ଓ ତାର ଖର୍ଚ୍ଚ | ୩୫୦ |
| ଗ୍ୟାସ୍ ଓ ଜାଳେଣୀ... | ୧,୩୦୦ | ବୀମା ପ୍ରିମିୟମ | ୧,୫୦୦ |
| ଦପ୍ତର ଭଡ଼ା... | ୨,୪୦୦ | ଅନାଦେୟ ଋଣ | ୪୦୦ |
| ଉପକରଣ.... | ୧,୮୦୦ | ପରିବହନ ଓ ଶୁଳ୍କ | ୭,୨୦୦ |
| ଅନିଶ୍ଚିତ ଋଣର ସଞ୍ଚିତ | ୫୦୦ | କାରଖାନାର ଆଲୋକ | ୭୫୦ |
| ନଗଦ ତହବିଲ | ୧,୫୦୦ | ରାମଚନ୍ଦ୍ରଙ୍କ ଋଣର ସୁଧ | ୪୦୦ |
| | | ବ୍ୟାଙ୍କ୍‌ରେ ଗଚ୍ଛିତ | ୧୦,୫୦୦ |

## ସମଯୋଜନ ଆବଶ୍ୟକ :

(୧) ୩୧-୧୨-୧୯୭୨ ତାରିଖରେ ଅନ୍ତ୍ୟ ସମ୍ଭାରର ମୂଲ୍ୟ ୧୮,୯୦୦ ଟଙ୍କା ଥିଲା ।

(୨) ମଜୁରି ବାବଦ ୪୦୦ ଟଙ୍କା ଓ ବେତନ ବାବଦ ୫୦୦ ଟଙ୍କା ବକେୟା ଅଛି ।

(୩) ବୀମା ପ୍ରିମିୟମ ବାବଦ ୩୦୦ ଟଙ୍କା ଅଗ୍ରିମ ଦିଆଯାଇଛି ।

(୪) ୧-୯-୭୨ ତାରିଖରେ ୫,୦୦୦ ଟଙ୍କା ମୂଲ୍ୟର ଏକ ନୂତନ ଯନ୍ତ୍ର ସ୍ଥାପିତ କରାଯାଇଛି, ମାତ୍ର ଏ ବିଷୟ କୌଣସି ହିସାବରେ ଲିପିବଦ୍ଧ କରାଯାଇ ନାହିଁ

କମ୍ପା ଏହାର କମ୍ ମୂଲ୍ୟ ମଧ୍ୟ ଦିଆଯାଇ ନାହିଁ । ଏହାକୁ ସ୍ଥାପନ କରିବା ନିମନ୍ତେ ବ୍ୟୟିତ ୫୦୦ ଟଙ୍କା ମଜୁରି ହିସାବରେ ଅନ୍ତର୍ଭୁକ୍ତ ହୋଇଛି ।

(୫) ୩୧-୧୨-୭୨ ରେ ଉପକରଣର ମୂଲ୍ୟ ୧,୫୦୦ ବୋଲି ସାବ୍ୟସ୍ତ ହୋଇଛି ।

(୬) ଯନ୍ତ୍ରର ପରିମାଣରୁ ଶତକଡ଼ା ୧୦ ହାରରେ, ସ୍ଥିତିବାନ ଜମିରୁ ଶତକଡ଼ା ୨ ହାରରେ ଓ ଆସ୍‌ବାବ୍ ପତ୍ର ପରିମାଣରୁ ଶତକଡ଼ା ୫ ହାରରେ ମୂଲ୍ୟ ହ୍ରାସ ବାଦ୍ ଦିଅ ।

(୭) ବିବିଧ ଖାତକ ପରିମାଣରୁ ଅନାଦେୟ ଋଣ ବାବଦ ୪୦୦ ଟଙ୍କା ବାଦ୍ ଦିଅ ।

(୮) ବିବିଧ ଖାତକ ପରିମାଣର ଶତକଡ଼ା ୫ ହାରରେ ଅନିଶ୍ଚିତ ଋଣର ସଞ୍ଚିତ ଗଚ୍ଛିତ ଓ ଶତକଡ଼ା ୨ ହାରରେ ଖାତକଙ୍କୁ ଦେୟ ବଟ୍ଟାର ସଞ୍ଚିତ ଗଚ୍ଛିତ ଓ ଶତକଡ଼ା ୨ ହାରରେ ମହାଜନଙ୍କଠାରୁ ପ୍ରାପ୍ୟ ବଟ୍ଟାର ସଞ୍ଚିତ ଗଚ୍ଛିତ ।

(୯) ପରିଚାଳକ, କମିଶନ୍ ବାଦ୍ ଦେବା ପୂର୍ବରୁ ନିଟ୍ ଲାଭ ଉପରେ ଶତକଡ଼ା ୫ ହାରରେ କମିଶନ୍ ପାଇବେ ।

**ମନ୍ତବ୍ୟ** :—ଏହି ସମସ୍ୟାରେ ବାକି ମେଳ ଦିଆ ନ ଯାଇ କେବଳ ହିସାବଗୁଡ଼ିକର ବାକି ଦିଆଯାଇଛି । କେଣୁ ଦାୟୀ ବାକିର ସମଷ୍ଟି ଦାତା ବାକିର ସମଷ୍ଟି ସହିତ ସମାନ ଅଛି କି ନାହିଁ ତାହା ଜାଣିବା ସକାଶେ ସର୍ବଦୌ ବାକି ମେଳ ପ୍ରସ୍ତୁତ କରିବା ଆବଶ୍ୟକ । ଯଦି ଏଥିରେ କୌଣସି ତ୍ରୁଟି ଥାଏ ତାହେଲେ ଏହା ସ୍ୱତଃସିଦ୍ଧ ଯେ ଉଦ୍‌ବୃତ୍ତ ପତ୍ରରେ ଦେଣାର ମୋଟ ସଂଖ୍ୟା ପରିସମ୍ପତ୍ତିର ମୋଟ ସଂଖ୍ୟା ସହିତ ସମାନ ହେବ ନାହିଁ, ସୁତରାଂ ଏପରି କ୍ଷେତ୍ରରେ ପ୍ରଶ୍ନରେ ବାକି ମେଳ ପ୍ରସ୍ତୁତ କରିବା ସକାଶେ ନିର୍ଦ୍ଦେଶ ଥାଉ ବା ନ ଥାଉ ଛାତ୍ର ପକ୍ଷରେ ବାକି ମେଳ ପ୍ରସ୍ତୁତ କରି ତାହା ପରେ ଚୂଡ଼ାନ୍ତ ହିସାବ ପ୍ରସ୍ତୁତ କରିବା ବାଞ୍ଛନୀୟ ।

## ସମାଧାନ —

| ବାକି ମେଳ | | ଦାବୀ | ଦାତା |
|---|---|---|---|
| | | ଟଙ୍କା | ଟଙ୍କା |
| ରମଜ ଶର୍ମାଙ୍କ ମୂଳଧନ ହିସାବ.. | ... | | ୧,୦୫,୦୦୦ |
| ରମଜ ଶର୍ମାଙ୍କ ଉଠାଣ ହିସାବ··· | ... | ୭,୦୦୦ | |
| କ୍ରୟ··· .... | .... | ୭୪,୦୦୦ | |
| ଅନ୍ତର୍ମୁଖୀ ଫେରସ୍ତ | ... | ୧,୪୦୦ | |
| ବିକ୍ରୟ ··· | ... | | ୧,୦୫,୩୦୦ |
| ବହିର୍ମୁଖୀ ଫେରସ୍ତ | ... | | ୩,୬୦୦ |
| ସ୍ଥିତିବାନ ଜମି···· | ... | ୨୦,୦୦୦ | |
| ଯନ୍ତ୍ର···· | .... | ୭୦,୦୦୦ | |
| ବେତନ.. | ... | ୯,୬୦୦ | |
| ଦପ୍ତର ଖର୍ଚ୍ଚ | .. | ୧,୪୦୦ | |
| ଆସ୍‌ବାବ୍ ପତ୍ର | .... | ୪,୦୦୦ | |
| ଗ୍ୟାସ୍ ଓ ଜାଳେଣି | ... | ୧,୩୦୦ | |
| ଦପ୍ତର ଭଡ଼ା | .... | ୨,୪୦୦ | |
| ଉପକରଣ | ... | ୧,୮୦୦ | |
| ଅନର୍ଜିତ ଋଣର ସଞ୍ଚିତ | ... | | ୫୦୦ |
| ନଗଦ ତହବିଲ | .... | ୧,୫୦୦ | |
| ବଟା ହିସାବ (ଦାବୀ) ... | .... | ୮୦୦ | |
| ବିବିଧ ଖାତକ .. | .... | ୧୮,୪୦୦ | |
| ରାମଚନ୍ଦ୍ର ମିଶ୍ରଙ୍କୁ ଦିଆଯାଇଥିବା ଋଣ ହିସାବ | ... | ୧୦,୦୦୦ | |
| ଦେୟ ହୁଣ୍ଡି .... | ... | | ୧୪,୦୦୦ |
| ସମ୍ଭାର (୧-୧-୭୨) .. | ... | ୧୫,୪୦୦ | |
| ମଜୁରି | .. | ୬,୭୦୦ | |
| ବିବିଧ ମହାଜନ | — | | ୨୨,୩୦୦ |
| ଡାକ ଓ ତାର ଖର୍ଚ୍ଚ | ... | ୩୫୦ | |
| ବୀମା ପ୍ରିମିୟମ | ... | ୧,୫୦୦ | |
| ଅନାଦେୟ ଋଣ | ... | ୪୦୦ | |
| ପରିବହନ ଓ ଶୁଳ୍କ | ... | ୭,୨୦୦ | |
| କାରଖାନାର ଆଲୋକ | ... | ୭୫୦ | |
| ରାମଚନ୍ଦ୍ରଙ୍କର ଋଣର ସୁଧ | ... | | ୪୦୦ |
| ବ୍ୟାଙ୍କରେ ଗଚ୍ଛିତ ତହବିଲ .... | ... | ୧୦,୫୦୦ | |
| ବାକି ମେଳର ବ୍ୟବଧାନ | ... | ୨,୫୫,୨୦୦ | ୨,୫୧,୨୦୦ |
| | | | ୪,୦୦୦ |
| | | ୨,୫୫,୨୦୦ | ୨,୫୫,୨୦୦ |

ବାକି ମେଳ ପ୍ରସ୍ତୁତ କରିବାରୁ ଜଣା ପଡ଼ିଲା ଯେ ଦାତା ବାକିର ମୋଟ ପରିମାଣ ଦାୟୀ ବାକିର ମୋଟ ପରିମାଣଠାରୁ ୪,୦୦୦ ଟଙ୍କା ଊଣା ଅଛି । ବାକି ମେଳର ଏହି ବ୍ୟବଧାନକୁ ଅନିଶ୍ଚିତ ହିସାବର ଦାତା ପାର୍ଶ୍ୱକୁ ନିଆଯିବ ଓ ଏହା ଉଦ୍‌ବୃତ୍ତ ପତ୍ରର ଦେଣା ପାର୍ଶ୍ୱରେ ଅନ୍ତର୍ଭୁକ୍ତ ହେବ ।

ରାମଜ ଶର୍ମାଙ୍କର

୧୯୬୨ ସାଲ ଡିସେମ୍ବର ୩୧ ତାରିଖରେ ଶେଷ ହେଉଥିବା ବର୍ଷର

ଦାୟୀ ମୋଟ ଓ ନିଟ୍ ଲାଭ ଓ କ୍ଷତି ହିସାବ ଦାତା

| | | ଟଙ୍କା | | | ଟଙ୍କା |
|---|---|---|---|---|---|
| ସମ୍ଭାର (ଆଦ୍ୟ) ବାବଦ | | ୧୫,୪୦୦ | ବିକ୍ରୟ ବାବଦ | ୧,୦୫,୩୦୦ | |
| କ୍ରୟ ବାବଦ | ୬୪,୦୦୦ | | ବାଦ୍ : ଫେରସ୍ତ | ୧,୪୦୦ | ୧,୦୩,୯୦୦ |
| ବାଦ୍ : ଫେରସ୍ତ | ୩,୭୦୦ | ୬୦,୩୦୦ | ସମ୍ଭାର (ଅନ୍ତ୍ୟ) ବାବଦ | | ୧୮,୯୦୦ |
| ମଜୁରି ବାବଦ | ୭,୬୦୦ | | | | |
| ଯୁକ୍ତ : ବକେୟା | ୪୦୦ | | | | |
| | ୮,୦୦୦ | | | | |
| ବାଦ୍ : ଯନ୍ତ୍ର ସ୍ଥାପନ ମଜୁରି | ୫୦୦ | ୭,୫୦୦ | | | |
| ଗ୍ୟାସ ଓ ଜାଳେଣି ବାବଦ | | ୧,୩୦୦ | | | |
| ପରିବହନ ଓ ଶୁଳ୍କ ବାବଦ | | ୬,୨୦୦ | | | |
| କାରଖାନାର ଆଲୋକ ବାବଦ | | ୬୫୦ | | | |
| ମୋଟ ଲାଭ ବାବଦ— ନିଟ୍ ଲାଭ ଓ କ୍ଷତି ହିସାବକୁ ନିଆଗଲା | | ୩୧,୪୫୦ | | | |
| | | ୧,୨୨,୮୦୦ | | | ୧,୨୨,୮୦୦ |

| ଦାୟୀ | | ଟଙ୍କା | ମୋଟ ଓ ନଟ୍ ଲାଭ ଓ କ୍ଷତି ହିସାବ | | ଦାତା ଟଙ୍କା |
|---|---|---|---|---|---|
| ବେତନ ବାବଦ | ୯,୬୦୦ | | ମୋଟ ଘର ବାବଦ— | | |
| ଯୁକ୍ତ : ବକେୟା | ୫୦୦ | ୧୦,୧୦୦ | ମୋଟ ଲାଭ ଓ କ୍ଷତି ହିସାବରୁ ଅଣାଗଲା | | ୩୧,୪୫୦ |
| ଦପ୍ତର ଖର୍ଚ୍ଚ ବାବଦ | | ୧,୪୦୦ | ରାମଚନ୍ଦ୍ରଙ୍କୁ ପ୍ରଦତ୍ତ ସୁଧ ବାବଦ | ୪୦୦ | |
| ଡାକ ଓ ତାର ଖର୍ଚ୍ଚ ବାବଦ | | ୩୫୦ | ଯୁକ୍ତ: ପ୍ରାପ୍ୟ ସୁଧ | ୨୦୦ | ୬୦୦ |
| ବୀମା ପ୍ରିମିୟମ ବାବଦ | ୧,୫୦୦ | | ମହାଜନଙ୍କଠାରୁ ପ୍ରାପ୍ୟ ବଟାର ସଞ୍ଚିତ ବାବଦ | | ୪୪୬ |
| ବାଦ୍: ଅଗ୍ରିମ ପ୍ରଦତ୍ତ | ୩୦୦ | ୧,୨୦୦ | | | |
| ଦପ୍ତର ଭଡ଼ା ବାବଦ | | ୨,୪୦୦ | | | |
| ଅନିଶ୍ଚିତ ଋଣର ସଞ୍ଚିତ ବାବଦ— | | | | | |
| ଆବଶ୍ୟକ | ୯୦୦ | | | | |
| ଯୁକ୍ତ: ଅନାଦେୟ ଋଣ | ୮୦୦ | | | | |
| | ୧,୭୦୦ | | | | |
| ବାଦ୍: ପୂର୍ବ ସଞ୍ଚିତ | ୫୦୦ | ୧,୨୦୦ | | | |
| ଖାତକଙ୍କୁ ଦେୟ ବଟାର ସଞ୍ଚିତ ବାବଦ-ଆବଶ୍ୟକ | ୩୪୨ | | | | |
| ଯୁକ୍ତ: ପ୍ରଦତ୍ତ ବଟା | ୮୦୦ | ୧,୧୪୨ | | | |
| ମୂଲ୍ୟ ହ୍ରାସ ବାବଦ— | | | | | |
| ଯନ୍ତ୍ର | ୭,୧୮୩ | | | | |
| ଆସ୍‌ବାବ୍ ପତ୍ର | ୨୦୦ | | | | |
| ସ୍ଥିତିବାନ ଜମି | ୪୦୦ | | | | |
| ଉପକରଣ | ୩୦୦ | ୮,୦୮୩ | | | |
| ପରିଚାଳକଙ୍କର କମିଶନ ବାବଦ | | ୩୩୧ | | | |
| ନଟ୍ ଲାଭ ବାବଦ— ମୂଳଧନ ହିସାବକୁ ସ୍ଥାନାନ୍ତରିତ କରାଗଲା | | ୬,୨୯୦ | | | |
| | | ୩୨,୪୯୬ | | | ୩୨,୪୯୬ |

## ରାମଚନ୍ଦ୍ର ଶର୍ମାଙ୍କର
## ୧୯୭୨ ସାଲ ଡିସେମ୍ବର ୩୧ ତାରିଖର
## ଉଦ୍‌ବର୍ତ୍ତ ପତ୍ର

| ଦେଣା | | ଟଙ୍କା | ପରିସମ୍ପତ୍ତି | | ଟଙ୍କା |
|---|---|---|---|---|---|
| ବିବିଧ ମହାଜନ | ୨୨,୩୦୦ | | ନଗଦ ତହବିଲ | | ୧,୫୦୦ |
| ବାଦ୍ : ବଟାର | | | ବ୍ୟାଙ୍କରେ ଗଚ୍ଛିତ ତହବିଲ | | ୧୦,୫୦୦ |
| ସଞ୍ଚିତ | ୪୪୬ | ୨୧,୮୫୪ | ବିବିଧ ଖାତକ | ୧୮,୪୦୦ | |
| ଦେୟ ହୁଣ୍ଡି | | ୧୪,୦୦୦ | ବାଦ୍ : ଅନାଦେୟ | | |
| ଅନ୍ତ ସକାଶେ ମହାଜନ | | ୫,୦୦୦ | ଋଣ | ୪୦୦ | |
| ବକେୟା ବ୍ୟୟ; | | | | ୧୮,୦୦୦ | |
| ମଜୁରି | ୪୦୦ | | ବାଦ୍ : ଅନିଶ୍ଚିତ | | |
| ବେତନ | ୫୦୦ | ୯୦୦ | ଋଣର ସଞ୍ଚିତ | ୯୦୦ | |
| ପରିଚାଳକଙ୍କୁ ଦେୟ କମିଶନ୍ | | ୩୩୧ | | ୧୭,୧୦୦ | |
| ଅନିଶ୍ଚିତ ହିସାବ—ବ୍ୟାଙ୍କ | | | ବାଦ୍ : ବଟାର ସଞ୍ଚିତ | ୩୪୨ | ୧୬,୭୫୮ |
| ମେଳର ବ୍ୟବଧାନ | | ୪,୦୦୦ | ରାମଚନ୍ଦ୍ରଙ୍କ ୬% ହାରରେ | | |
| ମୂଳଧନ | | | ପ୍ରଦତ୍ତ ଋଣ | | ୧୦,୦୦୦ |
| ୧-୧ ୭୨ ର ବାକି | | | ଉକ୍ତ ଋଣରେ ପ୍ରାପ୍ୟ ସୁଧ | | ୨୦୦ |
| | ୧୦,୫,୦୦୦ | | ମହଜୁଦ (ଅନ୍ତ୍ୟ) | | ୧୮,୯୦୦ |
| ଯୁକ୍ତ: ନିଟ୍ ଲାଭ | ୬,୨୯୦ | | ସ୍ଥିତିବାନ ଜମି | ୨୦,୦୦୦ | |
| | ୧,୧୧,୨୯୦ | | ବାଦ୍ : ମୂଲ୍ୟ ହ୍ରାସ | ୪୦୦ | ୧୯,୬୦୦ |
| ବାଦ୍ : ଉଠାଣ | ୬,୦୦୦ | ୧,୦୫,୨୯୦ | ଯନ୍ତ୍ର: ପୂର୍ବ ବାକି | ୭୦,୦୦୦ | |
| | | | ବର୍ଷମଧ୍ୟରେ କ୍ରୀତ | ୫,୫୦୦ | |
| | | | | ୭୫,୫୦୦ | |
| | | | ବାଦ୍ : ମୂଲ୍ୟ ହ୍ରାସ | ୭,୧୮୩ | ୬୮,୩୧୭ |
| | | | ଆସ୍‌ବାବ୍ ପତ୍ର | ୪,୦୦୦ | |
| | | | ବାଦ:ମୂଲ୍ୟହ୍ରାସ | ୨୦୦ | ୩,୮୦୦ |
| | | | ଉପକରଣ | ୧,୮୦୦ | |
| | | | ବାଦ୍ :ମୂଲ୍ୟହ୍ରାସ | ୩୦୦ | ୧,୫୦୦ |
| | | | ଅଗ୍ରିମ ପ୍ରଦତ୍ତ ବୀମା ପ୍ରିମିୟମ | | ୩୦୦ |
| | | ୧,୫୧,୩୭୫ | | | ୧,୫୧,୩୭୫ |

## ବିଶେଷ ଦ୍ରଷ୍ଟବ୍ୟ :—

(୧) ବିବିଧ ଖାତକ ପରିମାଣ ୧୮,୪୦୦ ଟଙ୍କାରୁ ଅନାଦେୟ ଋଣ ବାବଦ ୪୦୦ ଟଙ୍କା ବାଦ୍ ଦେବାରୁ ବିବିଧ ଖାତକର ନିଟ୍ ପରିମାଣ ୧୮,୦୦୦ ଟଙ୍କା ରହିଲା । ସେହି ପରିମାଣର ଶତକଡ଼ା ୫, ଅର୍ଥାତ୍ ୯୦୦ ଟଙ୍କା ଅନିଶ୍ଚିତ ଋଣର ସଞ୍ଚିତ ସ୍ୱରୂପ ଦିଆଗଲା ।

(୨) ଅନିଶ୍ଚିତ ଋଣର ଏ ବର୍ଷର ସଞ୍ଚିତ ୯୦୦ ଟଙ୍କା ହେଲେ ହେଁ, ବାକି ମେଳର ଅନ୍ତର୍ଭୁକ୍ତ ଅନାଦେୟ ଋଣ ବାବଦ ୪୦୦ ଟଙ୍କା ଓ ସମାଯୋଜନ ତାଲିକା ଅନ୍ତର୍ଭୁକ୍ତ ଅନାଦେୟ ଋଣ ବାବଦ ୪୦୦ ଟଙ୍କା, ଏହିପରି ୮୦୦ ଟଙ୍କା ଏ ବର୍ଷର ସଞ୍ଚିତ ସହିତ ଯୋଗ କରାଯାଇ ତହିଁରୁ ପୂର୍ବ ବର୍ଷର ସଞ୍ଚିତ ବାବଦ ୫୦୦ ଟଙ୍କା ବାଦ୍ ଦିଆଗଲା । ସୁତରାଂ (୯୦୦+୮୦୦−୫୦୦=)୧,୨୦୦ ଟଙ୍କା ନିଟ୍ ଲାଭ ଓ କ୍ଷତି ହିସାବର ଦାୟୀ ପାର୍ଶ୍ୱକୁ ନିଆଗଲା ।

(୩) ଯେହେତୁ ଖାତକଙ୍କୁ ଦେୟ ବଟା କେବଳ ଉତ୍ତମ ଖାତକମାନଙ୍କୁ ଦେୟ ତେଣୁ ବିବିଧ ଖାତକ ପରିମାଣରୁ ସମାଯୋଜନ ତାଲିକାଭୁକ୍ତ ଅନାଦେୟ ଋଣ ବାବଦ ୪୦୦ ଟଙ୍କା ଓ ଅନିଶ୍ଚିତ ଋଣର ସଞ୍ଚିତ ବାବଦ ୯୦୦ ଟଙ୍କା ବାଦ୍ ଦିଆଯାଇ (୧୮,୪୦୦ − ୪୦୦ − ୯୦୦ =) ୧୭,୧୦୦ ଟଙ୍କାର ଶତକଡ଼ା ୨ ହାରରେ ଦେୟ ବଟାର ସଞ୍ଚିତ ୩୪୨ ଟଙ୍କା ନିଟ୍ ଲାଭ ଓ କ୍ଷତି ହିସାବର ଦାୟୀ ପାର୍ଶ୍ୱକୁ ନିଆଗଲା ।

(୪) ଯନ୍ତ୍ର ହିସାବର ପୂର୍ବ ବାକି ୭୦,୦୦୦ ଟଙ୍କା ଓ ଏ ବର୍ଷ ନୂତନ ଯନ୍ତ୍ର କ୍ରୟ କରାଯାଇଛି ୫,୦୦୦ ଟଙ୍କାର ଓ ଏହାକୁ ସ୍ଥାପନ କରିବା ନିମନ୍ତେ ମଜୁରି ବାବଦ ବ୍ୟୟିତ ହୋଇଛି ୫୦୦ ଟଙ୍କା । ତେଣୁ ୭୦,୦୦୦ ଟଙ୍କାର ଶତକଡ଼ା ୧୦ ହାରରେ ମୂଲ୍ୟ ହ୍ରାସ ହେଲା ୭,୦୦୦ ଟଙ୍କା ଓ ଯେହେତୁ ନୂତନ ଯନ୍ତ୍ର ୧-୯-୭୨ ତାରିଖରେ କ୍ରୟ କରାଯାଇଛି ତେଣୁ ୫,୫୦୦ ଟଙ୍କାର ଶତକଡ଼ା ୧୦ ହାରରେ ୪ ମାସର ମୂଲ୍ୟ ହ୍ରାସ ୧୮୩⅓ ଟଙ୍କା ହେବ, ଅର୍ଥାତ୍ ମୋଟରେ ଯନ୍ତ୍ରର ମୂଲ୍ୟ ହ୍ରାସ ବାବଦ ୭,୧୮୩⅓ ଟଙ୍କା ହେବ, ମାତ୍ର ସୁବିଧା ସକାଶେ ଭଗ୍ନାଂଶ ବାଦ୍ ଦିଆଯାଇ କେବଳ ୭,୧୮୩ ଟଙ୍କା ନିଟ୍ ଲାଭ ଓ କ୍ଷତି ହିସାବର ଦାୟୀ ପାର୍ଶ୍ୱକୁ ନିଆଯାଇଛି ।

(୫) ଉପକରଣର ୩୧-୧୨-୭୨ ତାରିଖର ମୂଲ୍ୟ ୧,୫୦୦ ଟଙ୍କା ହୋଇଥିବାରୁ ଏହାର ପୂର୍ବ ବାକିରୁ ୩୦୦ ଟଙ୍କା ମୂଲ୍ୟ ହ୍ରାସ ବାବଦ ବାଦ୍ ଦିଆଯାଇଛି ।

(୬) ପରିଚାଳକଙ୍କୁ ଦେୟ କମିଶନ୍ ଏହାକୁ ବାଦ୍ ଦେବା ପୂର୍ବରୁ ନିଟ୍ ଲାଭର ଶତକଡ଼ା ୫ ହାରରେ ଦିଆଯିବ । ଏହି କମିଶନ୍ ବାଦ୍ ଦେବା ପୂର୍ବରୁ ନିଟ୍ ଲାଭ ୭,୭୨୧ ଟଙ୍କା, ତେଣୁ ଏହାର ୫% ୩୮୬ $\frac{1}{20}$ ଟଙ୍କା ହେବ, ମାତ୍ର ସୁବିଧା ଦୃଷ୍ଟିରୁ ଭଗ୍ନାଂଶକୁ ବାଦ୍ ଦିଆଯାଇ ୩୮୬ ଟଙ୍କା ନିଟ୍ ଲାଭ ଓ କ୍ଷତି ହିସାବର ଦାୟୀ ପାର୍ଶ୍ୱକୁ ନିଆଯାଇଛି ।

(୭) ରାମଚନ୍ଦ୍ରଙ୍କୁ ଦିଆଯାଇଥିବା ଋଣର ସୁଧ ଶତକଡ଼ା ୬ ହାରରେ ବର୍ଷକୁ ୬୦୦ ଟଙ୍କା ସ୍ଥଳେ ୪୦୦ ଟଙ୍କା ସୁଧ ମିଳିଥିବାରୁ ବାକି ୨୦୦ ଟଙ୍କା ପ୍ରାପ୍ୟ ସୁଧ ରୂପେ ଉଦ୍‌ବୃତ୍ତ ପତ୍ରର ପରିସମ୍ପତ୍ତି ପାର୍ଶ୍ୱକୁ ନିଆଯାଇଛି ।

(୮) ଅନାଦେୟ ଋଣ ବାବଦ ୪୦୦ ଟଙ୍କା ଯେହେତୁ ବାକି ମେଳରେ ଅନ୍ତର୍ଭୁକ୍ତ ହୋଇଛି ତେଣୁ ଏହା ଅନୁମାନ କରିବା ସ୍ୱାଭାବିକ ଯେ ଏହି ପରିମାଣ ବିବିଧ ଖାତକ ପରିମାଣରୁ ବାଦ୍ ଦିଆଯାଇ ଖାତକଙ୍କର ପରିମାଣ ୧୮,୪୦୦ ଟଙ୍କା ରଖାଯାଇଛି । ଏହି କାରଣ ଯୋଗୁଁ ଏହି ୪୦୦ ଟଙ୍କା ପୁନର୍ବାର ଖାତକ ପରିମାଣରୁ ବାଦ୍ ଦିଆଯିବ ନାହିଁ; କେବଳ ସମାଯୋଜନ ତାଲିକାରେ ଥିବା ଅନାଦେୟ ଋଣ ବିବିଧ ଖାତକ ପରିମାଣରୁ ବାଦ୍ ଦିଆଯିବ ।

## ପ୍ରଶ୍ନମାଳା (୫)

୧ । ମୁନାଫାକାରବାରୀୟ ବ୍ୟୟ ମୂଳଧନ କାରବାରୀୟ ବ୍ୟୟ ଠାରୁ କିପରି ପୃଥକ୍ ତାହା ବ୍ୟାଖ୍ୟା କର । ଏପରି ପୃଥକ୍ ଶ୍ରେଣୀ ବିଭାଗର ଆବଶ୍ୟକତା କଅଣ ?

୨ । ନିମ୍ନଲିଖିତ ହିସାବଗୁଡ଼ିକ କେଉଁ କାରବାରୀୟ ବ୍ୟୟ ତାହା ସ୍ଥିର କର :

ଯନ୍ତ୍ର କ୍ରୟ କରିବାର ବ୍ୟୟ, ବେତନ ହିସାବ, ପ୍ରାପ୍ତ ବଟ୍ଟା, ପ୍ରଦତ୍ତ ବଟ୍ଟା, ଆସ୍‌ବାବ୍ କ୍ରୟ କରିବାର ବ୍ୟୟ ଓ ପୁଞ୍ଜି ହିସାବ ।

୩ । ମୂଳଧନକାରବାରୀୟ ଆୟର ତିନିଗୋଟି ଉଦାହରଣ ଦିଅ ।

୪ । ବିଳମ୍ବିତ ମୁନାଫାକାରବାରୀୟ ବ୍ୟୟ କାହାକୁ କହନ୍ତି ? ଏହାର ବିଶେଷତ୍ୱ କଅଣ ? ଏହି ପ୍ରକାର ବ୍ୟୟର ୩ ଗୋଟି ଉଦାହରଣ ଦିଅ ।

୫ । ଚୂଡ଼ାନ୍ତ ହିସାବ କହିଲେ କଣ ବୁଝ ? ନିମ୍ନଲିଖିତ ବିଷୟ ଗୁଡ଼ିକ ଚୂଡ଼ାନ୍ତ ହିସାବର କେଉଁଠାରେ ସ୍ଥାନ ପାଇବ ?

ଅନ୍ତର୍ମୁଖୀ ଫେରସ୍ତ, ଅନ୍ତର୍ମୁଖୀ ଗାଡ଼ିଭଡ଼ା, ଉଠାଣ, ବହିର୍ମୁଖୀ ଫେରସ୍ତ, ବହିର୍ମୁଖୀ ଗାଡ଼ିଭଡ଼ା, ପ୍ରଦତ୍ତ ବଟ୍ଟା, ଅନ୍ତ୍ୟ ସମ୍ଭାର, ନଗଦ ତହବିଲ, ଅଗ୍ରିମ ପ୍ରଦତ୍ତ ବୀମାର ପ୍ରିମିୟମ, ଅନ୍ତ୍ୟ ସମ୍ଭାର ଓ ଦେୟ ହୁଣ୍ଡି ।

୬ । ବିକ୍ରୀତ ଦ୍ରବ୍ୟର ପରିବ୍ୟୟ କିପରି ନିର୍ଣ୍ଣୟ କରାଯାଏ ଉଦାହରଣ ସହ ବୁଝାଅ ।

୭ । ଉଦ୍ବୃତ୍ତ ପତ୍ର କାହାକୁ କହନ୍ତି ? ଏପରି ନାମକରଣର ଯଥାର୍ଥତା କଅଣ ? ଏହାର ପ୍ରକୃତ ବର୍ଣ୍ଣନା କର ।

୮ । ବକେୟା ବ୍ୟୟ କହିଲେ କ'ଣ ବୁଝ ? ଏହାକୁ ହିସାବଭୁକ୍ତ କିପରି କରାଯାଏ ଗୋଟିଏ ଉଦାହରଣ ସହ ତାହା ବୁଝାଅ । ଏହା ଉଦ୍ବୃତ୍ତ ପତ୍ରରେ ପ୍ରକାଶିତ ହୁଏ କି ? ଯଦି ହୁଏ, ତାହେଲେ ତାହା କେଉଁ ପାର୍ଶ୍ବରେ ଅନ୍ତର୍ଭୁକ୍ତ ହୁଏ ?

୯ । ପ୍ରାପ୍ୟ ଆୟ କଅଣ ? ଏହାକୁ ହିସାବଭୁକ୍ତ କରିବା ନିମନ୍ତେ ଯେଉଁ ରୋଜନାମା ପ୍ରସ୍ତୁତ କରାଯାଏ ତାହା ଉଦାହରଣ ସହ ବୁଝାଅ ।

୧୦ । ଅଗ୍ରିମ ପ୍ରାପ୍ତ ଆୟ କାହାକୁ କହନ୍ତି ? ଏହା ଉଦ୍ବୃତ୍ତ ପତ୍ରର କେଉଁ ପାର୍ଶ୍ବରେ କାହିଁକି ସେହି ପାର୍ଶ୍ବରେ ପ୍ରକାଶିତ ହେବ କାରଣ ସହ ତାହା ବୁଝାଅ ।

୧୧ । ଅନାଦେୟ ଋଣର ସଞ୍ଚିତ କ'ଣ ଓ ଏହା କିପରି ଗଢ଼ାଯାଏ ତାହା ବ୍ୟାଖ୍ୟା କର ।

୧୨ । ହିସାବ ବନ୍ଦ କରିବାର ରୋଜନାମା କାହାକୁ କହନ୍ତି ? ଏହାର କେତେକ ଉଦାହରଣ ଦିଅ ।

୧୩ । ଉଦ୍ବୃତ୍ତ ପତ୍ରର ଉଦ୍ଦେଶ୍ୟ ବୁଝାଅ ।

୧୪ । ନିମ୍ନଲିଖିତ ପରିସମ୍ପତ୍ତି କେଉଁ ଶ୍ରେଣୀ ଅନ୍ତର୍ଭୁକ୍ତ ?

ସୁନାମ, ପ୍ରାରମ୍ଭିକ ବ୍ୟୟ, ବନ୍ଧକ ଖାତକ, ଯନ୍ତ୍ର, ବ୍ୟାଙ୍କରେ ଗଚ୍ଛିତ ତହବିଲ, ଅଗ୍ରିମ ପ୍ରଦତ୍ତ ଘରଭଡ଼ା ଓ ଆସ୍ବାବ୍ ପତ୍ର ।

୧୫ । ସ୍ୱର୍ଣମୟ ଚଳନ୍ତି ହିସାବର ମୂଲ୍ୟାୟନ କିପରି କରାଯାଏ ?

୧୬ । ଉଦ୍‌ବୃତ୍ତ ପତ୍ରରେ ପରିସମ୍ପତ୍ତି କିପରି କ୍ରମରେ ସଜାଇ ଲେଖାଯାଏ ?

୧୭ । ଜଣେ ଛାତ୍ର ପ୍ରଶ୍ନ ପତ୍ରରେ ନିମ୍ନଲିଖିତ ବିବରଣୀକୁ ଉଦ୍‌ବୃତ୍ତି ପତ୍ର ବୋଲି ନାମ ଦେଇଛନ୍ତି, ସେଥିରେ ଯଦି କୌଣସି ତ୍ରୁଟି ଥାଏ ତାହେଲେ ତାହା ସଂଶୋଧନ କରି ଉଦ୍‌ବୃତ୍ତ ପତ୍ରକୁ ଠିକ୍ ଭାବରେ ଲେଖ ।

୧୯୫୫ ସାଲ ମାର୍ଚ୍ଚ ୩୧ ତାରିଖରେ ଶେଷ ହେଉଥିବା
ବର୍ଷର ଉଦ୍‌ବୃତ୍ତ ପତ୍ର

| ପରିସମ୍ପତ୍ତି | | ଟଙ୍କା | ଦେଣା | | ଟଙ୍କା |
|---|---|---|---|---|---|
| ଯନ୍ତ୍ରପାତି-ପୂର୍ବ ବର୍ଷର ବାକି | | ୫୧,୦୦୦ | ଅଗ୍ରିମ ପ୍ରଦତ୍ତ ଅର୍ଥ | | ୨,୦୦୦ |
| ବିବିଧ ଖାତକ | ୮୫,୦୦୦ | | ମୂଳଧନ | | ୬୦,୦୦୦ |
| ବାଦ୍ : ବର୍ଷ ଶେଷର ସଞ୍ଚିତ | ୫,୦୦୦ | ୯୦,୦୦୦ | ବିବିଧ ମହାଜନ | ୧,୧୦,୦୦୦ | |
| ନଗଦ ତହବିଲ | | ୫,୦୦୦ | ବାଦ୍ : ସଞ୍ଚିତ | ୧୦,୦୦୦ | ୧,୨୦,୦୦୦ |
| ମରାମତି ଓ ନବୀକରଣ | | ୩,୦୦୦ | ମୂଲ୍ୟ ହ୍ରାସ | | ୫,୦୦୦ |
| ବର୍ଷ ଶେଷର ଅଗ୍ରିମ ପ୍ରଦତ୍ତ ଅର୍ଥ | | ୧୦,୦୦୦ | ବିବିଧ ଖାତକଙ୍କ ଦେୟ ପୂର୍ବ ବର୍ଷର ସଞ୍ଚିତ | | ୩,୦୦୦ |
| ଅଦେୟ ସମ୍ଭାର | | ୨୦,୦୦୦ | ନିଟ୍ ଲାଭ | | ୨୧,୦୦୦ |
| ଅନ୍ତ୍ୟ ସମ୍ଭାର | | ୩୦,୦୦୦ | ମୂଳଧନର ସୁଧ | | ୨,୫୦୦ |
| ଅର୍ଥର ବିନିଯୋଗ— | | | ବାକି | | ୪,୫୦୦ |
| ପୂର୍ବ ବାକି | ୩୦,୦୦୦ | | | | |
| ବାଦ୍ : ୨,୦୦୦ ଟଙ୍କା | | | | | |
| ଲାଭ ସମେତ ବିକ୍ରୀତ | ୦,୦୦୦ | ୨୦,୦୦୦ | | | |
| | | ୨,୨୯,୦୦୦ | | | ୨,୨୯,୦୦୦ |

**ବିଶେଷ ଦ୍ରଷ୍ଟବ୍ୟ** :—କରର ସମାଯୋଜନ କରିବାର ଆବଶ୍ୟକତା ନାହିଁ ।

(I. C. W. A. Inter ପରୀକ୍ଷାର ପ୍ରଶ୍ନାବଳୀରୁ ଗୃହୀତ)

( ଉତ୍ତର :— ଉଦ୍‌ବୃତ୍ତ ପତ୍ରର ମୋଟ—୧,୯୩,୦୦୦ ଟଙ୍କା )

୧୮ । ନିମ୍ନଲିଖିତ ଖତିୟାନ ହିସାବର ବାକୀରୁ ୧୯୫୬ ସାଲ ମାର୍ଚ୍ଚ ୩୧ ତାରିଖରେ ଶେଷ ହେଉଥିବା ବର୍ଷର ମୋଟ ଓ ନିଟ୍ ଲାଭ ଓ କ୍ଷତି ହିସାବ ଏବଂ ସେହି ତାରିଖର ଉଦ୍ବୃତ୍ତ ପତ୍ର ପ୍ରସ୍ତୁତ କର :

| | | | ଟଙ୍କା |
|---|---|---|---|
| ଏମ୍ ମିର୍ଜାଙ୍କର ମୂଳଧନ ହିସାବ | — | — | ୧,୧୯,୪୦୦ |
| ଏମ୍ ମିର୍ଜାଙ୍କର ଉଠାଣ ହିସାବ | — | — | ୧୦,୫୫୦ |
| ବିବିଧ ମହାଜନ | — | — | ୫୯,୭୩୦ |
| ୬% ଋଣ ହିସାବ (ଜମା) | — | — | ୨୦,୦୦୦ |
| ନଗଦ ତହବିଲ | — | — | ୩,୦୩୦ |
| ବ୍ୟାଙ୍କ୍‌ରେ ଗଚ୍ଛିତ ତହବିଲ | — | — | ୧୮,୯୬୦ |
| ବିବିଧ ଖାତକ (ବଦ୍ରି ଦାସଙ୍କର ଅମାନ୍ୟକୃତ ୧,୦୦୦ ଟଙ୍କାର ହୁଣ୍ଡି ସମେତ) | | — | ୬୨,୦୦୦ |
| ପ୍ରାପ୍ୟ ହୁଣ୍ଡି | — | — | ୯,୫୦୦ |
| ଅନିଶ୍ଚିତ ଋଣର ସଞ୍ଚିତ | — | — | ୨,୫୦୦ |
| ଆସ୍‌ବାବ୍ ପତ୍ର | — | — | ୮,୯୬୦ |
| ଯନ୍ତ୍ରପାତି | — | — | ୨୮,୮୦୦ |
| ସମ୍ଭାର (୧-୪-୧୯୫୫) | — | — | ୮୯,୭୮୦ |
| କ୍ରୟ | — | — | ୨,୫୭,୫୯୦ |
| ଉତ୍ପାଦୀ ମଜୁରି | — | — | ୪୦,୯୬୦ |
| ବିକ୍ରୟ | — | — | ୩,୫୭,୪୩୦ |
| ଅନ୍ତର୍ମୁଖୀ ଫେରସ୍ତ | — | — | ୨,୭୮୦ |
| ବେତନ ଓ ମଜୁରି | — | — | ୧୧,୦୦୦ |
| ଘରଭଡ଼ା ଓ କର | — | — | ୫,୭୨୦ |
| ସୁଧ ଓ ବଟା (ଦାସ୍ତୀ) | — | — | ୫,୮୬୦ |
| ଗସ୍ତ ଖର୍ଚ୍ଚ | — | — | ୧,୮୮୦ |
| ମରାମତି ଓ ନବୀକରଣ | — | — | ୩,୩୬୦ |
| ବୀମା (ବାର୍ଷିକ ୩୦୦ ଟଙ୍କା, ୧୯୫୬ ସାଲ ସେପ୍ଟେମ୍ବର ୩୦ ତାରିଖ ସୁଦ୍ଧା ପ୍ରିମିୟମ୍ ଦିଆଯାଇଛି) | | — | ୪୦୦ |
| ଅନାଦେୟ ଋଣ | — | — | ୩,୭୨୦ |
| ପ୍ରାପ୍ତ କମିଶନ | — | — | ୫,୭୪୦ |

୧୯୫୭ ସାଲ ମାର୍ଚ୍ଚ ୩୧ ତାରିଖରେ ସମ୍ଭାରର ମୂଲ୍ୟ ୧,୨୮,୯୬୦ ଟଙ୍କା ଥିଲା । ବଦ୍ରି ଦାସଙ୍କର ଅମାନ୍ୟକୃତ ହୁଣ୍ଡି ବାବଦ ଟଙ୍କାର ଅର୍ଦ୍ଧେକ ପରିମାଣ ବାଦ୍ ଦିଅ । ବିବିଧ ଖାତକ ପରିମାଣର ଶତକଡ଼ା ୫ ହାରରେ ସଞ୍ଚିତ ରଖ । ମୂଳଧନ ବାବଦ ୫% ହାରରେ ସୁଧ ଦିଆଯିବ । ହିସାବୀ ମଜୁଦ ମଧ୍ୟରେ ଗତ ବର୍ଷ ଜନୁ କିଣାଯାଇଥିବା ଯନ୍ତ୍ରର ସ୍ଥାପନ ନିମନ୍ତେ ବ୍ୟୟିତ ୧,୨୦୦ ଟଙ୍କା ଅନ୍ତର୍ଭୁକ୍ତ ଅଛି । ଯନ୍ତ୍ରପାତିର ମୋଟ ପରିମାଣରୁ ୫% ହାରରେ ଓ ଆସବାବ୍ ପତ୍ରର ମୋଟ ପରିମାଣରୁ ୧୦% ହାରରେ ମୂଲ୍ୟ ହ୍ରାସ ବାଦ୍ ଦିଅ । ଅର୍ଜିତ ମାତ୍ର ଅପ୍ରାପ୍ତ କମିଶନ୍‌ର ପରିମାଣ ୬୦୦ ଟଙ୍କା ଥିଲା । ଋଣର ଗତ ଦୁଇ ମାସର ସୁଧ ଦିଆଯାଇ ନାହିଁ ।

(I. C. W. A. Inter ପରୀକ୍ଷାର ପ୍ରଶ୍ନାବଳୀରୁ ଗୃହୀତ)

(ଉତ୍ତର :— ନିଟ୍ ଲାଭ ୬୧,୬୧୮ ଟଙ୍କା ଓ ଉଦ୍‌ବୃତ୍ତ ପତ୍ରର
ମୋଟ ୨୫୭, ୨୬୮ ଟଙ୍କା)

୧୯ । ଗୋଟିଏ ବ୍ୟବସାୟିକ ପ୍ରତିଷ୍ଠାନରେ ୧୯୬୨ ସାଲ ଜାନୁୟାରୀ ୧ ତାରିଖରେ ନିମ୍ନଲିଖିତ ଖତିୟାନ ହିସାବ ବାକି ଥିଲା :

| | | | ଟଙ୍କା |
|---|---|---|---|
| ଅନାଦେୟ ଓ ଅନିଶ୍ଚିତ ଋଣର ସଞ୍ଚିତ | — | — | ୫୦୦ |
| ସୁ-ଖାତକଙ୍କ ଦେୟ ବଟ୍ଟାର ସଞ୍ଚିତ | — | — | ୨୫୦ |
| ମହାଜନଙ୍କଠାରୁ ପ୍ରାପ୍ୟ ବଟ୍ଟାର ସଞ୍ଚିତ | — | — | ୪୦୦ |

ବର୍ଷ ମଧ୍ୟରେ ଅନାଦେୟ ଋଣର ପରିମାଣ ୪୦୦ ଟଙ୍କା; ପ୍ରଦତ୍ତ ବଟ୍ଟାର ପରିମାଣ ୫୦୦ ଟଙ୍କା ଓ ପ୍ରାପ୍ତ ବଟ୍ଟାର ପରିମାଣ ୪୮୦ ଟଙ୍କା ଥିଲା । ୧୯୬୩ ସାଲରେ ୨୫୦ ଟଙ୍କାର ଅନାଦେୟ ଋଣ ବାଦ୍ ଦିଆଯାଇଥିଲା, ବଟ୍ଟା ବାବଦ ୬୫୦ ଟଙ୍କା ଦିଆଯାଇଥିଲା ଓ ୫୦ ଟଙ୍କା ମିଳିଥିଲା । ୧୯୬୨ ସାଲ ଡିସେମ୍ବର ୩୧ ତାରିଖରେ ବିବିଧ ଖାତକଙ୍କର ମୋଟ ପରିମାଣ ୧୪,୦୦୦ ଟଙ୍କା ଓ ୧୯୬୩ ସାଲ ଡିସେମ୍ବର ୩୧ ତାରିଖରେ ୧୦,୦୦୦ ଟଙ୍କା ଥିଲା। ଏହି ଦୁଇ ତାରିଖରେ ବିବିଧ ମହାଜନଙ୍କର ମୋଟ ପରିମାଣ ଯଥାକ୍ରମେ ୭,୦୦୦ ଟଙ୍କା ଓ ୯,୦୦୦ ଟଙ୍କା ଥିଲା ।

ଏହି ପ୍ରତିଷ୍ଠାନରେ ଅନାଦେୟ ଓ ଅନିଶ୍ଚିତ ଋଣର ପାଣ୍ଠି ବିବିଧ ଖାତକ ପରିମାଣର ୫% ହାରରେ, ସୁ-ଖାତକମାନଙ୍କୁ ଦେୟ ବଟାର ସଞ୍ଚିତ ୩% ହାରରେ ଓ ମହାଜନଙ୍କ ଠାରୁ ପ୍ରାପ୍ୟ ବଟାର ସଞ୍ଚିତ ବିବିଧ ମହାଜନ ପରିମାଣର ୨% ହାରରେ ରଖାଯାଏ ୧୯୭୨ ଓ ୧୯୭୩ ସାଲ ସକାଶେ ବିଭିନ୍ନ ସଞ୍ଚିତ ହିସାବ ପ୍ରସ୍ତୁତ କର ।

୨୦ । ନିମ୍ନଲିଖିତ ବିଷୟଗୁଡ଼ିକ ନିମନ୍ତେ ସମାଯୋଜନ ରୋଜନାମା ପ୍ରସ୍ତୁତ କର :

(କ) ନୂତନ ଯନ୍ତ୍ରର ସ୍ଥାପନ ନିମନ୍ତେ ବ୍ୟୟିତ ମଜୁରି ବାବଦ ୮୦୦ ଟଙ୍କା ମଜୁରି ହିସାବର ଡାହାଣ ପାର୍ଶ୍ୱରେ ଅନ୍ତର୍ଭୁକ୍ତ ହୋଇଛି ।

(ଖ) ପୁରାତନ ଯନ୍ତ୍ର କ୍ରୟ କରି ତାହାକୁ ବିଶେଷ ଭାବରେ ମରାମତି କରି କାର୍ଯ୍ୟକ୍ଷମ କରିବା ନିମନ୍ତେ ୪,୫୦୦ ଟଙ୍କା ବ୍ୟୟିତ ହେଲା । ଏହି ପରିମାଣର ଅର୍ଦ୍ଧ

(ମରାମତି ହିସାବର ଡାହାଣ ପାର୍ଶ୍ୱରେ ଅନ୍ତର୍ଭୁକ୍ତ ହୋଇଛି । )

(ଗ) ୫୦୦ ଟଙ୍କାର ପଣ୍ୟ ଦ୍ରବ୍ୟ ବ୍ୟବସାୟର ମାଲିକ ନିଜ ବ୍ୟବହାର ସକାଶେ ଘରକୁ ନେଇଛନ୍ତି ।

(ଘ) ସମ୍ଭାରର ମୋଟ ପରିମାଣରୁ ୮,୫୦୦ ଟଙ୍କା ଅଗ୍ନିକାଣ୍ଡ ଯୋଗୁଁ ବିନଷ୍ଟ ହୋଇଛି; ତନ୍ମଧ୍ୟରୁ ବୀମା କମ୍ପାନୀ ୫,୦୦୦ ଟଙ୍କାର ଦାବୀ ସ୍ୱୀକାର କରିଛନ୍ତି ।

(ଙ) ବ୍ୟବସାୟର ମାଲିକ ତାଙ୍କର ବାସଗୃହର କେତେକାଂଶ ବ୍ୟବସାୟର ବ୍ୟବହାର ନିମନ୍ତେ ଛାଡ଼ି ଦେଇଛନ୍ତି ଓ ଏହା ସକାଶେ ତାଙ୍କୁ ୪୦୦ ଟଙ୍କା ଘରଭଡ଼ା ବାବଦ ଦେବାକୁ ପଡ଼ିବ ।

(ଚ) ବ୍ୟବସାୟ ପ୍ରତିଷ୍ଠାନର ଗୃହରେ ସ୍ଥାୟୀ ରଙ୍ଗକାମ କରିବା ନିମନ୍ତେ ୧,୨୫୦ ଟଙ୍କା ଲାଗିଲା, କିନ୍ତୁ ରଙ୍ଗ ମିସ୍ତ୍ରୀକୁ ଏ ପର୍ଯ୍ୟନ୍ତ ଟଙ୍କା ଦିଆଯାଇ ନାହିଁ, ଅବଶ୍ୟ ତାଙ୍କୁ ୨୦୦ ଟଙ୍କାର ରଙ୍ଗ ଖରିଦ୍ କରି ଦିଆଯାଇଅଛି ।

୨୧ । ନିମ୍ନଲିଖିତ ଖଣ୍ଡସ୍ଥାନ ହିସାବର ବାକିଗୁଡ଼ିକ ଦୁର୍ଲଭ ଦାସଙ୍କର ହିସାବ ଖାତାରୁ ଉଦ୍ଧୃତ ହୋଇଛି । ତହିଁରୁ ତାଙ୍କର ବ୍ୟବସାୟର ୧୯୭୨ ସାଲ ଡିସେମ୍ବର ୩୧ ତାରିଖରେ ଶେଷ ହେଉଥିବା ବର୍ଷର ମୋଟ ଓ ନିଟ୍ ଲାଭ ଓ କ୍ଷତି ହିସାବ ଓ ସେହି ତାରିଖର ଉଦ୍‌ବୃତ୍ତ ପତ୍ର ପ୍ରସ୍ତୁତ କର ।

୩୧-୧୨-୧୯୭୨ ତାରିଖର ବାକି

| | | | ଟଙ୍କା |
|---|---|---|---|
| ଦୁର୍ଲଭ ଦାସଙ୍କର ମୂଳଧନ | — | — | ୨୦,୦୦୦ |
| ଦୁର୍ଲଭ ଦାସଙ୍କର ଉଠାଣ | — | — | ୩,୦୦୦ |
| ଆସ୍‌ବାବ୍ | — | — | ୩,୦୦୦ |
| ବ୍ୟାଙ୍କ୍‌ରୁ ଅଧିକା ଉଠାଣ | — | — | ୪,୫୦୦ |
| ବିବିଧ ମହାଜନ | — | — | ୧୧,୨୦୦ |
| ଇମାରତ୍ | — | — | ୩୯,୦୦୦ |
| ସମ୍ଭାର (୧-୧-୧୯୭୨) | — | — | ୧୨,୩୦୦ |
| ବିବିଧ ଖାତକ | — | — | ୧୪,୮୦୦ |
| ପ୍ରାପ୍ତ ଘରଭଡ଼ା | — | — | ୯୦୦ |
| କ୍ରୟ | — | — | ୮୮,୫୦୦ |
| ବିକ୍ରୟ | — | — | ୧,୪୦,୦୦୦ |
| ଅନ୍ତର୍ମୁଖୀ ଫେରସ୍ତ | — | — | ୧,୨୦୦ |
| ବଟା-ଦାୟୀ | — | — | ୪୩୦ |
| ବଟା-ଦାତା | — | — | ୬୪୦ |
| କର ଓ ବୀମା | — | — | ୨,୨୦୦ |
| ସାଧାରଣ ବ୍ୟୟ | — | — | ୪,୧୧୦ |
| ବେତନ | — | — | ୭,୬୦୦ |
| କମିଶନ - ଦାୟୀ | — | — | ୪୫୦ |
| ଅନ୍ତର୍ମୁଖୀ ଗାଡ଼ିଭଡ଼ା | — | — | ୧,୫୫୦ |
| ଅନିଶ୍ଚିତ ଋଣର ସଞ୍ଚିତି | — | — | ୫୦୦ |
| ଅନାଦେୟ ଋଣ ବାଦ୍ ଦିଆଯାଇଛି | — | — | ୬୦୦ |

**ସମାଯୋଜନ ଆବଶ୍ୟକ :**

୩୧-୧୨-୧୯୭୨ ତାରିଖରେ ଅନ୍ତ୍ୟ ସମ୍ଭାରର ମୂଲ୍ୟ ୧୬,୭୦୦ ଥିଲା । ଇମାରତ ପରିମାଣରୁ ୫% ହାରରେ ଓ ଆସ୍‌ବାବ୍‌ରୁ ୧୦%

ହାରରେ ମୂଲ୍ୟ ହ୍ରାସ ବାଦ୍ ଦିଅ । ଅନିଶ୍ଚିତ ଋଣର ସଞ୍ଚିତ ବିବିଧ ଖାତକ ପରିମାଣର ୫% ହାରରେ ରଖାଯିବ । ମୂଳଧନ ଉପରେ ୫% ହାରରେ ସୁଧ ଦିଆଯିବ । ବୀମାର ପ୍ରିମିୟମ୍ ବାବଦ ୨୦୦ ଟଙ୍କା ଅଗ୍ରିମ ଦିଆ ଯାଇଛି । ମାସିକ ୭୫ ଟଙ୍କା ହାରରେ ୧୯୭୩ ସାଲ ଫେବୃଆରୀ ମାସ ଶେଷ ପର୍ଯ୍ୟନ୍ତ ଘରଭଡ଼ା ମିଳିଛି । ବେତନ ବାବଦ ୬୦୦ ଟଙ୍କା ବାକି ଅଛି । କମିଶନ ବାବଦ ୫୫୦ ଟଙ୍କା ପ୍ରାପ୍ୟ ଅଛି । ବାର୍ଷିକ ଶତକଡ଼ା ୮ ହାରରେ ବ୍ୟାଙ୍କରୁ ଅଧିକା ଉଠାଣ ଟଙ୍କାର ୬ ମାସର ସୁଧ ବାକି ଅଛି ।

(ଉତ୍ତର—ମୋଟ ଲାଭ, ୫୩, ୧୫୦ ଟଙ୍କା, ନିଟ୍ ଲାଭ, ୩୬,୬୩୦ ଟଙ୍କା ଓ ଉଦ୍ବୃତ୍ତ ପତ୍ରର ମୋଟ ୭୧, ୨୬୦ ଟଙ୍କା ।)

୨୨ । ଶ୍ରୀ ଗୌରମୋହନ ଗୁରୁଙ୍କର ହିସାବ ଖାତାରୁ ଉଦ୍ଧୃତ ନିମ୍ନଲିଖିତ ଖତିୟାନ ହିସାବଗୁଡ଼ିକର ବାକିରୁ ତାଙ୍କ ବ୍ୟବସାୟର ୧୯୭୩ ମାର୍ଚ୍ଚ ୩୧ ତାରିଖରେ ଶେଷ ହେଉଥିବା ବର୍ଷର ମୋଟ ଓ ନିଟ୍ ଲାଭ ଓ କ୍ଷତି ହିସାବ ଓ ସେହି ତାରିଖର ଉଦ୍ବୃତ୍ତ ପତ୍ର ପ୍ରସ୍ତୁତ କର ।

| | | | ଟଙ୍କା |
|---|---|---|---|
| ମୂଳଧନ | — | — | ୩୫,୦୦୦ |
| ଉଠାଣ | — | — | ୫,୦୦୦ |
| ବିବିଧ ମହାଜନ | — | — | ୮,୬୦୦ |
| ଦେୟ ହୁଣ୍ଡି | — | — | ୧,୨୦୦ |
| ପ୍ରାପ୍ୟ ହୁଣ୍ଡି | — | — | ୩,୪୦୦ |
| ସାଧାରଣ ପାଣ୍ଠି | — | — | ୬,୦୦୦ |
| ଅନିଶ୍ଚିତ ଋଣର ସଞ୍ଚିତ | — | — | ୮୦୦ |
| ନିଟ୍ ଲାଭ ଓ କ୍ଷତି ହିସାବର ଦାତା ବାକି (୨-୪-୧୯୭୬ | | — | ୫୦୦ |
| ବିକ୍ରୟ | — | — | ୬୭,୯୦୦ |
| ପ୍ରଦତ୍ତ ବଟା | — | — | ୪୩୦ |
| କ୍ରୟ | — | — | ୩୮,୩୦୦ |
| ସମ୍ଭାର (୧-୪-୧୯୭୨) | — | — | ୧୨,୫୬୦ |
| ପ୍ରାପ୍ତ ବଟା | — | — | ୬୯୦ |
| ଜମି ଜାଗା | — | — | ୧୨,୦୦୦ |
| ଯନ୍ତ୍ରପାତି ଓ ଆସ୍‌ବାବ୍ | — | — | ୧୪,୦୦୦ |

| | | | ଟଙ୍କା |
|---|---|---|---|
| ଅବଧି ଖାତକ | — | — | ୧୫,୩୦୦ |
| ବ୍ୟାଙ୍କ୍ ହିସାବର ବାକି (ଦାୟୀ) | — | — | ४,୫୦୦ |
| ଅର୍ଥର ବିନିଯୋଗ : ४% ସରକାରୀ ଋଣ | | — | ୫,୦୦୦ |
| ବେତନ ଓ ମଜୁରି | — | — | ୧୦,୭୨୦ |
| ପରୀକ୍ଷକଙ୍କର ଫିସ୍ | — | — | ୧,୫୦୦ |
| ଦପ୍ତର ଖର୍ଚ୍ଚ | — | — | ୧,୮୦୦ |
| ମରାମତି ଓ ନବୀକରଣ | — | — | ୧,୨୦୦ |
| ପ୍ରାପ୍ତ ସୁଧ | — | — | ୧୦୦ |
| ଆଦାୟୀକୃତ ଅନାଦେୟ ଋଣ | — | — | ୫୦୦ |
| ବହିର୍ମୁଖୀ ଫେରସ୍ତ | — | — | ४,୩୭୦ |

୩୧-୩-୧୯୭୩ ତାରିଖରେ ଅନ୍ତ୍ୟ ସମ୍ଭାରର ମୂଲ୍ୟ ୧୬,୭୦୦ ଟଙ୍କା ଥିଲା । ଅନାଦେୟ ଋଣର ପରିମାଣ ୩୦୦ ଟଙ୍କା ଥିଲା । ଜମି ଓ କୋଠା ପରିମାଣରୁ ଶତକଡ଼ା ବାର୍ଷିକ ୨ ହାରରେ ଓ ଯନ୍ତ୍ରପାତି ଓ ଆସ୍‌ବାବ୍‌ର ପରିମାଣରୁ ଶତକଡ଼ା ବାର୍ଷିକ ୫ ହାରରେ ମୂଲ୍ୟ ହ୍ରାସ ବାଦ୍ ହେଉ । ସରକାରୀ ଋଣ ବାବଦ ୬ ମାସର ସୁଧ ବାକି ଅଛି । ଏହି ପ୍ରତିଷ୍ଠାନର ନିୟମାନୁଯାୟୀ ପ୍ରତି ନିଟ୍ ଲାଭରୁ ୩,୦୦୦ ଟଙ୍କା ସାଧାରଣ ପାଣ୍ଠିରେ ଜମା ହେବ । ଅନିଶ୍ଚିତ ଋଣର ସଞ୍ଚିତି ଅବଧି ଖାତକ ପରିମାଣର ୫% ହାରରେ ରଖାଯିବ । ବ୍ୟବସାୟର ମାଲିକ ୧,୦୦୦ ଟଙ୍କାର ମାଲ ଘର ଖର୍ଚ୍ଚ ପାଇଁ ନେଇଛନ୍ତି ।

(ଉତ୍ତର—ମୋଟ ଲାଭ, ୩୯,୦୦୦ ଟଙ୍କା, ନିଟ୍ ଲାଭ, ୨४,୧୧୦ ଟଙ୍କା ଓ ଉଦ୍‌ବୃତ୍ତ ପତ୍ରର ମୋଟ, ୬୮,୯୧୦ ଟଙ୍କା ।)

୨୩ । ନିମ୍ନଲିଖିତ ବାକୀ ମେଳ ଶ୍ରୀ ବିଜୟ ମହାନ୍ତିଙ୍କର ହିସାବ ଖାତାରୁ ୧୯୭୨ ସାଲ ଡିସେମ୍ବର ୩୧ ତାରିଖରେ ଉଦ୍ଧୃତ କରାଯାଇଛି । ସମାଯୋଜନ ନିମନ୍ତେ ରୋଜନାମା, ୧୯୭୨ ସାଲ ଡିସେମ୍ବର ୩୧ ତାରିଖରେ ଶେଷ ହେଉଥିବା ବର୍ଷର ମୋଟ ଓ ନିଟ୍ ଲାଭ ଓ କ୍ଷତି ହିସାବ ଏବଂ ସେହି ତାରିଖର ଉଦ୍‌ବୃତ୍ତ ପତ୍ର ପ୍ରସ୍ତୁତ କର ।

| | ଦାୟୀ | ଦାତା |
|---|---|---|
| | ଟଙ୍କା | ଟଙ୍କା |
| ବିଜୟ ମହାନ୍ତିଙ୍କର ମୂଳଧନ | | ୭୦,୦୦୦ |
| ଆଦ୍ୟ ସମ୍ଭାର (୧-୧-୭୨) | ୧୮,୯୦୦ | |

| | ଡେବିଟ ଟଙ୍କା | କ୍ରେଡିଟ ଟଙ୍କା |
|---|---|---|
| ବିକ୍ରୟ ଓ ବିକ୍ରୟ ଫେରସ୍ତ | ୪,୩୦୦ | ୧,୨୫,୦୦୦ |
| କ୍ରୟ ଓ କ୍ରୟ ଫେରସ୍ତ | ୮୦,୮୦୦ | ୫,୨୦୦ |
| ପରିବହନ (ଅନ୍ତର୍ମୁଖୀ) | ୮,୨୦୦ | |
| ଘରଭଡ଼ା ଓ କର | ୩,୬୦୦ | |
| ବେତନ ଓ ମଜୁରି | ୫,୭୦୦ | |
| ବିବିଧ ଖାତକ ଓ ମହାଜନ | ୨୫,୩୦୦ | ୯,୫୦୦ |
| ବ୍ୟାଙ୍କ ଋଣ—ସୁଧ ୭% ହାରରେ | | ୧୦,୦୦୦ |
| ବ୍ୟାଙ୍କକୁ ପ୍ରଦତ୍ତ ସୁଧ | ୪୦୦ | |
| ଛପେଇ ଓ ବିଜ୍ଞାପନ | ୭,୨୦୦ | |
| ବିନିଯୁକ୍ତ ଅର୍ଥରୁ ଆୟ | | ୩୦୦ |
| ବ୍ୟାଙ୍କରେ ଗଚ୍ଛିତ ତହବିଲ | ୭,୦୦୦ | |
| ପ୍ରାପ୍ୟ ଓ ଦେୟ ବଟା | ୫,୪୦୦ | ୩,୨୦୦ |
| ବିନିଯୁକ୍ତ ଅର୍ଥ | ୧୭,୦୦୦ | |
| ଆସବାବ ପତ୍ର | ୨,୫୦୦ | |
| ସାଧାରଣ ବ୍ୟୟ | ୩,୨୫୦ | |
| ସମୀକ୍ଷକଙ୍କର ଫିସ, | ୮୦୦ | |
| ବୀମା | ୫୦୦ | |
| ଗସ୍ତ ଖର୍ଚ୍ଚ | ୧,୨୦୦ | |
| ଡାକ ଓ ତାର ଖର୍ଚ୍ଚ | ୪୦୦ | |
| ନଗଦ ତହବିଲ | ୫୫୦ | |
| ବିକାଶଙ୍କଠାରେ ଗଚ୍ଛିତ | ୧୫,୦୦୦ | |
| ଉଠାଣ ହିସାବ | ୬,୫୦୦ | |
| ପ୍ରାପ୍ୟ ହୁଣ୍ଡି | ୧୦,୭୦୦ | |
| | ୨,୨୩,୨୦୦୦ | ୨,୨୩,୨୦୦ |

୧୯୭୨ ସାଲ ଡିସେମ୍ବର ୩୧ ତାରିଖରେ ଅନ୍ତ୍ୟ ସମ୍ଭାରର ମୂଲ୍ୟ ୨୫,୮୦୦ ଟଙ୍କା ଥିଲା । ନିମ୍ନଲିଖିତ ବିଷୟଗୁଡ଼ିକ ସକାଶେ ସମାଯୋଜନ ଆବଶ୍ୟକ :—

(କ) ବିବିଧ ଖାତକ ପରିମାଣ ମଧ୍ୟରେ ଶ୍ରୀ କୃଷ୍ଣଚନ୍ଦ୍ର ପୃଷ୍ଟିଙ୍କଠାରୁ ପ୍ରାପ୍ୟ ୨,୫୦୦ ଟଙ୍କା ଅନ୍ତର୍ଭୁକ୍ତ ଅଛି ଓ ବିବିଧ ମହାଜନ ପରିମାଣ ମଧ୍ୟରେ ଶ୍ରୀ ପୃଷ୍ଟିଙ୍କୁ ଦେୟ ୧,୫୦୦ ଟଙ୍କା ଅନ୍ତର୍ଭୁକ୍ତ ଅଛି ।

(ଖ) ବିଜ୍ଞାପନ ଖର୍ଚ୍ଚର ଏକ ତୃତୀୟାଂଶ ଆସନ୍ତା ବର୍ଷ ହିସାବକୁ ନିଆଯିବ ।

(ଗ) ଖାତକ ପରିମାଣର ଶତକଡ଼ା ୫ ହିସାବରେ ଅନିଶ୍ଚିତ ଋଣର ସଞ୍ଚିତ ଗଢ଼ାଯିବ ଓ ଶତକଡ଼ା ୨ ହିସାବରେ ଖାତକଙ୍କୁ ଦେୟ ବଟାର ସଞ୍ଚିତ ଗଢ଼ାଯିବ ।

(ଘ) ଆସ୍‌ବାବ୍ ପତ୍ର ପରିମାଣରୁ ଶତକଡ଼ା ୧୦ ହାରରେ ମୂଲ୍ୟ ହ୍ରାସ ବାଦ୍ ଦିଆଯିବ ।

(ଙ) ମଜୁରି ବାବଦ ୨୦୦ ଟଙ୍କା, ବେତନ ବାବଦ ୩୦୦ ଟଙ୍କା ସାଧାରଣ ବ୍ୟୟ ବାବଦ ୨୫୦ ଟଙ୍କା ଦିଆଯାଇ ନାହିଁ ।

(ଚ) ବୀମାର ପ୍ରିମିୟମ ବାବଦ ୧୦୦ ଟଙ୍କା ଅଗ୍ରିମ ଦିଆଯାଇଛି ।

(ଛ) ଗୋଟିଏ ଆସ୍‌ବାବ୍ ଯାହାର ମୂଲ୍ୟ ୧-୧-୭୨ ତାରିଖରେ ୫୦୦ ଟଙ୍କା ଥିଲା ତାହା ୨୫୦ ଟଙ୍କାରେ ଜଣେ ଆସ୍‌ବାବ୍ ବିକ୍ରେତାଙ୍କୁ ୧-୭-୭୨ ତାରିଖରେ ବଦଳ ଦିଆଯାଇ ଗୋଟିଏ ନୂତନ ଆସ୍‌ବାବ୍ ୪୫୦ ଟଙ୍କା ମୂଲ୍ୟରେ ଅଣାଗଲା । ନଟ୍ ୨୦୦ ଟଙ୍କା ହିସାବରେ ଗୋଟିଏ ସୂଜନ କ୍ରୟ ହିସାବ ବହିରେ ଅନ୍ତର୍ଭୁକ୍ତ ହୋଇଛି ।

(ଜ) ଯଥାକ୍ରମେ ୨୩୦ ଟଙ୍କା ଓ ୩୫୦ ଟଙ୍କା ହିସାବରେ ଦୁଇଟି ଚେକ୍ ଅମାନ୍ୟକୃତ ହୋଇ ଫେରି ଆସିଛି, ମାତ୍ର ତାହା ରୋକଡ଼ ବହିରେ ଲିପିବଦ୍ଧ ହୋଇନାହିଁ । ପ୍ରଥମ ଚେକ୍ ବାବଦ ଟଙ୍କା ଆଦାୟ ହୋଇ ପାରିବ ନାହିଁ ବୋଲି ଜଣାଯାଇଛି ଓ ଦ୍ୱିତୀୟ ଚେକ୍ ବାବଦ ଟଙ୍କାର କେବଳ ଶତକଡ଼ା ୧୦ ଆଦାୟ ହୋଇ ପାରିବ ବୋଲି ଅନୁମାନ କରାଯାଇଛି ।

(ଝ) ମାଲିକଙ୍କର ଘର ଖର୍ଚ୍ଚ ପାଇଁ କ୍ରୟ କରାଯାଇଥିବା ୫୦୦ ଟଙ୍କାର ପଣ୍ୟ ଦ୍ରବ୍ୟ କ୍ରୟ ହିସାବ ଅନ୍ତର୍ଭୁକ୍ତ ହୋଇଛି ।

(ଞ) ବଜାଣଙ୍କଠାରେ ଗଚ୍ଛିତ ଟଙ୍କା ବାବଦ ଶତକଡ଼ା ବାର୍ଷିକ ୮ ହାରରେ ପୂରା ବର୍ଷର ସୁଧ ମିଳନାହିଁ ।

(ଟ) ବ୍ୟାଙ୍କ୍ ଋଣ ବାବଦ ୪ ମାସର ସୁଧ ଦିଆଯାଇ ନାହିଁ ।

(ଠ) ବିନିଯୁକ୍ତ ଅର୍ଥର ଆୟ ବାବଦ ୮୨୦ ଟଙ୍କା ଅର୍ଜିତ ହୋଇଛି, ମାତ୍ର ଅପ୍ରାପ୍ତ ଅଛି ।

(ଉତ୍ତର—ମୋଟ ଲାଭ, ୪୪,୫୦୦ ଟଙ୍କା, ନିଟ୍ ଲାଭ, ୨୧,୬୩୭ ଟଙ୍କା ଓ ଉଦ୍ବର୍ତ୍ତ ପତ୍ରର ମୋଟ, ୧,୦୬,୬୮୭ ଟଙ୍କା ।)

(ଦ୍ରଷ୍ଟବ୍ୟ :—(୧) ବ୍ୟାଙ୍କ୍ ହିସାବର ବାକିରୁ ଦୁଇଟି ଅମାନ୍ୟକୃତ ଚେକ୍ ବାବଦ ୬୦୦ ଟଙ୍କା ବାଦ୍ ଦିଆଗଲା ଓ ତାହା ବିବିଧ ଖାତକ ପରିମାଣରେ ଯୋଗ କରାଗଲା । ତହିଁରୁ ଏହି ଦୁଇ ଚେକ୍ ବାବଦ ଅନାଦାୟୀ ଋଣ ୧୫୦+୩୫୦ −୩୫=୪୬୫ ଟଙ୍କା ବାଦ୍ ଦିଆଯାଇଛି; ତହିଁରୁ ପୁଣି କୃଷ୍ଣଚନ୍ଦ୍ର ପୃଷ୍ଟିଙ୍କର ୧,୫୦୦ ଟଙ୍କା ବାଦ୍ ଦେଇ ମୋଟ ଖାତକର ପରିମାଣ ୨୩,୮୩୫ ଟଙ୍କା ହେଲା । ତାହାର ୫% ୧,୧୯୨ ଟଙ୍କା ଅନିଶ୍ଚିତ ଋଣର ସଞ୍ଚିତ ତହିଁରୁ ବାଦ୍ ଦିଆଯାଇ ୨୨,୬୪୩ ଟଙ୍କାର ୨% ଦେୟ ବଟାର ସଞ୍ଚିତ, ୪୫୩ ଟଙ୍କା ରଖାଯାଇଛି । (୨) ଆସ୍ବାବ୍‌ରୁ ୨୫୦ ଟଙ୍କା କ୍ଷତି ବାବଦ ବାଦ୍ ଦିଆଯାଇଛି ଓ ୨୦୦ ଟଙ୍କା ଯୋଗ କରାଯାଇଛି; ୨,୦୦୦ ଟଙ୍କାର ୬ ମାସର ମୂଲ୍ୟ ହ୍ରାସ ଓ ୨,୪୫୦ ଟଙ୍କାର ୬ ମାସର ମୂଲ୍ୟ ହ୍ରାସ ବାଦ୍ ଦିଆଯାଇଛି । (୩) କ୍ରୟରୁ ଆସ୍ବାବ୍ ବାବଦ ୨୦୦ ଟଙ୍କା ଓ ମାଲିକଙ୍କ ସକାଶେ କ୍ରୟ କରାଯାଇଥିବା ୫୦୦ ଟଙ୍କା ବାଦ୍ ଦିଆଯାଇଛି । (୪) ବିବିଧ ମହାଜନ ପରିମାଣରୁ କୃଷ୍ଣଚନ୍ଦ୍ର ପୃଷ୍ଟିଙ୍କର ୧,୫୦୦ ଟଙ୍କା ବାଦ୍ ଦିଆଯାଇଛି ।)

୨୪ । 'ଏକ୍ସ୍'ଙ୍କର ହିସାବ ରକ୍ଷକ ୩୧-୧୦-୫୧ ତାରିଖରେ ପ୍ରସ୍ତୁତ କରିଥିବା ବାକି ମେଳ ନିମ୍ନରେ ପ୍ରଦତ୍ତ ହେଲା । ୩୧-୧୦-୫୧ ତାରିଖରେ ଶେଷ ହେଉଥିବା ବର୍ଷର ମୋଟ ଓ ନିଟ୍ ଲାଭ ଓ କ୍ଷତି ହିସାବ ଏବଂ ସେହି ତାରିଖର ଉଦ୍ବର୍ତ୍ତ ପତ୍ର ପ୍ରସ୍ତୁତ କର । କିନ୍ତୁ ବାକି ମେଳକୁ ପରୀକ୍ଷା କରିବାରୁ ନିମ୍ନଲିଖିତ ତ୍ରୁଟି ଥିବାର ତୁମେ ଲକ୍ଷ୍ୟ କରିଛ ଏବଂ ତାହା ବ୍ୟତୀତ ନିମ୍ନଲିଖିତ ବିଷୟର ସମଯୋଜନ ଆବଶ୍ୟକ :

(କ) ଉଠାଣ ହିସାବକୁ ଦାୟୀ କରାଯାଇଥିବା ୫୦୦ ଟଙ୍କା ସକାଶେ ଆସ୍ବାବ୍ ପତ୍ର ହିସାବକୁ ଦାୟୀ କରାଯିବ ।

(ଖ) କ୍ରୟ ହିସାବକୁ ଦାୟୀ କରାଯାଇଥିବା ୧,୦୦୦ ଟଙ୍କା ସକାଶେ ଇମାରତ ନିର୍ମାଣ ନିମନ୍ତେ କ୍ରୟ କରାଯାଇଥିବା ସାମଗ୍ରୀ ହିସାବକୁ ଦାୟୀ କରାଯାଇ-ଥାଆନ୍ତା ।

(ଗ) ଏକସ୍ ନଗଦ ଦେଇଥିବା ୧୦୦ ଟଙ୍କା ସକାଶେ ବିକ୍ରୟ ହିସାବକୁ ଦାତା କରାଯାଇଛି ।

(ଘ) ଇମାରତର ମୋଟ ପରିମାଣରୁ ୨½% ଏବଂ ଆସ୍ବାବ୍ ପତ୍ରର ମୋଟ ପରିମାଣରୁ ୬% ହାରରେ ମୂଲ୍ୟ ହ୍ରାସ ବାଦ୍ ଦିଅ ।

(ଙ) ଅନାଦେୟ ଋଣ ବାବଦ ୧୦୦ ଟଙ୍କା ବାଦ୍ ଦିଆଯିବ ।

(ଚ) ବିବିଧ ଖାତକ ପରିମାଣର ୫% ହାରରେ ଅନାଦେୟ ଋଣର ସଞ୍ଚିତ ଓ ବିବିଧ ମହାଜନ ପରିମାଣର ୨½% ହାରରେ ପ୍ରାପ୍ୟ ବଟାର ସଞ୍ଚିତ ଗଢ଼ାଯିବ ।

(ଛ) ବେତନ ବାବଦ ୨୦୦ ଟଙ୍କା ବାକି ଅଛି; କର ୬୦ ଟଙ୍କା ସକାଶେ ଅଗ୍ରିମ ଦିଆଯାଇଛି; ବୀମା ବାବଦ ୧୦୦ ଟଙ୍କା ଅଗ୍ରିମ ଦିଆଯାଇଛି; ଅନ୍ତର୍ମୁଖୀ ଗାଡ଼ିଭଡ଼ା ବାବଦ ୧୦୦ ଟଙ୍କା ବାକି ଅଛି ।

ତ୍ରୁଟିର ସଂଶୋଧନ ଓ ସମାଯୋଜନ କ୍ରମରେ ରୋଜନାମା ପ୍ରସ୍ତୁତ କର ।

୩୧-୧୦-୫୧ ତାରିଖର ବାକି ମେଳ

| | | | ଟଙ୍କା | ଟଙ୍କା |
|---|---|---|---|---|
| ୧ । ମୂଳଧନ ହିସାବ | — | — | | ୫୦,୦୦୦ |
| ୨ । ଚଳନ୍ତି ହିସାବ | — | — | ୧,୫୦୦ | |
| ୩ । ବିକ୍ରୟ | — | — | | ୬,୪୦,୦୦୦ |
| ୪ । ସମାଯୋଜିତ କ୍ରୟ | — | — | ୬,୯୯,୨୦୦ | |
| ୫ । ବେତନ | — | — | ୧,୨୦୦ | |
| ୬ । ଅନ୍ତର୍ମୁଖୀ ପରିବହନ | — | — | ୪୦୦ | |
| ୭ । ବହିର୍ମୁଖୀ ପରିବହନ | — | — | ୫୦୦ | |
| ୮ । ଆଲୋକ | — | — | ୩୦୦ | |
| ୯ । କର ଓ ବୀମା | — | — | ୪୦୦ | |
| ୧୦ । ବଟା | — | — | | ୫୦୦ |
| ୧୧ । ଇମାରତ | — | — | ୩୦,୦୦୦ | |
| ୧୨ । ଆସ୍ବାବ୍ | — | — | ୬,୦୦୦ | |

| | | | ଟଙ୍କା | ଟଙ୍କା |
|---|---|---|---|---|
| ୧୩ । ବିବିଧ ଖାତକ | — | — | ୮,୦୦୦ | |
| ୧୪ । ବିବିଧ ମହାଜନ | — | — | | ୨୦,୦୦୦ |
| ୧୫ । ଖୁଚୁରା ଖରଚ ଜମାରେ ନଗଦ ତହବିଲ | | | ୫୦ | |
| ୧୬ । ବ୍ୟାଙ୍କରେ ଗଚ୍ଛିତ ତହବିଲ | | — | ୧,୭୦୦ | |
| ୧୭ । ସମ୍ଭାର (୩୧-୧୦-୫୧) | | — | ୭୧,୨୫୦ | |
| | | | ୮,୧୦,୫୦୦ | ୮,୧୦,୫୦୦ |

(C. A. First. ପରୀକ୍ଷା ପ୍ରଶ୍ନରୁ ଗୃହୀତ)

(ଉତ୍ତର—ନେଟ୍ ଲାଭ ୩୭,୬୦୦ ଓ ଉଦ୍‌ବୃତ୍ତ ପତ୍ରର ମୋଟ ୧,୦୭,୦୦୦ ଟଙ୍କା)

୨୫ । ଗଙ୍ଗାରାମଙ୍କର ହିସାବ ଖାତାରୁ ଉଦ୍ଧୃତ ବାକି ମେଳରୁ ୧୯୭୨ ସାଲ ମାର୍ଚ୍ଚ ୩୧ ତାରିଖରେ ଶେଷ ହେଉଥିବା ବର୍ଷର ମୋଟ ଓ ନେଟ୍ ଲାଭ ଓ କ୍ଷତି ହିସାବ ଓ ସେହି ତାରିଖର ଉଦ୍‌ବୃତ୍ତ ପତ୍ର ପ୍ରସ୍ତୁତ କର ।

ନିମ୍ନଲିଖିତ ସମାଯୋଜନ ଆବଶ୍ୟକ :

| | | | ଟଙ୍କା |
|---|---|---|---|
| (କ) ଅନ୍ତ୍ୟ ସମ୍ଭାର | — | — | ୩୫,୦୦୦ |
| (ଖ) ମୂଲ୍ୟହ୍ରାସ : | | | |
| ଯନ୍ତ୍ରପାତି ୭½% ହାରରେ | | | |
| ଆସ୍‌ବାବ୍‌ପତ୍ର ୧୦% ହାରରେ | | | |
| ଇମାରତ୍ ୨½% ହାରରେ | | | |
| (ଗ) ବୀମା (ଅଗ୍ରିମ ପ୍ରଦତ୍ତ) | — | — | ୧୫୦ |
| (ଘ) ବେତନ ମଧ୍ୟରେ ଅଗ୍ରିମ ବେତନ ଅନ୍ତର୍ଭୁକ୍ତ ଅଛି, ଯାହା ପରବର୍ତ୍ତୀ ହିସାବ ବର୍ଷରେ ଦେୟ | | — | ୫୦୦ |
| (ଙ) ଅଧିକା ଉଠାଣ ବାବଦ ସୁଧ ବାକି ଅଛି | | — | ୪୦୦ |

(ଚ) ଅନାଦେୟ ଋଣର ସଞ୍ଚିତ ବିବିଧ ଖାତକ ପରିମାଣର ୫%କୁ ହ୍ରାସ କରାଯିବ ।

(ଛ) ଅନ୍ତ୍ୟ ସମ୍ଭାରରେ ୫,୦୦୦ ଟଙ୍କା ମୂଲ୍ୟର ଏପରି ଦ୍ରବ୍ୟ ଅନ୍ତର୍ଭୁକ୍ତ ଅଛି ଯାହାର ବିଲ୍ ବା ଚାଲାଣ ଏ ପର୍ଯ୍ୟନ୍ତ ମିଳି ନାହିଁ ଏବଂ ଏହା ହିସାବଭୁକ୍ତ ହୋଇନାହିଁ ।

(ଜ) ୧୯୭୧-୭୨ ଓ ୧୯୭୨-୭୩ ସକାଶେ ଇମାରତ୍ ବାବଦ ଦଆଯାଇଥିବା ମ୍ୟୁନିସିପାଲିଟି ଟିକସ, ୨୦୦ ଟଙ୍କା ଇମାରତ୍ ହିସାବରେ ଅନ୍ତର୍ଭୁକ୍ତ ହୋଇଛି ।

### ୩୧-୩-୧୯୭୨ ତାରିଖର ବାକି ମେଳ

| | ଦାୟୀ | | ଦାତା |
|---|---|---|---|
| | ଟଙ୍କା | | ଟଙ୍କା |
| | | ମୂଳଧନ — | ୪୦,୦୦୦ |
| ଆଦ୍ୟ ସମ୍ଭାର — | ୨୦,୦୦୦ | ବିବିଧ ମହାଜନ — | ୧୨,୦୦୦ |
| ଇମାରତ୍ — | ୨୪,୨୦୦ | ପ୍ରାପ୍ତ ବଟା — | ୩,୮୦୦ |
| ଯନ୍ତ୍ରପାତି — | ୩୦,୦୦୦ | ବ୍ୟାଙ୍କରୁ ଅଧିକା ଉଠାଣ | ୧୨,୦୦୦ |
| ଆସ୍‌ବାବ୍ ପତ୍ର — | ୫,୦୦୦ | ଅନାଦେୟ ଋଣର ସଞ୍ଚିତ | ୧,୫୦୦ |
| କ୍ରୟ — | ୧,୧୦,୦୦୦ | କ୍ରୟ ଫେରସ୍ତ — | ୨,୫୦୦ |
| ବେତନ — | ୩,୮୦୦ | ବିକ୍ରୟ (ନିଟ୍) — | ୧,୭୭,୦୦୦ |
| ବିବିଧ ଖାତକ — | ୧୮,୦୦୦ | | |
| ଉତ୍ପାଦନ ସଂକ୍ରାନ୍ତ ବ୍ୟୟ | ୭,୫୦୦ | | |
| ଉତ୍ପାଦନ ସଂକ୍ରାନ୍ତ ମଜୁରି | ୪,୫୦୦ | | |
| ଅନ୍ତର୍ମୁଖୀ ପରିବହନ | ୧,୫୦୦ | | |
| ବହିର୍ମୁଖୀ ପରିବହନ | ୧,୭୫୦ | | |
| କାରଖାନା ବ୍ୟୟ — | ୫,୫୫୦ | | |
| ଅନାଦେୟ ଋଣ — | ୫୦୦ | | |
| ବ୍ୟାଙ୍କ୍ ସୁଧ ଓ କମିଶନ | ୪୦୦ | | |
| ବଟା — | ୨,୧୦୦ | | |
| ବୀମା — | ୪୦୦ | | |

| | ଦାୟୀ | ଦାତା |
|---|---|---|
| | ଟଙ୍କା | ଟଙ୍କା |
| ନଗଦ ତହବିଲ — | ୬୦୦ | |
| ପ୍ରାପ୍ୟ ହୁଣ୍ଡି — | ୧୩,୦୦୦ | |
| | ୨,୪୮,୮୦୦ | ୨,୪୮,୮୦୦ |

(ଉତ୍ତର—ମୋଟ ଲାଭ, ୬୦,୪୫୦ ଟଙ୍କା, ନିଟ୍ ଲାଭ ୫୧,୬୦୦ ଟଙ୍କା ଓ ଉଦ୍ବୃତ୍ତ ପତ୍ରର ମୋଟ, ୧,୧୬,୧୦୦ ଟଙ୍କା)

୨୬ । ଶ୍ରୀ ସେନ୍ ନିମ୍ନଲିଖିତ ବାକି ମେଳକୁ ମିଳାଇ ନ ପାରିବାରୁ ସେ ତୁମକୁ ତହିଁରେ ଥିବା ତ୍ରୁଟି ସଂଶୋଧନ କରିବାକୁ ଦେଲେ । ସେ ଯେଉଁ ସବୁ ତ୍ରୁଟି ରଖିଛନ୍ତି ତାହା ସଂଶୋଧନ କରି ବାକି ମେଳ ପୁନର୍ବାର ପ୍ରସ୍ତୁତ କର । ୧୯୬୬ ସାଲ ଡିସେମ୍ବର ୩୧ ତାରିଖରେ ଶେଷ ହେଉଥିବା ବର୍ଷର ମୋଟ ଓ ନିଟ୍ ଲାଭ ଓ କ୍ଷତି ହିସାବ ଓ ସେହି ତାରିଖର ଉଦ୍ବୃତ୍ତ ପତ୍ର ପ୍ରସ୍ତୁତ କର । ତାହା ପୂର୍ବରୁ ନିମ୍ନଲିଖିତ ସମାଯୋଜନଗୁଡ଼ିକ କରିବାକୁ ପଡ଼ିବ :

| | ଦାୟୀ | | ଦାତା |
|---|---|---|---|
| | ଟଙ୍କା | | ଟଙ୍କା |
| ଉଠାଣ | ୩,୨୫୦ | ମୂଳଧନ | ୧୫,୦୦୦ |
| ସମ୍ଭାର (୧-୧-୬୬) | ୧୬,୪୪୫ | ଅନ୍ତର୍ମୁଖୀ ଫେରସ୍ତ | ୫୫୪ |
| ଅନ୍ତର୍ମୁଖୀ ପରିବହନ | ୧,୨୪୦ | ଦାସ୍‌ଗୁପ୍ତଙ୍କଠାରେ ଗଚ୍ଛିତ | ୧,୩୬୫ |
| ବହିର୍ମୁଖୀ ଫେରସ୍ତ | ୮୪୦ | ବହିର୍ମୁଖୀ ପରିବହନ | ୬୨୫ |
| ଘରଭଡ଼ା | ୮୨୦ | ଚ୍ୟାଟାର୍ଜିଙ୍କ ଶତକଡ଼ା | |
| ବକେୟା ଘରଭଡ଼ା | ୧୩୦ | ବାର୍ଷିକ ୫ ହାରରେ ଋଣ | ୧,୦୦୦ |
| କ୍ରୟ | ୧୨,୯୬୦ | ଏହାର ସୁଧ | ୨୫ |
| ଖାତକ | ୪,୦୦୦ | ସମ୍ଭାର (୩୧-୧୨-୬୬) | ୧୮,୯୬୨ |
| ବିଜ୍ଞାପନ ବ୍ୟୟ | ୯୫୪ | ମହାଜନ | ୩,୦୦୦ |
| ଅନାଦେୟ ଋଣ | ୪୦୦ | ଅନିଶ୍ଚିତ ଋଣର ସଞ୍ଚିତ | ୧,୨୦୦ |
| ପେଟେଣ୍ଟ ଓ ପ୍ୟାଟାର୍ନସ୍ | ୫୦୦ | ବିକ୍ରୟ | ୨୬,୯୧୪ |
| ମଜୁରି | ୬୫୪ | ପ୍ରଦତ୍ତ ବଟା | ୩୩୦ |
| ନଗଦ ତହବିଲ | ୬୨ | | |
| ସୁନାମ | ୧,୬୩୦ | | |

(୧) ଶ୍ରୀ ସେନ୍‌ଙ୍କର ମ୍ୟାନେଜର ତାଙ୍କ କମିଶନ୍ ବାଦ୍ ଦେବା ପରେ ନିଟ୍ ଲାଭର ୧୦% କମିଶନ୍ ପାଇବେ ।

(୨) ଅନାଦେୟ ଋଣର ପରିମାଣ ୭୦୦ ଟଙ୍କାକୁ ବୃଦ୍ଧି କରାଯିବ ।

(୩) ଅନିଶ୍ଚିତ ଋଣର ସଞ୍ଚିତ ୧୦% ହାରରେ ଓ ଦେୟ ବଟ୍ଟାର ସଞ୍ଚିତ ବିବିଧ ଖାତକ ପରିମାଣର ୫% ହାରରେ ରଖାଯିବ ।

(୪) ଡିସେମ୍ବର ୨୫ ତାରିଖରେ ୧,୫୦୦ ଟଙ୍କା ମୂଲ୍ୟର ସମ୍ଭାର ଅଗ୍ନିକାଣ୍ଡ ହେତୁ ବିନଷ୍ଟ ହୋଇଛି ମାତ୍ର ବୀମା କମ୍ପାନୀ ୧୫୦ ଟଙ୍କାର ଦାବୀ ସ୍ୱୀକାର କରି ତାହା ୧୯୬୭ ସାଲରେ ଦେଲେ ।

(B. U. Three year Degree Course, B. Com, 1967 ର ପ୍ରଶ୍ନ ପତ୍ରରୁ ଗୃହୀତ)

(ଉତ୍ତର—ବାଣିଜ୍ୟ ମେଳର ମୋଟ, ୪୮,୧୦୯ ଟଙ୍କା, ମୋଟ ଲାଭ ୧୬,୦୮୩ ଟଙ୍କା, ନିଟ୍ ଲାଭ, ୧୧,୫୧୦ ଟଙ୍କା ଓ ଉଦ୍‌ବୃତ୍ତ ପତ୍ରର ମୋଟ, ୨୭,୫୪୧ ଟଙ୍କା)

**ମନ୍ତବ୍ୟ :** (୧) ଅନ୍ତ୍ୟ ସମ୍ଭାର ସମାଯୋଜନ ତାଲିକା ଅନ୍ତର୍ଭୁକ୍ତ ହେବା ଉଚିତ, ବାଣିଜ୍ୟ ମେଳରେ ଏହାର ସ୍ଥାନ ନାହିଁ । ତେଣୁ ସଂଶୋଧିତ ବାଣିଜ୍ୟ ମେଳରେ ଏହାକୁ ଅନ୍ତର୍ଭୁକ୍ତ କରାଯାଇ ନାହିଁ ।

(୨) ଚ୍ୟାଟାର୍ଜିଙ୍କୁ ଦିଆଯାଇଥିବ ଋଣ ବର୍ଷର ଆରମ୍ଭରୁ ରହିଛି ବୋଲି ଅନୁମାନ କରାଯାଇ ଶତକଡ଼ା ବାର୍ଷିକ ୫ ହାରରେ ସେହି ପରିମାଣ ଉପରେ ବର୍ଷକର ସୁଧ କଷା ଯାଇଛି ଓ ସୁଧ ୫୦ ଟଙ୍କା ସ୍ଥଳେ ୨୫ ଟଙ୍କା ମିଳିଥିବାରୁ ବାକି ୨୫ ଟଙ୍କା ପ୍ରାପ୍ୟ ସୁଧ ହିସାବରେ ନିଟ୍ ଲାଭ ଓ କ୍ଷତି ହିସାବର ଦାତା ପାର୍ଶ୍ୱକୁ ଓ ଉଦ୍‌ବୃତ୍ତ ପତ୍ରର ପରିସମ୍ପତ୍ତି ପାର୍ଶ୍ୱକୁ ଅଣାଯାଇଛି ।

(୩) ମ୍ୟାନେଜରଙ୍କର କମିଶନ୍ ନିମ୍ନଲିଖିତ ରୂପେ ସ୍ଥିର କରାଯାଇଛି :

ନିଟ୍ ଲାଭ ଓ କ୍ଷତି ହିସାବର ଦାତା ପାର୍ଶ୍ୱର ମୋଟ ପରିମାଣ ୧୬,୧୯୩ ଟଙ୍କାରୁ କମିଶନ୍ ବାବଦ ଟଙ୍କା ମିଶାଇବା ପୂର୍ବରୁ ଦାୟୀ

ପାର୍ଟିର ମୋଟ ପରିମାଣ ୪,୩୩୨ ଟଙ୍କା ବାଦ୍ ଦିଆଯାଇ ୧୨,୭୭୧ ଟଙ୍କା ହେଲା । ଏହା ପ୍ରତି ପୂର୍ବ ଆଲୋଚିତ ସୂତ୍ର ପ୍ରୟୋଗ କଲେ ମ୍ୟାନେଜରଙ୍କର କମିଶନ ନିମ୍ନ ପ୍ରକାର ହେବ :

$$\text{କମିଶନ} = \frac{୧୦}{୧୧୦} \times ୧୨,୭୭୧ \text{ ଟଙ୍କା} = ୧,୧୬୧ \text{ ଟଙ୍କା}$$

$$\therefore \text{ ନିଟ୍ ଲାଭ} = ୧୨,୭୭୧ - ୧,୧୬୧ = ୧୧,୬୧୦ \text{ ଟଙ୍କା}$$

୨୭ । କର୍, ଧର୍ ଏଣ୍ଡ୍ କୋ : ଙ୍କର ବାଲାନ୍ସ ସେଟ ନିମ୍ନରେ ପ୍ରଦତ୍ତ ହେଲା । ଏହା ତାଙ୍କ ଖାତାରୁ ୩୧-୧୨-୧୯୭୧ ତାରିଖରେ ଉଦ୍ଧୃତ କରାଯାଇଛି । ଶ୍ରୀ କର୍ ନିଟ୍ ଲାଭ ବା କ୍ଷତିର ୮୦% ଓ ଧର୍ ୨୦% ଭୋଗ କରନ୍ତି ।

୩୧-୧୨-୧୯୭୧ ତାରିଖର ବାଲାନ୍ସ ସେଟ

| ଦାୟୀ | ଟଙ୍କା | ଦାତା | ଟଙ୍କା |
|---|---|---|---|
| ଆଦ୍ୟସମ୍ଭାର | ୪୦,୦୦୦ | ବିକ୍ରି | ୪,୧୨,୮୫୦ |
| ନିଜସ୍ୱ କାରଖାନା | ୮୦,୦୦୦ | ଫେରସ୍ତ | ୭୫୦ |
| କ୍ରୟ | ୧,୯୫,୦୦୦ | ବଟା | ୧,୨୦୦ |
| ଯନ୍ତ୍ର | ୯୦,୦୦୦ | ବିବିଧ ମହାଜନ | ୨୫,୦୦୦ |
| ଆସ୍‌ବାବ୍ ପତ୍ର | ୪୫,୦୦୦ | ମୂଳଧନ : | |
| ବିବିଧ ଖାତକ | ୬୦,୦୦୦ | କର୍ ୫୦,୦୦୦ | |
| | | ଧର୍ ୨୦,୦୦୦ | ୭୦,୦୦୦ |
| ଅଳ୍ପମୂର୍ଖୀ ପରିବହନ | ୧,୫୦୦ | ସଞ୍ଚିତ ପାଣ୍ଠି | ୭୦,୦୦୦ |
| ବହିର୍ମୂର୍ଖୀ ପରିବହନ | ୨,୩୦୦ | | |
| ଫେରସ୍ତ | ୧,୨୦୦ | | |
| ବଟା | ୭୭୦ | | |
| ବେତନ | ୧୭,୦୦୦ | | |
| ମଜୁରି | ୨୦,୦୦୦ | | |
| ବିଜ୍ଞାପନ | ୩,୫୦୦ | | |
| ଯନ୍ତ୍ର ମରାମତି | ୭୪୦ | | |

| | ଦାୟୀ | ଦାତା |
|---|---|---|
| | ଟଙ୍କା | ଟଙ୍କା |
| ଅନାଦେୟ ଋଣ | ୨,୩୦୦ | |
| ବୀମା | ୧,୫୦୦ | |
| ବ୍ୟାଙ୍କ୍‌ରେ ଗଚ୍ଛିତ | ୨୦,୦୦୦ | |
| | ୫,୭୯,୮୦୦ | ୫,୭୯,୮୦୦ |

ନିମ୍ନଲିଖିତ ଅଧିକା ତଥ୍ୟ ସରବରାହ କରାଯାଇଛି :

(କ) ଅନ୍ୟ ସମ୍ପତ୍ତିର ମୂଲ୍ୟ, ୫୫,୦୦୦ ଟଙ୍କା ।

(ଖ) ଘର ପରିମାଣରୁ ୭% ହାରରେ ଓ ଆସ୍‌ବାବ୍ ପତ୍ର ପରିମାଣରୁ ୧୦% ହାରରେ ମୂଲ୍ୟ ହ୍ରାସ ବାଦ୍ ଦିଅ ।

(ଗ) ବେତନ ବାବଦ ୩,୦୦୦ ଟଙ୍କା ଓ ମଜୁରି ବାବଦ ୪,୦୨୦ ଟଙ୍କା ବାକି ଅଛି, ଏଥି ନିମନ୍ତେ ବ୍ୟବସ୍ଥା କର ।

(ଘ) ଅଗ୍ରିମ ପ୍ରଦତ୍ତ ବୀମା ପ୍ରିମିୟାମ୍‌ର ପରିମାଣ ୫୦୦ ଟଙ୍କା ।

(ଙ) ଅନାଦେୟ ଋଣର ସଞ୍ଚିତ ନିବଧ ଖାତକ ପରିମାଣର ୨½% ହାରରେ ରଖାଯିବ ।

(ଚ) ବଣ୍ଟନଯୋଗ୍ୟ ଲାଭର ୧୦% ସଞ୍ଚିତ ପାଣ୍ଠିକୁ ନିଆଯିବ ।

୧୯୬୧ ସାଲ ଡିସେମ୍ବର୍ ୩୧ ତାରିଖରେ ଶେଷ ହେଉଥିବା ବର୍ଷର ମୋଟ ଓ ନିଟ୍ ଲାଭ ଓ କ୍ଷତି ହିସାବ ଓ ସେହି ତାରିଖର ଉଦ୍‌ବର୍ତ୍ତ ପତ୍ର ପ୍ରସ୍ତୁତ କର ।

(ଉତ୍ତର—ମୋଟ ଲାଭ, ୨,୦୬,୯୦୦ ଟଙ୍କା, ନିଟ୍ ଲାଭ ୧,୬୭,୨୦୦ ଟଙ୍କା ଓ ସଞ୍ଚିତ ପାଣ୍ଠିକୁ ୧୬,୭୨୦ ଟଙ୍କା ନିଆଯିବା ପରେ ବଣ୍ଟନଯୋଗ୍ୟ ଲାଭ, ୧,୫୦,୪୮୦ ଟଙ୍କା ଏବଂ ଉଦ୍‌ବର୍ତ୍ତ ପତ୍ରର ମୋଟ, ୩,୩୯,୨୦୦ ଟଙ୍କା)

(C. U. Three year Degree Course, B.Com, 1963 ପ୍ରଶ୍ନ ପତ୍ରରୁ ଉଦ୍ଧୃତ ।

**ମନ୍ତବ୍ୟ**—ଲାଭ ଓ କ୍ଷତି ବଣ୍ଟନ ହିସାବ ସାଧାରଣତଃ ଅଂଶୀଦାରୀ କାରବାରରେ ଆବଶ୍ୟକ ହୁଏ । ଅଂଶୀଦାରୀ କାରବାର ସଂକ୍ରାନ୍ତ ନେଣଦେଣ ଅଧିକ ପରିମାଣରେ ନ ଥିବାରୁ ଏହି ଅନୁଶୀଳନୀ ଏଠାରେ ଅନ୍ତର୍ଭୁକ୍ତ କରାଯାଇଛି ।

ଯାହା ହେଉ, ଏହି ପ୍ରଶ୍ନରେ ଏହି ଲଭ ଓ କ୍ଷତି ବଣ୍ଟନ ହିସାବ ସ୍ୱତନ୍ତ୍ର ଭାବରେ ଦେଖାଇବା ନିମନ୍ତେ ନିର୍ଦ୍ଦେଶ ନ ଥିବାରୁ ଏହା ନିଟ୍ ଲଭ ଓ କ୍ଷତି ହିସାବର ଏକ ଅଂଶ ରୂପେ କରାଯାଇ ପାରେ । ଏହାର ନମୁନା ନିମ୍ନରେ ପ୍ରଦତ୍ତ ହେଲା ।

ଦାୟୀ ନିଟ୍ ଲଭ ଓ କ୍ଷତି ହିସାବ ଦାତା

| | ଟଙ୍କା | | ଟଙ୍କା |
|---|---|---|---|
| ବିବିଧ ହିସାବ ବାବଦ | ୪୦,୯୦୦ | ମୋଟ ଲଭ ହିସାବ ବାବଦ | ୨,୦୬,୯୦୦ |
| ନିଟ୍ ଲଭ ବାବଦ— ସ୍ଥାନାନ୍ତରିତ ହେଲା | ୧,୬୭,୨୦୦ | ବଟା | ୧,୨୦୦ |
| | ୨,୦୮,୧୦୦ | | ୨,୦୮,୧୦୦ |
| ସଞ୍ଚିତ ପାଣ୍ଠି ବାବଦ (ବଣ୍ଟନଯୋଗ୍ୟ ଲଭର ୧୦%) | ୧୬,୭୨୦ | ନିଟ୍ ଲଭ ବାବଦ— ସ୍ଥାନାନ୍ତରିତ | ୧,୬୭,୨୦୦ |
| ମୂଳଧନ ହିସାବ ବାବଦ ଲଭର ଅଂଶ : କର-୮୦% ୧,୨୦,୩୮୪ ଧର-୨୦% ୩୦,୦୯୬ | ୧,୫୦,୪୮୦ | | |
| | ୧,୬୭,୨୦୦ | | ୧,୬୭,୨୦୦ |

୧୮ । ଜଣେ ବ୍ୟବସାୟୀଙ୍କର ହିସାବ ଖାତାରୁ ୧୯୬୦ ସାଲ ଡିସେମ୍ବର ୩୧ ତାରିଖରେ ଉଦ୍ଧୃତ ନିମ୍ନଲିଖିତ ଖତିୟାନ ହିସାବରୁ ସେହି ତାରିଖରେ ଶେଷ ହେଉଥିବା ବର୍ଷର ମୋଟ ଓ ନିଟ୍ ଲଭ ଓ କ୍ଷତି ହିସାବ ଏବଂ ସେହି ତାରିଖର ଉଦ୍ବୃତ୍ତ ପତ୍ର ପ୍ରସ୍ତୁତ କର ।

| | ଦାୟୀ | ଦାତା |
|---|---|---|
| | ଟଙ୍କା | ଟଙ୍କା |
| ମୂଳଧନ ହିସାବ | | ୪୨,୫୦୦ |
| ଉଠାଣ ହିସାବ | ୭,୧୦୦ | |
| ଯନ୍ତ୍ରପାତି | ୯,୫୦୦ | |
| ସମ୍ଭାର (୧-୧-୬୦) | ୧୪,୬୦୦ | |
| କ୍ରୟ ଓ ବିକ୍ରୟ | ୧,୦୩,୬୨୦ | ୧,୧୯,୦୬୦ |

| | ଦାୟୀ | ଦାତା |
|---|---|---|
| | ଟଙ୍କା | ଟଙ୍କା |
| ସାଧାରଣ ବ୍ୟୟ | ୨,୧୦୦ | |
| ବିକ୍ରୟ ଓ କ୍ରୟ ଫେରସ୍ତ | ୨,୧୦୦ | ୨,୯୧୦ |
| ମଜୁରି | ୨,୪୦୦ | |
| ଘରଭଡ଼ା ଓ ଶୁଳ୍କ | ୩,୨୦୦ | |
| ବ୍ୟାଙ୍କରୁ ଅଧିକା ଉଠାଣ | | ୧,୨୦୦ |
| ଅନାଦେୟ ଋଣ | ୧,୬୨୦ | |
| ଖାତକ ଓ ମହାଜନ | ୩୦,୦୦୦ | ୧୦,୦୦୦ |
| ନଗଦ ତହବିଲ | ୪୮୦ | |
| ଅନାଦେୟ ଋଣର ସଞ୍ଚିତ | | ୧,୦୫୦ |
| | ୧,୬୬,୬୨୦ | ୧,୬୬,୬୨୦ |

## ସମାଯୋଜନ ଆବଶ୍ୟକ :

(୧) ଯନ୍ତ୍ରପାତିର ପରିମାଣରୁ ୧୦% ହାରରେ ମୂଲ୍ୟହ୍ରାସ ବାଦ୍ ଦିଅ ।

(୨) ଅନାଦେୟ ଋଣର ସଞ୍ଚିତ ଖାତକ ପରିମାଣର ୫% ହାରକୁ ବୃଦ୍ଧି କରାଯିବ ।

(୩) ୨,୦୦୦ ଟଙ୍କା ମୂଲ୍ୟର ପଣ୍ୟଦ୍ରବ୍ୟ ବାକିରେ ବିକ୍ରୟ କରାଯାଇଛି, ମାତ୍ର ତାହା କୌଣସି ହିସାବରେ ଲିପିବଦ୍ଧ ହୋଇନାହିଁ ।

(୪) ବର୍ଷ ମଧ୍ୟରେ (୧୯୬୦ ସାଲ ସେପ୍ଟେମ୍ବର ୩୦ ତାରିଖରେ) କ୍ରୟ କରା-ଯାଇଥିବା ୧,୦୦୦ ଟଙ୍କା ମୂଲ୍ୟର ଯନ୍ତ୍ରପାତି କ୍ରୟ ହିସାବ ଅନ୍ତର୍ଭୁକ୍ତ ହୋଇଛି ।

(୫) ୩୧-୧୨-୬୦ ତାରିଖରେ ଶୁଳ୍କ ବାବଦ ୪୦୦ ଟଙ୍କା ବାକି ଅଛି ଓ ୮୦୦ ଟଙ୍କାର ଘରଭଡ଼ା ଅଗ୍ରିମ ଦିଆଯାଇଛି ।

(୬) ୩୧-୧୨-୬୦ ତାରିଖରେ ସମ୍ଭାରର ମୂଲ୍ୟ ୧୬,୩୦୦ ଟଙ୍କା ଥିଲା (୩୦-୯-୬୦ ତାରିଖରେ କ୍ରୟ କରାଯାଇଥିବା ଯନ୍ତ୍ରପାତି ଏଥିରେ ଅନ୍ତର୍ଭୁକ୍ତ ହୋଇନାହିଁ ।)

(୭) ଯନ୍ତ୍ର ସ୍ଥାପନ କରିବା ନିମନ୍ତେ ବ୍ୟୟିତ ୨୦୦ ଟଙ୍କାର ମଜୁରି, ମଜୁରି ହିସାବ ଅନ୍ତର୍ଭୁକ୍ତ ହୋଇଛି ।

(B. U. B. Com, 1961 ପ୍ରଶ୍ନ ପତ୍ରରୁ ଗୃହୀତ)

ଉତ୍ତର—ମୋଟ ଲାଭ ୧୯,୨୫୦ ଟଙ୍କା, ନିଟ୍ ଲାଭ, ୧୧,୭୦୦ ଟଙ୍କା ଓ ଉଦ୍ବୃତ୍ତ ପତ୍ରର ମୋଟ ୫୮,୭୦୦ ଟଙ୍କା)

**ଦ୍ରଷ୍ଟବ୍ୟ** :—(୩) ନମ୍ବର ସମାଯୋଜନ ନିମନ୍ତେ ନିମ୍ନଲିଖିତ ରୋଜନାମା ଆବଶ୍ୟକ :

| | | ଟଙ୍କା | ଟଙ୍କା |
|---|---|---|---|
| ଖାତକ ହିସାବ | ଦାୟୀ | ୨,୦୦୦ | |
| ବିକ୍ରୟ ହିସାବ ବାବଦ | | | ୨,୦୦୦ |

ସୁତରାଂ ବିକ୍ରୟ ହିସାବରେ ୨,୦୦୦ ଟଙ୍କା ଓ ଖାତକ ହିସାବରେ ୨,୦୦୦ ଟଙ୍କା ଯୋଗ କରାଯିବ ।

(୪) ନମ୍ବର ସମାଯୋଜନ ନିମନ୍ତେ ନିମ୍ନଲିଖିତ ରୋଜନାମା କରାଯିବ :

| | | ଟଙ୍କା | ଟଙ୍କା |
|---|---|---|---|
| ଯନ୍ତ୍ରପାତି ହିସାବ | ଦାୟୀ | ୧,୦୦୦ | |
| କ୍ରୟ ହିସାବ ବାବଦ | | | ୧,୦୦୦ |

ଅର୍ଥାତ୍ ୧,୦୦୦ ଟଙ୍କା କ୍ରୟ ପରିମାଣରୁ ବାଦ୍ ଦିଆଯାଇ ଯନ୍ତ୍ରପାତିର ପରିମାଣ ସହିତ ଯୋଗ କରାଯିବ ।

୨୯ । 'ଜୟ ଓ ସରେ' ଗୋଟିଏ ଅଂଶୀଦାରୀ କାରବାରର ଅଂଶୀଦାର ଥାଇ ଲାଭ ଓ କ୍ଷତିର ଯଥାକ୍ରମେ ୬୦% ଓ ୪୦% ଭୋଗ କରୁଥିଲେ । ତୁମକୁ ତାଙ୍କ ବ୍ୟବସାୟର ୧୯୬୪ ସାଲ ଡିସେମ୍ବର ୩୧ ତାରିଖରେ ଶେଷ ହେଉଥିବା ବର୍ଷର ମୋଟ ଓ ନିଟ୍ ଲାଭ ଓ କ୍ଷତି ହିସାବ ଏବଂ ସେହି ତାରିଖର ଉଦ୍ବୃତ୍ତ ପତ୍ର ପ୍ରସ୍ତୁତ କରିବାକୁ ହେବ । ୧୯୬୪ ସାଲ ଡିସେମ୍ବର ୩୧ ତାରିଖର ଖତିୟାନ ହିସାବର ବାକି ନିମ୍ନରେ ପ୍ରଦତ୍ତ ହେଲା ।

| | ଟଙ୍କା | | ଟଙ୍କା |
|---|---|---|---|
| ଆଦ୍ୟ ଭଣ୍ଡାର | ୩୫,୦୦୦ | ପ୍ରାପ୍ୟ ହୁଣ୍ଡି | ୨୦,୦୦୦ |
| ଯନ୍ତ୍ର | ୭୫,୦୦୦ | ପରିବହନ | ୧,୦୦୦ |

| | ଟଙ୍କା | | ଟଙ୍କା |
|---|---|---|---|
| କ୍ରୟ | ୯୫,୦୦୦ | ଅନ୍ତର୍ମୁଖୀ ଗାଡ଼ିଭଡ଼ା | ୭୫୦ |
| ମଜୁରି | ୧୫,୦୦୦ | ବହିର୍ମୁଖୀ ଗାଡ଼ିଭଡ଼ା | ୧,୨୫୦ |
| ବେତନ | ୧୨,୦୦୦ | ବଟାଂ (ଦାୟୀ) | ୬୫୦ |
| ଆସ୍‌ବାବ୍ | ୨୦,୦୦୦ | ବ୍ୟାଙ୍କ୍‌ରେ ଗଚ୍ଛିତ | ୧୦,୦୦୦ |
| ଘରଭଡ଼ା ଓ କର | ୧,୫୦୦ | ଅଂଶୀଦାରମାନଙ୍କର | |
| ବିବିଧ ଖାତକ | ୪୫,୦୦୦ | ଉଠାଣ : | |
| | | ଜୟ ୬,୦୦୦ | |
| | | ସବେ ୩,୦୦୦ | ୯,୦୦୦ |
| ବିକ୍ରୟ | ୨,୦୦,୦୦୦ | ବହିର୍ମୁଖୀ ଫେରସ୍ତ | ୨,୦୦୦ |
| ଅନାଦେୟ ଋଣର ସଞ୍ଚିତ | ୧,୦୦୦ | କମିଶନ (ଦାତା) | ୨୦,୦୨୦ |
| ବିବିଧ ମହାଜନ | ୨୫,୦୦୦ | ଦେୟ ହୁଣ୍ଡି | ୩,୦୦୦ |
| ବିବିଧ ମୁନାଫା ଜାତୀୟ ଆୟ | ୧୫୦ | | |
| ମୂଳଧନ ହିସାବ : | | | |
| ଜୟ ୬୦,୦୦୦ | | | |
| ସବେ ୩୦,୦୦୦ | ୯୦,୦୦୦ | | |

## ନିମ୍ନଲିଖିତ ସମାଯୋଜନ ଆବଶ୍ୟକ :

(୧) ଅନ୍ତ୍ୟ ସମ୍ଭାର—୪୫,୦୦୦ ଟଙ୍କା । (୨) ଯନ୍ତ୍ର ପରିମାଣରୁ ୧୦% ଓ ଆସ୍‌ବାବ୍ ପରିମାଣରୁ ୨୦% ହାରରେ ମୂଲ୍ୟହ୍ରାସ ବାଦ୍ ଦିଅ । (୩) ବକେୟା ବ୍ୟୟ ନିମନ୍ତେ ବ୍ୟବସ୍ଥା କର ; ମଜୁରି, ୩,୦୦୦ ଟଙ୍କା, ବେତନ, ୫,୦୦୦ ଟଙ୍କା । (୪) ବୀମାର ପ୍ରିମିୟାମ୍ ବାକି ଅଛି, ୧,୨୦୦ ଟଙ୍କା । (୫) ମୂଳଧନ ବାବଦ ୫% ହାରରେ ସୁଧ ଦିଆଯିବ । (୬) ଉଠାଣ ବାବଦ ୫% ହାରରେ ସୁଧ ଆଦାୟ କରାଯିବ (ଉଠାଣ ପ୍ରତି ମାସରେ ସମପରିମାଣରେ ନିଆଯାଇଛି) । (୭) ଅନାଦେୟ ଋଣର ସଞ୍ଚିତ ବିବିଧ ଖାତକ ପରିମାଣର $2\frac{1}{2}$% ହାରରେ ରଖାଯିବ । (୮) ବଣ୍ଟନ ପୂର୍ବରୁ ନିଟ୍ ଲାଭର ୨୫% ଜାତୀୟ ପ୍ରତିରକ୍ଷା ପାଣ୍ଠିକୁ ଦାନ କରାଯିବ ।

**(C. U. Three Year Degree Course B.Com, 1965 ପ୍ରଶ୍ନ ପତ୍ରରୁ ଗୃହୀତ ହୋଇଛି)**

ଉତ୍ତର—ମୋଟ ଲାଭ ୯୭,୨୫୦ ଟଙ୍କା, ନିଟ୍ ଲାଭ ୮୪,୧୬୫ ଟଙ୍କା, ଲାଭର ଅଂଶ : ଯଦୁ, ୩୬,୦୫୬.୨୫ ଓ ସରେ, ୨୪,୦୩୭.୫୦ ପ୍ରତିରକ୍ଷା ପାଣ୍ଠିକୁ ଦାନ କଲା ପରେ ଓ ଉଦ୍ବୃତ୍ତ ପତ୍ରର ମୋଟ, ୧,୦୧,୩୭୫ ଟଙ୍କା) ।

**ଦ୍ରଷ୍ଟବ୍ୟ** :—ଉଠାଣ ହିସାବ ଉପରେ ୬ ମାସର ସୁଧ କଷାଯିବ ।

# ଷଷ୍ଠ ପରିଚ୍ଛେଦ

## ହୁଣ୍ଡି ଓ ପ୍ରତିଜ୍ଞା ପତ୍ର

### ୧ । ପ୍ରତିଜ୍ଞା ପତ୍ର :

ହସ୍ତାନ୍ତରଯୋଗ୍ୟ ଦଲିଲ (Negotiable Intrument Act.) ଆଇନରେ ପ୍ରତିଜ୍ଞା ପତ୍ରର ନିମ୍ନଲିଖିତ ସଂଜ୍ଞା ଦିଆ ଯାଇଛି :

କୌଣସି ନିର୍ଦ୍ଦିଷ୍ଟ ବ୍ୟକ୍ତି କର୍ତ୍ତୃକ ସ୍ୱାକ୍ଷରିତ ଲିଖିତ ଦଲିଲ (ଯାହା ବ୍ୟାଙ୍କ୍ ନୋଟ ବା କରେନ୍‌ସି ନୋଟ ନୁହେଁ)ରେ ଯଦି ଉକ୍ତ ବ୍ୟକ୍ତି ଏକ ନିର୍ଦ୍ଦିଷ୍ଟ ପରିମାଣର ଅର୍ଥ କୌଣସି ନିର୍ଦ୍ଦିଷ୍ଟ ବ୍ୟକ୍ତି ବା ତାଙ୍କର ଆଦିଷ୍ଟ ବ୍ୟକ୍ତିଙ୍କୁ ପ୍ରଦାନ କରିବା ନିମନ୍ତେ ସର୍ତ୍ତହୀନ ପ୍ରତିଶ୍ରୁତି ଦେଇ ଥାଆନ୍ତି ତାହାହେଲେ ଉକ୍ତ ଦଲିଲକୁ ପ୍ରତିଜ୍ଞା ପତ୍ର କୁହାଯାଏ ।

### ବୈଶିଷ୍ଟ୍ୟ :

ଉକ୍ତ ସଂଜ୍ଞାରୁ ପ୍ରତିଜ୍ଞା ପତ୍ରର ନିମ୍ନଲିଖିତ ବୈଶିଷ୍ଟ୍ୟଗୁଡ଼ିକ ସୁସ୍ପଷ୍ଟ । ଯଥା :

(୧) ଏହି ଦଲିଲ ଲିଖିତ ହେବା ଆବଶ୍ୟକ ।

(୨) ଅର୍ଥ ପ୍ରଦାନ କରିବାର ପ୍ରତିଜ୍ଞା ସ୍ପଷ୍ଟ ଭାବରେ ଲିଖିତ ହୋଇଥିବ । କେବଳ ଋଣର ସ୍ୱୀକୃତି ଯଦି ତହିଁରେ ଲିପିବଦ୍ଧ କରାଯାଇଥାଏ ତାହାହେଲେ ତାହା ଅର୍ଥ ପ୍ରଦାନର ପ୍ରତିଜ୍ଞା ବୋଲି ବୁଝିବା ଠିକ୍ ହେବ ନାହିଁ ।

(୩) ଅର୍ଥ ପ୍ରଦାନ କରିବାର ପ୍ରତିଶ୍ରୁତି ସର୍ତ୍ତହୀନ ହେବା ଆବଶ୍ୟକ । ଯଦି ତହିଁରେ ଲେଖାଥାଏ, "ଯେତେ ଶୀଘ୍ର ସମ୍ଭବ ମୁଁ ୩୦୦ ଟଙ୍କା ପରିଶୋଧ କରିବି", ତାହା-

ହେଲେ ଏହା ସର୍ତ୍ତାଧୀନ ପ୍ରତିଜ୍ଞା ବୋଲି ବୁଝାଇବ ନାହିଁ, କାରଣ ଏତଦ୍ଦ୍ୱାରା ଅର୍ଥ ପ୍ରଦାନର ସମୟ ସ୍ପଷ୍ଟ ଓ ନିର୍ଦ୍ଦିଷ୍ଟ ନୁହେଁ ।

(୪) ଦଲିଲର ପ୍ରସ୍ତୁତକାରୀ ଏହି ଦଲିଲରେ ସ୍ୱାକ୍ଷର କରିବେ ।

(୫) ଦଲିଲ ପ୍ରସ୍ତୁତକାରୀ ଜଣେ ନିର୍ଦ୍ଦିଷ୍ଟ ବ୍ୟକ୍ତି ହେବା ଆବଶ୍ୟକ ।

(୬) ଏହି ଦଲିଲ ବାବଦ ଟଙ୍କା ଯାହାଙ୍କୁ ଦିଆଯିବ, ତାଙ୍କର ନାମ ନିର୍ଦ୍ଦିଷ୍ଟ ଭାବରେ ଲେଖାଥିବା ଆବଶ୍ୟକ ।

(୭) ଅର୍ଥ ପରିମାଣ ମଧ୍ୟ ନିର୍ଦ୍ଦିଷ୍ଟ ହେବା ଆବଶ୍ୟକ । ଯଦି ଦଲିଲରେ ଲେଖାଥାଏ "ମୁଁ ୩୦୦ ଟଙ୍କା ଓ ଅନ୍ୟାନ୍ୟ ଦେୟ ପ୍ରଦାନ କରିବାକୁ ପ୍ରତିଶ୍ରୁତି ଦେଉଛି", ତାହା ହେଲେ ଅର୍ଥର ପରିମାଣ ନିର୍ଦ୍ଦିଷ୍ଟ ହେବ ନାହିଁ ।

(୮) ଯେଉଁ ଦେଶରେ ଏହି ଦଲିଲ ପ୍ରସ୍ତୁତ କରାଯାଉଛି ଅର୍ଥର ପରିମାଣ ସେହି ଦେଶର ଆଇନ ସମ୍ମତ ମୁଦ୍ରା ମାଧ୍ୟମରେ ପ୍ରକାଶିତ ହୋଇଥିବ ।

(୯) ଏହାର ବାହକ ଦଲିଲର ପ୍ରାପକ ହୋଇ ପାରିବ ନାହିଁ ।

(୧୦) ଏହି ଦଲିଲଟିରେ ଉପଯୁକ୍ତ ଭାବରେ ଷ୍ଟାମ୍ପ ଦିଆଯିବା ଆବଶ୍ୟକ ।

## ନମୁନା :

ପ୍ରତିଜ୍ଞା ପତ୍ରର ଏକ ନମୁନା ନିମ୍ନରେ ପ୍ରଦତ୍ତ ହେଲା :

୧,୦୦୦ ଟଙ୍କା

ଭୁବନେଶ୍ୱର
ମାର୍ଚ୍ଚ ୩, ୧୯୬୩

ପ୍ରାପ୍ତ ମୂଲ୍ୟର ବିନିମୟରେ ଦାବୀ କରାଯିବା ମାତ୍ରେ ମୁଁ ଶ୍ରୀ ରାଘବ ବିଶ୍ୱାଳଙ୍କୁ କିମ୍ବା ତାଙ୍କ ଆଦିଷ୍ଟ ବ୍ୟକ୍ତିଙ୍କୁ ଏକ ହଜାର ଟଙ୍କା ପ୍ରଦାନ କରିବା ନିମନ୍ତେ ପ୍ରତିଜ୍ଞା କରୁଛି ।

ଷ୍ଟାମ୍ପ

ସ୍ୱା / କେଶବ ସାହୁ

ପ୍ରତିଜ୍ଞା ପତ୍ରର ଏକ ନମୁନା ନିମ୍ନରେ ପ୍ରଦତ୍ତ ହେଲ :

| ୧,୦୦୦ ଟଙ୍କା | | ଭୁବନେଶ୍ୱର<br>୩ ମାର୍ଚ୍ଚ, ୧୯୭୩ |
|---|---|---|

ପ୍ରାପ୍ତ ମୂଲ୍ୟ ବିନିମୟରେ ଆଜଠାରୁ ତିନି ମାସ ପରେ ମୁଁ ଶ୍ରୀ ହରିହର ମିଶ୍ରଙ୍କୁ କିମ୍ବା ତାଙ୍କ ଆଦିଷ୍ଟ ବ୍ୟକ୍ତିଙ୍କୁ ଏକ ହଜାର ଟଙ୍କା ଓ ତତ୍ସହିତ ଶତକଡ଼ା ବାର୍ଷିକ ୭ ହାରରେ ସୁଧ ଦେବା ନିମନ୍ତେ ପ୍ରତିଜ୍ଞା କରୁଛୁ ।

ସ୍ୱା / ଷ୍ଟାମ୍ପ ରାମଚନ୍ଦ୍ର ସାହୁ

ବ୍ୟକ୍ତିଗତ କାରଣ ନିମନ୍ତେ କିମ୍ବା କୌଣସି ସାମାଜିକ ଅନୁଷ୍ଠାନ ନିମନ୍ତେ ପ୍ରତିଜ୍ଞା ପତ୍ର ସାହାଯ୍ୟରେ ଋଣ ସଂଗ୍ରହ କରିବାର ରୀତି ବହୁଳ ପରିମାଣରେ ପ୍ରଚଳିତ ଅଛି । ବିଶେଷ ଭାବରେ ଏହି ସବୁ କାରଣ ନିମନ୍ତେ ବ୍ୟାଙ୍କରୁ ଋଣ ସଂଗ୍ରହ କରିବା ସମୟରେ ଏହି ଦଲିଲ ବ୍ୟବହୃତ ହୁଏ । ମାତ୍ର ବ୍ୟବସାୟ କ୍ଷେତ୍ରରେ ଏହାର ପ୍ରଚଳନ ହୁଣ୍ଡି ତୁଳନାରେ ସୀମିତ ।

## ପକ୍ଷ :

ଏଥିରେ ଦୁଇଟି ପକ୍ଷ ସଂପୃକ୍ତ, ଯଥା ଦଲିଲ-ଲେଖକ ବା ପ୍ରତିଶ୍ରୁତି ଦାତା ଓ ପ୍ରାପକ ବା ପ୍ରତିଶ୍ରୁତି-ଗ୍ରହୀତା ।

ପ୍ରତିଜ୍ଞା ପତ୍ରକୁ ହିସାବରେ ଲିପିବଦ୍ଧ କରିବା ନିମନ୍ତେ କୌଣସି ସ୍ୱତନ୍ତ୍ର ବ୍ୟବସ୍ଥା ନାହିଁ । ଋଣ ଦାତା ଓ ଋଣ ଗ୍ରହୀତା କ୍ଷେତ୍ରରେ ଯେପରି ହିସାବ ଲେଖାଯାଏ ପ୍ରତିଜ୍ଞାପତ୍ର କ୍ଷେତ୍ରରେ ମଧ୍ୟ ତାହାହିଁ ହେବ । ମାତ୍ର ଯଦି ଏହାକୁ ହୁଣ୍ଡି ଭଳି ବ୍ୟବହାର କରାଯାଏ ତାହା ହେଲେ ଏହାର ହିସାବ ଲିଖନ ପଦ୍ଧତି ହୁଣ୍ଡିର ଅନୁରୂପ ହେବ ।

## ୭ । ବାଣିଜ୍ୟିକ ହୁଣ୍ଡି :

### ସଂଜ୍ଞା :

ହସ୍ତାନ୍ତର ଯୋଗ୍ୟ ଦଲିଲ ଆଇନର ୫ ଧାରା ଅନୁଯାୟୀ ବାଣିଜ୍ୟକ ହୁଣ୍ଡିର ନିମ୍ନଲିଖିତ ସଂଜ୍ଞା ଦିଆ ଯାଇଛି :

ଲେଖକ କର୍ତ୍ତୃକ ସ୍ୱାକ୍ଷରିତ କୌଣସି ଲିଖିତ ଦଲିଲରେ ଉକ୍ତ ବ୍ୟକ୍ତି ଯଦି ଅନ୍ୟ ଜଣେ ନିର୍ଦ୍ଦିଷ୍ଟ ବ୍ୟକ୍ତିଙ୍କୁ ବା ତାଙ୍କର ଆଦିଷ୍ଟ ବ୍ୟକ୍ତିଙ୍କୁ କିମ୍ବା ଦଲିଲର ବାହକଙ୍କୁ ନିର୍ଦ୍ଦିଷ୍ଟ ପରିମାଣର ଅର୍ଥ ପ୍ରଦାନ କରିବା ନିମନ୍ତେ କୌଣସି ଏକ ନିର୍ଦ୍ଦିଷ୍ଟ ବ୍ୟକ୍ତିଙ୍କୁ ସର୍ତ୍ତହୀନ ଆଦେଶ ଦିଏ ତାହାହେଲେ ଉକ୍ତ ଦଲିଲକୁ ହୁଣ୍ଡି କୁହାଯାଏ ।

## ଲକ୍ଷଣ :

ହୁଣ୍ଡିର ପ୍ରଧାନ ଲକ୍ଷଣ ଗୁଡ଼ିକ ନିମ୍ନରେ ପ୍ରଦତ୍ତ ହେଲା । ଏହାର ସଂଜ୍ଞାରେ ଏହି ଲକ୍ଷଣଗୁଡ଼ିକ ଅନ୍ତର୍ନିହିତ ରହିଛି ।

(୧) ଏହା ଲିଖିତ ଦଲିଲ ହେବା ପ୍ରୟୋଜନ ।

(୨) ଏହି ଦଲିଲରେ ଅର୍ଥପ୍ରଦାନ ସକାଶେ ସ୍ପଷ୍ଟ ଏବଂ ସର୍ତ୍ତହୀନ ଆଦେଶ ଥିବା ପ୍ରୟୋଜନ ।

(୩) ହୁଣ୍ଡିର ଲେଖକ, ଗ୍ରାହକ ଏବଂ ପ୍ରାପକ ନିର୍ଦ୍ଦିଷ୍ଟ ବ୍ୟକ୍ତି ହେବା ଆବଶ୍ୟକ ।

(୪) ଦଲିଲରେ ଉଲ୍ଲିଖିତ ଅର୍ଥ ନିର୍ଦ୍ଦିଷ୍ଟ ହେବା ଆବଶ୍ୟକ ଏବଂ ଏହା ଦେଶୀୟ ମୁଦ୍ରା ମାଧ୍ୟମରେ ପ୍ରକାଶିତ ହେବା ପ୍ରୟୋଜନ ।

(୫) ଏହି ଦଲିଲରେ ଲେଖକଙ୍କର ସ୍ୱାକ୍ଷର ଥିବା ଅବଶ୍ୟ ପ୍ରୟୋଜନ ।

(୬) ଦଲିଲରେ ଉପଯୁକ୍ତ ପରିମାଣର ଷ୍ଟାମ୍ପ ଦିଆଯାଇଥିବ । ତାହା ନ ହେଲେ ଏହି ଦଲିଲ ବିଚାରାଳୟରେ ଆବଶ୍ୟକ ବେଳେ ପ୍ରମାଣ ସ୍ୱରୂପ ଗ୍ରାହ୍ୟ ହେବ ନାହିଁ ।

ଉପରୋକ୍ତ ଲକ୍ଷଣଗୁଡ଼ିକ ମଧ୍ୟରୁ କୌଣସି ଗୋଟିଏ ଲକ୍ଷଣ ବି ଯଦି ଅଭାବ ଥାଏ ତାହେଲେ ତାହା ହୁଣ୍ଡି ରୂପେ ଗ୍ରାହ୍ୟ ହେବ ନାହିଁ ।

## ନମୁନା :

ହୁଣ୍ଡିର କେତେକ ନମୁନା ନିମ୍ନରେ ପ୍ରଦତ୍ତ ହେଲା :

| ଷ୍ଟାମ୍ପ | ୧,୦୦୦ ଟଙ୍କା | ଭୁବନେଶ୍ୱର<br>ମାର୍ଚ୍ଚ ୩, ୧୯୭୩ |
|---|---|---|

ପ୍ରାପ୍ତ ମୂଲ୍ୟର ବିନିମୟରେ ଆଜ ତାରିଖଠାରୁ ତିନି ମାସ ପରେ ଶ୍ରୀ ଅଶୋକ ମିଶ୍ରଙ୍କୁ କିମ୍ବା ତାଙ୍କ ଆଦିଷ୍ଟ ଅନ୍ୟ ବ୍ୟକ୍ତିଙ୍କୁ ଏକ ହଜାର ଟଙ୍କା ପ୍ରଦାନ କର ।

| ଶ୍ରୀ ଅରବିନ୍ଦ ସାହୁ<br>ବକ୍ସି ବଜାର, କଟକଙ୍କ ପ୍ରତି । | ସ୍ୱୀକୃତ<br>ସ୍ୱା/ଅରବିନ୍ଦ ସାହୁ<br>୩-୩-୧୯୭୩ | ସ୍ୱା/ଅନାଦି ଦାସ |
|---|---|---|

ଏହାର ଆଉ ଏକ ନମୁନା ଇଂରାଜୀରେ ଦିଆଗଲା ।

| ଷ୍ଟାମ୍ପ | Rs. 500 | Cuttack<br>3rd. May, 1973 |
|---|---|---|

Three months after date pay to Sri B. Kanungo or to his order a sum of Rupees One Thousand only for value received.

| To Sri S. Patnaik<br>Bhubaneswar-7 | Accepted<br>Sd/S. Patnaik<br>4-5-1973 | Sd/B. Sahu |
|---|---|---|

**ପକ୍ଷ :**

ଜଣେ ବ୍ୟବସାୟୀ ଯଦି ଅପର ଜଣେ ବ୍ୟବସାୟୀଙ୍କଠାରୁ ଟଙ୍କା ଉଧାର ନିଅନ୍ତି କିମ୍ବା ଉଧାରରେ ପଣ୍ୟ ଦ୍ରବ୍ୟ ବା ଅନ୍ୟ କୌଣସି ସାମଗ୍ରୀ ଆଦି ବା ଯନ୍ତ୍ରପାତି କ୍ରୟ କରନ୍ତି ତାହେଲେ ତାଙ୍କୁ ତାଙ୍କର ଦେଣା ସ୍ୱୀକାର କରିବା ସକାଶେ ମହାଜନଙ୍କ ଦ୍ୱାରା ଲିଖିତ ଏହିପରି ହୁଣ୍ଡି ସ୍ୱୀକାର କରିବାକୁ ପଡ଼େ । ସାଧାରଣତଃ ଏହି ହୁଣ୍ଡି ବାବଦ ଋଣ ଏକ ମାସ ପରେ ଏବଂ ଅତି ଅଧିକ ହେଲେ ତିନି ମାସ ପରେ ପରିଶୋଧ କରିବାକୁ ପଡ଼େ । ଏହି ହୁଣ୍ଡି ସମ୍ପୃକ୍ତ ପକ୍ଷମାନଙ୍କର ବିବରଣୀ ନିମ୍ନରେ ପ୍ରଦତ୍ତ ହେଲା ।

(୧) ଯେଉଁ ବ୍ୟକ୍ତି ହୁଣ୍ଡି ପ୍ରସ୍ତୁତ କରି ତହିଁରେ ସ୍ୱାକ୍ଷର କରନ୍ତି ତାହାଙ୍କୁ ଲେଖକ କୁହାଯାଏ । ପ୍ରଥମ ନମୁନାରେ ଦିଆ ଯାଇଥିବା ହୁଣ୍ଡିରେ ଶ୍ରୀ ଅନାଦି ଦାସ, ଯେ ଏହି ହୁଣ୍ଡି ପ୍ରସ୍ତୁତ କରି ତହିଁରେ ସ୍ୱାକ୍ଷର କରିଛନ୍ତି ସେ ହୁଣ୍ଡିର ଲେଖକ । (୨) ହୁଣ୍ଡିରେ ଲେଖାଥିବା ଆଦେଶ ଯାହାଙ୍କ ନିକଟକୁ ପ୍ରେରଣ କରାଯାଏ ତାଙ୍କୁ ଦାୟକ ବା ଗ୍ରାହକ କୁହାଯାଏ । ଉଲ୍ଲିଖିତ ହୁଣ୍ଡିରେ ଶ୍ରୀ ଅରିନ୍ଦମ ସାହୁ ଏହି ହୁଣ୍ଡିର ଦାୟକ, ଅର୍ଥାତ୍ ଦାୟୀ । ହୁଣ୍ଡି ପ୍ରସ୍ତୁତ ହୋଇଥିବା ତାରିଖଠାରୁ ତିନି ମାସ ପରେ ସେ ହୁଣ୍ଡି ବାବଦ ୧,୦୦୦ ଟଙ୍କା ପ୍ରଦାନ କରିବାକୁ ପ୍ରସ୍ତୁତ ରହିବେ । ଏଥିରୁ ବୁଝାଯିବ ଯେ ଶ୍ରୀ ଅରିନ୍ଦମ ସାହୁ ପୂର୍ବରୁ ଶ୍ରୀ ଅନାଦି ଦାସଙ୍କଠାରୁ ୧,୦୦୦ ଟଙ୍କା ନଗଦ ଆକାରରେ ହେଉ ଅବା ପଣ୍ୟାଦି ଦ୍ରବ୍ୟ ଆକାରରେ ହେଉ ଆଣିଛନ୍ତି । ସେହି ନେଣଦେଣ ବେଳେ ଅରିନ୍ଦମଙ୍କ ନିକଟରେ ଟଙ୍କା ନ ଥିବାରୁ ସେ ଟଙ୍କା ବା ପଣ୍ୟ ଉଧାରରେ ଆଣିଛନ୍ତି ଏବଂ ସେତେବେଳେ ତିନି ମାସ ମିଆଦରେ ପ୍ରସ୍ତୁତ ହୋଇଥିବା ଏକ ହୁଣ୍ଡି ସ୍ୱୀକାର କରିବାକୁ ସ୍ୱୀକୃତ ହୋଇଛନ୍ତି । ସେହି ମୌଖିକ ସ୍ୱୀକୃତ

ବଳରେ ଶ୍ରୀ ଅନାଦି ଦାସ ଅରବିନ୍ଦଙ୍କ ଉପରେ ଏହି ହୁଣ୍ଡି ପ୍ରସ୍ତୁତ କରି ତାଙ୍କ ନିକଟକୁ ଲିଖିତ ସ୍ୱୀକୃତି ନିମନ୍ତେ ପଠାଇଛନ୍ତି । ଅରବିନ୍ଦ ପୂର୍ବ ଚୁକ୍ତି ଅନୁଯାୟୀ ତିନି ମାସ ପରେ ୧,୦୦୦ ଟଙ୍କାର ଋଣ ପରିଶୋଧ କରିବାର ଦାୟିତ୍ୱ ସ୍ୱୀକାର କରି ତାହା ସ୍ୱୀକାର କରିଛନ୍ତି । ତେଣୁ ସେ ଋଣୀ ବା ଦାୟକ । (୩) ଏହି ହୁଣ୍ଡି ବ ବଦଳ ଟଙ୍କା ଯେ ପାଇବେ ସେ ପ୍ରାପକ । ଉଲ୍ଲିଖିତ ହୁଣ୍ଡିରେ ଶ୍ରୀ ଅଶୋକ ମିଶ୍ର ପ୍ରାପକ ଅଟନ୍ତି । ଏଥିରୁ ବୁଝିବାକୁ ପଡ଼ିବ ଯେ ଶ୍ରୀ ଅନାଦି ଦାସ ସମ୍ଭବତଃ ଶ୍ରୀ ଅଶୋକ ମିଶ୍ରଙ୍କଠାରୁ ଉଧାରରେ ନଗଦ ଟଙ୍କା କିମ୍ବା ପଣ୍ୟାଦି ଗ୍ରହଣ କରିଛନ୍ତି । ତେଣୁ ଏହି ହୁଣ୍ଡିରେ ଶ୍ରୀ ଦାସ ଶ୍ରୀ ମିଶ୍ରଙ୍କୁ ପ୍ରାପକ ବୋଲି ଉଲ୍ଲେଖ କରିଛନ୍ତି, ଅର୍ଥାତ୍ ଶ୍ରୀ ମିଶ୍ର ଏହି ୧,୦୦୦ ଟଙ୍କା ଅରବିନ୍ଦଙ୍କଠାରୁ ପାଇଲେ ଅନାଦି ଦାସ ମିଶ୍ରଙ୍କଠାରୁ କରିଥିବା ଋଣ ପରିଶୋଧ ହୋଇଯିବ ।

ଯେହେତୁ ଦାୟକ ହୁଣ୍ଡି ସ୍ୱୀକାର କରନ୍ତି, ତାଙ୍କୁ ହୁଣ୍ଡି ସ୍ୱୀକାରୀ ବୋଲି ମଧ୍ୟ କୁହାଯାଏ । ଅନେକ ସମୟରେ ପ୍ରାପକ ଏହି ହୁଣ୍ଡିକୁ ନିର୍ଦ୍ଦିଷ୍ଟ ଦିବସ ପର୍ଯ୍ୟନ୍ତ ଅର୍ଥାତ୍ ଅର୍ଥ ପ୍ରାପ୍ତିର ଦିବସ ପର୍ଯ୍ୟନ୍ତ ନିଜ ନିକଟରେ ନ ରଖି ତାଙ୍କର କୌଣସି ଋଣଦାତା ବା ମହାଜନଙ୍କୁ ଏହା ପ୍ରଦାନ କରି ଋଣ ପରିଶୋଧ କରି ପାରନ୍ତି । ସେ କ୍ଷେତ୍ରରେ ପ୍ରାପକଙ୍କୁ ସ୍ୱତ୍ୱ ହସ୍ତାନ୍ତରକାରୀ ବୋଲି କୁହାଯାଏ ଏବଂ ଯାହାଙ୍କୁ ଏହି ହୁଣ୍ଡିର ସ୍ୱତ୍ୱ ହସ୍ତାନ୍ତରିତ କରାଯାଏ ତାହାଙ୍କୁ ସ୍ୱତ୍ୱ ହସ୍ତାନ୍ତର ଗ୍ରହୀତା ବୋଲି କୁହାଯାଏ । ଯେ କୌଣସି ବ୍ୟକ୍ତି ହୁଣ୍ଡିର ସ୍ୱତ୍ୱାଧିକାର ଲାଭ କରନ୍ତି ତାହାଙ୍କୁ ହୁଣ୍ଡିର ଧାରକ କୁହାଯାଏ ।

ଏହା ବ୍ୟତୀତ ଆବଶ୍ୟକ ସମୟରେ ଅନ୍ୟ କେତେକ ପକ୍ଷ ଏହି ହୁଣ୍ଡି ସହିତ ଜଡ଼ିତ ହୋଇ ପଡ଼ନ୍ତି । ଅନେକ ସମୟରେ ହୁଣ୍ଡିର ପଛପଟେ ଅନ୍ୟ ଜଣଙ୍କର ନାମର ଉଲ୍ଲେଖ ଥାଇ ପାରେ ଯେ, ଦାୟକ ହୁଣ୍ଡିଟି ସ୍ୱୀକାର କରିବାକୁ ସମ୍ମତ ନ ହେଲେ, ହୁଣ୍ଡିଟି ସ୍ୱୀକାର କରନ୍ତୁ । ତାହାଙ୍କୁ ପ୍ରୟୋଜନକାଳେ ହୁଣ୍ଡି ଦାୟକ ବା ପ୍ରୟୋଜନ କାଳେ ହୁଣ୍ଡି ନିର୍ଦ୍ଦେଶୀ କୁହାଯାଏ । ହୁଣ୍ଡି ଯଦି ଦାୟକଙ୍କ ଦ୍ୱାରା କୌଣସି କାରଣରୁ ଅସ୍ୱୀକୃତ ହୁଏ ତାହେଲେ ତାହା ନୋଟାରି ପବ୍ଲିକଙ୍କ ଅଫିସରେ ଥିବା ଉପଯୁକ୍ତ ଖାତାରେ ଲିପିବଦ୍ଧ କରାଯାଏ । ଏହାକୁ Noting and Protesting କୁହାଯାଏ । ଏହାଦ୍ୱାରା ହୁଣ୍ଡିଟି ଯେ ପ୍ରତ୍ୟାଖ୍ୟାତ ବା ଅସମ୍ମାନିତ ହୋଇଥିଲା ତାହା ପ୍ରମାଣିତ ହୁଏ । ଏହିପରି ଲେଖା ହେଲା ପରେ ଯଦି ଲେଖକ ବା ଦାୟକଙ୍କର ସମ୍ମାନ ରକ୍ଷା କରିବା ନିମନ୍ତେ କୌଣସି ବ୍ୟକ୍ତି ଏହି ହୁଣ୍ଡିକୁ ସ୍ୱୀକାର କରନ୍ତି ତାହାହେଲେ ତାହାଙ୍କୁ ସମ୍ମାନାର୍ଥେ ହୁଣ୍ଡି ସ୍ୱୀକାରୀ ବୋଲି କୁହାଯାଏ ।

## ପ୍ରତିଜ୍ଞା ପତ୍ର ଓ ହୁଣ୍ଡିର ପାର୍ଥକ୍ୟ :

(୧) ପ୍ରତିଜ୍ଞା ପତ୍ର ସାଧାରଣତଃ ଋଣ ଗ୍ରହଣ ନିମନ୍ତେ ବ୍ୟବହୃତ ହୁଏ, କିନ୍ତୁ ହୁଣ୍ଡି ପଣ୍ୟ ଦ୍ରବ୍ୟ କ୍ରୟ କରିବା ନିମନ୍ତେ ସାଧାରଣତଃ ବ୍ୟବହୃତ ହୁଏ ।

(୨) ଋଣ ଗ୍ରହୀତା ବା ଦାୟକ ପ୍ରତିଜ୍ଞା ପତ୍ର ଲେଖନ୍ତି, କିନ୍ତୁ ହୁଣ୍ଡି ଋଣ ଦାତା ଲେଖନ୍ତି । ସେଥି ନିମନ୍ତେ ପ୍ରଥମଟି ଋଣ ପରିଶୋଧ କରିବାର ଏକ ପ୍ରତିଶ୍ରୁତି, କିନ୍ତୁ ଦ୍ୱିତୀୟଟି ଋଣ ପରିଶୋଧ କରିବାର ଆଦେଶ ।

(୩) ପ୍ରତିଜ୍ଞା ପତ୍ର ସକାଶେ ସ୍ୱୀକୃତିର ଆବଶ୍ୟକତା ନାହିଁ, କିନ୍ତୁ ହୁଣ୍ଡି ଦାୟକଙ୍କଦ୍ୱାରା ସ୍ୱୀକୃତ ନ ହେବା ପର୍ଯ୍ୟନ୍ତ ଏହା ବୈଧ ହୁଏନାହିଁ ଏବଂ ଏହାର କୌଣସି ମୂଲ୍ୟ ନ ଥାଏ ।

(୪) ପ୍ରତିଜ୍ଞା ପତ୍ରରେ କେବଳ ଦୁଇଟି ପକ୍ଷ ସଂପୃକ୍ତ ଥାଆନ୍ତି ଯଥା ପ୍ରତିଜ୍ଞାକାରୀ ଓ ପ୍ରତିଜ୍ଞାଗ୍ରହଣକାରୀ, ମାତ୍ର ହୁଣ୍ଡିରେ ସାଧାରଣତଃ ତିନିଗୋଟି ପକ୍ଷ ସଂପୃକ୍ତ ଥାଆନ୍ତି, ଯଥା : ଲେଖକ, ଦାୟକ ଓ ପ୍ରାପକ ।

(୫) ପ୍ରତିଜ୍ଞାପତ୍ର ଅସମ୍ମାନିତ ହେଲେ ତାହା କୌଣସିଠାରେ ଲେଖେଇବା ଆବଶ୍ୟକ ହୁଏ ନାହିଁ, ମାତ୍ର ହୁଣ୍ଡି ଅସମ୍ମାନିତ ହେଲେ ତାହା ନୋଟାରୀ ପବ୍ଲିକ୍‌ଙ୍କ ଅଫିସରେ ଲେଖାଇବା ପ୍ରୟୋଜନ ହୁଏ ଏବଂ ସେହି ଅଫିସର ହୁଣ୍ଡିର ସଂପୃକ୍ତ ସମସ୍ତ ପକ୍ଷଙ୍କୁ ହୁଣ୍ଡିଟି ଅସମ୍ମାନିତ ହୋଇଛି ବୋଲି ନୋଟିସ ଦ୍ୱାରା ଜଣାଇ-ଦିଅନ୍ତି ।

(୬) ହୁଣ୍ଡିରେ ଋଣ ପରିଶୋଧ କରିବାର ପ୍ରାଥମିକ ଦାୟିତ୍ୱ ଦାୟକଙ୍କର, କିନ୍ତୁ ଯଦି ସେ ହୁଣ୍ଡିଟି ଅସ୍ୱୀକାର କରନ୍ତି ତାହା ହେଲେ ହୁଣ୍ଡି ବାବଦ ଟଙ୍କା ଲେଖକଙ୍କୁ ଦେବାକୁ ପଡ଼େ; କିନ୍ତୁ ପ୍ରତିଜ୍ଞା ପତ୍ରରେ ଋଣ ପରିଶୋଧ କରିବାର ପୂର୍ଣ୍ଣ ଦାୟିତ୍ୱ ଲେଖକଙ୍କର, ଅର୍ଥାତ୍ ପ୍ରତିଜ୍ଞାକାରୀଙ୍କର ।

## ବାଣିଜ୍ୟିକ ହୁଣ୍ଡିର ସ୍ୱୀକୃତି :

ପୂର୍ବରୁ କୁହାଯାଇଛି ଯେ ହୁଣ୍ଡିଟି ଲେଖିବା ପରେ ହୁଣ୍ଡିର ଲେଖକ ତାହା ଦାୟକଙ୍କ ନିକଟକୁ ସ୍ୱୀକୃତି ନିମନ୍ତେ ପ୍ରେରଣ କରନ୍ତି । କେବଳ ଦାୟକ ସ୍ୱୀକାର କଲାପରେ ହୁଣ୍ଡିଟି ବୈଧ ହୁଏ । ଅବଶ୍ୟ ଯେଉଁ ହୁଣ୍ଡି ବାବଦ ଟଙ୍କା ଦାବୀ ମାତ୍ରେ ଅଥବା ଦର୍ଶନ ମାତ୍ରେ ପ୍ରଦାନ କରିବାକୁ ପଡ଼େ ସେ କ୍ଷେତ୍ରରେ ସ୍ୱୀକୃତି ଅବାନ୍ତର ଓ ନିଷ୍ପ୍ରୟୋଜନ । ମାତ୍ର ହୁଣ୍ଡି ବାବଦ ଟଙ୍କା

ଯଦି ମାସେ, ଦୁଇ ମାସ ଅଥବା ତିନି ମାସ ପରେ ପ୍ରଦେୟ ହୁଏ ତାହାହେଲେ ସେ କ୍ଷେତ୍ରରେ ସ୍ୱୀକୃତ ଏକାନ୍ତ ପ୍ରୟୋଜନ । ଏହି ସ୍ୱୀକୃତ ଦୁଇ ପ୍ରକାରର ହୁଏ, ଯଥା ସାଧାରଣ ସ୍ୱୀକୃତ ବା ସର୍ତ୍ତବିହୀନ ସ୍ୱୀକୃତ ଓ ସର୍ତ୍ତାଧୀନ ସ୍ୱୀକୃତ । ସାଧାରଣ ସ୍ୱୀକୃତ—ଯେତେବେଳେ କୌଣସି ସର୍ତ୍ତ ଆରୋପ ନ କରି ଦାୟକ ହୁଣ୍ଡିଟି ସ୍ୱୀକାର କରି ସ୍ୱାକ୍ଷର କରନ୍ତି ତାହାକୁ ସାଧାରଣ ସ୍ୱୀକୃତ କୁହାଯାଏ ।

ସର୍ତ୍ତାଧୀନ ସ୍ୱୀକୃତ—ଦାୟକ ହୁଣ୍ଡିଟି ସ୍ୱୀକାର କରିବା ସମୟରେ ତହିଁରେ ଯଦି କୌଣସି ସର୍ତ୍ତ ଆରୋପ କରନ୍ତି ତାହାକୁ ସର୍ତ୍ତାଧୀନ ସ୍ୱୀକୃତ ବୋଲି କୁହାଯିବ । ଏହି ସର୍ତ୍ତ ଅର୍ଥର ପରିମାଣ, ଦେୟ ଦିବସ, ପରିଶୋଧର ସ୍ଥାନ ସମ୍ବନ୍ଧୀୟ କିମ୍ବା କୌଣସି ଘଟଣା ସାପେକ୍ଷ ହୋଇପାରେ । ଯଦି ଦାୟକଙ୍କର ସଂଖ୍ୟା ଏକାଧିକ ହୁଏ ଏବଂ ସେମାନଙ୍କ ମଧ୍ୟରୁ ସମସ୍ତେ ସ୍ୱୀକୃତ ପ୍ରଦାନ ନ କରନ୍ତି ତା ହେଲେ ମଧ୍ୟ ହୁଣ୍ଡିର ସ୍ୱୀକୃତ ସର୍ତ୍ତାଧୀନ ବୋଲି ବିବେଚିତ ହେବ । ଏହିପରି ସର୍ତ୍ତାଧୀନ ସ୍ୱୀକୃତକୁ ଯେ କୌଣସି ଧାରକ ଅଗ୍ରାହ୍ୟ କରି ପାରନ୍ତି ଓ ଏହାକୁ ଅସମ୍ମାନିତ କରାଯାଇଛି ବୋଲି ବିବେଚନା କରି ଦାୟକ ବିରୁଦ୍ଧରେ ମକଦ୍ଦମା ମଧ୍ୟ କରିପାରନ୍ତି । ଧାରକ ଇଚ୍ଛା କଲେ ଏପରି ହୁଣ୍ଡିର ଦାୟିତ୍ୱରୁ ମୁକ୍ତ ହୋଇ ପାରନ୍ତି ।

## ହୁଣ୍ଡିର ଶ୍ରେଣୀ ବିଭାଗ :

ହୁଣ୍ଡି ବହୁ ଶ୍ରେଣୀର ହୋଇପାରେ, ବିଭିନ୍ନ ଶ୍ରେଣୀର ହୁଣ୍ଡିର ବର୍ଣ୍ଣନା ନିମ୍ନରେ ପ୍ରଦତ୍ତ ହେଲା :

(୧) ଦଲିଲ ହୁଣ୍ଡି :—

ଏହି ହୁଣ୍ଡି ସହିତ ସ୍ୱତ୍ତ୍ୱ ନିର୍ଦ୍ଦେଶାତ୍ମକ ଦଲିଲ, ରୁଲଣି ରସିଦ, ବିଲଟି, ବୀମା ପ୍ରଭୃତି ଦଲିଲ ସଂଯୁକ୍ତ ଥାଏ । ଏହିପରି ହୁଣ୍ଡି ପୁଣି ଦୁଇ ପ୍ରକାର ହୁଏ, ଯଥା (୧) ପ୍ରଦେୟ ଅର୍ଥ ପ୍ରାପ୍ତିରେ ଦଲିଲ ହସ୍ତାନ୍ତର କରାଯିବ ଓ (୨) ହୁଣ୍ଡି ସ୍ୱୀକାର କଲେ ଦଲିଲ ହସ୍ତାନ୍ତର କରାଯିବ । ସାଧାରଣତଃ ଏହି ହୁଣ୍ଡି ବିଦେଶରୁ ପ୍ରେରିତ ପଣ୍ୟ ଦ୍ରବ୍ୟ ସହିତ କୌଣସି ବ୍ୟାଙ୍କ୍ ଜରିଆରେ ପଠାଯାଇ- ଥାଏ । ପ୍ରଦେୟ ଅର୍ଥ ନ ଦେବା ପର୍ଯ୍ୟନ୍ତ କିମ୍ବା ହୁଣ୍ଡି ସ୍ୱୀକାର ନ କରିବା ପର୍ଯ୍ୟନ୍ତ ଦଲିଲଗୁଡ଼ିକ ହସ୍ତାନ୍ତର କରାଯାଏ ନାହିଁ । ଏହି ଦଲିଲଗୁଡ଼ିକ ହସ୍ତଗତ ନ କଲେ ବ୍ୟବସାୟୀ ଜାହାଜରୁ ପଣ୍ୟ ଦ୍ରବ୍ୟ ଆଣି ପାରିବେ ନାହିଁ, ତେଣୁ ବାଧ୍ୟ ହୋଇ ହୁଏତ ହୁଣ୍ଡି ସ୍ୱୀକାର କରିବାକୁ ପଡ଼େ ନତୁବା ହୁଣ୍ଡି ବାବଦ ସମସ୍ତ ଟଙ୍କା ଦେଇ ଦଲିଲ ସଂଗ୍ରହ କରିବାକୁ ପଡ଼େ ।

## ହୁଣ୍ଡି ଓ ପ୍ରତିଜ୍ଞା ପତ୍ର

**କତା ହିସାବରେ ପ୍ରସ୍ତୁତ ହୁଣ୍ଡି :**

ଏକା ହୁଣ୍ଡିର ୩ ଟା ୪ଟି ନକଲ କରାଯାଇଥାଏ; ପ୍ରତ୍ୟେକ ହୁଣ୍ଡିର ବିଷୟବସ୍ତୁ ସମାନ । ଏପରି କରିବାର ଅର୍ଥ ହେଲା ଏହି ଯେ ପ୍ରଥମ କିମ୍ବା ଦ୍ୱିତୀୟ ହୁଣ୍ଡି ବାଟରେ ହଜିଗଲେ ମଧ୍ୟ ତୃତୀୟ କିମ୍ବା ଚତୁର୍ଥ ହୁଣ୍ଡି ହଜିଯିବା ସମ୍ଭବ ନୁହେଁ । ଏହି ଗୁଡିକ ମଧ୍ୟରୁ ଯେ କୌଣସି ଖଣ୍ଡିଏ ହୁଣ୍ଡି ଦାୟକ ନିକଟରେ ପହଞ୍ଚିଲେ ମଧ୍ୟ କାର୍ଯ୍ୟ ଉଦ୍ଧାର ହେବ । ତେଣୁ ପ୍ରତ୍ୟେକ ହୁଣ୍ଡିରେ ଲେଖକଙ୍କର ସ୍ୱାକ୍ଷର ଓ ଉପଯୁକ୍ତ ମୂଲ୍ୟର ଷ୍ଟାମ୍ପ୍ ଦିଆଯାଇଥାଏ । ସାଧାରଣତଃ ଏହା ବିଦେଶୀ ହୁଣ୍ଡି ସଂକ୍ରାନ୍ତରେ ବ୍ୟବହୃତ ହୁଏ ।

**ସାହାଯ୍ୟକାରୀ ହୁଣ୍ଡି :**

ବାଣିଜ୍ୟକ ହୁଣ୍ଡି ଏକ ପ୍ରକୃତ ବ୍ୟବସାୟିକ ଆଦାନ ପ୍ରଦାନ ଭିତ୍ତିରେ ପ୍ରସ୍ତୁତ କରାଯାଏ, କିନ୍ତୁ ସାହାଯ୍ୟକାରୀ ହୁଣ୍ଡି କେବଳ ଅନ୍ୟ ଏକ ବ୍ୟବସାୟୀଙ୍କୁ ସାହାଯ୍ୟ କରିବା ଉଦ୍ଦେଶ୍ୟରେ ପ୍ରସ୍ତୁତ କରାଯାଏ । ଏଥିରେ କୌଣସି ପଣ୍ୟ ଦ୍ରବ୍ୟ ଖରିଦ ବିକ୍ରି ବା ହସ୍ତାନ୍ତରିତ ହୁଏ ନାହିଁ । ସାଧାରଣ କ୍ଷେତ୍ରରେ, ଉଦାହରଣ ସ୍ୱରୂପ, ଖ କଠାରୁ ପଣ୍ୟ ଉଧାରରେ କ୍ରୟ କରି କ ପ୍ରସ୍ତୁତ କରିଥିବା ହୁଣ୍ଡି ସ୍ୱୀକାର କରେ ଏବଂ ନିର୍ଦ୍ଦିଷ୍ଟ ଦିବସରେ ହୁଣ୍ଡି ବାବଦ ଟଙ୍କା ମଧ୍ୟ ପରିଶୋଧ କରେ । ମାତ୍ର ସାହାଯ୍ୟକାରୀ ହୁଣ୍ଡି କ୍ଷେତ୍ରରେ ଖ କେବଳ କକୁ ସାହାଯ୍ୟ କରିବା ନିମନ୍ତେ କିମ୍ବା ଉଭୟଙ୍କର ପାରସ୍ପରିକ ସାହାଯ୍ୟ ନିମନ୍ତେ କ ଠାରୁ ଉଧାରରେ କୌଣସି ପଣ୍ୟ କ୍ରୟ ନ କରି କ ପ୍ରସ୍ତୁତ କରିଥିବା ହୁଣ୍ଡି ସ୍ୱୀକାର କରେ । କ ସେହି ସ୍ୱୀକୃତ ହୁଣ୍ଡିକୁ ବ୍ୟାଙ୍କରେ ଭଙ୍ଗାଇ ନିଜେ ସେହି ଟଙ୍କା ଉପଭୋଗ କରିପାରେ କିମ୍ବା ଉଭୟ କ ଓ ଖ ସେହି ଟଙ୍କା ବାଣ୍ଟିନେଇ ପାରନ୍ତି । ହୁଣ୍ଡି ବାବଦ ଟଙ୍କାର ଦେୟ ଦିବସ ପୂର୍ବରୁ ଯେ ଯେତେ ଅଂଶରେ ଟଙ୍କା ନେଇଥାଏ ସେ ତାହା ଫେରାଇ ଦିଏ ଓ ସେହି ଟଙ୍କା ପାଇବା ପରେ ଖ ହୁଣ୍ଡି ବାବଦ ଟଙ୍କା ପ୍ରାପକଙ୍କୁ ଦେଇ ଦିଏ । ଏହାଦ୍ୱାରା ଉଭୟ କ ଓ ଖ ହୁଣ୍ଡିର ପ୍ରସ୍ତୁତ ଦିବସଠାରୁ ଦେୟ ଦିବସ ପର୍ଯ୍ୟନ୍ତ ଟଙ୍କା ଉପଭୋଗ କରିବାଦ୍ୱାରା ଉପକୃତ ହୁଅନ୍ତି । ଏହାକୁ ସାହାଯ୍ୟକାରୀ ହୁଣ୍ଡି କୁହାଯାଏ । ଆଇନ ସମ୍ମତ ନ ହେଲେ ମଧ୍ୟ ଏହାର ପ୍ରଚଳନ ଦେଖାଯାଏ । ପ୍ରକୃତ ହୁଣ୍ଡି ସହିତ ଏହାର ବାହ୍ୟିକ ଆକୃତିରେ କୌଣସି ପ୍ରଭେଦ ନ ଥିବାରୁ କେଉଁଟି ପ୍ରକୃତ ବିନିମୟ ଭିତ୍ତିରେ ପ୍ରସ୍ତୁତ ହୁଣ୍ଡି ଓ କେଉଁଟି ସାହାଯ୍ୟକାରୀ ହୁଣ୍ଡି ତାହା କେବଳ ହୁଣ୍ଡିର ଲେଖକ ଓ ଦାୟକ ବ୍ୟତୀତ ଅନ୍ୟ କେହି ଜାଣି ପାରନ୍ତି ନାହିଁ ।

(୪) ଅନ୍ତର୍ଦେଶୀୟ ଓ ବୈଦେଶିକ ହୁଣ୍ଡି :

ଯଦି ଗୋଟିଏ ହୁଣ୍ଡି ଭାରତରେ ପ୍ରଦେୟ ହୁଏ କିମ୍ବା ଏହାର ଦାୟକ ଭାରତୀୟ ନାଗରିକ ହୁଅନ୍ତି ସେତେବେଳେ ସେହି ହୁଣ୍ଡିକୁ ଅନ୍ତର୍ଦେଶୀୟ ହୁଣ୍ଡି କୁହାଯାଏ । ଅପର ପକ୍ଷରେ ଯଦି ଗୋଟିଏ ହୁଣ୍ଡି ବିଦେଶରେ ପ୍ରଦେୟ ହୁଏ ଏବଂ ଏହାର ଦାୟକ ବିଦେଶୀୟ ନାଗରିକ ହୁଅନ୍ତି ତାହାହେଲେ ସେହି ହୁଣ୍ଡିକୁ ବୈଦେଶିକ ହୁଣ୍ଡି କୁହାଯାଏ । ଅନ୍ତର୍ଦେଶୀୟ ହୁଣ୍ଡିର ଏକ ନମୁନା ପୂର୍ବରୁ ପ୍ରଦତ୍ତ ହୋଇଛି, ଏବେ ଏକ ବୈଦେଶିକ ହୁଣ୍ଡିର ନମୁନା ନିମ୍ନରେ ପ୍ରଦତ୍ତ ହେଲା ।

Foreign Bill Drawn in a Set·

Stamp

Baxibazar<br>
Cuttack-1<br>
3rd. May, 1973

Rs. 4,000

Ninety days after sight of this First of Exchange ( Second and Third of the same tenor and date unpaid ) pay to Indian Overseas Bank Ltd, London, or order, the sume of Rupees Four Thousand only for value received.

Per. Pro Maharana Horn Work<br>
Private Ltd<br>
P. Sahu<br>
Manager

To Lather Kingston<br>
London

(୫) ଅଲୀକ ହୁଣ୍ଡି :

ଯଦି ଗୋଟିଏ ହୁଣ୍ଡିର ଲେଖକ, ଦାୟକ ଓ ପ୍ରାପକ କାଳ୍ପନିକ ବ୍ୟକ୍ତି ହୁଅନ୍ତି ତାହା ହେଲେ ସେହି ହୁଣ୍ଡିକୁ ଅଲୀକ ହୁଣ୍ଡି କୁହାଯାଏ । ଯଦି ହୁଣ୍ଡିର ଲେଖକ ଓ ପ୍ରାପକ କାଳ୍ପନିକ ବ୍ୟକ୍ତି ହୁଅନ୍ତି ତାହାହେଲେ ଦାୟକ ସତ୍ୟ ହେଲେ ମଧ୍ୟ ଏହି ହୁଣ୍ଡିଟି ଅଲୀକ ବୋଲି ପରିଗଣିତ ହେବ । ମାତ୍ର ଯଦି ଏପରି ଏକ ଅଲୀକ ହୁଣ୍ଡି ନିୟମାନୁସାରେ ସ୍ୱତ୍ତ୍ୱାଧିକାରୀଙ୍କ ନିକଟରେ ପହଞ୍ଚେ ତାହାହେଲେ ଏହି ହୁଣ୍ଡିଟି ଉତ୍କୃଷ୍ଟ ହୁଣ୍ଡି ବୋଲି ବିବେଚିତ ହେବ ।

(୬) ବ୍ୟାଙ୍କ୍ ହୁଣ୍ଡି :

ସାଧାରଣ ବ୍ୟବସାୟୀଙ୍କ ଭଳି ଗୋଟିଏ ବ୍ୟାଙ୍କ୍ ଅନ୍ୟ ଏକ ବ୍ୟାଙ୍କ୍ ଉପରେ ହୁଣ୍ଡି କାଟନ୍ତି, ଅର୍ଥାତ୍ ଦାବୀ ମାତ୍ରେ କୌଣସି ଏକ ନିର୍ଦ୍ଦିଷ୍ଟ ବ୍ୟକ୍ତିଙ୍କୁ ଏକ ନିର୍ଦ୍ଦିଷ୍ଟ ପରିମାଣର ଟଙ୍କା ଦେବା ନିମନ୍ତେ ଆଦେଶ କରନ୍ତି । ଏହାକୁ ବ୍ୟାଙ୍କ୍ ହୁଣ୍ଡି ବା ବ୍ୟାଙ୍କ୍ ଡ୍ରାଫ୍ଟ କୁହାଯାଏ । କିପରି ପରିସ୍ଥିତିରେ ବ୍ୟାଙ୍କ୍ ଏହି ହୁଣ୍ଡି ପ୍ରସ୍ତୁତ କରେ ତାହା ନିମ୍ନରେ ବର୍ଣ୍ଣିତ ହେଲା ।

ଉଦାହରଣ ସ୍ୱରୂପ, କଟକର ବ୍ୟବସାୟୀ କ କଲିକତାର ବ୍ୟବସାୟୀ ଖ ଙ୍କଠାରୁ ୫୦୦ ଟଙ୍କାର ସୂତା କପଡ଼ା କିଣି କଲେ । ସେ କଟକର ଷ୍ଟେଟ୍ ବ୍ୟାଙ୍କ୍ ଅଫ୍ ଇଣ୍ଡିଆରେ ଏହି ୫୦୦ ଟଙ୍କା ଜମା ଦେଇ କଲିକତାର ଷ୍ଟେଟ୍ ବ୍ୟାଙ୍କ୍ ଅଫ୍ ଇଣ୍ଡିଆ ଉପରେ ଖଙ୍କୁ ଦେୟ ଏକ ବ୍ୟାଙ୍କ୍ ଡ୍ରାଫ୍ଟ୍ ଖରିଦ କରି ଖ ଙ୍କ ନିକଟକୁ ପଠାଇବେ । ପ୍ରତି ୧୦୦ ଟଙ୍କା ସକାଶେ ହାରାହାରି ୧୨ ପଇସା ମାସୁଲ ପଡ଼େ (ଅବଶ୍ୟ ଏହାର ହାର ପରିବର୍ତ୍ତନଶୀଳ) । କ ଏହି ବ୍ୟାଙ୍କ୍ ଡ୍ରାଫ୍ଟି ଖ ଙ୍କୁ ପଠାଇଲେ ଖ କଲିକତାର ଷ୍ଟେଟ୍ ବ୍ୟାଙ୍କ୍‌ରେ ଏହାକୁ ଦେଖାଇ ୫୦୦ ଟଙ୍କା ପାଇ ପାରିବେ । ବ୍ୟାଙ୍କ୍ ଡ୍ରାଫ୍ଟ୍‌ରେ ଗୋଟିଏ ବ୍ୟାଙ୍କ୍ ସାଧାରଣତଃ ସେହି ବ୍ୟାଙ୍କ୍‌ର ଅନ୍ୟତ୍ର ଥିବା ଏକ ଶାଖାକୁ ଦାବୀ ମାତ୍ରେ ନିର୍ଦ୍ଦିଷ୍ଟ ପରିମାଣର ଟଙ୍କା ଏକ ନିର୍ଦ୍ଦିଷ୍ଟ ବ୍ୟକ୍ତି (ଯାହାଙ୍କର ନାମ ଡ୍ରାଫ୍ଟ୍‌ରେ ଲିପିବଦ୍ଧ କରାଯାଇ ଥାଏ) ଦେବା ସକାଶେ ଆଦେଶ ଦିଅନ୍ତି । ଏହା ଜରିଆରେ ଅପେକ୍ଷାକୃତ ଅତି ଅଳ୍ପ ବ୍ୟୟରେ ଅନ୍ୟ ସ୍ଥାନକୁ ଟଙ୍କା ପଠାଯାଇ ପାରେ । ଏହାକୁ ବ୍ୟାଙ୍କ୍ ହୁଣ୍ଡି ମଧ୍ୟ କୁହାଯାଏ ।

## ପ୍ରତିଜ୍ଞା ପତ୍ର ଓ ହୁଣ୍ଡିର ମିଆଦ :

ପ୍ରତିଜ୍ଞା ପତ୍ର କିମ୍ବା ହୁଣ୍ଡିରେ ଯଦି ଦାବୀ ମାତ୍ରେ ବା ଦର୍ଶନ ମାତ୍ରେ ଲେଖାଥାଏ ତାହାହେଲେ ସେହି ପ୍ରତିଜ୍ଞା ପତ୍ର ବା ହୁଣ୍ଡି ବାବଦ ଟଙ୍କା ଦାୟକଙ୍କୁ ସଙ୍ଗେ ସଙ୍ଗେ ଦେବାକୁ ପଡ଼େ । ମାତ୍ର ଯଦି ଏହି ଦଲିଲରେ ଏହି ତାରିଖଠାରୁ ଏତେ ଦିନ ବା ମାସ ପରେ ଲେଖାଥାଏ ତାହାହେଲେ ପ୍ରଥମେ ଦାୟକ ଏହାକୁ ସ୍ୱୀକାର କରିବେ ଓ ମିଆଦ ପୂର୍ତ୍ତି ଦିବସରେ ହୁଣ୍ଡି ବାବଦ ଟଙ୍କା ପରିଶୋଧ କରିବେ । ପ୍ରଥମ ଶ୍ରେଣୀର ହୁଣ୍ଡିକୁ ଦର୍ଶନୀ ହୁଣ୍ଡି ଓ ଦ୍ୱିତୀୟ ଶ୍ରେଣୀର ହୁଣ୍ଡିକୁ ମୁଦ୍ଦତି ହୁଣ୍ଡି କୁହାଯାଏ ।

## ରିହାତି ଦିନ :

ଯେଉଁ ତାରିଖରେ ହୁଣ୍ଡି ବାବଦ ଟଙ୍କା ଦେୟ ହୁଏ ତାହାକୁ ମିଆଦ ପୂର୍ତ୍ତି ଦିବସ କୁହାଯାଏ । ଦର୍ଶନୀ ପ୍ରତିଜ୍ଞା ପତ୍ର ବା ହୁଣ୍ଡି ଦର୍ଶନ, ଦାବୀ ବା ଉପସ୍ଥାପନ ମାତ୍ରେ ଦେୟ ହେଉଥିବାରୁ ଏହି ଦଲିଲ ଲେଖାର ତାରିଖ ସହିତ ମିଆଦ ପୂର୍ତ୍ତି ଦିବସର କୌଣସି ପ୍ରଭେଦ ନାହିଁ, କିନ୍ତୁ ହସ୍ତାନ୍ତରଯୋଗ୍ୟ ଦଲିଲ ଆଇନର ୨୨ ଧାରା ଅନୁଯାୟୀ ମୁଦ୍ଦତି ପ୍ରତିଜ୍ଞା ପତ୍ର ଓ ହୁଣ୍ଡି ଯେଉଁ ତାରିଖରେ ଦେୟ ଉଲ୍ଲିଖିତ ଥାଏ ତାହା ସହିତ ୩ ଦିନ ଯୋଗ କରାଯାଇ ଯେଉଁ ତାରିଖରେ ଦେୟ ହୁଏ ସେହି ତାରିଖ ହିଁ ଏହି ପ୍ରକାର ଦଲିଲର ମିଆଦ ପୂର୍ତ୍ତି ଦିବସ ବୋଲି ବିବେଚିତ ହେବ । ଏହି ଅତିରିକ୍ତ ୩ ଦିନକୁ ରିହାତି ଦିନ ବୋଲି କୁହାଯାଏ ।

ମିଆଦ ପୂର୍ତ୍ତି ଦିବସ ଗଣନା କରିବା ନିମନ୍ତେ (ଶେଷୋକ୍ତ ପ୍ରକାର ଦଲିଲ କ୍ଷେତ୍ରରେ) ନିମ୍ନଲିଖିତ ନିୟମଗୁଡ଼ିକ ଅନୁସୃତ ହୁଏ :

(୧) ନିର୍ଦ୍ଦିଷ୍ଟ କେତେ ମାସ ପରେ ଦେୟ ଦଲିଲର ପୂର୍ତ୍ତି ଦିବସ ଉକ୍ତ ନିର୍ଦ୍ଦିଷ୍ଟ କେତେ ମାସ ପରେ ଦଲିଲର ପ୍ରସ୍ତୁତି ତାରିଖ ସହିତ ତିନି ଦିନ ଯୋଗ କରି ନିର୍ଦ୍ଧାରିତ ହୁଏ । ଉଦାହରଣ ସ୍ୱରୂପ, ୩ ମାସ ପରେ ଦେୟ ୪-୨-୬୩ ତାରିଖର ଦଲିଲ ୭-୫-୬୩ ତାରିଖ (ଅର୍ଥାତ୍ ୪-୫-୬୩+୩ ଦିନ)ରେ ଦେୟ ହେବ ।

(୨) ନିର୍ଦ୍ଦିଷ୍ଟ ମାସରେ ଦେୟ ତାରିଖ ଯଦି ଉକ୍ତ ମାସରେ ନ ଥାଏ ତାହାହେଲେ ଉକ୍ତ ମାସର ଶେଷ ତାରିଖ ସହିତ ତିନି ଦିନ ଯୋଗ କରି ମିଆଦ୍ ପୂର୍ତ୍ତିର ଦିବସ ଗଣନା କରାଯିବ । ଉଦାହରଣ ସ୍ୱରୂପ, ୩ ମାସ ପରେ ଦେୟ ୩୦-୧୧-୬୨ ତାରିଖର ଦଲିଲ ୩-୩-୬୩ ତାରିଖ (ଅର୍ଥାତ୍ ୨୯-୨-୬୩+୩ ଦିନ) ରେ ଦେୟ ହେବ ।

(୩) ନିର୍ଦ୍ଦିଷ୍ଟ ଦିନ ପରେ ଦେୟ ଦଲିଲ କ୍ଷେତ୍ରରେ ଉକ୍ତ ଦଲିଲ ଯେଉଁ ତାରିଖରେ ଲେଖାଯାଇଥିଲା କିମ୍ବା ସ୍ୱୀକୃତି ନିମନ୍ତେ ଉପସ୍ଥାପିତ କରାଯାଇଥିଲା, ମିଆଦ ପୂର୍ତ୍ତିର ଦିନ ଗଣନା କରିବା ସମୟରେ ଉକ୍ତ ତାରିଖ ବାଦ୍ ଦେଇ ମିଆଦ ପୂର୍ତ୍ତିର ଦିନ ଗଣନା କରାଯିବ । ଉଦାହରଣ ସ୍ୱରୂପ, ୩୦ ଦିନ ପରେ ଦେୟ ୧୨-୧-୭୨ ତାରିଖର ଦଲିଲ ୧୪-୨-୭୨ ତାରିଖ (ଅର୍ଥାତ୍ ୧୯+୧୧+୩)ରେ ଦେୟ ହେବ ।

(୪) ହସ୍ତାନ୍ତରଯୋଗ୍ୟ ଦଲିଲ ଆଇନର ୨୫ ଧାରା ଅନୁଯାୟୀ କୌଣସି ଦଲିଲର ମିଆଦ ପୂର୍ତ୍ତି ଯଦି କୌଣସି ସାଧାରଣ ଛୁଟି ଦିବସରେ ହୁଏ ତାହାହେଲେ

ସେହି ଦଲିଲ ଛୁଟି ଦିବସର ଠିକ୍ ପୂର୍ବବର୍ତ୍ତୀ କାର୍ଯ୍ୟକାରୀ ଦିବସରେ ଦେୟ ହେବ ।

## ୩ । ହସ୍ତାନ୍ତରଯୋଗ୍ୟ ଦଲିଲର ଅର୍ଥ :

ପ୍ରତିଜ୍ଞା ପତ୍ର, ହୁଣ୍ଡି ଓ ଚେକ୍‌କୁ ହସ୍ତାନ୍ତରଯୋଗ୍ୟ ଦଲିଲ କୁହାଯାଏ । ଏହାର ଅର୍ଥ ହେଲା ଏହି ଯେ ଯଦି ଜଣେ ବ୍ୟକ୍ତି ପୂର୍ଣ୍ଣ ବିଶ୍ୱାସରେ ଏଥି ମଧ୍ୟରୁ କୌଣସି ଦଲିଲ ଅପର ଜଣେ ବ୍ୟକ୍ତିଙ୍କଠାରୁ ଉଚିତ ମୂଲ୍ୟ ବିନିମୟରେ ଏହି ଦଲିଲର ମିଆଦ ପୂର୍ତ୍ତି ଦିବସ ପୂର୍ବରୁ ସଂଗ୍ରହ କରନ୍ତି ତାହାହେଲେ ଯାହାଠାରୁ ସେ ଦଲିଲଟି ଆଣିଲେ ତାଙ୍କର ସେ ଦଲିଲ ଉପରେ ସ୍ୱତ୍ତ୍ୱ ଦୋଷଯୁକ୍ତ ଥିଲେ ମଧ୍ୟ ଦଲିଲ ସଂଗ୍ରହକାରୀଙ୍କର ସେହି ଦଲିଲ ଉପରେ ସ୍ୱତ୍ତ୍ୱ ନିର୍ଦ୍ଦୋଷ ହେବ । ମନେକର କ ୫୦୦ ଟଙ୍କା ପରିମାଣର ଖଣ୍ଡିଏ ହୁଣ୍ଡି ବିନା ମୂଲ୍ୟରେ ଚ ଠାରୁ ଚୋରିକରି ଆଣିଲା । ମନେକର ଏହି ହୁଣ୍ଡିର ମିଆଦ ପୂର୍ତ୍ତି ଦିବସ ପୂର୍ବରୁ ଖ କ ଠାରୁ ପୂର୍ଣ୍ଣ ବିଶ୍ୱାସରେ (ଅର୍ଥାତ୍ କ ଏହି ଦଲିଲଟି ଚୋରିକରି ଆଣିଛି ଏହା ନ ଜାଣିଥିବା ହେତୁ) ଉଚିତ ମୂଲ୍ୟ ବିନିମୟରେ ଏହି ଦଲିଲଟି ସଂଗ୍ରହ କଲା । ଯଦିଓ ଏହି ଦଲିଲର ହସ୍ତାନ୍ତରକାରୀ କ ର ଏହି ଦଲିଲଟି ଚୋରିକରି ଆଣିଥିବା ହେତୁ ଏହା ଉପରେ ସ୍ୱତ୍ତ୍ୱ ନାହିଁ କିମ୍ବା ସ୍ୱତ୍ତ୍ୱ ଦୋଷଯୁକ୍ତ ତଥାପି ଖ ର ଏହି ଦଲିଲ ଉପରେ ସ୍ୱତ୍ତ୍ୱ ନିର୍ଦ୍ଦୋଷ ହେବ । ଖ ପରେ ଏହି ଦଲିଲର ଯେଉଁ ବ୍ୟକ୍ତି ଧାରକ ହେବ ଏହି ଦଲିଲ ଉପରେ ତାହାର ସ୍ୱତ୍ତ୍ୱ ମଧ୍ୟ ନିର୍ଦ୍ଦୋଷ ହେବ । କେବଳ ଯଦି କୌଣସି ବ୍ୟକ୍ତି ଜାଲ୍ କରି ଏହି ଦଲିଲ ସଂଗ୍ରହ କରେ ତାହାହେଲେ ଅବଶ୍ୟ ତାହାର ଏହି ଦଲିଲ ଉପରେ କୌଣସି ନ୍ୟାଯ୍ୟ ସ୍ୱତ୍ତ୍ୱ ରହିବ ନାହିଁ । ହସ୍ତାନ୍ତରଯୋଗ୍ୟ ଦଲିଲର ଏହାହିଁ ହେଲା ବିଶେଷତ୍ୱ । ଗୋଟିଏ ଦଲିଲର ଯାହା କିଛି ଦୋଷ ଥିଲେ ମଧ୍ୟ ଯଦି ଏହା ଜଣେ ନ୍ୟାଯ୍ୟ ଧାରକ ନିକଟକୁ ଯାଏ ତାହାହେଲେ ଏହାର ସମସ୍ତ ପୂର୍ବ ଦୋଷ ଖଣ୍ଡିତ ହେବ ।

ହସ୍ତାନ୍ତରଯୋଗ୍ୟ ଦଲିଲର ଏହି ବୈଶିଷ୍ଟ୍ୟ ଯୋଗୁଁ ଏହା ଅତି ସହଜରେ ହସ୍ତାନ୍ତରିତ କରାଯାଇପାରେ । ଅଧିକନ୍ତୁ ପୂର୍ବରୁ କୁହାଯାଇଛି ଯେ ଏହି ଦଲିଲ ଥରେ ସ୍ୱୀକୃତ ହେଲା ପରେ ଏହା ବାବଦ ଟଙ୍କା ପରିଶୋଧ କରିବାର ପ୍ରାଥମିକ ଦାୟିତ୍ୱ ସ୍ୱୀକାରୀ ବା ଦାୟକ ଉପରେ ନ୍ୟସ୍ତ ରହେ । ଯଦି ଦେୟ ଦିବସରେ ସେ ଟଙ୍କା ଦେବାକୁ ଅକ୍ଷମ ହୁଅନ୍ତି ତାହାହେଲେ ଧାରକ ବା ପ୍ରାପକ ଲେଖକ କିମ୍ବା ଯେ କୌଣସି ପୃଷ୍ଠାଙ୍କନକାରୀଙ୍କ ଠାରୁ ଏହି ଟଙ୍କା ଆଦାୟ କରି ପାରିବ ।

ଏହି ବୈଶିଷ୍ଟ୍ୟଗୁଡ଼ିକ ହେତୁ ଯେ କୌଣସି ବ୍ୟକ୍ତି ଏବଂ ବିଶେଷତଃ ବ୍ୟାଙ୍କ୍ ଏହି ଦଲିଲ (ହୁଣ୍ଡି ବା ପ୍ରତିଜ୍ଞା ପତ୍ର) ରଖି ତାହା ବିନିମୟରେ ଧାରକ/ପ୍ରାପକଙ୍କୁ ଟଙ୍କା ଦେବା ନିମନ୍ତେ କୁଣ୍ଠିତ ହୁଏ ନାହିଁ । ଅବଶ୍ୟ ବ୍ୟାଙ୍କ୍ ହୁଣ୍ଡିର ଦେୟ ଦିବସ ପୂର୍ବରୁ ଟଙ୍କା ଅଗ୍ରିମ ଦେଉଥିବାରୁ ସୁଧ ଓ କମିଶନ ବାବଦ କିଛି ଟଙ୍କା ହୁଣ୍ଡିର ମୋଟ ପରିମାଣରୁ ବାଦ୍ ଦେଇ ନିଟ୍ ପରିମାଣ ଧାରକ/ପ୍ରାପକଙ୍କୁ ଦିଏ ।

## ୪ । ହୁଣ୍ଡି ଓ ପ୍ରତିଜ୍ଞା ପତ୍ର ସଂକ୍ରାନ୍ତ ନେଣଦେଣ ଲିପିବଦ୍ଧ କରିବା ପ୍ରଣାଳୀ :

ଗୋଟିଏ ହୁଣ୍ଡି ଦାୟକଙ୍କଦ୍ୱାରା ସ୍ୱୀକୃତ ହେଲ ପରେ ଲେଖକଙ୍କ ନିକଟକୁ ଫେରିଆସେ । ଏହା ପରେ ଏହାକୁ ପ୍ରାପ୍ୟ ହୁଣ୍ଡି କୁହାଯାଏ ଓ ଲେଖକ ଏହି ହୁଣ୍ଡିକୁ ନିମ୍ନଲିଖିତ ପ୍ରକାରରେ ବ୍ୟବହାର କରି ପାରନ୍ତି :

(୧) ସେ ହୁଣ୍ଡିକୁ ମିଆଦପୂର୍ତ୍ତି ଦିବସ ପର୍ଯ୍ୟନ୍ତ ନିଜ ନିକଟରେ ରଖି ପାରନ୍ତି;

(୨) ସେ ହୁଣ୍ଡିକୁ ନିଜର କୌଣସି ମହାଜନଙ୍କୁ ହସ୍ତାନ୍ତର କରି ପାରନ୍ତି;

(୩) ସେ ହୁଣ୍ଡିକୁ ନିଜ ବ୍ୟାଙ୍କ୍‌ରେ ଭଙ୍ଗାଇ ପାରନ୍ତି;

(୪) ସେ ହୁଣ୍ଡିକୁ, ଏଥି ବାବଦ ଟଙ୍କା ମିଆଦ ପୂର୍ତ୍ତି ଦିବସରେ ଦାୟକଙ୍କଠାରୁ ଆଦାୟ କରିବା ନିମନ୍ତେ ବ୍ୟାଙ୍କ୍‌କୁ ପଠାଇ ପାରନ୍ତି ।

ପ୍ରତି କ୍ଷେତ୍ରରେ ତାଙ୍କ ହିସାବ ଖାତାରେ ଯେଉଁ ରୋଜନାମା ଲେଖାଯିବ ତାହା ନିମ୍ନରେ ପ୍ରଦତ୍ତ ହେଲା ।

(୧) ସେ ସ୍ୱୀକୃତ ହୁଣ୍ଡି ଦାୟକଙ୍କଠାରୁ ପାଇଲେ—

(କ) ପ୍ରାପ୍ୟ ହୁଣ୍ଡି ହିସାବ ଦାୟୀ
ଦାୟକଙ୍କ ହିସାବ ବାବଦ
ନିର୍ଦ୍ଦିଷ୍ଟ ଦିବସରେ ହୁଣ୍ଡି ବାବଦ ଟଙ୍କା ମିଳିଲେ—

(ଖ) ନଗଦ ତହବିଲ/ବ୍ୟାଙ୍କ୍ ହିସାବ ଦାୟୀ
ପ୍ରାପ୍ୟ ହୁଣ୍ଡି ହିସାବ ବାବଦ
ନିର୍ଦ୍ଦିଷ୍ଟ ଦିବସରେ ହୁଣ୍ଡି ଅସମ୍ମାନିତ ହେଲେ—

(ଗ) ଦାୟକଙ୍କର ହିସାବ ଦାୟୀ
ପ୍ରାପ୍ୟ ହୁଣ୍ଡି ହିସାବ ବାବଦ

(୨) ଉପରୋକ୍ତ (କ) ରେ ଥିବା ରୋଜନାମା ପ୍ରତି ବକଲ୍ପ କ୍ଷେତ୍ରରେ ରହିବ । କୌଣସି ମହାଜନଙ୍କୁ ହୁଣ୍ଡି ହସ୍ତାନ୍ତର କଲେ—

(ଖ) ମହାଜନଙ୍କର ହିସାବ ଦାୟୀ
ପ୍ରାପ୍ୟ ହୁଣ୍ଡି ହିସାବ ବାବଦ

ଯଦି ହୁଣ୍ଡି ସମ୍ମାନିତ ହୁଏ ତାହାହେଲେ ଅନ୍ୟ କୌଣସି ରୋଜନାମା ଆବଶ୍ୟକ ହେବ ନାହିଁ । ମାତ୍ର ଯଦି ହୁଣ୍ଡିଟି ଅସମ୍ମାନିତ ହୁଏ ତାହାହେଲେ ନିମ୍ନଲିଖିତ ରୋଜନାମା ଆବଶ୍ୟକ ହେବ :

(ଗ) ଦାୟକଙ୍କର ହିସାବ ଦାୟୀ
ମହାଜନଙ୍କର ହିସାବ ବାବଦ

(୩) ଲେଖକ ହୁଣ୍ଡିକୁ ନିଜ ବ୍ୟାଙ୍କ୍‌ରେ ଭଙ୍ଗାଇଲେ :

(ଖ) ବ୍ୟାଙ୍କ୍ ହିସାବ ଦାୟୀ
ବଟା ହିସାବ ଦାୟୀ
ପ୍ରାପ୍ୟ ହୁଣ୍ଡି ହିସାବ ବାବଦ

ହୁଣ୍ଡି ସମ୍ମାନିତ ହେଲେ ଅନ୍ୟ କୌଣସି ରୋଜନାମା ଲେଖାଯିବ ନାହିଁ ମାତ୍ର ଯଦି ଏହା ଅସମ୍ମାନିତ ହୁଏ ତାହାହେଲେ ନିମ୍ନଲିଖିତ ରୋଜନାମା ଆବଶ୍ୟକ ହେବ :

(ଗ) ଦାୟକଙ୍କର ହିସାବ ଦାୟୀ
ବ୍ୟାଙ୍କ୍ ହିସାବ ବାବଦ
ବଟା ହିସାବ ବାବଦ

(୪) ଲେଖକ ହୁଣ୍ଡି ବାବଦ ଟଙ୍କା ଆଦାୟ କରିବା ନିମନ୍ତେ ବ୍ୟାଙ୍କ୍‌କୁ ହୁଣ୍ଡିଟି ପଠାଇଲେ :

(ଖ) ଆଦାୟ କରିବା ନିମନ୍ତେ ବ୍ୟାଙ୍କ୍ ହିସାବ ଦାୟୀ
ପ୍ରାପ୍ୟ ହୁଣ୍ଡି ହିସାବ ବାବଦ
ହୁଣ୍ଡି ସମ୍ମାନିତ ହେଲେ :

(ଗ) ବ୍ୟାଙ୍କ୍ ହିସାବ ଦାୟୀ
ଆଦାୟ କରିବା ନିମନ୍ତେ ବ୍ୟାଙ୍କ୍ ହିସାବ ବାବଦ

ହୁଣ୍ଡି ଅସମ୍ମାନିତ ହେଲେ ;

(ଘ) ଦାୟକଙ୍କର ହିସାବ ଦାୟୀ
ଆଦାୟ କରିବା ନିମନ୍ତେ ବ୍ୟାଙ୍କ୍ ହିସାବ ବାବଦ

ଏଠାରେ ଦ୍ରଷ୍ଟବ୍ୟ ଯେ ପ୍ରାପ୍ୟ ହୁଣ୍ଡି ପାଇଲା ମାତ୍ରେ ପ୍ରାପ୍ୟ ହୁଣ୍ଡି ହିସାବକୁ ଦାୟୀ ଓ ଦାୟକଙ୍କର ହିସାବକୁ ଦାତା କରାଯାଉଛି । ପ୍ରାପ୍ୟ ହୁଣ୍ଡି ଏକ ପରିସମ୍ପତ୍ତି ଏବଂ ନଗଦ ତହବିଲ ସ୍ୱରୂପ ପରିଗଣିତ ହୁଏ । ଏହା ବସ୍ତୁ ସୂଚକ ହିସାବ ଶ୍ରେଣୀଭୁକ୍ତ ହୋଇଥିବାରୁ ଏହି ସମ୍ପତ୍ତି ବ୍ୟବସାୟକୁ ଆସୁଥିବା ଦୃଷ୍ଟିରୁ ଏହା ବ୍ୟବସାୟକୁ ଆସିବା ମାତ୍ରେ ପ୍ରାପ୍ୟ ହୁଣ୍ଡି ହିସାବକୁ ଦାୟୀ କରି ଯାଉଛି । ଦାୟକ ଏହି ଉପକାର ପ୍ରଦାନ କରୁଥିବାରୁ ଏହି କ୍ଷେତ୍ରରେ ତାଙ୍କ ହିସାବକୁ ଦାତା କରି ଯାଇଛି । ଯେତେବେଳେ ହୁଣ୍ଡି ହସ୍ତାନ୍ତରିତ ହୋଇ-ଯାଏ ଓ ତାହା ନିର୍ଦ୍ଦିଷ୍ଟ ଦିବସରେ ସମ୍ମାନିତ ହୁଏ ସେତେବେଳେ କୌଣସି ଅଧିକା ରୋଜନାମା ଆବଶ୍ୟକ ହୁଏ ନାହିଁ, କାରଣ ପ୍ରକୃତ ପରିଶୋଧ କରିବା ପୂର୍ବରୁ କେବଳ ହୁଣ୍ଡି ସ୍ୱୀକାର କରିଥିବାରୁ ଦାୟକଙ୍କର ହିସାବକୁ ଦାତା କରାଯାଇଛି । ତେଣୁ ତାଙ୍କ ହିସାବକୁ ଦ୍ୱିତୀୟଥର ପାଇଁ ଦାତା କରିବାର ପ୍ରଶ୍ନ ଉଠେ ନାହିଁ । ମାତ୍ର ପ୍ରଶ୍ନ ଉଠିପାରେ ଯେ ଏପରି କାହିଁକି କରାଯାଏ, ଅର୍ଥାତ୍ ପ୍ରକୃତରେ ଟଙ୍କା ପାଇବା ପୂର୍ବରୁ ଦାୟକଙ୍କର ହିସାବକୁ ଦାତା କରାଯାଏ କିପରି ? ଏହାର ଉତ୍ତରରେ ଏତିକି କୁହାଯାଇ ପାରେ ଯେ ପ୍ରାପ୍ୟ ହୁଣ୍ଡି ହସ୍ତାନ୍ତରଯୋଗ୍ୟ ଦଲିଲ ହୋଇଥିବାରୁ ଏହା ନଗଦ ତହବିଲ ତୁଲ୍ୟ ଏକ ତରଳ ପରିସମ୍ପତ୍ତି ରୂପେ ବିବେଚିତ ହୁଏ । ଏହି କାରଣରୁ ଦାୟକଙ୍କର ହିସାବକୁ ପ୍ରକୃତ ଟଙ୍କା ପରିଶୋଧ ପାଇବା ପୂର୍ବରୁ ଦାତା କରାଯାଏ ।

ହୁଣ୍ଡିଟି ଯେତେବେଳେ ଅସମ୍ମାନିତ ହୁଏ ପ୍ରତି କ୍ଷେତ୍ରରେ ଦାୟକଙ୍କର ହିସାବକୁ ଦାୟୀ କରାଯାଏ, କାରଣ ତଦ୍ୱାରା ହୁଣ୍ଡି ସ୍ୱୀକାର କରିବାର ପୂର୍ବାବସ୍ଥା ଫେରି ଆସିବ । ଉଦାହରଣ ସ୍ୱରୂପ, ମନେକର ରାମ ହରିଠାରୁ ୫୦୦ ଟଙ୍କା ମୂଲ୍ୟର ପଣ୍ୟ କ୍ରୟ କରିଥିଲେ ଓ ନଗଦ ମୂଲ୍ୟ ନ ଦେଇ ପାରିବାରୁ ଗୋଟିଏ ହୁଣ୍ଡି ସ୍ୱୀକାର କଲେ । ଏହାର ରୋଜନାମା ନିମ୍ନ ପ୍ରକାର ହେବ :

## ହରିଙ୍କର ହିସାବ ଖାତାରେ

| | | ଟଙ୍କା | ଟଙ୍କା |
|---|---|---|---|
| (୧) ରାମଙ୍କର ହିସାବ | ଦାୟୀ | ୫୦୦ | |
| ବିକ୍ରୟ ହିସାବ ବାବଦ | | | ୫୦୦ |
| (ରାମଙ୍କୁ ବାକିରେ ପଣ୍ୟ ବିକ୍ରୟ କରାଗଲା ।) | | | |

| | | ଟଙ୍କା | ଟଙ୍କା |
|---|---|---|---|
| (୨) ପ୍ରାପ୍ୟ ହୁଣ୍ଡି ହିସାବ | ଦାୟୀ | ୫୦୦ | |
| ରାମଙ୍କ ହିସାବ ବାବଦ | | | ୫୦୦ |
| (ରାମ ପୂର୍ବ ବାକି ବାବଦ ଗୋଟିଏ ହୁଣ୍ଡି ସ୍ୱୀକାର କଲେ ।) | | | |

ମନେକର ହରି ହୁଣ୍ଡିଟି ମିଆଦ ପୂର୍ତ୍ତି ଦିବସ ପର୍ଯ୍ୟନ୍ତ ନିଜ ପାଖରେ ରଖିଲେ । ଏଥି ନିମନ୍ତେ କୌଣସି ରୋଜନାମାର ଆବଶ୍ୟକତା ନାହିଁ ।

ମନେକର ମିଆଦ ପୂର୍ତ୍ତି ଦିବସରେ ରାମ ହୁଣ୍ଡି ବାବଦ ଟଙ୍କା ପରିଶୋଧ କଲେ । ଏହି ନେଣଦେଣ ସକାଶେ ନିମ୍ନଲିଖିତ ରୋଜନାମା ଲେଖାଯିବ (ହରିଙ୍କ ହିସାବ ଖାତାରେ) :

| | | ଟଙ୍କା | ଟଙ୍କା |
|---|---|---|---|
| (କ) ନଗଦ ତହବିଲ/ବ୍ୟାଙ୍କ୍ ହିସାବ | ଦାୟୀ | ୫୦୦ | |
| ପ୍ରାପ୍ୟ ହୁଣ୍ଡି ହିସାବ ବାବଦ | | | ୫୦୦ |
| (ମିଆଦ ପୂର୍ତ୍ତି ଦିବସରେ ହୁଣ୍ଡି ବାବଦ ନଗଦ ଟଙ୍କା/ଚେକ୍ ମିଳିଲା ।) | | | |

ମନେକର ମିଆଦ ପୂର୍ତ୍ତି ଦିବସରେ ରାମ ହୁଣ୍ଡି ବାବଦ ଟଙ୍କା ପରିଶୋଧ କରିବାକୁ ଅକ୍ଷମ ହେଲେ, ଅର୍ଥାତ୍ ହୁଣ୍ଡିଟି ଅମାନ୍ୟକୃତ ବା ଅସମ୍ମାନିତ ହେଲା । ଏଥି ନିମନ୍ତେ ନିମ୍ନଲିଖିତ ରୋଜନାମା ଲେଖାଯିବ :

| | | ଟଙ୍କା | ଟଙ୍କା |
|---|---|---|---|
| (ଖ) ରାମଙ୍କ ହିସାବ | ଦାୟୀ | ୫୦୦ | |
| ପ୍ରାପ୍ୟ ହୁଣ୍ଡି ହିସାବ ବାବଦ | | | |
| (ମିଆଦ ପୂର୍ତ୍ତି ଦିବସରେ ହୁଣ୍ଡି ଅମାନ୍ୟକୃତ ହେଲା) | | | |

ଏଠାରେ ଦ୍ରଷ୍ଟବ୍ୟ ଯେ ଏପରି କ୍ଷେତ୍ରରେ (୨) ନମ୍ବରରେ ଥିବା ରୋଜନାମାର ବିପରୀତ ରୋଜନାମା ଲେଖାଗଲା । ଅର୍ଥାତ୍ ରାମ ହୁଣ୍ଡି ସ୍ୱୀକାର କରିବା ପୂର୍ବରୁ ଅବସ୍ଥା ଯାହା ଥିଲା, ସେହି ଅବସ୍ଥା ଫେରି ଆସିଲା । ସୁତରାଂ ରାମ ୫୦୦ ଟଙ୍କା ସକାଶେ ହରିଙ୍କଠାରେ ଋଣୀ ରହିଲେ ।

ମନେକର ହରି ସ୍ୱୀକୃତ ହୁଣ୍ଡିଟି ତାଙ୍କର ମହାଜନ ଗୋବିନ୍ଦଙ୍କୁ ପୂର୍ବ ଋଣ ପରିଶୋଧ କରିବା ଉଦ୍ଦେଶ୍ୟରେ ହସ୍ତାନ୍ତର କଲେ । ଏଥି ନିମନ୍ତେ ନିମ୍ନଲିଖିତ ରୋଜନାମା ଆବଶ୍ୟକ ହେବ :

| | | | ଟଙ୍କା | ଟଙ୍କା |
|---|---|---|---|---|
| (୩) | ଗୋବିନ୍ଦଙ୍କ ହିସାବ<br>ପ୍ରାପ୍ୟ ହୁଣ୍ଡି ହିସାବ ବାବଦ<br>(ହୁଣ୍ଡିଟି ଗୋବିନ୍ଦଙ୍କୁ ହସ୍ତାନ୍ତରିତ କରାଗଲା ।) | ଦାୟୀ | ୫୦୦ | |

ମିଆଦ ପୂର୍ତ୍ତି ଅବସରରେ ଯଦି ରାମ ହୁଣ୍ଡି ବାବଦ ଟଙ୍କା ପରିଶୋଧ କରିବେ ତାହାହେଲେ ହରିଙ୍କ ହିସାବ ଖାତାରେ ଅନ୍ୟ କୌଣସି ରୋଜନାମା ପ୍ରୟୋଜନ ହେବ ନାହିଁ । ମାତ୍ର ଯଦି ହୁଣ୍ଡିଟି ଅମାନ୍ୟକୃତ ହୁଏ ତାହାହେଲେ ହରିଙ୍କ ହିସାବ ଖାତାରେ ନିମ୍ନଲିଖିତ ରୋଜନାମା ଆବଶ୍ୟକ ହେବ :

| | | ଟଙ୍କା | ଟଙ୍କା |
|---|---|---|---|
| ରାମଙ୍କ ହିସାବ<br>ଗୋବିନ୍ଦଙ୍କ ହିସାବ ବାବଦ<br>(ଗୋବିନ୍ଦଙ୍କୁ ହସ୍ତାନ୍ତରିତ କରାଯାଇଥିବା ହୁଣ୍ଡି ଅମାନ୍ୟକୃତ ହେଲା ।) | ଦାୟୀ | ୫୦୦ | ୫୦୦ |

ଏହି ରୋଜନାମା ଫଳରେ (୩) ନମ୍ବର ରୋଜନାମାରେ ଗୋବିନ୍ଦଙ୍କୁ ଦାୟୀ କରାଯାଇଥିବା ଲେଖା ରଦ୍ଦ କରାଗଲା, ସୁତରାଂ ହରି ହୁଣ୍ଡି ହସ୍ତାନ୍ତର ପୂର୍ବରୁ ଗୋବିନ୍ଦଙ୍କଠାରେ ଯେପରି ଋଣୀ ଥିଲେ ସେହିପରି ରହିଲେ ; ଏବଂ ରାମ ମଧ୍ୟ ହରିଙ୍କଠାରେ ହୁଣ୍ଡି ସ୍ୱୀକାର କରିବା ପୂର୍ବରୁ ଯେପରି ଋଣୀ ଥିଲେ ସେହିପରି ରହିଲେ ।

ମନୋହର ହରି ସ୍ୱୀକୃତ ହୁଣ୍ଡିଟି ନିଜ ବ୍ୟାଙ୍କରେ ୧୫ ଟଙ୍କା ବଟ୍ଟା ଦେଇ ଭଙ୍ଗାଇଲେ । ତାହାର ରୋଜନାମା ନିମ୍ନରେ ପ୍ରଦତ୍ତ ହେଲା :

| | | | ଟଙ୍କା | ଟଙ୍କା |
|---|---|---|---|---|
| (୪) | ନଗଦ/ବ୍ୟାଙ୍କ ହିସାବ | ଦାୟୀ | ୪୮୫ | |
| | ବଟ୍ଟା ହିସାବ | ,, | ୧୫ | |
| | ପ୍ରାପ୍ୟ ହୁଣ୍ଡି ହିସାବ ବାବଦ | | | ୫୦୦ |
| | (ହୁଣ୍ଡିକୁ ବ୍ୟାଙ୍କରେ ୧୫ ଟଙ୍କା ବଟ୍ଟା ଦିଆଯାଇ ଭଙ୍ଗାଇ ଦିଆଗଲା ।) | | | |

ଯଦି ମିଆଦ ପୂର୍ତ୍ତି ଅବସରରେ ରାମ ହୁଣ୍ଡି ବାବଦ ଟଙ୍କା ପରିଶୋଧ କରନ୍ତି ତାହାହେଲେ ହରିଙ୍କ ହିସାବ ଖାତାରେ କୌଣସି ରୋଜନାମା ଆବଶ୍ୟକ ହେବ ନାହିଁ । ମାତ୍ର ସେ ଯଦି ହୁଣ୍ଡି ବାବଦ ଟଙ୍କା ଦେବାକୁ ଅକ୍ଷମ ହୁଅନ୍ତି, ଅର୍ଥାତ୍ ହୁଣ୍ଡି ପ୍ରତ୍ୟାଖ୍ୟାତ ହୁଏ ତାହେଲେ ନିମ୍ନଲିଖିତ ରୋଜନାମା ଆବଶ୍ୟକ ହେବ :

| | | ଟଙ୍କା | ଟଙ୍କା |
|---|---|---|---|
| ରାମଙ୍କ ହିସାବ | ଦାୟୀ | ୫୦୦ | |
| ବ୍ୟାଙ୍କ ହିସାବ ବାବଦ | | | ୫୦୦ |
| (ହୁଣ୍ଡି ଅମାନ୍ୟକୃତ ହେବାରୁ ବ୍ୟାଙ୍କକୁ ଟଙ୍କା ଦିଆଗଲା ।) | | | |

ମନୋହର ହରି ମିଆଦ ପୂର୍ତ୍ତି ଅବସରରେ ହୁଣ୍ଡି ବାବଦ ଟଙ୍କା ରାମଙ୍କଠାରୁ ଆଦାୟ କରିବା ନିମନ୍ତେ ହୁଣ୍ଡିକୁ ବ୍ୟାଙ୍କକୁ ପଠାଇଲେ । ଅନେକେ ଏ ସମ୍ପର୍କରେ ନିୟମିତ ରୋଜନାମା ନ କରି କେବଳ ଟିପା ଖାତାରେ କିମ୍ବା ହୁଣ୍ଡି ବହିରେ ତାହା ଲିପିବଦ୍ଧ କରନ୍ତି, କିନ୍ତୁ ତାହା ଆଦୌ ଯୁକ୍ତିଯୁକ୍ତ ନୁହେଁ । ଏହି ପ୍ରକାର ନେଣଦେଣ ସକାଶେ ନିମ୍ନଲିଖିତ ରୋଜନାମା ଲେଖାଯିବ :

| | | | ଟଙ୍କା | ଟଙ୍କା |
|---|---|---|---|---|
| (୫) | ଆଦାୟ କରିବା ନିମନ୍ତେ ବ୍ୟାଙ୍କ ହିସାବ | ଦାୟୀ | ୫୦୦ | |
| | ପ୍ରାପ୍ୟ ହୁଣ୍ଡି ହିସାବ ବାବଦ | | | ୫୦୦ |
| | (ହୁଣ୍ଡି ବାବଦ ଟଙ୍କା ଆଦାୟ କରିବା ନିମନ୍ତେ ହୁଣ୍ଡିଟି ବ୍ୟାଙ୍କକୁ ପଠାଗଲା ।) | | | |

ହୁଣ୍ଡି ବାବଦ ଟଙ୍କା ମିଳିଲେ ନିମ୍ନଲିଖିତ ରୋଜନାମା ଲେଖାଯିବ :

| | | ଟଙ୍କା | ଟଙ୍କା |
|---|---|---|---|
| (କ) ନଗଦ/ବ୍ୟାଙ୍କ୍ ହିସାବ | ଦାୟୀ | ୫୦୦ | |
| ଆଦାୟ କରିବା ନିମନ୍ତେ ବ୍ୟାଙ୍କ୍ ହିସାବ ବାବଦ | | | ୫୦୦ |
| (ଆଦାୟ କରିବା ନିମନ୍ତେ ବ୍ୟାଙ୍କ୍‌କୁ ପଠାଯାଇଥିବା ହୁଣ୍ଡି ବାବଦ ଟଙ୍କା/ଚେକ୍ ମିଳିଲା ।) | | | |

ଯଦି ହୁଣ୍ଡି ଅମାନ୍ୟକୃତ ହୁଏ ତାହେଲେ ନିମ୍ନଲିଖିତ ରୋଜନାମା ଲେଖାଯିବ :

| | | ଟଙ୍କା | ଟଙ୍କା |
|---|---|---|---|
| (ଖ) ଋଣୀଙ୍କ ହିସାବ | ଦାୟୀ | ୫୦୦ | |
| ଆଦାୟ କରିବା ନିମନ୍ତେ ବ୍ୟାଙ୍କ୍ ହିସାବ ବାବଦ | | | ୫୦୦ |
| (ଆଦାୟ କରିବା ନିମନ୍ତେ ବ୍ୟାଙ୍କ୍‌କୁ ପଠାଯାଇଥିବା ହୁଣ୍ଡି ଅମାନ୍ୟକୃତ ହେଲା ।) | | | |

ପ୍ରାପ୍ୟ ହୁଣ୍ଡି ଲେଖକଙ୍କ ହିସାବ ଖାତାରେ କିପରି ଲିପିବଦ୍ଧ କରାଯାଏ ତାହାର କେତେକ ଦୃଷ୍ଟାନ୍ତ ନିମ୍ନରେ ପ୍ରଦତ୍ତ ହେଲା :

## ଦୃଷ୍ଟାନ୍ତ (୧)

ଗୋପାଳ ଶ୍ରୀକାନ୍ତଙ୍କଠାରୁ ୧୯୭୩ ମସିହା ଜୁନ୍ ୧ ତାରିଖରେ ତିନୋଟି ହୁଣ୍ଡିର ସ୍ୱୀକୃତି ପାଇଲେ । ୧ମ ହୁଣ୍ଡିଟି ୨ ମାସ ମିଆଦରେ ୨୦୦ ଟଙ୍କା ସକାଶେ, ୨ୟ ହୁଣ୍ଡିଟି ୩ ମାସ ମିଆଦରେ ୩୦୦ ଟଙ୍କା ସକାଶେ ଓ ୩ୟ ହୁଣ୍ଡିଟି ୪ ମାସ ମିଆଦରେ ୪୦୦ ଟଙ୍କା ସକାଶେ ପ୍ରସ୍ତୁତ ହୋଇଥିଲା । ଗୋପାଳ ୧ମ ହୁଣ୍ଡିଟି ନିଜ ନିକଟରେ ମିଆଦ ପୂର୍ତ୍ତି ଦିବସ ପର୍ଯ୍ୟନ୍ତ ରଖିଲେ, ୨ୟ ହୁଣ୍ଡିଟି କାଳୁରାମଙ୍କୁ ହସ୍ତାନ୍ତର କଲେ ଜୁନ୍ ୩ ତାରିଖରେ ଓ ୩ୟ ହୁଣ୍ଡିଟି ସେହି ତାରିଖରେ ଶତକଡ଼ା ୯ ହାରରେ ବଟା ଦେଇ ନିଜ ବ୍ୟାଙ୍କ୍‌ରେ ଭଙ୍ଗାଇଲେ । ଗୋପାଳଙ୍କ ବହିରେ ଏଥି ନିମନ୍ତେ ରୋଜନାମା ଲେଖ ।

## ସମାଧାନ :

### ଗୋପାଳଙ୍କ ହିସାବ ଖାତାରେ

| ୧୯୭୩ | | ଟଙ୍କା | ଟଙ୍କା |
|---|---|---|---|
| ଜୁନ୍ ୧ | ପ୍ରାପ୍ୟ ହୁଣ୍ଡି ହିସାବ ଦାୟୀ | ୯୦୦ | |
| | ଶ୍ରୀକାନ୍ତଙ୍କ ହିସାବ ବାବଦ | | ୯୦୦ |
| | (ଶ୍ରୀକାନ୍ତଙ୍କ ଠାରୁ ତିନ ଗୋଟି ହୁଣ୍ଡି —୨୦୦ ଟଙ୍କା, ୩୦୦ ଟଙ୍କା ଓ ୪୦୦ ଟଙ୍କା ସକାଶେ—ସ୍ୱୀକୃତ ହୋଇ ଫେରିଲା ।) | | |
| ଜୁନ୍ ୩ | କାଳୁରାମଙ୍କ ହିସାବ ଦାୟୀ | ୩୦୦ | |
| | ପ୍ରାପ୍ୟ ହୁଣ୍ଡି ହିସାବ ବାବଦ | | ୩୦୦ |
| | (ଶ୍ରୀକାନ୍ତଙ୍କ ଠାରୁ ମିଳିଥିବା ୩୦୦ ଟଙ୍କା ସକାଶେ ପ୍ରସ୍ତୁତ ହୋଇଥିବା ହୁଣ୍ଡି ପୂର୍ବ ବାକି ବାବଦ ହସ୍ତାନ୍ତରିତ କରାଗଲା ।) | | |
| ୩ | ବ୍ୟାଙ୍କ୍ ହିସାବ ଦାୟୀ | ୩୮୮ | |
| | ବଟା ହିସାବ ଦାୟୀ | ୧୨ | |
| | ପ୍ରାପ୍ୟ ହୁଣ୍ଡି ହିସାବ ବାବଦ | | ୪୦୦ |
| | (ଶ୍ରୀକାନ୍ତଙ୍କ ଠାରୁ ମିଳିଥିବା ୪୦୦ ଟଙ୍କା ସକାଶେ ୪ ମାସ ମିଆଦରେ ପ୍ରସ୍ତୁତ ହୋଇଥିବା ହୁଣ୍ଡିଟି ଶତକଡ଼ା ୯ ହାରରେ ବଟା ଦେଇ ବ୍ୟାଙ୍କରେ ଭଙ୍ଗାଇ ଦିଆଗଲା ।) | | |

### ଦୃଷ୍ଟାନ୍ତ (୨)

ଉପରୋକ୍ତ ଦୃଷ୍ଟାନ୍ତ (୧) ରେ ଉଲ୍ଲିଖିତ ହୁଣ୍ଡି ଗୁଡ଼ିକ ମିଆଦ ପୂର୍ତ୍ତି ଅବସରେ ଶ୍ରୀକାନ୍ତଙ୍କ ନିକଟରେ ଉପସ୍ଥାପିତ କରାଯାଇଥିଲା ଓ ସେ ପ୍ରତି ହୁଣ୍ଡି ବାବଦ ଟଙ୍କା ପରିଶୋଧ କଲେ । ଗୋପାଳଙ୍କ ବହିରେ ଆବଶ୍ୟକ ରୋଜନାମା ଲେଖ ।

**ସମାଧାନ :**

| ୧୯୬୩ | | | ଟଙ୍କା | ଟଙ୍କା |
|---|---|---|---|---|
| ଅଗଷ୍ଟ ୪ | ନଗଦ ତହବିଲ ହିସାବ | ଦାୟୀ | ୨୦୦ | |
| | ପ୍ରାପ୍ୟ ହୁଣ୍ଡି ହିସାବ ବାବଦ | | | ୨୦୦ |
| | (ଶ୍ରୀକାନ୍ତଙ୍କ ଠାରୁ ୨ ମାସ ମିୟାଦରେ ୨୦୦ ଟଙ୍କା ସକାଶେ ପ୍ରସ୍ତୁତ ହୋଇଥିବା ହୁଣ୍ଡି ବାବଦ ନଗଦ ଟଙ୍କା ମିଳିଲା ।) | | | |

ଅନ୍ୟ ଦୁଇଟି ହୁଣ୍ଡି ମିୟାଦ ପୂର୍ତ୍ତି ଅବସରେ ସମ୍ମା'ନିତ ହେଲେ ଗୋପାଳଙ୍କ ହିସାବ ଖାତାରେ ଏଥି ନିମନ୍ତେ କୌଣସି ରୋଜନାମା ଆବଶ୍ୟକ ହେବ ନାହିଁ ।

## ଦୃଷ୍ଟାନ୍ତ (୩)

ଦୃଷ୍ଟାନ୍ତ (୧) ରେ ଉଲ୍ଲିଖିତ ହୁଣ୍ଡିଗୁଡ଼ିକ ମିୟାଦ ପୂର୍ତ୍ତି ଅବସରେ ଶ୍ରୀକାନ୍ତଙ୍କ ନିକଟରେ ଉପସ୍ଥାପିତ କରାଯିବାରୁ ସେ କୌଣସି ହୁଣ୍ଡି ବାବଦ ଟଙ୍କା ପରିଶୋଧ କରି ପାରିଲେ ନାହିଁ । ଏଥି ନିମନ୍ତେ ଗୋପାଳଙ୍କ ହିସାବ ଖାତାରେ ଆବଶ୍ୟକ ରୋଜନାମା ଲେଖ ।

| ୧୯୭୩ | | | ଟଙ୍କା | ଟଙ୍କା |
|---|---|---|---|---|
| ଅଗଷ୍ଟ ୪ | ଶ୍ରୀକାନ୍ତଙ୍କ ହିସାବ | ଦାୟୀ | ୨୦୦ | |
| | ପ୍ରାପ୍ୟ ହୁଣ୍ଡି ହିସାବ ବାବଦ | | | ୨୦୦ |
| | (ମିୟାଦ ପୂର୍ତ୍ତି ଅବସରରେ ୨୦୦ ଟଙ୍କା ସକାଶେ ୨ ମାସ ମିୟାଦରେ ପ୍ରସ୍ତୁତ ହୋଇଥିବା ହୁଣ୍ଡି ବାବଦ ଟଙ୍କା ଶ୍ରୀକାନ୍ତ ଦେବାକୁ ଅକ୍ଷମ ହେଲେ ।) | | | |
| ସେପ୍ଟେମ୍ବର ୪ | ଶ୍ରୀକାନ୍ତଙ୍କ ହିସାବ | ଦାୟୀ | ୩୦୦ | |
| | କାନ୍ତୁରାମଙ୍କ ହିସାବ ବାବଦ | | | ୩୦୦ |
| | (ଶ୍ରୀକାନ୍ତ ସ୍ୱୀକାର କରିଥିବା ୩୦୦ ଟଙ୍କା ସକାଶେ ୩ ମାସ ମିୟାଦରେ ପ୍ରସ୍ତୁତ ହୋଇଥିବା ଓ କାନ୍ତୁରାମଙ୍କୁ ହସ୍ତାନ୍ତରିତ ହୋଇଥିବା ହୁଣ୍ଡି ଅମାନ୍ୟକୃତ ହେଲା ।) | | | |

| ୧୯୬୩ | | | ଟଙ୍କା | ଟଙ୍କା |
|---|---|---|---|---|
| ଅକ୍ଟୋବର ୪ | ଶ୍ରୀକାନ୍ତଙ୍କ ହିସାବ | ଦାୟୀ | ୪୦୦ | |
| | ବ୍ୟାଙ୍କ୍ ହିସାବ ବାବଦ | | | ୪୦୦ |
| | (ଶ୍ରୀକାନ୍ତଙ୍କ ଦ୍ୱାରା ସ୍ୱୀକୃତ ୪୦୦ ଟଙ୍କା ସକାଶେ ୪ ମାସ ମିଆଦରେ ପ୍ରସ୍ତୁତ ହୋଇଥିବା ଓ ବ୍ୟାଙ୍କ୍‌ରେ ଭଙ୍ଗା ଯାଇଥିବା ହୁଣ୍ଡି ଅମାନ୍ୟକୃତ ହେଲା ।) | | | |

## ଲେଖ କରିବା :

ହୁଣ୍ଡି ଦାୟକଙ୍କ ନିକଟରେ ମିଆଦ ପୂର୍ତ୍ତି ଅବସରରେ ଉପସ୍ଥାପିତ କରାଯାଇଥିଲା ଏବଂ ତାହା ଅସମ୍ମାନିତ ହୋଇଛି ଏହାର ପ୍ରମାଣ ସ୍ୱରୂପ ହୁଣ୍ଡିରେ ସେହି ବିଷୟ ଲେଖାଯିବା ଉଚିତ । ଏହାକୁ ଲେଖ କରିବା କୁହାଯାଏ । ଏହି କାର୍ଯ୍ୟ କରିବା ନିମନ୍ତେ ସମସ୍ତ ବଡ଼ ବଡ଼ ସହରମାନଙ୍କରେ ନୋଟାରି ପବ୍ଲିକ୍ ନାମରେ ଜଣେ ଅଧିକାରୀ ସରକାରଙ୍କ ତରଫରୁ ନିଯୁକ୍ତ ହୋଇ ଥାଆନ୍ତି । ଯଦି ହୁଣ୍ଡି ଅସମ୍ମାନିତ ହୁଏ ତାହାହେଲେ ହୁଣ୍ଡିଟି ନୋଟାରି ପବ୍ଲିକ୍‌ଙ୍କ ଦପ୍ତରକୁ ନିଆଯାଏ । ସେ ପୁଣି ଥରେ ଏହା ଦାୟକଙ୍କ ନିକଟରେ ଉପସ୍ଥାପିତ କରନ୍ତି । ଦାୟକ ଯଦି ହୁଣ୍ଡି ବାବଦ ଟଙ୍କା ଦେବାକୁ ଅକ୍ଷମ ହୁଅନ୍ତି ତାହାହେଲେ ନୋଟାରି ପବ୍ଲିକ୍ ସେହି ହୁଣ୍ଡି ଉପରେ ଉପସ୍ଥାପିତ କରାଯାଇଥିବା ତାରିଖ ଦେଇ ହୁଣ୍ଡିଟି ଅସମ୍ମାନିତ ହୋଇଛି ବୋଲି ତହିଁରେ ଲେଖି ଦସ୍ତଖତ୍ କରନ୍ତି । ଏଥି ସକାଶେ ପ୍ରାପକଙ୍କୁ କିଛି ଫିସ୍ ଦେବାକୁ ପଡ଼େ । ଅବଶ୍ୟ ଏହି ଅର୍ଥ ନିମନ୍ତେ ଦାୟକ ଦାୟୀ ହୁଅନ୍ତି ଏବଂ ପରେ ଲେଖକ ତାହା ତାଙ୍କଠାରୁ ଆଦାୟ କରନ୍ତି । ଏପରି ଲେଖ ହୋଇଥିଲେ ହୁଣ୍ଡି ପ୍ରକୃତରେ ଅସମ୍ମାନିତ ହୋଇଛି ଏ ବିଷୟରେ ସମସ୍ତେ ନିଃସନ୍ଦେହ ହୁଅନ୍ତି । ଆଇନ ଅନୁଯାୟୀ ଏହା ବାଧ୍ୟତା ମୂଳକ ନୁହେଁ ସତ କିନ୍ତୁ ଭବିଷ୍ୟତ ସୁବିଧା ଦୃଷ୍ଟିରୁ ଏହା କରଣୀୟ । ଅବଶ୍ୟ, ବିଦେଶୀ ହୁଣ୍ଡିରେ ଯେଉଁ ଦେଶରେ ହୁଣ୍ଡି ପ୍ରସ୍ତୁତ କରାଯାଇଛି ଲେଖ କରିବା ଯଦି ସେହି ଦେଶର ଆଇନ ଅନୁଯାୟୀ ବାଧ୍ୟତାମୂଳକ ହୋଇଥାଏ ତାହାହେଲେ ସେହି ହୁଣ୍ଡି କ୍ଷେତ୍ରରେ ଲେଖ କରିବା ବାଧ୍ୟତାମୂଳକ ହୁଏ ।

## ୫ । ହୁଣ୍ଡିର ନବୀକରଣ :

ଅନେକ ସମୟରେ ଯଦି ଦାୟକ ପୂର୍ବରୁ ଜାଣି ପାରନ୍ତି ଯେ କୌଣସି ଅନିର୍ଦ୍ଦିଷ୍ଟ କାରଣବଶତଃ ମିଆଦ ପୂର୍ତ୍ତି ଅବସରରେ ତାଙ୍କ ପକ୍ଷରେ ହୁଣ୍ଡି ବାବଦ

ଟଙ୍କା ପରିଶୋଧ କରିବା ସମ୍ଭବପର ହେବ ନାହିଁ ସେତେବେଳେ ସେ ପୂର୍ବ ସ୍ୱୀକୃତ ହୁଣ୍ଡି ବଦଳରେ ନୂତନ ହୁଣ୍ଡି ସ୍ୱୀକାର କରିବାକୁ ପ୍ରସ୍ତୁତ ଅଛନ୍ତି ବୋଲି ଲେଖକଙ୍କୁ ଜଣାଇ ଦିଅନ୍ତି । ଲେଖକ ଯଦି ଦାୟକଙ୍କର ଏହି ଅନୁରୋଧ ରକ୍ଷା କରନ୍ତି ତାହା ହେଲେ ପୂର୍ବ ସ୍ୱୀକୃତ ହୁଣ୍ଡି ରଦ୍ଦ କରାଯାଏ ଓ ଏହା ପରିବର୍ତ୍ତେ ଏକ ନୂତନ ହୁଣ୍ଡି ପ୍ରସ୍ତୁତ କରାଯାଏ । ଏପରି କ୍ଷେତ୍ରରେ ଅଧିକାଂଶ ସମୟରେ ଦାୟକଙ୍କୁ ହୁଣ୍ଡି ବାବଦ ଟଙ୍କା ଉପରେ ବର୍ଦ୍ଧିତ ମିଆଦ କାଳ ପର୍ଯ୍ୟନ୍ତ ସ୍ୱୀକୃତ ହାରରେ ସୁଧ ଦେବାକୁ ପଡ଼େ । ଅନେକ ସମୟରେ ଦାୟକ ହୁଣ୍ଡି ବାବଦ କିଛି ଟଙ୍କା ନଗଦ ଦେଇ ଥାଆନ୍ତି ଓ ଅବଶିଷ୍ଟ ପରିମାଣ ନିମନ୍ତେ ନୂତନ ହୁଣ୍ଡି ସ୍ୱୀକାର କରନ୍ତି ।

ଏହି ପ୍ରକାର ନେଣଦେଣ ସକାଶେ ଯେଉଁ ରୋଜନାମା ଆବଶ୍ୟକ ହୁଏ ତାହା ହୁଣ୍ଡି ଅମାନ୍ୟକୃତ ହେଲେ ଯେପରି ରୋଜନାମା ଲେଖାଯାଏ ତାହା ସହିତ ସମାନ । ନୂତନ ହୁଣ୍ଡି ପ୍ରସ୍ତୁତ ହୋଇ ସ୍ୱୀକୃତ ହେଲା ପରେ ଲେଖକଙ୍କ ହିସାବ ବହିରେ ଯେଉଁ ରୋଜନାମା ଲେଖାଯାଏ ତାହା ମଧ୍ୟ ପୂର୍ବ ବର୍ଣ୍ଣିତ ରୋଜନାମା ସଦୃଶ । ଏହାର କେତେକ ଦୃଷ୍ଟାନ୍ତ ନିମ୍ନରେ ପ୍ରଦତ୍ତ ହେଲା ।

## ଦୃଷ୍ଟାନ୍ତ (୪)

ରମେଶ ୫୦୦ ଟଙ୍କା ସକାଶେ ୩ ମାସ ମିଆଦରେ ପ୍ରସ୍ତୁତ ହୋଇଥିବା ଏକ ହୁଣ୍ଡି ସ୍ୱୀକୃତ ନିମନ୍ତେ ଗୋଲକଙ୍କ ନିକଟକୁ ପଠାଇଲେ । ଗୋଲକ ତାହା ସ୍ୱୀକାର କରି ୧୯୭୩ ମସିହା ମାର୍ଚ୍ଚ ୧ ତାରିଖରେ ରମେଶଙ୍କ ନିକଟକୁ ଫେରସ୍ତ ପଠାଇଲେ । ମିଆଦ ପୂର୍ତ୍ତି ଦିବସ ପୂର୍ବରୁ ଗୋଲକ ରମେଶଙ୍କୁ ଜଣାଇଲେ ଯେ ହୁଣ୍ଡି ବାବଦ ଟଙ୍କା ଦେବାକୁ ସେ ଅକ୍ଷମ ଏବଂ ଅଧିକା ୩ ମାସ ସମୟ ପାଇଲେ ସେ ଟଙ୍କା ଦେବାକୁ ସକ୍ଷମ ହେବେ । ସେ ପୁଣି ଜଣାଇଲେ ଯେ ପୂର୍ବ ହୁଣ୍ଡିଟି ରଦ୍ଦ କରାଯାଇ ଆଉ ଗୋଟିଏ ନୂତନ ହୁଣ୍ଡି ତିନି ମାସ ମିଆଦରେ ପ୍ରସ୍ତୁତ କରାଗଲେ ସେ ତାହା ସ୍ୱୀକାର କରିବାକୁ ପ୍ରସ୍ତୁତ ଅଛନ୍ତି, ଏବଂ ଅଧିକା ତିନି ମାସ ସକାଶେ ଶତକଡ଼ା ୮ ହାରରେ ସୁଧ ଦେବାକୁ ମଧ୍ୟ ସ୍ୱୀକୃତ ଅଛନ୍ତି । ଏହି ସମସ୍ତ ସର୍ତ୍ତରେ ହୁଣ୍ଡିର ନବୀକରଣ ସକାଶେ ରମେଶଙ୍କୁ ଅନୁରୋଧ କଲେ । ରମେଶ ଏଥିରେ ସମ୍ମତ ହେଲେ । ଦ୍ୱିତୀୟ ହୁଣ୍ଡିଟି ଯଥା ସମୟରେ ସମ୍ମାନିତ ହେଲା ଏହା ଅନୁମାନ କରି ରମେଶଙ୍କ ହିସାବ ଖାତାରେ ରୋଜନାମା ଲେଖ ।

**ସମାଧାନ :**

## ରମେଶଙ୍କ ହିସାବ ଖାତାରେ

| ୧୯୭୩ | ରୋଜନାମା | | ଟଙ୍କା | ଟଙ୍କା |
|---|---|---|---|---|
| ମାର୍ଚ୍ଚ ୧ | ପ୍ରାପ୍ୟ ହୁଣ୍ଡି ହିସାବ | ଦାୟୀ | ୫୦୦ | |
| | ଗୋଲକଙ୍କ ହିସାବ ବାବଦ | | | ୫୦୦ |
| | (୩ ମାସ ମିଆଦରେ ୫୦୦ ଟଙ୍କା ସକାଶେ ପ୍ରସ୍ତୁତ ହୋଇଥିବା ହୁଣ୍ଡି ଗୋଲକ ସ୍ୱୀକାର କଲେ ।) | | | |
| ଜୁନ୍ ୪ | ଗୋଲକଙ୍କ ହିସାବ | ଦାୟୀ | ୫୦୦ | |
| | ପ୍ରାପ୍ୟ ହୁଣ୍ଡି ହିସାବ ବାବଦ | | | ୫୦୦ |
| | (ହୁଣ୍ଡି ନାକଚ କରାଗଲା ।) | | | |
| ୪ | ଗୋଲକଙ୍କ ହିସାବ | ଦାୟୀ | ୧୦ | |
| | ସୁଧ ହିସାବ ବାବଦ | | | ୧୦ |
| | (ଗୋଲକଙ୍କ ଠାରୁ ୫୦୦ ଟଙ୍କା ଉପରେ ଶତକଡ଼ା ୮ ହାରରେ ୩ ମାସର ସୁଧ ପ୍ରାପ୍ୟ ।) | | | |
| ୪ | ପ୍ରାପ୍ୟ ହୁଣ୍ଡି ହିସାବ | ଦାୟୀ | ୫୧୦ | |
| | ଗୋଲକଙ୍କ ହିସାବ ବାବଦ | | | ୫୧୦ |
| | (ଗୋଲକଙ୍କ ଠାରୁ ପ୍ରାପ୍ୟ ଟଙ୍କା ସକାଶେ ପ୍ରସ୍ତୁତ ହୋଇଥିବା ଦ୍ୱିତୀୟ ହୁଣ୍ଡି ଗୋଲକ ସ୍ୱୀକାର କରି ପଠାଇଲେ ।) | | | |
| ସେପ୍ଟେମ୍ବର ୭ | ବ୍ୟାଙ୍କ୍ ହିସାବ | ଦାୟୀ | ୫୧୦ | |
| | ପ୍ରାପ୍ୟ ହୁଣ୍ଡି ହିସାବ ବାବଦ | | | ୫୧୦ |
| | (ଦ୍ୱିତୀୟ ହୁଣ୍ଡି ବାବଦ ଟଙ୍କା ମିଳିଲା ।) | | | |

# ଦୃଷ୍ଟାନ୍ତ (୫)

ବିରୂପାକ୍ଷ ୬୦୦ ଟଙ୍କା ସକାଶେ ୩ ମାସ ମିଆଦରେ ପ୍ରସ୍ତୁତ ହୋଇଥିବା ହୁଣ୍ଡି ପ୍ରକାଶଙ୍କ ନିକଟକୁ ସ୍ୱୀକୃତ ନିମନ୍ତେ ପଠାଇଲେ । ପ୍ରକାଶଙ୍କଠାରୁ ସ୍ୱୀକୃତ ହୋଇ ହୁଣ୍ଡିଟି ୧୯୭୩ ମସିହା ଜୁନ୍ ୧ ତାରିଖରେ ଫେରସ୍ତ ଆସିଲା । ବିରୂପାକ୍ଷ ହୁଣ୍ଡିଟି ତାଙ୍କର ମହାଜନ ବସନ୍ତଙ୍କୁ ହସ୍ତାନ୍ତର କଲେ । ମିଆଦ ପୂର୍ତ୍ତି ଦିବସ ପୂର୍ବରୁ ଏହି ହୁଣ୍ଡିଟି ନାକଚ କରି ପୁଣି ତିନିମାସ ମିଆଦରେ ଶତକଡ଼ା ୮ ହାର ସୁଧ ସମେତ୍ ଏକ ନୂତନ ହୁଣ୍ଡି ପ୍ରସ୍ତୁତ କରିବାକୁ ପ୍ରକାଶ ବିରୂପାକ୍ଷଙ୍କୁ ଅନୁରୋଧ କଲେ । ବିରୂପାକ୍ଷ ଏହି ସର୍ତ୍ତରେ ସମ୍ମତ ହେଲେ ଏବଂ ବସନ୍ତଙ୍କୁ ହୁଣ୍ଡି ବାବଦ ଟଙ୍କା ଚେକ୍ ଆକାରରେ ଦେଇ ସର୍ତ୍ତାନୁଯାୟୀ ଏକ ନୂତନ ହୁଣ୍ଡି ପ୍ରକାଶଙ୍କ ଉପରେ କାଟିଲେ । ଏହି ଦ୍ୱିତୀୟ ହୁଣ୍ଡିଟି ଯଥା ସମୟରେ ସ୍ୱୀକୃତ ଓ ସମ୍ମାନିତ ହେଲା । ବିରୂପାକ୍ଷଙ୍କ ବହିରେ ରୋଜନାମା ପ୍ରସ୍ତୁତ କର ।

**ସମାଧାନ :**

## ବିରୂପାକ୍ଷଙ୍କ ହିସାବ ଖାତାରେ

| ୧୯୭୩ | ରୋଜନାମା | | ଟଙ୍କା | ଟଙ୍କା |
|---|---|---|---|---|
| ଜୁନ୍ ୧ | ପ୍ରାପ୍ୟ ହୁଣ୍ଡି ହିସାବ | ଦାୟୀ | ୬୦୦ | |
| | ପ୍ରକାଶଙ୍କ ହିସାବ ବାବଦ | | | ୬୦୦ |
| | (୬୦୦ ଟଙ୍କା ସକାଶେ ୩ ମାସ ମିଆଦରେ ପ୍ରସ୍ତୁତ ହୋଇଥିବା ହୁଣ୍ଡି ପ୍ରକାଶ ସ୍ୱୀକାର କଲେ ।) | | | |
| ୧ | ବସନ୍ତଙ୍କ ହିସାବ | ଦାୟୀ | ୬୦୦ | |
| | ପ୍ରାପ୍ୟ ହୁଣ୍ଡି ହିସାବ ବାବଦ | | | ୬୦୦ |
| | (ପ୍ରକାଶ ସ୍ୱୀକାର କରିଥିବା ହୁଣ୍ଡି ବସନ୍ତଙ୍କୁ ହସ୍ତାନ୍ତର କରାଗଲା ।) | | | |
| ସେପ୍ଟେମ୍ବର ୪ | ପ୍ରକାଶଙ୍କ ହିସାବ | ଦାୟୀ | ୬୦୦ | |
| | ବସନ୍ତଙ୍କ ହିସାବ ବାବଦ | | | ୬୦୦ |
| | (ପ୍ରକାଶ ସ୍ୱୀକାର କରିଥିବା ହୁଣ୍ଡି ନାକଚ କରାଗଲା ।) | | | |

| ୧୯୬୩ | ରୋଜନାମା | ଟଙ୍କା | ଟଙ୍କା |
|---|---|---|---|
| ସେପ୍ଟେମ୍ବର ୪ | ବସନ୍ତଙ୍କ ହିସାବ ଦାୟୀ | ୬୦୦ | |
| | ବ୍ୟାଙ୍କ୍ ହିସାବ ବାବଦ | | ୬୦୦ |
| | (ବସନ୍ତଙ୍କ ପ୍ରାପ୍ୟ ଟଙ୍କା ସକାଶେ ତାଙ୍କୁ ଚେକ୍ ଦିଆଗଲା ।) | | |
| ୪ | ପ୍ରକାଶଙ୍କ ହିସାବ ଦାୟୀ | ୧୨ | |
| | ସୁଧ ହିସାବ ବାବଦ | | ୧୨ |
| | (୬୦୦ ଟଙ୍କା ଉପରେ ଶତକଡ଼ା ୮ ହାରରେ ପ୍ରକାଶଙ୍କ ଠାରୁ ୩ ମାସର ସୁଧ ପ୍ରାପ୍ୟ ।) | | |
| ୪ | ପ୍ରାପ୍ୟ ହୁଣ୍ଡି ହିସାବ ଦାୟୀ | ୬୧୨ | |
| | ପ୍ରକାଶଙ୍କ ହିସାବ ବାବଦ | | ୬୧୨ |
| | (ପ୍ରକାଶଙ୍କ ଠାରୁ ପ୍ରାପ୍ୟ ଟଙ୍କା ସକାଶେ ସେ ଦ୍ୱିତୀୟ ହୁଣ୍ଡି ସ୍ୱୀକାର କଲେ ।) | | |
| ଡିସେମ୍ବର ୭ | ବ୍ୟାଙ୍କ୍ ହିସାବ ଦାୟୀ | ୬୧୨ | |
| | ପ୍ରକାଶଙ୍କ ହିସାବ ବାବଦ | | ୬୧୨ |
| | (ପ୍ରକାଶ ମିଆଦ ପୂର୍ତ୍ତି ଦିବସରେ ଦ୍ୱିତୀୟ ହୁଣ୍ଡି ବାବଦ ଟଙ୍କା ପରିଶୋଧ କଲେ ।) | | |

## ଦୃଷ୍ଟାନ୍ତ (୭)

ହୃଦାନନ୍ଦ ୩ ମାସ ମିଆଦରେ ୮୦୦ ଟଙ୍କା ସକାଶେ ଗୋଟିଏ ହୁଣ୍ଡି ପ୍ରସ୍ତୁତ କରି ମୁରଲୀଙ୍କ ନିକଟକୁ ସ୍ୱୀକାର କରିବା ଉଦ୍ଦେଶ୍ୟରେ ପଠାଇଲେ । ମୁରଲୀ ହୁଣ୍ଡିଟି ସ୍ୱୀକାର କରି ୧୯୬୩ ସାଲ ଜାନୁଆରୀ ୧ ତାରିଖରେ ଫେରସ୍ତ ପଠାଇଲେ ସେହି ତାରିଖରେ ହୃଦାନନ୍ଦ ଶତକଡ଼ା ୯ ହାରରେ ବଟା ଦେଇ ନିଜ ବ୍ୟାଙ୍କ୍‌ରେ ଭଙ୍ଗାଇଲେ । ମିଆଦ ପୂର୍ତ୍ତି ଦିବସରେ ହୁଣ୍ଡିଟି ଅସମ୍ମାନିତ ହେଲା ଓ ବ୍ୟାଙ୍କ୍ ନୋଟେଇ ବାବଦ ୭ ଟଙ୍କା ଖର୍ଚ୍ଚ କଲେ । ହୃଦାନନ୍ଦ ବ୍ୟାଙ୍କ୍‌କୁ ତାଙ୍କର ପ୍ରାପ୍ୟ ଟଙ୍କା ଦେଲେ । ମୁରଲୀ ସେହି ତାରିଖରେ ନଗଦ ୩୦୦ ଟଙ୍କା ହୃଦାନନ୍ଦଙ୍କୁ

ଦେଲେ ଓ ଅବଶିଷ୍ଟ ଟଙ୍କା ଓ ତାହା ଉପରେ ଶତକଡ଼ା ୮ ହାର ସୁଧ ସମେତ ମୋଟ ପ୍ରାପ୍ୟ ଟଙ୍କା ସକାଶେ ୩ ମାସ ମିଆଦରେ ପ୍ରସ୍ତୁତ ହୋଇଥିବା ଅନ୍ୟ ଏକ ହୁଣ୍ଡି ସ୍ୱୀକାର କଲେ । ନିର୍ଦ୍ଦିଷ୍ଟ ଅବସରରେ ଏହି ହୁଣ୍ଡି ବାବଦ ଟଙ୍କା ମଧ୍ୟ ମୁରଲୀଙ୍କ-ଠାରୁ ମିଳିଲା ନାହିଁ ଏବଂ ଲେଖେଇ ବାବଦ ବୃନ୍ଦାବନ ୫ ଟଙ୍କା ବ୍ୟୟ କଲେ ।

ଉପରୋକ୍ତ ନେଣଦେଣ ସକାଶେ ବୃନ୍ଦାବନଙ୍କ ହିସାବ ଖାତାରେ ରୋଜନାମା ଲେଖ ।

**ସମାଧାନ :**

## ବୃନ୍ଦାବନଙ୍କ ହିସାବ ଖାତାରେ

| ୧୯୭୩ | ରୋଜନାମା | | ଟଙ୍କା | ଟଙ୍କା |
|---|---|---|---|---|
| ଜାନୁଆରୀ ୧ | ପ୍ରାପ୍ୟ ହୁଣ୍ଡି ହିସାବ | ଦାୟୀ | ୮୦୦ | |
| | ମୁରଲୀଙ୍କ ହିସାବ ବାବଦ | | | ୮୦୦ |
| | (ମୁରଲୀ ୩ ମାସ ମିଆଦରେ ୮୦୦ ଟଙ୍କା ନିମନ୍ତେ ପ୍ରସ୍ତୁତ ହୋଇଥିବା ହୁଣ୍ଡି ସ୍ୱୀକାର କଲେ ।) | | | |
| ୧ | ବ୍ୟାଙ୍କ ହିସାବ | ଦାୟୀ | ୭୮୨ | |
| | ବଟ୍ଟା ହିସାବ | ଦାୟୀ | ୧୮ | |
| | ପ୍ରାପ୍ୟ ହୁଣ୍ଡି ହିସାବ ବାବଦ | | | ୮୦୦ |
| | (ମୁରଲୀ ସ୍ୱୀକାର କରିଥିବା ହୁଣ୍ଡି ଶତକଡ଼ା ୯ ହାରରେ ବଟ୍ଟା ଦେଇ ବ୍ୟାଙ୍କରେ ଭଙ୍ଗାଇ ଦିଆଗଲା ।) | | | |
| ଅପ୍ରେଲ ୪ | ମୁରଲୀଙ୍କ ହିସାବ | ଦାୟୀ | ୮୦୭ | |
| | ବ୍ୟାଙ୍କ ହିସାବ ବାବଦ | | | ୮୦୭ |
| | (ମିଆଦ ପୂର୍ତ୍ତି ଅବସରରେ ହୁଣ୍ଡି ଅସମ୍ମାନିତ ହେବାରୁ ବ୍ୟାଙ୍କକୁ ତାଙ୍କର ପ୍ରାପ୍ୟ ଟଙ୍କା ଓ ଲେଖେଇ ବାବଦ ଟଙ୍କା ଦିଆଗଲା ।) | | | |
| ୪ | ନଗଦ ତହବିଲ ହିସାବ | ଦାୟୀ | ୩୦୦ | |
| | ମୁରଲୀଙ୍କ ହିସାବ ବାବଦ | | | ୩୦୦ |
| | (ମୁରଲୀ ନଗଦ ୩୦୦ ଟଙ୍କା ଦେଲେ ।) | | | |

| ୧୯୬୩ | ରୋଜନାମା | ଟଙ୍କା | ଟଙ୍କା |
|---|---|---|---|
| ଅପ୍ରେଲ ୪ | ମୂରଲୀଙ୍କ ହିସାବ ଦାୟୀ | ୧୦ | |
| | ସୁଧ ହିସାବ ବାବଦ | | ୧୦ |
| | (ମୂରଲୀଙ୍କଠାରୁ ଶତକଡ଼ା ୮ ହାରରେ ୫୦୦ ଟଙ୍କା ଉପରେ ସୁଧ ପ୍ରାପ୍ୟ ।) | | |
| ୪ | ପ୍ରାପ୍ୟ ହୁଣ୍ଡି ହିସାବ ଦାୟୀ | ୫୧୦ | |
| | ମୂରଲୀଙ୍କ ହିସାବ ବାବଦ | | ୫୧୦ |
| | (ମୂରଲୀ ତାଙ୍କର ଦେୟ ପରିମାଣ ସକାଶେ ହୁଣ୍ଡି ସ୍ୱୀକାର କଲେ ।) | | |
| ଜୁଲାଇ ୭ | ମୂରଲୀଙ୍କ ହିସାବ ଦାୟୀ | ୫୧୦ | |
| | ପ୍ରାପ୍ୟ ହୁଣ୍ଡି ହିସାବ ବାବଦ | | ୫୧୦ |
| | (ହୁଣ୍ଡି ନିର୍ଦ୍ଦିଷ୍ଟ ଦିବସରେ ଅସମ୍ମାନିତ ହେଲା ।) | | |
| | ମୂରଲୀଙ୍କ ହିସାବ ଦାୟୀ | ୫ | |
| | ନଗଦ ତହବିଲ ହିସାବ ବାବଦ | | ୫ |
| | (ଲେଖେଇ ବାବଦ ୫ ଟଙ୍କା ଖର୍ଚ୍ଚ ହେଲା ।) | | |

## ୭ । ହୁଣ୍ଡିର ସ୍ୱୀକୃତ ନିମନ୍ତେ ରୋଜନାମା :

ଯେଉଁ ହୁଣ୍ଡି ଲେଖକଙ୍କ ପକ୍ଷରେ ପ୍ରାପ୍ୟ ହୁଣ୍ଡି ତାହାହିଁ ଦାୟକଙ୍କ ପକ୍ଷରେ ଦେୟ ହୁଣ୍ଡି । ଯେଉଁ ମୁହୂର୍ତ୍ତରେ ସେ ହୁଣ୍ଡି ସ୍ୱୀକାର କରନ୍ତି ସେହି ସମୟରୁ ତାଙ୍କର ଦାୟିତ୍ୱ ଆରମ୍ଭ ହୁଏ । ପୂର୍ବରୁ କୁହାଯାଇଛି ଯେ ହୁଣ୍ଡି ହସ୍ତାନ୍ତରଯୋଗ୍ୟ ଦଲିଲ ହୋଇଥିବା ଯୋଗୁଁ ଏହା ନଗଦ ସ୍ୱରୂପ ବିବେଚିତ ହୁଏ । ତେଣୁ ଦାୟକ ହୁଣ୍ଡି ସ୍ୱୀକାର କରିବା ସମୟରେ ହିଁ ମନେ କରାଯାଏ ଯେ ସେ ହୁଣ୍ଡି ବାବଦ ଟଙ୍କା ଯେପରି ସେ ପରିଶୋଧ କଲେ । ତେଣୁ ହୁଣ୍ଡି ସ୍ୱୀକାର ସକାଶେ ରୋଜନାମା ସେହି ପ୍ରକାରର ହୁଏ । ଆବଶ୍ୟକ ରୋଜନାମା ନିମ୍ନରେ ପ୍ରଦତ୍ତ ହେଲା :

| | | |
|---|---|---|
| ଲେଖକ | | ଦାୟୀ |
| | ଦେୟ ହୁଣ୍ଡି ହିସାବ ବାବଦ | |
| (ଲେଖକଙ୍କ ଦ୍ୱାରା ପ୍ରେରିତ ହୁଣ୍ଡି ସ୍ୱୀକାର କରାଗଲା ।) | | |

ଏହି ସ୍ୱୀକୃତ ହୁଣ୍ଡିକୁ ଲେଖକ ମିଆଦ ପୂର୍ତ୍ତି ଦିବସ ପର୍ଯ୍ୟନ୍ତ ନିଜ ନିକଟରେ ରଖନ୍ତୁ ଅଥବା ଅନ୍ୟ କୌଣସି ମହାଜନଙ୍କୁ ହସ୍ତାନ୍ତରିତ କରନ୍ତୁ ଅଥବା ବ୍ୟାଙ୍କରେ ବଟା ଦେଇ ଭଙ୍ଗାନ୍ତୁ ତାହାର କୌଣସି ପ୍ରଭାବ ଦାୟକଙ୍କ ହିସାବକୁ ପ୍ରଭାବାନ୍ୱିତ କରିବ ନାହିଁ । ହୁଣ୍ଡି ବାବଦ ଟଙ୍କା ନିମନ୍ତେ ଦାୟକ କେବଳ ଲେଖକଙ୍କ ନିକଟରେ ଦାୟୀ ରହନ୍ତି । ଅବଶ୍ୟ ମିଆଦ ପୂର୍ତ୍ତି ଦିବସରେ ସେ ଏହି ହୁଣ୍ଡି ବାବଦ ଟଙ୍କା ଲେଖକଙ୍କୁ ଦେବେ କିମ୍ବା ତାଙ୍କ ଦ୍ୱାରା ଆଦିଷ୍ଟ ଯେ କୌଣସି ବ୍ୟକ୍ତି ବା ଅନୁଷ୍ଠାନକୁ ଦେବେ । ଟଙ୍କା ଦେବା ପୂର୍ବରୁ ହୁଣ୍ଡି ଉପସ୍ଥାପିତ କରୁଥିବା ବ୍ୟକ୍ତି ଲେଖକଙ୍କ ଦ୍ୱାରା ଆଦିଷ୍ଟ ବ୍ୟକ୍ତି କି ନୁହେଁ ସେ ବିଷୟରେ ସେ ନିଶ୍ଚିତ ହେବା ଉଚିତ । ଅନେକ ସମୟରେ ହୁଣ୍ଡି ଏକାଧିକ ଥର ହସ୍ତାନ୍ତରିତ ହୋଇ ପାରିଥାଏ । ସେ କ୍ଷେତ୍ରରେ ସେ ପ୍ରାପକଙ୍କୁ ଚିହ୍ନିବା ସମ୍ଭବପର ନୁହେଁ । ତଥାପି ସେ ପ୍ରକୃତ ପ୍ରାପକ କି ନୁହନ୍ତି ସେ ବିଷୟରେ ସେ ନିଃସନ୍ଦେହ ହେବା ଉଚିତ । ସେ ପ୍ରାପକଙ୍କୁ ଟଙ୍କା ଦେଲେ ନିମ୍ନଲିଖିତ ରୋଜନାମା ଲେଖାଯିବ :

ଦେୟ ହୁଣ୍ଡି ହିସାବ ଦାୟୀ
ନଗଦ ତହବିଲ/ବ୍ୟାଙ୍କ ହିସାବ ବାବଦ
(ସ୍ୱୀକୃତ ହୁଣ୍ଡି ବାବଦ ଟଙ୍କା ନଗଦ/ଚେକ୍
ଆକାରରେ ଦିଆଗଲା ।)

ମିଆଦ ପୂର୍ତ୍ତି ଦିବସରେ ଯଦି ସେ ହୁଣ୍ଡି ବାବଦ ଟଙ୍କା ପରିଶୋଧ କରିବାକୁ ଅକ୍ଷମ ହୁଅନ୍ତି ଅର୍ଥାତ୍ ଯଦି ହୁଣ୍ଡିଟି ଅସମ୍ମାନିତ ବା ଅମାନ୍ୟକୃତ ହୁଏ ତାହା ହେଲେ ତାଙ୍କ ହିସାବ ଖାତାରେ ନିମ୍ନଲିଖିତ ରୋଜନାମା ଲେଖାଯିବ :

ଦେୟ ହୁଣ୍ଡି ହିସାବ ଦାୟୀ
ଲେଖକଙ୍କ ହିସାବ ବାବଦ
(ସ୍ୱୀକୃତ ହୁଣ୍ଡି ଅସମ୍ମାନିତ ହେଲା ।)

ଏହି ରୋଜନାମା ଦ୍ୱାରା ପ୍ରଥମ ରୋଜନାମା, ଅର୍ଥାତ୍ ହୁଣ୍ଡି ସ୍ୱୀକୃତ ହେବା ସମୟର ରୋଜନାମା ନାକଚ କରାଯାଇ ଲେଖକଙ୍କ ହିସାବକୁ ପୁଣି ଦାତା କରାଗଲା । ତେଣୁ ସେ ପୁନର୍ବାର ହୁଣ୍ଡି ବାବଦ ଟଙ୍କା ନିମନ୍ତେ ଲେଖକଙ୍କ-ଠାରେ ଋଣୀ ରହିଲେ ।

ଯଦି ହୁଣ୍ଡି ଅସମ୍ମାନିତ ହେବା ସମୟରେ ତାଙ୍କ ଲେଖାକାରରେ ଲେଖେଇ ବାବଦ କିଛି ଟଙ୍କା ବ୍ୟୟିତ ହୋଇଥାଏ ତାହାହେଲେ ସେଥି ନିମନ୍ତେ ମଧ୍ୟ ସେ ଲେଖକଙ୍କଠାରେ ଦାୟୀ ରହିବେ । ତାହାର ରୋଜନାମା ନିମ୍ନୋକ୍ତ ପ୍ରକାର ହେବ :

ଲେଖେଇ ଖର୍ଚ୍ଚ ହିସାବ ଦାୟୀ
ଲେଖକଙ୍କ ହିସାବ ବାବଦ
(ଲେଖେଇ ଖର୍ଚ୍ଚ ବାବଦ ଟଙ୍କା ଲେଖକ-
ଙ୍କର ପ୍ରାପ୍ୟ ।)

ଯଦି ହୁଣ୍ଡିର ନବୀକରଣ କରାଯାଏ ତାହା ହେଲେ ପ୍ରଥମେ ହୁଣ୍ଡି ଅସମ୍ମାନିତ ହେଲା ବୋଲି ବିବେଚିତ ହେବ ଏବଂ ସେଥି ନିମନ୍ତେ ଆବଶ୍ୟକ ରୋଜନାମା ପ୍ରଥମେ ଲେଖାଯିବ । ତତ୍ପରେ ନୂତନ ହୁଣ୍ଡି ସ୍ୱୀକାର କରାଗଲେ ହୁଣ୍ଡି ସ୍ୱୀକୃତ ସଂକ୍ରାନ୍ତ ରୋଜନାମା ଲେଖାଯିବ । ଯଦି ସୁଧ ଦେବାକୁ ପଡ଼େ ତାହାହେଲେ ଏହାର ରୋଜନାମା ନିମ୍ନୋକ୍ତ ପ୍ରକାର ହେବ :

ସୁଧ ହିସାବ ଦାୟୀ
ଲେଖକଙ୍କ ହିସାବ ବାବଦ
(ପୂର୍ବ ସ୍ୱୀକୃତ ହୁଣ୍ଡି ଅସମ୍ମାନିତ ହୋଇ-
ଥିବାରୁ ଲେଖକଙ୍କର ସୁଧ ପ୍ରାପ୍ୟ ହେଲା ।)

ଏହି ସଂକ୍ରାନ୍ତ ନେଣଦେଣ ସକାଶେ ନିମ୍ନରେ କେତେକ ଦୃଷ୍ଟାନ୍ତ ଦିଆଗଲା ।

## ଦୃଷ୍ଟାନ୍ତ (୭)

ରମାକାନ୍ତ ସର୍ବେଶ୍ୱରଙ୍କଠାରୁ ୫୦୦ ଟଙ୍କାର ପଣ୍ୟଦ୍ରବ୍ୟ ୧୯୭୩ ମସିହା ଜାନୁୟାରୀ ୧ ତାରିଖରେ ଉଧାରରେ କ୍ରୟ କଲେ ଓ ୩ ମାସ ମିୟାଦରେ ସର୍ବେଶ୍ୱରଙ୍କ ଦ୍ୱାରା ପ୍ରସ୍ତୁତ ହୋଇଥିବା ହୁଣ୍ଡି ଜାନୁୟାରୀ ୩ ତାରିଖରେ ସ୍ୱୀକାର କଲେ । ମିୟାଦ ପୂର୍ତ୍ତି ଦିବସରେ ସେ ହୁଣ୍ଡି ବାବଦ ଟଙ୍କା ପରିଶୋଧ କଲେ ।

ରମାକାନ୍ତଙ୍କ ହିସାବ ଖାତାରେ ଆବଶ୍ୟକୀୟ ରୋଜନାମା ପ୍ରସ୍ତୁତ କର ।

**ସମାଧାନ :**

## ରମାକାନ୍ତଙ୍କ ହିସାବ ଖାତାରେ

| ୧୯୭୩ | ରୋଜନାମା | ଟଙ୍କା | ଟଙ୍କା |
|---|---|---|---|
| (୧) ଜାନୁୟାରୀ ୧ | ପଣ୍ୟ ହିସାବ ଦାୟୀ | ୫୦୦ | |
| | ସର୍ବେଶ୍ୱରଙ୍କ ହିସାବ ବାବଦ | | |
| | (ସର୍ବେଶ୍ୱରଙ୍କଠାରୁ ଉଧାରରେ ପଣ୍ୟ କ୍ରୟ କରାଗଲା ।) | | |
| (୨) ୩ | ସର୍ବେଶ୍ୱରଙ୍କ ହିସାବ ଦାୟୀ | ୫୦୦ | |
| | ଦେୟ ହୁଣ୍ଡି ହିସାବ ବାବଦ | | ୫୦୦ |
| | (ସର୍ବେଶ୍ୱର ୫୦୦ ଟଙ୍କା ନିମନ୍ତେ ୩ ମାସ ମିଆଦରେ ପ୍ରସ୍ତୁତ କରିଥିବା ହୁଣ୍ଡି ସ୍ୱୀକାର କରାଗଲା ।) | | |
| (୩) ଅପ୍ରେଲ ୭ | ଦେୟ ହୁଣ୍ଡି ହିସାବ ଦାୟୀ | ୫୦୦ | |
| | ନଗଦ ତହବିଲ ହିସାବ ବାବଦ | | ୫୦୦ |
| | (ସର୍ବେଶ୍ୱର ପ୍ରସ୍ତୁତ କରିଥିବା ସ୍ୱୀକୃତ ହୁଣ୍ଡି ବାବଦ ଟଙ୍କା ନଗଦ ଆକାରରେ ଦିଆଗଲା) | | |

## ଦୃଷ୍ଟାନ୍ତ (୮)

ନେଣଦେଣର ବିବରଣୀ ପୂର୍ବ ଦୃଷ୍ଟାନ୍ତର ଅନୁରୂପ । କେବଳ ମିଆଦ ପୂର୍ତ୍ତି ଅବସରେ ହୁଣ୍ଡି ଅସମ୍ମାନିତ ହେଲା ଏବଂ ସର୍ବେଶ୍ୱର ଲେଖେଇ ବାବଦ ୫ ଟଙ୍କା ଖର୍ଚ୍ଚ କଲେ ।

**ସମାଧାନ :**

(୧) ଓ (୨) ନମ୍ବର ରୋଜନାମା ପୂର୍ବବତ୍ ରହିବ । କେବଳ ପୂର୍ବ ସମାଧାନର (୩) ନମ୍ବର ରୋଜନାମା ସ୍ଥଳେ ନିମ୍ନଲିଖିତ ରୋଜନାମା ଲେଖାଯିବ :

| ୧୯୭୩ | | ଟଙ୍କା | ଟଙ୍କା |
|---|---|---|---|
| ଅପ୍ରେଲ ୭ | ଦେୟ ହୁଣ୍ଡି ହିସାବ ଡାଏରୀ | ୫୦୦ | |
| | ସର୍ବେଶ୍ୱରଙ୍କ ହିସାବ ବାବଦ | | ୫୦୦ |
| | (ସର୍ବେଶ୍ୱରଙ୍କ ଦ୍ୱାରା ୫୦୦ ଟଙ୍କା ସକାଶେ ୩ ମାସ ମିଆଦରେ ପ୍ରସ୍ତୁତ ସ୍ୱୀକୃତ ହୋଇଥିବା ହୁଣ୍ଡି ଅସମ୍ମାନିତ ହେଲା ।) | | |
| ୭ | ଲେଖେଇ ଖର୍ଚ୍ଚ ହିସାବ ଡାଏରୀ | ୫ | |
| | ସର୍ବେଶ୍ୱରଙ୍କ ହିସାବ ବାବଦ | | ୫ |
| | (ସର୍ବେଶ୍ୱର ଲେଖେଇ ବାବଦ ଖର୍ଚ୍ଚ କରିଥିବା ଟଙ୍କା ତାଙ୍କର ପ୍ରାପ୍ୟ ।) | | |

## ଦୃଷ୍ଟାନ୍ତ (୯)

ମୋତିଲାଲ ୩ ମାସ ମିଆଦରେ ୮୦୦ ଟଙ୍କା ସକାଶେ ଗୋଟିଏ ହୁଣ୍ଡି ପ୍ରସ୍ତୁତ କରି ତାଙ୍କର ଖାତକ ସୁବାସ ନିକଟକୁ ସ୍ୱୀକୃତି ନିମନ୍ତେ ପଠାଇଲେ । ସୁବାସ ହୁଣ୍ଡିଟି ୧୯୭୩ ସାଲ ଫେବୃଆରୀ ୪ ତାରିଖରେ ସ୍ୱୀକାର କରି ମୋତିଲାଲଙ୍କ ନିକଟକୁ ସେହି ତାରିଖରେ ଫେରସ୍ତ ପଠାଇଲେ । ମୋତିଲାଲ ସ୍ୱୀକୃତ ହୁଣ୍ଡିକୁ ରାମନାଥଙ୍କୁ ହସ୍ତାନ୍ତର କଲେ । ନିର୍ଦ୍ଦିଷ୍ଟ ଦିବସରେ ହୁଣ୍ଡି ବାବଦ ସମସ୍ତ ଟଙ୍କା ଦେବାକୁ ଅସମର୍ଥ ହେବେ ବୋଲି ଜାଣିପାରି ସୁବାସ ପୂର୍ବ ହୁଣ୍ଡି ନାକଚ କରି ଅନ୍ୟ ଏକ ହୁଣ୍ଡି ୨ ମାସ ମିଆଦରେ ପ୍ରସ୍ତୁତ କଲେ ସେ ତାହା ସ୍ୱୀକାର କରିବେ ବୋଲି ମୋତିଲାଲଙ୍କୁ ପ୍ରସ୍ତାବ ଦେଲେ । ସେ ନଗଦ ଆକାରରେ ୨୦୦ ଟଙ୍କା ଓ ଶତକଡ଼ା ୧୦ ହାରରେ ବାକି ଟଙ୍କା ଉପରେ ସୁଧ ଦେବାକୁ ମଧ୍ୟ ରାଜି ହେଲେ । ଏହି ସବୁ ସର୍ତ୍ତରେ ମୋତିଲାଲ ଏକ ନୂତନ ହୁଣ୍ଡି ପ୍ରସ୍ତୁତ କରିବାକୁ ସମ୍ମତ ହେଲେ । ନୂତନ ହୁଣ୍ଡି ଯଥା ସମୟରେ ସ୍ୱୀକୃତ ଓ ସମ୍ମାନିତ ହେଲା ।

ଉପରୋକ୍ତ ନେଣଦେଣ ସକାଶେ ସୁବାସଙ୍କ ହିସାବ ଖାତାରେ ରୋଜନାମା ଲେଖ ।

**ସମାଧାନ :**

## ସୁବାସଙ୍କ ହିସାବ ଖାତାରେ

| ୧୯୭୩ | ରୋଜନାମା | ଟଙ୍କା | ଟଙ୍କା |
|---|---|---|---|
| ଫେବୃଆରୀ ୪ | ମୋତିଲାଲଙ୍କ ହିସାବ ଦାୟୀ | ୮୦୦ | |
| | ଦେୟ ହୁଣ୍ଡି ହିସାବ ବାବଦ | | ୮୦୦ |
| | (ମୋତିଲାଲ ତିନି ମାସ ମିଆଦରେ ୮୦୦ ଟଙ୍କା ନିମନ୍ତେ ପ୍ରସ୍ତୁତ କରିଥିବା ହୁଣ୍ଡି ସ୍ୱୀକୃତ ହେଲା ।) | | |
| ମଇ ୭ | ଦେୟ ହୁଣ୍ଡି ହିସାବ ଦାୟୀ | ୮୦୦ | |
| | ମୋତିଲାଲଙ୍କ ହିସାବ ବାବଦ | | ୮୦୦ |
| | (ପୂର୍ବ ସ୍ୱୀକୃତ ହୁଣ୍ଡି ନାକଚ କରାଗଲା ।) | | |
| ୭ | ମୋତିଲାଲଙ୍କ ହିସାବ ଦାୟୀ | ୨୦୦ | |
| | ନଗଦ ତହବିଲ ହିସାବ ବାବଦ | | ୨୦୦ |
| | ( ମୋତିଲାଲଙ୍କୁ ନଗଦ ୨୦୦ ଟଙ୍କା ଦିଆଗଲା । ) | | |
| ୭ | ସୁଧ ହିସାବ ଦାୟୀ | ୧୫ | |
| | ମୋତିଲାଲଙ୍କ ହିସାବ ବାବଦ | | ୧୫ |
| | (ଶତକଡ଼ା ୧୦ ହାରରେ ବକେୟା ଟଙ୍କା ଉପରେ ୩ ମାସର ସୁଧ ମୋତିଲାଲଙ୍କର ପ୍ରାପ୍ୟ ।) | | |
| ୭ | ମୋତିଲାଲଙ୍କ ହିସାବ ଦାୟୀ | ୬୦୦ | |
| | ଦେୟ ହୁଣ୍ଡି ହିସାବ ବାବଦ | | ୬୦୦ |
| | (୨ ମାସ ମିଆଦରେ ୬୦୦ ଟଙ୍କା ନିମନ୍ତେ ମୋତିଲାଲଙ୍କ ଦ୍ୱାରା ପ୍ରସ୍ତୁତ ନୂତନ ହୁଣ୍ଡି ସ୍ୱୀକାର କରାଗଲା ।) | | |

| ୧୯୬୩ | ରୋଜନାମା | | ଟଙ୍କା | ଟଙ୍କା |
|---|---|---|---|---|
| ଜୁଲାଇ ୧୦ | ଦେୟ ହୁଣ୍ଡି ହିସାବ | ଡାଏଁ | ୬୦୦ | |
| | ବ୍ୟାଙ୍କ୍ ହିସାବ ବାବଦ | | | ୬୦୦ |
| | (୨ ମାସ ମିଆଦରେ ୬୦୦ ଟଙ୍କା ନିମନ୍ତେ ପ୍ରସ୍ତୁତ ହୋଇଥିବା ଓ ସ୍ୱୀକୃତ ହୋଇଥିବା ନୂତନ ହୁଣ୍ଡି ବାବଦ ଚେକ୍ ଦିଆଗଲା ।) | | | |

## ଦୃଷ୍ଟାନ୍ତ (୧୦)

୧୯୬୩ ମସିହା ଜାନୁୟାରୀ ୧ ତାରିଖରେ ପ୍ରଫୁଲ୍ଲ ୫୦୦ ଟଙ୍କା ସକାଶେ ୩ ମାସ ମିଆଦରେ ପ୍ରସ୍ତୁତ ହୋଇଥିବା ଏକ ପ୍ରତିଜ୍ଞା ପତ୍ର ସୁକାନ୍ତଙ୍କ ନିକଟକୁ ପଠାଇଲେ । ସୁକାନ୍ତ ସେହି ପ୍ରତିଜ୍ଞା ପତ୍ରକୁ ସେହି ତାରିଖରେ ତାଙ୍କ ବ୍ୟାଙ୍କରେ ଶତକଡ଼ା ୮ ହାରରେ ବଟା ଦେଇ ଭଙ୍ଗାଇଲେ । ନିର୍ଦ୍ଦିଷ୍ଟ ଦିବସରେ ଏହି ପ୍ରତିଜ୍ଞା ପତ୍ର ଅସମ୍ମାନିତ ହେଲା ଏବଂ ବ୍ୟାଙ୍କ ଲେଖେଇ ବାବଦ ୮ ଟଙ୍କା ଖର୍ଚ୍ଚ କଲେ । ସୁକାନ୍ତ ନଗଦ ୨୧୮ ଟଙ୍କା (ଲେଖେଇ ଓ ସୁଧ ବାବଦ ୧୮ ଟଙ୍କା) ଓ ୩୦୦ ଟଙ୍କା ସକାଶେ ୨ ମାସ ମିଆଦରେ ପ୍ରସ୍ତୁତ ହୋଇଥିବା ଏକ ନୂତନ ପ୍ରତିଜ୍ଞା ପତ୍ର ପ୍ରଫୁଲ୍ଲଙ୍କଠାରୁ ରଖିବାକୁ ସମ୍ମତ ହେଲେ । ନିର୍ଦ୍ଦିଷ୍ଟ ଦିବସରେ ପ୍ରଫୁଲ୍ଲ ଦ୍ୱିତୀୟ ପ୍ରତିଜ୍ଞା ପତ୍ରକୁ ବାତିଲ କରି ୩ ମାସ ମିଆଦରେ ଅନ୍ୟ ଏକ ପ୍ରତିଜ୍ଞା ପତ୍ର ଗ୍ରହଣ କରିବା ସକାଶେ ସୁକାନ୍ତଙ୍କୁ ଅନୁରୋଧ କଲେ । ସୁକାନ୍ତ ସୁଧ ବାବଦ ନଗଦ ୧୫ ଟଙ୍କା ପାଇଲେ ଏହି ପ୍ରସ୍ତାବରେ ସମ୍ମତ ହେବେ ବୋଲି ଜଣାଇଲେ । ପ୍ରଫୁଲ୍ଲ ଏହି ସର୍ତ୍ତ ମାନି ନେଲେ । ନିର୍ଦ୍ଦିଷ୍ଟ ଦିବସରେ ତୃତୀୟ ପ୍ରତିଜ୍ଞା ପତ୍ର ସମ୍ମାନିତ ହେଲା ।

ଉପରୋକ୍ତ ନେଣଦେଣଗୁଡ଼ିକ ସକାଶେ ସୁକାନ୍ତ ଓ ପ୍ରଫୁଲ୍ଲ ଉଭୟଙ୍କ ହିସାବ ଖାତାରେ ରୋଜନାମା ପ୍ରସ୍ତୁତ କର ।

**ସମାଧାନ :**

### ସୁକାନ୍ତଙ୍କ ହିସାବ ଖାତାରେ

| ୧୯୬୩ | ରୋଜନାମା | | ଟଙ୍କା | ଟଙ୍କା |
|---|---|---|---|---|
| ଜାନୁୟାରୀ ୧ | ପ୍ରାପ୍ୟ ହୁଣ୍ଡି ହିସାବ | ଡାଏଁ | ୫୦୦ | |
| | ପ୍ରଫୁଲ୍ଲଙ୍କ ହିସାବ ବାବଦ | | | ୫୦୦ |

(ତିନ ମାସ ମିଆଦରେ ୫୦୦ ଟଙ୍କା ଜମରେ ପ୍ରସ୍ତୁତ ହୋଇଥିବା ପ୍ରତିଜ୍ଞା ପତ୍ର ପ୍ରଫୁଲ୍ଲ-ଠାରୁ ମିଳିଲା ।)

| ୧୯୭୩ | ରୋଜନାମା | | ଟଙ୍କା | ଟଙ୍କା |
|---|---|---|---|---|
| ୧ | ବ୍ୟାଙ୍କ ହିସାବ | ଦାୟୀ | ୪୯୦ | |
| | ବଟ୍ଟା ହିସାବ | ଦାୟୀ | ୧୦ | |
| | ପ୍ରାପ୍ୟ ହୁଣ୍ଡି ହିସାବ ବାବଦ | | | ୫୦୦ |
| | (ପ୍ରଫୁଲ୍ଲଙ୍କ ଠାରୁ ମିଳିଥିବା ପ୍ରତିଜ୍ଞା ପତ୍ର ବ୍ୟାଙ୍କରେ ଶତକଡ଼ା ୮ ହାର ବଟ୍ଟାରେ ଭଙ୍ଗାଇ ଦିଆଗଲା ।) | | | |
| ଅପ୍ରେଲ ୪ | ପ୍ରଫୁଲ୍ଲଙ୍କ ହିସାବ | ଦାୟୀ | ୫୦୮ | |
| | ବ୍ୟାଙ୍କ ହିସାବ ବାବଦ | | | ୫୦୮ |
| | (ପ୍ରଫୁଲ୍ଲ ମିଆଦ ପୂର୍ତ୍ତି ଅବସରରେ ପ୍ରତିଜ୍ଞା ପତ୍ର ଅସମ୍ମାନିତ କଲେ ଓ ବ୍ୟାଙ୍କ, ନୋଟେଇ ବାବଦ ୮ ଟଙ୍କା ଖର୍ଚ୍ଚ କଲେ । ଏହି ଖରଚ ପରିମାଣ, ଯାହା ବ୍ୟାଙ୍କକୁ ଦିଆଗଲା, ତାହା ପ୍ରଫୁଲ୍ଲଙ୍କଠାରୁ ପ୍ରାପ୍ୟ ।) | | | |
| ୪ | ପ୍ରଫୁଲ୍ଲଙ୍କ ହିସାବ | ଦାୟୀ | ୧୦ | |
| | ସୁଧ ହିସାବ ବାବଦ | | | ୧୦ |
| | (ପ୍ରଫୁଲ୍ଲଙ୍କଠାରୁ ସୁଧ ବାବଦ ୧୦ ଟଙ୍କା ପ୍ରାପ୍ୟ ।) | | | |
| ୪ | ନଗଦ ତହବିଲ ହିସାବ | ଦାୟୀ | ୨୧୮ | |
| | ପ୍ରାପ୍ୟ ହୁଣ୍ଡି ହିସାବ | ଦାୟୀ | ୩୦୦ | |
| | ପ୍ରଫୁଲ୍ଲଙ୍କ ହିସାବ ବାବଦ | | | ୫୧୮ |
| | (ପ୍ରଫୁଲ୍ଲ ସୁଧ ଓ ନୋଟେଇ ଖର୍ଚ୍ଚ ସମେତ ୨୧୮ ଟଙ୍କା ନଗଦ ଓ ୩୦୦ ଟଙ୍କା ସକାଶେ ୨ ମାସ ମିଆଦରେ ପ୍ରସ୍ତୁତ ଏକ ନୂତନ ପ୍ରତିଜ୍ଞା ପତ୍ର ଦେଲେ ।) | | | |

| ୧୯୬୩ | ରୋଜନାମା | | ଟଙ୍କା | ଟଙ୍କା |
|---|---|---|---|---|
| ଜୁନ୍ ୭ | ପ୍ରଫୁଲ୍ଲଙ୍କ ହିସାବ | ଦାୟୀ | ୩୦୦ | |
| | ପ୍ରାପ୍ୟ ହୁଣ୍ଡି ହିସାବ ବାବଦ | | | ୩୦୦ |
| | (ଦ୍ୱିତୀୟ ପ୍ରତିଜ୍ଞା ପତ୍ର ନାକଚ କରାଗଲା ।) | | | |
| ୭ | ପ୍ରଫୁଲ୍ଲଙ୍କ ହିସାବ | ଦାୟୀ | ୧୫ | |
| | ସୁଧ ହିସାବ ବାବଦ | | | ୧୫ |
| | (ପ୍ରଫୁଲ୍ଲଙ୍କଠାରୁ ସୁଧ ବାବଦ ୧୫ ଟଙ୍କା ପ୍ରାପ୍ୟ ।) | | | |
| ୭ | ନଗଦ ତହବିଲ ହିସାବ | ଦାୟୀ | ୧୫ | |
| | ପ୍ରାପ୍ୟ ହୁଣ୍ଡି ହିସାବ | ଦାୟୀ | ୩୦୦ | |
| | ପ୍ରଫୁଲ୍ଲଙ୍କ ହିସାବ ବାବଦ | | | ୩୧୫ |
| | (ପ୍ରଫୁଲ୍ଲଙ୍କଠାରୁ ସୁଧ ବାବଦ ନଗଦ ୧୫ ଟଙ୍କା ଓ ୩ ମାସ ମିଆଦରେ ପ୍ରସ୍ତୁତ ୩୦୦ ଟଙ୍କାର ନୂତନ ପ୍ରତିଜ୍ଞା ପତ୍ର ମିଳିଲା ।) | | | |
| ସେପ୍ଟେମ୍ବର ୧୦ | ବ୍ୟାଙ୍କ୍ ହିସାବ | ଦାୟୀ | ୩୦୦ | |
| | ପ୍ରାପ୍ୟ ହୁଣ୍ଡି ହିସାବ ବାବଦ | | | ୩୦୦ |
| | (ମିଆଦ ପୂର୍ତ୍ତି ଅବସରେ ତୃତୀୟ ପ୍ରତିଜ୍ଞା ପତ୍ର ସମ୍ମାନିତ ହେଲା ।) | | | |

## ପ୍ରଫୁଲ୍ଲଙ୍କ ହିସାବ ଖାତାରେ

| ୧୯୭୩ | ରୋଜନାମା | | ଟଙ୍କା | ଟଙ୍କା |
|---|---|---|---|---|
| ଜାନୁୟାରୀ ୧ | ସୁକାନ୍ତଙ୍କ ହିସାବ | ଦାୟୀ | ୫୦୦ | |
| | ଦେୟ ହୁଣ୍ଡି ହିସାବ ବାବଦ | | | ୫୦୦ |
| | (୫୦୦ ଟଙ୍କା ସକାଶେ ୩ ମାସ ମିଆଦରେ ପ୍ରସ୍ତୁତ ପ୍ରତିଜ୍ଞା ପତ୍ର ସୁକାନ୍ତଙ୍କୁ ଦିଆଗଲା ।) | | | |

| | | | | |
|---|---|---|---|---|
| ଅପ୍ରେଲ ୫ | ଦେୟ ହୁଣ୍ଡି ହିସାବ | ଦାୟୀ | ୫୦୦ | |
| | ଲେଖେଇ ଖର୍ଚ୍ଚ ହିସାବ | ଦାୟୀ | ୮ | |
| | ସୁକାନ୍ତଙ୍କ ହିସାବ ବାବଦ | | | ୫୦୮ |
| | (ପ୍ରତିଜ୍ଞା ପତ୍ର ଅସମ୍ମାନିତ ହେଲା ଏବଂ ଲେଖେଇ ଖର୍ଚ୍ଚ ବାବଦ ୮ ଟଙ୍କା ସୁକାନ୍ତଙ୍କୁ ଦେୟ ହେଲା ।) | | | |
| ୪ | ସୁଧ ହିସାବ | ଦାୟୀ | ୧୦ | |
| | ସୁକାନ୍ତଙ୍କ ହିସାବ ବାବଦ | | | ୧୦ |
| | (ସୁକାନ୍ତଙ୍କୁ ସୁଧ ବାବଦ ୧୦ ଟଙ୍କା ଦେୟ ହେଲା ।) | | | |
| ୪ | ସୁକାନ୍ତଙ୍କ ହିସାବ | ଦାୟୀ | ୫୧୮ | |
| | ନଗଦ ତହବିଲ ହିସାବ ବାବଦ | | | ୨୧୮ |
| | ଦେୟ ହୁଣ୍ଡି ହିସାବ ବାବଦ | | | ୩୦୦ |
| | (ସୁକାନ୍ତଙ୍କୁ ଲେଖେଇ ଖର୍ଚ୍ଚ ଓ ସୁଧ ସମେତ ନଗଦ ୨୧୮ ଟଙ୍କା ଓ ୨ ମାସ ମିଆଦରେ ପ୍ରସ୍ତୁତ ଏକ ନୂତନ ପ୍ରତିଜ୍ଞା ପତ୍ର ଦିଆଗଲା ।) | | | |
| ଜୁନ୍ ୭ | ଦେୟ ହୁଣ୍ଡି ହିସାବ | ଦାୟୀ | ୩୦୦ | |
| | ସୁକାନ୍ତଙ୍କ ହିସାବ ବାବଦ | | | ୩୦୦ |
| | (୨ ମାସ ମିଆଦରେ ୩୦୦ ଟଙ୍କା ସକାଶେ ଦିଆ ଯାଇଥିବା ପ୍ରତିଜ୍ଞା ପତ୍ର ବାକଚ କରାଗଲା ।) | | | |
| ୭ | ସୁଧ ହିସାବ | ଦାୟୀ | ୧୫ | |
| | ସୁକାନ୍ତଙ୍କ ହିସାବ ବାବଦ | | | ୧୫ |
| | (ସୁକାନ୍ତଙ୍କୁ ସୁଧ ବାବଦ ୧୫ ଟଙ୍କା ଦେୟ ହେଲା ।) | | | |
| ୭ | ସୁକାନ୍ତଙ୍କ ହିସାବ | ଦାୟୀ | ୩୧୫ | |
| | ନଗଦ ତହବିଲ୍ ହିସାବ ବାବଦ | | | ୧୫ |
| | ଦେୟ ହୁଣ୍ଡି ହିସାବ ବାବଦ | | | ୩୦୦ |

(ସୁକାନ୍ତଙ୍କୁ ସୁଧ ବାବଦ ୧୫ ଟଙ୍କା ନଗଦ
ଓ ୩ ମାସ ମିଆଦରେ ୩୦୦ ଟଙ୍କା ସକାଶେ
ଏକ ନୂତନ ପ୍ରତିଜ୍ଞା ପତ୍ର ଦିଆଗଲା ।)

| | | | | |
|---|---|---|---|---|
| ସେପ୍ଟେମ୍ବର ୧୦ | ଦେୟ ହୁଣ୍ଡି ହିସାବ | ଦାଏ | ୩୦୦ | |
| | ବ୍ୟାଙ୍କ୍ ହିସାବ ବାବଦ | | | ୩୦୦ |
| | (ନୂଆ ପ୍ରତିଜ୍ଞା ପତ୍ର ବାବଦ ସୁକାନ୍ତଙ୍କୁ ଚେକ୍ ପଠାଗଲା ।) | | | |

## ୭ । ପ୍ରାପ୍ୟ ହୁଣ୍ଡି ଓ ଦେୟ ହୁଣ୍ଡି ବହି :

ଯେଉଁ କ୍ଷେତ୍ରରେ ହୁଣ୍ଡିର କାରବାର ବହୁ ପରିମାଣରେ ହୁଏ ସେଠାରେ ପ୍ରତି ହୁଣ୍ଡି ନିମନ୍ତେ ରୋଜନାମା ପ୍ରସ୍ତୁତ କରିବା ସମୟ ସାପେକ୍ଷ ହୁଏ ଏବଂ ଏଥି ସକାଶେ ବହୁ ଶ୍ରମ ମଧ୍ୟ ଆବଶ୍ୟକ ହୁଏ । ଏହି ଶ୍ରମ ଲାଘବ କରିବା ନିମନ୍ତେ ଏବଂ ସମୟ ବଞ୍ଚାଇବା ନିମନ୍ତେ ପ୍ରାପ୍ୟ ହୁଣ୍ଡି ବହି ଓ ଦେୟ ହୁଣ୍ଡି ବହିର ପ୍ରଚଳନ କରାଯାଇଛି । ପ୍ରାଥମିକ ହିସାବ ବହିମାନଙ୍କ ମଧ୍ୟରୁ ଏଗୁଡ଼ିକ ଅନ୍ୟତମ । ଏ ବିଷୟରେ ପୂର୍ବରୁ ଆଲୋଚନା କରାଯାଇଛି, ତଥାପି ଏହାର ଗୁରୁତ୍ୱ ଦୃଷ୍ଟିରୁ ଏହାର ସଂକ୍ଷିପ୍ତ ଆଲୋଚନା କରାଗଲା ।

### ପ୍ରାପ୍ୟ ହୁଣ୍ଡି ହିସାବ ବହି :

ଯେତେବେଳେ ହୁଣ୍ଡି ସ୍ୱୀକୃତ ହୋଇ ଦାୟକଙ୍କଠାରୁ ଫେରି ଆସେ ଅଥବା କୌଣସି ଖାତକଙ୍କଠାରୁ ହସ୍ତାନ୍ତରିତ ହୋଇ ଆସେ ସେତେବେଳେ ତାହା ଏହି ବହିରେ ଲିପିବଦ୍ଧ କରାଯାଏ । ଏହାର ନମୁନା ନିମ୍ନରେ ପ୍ରଦତ୍ତ ହେଲା :

ପ୍ରାପ୍ୟ ହୁଣ୍ଡି ବହି

| କ୍ରମିକ ନମ୍ବର | ତାରିଖ | କାହାଠାରୁ ମିଳିଲା | ଦାୟକଙ୍କର ନାମ | ହୁଣ୍ଡିର ତାରିଖ | ମିଆଦ | ମିଆଦ ପୂର୍ତ୍ତି ଦିବସ | କେଉଁଠାରେ ପ୍ରାପ୍ୟ | ପରିମାଣ ଟଙ୍କା | ପରିଣାମ କଣ ହେଲା | ମନ୍ତବ୍ୟ |
|---|---|---|---|---|---|---|---|---|---|---|
| | | | | | | | | | | |

ମାସ ଶେଷରେ ପ୍ରାପ୍ୟ ହୁଣ୍ଡି ବହିର ମୋଟ ପରିମାଣ ସକାଶେ ପ୍ରାପ୍ୟ ହୁଣ୍ଡି ହିସାବକୁ ଦାୟୀ କରାଯିବ ଓ ଯାହାଙ୍କଠାରୁ ଏହି ହୁଣ୍ଡି ମିଳିଛି ପ୍ରତି କ୍ଷେତ୍ରରେ ତାଙ୍କ ହିସାବକୁ ଦାତା କରାଯିବ । ବର୍ଷ ଶେଷରେ ଯଦି ଏହି ହିସାବରେ କୌଣସି ବାକି ଥାଏ ତାହା ହେଲେ ତାହା ଉଦ୍‌ବୃତ୍ତ ପତ୍ରର ସମ୍ପତ୍ତି ପାର୍ଶ୍ୱରେ ପ୍ରକାଶିତ ହେବ । ହୁଣ୍ଡିକୁ ବଟାଦେଇ ଯଦି ବ୍ୟାଙ୍କରେ ଭଙ୍ଗାଇ ଦିଆଯାଏ ତାହାହେଲେ ଏହି ନେଣଦେଣଟି ରୋକଡ଼ ବହିରେ ଲିପିବଦ୍ଧ କରାଯାଇ ପାରିବ । ବ୍ୟାଙ୍କରୁ ପ୍ରାପ୍ତ ଟଙ୍କା ରୋକଡ଼ ବହିର ଦାୟୀ ପାର୍ଶ୍ୱର ବ୍ୟାଙ୍କ୍ କକ୍ଷରେ ଏବଂ ପ୍ରଦତ୍ତ ବଟା, ବଟା କକ୍ଷରେ ଲେଖାଯାଇ ପାରିବ । ମାତ୍ର ହୁଣ୍ଡି ସଂକ୍ରାନ୍ତ ଅନ୍ୟାନ୍ୟ ନେଣଦେଣ ଯଥା ହସ୍ତାନ୍ତର କରଣ କିମ୍ବା ହୁଣ୍ଡି ଯଦି ଅସମ୍ମାନିତ ହୁଏ ତାହା ହେଲେ ସେଥି ନିମନ୍ତେ ରୋଜନାମା ପ୍ରସ୍ତୁତ କରାଯିବ ।

## ଦେୟ ହୁଣ୍ଡି ବହି :

| କ୍ରମିକ ନମ୍ବର | ହୁଣ୍ଡିର ତାରିଖ | ଲେଖକଙ୍କର ନାମ | ପ୍ରାପକ | ହୁଣ୍ଡିର ମିଆଦ | ମିଆଦ ପୂର୍ତ୍ତି ଦିବସ | ପରିମାଣ ଟଙ୍କା | ଟଙ୍କା କେଉଁଠାରେ ଦେୟ | ଟଙ୍କା କିପରି ଦିଆଗଲା | ମନ୍ତବ୍ୟ |
|---|---|---|---|---|---|---|---|---|---|
| | | | | | | | | | |

ପ୍ରାପ୍ୟ ହୁଣ୍ଡି ବହି ଭଳି ଦେୟ ହୁଣ୍ଡି ବହିର ମଧ୍ୟ ମାସ ଶେଷରେ ମୋଟ ପରିମାଣ ସ୍ଥିର କରାଯିବ ଏବଂ ତାହା ଦେୟ ହୁଣ୍ଡି ହିସାବର ଦାତା ପାର୍ଶ୍ୱରେ ଲେଖାଯିବ । ଯାହାଙ୍କୁ ସ୍ୱୀକୃତ ହୁଣ୍ଡି ଦିଆଯିବ ବା ଯାହାଙ୍କ ସ୍ୱାର୍ଥରେ ହୁଣ୍ଡି ସ୍ୱୀକାର କରାଯିବ ତାଙ୍କର ହିସାବକୁ ଉପଯୁକ୍ତ ଆର୍ଥିକ ପରିମାଣ ସକାଶେ ଦାୟୀ କରାଯିବ । କେବଳ ହୁଣ୍ଡି ଯେତେବେଳେ ଅସମ୍ମାନିତ ହେବ ସେତେବେଳେ ତାହା ସକାଶେ ରୋଜନାମା ପ୍ରସ୍ତୁତ କରାଯିବ । ହୁଣ୍ଡି ସଂକ୍ରାନ୍ତ ଅନ୍ୟାନ୍ୟ କାରବାର ଏହି ବହିରେ ଲିପିବଦ୍ଧ କରାଯିବ । ବର୍ଷ

ଶେଷରେ ଯଦି ଦେଖ୍ୟ ହୁଣ୍ଡି ହିସାବରେ କୌଣସି ବାକି ଥାଏ ତାହା ଉଦ୍‌ବୃତ୍ତ ପତ୍ରର ଦେଣା ପାର୍ଶ୍ୱରେ ପ୍ରକାଶିତ ହେବ ।

ହୁଣ୍ଡି ସମ୍ବନ୍ଧୀୟ କେଣଦେଣ ଗୁଡ଼ିକ ହୁଣ୍ଡି ବହିରେ କିପରି ଲିପିବଦ୍ଧ କରାଯିବ ତାହାର ଏକ ଦୃଷ୍ଟାନ୍ତ ନିମ୍ନରେ ପ୍ରଦତ୍ତ ହେଲା :

## ଦୃଷ୍ଟାନ୍ତ (୧୧)

୧୯୭୨ ମସିହା ଡିସେମ୍ବର ୩୧ ତାରିଖରେ ରାମ ସ୍ୱାମୀଙ୍କ ହିସାବ ବହିରେ ଖାତକ ଓ ମହାଜନଙ୍କର ପରିମାଣ ନିମ୍ନରେ ଦିଆଗଲା :

| ଖାତକ | ପରିମାଣ | ମହାଜନ | ପରିମାଣ |
|---|---|---|---|
| | ଟଙ୍କା | | ଟଙ୍କା |
| ସୀତାରାମ | ୩୦୦ | ଗୁପ୍ତ ବ୍ରଦାର୍ସ | ୪୫୦ |
| ହରିଶଙ୍କର | ୫୦୦ | ସାହାଣୀ ଏଣ୍ଡ୍ କୋ | ୧,୨୦୦ |
| ରମାନାଥ | ୮୦୦ | ବର୍ମା ଷ୍ଟୋର୍ସ | ୬୦୦ |
| ସିଦ୍ଧେଶ୍ୱର | ୨୫୦ | ଚଉଧୁରି ମିଲ | ୨୦୦ |

୧୯୭୩ ମସିହା ଜାନୁୟାରୀ ମାସରେ ହୁଣ୍ଡି ସମ୍ବନ୍ଧୀୟ ନିମ୍ନଲିଖିତ କେଣଦେଣଗୁଡ଼ିକ ସଂଘଟିତ ହୋଇଥିଲା :

ଜାନୁୟାରୀ ୪ ସୀତାରାମଙ୍କ ଉପରେ ୩ ମାସ ମିଆଦରେ ୩୦୦ ଟଙ୍କା ସକାଶେ ହୁଣ୍ଡି ପ୍ରସ୍ତୁତ କରାଯାଇ ତାଙ୍କ ନିକଟକୁ ପଠାଗଲା । ସେ ତାହା ସ୍ୱୀକାର କରି ସେହି ତାରିଖରେ ଫେରସ୍ତ ପଠାଇଲେ । ଏହି ହୁଣ୍ଡି (ନମ୍ବର ୧) ବାବଦ ଟଙ୍କା ଆନ୍ଧ୍ର ବ୍ୟାଙ୍କରୁ ଭୁବନେଶ୍ୱରରେ ପ୍ରାପ୍ୟ ।

୬ ୧ ନମ୍ବର ହୁଣ୍ଡି ବ୍ୟାଙ୍କରେ ୧୦ ଟଙ୍କା ବଟା ଦେଇ ଭଙ୍ଗାଇ ଦିଆଗଲା ।

୯ ହରିଶଙ୍କର ୨ ମାସ ମିଆଦରେ ପ୍ରସ୍ତୁତ ହୋଇଥିବା ୫୦୦ ଟଙ୍କା ସକାଶେ ପ୍ରତିଜ୍ଞାପତ୍ର ପଠାଇଲେ । ଏହି ପ୍ରତିଜ୍ଞାପତ୍ର (ନମ୍ବର ୨) ବାବଦ ଟଙ୍କା କଟକର କାନାରା ବ୍ୟାଙ୍କରେ ପ୍ରାପ୍ୟ ।

୧୨ ଏହି ପ୍ରତିଜ୍ଞା ପତ୍ରକୁ ବ୍ୟାଙ୍କରେ ୪୮୫ ଟଙ୍କାରେ ଭଙ୍ଗାଇ ଦିଆଗଲା ।

୧୩ ଗୁପ୍ତ ବ୍ରଦାର୍ସ ଛଅ ମାସ ମିଆଦରେ ୪୫୦ ଟଙ୍କା ସକାଶେ ପ୍ରସ୍ତୁତ କରିଥିବା ଇଉନାଇଟେଡ୍ ବ୍ୟାଙ୍କ୍, ସମ୍ବଲପୁରରେ ଦେୟ (୩୦ ନମ୍ବର) ହୁଣ୍ଡି ସ୍ୱୀକାର କରାଗଲା ।

୧୫ ଛଅ ମାସ ମିଆଦରେ ୨୮୦ ଟଙ୍କା ନିମନ୍ତେ ପ୍ରସ୍ତୁତ ହୋଇଥିବା ହୁଣ୍ଡି (୧୫ ନମ୍ବର) ରମାନାଥ ସ୍ୱୀକାର କରି ପଠାଇଲେ । ଏହା କଟକର ଆନ୍ଧ୍ରାବାଦ ବ୍ୟାଙ୍କରେ ପ୍ରାପ୍ୟ । ତାଙ୍କୁ ୨୦ ଟଙ୍କା ବଟ୍ଟା ଦିଆଗଲା ।

୧୭ ରମାନାଥ ସ୍ୱୀକାର କରିଥିବା ହୁଣ୍ଡି ସାହାଣୀ ଏଣ୍ଡ୍ କୋ ଙ୍କର ଋଣର ଆଂଶିକ ପରିଶୋଧ ନିମନ୍ତେ ତାଙ୍କୁ ହସ୍ତାନ୍ତର କରାଗଲା ।

୧୯ ବର୍ମା ଷ୍ଟୋର୍ସଙ୍କୁ ୨ ମାସ ମିଆଦରେ ୨୦୦ ଟଙ୍କା ସକାଶେ ପ୍ରସ୍ତୁତ ହୋଇଥିବା (୩୧ ନମ୍ବର) ଏକ ପ୍ରତିଜ୍ଞା ପତ୍ର ପଠାଇ ଦିଆଗଲା । ଏହା କଟକ କାନାରା ବ୍ୟାଙ୍କରେ ଦେୟ ।

୨୦ କାଳୁରାମ ସ୍ୱୀକାର କରିଥିବା ୩ ମାସ ମିଆଦରେ ପ୍ରସ୍ତୁତ ହୋଇଥିବା ୨୪୦ ଟଙ୍କାର ଏକ ହୁଣ୍ଡି (ନମ୍ବର ୨୮) ସିଦ୍ଧେଶ୍ୱର ଋଣର ପୂର୍ଣ୍ଣ ପରିଶୋଧ ବାବଦ ପଠାଇଲେ । ଏହା ଆନ୍ଧ୍ରାବାଦ ବ୍ୟାଙ୍କ୍ କଲିକତାରେ ପ୍ରାପ୍ୟ ।

୨୫ ସିଦ୍ଧେଶ୍ୱରଙ୍କ ପ୍ରେରିତ ହୁଣ୍ଡି ୨୩୦ ଟଙ୍କାରେ ବ୍ୟାଙ୍କରେ ୧୦ ଟଙ୍କା ବଟ୍ଟାରେ ଭଙ୍ଗାଗଲା ।

୨୭ ଚିରଞ୍ଜିଲାଲ ୨ ମାସ ମିଆଦରେ ୧୯୫ ଟଙ୍କା ନିମନ୍ତେ ୨ ମାସ ମିଆଦରେ ପ୍ରସ୍ତୁତ କରିଥିବା ହୁଣ୍ଡି (ନମ୍ବର ୩୨) ସ୍ୱୀକାର କରାଗଲା । ଏହା କଟକ ଷ୍ଟେଟ୍ ବ୍ୟାଙ୍କରେ ଦେୟ ।

୩୦ କାଳୁରାମଙ୍କ ସ୍ୱୀକୃତ ହୁଣ୍ଡି ଅସମ୍ମାନିତ ହେଲା ଓ ବ୍ୟାଙ୍କ୍ ନୋଟିଂ ବାବଦ ୧୦ ଟଙ୍କା ଖର୍ଚ୍ଚ କଲେ । ବ୍ୟାଙ୍କକୁ ହୁଣ୍ଡି ବାବଦ ଟଙ୍କା ଦିଆଗଲା । ସିଦ୍ଧେଶ୍ୱର ୨୫୦ ଟଙ୍କା ନଗଦ ଦେଲେ ଓ ବାକି ଟଙ୍କା ଓ ୨୦ ଟଙ୍କା ସୁଧ ସକାଶେ ୨ ମାସରେ ଦେୟ ପ୍ରତିଜ୍ଞା ପତ୍ର ଦେଲେ । ୧୯୭୨ ମସିହା ଡିସେମ୍ବର ୩୧ ତାରିଖରେ ରାମସ୍ୱାମୀଙ୍କର ବ୍ୟାଙ୍କରେ ଗଚ୍ଛିତ ଜମା ୨,୫୦୦ ଟଙ୍କା ଥିଲା ଏହା ଅନୁମାନ କରି ଉପରୋକ୍ତ ନେଣଦେଣ ଗୁଡ଼ିକ ଉପଯୁକ୍ତ ବହିରେ ଲିପିବଦ୍ଧ କରି ପ୍ରାସଙ୍ଗିକ ଖତିୟାନ ହିସାବ ପ୍ରସ୍ତୁତ କର ।

ସମାଧାନ :

ପ୍ରାପ୍ୟ ହୁଣ୍ଡି ବହି

| କ୍ରମିକ ନମ୍ବର | ତାରିଖ | କାହାଠାରୁ ମିଳିଲା | ଧାରକଙ୍କର ନାମ | ହୁଣ୍ଡିର ତାରିଖ | ମିଆଦ | ମିଆଦ ପୂର୍ତ୍ତି ଦିବସ | କେଉଁଠାରେ ପ୍ରାପ୍ୟ | ପରିମାଣ ଟଙ୍କା | ପରିଣାମ କଣହେଲା | ମନ୍ତବ୍ୟ |
|---|---|---|---|---|---|---|---|---|---|---|
| ୧ | ୧୯୭୩ ଜାନୁ ୪ | ସୀତାରାମ | ସୀତାରାମ | ୧୯୭୩ ଜାନୁ-୪ | ୩ ମାସ | ୧୯୭୩ ଅପ୍ରେଲ ୭ | ଆନ୍ଧ୍ରବ୍ୟାଙ୍କ ଭୁବନେଶ୍ୱର | ୬୦୦ | ବ୍ୟାଙ୍କରେ ଭଙ୍ଗାଗଲା ଜାନୁଆରୀ ୭ | |
| ୨ | ୯ | ହରଶଙ୍କର | ହରଶଙ୍କର | ୯ | ୨ ମାସ | ମାର୍ଚ୍ଚ ୧୨ | କାନାରାବ୍ୟାଙ୍କ କଟକ | ୪୦୦ | ବ୍ୟାଙ୍କରେ ଭଙ୍ଗାଗଲା ଜାନୁଆରୀ ୧୨ | |
| ୩ | ୧୫ | ରମାନାଥ | ରମାନାଥ | ୧୫ | ୩ ମାସ | ଅପ୍ରେଲ ୧୮ | ଆହ୍ଲାବାଦ ବ୍ୟାଙ୍କ କଟକ | ୬୮୦ | ସାହାଣୀ ଏଣ୍ଡ କୋଂକୁ ହସ୍ତାନ୍ତର କରାଗଲା ଜାନୁଆରୀ ୧୭ | |
| ୪ | ୨୦ | ସିଦ୍ଧେଶ୍ୱର | କାଳୁରାମ | ୧୯୭୨ ଅକ୍ଟୋବର ୨୭ | ୩ ମାସ | ୧୯୭୩ ଜାନୁ ୩୦ | ଆହ୍ଲାବାଦ ବ୍ୟାଙ୍କ କଲିକତା | ୬୪୦ | ଜାନୁଆରୀ ୨୫ ତାରିଖରେ ବ୍ୟାଙ୍କରେ ଭଙ୍ଗାଇ ଦିଆ ଯାଇଛି— | |
| ୫ | ୩୦ | ସିଦ୍ଧେଶ୍ୱର | ସିଦ୍ଧେଶ୍ୱର | ୧୯୭୩ ଜାନୁ-୩୦ | ୨ ମାସ | ଅପ୍ରେଲ ୨ | | ୫୩୦ | ଅସମ୍ମାନିତ ହେଲା । | |
| | | | | | | | ମୋଟ ଟଙ୍କା | ୨,୮୫୦ | | |

ଦେୟ ହୁଣ୍ଡି ହିସାବ ବହି

| କ୍ରମିକ ନମ୍ବର | ତାରିଖ | ଲେଖକଙ୍କର ନାମ | ପ୍ରାପକ | ହୁଣ୍ଡିର ମିଆଦ | ମିଆଦ ପୂର୍ତ୍ତି ଦିବସ | ପରିମାଣ ଟଙ୍କା | ଟଙ୍କା ଦେୟ | ଟଙ୍କା କପର ଦିଆଗଲା | ମନ୍ତବ୍ୟ |
|---|---|---|---|---|---|---|---|---|---|
| ୩୦ | ୧୯୭୩ ଜାନୁ ୧୩ | ଗୁପ୍ତ ବ୍ରଦାର୍ସ | ଗୁପ୍ତ ବ୍ରଦାର୍ସ | ୩ ମାସ | ଅପ୍ରେଲ ୧୬ | ୪୫୦ | ଇଉନାଇଟେଡ୍ ବ୍ୟାଙ୍କ୍ ସମ୍ବଲପୁର | | |
| ୩୧ | ୧୯ | ବର୍ମା ଷ୍ଟୋର୍ସ | ବର୍ମା ଷ୍ଟୋର୍ସ | ୨ ମାସ | ମାର୍ଚ୍ଚ ୨୨ | ୭୦୦ | ଦି ନାଗ ବ୍ୟାଙ୍କ୍ କଟକ | | |
| ୩୨ | ୨୭ | ଚରଞ୍ଜିଲାଲ | ଚରଞ୍ଜିଲାଲ | ୨ ମାସ | ମାର୍ଚ୍ଚ ୩୦ | ୧୯୫ | ଷ୍ଟେଟ୍ ବ୍ୟାଙ୍କ୍ କଟକ | | |
| | | | | | ମୋଟ ଟଙ୍କା | ୧,୨୪୫ | | | |

ରୋକଡ଼ ବହି (କେବଳ ବ୍ୟାଙ୍କ୍ ସ୍ତମ୍ଭ)

| ତାରିଖ | | ପ୍ରାପ୍ତି | ବଟା | ପରିମାଣ (ବ୍ୟାଙ୍କ୍) | ତାରିଖ | | ଖର୍ଚ୍ଚ | ବଟା | ପରିମାଣ (ବ୍ୟାଙ୍କ୍) |
|---|---|---|---|---|---|---|---|---|---|
| ୧୯୭୩ | | | ଟଙ୍କା | ଟଙ୍କା | ୧୯୭୩ | | | ଟଙ୍କା | ଟଙ୍କା |
| ଜାନୁ | ୧ | ପୂର୍ବ ବାକି ବାବଦ | | ୨,୫୦୦ | ଜାନୁ | ୩୦ | ସିଦ୍ଧେଶ୍ବର (ଅସମ୍ମାନିତ ହୁଣ୍ଡି ଓ ଲେଖେଇ ବାବଦ ଟଙ୍କା) | | ୬୫୦ |
| | ୭ | ପ୍ରାପ୍ୟ ହୁଣ୍ଡି ହିସାବ ବାବଦ | ୧୦ | ୨୯୦ | | | ବାକି ଗଡ଼ିଲା | | ୩,୫୦୫ |
| | ୧୨ | ପ୍ରାପ୍ୟ ହୁଣ୍ଡି ହିସାବ ବାବଦ | ୧୫ | ୪୮୫ | | | | | |
| | ୨୫ | ପ୍ରାପ୍ୟ ହୁଣ୍ଡି ହିସାବ ବାବଦ | ୧୦ | ୬୩୦ | | | | | |
| | ୩୦ | ସିଦ୍ଧେଶ୍ବରଙ୍କ ହିସାବ ବାବଦ | | ୨୫୦ | | | | | |
| | | | ୩୫ | ୪,୧୫୫ | | | | | ୪,୧୫୫ |
| ଫେବ୍ରୁ | ୧ | ପୂର୍ବ ବାକି ବାବଦ | | ୩,୫୦୫ | | | | | |

## ଖୋଜନାମା

| ତାରିଖ | | ବିବରଣୀ | ଖ:ପୃ: | ଦାୟୀ ପରିମାଣ ଟଙ୍କା | ଦାତା ପରିମାଣ ଟଙ୍କା |
|---|---|---|---|---|---|
| ୧୯୬୩ ଜାନୁ | ୧୫ | ପ୍ରଦତ୍ତ ବଟା ହିସାବ ଦାୟୀ | | ୨୦ | |
| | | ରମାନାଥଙ୍କ ହିସାବ ବାବଦ | | | ୨୦ |
| | | (ରମାନାଥଙ୍କୁ ୨୦ ଟଙ୍କା ବଟା ଦିଆଗଲା ।) | | | |
| | ୧୭ | ସାହାଣୀ ଏଣ୍ଡ୍ କୋଙ୍କ ହିସାବ ଦାୟୀ | | ୨୮୦ | |
| | | ପ୍ରାପ୍ୟ ହୁଣ୍ଡି ହିସାବ ବାବଦ | | | ୨୮୦ |
| | | (ରମାନାଥ ସ୍ୱୀକାର କରିଥିବା ହୁଣ୍ଡି ସାହାଣୀ ଏଣ୍ଡ୍ କୋ ଙ୍କୁ ହସ୍ତାନ୍ତର କରାଗଲା ।) | | | |
| | ୨୦ | ପ୍ରଦତ୍ତ ବଟା ହିସାବ ଦାୟୀ | | ୧୦ | |
| | | ସିଦ୍ଧେଶ୍ୱରଙ୍କ ହିସାବ ବାବଦ | | | ୧୦ |
| | | (ସିଦ୍ଧେଶ୍ୱରଙ୍କୁ ୧୦ ଟଙ୍କା ବଟା ଦିଆଗଲା ।) | | | |
| | ୨୬ | ଚରଞ୍ଜିଲଲଙ୍କ ହିସାବ ଦାୟୀ | | ୫ | |
| | | ପ୍ରାପ୍ତ ବଟା ହିସାବ ବାବଦ | | | ୫ |
| | | (ଚରଞ୍ଜିଲଲ ୫ ଟଙ୍କା ବଟା ଦେଲେ ।) | | | |
| | ୩୦ | ସିଦ୍ଧେଶ୍ୱରଙ୍କ ହିସାବ ଦାୟୀ | | ୨୮୦ | |
| | | ବଟା ହିସାବ ବାବଦ | | | ୧୦ |
| | | ସୁଧ ହିସାବ ବାବଦ | | | ୨୦ |
| | | ବ୍ୟାଙ୍କ୍ ହିସାବ ବାବଦ | | | ୨୫୦ |
| | | ( ସିଦ୍ଧେଶ୍ୱରଙ୍କ ପ୍ରଦତ୍ତ ହୁଣ୍ଡି ଅସମ୍ମାନିତ ହେବାରୁ ତାଙ୍କଠାରୁ ବଟା, ଲେଖେଇ ଖର୍ଚ୍ଚ ଓ ସୁଧ ପ୍ରାପ୍ୟ ହେଲା ।) | | | |

ଦାୟୀ — ସୀତାରାମଙ୍କ ହିସାବ — ଦାତା

| ତାରିଖ | ବିବରଣୀ | ଟଙ୍କା | ତାରିଖ | ବିବରଣୀ | ଟଙ୍କା |
|---|---|---|---|---|---|
| ୧୯୬୩ ଜାନୁ-୧ | ପୂର୍ବ ବାକି ବାବଦ | ୩୦୦ | ୧୯୬୩ ଜାନୁ-୪ | ପ୍ରାପ୍ୟ ହୁଣ୍ଡି ବହି ବାବଦ | ୩୦୦ |
| | | ୩୦୦ | | | ୩୦୦ |

### ହରିଶଙ୍କରଙ୍କ ହିସାବ

| ଦାୟୀ | | | | | ଦାତା |
|---|---|---|---|---|---|
| ୧୯୭୩ | | ଟଙ୍କା | ୧୯୭୩ | | ଟଙ୍କା |
| ଜାନୁ-୧ | ପୂର୍ବ ବାକି ବାବଦ | ୫୦୦ | ଜାନୁ-୯ | ପ୍ରାପ୍ୟ ହୁଣ୍ଡି ବହି ବାବଦ | ୫୦୦ |
| | | ୫୦୦ | | | ୫୦୦ |

### ରମାନାଥଙ୍କ ହିସାବ

| ଦାୟୀ | | | | | ଦାତା |
|---|---|---|---|---|---|
| ୧୯୭୩ | | ଟଙ୍କା | ୧୯୭୩ | | ଟଙ୍କା |
| ଜାନୁ-୧ | ପୂର୍ବ ବାକି ବାବଦ | ୮୦୦ | ଜାନୁ-୧୫ | ପ୍ରାପ୍ୟ ହୁଣ୍ଡି ବହି ବାବଦ | ୭୮୦ |
| | | | | ପ୍ରଦତ୍ତ ବଟ୍ଟା ହି: ବାବଦ | ୨୦ |
| | | ୮୦୦ | | | ୮୦୦ |

### ସିଦ୍ଧେଶ୍ୱରଙ୍କ ହିସାବ

| ଦାୟୀ | | | | | ଦାତା |
|---|---|---|---|---|---|
| ୧୯୭୩ | | ଟଙ୍କା | ୧୯୭୩ | | ଟଙ୍କା |
| ଜାନୁ-୧ | ପୂର୍ବ ବାକି ବାବଦ | ୭୫୦ | ଜାନୁ-୨୦ | ପ୍ରାପ୍ୟ ହୁଣ୍ଡି ବହି ବାବଦ | ୭୪୦ |
| ୩୦ | ବ୍ୟାଙ୍କ୍ ହି: ବାବଦ | ୭୫୦ | | ପ୍ରଦତ୍ତ ବଟ୍ଟା ହି: ବାବଦ | ୧୦ |
| | ସୁଧ ହିସାବ ବାବଦ | ୨୦ | ୩୦ | ବ୍ୟାଙ୍କ୍ ହିସାବ ବାବଦ | ୨୫୦ |
| | ପ୍ରାପ୍ୟ ବଟ୍ଟା ହିସାବ ବାବଦ | ୧୦ | ୩୧ | ବାକି ଗଡ଼ିଲା | ୫୩୦ |
| | | ୧,୫୩୦ | | | ୧,୫୩୦ |
| ଫେବ୍ରୁ-୧ | ପୂର୍ବ ବାକି ବାବଦ | ୫୩୦ | | | |

### ଗୁପ୍ତ ବ୍ରଦାର୍ସଙ୍କ ହିସାବ

| ଦାୟୀ | | | | | ଦାତା |
|---|---|---|---|---|---|
| ୧୯୭୩ | | ଟଙ୍କା | ୧୯୭୩ | | ଟଙ୍କା |
| ଜାନୁ-୧୩ | ଦେୟ ହୁଣ୍ଡି ବହି ବାବଦ | ୪୫୦ | ଜାନୁ-୧ | ପୂର୍ବ ବାକି ବାବଦ | ୪୫୦ |
| | | ୪୫୦ | | | ୪୫୦ |

ଦାୟୀ — ସାହାଣୀ ଏଣ୍ଡ୍ କୋ ଙ୍କ ହିସାବ — ଦାତା

| ୧୯୭୩ | | ଟଙ୍କା | ୧୯୭୩ | | ଟଙ୍କା |
|---|---|---|---|---|---|
| ଜାନୁ-୧୭ | ପ୍ରାପ୍ୟ ହୁଣ୍ଡି ହିସାବ ବାବଦ | ୭୮୦ | ଜାନୁ-୧ | ପୂର୍ବ ବାକି ବାବଦ | ୧,୨୦୦ |
| ୩୧ | ବାକି ଗଡ଼ିଲା | ୪୨୦ | | | |
| | | ୧,୨୦୦ | | | ୧,୨୦୦ |
| | | | ଫେବ୍ରୁ ୧ | ପୂର୍ବ ବାକି ବାବଦ | ୪୨୦ |

ଦାୟୀ — ବର୍ମା ଷ୍ଟୋର୍ସଙ୍କ ହିସାବ — ଦାତା

| ୧୯୭୩ | | ଟଙ୍କା | ୧୯୭୩ | | ଟଙ୍କା |
|---|---|---|---|---|---|
| ଜାନୁ-୧୯ | ଦେୟ ହୁଣ୍ଡି ବହି ବାବଦ | ୭୦୦ | ଜାନୁ-୧ | ପୂର୍ବ ବାକି ବାବଦ | ୭୦୦ |
| | | ୭୦୦ | | | ୭୦୦ |

ଦାୟୀ — ଚଉଚ୍ଛିଲାଲଙ୍କ ହିସାବ — ଦାତା

| ୧୯୭୩ | | ଟଙ୍କା | ୧୯୭୩ | | ଟଙ୍କା |
|---|---|---|---|---|---|
| ଜାନୁ-୨୬ | ଦେୟ ହୁଣ୍ଡି ବହି ବାବଦ | ୧୯୫ | ଜାନୁ-୧ | ପୂର୍ବ ବାକି ବାବଦ | ୨୦୦ |
| | ପ୍ରାପ୍ତ ବଟା ହି: ବାବଦ | ୫ | | | |
| | | ୨୦୦ | | | ୨୦୦ |

ଦାୟୀ — ସୁଧ ହିସାବ — ଦାତା

| | | ଟଙ୍କା | ୧୯୭୩ | | ଟଙ୍କା |
|---|---|---|---|---|---|
| | | | ଜାନୁ-୩୦ | ସିଦ୍ଧେଶ୍ୱରଙ୍କ ହି: ବାବଦ | ୨୦ |

ଦାୟୀ — ପ୍ରାପ୍ୟ ହୁଣ୍ଡି ହିସାବ — ଦାତା

| ୧୯୭୩ | | ଟଙ୍କା | ୧୯୭୩ | | ଟଙ୍କା |
|---|---|---|---|---|---|
| ଜାନୁ-୩୧ | ପ୍ରାପ୍ୟ ହୁଣ୍ଡି ବହି ବାବଦ | ୨,୮୫୦ | ଜାନୁ-୬ | ରେକଡ଼ ବହି ବାବଦ | ୨୯୦ |
| | | | ୧ | ରେକଡ଼ ବହି ବାବଦ | ୪୮୫ |
| | | | ୧୭ | ସାହାଣୀ ଏଣ୍ଡ୍ କୋ ଙ୍କ ହିସାବ ବାବଦ | ୭୮୦ |
| | | | ୨୫ | ରେକଡ଼ ବହି ବାବଦ | ୭୩୦ |
| | | | ୩୧ | ବାକି ଗଡ଼ିଲା | ୫୬୫ |
| | | ୨,୮୫୦ | | | ୨,୮୫୦ |
| ଫେବ୍ରୁ-୧ | ପୂର୍ବ ବାକି ବାବଦ | ୫୬୫ | | | |

ଡାଏରୀ — ଦେୟ ହୁଣ୍ଡି ହିସାବ — ଦାତା

| ୧୯୬୩ | | ଟଙ୍କା | ୧୯୬୩ | | ଟଙ୍କା |
|---|---|---|---|---|---|
| ଜାନୁ-୩୧ | ବାକି ଗଡ଼ନ୍ତି | ୧,୨୪୫ | ଜାନୁ-୩୧ | ଦେୟ ହୁଣ୍ଡି ବହି ବାବଦ | ୧,୨୪୫ |
| | | ୧,୨୪୫ | | | ୧,୨୪୫ |
| | | | ଫେବୃ- ୧ | ପୂର୍ବ ବାକି ବାବଦ | ୧,୨୪୫ |

ଡାଏରୀ — ପ୍ରଦତ୍ତ ବଟା ହିସାବ — ଦାତା

| ୧୯୬୩ | | ଟଙ୍କା | ୧୯୬୩ | | ଟଙ୍କା |
|---|---|---|---|---|---|
| ଜାନୁ-୧୫ | ରମାକାନ୍ତଙ୍କ ହିସାବ ବାବଦ | ୨୦ | ଜାନୁ-୩୧ | ବାକି ଗଡ଼ନ୍ତି | ୬୫ |
| ୨୦ | ସିଦ୍ଧେଶ୍ୱରଙ୍କ ହିସାବ ବାବଦ | ୧୦ | | | |
| ୩୧ | ରୋକଡ଼ ବହି ବାବଦ | ୩୫ | | | |
| | | ୬୫ | | | ୬୫ |
| ଫେବୃ- ୧ | ପୂର୍ବ ବାକି ବାବଦ | ୬୫ | | | |

ଡାଏରୀ — ପ୍ରାପ୍ୟ ବଟା ହିସାବ — ଦାତା

| ୧୯୬୩ | | ଟଙ୍କା | ୧୯୬୩ | | ଟଙ୍କା |
|---|---|---|---|---|---|
| ଜାନୁ-୩୧ | ବାକି ଗଡ଼ନ୍ତି | ୧୫ | ଜାନୁ-୨୭ | ଚରଞ୍ଜିଲାଲଙ୍କ ହିସାବ ବାବଦ | ୫ |
| | | | ୩୦ | ସିଦ୍ଧେଶ୍ୱରଙ୍କ ହିସାବ ବାବଦ | ୧୦ |
| | | ୧୫ | | | ୧୫ |
| | | | ଫେବୃ- ୧ | ପୂର୍ବ ବାକି ବାବଦ | ୧୫ |

## ୮ । ସାହାଯ୍ୟକାରୀ ହୁଣ୍ଡି ସଂକ୍ରାନ୍ତ କାରବାର ଲିପିବଦ୍ଧ କରଣ :

ସାହାଯ୍ୟକାରୀ ହୁଣ୍ଡି ବିଷୟରେ ପୂର୍ବରୁ ଆଲୋଚିତ ହୋଇଛି । ଏଠାରେ କେବଳ ସେହି ପ୍ରକାର ହୁଣ୍ଡିର କାରବାର କିପରି ହିସାବ ବହିରେ ଲିପିବଦ୍ଧ କରାଯାଏ ତାହା ବର୍ଣ୍ଣିତ ହେବ । ପ୍ରକୃତ ବ୍ୟାପାରିକ ହୁଣ୍ଡି ସହିତ ଏହି ପ୍ରକାର ହୁଣ୍ଡିର ଲିପି କରଣରେ କୌଣସି ବିଶେଷ ପାର୍ଥକ୍ୟ ନାହିଁ । ସାହାଯ୍ୟକାରୀ ହୁଣ୍ଡିର ସ୍ୱୀକୃତି, ପ୍ରାପ୍ତି, ଭଙ୍ଗାଣ ନେଣଦେଣରେ କୌଣସି ପାର୍ଥକ୍ୟ ନାହିଁ; ଅର୍ଥାତ୍ ବ୍ୟାପିରିକ ହୁଣ୍ଡି କ୍ଷେତ୍ରରେ ଏହି ନେଣଦେଣଗୁଡ଼ିକ ଯେପରି ଲିପିବଦ୍ଧ କରାଯାଏ ସାହାଯ୍ୟକାରୀ ହୁଣ୍ଡି କ୍ଷେତ୍ରରେ ମଧ୍ୟ ତଦ୍ରୂପ ହେବ । ଏହାର

ବିଶେଷତଃ କେବଳ ସ୍ୱୀକୃତ ହୁଣ୍ଡିକୁ ବ୍ୟାଙ୍କରେ ଭଙ୍ଗାଇବା ଓ ହୁଣ୍ଡି ବାବଦ ଟଙ୍କା ପରିଶୋଧ ସମୟରେ ଦେଖାଯାଏ । ପ୍ରଥମତଃ ହୁଣ୍ଡି ଭଙ୍ଗାଇବା ସମୟରେ ଯଦିଓ ଲେଖକ ବ୍ୟାଙ୍କକୁ ନ୍ୟାଯ୍ୟ ବଟା ଦିଅନ୍ତି ତଥାପି ଏହି ବଟା, ଯେଉଁ ପକ୍ଷ ବ୍ୟାଙ୍କରୁ ମିଳିଥିବା ଅର୍ଥ ଯେତେ ପରିମାଣରେ ଭୋଗ କରନ୍ତି, ତାଙ୍କୁ ସେହି ଅନୁପାତରେ ସହିବାକୁ ପଡ଼େ । ଟଙ୍କା ଯଦି ଉଭୟ ପକ୍ଷ ସମାନ ଅଂଶରେ ଭୋଗ କରନ୍ତି ତାହାହେଲେ ବଟାର ପରିମାଣ ମଧ୍ୟ ଉଭୟେ ସମାନ ସମାନ ଭାଗରେ ବହନ କରିବେ; ଯଦି $\frac{୨}{୩}$ ଓ $\frac{୧}{୩}$ ଅନୁପାତରେ ଭୋଗ କରନ୍ତି ତାହାହେଲେ ସେହି ୨ : ୧ ଅନୁପାତରେ ଉଭୟେ ବଟା ପରିମାଣ ବହନ କରିବେ । ଦ୍ୱିତୀୟତଃ, ଦାୟକ ହୁଣ୍ଡି ବାବଦ ଟଙ୍କା ପରିଶୋଧ କରିବା ପୂର୍ବରୁ ଲେଖକ ସେ ଭୋଗ କରିଥିବା ଟଙ୍କା ଦାୟକଙ୍କ ନିକଟକୁ ମିଆଦ ପୂର୍ତ୍ତି ଦିବସ ପୂର୍ବରୁ ପଠାଇ ଦିଅନ୍ତି । ସେ ଟଙ୍କା ଏବଂ ନିଜେ ଭୋଗ କରିଥିବା ଟଙ୍କା ଏହି ଦୁଇ ଟଙ୍କାର ପରିମାଣକୁ ଯୋଗ କରି ଦାୟକ ହୁଣ୍ଡି ବାବଦ ଟଙ୍କା ପରିଶୋଧ କରନ୍ତି । ଯେଉଁ କ୍ଷେତ୍ରରେ ଲେଖକ ସେ ଭୋଗ କରିଥିବା ଟଙ୍କା ପଠାଇବାକୁ ଅକ୍ଷମ ହୁଅନ୍ତି ସେ କ୍ଷେତ୍ରରେ ଅଧିକାଂଶ ସମୟରେ ହୁଣ୍ଡି ଅସମ୍ମାନିତ ହୁଏ ।

ସାହାଯ୍ୟକାରୀ ହୁଣ୍ଡି ସଂକ୍ରାନ୍ତ କାରବାର ହିସାବରେ କିପରି ଲିପିବଦ୍ଧ କରିଯାଏ ତାହାର କେତେକ ଦୃଷ୍ଟାନ୍ତ ନିମ୍ନରେ ପ୍ରଦତ୍ତ ହେଲା ।

## ଦୃଷ୍ଟାନ୍ତ (୧୬)

ମନୋଜ କିଛି ଟଙ୍କାର ବ୍ୟବସ୍ଥା କରିବା ନିମନ୍ତେ ଚନ୍ଦ୍ରଶେଖରଙ୍କ ସମ୍ମତି କ୍ରମେ ତାଙ୍କ ଉପରେ ୩ ମାସ ମିଆଦରେ ୫୦୦ ଟଙ୍କା ନିମନ୍ତେ ପ୍ରସ୍ତୁତ ହୋଇଥିବା ଏକ ହୁଣ୍ଡି ୧୯୭୩ ମସିହା ଅପ୍ରେଲ ୧୫ ତାରିଖରେ ମନୋଜଙ୍କ ନିକଟକୁ ସ୍ୱୀକୃତ ସକାଶେ ପଠାଇଲେ । ମନୋଜ ସେହି ତାରିଖରେ ହୁଣ୍ଡି ସ୍ୱୀକାର କରି ଫେରସ୍ତ ପଠାଇଲେ । ଚନ୍ଦ୍ରଶେଖର ସେହି ତାରିଖରେ ହୁଣ୍ଡିଟି ନିଜ ବ୍ୟାଙ୍କରେ ୮% ହାରରେ ବଟା ଦେଇ ଭଙ୍ଗାଇଲେ । ମିଆଦ ପୂର୍ତ୍ତିଦିବସରେ ସେ ମନୋଜଙ୍କ ନିକଟକୁ ୫୦୦ ଟଙ୍କା ପଠାଇଲେ । ମନୋଜ ହୁଣ୍ଡି ବାବଦ ଟଙ୍କା ପରିଶୋଧ କଲେ ।

ଉଭୟଙ୍କ ହିସାବ ଖାତାରେ ରୋଜନାମା ଲେଖ ।

**ସମାଧାନ :**

ଚନ୍ଦ୍ରଶେଖରଙ୍କର ହିସାବ ଖାତା
ରୋଜନାମା

| ତାରିଖ | | ବିବରଣୀ | ଖ:ପୃ: | ଦାୟୀ ପରିମାଣ | ଦାତା ପରିମାଣ |
|---|---|---|---|---|---|
| ୧୯୬୩ | | | | ଟଙ୍କା | ଟଙ୍କା |
| ଅପ୍ରେଲ | ୧୫ | ପ୍ରାପ୍ୟ ହୁଣ୍ଡି ହିସାବ ଦାୟୀ<br>ମନୋଜଙ୍କ ହିସାବ ବାବଦ<br>( ୫୦୦ ଟଙ୍କା ସକାଶେ ୩ ମାସ ମିୟାଦରେ ପ୍ରସ୍ତୁତ ହୋଇଥିବା ହୁଣ୍ଡି ମନୋଜ ସ୍ୱୀକାର କଲେ ।) | | ୫୦୦ | ୫୦୦ |
| | ୧୫ | ବ୍ୟାଙ୍କ୍ ହିସାବ ଦାୟୀ<br>ବଟା ହିସାବ ଦାୟୀ<br>ପ୍ରାପ୍ୟ ହୁଣ୍ଡି ହିସାବ ବାବଦ<br>( ମନୋଜ ସ୍ୱୀକାର କରିଥିବା ହୁଣ୍ଡି ୮% ବଟାରେ ବ୍ୟାଙ୍କ୍‌ରେ ଭଙ୍ଗାଇ ଦିଆଗଲା । ) | | ୪୯୦<br>୧୦ | ୫୦୦ |
| ଜୁଲାଇ | ୧୮ | ମନୋଜଙ୍କ ହିସାବ ଦାୟୀ<br>ବ୍ୟାଙ୍କ୍ ହିସାବ ବାବଦ<br>(ହୁଣ୍ଡି ବାବଦ ଟଙ୍କା ମନୋଜଙ୍କୁ ଚେକ୍ ଆକାରରେ ପଠାଇ ଦିଆଗଲା ।) | | ୫୦୦ | ୫୦୦ |

ମନୋଜଙ୍କ ହିସାବ ଖାତାରେ
ରୋଜନାମା

| ତାରିଖ | | ବିବରଣୀ | ଖ: ପୃ: | ଦାୟୀ ପରିମାଣ | ଦାତା ପରିମାଣ |
|---|---|---|---|---|---|
| ୧୯୬୩ | | | | ଟଙ୍କା | ଟଙ୍କା |
| ଅପ୍ରେଲ | ୧୫ | ଚନ୍ଦ୍ରଶେଖରଙ୍କ ହିସାବ ଦାୟୀ<br>ଦେୟ ହୁଣ୍ଡି ହିସାବ ବାବଦ<br>(ଚନ୍ଦ୍ରଶେଖର ୫୦୦ ଟଙ୍କା ନିମନ୍ତେ ୩ ମାସ ମିୟାଦରେ ପ୍ରସ୍ତୁତ କରିଥିବା ହୁଣ୍ଡି ସ୍ୱୀକାର କରାଗଲା ।) | | ୫୦୦ | ୫୦୦ |

### ମନୋଜଙ୍କ ହିସାବ ଖାତାରେ
### ରୋଜନାମା

| ତାରିଖ | ବିବରଣୀ | ଖ:ପୃ: | ଦାୟୀ ପରିମାଣ | ଦାତା ପରିମାଣ |
|---|---|---|---|---|
| ଜୁଲାଇ ୧୮ | ବ୍ୟାଙ୍କ ହିସାବ ଦାୟୀ<br>ଚନ୍ଦ୍ରଶେଖରଙ୍କ ହିସାବ ବାବଦ<br>(ଚନ୍ଦ୍ରଶେଖର ହୁଣ୍ଡି ବାବଦ ୫୦୦ ଟଙ୍କାର ଚେକ୍ ପଠାଇଲେ ।) | | ୫୦୦ | ୫୦୦ |
| ୧୮ | ଦେୟ ହୁଣ୍ଡି ହିସାବ ଦାୟୀ<br>ବ୍ୟାଙ୍କ ହିସାବ ବାବଦ<br>(ମିଆଦ ପୂର୍ତ୍ତି ଅବସରରେ ହୁଣ୍ଡି ବାବଦ ଟଙ୍କା ଚେକ୍‌ରେ ଦିଆଗଲା ।) | | ୫୦୦ | ୫୦୦ |

## ଦୃଷ୍ଟାନ୍ତ (୧୩)

ତ୍ରିଲୋଚନ ପରମ୍ପରଙ୍କର ଆର୍ଥିକ ସୁବିଧା ପାଇଁ ୮୦୦ ଟଙ୍କା ୩ ମାସ ମିଆଦରେ ଗୋଟିଏ ହୁଣ୍ଡି ପ୍ରସ୍ତୁତ କରି ଭୋଳାନାଥଙ୍କ ନିକଟକୁ ସ୍ୱୀକୃତ ନିମନ୍ତେ ପଠାଇଲେ । ଭୋଳାନାଥ ହୁଣ୍ଡିଟି ସ୍ୱୀକାର କରି ତ୍ରିଲୋଚନଙ୍କ ନିକଟକୁ ୧୯୭୩ ମସିହା ମଇ ୧ ତାରିଖରେ ଫେରସ୍ତ ପଠାଇଲେ । ତ୍ରିଲୋଚନ ସେହି ତାରିଖରେ ହୁଣ୍ଡିଟି ନିଜ ବ୍ୟାଙ୍କରେ ଶତକଡ଼ା ୮ ହାରରେ ଛାଟି ଦେଇ ଭଙ୍ଗାଇଲେ ଓ ପ୍ରାପ୍ତ ଟଙ୍କାର ଅର୍ଦ୍ଧେକ ପରିମାଣ ଭୋଳାନାଥଙ୍କୁ ପଠାଇଲେ । ମିଆଦ ପୂର୍ତ୍ତି ଅବସର ଅନେକ ପୂର୍ବରୁ ସେ ୪୦୦ ଟଙ୍କା ଭୋଳାନାଥଙ୍କ ନିକଟକୁ ପଠାଇଲେ । ଭୋଳାନାଥ ନିର୍ଦ୍ଦିଷ୍ଟ ଅବସରରେ ହୁଣ୍ଡି ବାବଦ ଟଙ୍କା ପରିଶୋଧ କଲେ ।

ଏହି ନେଣଦେଣଗୁଡ଼ିକ ସକାଶେ ତ୍ରିଲୋଚନ ଓ ଭୋଳାନାଥଙ୍କ ହିସାବ ଖାତାରେ ରୋଜନାମା ପ୍ରସ୍ତୁତ କର ।

## ସମାଧାନ :

ତ୍ରିଲୋଚନଙ୍କ ହିସାବ ଖାତାରେ

ରୋଜନାମା

| ତାରିଖ | | ବିବରଣୀ | ଖ:ପୃ: | ଦାୟୀ ପରିମାଣ | ଦାତା ପରିମାଣ |
|---|---|---|---|---|---|
| ୧୯୭୩ | | | | ଟଙ୍କା | ଟଙ୍କା |
| ମଇ | ୧ | ପ୍ରାପ୍ୟ ହୁଣ୍ଡି ହିସାବ ଦାୟୀ | | ୮୦୦ | |
| | | ଭୋଳାନାଥଙ୍କ ହିସାବ ବାବଦ | | | ୮୦୦ |
| | | (୮୦୦ ଟଙ୍କା ସକାଶେ ୩ ମାସ ମିଆଦରେ ପ୍ରସ୍ତୁତ ହୋଇଥିବା ହୁଣ୍ଡି ଭୋଳାନାଥ ସ୍ୱୀକାର କଲେ ।) | | | |
| | ୧ | ବ୍ୟାଙ୍କ ହିସାବ ଦାୟୀ | | ୭୮୪ | |
| | | ବଟ୍ଟା ହିସାବ ଦାୟୀ | | ୧୬ | |
| | | ପ୍ରାପ୍ୟ ହୁଣ୍ଡି ହିସାବ ବାବଦ | | | ୮୦୦ |
| | | (ଭୋଳାନାଥ ସ୍ୱୀକାର କରିଥିବା ହୁଣ୍ଡି ୮% ବଟ୍ଟା ଦେଇ ବ୍ୟାଙ୍କରେ ଭଙ୍ଗାଇ ଦିଆଗଲା ।) | | | |
| | ୧ | ଭୋଳାନାଥଙ୍କ ହିସାବ ଦାୟୀ | | ୪୦୦ | |
| | | ବ୍ୟାଙ୍କ ହିସାବ ବାବଦ | | | ୩୯୨ |
| | | ବଟ୍ଟା ହିସାବ ବାବଦ | | | ୮ |
| | | (ବ୍ୟାଙ୍କରୁ ପ୍ରାପ୍ତ ଟଙ୍କାର ଅର୍ଦ୍ଧେକ ପରିମାଣ ଭୋଳାନାଥଙ୍କୁ ଚେକ୍‌ରେ ପଠାଗଲା ଓ ତାଙ୍କ ହିସାବକୁ ବଟ୍ଟାର ଅର୍ଦ୍ଧେକାଂଶ ପାଇଁ ଦାୟୀ କରାଗଲା ।) | | | |
| ଅଗଷ୍ଟ | ୩ | ଭୋଳାନାଥଙ୍କ ହିସାବ ବାବଦ ଦାୟୀ | | ୪୦୦ | |
| | | ବ୍ୟାଙ୍କ ହିସାବ ବାବଦ | | | ୪୦୦ |
| | | (ଭୋଳାନାଥଙ୍କୁ ଅବଶିଷ୍ଟ ୪୦୦ ଟଙ୍କା ଚେକ୍ ଆକାରରେ ଦିଆଗଲା ।) | | | |

ଭୋଳାନାଥଙ୍କ ହିସାବ ଖାତାରେ
ରୋଜନାମା

| ତାରିଖ | | ବିବରଣୀ | ଖ:ପୃ: | ଡାହ୍ଣୀ ପରିମାଣ | ବାଆଁ ପରିମାଣ |
|---|---|---|---|---|---|
| ୧୯୬୩ | | | | ଟଙ୍କା | ଟଙ୍କା |
| ମଇ | ୧ | ତ୍ରିଲୋଚନଙ୍କ ହିସାବ ଡାହ୍ଣୀ<br>ଦେୟ ହୁଣ୍ଡି ହିସାବ ବାବଦ<br>(ତ୍ରିଲୋଚନ ୮୦୦ ଟଙ୍କା ନିମନ୍ତେ ୩ ମାସ ମିଆଦରେ ପ୍ରସ୍ତୁତ କରିଥିବା ହୁଣ୍ଡି ସ୍ୱୀକାର କରାଗଲା ।) | | ୮୦୦ | ୮୦୦ |
| | ୧ | ବ୍ୟାଙ୍କ୍ ହିସାବ ଡାହ୍ଣୀ<br>ବଟା ହିସାବ ଡାହ୍ଣୀ<br>ତ୍ରିଲୋଚନଙ୍କ ହିସାବ ବାବଦ<br>(ତ୍ରିଲୋଚନ ୩୯୨ ଟଙ୍କା ଚେକ୍ ଆକାରରେ ପଠାଇଲେ ଓ ବଟାର ଅର୍ଦ୍ଧେକାଂଶ ସକାଶେ ଡାହ୍ଣୀ ହେଲେ ।) | | ୩୯୨<br>୮ | ୪୦୦ |
| ଅଗଷ୍ଟ | ୩ | ବ୍ୟାଙ୍କ୍ ହିସାବ ଡାହ୍ଣୀ<br>ତ୍ରିଲୋଚନଙ୍କ ହିସାବ ବାବଦ<br>(ତ୍ରିଲୋଚନଙ୍କଠାରୁ ଅବଶିଷ୍ଟ ୪୦୦ ଟଙ୍କା ଚେକ୍ ଆକାରରେ ମିଳିଲା ।) | | ୪୦୦ | ୪୦୦ |
| | ୪ | ଦେୟ ହୁଣ୍ଡି ହିସାବ ଡାହ୍ଣୀ<br>ବ୍ୟାଙ୍କ୍ ହିସାବ ବାବଦ<br>ମିଆଦ ପୂର୍ତ୍ତି ଉତ୍ସବରେ ହୁଣ୍ଡି ବାବଦ ଟଙ୍କା ଚେକ୍ ଆକାରରେ ଦିଆଗଲା ।) | | ୮୦୦ | ୮୦୦ |

## ଦୃଷ୍ଟାନ୍ତ (୧୪)

ପରସ୍ପରଙ୍କର ସୁବିଧା ନିମନ୍ତେ ଉଭୟ କମଳାକାନ୍ତ ଓ ରଜନୀକାନ୍ତ ୧୯୬୩ ମସିହା ମାର୍ଚ୍ଚ ୧ ତାରିଖରେ ପରସ୍ପରଙ୍କ ଉପରେ ୩ ମାସ ମିଆଦରେ ପ୍ରସ୍ତୁତ ୧,୦୦୦ ଟଙ୍କା ନିମନ୍ତେ ହୁଣ୍ଡି କାଟିଲେ । ଉଭୟ ଅପର ପଠାଇଥିବା ହୁଣ୍ଡି ସେହି ତାରିଖରେ ସ୍ୱୀକାର କରି ଫେରସ୍ତ ପଠାଇଲେ । କମଳାକାନ୍ତ ରଜନୀକାନ୍ତ, ସ୍ୱୀକାର କରିଥିବା ହୁଣ୍ଡି ୮% ହାରରେ ବଟା ଦେଇ ନିଜ ବ୍ୟାଙ୍କରେ ଭଙ୍ଗାଇଲେ । ରଜନୀକାନ୍ତ, କମଳାକାନ୍ତ ସ୍ୱୀକାର କରିଥିବା ହୁଣ୍ଡି ୬% ହାରରେ ବଟା ଦେଇ ଭଙ୍ଗାଇଲେ ।

କମଳାକାନ୍ତ ସ୍ୱୀକାର କରିଥିବା ହୁଣ୍ଡି ସମ୍ମାନିତ ହେଲା ମାତ୍ର ରଜନୀକାନ୍ତ ନିର୍ଦ୍ଦିଷ୍ଟ ଅବସରରେ ହୁଣ୍ଡି ବାବଦ ଟଙ୍କା ଦେବାକୁ ଅକ୍ଷମ ହେଲେ । ତାଙ୍କ ନୋଟିଙ୍ଗ ବାବଦ ୧୦ ଟଙ୍କା ଖର୍ଚ୍ଚ କଲେ ଓ ନୋଟିଙ୍ଗ ସମେତ ପ୍ରାପ୍ୟ ଟଙ୍କା କମଳାକାନ୍ତଙ୍କଠାରୁ ଆଦାୟ କଲେ ।

ସେହି ତାରିଖରେ କମଳାକାନ୍ତ ୨୦ ଟଙ୍କା ସୁଧ ସମେତ ମୋଟ ପ୍ରାପ୍ୟ ଟଙ୍କା ସକାଶେ ୨ ମାସ ମିଆଦରେ ଆଉ ଏକ ହୁଣ୍ଡି ପ୍ରସ୍ତୁତ କରି ରଜନୀକାନ୍ତଙ୍କ ନିକଟକୁ ପଠାଇଲେ । ରଜନୀକାନ୍ତ ଏହି ହୁଣ୍ଡି ସେହିଦିନ ସ୍ୱୀକାର କଲେ ଓ ମିଆଦ ପୂର୍ତ୍ତି ଅବସରରେ ଏହି ହୁଣ୍ଡି ବାବଦ ଟଙ୍କା ପରିଶୋଧ କଲେ ।

ଏହି ସମସ୍ତ ନେଣଦେଣ ସକାଶେ ଉଭୟଙ୍କ ହିସାବ ଖାତାରେ ରୋଜନାମା ପ୍ରସ୍ତୁତ କର ।

**ସମାଧାନ :**

କମଳାକାନ୍ତଙ୍କ ହିସାବ ଖାତାରେ

ରୋଜନାମା

| ତାରିଖ | | ବିବରଣୀ | ଖ:ପୃ: | ଦାୟୀ ପରିମାଣ | ଦାତା ପରିମାଣ |
|---|---|---|---|---|---|
| ୧୯୭୩ | | | | ଟଙ୍କା | ଟଙ୍କା |
| ମାର୍ଚ୍ଚ | ୧ | ପ୍ରାପ୍ୟ ହୁଣ୍ଡି ହିସାବ ଦାୟୀ<br>ରଜନୀକାନ୍ତଙ୍କ ହିସାବ ବାବଦ<br>(୧,୦୦୦ ଟଙ୍କା କ୍ରମରେ ୩ ମାସ ମିଆଦରେ ପ୍ରସ୍ତୁତ ହୁଣ୍ଡି ରଜନୀକାନ୍ତ ସ୍ୱୀକାର କଲେ ।) | | ୧,୦୦୦ | ୧,୦୦୦ |
| | | ରଜନୀକାନ୍ତଙ୍କ ହିସାବ ଦାୟୀ<br>ଦେୟ ହୁଣ୍ଡି ହିସାବ ବାବଦ<br>(୧,୦୦୦ ଟଙ୍କା କ୍ରମରେ ୩ ମାସ ମିଆଦରେ ରଜନୀକାନ୍ତ ପ୍ରସ୍ତୁତ କରିଥିବା ହୁଣ୍ଡି ସ୍ୱୀକାର କରଗଲା ।) | | ୧,୦୦୦ | ୧,୦୦୦ |

| | | | ଦାୟୀ | ଦାତା |
|---|---|---|---|---|
| ୧୯୭୩ | | | ଟଙ୍କା | ଟଙ୍କା |
| ମାର୍ଚ୍ଚ | ୧ | ବ୍ୟାଙ୍କ ହିସାବ ଦାୟୀ | ୯୯୦ | |
| | | ବଟା ହିସାବ ଦାୟୀ | ୧୦ | |
| | | ପ୍ରାପ୍ୟ ହୁଣ୍ଡି ହିସାବ ବାବଦ<br>(ରଜନୀକାନ୍ତ ସ୍ୱୀକାର କରିଥିବା ହୁଣ୍ଡି % ବଟାରେ ବ୍ୟାଙ୍କରେ ଭଙ୍ଗାଇ ଦିଆଗଲା ।) | | ୧,୦୦୦ |
| ଜୁନ୍ | ୪ | ଦେୟ ହୁଣ୍ଡି ହିସାବ ଦାୟୀ | ୧,୦୦୦ | |
| | | ବ୍ୟାଙ୍କ ହିସାବ ବାବଦ<br>(ରଜନୀକାନ୍ତ ପ୍ରସ୍ତୁତ କରିଥିବା ହୁଣ୍ଡି ବାବଦ ଟଙ୍କା ବ୍ୟାଙ୍କରୁ ଦିଆଗଲା ।) | | ୧,୦୦୦ |
| | ୪ | ରଜନୀକାନ୍ତଙ୍କ ହିସାବ ଦାୟୀ | ୧,୦୧୦ | |
| | | ବ୍ୟାଙ୍କ ହିସାବ ବାବଦ<br>(ରଜନୀକାନ୍ତ ସ୍ୱୀକାର କରିଥିବା ହୁଣ୍ଡି ଅସମ୍ମାନିତ ହେବାରୁ ୧୦ ଟଙ୍କା ଲେଖେଇ ଖର୍ଚ୍ଚ ସମେତ ପ୍ରାପ୍ୟ ଟଙ୍କା ବ୍ୟାଙ୍କକୁ ଦିଆଗଲା ।) | | ୧,୦୧୦ |
| | ୪ | ରଜନୀକାନ୍ତଙ୍କ ହିସାବ ଦାୟୀ | ୨୦ | |
| | | ସୁଧ ହିସାବ ବାବଦ<br>(ରଜନୀକାନ୍ତଙ୍କ ଉପରେ ୨୦ ଟଙ୍କା ସୁଧ ଧାର୍ଯ୍ୟ କରାଗଲା ।) | | ୨୦ |
| | ୪ | ପ୍ରାପ୍ୟ ହୁଣ୍ଡି ହିସାବ ଦାୟୀ | ୧,୦୩୦ | |
| | | ରଜନୀକାନ୍ତଙ୍କ ହିସାବ ବାବଦ<br>(ରଜନୀକାନ୍ତ ଦୁଇମାସ ମିଆଦରେ ଲେଖେଇ ଓ ସୁଧ ସମେତ ମୋଟ ୧,୦୩୦ ଟଙ୍କା ସକାଶେ ପ୍ରସ୍ତୁତ ହୋଇଥିବା ହୁଣ୍ଡି ସ୍ୱୀକାର କଲେ ।) | | ୧,୦୩୦ |
| ଅଗଷ୍ଟ | ୪ | ବ୍ୟାଙ୍କ ହିସାବ ଦାୟୀ | ୧,୦୩୦ | |
| | | ପ୍ରାପ୍ୟ ହୁଣ୍ଡିର ହିସାବ ବାବଦ<br>(ରଜନୀକାନ୍ତ ଦ୍ୱିତୀୟ ହୁଣ୍ଡି ବାବଦ ଟଙ୍କା ପରିଶୋଧ କଲେ ।) | | ୧,୦୩୦ |

## ରଜନୀକାନ୍ତଙ୍କ ହିସାବ ଖାତାରେ
## ରୋଜନାମା

| ତାରିଖ | | ବିବରଣୀ | ଖ: ପୃ: | ଦାୟୀ ପରିମାଣ ଟଙ୍କା | ଦାତା ପରିମାଣ ଟଙ୍କା |
|---|---|---|---|---|---|
| ୧୯୬୩ | | | | ଟଙ୍କା | ଟଙ୍କା |
| ମାର୍ଚ୍ଚ | ୧ | ପ୍ରାପ୍ୟ ହୁଣ୍ଡି ହିସାବ ଦାୟୀ<br>କମଳାକାନ୍ତଙ୍କ ହିସାବ ବାବଦ<br>(୧,୦୦୦ ଟଙ୍କା ସକାଶେ ଛଅ ମାସ ମିଆଦରେ ପ୍ରସ୍ତୁତ ହୋଇଥିବା ହୁଣ୍ଡି କମଳାକାନ୍ତ ସ୍ୱୀକାର କଲେ ।) | | ୧,୦୦୦ | ୧,୦୦୦ |
| | ୧ | କମଳାକାନ୍ତଙ୍କ ହିସାବ ଦାୟୀ<br>ଦେୟ ହୁଣ୍ଡି ହିସାବ ବାବଦ<br>(୧,୦୦୦ ଟଙ୍କା ସକାଶେ ୩ ମାସ ମିଆଦରେ କମଳାକାନ୍ତ ପ୍ରସ୍ତୁତ କରିଥିବା ହୁଣ୍ଡି ସ୍ୱୀକାର କରାଗଲା ।) | | ୧,୦୦୦ | ୧,୦୦୦ |
| | ୧ | ବ୍ୟାଙ୍କ ହିସାବ ଦାୟୀ<br>ବଟା ହିସାବ ଦାୟୀ<br>ପ୍ରାପ୍ୟ ହୁଣ୍ଡି ହିସାବ ବାବଦ<br>(କମଳାକାନ୍ତ ସ୍ୱୀକାର କରିଥିବା ହୁଣ୍ଡି ୬% ହାର ବଟାରେ ବ୍ୟାଙ୍କରେ ଭଙ୍ଗାଇ ଦିଆଗଲା ।) | | ୯୮୫<br>୧୫ | ୧,୦୦୦ |
| | ୪ | ଦେୟ ହୁଣ୍ଡି ହିସାବ ଦାୟୀ<br>କମଳାକାନ୍ତଙ୍କ ହିସାବ ବାବଦ<br>(ସ୍ୱୀକୃତ ହୁଣ୍ଡି ଅସମ୍ମାନିତ ହେଲା ଓ ଲେଖେଇ ବାବଦ ୧୦ ଟଙ୍କା ଦେୟ ହେଲା ।) | | ୧,୦୧୦ | ୧,୦୧୦ |
| | ୪ | ସୁଧ ହିସାବ ଦାୟୀ<br>କମଳାକାନ୍ତଙ୍କ ହିସାବ ବାବଦ<br>(ହୁଣ୍ଡି ଅସମ୍ମାନିତ ହେବାରୁ ୨୦ ଟଙ୍କା ସୁଧ ଦେୟ ହେଲା ।) | | ୨୦ | ୨୦ |

| | | | ଦାୟୀ | ଦାତା |
|---|---|---|---|---|
| ୧୯୬୩ | | | ଟଙ୍କା | ଟଙ୍କା |
| ଜୁନ | ୪ | କମଳାକାନ୍ତଙ୍କ ହିସାବ ଦାୟୀ<br>ଦେୟ ହୁଣ୍ଡି ହିସାବ ବାବଦ<br>(ଲେଖେଇ ଖର୍ଚ୍ଚ ଓ ସୁଧ ସମେତ ମୋଟ ପରିମାଣ ସକାଶେ ୨ ମାସ ମିଆଦରେ କମଳାକାନ୍ତ ପ୍ରସ୍ତୁତ କରିଥିବା ଦ୍ୱିତୀୟ ହୁଣ୍ଡି ସ୍ୱୀକାର କରାଗଲା ।) | ୧,୦୩୦ | ୧,୦୩୦ |
| ଅଗଷ୍ଟ | ୨ | ଦେୟ ହୁଣ୍ଡି ହିସାବ ଦାୟୀ<br>ବ୍ୟାଙ୍କ ହିସାବ ବାବଦ<br>(ଦ୍ୱିତୀୟ ହୁଣ୍ଡି ବାବଦ ଟଙ୍କା ବ୍ୟାଙ୍କରୁ ଦିଆଗଲା ।) | ୧,୦୩୦ | ୧,୦୩୦ |

ଦ୍ରଷ୍ଟବ୍ୟ :—ଯଦି କୌଣସି ପକ୍ଷ ଦେବାଳିଆ ହୁଅନ୍ତି ତାହାହେଲେ ତାଙ୍କଠାରୁ ଆଦୌ କିଛି ଅର୍ଥ ମିଳେ ନାହିଁ କିମ୍ବା ମୋଟ ଦେଣାର ଶତକଡ଼ା କିଛି ଅଥବା ଟଙ୍କା ପ୍ରତି କେତେ ପଇସା ଆଂଶିକ ଭାବରେ ମିଳେ । ଯେଉଁ ପରିମାଣର ଟଙ୍କା ମିଳେ ନାହିଁ ତାହା ନଷ୍ଟ ରୂପେ ବାଦ ଦିଆଯାଏ । ଏହାର ଏକ ଦୃଷ୍ଟାନ୍ତ ନିମ୍ନରେ ପ୍ରଦତ୍ତ ହେଲା ।

## ଦୃଷ୍ଟାନ୍ତ (୧୪)

ଦେବକାନ୍ତ ୧,୨୦୦ ଟଙ୍କା ସକାଶେ ୩ ମାସ ମିଆଦରେ ଏକ ହୁଣ୍ଡି ପ୍ରସ୍ତୁତ କରି ୧୯୬୩ ମସିହା ଅପ୍ରେଲ ୧ ତାରିଖରେ ରାଧାକାନ୍ତଙ୍କ ନିକଟକୁ ସ୍ୱୀକୃତି ପାଇଁ ପଠାଇଲେ । ରାଧାକାନ୍ତ ହୁଣ୍ଡିଟି ସ୍ୱୀକାର କରି ସେହିଦିନ ଫେରସ୍ତ ପଠାଇଲେ । ଦେବକାନ୍ତ ହୁଣ୍ଡିଟି ତାଙ୍କ ବ୍ୟାଙ୍କରେ ୨୦ ଟଙ୍କା ବଟା ଦେଇ ଭଙ୍ଗାଇଲେ ଓ ରାଧାକାନ୍ତଙ୍କ ନିକଟକୁ ୫୦୦ ଟଙ୍କା ପଠାଇଲେ । ମିଆଦ ପୂର୍ତ୍ତି ଦିବସରେ ଦେବକାନ୍ତ ଅବଶିଷ୍ଟ ଟଙ୍କା ପଠାଇ ପାରିଲେ ନାହିଁ ଓ ୨,୦୦୦ ଟଙ୍କା ସକାଶେ ୩ ମାସ ମିଆଦରେ ରାଧାକାନ୍ତ ପ୍ରସ୍ତୁତ କରିଥିବା ହୁଣ୍ଡି ସ୍ୱୀକାର କଲେ । ରାଧାକାନ୍ତ ସେହି ହୁଣ୍ଡିଟି ୪୦ ଟଙ୍କା ବଟା ଦେଇ ନିଜ ବ୍ୟାଙ୍କରେ ଭଙ୍ଗାଇଲେ ଓ ଦେବକାନ୍ତଙ୍କ ନିକଟକୁ ୪୦୦ ଟଙ୍କା ପଠାଇଲେ । ଏହି ହୁଣ୍ଡିର ମିଆଦ ପୂର୍ତ୍ତି ଦିବସ ପୂର୍ବରୁ ଦେବକାନ୍ତ ଦେବାଳିଆ ହେଲେ ଏବଂ ତାଙ୍କ ସମ୍ପତ୍ତିରୁ ଟଙ୍କା ପ୍ରତି ୫୦ ପଇସା ଆଦାୟ ହୋଇ ପାରିଲା । ଉଭୟଙ୍କ ହିସାବ ଖାତାରେ ରୋଜନାମା ଲେଖ ଏବଂ ରାଧାକାନ୍ତଙ୍କ ଖାତାରେ ଦେବକାନ୍ତଙ୍କର ଖତିୟାନ ହିସାବ ପ୍ରସ୍ତୁତ କର ।

**ସମାଧାନ :**

ଦେବକାନ୍ତଙ୍କ ହିସାବ ଖାତାରେ

ରୋଜନାମା

| ତାରିଖ | | ବିବରଣୀ | ଖ: ପୃ | ଦାୟୀ ପରିମାଣ | ଦାତା ପରିମାଣ |
|---|---|---|---|---|---|
| | | | | ଟଙ୍କା | ଟଙ୍କା |
| ୧୯୭୩ ଅପ୍ରେଲ | ୧ | ପ୍ରାପ୍ୟ ହୁଣ୍ଡି ହିସାବ ଦାୟୀ | | ୧,୨୦୦ | |
| | | ରାଧାକାନ୍ତଙ୍କ ହିସାବ ବାବଦ (୧,୨୦୦ ଟଙ୍କା ସକାଶେ ୩ ମାସ ମିଆଦରେ ପ୍ରସ୍ତୁତ ହୋଇଥିବା ହୁଣ୍ଡି ରାଧାକାନ୍ତ ସ୍ୱୀକାର କଲେ ।) | | | ୧,୨୦୦ |
| | ୧ | ବ୍ୟାଙ୍କ ହିସାବ ଦାୟୀ | | ୧,୧୮୦ | |
| | | ବଟା ହିସାବ ଦାୟୀ | | ୨୦ | |
| | | ପ୍ରାପ୍ୟ ହୁଣ୍ଡି ହିସାବ ବାବଦ (ରାଧାକାନ୍ତ ସ୍ୱୀକାର କରିଥିବା ହୁଣ୍ଡି ବ୍ୟାଙ୍କରେ ୨୦ ଟଙ୍କା ବଟା ଦେଇ ଭଙ୍ଗାଇ ଦିଆଗଲା ।) | | | ୧,୨୦୦ |
| | ୧ | ରାଧାକାନ୍ତଙ୍କ ହିସାବ ଦାୟୀ | | ୫୦୦ | |
| | | ବ୍ୟାଙ୍କ ହିସାବ ବାବଦ | | | ୪୯୧,୬୭ |
| | | ବଟା ହିସାବ ବାବଦ (ରାଧାକାନ୍ତଙ୍କ ବ୍ୟାଙ୍କରୁ ଟଙ୍କା ଦିଆଗଲା ଓ ଆନୁପାତିକ ବଟା କାଟି ରଖାଗଲା ।) | | | ୮,୩୩ |
| ଜୁଲାଇ | ୪ | ରାଧାକାନ୍ତଙ୍କ ହିସାବ ଦାୟୀ | | ୨,୦୦୦ | |
| | | ଦେୟ ହୁଣ୍ଡି ହିସାବ ବାବଦ (ରାଧାକାନ୍ତ ପ୍ରସ୍ତୁତ କରିଥିବା ହୁଣ୍ଡି ସ୍ୱୀକାର କରାଗଲା ।) | | | ୨,୦୦୦ |
| | ୪ | ବ୍ୟାଙ୍କ ହିସାବ ବାବଦ ଦାୟୀ | | ୩୭୮ | |
| | | ବଟା ହିସାବ ଦାୟୀ | | ୨୨ | |
| | | ରାଧାକାନ୍ତଙ୍କ ହିସାବ ବାବଦ (ରାଧାକାନ୍ତ ହୁଣ୍ଡି ଭଙ୍ଗାଇ ଆନୁପାତିକ ବଟା ବାବଦ ଟଙ୍କା ବାଦ ଦେଇ ବାକି ୩୭୮ ଟଙ୍କା ପଠାଇଲେ ।) | | | ୪୦୦ |

| ତାରିଖ | | ବିବରଣୀ | ଖ: ପୃ: | ଦାୟୀ | ଦାତା |
|---|---|---|---|---|---|
| ୧୯୬୩ | | | | ଟଙ୍କା | ଟଙ୍କା |
| ଅପ୍ରେଲ | ? | ଦେୟ ହୁଣ୍ଡି ହିସାବ ଦାୟୀ<br>ରାଧାକାନ୍ତଙ୍କ ହିସାବ ବାବଦ<br>( ଦେବାଳିଆ ହେବା ହେତୁ ହୁଣ୍ଡି ଅସମ୍ମାନିତ ହେଲା ।) | | ୨,୦୦୦ | ୨,୦୦୦ |
| | ? | ରାଧାକାନ୍ତଙ୍କ ହିସାବ ଦାୟୀ<br>ବ୍ୟାଙ୍କ୍ ହିସାବ ବାବଦ<br>ନିଟ ଲଭ ଲୋକସାନ ହିସାବ ବାବଦ<br>(ସମ୍ପତ୍ତିରୁ କେବଳ ଟଙ୍କା ପ୍ରତି ୫୦ ପଇସା ଆଦାୟ ହେଲା ।) | | ୧,୧୦୦ | ୫୫୦<br>୫୫୦ |

ରାଧାକାନ୍ତଙ୍କ ହିସାବ ଖାତାରେ

ରୋଜନାମା

| ତାରିଖ | | ବିବରଣୀ | ଖ: ପୃ: | ଦାୟୀ ପରିମାଣ ଟଙ୍କା | ଦାତା ପରିମାଣ ଟଙ୍କା |
|---|---|---|---|---|---|
| ୧୯୬୩ ଅପ୍ରେଲ | ୧ | ଦେବକାନ୍ତଙ୍କ ହିସାବ ଦାୟୀ<br>ଦେୟ ହୁଣ୍ଡି ହିସାବ ବାବଦ<br>(ଦେବକାନ୍ତ ପଠାଇଥିବା ହୁଣ୍ଡି ସ୍ୱୀକାର କରାଗଲା ।) | | ୧,୨୦୦ | ୧,୨୦୦ |
| | ୧ | ବ୍ୟାଙ୍କ୍ ହିସାବ ଦାୟୀ<br>ବଟା ହିସାବ ଦାୟୀ<br>ଦେବକାନ୍ତଙ୍କ ହିସାବ ବାବଦ<br>(ଦେବକାନ୍ତଙ୍କଠାରୁ ୪୯୧-୬୭ ଟଙ୍କାର ଚେକ୍ ମିଳିଲା ଓ ଆନୁପାତିକ ବଟା ବାବଦ ୮-୩୩ ପଇସା କଟିଗଲା ।) | | ୪୯୧-୬୭<br>୮-୩୩ | ୫୦୦ |
| | ୪ | ପ୍ରାପ୍ୟ ହୁଣ୍ଡି ହିସାବ ଦାୟୀ<br>ଦେବକାନ୍ତଙ୍କ ହିସାବ ବାବଦ<br>(ଦେବକାନ୍ତଙ୍କ ଉପରେ ୨,୦୦୦ ଟଙ୍କା ନିମନ୍ତେ ୩ ମାସ ମିଆଦରେ କଟା ଯାଇଥିବା ହୁଣ୍ଡି ସେ ସ୍ୱୀକାର କଲେ ।) | | ୨,୦୦୦ | ୨,୦୦୦ |

| ତାରିଖ | | ବିବରଣୀ | ଖ: ପୃ: | ଦାୟୀ | ଦାତା |
|---|---|---|---|---|---|
| ୧୯୭୩ | | | | ଟଙ୍କା | ଟଙ୍କା |
| ଜୁଲାଇ | ୪ | ବ୍ୟାଙ୍କ ହିସାବ ଦାୟୀ | | ୧,୯୬୦ | |
| | | ବଟା ହିସାବ ଦାୟୀ | | ୪୦ | |
| | | ପ୍ରାପ୍ୟ ହୁଣ୍ଡି ହିସାବ ବାବଦ | | | ୨,୦୦୦ |
| | | (ଦେବକାନ୍ତ ସ୍ୱୀକାର କରିଥିବା ହୁଣ୍ଡି ବ୍ୟାଙ୍କରେ ୪୦ ଟଙ୍କା ବଟା ଦେଇ ଭଙ୍ଗାଇ ଦିଆଗଲା ।) | | | |
| | ୪ | ଦେୟ ହୁଣ୍ଡି ହିସାବ ଦାୟୀ | | ୧,୨୦୦ | |
| | | ବ୍ୟାଙ୍କ ହିସାବ ବାବଦ | | | ୧,୨୦୦ |
| | | (୧,୨୦୦ ଟଙ୍କାର ସ୍ୱୀକୃତ ହୁଣ୍ଡି ବାବଦ ଟଙ୍କା ଦିଆଗଲା ।) | | | |
| | ୪ | ଦେବକାନ୍ତଙ୍କ ହିସାବ ଦାୟୀ | | ୪୦୦ | |
| | | ବ୍ୟାଙ୍କ ହିସାବ ବାବଦ | | | ୩୭୮ |
| | | ବଟା ହିସାବ ବାବଦ | | | ୨୨ |
| | | (ଆନୁପାତିକ ବଟା ବାବଦ ୩୭୮ ଟଙ୍କାର ଚେକ୍ ଦେବକାନ୍ତଙ୍କୁ ପଠାଗଲା) | | | |
| | ୭ | ଦେବକାନ୍ତଙ୍କ ହିସାବ ଦାୟୀ | | ୨,୦୦୦ | |
| | | ବ୍ୟାଙ୍କ ହିସାବ ବାବଦ | | | ୨,୦୦୦ |
| | | ( ଦେବକାନ୍ତ ଦେବାଳିଆ ହେବାରୁ ତାଙ୍କ ଦ୍ୱାରା ସ୍ୱୀକୃତ ହୁଣ୍ଡି ଅସମ୍ମାନିତ ହେଲା ।) | | | |
| | ୭ | ବ୍ୟାଙ୍କ ହିସାବ ଦାୟୀ | | ୫୫୦ | |
| | | ଅନାଦେୟ ଋଣ ହିସାବ ଦାୟୀ | | ୫୫୦ | |
| | | ଦେବକାନ୍ତଙ୍କ ହିସାବ ବାବଦ | | | ୧,୧୦୦ |
| | | (ଦେବକାନ୍ତଙ୍କ ସମ୍ପତ୍ତିରୁ ଟଙ୍କା ପ୍ରତି ୫୦ ପଇସା ଋଣ ଆଦାୟ ହେଲା ।) | | | |

ଖତିୟାନ

| ଦାସ୍ତୀ | | ଦେବକାନ୍ତଙ୍କ ହିସାବ | | | ଦାତା |
|---|---|---|---|---|---|
| ୧୯୭୩ | | ଟଙ୍କା | ୧୯୭୩ | | ଟଙ୍କା |
| ଅପ୍ରେଲ-୧ | ଦେୟ ହୁଣ୍ଡି ହିସାବ ବାବଦ | ୧,୨୦୦ | ଅପ୍ରେଲ-୧ | ବ୍ୟାଙ୍କ ହି: ବାବଦ | ୪୯୧.୬୭ |
| | | | | ବଟା ହି: ବାବଦ | ୮.୩୩ |
| ଜୁଲାଇ-୪ | ବ୍ୟାଙ୍କ ହି: ବାବଦ | ୩୭୮ | ଜୁଲାଇ-୪ | ପ୍ରାପ୍ୟ ହୁଣ୍ଡି ହି: ବାବଦ | ୨,୦୦୦.୦୦ |
| | ବଟା ହି: ବାବଦ | ୨୨ | | | |
| ୭ | ବ୍ୟାଙ୍କ ହି: ବାବଦ | ୨,୦୦୦ | ୭ | ବ୍ୟାଙ୍କ ହି ବାବଦ | ୫୫୦.୦୦ |
| | | | | ଅନାଦେୟ ହି: ବାବଦ | ୫୫୦.୦୦ |
| | | ୩,୬୦୦ | | | ୩,୬୦୦.୦୦ |

**ଦ୍ରଷ୍ଟବ୍ୟ** :—ଦେବକାନ୍ତଙ୍କ ନିକଟରେ ପୂର୍ବରୁ ୭୦୦ ଟଙ୍କା ବାକୀ ଅଛି ପୁଣି ତାଙ୍କୁ ୩୭୮ ଟଙ୍କା ଦିଆଯାଉଛି, ଅର୍ଥାତ୍ ମୋଟରେ ସେ ୧,୦୭୮ ଟଙ୍କା ସକାଶେ ଦାସ୍ତୀ ଥିବାରୁ ତାହା ନିକଟବର୍ତ୍ତୀ ୧,୯୬୦ର ୫/୯ ଅଂଶ । ତେଣୁ ୨୨ ଟଙ୍କା ଆନୁପାତିକ ବଟାର ପରିମାଣ ରୂପେ ନିଆଯାଇଛି ।

## ଦୃଷ୍ଟାନ୍ତ (୧୬)

ଅସୀମ ପ୍ରକାଶଙ୍କଠାରେ ୩,୦୦୦ ଟଙ୍କା ସକାଶେ ଋଣୀ । ଅସୀମ ଏହି ଋଣ ୩ କିସ୍ତିରେ ପରିଶୋଧ କରିବାକୁ ପ୍ରସ୍ତାବ କଲେ । ପ୍ରକାଶ ଏଥିରେ ରାଜି ହେଲେ ଓ ଅସୀମଙ୍କ ଉପରେ ୮୦୦ ଟଙ୍କା ସକାଶେ ୨ ମାସ ମିଆଦରେ ପ୍ରଥମ ହୁଣ୍ଡି ୧,୦୦୦ ଟଙ୍କା ସକାଶେ ୩ ମାସ ମିଆଦରେ ଦ୍ୱିତୀୟ ହୁଣ୍ଡି ଓ ୪ ମାସ ମିଆଦରେ ୧,୨୦୦ ଟଙ୍କା ସକାଶେ ତୃତୀୟ ହୁଣ୍ଡି ପ୍ରସ୍ତୁତ କରି ଅସୀମଙ୍କ ନିକଟକୁ ପଠାଇଲେ । ଅସୀମ ଏହି ହୁଣ୍ଡିଗୁଡ଼ିକ ସ୍ୱୀକାର କରି ୧୯୭୩ ସାଲ ମାର୍ଚ୍ଚ ୧ ତାରିଖରେ ଫେରସ୍ତ ପଠାଇଲେ ।

ପ୍ରଶାନ୍ତ ପ୍ରଥମ ହୁଣ୍ଡିଟି ତାଙ୍କର ମହାଜନ ଚନ୍ଦ୍ରଶେଖରଙ୍କୁ ମାର୍ଚ୍ଚ ୪ ତାରିଖରେ ହସ୍ତାନ୍ତର କଲେ । ଦ୍ୱିତୀୟ ହୁଣ୍ଡିଟି ମାର୍ଚ୍ଚ ୧୫ ତାରିଖରେ ୯୮୦ ଟଙ୍କାରେ ଭଙ୍ଗାଇଲେ ଓ ତୃତୀୟ ହୁଣ୍ଡିଟି ୨୦ ତାରିଖରେ ଆଦାୟ ଭରି ନିଜ ହିସାବରେ ଜମା କରିବା ନିମନ୍ତେ ବ୍ୟାଙ୍କକୁ ପଠାଇଲେ । ପ୍ରଥମ ହୁଣ୍ଡି ବାବଦ ଟଙ୍କା ଅସୀମ ନିର୍ଦ୍ଦିଷ୍ଟ ଦିବସରେ ପରିଶୋଧ କଲେ, କିନ୍ତୁ ଦ୍ୱିତୀୟ

ହୁଣ୍ଡିଟି ଅସମ୍ମାନିତ ହେଲା ଏବଂ ବ୍ୟାଙ୍କ ୧୦ ଟଙ୍କା ଲେଖେଇ ବାବଦ ଖର୍ଚ୍ଚ କଲେ । ପ୍ରଶାନ୍ତ ୨୦ ଟଙ୍କା ସୁଧ ସମେତ ମୋଟ ପ୍ରାପ୍ୟ ଟଙ୍କା ନିମନ୍ତେ ୩ ମାସ ମିଆଦରେ ଚତୁର୍ଥ ହୁଣ୍ଡି ପ୍ରସ୍ତୁତ କଲେ ଏବଂ ଅସୀମ ତାହା ସେହି ତାରିଖରେ ସ୍ୱୀକାର କଲେ । ତୃତୀୟ ଓ ଚତୁର୍ଥ ହୁଣ୍ଡି ବାବଦ ଟଙ୍କା ଯଥା ସମୟରେ ଆଦାୟ ହେଲା ।

ଉପରୋକ୍ତ ନେଣଦେଣ ଗୁଡ଼ିକ ପ୍ରଶାନ୍ତ ଓ ଅସୀମଙ୍କ ହିସାବ ଖାତାରେ ଉପଯୁକ୍ତ ଖତିୟାନ ହିସାବରେ ଲିପିବଦ୍ଧ କର ।

## ସମାଧାନ :

ପ୍ରଶାନ୍ତଙ୍କ ଖତିୟାନ

ଦାସ୍ତି — ପ୍ରାପ୍ୟ ହୁଣ୍ଡି ହିସାବ — ଦାତା

| ୧୯୭୩ | | ଟଙ୍କା | ୧୯୭୩ | | ଟଙ୍କା |
|---|---|---|---|---|---|
| ମାର୍ଚ୍ଚ-୧ | ଅସୀମଙ୍କ ହିସାବ ବାବଦ | ୩,୦୦୦ | ମାର୍ଚ୍ଚ-୪ | ଚନ୍ଦ୍ରଶେଖରଙ୍କ ହିସାବ ବାବଦ | ୮୦୦ |
| ଜୁନ୍-୪ | ଅସୀମଙ୍କ ହିସାବ ବାବଦ | ୧,୦୩୦ | ୧୫ | ବ୍ୟାଙ୍କ୍ ହିସାବ ବାବଦ | ୯୮୦ |
| | | | | ବଟ୍ଟା ହିସାବ ବାବଦ | ୨୦ |
| | | | ୨୦ | ବ୍ୟାଙ୍କ୍ ଆଦାୟ ହିସାବ ବାବଦ | ୧,୨୦୦ |
| | | | ସେପ୍ଟେ୭ | ବ୍ୟାଙ୍କ୍ ହିସାବ ବାବଦ | ୧,୦୩୦ |
| | | ୪,୦୩୦ | | | ୪,୦୩୦ |

ଅସୀମଙ୍କ ହିସାବ

| ୧୯୭୩ | | ଟଙ୍କା | ୧୯୭୩ | | ଟଙ୍କା |
|---|---|---|---|---|---|
| ମାର୍ଚ୍ଚ-୧ | ପୂର୍ବ ବାକି ବାବଦ | ୩,୦୦୦ | ମାର୍ଚ୍ଚ-୧ | ପ୍ରାପ୍ୟ ହୁଣ୍ଡି ହିସାବ ବାବଦ | ୩,୦୦୦ |
| ଜୁନ୍-୪ | ବ୍ୟାଙ୍କ୍ ହିସାବ ବାବଦ | ୧,୦୧୦ | ଜୁନ୍-୪ | ପ୍ରାପ୍ୟ ହୁଣ୍ଡି ହିସାବ ବାବଦ | ୧,୦୩୦ |
| | ସୁଧ ହି: ବାବଦ | ୨୦ | | | |
| | | ୪,୦୩୦ | | | ୪,୦୩୦ |

ଦାୟୀ ବ୍ୟାଙ୍କ ହିସାବ ଦାତା

| ୧୯୭୩ | | ଟଙ୍କା | ୧୯୭୩ | | ଟଙ୍କା |
|---|---|---|---|---|---|
| ମାର୍ଚ୍ଚ-୧ | ପୂର୍ବ ବାକି ବାବଦ | ? | ଜୁନ | ଅସୀମଙ୍କ ହିସାବ ବାବଦ | ୧,୦୧୦ |
| ୧୫ | ପ୍ରାପ୍ୟ ହୁଣ୍ଡି ହିସାବ ବାବଦ | ୯୮୦ | | | |
| ଜୁଲାଇ-୪ | ବ୍ୟାଙ୍କ ଆଦାୟ ହିସାବ ବାବଦ | ୧,୨୦୦ | | | |
| ସେପ୍ଟେ-୭ | ପ୍ରାପ୍ୟ ହୁଣ୍ଡି ହିସାବ ବାବଦ | ୧,୦୩୦ | | | |

ସୁଧ ହିସାବ

| | | | ୧୯୭୩ | | ଟଙ୍କା |
|---|---|---|---|---|---|
| | | | ଜୁନ୍ | ଅସୀମଙ୍କ ହିସାବ ବାବଦ | ୨୦ |

ଅସୀମଙ୍କ ଖଢସ୍ଥାନ

ଦେୟ ହୁଣ୍ଡି ହିସାବ

| ୧୯୭୩ | | ଟଙ୍କା | ୧୯୭୩ | | ଟଙ୍କା |
|---|---|---|---|---|---|
| ଅପ୍ରେଲ-୪ | ବ୍ୟାଙ୍କ ହିସାବ ବାବଦ | ୮୦୦ | ମାର୍ଚ୍ଚ-୧ | ପ୍ରଶାନ୍ତଙ୍କ ହି: ବାବଦ | ୩,୦୦୦ |
| ଜୁନ-୪ | ପ୍ରଶାନ୍ତଙ୍କ ହିସାବ ବାବଦ | ୧,୦୦୦ | ଜୁନ-୪ | ପ୍ରଶାନ୍ତଙ୍କ ହି: ବାବଦ | ୧,୦୩୦ |
| ଜୁଲାଇ-୪ | ବ୍ୟାଙ୍କ ହିସାବ ବାବଦ | ୧,୨୦୦ | | | |
| ସେପ୍ଟେ-୭ | ବ୍ୟାଙ୍କ ହିସାବ ବାବଦ | ୧,୦୩୦ | | | |
| | | ୪,୦୩୦ | | | ୪,୦୩୦ |

## ପ୍ରଶାନ୍ତଙ୍କ ହିସାବ

| ୧୯୭୩ | | ଟଙ୍କା | ୧୯୭୩ | | ଟଙ୍କା |
|---|---|---|---|---|---|
| ମାର୍ଚ୍ଚ-୧ | ଦେୟ ହୁଣ୍ଡି ହିସାବ ବାବଦ | ୩,୦୦୦ | ମାର୍ଚ୍ଚ-୧ | ପୂର୍ବ ବାକି ବାବଦ | ୩,୦୦୦ |
| ଜୁନ-୪ | ଦେୟ ହୁଣ୍ଡି ହିସାବ ବାବଦ | ୧,୦୩୦ | ଜୁନ-୪ | ଦେୟ ହୁଣ୍ଡି ହି: ବାବଦ | ୧,୦୦୦ |
| | | | | ଲେଖେଇ ଖର୍ଚ୍ଚ ହିସାବ ବାବଦ | ୧୦ |
| | | | | ସୁଧ ହିସାବ ବାବଦ | ୨୦ |
| | | ୪,୦୩୦ | | | ୪,୦୩୦ |

## ବ୍ୟାଙ୍କ ହିସାବ

| ୧୯୭୩ | | ଟଙ୍କା | ୧୯୭୩ | | ଟଙ୍କା |
|---|---|---|---|---|---|
| ମାର୍ଚ୍ଚ-୧ | ପୂର୍ବ ବାକି ବାବଦ | | ଅପ୍ରେଲ-୪ | ଦେୟ ହୁଣ୍ଡି ହି: ବାବଦ | ୮୦୦ |
| | | | ଜୁଲାଇ-୪ | ଦେୟ ହୁଣ୍ଡି ହି: ବାବଦ | ୧,୨୦୦ |
| | | | ସେପ୍ଟେ ୭ | ଦେୟ ହୁଣ୍ଡି ହି: ବାବଦ | ୧,୦୩୦ |

## ସୁଧ ହିସାବ

| ୧୯୭୩ | | ଟଙ୍କା | | | ଟଙ୍କା |
|---|---|---|---|---|---|
| ଜୁନ-୪ | ପ୍ରଶାନ୍ତଙ୍କ ହିସାବ ବାବଦ | ୨୦ | | | |

## ଲେଖେଇ ଖର୍ଚ୍ଚ ହିସାବ

| ୧୯୭୩ | | ଟଙ୍କା | | | ଟଙ୍କା |
|---|---|---|---|---|---|
| ଜୁନ-୪ | ପ୍ରଶାନ୍ତଙ୍କ ହିସାବ ବାବଦ | ୧୦ | | | |

# ଦୃଷ୍ଟାନ୍ତ (୧୭)

୧୯୬୨ ମସିହା ଜୁନ ୩୦ ତାରିଖରେ ଜଟାଧାରୀ ମିଶ୍ରଙ୍କ ଖାତାରେ ଅମ୍ବୁଜ ସାହୁ ୫୦୦ ଟଙ୍କା ସକାଶେ ଋଣୀ ଥିଲେ । ସେହି ତାରିଖରେ ଜଟାଧାରୀ ମିଶ୍ରଙ୍କ ବାର୍ଷିକ ହିସାବ ପ୍ରକାଶ ହୋଇଥିବାରୁ ଏହି ଋଣ ଅନାଦେୟ ଋଣ ହିସାବକୁ ସ୍ଥାନାନ୍ତରିତ କରାଗଲା ।

୧୯୬୩ ମସିହାରେ ଅମ୍ବୁଜ ସାହୁଙ୍କ ସହିତ ନିମ୍ନଲିଖିତ ନେଣଦେଣ ହୋଇଥିଲା ।

୧୯୬୩

ଫେବୃଆରି ୨ — ଜଟାଧାରୀ ମିଶ୍ର ଅମ୍ବୁଜ ସାହୁଙ୍କୁ ୧,୦୦୦ ଟଙ୍କାର ମାଲ ପଠାଇଲେ । ଅମ୍ବୁଜ ସାହୁ ୪୦୦ ଟଙ୍କା ନଗଦ ଦେଲେ ଓ ଅବଶିଷ୍ଟ ଟଙ୍କା ସକାଶେ ୨ ମାସ ମିଆଦରେ ଏକ ପ୍ରତିଜ୍ଞାପତ୍ର ପଠାଇଲେ । ଜଟାଧାରୀ ମିଶ୍ର ସେହି ପ୍ରତିଜ୍ଞାପତ୍ରକୁ ବ୍ୟାଙ୍କରେ ୫୮୦ ଟଙ୍କାରେ ଭଙ୍ଗାଇଲେ ।

ଅପ୍ରେଲ ୫ — ଅମ୍ବୁଜ ସାହୁଙ୍କ ପ୍ରତିଜ୍ଞାପତ୍ର ଅସମ୍ମାନିତ ହେଲା ଏବଂ ଜଟାଧାରୀ ମିଶ୍ରଙ୍କୁ ତାଙ୍କ ବ୍ୟାଙ୍କକୁ ୧୦ ଟଙ୍କା ଲେଖେଇ ଖର୍ଚ୍ଚ ସମେତ ମୋଟ ଦେୟ ଟଙ୍କା ଦେବାକୁ ପଡ଼ିଲା ।

,, ୭ — ଅମ୍ବୁଜ ସାହୁ ୬୦୦ ଟଙ୍କା ସକାଶେ ୧ ମାସ ମିଆଦରେ ପ୍ରସ୍ତୁତ ହୋଇଥିବା ହୁଣ୍ଡି ସ୍ୱୀକାର କଲେ । ଲେଖେଇ ଖର୍ଚ୍ଚ ଓ ସୁଧ ବାବଦ ୨୦ ଟଙ୍କା ନଗଦ ଆକାରରେ ଦେଲେ ।

ମଇ ୧୦ — ଅମ୍ବୁଜ ସାହୁ ସ୍ୱୀକୃତ ହୁଣ୍ଡି ବାବଦ ୨୫୦ ଟଙ୍କା ଚେକ୍ ଆକାରରେ ଦେଲେ ଏବଂ ସୁଧ ସମେତ ୩୬୦ ଟଙ୍କା ସକାଶେ ୩ ମାସ ମିଆଦରେ ଅନ୍ୟ ଏକ ହୁଣ୍ଡି ସ୍ୱୀକାର କଲେ ।

ଅଗଷ୍ଟ ୧୩ — ଅମ୍ବୁଜ ସାହୁ ଦେବାଳିଆ ହେଲେ ଏବଂ ତାଙ୍କ ସମ୍ପତ୍ତିରୁ ଟଙ୍କା ପ୍ରତି ୫୦ ପଇସା ଆଦାୟ ହୋଇ ପାରିଲା ।

ଡିସେମ୍ବର ୩୧ — ଅମ୍ବୁଜ ସାହୁ ତାଙ୍କର ସମସ୍ତ ଋଣର ନିଷ୍ପତ୍ତି କରିବା ଉଦ୍ଦେଶ୍ୟରେ ୪୫୦ ଟଙ୍କା ଦେଲେ ।

ଜଟାଧାରୀ ମିଶ୍ରଙ୍କ ଖତିୟାନରେ ଅମ୍ବୁଜ ସାହୁଙ୍କ ହିସାବ, ପ୍ରାପ୍ୟ ହୁଣ୍ଡି ହିସାବ ଓ ଅନାଦେୟ ଋଣ ହିସାବ ପ୍ରସ୍ତୁତ କରି ଉପରୋକ୍ତ ନେଣଦେଣ ଗୁଡ଼ିକ ତଳିରେ ଲିପିବଦ୍ଧ କର ।

## ଜଟାଧାରୀ ମିଶ୍ରଙ୍କ ଖଢସ୍ଥାନ

ଦାୟୀ — ପ୍ରାପ୍ୟ ହୁଣ୍ଡି ହିସାବ — ଦାତା

| ୧୯୭୩ | | ଟଙ୍କା | ୧୯୭୩ | | ଟଙ୍କା |
|---|---|---|---|---|---|
| ଫେବ୍ରୁ-୨ | ଅମୃକ ସାହୁଙ୍କ ହିସାବ ବାବଦ | ୬୦୦ | ଫେବ୍ରୁ-୨ | ବ୍ୟାଙ୍କ ହିସାବ ବାବଦ | ୫୮୦ |
| | | | | ବଟ୍ଟା ହିସାବ ବାବଦ | ୨୦ |
| ଅପ୍ରେଲ-୭ | ଅମୃକ ସାହୁଙ୍କ ହିସାବ ବାବଦ | ୬୦୦ | ମଇ-୧୦ | ଅମୃକ ସାହୁଙ୍କ ହିସାବ ବାବଦ | ୬୦୦ |
| ମଇ-୧୦ | ଅମୃକ ସାହୁଙ୍କ ହିସ ବ ବାବଦ | ୩୬୦ | ଅଗଷ୍ଟ-୧୩ | ଅମୃକ ସାହୁଙ୍କ ହିସାବ ବାବଦ | ୩୬୦ |
| | | ୧,୫୬୦ | | | ୧,୫୬୦ |

ଦାୟୀ — ଅମୃକ ସାହୁଙ୍କ ହିସାବ — ଦାତା

| ୧୯୭୨ | | ଟଙ୍କା | ୧୯୭୨ | | ଟଙ୍କା |
|---|---|---|---|---|---|
| ଜୁନ-୩୦ | ପୂର୍ବ ବାକି ବାବଦ | ୫୦୦ | ଜୁନ-୩୦ | ଅନାଦେୟ ଋଣ ହିସାବ ବାବଦ | ୫୦୦ |
| ୧୯୭୩ | | | ୧୯୭୩ | | |
| ଫେବ୍ରୁ-୨ | ବିକ୍ରୟ ହିସାବ ବାବଦ | ୧,୦୦୦ | ଫେବ୍ରୁ-୨ | ରୋକଡ଼ ବହି ବାବଦ | ୪୦୦ |
| ଅପ୍ରେଲ-୫ | ବ୍ୟାଙ୍କ ହିସାବ ବାବଦ<br>ହୁଣ୍ଡି ଅସମ୍ମାନିତ ୬୦୦<br>ଲେଖେଇ ଖର୍ଚ୍ଚ ୧୦ | ୬୧୦ | | ପ୍ରାପ୍ୟ ହୁଣ୍ଡି ହିସାବ ବାବଦ | ୬୦୦ |
| | ସୁଧ ହିସାବ ବାବଦ | ୨୦ | ଅପ୍ରେଲ-୭ | ପ୍ରାପ୍ୟ ହୁଣ୍ଡି ହିସାବ ବାବଦ | ୬୦୦ |
| ମଇ-୧୦ | ପ୍ରାପ୍ୟ ହୁଣ୍ଡି ହି: ବାବଦ | ୬୦୦ | | ରୋକଡ଼ ବହି ବାବଦ | ୩୦ |
| | ସୁଧ ହିସାବ ବାବଦ | ୧୦ | ମଇ-୧୦ | ବ୍ୟାଙ୍କ ହି: ବାବଦ | ୨୫୦ |
| ଅଗଷ୍ଟ-୧୩ | ପ୍ରାପ୍ୟ ହୁଣ୍ଡି ହି: ବାବଦ | ୩୬୦ | | ପ୍ରାପ୍ୟ ହୁଣ୍ଡି ହିସାବ ବାବଦ | ୩୬୦ |
| | | | ଅଗଷ୍ଟ-୧୩ | ବ୍ୟାଙ୍କ ହି: ବାବଦ | ୧୮୦ |
| | | | | ଅନାଦେୟ ଋଣ ହିସାବ ବାବଦ | ୧୮୦ |
| | | ୨,୬୦୦ | | | ୨,୬୦୦ |

## ଅନାଦେୟ ଋଣ ହିସାବ

| ୧୯୭୨ | | ଟଙ୍କା | ୧୯୭୨ | | ଟଙ୍କା |
|---|---|---|---|---|---|
| ଜୁନ-୩୦ | ଅମୃତ ସାହୁଙ୍କ ହି: ବାବଦ | ୫୦୦ | ଜୁନ-୩୦ | ନୀଟ ଲାଭ-କ୍ଷତି ହି: ବାବଦ | ୫୦୦ |
| ୧୯୭୩ | | | | | |
| ଅଗଷ୍ଟ-୧୩ | ଅମୃତ ସାହୁଙ୍କ ହି: ବାବଦ | ୧୮୦ | ଡିସେ-୩୧ | ରୋକଡ଼ ବହି ବାବଦ | ୪୫୦ |
| ଡିସେ-୩୧ | ନୀଟ୍ ଲାଭ କ୍ଷତି ହି: ବାବଦ | ୨୭୦ | | | |
| | | ୪୫୦ | | | ୪୫୦ |

୯ । ପ୍ରାକ୍-ମିଆଦ ହୁଣ୍ଡି ପରିଶୋଧ ।

ଅନେକ ସମୟରେ ମିଆଦ ପୂର୍ତ୍ତି ଦିବସ ପୂର୍ବରୁ ଦାୟକ ହୁଣ୍ଡି ବାବଦ ଟଙ୍କା ପରିଶୋଧ କରନ୍ତି । ଯଦି ହୁଣ୍ଡି ଅନ୍ୟ କୌଣସି ମହାଜନଙ୍କୁ ହସ୍ତାନ୍ତରିତ ନ ହୋଇଥାଏ କିମ୍ବା ବଟା ଦେଇ ବ୍ୟାଙ୍କରେ ଭଙ୍ଗାଇ ଦିଆ ଯାଇ ନ ଥାଏ ତାହା ହେଲେ ଦାୟକଙ୍କର ପ୍ରସ୍ତାବ ଗ୍ରହଣ କରାଯାଏ ଏବଂ ତାଙ୍କୁ କିଛି ରିହାତି ଦିଆଯାଏ । ଏହାକୁ ପ୍ରାକ୍ ମିଆଦ ହୁଣ୍ଡି ପରିଶୋଧ କୁହାଯାଏ । ଦାୟକଙ୍କୁ ଯେଉଁ ରିହାତି ଦିଆଯାଏ ତାହା ବଟା ସ୍ୱରୂପ ଅଟେ । ଏବଂ ଏହାର ହିସାବ ମଧ୍ୟ ବଟା ସଦୃଶ କରାଯାଏ । ଏଥି ନିମନ୍ତେ ରୋଜନାମା ନିମ୍ନୋକ୍ତ ପ୍ରକାର କରାଯିବ । (ଲେଖକ/ପ୍ରାପକଙ୍କ ଖାତାରେ) :

ବ୍ୟାଙ୍କ୍ ହିସାବ ଦାୟୀ
ରିହାତି ହିସାବ ପ୍ରଦତ୍ତ ଦାୟୀ
ପ୍ରାପ୍ୟ ହୁଣ୍ଡି ହିସାବ ବାବଦ

ଦାୟକଙ୍କର ହିସାବ ଖାତାରେ

ଦେୟ ହୁଣ୍ଡି ହିସାବ ଦାୟୀ
ବ୍ୟାଙ୍କ୍ ହିସାବ ବାବଦ
ପ୍ରାପ୍ତ ରିହାତି ହିସାବ ବାବଦ

ଏହାର କେତେକ ଦୃଷ୍ଟାନ୍ତ ନିମ୍ନରେ ଦିଆଗଲା ।

## ଦୃଷ୍ଟାନ୍ତ (୧୮)

ସମର ୪୦୦ ଟଙ୍କା ସକାଶେ ୩ ମାସ ମିଆଦରେ ଗୋଟିଏ ହୁଣ୍ଡି ପ୍ରସ୍ତୁତ କରି ନରେନ୍ଦ୍ରଙ୍କ ନିକଟକୁ ପଠାଇଲେ । ନରେନ୍ଦ୍ର ତାହା ସ୍ୱୀକାର କରି ୧୯୬୩ ମସିହା ମଇ ୧ ତାରିଖରେ ଫେରସ୍ତ ପଠାଇଲେ । ତାଙ୍କର ଆର୍ଥିକ ସ୍ୱଚ୍ଛଳତା ହେବାରୁ ସେ ଜୁଲାଇ ୧ ତାରିଖରେ ହୁଣ୍ଡି ବାବଦ ଟଙ୍କା ପରିଶୋଧ କଲେ ଓ ସମର ତାଙ୍କୁ ୧୦ ଟଙ୍କା ରିହାତି ଦେଲେ । ଏହି ଦେଣ ନେଣ ଗୁଡ଼ିକ ସକାଶେ ଉଭୟଙ୍କ ବହିରେ ରୋଜନାମା ଲେଖ ।

### ସମାଧାନ :

ସମରଙ୍କ ହିସାବ ଖାତାରେ

ରୋଜନାମା

| | | | ଦାୟୀ | ଦାତା |
|---|---|---|---|---|
| ୧୯୬୩ | | | ଟଙ୍କା | ଟଙ୍କା |
| ମଇ-୧ | ପ୍ରାପ୍ୟ ହୁଣ୍ଡି ହିସାବ ଦାୟୀ | | ୪୦୦ | |
| | ନରେନ୍ଦ୍ରଙ୍କ ହିସାବ ବାବଦ | | | ୪୦୦ |
| | ( ୩ ମାସ ମିଆଦରେ ୪୦୦ ଟଙ୍କା ନିମନ୍ତେ ପ୍ରସ୍ତୁତ ହୋଇଥିବା ହୁଣ୍ଡି ନରେନ୍ଦ୍ର ସ୍ୱୀକାର କଲେ ।) | | | |
| ଜୁଲାଇ-୧ | ବ୍ୟାଙ୍କ୍ ହିସାବ ଦାୟୀ | | ୩୯୦ | |
| | ପ୍ରଦତ୍ତ ରିହାତି ହିସାବ ଦାୟୀ | | ୧୦ | |
| | ପ୍ରାପ୍ୟ ହୁଣ୍ଡି ହିସାବ ବାବଦ | | | ୪୦୦ |
| | ( ନରେନ୍ଦ୍ର ମିଆଦ ପୂର୍ତ୍ତି ଦିବସ ପୂର୍ବରୁ ଟଙ୍କା ପରିଶୋଧ କରିବାରୁ ତାଙ୍କୁ ୧୦ ଟଙ୍କା ରିହାତି ଦିଆଗଲା ।) | | | |

ନରେନ୍ଦ୍ରଙ୍କ ହିସାବ ଖାତାରେ
ରୋଜନାମା

| ୧୯୬୩ | | | ଟଙ୍କା | ଟଙ୍କା |
|---|---|---|---|---|
| ମଇ-୧ | ସମରଙ୍କ ହିସାବ ଦାୟୀ<br>ଦେୟ ହୁଣ୍ଡି ହିସାବ ବାବଦ<br>(ସମର ପଠାଇଥିବା ହୁଣ୍ଡି ସ୍ୱୀକୃତ ହେଲା) | | ୪୦୦ | ୪୦୦ |
| ଜୁଲାଇ-୧ | ଦେୟ ହୁଣ୍ଡି ହିସାବ ଦାୟୀ<br>ବ୍ୟାଙ୍କ ହିସାବ ବାବଦ<br>ପ୍ରାପ୍ତ ରିହାତି ହିସାବ ବାବଦ<br>( ମିଆଦ ପୂର୍ତ୍ତି ଦିବସ ପୂର୍ବରୁ ହୁଣ୍ଡି ବାବଦ ଟଙ୍କା ପରିଶୋଧ କରିବାରୁ ୧୦ ଟଙ୍କା ରିହାତି ମିଳିଲା ।) | | ୪୦୦ | ୩୯୦<br>୧୦ |

## ଦୃଷ୍ଟାନ୍ତ (୧୯)

ଶାନ୍ତନୁଙ୍କ ହିସାବ ଖାତାରେ ନିମ୍ନଲିଖିତ ନେଣ ଦେଣ ସକାଶେ ରୋଜନାମା ପ୍ରସ୍ତୁତ କର :

(କ) ପ୍ରଶାନ୍ତଙ୍କୁ ଦିଆଯାଇଥିବା ୫୫୦ ଟଙ୍କା ସକାଶେ ସ୍ୱୀକୃତ ହୁଣ୍ଡି ବାବଦ ଟଙ୍କା ମିଆଦ ପୂର୍ତ୍ତି ଦିବସ ପୂର୍ବରୁ ପରିଶୋଧ କରିଦେବାରୁ ପ୍ରଶାନ୍ତ ୧୨ ଟଙ୍କା ରିହାତି ଦେଲେ ।

(ଖ) ୩୦୦ ଟଙ୍କା ସକାଶେ କମଳ ସ୍ୱୀକାର କରିଥିବା ହୁଣ୍ଡି ନବୀକରଣ କରାଗଲା । ଏହି ନୂତନ ହୁଣ୍ଡି ୩ ମାସ ମିଆଦରେ ପ୍ରସ୍ତୁତ ଓ ଏଥି ସକାଶେ କମଳ ଶତକଡ଼ା ୬ ହାରରେ ସୁଧ ନେବାକୁ ସମ୍ମତ ହୋଇଛନ୍ତି ।

(ଗ) ୫୦୦ ଟଙ୍କା ସକାଶେ ସ୍ୱୀକାର କରାଯାଇଥିବା ହୁଣ୍ଡିର ନବୀକରଣ କରିବାକୁ କରୁଣାକର ନିମ୍ନଲିଖିତ ସର୍ତ୍ତରେ ସମ୍ମତ ହେଲେ; ଯଥା (୧) ନୂତନ ହୁଣ୍ଡିର ମିଆଦ ୩ ମାସ ହେବ, (୨) ଅବିଳମ୍ବେ ୧୦୦ ଟଙ୍କା ନଗଦ ଦେବାକୁ ପଡ଼ିବ ଓ (୩) ଅବଶିଷ୍ଟ ଦେୟ ଉପରେ ଶତକଡ଼ା ୮ ହାରରେ ସୁଧ ଦେବାକୁ ପଡ଼ିବ । ଶାନ୍ତନୁ ଏହି ସର୍ତ୍ତ ଗୁଡ଼ିକ ମାନି ନେଲେ ।

(ଘ) ଗୁଣନିଧି ସ୍ୱୀକାର କରିଥିବା ୬୦୦ ଟଙ୍କାର ହୁଣ୍ଡି ଯାହା ବାଳମୁକୁନ୍ଦଙ୍କୁ ହସ୍ତାନ୍ତର କରାଯାଇଥିଲା ତାହା ଅସମ୍ମାନିତ ହେଲା ଓ ବାଳମୁକୁନ୍ଦ ନୋଟେରି ବାବଦ ୮

ଟଙ୍କା ବ୍ୟୟ କଲେ । ବାଳମୁକୁନ୍ଦଙ୍କୁ ତାଙ୍କର ପ୍ରାପ୍ୟ ଟଙ୍କା ସକାଶେ ଚେକ୍ ଦିଆଗଲା ଓ ଗୁଣନିଧି ୩ ମାସ ମିଆଦରେ ସୁଧ ବାବଦ ୧୨ ଟଙ୍କା ସମେତ ମୋଟ ଦେୟ ସକାଶେ ଏକ ପ୍ରତିଜ୍ଞା ପତ୍ର ଲେଖିଦେଲେ ।

(ଙ) ଶାନ୍ତନୁ ୪୦୦ ଟଙ୍କା ନିମନ୍ତେ ଯେଉଁ ପ୍ରତିଜ୍ଞା ପତ୍ର କେଶବଙ୍କୁ ଦେଇଥିଲେ ତାହା ବ୍ୟାଙ୍କ୍‌କୁ ଯଥା ସମୟରେ ନିର୍ଦ୍ଦେଶ ଦିଆ ଯାଇ ନ ଥିବାରୁ ଅସମ୍ମାନିତ ହେଲା ଓ କେଶବ ୧୦ ଟଙ୍କା ଲେଖେଇ ବାବଦ ଖର୍ଚ୍ଚ କଲେ । କେଶବଙ୍କର ମୋଟ ଟଙ୍କା ସକାଶେ ତାଙ୍କୁ ଶାନ୍ତନୁ ଏକ ଚେକ୍ ଦେଲେ ।

(ଚ) ଧୀରେନ୍ଦ୍ର ୨୦୦ ଟଙ୍କା ସକାଶେ ୩ ମାସ ମିଆଦରେ ପ୍ରସ୍ତୁତ ହୋଇଥିବା ହୁଣ୍ଡି ସ୍ୱୀକାର କରିବାରୁ ତାହା ବ୍ୟାଙ୍କ୍‌ରେ ୧୯୦ ଟଙ୍କା ସକାଶେ ଭଙ୍ଗାଇ ଦିଆଯାଇ-ଥିଲା । ଏବେ ତାହା ଅସମ୍ମାନିତ ହେବାରୁ ବ୍ୟାଙ୍କ୍‌କୁ ୫ ଟଙ୍କା ଲେଖେଇ ସମେତ ମୋଟ ଦେୟ ଟଙ୍କା ଦିଆଗଲା ଓ ଧୀରେନ୍ଦ୍ର ୨ ମାସ ମିଆଦରେ ପ୍ରସ୍ତୁତ ୧୦ ଟଙ୍କା ସୁଧ ସମେତ ମୋଟ ଦେୟ ଟଙ୍କା ସକାଶେ ଏକ ନୂତନ ହୁଣ୍ଡି ସ୍ୱୀକାର କଲେ ।

ଶାନ୍ତନୁଙ୍କ ଖାତାରେ

ରୋଜନାମା

| ତାରିଖ | ବିବରଣୀ | ଖ:ପୃ: | ଦାୟୀ ପରିମାଣ ଟଙ୍କା | ଦାତା ପରିମାଣ ଟଙ୍କା |
|---|---|---|---|---|
| (କ) | ଦେୟ ହୁଣ୍ଡି ହିସାବ ଦାୟୀ | | ୫୫୦ | |
| | ବ୍ୟାଙ୍କ୍ ହିସାବ ବାବଦ | | | ୪୩୮ |
| | ପ୍ରାପ୍ତ ରିହାତି ହିସାବ ବାବଦ | | | ୧୨ |
| | (ପ୍ରଶାନ୍ତଙ୍କୁ ୫୫୦ ଟଙ୍କା ସକାଶେ ଦିଆ-ଯାଇଥିବା ସ୍ୱୀକୃତ ହୁଣ୍ଡି ବାବଦ ଟଙ୍କା ମିଆଦ ପୂର୍ତ୍ତି ଦିବସ ପୂର୍ବରୁ ପରିଶୋଧ କରାଯିବାରୁ ସେ ୧୨ ଟଙ୍କା ରିହାତି ଦେଲେ ।) | | | |
| (ଖ) | କମଳଙ୍କ ହିସାବ ଦାୟୀ | | ୩୦୦ | |
| | ପ୍ରାପ୍ୟ ହୁଣ୍ଡି ହିସାବ ବାବଦ | | | ୩୦୦ |
| | (କମଳ ସ୍ୱୀକାର କରିଥିବା ହୁଣ୍ଡି ରଦ୍ଦ କରାଗଲା ।) | | | |

| ତାରିଖ | ବିବରଣୀ | ଖ: ପୃ: | ଦାୟୀ ଟଙ୍କା | ଦାତା ଟଙ୍କା |
|---|---|---|---|---|
| (ଖ) | ଜମଲଙ୍କ ହିସାବ ଦାୟୀ<br>ସୁଧ ହିସାବ ବାବଦ<br>(କମଲଙ୍କଠାରୁ ଶତକଡ଼ା ୮ ହାରରେ ୩ ମାସର ସୁଧ ପ୍ରାପ୍ୟ ହେଲା ।) | | ୬ | ୬ |
| | ପ୍ରାପ୍ୟ ହୁଣ୍ଡି ହିସାବ ଦାୟୀ<br>କମଲଙ୍କ ହିସାବ ବାବଦ<br>(କମଲ ସୁଧ ସମେତ ମୋଟ ଦେୟ ଟଙ୍କା ସକାଶେ ନୂତନ ହୁଣ୍ଡି ସ୍ୱୀକାର କଲେ ।) | | ୩୦୬ | ୩୦୬ |
| (ଗ) | ଦେୟ ହୁଣ୍ଡି ହିସାବ ଦାୟୀ<br>କରୁଣାକରଙ୍କ ହିସାବ ବାବଦ<br>(କରୁଣାକରଙ୍କୁ ଦିଆଯାଇଥିବା ହୁଣ୍ଡି ରଦ କରାଗଲା ।) | | ୫୦୦ | ୫୦୦ |
| | କରୁଣାକରଙ୍କ ହିସାବ ଦାୟୀ<br>ନଗଦ ତହବିଲ ହିସାବ ବାବଦ<br>(ନଗଦ ୧୦୦ ଟଙ୍କା କରୁଣାକରଙ୍କୁ ଦିଆଗଲା ।) | | ୧୦୦ | ୧୦୦ |
| | ସୁଧ ହିସାବ ଦାୟୀ<br>କରୁଣାକରଙ୍କ ହିସାବ ବାବଦ<br>(୪୦୦ ଟଙ୍କା ଉପରେ ଶତକଡ଼ା ୮ ହାର ସୁଧରେ କରୁଣାକରଙ୍କର ୮ ଟଙ୍କା ପ୍ରାପ୍ୟ ହେଲା ।) | | ୮ | ୮ |
| | କରୁଣାକରଙ୍କ ହିସାବ ଦାୟୀ<br>ଦେୟ ହୁଣ୍ଡି ହିସାବ ବାବଦ<br>(୩ ମାସ ମିଆଦରେ ମୋଟ ପ୍ରାପ୍ୟ ଟଙ୍କା ସକାଶେ କରୁଣାକର ପ୍ରସ୍ତୁତ କରିଥିବା ହୁଣ୍ଡି ସ୍ୱୀକାର କରାଗଲା ।) | | ୪୦୮ | ୪୦୮ |
| | ଗୁଣନିଧିଙ୍କ ହିସାବ ଦାୟୀ<br>ବାଲମୁକୁନ୍ଦଙ୍କ ହିସାବ ବାବଦ<br>ଗୁଣନିଧି ସ୍ୱୀକାର କରିଥିବା ହୁଣ୍ଡି ଯାହା ବାଲମୁକୁନ୍ଦଙ୍କୁ ହସ୍ତାନ୍ତର କରି ଯାଇ-ଥିଲା ତାହା ଅସମ୍ମାନିତ ହେଲା ଏବଂ ବାଲମୁକୁନ୍ଦ ଲେଖେଇ ବାବଦ ୮ ଟଙ୍କା ଦାବି କଲେ ।) | | ୬୦୮ | ୬୦୮ |

| ତାରିଖ | ବିବରଣୀ | ଖ:ପୃ: | ଦାୟୀ | ଦାତା |
|---|---|---|---|---|
| | | | ଟଙ୍କା | ଟଙ୍କା |
| (ଘ) | ବାଳମୁକୁନ୍ଦଙ୍କ ହିସାବ ଦାୟୀ<br>ବ୍ୟାଙ୍କ୍ ହିସାବ ବାବଦ<br>(ବାଳମୁକୁନ୍ଦଙ୍କ ପ୍ରାପ୍ୟ ଟଙ୍କା ସକାଶେ ତାଙ୍କୁ ଚେକ୍ ଦିଆଗଲା ।) | | ୬୦୮ | ୬୦୮ |
| | ଗୁଣନିଧିଙ୍କ ହିସାବ ଦାୟୀ<br>ସୁଧ ହିସାବ ବାବଦ<br>(ଗୁଣନିଧିଙ୍କଠାରୁ ୧୨ ଟଙ୍କା ସୁଧ ବାବଦ ପ୍ରାପ୍ୟ ହେଲା ।) | | ୧୨ | ୧୨ |
| | ପ୍ରାପ୍ୟ ହୁଣ୍ଡି ହିସାବ ଦାୟୀ<br>ଗୁଣନିଧିଙ୍କ ହିସାବ ବାବଦ<br>(ମୋଟ ଦେୟ ଟଙ୍କା ସକାଶେ ଗୁଣନିଧି ଏକ ପ୍ରତିଜ୍ଞାପତ୍ର ଦେଲେ ।) | | ୭୨୦ | ୭୨୦ |
| (ଙ) | ଦେୟ ହୁଣ୍ଡି ହିସାବ ଦାୟୀ<br>ନୋଟେରି ଖର୍ଚ୍ଚ ହିସାବ ଦାୟୀ<br>କେଶବଙ୍କ ହିସାବ ବାବଦ<br>(କେଶବଙ୍କୁ ଦିଆଯାଇଥିବା ପ୍ରତିଜ୍ଞା ପତ୍ର ଅସମ୍ମାନିତ ହେଲା ଏବଂ କେଶବ ନୋଟେରି ଖର୍ଚ୍ଚ ବାବଦ ୧୦ ଟଙ୍କା ଦାବୀ କଲେ ।) | | ୪୦୦<br>୧୦ | ୪୧୦ |
| | କେଶବଙ୍କ ହିସାବ ଦାୟୀ<br>ବ୍ୟାଙ୍କ୍ ହିସାବ ବାବଦ<br>(କେଶବଙ୍କୁ ତାଙ୍କର ପ୍ରାପ୍ୟ ଟଙ୍କା ଚେକ୍ ମାଧ୍ୟମରେ ଦିଆଗଲା ।) | | ୪୧୦ | ୪୧୦ |
| (ଚ) | ଧୀରେନ୍ଦ୍ରଙ୍କ ହିସାବ ଦାୟୀ<br>ବ୍ୟାଙ୍କ୍ ହିସାବ ବାବଦ<br>(ଧୀରେନ୍ଦ୍ର ହୁଣ୍ଡି ଅସମ୍ମାନିତ କରିବାରୁ ବ୍ୟାଙ୍କ୍‌କୁ ନୋଟେରି ଖର୍ଚ୍ଚ ୫ ଟଙ୍କା ସମେତ ମୋଟ ଦେୟ ଟଙ୍କା ଦିଆଗଲା ।) | | ୨୦୫ | ୨୦୫ |
| | ଧୀରେନ୍ଦ୍ରଙ୍କ ହିସାବ ଦାୟୀ<br>ସୁଧ ହିସାବ ବାବଦ<br>(ଧୀରେନ୍ଦ୍ରଙ୍କଠାରୁ ୧୦ ଟଙ୍କା ସୁଧ ପ୍ରାପ୍ୟ ହେଲା ।) | | ୧୦ | ୧୦ |

| ତାରିଖ | ବିବରଣୀ | ଖ:ପୃ: | ଦାୟୀ | ଦାତା |
|---|---|---|---|---|
| | | | ଟଙ୍କା | ଟଙ୍କା |
| (ଚ) | ପ୍ରାପ୍ୟ ହୁଣ୍ଡି ହିସାବ ଦାୟୀ<br>ଧୀରେନ୍ଦ୍ରଙ୍କ ହିସାବ ବାବଦ<br>(ଧୀରେନ୍ଦ୍ର ତାଙ୍କର ମୋଟ ଦେୟ ସକାଶେ ହୁଣ୍ଡି ସ୍ୱୀକାର କଲେ ।) | | ୨୧୫ | |
| | | | | ୨୧୫ |

# ଅନୁଶୀଳନୀ

୧ । (କ) ହସ୍ତାନ୍ତର ଯୋଗ୍ୟ ଦଲିଲ କହିଲେ କ'ଣ ବୁଝ ? ଏହାର ବିଶେଷ ଲକ୍ଷଣମାନ ବର୍ଣ୍ଣନା କର ।

(ଖ) ହୁଣ୍ଡି ଓ ପ୍ରତିଜ୍ଞା ପତ୍ର ମଧ୍ୟରେ ଥିବା ପାର୍ଥକ୍ୟ ବୁଝାଅ । ହିସାବ ଲକ୍ଷଣ ଦୃଷ୍ଟିରୁ ଏହି ଦୁଇପ୍ରକାର ଦଲିଲରେ କୌଣସି ପାର୍ଥକ୍ୟ ପରିଲକ୍ଷିତ ହୁଏ କି ?

(ଗ) ହୁଣ୍ଡିର ଶ୍ରେଣୀ ବିଭାଗ କରି ପ୍ରତି ଶ୍ରେଣୀ ଅନ୍ତର୍ଗତ ହୁଣ୍ଡିଗୁଡ଼ିକର ପରିଚୟ ଦିଅ ।

(ଘ) ମିଆଦ ପୂର୍ତ୍ତି ଦିବସ କହିଲେ କ'ଣ ବୁଝ ? ମିଆଦ ହୁଣ୍ଡିରେ ଏହି ଦିବସ କିପରି ନିର୍ଦ୍ଧାରିତ ହୁଏ ତାହା କେତେକ ଦୃଷ୍ଟାନ୍ତ ସାହାଯ୍ୟରେ ବ୍ୟାଖ୍ୟା କର ।

(ଙ) ବାଣିଜ୍ୟିକ ହୁଣ୍ଡି ଓ ସାହାଯ୍ୟକାରୀ ହୁଣ୍ଡି ମଧ୍ୟରେ ପାର୍ଥକ୍ୟ ଦର୍ଶାଅ । ସାହାଯ୍ୟକାରୀ ହୁଣ୍ଡି ଅସମ୍ମାନିତ ହେଲେ କି କାର୍ଯ୍ୟାନୁଷ୍ଠାନ କରାଯାଏ ତାହା ବର୍ଣ୍ଣନା କର ।

(ଚ) ନୋଟେରି ଖର୍ଚ୍ଚ କହିଲେ କ'ଣ ବୁଝ ? ଏହା କାହାଦ୍ୱାରା ଲିପିତ ହୁଏ ? ଏହାର ଖର୍ଚ୍ଚ କିଏ ବହନ କରେ ?

(ଛ) ଗୋଟିଏ ପ୍ରାପ୍ୟ ହୁଣ୍ଡି ସ୍ୱୀକୃତ ହେଲା ପରେ ଲେଖକ ଏହାକୁ କିପରି ଉପଯୋଗ କରନ୍ତି ? ପ୍ରତି କ୍ଷେତ୍ରରେ ଆବଶ୍ୟକ ରୋଜନାମା ଲେଖ (୧) ଲେଖକଙ୍କ ହିସାବ ଖାତାରେ, (୨) ଦାୟକଙ୍କ ହିସାବ ଖାତାରେ, (୩) ହୁଣ୍ଡି ସମ୍ମାନିତ ହେଲେ ଓ (୪) ହୁଣ୍ଡି ଅସମ୍ମାନିତ ହେଲେ ।

(ଜ) ପ୍ରାକ୍-ମିଆଦ ହୁଣ୍ଡି ପରିଶୋଧ କାହାକୁ କହନ୍ତି ? ଦାୟକ ଏତଦ୍ୱାରା କ'ଣ ପାଆନ୍ତି ?

(ଙ) ହୁଣ୍ଡିର ନବୀକରଣ କହିଲେ କ'ଣ ବୁଝ ? ଏକ କାଳ୍ପନିକ ଦୃଷ୍ଟାନ୍ତ ସାହାଯ୍ୟରେ ଉଭୟ ଲେଖକ ଓ ଦାୟକଙ୍କ ହିସାବ ଖାତାରେ ରୋଜନାମା ଲେଖ ।

(ଞ) ହୁଣ୍ଡି ବହି ରୋଜନାମା ନା ଖତିୟାନର ଅଂଶ ? ଏହି ବହିଦ୍ୱାରା ବ୍ୟବସାୟୀଙ୍କର କି ଉପକାର ସାଧିତ ହୁଏ । ଏହି ବହି ଗୁଡ଼ିକର ସାପ୍ତାହିକ/ପାକ୍ଷିକ/ମାସିକ ମୋଟ ପରିମାଣରୁ କ'ଣ କରାଯାଏ ?

୨ । ମଦନ ବାରିକଧିଙ୍କୁ ୨୫୦ ଟଙ୍କାର ପଣ୍ୟ ବିକ୍ରୟ କଲେ । ବାରିକଧି ୨୫୦ ଟଙ୍କା ୧୯୭୩ ମସିହା ଜାନୁୟାରୀ ୨ ତାରିଖରେ ଚେକ୍ ଆକାରରେ ଦେଲେ ଓ ଅବଶିଷ୍ଟ ଦେୟ ନିମନ୍ତେ ୩ ମାସ ମିଆଦରେ ପ୍ରସ୍ତୁତ ଏକ ପ୍ରତିଜ୍ଞା ପତ୍ର ଦେଲେ । ଉଭୟଙ୍କ ହିସାବ ଖାତାରେ ଏହି ନେଣ ଦେଣ ଗୁଡ଼ିକ ନିମନ୍ତେ ରୋଜନାମା ଲେଖ । ପ୍ରତିଜ୍ଞା ପତ୍ର ସମ୍ମାନିତ ହୋଇଛି ବୋଲି ଅନୁମାନ କର ।

୩ । ବେଣୁଧର ବ୍ରଜସୁନ୍ଦରଙ୍କ ଠାରୁ ଉଧାରରେ ୮୦୦ ଟଙ୍କା ମୂଲ୍ୟର ଏକ ଯନ୍ତ୍ର କ୍ରୟ କଲେ । ୧୯୭୩ ମସିହା ଫେବୃୟାରୀ ୩ ତାରିଖରେ ୩ ମାସ ମିଆଦରେ ୮୦୦ ଟଙ୍କା ନିମନ୍ତେ ଏକ ହୁଣ୍ଡି ପ୍ରସ୍ତୁତ କରି ବ୍ରଜସୁନ୍ଦର ବେଣୁଧରଙ୍କ ନିକଟକୁ ସ୍ୱୀକୃତ ନିମନ୍ତେ ପଠାଇଲେ । ବେଣୁଧର ତାହା ସ୍ୱୀକାର କରି ହୁଣ୍ଡିଟି ସେହି ତାରିଖରେ ଫେରସ୍ତ ପଠାଇଲେ । ବ୍ରଜସୁନ୍ଦର ହୁଣ୍ଡିଟି ସେହି ଦିନ ବ୍ୟାଙ୍କରେ ୨୦ ଟଙ୍କା ବଟା ଦେଇ ଭଙ୍ଗାଇଲେ । ହୁଣ୍ଡି ନିର୍ଦ୍ଦିଷ୍ଟ ଦିବସରେ ସମ୍ମାନିତ ହେଲା ।

ଏହି ଦେଣନେଣ ଗୁଡ଼ିକ ସକାଶେ ବେଣୁଧର ଓ ବ୍ରଜସୁନ୍ଦରଙ୍କ ହିସାବ ଖାତାରେ ରୋଜନାମା ଲେଖ ।

୪ । ନୀଳକଣ୍ଠ ୫୦୦ ଟଙ୍କାର ପଣ୍ୟ ରାମଶଙ୍କରଙ୍କ ଠାରୁ ଉଧାରରେ କ୍ରୟ କରିଥିଲେ । ରାମଶଙ୍କର ଉକ୍ତ ୫୦୦ ଟଙ୍କା ସକାଶେ ୩ ମାସ ମିଆଦରେ ଏକ ହୁଣ୍ଡି ପ୍ରସ୍ତୁତ କରି ନୀଳକଣ୍ଠଙ୍କ ନିକଟକୁ ସ୍ୱୀକୃତ ନିମନ୍ତେ ପଠାଇଲେ । ନୀଳକଣ୍ଠ ହୁଣ୍ଡି ସ୍ୱୀକାର କରି ୧୯୭୧ ମସିହା ମଇ ୫ ତାରିଖରେ ରାମଶଙ୍କରଙ୍କ ନିକଟକୁ ଫେରସ୍ତ ପଠାଇଲେ । ରାମଶଙ୍କର ମଇ ୭ ତାରିଖରେ ହୁଣ୍ଡିଟି ତାଙ୍କ ମହାଜନ କର୍ଣ୍ଣଙ୍କଙ୍କୁ ହସ୍ତାନ୍ତର କଲେ । ନିର୍ଦ୍ଦିଷ୍ଟ ଦିବସରେ ହୁଣ୍ଡିଟି ସମ୍ମାନିତ ହେଲା ।

ଏହି ଦେଣନେଣ ଗୁଡ଼ିକ ସକାଶେ ସମ୍ପୃକ୍ତ ବ୍ୟକ୍ତିଙ୍କ ହିସାବ ଖାତାରେ ରୋଜନାମା ପ୍ରସ୍ତୁତ କର ।

୫ । ପି. କୃଷ୍ଣ ମୂର୍ତ୍ତି ଆର୍. ରାଓଙ୍କ ଠାରୁ ୧,୫୦୦ ଟଙ୍କା ମୂଲ୍ୟର ପଣ୍ୟ କ୍ରୟ କଲେ । ତନ୍ମଧ୍ୟରୁ ୧୦୦ ଟଙ୍କା ସକାଶେ କୃଷ୍ଣମୂର୍ତ୍ତି ୧-୩-୧୯୭୩ ତାରିଖରେ ଶ୍ରୀ ରାଓଙ୍କୁ

ଟଙ୍କା ଚେକ୍ ଦେଲେ ଓ ଅବଶିଷ୍ଟ ଟଙ୍କା ସକାଶେ ସେ ତିନ ଟଣ୍ଡି ହୁଣ୍ଡି ସ୍ୱୀକାର କଲେ । ପ୍ରଥମଟି ୨ ମାସ ମିଆଦରେ ୩୦୦ ଟଙ୍କା ସକାଶେ, ଦ୍ୱିତୀୟଟି ୩ ମାସ ମିଆଦରେ ୫୦୦ ଟଙ୍କା ସକାଶେ ଓ ତୃତୀୟଟି ୪ ମାସ ମିଆଦରେ ୬୦୦ ଟଙ୍କା ସକାଶେ ପ୍ରସ୍ତୁତ କରାଯାଇଥିଲା । ଶ୍ରୀ ରାଓ ପ୍ରଥମ ହୁଣ୍ଡିଟି ମିଆଦ ପୂର୍ତ୍ତି ଦିବସ ପର୍ଯ୍ୟନ୍ତ ନିଜ ନିକଟରେ ରଖିଲେ, ଦ୍ୱିତୀୟଟି ମାର୍ଚ୍ଚ ୨ ତାରିଖରେ ତାଙ୍କର ମହାଜନ ଶଙ୍କରଲାଲଙ୍କୁ ହସ୍ତାନ୍ତର କଲେ ଓ ତୃତୀୟ ହୁଣ୍ଡି ମାର୍ଚ୍ଚ ୩ ତାରିଖରେ ଶତକଡ଼ା ୮ ହାରରେ ବଟା ଦେଇ ନିଜ ବ୍ୟାଙ୍କରେ ଭଙ୍ଗାଇଲେ । ମିଆଦ ପୂର୍ତ୍ତି ଦିବସରେ ପ୍ରଥମ ହୁଣ୍ଡିଟି ସମ୍ମାନିତ ହେଲା ଏବଂ ଅନ୍ୟ ଦୁଇଟି ହୁଣ୍ଡି ଅସମ୍ମାନିତ ହେଲା । ଉଭୟ କ୍ଷେତ୍ରରେ ନୋଟେରି ଖର୍ଚ୍ଚ ବାବଦ ୧୦ ଟଙ୍କା ଦେବାକୁ ପଡ଼ିଥିଲା ।

ଉପରୋକ୍ତ ନେଣଦେଣ ଗୁଡ଼ିକ ଶ୍ରୀ କୃଷ୍ଣମୂର୍ତ୍ତି ଓ ଶ୍ରୀ ରାଓଙ୍କ ହିସାବ ଖାତାରେ ଖତିୟାନ ଭୁକ୍ତ କର ।

୬ । ଶ୍ରୀ ସୁରେନ୍ଦ୍ର ସାହୁ ନବୀନ କୁମାରଙ୍କୁ ୧୯୬୩ ମସିହା ଫେବ୍ରୁୟାରୀ ୨ ତାରିଖରେ ୧,୦୦୦ ଟଙ୍କା ମୂଲ୍ୟର ଗୋଟିଏ ଯନ୍ତ୍ର ଯୋଗାଇ ପ୍ରାପ୍ୟ ଟଙ୍କା ନିମନ୍ତେ ୩ ମାସ ମିଆଦରେ ପ୍ରସ୍ତୁତ ଏକ ହୁଣ୍ଡି ସ୍ୱୀକୃତି ନିମନ୍ତେ ପଠାଇଲେ ଓ ନବୀନ କୁମାର ତାହା ସେହି ଦିନ ସ୍ୱୀକାର କରି ଫେରନ୍ତ ପଠାଇଲେ । ଶ୍ରୀ ସାହୁ ସେହି ତାରିଖରେ ହୁଣ୍ଡିଟି ଶତକଡ଼ା ୮ ହାରରେ ବଟା ଦେଇ ନିଜ ବ୍ୟାଙ୍କରେ ଭଙ୍ଗାଇଲେ । ମିଆଦ ପୂର୍ତ୍ତି ଦିବସରେ ହୁଣ୍ଡି ଅସମ୍ମାନିତ ହେଲା ଓ ବ୍ୟାଙ୍କ୍ ନୋଟେରି ବାବଦ ୧୦ ଟଙ୍କା ଖର୍ଚ୍ଚ କଲେ । ଶ୍ରୀ ସାହୁ ବ୍ୟାଙ୍କ୍‌କୁ ତାଙ୍କର ପ୍ରାପ୍ୟ ଟଙ୍କା ଦେଇ ଦେଲେ । ନବୀନ କୁମାର ୨୦ ଟଙ୍କା ସୁଧ ସମେତ ମୋଟ ଦେୟ ଟଙ୍କା ନିମନ୍ତେ ୨ ମାସ ମିଆଦରେ ପ୍ରସ୍ତୁତ ଏକ ନୂତନ ହୁଣ୍ଡି ସେହି ତାରିଖରେ ସ୍ୱୀକାର କଲେ । ଏହି ହୁଣ୍ଡି ବାବଦ ସମ୍ପୂର୍ଣ୍ଣ ଟଙ୍କା ଦେବାକୁ ଅକ୍ଷମ ହେବାରୁ ସେ ଶ୍ରୀ ସାହୁଙ୍କୁ ୫୦୦ ଟଙ୍କା ଚେକ୍ ମାଧ୍ୟମରେ ଦେଲେ ଓ ୧୫ ଟଙ୍କା ସୁଧ ସମେତ ମୋଟ ଦେୟ ଟଙ୍କା ନିମନ୍ତେ ୨ ମାସ ମିଆଦରେ ପ୍ରସ୍ତୁତ ଏକ ପ୍ରତିଜ୍ଞା ପତ୍ର ଦେଲେ । ନିର୍ଦ୍ଦିଷ୍ଟ ଦିବସରେ ପ୍ରତିଜ୍ଞା ପତ୍ର ବାବଦ ଟଙ୍କା ମିଳିଲା ।

ଉପରୋକ୍ତ ଦେଣନେଣ ଗୁଡ଼ିକ ନିମନ୍ତେ ଶ୍ରୀ ସୁରେନ୍ଦ୍ର ସାହୁ ଓ ନବୀନ କୁମାରଙ୍କ ହିସାବ ଖାତାରେ ରୋଜନାମା ଲେଖ ।

୭ । ୧୯୬୩ ମସିହା ଜାନୁୟାରୀ ୧ ତାରିଖରେ ଠାକୁର ବ୍ରଦାର୍ସଙ୍କ ହିସାବ ଖାତାରେ ଖାତକ ଓ ମହାଜନଙ୍କର ପରିମାଣ ନିମ୍ନୋକ୍ତ ପ୍ରକାର ଥିଲା :

| ଖାତକ | ଟଙ୍କା | ମହାଜନ | ଟଙ୍କା |
|---|---|---|---|
| (୧) ଅନାଦି ସାହୁ | ୪୫୦ | (୧) ଗୁପ୍ତ ଏଣ୍ଡ କୋ: | ୯୫୦ |
| (୨) ବିମଳ ମିଶ୍ର | ୮୫୦ | (୨) ଅଗ୍ରୱାଲ ଏଣ୍ଡ ସନ୍ସ | ୧,୫୦୦ |
| (୩) ରାଧାକାନ୍ତ ମହାପାତ୍ର | ୧,୨୦୦ | (୩) ସାହୁ ଏଣ୍ଡ ପାର୍ଟନାର୍ସ | ୮୬୦ |
| (୪) ଗୋବିନ୍ଦ ମହାନ୍ତି | ୯୪୦ | (୪) ଅମ୍ବିକା ଟ୍ରେଡାର୍ସ | ୧,୨୨୫ |

ଜାନୁୟାରୀ ମାସରେ ଠାକୁର ବ୍ରଦାର୍ସଙ୍କ ବ୍ୟବସାୟରେ ନିମ୍ନଲିଖିତ ହୁଣ୍ଡି ସଂକ୍ରାନ୍ତୀୟ ନେଣଦେଣ ସଂଘଟିତ ହୋଇଥିଲା । ଠାକୁର ବ୍ରଦାର୍ସଙ୍କ ଦ୍ୱାରା ସ୍ୱୀକୃତ ସମସ୍ତ ହୁଣ୍ଡି କାନାରା ବ୍ୟାଙ୍କ୍, କଟକ ରେ ଦେୟ ।

୧୯୬୩

ଜାନୁୟାରୀ ୩ ଅନାଦି ସାହୁଙ୍କ ଠାରୁ ୩ ମାସ ମିଆଦରେ ପ୍ରସ୍ତୁତ ୪୪୦ ଟଙ୍କାର ପ୍ରତିଜ୍ଞା ପତ୍ର ମିଳିଲା (ନମ୍ବର ୭୧—ଷ୍ଟେଟ୍ ବ୍ୟାଙ୍କ୍, ଭୁବନେଶ୍ୱରରେ ପ୍ରାପ୍ୟ)

୫ ଅନାଦି ସାହୁଙ୍କ ପ୍ରତିଜ୍ଞା ପତ୍ର ଶତକଡ଼ା ୧୦ ହାର ବଟା ଦେଇ ବ୍ୟାଙ୍କରେ ଭଙ୍ଗାଇ ଦିଆଗଲା ।

୭ ଅଗ୍ରୱାଲ ଏଣ୍ଡ ସନ୍ସ ୨ ମାସ ମିଆଦରେ ତାଙ୍କ ପ୍ରାପ୍ୟ ଟଙ୍କା ନିମନ୍ତେ ଏକ ହୁଣ୍ଡି (ନମ୍ବର ୪୮) ପଠାଇଲେ । ତାହା ସ୍ୱୀକାର କରି ଆମେ ସେହି ଦିନ ଫେରସ୍ତ ପଠାଇଲୁ ।

୯ ବିମଳ ମିଶ୍ର, ୮୫୦ ଟଙ୍କା ସକାଶେ ରମାକାନ୍ତ ଦୁଇ ମାସ ମିଆଦରେ ସ୍ୱୀକାର କରିଥିବା ହୁଣ୍ଡି ଆମକୁ ହସ୍ତାନ୍ତର କଲେ । ଏହି ହୁଣ୍ଡିର ତାରିଖ ୧୫—୧୧—୧୯୬୨ ଓ ଏହା ପଞ୍ଜାବ ନ୍ୟାଶନ୍ୟାଲ ବ୍ୟାଙ୍କ୍, କଟକରେ ପ୍ରାପ୍ୟ ।

୧୧ ବିମଳ ମିଶ୍ର ହସ୍ତାନ୍ତର କରିଥିବା ହୁଣ୍ଡି ସାହୁ ଏଣ୍ଡ ପାର୍ଟନାର୍ସଙ୍କୁ ତାଙ୍କର ପୂର୍ଣ୍ଣ ପ୍ରାପ୍ୟ ପରିମାଣ ସକାଶେ ହସ୍ତାନ୍ତରିତ କରାଗଲା ।

୧୫ ୩ ମାସ ମିଆଦରେ ୧,୨୦୦ ଟଙ୍କା ସକାଶେ ପ୍ରସ୍ତୁତ ହୋଇଥିବା ହୁଣ୍ଡି ରାଧାକାନ୍ତ ମହାପାତ୍ର ସ୍ୱୀକାର କଲେ । ଏହା କଟକର ଆନ୍ଧ୍ରାବାଦ ବ୍ୟାଙ୍କରେ ପ୍ରାପ୍ୟ ।

୧୯୬୩

ଜାନୁଆରୀ ୧୬ ରାଧାକାନ୍ତ ମହାପାତ୍ର ସ୍ୱୀକାର କରିଥିବା ହୁଣ୍ଡି ଅମ୍ବିକା ଟ୍ରେଡ଼ାର୍ସଙ୍କୁ ତାଙ୍କର ପୂର୍ବ ପ୍ରାପ୍ୟ ଟଙ୍କା ନିମନ୍ତେ ହସ୍ତାନ୍ତର କରାଗଲା ।

୧୮ ସାହୁ ଏଣ୍ଡ ପାର୍ଟନାର୍ସଙ୍କୁ ହସ୍ତାନ୍ତର କରା ଯାଇଥିବା ହୁଣ୍ଡି ରମାକାନ୍ତଙ୍କ ଦ୍ୱାରା ଅସମ୍ମାନିତ ହେଲା । ସାହୁ ଏଣ୍ଡ ପାର୍ଟନାର୍ସ ୮ ଟଙ୍କା ନୋଟିସ ବାବଦ ଖର୍ଚ୍ଚ କଲେ । ତାଙ୍କୁ ତାଙ୍କର ମୋଟ ପ୍ରାପ୍ୟ ଟଙ୍କା ସକାଶେ ଆମେ ୧ ମାସ ମିଆଦରେ ପ୍ରସ୍ତୁତ ଏକ ପ୍ରତିଜ୍ଞା ପତ୍ର ଲେଖି ଦେଲୁ ।

୧୯ ବିମଳ ମିଶ୍ର ସୁଧ ବାବଦ ୨୦ ଟଙ୍କା ସମେତ ମୋଟ ଦେୟ ପରିମାଣ ସକାଶେ ୨ ମାସ ମିଆଦରେ ପ୍ରସ୍ତୁତ ଏକ ପ୍ରତିଜ୍ଞା ପତ୍ର ଦେଲେ ।

୨୫ ୩ ମାସ ମିଆଦରେ ପ୍ରସ୍ତୁତ କରା ଯାଇଥିବା ୯୪୦ ଟଙ୍କାର ହୁଣ୍ଡି ସ୍ୱୀକାର କରି ଗୁପ୍ତ ଏଣ୍ଡ କୋ: ଙ୍କ ନିକଟକୁ ଫେରସ୍ତ ପଠାଗଲା ।

୨୮ ଗୋବର୍ଦ୍ଧନ ମହାନ୍ତି ୨ ମାସ ମିଆଦରେ ୯୩୬ ଟଙ୍କା ସକାଶେ ପ୍ରସ୍ତୁତ ହୋଇଥିବା ହୁଣ୍ଡି ସ୍ୱୀକାର କଲେ ଓ ତାହା ବ୍ୟାଙ୍କରେ ୧୫ ଟଙ୍କା ବଟା ଦେଇ ଭଙ୍ଗାଇ ଦିଆଗଲା ।

ଉପରୋକ୍ତ ନେଣଦେଣ ଗୁଡ଼ିକ ଠାକୁର ବ୍ରଦାର୍ସଙ୍କ ହିସାବ ଖାତାରେ ଲିପିବଦ୍ଧ କର । ପ୍ରାପ୍ୟ ଓ ଦେୟ ହୁଣ୍ଡି ସହିତ ପ୍ରାପ୍ୟ ହୁଣ୍ଡି ହିସାବ ଓ ଦେୟ ହୁଣ୍ଡି ହିସାବମାନଙ୍କର ବାକିର ମେଳ କର ।

୮ । ୮ ଅସୀମ ରମେଶଙ୍କଠାରୁ ୪୦୦ ଟଙ୍କାର ପଣ୍ୟ ଉଧାରରେ କ୍ରୟ କରିଥିଲେ । ତେଣୁ ଅସୀମ ୩ ମାସ ମିଆଦରେ ୪୦୦ ଟଙ୍କା ନିମନ୍ତେ ରମେଶ ପ୍ରସ୍ତୁତ କରିଥିବା ହୁଣ୍ଡି ସ୍ୱୀକାର କରି ୧୯୬୩ ସାଲ ଜୁନ ୫ ତାରିଖରେ ଫେରସ୍ତ ପଠାଇଲେ । ଜୁଲାଇ ୫ ତାରିଖ ସୁଦ୍ଧା ତାଙ୍କର ଅବସ୍ଥା ସ୍ୱଚ୍ଛଳ ହେବାରୁ ସେ ସ୍ୱୀକୃତ ହୁଣ୍ଡି ବାବଦ ଟଙ୍କା ରମେଶଙ୍କୁ ଫେରସ୍ତ ଦେଲେ ରମେଶ ତାଙ୍କୁ ଶତକଡ଼ା ୮ ହାରରେ ରିହାତି ଦେଲେ ।

ଏହି ନେଣଦେଣଗୁଡ଼ିକ ଉଭୟ ଅସୀମ ଓ ରମେଶଙ୍କ ହିସାବ ଖାତାରେ ଲିପିବଦ୍ଧ କର ।

୯ । ନିମ୍ନଲିଖିତ ନେଣଦେଣ ଗୁଡ଼ିକ କୃଷ୍ଣଚନ୍ଦ୍ରଙ୍କ ରୋଜନାମା ବହିରେ କିପରି ଲିପିବଦ୍ଧ କରାଯିବ ତାହା ଦର୍ଶାଅ :

୧୯୭୩

ଫେବୃଆରୀ ୩ କୃଷ୍ଣଚନ୍ଦ୍ର କ୍ଷୀରୋଦଙ୍କ ଉପରେ ତିନୋଟି ହୁଣ୍ଡି କାଟିଲେ । ପ୍ରଥମଟି ୧ ମାସ ମିଆଦରେ ୫୦୦ ଟଙ୍କା ସକାଶେ, ଦ୍ୱିତୀୟଟି ୨ ମାସ ମିଆଦରେ ୪୦୦ ଟଙ୍କା ନିମନ୍ତେ ଓ ତୃତୀୟଟି ୪ ମାସ ମିଆଦରେ ୨୦୦ ଟଙ୍କା ନିମନ୍ତେ । କ୍ଷୀରୋଦ ହୁଣ୍ଡି ଗୁଡ଼ିକ ସ୍ୱୀକାର କରି ସେହି ଦିନ ଫେରସ୍ତ ପଠାଇଲେ ।

୪ କୃଷ୍ଣଚନ୍ଦ୍ର ପ୍ରଥମ ହୁଣ୍ଡି ଟି ତାଙ୍କର ମହାଜନ ଶଶାଙ୍କଙ୍କୁ ହସ୍ତାନ୍ତର କଲେ ।

୫ ଦ୍ୱିତୀୟ ହୁଣ୍ଡି ଟି ସେ ଶତକଡ଼ା ୬ ହାରରେ ବଟା ଦେଇ ନିଜ ବ୍ୟାଙ୍କରେ ଭଙ୍ଗାଇଲେ ।

୧୫ କ୍ଷୀରୋଦ ତୃତୀୟ ହୁଣ୍ଡି ବାବଦ ଟଙ୍କା ପରିଶୋଧ କଲେ । କୃଷ୍ଣଚନ୍ଦ୍ର କ୍ଷୀରୋଦଙ୍କୁ ଶତକଡ଼ା ୮ ହାରରେ ରିହାତି ଦେଲେ ।
ପ୍ରଥମ ହୁଣ୍ଡି ଟି ନିର୍ଦ୍ଦିଷ୍ଟ ଦିବସରେ ଅସମ୍ମାନିତ ହେଲା ଓ କୃଷ୍ଣଚନ୍ଦ୍ରଙ୍କୁ ୧୦ ଟଙ୍କା ଲେଖେଇ ଖର୍ଚ୍ଚ ସମେତ ଦେୟ ଟଙ୍କା ଶଶାଙ୍କଙ୍କୁ ଦେବାକୁ ପଡ଼ିଲା । କ୍ଷୀରୋଦ ଲେଖେଇ ଖର୍ଚ୍ଚ ଓ ସୁଧ ବାବଦ ୧୫ ଟଙ୍କା ନଗଦ ଦେଲେ ଓ ବାକି ଦେୟ ଟଙ୍କା ସକାଶେ ଦୁଇ ମାସ ମିଆଦରେ ପ୍ରସ୍ତୁତ ହୋଇଥିବା ଏକ ହୁଣ୍ଡି ସ୍ୱୀକାର କଲେ ।

ଦ୍ୱିତୀୟ ହୁଣ୍ଡିଟି ଉପସ୍ଥାପିତ ହେବା ପୂର୍ବରୁ କ୍ଷୀରୋଦ ୨୦୦ ଟଙ୍କା ସକାଶେ କୃଷ୍ଣଚନ୍ଦ୍ରଙ୍କୁ ଖଣ୍ଡିଏ ଚେକ୍ ଦେଲେ ଓ ୨୦ ଟଙ୍କା ସୁଧ ସମେତ ବାକି ଟଙ୍କା ସକାଶେ ତିନି ମାସ ମିଆଦରେ ପ୍ରସ୍ତୁତ ଏକ ପ୍ରତିଜ୍ଞା ପତ୍ର ଦେଲେ । କୃଷ୍ଣଚନ୍ଦ୍ର ବ୍ୟାଙ୍କର ଟଙ୍କା ପରିଶୋଧ କଲେ । ନୂତନ ହୁଣ୍ଡି ଓ ପ୍ରତିଜ୍ଞା ପତ୍ର ଯଥା ସମୟରେ ସମ୍ମାନିତ ହେଲା ।

ଉପରୋକ୍ତ ନେଣଦେଣଗୁଡ଼ିକ ସକାଶେ କୃଷ୍ଣଚନ୍ଦ୍ର ଓ କ୍ଷୀରୋଦଙ୍କ ହିସାବ ଖାତାରେ ରୋଜନାମା ଲେଖ ଓ ପ୍ରତ୍ୟେକଙ୍କ ବହିରେ ଅପର ବ୍ୟକ୍ତିଙ୍କର ବ୍ୟକ୍ତିକ ହିସାବ ପ୍ରସ୍ତୁତ କର ।

୧୦ । ସରୋଜଙ୍କ ହିସାବ ଖାତାରେ ନିମ୍ନଲିଖିତ ନେଣଦେଣ ସକାଶେ ରୋଜନାମା ଲେଖ :

(କ) ଗଜାନନ ୪୦୦ ଟଙ୍କା ସକାଶେ ସ୍ୱୀକାର କରିଥିବା ହୁଣ୍ଡି ନବୀକରଣ ଉଦ୍ଦେଶ୍ୟରେ ୨୧୫ ଟଙ୍କା ନଗଦ ଦେଲେ (୧୫ ଟଙ୍କା ସୁଧ ବାବଦ) ଓ

ଅବଶିଷ୍ଟ ଟଙ୍କା ସକାଶେ ୩ ମାସ ମିଆଦରେ ପ୍ରସ୍ତୁତ ହୋଇଥିବା ଏକ ପ୍ରତିଜ୍ଞା ପତ୍ର ଦେଲେ ।

(ଖ) ଗଣେଶ୍ୱର ୮୦୦ ଟଙ୍କା ସକାଶେ ଯେଉଁ ହୁଣ୍ଡି ସ୍ୱୀକାର କରିଥିଲେ ତାହା ବ୍ୟାଙ୍କରେ ୭୮୦ ଟଙ୍କା ସକାଶେ ଭଙ୍ଗାଇ ଦିଆ ଯାଇଥିଲା । ସେହି ହୁଣ୍ଡି ଅସମ୍ମାନିତ ହେବାରୁ ବ୍ୟାଙ୍କ୍ ତାହା ଫେରସ୍ତ ପଠାଇଲେ ଏବଂ ବ୍ୟାଙ୍କ୍ ଲେଖେଇ ଖର୍ଚ୍ଚ ବାବଦ ୧୦ ଟଙ୍କା ବ୍ୟୟ କରିଛନ୍ତି ବୋଲି ଜଣାଇଲେ ।

(ଗ) ସରୋଜ ୯୦୦ ଟଙ୍କା ନିମନ୍ତେ ସ୍ୱୀକାର କରିଥିବା ବ୍ରଜବନ୍ଧୁଙ୍କ ଦ୍ୱାରା ପ୍ରସ୍ତୁତ ହୋଇଥିବା ହୁଣ୍ଡି ବାବଦ ଟଙ୍କା ଦେବାକୁ ଅକ୍ଷମ ହେବେ ଜାଣିପାରି ତାଙ୍କୁ ୩୦୦ ଟଙ୍କା ନଗଦ ଦେଲେ ଓ ଶତକଡ଼ା ୮ ହାରରେ ସୁଧ ସମେତ ବକେୟା ଟଙ୍କା ନିମନ୍ତେ ୩ ମାସ ମିଆଦରେ ପ୍ରସ୍ତୁତ ଏକ ପ୍ରତିଜ୍ଞା ପତ୍ର ଦେବାକୁ ପ୍ରସ୍ତାବ କଲେ । ବ୍ରଜବନ୍ଧୁ ଏହି ସର୍ତ୍ତରେ ସମ୍ମତ ହେଲେ ।

(ଘ) ନରହରି ୭୦୦ ଟଙ୍କା ସକାଶେ ସ୍ୱୀକାର କରିଥିବା ହୁଣ୍ଡି ବାବଦ ୬୯୦ ଟଙ୍କା ମିଆଦ ପୂର୍ତ୍ତି ଅବସର ୧ ମାସ ପୂର୍ବରୁ ପରିଶୋଧ କଲେ । ସେ ୧୦ ଟଙ୍କା ରିହାତି ପାଇଲେ ।

(ଙ) ସରୋଜ, ବିଶ୍ୱନାଥ ସ୍ୱୀକାର କରିଥିବା ୫୦୨ ଟଙ୍କାର ଏକ ହୁଣ୍ଡିକୁ ନିବାରଣଙ୍କୁ ହସ୍ତାନ୍ତର କରିଥିଲେ । ନିବାରଣ ଜଣାଇଲେ ଯେ ମିଆଦ ପୂର୍ତ୍ତି ଅବସରରେ ହୁଣ୍ଡିଟି ଅସମ୍ମାନିତ ହୋଇଛି ଓ ସେ ଲେଖେଇ ବାବଦ ୮ ଟଙ୍କା ଖର୍ଚ୍ଚ କରିଛନ୍ତି । ସରୋଜ ଗୋଟିଏ ଚେକ୍ ମାଧ୍ୟମରେ ନିବାରଣଙ୍କର ପ୍ରାପ୍ୟ ଟଙ୍କା ପରିଶୋଧ କଲେ ଓ ବିଶ୍ୱନାଥଙ୍କ ହୁଣ୍ଡି ଫେରସ୍ତ ଆଣିଲେ । ବିଶ୍ୱନାଥ ଶତକଡ଼ା ୮ ହାର ସୁଧ ସମେତ ତାଙ୍କର ଦେୟ ଟଙ୍କା ନିମନ୍ତେ ୩ ମାସ ମିଆଦରେ ଏକ ପ୍ରତିଜ୍ଞା ପତ୍ର ପ୍ରସ୍ତୁତ କରି ସରୋଜଙ୍କୁ ଦେଲେ ।

(ଚ) ସରୋଜ ୪୦୦ ଟଙ୍କା ସକାଶେ ଏକ ହୁଣ୍ଡି ସ୍ୱୀକାର କରି ଧନେଶ୍ୱରଙ୍କୁ ଦେଇଥିଲେ । ମାତ୍ର ବ୍ୟାଙ୍କ୍‌କୁ କୌଣସି ନିର୍ଦ୍ଦେଶ ଦିଆଯାଇ ନ ଥିବାରୁ ତାହା ଅସମ୍ମାନିତ ହେଲା । ଲେଖେଇ ଖର୍ଚ୍ଚ ସମେତ ଧନେଶ୍ୱର ୪୦୮ ଟଙ୍କା ଦାବୀ କଲେ ଏବଂ ତାହା ଚେକ୍ ଯୋଗେ ସରୋଜ ତାଙ୍କ ନିକଟକୁ ପଠାଇଲେ ।

୧୧ । ହରେନ୍ଦ୍ର ନଗର ଓ ଚନ୍ଦ୍ରଶେଖରଙ୍କ ସୁବିଧା ସକାଶେ ୨,୦୦୦ ଟଙ୍କା ପାଇଁ ୩ ମାସ ମିଆଦରେ ଏକ ସାହାଯ୍ୟକାରୀ ହୁଣ୍ଡି ପ୍ରସ୍ତୁତ କରି ୧୯୭୩ ମସିହା ଜୁନ ୧ ତାରିଖରେ ସ୍ୱୀକୃତ ନିମନ୍ତେ ଚନ୍ଦ୍ରଶେଖରଙ୍କ ନିକଟକୁ ପଠାଇଲେ । ଚନ୍ଦ୍ରଶେଖର ତାହା ସ୍ୱୀକାର କରି ଜୁନ ୨ ତାରିଖରେ ଫେରସ୍ତ ପଠାଇଲେ ।

ହରେନ୍ଦ୍ର ଜୁନ୍ ୩ ତାରିଖରେ ସେହି ହୁଣ୍ଡିଟି ନିଜ ବ୍ୟାଙ୍କରେ ଶତକଡ଼ା ୬ ହାର ବଟା ଦେଇ ଭଙ୍ଗାଇଲେ ଓ ଅର୍ଦ୍ଧେକ ଟଙ୍କା ଚନ୍ଦ୍ରଶେଖରଙ୍କୁ ପଠାଇଲେ । ମିଆଦ ପୂର୍ତ୍ତି ଦିବସର ପୂର୍ବ ଦିନ ହରେନ୍ଦ୍ର ବାକି ଅର୍ଦ୍ଧେକ ଟଙ୍କା ଚନ୍ଦ୍ରଶେଖରଙ୍କୁ ପଠାଇଲେ । ନିର୍ଦ୍ଦିଷ୍ଟ ଦିବସରେ ଚନ୍ଦ୍ରଶେଖର ହୁଣ୍ଡି ବାବଦ ଟଙ୍କା ପରିଶୋଧ କଲେ ।

ଉଭୟଙ୍କ ହିସାବ ଖାତାରେ ଉପରୋକ୍ତ ନେଣଦେଣ ସକାଶେ ରୋଜନାମା ଲେଖ ।

୧୨ । ଅଭିଜିତ୍ ୩ ମାସ ମିଆଦରେ ୨,୪୦୦ ଟଙ୍କା ସକାଶେ ଏକ ସାହାଯ୍ୟକାରୀ ହୁଣ୍ଡି ପ୍ରସ୍ତୁତ କରି ଗିରୀନ୍ଦ୍ରଙ୍କ ନିକଟକୁ ସ୍ୱୀକୃତି ନିମନ୍ତେ ପଠାଇଲେ । ଗିରୀନ୍ଦ୍ର ହୁଣ୍ଡିଟି ସ୍ୱୀକାର କରି ୧୯୭୩ ସାଲ ମାର୍ଚ୍ଚ ୫ ତାରିଖରେ ଫେରସ୍ତ ପଠାଇଲେ । ଅଭିଜିତ୍ ହୁଣ୍ଡିଟି ସେହି ତାରିଖରେ ଶତକଡ଼ା ୬ ହାର ବଟାରେ ନିଜ ବ୍ୟାଙ୍କରେ ଭଙ୍ଗାଇଲେ ଓ ଲବ୍ଧ ଅର୍ଥର ଏକ ତୃତୀୟାଂଶ ଗିରୀନ୍ଦ୍ରଙ୍କ ନିକଟକୁ ଚେକ୍ ମାଧ୍ୟମରେ ପଠାଇଲେ । ମିଆଦ ପୂର୍ତ୍ତି ଦିବସରେ ଅଭିଜିତ୍ ଅବଶିଷ୍ଟ ଟଙ୍କା ଗିରୀନ୍ଦ୍ରଙ୍କ ନିକଟକୁ ପଠାଇଲେ । ମାତ୍ର ଗିରୀନ୍ଦ୍ର ହୁଣ୍ଡି ବାବଦ ଟଙ୍କା ଦେବାକୁ ଅକ୍ଷମ ହେଲେ । ବ୍ୟାଙ୍କ ଲେଖେଇ ବାବଦ ୧୦ ଟଙ୍କା ଖର୍ଚ୍ଚ କଲେ । ଗିରୀନ୍ଦ୍ର ସେହି ତାରିଖରେ ଅଭିଜିତ୍‌ଙ୍କୁ ୧,୯୦୦ ଟଙ୍କା ସକାଶେ ଖଣ୍ଡେ ଚେକ୍ ଓ ୨୦ ଟଙ୍କା ସୁଧ ସମେତ ଅବଶିଷ୍ଟ ଦେୟ ଟଙ୍କା ସକାଶେ ପ୍ରତିଜ୍ଞା ପତ୍ର ଦେଲେ । ଅଭିଜିତ୍ ବ୍ୟାଙ୍କର ପ୍ରାପ୍ୟ ମେଣ୍ଟାଇଲେ । ଅଭିଜିତ୍ ଓ ଗିରୀନ୍ଦ୍ରଙ୍କ ହିସାବ ଖାତାରେ ରୋଜନାମା ଓ ଖତିୟାନ ହିସାବ ଲେଖ ।

୧୩ । ଯୋଗେଶ୍ୱର ନିଜର ଓ ହିମାଂଶୁଶେଖରଙ୍କର ସୁବିଧା ନିମନ୍ତେ ୩ ମାସ ମିଆଦରେ ୪,୦୦୦ ଟଙ୍କା ନିମନ୍ତେ ଏକ ସାହାଯ୍ୟକାରୀ ହୁଣ୍ଡି ପ୍ରସ୍ତୁତ କରି ୧୯୭୩ ସାଲ ଅପ୍ରେଲ ୩ ତାରିଖରେ ହିମାଂଶୁଙ୍କ ନିକଟକୁ ସ୍ୱୀକୃତି ସକାଶେ ପଠାଇଲେ । ହୁଣ୍ଡିଟି ସ୍ୱୀକୃତ ହୋଇ ଫେରସ୍ତ ଆସିବାରୁ ସେ ତାହାକୁ ଶତକଡ଼ା ୬ ହାରରେ ବଟା ଦେଇ ନିଜ ବ୍ୟାଙ୍କରେ ଭଙ୍ଗାଇଲେ ଏବଂ ଲବ୍ଧ ଅର୍ଥର ୧/୨ ଅଂଶ ହିମାଂଶୁଙ୍କ ନିକଟକୁ ଚେକ୍ ଯୋଗେ ପଠାଇଲେ । ମିଆଦ ପୂର୍ତ୍ତି ଦିବସରେ ହିମାଂଶୁ ଦେବାଳିଆ ହେଲେ । ଯୋଗେଶ୍ୱରଙ୍କୁ ୧୦ ଟଙ୍କା ଲେଖେଇ ଖର୍ଚ୍ଚ ସମେତ ବ୍ୟାଙ୍କକୁ ତାଙ୍କର ପ୍ରାପ୍ୟ ଟଙ୍କା ପରିଶୋଧ କଲେ । ମାସକ ପରେ ହିମାଂଶୁଙ୍କ ସମ୍ପତ୍ତିରୁ ଟଙ୍କା ପ୍ରତି ୨୫ ପଇସା ହାରରେ ଟଙ୍କା ମିଳିଲା ।

ଉଭୟଙ୍କ ହିସାବ ଖାତାରେ ରୋଜନାମା ଓ ଖତିୟାନ ପ୍ରସ୍ତୁତ କରି ଉପରୋକ୍ତ ନେଣଦେଣଗୁଡ଼ିକ ତଳିରେ ଲିପିବଦ୍ଧ କର ।

୧୩। ବିକ୍ରମ ଉଭୟଙ୍କର ସାହାଯ୍ୟାର୍ଥେ ଉଦ୍ଦିଷ୍ଟ ବୀରେଶ୍ୱର ୩ ମିଆଦରେ ୩,୦୦୦ ଟଙ୍କା ସକାଶେ ପ୍ରସ୍ତୁତ କରିଥିବା ଏକ ହୁଣ୍ଡି ମଇ ୩ ତାରିଖରେ ସ୍ୱୀକାର କରି ଫେରସ୍ତ ପଠାଇଲେ। ବୀରେଶ୍ୱର ସ୍ୱୀକୃତ ହୁଣ୍ଡିଟି ୩୦ ଟଙ୍କା ବଟା ଦେଇ ନିଜ ବ୍ୟାଙ୍କ୍‌ରେ ଭଙ୍ଗାଇଲେ ଓ ଲବ୍ଧ ଅର୍ଥ ଉଭୟ ସମାନ ଅଂଶରେ ଭାଗ କରିନେଲେ।

ସେହି ତାରିଖରେ ଏକା ଉଦ୍ଦେଶ୍ୟରେ ବିକ୍ରମ ବୀରେଶ୍ୱରଙ୍କ ନିକଟକୁ ୩ ମାସ ମିଆଦରେ ୪,୫୦୦ ଟଙ୍କା ସକାଶେ ଏକ ହୁଣ୍ଡି ପ୍ରସ୍ତୁତ କରି ସ୍ୱୀକୃତି ନିମନ୍ତେ ପଠାଇଲେ। ତାହା ସ୍ୱୀକୃତ ହୋଇ ଆସିବା ପରେ ବିକ୍ରମ ହୁଣ୍ଡିଟି ୪୫ ଟଙ୍କା ବଟା ଦେଇ ବ୍ୟାଙ୍କ୍‌ରେ ଭଙ୍ଗାଇଲେ ଓ ଲବ୍ଧ ଅର୍ଥରୁ ବିକ୍ରମ ୨/୩ ଅଂଶ ରଖି ଅବଶିଷ୍ଟ ଟଙ୍କା ବୀରେଶ୍ୱରଙ୍କ ନିକଟକୁ ପଠାଇଲେ।

ମିଆଦ ପୂର୍ତ୍ତି ଦିବସ ପୂର୍ବରୁ ବିକ୍ରମ ତାଙ୍କର ଦେୟ ମୋଟ ଟଙ୍କା ସକାଶେ ଖଣ୍ଡିଏ ଚେକ୍ ବୀରେଶ୍ୱରଙ୍କ ନିକଟକୁ ପଠାଇଲେ, କିନ୍ତୁ ମିଆଦ ପୂର୍ତ୍ତି ଦିବସରେ ବୀରେଶ୍ୱର ଦେବାଳିଆ ହେଲେ ଏବଂ ତାଙ୍କ ସମ୍ପତ୍ତିରୁ ଟଙ୍କା ପ୍ରତି ୫୦ ପଇସା ଅର୍ଥ ମିଳିଲା।

ଉଭୟଙ୍କ ବହିରେ ରୋଜନାମା ଲେଖ।

୧୫। ୧୯୭୨ ମସିହା ମାର୍ଚ୍ଚ ୩୧ ତାରିଖରେ ସୁବମଲ ତାଙ୍କର ଖାତକ କମଳାକାନ୍ତଙ୍କ ଉପରେ ବହୁ ଦିନରୁ ବାକି ଥିବା ୯୦୦ ଟଙ୍କା ଅନାଦେୟ ଋଣ ହିସାବକୁ ସ୍ଥାନାନ୍ତରିତ କଲେ। ୧୯୭୩ ମସିହା ଜୁନ୍ ୩୦ ତାରିଖରେ କମଳାକାନ୍ତ ତାଙ୍କ ଋଣର ପୂର୍ଣ୍ଣ ପରିଶୋଧ ରୂପେ ୫୦୦ ଟଙ୍କା ଦେଲେ।

ଜୁଲାଇ ୧ ତାରିଖରେ ସୁବମଲ କମଳାକାନ୍ତଙ୍କୁ ୧,୨୦୦ ଟଙ୍କାର ପଣ୍ୟ ବିକ୍ରୟ କଲେ। କମଳାକାନ୍ତ ଏହାର ମୂଲ୍ୟ ବାବଦ ୪୦୦ ଟଙ୍କାର ଖଣ୍ଡିଏ ଚେକ୍ ଓ ଅବଶିଷ୍ଟ ଟଙ୍କା ସକାଶେ ୨ ମାସ ମିଆଦରେ ପ୍ରସ୍ତୁତ ଏକ ପ୍ରତିଜ୍ଞାପତ୍ର ଦେଲେ। ସୁବମଲ ଏହି ପ୍ରତିଜ୍ଞା ପତ୍ରକୁ ତାଙ୍କ ବ୍ୟାଙ୍କ୍‌ରେ ୭୯୦ ଟଙ୍କାକୁ ଭଙ୍ଗାଇଲେ। ମିଆଦ ପୂର୍ତ୍ତି ଦିବସରେ ଏହି ପ୍ରତିଜ୍ଞା ପତ୍ର ଅସମ୍ମାନିତ ହେଲା ଓ ସୁବମଲଙ୍କୁ ୧୦ ଟଙ୍କା ନୋଟେଇ ଖର୍ଚ୍ଚ ସମେତ ବ୍ୟାଙ୍କ୍‌କୁ ତାଙ୍କର ଦେୟ ଟଙ୍କା ଦେବାକୁ ପଡ଼ିଲା। ତାହା ପର ଦିନ କମଳାକାନ୍ତ ନୋଟେଇ ଖର୍ଚ୍ଚ ଓ ଶତକଡ଼ା ୭ ହାରରେ ୩ ମାସର ସୁଧ ନଗଦ ଦେଲେ ଓ ଦେୟ ଟଙ୍କା ସକାଶେ ୧ ମାସ ମିଆଦରେ ପ୍ରସ୍ତୁତ ହୋଇଥିବା ଏକ ହୁଣ୍ଡି ସ୍ୱୀକାର କଲେ। ଏହି ହୁଣ୍ଡିର ମିଆଦ ପୂର୍ତ୍ତି ଦିବସରେ କମଳାକାନ୍ତ ୪୦୦ ଟଙ୍କାର ଖଣ୍ଡିଏ ଚେକ୍ ଦେଲେ ଓ ୧୦ ଟଙ୍କା

ସୁଧ ସମେତ ବଳକା ଟଙ୍କା ସକାଶେ ୩ ମାସ ମିଆଦରେ ପ୍ରସ୍ତୁତ ଏକ ନୂତନ ହୁଣ୍ଡି ସ୍ୱୀକାର କଲେ । ୧୯୬୪ ମସିହା ଜାନୁୟାରୀ ୧ ତାରଖରେ କମଳାକାନ୍ତ ଦେବାଳିଆ ହେଲେ ଓ ତାଙ୍କ ସମ୍ପତ୍ତିରୁ ଟଙ୍କା ପ୍ରତି ୫୦ ପଇସା ମିଳିଲା ।

ଉପରୋକ୍ତ ନେଣଦେଣ ସକାଶେ ସୁବମଲଙ୍କ ବହିରେ ରୋଜନାମା ଓ ପ୍ରାପ୍ୟ ହୁଣ୍ଡି ହିସାବ ପ୍ରସ୍ତୁତ କର ।

୧୬ । ବିଶ୍ୱଜିତ୍ ରମନ ରାଓଙ୍କଠାରେ ୬,୦୦୦ ଟଙ୍କା ସକାଶେ ଋଣୀ ଥିଲେ । ତେଣୁ ବିଶ୍ୱଜିତ୍ ଉକ୍ତ ଟଙ୍କା ସକାଶେ ୧୯୬୨ ମସିହା ଜୁନ୍ ୧ ତାରିଖରେ ୩ ମାସ ମିଆଦରେ ଏକ ପ୍ରତିଜ୍ଞା ପତ୍ର ପ୍ରସ୍ତୁତ କରି ରାଓଙ୍କ ନିକଟକୁ ପଠାଇଲେ । ମିଆଦ ପୂର୍ତ୍ତି ଅବସରେ ବିଶ୍ୱଜିତ୍ ପ୍ରତିଜ୍ଞା ପତ୍ର ବାବଦ ଟଙ୍କା ଦେବାକୁ ଅକ୍ଷମ ହେବେ ଜାଣିପାରି ରମନ୍ ରାଓଙ୍କୁ ୩୦୦ ଟଙ୍କା ଦେବାପାଇଁ ଅନୁରୋଧ କଲେ । ରମନ ରାଓ ଏଥିରେ ସମ୍ମତ ହେଲେ ଏବଂ ୨ ମାସ ମିଆଦରେ ଶତକଡ଼ା ୬ ହାର ସୁଧ ସମେତ ମୋଟ ପ୍ରାପ୍ୟ ସକାଶେ ଏକ ହୁଣ୍ଡି ପ୍ରସ୍ତୁତ କରି ବିଶ୍ୱଜିତଙ୍କୁ ସ୍ୱୀକୃତି ନିମନ୍ତେ ଦେଲେ । ବିଶ୍ୱଜିତ୍ ଏହି ହୁଣ୍ଡିଟି ସ୍ୱୀକାର କରିବାରୁ ରମନ ରାଓ ଏହାକୁ ନିଜ ବ୍ୟାଙ୍କରେ ଶତକଡ଼ା ୬ ହାର ବଟା ଦେଇ ଭଙ୍ଗାଇଲେ । ଏହି ହୁଣ୍ଡିର ମିଆଦ ପୂର୍ତ୍ତି ଅବସରେ ବିଶ୍ୱଜିତ୍ ପୁଣି ଅସୁବିଧାରେ ପଡ଼ିବାରୁ ହୁଣ୍ଡି ସ୍ୱୀକାର କରିବା ନିମନ୍ତେ ଆବଶ୍ୟକ ୨,୦୦୦ ଟଙ୍କା ଦେବା ନିମନ୍ତେ ରମନ ରାଓଙ୍କୁ ପୁଣି ଅନୁରୋଧ ଜଣାଇଲେ ଓ ଏଥି ସକାଶେ ଶତକଡ଼ା ୮ ହାର ସୁଧ ସମେତ ମୋଟ ପ୍ରାପ୍ୟ ଟଙ୍କା ସକାଶେ ଅନ୍ୟ ଏକ ହୁଣ୍ଡି ସ୍ୱୀକାର କରିବାକୁ ସେ ପ୍ରସ୍ତୁତ ଥିଲେ । ରମନ ରାଓ ଏ ସର୍ତ୍ତରେ ସମ୍ମତ ହେଲେ ନାହିଁ ମାତ୍ର ୨,୦୦୦ ଟଙ୍କା ସକାଶେ ୨ ମାସ ମିଆଦରେ ଏକ ପ୍ରତିଜ୍ଞା ପତ୍ର ପ୍ରସ୍ତୁତ କରି ବିଶ୍ୱଜିତଙ୍କୁ ଦେଲେ । ବିଶ୍ୱଜିତ୍ ଏହି ପ୍ରତିଜ୍ଞା ପତ୍ରକୁ ନିଜ ବ୍ୟାଙ୍କରେ ଶତକଡ଼ା ୬ ହାରରେ ବଟା ଦେଇ ଭଙ୍ଗାଇଲେ ଓ ହୁଣ୍ଡି ବାବଦ ଟଙ୍କା ପରିଶୋଧ କଲେ । ଡିସେମ୍ବର ୩୧ ତାରିଖରେ ବିଶ୍ୱଜିତ୍ ଦେବାଳିଆ ହେଲେ । ୧୯୬୩ ମସିହା ଜୁନ୍ ୩୦ ତାରିଖରେ ତାଙ୍କ ସମ୍ପତ୍ତିରୁ ୬୦% ହାରରେ ଋଣ ବାବଦ ଟଙ୍କା ମିଳିଲା ।

ଉପରୋକ୍ତ ନେଣଦେଣ ନିମନ୍ତେ ଉଭୟଙ୍କ ବହିରେ ରୋଜନାମା ଲେଖ ।

୧୭ । ନିମ୍ନଲିଖିତ ନେଣଦେଣ ଗୁଡ଼ିକ ଗିରିଜାଶଙ୍କରଙ୍କ ହିସାବ ବହିରେ ରୋଜନାମାଭୁକ୍ତ କର :

(କ) ମହିମାଶଙ୍କର ଲେଖିଥିବା ୧,୫୦୦ ଟଙ୍କା ନିମନ୍ତେ ଏକ ହୁଣ୍ଡି ଗିରିଜାଶଙ୍କର ସ୍ୱୀକାର କରିଥିଲେ । ସମସ୍ତ ଟଙ୍କା ପରିଶୋଧ କରିବାକୁ ଅକ୍ଷମ ହେବାରୁ

ଗିରିଜା ଶଙ୍କର ୫୦୦ ଟଙ୍କା ସକାଶେ ଖଣ୍ଡିଏ ଚେକ୍ ଦେଲେ ଓ ୧୦ ଟଙ୍କା ସୁଧ ସମେତ ବାକି ପ୍ରାପ୍ୟ ଟଙ୍କା ସକାଶେ ମନ୍ମଥଙ୍କର ପ୍ରସ୍ତୁତ କରିଥିବା ଏକ ନୂତନ ହୁଣ୍ଡି ସ୍ୱୀକାର କଲେ ।

(ଖ) ଜୀବନ ମହାନ୍ତି ସ୍ୱୀକାର କରିଥିବା ୩,୨୦୦ ଟଙ୍କା ସକାଶେ ଏକ ହୁଣ୍ଡିକୁ ଗିରିଜାଶଙ୍କର ବାମନ ରାଓଙ୍କୁ ହସ୍ତାନ୍ତର କରିଥିଲେ । ସେହି ହୁଣ୍ଡିଟି ଅସମ୍ମାନିତ ହୋଇଛି ଓ ନୋଟେରି ଖର୍ଚ୍ଚ ବାବଦ ୧୫ ଟଙ୍କା ବ୍ୟୟ କରିଛନ୍ତି ବୋଲି ବାମନ ରାଓ ଜଣାଇଲେ । ଗିରିଜାଶଙ୍କରଙ୍କୁ ବାମନ ରାଓଙ୍କ ପ୍ରାପ୍ୟ ଚେକ୍ ଆକାରରେ ଦେବାକୁ ପଡ଼ିଲା ।

(ଗ) ମୁକୁନ୍ଦ ସାହୁ ସ୍ୱୀକାର କରିଥିବା ୧,୨୦୦ ଟଙ୍କାର ଏକ ହୁଣ୍ଡି ବାବଦ ଟଙ୍କା ସେ ମିଆଦ ପୂର୍ତ୍ତି ଅବସରେ ୧ ମାସ ପୂର୍ବରୁ ଚେକ୍ ମାଧ୍ୟମରେ ପରିଶୋଧ କଲେ ଓ ଗିରିଜାଶଙ୍କର ତାଙ୍କୁ ୧୦ ଟଙ୍କା ରିହାତି ଦେଲେ ।

(ଘ) ଗିରିଜାଶଙ୍କର ୧,୫୦୦ ଟଙ୍କା ନିମନ୍ତେ ପ୍ୟାରୀଲାଲ ପ୍ରସ୍ତୁତ କରିଥିବା ହୁଣ୍ଡି ସ୍ୱୀକାର କରିଥିଲେ । ମାଧବାନନ୍ଦଙ୍କଠାରୁ ସେହି ପରିମାଣ ଟଙ୍କା ସକାଶେ ଏକ ହୁଣ୍ଡିର ସ୍ୱୀକୃତି ପାଇବାରୁ ସେ ତାହା ପ୍ୟାରୀଲାଲଙ୍କୁ ହସ୍ତାନ୍ତର କଲେ ।

(ଙ) ଦେଓନାରାୟଣ ୨,୫୦୦ ଟଙ୍କା ନିମନ୍ତେ ପ୍ରସ୍ତୁତ କରିଥିବା ହୁଣ୍ଡି ଗିରିଜାଶଙ୍କର ପୂର୍ବରୁ ସ୍ୱୀକାର କରିଥିଲେ । ମିଆଦ ପୂର୍ତ୍ତି ଅବସରେ ଗିରିଜାଶଙ୍କର ୧,୫୧୫ ଟଙ୍କା ଚେକ୍ ଆକାରରେ ଦେଲେ ଓ ଅବଶିଷ୍ଟ ଦେୟ ସକାଶେ ଏକ ନୂତନ ହୁଣ୍ଡି ସ୍ୱୀକାର କଲେ । ୧୫ ଟଙ୍କା ସୁଧ ବାବଦ ଦିଆଯାଇଛି ।

୧୮ । ୧୯୭୩ ମସିହା ଜାନୁଆରୀ ୧ ତାରିଖରେ ଧନେଶ ଦେବେଶଙ୍କୁ ୨,୦୦୦ ଟଙ୍କା ମୂଲ୍ୟର ପଣ୍ୟ ଧାରରେ ବିକ୍ରୟ କଲେ ଏବଂ ସେହି ପରିମାଣର ଟଙ୍କା ସକାଶେ ୩ ମାସ ମିଆଦରେ ଏକ ହୁଣ୍ଡି କାଟିଲେ । ଦେବେଶ ହୁଣ୍ଡିଟି ସ୍ୱୀକାର କରି ସେହି ଦିନ ଫେରସ୍ତ ପଠାଇଲେ । ହୁଣ୍ଡିଟି ୧୯୬୦ ଟଙ୍କା ସକାଶେ ବ୍ୟାଙ୍କରେ ଭଙ୍ଗାଇ ଦିଆଗଲା । ନିର୍ଦ୍ଧିଷ୍ଟ ଅବସରରେ ଦେବେଶ ହୁଣ୍ଡି ବାବଦ ଟଙ୍କା ଦେବାକୁ ଅକ୍ଷମ ବୋଲି ଧନେଶଙ୍କୁ ଜଣାଇଲେ, ନୋଟେରି ଖର୍ଚ୍ଚ ବାବଦ ୪ ଟଙ୍କା ଦେଲେ ଏବଂ ହୁଣ୍ଡି ବାବଦ ଟଙ୍କା ବ୍ୟାଙ୍କକୁ ଦେବାକୁ ଅନୁରୋଧ ଜଣାଇଲେ । ଧନେଶ ହୁଣ୍ଡି ବାବଦ ଟଙ୍କା ବ୍ୟାଙ୍କକୁ ଦେଲେ । ତାହା ପରଦିନ ଦେବେଶ ତାଙ୍କର ଦେୟ ବାବଦ ଟଙ୍କା ଓ ତହିଁର ଶତକଡ଼ା ୬% ହାରରେ ସୁଧ ସମେତ ମୋଟ

ଦେୟ ଟଙ୍କା ସକାଶେ ୨ ମାସ ମିଆଦରେ ପ୍ରସ୍ତୁତ ହୋଇଥିବା ଏକ ନୂତନ ହୁଣ୍ଡି ସ୍ୱୀକାର କଲେ । ଯେତେବେଳେ ଏହି ହୁଣ୍ଡି ବାବଦ ଟଙ୍କା ଦେବାର ନିର୍ଦ୍ଦିଷ୍ଟ ଦିବସ ଆସିଲା ସେତେବେଳେ ସେ ନଗଦ ୧,୦୦୦ ଟଙ୍କା ଦେଲେ ଓ ୧,୦୧୫ ଟଙ୍କା ସକାଶେ ୩ ମାସ ମିଆଦରେ ପ୍ରସ୍ତୁତ ହୋଇଥିବା ଏକ ନୂତନ ହୁଣ୍ଡି ସ୍ୱୀକାର କଲେ । ଏହି ଶେଷ ହୁଣ୍ଡିର ମିଆଦ ପୂର୍ତ୍ତି ଦିବସ ପୂର୍ବରୁ ଦେବେନ ଦେବାଳିଆ ହେଲେ ଓ ତାଙ୍କ ସମ୍ପତ୍ତିରୁ ଟଙ୍କା ପ୍ରତି ୨୫ ପଇସା ହାରରେ ୧୯୬୩ ମସିହା ଡିସେମ୍ବର ୧ ତାରିଖରେ ପ୍ରଥମ ଓ ଶେଷ କିସ୍ତି ବାବଦ ଟଙ୍କା ମିଳିଲା ।

ଉପରୋକ୍ତ ନେଣଦେଣଗୁଡ଼ିକ ସକାଶେ ଧନେଶଙ୍କ ହିସାବ ଖାତାରେ ରୋଜନାମା ଲେଖ ।

---

# ସପ୍ତମ ପରିଚ୍ଛେଦ

## ଚାଲାଣୀ କାରବାର, ଯୌଥ ଉଦ୍‌ଯୋଗ, ହାରାହାରି ପରିଶୋଧ ଦିବସ ଓ ଚଳନ୍ତି ହିସାବ

ଅନେକ ସମୟରେ ପଣ୍ୟ ଉତ୍ପାଦନକାରୀ ଅଥବା ମୋଟା ବେପାରୀ ଅନ୍ୟ ସହରରେ ପଣ୍ୟ ବିକ୍ରୟ କରିବା ନିମନ୍ତେ ପୂର୍ବ ଚୁକ୍ତି ଅନୁଯାୟୀ ନିଜ ଦାୟିତ୍ୱରେ ପ୍ରତିନିଧି ନିଯୁକ୍ତ କରି ତାଙ୍କ ନିକଟକୁ ମାଲ ଚାଲାଣ କରନ୍ତି । ସେହି ପ୍ରତିନିଧି ପଣ୍ୟକୁ ସର୍ବୋଚ୍ଚ ମୂଲ୍ୟରେ ବିକ୍ରୟ କରନ୍ତି ଓ ସେଥି ନିମନ୍ତେ ବିକ୍ରୀତ ପଣ୍ୟର ମୋଟ ମୂଲ୍ୟ ଉପରେ ପୂର୍ବ ଚୁକ୍ତି ଅନୁଯାୟୀ ପାରିଶ୍ରମିକ ବାବଦ କମିଶନ ପାଆନ୍ତି । ଏହାକୁ ଚାଲାଣୀ କାରବାର କୁହାଯାଏ ।

ଯେଉଁ ବ୍ୟକ୍ତି ପଣ୍ୟ ଚାଲାଣ କରନ୍ତି ତାଙ୍କୁ ଚାଲାଣ-ପ୍ରେରକ କୁହାଯାଏ ଓ ଯାହାଙ୍କ ନିକଟକୁ ପଣ୍ୟ ଚାଲାଣ କରାଯାଏ ତାଙ୍କୁ ଚାଲାଣ ପ୍ରାପକ କୁହାଯାଏ ।

ଚାଲାଣ-ପ୍ରାପକ ଯଦି ଚାଲାଣୀ ପଣ୍ୟକୁ ରେଳ କମ୍ପାନୀ ଜାହାଜରୁ ଖଲାସ କରି ନିଜ ଗୋଦାମକୁ ଆଣିବା ସକାଶେ ଗାଡ଼ିଭଡ଼ା ବାବଦ କିଛି ଅର୍ଥ ବ୍ୟୟ କରନ୍ତି ଅଥବା ପଣ୍ୟ ଗୋଦାମରେ ସାଇତି ରଖିବା ନିମନ୍ତେ ଗୋଦାମ ଭଡ଼ା ସ୍ୱରୂପ କିଛି ବ୍ୟୟ କରନ୍ତି ଅଥବା ପଣ୍ୟ ବିକ୍ରୟ କରିବା ନିମନ୍ତେ କୌଣସି ବିକ୍ରୟକାରୀ ନିଯୁକ୍ତ କରନ୍ତି ତାହାହେଲେ ଚାଲାଣ-ପ୍ରେରକଙ୍କୁ ଏ ସମସ୍ତ ବ୍ୟୟ ବହନ କରିବାକୁ ପଡ଼େ ।

ପ୍ରାପକ ପଣ୍ୟ ବିକ୍ରୟାନ୍ତେ ପ୍ରେରକଙ୍କୁ ବିକ୍ରୟର ବିବରଣ ପଠାନ୍ତି ଏବଂ ତହିଁରେ ସେ କେତେ ପରିମାଣର ପଣ୍ୟ କେଉଁ ଦରରେ ବିକ୍ରୟ କରିଛନ୍ତି ତାହା ଉଲ୍ଲେଖ କରନ୍ତି ଓ ପଣ୍ୟ ପାଇବାଠାରୁ ବିକ୍ରି ଶେଷ ପର୍ଯ୍ୟନ୍ତ ସେ ଏହି ବାବଦରେ ଯାହା ବ୍ୟୟ କରିଛନ୍ତି ତାହା ବିକ୍ରୟ ଲବ୍ଧ ମୋଟ ପରିମାଣରୁ ବାଦ ଦେଇ ଏବଂ ନିଜର କମିଶନ ବାଦ ଦେଇ ଅବଶିଷ୍ଟ ଟଙ୍କା ପ୍ରେରକଙ୍କ ନିକଟକୁ ସାଧାରଣତଃ ବ୍ୟାଙ୍କ୍ ଡ୍ରାଫଟ୍ ଆକାରରେ ପଠାଇ ଦିଅନ୍ତି । ଅନେକ ସମୟରେ ସେ ଚାଲାଣୀ ପଣ୍ୟ ପାଇବା ମାତ୍ରେ

ଅଗ୍ରିମ ସ୍ୱରୂପ କିଛି ଟଙ୍କା ବ୍ୟାଙ୍କ୍ ଡ୍ରାଫଟ୍ ମାଧ୍ୟମରେ ପ୍ରେରକଙ୍କୁ ପଠାଇ ଦିଅନ୍ତି କେତେକ ସମୟରେ ପ୍ରେରକ ଏହି ଅଗ୍ରିମ ଟଙ୍କା ସକାଶେ ପ୍ରାପକଙ୍କ ଉପରେ ଏକ ହୁଣ୍ଡି କାଟନ୍ତି ଓ ପ୍ରାପକ ତାହା ସ୍ୱୀକାର କରନ୍ତି ।

## ଚାଲାଣ ଓ ବିକ୍ରୟ ମଧ୍ୟରେ ପାର୍ଥକ୍ୟ :

ଏହି ଚାଲାଣି କାରବାର ଆପାତ ଦୃଷ୍ଟିରୁ ଯଦିଓ ପଣ୍ୟ ବିକ୍ରୟ ସଦୃଶ ପ୍ରତୀୟମାନ ହୁଏ ତଥାପି ଏହି ଦୁଇଟି ମଧ୍ୟରେ ଯଥେଷ୍ଟ ପାର୍ଥକ୍ୟ ରହିଛି । ଏହି ପାର୍ଥକ୍ୟଗୁଡ଼ିକ ନିମ୍ନରେ ବର୍ଣ୍ଣିତ ହେଲା ।

(୧) ପଣ୍ୟ-ବିକ୍ରେତା କ୍ରେତାଙ୍କୁ ପଣ୍ୟ ବିକ୍ରୟ କରିବା ସଙ୍ଗେ ସଙ୍ଗେ ତାଙ୍କର ପଣ୍ୟ ଉପରେ ଥିବା ସ୍ୱତ୍ୱ କ୍ରେତାଙ୍କୁ ହସ୍ତାନ୍ତରିତ ହୁଏ, ଅର୍ଥାତ୍ କ୍ରେତା ସେହି ପଣ୍ୟର ମାଲିକ ହୋଇଯାନ୍ତି ଏବଂ ସେ ତାଙ୍କର ସ୍ୱେଚ୍ଛାରେ ତାହାକୁ ପୁନର୍ବିକ୍ରୟ କରିପାରନ୍ତି, ବନ୍ଧକ ଦେଇପାରନ୍ତି ଓ ହସ୍ତାନ୍ତର ଆଦି କରିପାରନ୍ତି । କିନ୍ତୁ ପଣ୍ୟ ଚାଲାଣ କ୍ଷେତ୍ରରେ ପଣ୍ୟର ସ୍ୱତ୍ୱ ପ୍ରେରକଙ୍କଠାରେ ନ୍ୟସ୍ତ ଥାଏ । ପ୍ରାପକଙ୍କ ଅଧୀନରେ ପଣ୍ୟ ଥିଲେ ମଧ୍ୟ ସେ ତାହାର ମାଲିକ ନୁହନ୍ତି ।

(୨) କ୍ରେତା ଯଦି ଉଧାରରେ ପଣ୍ୟ କ୍ରୟ କରନ୍ତି ତାହାହେଲେ ସେ ପଣ୍ୟର ମୂଲ୍ୟ ସକାଶେ ବିକ୍ରେତାଙ୍କଠାରେ ଦାୟୀ ବା ଋଣୀ ରହନ୍ତି ଏବଂ ବିକ୍ରେତା ତାଙ୍କର ଋଣଦାତା ବା ମହାଜନ ହୁଅନ୍ତି । କିନ୍ତୁ ଚାଲାଣ କ୍ଷେତ୍ରରେ ପ୍ରେରକ ଓ ପ୍ରାପକଙ୍କର ସମ୍ବନ୍ଧ ମହାଜନ ଓ ଖାତକ ମଧ୍ୟରେ ଥିବା ସମ୍ବନ୍ଧ ନ ହୋଇ ପ୍ରତିନିଧି ନିଯୋକ୍ତା ଓ ପ୍ରତିନିଧିଙ୍କ ମଧ୍ୟରେ ଥିବା ସମ୍ବନ୍ଧ ହୁଏ । ଏଠାରେ ପ୍ରାପକ ପ୍ରେରକଙ୍କ ପଣ୍ୟର ନ୍ୟାସୀ କହିଲେ ଅତ୍ୟୁକ୍ତି ହେବ ନାହିଁ ।

(୩) କ୍ରେତା ବିକ୍ରେତାଙ୍କ ନିକଟରେ ପଣ୍ୟର ମୂଲ୍ୟ ନିମନ୍ତେ ଦାୟୀ ହୁଅନ୍ତି କିନ୍ତୁ ପ୍ରାପକ ପ୍ରେରକଙ୍କ ଠାରେ ପଣ୍ୟର ବିକ୍ରୟ ଲବ୍ଧ ଅର୍ଥ ପାଇଁ ଦାୟୀ ହୁଅନ୍ତି ।

(୪) ପଣ୍ୟ କ୍ରୟ କରିବା ପରେ ପଣ୍ୟ ସଂକ୍ରାନ୍ତ ସମସ୍ତ ଝୁଙ୍କି କ୍ରେତାଙ୍କର, ସେ ତାହା ବିକ୍ରେତାଙ୍କୁ ହସ୍ତାନ୍ତର କରି ପାରିବେ ନାହିଁ । ଚାଲାଣ କ୍ଷେତ୍ରରେ ପ୍ରେରିତ ପଣ୍ୟ ସଂକ୍ରାନ୍ତ ସମସ୍ତ ଝୁଙ୍କି ପ୍ରେରକଙ୍କର । ପ୍ରେରିତ ପଣ୍ୟର ବିକ୍ରୟରେ ଲାଭ ବା କ୍ଷତି ଯାହାହେଉ ନା କାହିଁକି ତାହା ପ୍ରେରକ ଭୋଗ କରିବେ କିମ୍ବା ସହିବେ । ପ୍ରାପକ କେବଳ ତାଙ୍କର କମିଶନ ପାଇବାକୁ ହକଦାର, ଲାଭରେ ତାଙ୍କର କୌଣସି ଅଂଶ ନାହିଁ କିମ୍ବା ସେ କୌଣସି କ୍ଷତି ମଧ୍ୟ ସହିବେ ନାହିଁ ।

(୫) ପୂର୍ବରୁ ଚୁକ୍ତି ନ ଥିଲେ କ୍ରେତା ତାଙ୍କ ଦ୍ୱାରା ଅସ୍ୱୀକୃତ ବଳକା ପଣ୍ୟ ବିକ୍ରେତାଙ୍କୁ ଫେରସ୍ତ ନେବା ପାଇଁ ଦାବୀ କରି ପାରିବେ ନାହିଁ । କିନ୍ତୁ ଚାଲାଣ କ୍ଷେତ୍ରରେ ପ୍ରାପକ ଅସ୍ୱୀକୃତ ପଣ୍ୟ ପ୍ରେରକଙ୍କୁ ଫେରସ୍ତ ଦିଅନ୍ତି । ଏଥି ନିମନ୍ତେ ସ୍ୱତନ୍ତ୍ର ଚୁକ୍ତିର କୌଣସି ଆବଶ୍ୟକତା ନାହିଁ । ଏହା ସ୍ୱତଃ ସିଦ୍ଧ ।

(୬) ବିକ୍ରେତା କ୍ରେତାଙ୍କୁ ପଣ୍ୟ ବିକ୍ରୟ କଲା ପରେ ତାଙ୍କଠାରୁ ପଣ୍ୟ ଫେରସ୍ତ ଆଣିବା ସକାଶେ ଦାବୀ କରିପାରିବେ ନାହିଁ କିନ୍ତୁ ପ୍ରେରକ ପ୍ରାପକଙ୍କଠାରୁ ଯେ କୌଣସି ସମୟରେ ପ୍ରେରିତ ପଣ୍ୟ ଫେରସ୍ତ ନେବାକୁ ଦାବୀ କରିପାରନ୍ତି ।

(୭) ସାଧାରଣତଃ କ୍ରେତାଙ୍କଠାରୁ ପଣ୍ୟ ଯୋଗାଇବା ନିମନ୍ତେ ଆଦେଶ ପାଇବା ପରେ ବିକ୍ରେତା ପଣ୍ୟ ସରବରାହ କରନ୍ତି ମାତ୍ର ଚାଲାଣ କ୍ଷେତ୍ରରେ ପ୍ରେରକ ପ୍ରାପକଙ୍କଠାରୁ କୌଣସି ଲିଖିତ ଆଦେଶ ନ ପାଇ ମଧ୍ୟ ପଣ୍ୟ ଚାଲାଣ କରିପାରନ୍ତି ।

## ନମୁନା ଚାଲାଣ : (ପ୍ରୋଫର୍ମା ଇନଭଏସ୍)

ପୂର୍ବରୁ କୁହାଯାଇଛି ଯେ ବିକ୍ରେତା ଧାରରେ ପଣ୍ୟ ବିକ୍ରୟ କଲେ ପଣ୍ୟ ସହିତ କ୍ରେତାଙ୍କୁ ପଣ୍ୟର ବିବରଣୀ, ପରିମାଣ, ମୂଲ୍ୟ ପ୍ରଭୃତି ଲିପିବଦ୍ଧ କରି ଏକ ଚାଲାଣୀ ପ୍ରେରଣ କରନ୍ତି । ଚାଲାଣୀ କାରବାରରେ ମଧ୍ୟ ପ୍ରେରକ ପ୍ରାପକଙ୍କ ନିକଟକୁ ଏକ ଚାଲାଣ ପଠାନ୍ତି । ସେଥିରେ ମଧ୍ୟ ପଣ୍ୟର ପୂର୍ଣ୍ଣ ବିବରଣ, ପରିମାଣ, ମୂଲ୍ୟ ପ୍ରଭୃତି ଲିପିବଦ୍ଧ କରାଯାଇଥାଏ । ଏହି ଚାଲାଣକୁ ନମୁନା ଚାଲାଣ କୁହାଯାଏ । ଏହାକୁ ନମୁନା ଚାଲାଣ କହିବାର ମୂଳ କାରଣ ହେଉଛି ଏହା ଯେ ଏହି ଚାଲାଣରେ ଲିଖିତ ପଣ୍ୟର ଦର ଅନୁଯାୟୀ ପଣ୍ୟ ବିକ୍ରୟ କରିବା ନିମନ୍ତେ ପ୍ରାପକ ସର୍ବଦା ଦାୟୀ ନୁହଁନ୍ତି । ସେ ବଜାରର ଗତିପ୍ରକୃତି ପ୍ରତି ଦୃଷ୍ଟି ରଖି ପ୍ରେରିତ ପଣ୍ୟ ବିକ୍ରୟ କରନ୍ତି । ସମସ୍ତ ସମୟରେ ବିକ୍ରୟ ମୂଲ୍ୟ ନମୁନା ଚାଲାଣରେ ଉକ୍ତ ମୂଲ୍ୟଠାରୁ ଅଧିକ ହୋଇପାରେ ଅଥବା ଊଣା ମଧ୍ୟ ହୋଇପାରେ । ପ୍ରାପକ କେଉଁ ଦରରେ ପଣ୍ୟ ବିକ୍ରୟ କରିବେ ତାହା ସମ୍ପୂର୍ଣ୍ଣ ରୂପେ ବଜାରର ପରିସ୍ଥିତି ଏବଂ ତାଙ୍କର ବିବେଚନା ଉପରେ ନିର୍ଭର କରେ । ସେ ଯଦି ନମୁନା ଚାଲାଣରେ ପ୍ରଦତ୍ତ ମୂଲ୍ୟଠାରୁ ଊଣା ମୂଲ୍ୟରେ ପଣ୍ୟ ବିକ୍ରୟ କରି ଥାଆନ୍ତି ତାହାହେଲେ ମଧ୍ୟ ଯେ ପର୍ଯ୍ୟନ୍ତ ସେ ଅସାଧୁ ଆଚରଣ କରି ନାହାଁନ୍ତି ସେ ପର୍ଯ୍ୟନ୍ତ ତାଙ୍କ ବିରୁଦ୍ଧରେ କୌଣସି ଆଇନଗତ ବ୍ୟବସ୍ଥା ନିଆଯାଇ ପାରିବ ନାହିଁ । ଯେହେତୁ ଏହି ଚାଲାଣ ଲିଖିତ ମୂଲ୍ୟ ଅନୁଯାୟୀ ପଣ୍ୟ ବିକ୍ରୟ କରିବାକୁ ପ୍ରାପକ ବାଧ୍ୟ ନୁହଁନ୍ତି ତେଣୁ ଏହାକୁ ନମୁନା ଚାଲାଣ କୁହାଯାଏ । ପ୍ରାପକଙ୍କୁ ପଣ୍ୟର ନ୍ୟାଯ୍ୟ ମୂଲ୍ୟ ବିଷୟରେ ଅବହିତ କରିବା ନିମନ୍ତେ କେବଳ ଏହି ମୂଲ୍ୟ ଦିଆଯାଇଥାଏ । ଚାଲାଣର ଏକ ନମୁନା ନିମ୍ନରେ ପ୍ରଦତ୍ତ ହେଲା ।

## ନମୁନା ଚାଲାଣ

କଲିକତାର ମେସର୍ସ ମିତ୍ର ଏଣ୍ଡ କୋ: ଙ୍କ ନିଜ ହିସାବ ଓ ଦାୟିତ୍ୱରେ ମାଲ-ଗାଡ଼ିରେ କଟକର ପୁଷ୍ଟି ବ୍ରଦାର୍ସଙ୍କ ନିକଟକୁ ପ୍ରେରିତ ମାଲର ଚାଲାଣ ।
କଲିକତା

| ବ୍ୟାପାରିକ ଚିହ୍ନ | | ଟଙ୍କା | ଟଙ୍କା |
|---|---|---|---|
| ଏମ୍ ଏଣ୍ଡ କୋ, | ପ୍ରତି ଖଣ୍ଡ ୨୫ ଟଙ୍କା ଦରରେ ୪୦୦ ଖଣ୍ଡ ଶାନ୍ତିପୁରୀ ତନ୍ତ ଶାଢ଼ୀ | | ୧୦,୦୦୦ |
| ୪୦୦ | ଯୁକ୍ତ ବ୍ୟୟ : | | |
| | ଗାଡ଼ି ଭଡ଼ା | ୩୫ | |
| | ରେଳ ଭଡ଼ା | ୧୩୫ | |
| | ବୀମା | ୨୫ | |
| | ଅନ୍ୟାନ୍ୟ ଖର୍ଚ୍ଚ | ୨୦ | ୨୧୫ |
| | | | ୧୦୨.୧୫ |

କଲିକତା
୨ । ୫ । ୧୯୭୩

ଭୁଲ ଭ୍ରାନ୍ତି ପରେ ସଂଶୋଧନୀୟ
ମିତ୍ର ଏଣ୍ଡ କୋ.

## ବିକ୍ରୟ ବିବରଣ : (ଏକାଉଣ୍ଟ ସେଲ୍)

ଚାଲାଣୀ ମାଲର ବିକ୍ରୟ ଶେଷ ହେଲେ ଅଥବା ନିର୍ଦ୍ଦିଷ୍ଟ କାଳ ଅତିକ୍ରାନ୍ତ ହେଲେ ମାଲ ପ୍ରାପକ ପ୍ରେରକଙ୍କ ନିକଟକୁ ବିକ୍ରୟ ସଂକ୍ରାନ୍ତ ଏକ ବିବରଣୀ ପ୍ରେରଣ କରନ୍ତି । ଏଥିରେ ବନ୍ଦର କିମ୍ବା ରେଳ ଷ୍ଟେସନ ଠାରୁ ପ୍ରାପକଙ୍କ ଗୋଦାମ ଘର ପର୍ଯ୍ୟନ୍ତ ସେ କେତେ ବ୍ୟୟ କରିଛନ୍ତି ଏବଂ ଗୋଦାମ ଭଡ଼ା ଓ ମାଲ ବିକ୍ରୟ କରିବା ସଂକ୍ରାନ୍ତରେ ସେ ଯାହା କିଛି ବ୍ୟୟ କରିଥିବେ ତାହା ତହିଁରେ ଲିପିବଦ୍ଧ କରାଯାଇ ଥାଏ । ସେ କେତେ ମାଲ କେତେ ଦରରେ ବିକ୍ରୟ କରିଛନ୍ତି ତହିଁର ସବିଶେଷ ବିବରଣୀ ମଧ୍ୟ ଏଥିରେ ଲେଖାଥାଏ । ମୋଟ ବିକ୍ରୟ ଲବ୍ଧ ଅର୍ଥରୁ ସେ ତୁଲାଇଥିବା ସମସ୍ତ ବ୍ୟୟ ଓ ନିର୍ଦ୍ଦିଷ୍ଟ ହାରରେ ତାଙ୍କର କମିଶନ ବାଦ ଦେଇ ବଳକା ଅର୍ଥ ସେ କିପରି ଭାବରେ ପ୍ରେରକଙ୍କ ନିକଟକୁ ପ୍ରେରଣ କରିଛନ୍ତି ସେ ବିଷୟ ମଧ୍ୟ ତହିଁରେ ଉଲ୍ଲେଖ କରାଯାଏ । ଯଦି ପ୍ରାପକ ପୂର୍ବରୁ ପ୍ରେରକଙ୍କ ନିକଟକୁ କିଛି ଟଙ୍କା ଅଗ୍ରିମ ପଠାଇ ଥାଆନ୍ତି ତାହାହେଲେ ସେ ତାହା ମୋଟ ବିକ୍ରୟ ଲବ୍ଧ ଅର୍ଥରୁ ବାଦ୍ ଦିଅନ୍ତି । ଏହାର ଏକ ନମୁନା ନିମ୍ନରେ ପ୍ରଦତ୍ତ ହେଲା ।

## ବିକ୍ରୟ ବିବରଣ

କଲିକତାର ମେସର୍ସ ମିତ୍ର ଏଣ୍ଡ କୋ: ଙ୍କ ହିସାବ ଓ ଦାୟିତ୍ୱରେ ମାଲ ଗାଡ଼ିରେ ପ୍ରେରିତ ଓ କଟକର ସୃଷ୍ଟି ବ୍ରଦାସଙ୍କ ଦ୍ୱାରା ବିକ୍ରୀତ ଚାଲାଣୀ ଶାନ୍ତିପୁର ତନ୍ତ ଶାଢ଼ୀ ବିକ୍ରୟ ହିସାବ।

| | | ଟଙ୍କା | ଟଙ୍କା |
|---|---|---|---|
| ବ୍ୟାପାରିକ | ୧୦୦ ଖଣ୍ଡ ଶାଢ଼ୀ ପ୍ରତି ଖଣ୍ଡ ୩୫ ଟଙ୍କା ଦରରେ | ୩,୫୦୦ | |
| ମିତ୍ର | ୧୦୦ ଖଣ୍ଡ ଶାଢ଼ୀ ପ୍ରତି ଖଣ୍ଡ ୩୦ ଟଙ୍କା ଦରରେ | ୩,୦୦୦ | |
| ଏସ୍ ଏଣ୍ଡ କୋ | ୧୫୦ ଖଣ୍ଡ ଶାଢ଼ୀ ପ୍ରତି ଖଣ୍ଡ ୨୮ ଟଙ୍କା ଦରରେ | ୪,୨୦୦ | |
| ୪୦୦ | ୫୦ ଖଣ୍ଡ ଶାଢ଼ୀ ପ୍ରତି ଖଣ୍ଡ ୨୫ ଟଙ୍କା ଦରରେ | ୧,୨୫୦ | ୧୧,୯୫୦ |
| | ବାଦ୍ ବ୍ୟୟ : | | |
| | ଗାଡ଼ି ଭଡ଼ା | ୩୦ | |
| | କୁଲି ମଜୁରି | ୧୫ | |
| | ଗୋଦାମ ଭଡ଼ା | ୫୦ | |
| | ଅଗ୍ନି ବୀମା | ୩୦ | |
| | ବିବିଧ ଖର୍ଚ୍ଚ | ୧୫ | |
| | କମିଶନ, ୧୧,୯୫୦ ଟଙ୍କାର ୮% | ୯୫୬ | ୧,୦୯୬ |
| | ମୋଟ ଦେୟ | | ୧୦,୮୫୪ |
| | ୧୦,୮୫୪ ଟଙ୍କାର ବ୍ୟାଙ୍କ୍ ଡ୍ରାଫ୍ଟ ଏହା ସହିତ ପଠାଗଲା | | |

କଟକ
୪।୬।୧୯୬୩

ଭୁଲଭ୍ରାନ୍ତି ସଂଶୋଧନୀୟ
ସୃଷ୍ଟି ବ୍ରଦାସ

## ଝୁଙ୍କି ବହନ ଦସ୍ତୁରୀ : (ଡେଲ୍‌କ୍ରେଡ଼ର୍ କମିଶନ)

ପୂର୍ବରୁ ଯଦି ଅନ୍ୟ ପ୍ରକାର କୌଣସି ଚୁକ୍ତି ହୋଇ ନ ଥାଏ ତାହା ହେଲେ ପ୍ରାପକ ଚାଲାଣୀ ପଣ୍ୟକୁ ଧାରରେ ମଧ୍ୟ ବିକ୍ରୟ କରି ପାରନ୍ତି କିନ୍ତୁ ଯଦି କୌଣସି ଗ୍ରାହକ ଏହି ବାକି ଟଙ୍କା ପରିଶୋଧ କରିବାକୁ ଅକ୍ଷମ ହୁଅନ୍ତି ଅର୍ଥାତ୍ ଯଦି କିଛି ଋଣ ଅନାଦେୟ ହୁଏ ତାହା ସକାଶେ ପ୍ରାପକ ଦାୟୀ ହୁଅନ୍ତି ନାହିଁ; ଏ ବାବଦ କ୍ଷତି ପ୍ରେରକଙ୍କୁ ସହିବାକୁ ପଡ଼େ। ଏହି କ୍ଷତି ଏଡ଼ାଇବା ସକାଶେ ଅନେକ ସମୟରେ ପ୍ରେରକ ପ୍ରାପକଙ୍କ ସହିତ ଚୁକ୍ତି କରନ୍ତି ଯଦ୍ୱାରା ଅନାଦେୟ ଋଣରେ କ୍ଷତି ପ୍ରାପକଙ୍କୁ ସହିବାକୁ ପଡ଼େ। ଏହି ପ୍ରକାର ପ୍ରାପକଙ୍କୁ ଝୁଙ୍କି ବହନକାରୀ ପ୍ରତିନିଧି ବୁଝାଯାଏ। ଏପରି କ୍ଷେତ୍ରରେ ସାଧାରଣତଃ ପ୍ରେରକ ପ୍ରାପକଙ୍କୁ ତାଙ୍କର ସାଧାରଣ କମିଶନ ବ୍ୟତୀତ ଅଧିକା ଏକ କମିଶନ ବା ଦସ୍ତୁରୀ ଦିଅନ୍ତି। ତାକୁ ଝୁଙ୍କି ବହନ ଦସ୍ତୁରୀ ବୁଝାଯାଏ।

ହସ୍ତାନ୍ତର ଖର୍ଚ୍ଚ ଓ ଦସ୍ତୁରି ବାବଦ ଲବ୍ଧ ମୋଟ ପରିମାଣ ଉପରେ ହିସାବ କରାଯାଏ ନେଟ୍ ଦେୟ ପରିମାଣ ଉପରେ ନୁହେଁ ।

ଏଠାରେ ଅବଧେୟ ଯେ ପ୍ରାପକ ଯଦି ଝୁଙ୍କି ବହନ ଦସ୍ତୁରି ପାଆନ୍ତି ତାହାହେଲେ ଅନାଦେୟ ଋଣ ତାଙ୍କ ଦସ୍ତୁରିରୁ କଟାଯିବ । ପ୍ରେରକଙ୍କ ହିସାବ ଖାତାରେ କୌଣସି ଉଲ୍ଲେଖ ରହିବ ନାହିଁ ।

## ଗୃହଣୀ ପଣ୍ୟ ସଂକ୍ରାନ୍ତ ବ୍ୟୟର ଶ୍ରେଣୀ ବିଭାଗ :

ଗୃହଣୀ ପଣ୍ୟ ସଂକ୍ରାନ୍ତ ବ୍ୟୟକୁ ଦୁଇ ଶ୍ରେଣୀରେ ବିଭକ୍ତ କରାଯାଇ ପାରେ, ଯଥା – ପୌନଃପୁନିକ ଏବଂ ଅ-ପୌନଃପୁନିକ । ପ୍ରେରକ ଗୃହଣୀ ପଣ୍ୟ ପ୍ରେରଣ କରିବା ସମୟରେ ପ୍ୟାକିଂ, କୁଲି ଖର୍ଚ୍ଚ, ଟ୍ରକ ଭଡା, ରେଳ ଭଡା, ଜାହାଜ ଭଡା, ରପ୍ତାନି ଶୁଳ୍କ, ବୀମା ପ୍ରଭୃତି ବାବଦ ଯେଉଁ ବ୍ୟୟ କରନ୍ତି ତାହା ଗୋଟିଏ ଗୃହଣ ସଂକ୍ରାନ୍ତରେ ଥରେ ମାତ୍ର ବ୍ୟୟ କରାଯାଏ, ପଣ୍ୟ ସମ୍ପୂର୍ଣ୍ଣରୂପେ ବିକ୍ରୟ ନ ହେବା ପର୍ଯ୍ୟନ୍ତ ଦ୍ୱିତୀୟଥର ଏଥି ନିମନ୍ତେ ବ୍ୟୟ କରିବା ଆବଶ୍ୟକ ହୁଏ ନାହିଁ । ପ୍ରାପକଙ୍କୁ ମଧ୍ୟ ଏହି ଶ୍ରେଣୀର କେତେକ ବ୍ୟୟ କରିବାକୁ ପଡ଼େ । ରେଳ ଷ୍ଟେସନ ଅଥବା ବନ୍ଦରରୁ ପଣ୍ୟ ଖଲାସ କରିବା ସଂକ୍ରାନ୍ତ ବ୍ୟୟ, ଆମଦାନୀ ଶୁଳ୍କ, କୁଲି ଖର୍ଚ୍ଚ, ଗାଡ଼ିଭଡ଼ା ପ୍ରଭୃତି ବ୍ୟୟର ନାମ ଉଦାହରଣ ସ୍ୱରୂପ ଉଲ୍ଲେଖ କରାଯାଇ ପାରେ । ଯେହେତୁ ପଣ୍ୟ ଅବିକ୍ରୀତ ରହିଲେ ମଧ୍ୟ ଏହି ସମସ୍ତ ବ୍ୟୟ ଦ୍ୱିତୀୟ ଥର କରିବା ଆବଶ୍ୟକ ହୁଏ ନାହିଁ ତେଣୁ ଏହି ବ୍ୟୟଗୁଡ଼ିକୁ ଅ-ପୌନଃପୁନିକ ବ୍ୟୟ କୁହାଯାଏ ।

ଅପର ପକ୍ଷରେ ଏହି ଗୃହଣୀ ପଣ୍ୟ ସଂକ୍ରାନ୍ତରେ ଅନ୍ୟ କେତେକ ବ୍ୟୟ କରାଯାଏ ଯାହା ପଣ୍ୟ ସମ୍ପୂର୍ଣ୍ଣ ରୂପେ ବିକ୍ରୀତ ନ ହେବା ପର୍ଯ୍ୟନ୍ତ କରିବାକୁ ପଡ଼େ, ଯଥା —ପ୍ରାପକ ବ୍ୟୟ କରୁଥିବା ଗୋଦାମ ଭଡ଼ା, ବିକ୍ରୟକାରୀଙ୍କ ବେତନ, ପଣ୍ୟ ବିକ୍ରୟାର୍ଥେ ବିଜ୍ଞାପନ ବ୍ୟୟ, ଅଗ୍ନି ବୀମା ପ୍ରିମିୟମ, ପ୍ରଭୃତି । ଯେହେତୁ ପଣ୍ୟ ସମ୍ପୂର୍ଣ୍ଣରୂପେ ବିକ୍ରୟ ନ ହେବା ପର୍ଯ୍ୟନ୍ତ ଏହି ବ୍ୟୟ ପ୍ରତି ମାସରେ କରାଯାଏ ତେଣୁ ତାହାକୁ ପୌନଃପୁନିକ ବ୍ୟୟ କୁହାଯାଏ ।

## ଅବିକ୍ରୀତ ଗୃହଣୀ ପଣ୍ୟର ମୂଲ୍ୟାୟନ :

ପ୍ରେରକଙ୍କର ବାର୍ଷିକ ହିସାବ ନିକାଶ ତାରିଖ ପର୍ଯ୍ୟନ୍ତ ଯଦି ସମସ୍ତ ଗୃହଣୀ ପଣ୍ୟ ବିକ୍ରୀତ ହୋଇ ଯାଇଥାଏ ତାହାହେଲେ ଅବିକ୍ରୀତ ଗୃହଣୀ ପଣ୍ୟର

ମୂଲ୍ୟାୟନ ପ୍ରଶ୍ନ ଉଠେ ନାହିଁ, ମାତ୍ର ସର୍ବଦା ଏପରି ଅନୁକୂଳ ଅବସ୍ଥା ପ୍ରତ୍ୟାଶା କରିବା ବୃଥା । ଅନେକ ସମୟରେ ବାର୍ଷିକ ହିସାବ ନିକାଶ ତାରିଖ ବେଳକୁ କେତେକ ସ୍ବଳଣୀ ପଣ୍ୟ ଅବିକ୍ରୀତ ଅବସ୍ଥାରେ ପ୍ରାପକଙ୍କ ନିକଟରେ ରହିଥାଏ । ଏପରି ସ୍ଥଳେ ବ୍ୟାପାରିକ ହିସାବ ବା ମୋଟ ଲାଭ-କ୍ଷତି ହିସାବ ପ୍ରସ୍ତୁତ କରିବା ସମୟରେ ବ୍ୟବସାୟୀଙ୍କ ଗୋଦାମରେ ଅବିକ୍ରୀତ ଅବସ୍ଥାରେ ଥିବା ମହଜୁଦ୍ ମାଲର ଯେପରି ମୂଲ୍ୟାୟନ କରାଯାଏ ଏଠାରେ ମଧ୍ୟ ତାହାହିଁ କରାଯିବ, ଅର୍ଥାତ୍ ପ୍ରାପକଙ୍କ ଗୋଦାମସ୍ଥିତ ପଣ୍ୟର ମୂଲ୍ୟାୟନ କରାଯାଇ ତାହା ମହଜୁଦ୍ ମାଲ ରୂପେ ମୋଟ ଲାଭ-କ୍ଷତି ହିସାବ ଓ ଉଦ୍‌ବୃତ୍ତ ପତ୍ର ବା ସନ୍ତୁଳନ ପତ୍ରକୁ ଅଣାଯିବ । ମୂଲ୍ୟାୟନର ନୀତି ମଧ୍ୟ ଉଭୟ କ୍ଷେତ୍ରରେ ସମାନ, ଅର୍ଥାତ୍ କ୍ରୟ ମୂଲ୍ୟ ଏବଂ ବଜାର ମୂଲ୍ୟ, ଏଥି ମଧ୍ୟରୁ ଯେଉଁଟି ଊଣା, ତାହା ହିଁ ଅବିକ୍ରୀତ ପଣ୍ୟର ମୂଲ୍ୟ ରୂପେ ସ୍ୱୀକୃତ ହେବ ।

ଅବଶ୍ୟ ସ୍ବଳଣୀ ପଣ୍ୟ କ୍ଷେତ୍ରରେ ଗୋଟିଏ ବିଶେଷତ୍ୱ ଅଛି । ତାହା ହେଲା ଏହି ଯେ କ୍ରୟ ମୂଲ୍ୟ ନିର୍ଦ୍ଧାରଣ କରିବା ସମୟରେ ଯେଉଁ ଅର୍ଥ ବ୍ୟୟିତ ହେବା ଫଳରେ ସ୍ବଳଣୀ ପଣ୍ୟର ମୂଲ୍ୟ ବୃଦ୍ଧି ପାଇଛି ତାହାର ଆନୁପାତିକ ଅଂଶ ସ୍ବଳଣୀ ପଣ୍ୟର କ୍ରୟ ମୂଲ୍ୟ ସହିତ ଯୋଗ କରାଯିବ । ଅନ୍ୟ ଭାଷାରେ କହିବାକୁ ଗଲେ ଉଭୟ ପ୍ରେରକ ଓ ପ୍ରାପକ ଯେଉଁ ପରିମାଣରେ ଅ-ପୌନଃପୁନିକ ବ୍ୟୟ କରି ଥାଆନ୍ତି ତାହାର ଆନୁପାତିକ ଅଂଶ ଅବିକ୍ରୀତ ପଣ୍ୟର କ୍ରୟ ମୂଲ୍ୟ ସହିତ ଯୋଗ କରାଯାଇ ଏ କ୍ଷେତ୍ରରେ ପ୍ରଯୁଜ୍ୟ ଆବଶ୍ୟକ କ୍ରୟ ମୂଲ୍ୟ ସ୍ଥିରୀକୃତ ହେବ । ସର୍ବଦା ସ୍ମରଣ ରଖିବାକୁ ହେବ ଯେ ପୌନଃପୁନିକ ବ୍ୟୟ ଅବିକ୍ରୀତ ପଣ୍ୟର ମୂଲ୍ୟାୟନ ଉଦ୍ଦେଶ୍ୟରେ ଉପେକ୍ଷିତ ହେବ । ଏହାର ଅର୍ଥ ଏହି ହୁଏ ଯେ ପ୍ରେରକଙ୍କ ଗୋଦାମରୁ ସ୍ବଳଣୀ ପଣ୍ୟ ବାହାରିବା ସମୟଠାରୁ ପ୍ରାପକଙ୍କ ଗୋଦାମରେ ପହଞ୍ଚିବା ପର୍ଯ୍ୟନ୍ତ ଏହା ସହାନ୍ତ ଯାବତୀୟ ବ୍ୟୟିତ ଅର୍ଥର ଆନୁପାତିକ ଅଂଶ ଅବିକ୍ରୀତ ପଣ୍ୟ ସହିତ ଯୋଗ କରାଯାଇ ଏହାର କ୍ରୟ ମୂଲ୍ୟ ନିର୍ଣ୍ଣୀତ ହେବ ।

ଉଦାହରଣ ସ୍ୱରୂପ, ମନେକର ଯେ କଲିକତାରୁ କ ୨,୦୦୦ ଟଙ୍କାର ସ୍ବଳଣୀ ପଣ୍ୟ ଖ ନିକଟକୁ ପ୍ରେରଣ କଲେ । କ ଏହି ବିଷୟରେ ପ୍ୟାକିଂ, କୁଲି ଖର୍ଚ୍ଚ, ଶୁଳ୍କ, ଗାଡ଼ିଭଡ଼ା, ରେଳଭଡ଼ା, ବୀମା ଆଦି ବାବଦ ୨୫୦ ଟଙ୍କା ବ୍ୟୟ କଲେ ଓ ଖ ମଧ୍ୟ କୁଲି ଖର୍ଚ୍ଚ, ଗାଡ଼ି ଭଡ଼ା ପ୍ରଭୃତି ବାବଦ ୫୦ ଟଙ୍କା ବ୍ୟୟ କରି ନିଜ ଗୋଦାମରେ ସ୍ବଳଣୀ ପଣ୍ୟ ଆଣି ପହଞ୍ଚାଇଲେ । ଏହାପରେ ସେ ଗୋଦାମ ଭଡ଼ା ପାଇଁ ମାସିକ ୫୦ ଟଙ୍କା, କର୍ମଚାରୀଙ୍କ ବେତନ ବାବଦ ମାସିକ ୭୦ ଟଙ୍କା ଓ ଅଗ୍ନି ବୀମା ବାବଦ ମାସିକ ୨୦ ଟଙ୍କା ବ୍ୟୟ କଲେ । ପଣ୍ୟ

ପାଇବାର ଦୁଇ ମାସ ପରେ ଖ ୧, ୫୦୦ ଟଙ୍କାର ପଣ୍ୟ ବିକ୍ରୟ କଲେ । ଏହି ସମୟରେ ଯେତେବେଳେ କ ଙ୍କର ବାର୍ଷିକ ହିସାବ ନିକାଶ ତାରିଖ, ସେହି ଦିନ ଖ ଙ୍କ ଗୋଦାମରେ ୫୦୦ ଟଙ୍କାର ଅବିକ୍ରୀତ ପଣ୍ୟ ରହିଥିଲା । ଏହି ପଣ୍ୟର ବର୍ତ୍ତମାନ କ୍ରୟ ମୂଲ୍ୟ ୫୦୦ ଟଙ୍କା ନ ହୋଇ ୫୭୫ ଟଙ୍କା ହେବ :

ଏହି ଦୃଷ୍ଟାନ୍ତରେ ପ୍ରଥମ ଦୁଇଟି ବ୍ୟୟ ଅ-ପୌନଃପୁନିକ ଜାତୀୟ ଅଟେ । ସେହି ଦୁଇଟିର ଯୋଗଫଳ –

ଟ ୨୫୦ + ଟ ୫୦ = ଟ ୩୦୦

ଅବିକ୍ରୀତ ପଣ୍ୟର କ୍ରୟ ମୂଲ୍ୟ = ଟ ୫୦୦

ଅ-ପୌନଃପୁନିକ ବ୍ୟୟ = $\frac{୫୦୦}{୧୦୦୦}$ × ଟ ୩୦୦ = ୭୫

ସୁତରାଂ ଅବିକ୍ରୀତ ପଣ୍ୟର ମୂଲ୍ୟ ଟ ୫୭୫

ଚାଲାଣୀ ପଣ୍ୟ ଖ ଙ୍କ ଗୋଦାମରେ ପହଞ୍ଚିବା ପରେ ସେ ଯେଉଁ ସମସ୍ତ ବ୍ୟୟ କରିଛନ୍ତି ସେଗୁଡ଼ିକ ଏଥି ସହ ଯୋଗ କରାଯିବ ନାହିଁ ।

ଏହି ପ୍ରଣାଳୀ ଅନୁଯାୟୀ କ୍ରୟ ମୂଲ୍ୟ ସ୍ଥିରୀକୃତ ହେବା ପରେ ଯଦି ଦେଖାଯାଏ ଯେ ଏହି ପଣ୍ୟଗୁଡ଼ିକର ବଜାର ଦର ୪୫୦ ଟଙ୍କାକୁ ହ୍ରାସ ପାଇଛି, ତାହା ହେଲେ ଅବିକ୍ରୀତ ଚାଲାଣୀ ପଣ୍ୟର ମୂଲ୍ୟ ୫୭୫ ଟଙ୍କା ପରିବର୍ତ୍ତେ ୪୫୦ ଟଙ୍କା ହେବ । ଯଦି ବଜାର ଦର ୬୦୦ ଟଙ୍କା ହୁଏ ତାହାହେଲେ ଅବିକ୍ରୀତ ପଣ୍ୟର ମୂଲ୍ୟ ୫୭୫ ଟଙ୍କା ରହିବ । ଯଦି ପ୍ରେରକ ଓ ପ୍ରାପକ କେଉଁ ବାବଦ କେତେ ଅର୍ଥ ଚାଲାଣୀ ପଣ୍ୟ ସମ୍ବନ୍ଧରେ ବ୍ୟୟ କରିଛନ୍ତି ତାହାର ସବିଶେଷ ଉଲ୍ଲେଖ ନ ଥାଏ ତାହେଲେ କେବଳ ପ୍ରେରକଙ୍କ ଦ୍ୱାରା ବ୍ୟୟିତ ଅର୍ଥର ଆନୁପାତିକ ଅଂଶ କ୍ରୟ ମୂଲ୍ୟ ସହିତ ଯୋଗ କରାଯିବ ।

## ଚାଲାଣ ପ୍ରାପକଙ୍କ ଦ୍ୱାରା ଅଗ୍ରିମ ଅର୍ଥ ପ୍ରଦାନ

ଅନେକ ସମୟରେ ଚାଲାଣ ପ୍ରେରକ ଚାଲାଣୀ ପଣ୍ୟ ପ୍ରେରଣ କରିବା ପରେ ପ୍ରାପକଙ୍କ ଉପରେ ମୁଦ୍ଦତି ହୁଣ୍ଡି କାଟନ୍ତି । ଏଥି ନିମନ୍ତେ ସାଧାରଣତଃ ପୂର୍ବରୁ ଚୁକ୍ତି ହୋଇଥାଏ ନ ହେଲେ ମଧ୍ୟ ପ୍ରାପକଙ୍କ ପକ୍ଷରେ ଏପରି ହୁଣ୍ଡି ସ୍ୱୀକାର କରିବା ବିଶେଷ ଅସୁବିଧାଜନକ ହୁଏ ନାହିଁ । କାରଣ ତାହା ପରିବର୍ତ୍ତେ ପ୍ରେରକଙ୍କର ଚାଲାଣୀ ପଣ୍ୟ ତଚ୍ଛିତ ଥାଏ ଏବଂ ସେ ପ୍ରକୃତ ପକ୍ଷେ ଏହି ବାବଦରେ କୌଣସି ଝୁଙ୍କି ନିଅନ୍ତି ନାହିଁ । ଯେତେବେଳେ ତାଙ୍କୁ ଏହି ହୁଣ୍ଡି

ବାବଦ ଅର୍ଥ ଦେବାକୁ ପଡ଼ିବ, ଅର୍ଥାତ୍ ମାସେ, ଦୁଇ ମାସ, ବା ଛଅମାସ ପରେ ଗ୍ରାହକୀ ପଣ୍ୟର ବିକ୍ରୟ ଲବ୍ଧ ଅର୍ଥ ତାଙ୍କ ହାତକୁ ଆସିବାର ଯଥେଷ୍ଟ ସମ୍ଭାବନା ଥାଏ। ସେ ହୁଣ୍ଡି ସ୍ୱୀକାର କଲା ପରେ ପ୍ରେରକ ସାଧାରଣତଃ ତାହାକୁ ବଟା ଦେଇ ନିଜ ବ୍ୟାଙ୍କ୍‌ରେ ଭଙ୍ଗାଇ ନିଅନ୍ତି। ଏହି ବଟା ଗ୍ରାହକୀ ପଣ୍ୟ ହିସାବରେ ବ୍ୟୟ ରୂପେ ଅନ୍ତର୍ଭୁକ୍ତ କରାଯିବ। ଅଥବା ଲାଭ-କ୍ଷତି ହିସାବକୁ ନିଆଯିବ ଏ ବିଷୟରେ ମତାନ୍ତର ଅଛି। ଯେହେତୁ ଗ୍ରାହକୀ ପଣ୍ୟ ସହିତ ଏହି ବ୍ୟୟ ପ୍ରତ୍ୟକ୍ଷ ଭାବରେ ସଂପୃକ୍ତ ନୁହେଁ ତେଣୁ ଏହାକୁ ବ୍ୟବସାୟର ସାଧାରଣ ବ୍ୟୟ ରୂପେ ବିବେଚନା କରି ନିଜ ଲାଭ କ୍ଷତି ହିସାବରେ ଏହାକୁ ଅନ୍ତର୍ଭୁକ୍ତ କରିବା ଅଧିକ ଯୁକ୍ତିଯୁକ୍ତ ହେବ। Institute of Chartred Accountants ଙ୍କର ମଧ୍ୟ ଏହି ମତ।

ଯଦି ହୁଣ୍ଡି କଟାଯାଏ ଏବଂ ତାହା ସ୍ୱୀକୃତ ହୁଏ ତାହାହେଲେ ସେଥି ନିମନ୍ତେ ଆବଶ୍ୟକ ରୋଜନାମା ଅନ୍ୟାନ୍ୟ ବ୍ୟାପାରିକ ହୁଣ୍ଡି ସମ୍ବନ୍ଧରେ ଯାହା ହୁଏ ତାହାର ଅନୁରୂପ ହେବ। ଅନେକ ସମୟରେ ହୁଣ୍ଡି ସ୍ୱୀକାର କରିବା ପରିବର୍ତ୍ତେ ପ୍ରାପକ ଅଗ୍ରିମ ଅର୍ଥ ନଗଦ ଅଥବା ଚେକ୍ ଅଥବା ବ୍ୟାଙ୍କ୍ ଡ୍ରାଫ୍ଟ ଆକାରରେ ପଠାଇ ପାରନ୍ତି। ସେ କ୍ଷେତ୍ରରେ ମଧ୍ୟ ଆବଶ୍ୟକ ରୋଜନାମାରେ କୌଣସି ବିଶେଷତ୍ୱ ବା ପାର୍ଥକ୍ୟ ନ ଥାଏ।

## ଗ୍ରାହକୀ କାରବାର ହିସାବ ଖାତାରେ ଲିପିବଦ୍ଧ କରିବାର ପ୍ରଣାଳୀ

ପ୍ରେରକ ଗ୍ରାହକୀ ପଣ୍ୟ ବିଭିନ୍ନ ସ୍ଥାନକୁ ପଠାଇ ପାରନ୍ତି ଏବଂ ଏହି ପଣ୍ୟ ମଧ୍ୟ ବିଭିନ୍ନ ହୋଇପାରେ। ଏପରି କ୍ଷେତ୍ରରେ ପ୍ରତି ଗ୍ରାହକ ସକାଶେ ସ୍ୱତନ୍ତ୍ର ହିସାବ ଲେଖିବା ଆବଶ୍ୟକ ହୁଏ, କାରଣ ପ୍ରେରକ ପ୍ରତି ଗ୍ରାହକୀ କାରବାରରେ ଲାଭକଲେ କିମ୍ବା ସେଥିରେ ତାଙ୍କର କ୍ଷତି ହେଲା ତାହା ସେ ଜାଣିବାକୁ ଚାହାଁନ୍ତି। ସୁତରାଂ ଏହି ହିସାବ ଏପରି ଭାବରେ ଲେଖାଯିବା ଉଚିତ ଯଦ୍ୱାରା ସେ ପ୍ରତ୍ୟେକ ଗ୍ରାହକୀ କାରବାରର ଲାଭ ବା କ୍ଷତି ଜାଣିପାରିବେ। ପଣ୍ୟ ଗ୍ରାହକୀ ହିସାବ ପ୍ରେରକଙ୍କର ବ୍ୟକ୍ତିଙ୍କ ହିସାବ ନୁହେଁ କିମ୍ବା ପ୍ରାପକଙ୍କର ବ୍ୟକ୍ତିକ ହିସାବ ମଧ୍ୟ ନୁହେଁ। ଏହା ଏକ ପ୍ରକାରର ବ୍ୟାପାରିକ ବା ମୋଟ ଲାଭ-କ୍ଷତି ହିସାବ ଯହିଁରୁ ପ୍ରେରକ ଗ୍ରାହକୀ କାରବାରର ଲାଭ ବା କ୍ଷତି ଜାଣି ପାରନ୍ତି।

ଯେତେବେଳେ ପଣ୍ୟ ଗ୍ରାହକ କରାଯାଏ ସେତେବେଳେ ଏହି ହିସାବକୁ ଗ୍ରାହକୀ ପଣ୍ୟର କ୍ରୟ ମୂଲ୍ୟ ଅଥବା ଉତ୍ପାଦନ ମୂଲ୍ୟ ସକାଶେ ଡାକ୍ତୀ କରାଯାଏ। ପଣ୍ୟ ପ୍ରେରଣ କରିବା ସମୟରେ ସେ ଯେଉଁ ସମସ୍ତ ବ୍ୟୟ କରନ୍ତି

ତାହାର ମୋଟ ପରିମାଣ ସକାଶେ ମଧ୍ୟ ଏହି ହିସାବକୁ ଡାସ୍ତୀ କରାଯାଏ। ପ୍ରାପକ ଯେତେବେଳେ ବିକ୍ରିର ହିସାବ ବା ବିବରଣ ପଠାନ୍ତି ସେତେବେଳେ ବିକ୍ରି ଲବ୍ଧ ଅର୍ଥ ସକାଶେ ଏହି ହିସାବକୁ ଡାତା କରାଯାଏ ଏବଂ ପ୍ରାପକ ସେହି ସମ୍ପର୍କରେ ଯାହା ବ୍ୟୟ କରିଥାଆନ୍ତି ଏବଂ ସେ ଯାହା କମିଶନ ଦାବି କରିଥାଆନ୍ତି ତାହାକୁ ମଧ୍ୟ ଏହି ହିସାବର ଡାସ୍ତୀ ପାର୍ଶ୍ୱକୁ ଅଣାଯାଏ। ବର୍ତ୍ତମାନ ଏହି ହିସାବର ବାକି ନିର୍ଣ୍ଣୟ କରାଗଲେ ଯଦି ଏହା ଡାତା ବାକି ହୁଏ ତାହା ହେଲେ ଲାଭ ଏବଂ ଡାସ୍ତୀ ବାକି ହେଲେ ତାହା ଚ୍ଳଣୀ କାରବାରରେ କ୍ଷତି ସୂଚାଇବ।

ଏଥି ନିମନ୍ତେ ଆବଶ୍ୟକ ରୋଜନାମଚା ନିମ୍ନରେ ପ୍ରଦତ୍ତ ହେଲା।

## ପ୍ରେରକଙ୍କ ହିସାବ ଖାତାରେ

(୧) ପଣ୍ୟ ପ୍ରେରଣ କରାଗଲେ :—

ପଣ୍ୟ ଚ୍ଳଣୀ ହିସାବ ଡାସ୍ତୀ } ପଣ୍ୟର କ୍ରୟ
ଚ୍ଳଣ କରାଯାଇଥିବା ପଣ୍ୟ ହିସାବ ବାବଦ } ମୂଲ୍ୟ ସକାଶେ

(୨) ଚ୍ଳଣ ଖର୍ଚ୍ଚ ବ୍ୟୟ କରାଗଲେ :—

ପଣ୍ୟ ଚ୍ଳଣୀ ହିସାବ ଡାସ୍ତୀ } ବ୍ୟୟିତ ପ୍ରକୃତ
ନଗଦ ତହବିଲ/ବ୍ୟାଙ୍କ ହିସାବ ବାବଦ } ପରିମାଣ ସକାଶେ

(୩) ପ୍ରାପକ ହୁଣ୍ଡି ସ୍ୱୀକାର କଲେ :—

ପ୍ରାପ୍ୟ ହୁଣ୍ଡି ହିସାବ ଡାସ୍ତୀ } ହୁଣ୍ଡିର ପ୍ରକୃତ
ପ୍ରାପକଙ୍କ ହିସାବ ବାବଦ } ପରିମାଣ ସକାଶେ

(୪) ପ୍ରାପକଙ୍କ ଠାରୁ ବିକ୍ରିର ହିସାବ ମିଳିଲେ :—

ପ୍ରାପକଙ୍କ ହିସାବ ଡାସ୍ତୀ } ବିକ୍ରିର ମୋଟ
ପଣ୍ୟ ଚ୍ଳଣୀ ହିସାବ ବାବଦ } ପରିମାଣ ସକାଶେ

(୫) ପଣ୍ୟ ଚ୍ଳଣୀ ହିସାବ ଡାସ୍ତୀ } ପ୍ରାପକ ବହନ କରିଥିବା
ପ୍ରାପକଙ୍କ ହିସାବ ବାବଦ } ସମସ୍ତ ବ୍ୟୟ ସକାଶେ

(୬) ପଣ୍ୟ ଚ୍ଳଣୀ ହିସାବ ଡାସ୍ତୀ } ପ୍ରାପକଙ୍କର ପ୍ରାପ୍ୟ
ପ୍ରାପକଙ୍କ ହିସାବ ବାବଦ } କମିଶନ ସକାଶେ

(୭) ମହଜୁଦ୍ ଚ୍ଳଣୀ ପଣ୍ୟ ହିସାବ ଡାସ୍ତୀ } ଚ୍ଳଣୀ ପଣ୍ୟର ଅବିକ୍ରୀତ
ପଣ୍ୟ ଚ୍ଳଣୀ ହିସାବ ବାବଦ } ପରିମାଣ ସକାଶେ

(୮) ଚ୍ଳଣୀ କାରବାରରେ ଲାଭ ହେଲେ :—

ପଣ୍ୟ ଚ୍ଳଣୀ ହିସାବ ବାବଦ ଡାସ୍ତୀ } ଲାଭର ପରିମାଣ
ନିଟ୍ ଲାଭ-କ୍ଷତି ହିସାବ ବାବଦ } ସକାଶେ

(୯) ଗ୍ଭଲଣୀ କାରବାରରେ କ୍ଷତି ହେଲେ :—

| | | |
|---|---|---|
| ନିଟ୍ ଲାଭ-କ୍ଷତି ହିସାବ ଦାୟୀ<br>ପଣ୍ୟ ଗ୍ଭଲଣୀ ହିସାବ ବାବଦ | } | କ୍ଷତିର ପରିମାଣ<br>ସହିତରେ |

(୧୦) ବର୍ଷ ଶେଷରେ :—

| | | |
|---|---|---|
| ଗ୍ଭଲାଣ ଭଣ୍ଡାଇଥିବା ପଣ୍ୟ ହିସାବ ଦାୟୀ<br>ମୋଟ ଲାଭ-କ୍ଷତି ହିସାବ ବାବଦ | } | ସ୍ଥାନାନ୍ତରିତ<br>ପରିମାଣ ସହିତରେ |

ମହଜୁଦ ଗ୍ଭଲଣୀ ପଣ୍ୟ ହିସାବର ଦାୟୀ ବାକି ସ୍ଥିତି-ପତ୍ରର ପରିସମ୍ପତ୍ତି ପାର୍ଶ୍ୱରେ ପ୍ରଦର୍ଶିତ ହେବ ।

## ପ୍ରାପକଙ୍କ ହିସାବ ଖାତାରେ

(୧) ଗ୍ଭଲଣୀ ପଣ୍ୟ ସମ୍ପର୍କିତ ବ୍ୟୟ କଲେ :—

ପ୍ରେରକଙ୍କ ହିସାବ ଦାୟୀ
ନଗଦ ତହବିଲ/ବ୍ୟାଙ୍କ୍ ହିସାବ ବାବଦ

(୨) ଅଗ୍ରିମ ସ୍ୱରୂପ ପ୍ରେରକ କାଟିଥିବା ହୁଣ୍ଡି ସ୍ୱୀକାର କଲେ :—

ପ୍ରେରକଙ୍କ ହିସାବ ଦାୟୀ
ଦେୟ ହୁଣ୍ଡି ହିସାବ ବାବଦ

(୩) ଗ୍ଭଲଣୀ ପଣ୍ୟ ବିକ୍ରୀତ ହେଲେ :—

ନଗଦ ତହବିଲ/ବ୍ୟାଙ୍କ୍ ହିସାବ ଦାୟୀ
ପ୍ରାପକଙ୍କ ହିସାବ ବାବଦ

(୪) ବିକ୍ରୟକାରୀଙ୍କ ପାରିଶ୍ରମିକ, ଗୋଦାମ ଭଡ଼ା ଓ ବୀମା ପ୍ରିମିୟମ ସହିତରେ :—

ପ୍ରେରକଙ୍କ ହିସାବ ଦାୟୀ
ନଗଦ ତହବିଲ/ବ୍ୟାଙ୍କ ହିସାବ ବାବଦ

(୫) କମିଶନ ପ୍ରାପ୍ୟ ହେଲେ :—

ପ୍ରେରକଙ୍କ ହିସାବ ଦାୟୀ
କମିଶନ ହିସାବ ବାବଦ

(୬) ହୁଣ୍ଡି ବାବଦ ଟଙ୍କା ପରିଶୋଧ କଲେ :—

ଦେୟ ହୁଣ୍ଡି ହିସାବ ଦାୟୀ
ନଗଦ ତହବିଲ/ବ୍ୟାଙ୍କ୍ ହିସାବ ବାବଦ

ଏଠାରେ ଅବଧେୟ ଯେ ଗ୍ଭଲଣୀ କାରବାର ଅନ୍ୟ ବିକ୍ରୟ କାରବାରଠାରୁ ସମ୍ପୂର୍ଣ୍ଣ ପୃଥକ୍ ହେତୁ ଗ୍ଭଲଣୀ ପଣ୍ୟ ପାଇବା ସମୟରେ ପ୍ରାପକଙ୍କ ହିସାବ ଖାତାରେ ଗ୍ଭଲଣୀ ପଣ୍ୟର କୌଣସି ଉଲ୍ଲେଖ କରିବ ନାହିଁ । ସେହିପରି ଅବିକ୍ରୀତ ପଣ୍ୟର ମୂଲ୍ୟ

ତାଙ୍କର ଉଦ୍‌ବୃତ୍ତ ପତ୍ର ଅଥବା ସ୍ଥିତି-ପତ୍ରରେ ଅନ୍ତର୍ଭୁକ୍ତ ହେବ ନାହିଁ । ସର୍ବଦା ମନେ ରଖିବାକୁ ହେବ ଯେ ଚାଲାଣୀ ପଣ୍ୟର ସେ ସ୍ୱତ୍ୱାଧିକାରୀ ନୁହନ୍ତି, ନ୍ୟାସୀ ମାତ୍ର । ତେଣୁ ହିସାବ ଲିଖନ ପ୍ରଣାଳୀ ତଦନୁସାରେ ହୋଇଛି ।

ଚାଲାଣୀ କାରବାରର କେତେକ ଦୃଷ୍ଟାନ୍ତ ନିମ୍ନରେ ପ୍ରଦତ୍ତ ହେଲା ।

## ଦୃଷ୍ଟାନ୍ତ (୧)

କଲିକତାର ସେନ୍ ବ୍ରଦର୍ସ ନିଜ ହିସାବ ଓ ଦାୟିତ୍ୱରେ ବିକ୍ରୟ କରିବା ନିମନ୍ତେ ପ୍ରତି ଷ୍ଟ୍ରଙ୍ଗ୍ ସାଇକଲ ୨୦୦ ଟଙ୍କା ଦରରେ ୫୦ ଖଣ୍ଡ ସାଇକଲ କଟକର ଅଭିଜିତ୍ ସାହୁଙ୍କ ନିକଟକୁ ରେଳବାଇ ମାଲ ଗାଡ଼ିରେ ୧୯୬୨ ସାଲ ଜାନୁଆରୀ ୫ ତାରିଖରେ ଚାଲାଣ କଲେ । ଏହି ସାଇକଲ ଚାଲାଣ କରିବା ସମୟରେ ସେନ୍ ବ୍ରଦର୍ସ କୁଲି ଖର୍ଚ୍ଚ ବାବଦ ୧୫ ଟଙ୍କା, ଟ୍ରକ୍ ଭଡ଼ା ବାବଦ ୪୦ ଟଙ୍କା, ରେଳ ଭଡ଼ା ବାବଦ ୧୨୫ ଟଙ୍କା ଓ ବୀମା ବାବଦ ୨୦ ଟଙ୍କା ବ୍ୟୟ କଲେ ।

ଅଭିଜିତ୍ ସାହୁ ଷ୍ଟେସନ ମାଲଗୋଦାମରୁ ପଣ୍ୟ ଖଲାସ କରି ନିଜ ଗୋଦାମକୁ ଆଣିବା ସକାଶେ ନିମ୍ନଲିଖିତ ବ୍ୟୟ କଲେ ।

| | ଟଙ୍କା |
|---|---|
| କୁଲି ଭଡ଼ା | ୧୨ |
| ଟ୍ରକ୍ ଭଡ଼ା | ୫୩ |
| ନଗର ଶୁଳ୍କ | ୧୦ |

ଅଭିଜିତ୍ ସାହୁ ମାର୍ଚ୍ଚ ୫ ତାରିଖରେ ସେନ ବ୍ରଦର୍ସଙ୍କ ନିକଟକୁ ବିକ୍ରୟର ହିସାବ ନିମ୍ନଲିଖିତ ମତେ ପଠାଇଲେ ।

ପ୍ରତି ସାଇକଲ ୨୨୫ ଟଙ୍କା ଦରରେ ୧୦ ଖଣ୍ଡ
ପ୍ରତି ସାଇକଲ ୨୩୦ ଟଙ୍କା ଦରରେ ୧୫ ଖଣ୍ଡ
ପ୍ରତି ସାଇକଲ ୨୪୦ ଟଙ୍କା ଦରରେ ୧୦ ଖଣ୍ଡ
ପ୍ରତି ସାଇକଲ ୨୬୦ ଟଙ୍କା ଦରରେ ୧୫ ଖଣ୍ଡ

ବିକ୍ରୟର ହିସାବରେ ସେ ବିକ୍ରୟକାରୀଙ୍କ ପାରିଶ୍ରମିକ ବାବଦ ୬୦ ଟଙ୍କା ଓ ଗୋଦାମ ଭଡ଼ା ବାବଦ ୬୫ ଟଙ୍କା ଅଭିଜିତ୍ ସାହୁ ଖର୍ଚ୍ଚ କରିଛନ୍ତି ବୋଲି ଉଲ୍ଲେଖ କରାଯାଇଥିଲା । ଶ୍ରୀ ସାହୁ ଶତକଡ଼ା ୫ ହାରରେ ତାଙ୍କର କମିଶନ ବାଦ ଦେଇ ବକେୟା ଟଙ୍କା ବ୍ୟାଙ୍କ୍ ଡ୍ରାଫ୍ଟ ଆକାରରେ ସେନ୍ ବ୍ରଦର୍ସଙ୍କୁ ବିକ୍ରୟ ବିବରଣୀ ସହିତ ପଠାଇଲେ ।

ଉପରୋକ୍ତ ନେଣଦେଣ ଗୁଡ଼ିକ ଉଭୟ ପ୍ରେରକ ଓ ପ୍ରାପକଙ୍କ ବହିରେ ଜାବ୍‌ଦାଖ୍ଲା କରି ଖତିୟାନ ହିସାବ ପ୍ରସ୍ତୁତ କର ।

**ସମାଧାନ :**

ସେନ୍ ବ୍ରଦର୍ସଙ୍କର ହିସାବ ଖାତାରେ
ରୋଜନାମା

| | | ଟଙ୍କା | ଟଙ୍କା |
|---|---|---|---|
| (୧) ୧୯୭୨ ଜାନୁ-୧ | ଚାଲଣୀ ହିସାବ ଦାୟୀ<br>ଚାଲଣ କରାଯାଇଥିବା<br>ସାଇକଲ ହିସାବ ବାବଦ<br>(ପ୍ରତି ସାଇକଲ ୨୦୦ ଟଙ୍କା ଦରରେ ୫୦ ଖଣ୍ଡ ସାଇକଲ ଚାଲଣ କରଗଲା) | ୧୦,୦୦୦ | ୧୦,୦୦୦ |
| (୨) ,, | ଚାଲଣୀ ହିସାବ ଦାୟୀ<br>ବ୍ୟାଙ୍କ୍ ହିସାବ ବାବଦ<br>(ମାଲ ଚାଲଣ କରିବା ସମୟରେ କୁଲି ଭଡ଼ା ବାବଦ ୧୫ ଟଙ୍କା, ଟ୍ରକ୍ ଭଡ଼ା ବାବଦ ୪୦ ଟଙ୍କା, ରେଲ ଭଡ଼ା ବାବଦ ୧୨୫ ଟଙ୍କା ଓ ବୀମା ବାବଦ ୨୦ ଟଙ୍କା ବ୍ୟୟ କଲେ) | ୨୦୦ | ୨୦୦ |
| (୪) ମାର୍ଚ୍ଚ-୫ | ଚାଲଣୀ ହିସାବ ଦାୟୀ<br>ଅଭିକର୍ତ୍ତାଙ୍କ ହିସାବ ବାବଦ<br>(ଚାଲଣୀ ମାଲ ପହଞ୍ଚରେ ଅଭିକର୍ତ୍ତା ସାହୁ କୁଲି ଭଡ଼ା ବାବଦ ୧୨ ଟଙ୍କା, ଟ୍ରକ୍ ଭଡ଼ା ବାବଦ ୫୩ ଟଙ୍କା, ନଗର ଶୁଳ୍କ ବାବଦ ୧୦ ଟଙ୍କା, ଗୋଦାମ ଭଡ଼ା ବାବଦ ୭୫ ଟଙ୍କା ଓ ବିକ୍ରୟକାରୀଙ୍କର ପାରିଶ୍ରମିକ ବାବଦ ୬୦ ଟଙ୍କା ବ୍ୟୟ କଲେ) | ୨୧୦ | ୨୧୦ |
| (୫) ,, | ଚାଲଣୀ ହିସାବ ଦାୟୀ<br>ଅଭିକର୍ତ୍ତାଙ୍କ ହିସାବ ବାବଦ<br>(ବିକ୍ରୟ ଲବ୍ଧ ଅର୍ଥ ୧୨,୫୦୦ ଟଙ୍କା ଉପରେ ଶତକଡ଼ା ୫ ହାରରେ ଅଭିକର୍ତ୍ତାଙ୍କର କମିଶନ ପ୍ରାପ୍ୟ ହେଲା) | ୬୨୫ | ୬୨୫ |
| (୩) ,, | ଅଭିକର୍ତ୍ତାଙ୍କର ହିସାବ ଦାୟୀ<br>ଚାଲଣୀ ହିସାବ ବାବଦ<br>(ସାଇକେଲର ବିକ୍ରୟ ଲବ୍ଧ ଅର୍ଥ ଅଭିକର୍ତ୍ତାଙ୍କଠାରୁ ପ୍ରାପ୍ୟ ହେଲା) | ୧୨,୫୦୦ | ୧୨,୫୦୦ |

| | | ଡାକ୍ତୀ | ଦାତା |
|---|---|---|---|
| ୧୯୭୨ | | ଟଙ୍କା | ଟଙ୍କା |
| (୭) ମାର୍ଚ୍ଚ ୫ | ଗ୍ରାହଣୀ ହିସାବ ଡାକ୍ତୀ<br>ନଟ୍ ଲାଭ-କ୍ଷତି ହିସାବ ବାବଦ<br>ସାଇକଲ ଗ୍ରାହଣୀ କାରବାର ଲାଭ<br>(ନଟ୍ ଲାଭ-କ୍ଷତି ହିସାବକୁ ସ୍ଥାନାନ୍ତରିତ ହେଲା) | ୧,୪୭୫ | ୧,୪୭୫ |
| ଡିସେମ୍ବର ୩୧ | ଚାଲାଣ କରାଯାଇଥିବା ସାଇକଲ ହି: ଡାକ୍ତୀ<br>ମୋଟ ଲାଭ କ୍ଷତି ହିସାବ ବାବଦ<br>(ଚାଲାଣ କରାଯାଇଥିବା ସାଇକଲ ହିସାବ ବନ୍ଦ କରାଗଲା ଓ ବଳକା ପରିମାଣକୁ ମୋଟ ଲାଭ-କ୍ଷତି ହିସାବକୁ ସ୍ଥାନାନ୍ତରିତ କରାଗଲା) | ୧୦,୦୦୦ | ୧୦,୦୦୦ |

## ଖତିଆନ ହିସାବ

ଡାକ୍ତୀ — ଚାଲାଣ କରାଯାଇଥିବା ସାଇକଲ ହିସାବ — ଦାତା

| ୧୯୭୨ | | ଟଙ୍କା | ୧୯୭୨ | | ଟଙ୍କା |
|---|---|---|---|---|---|
| ଡିସେ-୩୧ | ମୋଟ ଲାଭ କ୍ଷତି ହି: ବାବଦ | ୧୦,୦୦୦ | ଜାନୁ ୫ | ସାଇକଲ ଗ୍ରାହଣୀ ହି: ବାବଦ | ୧୦,୦୦୦ |

ଡାକ୍ତୀ — ଗ୍ରାହଣୀ ହିସାବ

| ୧୯୭୨ | | ଟଙ୍କା | ୧୯୭୨ | | ଟଙ୍କା |
|---|---|---|---|---|---|
| ଜାନୁ ୫ | ଚାଲାଣ କରାଯାଇଥିବା ସାଇକଲ ହିସାବ ବାବଦ | ୧୦,୦୦୦ | ମାର୍ଚ୍ଚ ୫ | ଅଭିକର୍ତ୍ତାଙ୍କ ହି: ବାବଦ | ୧୨,୫୦୦ |
| ୫ | ବ୍ୟାଙ୍କ ହିସାବ ବାବଦ (ବ୍ୟୟ) | ୨୦୦ | | | |
| ମାର୍ଚ୍ଚ ୫ | ଅଭିକର୍ତ୍ତାଙ୍କ ହି: ବାବଦ (ବ୍ୟୟ) | ୧୧୦ | | | |
| ୫ | ଅଭିକର୍ତ୍ତାଙ୍କ ହିସାବ ବାବଦ (କମିଶନ) | ୭୧୫ | | | |
| ୫ | ନଟ୍ ଲାଭ-କ୍ଷତି ହିସାବ ବାବଦ (ଲାଭ ସ୍ଥାନାନ୍ତରିତ ହେଲା) | ୧,୪୭୫ | | | |
| | | ୧୨,୫୦୦ | | | ୧୨,୫୦୦ |

ଦାୟୀ ବ୍ୟାଙ୍କ୍ ହିସାବ ଦାତା

| | | | ଟଙ୍କା | | | | ଟଙ୍କା |
|---|---|---|---|---|---|---|---|
| ୧୯୭୧ ମାର୍ଚ୍ଚ-୫ | ଅଭିଜିତ୍ଙ୍କର ହି: ବାବଦ | | ୧୧,୬୭୫ | ୧୯୭୧ ଜାନୁ-୫ | ସାଇକେଲ ଚାଳଣୀ ହି: ବାବଦ | | ୨୦୦ |

ଦାୟୀ ଅଭିଜିତଙ୍କର ହିସାବ ଦାତା

| | | | ଟଙ୍କା | | | | ଟଙ୍କା |
|---|---|---|---|---|---|---|---|
| ୧୯୭୧ ମାର୍ଚ୍ଚ-୫ | ସାଇକଲ ଚାଳଣୀ ହି: ବାବଦ | | ୧୨,୫୦୦ | ୧୯୭୧ ମାର୍ଚ୍ଚ-୫ | ସାଇକଲ ଚାଳଣୀ ହି ବାବଦ (ବ୍ୟୟ) | | ୨୧୦ |
| | | | | | ସାଇକଲ ଚାଳଣୀ ହି: ବାବଦ (କମିଶନ) | | ୬୧୫ |
| | | | | ,, | ବ୍ୟାଙ୍କ୍ ହି: ବାବଦ | | ୧୧,୬୭୫ |
| | | | ୧୨,୫୦୦ | | | | ୧୨,୫୦୦ |

## ଅଭିଜିତଙ୍କ ହିସାବ ଖାତାରେ

| | ରୋଜନାମା | | ଦାୟୀ | ଦାତା |
|---|---|---|---|---|
| ୧୯୭୧ | | | ଟଙ୍କା | ଟଙ୍କା |
| ଜାନୁ ? | ସେନ୍ ବ୍ରଦାର୍ସଙ୍କର ହିସାବ ଦାୟୀ<br>ବ୍ୟାଙ୍କ୍ ହିସାବ ବାବଦ<br>(ଚାଳଣୀ ସାଇକଲ ଗୋଦାମକୁ ଆଣିବା ବ୍ୟୟ ସକାଶେ) | | ୭୫ | ୭୫ |
| ? | ବ୍ୟାଙ୍କ ହିସାବ ଦାୟୀ<br>ସେନ୍ ବ୍ରଦାର୍ସଙ୍କ ହିସାବ ବାବଦ<br>(ଚାଳଣୀ ସାଇକଲର ବିକ୍ରୟ ଲବ୍ଧ ଅର୍ଥ ସକାଶେ) | | ୧୨,୫୦୦ | ୧୨,୫୦୦ |
| ମାର୍ଚ୍ଚ ୫ | ସେନ୍ ବ୍ରଦାର୍ସଙ୍କ ହିସାବ ଦାୟୀ<br>ବ୍ୟାଙ୍କ୍ ହିସାବ ବାବଦ<br>(ଗୋଦାମଭଡ଼ା ବାବଦ ୭୫ ଟଙ୍କା ଓ ବିକ୍ରୟକାରୀଙ୍କ ପାରିଶ୍ରମିକ ବାବଦ ୬୦ ଟଙ୍କା ଦିଆଗଲା) | | ୧୩୫ | ୧୩୫ |

| ୧୯୬୨ | | | ଦାୟୀ | ଦାତା |
|---|---|---|---|---|
| | | | ଟଙ୍କା | ଟଙ୍କା |
| ମାର୍ଚ୍ଚ | ୫ | ସେନ ବ୍ରଦାର୍ସଙ୍କ ହିସାବ ଦାୟୀ<br>କମିଶନ ହିସାବ ବାବଦ<br>(ଶତକଡ଼ା ୫ ହାରରେ ବିକ୍ରୟ ଲବ୍ଧ ଅର୍ଥ ୧୨,୫୦୦ ଟଙ୍କା ଉପରେ କମିଶନ ପ୍ରାପ୍ୟ ହେଲା) | ୬୨୫ | ୬୨୫ |
| ,, | ୫ | ସେନ ବ୍ରଦାର୍ସଙ୍କ ହିସାବ ଦାୟୀ<br>ବ୍ୟାଙ୍କ ହିସାବ ବାବଦ<br>(ସେନ୍ ବ୍ରଦାର୍ସଙ୍କ ହିସାବ ନିକାଶ କରିବା ସକାଶେ ବ୍ୟାଙ୍କ ଡ୍ରାଫ୍ଟ ଦିଆଗଲା) | ୧୧,୬୨୫ | ୧୧,୬୨୫ |

## ଖତିୟାନ ହିସାବ

ଦାୟୀ — ସେନ ବ୍ରଦାର୍ସଙ୍କ ହିସାବ — ଦାତା

| ୧୯୬୨ | | ଟଙ୍କା | ୧୯୬୨ | | ଟଙ୍କା |
|---|---|---|---|---|---|
| ଜାନୁ-୨ | ବ୍ୟାଙ୍କ ହିସାବ ବାବଦ (ବାଟ୍ଟା ବାବଦ) | ୭୫ | ୨ | ବ୍ୟାଙ୍କ ହିଃ ବାବଦ | ୧୨,୫୦୦ |
| ମାର୍ଚ୍ଚ-୫ | ବ୍ୟାଙ୍କ ହିଃ ବାବଦ (ଗୋଦାମ ଭଡ଼ା ଓ ବିକ୍ରୟକାରୀଙ୍କ ପାରିଶ୍ରମିକ ବାବଦ | ୧୭୫ | | | |
| ,,-୫ | କମିଶନ ହିଃ ବାବଦ | ୬୨୫ | | | |
| ,,-୫ | ବ୍ୟାଙ୍କ ହିଃ ବାବଦ | ୧୧,୬୨୫ | | | |
| | | ୧୨,୫୦୦ | | | ୧୨,୫୦୦ |

ଦାୟୀ — ବ୍ୟାଙ୍କ ହିସାବ — ଦାତା

| ୧୯୬୨ | | ଟଙ୍କା | ୧୯୬୨ | | ଟଙ୍କା |
|---|---|---|---|---|---|
| ୨ | ସେନ ବ୍ରଦାର୍ସଙ୍କ ହିଃ ବାବଦ | ୧୨,୫୦୦ | ଜାନୁ-୨ | ସେନବ୍ରଦାର୍ସଙ୍କ ହିଃ ବାବଦ | ୭୫ |
| | | | ମାର୍ଚ୍ଚ-୫ | ସେନ ବ୍ରଦାର୍ସଙ୍କ ହିଃ ବାବଦ | ୧୭୫ |
| | | | ,, -୫ | ସେନ ବ୍ରଦାର୍ସଙ୍କ ହିଃ ବାବଦ | ୧୧,୬୨୫ |

| ଡାହାଣୀ | | ଦଲିଶିନ ହିସାବ | | | ଜମା |
|---|---|---|---|---|---|
| ୧୯୭୨ | | ଟଙ୍କା | ୧୯୭୨ | | ଟଙ୍କା |
| ଡିସେ-୩୧ | ନିଟ ଲାଭ-କ୍ଷତି ହି: ବାବଦ | ୨୨୫ | ମାର୍ଚ୍ଚ-୫ | ସେନ ବ୍ରଦାର୍ସଙ୍କ ହି: ବାବଦ | ୨୨୫ |

ଏହି ଦୃଷ୍ଟାନ୍ତରେ ଲକ୍ଷ୍ୟ କରିବାର ବିଷୟ ଏହି ଯେ ଏହି କାରବାରରେ ବିକ୍ରୟ ବିବରଣ ପ୍ରେରଣ କଲାବେଳକୁ ପ୍ରାପକଙ୍କଠାରେ କୌଣସି ଗଚ୍ଛଣୀ ମାଲ ମହଜୁଦ ନ ଥିଲା । ତେଣୁ ସାଇକଲ ଗଚ୍ଛଣୀ ହିସାବର ଲାଭ ବା କ୍ଷତି ନିର୍ଣ୍ଣୟ କରିବା ଅତି ସହଜ ହେଲା । ମହଜୁଦ ମାଲ ଥିଲେ ତାହାର ମୂଲ୍ୟ କପର ନିର୍ଣ୍ଣୀତ ହେବ ତାହା ପରବର୍ତ୍ତୀ ଦୃଷ୍ଟାନ୍ତରେ ଦର୍ଶାଇ ଦଆଗଲା ।

## ଦୃଷ୍ଟାନ୍ତ (୨)

କଟକର ପୃଷ୍ଟି ଏଣ୍ଡ କୋ: ବାଲେଶ୍ବରର କମଲାଳୟଙ୍କୁ ନିମ୍ନଲିଖିତ ମାଲ ଗଚ୍ଛଣ କଲେ । ଏହି ମାଲ ପୃଷ୍ଟି ଏଣ୍ଡ କୋ: ଙ୍କ ହିସାବ ଓ ଦାୟିତ୍ବରେ କମଲାଳୟଙ୍କ ଦ୍ୱାରା ବିକୀତ ହେବ ।

ପ୍ରତି ଖଣ୍ଡ ୩୫ ଟଙ୍କା ଦରରେ ୩୦୦ ଖଣ୍ଡ କଟକୀ ଶାଢ଼ୀ । ଏହି ଗଚ୍ଛଣୀ ମାଲ ବାଲେଶ୍ବର ପ୍ରେରଣ କରିବା ନିମନ୍ତେ ପୃଷ୍ଟି ଏଣ୍ଡ କୋ: ନିମ୍ନଲିଖିତ ବ୍ୟୟ କଲେ :

| | ଟଙ୍କା |
|---|---|
| ଗାଡ଼ି ଭଡ଼ା | ୫୦.୦୦ |
| ରେଳ ଭଡ଼ା | ୧୨୦.୦୦ |
| ବୀମା | ୩୦.୦୦ |
| ଅନ୍ୟାନ୍ୟ ଆନୁଷଙ୍ଗିକ ବ୍ୟୟ | ୪୦.୦୦ |

କମଲାଳୟ ଏହି ଲୁଗା ଗାଣ୍ଠି ରେଳ ଷ୍ଟେସନରୁ ତାଙ୍କ ଗୋଦାମକୁ ନେବା ସକାଶେ ନିମ୍ନଲିଖିତରୂପେ ବ୍ୟୟ କଲେ :

| | ଟଙ୍କା |
|---|---|
| କୁଲି ଭଡା | ୧୫ |
| ଗାଡ଼ି ଭଡ଼ା | ୩୫ |
| ନଗର ଶୁଳ୍କ | ୧୦ |

ପୂର୍ବରୁ ଚୁକ୍ତି ହୋଇଥିଲା ଯେ କମଳାଲୟ ବିକ୍ରୟ ଲବ୍ଧ ଅର୍ଥ ବାବଦ ୫% ହାରରେ କମିଶନ ପାଇବେ ।

ରପ୍ତାନୀ ମାଲ ବାଲେଶ୍ୱରରେ ପହଞ୍ଚିବା ପରେ ପୃଷ୍ଟି ଏଣ୍ଡ କୋ: କମଳାଲୟ ଉପରେ ୪,୦୦୦ ଟଙ୍କା ନିମନ୍ତେ ୩ ମାସ ମିଆଦରେ ପ୍ରସ୍ତୁତ ହୋଇଥିବା ଏକ ହୁଣ୍ଡି କାଟିଲେ ଓ ଏହା ସ୍ୱୀକୃତ ହେଲା ପରେ ଏହାକୁ ବ୍ୟାଙ୍କରେ ୬% ବଟା ଦେଇ ଭଙ୍ଗାଇଲେ ।

କମଳାଲୟ ୩ ମାସ ପରେ ରପ୍ତାନୀ ମାଲର ବିକ୍ରୟ ବିବରଣ ପଠାଇଲେ । ତହିଁରେ ସେମାନେ ପ୍ରତି ଖଣ୍ଡ ୫୦ ଟଙ୍କା ଦରରେ ୧୮୦ ଖଣ୍ଡ କଟକୀ ଶାଢ଼ୀ ବିକ୍ରୟ କରିଛନ୍ତି ବୋଲି ଜଣାଇଲେ । ସେମାନେ ଗୋଦାମ ଭଡ଼ା ବାବଦ ୫୦ ଟଙ୍କା ଓ ବିକ୍ରୟକାରୀଙ୍କୁ ପାରିଶ୍ରମିକ ଦେଇଥିବା ୯୦ ଟଙ୍କା ବ୍ୟୟ କରିଛନ୍ତି ବୋଲି ମଧ୍ୟ ଜଣାଇଲେ ।

କମଳାଲୟ ତାଙ୍କର ସମସ୍ତ ବ୍ୟୟ, ୫% ହାରରେ କମିଶନ ଓ ଅଗ୍ରିମ ପ୍ରଦତ୍ତ ହୁଣ୍ଡି ବାବଦ ଟଙ୍କା ବାଦ ଦେଇ ଅବଶିଷ୍ଟ ବିକ୍ରୟ ଲବ୍ଧ ଅର୍ଥ ସକାଶେ ପୃଷ୍ଟି ଏଣ୍ଡ କୋ: ଙ୍କ ନିକଟକୁ ବିକ୍ରୟ ବିବରଣ ସହିତ ଖଣ୍ଡିଏ ବ୍ୟାଙ୍କ୍ ଡ୍ରାଫ୍ଟ୍ ପଠାଇଲେ ।

ଉପରୋକ୍ତ ନେଣଦେଣଗୁଡ଼ିକୁ ଉଭୟ ପ୍ରେରକ ଓ ପ୍ରାପକଙ୍କ ହିସାବ ଖାତାରେ ଜାବ୍ଦା ଓ ଖତିୟାନ ଭୁକ୍ତ କର ।

## ପୃଷ୍ଟି ଏଣ୍ଡ କୋ: ଙ୍କ ବହିରେ

| | ଜାବ୍ଦା | | ଟଙ୍କା | ଟଙ୍କା |
|---|---|---|---|---|
| | ବାଲେଶ୍ୱର ରପ୍ତାନୀ ହିସାବ ଡାୟୀ<br>ରପ୍ତାନୀ କରାଯାଇଥିବା କଟକୀ ଶାଢ଼ୀ ହିସାବ ବାବଦ<br>(ପ୍ରତି ଖଣ୍ଡ ୩୫ ଟଙ୍କା ଦରରେ ୩୦୦ ଖଣ୍ଡ କଟକୀ ଶାଢ଼ୀ ବାଲେଶ୍ୱର ରପ୍ତାନୀ କରାଗଲା ।) | | ୧୦,୫୦୦ | ୧୦,୫୦୦ |
| | ବାଲେଶ୍ୱର ରପ୍ତାନୀ ହିସାବ ଡାୟୀ<br>ନଗଦ ତହବିଲ ହିସାବ ବାବଦ<br>(ରପ୍ତାନୀ ମାଲ ପ୍ରେରଣ କରିବା ସନ୍ଦାନ୍ତରେ ୨୪୦ ଟଙ୍କା ବ୍ୟୟ କରାଗଲା ।) | | ୨୪୦ | ୨୪୦ |

| | | ଟଙ୍କା | ଟଙ୍କା |
|---|---|---|---|
| ପ୍ରାପ୍ୟ ହୁଣ୍ଡି ହିସାବ ଦାୟୀ<br>କମଳାଳୟ ହିସାବ ବାବଦ<br>(କମଳାଳୟ ୩ ମାସ ମିଆଦରେ ୪,୦୦୦ ଟଙ୍କା ଜମନ୍ତେ ପ୍ରସ୍ତୁତ ହୋଇଥିବା ହୁଣ୍ଡି ସ୍ୱୀକାର କଲେ ।) | | ୪୦୦୦ | ୪,୦୦୦ |
| ବ୍ୟାଙ୍କ ହିସାବ ଦାୟୀ<br>ବଟା ହିସାବ ଦାୟୀ<br>ପ୍ରାପ୍ୟ ହୁଣ୍ଡି ହିସାବ ବାବଦ<br>(କମଳାଳୟ ସ୍ୱୀକାର କରିଥିବା ହୁଣ୍ଡି ୬% ବଟା ଦିଆଯାଇ ବ୍ୟାଙ୍କରେ ଭଙ୍ଗାଇ ଦିଆଗଲା ।) | | ୩,୯୪୦<br>୬୦ | ୪,୦୦୦ |
| କମଳାଳୟ ହିସାବ ଦାୟୀ<br>ବାଲେଶ୍ୱର ଚଳଣୀ ହିସାବ ବାବଦ<br>(କମଳାଳୟଙ୍କ ଦ୍ୱାରା ପ୍ରେରିତ ବିକ୍ରୟ ବିବରଣୀରୁ ଜଣାଗଲା ଯେ ସେମାନେ ପ୍ରତିଖଣ୍ଡ ୫୦ ଟଙ୍କା ଦରରେ ୨୮୦ ଖଣ୍ଡ କଟକୀ ଶାଢ଼ୀ ବିକ୍ରୟ କରିଛନ୍ତି ।) | | ୧୪,୦୦୦ | ୧୪,୦୦୦ |
| ବାଲେଶ୍ୱର ଚଳଣୀ ହିସାବ ଦାୟୀ<br>କମଳାଳୟଙ୍କ ହିସାବ ବାବଦ<br>(ଚଳଣୀ ମାଲ ସମ୍ବନ୍ଧରେ କମଳାଳୟ ମୋଟ ୨୦୦ ଟଙ୍କା ବ୍ୟୟ କରିଛନ୍ତି ।) | | ୨୦୦ | ୨୦୦ |
| ବାଲେଶ୍ୱର ଚଳଣୀ ହିସାବ ଦାୟୀ<br>କମଳାଳୟ ହିସାବ ବାବଦ<br>(ଚଳଣୀ ମାଲର ବିକ୍ରୟ ଲବ୍ଧ ଅର୍ଥ ଉପରେ ୫% ହାରରେ କମିଶନ ବାବଦ ୭୦୦ ଟଙ୍କା କମଳାଳୟଙ୍କର ପ୍ରାପ୍ୟ ହେଲା ।) | | ୭୦୦ | ୭୦୦ |

| | | ଟଙ୍କା | ଟଙ୍କା |
|---|---|---|---|
| | ମହଜୁଦ ଚାଲାଣୀ ପଣ୍ୟ ହିସାବ ଡାଃ<br>ବାଲେଶ୍ୱର ଚାଲାଣୀ ହିସାବ ବାବଦ<br><br>(ଅବିକ୍ରୀତ ୨୦ ଖଣ୍ଡ ଶାଢ଼ୀର କ୍ରୟ ମୂଲ୍ୟ [{୨୦ × ୩୫ ଟଙ୍କା} + {୩୦୦ ଟଙ୍କା × $\frac{୨୦}{୩୦୦}$}] ୭୨୦ ଟଙ୍କା ହିସାବଭୁକ୍ତ କରାଗଲା) | ୭୨୦ | ୭୨୦ |
| | ବ୍ୟାଙ୍କ ହିସାବ ଡାଃ<br>କମଲାଳୟ ହିସାବ ବାବଦ<br><br>(କମଲାଳୟଠାରୁ ବ୍ୟାଙ୍କ ଡ୍ରାଫ୍ଟ ମିଳିଲା) | ୯,୧୦୦ | ୯,୧୦୦ |
| | ବାଲେଶ୍ୱର ଚାଲାଣୀ ହିସାବ ଡାଃ<br>ନିଟ୍ ଲାଭ କ୍ଷତି ହିସାବ ବାବଦ<br><br>(ଚାଲାଣୀ କାରବାରର ଲାଭ ନିଟ୍ ଲାଭ-କ୍ଷତି ହିସାବକୁ ଅଣାଗଲା ।) | ୩,୦୮୦ | ୩,୦୮୦ |
| (ବର୍ଷ ଶେଷରେ | ଚାଲାଣ କରାଯାଇଥିବା କଟକୀ ଶାଢ଼ୀ ହିସାବ ଡାଃ<br>ମୋଟ ଲାଭ କ୍ଷତି ହିସାବ ବାବଦ<br><br>(ଚାଲାଣ କରାଯାଇଥିବା କଟକୀ ଶାଢ଼ୀ ହିସାବରେ ବାକି ସ୍ଥାନାନ୍ତରିତ କରି ସେ ହିସାବ ବନ୍ଦ କରାଗଲା ।) | ୧୦,୪୦୦ | ୧୦,୪୦୦ |

# ଖତିୟାନ ହିସାବ

ଦାୟୀ — ବାଲେଶ୍ୱର ଚାଲାଣ ହିସାବ — ଦାତା

| | ଟଙ୍କା | | ଟଙ୍କା |
|---|---|---|---|
| ଚାଲାଣ କରାଯାଇ ଥିବା କଞ୍ଚା ଶାଢ଼ୀ ହିସାବ ବାବଦ | ୧୦,୫୦୦ | କମଲାଲୟ ହି: ବାବଦ (ବିକ୍ରୟଲବ୍ଧ ଅର୍ଥ) | ୧୪,୦୦୦ |
| ବ୍ୟାଙ୍କ୍ ହି· ବାବଦ | ୨୪୦ | ମହଜୁଦ୍ ଚାଲାଣୀ ପଣ୍ୟ ହିସାବ ବାବଦ | ୭୨୦ |
| କମଲାଲୟ ହି: ବାବଦ (ବ୍ୟୟ) | ୨୦୦ | | |
| କମଲାଲୟଙ୍କ ହିଃ ବାବଦ (କମିଶନ) | ୭୦୦ | | |
| ନିଟ୍ ଲଭ-ଲଭ-କ୍ଷତି ହିସାବକୁ ସ୍ଥାନାନ୍ତରିତ ହେଲ | ୩,୦୮୦ | | |
| | ୧୪,୭୨୦ | | ୧୪,୭୨୦ |

ଦାୟୀ — କମଲାଲୟ ହିସାବ — ଦାତା

| | ଟଙ୍କା | | ଟଙ୍କା |
|---|---|---|---|
| ବାଲେଶ୍ୱର ଚାଲାଣୀ ହିସାବ ବାବଦ | ୧୪,୦୦୦ | ପ୍ରାପ୍ୟ ହୁଣ୍ଡି ହିସାବ ବାବଦ | ୪,୦୦୦ |
| | | ବାଲେଶ୍ୱର ଚାଲାଣୀ ହିସାବ ବାବଦ | ୨୦୦ |
| | | ବାଲେଶ୍ୱର ଚାଲାଣୀ ହିସାବ ବାବଦ (କମିଶନ) | ୭୦୦ |
| | | ବ୍ୟାଙ୍କ୍ ହିସାବ ବାବଦ | ୯,୧୦୦ |
| | ୧୪,୦୦୦ | | ୧୪,୦୦୦ |

**ଦାୟୀ — ପ୍ରାପ୍ୟ ହୁଣ୍ଡି ହିସାବ — ଦାତା**

| | ଟଙ୍କା | | ଟଙ୍କା |
|---|---|---|---|
| କମଲାଲଙ୍କ ହିସାବ ବାବଦ | ୪,୦୦୦ | ବ୍ୟାଙ୍କ୍ ହିସାବ ବାବଦ | ୩,୯୪୦ |
| | | ବଟ୍ଟା ହିସାବ ବାବଦ | ୬୦ |
| | ୪,୦୦୦ | | ୪,୦୦୦ |

**ଦାୟୀ — ବଟ୍ଟା ହିସାବ — ଦାତା**

| | ଟଙ୍କା | | ଟଙ୍କା |
|---|---|---|---|
| ପ୍ରାପ୍ୟ ହୁଣ୍ଡି ହିସାବ ବାବଦ | ୬୦ | | |

**ଦାୟୀ — ନଗଦ ତହବିଲ ହିସାବ — ଦାତା**

| | ଟଙ୍କା | | ଟଙ୍କା |
|---|---|---|---|
| | | ବାଲେଶ୍ୱର ସ୍ମରଣୀ ହିସାବ ବାବଦ | ୨୪୦ |

ଦାସ୍ମୀ ଚାଲାଣ କରାଯାଇଥିବା କଟକ ଶାଢ଼ୀ ହିସାବ ଦାତା

| | | | ଟଙ୍କା | | | | ଟଙ୍କା |
|---|---|---|---|---|---|---|---|
| | ମୋଟ ଲାଭ-କ୍ଷତି ହିସାବ ବାବଦ | | ୧୦,୫୦୦ | | ବାଲେଶ୍ୱର ଚାଲାଣୀ ହିସାବ ବାବଦ | | ୧୦,୫୦୦ |

ଦାସ୍ମୀ ମହଜୁଦ ଚାଲାଣୀ ପଣ୍ୟ ହିସାବ ଦାତା

| | | | ଟଙ୍କା | | | | ଟଙ୍କା |
|---|---|---|---|---|---|---|---|
| | ବାଲେଶ୍ୱର ଚାଲାଣୀ ହିସାବ ବାବଦ | | ୭୨୦ | | | | |

ଦାସ୍ମୀ ବ୍ୟାଙ୍କ୍ ହିସାବ ଦାତା

| | | | ଟଙ୍କା | | | | ଟଙ୍କା |
|---|---|---|---|---|---|---|---|
| | ପ୍ରାପ୍ୟ ହୁଣ୍ଡି ହିସାବ ବାବଦ | | ୩,୯୪୦ | | | | |
| | କମଳାଳୟ ହିସାବ ବାବଦ | | ୯,୧୦୦ | | | | |

| ଦାସ୍ସୀ | | ମୋଟ ଲଭ-କ୍ଷତ ହୁସାବ | | | | | ଦାତା |
|---|---|---|---|---|---|---|---|
| | | | ଟଙ୍କା | | | | ଟଙ୍କା |
| | | | | | ଗ୍ଭଲଣ କରଯାଇ-ଥିବା କଟକ ଶାଢ଼ୀ ହୁସାବ ବାବଦ | | ୧୦,୫୦୦ |

| ଦାସ୍ସୀ | | ନଟ୍ ଲଭ-କ୍ଷତ ହୁସାବ | | | | | ଦାତା |
|---|---|---|---|---|---|---|---|
| | | | ଟଙ୍କା | | | | ଟଙ୍କା |
| | | | | | ବାଲେଶ୍ୱର ଗ୍ଭଲଣୀ ହୁସାବ ବାବଦ | | ୩,୦୮୦ |

କମଳାଳସ୍ସଙ୍କର ହୁସାବ ଖାତାରେ

ରୋଜନାମା

| | | | ଟଙ୍କା | ଟଙ୍କା |
|---|---|---|---|---|
| | ପୃଷ୍ଟି ଏଣ୍ଡ୍ କୋଃଙ୍କର ହୁସାବ ଦାସ୍ସୀ<br>ବ୍ୟାଙ୍କ୍ ହୁସାବ ବାବଦ<br>(ଗ୍ଭଲାଣୀ ମାଲ୍ ଗୋଦାମକୁ ଆଣିବା ପର୍ଯ୍ୟନ୍ତ ବ୍ୟସ୍ସ) | | ୭୦ | ୭୦ |
| | ପୃଷ୍ଟି ଏଣ୍ଡ୍ କୋଃଙ୍କ ହୁସାବ ଦାସ୍ସୀ<br>ଦେସ୍ସ ହୁଣ୍ଡି ହୁସାବ ବାବଦ<br>(ପୃଷ୍ଟି ଏଣ୍ଡ୍ କୋ ତନ ମାସ ମିଆଦରେ ୪,୦୦୦ ଟଙ୍କା ସକାଶେ ପ୍ରସ୍ତୁତ କରଥିବା ହୁଣ୍ଡି ସ୍ୱୀକାର କରାଗଲା ।) | | ୪,୦୦୦ | ୪,୦୦୦ |

| | | ଟଙ୍କା | ଟଙ୍କା |
|---|---|---|---|
| ବ୍ୟାଙ୍କ୍ ହିସାବ | ଦାୟୀ | ୧୪,୦୦୦ | |
| ପୃଷ୍ଟି ଏଣ୍ଡ୍ କୋ:ଙ୍କ ହିସାବ | ବାବଦ | | ୧୪,୦୦୦ |
| (ଚାଲାଣୀ ମାଲ ବିକ୍ରୟ କରି ମିଳିଥିବା ଅର୍ଥ ସକାଶେ) | | | |
| ପୃଷ୍ଟି ଏଣ୍ଡ୍ କୋ:ଙ୍କ ହିସାବ | ଦାୟୀ | ୮୪୦ | |
| ବ୍ୟାଙ୍କ୍ ହିସାବ | ବାବଦ | | ୧୪୦ |
| କମିଶନ୍ ହିସାବ | ବାବଦ | | ୭୦୦ |
| (ଗୋଦାମ ଭଡ଼ା ବାବଦ ୫୦ ଟଙ୍କା ବିକ୍ରୟକାରୀଙ୍କୁ ୯୦ ଟଙ୍କା ପାରିଶ୍ରମିକ ଦିଆଗଲା ଓ ବିକ୍ରୟ ଲବ୍ଧ ଅର୍ଥ ବାବଦ ୫% ହାରରେ କମିଶନ୍ ପ୍ରାପ୍ୟ ହେଲା ।) | | | |
| ଦେୟ ହୁଣ୍ଡି ହିସାବ | ଦାୟୀ | ୪,୦୦୦ | |
| ବ୍ୟାଙ୍କ୍ ହିସାବ | ବାବଦ | | ୪,୦୦୦ |
| (ମିଆଦ ପୂର୍ତ୍ତି ଦିବସରେ ହୁଣ୍ଡି ବାବଦ ଟଙ୍କା ବ୍ୟାଙ୍କ୍‌ରୁ ଦିଆଗଲା ।) | | | |
| ପୃଷ୍ଟି ଏଣ୍ଡ୍ କୋ:ଙ୍କ ହିସାବ | ଦାୟୀ | ୯,୧୦୦ | |
| ବ୍ୟାଙ୍କ୍ ହିସାବ | ବାବଦ | | ୯,୧୦୦ |
| (ବ୍ୟାଙ୍କ୍ ଡ୍ରାଫଟ୍ ମାଧ୍ୟମରେ ପୃଷ୍ଟି ଏଣ୍ଡ୍ କୋ:ଙ୍କ ହିସାବ ନିଷ୍ପତ୍ତି କରାଗଲା ।) | | | |

## ଖତିୟାନ ହିସାବ

ଦାୟୀ ପୁଷ୍ଟି ଏଣ୍ଡ୍ କୋ ଙ୍କ ହିସାବ ଦାତା

| ବିବରଣୀ | ଟଙ୍କା | ବିବରଣୀ | ଟଙ୍କା |
|---|---|---|---|
| ବ୍ୟାଙ୍କ ହିସାବ ବାବଦ | ୬୦ | ବ୍ୟାଙ୍କ ହି: ବାବଦ | ୧୪,୦୦୦ |
| ଦେୟ ହୁଣ୍ଡି ହି: ବାବଦ | ୪,୦୦୦ | | |
| ବ୍ୟାଙ୍କ ହିସାବ ବାବଦ | ୧୪୦ | | |
| କମିଶନ ହିସାବ ବାବଦ | ୭୦୦ | | |
| ବ୍ୟାଙ୍କ ହିସାବ ବାବଦ | ୯,୧୦୦ | | |
| | ୧୪,୦୦୦ | | ୧୪,୦୦୦ |

ଦାୟୀ ଦେୟ ହୁଣ୍ଡି ହିସାବ ଦାତା

| ବିବରଣୀ | ଟଙ୍କା | ବିବରଣୀ | ଟଙ୍କା |
|---|---|---|---|
| ବ୍ୟାଙ୍କ ହି: ବାବଦ | ୪,୦୦୦ | ପୁଷ୍ଟି ଏଣ୍ଡ୍ କୋ ଙ୍କ ହିସାବ ବାବଦ | ୪,୦୦୦ |

ଦାୟୀ କମିଶନ ହିସାବ ଦାତା

| ବିବରଣୀ | ଟଙ୍କା | ବିବରଣୀ | ଟଙ୍କା |
|---|---|---|---|
| | | ପୁଷ୍ଟି ଏଣ୍ଡ୍ କୋ ଙ୍କ ହିସାବ ବାବଦ | ୭୦୦ |

ଦାୟୀ ବ୍ୟାଙ୍କ ହିସାବ ଦାତା

| ବିବରଣୀ | ଟଙ୍କା | ବିବରଣୀ | ଟଙ୍କା |
|---|---|---|---|
| ପୁଷ୍ଟି ଏଣ୍ଡ କୋ ଙ୍କ ହିସାବ ବାବଦ | ୧୪,୦୦୦ | ପୁଷ୍ଟି ଏଣ୍ଡ କୋ ଙ୍କ ହିସାବ ବାବଦ | ୬୦ |
| | | ପୁଷ୍ଟି ଏଣ୍ଡ କୋ ଙ୍କ ହିସାବ ବାବଦ | ୧୪୦ |
| | | ଦେୟ ହୁଣ୍ଡି ହି: ବାବଦ | ୪,୦୦୦ |
| | | ପୁଷ୍ଟି ଏଣ୍ଡ କୋ ଙ୍କ ହିସାବ ବାବଦ | ୯,୧୦୦ |

ଅବଧେୟ୍ୟ :—ଏହି ଦୃଷ୍ଟାନ୍ତରେ ବିକ୍ରୟ ବିବରଣ ପ୍ରେରଣ କରିବା ସମୟରେ ପ୍ରାପକଙ୍କ ନିକଟରେ ଅବିକ୍ରୀତ ୨୦ ଖଣ୍ଡ ଶାଢ଼ୀ ଅବଶିଷ୍ଟ ଥିଲା । ନମୁନା ଗ୍ଲାଲଣରେ ଦିଆଯାଇଥିବା ମୂଲ୍ୟ ଅନୁଯାୟୀ ଏହାର ମୂଲ୍ୟ ୨୦ × ୩୫ ଟଙ୍କା = ୭୦୦ ଟଙ୍କା ହୋଇ ଥାଆନ୍ତା । ମାତ୍ର ଯେହେତୁ ପ୍ରେରକଙ୍କ ଗୋଦାମରୁ ପ୍ରାପକଙ୍କ ଗୋଦାମ ଚାଲଣୀ ପଣ୍ୟ ପହଞ୍ଚିବା ପର୍ଯ୍ୟନ୍ତ ସେ ବାବଦ ପ୍ରେରକ ୨୪୦ ଟଙ୍କା ଓ ପ୍ରାପକ ୬୦ ଟଙ୍କା, ଅର୍ଥାତ୍ ମୋଟ ୩୦୦ ଟଙ୍କା ଖର୍ଚ୍ଚ କରିଛନ୍ତି । ତେଣୁ କୋଡ଼ିଏ ଖଣ୍ଡି ଶାଢ଼ୀ ବାବଦ ୩୦୦ ଟଙ୍କା × ୨୦/୩୦୦, ଅଥବା ୨୦ ଟଙ୍କା ଖର୍ଚ୍ଚ ହୋଇଛି । ଏହି ଖର୍ଚ୍ଚ ବାବଦ ୨୦ ଟଙ୍କା ଅବିକ୍ରୀତ ପଣ୍ୟର କ୍ରୟ ମୂଲ୍ୟ ସହିତ ଯୋଗ କରି ଏହାର ମୂଲ୍ୟ ୭୨୦ ଟଙ୍କା କରାଯାଇଛି । ଏଠାରେ ସ୍ମରଣ ରଖିବାକୁ ହେବ ଯେ ଯଦିଓ ପ୍ରାପକ ଚାଲଣୀ ପଣ୍ୟ ସମ୍ବନ୍ଧରେ ଗୋଦାମ ଭଡ଼ା ବାବଦ ୫୦ ଟଙ୍କା ଓ ବିକ୍ରୟକାରୀଙ୍କ ପାରିଶ୍ରମିକ ବାବଦ ୯୦ ଟଙ୍କା ବ୍ୟୟ କରିଛନ୍ତି, ତଥାପି ତାହା ଅବିକ୍ରୀତ ପଣ୍ୟର ମୂଲ୍ୟାୟନ ସମୟରେ ହିସାବକୁ ନିଆଯିବ ନାହିଁ । କାରଣ ଏହି ପ୍ରକାର ବ୍ୟୟ ଦ୍ୱାରା ଚାଲଣୀ ପଣ୍ୟର ମୂଲ୍ୟ ବୃଦ୍ଧି ପାଇ ନାହିଁ ।

ଏଠାରେ ଆଉ ଗୋଟିଏ ବିଷୟ ସ୍ମରଣ ରଖିବାକୁ ହେବ ଯେ ଯଦି କୌଣସି କାରଣରୁ ଚାଲଣୀ ପଣ୍ୟର ବଜାର ମୂଲ୍ୟ ୭୨୦ରୁ ଅଥବା ୭୦୦ ଟଙ୍କାରୁ ଊଣା ହୋଇଥାଏ ତାହା ହେଲେ ଅବିକ୍ରୀତ ଚାଲଣୀ ପଣ୍ୟର ମୂଲ୍ୟ ବଜାର ମୂଲ୍ୟ ସହିତ ସମାନ ହେବ ।

ଅନେକ ସମୟରେ ପରୀକ୍ଷାର ପ୍ରଶ୍ନ ପତ୍ରରେ ପ୍ରେରକ ଓ ପ୍ରାପକ ଚାଲଣୀ ପଣ୍ୟ ସମ୍ବନ୍ଧରେ ଯେଉଁ ବ୍ୟୟ କରିଥାଆନ୍ତି ତାହାର ବିଶଦ ବିବରଣ ଦିଆଯାଇ ନ ଥାଏ । ସୁତରାଂ ପ୍ରତ୍ୟେକେ କେଉଁ ବାବଦରେ କେତେ ବ୍ୟୟ କରିଛନ୍ତି ତାହା ଜାଣିବାର ଉପାୟ ନ ଥାଏ । ଏପରି କ୍ଷେତ୍ରରେ କେବଳ ପ୍ରେରକ ଯାହା ବ୍ୟୟ କରି ଥାଆନ୍ତି ତାହାର ଆନୁପାତିକ ପରିମାଣ ଅବିକ୍ରୀତ ଚାଲଣୀ ପଣ୍ୟର କ୍ରୟ ମୂଲ୍ୟ ସହିତ ଯୋଗ କଲେ ଯଥେଷ୍ଟ ହେବ । ଆବଶ୍ୟକ ମନେ କଲେ ଏ ବିଷୟରେ ଉତ୍ତର ସହିତ ଗୋଟିଏ ନୋଟ୍ ମଧ୍ୟ ଦିଆଯାଇପାରେ ।

## ଚାଲଣୀ-ପଣ୍ୟହାନି

କେତେକ ସମୟରେ ଚାଲଣୀ ପଣ୍ୟ ରେଳ ଯୋଗେ କିମ୍ବା ଜାହାଜରେ ପ୍ରେରଣ କରିବା ସମୟରେ ଅସାବଧାନତା ବଶତଃ ଅଥବା ଦୈବ ଦୁର୍ଘଟଣା

ହେତୁ ଅଥବା ସ୍ୱାଭାବିକ କାରଣରୁ ସମ୍ପୂର୍ଣ୍ଣ ରୂପେ ଅଥବା ଆଂଶିକ ରୂପେ ବିନଷ୍ଟ ହୋଇଥାଏ । ଏପରି କ୍ଷତି ସାଧାରଣତଃ ରେଳ ପଥ ବା ଜାହାଜରେ ଘଟିଥାଏ । ପ୍ରାପକଙ୍କ ଗୋଦାମରେ ଚାଲାଣୀ ପଣ୍ୟ ଥିବା କାଳରେ ମଧ୍ୟ ଏପରି କ୍ଷତି ଘଟି ପାରେ । ଯାତ୍ରା କାଳରେ ପଣ୍ୟ ଚୋରି ହେବା ଦ୍ୱାରା, ଅଗ୍ନି ସଂଯୋଗ ଦ୍ୱାରା, ବ୍ୟାପକ କ୍ଷତି ଘଟିପାରେ । ଅନେକ ସମୟରେ ଘର୍ଷଣ, କ୍ଷରଣ, ବାଷ୍ପୀକରଣ, ବାତାବରଣ ପ୍ରଭୃତି କାରଣରୁ ସ୍ୱାଭାବିକ ଭାବରେ ଚାଲାଣୀ ପଣ୍ୟର ଓଜନ ହ୍ରାସ ପ୍ରାପ୍ତ ହୋଇପାରେ । ଏହି କ୍ଷତିଗୁଡ଼ିକୁ ଦୁଇଟି ଶ୍ରେଣୀରେ ବିଭକ୍ତ କରାଯାଇ ପାରେ, ଯଥା—(କ) ଅସ୍ୱାଭାବିକ ବା ଦୈବ ଦୁର୍ଘଟଣା ଜନିତ କ୍ଷତି ଓ (ଖ) ସ୍ୱାଭାବିକ କ୍ଷତି ।

(କ) ଅସ୍ୱାଭାବିକ କ୍ଷତି ହେଲେ ତାହାକୁ ନିମ୍ନଲିଖିତ ରୋଜନାମା ମାଧ୍ୟମରେ ହିସାବଭୁକ୍ତ କରାଯିବ :

| | | |
|---|---|---|
| ଅସ୍ୱାଭାବିକ କ୍ଷତି ହିସାବ | ଡାଃ | ବିନଷ୍ଟ ପଣ୍ୟର |
| ପଣ୍ୟ ଚାଲାଣୀ ହିସାବ ବାବଦ | | ମୂଲ୍ୟ ସକାଶେ |

ଯଦି ଅସ୍ୱାଭାବିକ କ୍ଷତି ସକାଶେ ବୀମା କରାଯାଇଥାଏ ଏବଂ ଉପସ୍ଥିତ କ୍ଷତି ସମ୍ପୂର୍ଣ୍ଣ ରୂପେ ବୀମା କମ୍ପାନୀଠାରୁ ଆଦାୟ କରାଯାଇ ପାରିବ ତାହା ହେଲେ ନିମ୍ନଲିଖିତ ରୋଜନାମା ଲେଖାଯିବ :

| | | |
|---|---|---|
| ବୀମା ଦାବି ହିସାବ | ଡାଃ | ମୋଟ କ୍ଷତି |
| ଅସ୍ୱାଭାବିକ କ୍ଷତି ହିସାବ ବାବଦ | | ସକାଶେ |

ଯଦି ବୀମା କମ୍ପାନୀଠାରୁ କ୍ଷତି ବାବଦ ଆଂଶିକ ପରିମାଣ ଆଦାୟ କରାଯାଇ ପାରିବ ତାହା ହେଲେ ନିମ୍ନଲିଖିତ ରୋଜନାମା ଲେଖାଯିବ :

| | | |
|---|---|---|
| ବୀମା ଦାବି ହିସାବ | ଡାଃ | ବୀମାକୃତ ଅଂଶ ସକାଶେ |
| ନିଟ୍ ଲାଭ-କ୍ଷତି ହିସାବ | ଡାଃ | ବୀମା କରାଯାଇ ନ ଥିବା ଅଂଶ ସକାଶେ |
| ଅସ୍ୱାଭାବିକ କ୍ଷତି ହିସାବ ବାବଦ | | ମୋଟ କ୍ଷତି ସକାଶେ |

ଯଦି ଆଦୌ ବୀମା କରାଯାଇ ନଥାଏ ତାହା ହେଲେ ମୋଟ କ୍ଷତି ନିଟ୍ ଲାଭ-କ୍ଷତି ହିସାବକୁ ସ୍ଥାନାନ୍ତରିତ କରାଯିବ । ଏଥି ନିମନ୍ତେ ନିମ୍ନଲିଖିତ ରୋଜନାମା ଲେଖାଯିବ :

| | | |
|---|---|---|
| ନିଟ୍ ଲାଭ-କ୍ଷତି ହିସାବ | ଡାଃ | ମୋଟ କ୍ଷତି |
| ଅସ୍ୱାଭାବିକ କ୍ଷତି ହିସାବ ବାବଦ | | ସକାଶେ |

ଯଦି ଅସ୍ୱାଭାବିକ କ୍ଷତି ସକାଶେ କୌଣସି ବୀମା ପଲିସି ନିଆଯାଇ ନ ଥାଏ ତାହା ହେଲେ ଅନେକ ହିସାବ ରକ୍ଷକ ଏହି କ୍ଷତିକୁ ଅସ୍ୱାଭାବିକ କ୍ଷତି ହିସାବକୁ ନ ନେଇ ପ୍ରତ୍ୟକ୍ଷ ଭାବରେ ନିଟ୍ ଲାଭ-କ୍ଷତି ହିସାବକୁ ନିଅନ୍ତି । ସେ କ୍ଷେତ୍ରରେ ନିମ୍ନଲିଖିତ ରୋଜନାମା କରାଯିବ :

| | | |
|---|---|---|
| ନିଟ୍ ଲାଭ-କ୍ଷତି ହିସାବ ଦାୟୀ<br>ପଣ୍ୟ ଚାଲାଣୀ ହିସାବ ବାବଦ | } | ମୋଟ କ୍ଷତି<br>ସକାଶେ |

## ଦୁର୍ଘଟଣା ହେତୁ ବିନଷ୍ଟ ଚାଲାଣୀ ପଣ୍ୟର ମୂଲ୍ୟ ନିର୍ଦ୍ଧାରଣ

ଦୁର୍ଘଟଣା ହେତୁ ବିନଷ୍ଟ ହୋଇଥିବା ଚାଲାଣୀ ପଣ୍ୟର ମୂଲ୍ୟ ନିର୍ଦ୍ଧାରିତ କରାଗଲେ ତତ୍ପରେ କ୍ଷତି ପୂରଣ ନିମନ୍ତେ ବୀମା କମ୍ପାନୀ ନିକଟରେ ଦାବି ପେଶ୍ କରାଯିବ । ତେଣୁ କ୍ଷତିଗ୍ରସ୍ତ ପଣ୍ୟର ମୂଲ୍ୟ ନିର୍ଦ୍ଧାରଣ ଏକାନ୍ତ ଆବଶ୍ୟକ ଅଟେ । ଦୁର୍ଘଟଣାର ପୂର୍ବବର୍ତ୍ତୀ ଓ ତାହାର ପରବର୍ତ୍ତୀ ଅ-ପୌନଃପୁନିକ ବ୍ୟୟ ଭିତ୍ତିରେ ବିନଷ୍ଟ ପଣ୍ୟର ମୂଲ୍ୟ ନିର୍ଦ୍ଧାରଣ କରାଯାଏ । ଦୁର୍ଘଟଣା ପରେ ଯଦି ଚାଲାଣୀ ପଣ୍ୟର କିଛି ଅଂଶ ଅବିକ୍ରୀତ ଥାଏ ତାହାହେଲେ ତାହାର ମୂଲ୍ୟ ମଧ୍ୟ ଏହି ଭିତ୍ତିରେ ନିର୍ଦ୍ଧାରିତ ହୁଏ । ଗୋଟିଏ ଦୃଷ୍ଟାନ୍ତରୁ ଏହା ସ୍ପଷ୍ଟ ବୁଝାଯିବ । ନିମ୍ନରେ ଏହି ଦୃଷ୍ଟାନ୍ତ ଦିଆଗଲା ।

### ଦୃଷ୍ଟାନ୍ତ (୩)

ବ୍ରଜରାଜ ନଗରର ଓରିଏଣ୍ଟ୍ ପେପାର୍ ମିଲ୍ ଭୋପାଳର ଚନ୍ଦ୍ରଜିତ୍ ଷ୍ଟୋରକୁ ରେଳ ଯୋଗେ ୧,୦୦୦ ରିମ୍ କାଗଜ ଚାଲାଣ ପଠାଇଲେ । ପ୍ରତି ରିମ୍ର ଦର୍ଶନାର୍ଥ ଚାଲାଣ ମୂଲ୍ୟ ୨୫ ଟଙ୍କା । ଓରିଏଣ୍ଟ୍ ପେପାର୍ ମିଲ୍ ଚାଲାଣୀ ପଣ୍ୟ ପ୍ରେରଣ କରିବା ନିମନ୍ତେ ୨୫୦ ଟଙ୍କା ବ୍ୟୟ କଲେ । ରେଳରେ ଯିବା ସମୟରେ ଅଗ୍ନିକାଣ୍ଡ ହେତୁ ୪୦ ରିମ୍ କାଗଜ ବିନଷ୍ଟ ହେଲା । ଚନ୍ଦ୍ରଜିତ୍ ଷ୍ଟୋର ୯୬୦ ରିମ୍ କାଗଜ ରେଳ ଷ୍ଟେସନରୁ ଗୋଦାମକୁ ନେବା ପାଇଁ ୪୮ ଟଙ୍କା ବ୍ୟୟ କଲେ । ଚନ୍ଦ୍ରଜିତ୍ ଷ୍ଟୋର ପ୍ରତି ରିମ୍ ୩୦ ଟଙ୍କା ମୂଲ୍ୟରେ ୯୦୦ ରିମ୍ କାଗଜ ବିକ୍ରୟ କଲେ । ଏଥି ନିମନ୍ତେ ଗୋଦାମ ଭଡ଼ା ଓ ବିକ୍ରୟକାରୀଙ୍କ ପାରିଶ୍ରମିକ ବାବଦ ୨୭୦ ଟଙ୍କା ପଡ଼ିଲା । ଚନ୍ଦ୍ରଜିତ୍ ଷ୍ଟୋର ବିକ୍ରୟଲବ୍ଧ ଅର୍ଥ ଉପରେ ଶତକଡ଼ା ୫ ହାରରେ କମିଶନ ପାଇବେ । ଉଭୟଙ୍କ ବହିରେ ରୋଜନାମା ଓ ଖତିୟାନ ହିସାବ ପ୍ରସ୍ତୁତ କର । ଅନୁମାନ କର ଯେ ଅସ୍ୱାଭାବିକ କ୍ଷତି ବାବଦ ବୀମା କମ୍ପାନୀରୁ ଅର୍ଦ୍ଧେକ ଟଙ୍କା ମିଳ[illegible]

## ସମାଧାନ :

### ଅରିଏଣ୍ଟ ପେପାର ମିଲସ୍‌ର ହିସାବ ଖାତାରେ

| | ରୋଜନାମା | ଦାୟୀ | ଦାତା |
|---|---|---|---|
| | | ଟଙ୍କା | ଟଙ୍କା |
| (୧) | ଗୋପାଳ ଚାଲାଣୀ ହିସାବ ଦାୟୀ<br>ଚାଲାଣୀ କାଗଜ ହିସାବ ବାବଦ<br>(ରିମ ପ୍ରତି ୨୫ ଟଙ୍କା ଦରରେ ୧,୦୦୦ ରିମ କାଗଜ ଚାଲାଣ ପଠାଗଲା ।) | ୨୫,୦୦୦ | ୨୫,୦୦୦ |
| (୨) | ଗୋପାଳ ଚାଲାଣୀ ହିସାବ ଦାୟୀ<br>ବ୍ୟାଙ୍କ୍ ହିସାବ ବାବଦ<br>(କାଗଜ ଚାଲାଣ କରିବା ନିମନ୍ତେ ୨୫୦ ଟଙ୍କା ବ୍ୟୟ ହେଲା ।) | ୨୫୦ | ୨୫୦ |
| (୩) | ଅସ୍ୱାଭାବିକ କ୍ଷତି ହିସାବ ଦାୟୀ<br>ଗୋପାଳ ଚାଲାଣୀ ହିସାବ ବାବଦ<br>(ବିନଷ୍ଟ ୪୦ ରିମ କାଗଜର ମୂଲ୍ୟ ସକାଶେ ଅସ୍ୱାଭାବିକ କ୍ଷତି ହିସାବକୁ ଦାୟୀ କରାଗଲା ।) | ୧,୦୧୦ | ୧,୦୧୦ |
| (୪) | ବୀମା ଦାବି ହିସାବ ଦାୟୀ<br>ନିଟ ଲାଭ-କ୍ଷତି ହିସାବ ଦାୟୀ<br>ଅସ୍ୱାଭାବିକ କ୍ଷତି ହିସାବ ବାବଦ<br>(କ୍ଷତିର ବୀମାକୃତ ଅଂଶ ସକାଶେ ବୀମା ଦାବି ହିସାବକୁ ଦାୟୀ କରାଗଲା ।) | ୫୦୫<br>୫୦୫ | ୧,୦୧୦ |
| (୫) | ଗୋପାଳ ଚାଲାଣୀ ହିସାବ ଦାୟୀ<br>ଚନ୍ଦ୍ରକାନ୍ତ ଷ୍ଟୋର ହିସାବ ବାବଦ<br>(ଚାଲାଣୀ ମାଲ ସକାଶେ ଚନ୍ଦ୍ରକାନ୍ତ ଷ୍ଟୋର ବ୍ୟୟ କରିଥିବା ଅର୍ଥ ନିମନ୍ତେ) | ୪୮ | ୪୮ |
| (୬) | ଚନ୍ଦ୍ରକାନ୍ତ ଷ୍ଟୋର ହିସାବ ଦାୟୀ<br>ଗୋପାଳ ଚାଲାଣୀ ହିସାବ ବାବଦ<br>(ଚାଲାଣୀ ପଣ୍ୟର ବିକ୍ରୟ ଲବ୍ଧ ଅର୍ଥ ସକାଶେ ।) | ୨୭,୦୦୦ | ୨୭,୦୦୦ |
| (୭) | ଗୋପାଳ ଚାଲାଣୀ ହିସାବ ଦାୟୀ<br>ଚନ୍ଦ୍ରକାନ୍ତ ଷ୍ଟୋର ହିସାବ ବାବଦ<br>(ଚନ୍ଦ୍ରକାନ୍ତ ଷ୍ଟୋର ବ୍ୟୟ କରିଥିବା ପୌନଃପୁନିକ ଖର୍ଚ୍ଚ ସକାଶେ ।) | ୨୭୦ | ୨୭୦ |

| | | ଦାସ୍ନୀ<br>ଟଙ୍କା | ଦାତା<br>ଟଙ୍କା |
|---|---|---|---|
| (୮) | ଗୋପାଳ ଗ୍ଭଲଣି ହିସାବ ଦାସ୍ନୀ | ୧,୩୫୦ | |
| | ଚନ୍ଦ୍ରକାନ୍ତ ଷ୍ଟୋର ହିସାବ ବାବଦ | | ୧,୩୫୦ |
| | (ବିକ୍ରୟ ଲବ୍‌ଧ ଅର୍ଥ ଉପରେ ୫% ହାରରେ କମିଶନ୍ ସଜାଗେ ।) | | |
| (୯) | ମହିକୁନ୍ଦ ଗ୍ଭଲଣୀ ପଣ୍ୟ ହିସାବ ଦାସ୍ନୀ | ୧,୫୧୮ | |
| | ଗୋପାଳ ଗ୍ଭଲଣୀ ପଣ୍ୟ ହି: ବାବଦ | | ୧,୫୧୮ |
| | (ମହିକୁନ୍ଦ ଗ୍ଭଲଣୀ ପଣ୍ୟ ହିସାବ ଭୁକ୍ତ କରାଗଲ ।) | | |
| (୧୦) | ଗୋପାଳ ଗ୍ଭଲଣୀ ହିସାବ ଦାସ୍ନୀ | ୨,୬୧୦ | |
| | ନିଟ୍ ଲଭ-କ୍ଷତି ହିସାବ ବାବଦ | | ୨,୬୧୦ |
| | (ଗ୍ଭଲାଣୀ କାରବାରର ନିଟ ଲାଭ ଲାଭ-କ୍ଷତି ହିସାବକୁ ସ୍ଥାନାନ୍ତରିତ କରା-ଗଲା ।) | | |
| (୧୧) | ଗ୍ଭଲାଣୀ କାଗଜ ହିସାବ ଦାସ୍ନୀ | ୨୫,୦୦୦ | |
| | ମୋଟ ଲାଭ କ୍ଷତି ହିସାବ ବାବଦ | | ୨୫,୦୦୦ |
| | (ଗ୍ଭଲାଣୀ କାଗଜ ହିସାବର ବଳକା ମୋଟ ଲାଭ-କ୍ଷତି ହିସାବକୁ ସ୍ଥାନାନ୍ତରିତ କରାଗଲା ।) | | |

# ଖତିୟାନ ହିସାବ

ଦାୟୀ — ଗୋପାଳ ଗୃଲାଣୀ ହିସାବ — ଦାତା

| | ଟଙ୍କା | | ଟଙ୍କା |
|---|---|---|---|
| ଗୃଲାଣୀ କାଗଜ ହିସାବ ବାବଦ | ୧୫,୦୦୦ | ଅସ୍ୱାଭାବିକ କ୍ଷତି ହିସାବ ବାବଦ | ୧,୦୧୦ |
| ବ୍ୟାଙ୍କ ହିସାବ ବାବଦ | ୧୫୦ | ଚନ୍ଦ୍ରଜିତ୍ ଷ୍ଟୋର ହିସାବ ବାବଦ | ୧୭,୦୦୦ |
| ଚନ୍ଦ୍ରଜିତ୍ ଷ୍ଟୋର ହିସାବ ବାବଦ | ୪୮ | ମହଜୁଦ ଗୃଲାଣୀ ପଣ୍ୟ ହିସାବ ବାବଦ | ୧,୫୧୮ |
| ଚନ୍ଦ୍ରଜିତ୍ ଷ୍ଟୋର ହିସାବ ବାବଦ | ୧୭୦ | | |
| ଚନ୍ଦ୍ରଜିତ୍ ଷ୍ଟୋର ହିସାବ ବାବଦ | ୧,୩୫୦ | | |
| ନେଟ୍ ଲାଭ-କ୍ଷତି ହିସାବ ବାବଦ | ୨,୮୧୦ | | |
| | ୧୯,୫୨୮ | | ୧୯,୫୨୮ |

ଦାୟୀ — ଚନ୍ଦ୍ରଜିତ୍ ଷ୍ଟୋର ହିସାବ — ଦାତା

| | ଟଙ୍କା | | ଟଙ୍କା |
|---|---|---|---|
| ଗୋପାଳ ଗୃଲାଣୀ ହିସାବ ବାବଦ | ୧୭,୦୦୦ | ଗୋପାଳ ଗୃଲାଣୀ ହିସାବ ବାବଦ (ଅ-ପୌନଃପୁନିକ ବ୍ୟୟ) | ୪୮ |
| | | ଗୋପାଳ ଗୃଲାଣୀ ହିସାବ ବାବଦ (ପୌନଃପୁନିକ ବ୍ୟୟ) | ୧୭୦ |
| | | ଗୋପାଳ ଗୃଲାଣୀ ହିସାବ ବାବଦ (କମିଶନ୍) | ୧,୩୫୦ |
| | | ବାକୀ ପଡ଼ିଲା | ୧୫,୪୩୨ |
| | ୧୭,୦୦୦ | | ୧୭,୦୦୦ |
| ପୂର୍ବ ବାକୀ ବାବଦ | ୧୫,୪୩୨ | | |

ଦାୟୀ — ବ୍ୟାଙ୍କ୍ ହିସାବ — ଦାତା

| | ଟଙ୍କା | | ଟଙ୍କା |
|---|---|---|---|
| | | ଖେପାଳ ଚାଲାଣୀ ହିସାବ ବାବଦ | ୬୫୦ |

ଦାୟୀ — ଚାଲାଣୀ କାଗଜ ହିସାବ — ଦାତା

| | ଟଙ୍କା | | ଟଙ୍କା |
|---|---|---|---|
| ମୋଟ ଲାଭ-କ୍ଷତି ହିସାବ ବାବଦ | ୬୫,୦୦୦ | ଖେପାଳ ଚାଲାଣୀ ହିସାବ ବାବଦ | ୬୫,୦୦୦ |

ଦାୟୀ — ଅସ୍ୱାଭାବିକ କ୍ଷତି ହିସାବ — ଦାତା

| | ଟଙ୍କା | | ଟଙ୍କା |
|---|---|---|---|
| ଖେପାଳ ଚାଲାଣୀ ହିସାବ ବାବଦ | ୧,୦୧୦ | ବୀମା ଦାବି ହିସାବ ବାବଦ | ୫୦୫ |
| | | ନିଟ୍ ଲଭ-କ୍ଷତି ହିସାବ ବାବଦ | ୫୦୫ |
| | ୧,୦୧୦ | | ୧,୦୧୦ |

ଦାୟୀ — ବୀମା ଦାବି ହିସାବ — ଦାତା

| | ଟଙ୍କା | | ଟଙ୍କା |
|---|---|---|---|
| ଅସ୍ୱାଭାବିକ କ୍ଷତି ହିସାବ ବାବଦ | ୫୦୫ | | |

ଦାୟୀ ମହଜୁଦ୍ ଚାଲାଣୀ ହିସାବ ଦାତା

| | | ଟଙ୍କା | | | ଟଙ୍କା |
|---|---|---|---|---|---|
| ଗୋପାଳ ଚାଲାଣୀ ହିସାବ ବାବଦ | | ୧,୫୧୮ | | | |

ଦାୟୀ ମୋଟ ଲାଭ-କ୍ଷତି ହିସାବ ଦାତା

| | | ଟଙ୍କା | | | ଟଙ୍କା |
|---|---|---|---|---|---|
| | | | ଚାଲାଣୀ କାଗଜ ହିସାବ ବାବଦ | | ୨୫,୦୧୦ |

ଦାୟୀ ନେଟ୍ ଲାଭ-କ୍ଷତି ହିସାବ ଦାତା

| | | ଟଙ୍କା | | | ଟଙ୍କା |
|---|---|---|---|---|---|
| ଅସ୍ୱାଭାବିକ କ୍ଷତି ହିସାବ ବାବଦ | | ୫୦୫ | ଗୋପାଳ ଚାଲାଣୀ ହିସାବ ବାବଦ | | ୨,୭୧୦ |

## ଚନ୍ଦ୍ରଜିତ୍ ଷ୍ଟୋର ହିସାବ ବହିରେ

## ରୋଜନାମା

| | | ଦାୟୀ<br>ଟଙ୍କା | ଦାତା<br>ଟଙ୍କା |
|---|---|---|---|
| (୧) | ଅରବେଣ୍ଡ୍ ପେପାର ମିଲ୍ସ ଦାୟୀ<br>ବ୍ୟାଙ୍କ୍ ହିସାବ ବାବଦ<br>(ଅରବେଣ୍ଡ୍ ପେପାର ମିଲ୍ସ ତାଙ୍କ ଦ୍ୱାରା ପ୍ରେରିତ ପଣ୍ୟ ବାବଦ ବ୍ୟୟିତ ଅର୍ଥ ସକାଶେ ।) | ୪୮ | ୪୮ |
| (୨) | ବ୍ୟାଙ୍କ୍ ହିସାବ ଦାୟୀ<br>ଅରବେଣ୍ଡ୍ ପେପାର ମିଲ୍ସ ହିସାବ ବାବଦ<br>(ପ୍ରେରିତ ପଣ୍ୟର ପ୍ରତି ରିମ୍ ୩୦ ଟଙ୍କା ଦରରେ ୯୦୦ ରିମ୍ କାଗଜର ବିକ୍ରୟ ଲବ୍ଧ ଅର୍ଥ ସକାଶେ ।) | ୨୭,୦୦୦ | ୨୭,୦୦୦ |
| (୩) | ଅରବେଣ୍ଡ୍ ପେପାର ମିଲ୍ସ୍ ହିସାବ ଦାୟୀ<br>ବ୍ୟାଙ୍କ୍ ହିସାବ ବାବଦ<br>(ପ୍ରେରିତ ପଣ୍ୟ ସକାଶେ ଗୋଦାମ ଭଡ଼ା ଓ ବିକ୍ରୟକାରୀଙ୍କ ପାରିଶ୍ରମିକ ବାବଦ ପ୍ରେରିତ ବ୍ୟୟ ନିମନ୍ତେ ।) | ୨୭୦ | ୨୭୦ |
| (୪) | ଅରବେଣ୍ଡ୍ ପେପାର ମିଲ୍ସ ହିସାବ ଦାୟୀ<br>କମିଶନ୍ ହିସାବ ବାବଦ<br>(ବିକ୍ରୟ ଲବ୍ଧ ଅର୍ଥ ଉପରେ ଶତକଡ଼ା ୫ ହାରରେ କମିଶନ୍ ପ୍ରାପ୍ୟ ହେଲା ।) | ୧,୩୫୦ | ୧,୩୫୦ |

# ଖତିୟାନ ହିସାବ

## ଦାୟୀ ଅରବିନ୍ଦ୍ ପେପାର ମିଲ୍ସଙ୍କ ହିସାବ ଦାତା

| | | ଟଙ୍କା | | | ଟଙ୍କା |
|---|---|---|---|---|---|
| | ବ୍ୟାଙ୍କ୍ ହି: ବାବଦ | ୪୮ | | ବ୍ୟାଙ୍କ୍ ହି: ବାବଦ | ୧୭,୦୦୦ |
| | ବ୍ୟାଙ୍କ୍ ହି: ବାବଦ | ୧୭୦ | | | |
| | କମିଶନ ହିଃ ବାବଦ | ୨,୩୫୦ | | | |
| | ବାକି ଗଡ଼ିଲ | ୧୫,୩୩୨ | | | |
| | | ୧୭,୦୦୦ | | | ୧୭,୦୦୦ |
| | | | | ପୂର୍ବ ବାକି ବାବଦ | ୧୫,୩୩୨ |

## ଦାୟୀ କମିଶନ୍ ହିସାବ ଦାତା

| | | ଟଙ୍କା | | | ଟଙ୍କା |
|---|---|---|---|---|---|
| | | | | ଅରବିନ୍ଦ୍ ପେପାର ମିଲ୍ସ ହିସାବ ବାବଦ | ୨,୩୫୦ |

## ଦାୟୀ ବ୍ୟାଙ୍କ୍ ହିସାବ ଦାତା

| | | ଟଙ୍କା | | | ଟଙ୍କା |
|---|---|---|---|---|---|
| | ଅରବିନ୍ଦ୍ ପେପାର ମିଲ୍ସ ହିସାବ ବାବଦ | ୧୭,୦୦୦ | | ଅରବିନ୍ଦ୍ ପେପାର ମିଲ୍ସ ହିସାବ ବାବଦ | ୪୮ |
| | | | | ଅରବିନ୍ଦ୍ ପେପାର ମିଲ୍ସ ହିସାବ ବାବଦ | ୧୭୦ |

ଏହି ଦୃଷ୍ଟାନ୍ତରେ ଦୁଇଟି ବିଷୟ ଲକ୍ଷ୍ୟ କରିବାର ଅଛି । ଯଥା, (୧) ଅସ୍ୱାଭାବିକ କ୍ଷତିର ପରିମାଣ ନିର୍ଦ୍ଧାରଣ, ଏବଂ (୨) ଖେପାଲ ଚାଲାଣୀ ପଣ୍ୟର ଅବିକ୍ରୀତ ଅଂଶର ମୂଲ୍ୟ ନିର୍ଦ୍ଧାରଣ । ଅତଏବ ପେପର ମିଲ୍‌ସଙ୍କ ବହିରେ (୩) ନମ୍ବର ରୋଜନାମାରେ ଅସ୍ୱାଭାବିକ କ୍ଷତିର ମୂଲ୍ୟ ୧,୦୫୦ ଟଙ୍କା କିପରି ସାବ୍ୟସ୍ତ ହୋଇଛି ତାହା ନିମ୍ନରେ ବୁଝାଇ ଦିଆଗଲା ।

| | | ଟଙ୍କା |
|---|---|---|
| (୧) | ୪୦ ରିମ କାଗଜର ମୂଲ୍ୟ, | ୪୦ × ୨୫ = ୧,୦୦୦ |
| | ଯୁଦ୍ଧ କ୍ଷତି ହେବା ପର୍ଯ୍ୟନ୍ତ ଏହି ୪୦ ରିମ କାଗଜ ଉପରେ ଆନୁପାତିକ ଅ-ପୌନଃପୁନିକ ଖର୍ଚ୍ଚ, ଅର୍ଥାତ | ୨୫୦ ଟଙ୍କା × $\frac{୪୦}{୧୦୦୦}$ = ୧୦ |
| | ଅସ୍ୱାଭାବିକ କ୍ଷତିର ମୂଲ୍ୟ | ୧,୦୧୦ |

(୨) ଅବିକ୍ରୀତ ମହଜୁଦ ଚାଲାଣୀ ପଣ୍ୟର ମୂଲ୍ୟ (୯) ନମ୍ବର ରୋଜନାମାରେ ୧,୫୧୮ ଟଙ୍କା କିପରି ସାବ୍ୟସ୍ତ କରାଯାଇଛି ତାହା ନିମ୍ନରେ ବୁଝାଇ ଦିଆଗଲା ।

| | ଟଙ୍କା |
|---|---|
| ୬୦ ରିମ କାଗଜର ମୂଲ୍ୟ, | ୬୦ × ୨୫ = ୧,୫୦୦ |
| ଯୁଦ୍ଧ କ୍ଷତି ହେବା ପୂର୍ବରୁ ଆନୁପାତିକ ଅ-ପୌନଃପୁନିକ ଖର୍ଚ୍ଚ ଅର୍ଥାତ୍ | ୨୫୦ ଟଙ୍କା × $\frac{୬୦}{୧୦୦୦}$ = ୧୫ |
| ଯୁଦ୍ଧ କ୍ଷତି ହେବା ପରେ ଆନୁପାତିକ ଅ-ପୌନଃପୁନିକ ଖର୍ଚ୍ଚ, ଅର୍ଥାତ | ୪୮ ଟଙ୍କା × $\frac{୬୦}{୯୬୦}$ = ୩ |
| | ୧,୫୧୮ |

(ଖ) ପୂର୍ବରୁ କୁହାଯାଇଛି ଯେ ଅନେକ ସମୟରେ ସ୍ୱାଭାବିକ ଭାବରେ ଚାଲାଣୀ ପଣ୍ୟ ବିନଷ୍ଟ ହୁଏ । ଯେହେତୁ ଏହି କ୍ଷତି ସ୍ୱାଭାବିକ କାରଣରୁ ଘଟେ ତେଣୁ ଏହାର ନିରାପତ୍ତା ବା ସୁରକ୍ଷା ସକାଶେ କୌଣସି ବୀମା ପଲିସି କରିବାର ପ୍ରଶ୍ନ ଉଠେ ନାହିଁ ଅଥବା ଏପରି କ୍ଷତିକୁ ହିସାବଭୁକ୍ତ କରିବା ସକାଶେ କୌଣସି ଜାବ୍‌ଦାର ପ୍ରୟୋଜନ ହୁଏ ନାହିଁ । ମାତ୍ର ଏପରି କ୍ଷେତ୍ରରେ ଯଦି ପ୍ରାପକଙ୍କ ନିକଟରେ କିଛି ଅବିକ୍ରୀତ ମହଜୁଦ ପଣ୍ୟ ରହିଥାଏ, ତାହାହେଲେ ତାହାର ମୂଲ୍ୟାୟନରେ କିଛି ବିଶେଷତ୍ୱ ଦେଖାଯାଏ । ଏହି ମୂଲ୍ୟାୟନର ପଦ୍ଧତି ଅସ୍ୱାଭାବିକ କ୍ଷତି ସମୟରେ ଯେପରି ହୁଏ ତାହାର ଅନୁରୂପ । ମହଜୁଦ ପଣ୍ୟର ଓସ୍ୱଦର ବା ଦର୍ଶନାର୍ଥ

ଚ୍ଲାଲଣରେ ଉଲ୍ଲିଖିତ ଦର ଅନୁଯାୟୀ ଏହାର ମୂଲ୍ୟ ଗଣନା କରାଯାଇ ତାହା ସହିତ ପ୍ରେରକ ଏବଂ ପ୍ରାପକ ଯେଉଁ ଅ-ପୌନଃପୁନିକ ବ୍ୟୟ କରିଥିବେ ତାହା ଯୋଗ କରାଯିବ ଏବଂ ଏହି ପରିମାଣକୁ ସ୍ୱାଭାବିକ କ୍ଷତି ଘଟିବା ପରେ ପ୍ରାପକଙ୍କ ନିକଟରେ ଯେତେ ପରିମାଣର ପଣ୍ୟ ପ୍ରକୃତରେ ପହଞ୍ଚିଥିବ ତାହା ଦ୍ୱାରା ଭାଗ କରାଯାଇ ମହଜୁଦ ପଣ୍ୟର ପରିମାଣ ଦ୍ୱାରା ଗୁଣ କରାଯିବ । ଯେହି ଗୁଣଫଳହିଁ ମହଜୁଦ୍ ପଣ୍ୟର ମୂଲ୍ୟ । ଏହାର ସ୍ପଷ୍ଟୀକରଣ ନିମନ୍ତେ ନିମ୍ନରେ ଏକ ଦୃଷ୍ଟାନ୍ତ ପ୍ରଦତ୍ତ ହେଲା ।

## ଦୃଷ୍ଟାନ୍ତ (୪)

କାଲକାଟା କେମିକାଲସ୍ କଲିକତାରୁ ୧,୦୦୦ ଲିଟର ମେଥିଲେଟେଡ଼ ସ୍ପିରିଟ କଟକର ମେସର୍ସ ବନମାଳି ଦାସ ଏଣ୍ଡ ସନସଙ୍କ ନିକଟକୁ ଚ୍ଲାଲଣ ପଠାଇଲେ । ଏଥି ନିମନ୍ତେ ପ୍ରେରକ ୩୫୦ ଟଙ୍କା ବ୍ୟୟ କଲେ । ଦର୍ଶନାର୍ଥ ଚ୍ଲାଲଣରେ ପ୍ରତି ଲିଟରର ଦର ୪ ଟଙ୍କା ଥିଲା । ପ୍ରାପକ ଏହି ଚ୍ଲାଲଣୀ ପଣ୍ୟକୁ ରେଲ ଷ୍ଟେସନରୁ ଗୋଦାମ ପର୍ଯ୍ୟନ୍ତ ନେବାକୁ ପରିବହନ ଆଦି ଅ-ପୌନଃପୁନିକ ଖର୍ଚ୍ଚ ବାବଦ ୫୦ ଟଙ୍କା ବ୍ୟୟ କଲେ । ପ୍ରାପକ ମାତ୍ର ୮୮୦ ଲିଟର ସ୍ପିରିଟ୍ ପାଇଲେ, ଅବଶିଷ୍ଟ ପଣ୍ୟ ପରିବହନ କାଳରେ ବାଷ୍ପ ଆକାରରେ ଉଡିଗଲା । ପ୍ରାପକ ବିକ୍ରୟ ବିବରଣ ପ୍ରେରଣ କରିବା ସମୟରେ ୨୨୦ ଲିଟର ସ୍ପିରିଟ୍ ଅବିକ୍ରୀତ ଥିଲା । ଅବିକ୍ରୀତ ମହଜୁଦ ପଣ୍ୟର ମୂଲ୍ୟ ନିର୍ଦ୍ଧାରଣ କର ।

**ସମାଧାନ :**

$$\frac{(୪,୦୦୦+୪୦୦)\ ଟଙ୍କା}{୮,୮୦} \times ୨୨୦ = ୧,୧୦୦\ ଟଙ୍କା$$

ଅର୍ଥାତ୍ ଅବିକ୍ରୀତ ମହଜୁଦ ଚାଲାଣୀ ପଣ୍ୟର ମୂଲ୍ୟ ୧,୧୦୦ ଟଙ୍କା ।

ଏହାର ମୂଲ୍ୟ ନିମ୍ନରୂପେ କରାଗଲେ ତାହା ଯଥାର୍ଥ ହେବ ନାହିଁ ।

$$\frac{(୪,୦୦୦+୪୦୦)\ ଟଙ୍କା}{୧,୦୦୦} \times ୨୨୦ = ୯୬୦\ ଟଙ୍କା$$

ଚାଲାଣୀ ପଣ୍ୟ ପ୍ରାପକଙ୍କ ନିକଟରେ ଥିବା ସମୟରେ ଯଦି କୌଣସି କ୍ଷତି ହୁଏ ତାହା ହେଲେ ତାହାକୁ ହିସାବଭୁକ୍ତ କରିବା ନିମନ୍ତେ ନିମ୍ନଲିଖିତ ଜାବଦା କରାଯିବ ।

ପ୍ରାପକଙ୍କ ବ୍ୟକ୍ତିକ ହିସାବ — ଦାୟୀ

ଚାଲାଣୀ ହିସାବ ବାବଦ

(ଅଧିଭାଗ ପଣ୍ୟର ମୂଲ୍ୟ ସକାଶେ)

ପୂର୍ବରୁ କୁହାଯାଇଛି ଯେ ଯେତେବେଳେ ପ୍ରାପକ ଉଧାରରେ ବିକ୍ରୀତ ସମସ୍ତ ଚାଲାଣୀ ପଣ୍ୟର ମୂଲ୍ୟ ଆଦାୟ କରିବାର ଦାୟିତ୍ୱ ବହନ କରନ୍ତି ସେତେବେଳେ ପ୍ରେରକ ତାଙ୍କୁ ଡେଲ କ୍ରେଡ଼ିଟ୍ସ୍ୟାର କମିଶନ ବା ଝୁଙ୍କି ବାହନ କମିଶନ ଅଥବା ଅଧିକାରୀ କମିଶନ ଦିଅନ୍ତି । ଏହା ସାଧାରଣ କମିଶନ ବ୍ୟତୀତ ଅଧିକା ଦିଆଯାଏ । ଏହାର ଏକ ଦୃଷ୍ଟାନ୍ତ ନିମ୍ନରେ ପ୍ରଦତ୍ତ ହେଲା ।

## ଦୃଷ୍ଟାନ୍ତ (୫)

କଲିକତାର ମିଶ୍ର ଏଣ୍ଡ ସନ୍ସ ବାଲେଶ୍ୱରର ତ୍ରିପାଠୀ ଏଣ୍ଡ କୋଙ୍କ ନିକଟକୁ ପ୍ରତି ପେଟି ୪୦୦ ଟଙ୍କା ଦରରେ ୮୦ ପେଟି ମନୋହାରୀ ଦ୍ରବ୍ୟ ଚାଲାଣ କଲେ । ଏଥି ସକାଶେ କୁଲିଭଡ଼ା, ଟ୍ରକ୍‌ଭଡ଼ା, ରେଲଭଡ଼ା, ବୀମା ଖର୍ଚ୍ଚ ପ୍ରଭୃତି ବାବଦ ୫୫୦ ଟଙ୍କା ବ୍ୟୟ କଲେ । ସେମାନେ ଅଗ୍ରିମ ସ୍ୱରୂପ ତ୍ରିପାଠୀ ଏଣ୍ଡ କୋ ଙ୍କ ଠାରୁ ୮,୦୦୦ ଟଙ୍କାର ଏକ ବ୍ୟାଙ୍କ ଡ୍ରାଫ୍ଟ ପାଇଲେ । ପରେ ମିଶ୍ର ଏଣ୍ଡସନ୍ସ ତ୍ରିପାଠୀ ଏଣ୍ଡ କୋଙ୍କ ଠାରୁ ବିକ୍ରୟ ବିବରଣ ପାଇଲେ । ସେଥିରୁ ଜଣାଗଲା ଯେ ତ୍ରିପାଠୀ ଏଣ୍ଡ କୋ ସମସ୍ତ ଚାଲାଣୀ ପଣ୍ୟକୁ ମୋଟ ୫୨,୦୦୦ ଟଙ୍କା ମୂଲ୍ୟରେ ବିକ୍ରୟ କରିଛନ୍ତି । ସେମାନେ ଚାଲାଣୀ ପଣ୍ୟ ସକାଶରେ ମୋଟ ୩୮୦ ଟଙ୍କା ବ୍ୟୟ କରିଛନ୍ତି । ଭଦ୍ରକର ଚନ୍ଦନା ଷ୍ଟୋର୍ସ ୩,୦୦୦ ଟଙ୍କାର ପଣ୍ୟ ଉଧାରରେ କ୍ରୟ କରିଥିଲେ । ସେହି ଷ୍ଟୋର୍ସର ମାଲିକ ଦେବାଳିଆ ହେବା ଫଳରେ ଏହି ଟଙ୍କା ଆଦାୟ ହୋଇ ପାରି ନାହିଁ ଏବଂ ଅନାଦାୟୀ ଋଣ ରୂପେ ପରିଗଣିତ ହେବ ବୋଲି ତ୍ରିପାଠୀ ଏଣ୍ଡ କୋ ଜଣାଇଛନ୍ତି । ସେମାନେ ୫% ହାରରେ ସାଧାରଣ କମିଶନ ଓ ୮% ହାରରେ ଆଶ୍ୱାସୀ କମିଶନ ବାଦ ଦେଇ ବଳକା ବିକ୍ରୟ ଲବ୍ଧ ଅର୍ଥ ମିଶ୍ର ଏଣ୍ଡ ସନସ୍ଙ୍କ ନିକଟକୁ ବ୍ୟାଙ୍କ୍ ଡ୍ରାଫ୍ଟ ଆକାରରେ ପଠାଇଲେ ।

ମିଶ୍ର ଏଣ୍ଡ ସନ୍ସଙ୍କ ବହିରେ ସମସ୍ତ ହିସାବ ଓ ତ୍ରିପାଠୀ ଏଣ୍ଡ କୋଙ୍କ ବହିରେ ମିଶ୍ର ଏଣ୍ଡ ସନ୍ସଙ୍କ ହିସାବ ପ୍ରସ୍ତୁତ କର ।

## ସମାଧାନ :

ମିଶ୍ର ଏଣ୍ଡ ସନସଙ୍କ ବହିରେ

ଦାୟୀ — ବାଲେଶ୍ୱର ଚାଲଣୀ ହିସାବ — ଦାତା

| | ଟଙ୍କା | | ଟଙ୍କା |
|---|---|---|---|
| ଚାଲଣୀ ହି: ବାବଦ | ୩୦,୦୦୦ | ତ୍ରିପାଠୀ ଏଣ୍ଡ୍ କୋ:ଙ୍କ ହିସାବ ବାବଦ-ବିକ୍ରୟ ଲବ୍ଧ ଅର୍ଥ | ୫୧,୦୦୦ |
| ବ୍ୟାଙ୍କ୍ ହି: ବାବଦ —ପରିବହନ ବୀମା ପ୍ରଭୃତି | ୫୫୦ | | |
| ତ୍ରିପାଠୀ ଏଣ୍ଡ୍ କୋ:ଙ୍କ ହିସାବ ବାବଦ ବ୍ୟୟ | ୩୦୦ | | |
| ତ୍ରିପାଠୀ ଏଣ୍ଡ୍ କୋ:ଙ୍କ ହିସାବ ବାବଦ— | | | |
| ସାଧାରଣ କମିଶନ | ୧,୭୦୦ | | |
| ଆଶ୍ୱାସୀ କମିଶନ | ୪,୨୭୦ | | |
| ଲାଭ ବାବଦ-ନିଟ୍ ଲାଭ-କ୍ଷତି ହିସାବକୁ ନିଆଗଲା | ୨୧,୩୨୦ | | |
| | ୫୧,୦୦୦ | | ୫୧,୦୦୦ |

ଦାୟୀ — ଚାଲାଣୀ ପଣ୍ୟ ହିସାବ — ଦାତା

| | ଟଙ୍କା | | ଟଙ୍କା |
|---|---|---|---|
| ମୋଟ ଲାଭ-କ୍ଷତି ହି: ବାବଦ —ସ୍ଥାନାନ୍ତରଣ | ୩୧,୦୦୦ | ବାଲେଶ୍ୱର ଚାଲାଣୀ ହିସାବ ବାବଦ | ୩୧,୦୦୦ |

| ଦାସ୍ତୀ | ବ୍ୟାଙ୍କ ହସାବ | | ଦାତା |
|---|---|---|---|
| | ଟଙ୍କା | | ଟଙ୍କା |
| ତ୍ରିପାଠୀ ଏଣ୍ଡ କୋଂଙ୍କ ହସାବ ବାବଦ (ଅଗ୍ରିମ) | ୮,୦୦୦ | ବାଲେଶ୍ୱର ଚାଲଣୀ ହସାବ ବାବଦ | ୫୫୦ |
| ତ୍ରିପାଠୀ ଏଣ୍ଡ କୋଂଙ୍କ ହସାବ ବାବଦ | ୩୭,୮୬୦ | | |

| ଦାସ୍ତୀ | ତ୍ରିପାଠୀ ଏଣ୍ଡ କୋଂଙ୍କ ହସାବ | | ଦାତା |
|---|---|---|---|
| | ଟଙ୍କା | | ଟଙ୍କା |
| ବାଲେଶ୍ୱର ଚାଲଣୀ ହସାବ ବାବଦ | ୫୧,୦୦୦ | ବ୍ୟାଙ୍କ ହ: ବାବଦ | ୮,୦୦୦ |
| | | ବାଲେଶ୍ୱର ଚାଲଣୀ ହ: ବାବଦ-ଖର୍ଚ୍ଚ | ୩୮୦ |
| | | ବାଲେଶ୍ୱର ଚାଲଣୀ ହ: ବାବଦ— | |
| | | ସାଧାରଣ କମିଶନ | ୧,୬୦୦ |
| | | ଆସ୍ଥାୟୀ କମିଶନ | ୪,୧୬୦ |
| | | ବ୍ୟାଙ୍କ ହ: ବାବଦ | ୩୭,୮୬୦ |
| | ୫୧,୦୦୦ | | ୫୧,୦୦୦ |

ତ୍ରିପାଠୀ ଏଣ୍ଡ କୋଂଙ୍କ ହସାବ ବହିରେ

| ଦାସ୍ତୀ | ମିତ୍ର ଏଣ୍ଡ ସନ୍ସଙ୍କ ହସାବ | | ଦାତା |
|---|---|---|---|
| | ଟଙ୍କା | | ଟଙ୍କା |
| ବ୍ୟାଙ୍କ ହ: ବାବଦ (ଅଗ୍ରିମ) | ୮,୦୦୦ | ବ୍ୟାଙ୍କ ହ: ବାବଦ | ୫୧,୦୦୦ |
| ବ୍ୟାଙ୍କ ହସାବ ବାବଦ (ଖର୍ଚ୍ଚ) | ୩୮୦ | | |
| ସାଧାରଣ କମିଶନ ହସାବ ବାବଦ | ୧,୬୦୦ | | |
| ଆସ୍ଥାୟୀ କମିଶନ ହସାବ ବାବଦ | ୪,୧୬୦ | | |
| ବ୍ୟାଙ୍କ ହ: ବାବଦ | ୩୭,୮୬୦ | | |
| | ୫୧,୦୦୦ | | ୫୧,୦୦୦ |

ବିଶେଷ ଦ୍ରଷ୍ଟବ୍ୟ :—ଏହି ଦୃଷ୍ଟାନ୍ତରେ ଲକ୍ଷ୍ୟ କରିବା ବିଷୟ ହେଉଛି ଯେ ଯେହେତୁ ପ୍ରାପକଙ୍କୁ ଆଶ୍ୱାସୀ କମିଶନ ଦିଆଯାଉଛି ତେଣୁ ଚନ୍ଦନା ଷ୍ଟୋର୍ସଙ୍କ ଉପରେ ଥିବା ଅନାଦେୟ ଋଣ ଚାଲାଣୀ ହିସାବକୁ ଅଣାଗଲା ନାହିଁ, କାରଣ ଏହି କ୍ଷତି ପ୍ରାପକ ବହନ କରିବେ ।

ଅପର ପକ୍ଷରେ ଯଦି ପ୍ରାପକ ଆଶ୍ୱାସୀ କମିଶନ ପାଉ ନ ଥାଆନ୍ତେ ତାହାହେଲେ ଏହି ୩,୦୦୦ ଟଙ୍କାକୁ ଅନାଦେୟ ଋଣ ହିସାବକୁ ଅଣାଯାଇ ଥାଆନ୍ତା । ଅର୍ଥାତ୍ ଚାଲାଣୀ କାରବାର ଲାଭରୁ ଏହି ଅନାଦେୟ ଋଣ ପରିମାଣ ବାଦ୍ ଦିଆଯାଇ ଥାଆନ୍ତା ।

## ଚାଲାଣ ମୂଲ୍ୟ ପଦ୍ଧତି

ଏ ପର୍ଯ୍ୟନ୍ତ ଯେଉଁ ପଦ୍ଧତିର ବର୍ଣ୍ଣନା କରାଗଲା ତହିଁରେ ଦର୍ଶନାର୍ଥ ଚାଲାଣରେ ଚାଲାଣ କରାଯାଉଥିବା ପଣ୍ୟର କ୍ରୟ ମୂଲ୍ୟ ଅଥବା ପରିବ୍ୟୟ (ଉତ୍ପାଦିତ ପଣ୍ୟର ଚାଲାଣୀ କ୍ଷେତ୍ରରେ) ଲେଖା ଯାଇଥାଏ । ମାତ୍ର ଚାଲାଣ ମୂଲ୍ୟ ପଦ୍ଧତିରେ ଚାଲାଣୀ ପଣ୍ୟର ପ୍ରେରକ ଚାଲାଣରେ କ୍ରୟମୂଲ୍ୟ ପରିବର୍ତ୍ତେ ପଣ୍ୟର ବିକ୍ରୟ ମୂଲ୍ୟ ଅଥବା ତାହାର ନିକଟବର୍ତ୍ତୀ ମୂଲ୍ୟ ଉଲ୍ଲେଖ କରିଥାଆନ୍ତି । ଏପରି ଲେଖିବାର ଉଦ୍ଦେଶ୍ୟ ଦ୍ୱିବିଧ । ପ୍ରଥମତଃ ଏପରି କରାଗଲେ ପ୍ରାପକ ଏହି ମୂଲ୍ୟଠାରୁ ଊଣା ମୂଲ୍ୟରେ ପଣ୍ୟ ବିକ୍ରୟ କରି ପାରିବେ ନାହିଁ । ଦ୍ୱିତୀୟତଃ ପଣ୍ୟର ଉତ୍ପାଦନ ମୂଲ୍ୟ କେତେ ଏବଂ ପ୍ରକୃତ ଲାଭ କେତେ ତାହା ଅପ୍ରକାଶିତ ରହିବ । ଏହା ପ୍ରକାଶିତ ହେଲେ ସେହି ବ୍ୟବସାୟ କ୍ଷେତ୍ରରେ ପ୍ରତିଯୋଗୀଙ୍କ ସଂଖ୍ୟା ବୃଦ୍ଧି ପାଇବାର ଆଶଙ୍କା ଥାଏ । ଏହି କାରଣରୁ ପ୍ରେରକ ଦର୍ଶନାର୍ଥ ଚାଲାଣରେ ବିକ୍ରୟ ମୂଲ୍ୟ ଉଲ୍ଲେଖ କରନ୍ତି ।

ଯେହେତୁ ଚାଲାଣୀ ହିସାବରୁ ପ୍ରେରକ ଚାଲାଣ କାରବାରର ଲାଭ ବା କ୍ଷତି ଜାଣିବାକୁ ଚାହାନ୍ତି ଏବଂ ବିକ୍ରୟ ମୂଲ୍ୟ ଲେଖାଥିଲେ ଲାଭ-କ୍ଷତି ଗଣନା କରିବା ଅସୁବିଧାଜନକ ହୁଏ ତେଣୁ ବିକ୍ରୟ ମୂଲ୍ୟକୁ ଜାବ୍‌ଦା ସାହାଯ୍ୟରେ ସମାଯୋଜିତ କରାଯାଏ । ଏବଂ ତାହାକୁ କ୍ରୟ ମୂଲ୍ୟକୁ ରୂପାନ୍ତରିତ କରାଯାଏ । ଏହି ପଦ୍ଧତି ଅନୁଯାୟୀ ଆବଶ୍ୟକ ଜାବ୍‌ଦା ନିମ୍ନରେ ପ୍ରଦତ୍ତ ହେଲା ।

## ପ୍ରେରକଙ୍କ ହିସାବ ବହିରେ :-

୧ । ପଣ୍ୟ ଚାଲାଣ କରିବା ସମୟରେ—

ଚାଲାଣୀ ହିସାବ ଦାୟୀ
ଚାଲାଣ କରାଯାଉଥିବା ପଣ୍ୟ ହିସାବ ବାବଦ } ଦର୍ଶନାର୍ଥ ଚାଲାଣରେ ପ୍ରଦର୍ଶିତ ମୂଲ୍ୟ ଅନୁଯାୟୀ

୨ । ପଣ୍ୟ ପ୍ରେରଣ ସଂକ୍ରାନ୍ତ ଖର୍ଚ୍ଚ ନିମନ୍ତେ—

ଚାଲାଣୀ ହିସାବ ଦାୟୀ } ପ୍ରକୃତ ବ୍ୟୟ ପରିମାଣ ସକାଶେ
ବ୍ୟାଙ୍କ୍/ନଗଦ ତହବିଲ ହିସାବ ବାବଦ

୩ । ପ୍ରାପକଠାରୁ ବିକ୍ରୟ ବିବରଣ ପାଇବା ପରେ—

(କ) ପ୍ରାପକଙ୍କ ହିସାବ ଦାୟୀ } ମୋଟ ବିକ୍ରୟ ଲବ୍ଧ ଅର୍ଥ ସକାଶେ
ଚାଲାଣୀ ହିସାବ ବାବଦ

(ଖ) ଚାଲାଣୀ ହିସାବ ଦାୟୀ } ପ୍ରାପକ ଚାଲାଣୀ ପଣ୍ୟ ସଂକ୍ରାନ୍ତ କରିଥିବା ବ୍ୟୟର ପ୍ରକୃତ ପରିମାଣ ସକାଶେ
ପ୍ରାପକଙ୍କ ହିସାବ ବାବଦ

(ଗ) ଚାଲାଣୀ ହିସାବ ଦାୟୀ } ପ୍ରାପକଙ୍କର ପ୍ରାପ୍ୟ କମିଶନ ସକାଶେ
ପ୍ରାପକଙ୍କ ହିସାବ ବାବଦ

୪ । ଅବିକ୍ରୀତ ମହଜୁଦ ଚାଲାଣୀ ପଣ୍ୟ ସକାଶେ—

ଚାଲାଣୀ ମହଜୁଦ୍ ପଣ୍ୟ ହିସାବ ଦାୟୀ } ଆନୁପାତିକ ଚାଲାଣ-ମୂଲ୍ୟ + ଆନୁପାତିକ ଅ-ପୌନଃପୁନିକ ଖର୍ଚ୍ଚ ନିମନ୍ତେ
ଚାଲାଣୀ ହିସାବ ବାବଦ

୫ । ପ୍ରେରିତ ପଣ୍ୟର ଚାଲାଣ-ମୂଲ୍ୟକୁ କ୍ରୟ ମୂଲ୍ୟରେ ପରିଣତ କରିବା ନିମନ୍ତେ –

ଚାଲାଣ ଯାଇଥିବା ପଣ୍ୟ ହିସାବ ଦାୟୀ } ଚାଲାଣ-ମୂଲ୍ୟ ଓ କ୍ରୟମୂଲ୍ୟର ବ୍ୟବଧାନ ସକାଶେ
ଚାଲାଣୀ ହିସାବ ବାବଦ

୬ । ଅବିକ୍ରୀତ ମହଜୁଦ ପଣ୍ୟର ମୂଲ୍ୟକୁ କ୍ରୟ ମୂଲ୍ୟରେ ପରିଣତ କରିବା ସକାଶେ—

ଚାଲାଣୀ ହିସାବ ଦାୟୀ } ଆନୁପାତିକ ଭାର ସକାଶେ
ଚାଲାଣୀ ମହଜୁଦ୍ ପଣ୍ୟ ସମାଯୋଜନ ହିସାବ ବାବଦ *

[ * ଏହି ହିସାବକୁ ଚାଲାଣୀ ମହଜୁଦ ପଣ୍ୟ ଅନଷ୍ଟିତ ହିସାବ ଅଥବା ଚାଲାଣୀ ମହଜୁଦ ପଣ୍ୟ ସଞ୍ଚିତ ହିସାବ ବୋଲି ମଧ୍ୟ କୁହାଯାଏ ।]

ବର୍ଷ ଶେଷରେ ଚାଲାଣ କରାଯାଇ ଥିବା ପଣ୍ୟ ହିସାବର ବଳକା ମୋଟ ଲାଭ-କ୍ଷତି ହିସାବକୁ ଏବଂ ଚାଲାଣୀ ହିସାବର ବଳକା ଲାଭ ଅଥବା କ୍ଷତି ନିଟ୍

ଲାଭ-କ୍ଷତି ହିସାବକୁ ନିଆଯିବ । ଚାଲାଣୀ ମହଜୁଦ ପଣ୍ୟ ହିସାବ ଓ ଚାଲାଣୀ ମହଜୁଦ ପଣ୍ୟ ସମାଯୋଜନ ହିସାବର ବଳକା ଉଦ୍‌ବୃତ୍ତ ପତ୍ରରେ ନିମ୍ନଲିଖିତ ରୂପେ ପ୍ରକାଶିତ ହେବ ।

୧୯ ମସିହା ତାରିଖର ଉଦବୃତ୍ତ ପତ୍ର

| ଦେୟ | ଟଙ୍କା | ପରିସମ୍ପତ୍ତି | ଟଙ୍କା |
|---|---|---|---|
| | | ଚାଲାଣୀ ମହଜୁଦ ପଣ୍ୟହିସାବ<br>ବାଦ : ଚାଲାଣୀ ମହଜୁଦ ପଣ୍ୟ ସମାଯୋଜନ ହିସାବ | |

ଏଠାରେ ଲକ୍ଷ୍ୟ କରାଯାଇ ପାରେ ଯେ (୫) ଓ (୬) ନମ୍ବର ଜାବଦା ସାହାଯ୍ୟରେ ଚାଲାଣ ମୂଲ୍ୟକୁ କ୍ରୟ ମୂଲ୍ୟକୁ ପରିବର୍ତ୍ତିତ କରାଯାଇଛି ।

ପରବର୍ତ୍ତୀ ବର୍ଷର ଆରମ୍ଭରେ ଚାଲାଣୀ ମହଜୁଦ ପଣ୍ୟ ହିସାବର ବଳକା ବା ବାକି ଚାଲାଣୀ ହିସାବର ଦାୟୀ ପାର୍ଶ୍ୱକୁ ଓ ଚାଲାଣୀ ମହଜୁଦ ପଣ୍ୟ ସମାଯୋଜନ ହିସାବର ବଳକା ଚାଲାଣୀ ହିସାବର ଦାତା ପାର୍ଶ୍ୱକୁ ସ୍ଥାନାନ୍ତରିତ କରାଯିବ ।

ଏଠାରେ ସ୍ମରଣ ରଖିବାକୁ ହେବ ଯେ ପ୍ରେରକ ତାଙ୍କ ହିସାବ କ୍ରୟମୂଲ୍ୟ ପଦ୍ଧତି ଅଥବା ଚାଲାଣ-ମୂଲ୍ୟ ପଦ୍ଧତି, ଯେ କୌଣସି ପଦ୍ଧତି ଅନୁଯାୟୀ ରଖନ୍ତୁ ନା କାହିଁକି, ପ୍ରାପକଙ୍କ ହିସାବ ବହିରେ କୌଣସି ପରିବର୍ତ୍ତନ ହେବ ନାହିଁ ।

ଏହି ଚାଲାଣ ମୂଲ୍ୟ ପଦ୍ଧତିର ଏକ ଦୃଷ୍ଟାନ୍ତ ନିମ୍ନରେ ପ୍ରଦତ୍ତ ହେଲା ।

## ଦୃଷ୍ଟାନ୍ତ (୭)

କଟକର ଶିବ୍‌ଜୀ ଏଣ୍ଡ୍ କୋ: ୧-୪-୭୩ ତାରିଖରେ ଜୟପୁରର ବନଓ୍ୱାରୀ ଲାଲ୍ ଏଣ୍ଡ ସନ୍‌ସଙ୍କ ନିକଟକୁ ୫୦ଟି ମର୍ଫି ଟ୍ରାଞ୍ଜିଷ୍ଟାର ରେଡ଼ିଓ ସେଟ୍ ଚାଲାଣ ଭିତ୍ତିରେ ବିକ୍ରୟ ନିମନ୍ତେ ପ୍ରେରଣ କଲେ । ପ୍ରତି ସେଟ୍‌ର କ୍ରୟ ମୂଲ୍ୟ

୧୨୦ ଟଙ୍କା ମାତ୍ର ଦର୍ଶନାର୍ଥ ଚାଲାଣରେ ଏହାର ମୂଲ୍ୟ ୧୭୦ ଟଙ୍କା ରୂପେ ଲିପିବଦ୍ଧ କରାଯାଇଥିଲା । ଶିବଜୀ ଏଣ୍ଡ କୋ: ଏହି ୫୦ଟି ସେଟ୍ ପ୍ରେରଣ କରିବା ନିମନ୍ତେ ୩୦୦ ଟଙ୍କା ଖର୍ଚ୍ଚ କଲେ ।

୫-୬-୭୩ ତାରିଖରେ ବନ୍ଧ୍ୟୋପାଧ୍ୟାୟ ଲାଲ ଏଣ୍ଡ ସନ୍ସଙ୍କଠାରୁ ବିକ୍ରୟ ବିବରଣ ମିଳିଲା । ସେଥିରୁ ଜଣାଗଲା ଯେ ୪୦ଟି ରେଡ଼ିଓ ଚାଲାଣୀ ମୂଲ୍ୟରେ ବିକ୍ରୀତ ହୋଇଛି । ବନ୍ଧ୍ୟୋପାଧ୍ୟାୟ ଲାଲ୍ ଏଣ୍ଡ୍ ସନ୍ସ ପରିବହନ ବାବଦ ୨୫ ଟଙ୍କା, ଗୋଦାମ ଭଡ଼ା ବାବଦ ୧୫୦ ଟଙ୍କା ଅଗ୍ନି ବୀମା ବାବଦ ୫୦ ଟଙ୍କା ଖର୍ଚ୍ଚ କରିଛନ୍ତି । ଏହି ସମସ୍ତ ଖର୍ଚ୍ଚ ବାବଦ ଟଙ୍କା ଓ ଶତକଡ଼ା ୧୦ ହାରରେ କମିଶନ୍ ବାଦ୍ ଦେଇ ବଳକା ଟଙ୍କା ସେମାନେ ଶିବଜୀ ଏଣ୍ଡ୍ କୋଙ୍କ ନିକଟକୁ ବ୍ୟାଙ୍କ୍ ଡ୍ରାଫଟ୍ ଆକାରରେ ପ୍ରେରଣ କରିଛନ୍ତି ।

ଶିବଜୀ ଏଣ୍ଡ୍ ସନ୍ସଙ୍କ ବହିରେ ଖତିୟାନ ହିସାବ ପ୍ରସ୍ତୁତ କର ।

**ସମାଧାନ:**

ଦାୟୀ ଚାଲାଣ କରାଯାଇଥିବା ଟ୍ରାଞ୍ଜିଷ୍ଟର ରେଡ଼ିଓ ସେଟ୍ ହିସାବ ଦାତା

| ୧୯୭୩ | | ଟଙ୍କା | ୧୯୭୩ | | ଟଙ୍କା |
|---|---|---|---|---|---|
| ଜୁନ-୫ | ଚାଲାଣୀ ହିସାବ ବାବଦ | ୨,୦୦୦ | ଅପ୍ରେଲ-୪ | ଚାଲାଣୀ ହିସାବ ବାବଦ | ୮,୦୦୦ |
| ଡ଼ିସେ-୩୧ | ମୋଟ ଲାଭ-କ୍ଷତି ହିସାବ ବାବଦ ସ୍ଥାନାନ୍ତରଣ | ୬,୦୦୦ | | | |
| | | ୮,୦୦୦ | | | ୮,୦୦୦ |

## ଜୟପୁର ଚାଲାଣୀ ହିସାବ

ଦାୟୀ | ଦାତା

| ୧୯୭୩ | | ଟଙ୍କା | ୧୯୭୩ | | ଟଙ୍କା |
|---|---|---|---|---|---|
| ଅପ୍ରେଲ-୪ | ଚାଲଣ କରାଯାଇ-<br>ଥିବା ଟ୍ରାଞ୍ଜିଷ୍ଟାର<br>ସେଟ୍ ହି: ବାବଦ | ୮,୦୦୦ | ଜୁନ-୫ | ବନର୍ଓ୍ୟାର୍ଶ ଲାଲ<br>ଏଣ୍ଡ୍ ସନ୍ସଙ୍କ<br>ହିସାବ ବାବଦ<br>(ବିକ୍ରୟ ଲବ୍ଧ<br>ଅର୍ଥ) | ୭,୪୦୦ |
| ,, ୪ | ବ୍ୟାଙ୍କ୍ ହିସାବ<br>ବାବଦ | ୩୦୦ | ଜୁନ-୫ | ଚାଲାଣୀ ମହଜୁଦ<br>ପଣ୍ୟ ହିସାବ<br>ବାବଦ | ୧,୬୭୫ |
| ଜୁନ-୫ | ବନର୍ଓ୍ୟାର୍ଶ ଲାଲ<br>ଏଣ୍ଡ୍ କୋ:ଙ୍କ<br>ହିସାବ ବାବଦ<br>—ପରିବହନ | ୧୫ | ଜୁନ-୫ | ଚାଲାଣ କରା-<br>ଯାଇଥିବା<br>ଟ୍ରାଞ୍ଜିଷ୍ଟାର<br>ରେଡ଼ିଓ ସେଟ<br>ବାବଦ | ୧,୦୦୦ |
| | ଗୋଦାମ ଭଡ଼ା | ୧୫୦ | | | |
| | ବୀମା | ୫୦ | | | |
| ଜୁନ-୫ | ବନର୍ଓ୍ୟାର୍ଶ ଲାଲ<br>ଏଣ୍ଡ୍ ସନ୍ସଙ୍କ<br>ହିସାବ ବାବଦ<br>କମିଶନ | ୭୪୦ | | | |
| ଜୁନ-୫ | ଚାଲାଣୀ ମହଜୁଦ୍<br>ପଣ୍ୟ ସମାଯୋଜନ<br>ହିସାବ ବାବଦ | ୪୦୦ | | | |
| ଜୁନ-୫ | ନିଟ୍ ଲାଭ-କ୍ଷତି<br>ହିସାବ ବାବଦ—<br>ଲାଭର ସ୍ଥାନାନ୍ତରଣ | ୫୦୦ | | | |
| | | ୧୦,୦୭୫ | | | ୧୦,୦୭୫ |

ଦାୟୀ — ଚଲଣୀ ମହଜୁଦ ପଣ୍ୟ ହିସାବ — ଦାତା

| ତାରିଖ | ବିବରଣ | | ଟଙ୍କା | ତାରିଖ | ବିବରଣ | | ଟଙ୍କା |
|---|---|---|---|---|---|---|---|
| ୧୯୭୩ | | | | ୧୯୭୫ | | | |
| ଜୁନ-୫ | ଜୟପୁର ଚଲଣୀ ହିସାବ ବାବଦ | | ୧,୭୭୫ | ଡିସେ-୩୧ | ବାକୀ ପଡ଼ିଲା | | ୧,୭୭୫ |
| ୧୯୭୪ | | | | | | | |
| ଜାନୁ-୧ | ପୂର୍ବ ବାକୀ ବାବଦ | | ୧,୭୭୫ | | | | |

ଦାୟୀ — ଚଲଣୀ ମହଜୁଦ ପଣ୍ୟ ସମାଯୋଜନ ହିସାବ — ଦାତା

| ତାରିଖ | ବିବରଣ | | ଟଙ୍କା | ତାରିଖ | ବିବରଣ | | ଟଙ୍କା |
|---|---|---|---|---|---|---|---|
| ୧୯୭୩ | | | | ୧୯୭୩ | | | |
| ଡିସେ-୩୧ | ବାକୀ ଗଡ଼ିଲା | | ୪୦୦ | ଜୁନ-୫ | ଜୟପୁର ଚଲଣୀ ହିସାବ ବାବଦ | | ୪୦୦ |
| | | | | ୧୯୭୪ | | | |
| | | | | ଜାନୁ-୧ | ପୂର୍ବ ବାକୀ ବାବଦ | | ୪୦୦ |

ଗ୍ରହୀ ବନଓ୍ୱାରୀ ଲାଲ୍ ଏଣ୍ଡ ସନସ୍‌ଙ୍କ ହିସାବ ଦାତା

| ୧୯୭୩ | | ଟଙ୍କା | ୧୯୭୩ | | ଟଙ୍କା |
|---|---|---|---|---|---|
| ଜୁନ ୫ | ଜୟପୁର ଚାଲଣୀ ହିସାବ ବାବଦ (ବିକ୍ରୟ ଲବ୍ଧ ଅର୍ଥ) | ୭,୪୦୦ | ଜୁନ ୫ | ଜୟପୁର ଚାଲଣୀ ହିସାବ ବାବଦ (ଖର୍ଚ୍ଚ) | ୨୨୫ |
| | | | | ଜୟପୁର ଚାଲଣୀ ହିସାବ ବାବଦ (କମିଶନ) | ୭୪୦ |
| | | | | ବ୍ୟାଙ୍କ ହିସାବ ବାବଦ | ୬,୪୩୫ |
| | | ୭,୪୦୦ | | | ୭,୪୦୦ |

## ବିବରଣୀ ସ୍ତମ୍ଭ ପଦ୍ଧତି

ଏହି ପଦ୍ଧତି କ୍ରୟ ମୂଲ୍ୟ ପଦ୍ଧତି ଓ ଚାଲଣୀ ମୂଲ୍ୟ ପଦ୍ଧତିର ସମିଶ୍ରଣ । ଏଥିରେ କେତେଗୋଟି ହିସାବରେ ଗୋଟିଏ ବିବରଣୀ ସ୍ତମ୍ଭ ଖୋଲାଯାଇ ତହିଁରେ ଚାଲଣୀ ପଣ୍ୟର କ୍ରୟ ମୂଲ୍ୟ ଲିପିବଦ୍ଧ କରାଯାଏ । ତେଣୁ ଚାଲଣୀ ମୂଲ୍ୟକୁ କ୍ରୟ ମୂଲ୍ୟରେ ପରିବର୍ତ୍ତିତ କରିବା ନିମନ୍ତେ ଯେଉଁ ସଂଶୋଧକ ଜାବଡ଼ା କରାଯାଉଥିଲା ତାହାର ଆବଶ୍ୟକତା ରହିବ ନାହିଁ । ଏହି ବିବରଣୀ ସ୍ତମ୍ଭ ଚାଲଣୀ ହିସାବ, ଚାଲାଣ କରାଯାଇଥିବା ପଣ୍ୟ ହିସାବ ଓ ଚାଲଣୀ ମହଜୁଦ ପଣ୍ୟ ହିସାବଗୁଡ଼ିକର ଉଭୟ ପାର୍ଶ୍ୱରେ ସନ୍ନିବେଶିତ କରାଯାଏ । ଏହି ବିବରଣୀ ସ୍ତମ୍ଭରେ ଯାହା ଲିପିବଦ୍ଧ କରାଯାଏ ତାହା ଅବଶ୍ୟ ଦ୍ୱିଲିଖନ ହିସାବ ନୀତି ଅନୁଯାୟୀ ଲେଖା ଯାଏ ନାହିଁ କିମ୍ବା ଏହା ମୂଳ ହିସାବର ଅଙ୍ଗ ନୁହେଁ । କେବଳ କିଛି ଅଧିକା ବିବରଣ ଯୋଗାଇବା ନିମନ୍ତେ ଏହି ବିବରଣୀ ସ୍ତମ୍ଭ ସନ୍ନିବେଶିତ ହୁଏ । ଏହି ପଦ୍ଧତି ଅନୁଯାୟୀ ହିସାବ ପ୍ରସ୍ତୁତ କଲେ ତାହା କେବଳ ପ୍ରେରକଙ୍କ ଖତିୟାନ ହିସାବ ପ୍ରତି ପ୍ରଯୁଜ୍ୟ ହୁଏ । ଏହି ପଦ୍ଧତି ଅନୁସୃତ ହେଲେ ପ୍ରାପକଙ୍କ ହିସାବ ଖାତାରେ କୌଣସି ପରିବର୍ତ୍ତନ ହୁଏ ନାହିଁ । କ୍ରୟ-ମୂଲ୍ୟ ପଦ୍ଧତି ଅନୁଯାୟୀ ପ୍ରାପକଙ୍କ ବହିରେ ହିସାବ ଗୁଡ଼ିକ ଯେପରି ପ୍ରସ୍ତୁତ ହେଉଥିଲା ଏହି ପଦ୍ଧତି ଅନୁଯାୟୀ ମଧ୍ୟ ତଦ୍ରୂପ ରହିବ । ଏହାର ଏକ ଦୃଷ୍ଟାନ୍ତ ନିମ୍ନରେ ପ୍ରଦତ୍ତ ହେଲା ।

### ଦୃଷ୍ଟାନ୍ତ (୭)

ଦୃଷ୍ଟାନ୍ତ (୭) ରେ ଥିବା ସମସ୍ୟାର ସମାଧାନ ବିବରଣୀ ସ୍ତମ୍ଭ ପଦ୍ଧତି ଅନୁଯାୟୀ ପ୍ରସ୍ତୁତ କର ।

**ସମାଧାନ :**

## ଶିବଜୀ ଏଣ୍ଡ୍ ସନଙ୍କ ହିସାବ ଖାତାରେ ଖତିୟାନ ହିସାବ

ଜୟପୁର ଚାଲଣୀ ହିସାବ

ବାମ୍ଭୀ (ଦେବିଟ୍) | ଦାତା (କ୍ରେଡିଟ୍)

| ତାରିଖ | ବିବରଣ | ଖ. ପୃ. | ବିବରଣୀ (ଚାଲାଣ ମୂଲ୍ୟ) | ପରିମାଣ | ତାରିଖ | ବିବରଣ | ଖ. ପୃ. | ବିବରଣୀ (ଚାଲାଣ ମୂଲ୍ୟ) | ପରିମାଣ |
|---|---|---|---|---|---|---|---|---|---|
| ୧୯୭୩ | | | ଟଙ୍କା | ଟଙ୍କା | ୧୯୭୩ | | | ଟଙ୍କା | ଟଙ୍କା |
| ଅପ୍ରେଲ-୪ | ଚାଲଣୀ ଟାଙ୍କିଷ୍ଟାର ରେଡ଼ୁଓ ସେଟ୍ ହିସାବ ବାବଦ | | ୮,୦୦୦ | ୭,୦୦୦ | ଜୁନ-୫ | ବନଓ୍ୱାରୀ ଲାଲ ଏଣ୍ଡ୍ ସନ୍ସଙ୍କ ହିସାବ ବାବଦ | | ୬,୪୦୦ | ୭,୪୦୦ |
| ,,-୪ | ବା. କ୍ଙ୍କ ହିସାବ ବାବଦ | | ୩୦୦ | ୩୦୦ | ,,-୫ | ଚାଲଣୀ ମହଜୁଦ ପଣ୍ୟ ହିସାବ ବାବଦ | | ୧,୬୬୫ | ୧,୨୬୫ |
| ଜୁନ-୫ | ବନଓ୍ୱାରୀ ଲାଲ ଏଣ୍ଡ୍ ସନସଙ୍କ ହି: ବାବଦ | | ୨୨୫ | ୨୨୫ | | ଷତି ବାବଦ | | ୧,୧୦୦ | |
| ,,-୫ | ବନଓ୍ୱାରୀ ଲାଲ ଏଣ୍ଡ୍ ସନ୍ସଙ୍କ ହି: ବାବଦ | | ୬୪୦ | ୬୪୦ | | | | | |
| ,,-୫ | ଲାଭ ଷତି ହିସାବ ବାବଦ ଲାଭ | | | ୫୦୦ | | | | | |
| | | | ୯,୧୬୫ | ୮,୬୬୫ | | | | ୯,୧୬୫ | ୮,୬୬୫ |

### ଦାୟୀ — ରୂଳଣୀ ମହଜୁଦ ପଣ୍ୟ ହିସାବ — ଦାତା

| | | | ଟଙ୍କା | ଟଙ୍କା | | | | ଟଙ୍କା | ଟଙ୍କା |
|---|---|---|---|---|---|---|---|---|---|
| ୧୯୭୩ ଜୁନ-୫ | ଜୟପୁର ସ୍ୱଳଣୀ ହିସାବ ବାବଦ | | ୧,୬୬୫ | ୧,୬୬୫ | ୧୯୭୩ ଡିସେ-୩୧ | ବାକି ଚଳନ୍ତି | | ୧,୬୬୫ | ୧,୬୬୫ |
| ୧୯୭୪ ଜାନୁ-୧ | ପୂର୍ବ ବାକି ବାବଦ | | ୧,୬୬୫ | ୧,୬୬୫ | | | | | |

### ଦାୟୀ — ସ୍ୱଳଣୀ ଟ୍ରାନ୍ସଫର ରେଜର୍ଭ ସେଟ୍ ହିସାବ — ଦାତା

| | | | ଟଙ୍କା | ଟଙ୍କା | | | | ଟଙ୍କା | ଟଙ୍କା |
|---|---|---|---|---|---|---|---|---|---|
| ୧୯୭୩ ଡିସେ-୩୧ | ମୋଟ ଲଭ କ୍ଷତ ହିସାବ ବାବଦ ସ୍ଥାନାନ୍ତରଣ | | ୮,୦୦୦ | ୬,୦୦୦ | ୧୯୭୩ ଅପ୍ରେଲ-୪ | ଜୟପୁର ସ୍ୱଳଣୀ ହିସାବାବଦ | | ୮,୦୦୦ | ୬,୦୦୦ |

କଟକର ହାସାଣୀ ବ୍ରଦାର୍ସଙ୍କ ହିସାବ ଖାତାରେ ପୁଣ୍ୟ ସ୍ୱଳଣ ହିସାବରେ ପ୍ରତ ୧୦ କେଜ ପେଟିର ୫ ଗୋଟି ରସ୍କାଲ ସ୍ୱହା ପେଟି ବାବଦ ପ୍ରତ କେଜ ୧୦ ଟଙ୍କା ହାରରେ ୫୦୦ ଟଙ୍କା ମହଜୁଦ ସ୍ୱଳଣୀ ପଣ୍ୟର ମୂଲ୍ୟ ରୂପେ ଦାୟୀ ପାର୍ଶ୍ୱରେ ୧୯୭୩ ମସିହା ଜାନୁଆରୀ ୧ ତାରଖରେ ଲିପିବଦ୍ଧ ହୋଇଥିଲା । ପ୍ରତ କେଜ ରସ୍କାଲ ସ୍ୱହ ର ସ୍ୱଳଣ ମୂଲ୍ୟ ୧୨ ଟଙ୍କା । ୧୯୭୩ ମସିହା ଅପ୍ରେଲ ୧ ତାରଖରେ ସାହାଣୀ ବ୍ରଦାର୍ସ୍ ପୁଣ୍ୟର ମହାପାତ୍ର ଏଣ୍ଡ୍ କୋଃଙ୍କ ନିକଟକୁ ପୁଣି ୨୦ ପେଟି ସ୍ୱହା ସ୍ୱଳଣ କଲେ । ଏହାର କେଜ ପ୍ରତ ବସ୍ତୁ ମୂଲ୍ୟ

୧୨ ଟଙ୍କା ଓ ସ୍ଥଳଣ ମୂଲ୍ୟ ୧୭ ଟଙ୍କା ଥିଲା । ଏହି ପଣ୍ୟ ପ୍ରେରଣ କରିବା ସକାଶେ ସାହାଣୀ ବ୍ରାଦାର୍ସ ୧୨୦ ଟଙ୍କା ବ୍ୟୟ କଲେ । ୧୯୭୩ ମସିହା ଜୁନ ୧ ତାରିଖରେ ମହାପାତ୍ର ଏଣ୍ଡ୍ କୋ:ଙ୍କଠାରୁ ବିକ୍ରୟ ବିବରଣୀ ମିଳିଲା । ସେଥିରେ ସେମାନେ ଦର୍ଶାଇଥିଲେ ଯେ ପୁରୁଣା ମହଜୁଦ ପଣ୍ୟରୁ ୩ ପେଟି ୨୭୦ ଟଙ୍କାରେ ବିକ୍ରୀତ ହୋଇଛି ଓ ୧୫ ପେଟି ନୂଆ ୨,୭୦୦ ଟଙ୍କାରେ ବିକ୍ରୀତ ହୋଇଛି । ସେମାନେ ଶତକଡ଼ା ୮ ହାରରେ କମିଶନ (ଏହି କମିଶନରେ ତାଙ୍କର ସମସ୍ତ ଖର୍ଚ୍ଚ ଅନ୍ତର୍ଭୁକ୍ତ,) କାଟି ରଖି ବଳକା ଟଙ୍କା ବ୍ୟାଙ୍କ ଡ୍ରାଫ୍ଟ ଆକାରରେ ପଠାଇଛନ୍ତି । ପୁରାତନ ମହଜୁଦ ପଣ୍ୟର ବଳକା ୨ ପେଟି ବିକ୍ରୟ ଯୋଗ୍ୟ ଅବସ୍ଥାରେ ନ ଥିବା ହେତୁ ତାହାକୁ ସେମାନେ କଟକ ଫେରସ୍ତ ପଠାଇଲେ ଏବଂ ଖର୍ଚ୍ଚ ବାବଦ ୨୦ ଟଙ୍କା ସକାଶେ ଏକ ଦାବୀ ଚିଠା ପଠାଇଲେ । ସାହାଣୀ ବ୍ରଦାର୍ସଙ୍କ ହିସାବ ଜୁନ ୩୦ ତାରିଖରେ ବନ୍ଦ କରି ଏବଂ ଅନୁମାନ କରି ତାଙ୍କ ହିସାବ ଖାତାରେ ଏହି ସ୍ଥଳଣୀ କାରବାରର ଖତିୟାନ ହିସାବ ପ୍ରସ୍ତୁତ କର ।

ଦାବୀ — ପୁଷ୍ପ ସ୍ଥଳଣୀ ମହଜୁଦ ପଣ୍ୟ ହିସାବ — ଦାତା

| ତାରିଖ | ବିବରଣ | ଖ. ପୃ. | ଏକକ | ବିବରଣୀ (ସ୍ଥଳଣ ମୂଲ୍ୟ) | ପରିମାଣ | ତାରିଖ | ବିବରଣ | ଖ. ପୃ. | ଏକକ | ବିବରଣୀ (ସ୍ଥଳଣ ମୂଲ୍ୟ) | ପରିମାଣ |
|---|---|---|---|---|---|---|---|---|---|---|---|
| ୧୯୭୩ | | | | ଟଙ୍କା | ଟଙ୍କା | ୧୯୭୩ | | | | ଟଙ୍କା | ଟଙ୍କା |
| ଜାନୁ-୧ | ପୂର୍ବବାକି ବାବଦ | | ୫ | ୬୦୦ | ୫୦୦ | ଜୁନ-୧ | ମହାପାତ୍ରଏଣ୍ଡ କୋ:ଙ୍କ ହିସାବ ବାବଦ (ବିକ୍ରୟଲବ୍ଧଅର୍ଥ) | | ୩ | ୨୭୦ | ୨୭୦ |
| ଅପ୍ରେଲ-୧ | ସ୍ଥଳଣ କରାଯାଇଥିବା ପଣ୍ୟ ହିସାବ ବାବଦ | | ୨୦ | ୩,୨୦୦ | ୨,୪୦୦ | | ସ୍ଥଳଣ କରାଯାଇଥିବା ପଣ୍ୟ | | ୧୫ | ୨,୭୦୦ | ୨,୭୦୦ |
| ଜୁନ-୩୦ | ପୁଷ୍ପ ସ୍ଥଳଣୀ ହିସାବ ବାବଦ —ମୋଟ ଲାଭ | | | ୨୧୦ | ୮୭୦ | „-୩୦ | ହିସାବ ବାବଦ | | ୨ | ୨୪୦ | ୨୦୦ |
| | | | | | | „ „ | ବାକି ଗଚ୍ଛିତ (ମହଜୁଦ ୫ × ୧୦ × ୧୬) ୫ × ୧୦ × ୧୨ | | ୫ | ୮୦୦ | ୬୦୦ |
| | | | ୨୫ | ୪,୦୧୦ | ୩,୭୭୦ | | | | ୨୫ | ୪,୦୧୦ | ୩,୭୭୦ |
| | ପୂର୍ବ ବାକି ବାବଦ | | ୫ | ୨,୬୦୦ | ୨,୪୦୦ | | | | | | |

ଯୁଗ୍ମ ଚଳଣୀ ହିସାବ

| | | | | ଟଙ୍କା | ଟଙ୍କା | | | | | ଟଙ୍କା | ଟଙ୍କା |
|---|---|---|---|---|---|---|---|---|---|---|---|
| ୧୦୭୩ ଅପ୍ରେଲ-୧ | ବ୍ୟାଙ୍କ୍ ହିସାବ ବାବଦ (ବ୍ୟସ୍ତ) | | | ୧୨୦ | ୧୨୦ | ୧୯୭୩ ଜୁନ-୩୦ | ଯୁଗ୍ମ ଚଳଣୀ ମହଜୁଦ ପଣ୍ୟ ହିସାବ ବାବଦ —ଲାଭ | | | ୨୧୦ | ୮୭୦ |
| ଜୁନ-୧ | ମହାପାତ୍ର ଏଣ୍ଡ୍ କୋଂଙ୍କ ହିସାବ ବାବଦ (କମିଶନ) | | | ୨୩୮ | ୨୩୮ | " " | ବାକୀଗଚ୍ଛିତ (୫ ପେଟି ଭଡ଼ାର ଅନୁପାତର ବ୍ୟସ୍ତ $\frac{5}{20}$ × ୧୨୦) | | | ୩୦ | ୩୦ |
| " " | ମହାପାତ୍ର ଏଣ୍ଡ କୋଂଙ୍କ ହିସାବ ବାବଦ (ଫେରନ୍ତ ପେଟିର ବ୍ୟସ୍ତ) | | | ୨୦ | ୨୦ | " " | ଖଣ୍ଡ ବାବଦ | | | ୧୩୮ | |
| " " | ଲାଭ ବାବଦ | | | | ୫୨୨ | | | | | | |
| | | | | ୩୭୮ | ୯୦୦ | | | | | ୩୭୮ | ୯୦୦ |

ସ୍ୱଳ୍ପଣ ଯାଉଥିବା ପଣ୍ୟ ହିସାବ

| | | | | ଟଙ୍କା | ଟଙ୍କା | | | | | ଟଙ୍କା | ଟଙ୍କା |
|---|---|---|---|---|---|---|---|---|---|---|---|
| ୧୯୭୩ ଜୁନ-୧ | ପୁସ୍ତ ସ୍ୱଳ୍ପଣୀ ମହଜୁଦ ପଣ୍ୟ ହିସାବ ବାବଦ | | ୨ | ୨୪୦ | ୨୦୦ | ୧୯୭୩ ଅପ୍ରେଲ-୧ | ପୁସ୍ତ ସ୍ୱଳ୍ପଣୀ ମହଜୁଦ ପଣ୍ୟ ହିସାବ ବାବଦ | | ୨୦ | ୩,୨୦୦ | ୨,୪୦୦ |
| ଜୁନ-୩୦ | ମୋଟ ଲାଭ-କ୍ଷତି ହିସାବ ବାବଦ ସ୍ଥାନାନ୍ତରଣ | | ୧୮ | ୨,୯୬୦ | ୨,୨୦୦ | | | | | | |
| | | | ୨୦ | ୩,୨୦୦ | ୨,୪୦୦ | | | | ୨୦ | ୩,୨୦୦ | ୨,୪୦୦ |

ଅନେକ ସମୟରେ ପ୍ରେରକ ସ୍ୱଳ୍ପଣୀ ପଣ୍ୟକୁ ନିଜ ନିକଟକୁ ନ ପଠାଇ ଅନ୍ୟତ୍ର ପ୍ରେରଣ କରିବା ନିମନ୍ତେ ସ୍ଥାପକଙ୍କୁ ନିର୍ଦ୍ଦେଶ ଦେଇ ପାରନ୍ତି । ସେ କ୍ଷେତ୍ରରେ ମଧ୍ୟ ଉପଯୁକ୍ତ ଜାବ୍‌ଦା କରାଯିବ । ଏଥିପାଇଁ ଏକ ଦୃଷ୍ଟାନ୍ତ ନିମ୍ନରେ ପ୍ରଦତ୍ତ ହେଲା ।

## ଦୃଷ୍ଟାନ୍ତ (୮)

୧୯୬୩ ମସିହା ସେପ୍ଟେମ୍ବର ୧ ତାରିଖରେ ମାନ୍ଦ୍ରାଜର ହିନ୍ଦ ସାଇକଲ କମ୍ପାନୀ କୋଚିନରେ ଥିବା ତାଙ୍କର ଏଜେଣ୍ଟ ସିଭ୍ୟୁ ସାଇକଲ ଷ୍ଟୋରକୁ ପ୍ରତି ସାଇକଲ ୩୦୦ ଟଙ୍କା ଦରରେ ୧୦୦ ସାଇକଲ ସେଠି ବଜାରରେ ପ୍ରାପ୍ୟ ଉତ୍ତମ ଦରରେ ବିକ୍ରୟ କରିବା ନିମନ୍ତେ ଚାଲାଣ ପଠାଇଲେ । ଏହି ସାଇକଲ ଗୁଡ଼ିକ ପ୍ରେରଣ କରିବାରେ ହିନ୍ଦ ସାଇକଲ କମ୍ପାନୀ ପ୍ୟାକିଂ, ପରିବହନ ଓ ବୀମା ବାବଦ ମୋଟ ୧,୫୨୦ ଟଙ୍କା ବ୍ୟୟ କଲେ । ଜାହାଜରେ ସାଇକଲ ଗୁଡ଼ିକ ଯିବା ସମୟରେ ଅଗ୍ନିକାଣ୍ଡ ହେତୁ ୪ ଗୋଟି ସାଇକଲ ବିନଷ୍ଟ ହୋଇ ଥିଲ ଓ ସେଥି ବାବଦ ବୀମା କମ୍ପାନୀଠାରୁ ମାତ୍ର ୧,୨୦୦ ଟଙ୍କା ନଭେମ୍ବର ୧୫ ତାରିଖରେ ହିନ୍ଦ କମ୍ପାନୀ ପାଇଲେ । କୋଚିନରେ ଏହି ସାଇକଲର ଦର ହ୍ରାସ ପାଇଥିବା ଯୋଗୁଁ ହିନ୍ଦ କମ୍ପାନୀ ୩୨ ଟି ସାଇକଲ ବମ୍ବାଇରେ ଥିବା ତାଙ୍କ ଏଜେଣ୍ଟ କୁବେରଜି ଏଣ୍ଡ ସନ୍ସଙ୍କ ନିକଟକୁ ଜାହାଜରେ ପ୍ରେରଣ କରିବାକୁ ଅନୁରୋଧ କଲେ । ଏହି ସାଇକଲଗୁଡ଼ିକ କୋଚିନରୁ ବୋମ୍ବାଇକୁ ଜାହାଜରେ ଡିସେମ୍ବର ୧୫ ତାରିଖରେ ପ୍ରେରିତ ହେଲା ଏବଂ ପ୍ୟାକିଂ, ପରିବହନ ପ୍ରଭୃତି ବାବଦ ସିଭ୍ୟୁ ସାଇକଲ ଷ୍ଟୋର ୩୨୦ ଟଙ୍କା ଖର୍ଚ୍ଚ କଲେ । ଡିସେମ୍ବର ୨୦ ତାରିଖରେ ସିଭ୍ୟୁ ସାଇକଲ ଷ୍ଟୋରଙ୍କଠାରୁ ହିନ୍ଦ ସାଇକଲ କମ୍ପାନୀ ବିକ୍ରୟ ବିବରଣ ପାଇଲେ । ତହିଁରୁ ଦେଖାଗଲା ଯେ ସିଭ୍ୟୁ ସାଇକଲ ଷ୍ଟୋର ୪୮ଟି ସାଇକଲ ବିକ୍ରୟ କରିଛନ୍ତି, ତନ୍ମଧ୍ୟରୁ ୧୬ଟି ସାଇକଲ ନଗଦ ୫,୬୦୦ ଟଙ୍କା ନିମନ୍ତେ ଓ ୩୨ଟି ସାଇକଲ ୧୨,୮୦୦ ଟଙ୍କା ସବାଶେ ଉଧାରରେ ବିକ୍ରୀତ ହୋଇଛି ଏବଂ ଏହି ବକେୟା ଟଙ୍କା ସେ ପର୍ଯ୍ୟନ୍ତ ଆଦାୟ ହୋଇ ନାହିଁ । ଗୋଦାମ ଭଡ଼ା, ବୀମା ଓ ବିକ୍ରୟ କରିବା ନିମନ୍ତେ ସିଭ୍ୟୁ ସାଇକଲ ଷ୍ଟୋର ମୋଟ ୩୦୦ ଟଙ୍କା ଖର୍ଚ୍ଚ କରିଛନ୍ତି । ସିଭ୍ୟୁ ସାଇକଲ ଷ୍ଟୋର ସାଧାରଣ କମିଶନ ୫% ହାରରେ ଓ ଆଶ୍ୱାସୀ କମିଶନ ୩% ହାରରେ ପାଇବେ । ଚାଲାଣୀ ପଣ୍ୟ ସଂକ୍ରାନ୍ତ ସମସ୍ତ ବ୍ୟୟ, ତାଙ୍କର କମିଶନ ଓ ଆଂଶିକ ପଣ୍ୟ ବମ୍ବାଇ ପଠାଇବା ନିମନ୍ତେ ବ୍ୟୟିତ ଅର୍ଥ ବାଦ୍ ଦେଇ ଅବଶିଷ୍ଟ ବିକ୍ରୟ ଲବ୍ଧ ଅର୍ଥ ବିକ୍ରୟ ବିବରଣ ସହିତ ବ୍ୟାଙ୍କ ଡ୍ରାଫ୍ଟ ଆକାରରେ ହିନ୍ଦ ସାଇକଲ କମ୍ପାନୀ ନିକଟକୁ ପ୍ରେରଣ କଲେ ।

ହିନ୍ଦ ସାଇକଲ କମ୍ପାନୀଙ୍କ ହିସାବ ବହିରେ ସ୍ଥଳଣୀ ପଣ୍ୟ ସଂପୃକ୍ତ ହିସାବଗୁଡ଼ିକ ପ୍ରସ୍ତୁତ କର । (ଅନୁମାନ କର ଯେ ପ୍ରାପକ ଗ୍ରାହକମାନଙ୍କ ଠାରୁ ବକେୟା ଟଙ୍କା ଆଦାୟ ହେଲେ ତାହା ପ୍ରେରକଙ୍କ ନିକଟକୁ ପଠାଇବା ପାଇଁ ଚୁକ୍ତିବଦ୍ଧ)

**ସମାଧାନ :**

ହିନ୍ଦ ସାଇକଲ କମ୍ପାନୀଙ୍କ

ହିସାବ ଖାତାରେ

ଦାୟୀ ବ୍ରେଣ ଯାଇଥିବା ସାଇକଲ ହିସାବ ଦାତା

| ୧୯୬୩ | | ଟଙ୍କା | ୧୯୬୩ | | ଟଙ୍କା |
|---|---|---|---|---|---|
| ଡିସେ-୧୫ | କୋଚିନ ସ୍ଥଳଣୀ ହିସାବ ବାବଦ (କୋଚିନରୁ ପଣ୍ୟ ଫେରସ୍ତ—ବମ୍ବାଇକୁ ପ୍ରେରିତ ପଣ୍ୟ) | ୯,୬୦୦ | ସେପ୍ଟେ-୧ | କୋଚିନ୍ ସ୍ଥଳଣୀ ହିସାବ ବାବଦ | ୩୦,୦୦୦ |
| ଡିସେ-୩୧ | ମୋଟ ଲାଭ କ୍ଷତି ହିସାବ ବାବଦ-ସ୍ଥାନାନ୍ତରଣ | ୩୦,୦୦୦ | ଡିସେ-୧୫ | ବମ୍ବାଇ ସ୍ଥଳଣୀ ହିସାବ ବାବଦ (କୋଚିନ୍ରୁ ବମ୍ବାଇକୁ ପ୍ରେରିତ ମାଲ) | ୯,୬୦୦ |
| | | ୩୯,୬୦୦ | | | ୩୯,୬୦୦ |

| ଡାସ୍ତୀ | କୋଚନ୍ ସ୍ୱଳଣୀ ହିସାବ | | | | | | ଡାଭା |
|---|---|---|---|---|---|---|---|
| | | ଏକକ | ଟଙ୍କା | | | ଏକକ | ଟଙ୍କା |
| ୧୯୭୩ ସେପ୍ଟେ-୧ | ସ୍ୱଳଣ ଯାଇଥିବା ସାଇକଲ ହିସାବ ବାବଦ | ୧୦୦ | ୩୦,୦୦୦ | ୧୯୭୩ ନଭେ-୧୫ | ଅସ୍ୱାଭାବିକ କ୍ଷତି ହିସାବ ବାବଦ (କ୍ରୟ ମୂଲ୍ୟ ୩୦୦ ଟଙ୍କା × ୪ + ବ୍ୟୟ ଟ ୧,୫୦୦ × $\frac{୪}{୧୦୦}$) | ୪ | ୧,୨୬୦ |
| ୧ | ବ୍ୟାଙ୍କ ହିସାବ ବାବଦ (ପରିବହନ ଓ ବୀମା) | | ୧,୫୦୦ | ଡିସେ-୧୫ | ସ୍ୱଳଣ ଯାଇଥିବା ସାଇକଲ ହିସାବ ବାବଦ (ପ୍ରାପକଙ୍କ ଦ୍ୱାରା ଫେରସ୍ତ ସାଇକଲ ୩୦୦ ଟଙ୍କା × ୩୨) | ୩ | ୯,୬୦୦ |
| ଡିସେ-୨୦ | ପିଭ୍ସ ସାଇକଲ ଷ୍ଟୋରଙ୍କ ହିସାବ ବାବଦ ବ୍ୟୟ | | ୩୦୦ | ୧୫ | ବମ୍ବାଇ ସ୍ୱଳଣୀ ହି: ବାବଦ (ସ୍ଥାନାନ୍ତରିତ ଅନୁପାତିକ ବ୍ୟୟ ୧,୫୦୦ ଟଙ୍କା × $\frac{୩୨}{୧୦୦}$) | | ୪୮୦ |
| | ସାଧାରଣ କମିଶନ ୫,୬୦୦ ଟଙ୍କାର ୫% | | ୨୮୦ | ୨୦ | ପିଭ୍ସ ସାଇକଲ ଷ୍ଟୋର ହିସାବ (ନଗଦ ବିକ୍ରୟ) | ୧୬ | ୫,୬୦୦ |
| | ଅଗ୍ରୀମ କମିଶନ ୧୨,୮୦୦ ଟଙ୍କାର ୩% | | ୩୮୪ | ୨୦ | ସ୍ୱଳଣୀ ଖାତକମାନଙ୍କର ହି: ବାବଦ (ଉଧାର ବିକ୍ରୟ) | ୩ | ୧୨,୮୦୦ |
| ୩୧ | ଲଭ ବାବଦ— ନିଟ୍ ଲଭ-କ୍ଷତି ହିସାବକୁ ସ୍ଥାନାନ୍ତରିତ | | ୧,୩୧୬ | ୩୧ | ମହଜୁଦ-ପଣ୍ୟ ବାବଦ-ବାକି ଗଚ୍ଛିତ — ୧୬ × ୩୦୦ ଟଙ୍କା + $\frac{୧୬}{୧୦୦}$ × ୧,୫୦୦ ଟଙ୍କା | ୧୬ | ୫,୦୪୦ |
| | | | ୩୪,୬୮୦ | | | | ୩୪,୬୮୦ |
| ୧୯୭୪ ଜାନୁ-୧ | ପୂର୍ବ ବାକି ବାବଦ | ୧୬ | ୫,୦୪୦ | | | | |

ଦାୟୀ ସିଭ୍ୟା ସାଇକଲ ଷ୍ଟୋରଙ୍କ ହିସାବ ଦାତା

| ୧୯୬୩ | | ଟଙ୍କା | ୧୯୬୩ | | ଟଙ୍କା |
|---|---|---|---|---|---|
| ଡିସେ-୨୦ | କୋଚନ୍ କମ୍ପାନୀ ହିସାବ ବାବଦ ବିକ୍ରୟ ଲବ୍ଧ ନଗଦ ଅର୍ଥ | ୫,୬୦୦ | ଡିସେ ୧୫ | ବମ୍ବାଇ କମ୍ପାନୀ ହି: ବାବଦ ପ୍ୟାକିଂ ପରିବହନ ବ୍ୟୟ | ୩୨୦ |
| | | | ୨୦ | କୋଚନ କମ୍ପାନୀ ହିସାବ ବାବଦ — ବ୍ୟୟ | ୩୦୦ |
| | | | | ସାଧାରଣ କମିଶନ | ୨୮୦ |
| | | | | ଅଣ୍ଟ୍ରସୀ କମିଶନ | ୩୮୪ |
| | | | ୨୦ | ବ୍ୟାଙ୍କ ହି: ବାବଦ | ୪,୩୧୬ |
| | | ୫,୬୦୦ | | | ୫,୬୦୦ |

ଦାୟୀ ବମ୍ବାଇ କମ୍ପାନୀ ହିସାବ ଦାତା

| ୧୯୬୩ | | ଏକକ | ଟଙ୍କା | ୧୯୬୩ | | ଏକକ | ଟଙ୍କା |
|---|---|---|---|---|---|---|---|
| ଡିସେ-୧୫ | କ୍ରୟ ଯାଇଥିବା ସାଇକଲ ହି: ବାବଦ | ୩୨ | ୯,୬୦୦ | ଡିସେ-୩୧ | ବାକି ଚଳନ | ୩୨ | ୧୦,୪୦୦ |
| ୧୫ | କୋଚନ କମ୍ପାନୀ ହିସାବ ବାବଦ (ସ୍ଥାନାନ୍ତରଣ ଆନୁପାତିକ ବ୍ୟୟ) | | ୪୮୦ | | | | |
| ୧୫ | ସିଭ୍ୟା ସାଇକଲ ଷ୍ଟୋର ହି: ବାବଦ (ପ୍ୟାକିଂ ଓ ପରିବହନ ବ୍ୟୟ) | | ୩୨୦ | | | | |
| | | ୩୨ | ୧୦,୪୦୦ | | | ୩୨ | ୧୦,୪୦୦ |
| ୧୯୬୪ ଜାନୁ-୧ | ପୂର୍ବ ବାକି ବାବଦ | ୩୨ | ୧୦,୪୦୦ | | | | |

ଡାଷ୍ଟୀ — ସ୍ୱଳଣୀ ଖାତାଙ୍କ ହିସାବ — ଦାତ

| ୧୯୭୩ | | ଟଙ୍କା | ୧୯୭୩ | | ଟଙ୍କା |
|---|---|---|---|---|---|
| ଡିସେ-୨୦ | କୋଚନ ସ୍ୱଳଣୀ ହିସାବ ବାବଦ | ୧୨,୮୦୦ | | | |

ଡାଷ୍ଟୀ — ଅସ୍ୱାଭାବିକ କ୍ଷତି ହିସାବ — ଦାତା

| ୧୯୭୩ | | ଟଙ୍କା | ୧୯୭୩ | | ଟଙ୍କା |
|---|---|---|---|---|---|
| ନଭେ-୧୫ | କୋଚନ ସ୍ୱଳଣୀ ହିସାବ ବାବଦ | ୧,୨୭୦ | ନଭେ-୧୫ | ବ୍ୟାଙ୍କ୍ ହିସାବ ବାବଦ (ବୀମା ଦାବୀ) | ୧,୦୦୦ |
| | | | ଡିସେ-୧୩ | ନିଟ୍ ଲାଭ-କ୍ଷତି ହିସାବ ବାବଦ | ୨୭୦ |

ବିଶେଷ ଦ୍ରଷ୍ଟବ୍ୟ :—ଏଠାରେ ଅନୁମାନ କରାଯାଇଛି ଯେ ସ୍ଥିତି ସାଇକଲ କମ୍ପାନୀଙ୍କର ବାର୍ଷିକ ହିସାବ ଡିସେମ୍ବର ୩୧ ତାରିଖରେ ବନ୍ଦ କରାଯାଏ ।

## ଯୌଥ ଉଦ୍‌ଯୋଗ

ଦୁଇ ବା ତତୋଧିକ ବ୍ୟକ୍ତି ସମ୍ମିଳିତ ହୋଇ ସାମୟିକ ଭାବରେ ଯଦି କୌଣସି ବ୍ୟବସାୟ ଚଳାନ୍ତି ତାହାକୁ ଯୌଥ ଉଦ୍‌ଯୋଗ କୁହାଯାଏ । ବ୍ୟବସାୟୀମାନେ ମଧ୍ୟ ତାଙ୍କର ସ୍ଥାୟୀ ବ୍ୟବସାୟ ପ୍ରତିଷ୍ଠାନ ବାହାରେ ସାମୟିକ ଭାବରେ ଏପରି ବ୍ୟବସାୟ ଚଳାଇ ପାରନ୍ତି । ଉଦାହରଣସ୍ୱରୂପ, କଟକର ଭଗବାନ ମହାରଣା ଓ ଭୁବନେଶ୍ୱରର ଯୋଗେଶ୍ୱର ମହାରଣା କଟକର ବାଲିଯାତ୍ରା ଉପଲକ୍ଷେ ମହାନଦୀ କୂଳ ବାଲିଯାତ୍ରା ପଡ଼ିଆରେ ଆସ୍‌ବାବ୍ ପତ୍ର ବିକ୍ରୟ କରିବା ନିମନ୍ତେ ଗୋଟିଏ ଦୋକାନ ଖୋଲି ପାରନ୍ତି । ବାଲିଯାତ୍ରା ଅନ୍ତେ ଏହି ଦୋକାନର ଅବସାନ ଘଟିପାରେ କିମ୍ବା ଅନ୍ୟ କୌଣସି ମେଳାକୁ ଏହି ଦୋକାନକୁ ଉଠାଇ ନିଆଯାଇ ପାରେ ।

ସାଧାରଣତଃ ଏହି ବ୍ୟବସାୟ ଚଳାଇବା ନିମନ୍ତେ ଏକ ଚୁକ୍ତିନାମା ସ୍ୱାକ୍ଷରିତ ହୁଏ । ଚୁକ୍ତି ଅନୁଯାୟୀ ପ୍ରତ୍ୟେକ ବ୍ୟବସାୟ ପଣ୍ୟ ଯୋଗାଇ ପାରନ୍ତି ଅଥବା ପୁଞ୍ଜି ଅଥବା ଉଭୟ ପୁଞ୍ଜି ଓ ପଣ୍ୟ ଯୋଗାଇ ପାରନ୍ତି । ଏମନ୍ତେ ଅଥବା ସମସ୍ତଙ୍କ ସକାଶେ ଜଣେ ପଣ୍ୟ ବିକ୍ରୟର ଦାୟିତ୍ୱ ଗ୍ରହଣ କରି ପାରନ୍ତି । ଏହି ବ୍ୟବସାୟ ଏକ ନିର୍ଦ୍ଦିଷ୍ଟ କାଳ ସକାଶେ ଅଥବା ଏକ ନିର୍ଦ୍ଦିଷ୍ଟ କାରବାର ସକାଶେ ଖୋଲାଯାଇଥାଏ । ସେହି ନିର୍ଦ୍ଦିଷ୍ଟ କାଳ ଅଥବା କାରବାର ପରେ ଏହି ବ୍ୟବସାୟର ଅବସାନ ଘଟେ । ଏହି ବ୍ୟବସାୟର କୌଣସି ନାମକରଣ କରାଯାଏ ନାହିଁ । ବ୍ୟବସାୟର ଲାଭ (ବା କ୍ଷତି) ବ୍ୟବସାୟୀମାନେ ଚୁକ୍ତି ଅନୁଯାୟୀ ନିର୍ଦ୍ଦିଷ୍ଟ ହାରରେ ଓ କୌଣସି ଚୁକ୍ତି ନ ଥିଲେ ସମାନ ଅନୁପାତରେ ବାଣ୍ଟି ନିଅନ୍ତି । ବ୍ୟବସାୟୀମାନଙ୍କ ମଧ୍ୟରେ ଥିବା ପାରସ୍ପରିକ ସମ୍ପର୍କ ବ୍ୟବସାୟର ଅବସାନ ହେବାର ଲୋପ ପାଏ । ବ୍ୟବସାୟଗତ ସ୍ୱାର୍ଥ ଦାୟ ଦାୟିତ୍ୱର ମଧ୍ୟ ଏହିଠାରେ ଅବସାନ ଘଟେ ।

## ଚାଲାଣୀ କାରବାର ଓ ଯୌଥ ଉଦ୍ୟୋଗର ପାର୍ଥକ୍ୟ

ଯୌଥ ଉଦ୍ୟୋଗର ସ୍ଥାୟିତ୍ୱ ଅତି ସାମୟିକ ଏବଂ ଉପସ୍ଥିତ ସୁଯୋଗର ଅବସାନ ସଙ୍ଗେ ସଙ୍ଗେ ଏହି ବ୍ୟବସାୟର ମଧ୍ୟ ଅବସାନ ଘଟେ ।

ଅପରପକ୍ଷରେ ଚାଲାଣୀ କାରବାର ଅନ୍ୟ ସହର, ଅନ୍ୟ ଦେଶ ଅଥବା ଅନ୍ୟ ବଜାରର ସୁଯୋଗ ନେବା ନିମନ୍ତେ ଏ କାରବାର ଆରମ୍ଭ କରାଯାଇଥାଏ । ଏହା ଦୀର୍ଘକାଳ ସ୍ଥାୟୀ ହୋଇପାରେ ଅଥବା ଅଳ୍ପ କିଛି କାଳ ପରେ ବନ୍ଦ ହୋଇଯାଇପାରେ । ଏହାର ସ୍ଥାୟିତ୍ୱ ପଣ୍ୟ ଚାଲାଣ କରାଯାଉଥିବା ସହର, ଦେଶ ଅଥବା ବଜାରରେ ଚାଲାଣୀ ପଣ୍ୟର ବିକ୍ରୟ ଦର ଉପରେ ନିର୍ଭର କରେ । ଲାଭର ସୁଯୋଗ ଥିଲେ ଏହି କାରବାର ବର୍ଷ ବର୍ଷ ଧରି ଚାଲିପାରେ ଓ କ୍ଷତି ହେଲେ ଅଳ୍ପ ପରେ ଏହା ବନ୍ଦ କରାଯାଇପାରେ ।

୨ । ଯୌଥ ଉଦ୍ୟୋଗରେ ଅଂଶ ଗ୍ରହଣକାରୀ ପ୍ରତ୍ୟେକ ବ୍ୟବସାୟୀ ଚୁକ୍ତି ଅନୁଯାୟୀ ପୁଞ୍ଜି ଅଥବା ପଣ୍ୟ ସରବରାହ କରନ୍ତି ଓ ଚୁକ୍ତି ଅନୁଯାୟୀ ଲାଭ (ବା କ୍ଷତି) ଭୋଗ କରନ୍ତି ।

ଚାଲାଣୀ କାରବାରରେ ପ୍ରେରକ ପୁଞ୍ଜି ବିନିଯୋଗ କରନ୍ତି ଓ ପଣ୍ୟ ଚାଲାଣ କରନ୍ତି । ପ୍ରାପକ ପୁଞ୍ଜି ବିନିଯୋଗ କରନ୍ତି ନାହିଁ । ପ୍ରାପକ ଲାଭାଂଶ ଭୋଗ କରନ୍ତି ନାହିଁ । ସେ କେବଳ ତାଙ୍କ ଚୁକ୍ତି ଅନୁଯାୟୀ ନିର୍ଦ୍ଦିଷ୍ଟ ହାରରେ ବିକ୍ରୟ ଲବ୍ଧ ଅର୍ଥ ଉପରେ କମିଶନ ପାଆନ୍ତି ।

୩ । ଯୌଥ ଉଦ୍ୟୋଗରେ ଅଂଶ ଗ୍ରହଣକାରୀ ସମସ୍ତ ବ୍ୟବସାୟୀ ବ୍ୟବସାୟରେ ସ୍ୱତ୍ୱାଧିକାରୀ ଏବଂ ସମସ୍ତେ ବ୍ୟବସାୟ ପରିଚାଳନା କରିବାକୁ ଅଧିକାରୀ ।

ଚାଲାଣୀ କାରବାରରେ ପ୍ରେରକ ମୁଖ୍ୟ ବ୍ୟକ୍ତି ଏବଂ ପ୍ରାପକ ପ୍ରତିନିଧି । ପ୍ରାପକ ଚାଲାଣୀ ପଣ୍ୟର ସ୍ୱତ୍ୱାଧିକାରୀ ନୁହଁନ୍ତି ନ୍ୟାସୀ ମାତ୍ର ।

ଏହି ଦୁଇଟି ବ୍ୟବସାୟରେ ଦେଣ ନେଣଗୁଡ଼ିକ ହିସାବରେ ଲିପିବଦ୍ଧ କରିବାର ପ୍ରଣାଳୀ ଏକ ରୂପ ଅଟେ । କେତେକ କ୍ଷେତ୍ରରେ ପ୍ରାପକ ତାଙ୍କର କାର୍ଯ୍ୟ ସକାଶେ ପାରିଶ୍ରମିକ ସ୍ୱରୂପ କମିଶନ ପରିବର୍ତ୍ତେ ନିର୍ଦ୍ଦିଷ୍ଟ ହାରରେ ଲାଭର ଅଂଶ ଗ୍ରହଣ କରନ୍ତି । ଅବଶ୍ୟ ଏ ପ୍ରକାର ବ୍ୟବସାୟକୁ ଚାଲାଣୀ କାରବାର ପରିବର୍ତ୍ତେ ଯୌଥ ଉଦ୍ୟୋଗ ଆଖ୍ୟା ଦେବା ଅଧିକ ସମୀଚିନ ହେବ ।

## ଯୌଥ ଉଦ୍ୟୋଗ ଓ ଅଂଶୀଦାରୀ କାରବାରର ପାର୍ଥକ୍ୟ

୧ । ଯୌଥ ଉଦ୍ୟୋଗ କାରବାରର କୌଣସି ବ୍ୟବସାୟ ନାମ ନ ଥାଏ । କାରଣ ଏହା ଅଧିକାଂଶ ସମୟରେ ଅତି ଅଳ୍ପକାଳ ସ୍ଥାୟୀ ହୁଏ । କିନ୍ତୁ ଅଂଶୀଦାରୀ କାରବାରରେ ବ୍ୟବସାୟର ନାମ ଅତ୍ୟାବଶ୍ୟକ ।

୨ । କୌଣସି ସୁଯୋଗର ସଦ୍‌ବ୍ୟବହାର କରିବା ସକାଶେ ଯୌଥ ଉଦ୍ୟୋଗ କାରବାର ଆରମ୍ଭ କରାଯାଏ ତେଣୁ ସେହି ସୁଯୋଗର ଅବସାନ ସହିତ ଏହି ବ୍ୟବସାୟର ମଧ୍ୟ ଅବସାନ ଘଟେ । ଅଂଶୀଦାରୀ ବ୍ୟବସାୟ ସାଧାରଣତଃ ଦୀର୍ଘକାଳ ସ୍ଥାୟୀ ହୁଏ । କାରଣ ଏହା କୌଣସି ସାମୟିକ ବଜାରର ସୁଯୋଗ ନେବା ପରିବର୍ତ୍ତେ ଗ୍ରାହକମାନଙ୍କର ଏକ ସ୍ଥାୟୀ ଚାହିଦା ମେଣ୍ଟାଇବା ସକାଶେ ପ୍ରତିଷ୍ଠିତ ହୋଇଥାଏ ।

୩ । ଯୌଥ ଉଦ୍ୟୋଗ କାରବାର ସକାଶେ ସେହି ପ୍ରତିଷ୍ଠାନରେ କୌଣସି ହିସାବ ନ ରଖି ଅଂଶ ଗ୍ରହଣକାରୀମାନେ ନିଜର ହିସାବ ଖାତାରେ ଏହାର ଦେଣ ନେଣଗୁଡ଼ିକ ଲିପିବଦ୍ଧ କରିପାରନ୍ତି । ବ୍ୟବସାୟରେ ହିସାବ ରଖାଗଲେ ମଧ୍ୟ କେବଳ ଗୋଟିଏ ହିସାବ, ଯଥା ଯୌଥ ଉଦ୍ୟୋଗ ହିସାବ ସାଧାରଣତଃ ରଖାଯାଏ ଓ ଏହି ହିସାବ କାରବାରର ଲାଭ ବା କ୍ଷତି ସୂଚାଏ । ମାତ୍ର ଅଂଶୀଦାରୀ ବ୍ୟବସାୟରେ ଅଂଶୀଦାରମାନଙ୍କର ହିସାବ ବ୍ୟତୀତ ସମସ୍ତ ଖତିୟାନ ହିସାବ, ମୋଟ ଓ ନିଟ୍ ଲାଭ-କ୍ଷତି ହିସାବ ଓ ଉଦ୍‌ବୃତ୍ତ ପତ୍ର ପ୍ରସ୍ତୁତ କରିବାକୁ ପଡ଼େ । ଯୌଥ ଉଦ୍ୟୋଗ ବ୍ୟବସାୟ ଅଳ୍ପକାଳ ସ୍ଥାୟୀ ହେଉଥିବା ଦୃଷ୍ଟିରୁ ଏହାର

ହିସାବ ଅତି ସରଳ ହୋଇଥାଏ ଏବଂ ଏଦ୍ୱାରା ଉଦ୍‌ବୃତ୍ତ ପତ୍ର ପ୍ରସ୍ତୁତ କରିବା ଆବଶ୍ୟକ ହୁଏ ନାହିଁ ।

୪ । ଜଣେ ପ୍ରତିଷ୍ଠିତ ବ୍ୟବସାୟୀ ଗୋଟିଏ ଯୌଥ ଉଦ୍‌ଯୋଗ କାରବାରକୁ ଏକ ପାର୍ଶ୍ୱ ବା ଗୌଣ ବ୍ୟବସାୟ ରୂପେ ଆରମ୍ଭ କରିପାରନ୍ତି; ମାତ୍ର ସାଧାରଣତଃ ଅଂଶୀଦାରୀ କାରବାର ଏକ ମୁଖ୍ୟ ବ୍ୟବସାୟ ରୂପେ ପ୍ରତିଷ୍ଠିତ ହୁଏ

୫ । ଯୌଥ ଉଦ୍‌ଯୋଗ ପଣ୍ୟ କ୍ରୟ ବିକ୍ରୟ, ଅଂଶପତ୍ର ବା ଋଣପତ୍ର କ୍ରୟ ବିକ୍ରୟ, ଠିକାଦାରୀ କାରବାର ପରି କେତେକ ନିର୍ଦ୍ଦିଷ୍ଟ କାରବାର ପ୍ରତି ପ୍ରଯୁଜ୍ୟ ମାତ୍ର ଅଂଶୀଦାରୀ ବ୍ୟବସାୟ ପ୍ରତିଷ୍ଠାନ ଯେ କୌଣସି ପ୍ରକାର କାରବାର ପ୍ରତି ପ୍ରଯୁଜ୍ୟ (ଅଂଶୀଦାରୀ କାରବାର ସମ୍ପର୍କରେ ବିଶଦ ଆଲୋଚନା ପରବର୍ତ୍ତୀ ପରିଚ୍ଛେଦରେ କରାଯାଇଛି ।)

## ଯୌଥ ଉଦ୍‌ଯୋଗ ବ୍ୟବସାୟରେ ହିସାବ ରକ୍ଷଣ ପ୍ରଣାଳୀ—

ଯୌଥ ଉଦ୍‌ଯୋଗ ବ୍ୟବସାୟରେ ସାଧାରଣତଃ ନିମ୍ନଲିଖିତ ୩ ଗୋଟି ହିସାବ ରକ୍ଷଣ ପ୍ରଣାଳୀ ପରିଲକ୍ଷିତ ହୁଏ ।

୧ । ଯେଉଁ କ୍ଷେତ୍ରରେ ସ୍ୱତନ୍ତ୍ର ହିସାବ ବହି ଖୋଲାଯାଏ ।

୨ । ଯେଉଁ କ୍ଷେତ୍ରରେ ସ୍ୱତନ୍ତ୍ର ହିସାବ ବହି ଖୋଲାଯାଏ ନାହିଁ ।

୩ । ଯେଉଁ କ୍ଷେତ୍ରରେ ବିବରଣୀ ଯୌଥ ଉଦ୍‌ଯୋଗ ହିସାବ ଖୋଲାଯାଏ ।

## ୧ । ଯେଉଁ କ୍ଷେତ୍ରରେ ସ୍ୱତନ୍ତ୍ର ହିସାବ ବହି ଖୋଲାଯାଏ —

ଏ କ୍ଷେତ୍ରରେ ବ୍ୟବସାୟ ସ୍ଥଳୀରେ ସ୍ୱତନ୍ତ୍ର ଏକ ଜାତା ହିସାବ ବହି ରଖାଯାଏ ଏବଂ ଯୌଥ ଉଦ୍‌ଯୋଗ ସଂକ୍ରାନ୍ତ ଯାବତୀୟ କାରବାର ସେହି ହିସାବ ବହିଗୁଡ଼ିକରେ ଲିପିବଦ୍ଧ କରାଯାଏ । ସାଧାରଣତଃ ଏଥିରେ ଜାବ୍‌ଦା, ଯୌଥ ବ୍ୟାଙ୍କ୍ ହିସାବ, ଯୌଥ ଉଦ୍‌ଯୋଗ ହିସାବ ଓ ଯୌଥ ଉଦ୍‌ଯୋଗ କାରବାରରେ ଅଂଶଗ୍ରହଣକାରୀ ବ୍ୟକ୍ତିମାନଙ୍କର ବ୍ୟକ୍ତିଗତ ହିସାବ ଅନ୍ତର୍ଭୁକ୍ତ ।

ସାଧାରଣତଃ ଏହି କାରବାରର ଅଂଶଗ୍ରହଣକାରୀ ବ୍ୟକ୍ତିମାନେ ଯୌଥ ଉଦ୍ୟମ ସହକାରେ ସମ ଅଂଶରେ ଅଥବା ଚୁକ୍ତିବଦ୍ଧ ଅନୁପାତରେ ମୂଳଧନ ଯୋଗାଇ ଥାଆନ୍ତି ଏବଂ ଏହି ଅର୍ଥ ଯୌଥ ବ୍ୟାଙ୍କ୍ ହିସାବରେ ରଖାଯାଏ । ଏହି ଅର୍ଥ ବ୍ୟୟରେ ପଣ୍ୟ କ୍ରୟ କରାଯାଏ ଏବଂ ବ୍ୟବସାୟଗତ ଯାବତୀୟ ବ୍ୟୟ ଏହି

ଯୌଥ ବ୍ୟାଙ୍କ୍ ହିସାବରୁ ଦିଆଯାଏ । ପଣ୍ୟ ବିକ୍ରୟ ଲବ୍ଧ ଅର୍ଥ ଏହି ଯୌଥ ବ୍ୟାଙ୍କ୍ ହିସାବରେ ଜମା କରାଯାଏ । ଏହି ସମସ୍ତ ଦେଣନେଣର ଜାବେଦା ନିମ୍ନରେ ପ୍ରଦତ୍ତ ହେଲା :

(୧) ଅଂଶଗ୍ରହଣକାରୀ ବ୍ୟକ୍ତିମାନେ ମୂଳଧନ ବାବଦ ଅର୍ଥ ଦେଲେ । ମନେ କରାଯାଉ ଯେ ରାମ ଓ ହରି ବୃନ୍ଦାବନ ବ୍ୟବସାୟୀ ଏହି ଯୌଥ ଉଦ୍‌ଯୋଗ ଆରମ୍ଭ କରିଛନ୍ତି ।

ଯୌଥ ବ୍ୟାଙ୍କ୍ ହିସାବ ଦାୟୀ
ରାମଙ୍କ ହିସାବ ବାବଦ
ଶ୍ୟାମଙ୍କ ହିସାବ ,,

(୨) ପଣ୍ୟ କ୍ରୟ କରାଗଲେ—
ଯୌଥ ଉଦ୍‌ଯୋଗ ହିସାବ ଦାୟୀ
ଯୌଥ ବ୍ୟାଙ୍କ୍ ହିସାବ ବାବଦ

(୩) କୌଣସି ଅଂଶ ଗ୍ରହଣକାରୀ ପଣ୍ୟ ଯୋଗାଇଲେ –
ଯୌଥ ଉଦ୍‌ଯୋଗ ହିସାବ ଦାୟୀ
ରାମ ବା ହରିଙ୍କ ହିସାବ ବାବଦ

(୪) ବ୍ୟବସାୟ ସମ୍ବନ୍ଧୀୟ ବ୍ୟୟଗୁଡ଼ିକ ସକାଶେ—
ବ୍ୟୟ ହିସାବ ଦାୟୀ
ଯୌଥ ବ୍ୟାଙ୍କ୍ ହିସାବ ବାବଦ

(୫) ପଣ୍ୟ ବିକ୍ରୟ ସକାଶେ—
ଯୌଥ ବ୍ୟାଙ୍କ୍ ହିସାବ ଦାୟୀ
ଯୌଥ ଉଦ୍‌ଯୋଗ ହିସାବ ବାବଦ

(୬) ଅବଶିଷ୍ଟ ପଣ୍ୟ କୌଣସି ଜଣେ ଅଥବା ଉଭୟ ଅଂଶଗ୍ରହଣକାରୀ ବାଣ୍ଟିନେଲେ—

ରାମଙ୍କ ହିସାବ ଦାୟୀ
ହରିଙ୍କ ହିସାବ ଦାୟୀ
ଯୌଥ ଉଦ୍‌ଯୋଗ ହିସାବ ବାବଦ

(୬) ଲଭାଂଶ ବଣ୍ଟନ କରିନେଲେ—

ଯୌଥ ଉଦ୍‌ଯୋଗ ହିସାବ ଦାୟୀ
ରାମଙ୍କ ହିସାବ ବାବଦ
ହରିଙ୍କ ହିସାବ ବାବଦ

(୭) ଅଂଶୀଦାରମାନେ ନିଜ ନିଜର ପ୍ରାପ୍ୟ ଉଠାଇ ନେଲେ—

ରାମଙ୍କ ହିସାବ ଦାୟୀ
ହରିଙ୍କ ହିସାବ ଦାୟୀ
ଯୌଥ ବ୍ୟାଙ୍କ୍ ହିସାବ ବାବଦ

ବ୍ୟବସାୟରେ ଲଭ ନ ହୋଇ ଯଦି କ୍ଷତି ହୁଏ ତାହା ହେଲେ (୬) ନମ୍ବର ଜାବ୍‌ଦା ପରିବର୍ତ୍ତେ ନିମ୍ନଲିଖିତ ଜାବ୍‌ଦା ଲେଖା ଯିବ :

ରାମଙ୍କ ହିସାବ ଦାୟୀ
ହରିଙ୍କ ହିସାବ ଦାୟୀ
ଯୌଥ ଉଦ୍‌ଯୋଗ ହିସାବ ବାବଦ

ବ୍ୟବସାୟରେ କ୍ଷତିର ପରିମାଣ ଯଦି ଅତ୍ୟଧିକ ହୁଏ ଏବଂ ଅଂଶୀଦାରମାନଙ୍କୁ ଅଧିକା ଅର୍ଥ ଦେବାକୁ ପଡ଼େ ତାହା ହେଲେ—

ଯୌଥ ବ୍ୟାଙ୍କ୍ ହିସାବ ଦାୟୀ
ରାମଙ୍କ ହିସାବ ବାବଦ
ହରିଙ୍କ ହିସାବ ବାବଦ

ଏହା ଅବଧେୟ ଯେ ଉପରୋକ୍ତ ଜାବ୍‌ଦା ଲିଖନ ଫଳରେ ଯୌଥ ଉଦ୍‌ଯୋଗ ବ୍ୟବସାୟର ସମସ୍ତ ହିସାବ ବନ୍ଦ ହୋଇଯିବ ।

## ଦୃଷ୍ଟାନ୍ତ (୧୦)

ସୁବାସ ଓ ଶ୍ରୀକାନ୍ତ ଭୁବନେଶ୍ୱରରେ ଗୋଟିଏ ଶିଳ୍ପ ପ୍ରଦର୍ଶନୀରେ ଏକ ବସ୍ତ୍ରାଳୟ ଖୋଲିବାକୁ ନିଷ୍ପତ୍ତି ଗ୍ରହଣ କଲେ ଓ ସେମାନେ ୧୨,୦୦୦ ଟଙ୍କା ଆଣି ଏକ ଯୌଥ ବ୍ୟାଙ୍କ୍ ହିସାବ ଖୋଲିଲେ । ମୂଳଧନ ବାବଦ ସୁବାସ ୮,୦୦୦ ଟଙ୍କା ଓ ଶ୍ରୀକାନ୍ତ ୪,୦୦୦ ଟଙ୍କା ଯୋଗାଇଲେ । ସେମାନେ ମୂଳଧନ ଅନୁପାତରେ ଲଭ ଓ କ୍ଷତି ବଣ୍ଟନ କରିବା ନିମନ୍ତେ ସ୍ୱୀକୃତ ହେଲେ । ସେମାନେ

ମଦୁରାଇର ରାମଲିଙ୍ଗମ୍‌ଙ୍କଠାରୁ ୩,୦୦୦ ଟଙ୍କା ମୂଲ୍ୟର ଶାଢ଼ୀ, କଲିକତାର କମଲାଳୟରୁ ୫,୦୦୦ ଟଙ୍କା ମୂଲ୍ୟର ବସ୍ତ୍ର ଓ ସମ୍ବଲପୁରର କୃତାର୍ଥ ଆଚାର୍ଯ୍ୟଙ୍କଠାରୁ ୨,୦୦୦ ଟଙ୍କା ମୂଲ୍ୟର ବସ୍ତ୍ର କ୍ରୟ କଲେ । ପରିବହନ ଓ ଅନ୍ୟାନ୍ୟ ବ୍ୟୟ ବାବଦ ଯଥାକ୍ରମେ ୩୫୦ ଟଙ୍କା, ୨୫୦ ଟଙ୍କା ଓ ୨୦୦ ଟଙ୍କା ବ୍ୟୟ କଲେ । ସମସ୍ତ ବ୍ୟୟ ଯୌଥ ବ୍ୟାଙ୍କ୍ ହିସାବରୁ ଦିଆଗଲା । ସେମାନେ ପ୍ରଦର୍ଶନୀ କାଳ ମଧ୍ୟରେ ୧୭,୪୦୮ ଟଙ୍କାର ବସ୍ତ୍ର ବିକ୍ରୟ କଲେ । ଷ୍ଟଲଭଡ଼ା ଓ ଅନ୍ୟାନ୍ୟ କାରବାର ଖର୍ଚ୍ଚ ବାବଦ ୧୫୦ ଟଙ୍କା ବ୍ୟୟିତ ହେଲା । ଅବଶିଷ୍ଟ ଅବିକ୍ରୀତ ବସ୍ତ୍ର ସୁବାସ ୧,୨୧୦ ଟଙ୍କା ମୂଲ୍ୟରେ କ୍ରୟ କରି ନେଲେ ।

ସେମାନେ ଏହି ଉଦ୍‌ଯୋଗରୁ କେତେ ଲାଭ ବା କ୍ଷତି କଲେ ଏବଂ ବ୍ୟବସାୟର ତହବିଲ କିପରି ଉଭୟ ଅଂଶଗ୍ରହଣକାରୀଙ୍କ ମଧ୍ୟରେ ବଣ୍ଟିତ ହେଲା ତାହାର ଜାବ୍‌ଦା ଓ ଖତିୟାନ ହିସାବ ପ୍ରସ୍ତୁତ କର ।

## ଯୌଥ ଉଦ୍‌ଯୋଗ ହିସାବ ବହିରେ

**ସମାଧାନ :**

| | ଜାବ୍‌ଦା | | ଦାୟୀ | ଦାତା |
|---|---|---|---|---|
| | | | ଟଙ୍କା | ଟଙ୍କା |
| ୧୯... | ଯୌଥ ବ୍ୟାଙ୍କ୍ ହିସାବ ଦାୟୀ | | ୧୨,୦୦୦ | |
| | ସୁବାସଙ୍କ ହିସାବ ବାବଦ | | | ୮,୦୦୦ |
| | ଶ୍ରୀକାନ୍ତଙ୍କ ହିସାବ ବାବଦ | | | ୪,୦୦୦ |
| | ( ଯୌଥ ଉଦ୍‌ଯୋଗ ସକାଶେ ତାଙ୍କଠାରୁ ମୂଳଧନ ବାବଦ ଅର୍ଥ ମିଳିଲା । ) | | | |
| | ଯୌଥ ଉଦ୍‌ଯୋଗ ହିସାବ ଦାୟୀ | | ୧୦,୦୦୦ | |
| | ଯୌଥ ବ୍ୟାଙ୍କ୍ ହିସାବ ବାବଦ | | | ୧୦,୦୦୦ |
| | ( ମଦୁରାଇ, କଲିକତା ଓ ସମ୍ବଲପୁରରୁ ବସ୍ତ୍ର କ୍ରୟ କରାଯାଇ ବସ୍ତ୍ରର ମୂଲ୍ୟ ବାବଦ ଟଙ୍କା ଦିଆଗଲା ) | | | |

| | ଦାୟୀ | ଦାତା |
|---|---|---|
| | ଟଙ୍କା | ଟଙ୍କା |
| ଯୌଥ ଉଦ୍‌ଯୋଗ ହିସାବ ଦାୟୀ | ୮୦୦ | |
| ଯୌଥ ବ୍ୟାଙ୍କ ହିସାବ ବାବଦ | | ୮୦୦ |
| ( ବସ୍ତ୍ର କ୍ରୟ କରି ଭୁବନେଶ୍ୱରକୁ ଆଣିବାର ପରିବହନ ଓ ଅନ୍ୟାନ୍ୟ ଆନୁଷଙ୍ଗିକ ବ୍ୟୟ ବାବଦ ଟଙ୍କା ଦିଆଗଲା । ) | | |
| ଯୌଥ ବ୍ୟାଙ୍କ ହିସାବ ଦାୟୀ | ୧୬,୪୦୦ | |
| ଯୌଥ ଉଦ୍‌ଯୋଗ ହିସାବ ବାବଦ | | ୧୬,୪୦୦ |
| ( ବସ୍ତ୍ର ବିକ୍ରୟ ଲବ୍ଧ ଅର୍ଥ ସକାଶେ ) | | |
| ଯୌଥ ଉଦ୍‌ଯୋଗ ହିସାବ ଦାୟୀ | ୧୫୦ | |
| ଯୌଥ ବ୍ୟାଙ୍କ ହିସାବ ବାବଦ | | ୧୫୦ |
| ( ସ୍ଥଳଭଡ଼ା ଓ ଅନ୍ୟାନ୍ୟ କାରବାର ବ୍ୟୟ ସକାଶେ । ) | | |
| ସୁବାସଙ୍କ ହିସାବ ଦାୟୀ | ୧,୨୧୦ | |
| ଯୌଥ ଉଦ୍‌ଯୋଗ ହିସାବ ବାବଦ | | ୧,୨୧୦ |
| ( ଅବିକ୍ରୀତ ଅବଶିଷ୍ଟ ବସ୍ତ୍ର ସୁବାସ କ୍ରୟ କରିଥିବା ସକାଶେ । ) | | |
| ଯୌଥ ଉଦ୍‌ଯୋଗ ହିସାବ ଦାୟୀ | ୬,୬୬୦ | |
| ସୁବାସଙ୍କ ହିସାବ ବାବଦ | | ୪,୪୪୦ |
| ଶ୍ରୀକାନ୍ତଙ୍କ ହିସାବ ବାବଦ | | ୨,୨୨୦ |
| ( ଯୌଥ ଉଦ୍‌ଯୋଗ କାରବାରର ଲାଭ ସୁବାସ ଓ ଶ୍ରୀକାନ୍ତ ଯଥାକ୍ରମେ ୨/୩ ଓ ୧/୩ ହାରରେ ବାଣ୍ଟିନେଲେ) | | |

| | | | ଦାସ୍ତୀ | ଦାତା |
|---|---|---|---|---|
| | | | ଟଙ୍କା | ଟଙ୍କା |
| | ସୁବାସଙ୍କ ହିସାବ ଦାସ୍ତୀ | | ୧୧,୨୩୦ | |
| | ଶ୍ରୀକାନ୍ତଙ୍କ ହିସାବ ଦାସ୍ତୀ | | ୬,୨୬୦ | |
| | ଯୌଥ ବ୍ୟାଙ୍କ୍ ହିସାବ ବାବଦ | | | ୧୭,୪୫୦ |
| | ( ଅଂଶ ଗ୍ରହଣକାରୀମାନେ ତାଙ୍କର ପ୍ରାପ୍ୟ ଟଙ୍କା ପାଇଲେ ଓ ତାଙ୍କର ବ୍ୟକ୍ତିକ ହିସାବ ବନ୍ଦ କରାଗଲା । ) | | | |

## ଖତିୟାନ ହିସାବ

ଦାସ୍ତୀ ଯୌଥ ଉଦ୍‌ଯୋଗ ହିସାବ ଦାତା

| | | ଟଙ୍କା | | | | ଟଙ୍କା |
|---|---|---|---|---|---|---|
| | ଯୌଥ ବ୍ୟାଙ୍କ୍ ହିସାବ ବାବଦ (ପଣ୍ୟର କ୍ରୟ ମୂଲ୍ୟ) | ୧୦,୦୦୦ | | ଯୌଥ ବ୍ୟାଙ୍କ୍ ହିସାବ ବାବଦ (ବିକ୍ରୟ ଲବ୍ଧ ଅର୍ଥ) | | ୧୬,୪୦୦ |
| | ଯୌଥ ବ୍ୟାଙ୍କ୍ ହିସାବ ବାବଦ (ପରିବହନ ଆଦି ବ୍ୟୟ) | ୮୦୦ | | ସୁବାସଙ୍କ ହିସାବ ବାବଦ | | ୧,୨୧୦ |
| | ଯୌଥ ବ୍ୟାଙ୍କ୍ ହିସାବ ବାବଦ (କାରବାର ବ୍ୟୟ) | ୧୫୦ | | | | |
| | ସୁବାସଙ୍କ ହିସାବ ବାବଦ | ୪,୪୪୦ | | | | |
| | ଶ୍ରୀକାନ୍ତଙ୍କ ହିସାବ ବାବଦ ( ଲାଭାଂଶ ବଣ୍ଟନ ) | ୨,୨୨୦ | | | | |
| | | ୧୭,୬୧୦ | | | | ୧୭,୬୧୦ |

ଦାସ୍ତୀ — ଶ୍ରୀକାନ୍ତଙ୍କ ହିସାବ — ଦାତା

| | ଟଙ୍କା | | ଟଙ୍କା |
|---|---|---|---|
| ଘୌଥ ବ୍ୟାଙ୍କ୍ ହିସାବ ବାବଦ | ୬,୨୨୦ | ଘୌଥ ବ୍ୟାଙ୍କ୍ ହିସାବ ବାବଦ | ୪,୦୦୦ |
| | | ଘୌଥ ଉଦ୍ଯୋଗ ହିସାବ ବାବଦ | ୨,୨୨୦ |
| | ୬,୨୨୦ | | ୬,୨୨୦ |

ଦାସ୍ତୀ — ସୁବାସଙ୍କ ହିସାବ — ଦାତା

| | ଟଙ୍କା | | ଟଙ୍କା |
|---|---|---|---|
| ଘୌଥ ଉଦ୍ଯୋଗ ହିସାବ ବାବଦ | ୧,୨୧୦ | ଘୌଥ ବ୍ୟାଙ୍କ୍ ହିସାବ ବାବଦ | ୮,୦୦୦ |
| ଘୌଥ ବ୍ୟାଙ୍କ୍ ହିସାବ ବାବଦ | ୧୧,୨୩୦ | ଘୌଥ ଉଦ୍ଯୋଗ ହିସାବ ବାବଦ | ୪,୪୪୦ |
| | ୧୨,୪୪୦ | | ୧୨,୪୪୦ |

ଦାସ୍ତୀ — ଘୌଥ ବ୍ୟାଙ୍କ୍ ହିସାବ — ଦାତା

| | ଟଙ୍କା | | ଟଙ୍କା |
|---|---|---|---|
| ସୁବାସଙ୍କ ହିସାବ ବାବଦ | ୮,୦୦୦ | ଘୌଥ ଉଦଯୋଗ ହିସାବ ବାବଦ | ୧୦,୦୦୦ |
| ଶ୍ରୀକାନ୍ତଙ୍କ ହିସାବ ବାବଦ | ୪,୦୦୦ | ଘୌଥ ଉଦ୍ଯୋଗ ହିସାବ ବାବଦ | ୮୦୦ |
| ଘୌଥ ଉଦ୍ଯୋଗ ହିସାବ ବାବଦ | ୧୬,୪୦୦ | ଘୌଥ ଉଦ୍ଯୋଗ ହିସାବ ବାବଦ | ୧୫୦ |
| | | ସୁବାସଙ୍କ ହିସାବ ବାବଦ | ୧୧,୨୩୦ |
| | | ଶ୍ରୀକାନ୍ତଙ୍କ ହିସାବ ବାବଦ | ୬,୨୨୦ |
| | ୨୮,୪୦୦ | | ୨୮,୪୦୦ |

ବିଶେଷ ଦ୍ରଷ୍ଟବ୍ୟ :

(କ) ଏହି ଦୃଷ୍ଟାନ୍ତରେ ଏହା ଦ୍ରଷ୍ଟବ୍ୟ ଯେ ସାଧାରଣ ବ୍ୟବସାୟରେ ଯେଉଁ ବିଷୟଗୁଡ଼ିକ ମୋଟ ଓ ନିଟ୍ ଲାଭ-କ୍ଷତି ହିସାବରେ ଅନ୍ତର୍ଭୁକ୍ତ ହୋଇ ଥାଆନ୍ତି କେବଳ ସେହି ବିଷୟଗୁଡ଼ିକୁ ନେଇ ଯୌଥ ଉଦ୍‌ଯୋଗ ହିସାବ ଗଠିତ ହୋଇଛି । ତେଣୁ ଏହା ସ୍ୱାଭାବିକ ଯେ ଏହି ହିସାବ କାରବାର ଶେଷରେ ଲାଭ ଅଥବା କ୍ଷତି ଦର୍ଶାଇବ ।

(ଖ) ଯୌଥ ବ୍ୟାଙ୍କ୍ ହିସାବର ନାମ କେବଳ ବ୍ୟାଙ୍କ୍ ହିସାବ ରଖା ଯାଇପାରେ, ଯଦି ପ୍ରକୃତରେ କୌଣସି ବ୍ୟାଙ୍କ୍ ହିସାବ ଖୋଲା ନ ଯାଇ ସମସ୍ତ ନେଣଦେଣ ନଗଦ ତହବିଲରେ ସଂଘଟିତ ହୁଏ, ତାହା ହେଲେ ବ୍ୟାଙ୍କ୍ ହିସାବ ପରିବର୍ତ୍ତେ ରୋକଡ଼ ବହି ବା ନଗଦ ତହବିଲ ହିସାବ ଖୋଲିବା ଯଥାର୍ଥ ହେବ ।

(ଗ) ଅଂଶ ଗ୍ରହଣକାରୀମାନଙ୍କର ବ୍ୟକ୍ତିକ ହିସାବକୁ ସେମାନଙ୍କର ମୂଳଧନ ହିସାବ ମଧ୍ୟ କୁହାଯାଇପାରେ ।

## ଦୃଷ୍ଟାନ୍ତ (୧୧)

କ ଓ ଖ ଗୋଟିଏ ପକ୍ଷ ସରକାରଠାରୁ ୫୦,୦୦୦ ଟଙ୍କା ମୂଲ୍ୟରେ ଗୋଟିଏ ଅଟ୍ଟାଳିକା ନିର୍ମାଣ କରିବା ନିମନ୍ତେ ମିଳିତ ଭାବରେ ଚୁକ୍ତିବଦ୍ଧ ହେଲେ । ଏହି ମୂଲ୍ୟ ସେମାନେ ୪୦,୦୦୦ ଟଙ୍କା ନଗଦ ଆକାରରେ ଓ ଗୋଟିଏ କମ୍ପାନୀର ପୂର୍ଣ୍ଣ ଅର୍ଥ ପ୍ରଦତ୍ତ ୧୦,୦୦୦ ଟଙ୍କା ମୂଲ୍ୟର ଅଂଶ ପତ୍ର ରୂପେ ପାଇବେ । ଉଭୟଙ୍କ ନାମରେ ଏକ ଯୌଥ ବ୍ୟାଙ୍କ୍ ହିସାବ ଖୋଲାଗଲା । ଏହି ହିସାବ ବାବଦ କ ୧୨,୫୦୦ ଟଙ୍କା ଓ ଖ ୭,୫୦୦ ଟଙ୍କା ଦେଲେ । ସେମାନେ ଲାଭ-କ୍ଷତି ୨:୧ ଅନୁପାତରେ ଭୋଗ କରିବେ ।

ଯୌଥ ଉଦ୍‌ଯୋଗ ବ୍ୟବସାୟରେ ନିମ୍ନଲିଖିତ ନେଣଦେଣ ସଂଘଟିତ ହୋଇଥିଲା :

| | ଟଙ୍କା |
|---|---|
| ପ୍ରଦତ୍ତ ମଜୁରି | ୧୫,୦୦୦ |
| କ୍ରୀତ ସାମଗ୍ରୀ | ୩୫,୦୦୦ |
| କ ନିଜ ଗୋଦାମରୁ ସାମଗ୍ରୀ ଯୋଗାଇଲେ | ୨,୫୦୦ |
| ଖ ନିଜ ଗୋଦାମରୁ ସାମଗ୍ରୀ ଯୋଗାଇଲେ | ୨,୦୦୦ |

ସ୍ଥପତିଙ୍କର ଫିସ୍ ବାବଦ କ ୧,୦୦୦ ଟଙ୍କା ଦେଲେ ।

ଚୁକ୍ତି ଯଥାଯଥ ଭାବରେ ସମ୍ପାଦିତ ହୋଇଥିଲା ଏବଂ ଚୁକ୍ତି ମୂଲ୍ୟ ବାବଦ ସମସ୍ତ ଟଙ୍କା ମିଳିଥିଲା । ଯୌଥ ଉଦ୍‌ଯୋଗ ହିସାବ ବନ୍ଦ କରିବା ଉଦ୍ଦେଶ୍ୟରେ କ ଚୁକ୍ତି ମୂଲ୍ୟ ବାବଦ ସମସ୍ତ ଅଂଶ ପତ୍ରକୁ ୮,୦୦୦ ଟଙ୍କା ମୂଲ୍ୟରେ ଗ୍ରହଣ କଲେ ଓ ଖ ଅବ୍ୟବହୃତ ଅବଶିଷ୍ଟ ସମସ୍ତ ସାମଗ୍ରୀ ୧,୫୦୦ ଟଙ୍କା ମୂଲ୍ୟରେ ଗ୍ରହଣ କଲେ ।

ଯୌଥ ବ୍ୟାଙ୍କ୍ ହିସାବ ଓ ଯୌଥ ଉଦ୍‌ଯୋଗ ହିସାବ ପ୍ରସ୍ତୁତ କର ଓ କ ଓ ଖ କେତେ ପରିମାଣରେ ଲାଭ ବାଣ୍ଟି ନେଲେ ତାହା ଦର୍ଶାଅ । କ ଓ ଖ ଙ୍କର ବ୍ୟକ୍ତିକ ହିସାବ ପ୍ରସ୍ତୁତ କର ଏବଂ ସେମାନେ ଅବଶେଷରେ କେତେ ପରିମାଣର ନଗଦ ଅର୍ଥ ବାଣ୍ଟିନେଲେ ତାହା ଦର୍ଶାଅ ।

## ସମାଧାନ :

## ଯୌଥ ଉଦ୍‌ଯୋଗ ହିସାବ ବହିରେ

ଦାୟୀ — ଯୌଥ ବ୍ୟାଙ୍କ୍ ହିସାବ — ଦାତା

| | ଟଙ୍କା | | | ଟଙ୍କା |
|---|---|---|---|---|
| କ ଙ୍କର ହିସାବ ବାବଦ | ୧୨,୫୦୦ | ଯୌଥ ଉଦ୍‌ଯୋଗ ବାବଦ | ଟଙ୍କା | |
| ଖ ଙ୍କର ହିସାବ ବାବଦ | ୭,୫୦୦ | ମଜୁରି | ୧୫,୦୦୦ | |
| ଯୌଥ ଉଦ୍‌ଯୋଗ ହିସାବ ବାବଦ (ଆଂଶିକ ଚୁକ୍ତି ମୂଲ୍ୟ) | ୪୦,୦୦୦ | କ୍ରୀତ ସାମଗ୍ରୀ | ୩୫,୦୦୦ | ୫୦,୦୦୦ |
| | | କ ଙ୍କର ହିସାବ ବାବଦ (ଚୂଡ଼ାନ୍ତ ସଂଶୋଧନ) | | ୪,୦୦୦ |
| | | ଖ ଙ୍କର ହିସାବ ବାବଦ (ଚୂଡ଼ାନ୍ତ ସଂଶୋଧନ) | | ୬,୦୦୦ |
| | ୬୦,୦୦୦ | | | ୬୦,୦୦୦ |

## ଯୌଥ ଉଦ୍‌ଯୋଗ ହିସାବ

ଦାୟୀ | ଦାତା

| | ଟଙ୍କା | | ଟଙ୍କା |
|---|---|---|---|
| ଯୌଥ ବ୍ୟାଙ୍କ ହିସାବ ବାବଦ<br>ଟଙ୍କା<br>ମଜୁରି ୧୫,୦୦୦<br>ଝୀଡ଼ି ସାମଗ୍ରୀ ୩୫,୦୦୦ | ୫୦,୦୦୦ | ଯୌଥ ବ୍ୟାଙ୍କ ହିସାବ ବାବଦ ( ଆଂଶିକ ଚୁକ୍ତି ମୂଲ୍ୟ ) | ୪୦,୦୦୦ |
| କ ଙ୍କର ହିସାବ ବାବଦ ( ଯୋଗାଇ ଥିବା ସାମଗ୍ରୀ ) | ୨,୫୦୦ | ସସୀମ କମ୍ପାନିର ଅଂଶ ପତ୍ର ହିସାବ ବାବଦ (ଅବଶିଷ୍ଟ ଚୁକ୍ତି ମୂଲ୍ୟ) | ୧୦,୦୦୦ |
| ଖ ଙ୍କର ହିସାବ ବାବଦ ( ଯୋଗାଇଥିବ ସାମଗ୍ରୀ ) | ୨,୦୦୦ | ଖ ଙ୍କର ହିସାବ ବାବଦ ( ନେଇଥିବା ସାମଗ୍ରୀ ବାବଦ | ୧,୫୦୦ |
| କ ଙ୍କର ହିସାବ ବାବଦ (ସ୍ଥପତିଙ୍କର ଫିସ୍ ) | ୧,୦୦୦ | ଲାଭ ଖତ--ସ୍ଥାନାନ୍ତରିତ<br>ଟଙ୍କା<br>କ ଙ୍କର ହିସାବ ୪,୦୦୦<br>( ୨/୩ ଅଂଶ )<br>ଖ ଙ୍କର ହିସାବ ୨,୦୦୦<br>( ୧/୩ ଅଂଶ ) | ୬,୦୦୦ |
| ସସୀମ କମ୍ପାନି ଅଂଶ ପତ୍ର ହିସାବ ବାବଦ ( ମୂଲ୍ୟ ହ୍ରାସ ) | ୨,୦୦୦ | | |
| | ୫୭,୫୦୦ | | ୫୭,୫୦୦ |

## କ ଙ୍କର ହିସାବ

ଦାୟୀ | ଦାତା

| | ଟଙ୍କା | | ଟଙ୍କା |
|---|---|---|---|
| ସସୀମ କମ୍ପାନିର ଅଂଶ ପତ୍ର ହିସାବ ବାବଦ ( ନିଆ ଯାଇଥିବା ଅଂଶ ପତ୍ର ) | ୮,୦୦୦ | ଯୌଥ ବ୍ୟାଙ୍କ ହିସାବ ବାବଦ | ୧୨,୫୦୦ |
| ଯୌଥ ଉଦ୍‌ଯୋଗ ହିସାବ ବାବଦ (ଲାଭର ୨/୩ ଅଂଶ) | ୪,୦୦୦ | ଯୌଥ ଉଦ୍‌ଯୋଗ ହିସାବ ବାବଦ | ୨,୫୦୦ |
| ଯୌଥ ବ୍ୟାଙ୍କ ହିସାବ ବାବଦ (ଚୂଡ଼ାନ୍ତ ସଂଶୋଧନ) | ୪,୦୦୦ | ଯୌଥ ଉଦ୍‌ଯୋଗ ହିସାବ ବାବଦ | ୧,୦୦୦ |
| | ୧୬,୦୦୦ | | ୧୬,୦୦୦ |

ଦାବୀ — ଖ ଙ୍କର ହିସାବ — ଦାତା

| | ଟଙ୍କା | | ଟଙ୍କା |
|---|---|---|---|
| ଯୌଥ ଉଦ୍ୟୋଗ ହିସାବ ବାବଦ (ନିଆଯାଇଥିବା ସାମଗ୍ରୀ) | ୧,୫୦୦ | ଯୌଥ ବ୍ୟାଙ୍କ ହିଃ ବାବଦ | ୭,୫୦୦ |
| ଯୌଥ ଉଦ୍ୟୋଗ ହିସାବ ବାବଦ (ଲାଭର ୧/୩ ଅଂଶ) | ୨,୦୦୦ | ଯୌଥ ଉଦ୍ୟୋଗ ହିସାବ ବାବଦ | ୨,୦୦୦ |
| ଯୌଥ ବ୍ୟାଙ୍କ ହିସାବ ବାଃ (ଚୂଡ଼ାନ୍ତ ପରିଶୋଧନ) | ୬,୦୦୦ | | |
| | ୯,୫୦୦ | | ୯,୫୦୦ |

ଦାବୀ — ସସୀମ କମ୍ପାନୀର ଅଂଶ ପତ୍ର ହିସାବ — ଦାତା

| | ଟଙ୍କା | | ଟଙ୍କା |
|---|---|---|---|
| ଯୌଥ ଉଦ୍ୟୋଗ ହିସାବ ବାବଦ | ୧୦,୦୦୦ | ଭ ଙ୍କର ହିଃ ବାଃ | ୮,୦୦୦ |
| | | ଯୌଥ ଉଦ୍ୟୋଗ ହିସାବ ବାବଦ —ଲାଭ ସ୍ଥାନାନ୍ତରିତ ହେଲା | ୨,୦୦୦ |
| | ୧୦,୦୦୦ | | ୧୦,୦୦୦ |

ଯଦିଓ ଉଦ୍ୟୋଗ ସଂକ୍ରାନ୍ତ ଯାବତୀୟ ନେଣଦେଣ ଉଦ୍ୟୋଗ କାରବାର କରୁଥିବା ବ୍ୟବସାୟ ସ୍ଥଳରେ ରଖାଯାଇଥିବା ସ୍ୱତନ୍ତ୍ର ହିସ ବହିଗୁଡ଼ିକରେ ଲିପିବଦ୍ଧ କରାଯାଏ ତଥାପି ଉଦ୍ୟୋଗୀମାନେ ନିଜସ୍ୱ ହିସାବ ବହିରେ ଉଦ୍ୟୋଗ ସଂକ୍ରାନ୍ତ ସମସ୍ତ ନେଣଦେଣ ଲିପିବଦ୍ଧ କରିପାରନ୍ତି । ଏପରି କରାଗଲେ ଉଦ୍ୟୋଗୀ ନିଜସ୍ୱ ହିସାବ ବହିରେ 'ଯୌଥ ଉଦ୍ୟୋଗ ବିନିଯୋଗ ହିସାବ' ନାମକ ଏକ ହିସାବ ଖୋଲନ୍ତି ଓ ଏହି ହିସାବରେ ଉଦ୍ୟୋଗ ସଂକ୍ରାନ୍ତ ଯାବତୀୟ ନେଣଦେଣ ଲିପିବଦ୍ଧ କରନ୍ତି । ଉପରୋକ୍ତ ଦୃଷ୍ଟାନ୍ତର ନେଣଦେଣଗୁଡ଼ିକ ଯୌଥ ଉଦ୍ୟୋଗ ବିନିଯୋଗ ହିସାବରେ କିପରି ଲିପିବଦ୍ଧ କରାଯିବ ତାହା ନିମ୍ନରେ ପ୍ରଦତ୍ତ ହେଲା ।

## ଦୃଷ୍ଟାନ୍ତ

ଦୃଷ୍ଟାନ୍ତ (୧୧) ରେ ଲିପିବଦ୍ଧ ହୋଇଥିବା । ନେଣଦେଣଗୁଡ଼ିକ କ ଓ ଖ ଙ୍କ ଦ୍ୱାରା ଖୋଲା ଯାଇଥିବା ଯୌଥ ଉଦ୍ୟୋଗ ବିନିଯୋଗ ହିସାବରେ କିପରି ଲିପିବଦ୍ଧ କରାଯିବ ତାହା ଦର୍ଶାଅ ।

**ସମାଧାନ :**

କ ଙ୍କର ହିସାବ ବହିରେ
ଯୌଥ ଉଦ୍ୟୋଗ ବିନିଯୋଗ ହିସାବ

| ଦାୟୀ | ଟଙ୍କା | | ଦାତା ଟଙ୍କା |
|---|---|---|---|
| ବ୍ୟାଙ୍କ୍ ହିସାବ ବାବଦ | ୧୨,୫୦୦ | କମ୍ପାନୀ ଅଂଶ ପତ୍ର ହିସାବ ବାବଦ | ୮,୦୦୦ |
| ନଗଦ ହିସାବ ବାବଦ (ଯୋଗାଇଥିବା ସାମଗ୍ରୀ ସବାଣେ) | ୨,୫୦୦ | ବ୍ୟାଙ୍କ ହିଃ ବାବଦ | ୪,୦୦୦ |
| ବ୍ୟାଙ୍କ ହିସାବ ବାବଦ (ସ୍ଥପତିଙ୍କର ଫିସ) | ୧,୦୦୦ | ଲାଭ-କ୍ଷତି ହିଃ ବାଃ- (ଯୌଥ ଉଦ୍ୟୋଗ ଲାଭ) | ୪,୦୦୦ |
| | ୧୬,୦୦୦ | | ୧୬,୦୦୦ |

ସସୀମ କମ୍ପାନୀର ଅଂଶ ପତ୍ର ହିସାବ

| ଦାୟୀ | ଟଙ୍କା | | ଦାତା ଟଙ୍କା |
|---|---|---|---|
| ଯୌଥ ଉଦ୍ୟୋଗ ବିନିଯୋଗ ହିଃ ବାବଦ | ୮,୦୦୦ | | |

ଖ ଙ୍କର ହିସାବ ବହିରେ

ଯୌଥ ଉଦ୍‌ଯୋଗ ବନ୍‌ଯୋଗ ହିସାବ

| ଦାକ୍ତା | | ଟଙ୍କା | ପାଉଣା | | ଟଙ୍କା |
|---|---|---|---|---|---|
| ବ୍ୟାଙ୍କ୍ ହିସାବ ବାବଦ | | ୨,୫୦୦ | ଜନ୍ସ ହିସାବ ବାବଦ (ନେଇଥିବା ସାମଗ୍ରୀ ସକାଶେ) | | ୧,୫୦୦ |
| ଜନ୍ସ ହିସାବ ବାବଦ ଯୋଗାଇଥିବା ସାମଗ୍ରୀ ସକାଶେ) | | ୨,୦୦୦ | ବ୍ୟାଙ୍କ ହି: ବାବଦ | | ୨,୦୦୦ |
| | | | ଲାଭ-କ୍ଷତି ହିସାବ-ବାବଦ (ଯୌଥ ଉଦ୍‌ଯୋଗ କ୍ଷତି) | | ୨,୦୦୦ |
| | | ୯,୫୦୦ | | | ୯,୫୦୦ |

## ୨ । ଯେଉଁ ସମସ୍ତ କ୍ଷେତ୍ରରେ ହିସାବ ବହି ରଖାଯାଏ ନାହିଁ

ଯେଉଁ ଯୌଥ ଉଦ୍‌ଯୋଗ କାରବାରରେ ବ୍ୟବସାୟ ଷ୍ଥଳୀରେ ସ୍ୱତନ୍ତ୍ର ହିସାବ ବହି ରଖାଯାଏ ନାହିଁ ସେ କ୍ଷେତ୍ରରେ ଏହି ବ୍ୟବସାୟର ଅଂଶ ଗ୍ରହଣ-କାରୀମାନେ ନିଜ ହିସାବ ବହିରେ ଯୌଥ ଉଦ୍‌ଯୋଗ ସମ୍ପର୍କୀୟ ଯାବତୀୟ କାରବାର ଲିପିବଦ୍ଧ କରନ୍ତି । ବଭିନ୍ନ ନେଣଦେଣ ଗୁଡ଼ିକ ଲିପିବଦ୍ଧ କରିବା ସକାଶେ ଅନ୍ୟାନ୍ୟ ବ୍ୟବସାୟରେ ଯେପରି ଜାବ୍‌ଦା ଓ ଖତିୟାନ ହିସାବ ବ୍ୟବହୃତ ହୁଏ ଏଠାରେ ମଧ୍ୟ ସେହିପରି କରାଯାଏ । ଜାବ୍‌ଦା, ନଗଦ ତହବିଲ/ ବ୍ୟାଙ୍କ ହିସାବ ବ୍ୟତୀତ ପ୍ରତି ଅଂଶଗ୍ରହଣକାରୀ ଯୌଥ ଉଦ୍‌ଯୋଗ ହିସାବ ଓ ସହ-ଉଦ୍‌ଯୋଗୀଙ୍କର ବ୍ୟକ୍ତିକ ହିସାବ ଖୋଲନ୍ତି । ନେଣଦେଣଗୁଡ଼ିକ ଏହି ହିସାବଗୁଡ଼ିକରେ କପରି ଲିପିବଦ୍ଧ କରାଯାଏ ତାହା ନିମ୍ନଲିଖିତ ଦୃଷ୍ଟାନ୍ତରୁ ବୁଝାଯିବ ।

### ଦୃଷ୍ଟାନ୍ତ (୧୨)

ରାଧାକାନ୍ତ ଓ କମଳାକାନ୍ତ ଗୋଟିଏ ଯୌଥ ଉଦ୍‌ଯୋଗ ବ୍ୟବସାୟ ଆରମ୍ଭ କଲେ । ସେମାନେ ସମାନ ଅଂଶରେ ଲାଭ ଓ କ୍ଷତି ବାଣ୍ଟି ନେବା ପାଇଁ ସ୍ୱୀକୃତ ହେଲେ । ଯୌଥ ବ୍ୟବସାୟକୁ ରାଧାକାନ୍ତ ୮,୦୦୦ ଟଙ୍କା ଓ କମଳା-କାନ୍ତ ୬,୦୦୦ ଟଙ୍କା ମୂଲ୍ୟର ପଣ୍ୟ ଯୋଗାଇଲେ । ପରିବହନ ପ୍ରଭୃତି ଆନୁଷଙ୍ଗିକ ଖର୍ଚ୍ଚ ବାବଦ ରାଧାକାନ୍ତ ୧୮୦ ଟଙ୍କା ଓ କମଳାକାନ୍ତ ୧୬୦ ଟଙ୍କା ବ୍ୟୟ କଲେ ।

ଯୌଥ ଉଦ୍ୟୋଗ ବାବଦ ରାଧାକାନ୍ତ ୮,୦୦୦ ଟଙ୍କା ଓ କମଳାକାନ୍ତ ୧୦,୦୦୦ ଟଙ୍କାର ପଣ୍ୟ କ୍ରୟ କଲେ । ପ୍ରତ୍ୟେକେ ତାଙ୍କର ପାରିଶ୍ରମିକ ସ୍ୱରୂପ ବିକ୍ରୟ ଲବ୍ଧ ଅର୍ଥ ଉପରେ ଶତକଡ଼ା ୫ ହାରରେ କମିଶନ ପାଇବେ । ୭୦୦ ଟଙ୍କାର ପଣ୍ୟ ଅବିକ୍ରୀତ ରହିଲା ଓ ଉଭୟ ତାହାକୁ ଲାଭ ବଣ୍ଟନ ଅନୁପାତରେ ଭାଗ କରିନେଲେ ।

ରାଧାକାନ୍ତ ଓ କମଳାକାନ୍ତଙ୍କ ବହିରେ ଉପରୋକ୍ତ କାରବାର ସକାଶେ ଜା.ବ୍ଦା ଓ ଆବଶ୍ୟକ ଖତିୟାନ ହିସାବ ପ୍ରସ୍ତୁତ କର । ମନେକର ଯେ ଉଭୟ ଉଦ୍‌ଯୋଗୀ ପରସ୍ପରଙ୍କର ହିସାବ ନିକାଶ କଲେ ଏବଂ ପ୍ରାପ୍ୟ ଟଙ୍କାର ପରିମାଣ ସକାଶେ ଜଣେ ଅନ୍ୟଜଣଙ୍କ ଉପରେ ୧ମାସ ମିଆଦରେ ପ୍ରସ୍ତୁତ ହୋଇଥିବା ହୁଣ୍ଡି କାଟିଲେ ।

## ସମାଧାନ :

ରାଧାକାନ୍ତଙ୍କ ହିସାବ ବହିରେ

ଜାବ୍‌ଦା

| | | | ଦାୟୀ | ଦାତା |
|---|---|---|---|---|
| | | | ଟଙ୍କା | ଟଙ୍କା |
| (୧) | ଯୌଥ ଉଦ୍‌ଯୋଗ ହିସାବ ଦାୟୀ<br>ଯୌଥ ଉଦ୍‌ଯୋଗକୁ ପ୍ରେରିତ ପଣ୍ୟ ହିସାବ ବାବଦ<br>(ଯୌଥ ଉଦ୍‌ଯୋଗକୁ ପ୍ରେରିତ ପଣ୍ୟ ସକାଶେ) | | ୮,୦୦୦ | ୮,୦୦୦ |
| (୨) | ଯୌଥ ଉଦ୍ୟୋଗ ହିସାବ ଦାୟୀ<br>ନଗଦ୍ ତହବିଲ ବ୍ୟାଙ୍କ ହିସାବ ବାବଦ<br>(ପଣ୍ୟ ଯୋଗାଇବାର ଆନୁଷଙ୍ଗିକ ବ୍ୟୟ ସକାଶେ ) | | ୧୮୦ | ୧୮୦ |
| (୩) | ଯୌଥ ଉଦ୍ୟୋଗ ହିସାବ ଦାୟୀ<br>କମଳାକାନ୍ତଙ୍କ ହିସାବ ବାବଦ<br>କମଳାକାନ୍ତ ଯୌଥ ଉଦ୍ୟୋଗକୁ<br>(ଯୋଗାଇଥିବା ପଣ୍ୟର ମୂଲ୍ୟ ସକାଶେ) | | ୭,୦୦୦ | ୭,୦୦୦ |

| | | ଦାୟୀ | ଦାତା |
|---|---|---|---|
| | | ଟଙ୍କା | ଟଙ୍କା |
| (୪) | ଯୌଥ ଉଦ୍‌ଯୋଗ ହିସାବ ଦାୟୀ<br>କମଳାକାନ୍ତଙ୍କ ହିସାବ ବାବଦ<br>(କମଳାକାନ୍ତ ପଣ୍ୟ ପ୍ରେରଣ କରିବା ସମୟରେ ବ୍ୟୟ କରିଥିବା ଆନୁଷଙ୍ଗିକ ଖର୍ଚ୍ଚ ସକାଶେ) | ୧୬୦ | ୧୬୦ |
| (୫) | ନଗଦ ତହବିଲ/ବ୍ୟାଙ୍କ ହିସାବ ଦାୟୀ<br>ଯୌଥ ଉଦ୍‌ଯୋଗ ହିସାବ ବାବଦ<br>(ପଣ୍ୟ ବିକ୍ରୟ ଲବ୍‌ଧ ଅର୍ଥ ସକାଶେ) | ୧୨,୦୦୦ | ୧୨,୦୦୦ |
| (୬) | କମଳାକାନ୍ତଙ୍କ ହିସାବ ଦାୟୀ<br>ଯୌଥ ଉଦ୍‌ଯୋଗ ହିସାବ ବାବଦ<br>(କମଳାକାନ୍ତ ବିକ୍ରୟ କରିଥିବା ଯୌଥ ଉଦ୍‌ଯୋଗ ପଣ୍ୟର ବିକ୍ରୟଲବ୍‌ଧ ଅର୍ଥ ସକାଶେ ) | ୧୦,୦୦୦ | ୧୦,୦୦୦ |
| (୭) | ଯୌଥ ଉଦ୍‌ଯୋଗ ହିସାବ ଦାୟୀ<br>କମିସନ୍ ହିସାବ ବାବଦ<br>(ବିକ୍ରୟ ଲବ୍‌ଧ ଅର୍ଥ ଉପରେ ୫% ହାରରେ ପ୍ରାପ୍ୟ କମିଶନ ସକାଶେ) | ୬୦୦ | ୬୦୦ |
| (୮) | ଯୌଥ ଉଦ୍‌ଯୋଗ ହିସାବ ଦାୟୀ<br>କମଳାକାନ୍ତଙ୍କ ହିସାବ ବାବଦ<br>( କମଳାକାନ୍ତ ଯୌଥ ଉଦ୍‌ଯୋଗ ପଣ୍ୟ ବିକ୍ରୟ କରିଥିବା ହେତୁ ବିକ୍ରୟ ଲବ୍‌ଧ ଅର୍ଥ ଉପରେ ୫% ହାରରେ ପ୍ରାପ୍ୟ କମିଶନ ସକାଶେ ) | ୫୦୦ | ୫୦୦ |

| | | ଦାୟୀ | ଦାତା |
|---|---|---|---|
| | | ଟଙ୍କା | ଟଙ୍କା |
| (୯) | କ୍ରୟ ହିସାବ ଦାୟୀ<br>ଯୌଥ ଉଦ୍ୟୋଗ ହିସାବ ବାବଦ<br>(ଅବିକ୍ରୀତ ପଣ୍ୟର ୧/୨ ଅଂଶ କ୍ରୟ କରିଥିବା ପ୍ରକାଶେ) | ୩୦୦ | ୩୦୦ |
| (୧୦) | (କମଳାକାନ୍ତଙ୍କ ହିସାବ ଦାୟୀ<br>ଯୌଥ ଉଦ୍ୟୋଗ ହିସାବ ବାବଦ<br>କମଳାକାନ୍ତ କ୍ରୟ କରିଥିବା ଯୌଥ ଉଦ୍ୟୋଗର ଅବିକ୍ରୀତ ପଣ୍ୟର ୧/୨ ଅଂଶ ପ୍ରକାଶେ) | ୩୦୦ | ୩୦୦ |
| (୧୧) | ଯୌଥ ଉଦ୍ୟୋଗ ହିସାବ ଦାୟୀ<br>ନିଟ୍ ଲାଭ-କ୍ଷତି ହିସାବ ବାବଦ<br>କମଳାକାନ୍ତଙ୍କ ହିଃ ବାବଦ<br>(ଯୌଥ ଉଦ୍ୟୋଗର ନିଟ୍ ଲାଭ ଉଦ୍ୟୋଗୀମାନେ ସମାନ ଅଂଶରେ ଭାଗ କରିନେଲେ) | ୭,୧୬୦ | ୩,୫୮୦<br>୩,୫୮୦ |
| (୧୨) | ପ୍ରାପ୍ୟ ହୁଣ୍ଡି ହିସାବ ଦାୟୀ<br>କମଳାକାନ୍ତଙ୍କ ହିସାବ ବାବଦ<br>(ଯୌଥ ଉଦ୍ୟୋଗ ହିସାବ ନିକାଶ କରିବା ପାଇଁ କମଳାକାନ୍ତ ହୁଣ୍ଡି ସ୍ୱୀକାର କଲେ) | ୬୦ | ୬୦ |
| (୧୩) | ଯୌଥ ଉଦ୍ୟୋଗକୁ ପ୍ରେରିତ ପଣ୍ୟ ହିସାବ ଦାୟୀ<br>ସ୍ଥୂଳ ଲାଭ-କ୍ଷତି ହିସାବ ବାବଦ—ସ୍ଥାନାନ୍ତରଣ<br>(ବର୍ଷ ଶେଷରେ ଯୌଥ ଉଦ୍ୟୋଗକୁ ପ୍ରେରିତ ପଣ୍ୟ ହିସାବର ବାକି ସ୍ଥୂଳ ଲାଭ-କ୍ଷତି ହିସାବକୁ ସ୍ଥାନାନ୍ତରିତ କରାଗଲା) | ୮,୦୦୦ | ୮,୦୦୦ |

## ରାଧାକାନ୍ତଙ୍କର ଖତିୟାନ

### ଦାସ୍ତୀ — ଯୌଥ ଉଦ୍ୟୋଗ ହିସାବ — ଦାତା

| ଦାସ୍ତୀ | ଟଙ୍କା | ଦାତା | ଟଙ୍କା |
|---|---|---|---|
| ଯୌଥ ଉଦ୍ୟୋଗକୁ ପ୍ରେରିତ ପଣ୍ୟ ହିଃ ବାବଦ | ୮,୦୦୦ | ନଗଦ ତହବିଲ/ବ୍ୟାଙ୍କ୍ ହିଃ ବାବଦ | ୧୨,୦୦୦ |
| ନଗଦ ତହବିଲ/ବ୍ୟାଙ୍କ ହି: ବାବଦ | ୧୮୦ | କମଳାକାନ୍ତଙ୍କ ହିଃ ବାବଦ | ୧୦,୦୦୦ |
| କମଳାକାନ୍ତଙ୍କ ହି: ବାବଦ | ୬,୦୦୦ | କ୍ରୟ ହିସାବ ବାବଦ | ୩୦୦ |
| କମଳାକାନ୍ତଙ୍କ ହି: ବାବଦ | ୧୬୦ | କମଳାକାନ୍ତଙ୍କ ହିଃ ବାବଦ | ୩୦୦ |
| କମିଶନ ହିସାବ ବାବଦ | ୬୦୦ | | |
| କମଳାକାନ୍ତଙ୍କ ହି: ବାବଦ | ୫୦୦ | | |
| ଶୁଦ୍ଧ ଲାଭ-କ୍ଷତି ହି: ବାବଦ | ୩୫୮୦ | | |
| କମଳାକାନ୍ତଙ୍କ ହି: ବାବଦ | ୩୫୮୦ | | |
| | ୨୨,୬୦୦ | | ୨୨,୬୦୦ |

### ଦାସ୍ତୀ — କମଳାକାନ୍ତଙ୍କ ହିସାବ — ଦାତା

| ଦାସ୍ତୀ | ଟଙ୍କା | ଦାତା | ଟଙ୍କା |
|---|---|---|---|
| ଯୌଥ ଉଦ୍ୟୋଗ ହିସାବ ବାବଦ | ୧୦,୦୦୦ | ଯୌଥ ଉଦ୍ୟୋଗ ହିସାବ ବାବଦ | ୬,୦୦୦ |
| ଯୌଥ ଉଦ୍ୟୋଗ ହିସାବ ବାବଦ | ୩୦୦ | ଯୌଥ ଉଦ୍ୟୋଗ ହିସାବ ବାବଦ | ୧୬୦ |
| | | ଯୌଥ ଉଦ୍ୟୋଗ ହିସାବ ବାବଦ | ୫୦୦ |
| | | ଯୌଥ ଉଦ୍ୟୋଗ ହିସାବ ବାଃ—ଲାଭ | ୩,୫୮୦ |
| | | ପାପ୍ୟ ହୁଣ୍ଡି ହିଃ ବାଃ | ୬୦ |
| | ୧୦,୩୦୦ | | ୧୦,୩୦୦ |

| ଦାୟୀ | ଯୌଥ ଉଦ୍ଯୋଗକୁ ପ୍ରେରିତ ପଣ୍ୟ ହିସାବ | | ଦାତା |
|---|---|---|---|
| | ଟଙ୍କା | | ଟଙ୍କା |
| ସୁଳ ଲଭ-କ୍ଷତି ହିସାବ ବାଃ-ସ୍ଥାନାନ୍ତରଣ | ୮,୦୦୦ | ଯୌଥ ଉଦ୍ଯୋଗ ହିସାବ ବାବଦ | ୮,୦୦୦ |

## କମଳାକାନ୍ତଙ୍କ ହିସାବ ବହିରେ

| ଜାବ୍ଦା | ଦାୟୀ | ଦାତା |
|---|---|---|
| | ଟଙ୍କା | ଟଙ୍କା |
| ଯୌଥ ଉଦ୍ଯୋଗ ହିସାବ ଦାୟୀ | ୬,୦୦୦ | |
| ଯୌଥ ଉଦ୍ଯୋଗକୁ ପ୍ରେରିତ ପଣ୍ୟ ହିସାବ ବାବଦ | | ୬,୦୦୦ |
| (ଯୌଥ ଉଦ୍ଯୋଗକୁ ପ୍ରେରିତ ପଣ୍ୟ ପ୍ରକାଶେ) | | |
| ଯୌଥ ଉଦ୍ଯୋଗ ହିସାବ ଦାୟୀ | ୧୬୦ | |
| ନଗଦ ତହବିଲ/ବ୍ୟାଙ୍କ ହିସାବ ବାବଦ | | ୧୬୦ |
| (ପ୍ରେରିତ ପଣ୍ୟର ଆନୁଷଙ୍ଗିକ ବ୍ୟୟ ପ୍ରକାଶେ) | | |
| ଯୌଥ ଉଦ୍ଯୋଗ ହିସାବ ଦାୟୀ | ୮,୦୦୦ | |
| ରାଧାକାନ୍ତଙ୍କ ହିସାବ ବାବଦ | | ୮୦୦୦ |
| (ରାଧାକାନ୍ତ ଯୌଥ ଉଦ୍ଯୋଗକୁ ପ୍ରେରଣ କରିଥିବା ପଣ୍ୟର ମୂଲ୍ୟ ପ୍ରକାଶେ) | | |
| ଯୌଥ ଉଦ୍ଯୋଗ ହିସାବ ଦାୟୀ | ୧୮୦ | |
| ରାଧାକାନ୍ତଙ୍କ ହିସାବ ବାବଦ | | ୧୮୦ |
| (ପଣ୍ୟ ପ୍ରେରଣ କରିବା ବାବଦ ରାଧାକାନ୍ତ ଆନୁଷଙ୍ଗିକ ବ୍ୟୟ କଲେ) | | |
| ନଗଦ ତହବିଲ/ବ୍ୟାଙ୍କ ହିସାବ ଦାୟୀ | ୧୦,୦୦୦ | |
| ଯୌଥ ଉଦ୍ଯୋଗ ହିସାବ ବାବଦ | | ୧୦,୦୦୦ |
| (ଯୌଥ ଉଦ୍ଯୋଗ ପଣ୍ୟର ବିକ୍ରୟ ଲବ୍ଧ ଅର୍ଥ ପ୍ରକାଶେ) | | |
| ରାଧାକାନ୍ତଙ୍କ ହିସାବ ଦାୟୀ | ୧୨,୦୦୦ | |
| ଯୌଥ ଉଦ୍ଯୋଗ ହିସାବ ବାବଦ | | ୧୨,୦୦୦ |
| ରାଧାକାନ୍ତ ବିକ୍ରୟ କରିଥିବା ଯୌଥ ଉଦ୍ଯୋଗ ପଣ୍ୟର ମୂଲ୍ୟ ପ୍ରକାଶେ | | |

| | ଦାୟୀ | ଦାତା |
|---|---|---|
| | ଟଙ୍କା | |
| ଯୌଥ ଉଦ୍‌ଯୋଗ ହିସାବ ଦାୟୀ<br>କମିସନ ହିସାବ ବାବଦ<br>(ପଣ୍ୟର ବିକ୍ରୟ ଲବ୍ଧ ଅର୍ଥ ବାବଦ ୪% ହାରରେ କମିସନ ସକାଶେ) | ୪୦୦ | ୪୦୦ |
| ଯୌଥ ଉଦ୍‌ଯୋଗ ହିସାବ ଦାୟୀ<br>ରାଧାକାନ୍ତଙ୍କ ହିସାବ ବାବଦ<br>(ରାଧାକାନ୍ତ ବିକ୍ରୟ କରିଥିବା ପଣ୍ୟର ମୂଲ୍ୟ ବାବଦ ୬% ହାରରେ କମିସନ୍ ପାଇବେ) | ୬୦୦ | ୬୦୦ |
| କ୍ରୟ ହିସାବ ଦାୟୀ<br>ଯୌଥ ଉଦ୍‌ଯୋଗ ହିସାବ ବାବଦ<br>(ଅବିକ୍ରୀତ ଯୌଥ ଉଦ୍‌ଯୋଗ ପଣ୍ୟର ୧/୨ ଅଂଶ କ୍ରୟ କରାଗଲା) | ୩୦୦ | ୩୦୦ |
| ରାଧାକାନ୍ତଙ୍କ ହିସାବ ଦାୟୀ<br>ଯୌଥ ଉଦ୍‌ଯୋଗ ହିସାବ ବାବଦ<br>(ରାଧାକାନ୍ତ ଅବିକ୍ରୀତ ଯୌଥ ଉଦ୍‌ଯୋଗ ପଣ୍ୟର ୧/୨ ଅଂଶ କ୍ରୟ କଲେ) | ୩୦୦ | ୩୦୦ |
| ଯୌଥ ଉଦ୍‌ଯୋଗ ହିସାବ ଦାୟୀ<br>ନିଟ୍ ଲାଭ କ୍ଷତି ହିସାବ ବାବଦ<br>ରାଧାକାନ୍ତଙ୍କ ହିସାବ ବାବଦ<br>(ଯୌଥ ଉଦ୍‌ଯୋଗର ନିଟ୍ ଲାଭ ଉଭୟ ସମାନ ଅଂଶରେ ଭାଗ କରିଦେଲେ) | ୬,୯୬୦ | ୩,୪୮୦<br>୩,୪୮୦ |
| ରାଧାକାନ୍ତଙ୍କ ହିସାବ ଦାୟୀ<br>ଦେୟ ହୁଣ୍ଡି ହିସାବ ବାବଦ<br>(ହିସାବ ନିକାଶ କରିବା ସକାଶେ ରାଧାକାନ୍ତଙ୍କୁ ଦେୟ ପରିମାଣ ନିମନ୍ତେ ହୁଣ୍ଡି ସ୍ୱୀକାର କରାଗଲା) | ୬୦ | ୬୦ |
| ଯୌଥ ଉଦ୍‌ଯୋଗକୁ ପ୍ରେରିତ ପଣ୍ୟ ହିଃ ଦାୟୀ<br>ସ୍ଥୂଳ ଲାଭ-କ୍ଷତି ହିସାବ ବାବଦ<br>—ସ୍ଥାନାନ୍ତରଣ<br>(ଯୌଥ ଉଦ୍‌ଯୋଗକୁ ପ୍ରେରିତ ପଣ୍ୟ ହିସାବର ବାକି ସ୍ଥୂଳ ଲାଭ-କ୍ଷତି ହିସାବକୁ ସ୍ଥାନାନ୍ତରିତ କରାଗଲା) | ୬,୦୦୦ | ୬,୦୦୦ |

## କମଳା କାନ୍ତଙ୍କ ଖଡ଼ସ୍ଥାନ

### ରାଧାକାନ୍ତଙ୍କ ହିସାବ

ଦାୟୀ | ଦାତା

| | ଟଙ୍କା | | ଟଙ୍କା |
|---|---|---|---|
| ଯୌଥ ଉଦ୍ୟୋଗ ହିଃ ବାବଦ | ୧୨,୦୦୦ | ଯୌଥ ଉଦ୍ୟୋଗ ହିଃ ବାବଦ | ୮,୦୦୦ |
| ଯୌଥ ଉଦ୍ୟୋଗ ହିଃ ବାବଦ | ୩୦୦ | ଯୌଥ ଉଦ୍ୟୋଗ ହିଃ ବାବଦ | ୧୮୦ |
| ଦେୟ ହୁଣ୍ଡି ହିସାବ ବାବଦ | ୬୦ | ଯୌଥ ଉଦ୍ୟୋଗ ହିଃ ବାବଦ | ୬୦୦ |
| | | ଯୌଥ ଉଦ୍ୟୋଗ ହିଃ ବାବଦ | ୩,୫୮୦ |
| | ୧୨,୩୬୦ | | ୧୨,୩୬୦ |

### ଯୌଥ ଉଦ୍ୟୋଗ ହିସାବ

ଦାୟୀ | ଦାତା

| | ଟଙ୍କା | | ଟଙ୍କା |
|---|---|---|---|
| ଯୌଥ ଉଦ୍ୟୋଗକୁ ପ୍ରେରିତ ପଣ୍ୟ ହିଃ ବ.ବଦ | ୬,୦୦୦ | ନଗଦ ତହବିଲ/ବ୍ୟାଙ୍କ ହିଃ ବାବଦ | ୧୦,୦୦୦ |
| ନଗଦ ତହବିଲ/ବ୍ୟାଙ୍କ ହିଯାବ ବାବଦ | ୧୬୦ | ରାଧାକାନ୍ତଙ୍କ ହିଃ ବାବଦ | ୧୨,୦୦୦ |
| ରାଧାକାନ୍ତଙ୍କ ହିଃ ବାବଦ | ୮,୦୦୦ | ଜସ୍ତ ହିଃ ବାବଦ | ୩୦୦ |
| ରାଧାକାନ୍ତଙ୍କ ହିଃ ବାବଦ | ୧୮୦ | ରାଧାକାନ୍ତଙ୍କ ହିଃ ବାବଦ | ୩୦୦ |
| କମିସନ ହିସାବ ବାବଦ | ୫୦୦ | | |
| ରାଧାକାନ୍ତଙ୍କ ହିଃ ବାବଦ | ୬୦୦ | | |
| ନିଟ୍ ଲାଭ-କ୍ଷତି ହିଃ ବାବଦ | ୩,୫୮୦ | | |
| ରାଧାକାନ୍ତଙ୍କ ହିଃ ବାବଦ | ୩,୫୮୦ | | |
| | ୨୨,୬୦୦ | | ୨୨,୬୦୦ |

| ଦାୟୀ | ଯୌଥ ଉଦ୍‌ଯୋଗକୁ ପ୍ରେରିତ ପଣ୍ୟ ହିସାବ | | ଦାତା |
|---|---|---|---|
| | ଟଙ୍କା | | ଟଙ୍କା |
| ସ୍ଥୂଳ ଲାଭ-କ୍ଷତି ହିସାବ ବାବଦ —ସ୍ଥାନାନ୍ତରଣ | ୭,୦୦୦ | ଯୌଥ ଉଦ୍‌ଯୋଗ ହିସାବ ବାବଦ | ୭,୦୦୦ |

## ୩ । ଯେଉଁ ସମସ୍ତ କ୍ଷେତ୍ରରେ ବିବରଣୀ ଯୌଥ ଉଦ୍‌ଯୋଗ ହିସାବ ପ୍ରସ୍ତୁତ କରାଯାଏ ।

ପୂର୍ବ ଦୃଷ୍ଟାନ୍ତରୁ ଏହା ପରିଲକ୍ଷିତ ହୋଇଥିବ ଯେ ଉଭୟଙ୍କ ହିସାବ ଖାତାରେ ଉଦ୍‌ଯୋଗ ସମ୍ବନ୍ଧୀୟ ଯାବତୀୟ ନେଣ ଦେଣର ପ୍ରବିଷ୍ଟି ଲିପିବଦ୍ଧ କରା-ଯାଉଛି । ଏଥି ନିମନ୍ତେ ଉଭୟଙ୍କ ହିସାବ ବହିରେ ହିସାବର କଳେବର ଅଯଥା ବୃଦ୍ଧି ପାଉଛି ଏବଂ ଅଯଥା ଗୁରୁତ୍ୱ ଶ୍ରମ ମଧ୍ୟ କରାଯାଉଛି । ଶ୍ରମ ଓ ସମୟର ମିତ-ବ୍ୟୟିତା ଦୃଷ୍ଟିରୁ ପ୍ରତ୍ୟେକେ ଯୌଥ ଉଦ୍‌ଯୋଗ ସମ୍ବନ୍ଧୀୟ ତାଙ୍କ ନିଜ ହିସାବଟି ରଖିଲେ ଯଥେଷ୍ଟ ହେବ । ଏପରି ଭାବରେ ହିସାବ ଲିପିବଦ୍ଧ କରାଗଲେ ଉଭୟ ଶ୍ରମ ଓ ସମୟର ସାଶ୍ରୟ ହେବ ସତ ମାତ୍ର ଅନ୍ୟ ଏକ ଅସୁବିଧା ଦେଖା ଦେବ । ସେହି ଅସୁବିଧାଟି ହେଲା ଏହି ଯେ ଯେହେତୁ ଏହା କେବଳ ଗୋଟିଏ ପକ୍ଷର ହିସାବ ତେଣୁ ଏହା ସମଗ୍ର ଯୌଥ ଉଦ୍‌ଯୋଗ କାରବାରର ଲାଭ ବା କ୍ଷତି ଜଣାଇବାକୁ ଅକ୍ଷମ ହେବ । ଏହି ଅସୁବିଧା ଦୂର କରିବା ନିମନ୍ତେ ବିବରଣୀ ଯୌଥ ଉଦ୍‌ଯୋଗ ହିସାବ ନାମକ ଏକ ହିସାବ ଖୋଲାଯିବ ଓ ଏଥିରେ ଉଭୟ ଉଦ୍‌ଯୋଗୀଙ୍କ ହିସାବରେ ଲିପିବଦ୍ଧ ହୋଇଥିବା ଯୌଥ ଉଦ୍‌ଯୋଗ ସମ୍ବନ୍ଧୀୟ ନେଣ ଦେଣ ଗୁଡ଼ିକ ଲିପିବଦ୍ଧ କରାଯିବ । ଦୁଇ ଉଦ୍‌ଯୋଗୀଙ୍କ ମଧ୍ୟରେ ଘଟିଥିବା ନଗଦ ତହବିଲ ବା ବ୍ୟାଙ୍କ୍ ଡ୍ରାଫ୍‌ଟ ବା ହୁଣ୍ଡିର ଆଦାନ ପ୍ରଦାନ ଅବଶ୍ୟ ଏହି ବିବରଣୀ ହିସାବକୁ ଅଣାଯିବ ନାହିଁ । ସେ ଯାହା ହେଉ, ଏହି ବିବରଣୀ ହିସାବ ନିକାଶ କରାଗଲେ ଯୌଥ ଉଦ୍‌ଯୋଗ କାରବାରର ଲାଭ ବା କ୍ଷତି ତହିଁରେ ପ୍ରତିଫଳିତ ହେବ । ଏହି ବିବରଣୀ ଯୌଥ ଉଦ୍‌ଯୋଗ ହିସାବ ଦ୍ୱିଲେଖନ ହିସାବ ନୀତି ଅନୁଯାୟୀ ପ୍ରସ୍ତୁତ କରାଯାଏ ନାହିଁ । ଲାଭ ବା କ୍ଷତି ନିର୍ଣ୍ଣୟ କରିବା ନିମନ୍ତେ ଏହା ଏକ ଉପାୟ ମାତ୍ର । ଏହା ହିସାବର ଫର୍ମ ଅନୁଯାୟୀ ଲେଖା ହେଉଥିଲେ ସୁଦ୍ଧା ଏହା ହିସାବ ନୁହେଁ, ଏକ ବିବରଣୀ ମାତ୍ର । ଯୌଥ ଉଦ୍‌ଯୋଗ ହିସାବର ଦାୟୀ ପାର୍ଶ୍ୱରେ ଲିପିବଦ୍ଧ ହେଉଥିବା ବିଷୟଗୁଡ଼ିକ ବିବରଣୀ ଯୌଥ ଉଦ୍‌ଯୋଗ

ହିସାବର ଦାୟୀ ପାର୍ଶ୍ୱରେ ଏବଂ ଯୌଥ ଉଦ୍ୟୋଗ ହିସାବର ଦାତା ପାର୍ଶ୍ୱରେ ଲିପିବଦ୍ଧ ହୋଇଥିବା ବିଷୟଗୁଡ଼ିକ ବିବରଣୀ ଯୌଥ ଉଦ୍ୟୋଗ ହିସାବର ଦାତା ପାର୍ଶ୍ୱରେ ଲେଖାଯାଏ । ଏହି ହିସାବର ଏକ ନମୁନା ନିମ୍ନରେ ପ୍ରଦତ୍ତ ହେଲା ।

ଦାୟୀ — ବିବରଣୀ ଯୌଥ ଉଦ୍ୟୋଗ ହିସାବ — ଦାତା

| | ଟଙ୍କା | | ଟଙ୍କା |
|---|---|---|---|
| କ ପ୍ରେରଣ କରିଥିବା ପଣ୍ୟ ବାବଦ | — — | କ ନେଇଥିବା ବିକ୍ରୟ ଲବ୍ଧ ଅର୍ଥ ବାବଦ | — — |
| ଖ ପ୍ରେରଣ କରିଥିବା ପଣ୍ୟ ବାବଦ | — — | ଖ ନେଇଥିବା ବିକ୍ରୟ ଲବ୍ଧ ଅର୍ଥ ବାବଦ | — — |
| କ ବ୍ୟୟ କରିଥିବା ଅର୍ଥ ବାବଦ | — — | କ ଗ୍ରହଣ କରିଥିବା କୌଣସି ଆୟ ବାଃ | — — |
| ଖ ବ୍ୟୟ କରିଥିବା ଅର୍ଥ ବାବଦ | — — | ଖ ଗ୍ରହଣ କରିଥିବା କୌଣସି ଆୟ ବାଃ | — — |
| ଲାଭର ଅଂଶ ବାବଦ | | କ ନେଇଥିବା ଅବିକ୍ରୀତ ପଣ୍ୟ ବାବଦ | — — |
| କ... | — — | ଖ ନେଇଥିବା ଅବିକ୍ରୀତ ପଣ୍ୟ ବାବଦ | — — |
| ଖ... | — — | | |
| | — — | | — — |

କ ଙ୍କର ହିସାବ ବହିରେ

ଦାୟୀ — ଖଙ୍କ ସହିତ ଯୌଥ ଉଦ୍ୟୋଗ ହିସାବ — ଦାତା

| | ଟଙ୍କା | | ଟଙ୍କା |
|---|---|---|---|
| ପ୍ରେରିତ ପଣ୍ୟ ବାବଦ | — — | ବିକ୍ରୟ ଲବ୍ଧ ଅର୍ଥ ବାବଦ | — — |
| ବ୍ୟବସାୟ କରିଥିବା ଅର୍ଥ ବାବଦ | — — | ଗୃହୀତ ଆୟ ବାଃ | — — |
| ଲାଭର ଅଂଶ ବାବଦ | — — | ଅବିକ୍ରୀତ ପଣ୍ୟର କ୍ରୟ ବାବଦ | — — |
| | | ବାକି ଗଡ଼ିଲା - - | |
| ପୂର୍ବ ବାକି ବାବଦ - - | | | |

ଖ ଙ୍କର ହିସାବ ବହିରେ
କ ଙ୍କ ସହିତ ଯୌଥ ଉଦ୍ୟୋଗ ହିସାବ

| ଦାୟୀ | ଟଙ୍କା | | ଦାତା ଟଙ୍କା |
|---|---|---|---|
| ପ୍ରେରିତ ପଣ୍ୟ ବାବଦ | — — | ବିକ୍ରୟ ଲବ୍ଧ ଅର୍ଥ ବାବଦ | — — |
| ବ୍ୟୟ କରିଥିବା ଅର୍ଥ ବାଃ | — — | ଗ୍ରହୀତ ଆୟ ବାଃ | — — |
| ଲାଭର ଅଂଶ ବାବଦ | — — | ଅବିକ୍ରୀତ ପଣ୍ୟର କ୍ରୟ ବାବଦ | — — |
| ବାକି ଉଦ୍ବୃତ୍ତ | — — | | |

## ଦୃଷ୍ଟାନ୍ତ (୧୩)

ଦୃଷ୍ଟାନ୍ତ (୧୨) ରେ ଥିବା ଦେଣ ନେଣ ଗୁଡ଼ିକରୁ ବିବରଣୀ ଯୌଥ ଉଦ୍ୟୋଗ ପଦ୍ଧତି ଅନୁଯାୟୀ ଆବଶ୍ୟକ ହିସାବ ଗୁଡ଼ିକ ପ୍ରସ୍ତୁତ କର ।

**ସମାଧାନ :**

ବିବରଣୀ ଯୌଥ ଉଦ୍ୟୋଗ ହିସାବ

| ଦାୟୀ | ଟଙ୍କା | ଦାତା | ଟଙ୍କା |
|---|---|---|---|
| ପ୍ରେରିତ ପଣ୍ୟ ହିଃ ବାଃ | | ବିକ୍ରୟ ଲବ୍ଧ ଅର୍ଥ ହିସାବ ବାବଦ: | |
| ରାଧାକାନ୍ତ··· | ୮,୦୦୦ | ରାଧାକାନ୍ତ | ୧୨,୦୦୦ |
| କମଳାକାନ୍ତ··· | ୬,୦୦୦ | କମଳାକାନ୍ତ | ୧୦,୦୦୦ |
| ପ୍ରଦତ୍ତ ବ୍ୟୟ ହିସାବ ବାଃ | | କ୍ରୀତ ଅବିକ୍ରୀତ ପଣ୍ୟ ହିଃ ବାବଦ: | |
| ରାଧାକାନ୍ତ ବ୍ୟୟ | ୧୮୦ | ରାଧାକାନ୍ତ | ୩୦୦ |
| କମିସନ | ୬୦୦ | କମଳାକାନ୍ତ | ୩୦୦ |
| କମଳାକାନ୍ତ—ବ୍ୟୟ | ୧୬୦ | | |
| କମିସନ | ୫୦୦ | | |
| ଲାଭ ହିସାବ ବାବଦ : | | | |
| ରାଧାକାନ୍ତ — ୧/୨ ଅଂଶ | ୩,୫୮୦ | | |
| କମଳାକାନ୍ତ — ୧/୨ ଅଂଶ | ୩,୫୮୦ | | |
| | ୨୨,୬୦୦ | | ୨୨,୬୦୦ |

ରାଧାକାନ୍ତଙ୍କ ଖତିୟାନରେ

ଦାୟୀ — କମଳାକାନ୍ତଙ୍କ ସହିତ ଯୌଥ ଉଦ୍ଯୋଗ ହିସାବ — ଦାତା

| | ଟଙ୍କା | | ଟଙ୍କା |
|---|---|---|---|
| ଯୌଥ ଉଦ୍ଯୋଗକୁ ପ୍ରେରିତ ପଣ୍ୟ ହିସାବ ବାବଦ | ୮,୦୦୦ | ନଗଦ ତହବିଲ ହିସାବ ବାବଦ: ବିକ୍ରୟ ଲବ୍ଧ ଅର୍ଥ | ୧୨,୦୦୦ |
| ନଗଦ ତହବିଲ ହିଃ ବାବଦ ବ୍ୟୟ | ୧୮୦ | କ୍ରୟ ହିସାବ ବାବଦ ଅବିକ୍ରୀତ ପଣ୍ୟ | ୩୦୦ |
| କମିସନ୍ ହିସାବ ବାବଦ | ୨୦୦ | ପ୍ରାପ୍ୟ ହୁଣ୍ଡି ହିସାବ ବାବଦ | ୬୦ |
| ନିଟ୍ ଲାଭ କ୍ଷତି ହିସାବ ବାବଦ ୧/୨ ଅଂଶ | ୩,୫୮୦ | | |
| | ୧୨,୩୬୦ | | ୧୨,୩୬୦ |

କମଳା କାନ୍ତଙ୍କ ଖତିୟାନରେ

ଦାୟୀ — ରାଧାକାନ୍ତଙ୍କ ସହିତ ଯୌଥ ଉଦ୍ଯୋଗ ହିସାବ — ଦାତା

| | ଟଙ୍କା | | ଟଙ୍କା |
|---|---|---|---|
| ଯୌଥ ଉଦଯୋଗକୁ ପ୍ରେରିତ ପଣ୍ୟ ହିସାବ ବାବଦ | ୬,୦୦୦ | ନଗଦ ତହବିଲ ହିସାବ ବାବଦ—ବିକ୍ରୟ ଲବ୍ଧ ଅର୍ଥ | ୧୦,୦୦୦ |
| ନଗଦ ତହବିଲ ହିସାବ ବାବଦ ବ୍ୟୟ | ୧୬୦ | କ୍ରୟ ହିସାବ ବାବଦ—ଅବିକ୍ରୀତ ପଣ୍ୟ | ୩୦୦ |
| କମିଶନ୍ ହିସାବ ବାବଦ | ୫୦୦ | | |
| ନିଟ୍ ଲାଭ କ୍ଷତି ହିସାବ ବାବଦ—୧/୨ ଅଂଶ | ୩,୫୮୦ | | |
| ଦେୟ ହୁଣ୍ଡି ହିସାବ ବାବଦ | ୬୦ | | |
| | ୧୦,୩୦୦ | | ୧୦,୩୦୦ |

## ଦୃଷ୍ଟାନ୍ତ (୧୪)

କଲିକତାର ମଦନ ଲାଲ ଓ କଟକର ଶ୍ୟାମ ଲାଲ କଟକରେ ରେଡ଼ିଓ ସେଟ୍ ବିକ୍ରୟ କରିବା ନିମନ୍ତେ ଏକ ଯୌଥ ଉଦ୍ୟୋଗ କାରବାର ଚଲାଇବା ସକାଶେ ଚୁକ୍ତି ବଦ୍ଧ ହେଲେ । ମଦନ ଲାଲ ଲାଭର ୨/୩ ଅଂଶ ଓ ଶ୍ୟାମ ଲାଲ ଲାଭର ୧/୩ ଅଂଶ ଭାଗ କରିନେବେ ବୋଲି ସ୍ଥିର ହୋଇଥିଲା ।

ମଦନ ଲାଲ ୧୯୭୩ ମସିହା ମାର୍ଚ୍ଚ ୧୫ ତାରିଖରେ ପ୍ରତି ସେଟ୍ ୨୦୦ ଟଙ୍କା ଦରରେ ୮୦୦ ରେଡ଼ିଓ ସେଟ୍ କ୍ରୟ କରି ଶ୍ୟାମ ଲାଲଙ୍କ ନିକଟକୁ ପ୍ରେରଣ କଲେ । ସେ ୨୦% ହାରରେ କାରବାରି ବଟା ପାଇଲେ । ସେ ଏହି ରେଡ଼ିଓ ସେଟ୍‌ଗୁଡ଼ିକ ପ୍ରେରଣ କରିବାକୁ ମାସୁଲ, ବୀମା, ଗାଡ଼ିଭଡ଼ା ପ୍ରଭୃତି ସକାଶେ ୨,୪୦୦୦ ଟଙ୍କା ବ୍ୟୟ କଲେ । ମଦନ ଲାଲ ତିନିମାସ ମିଆଦରେ ୫୦,୦୦୦ ଟଙ୍କା ସକାଶେ ପ୍ରସ୍ତୁତ ହୋଇଥିବା ଏକ ହୁଣ୍ଡି ଶ୍ୟାମ ଲାଲଙ୍କ ନିକଟକୁ ସ୍ୱୀକାରାର୍ଥେ ପଠାଇଲେ । ଶ୍ୟାମ ଲାଲ ତାହା ସ୍ୱୀକାର କରିବାରୁ ମଦନ ଲାଲ ତାହା ସେଣ୍ଟ୍ରାଲ୍ ବ୍ୟାଙ୍କରେ ୬% ହାରରେ ଭଙ୍ଗାଇଲେ ।

ଶ୍ୟାମ ଲାଲ ମାର୍ଚ୍ଚ ୨୫ ତାରିଖରେ ରେଡ଼ିଓ ସେଟ୍‌ଗୁଡ଼ିକ ପାଇ ରେଲଷ୍ଟେସନରୁ ସେଗୁଡ଼ିକୁ ଗାଡ଼ିଭଡ଼ା, କୁଲି ଭଡ଼ା ପ୍ରଭୃତି ବାବଦ ୫୦୦ ଟଙ୍କା ବ୍ୟୟ କରି ନିଜ ଗୋଦାମକୁ ଆଣିଲେ । ୧୯୭୩ ମସିହା ଜୁନ୍ ୧୮ ତାରିଖରେ ସେ ସମସ୍ତ ରେଡ଼ିଓ ସେଟ୍, ପ୍ରତି ସେଟ୍ ୨୫୦ ଟଙ୍କା ହାରରେ ବିକ୍ରୟ କଲେ ଓ ହୁଣ୍ଡି ବାବଦ ଟଙ୍କା ପରିଶୋଧ କଲେ । ଏହି ପଣ୍ୟ ବିକ୍ରୟ କରିବା ନିମନ୍ତେ ମଦନ ଲାଲ ୫୪୦ ଟଙ୍କା ଓ ଶ୍ୟାମ ଲାଲ ୮୬୨ ଟଙ୍କା ବ୍ୟୟ କଲେ ।

ଉପରୋକ୍ତ ନେଣ ଦେଣଗୁଡ଼ିକ ସକାଶେ ଏକ ବିବରଣୀ ଯୌଥ ଉଦ୍ୟୋଗ ହିସାବ ପ୍ରସ୍ତୁତ କରି ଏବଂ ପ୍ରତି ଉଦ୍ୟୋଗୀଙ୍କର ଲାଭର ପରିମାଣ ସାବ୍ୟସ୍ତ କର । ଉଭୟ ଉଦ୍ୟୋଗୀ ପରସ୍ପରର ହିସାବ ନିକାଶ କଲେ ଓ ଯେଉଁ ଉଦ୍ୟୋଗୀ ଅପରଠାରେ ଋଣୀ ହେଲେ ସେ ତାଙ୍କର ଦେୟ ପରିମାଣ ବ୍ୟାଙ୍କ୍ ଡ୍ରାଫ୍‌ଟ ଆକାରରେ ପରିଶୋଧ କଲେ । ଏହା ଅନୁମାନ କରି ଉଭୟ ହିସାବ ବହିରେ ଖତିୟାନ ହିସାବ ମଧ୍ୟ ପ୍ରସ୍ତୁତ କର ।

## ବିବରଣୀ ଯୌଥ ଉଦ୍‌ଯୋଗ ହିସାବ

ଦାୟୀ | ଦାତା

| ୧୯୬୩ | | ଟଙ୍କା | ୧୯୬୩ | | ଟଙ୍କା |
|---|---|---|---|---|---|
| ମାର୍ଚ୍ଚ ୧୫ | ମଦନ ଲାଲ ଯୋଗାଇଥିବା ପଣ୍ୟ ବାବଦ ମୋଟ ମୂଲ୍ୟ ୧,୬୦,୦୦୦ ବାଦ୍ କାରବାର ବଟା ୩୨,୦୦୦ | ୧,୨୮,୦୦୦ | ଜୁନ୍ ୧୮ | ଶ୍ୟାମଲାଲ ପାଇଥିବା ବିକ୍ରୟଲବ୍ଧ ଅର୍ଥ ବାବଦ | ୨,୦୦,୦୦୦ |
| ୧୫ | ମଦନ ଲାଲ ଖର୍ଚ୍ଚ କରିଥିବା ବ୍ୟୟ ବାବଦ: ବୀମା ଓ ପରିବହନ ୨,୪୦୦ ବଟା—୨୫୦ ଆନୁଷଙ୍ଗିକ ବ୍ୟୟ—୫୪୦ | ୩,୬୯୦ | | | |
| ୧୫ | ଶ୍ୟାମ ଲାଲ ଖର୍ଚ୍ଚ କରିଥିବା ବ୍ୟୟ ବାବଦ କୁଲି ଖର୍ଚ୍ଚ ଓ ଗାଡ଼ି ଭଡ଼ା ୫୦୦ ଆନୁଷଙ୍ଗିକ ବ୍ୟୟ ୮୬୧ | ୧,୩୬୧ | | | |
| ଜୁନ୍ ୧୮ | ଯୌଥ ଉଦ୍‌ଯୋଗର ଲାଭ ବାବଦ—ମଦନ ଲାଲ ୪୪,୬୩୧ ଶ୍ୟାମ ଲାଲ ୨୨,୩୧୬ | ୬୬,୯୪୮ | | | |
| | | ୨,୦୦,୦୦୦ | | | ୨,୦୦,୦୦୦ |

## ମଦନ ଲାଲଙ୍କର ଖାତାପତ୍ରରେ ଶ୍ୟାମ ଲାଲଙ୍କ ସହିତ ଯୌଥ ଉଦ୍‌ଯୋଗ ହିସାବ

ଦାୟୀ | ଦାତା

| ୧୯୬୩ | | ଟଙ୍କା | ୧୯୬୩ | | ଟଙ୍କା |
|---|---|---|---|---|---|
| ମାର୍ଚ୍ଚ ୧୫ | ଯୌଥ ଉଦ୍‌ଯୋଗକୁ ଯୋଗାଇଥିବା ପଣ୍ୟ ହି: ବା: ମୋଟ ମୂଲ୍ୟ ୧,୬୦,୦୦୦ ବାଦ୍ କାରବାର ବଟା ୩୨,୦୦୦ | ୧,୨୮,୦୦୦ | ମାର୍ଚ୍ଚ ୧୫ | ପ୍ରାପ୍ୟ ହୁଣ୍ଡି ହିସାବ ବାବଦ | ୫୦,୦୦୦ |
| ” | ବ୍ୟାଙ୍କ ହିସାବ ବାବଦ— ବୀମା ଓ ପରିବହନ ୨,୪୦୦ ବଟା ୨୫୦ ଆନୁଷଙ୍ଗିକ ବ୍ୟୟ ୫୪୦ | ୩,୬୯୦ | ଜୁନ୍ ୧୮ | ବ୍ୟାଙ୍କ ହିସାବ (ବ୍ୟାଙ୍କ ଡ୍ରାଫ୍ଟ) | ୧,୨୬,୩୨୧ |
| ଜୁନ୍ ୧୮ | ଯୌଥ ଉଦ୍‌ଯୋଗର ଲାଭ ବାବଦ ୨/୩ ଅଂଶ | ୪୪,୬୩୧ | | | |
| | | ୧,୭୬,୩୨୧ | | | ୧,୭୬,୩୨୧ |

ଶ୍ୟାମଲାଲଙ୍କ ଖାତାସ୍ଥାନରେ

ଦାୟୀ ମଦନଲାଲଙ୍କ ସହିତ ଯୌଥ ଉଦ୍‌ଯୋଗ ହିସାବ ଦାତା

| ୧୯୦୩ | | ଟଙ୍କା | ୧୯୬୩ | | ଟଙ୍କା |
|---|---|---|---|---|---|
| ମାର୍ଚ୍ଚ ୧୫- | ଦେୟ ହୁଣ୍ଡି ହିଃ ବାଃ | ୫୦,୦୦୦ | ଜୁନ-୧୮ | ବ୍ୟାଙ୍କ୍ ହିଃ ବାଃ — ବିକ୍ରୟ ଲବ୍ଧ ଅର୍ଥ | ୨,୦୦,୦୦୦ |
| ମାର୍ଚ୍ଚ ୨୫- | ବ୍ୟାଙ୍କ୍ ହିଃ ବାଃ —କୁଲି ଖର୍ଚ୍ଚ ଓ ଗାଡ଼ି ଭଡ଼ା ୫୦୦ ଆନୁଷଙ୍ଗିକ ବ୍ୟୟ ୮୬୨ | ୧,୩୬୨ | | | |
| ଜୁନ ୧୮- | ଯୌଥ ଉଦ୍‌ଯୋଗ ଲାଭ ହିଃ ବାବଦ— ୧/୩ ଅଂଶ | ୨୨,୩୧୬ | | | |
| ୧୮- | ବ୍ୟାଙ୍କ୍ ହିଃ ବାବଦ (ବ୍ୟାଙ୍କ୍ ଡ୍ରାଫ୍‌ଟ | ୧,୨୬,୩୨୨ | | | |
| | | ୨,୦୦,୦୦୦ | | | ୨,୦୦,୦୦୦ |

## ଯୌଥ ଉଦ୍‌ଯୋଗୀମାନଙ୍କ ମଧ୍ୟରେ ପାରସ୍ପରିକ ପଣ୍ୟ ହସ୍ତାନ୍ତର ।

ଅନେକ ସମୟରେ ଯୌଥ ଉଦ୍‌ଯୋଗ ବ୍ୟବସାୟ ଏକ ନିର୍ଦ୍ଦିଷ୍ଟ ସ୍ଥାନରେ ପ୍ରଚଳିତ ନ ହୋଇ ଉଦ୍‌ଯୋଗୀମାନଙ୍କର ରହଣି ସ୍ଥାନରେ ପ୍ରଚଳିତ ହୁଏ । ଏପରି କ୍ଷେତ୍ରରେ ଜଣେ ଉଦ୍‌ଯୋଗୀ ଅନ୍ୟ ଜଣେ ସହ-ଉଦ୍‌ଯୋଗୀଙ୍କ ନିକଟକୁ କିଛି ପଣ୍ୟ ପ୍ରେରଣ କରନ୍ତି ଓ ନିଜେ ମଧ୍ୟ କିଛି ପଣ୍ୟ ରଖି ତାହା ପୂର୍ବ ନିର୍ଦ୍ଧାରିତ ଦରରେ ବିକ୍ରୟ କରନ୍ତି । କିଏ କେତେ ପଣ୍ୟ ଯୌଥ ଉଦ୍‌ଯୋଗ କାରବାରକୁ ପ୍ରେରଣ କରିବେ ତାହା ପୂର୍ବରୁ ନିର୍ଦ୍ଧାରିତ ହୋଇଥାଏ । ଅନ୍ୟାନ୍ୟ କ୍ଷେତ୍ରରେ ଯେପରି ହୋଇଥାଏ ଏ କ୍ଷେତ୍ରରେ ମଧ୍ୟ ଦୁଇ ଉଦ୍‌ଯୋଗୀଙ୍କ ମଧ୍ୟରେ କିଏ କେତେ ଅଂଶରେ ଲାଭ ଭୋଗ କରିବେ ତାହା ପୂର୍ବରୁ ଚୁକ୍ତି ଦ୍ୱାରା ସ୍ଥିରୀକୃତ ହୋଇଥାଏ । ଏହି ପ୍ରକାର ଏକ ଯୌଥ ଉଦ୍‌ଯୋଗର ଦୃଷ୍ଟାନ୍ତ ନିମ୍ନରେ ପ୍ରଦତ୍ତ ହେଲା ।

### ଦୃଷ୍ଟାନ୍ତ (୧୫)

ସମ୍ବଲପୁରର ମୀନକେତନ ଓ କାର୍ତ୍ତିକ ବହାଲି ଚନ୍ଦ୍ରଚୂଡ଼ା ବସ୍ତ୍ରର ଏକ ଯୌଥ ଉଦ୍‌ଯୋଗ କାରବାର ଚଳାଇବା ନିମନ୍ତେ ଚୁକ୍ତିବଦ୍ଧ ହେଲେ ଓ ଲାଭର ଯଥାକ୍ରମେ ୨/୩ ଓ ୧/୩ ଅଂଶ ଭୋଗ କରିବେ ବୋଲି ସ୍ୱୀକୃତ ହେଲେ ।

୧୯୭୩ ମସିହା ଅପ୍ରେଲ ୧ ତାରିଖରେ ମୀନକେତନ ୨,୪୦୦ ଟଙ୍କାର ବସ୍ତ୍ର କ୍ରୟ କରି କାର୍ତ୍ତିକବିହାରୀଙ୍କ ନିକଟକୁ ଅର୍ଦ୍ଧେକ ପଣ୍ୟ ପ୍ରେରଣ କଲେ । ଏହି ପଣ୍ୟ ପ୍ରେରଣ କରିବା ନିମନ୍ତେ ମୀନକେତନ ୧୫୦ ଟଙ୍କା ବ୍ୟୟ କଲେ । ମଇମାସ ୧ ତାରିଖରେ ସେ ପୁଣି ୧,୫୦୦ ଟଙ୍କାର ବସ୍ତ୍ର ଯୌଥ ଉଦ୍‌ଯୋଗ କାରବାର ସକାଶେ କ୍ରୟ କଲେ । ତାଙ୍କର ଆନୁଷଙ୍ଗିକ ବ୍ୟୟ ୯୦ ଟଙ୍କା ହେଲା ।

୧୯୭୩ ମସିହା ଜୁନ ୧ ତାରିଖରେ କାର୍ତ୍ତିକ ବିହାରୀ ୧,୮୦୦ ଟଙ୍କାର ବସ୍ତ୍ର କ୍ରୟ କରି ତାହାର ଅର୍ଦ୍ଧେକାଂଶ ମୀନକେତନଙ୍କ ନିକଟକୁ ପ୍ରେରଣ କଲେ ଓ ସେଥି ସକାଶେ ୧୨୦ ଟଙ୍କା ଆନୁଷଙ୍ଗିକ ବ୍ୟୟ ହେଲା । ଜୁଲାଇ ୩୧ ତାରିଖରେ ମୀନକେତନ କାର୍ତ୍ତିକ ବିହାରୀଙ୍କ ନିକଟକୁ ୯୦୦ ଟଙ୍କା ପ୍ରେରଣ କଲେ ।

ପଣ୍ୟଗୁଡ଼ିକ କ୍ରୟ ମୂଲ୍ୟର ୩୩ ୧/୩% ଅଧିକ ଦରରେ ବିକ୍ରୀତ ହେଲା ଏବଂ ସମସ୍ତ ବିକ୍ରୟ ଲବ୍ଧ ଅର୍ଥ ମିଳିଥିଲା । କେବଳ ମୀନକେତନ ବିକ୍ରୟ କରିଥିବା ପଣ୍ୟ ବାବଦ ୧୨୦ ଟଙ୍କା ଜଣେ ଗ୍ରାହକ ପରିଶୋଧ କରିପାରିଲେ ନାହିଁ ଓ ସେପ୍‌ଟେମ୍ବର ୩୦ ତାରିଖରେ ଏହା ଅନାଦାୟୀ ଋଣ ସ୍ୱରୂପ ଯୌଥ ଉଦ୍‌ଯୋଗ ହିସାବରୁ ବାଦ୍ ଦିଆଯାଇଥିଲା । କାର୍ତ୍ତିକ ବିହାରୀଙ୍କ ନିକଟରେ ଥିବା ପଣ୍ୟ ମଧ୍ୟରୁ ୩୦୦ ଟଙ୍କା ମୂଲ୍ୟର ପଣ୍ୟ ଅଗ୍ନିକାଣ୍ଡ ହେତୁ ନଷ୍ଟ ହୋଇଥିଲା ଏବଂ ବୀମା କମ୍ପାନୀରୁ ଏଥି ବାବଦ ୨୪୨ ଟଙ୍କା କ୍ଷତି ପୂରଣ ମିଳିଥିଲା । ଅକ୍‌ଟୋବର ୩୧ ତାରିଖରେ ।

ଅକ୍‌ଟୋବର ୩୧ ତାରିଖରେ ମୀନକେତନଙ୍କଠାରେ ୪୫୦ ଟଙ୍କା ମୂଲ୍ୟର ପଣ୍ୟ ଅବିକ୍ରୀତ ଥିଲା । ତହିଁରୁ ୨୦୦ ଟଙ୍କା ମୂଲ୍ୟର ପଣ୍ୟ ସେ ନିଜ ବ୍ୟବହାର ସକାଶେ ନେଲେ ଓ ଅବଶିଷ୍ଟ ପଣ୍ୟକୁ ୩୦୦ ଟଙ୍କା ମୂଲ୍ୟରେ ସେ ନିଜ ବ୍ୟବସାୟ ସକାଶେ କ୍ରୟ କଲେ ।

କାର୍ତ୍ତିକ ବିହାରୀ ୧୨୦ ଟଙ୍କା ମୂଲ୍ୟର ପଣ୍ୟ ବ୍ୟତୀତ ଅନ୍ୟ ସମସ୍ତ ପଣ୍ୟ ପୂର୍ବ ନିର୍ଦ୍ଧାରିତ ଦର (କ୍ରୟ ମୂଲ୍ୟ + ୩୩ ୧/୩%) ଅନୁଯାୟୀ ବିକ୍ରୟ କରି ବିକ୍ରୟ ଲବ୍ଧ ଅର୍ଥ ବ୍ୟାଙ୍କରେ ଜମା କଲେ । ଏହି ୧୨୦ ଟଙ୍କା ମୂଲ୍ୟର ପଣ୍ୟ ନଷ୍ଟ ହୋଇଯାଇ ଥିଲା । ଏହା ବିକ୍ରୟଯୋଗ୍ୟ ଅବସ୍ଥାରେ ନ ଥିବା ହେତୁ ଏହାକୁ କ୍ଷତି ରୂପେ ଯୌଥ ଉଦ୍‌ଯୋଗ ହିସାବରୁ ଅକ୍‌ଟୋବର ୩୧ ତାରିଖରେ ବାଦ୍ ଦିଆ ଯାଇଥିଲା ।

ଉପରୋକ୍ତ ବୃତ୍ତାନ୍ତରୁ ଏକ ବିବରଣୀ ଯୌଥ ଉଦ୍‌ଯୋଗ ହିସାବ ପ୍ରସ୍ତୁତ କରି ଓ ଉଭୟ ଉଦ୍‌ଯୋଗୀଙ୍କର ଖତିୟାନ୍‌ରେ ଉଦ୍‌ଯୋଗ ସମ୍ପୃକ୍ତ ନେଣ

ଦେବେଗୁଡ଼ିକ କିପରି ଲିପିବଦ୍ଧ କରାଯିବ ତାହା ଦର୍ଶାଅ । ଅନୁମାନ କର ଯେ ୧୯୭୩ ମସିହା ଅକ୍ଟୋବର ୩୧ ତାରିଖରେ ଉଦ୍‌ଯୋଗୀମାନେ ଯୌଥ ଉଦ୍‌ଯୋଗ ହିସାବ ବନ୍ଦ କରି ହିସାବ ନିକାଶ କରିବାକୁ ସ୍ଥିର କଲେ ।

## ସମାଧାନ—

ମୀନକେତନ ଓ କାର୍ତ୍ତିକ ବହ୍ମାଣ୍ଡ ଯେଉଁ ପଣ୍ୟଗୁଡ଼ିକ ବିକ୍ରୟ କରିଥିଲେ ତାହାର ବିକ୍ରୟ ମୂଲ୍ୟ ନିମ୍ନୋକ୍ତ ପ୍ରକାରେ ନିରୂପିତ ହୋଇଛି ।

| | ମୀନକେତନ | କାର୍ତ୍ତିକ ବହ୍ମାଣ୍ଡ |
|---|---|---|
| | ଟଙ୍କା | ଟଙ୍କା |
| ପଣ୍ୟର କ୍ରୟ | ୨,୪୦୦ | ୧,୮୦୦ |
| ,, ,, | ୧,୫୦୦ | — |
| | ୩,୯୦୦ | ୧,୮୦୦ |
| ପଣ୍ୟର ମୋଟ କ୍ରୟ | ୩,୯୦୦ | ୧,୮୦୦ |
| + ଅପରଠାରୁ ପ୍ରାପ୍ତ ପଣ୍ୟ | ୯୦୦ | ୧,୨୦୦ |
| | ୪,୮୦୦ | ୩,୦୦୦ |
| — ଅପରକୁ ପ୍ରଦତ୍ତ ପଣ୍ୟ | ୧,୨୦୦ | ୯୦୦ |
| | ୩,୬୦୦ | ୨,୧୦୦ |
| — ଅଗ୍ନିକାଣ୍ଡରେ ବିନଷ୍ଟ ପଣ୍ୟ | — | ୩୦୦ |
| | ୩,୬୦୦ | ୧,୮୦୦ |
| ବିକ୍ରୟର ଅଯୋଗ୍ୟ ପଣ୍ୟ | — | ୧୨୦ |
| | ୩,୬୦୦ | ୧,୬୮୦ |
| — ଅବିକ୍ରୀତ ମହଜୁଦ ପଣ୍ୟ | ୪୫୦ | — |
| | ୩,୧୫୦ | ୧,୬୮୦ |
| ବିକ୍ରୀତ ପଣ୍ୟର କ୍ରୟ ମୂଲ୍ୟ | | |
| + ଲାଭ (କ୍ରୟ ମୂଲ୍ୟର ୩୩ ୧/୩%) | ୧,୦୫୦ | ୫୬୦ |
| ବିକ୍ରୟ ମୂଲ୍ୟ | ୪,୨୦୦ | ୨,୨୪୦ |

ଦାୟୀ ବବରଣୀ ଯୌଥ ଉଦ୍‌ଯୋଗ ହିସାବ ଦାତା

| ୧୯୭୩ | | | ଟଙ୍କା | ୧୯୭୩ | | | ଟଙ୍କା |
|---|---|---|---|---|---|---|---|
| ଅପ୍ରେଲ | | | | ଅ.ବର | | | |
| ୧— | ପଣ୍ୟ ବାବଦ—<br>ମୀନକେତନ | | ୨,୪୦୦ | ୩୧— | ବିକ୍ରୟ ବାବଦ—<br>ମୀନକେତନ<br>କୀର୍ତ୍ତିନ ବହ୍ମାସ୍ତ | | ୪,୨୦୦<br>୨,୨୪୦ |
| ୧— | ବ୍ୟୟ ବାବଦ—<br>ମୀନକେତନ | | ୧୫୦ | ୩୧— | ଅବିକ୍ରୀତ ପଣ୍ୟ<br>ବାବଦ—<br>ମୀନକେତନ<br>ଉଠାଣ ୨୦୦<br>ବସ୍ତୁ ୩୦୦ | | ୫୦୦ |
| ମଇ ୧— | ପଣ୍ୟ ବାବଦ—<br>ମୀନକେତନ | | ୧,୫୦୦ | ୩୧— | ବୀମା ଦାବୀରୁ ପ୍ରାପ୍ତ | | ୨୪୨ |
| ୧— | ବ୍ୟୟ ବାବଦ—<br>ମୀନକେତନ | | ୯୦ | | | | |
| ଜୁନ୍ ୧— | ପଣ୍ୟ ବାବଦ—<br>କୀର୍ତ୍ତିନ ବହ୍ମାସ୍ତ | | ୧,୮୦୦ | | | | |
| ୧— | ବ୍ୟୟ ବାବଦ—<br>କୀର୍ତ୍ତିନ ବହ୍ମାସ୍ତ | | ୧୨୦ | | | | |
| ସେପ୍ଟେମ୍ବର<br>—୩୧ | ଅନାଦାୟୀ ଋଣ—<br>ମୀନକେତନ | | ୧୨୦ | | | | |
| ଅ.ବର<br>୩୧— | ଯୌଥ ଉଦ୍‌ଯୋଗର<br>ଲାଭ ବାବଦ—<br>ମୀନକେତନ ୨/୩<br>ଅଂଶ ୬୬୮<br>କୀର୍ତ୍ତିନ ବହ୍ମାସ୍ତ ୧/୩<br>ଅଂଶ ୩୩୪ | | ୧,୦୦୨ | | | | |
| | | | ୭,୧୮୨ | | | | ୭,୧୮୨ |

## ମୀନକେତନଙ୍କ ଖାତାରେ
## କୀର୍ତ୍ତିନ ବହାଲଙ୍କ ସହିତ ଯୌଥ ଉଦ୍ୟୋଗ ହିସାବ

| ଦାୟୀ | | ଟଙ୍କା | | ଦାତା | ଟଙ୍କା |
|---|---|---|---|---|---|
| ୧୯୭୩ | | | ୧୯୭୩ | | |
| ଅପ୍ରେଲ-୧ | ଯୌଥ ଉଦ୍ୟୋଗକୁ ପ୍ରେରିତ ପଣ୍ୟ ହିସାବ ବାବଦ | ୨,୪୦୦ | ଅକ୍ଟୋବର-୩୧ | ବ୍ୟାଙ୍କ ହିସାବ ବାବଦ (ବିକ୍ରୟ) | ୪,୨୦୦ |
| ୧ | ବ୍ୟାଙ୍କ ହି: ବାବଦ (ଆନୁଷଙ୍ଗିକ ବ୍ୟୟ) | ୧୫୦ | ୩୧ | କ୍ରୟ ହି: ବାବଦ | ୩୦୦ |
| ମଇ-୧ | ଯୌଥ ଉଦ୍ୟୋଗକୁ ପ୍ରେରିତ ପଣ୍ୟ ହିସାବ ବାବଦ | ୧,୫୦୦ | ୩୧ | ଉଠାଣ ହିସାବ ବାବଦ | ୨୦୦ |
| | ବ୍ୟାଙ୍କ ହି: ବାବଦ (ଆନୁଷଙ୍ଗିକ ବ୍ୟୟ) | ୯୦ | ୩୧ | ବ୍ୟାଙ୍କ ହିସାବ ବାବଦ (ହିସାବ ନିକାଶୀ ଅର୍ଥ) | ୧,୧୨୮ |
| ଜୁଲାଇ-୩୧ | ବ୍ୟାଙ୍କ ହି: ବାବଦ | ୯୦୦ | | | |
| ସେପ୍ଟେମ୍ବର-୩୦ | ଅନାଦାୟୀ ଋଣ ହିସାବ ବାବଦ | ୧୧୦ | | | |
| ଅକ୍ଟୋବର-୩୧ | ନିଟ୍ ଲାଭ-କ୍ଷତି ହିସାବ ବାବଦ | ୬୭୮ | | | |
| | | ୫,୮୨୮ | | | ୫,୮୨୮ |

## କୀର୍ତ୍ତିନ ବହାଲଙ୍କ ଖାତାରେ
## ମୀନକେତନଙ୍କ ସହିତ ଯୌଥ ଉଦ୍ୟୋଗ ହିସାବ

| ଦାୟୀ | | ଟଙ୍କା | | ଦାତା | ଟଙ୍କା |
|---|---|---|---|---|---|
| ୧୯୭୩ | | | ୧୯୭୩ | | |
| ଜୁନ୍-୧ | ଯୌଥ ଉଦ୍ୟୋଗକୁ ପ୍ରେରିତ ପଣ୍ୟ ହି:ବା: | ୧,୮୦୦ | ଜୁଲାଇ-୩୧- | ବ୍ୟାଙ୍କ ହି: ବାବଦ | ୯୦୦ |
| ୧ | ବ୍ୟାଙ୍କ୍ ହି: ବାବଦ | ୧୨୦ | ଅକ୍ଟୋବର ୩୧- | ବ୍ୟାଙ୍କ୍ ହିସାବ ବାବଦ (ବିକ୍ରୟ) | ୨,୨୪୦ |
| ଅକ୍ଟୋବର-୩୧ | ନିଟ୍ ଲାଭ-କ୍ଷତି ହିସାବ ବାବଦ | ୩୩୪ | ୩୧- | ବ୍ୟାଙ୍କ୍ ହିସାବ ବାବଦ (ବୀମା କମ୍ପାନୀରୁ ପ୍ରାପ୍ତ ଅର୍ଥ) | ୨୪୨ |
| ୩୧ | ବ୍ୟାଙ୍କ ହି: ବାବଦ (ହି: ନିକାଶୀ ଅର୍ଥ) | ୧,୧୨୮ | | | |
| | | ୩,୩୮୨ | | | ୩,୩୮୨ |

## ଦୁଇରୁ ଅଧିକ ଉଦ୍‌ଯୋଗୀ ଥିବା କ୍ଷେତ୍ରରେ—

ଅଧିକାଂଶ ସମୟରେ ଉଦ୍‌ଯୋଗୀଙ୍କ ସଂଖ୍ୟା ଦୁଇ ଥାଏ ମାତ୍ର କେତେକ କ୍ଷେତ୍ରରେ ଦୁଇରୁ ଅଧିକ ସଂଖ୍ୟକ ଉଦ୍‌ଯୋଗୀ ଯୌଥ ଉଦ୍‌ଯୋଗ କାରବାର ପ୍ରଚଳନ କରି ପାରନ୍ତି । ସେ କ୍ଷେତ୍ରରେ ଯୌଥ ଉଦ୍‌ଯୋଗ କାରବାରର ହିସାବ ରକ୍ଷଣର ମୂଳ ପ୍ରଣାଳୀ ଅପରିବର୍ତ୍ତିତ ରହିବ, କେବଳ ଅଧିକା ଜଣେ ବା ଦୁଇଜଣଙ୍କର ହିସାବ ଲେଖାଯିବ । ଏହାର ଏକ ଦୃଷ୍ଟାନ୍ତ ନିମ୍ନରେ ପ୍ରଦତ୍ତ ହେଲା ।

### ଦୃଷ୍ଟାନ୍ତ—(୧୬)

କମଳ, ବିମଳ ଓ ଶ୍ୟାମଳ ଏକ ଯୌଥ ଉଦ୍‌ଯୋଗ କାରବାର ଚଳାଇବାକୁ ସ୍ଥିର କଲେ ଓ ଯଥାକ୍ରମେ ୫; ୩; ୨ ଅନୁପାତରେ ଲାଭ ଭାଗ କରିବେ ବୋଲି ଚୁକ୍ତିବଦ୍ଧ ହେଲେ । ନିମ୍ନ ପ୍ରଦତ୍ତ ବିବରଣୀରୁ ପ୍ରତି ଉଦ୍‌ଯୋଗୀଙ୍କ ହିସାବ ବହିରେ ଆବଶ୍ୟକ ହିସାବ ଲେଖ । ମନେକର ଯେ ଏହି କାରବାର ସକାଶେ ସ୍ୱତନ୍ତ୍ର ହିସାବ ରକ୍ଷଣର ବ୍ୟବସ୍ଥା ନାହିଁ ।

| | କମଳ | ବିମଳ | ଶ୍ୟାମଳ |
|---|---|---|---|
| | ଟଙ୍କା | ଟଙ୍କା | ଟଙ୍କା |
| ଯୋଗାଇଥିବା ପଣ୍ୟ | ୧୦,୦୦୦ | ୬,୦୦୦ | — |
| ବ୍ୟୟ କରିଥିବା ପରିମାଣ | ୨,୦୦୦ | ୧,୨୦୦ | ୬୦୦ |
| ପ୍ରାପ୍ତ ବିକ୍ରୟ ଲବ୍ଧ ଅର୍ଥ | — | ୮,୦୦୦ | ୧୪,୦୦୦ |
| ଅବିକ୍ରୀତ ପଣ୍ୟର କ୍ରୟ | — | ୮୦୦ | ୨,୨୨୦ |

## ସମାଧାନ—

କମଳଙ୍କ ଖତିୟାନରେ
ଯୌଥ ଉଦ୍ୟୋଗ ହିସାବ

ଦାୟୀ | ଦାତା

| | ଟଙ୍କା | | ଟଙ୍କା |
|---|---|---|---|
| ବ୍ୟାଙ୍କ୍ ହିସାବ ବାବଦ ଯୌଥ ଉଦ୍ୟୋଗକୁ ପ୍ରେରିତ ପଣ୍ୟ | ୧୦,୦୦୦ | ବିମଳଙ୍କ ହିଃ ବାବଦ ବିକ୍ରୟ ଲବ୍ଧ ଅର୍ଥ | ୮,୦୦୦ |
| ବ୍ୟାଙ୍କ୍ ହିଃ ବାବଦ ବ୍ୟୟ | ୨,୦୦୦ | ଅବିକ୍ରୀତ ପଣ୍ୟ ଜନ୍ୟ | ୮୦୦ |
| ବିମଳଙ୍କ ହିସାବ ବାବଦ ପଣ୍ୟ | ୬,୦୦୦ | ଶ୍ୟାମଳଙ୍କ ହିଃ ବାବଦ ବିକ୍ରୟ ଲବ୍ଧ ଅର୍ଥ | ୧୪,୦୦୦ |
| ବ୍ୟୟ | ୧,୨୦୦ | ଅବିକ୍ରୀତ ପଣ୍ୟର ଜନ୍ୟ | ୨,୨୦୦ |
| ଶ୍ୟାମଳଙ୍କ ହିସାବ ବାବଦ ବ୍ୟୟ | ୬୦୦ | | |
| ଲାଭ-କ୍ଷତି ହିଃ ବାବଦ ୫/୧୦ ଅଂଶ-୨,୬୦୦<br>ବିମଳଙ୍କ ହିଃ ବାବଦ ୩/୧୦ ଅଂଶ-୧,୫୬୦<br>ଶ୍ୟାମଳଙ୍କ ହିଃ ବାବଦ ୨/୧୦ ଅଂଶ-୧,୦୪୦ | ୫,୨୦୦ | | |
| | ୨୫,୦୦୦ | | ୨୫,୦୦୦ |

ଦାୟୀ | ସହ-ଉଦ୍ୟୋଗୀମାନଙ୍କର ହିସାବ | ଦାତା

| | ବିମଳ | ଶ୍ୟାମଳ | | ବିମଳ | ଶ୍ୟାମଳ |
|---|---|---|---|---|---|
| | ଟଙ୍କା | ଟଙ୍କା | | ଟଙ୍କା | ଟଙ୍କା |
| ଯୌଥ ଉଦ୍ୟୋଗ ହିଃ ବାଃ ବିକ୍ରୟ ଲବ୍ଧ ଅର୍ଥ | ୮,୦୦୦ | ୧୪,୦୦୦ | ଯୌଥ ଉଦ୍ୟୋଗ ହିଃ ବାବଦ ପଣ୍ୟ | ୬,୦୦୦ | — |
| ଅବିକ୍ରୀତ ପଣ୍ୟର ଜନ୍ୟ | ୮୦୦ | ୨,୨୦୦ | ବ୍ୟୟ | ୧,୨୦୦ | ୬୦୦ |
| | | | ଲାଭର ଅଂଶ | ୧,୫୬୦ | ୧,୦୪୦ |
| | | | ବାକି ଗଡ଼ିଲା | ୪୦ | ୧୪,୫୬୦ |
| | ୮,୮ ୦୦୦ | ୧୬,୨୦୦ | | ୮,୮୦୦ | ୧୬,୨୦୦ |
| ପୂର୍ବ ବାକି ବାବଦ | ୪୦ | ୧୪,୫୬୦ | | | |

ବିମଳଙ୍କ ଖାତାସ୍ଥାନରେ

**ଯୌଥ ଉଦ୍‌ଯୋଗ ହିସାବ**

ଦାଖି — ଦାତା

| | ଟଙ୍କା | | | ଟଙ୍କା |
|---|---|---|---|---|
| ବ୍ୟାଙ୍କ ହିସାବ ବାବଦ- | | | ବ୍ୟାଙ୍କ ହିଃ ବାଃ | ୮,୦୦୦ |
| ପଣ୍ୟର ମୂଲ୍ୟ | ୬୦୦୦ | | କ୍ରୟ ହିଃ ବାବଦ | ୮୦୦ |
| ବ୍ୟୟ | ୧,୨୦୦ | | ଶ୍ୟାମଳଙ୍କ ହିଃବାଃ | |
| କମଳାଙ୍କ ହିଃ ବାବଦ — | | | ବିକ୍ରୟଲବ୍ଧ ଅର୍ଥ | ୧୪,୦୦୦ |
| ପଣ୍ୟର ମୂଲ୍ୟ | ୧୦,୦୦୦ | | ଅବିକ୍ରୀତ ପଣ୍ୟ | |
| ବ୍ୟୟ | ୨,୦୦୦ | | କ୍ରୟ | ୨,୨୦୦ |
| ଶ୍ୟାମଳଙ୍କ ହିଃ ବାବଦ- | | | | |
| ବ୍ୟୟ | ୬୦୦ | | | |
| ନିଟ୍ ଲାଭ କ୍ଷତି ହିଃ ବାଃ- ୩/୧୦ ଅଂଶ ୧,୫୬୦ | | | | |
| କମଳଙ୍କ ହିଃ ବାଃ ୫/୧୦ ଅଂଶ ୨,୬୦୦ | | | | |
| ଶ୍ୟାମଳଙ୍କ ହିଃ ବାଃ ୨/୧୦ ଅଂଶ ୧,୦୪୦ | ୫,୨୦୦ | | | |
| | ୨୫,୦୦୦ | | | ୨୫,୦୦୦ |

**ସହ-ଉଦ୍‌ଯୋଗୀଙ୍କ ହିସାବ**

ଦାଖି — ଦାତା

| | କମଳ | ଶ୍ୟାମଳ | | କମଳ | ଶ୍ୟାମଳ |
|---|---|---|---|---|---|
| | ଟଙ୍କା | ଟଙ୍କା | | ଟଙ୍କା | ଟଙ୍କା |
| ଯୌଥ ଉଦ୍‌ଯୋଗ ହିସାବ ବାବଦ— | | | ଯୌଥ ଉଦ୍‌ଯୋଗ ହିଃ ବାବଦ- | | |
| ବିକ୍ରୟ ଲବ୍ଧ ଅର୍ଥ | | ୧୪,୦୦୦ | ପଣ୍ୟ ଯୋଗାଣ | ୧୦,୦୦୦ | — |
| ଅବିକ୍ରୀତ ପଣ୍ୟ କ୍ରୟ | | ୨,୨୦୦ | ବ୍ୟୟ | ୨,୦୦୦ | ୬୦୦ |
| ବାକି ଗଲା | ୧୪,୬୦୦ | — | ଲାଭର ଅଂଶ | ୨,୬୦୦ | ୧,୦୪୦ |
| | | | ବାକି ପଡ଼ିଲା | — | ୧୪,୫୬୦ |
| | ୧୪,୬୦୦ | ୧୬,୨୦୦ | | ୧୪,୬୦୦ | ୧୬,୨୦୦ |
| ପୂର୍ବ ବାକି ବାବଦ | — | ୧୪,୫୬୦ | ପୂର୍ବ ବାକି ବାବଦ | ୧୪,୬୦୦ | |

## ଶ୍ୟାମଲଙ୍କ ଖତିୟାନରେ

ଦାୟୀ ସହ-ଉଦ୍ୟୋଗୀଙ୍କ ହିସାବ ଦାତା

| | କମଳ | ବିମଳ | | କମଳ | ବିମଳ |
|---|---|---|---|---|---|
| | ଟଙ୍କା | ଟଙ୍କା | | ଟଙ୍କା | ଟଙ୍କା |
| ଯୌଥ ଉଦ୍ୟୋଗ ହିସାବ ବାବଦ— | | | ଯୌଥ ଉଦ୍ୟୋଗ ହିଃ ବାବଦ- | | |
| ବିକ୍ରୟ ଲବ୍ଧ ଅର୍ଥ | ... | ୮,୦୦୦ | ପଣ୍ୟ | | |
| ଅବିକ୍ରୀତ ପଣ୍ୟ କ୍ରୟ | .... | ୮୦୦ | ଯୋଗାଣ | ୧୦,୦୦୦ | ୬,୦୦୦ |
| ବାକି ରହିଲ | ୧୪,୬୦୦ | ... | ବ୍ୟୟ | ୨,୦୦୦ | ୧,୨୦୦ |
| | | | ଲାଭର ଅଂଶ | ୨,୬୦୦ | ୧,୫୬୦ |
| | | | ବାକି ରହିଲ | ... | ୪୦ |
| | ୧୪,୬୦୦ | ୮,୮୦୦ | | ୧୪,୬୦୦ | ୮,୮୦୦ |
| ପୂର୍ବ ବାକି ବାବଦ | | ୪୦ | ପୂର୍ବ ବାକି ବାବଦ | ୧୪,୬୦୦ | |

ଦାୟୀ ଯୌଥ ଉଦ୍‌ଯୋଗ ହିସାବ ଦାତା

| | ଟଙ୍କା | | ଟଙ୍କା |
|---|---|---|---|
| ବ୍ୟାଙ୍କ ହିସାବ ବାବଦ- ବ୍ୟୟ | ୬୦୦ | ବ୍ୟାଙ୍କ ହିଃ ବାବଦ | ୧୪,୦୦୦ |
| କମଳଙ୍କ ହିସାବ ବାବଦ- | | କ୍ରୟ ହିଃ ବାବଦ | ୨,୨୦୦ |
| ପଣ୍ୟର ମୂଲ୍ୟ | ୧୦,୦୦୦ | ବିମଳାଙ୍କ ହିଃ ବା— | |
| ବ୍ୟୟ | ୨,୦୦୦ | ବିକ୍ରୟ ଲବ୍ଧ ଅର୍ଥ | ୮,୦୦୦ |
| ବିମଳଙ୍କ ହିସାବ ବାବଦ | | ଅବିକ୍ରୀତ ପଣ୍ୟକ୍ରୟ | ୮୦୦ |
| ପଣ୍ୟର ମୂଲ୍ୟ | ୬,୦୦୦ | | |
| ବ୍ୟୟ | ୧,୨୦୦ | | |
| ନିଟ୍ ଲାଭ-କ୍ଷତି ହିସାବ ବାବଦ ୨/୧୦ ଅଂଶ ୧,୦୪୦ | | | |
| କମଳଙ୍କ ହିସାବ ବାବଦ ୫/୧୦ ଅଂଶ ୨,୬୦୦ | | | |
| ବିମଳଙ୍କ ହିଃବାଃ ୧,୫୬୦ | ୫,୨୦୦ | | |
| | ୨୫,୦୦୦ | | ୨୫,୦୦୦ |

## ସୁଧ ଗଣନା—

ଯେତେବେଳେ ଦୁଇଟି ପକ୍ଷ ମଧ୍ୟରେ ବହୁ ସଂଖ୍ୟକ ନେଣ ଦେଣ ହୁଏ ସେତେବେଳେ ସମ୍ପୃକ୍ତ ପରିମାଣ ଉପରେ ଏକ ନିର୍ଦ୍ଦିଷ୍ଟ ହାରରେ ସୁଧ ଦେବା ବା ପାଇବାର ବ୍ୟବସ୍ଥା ସାଧାରଣତଃ ରଖାଯାଏ । ମାତ୍ର ପ୍ରତ୍ୟେକ ନେଣ ଦେଣ ସମ୍ପୃକ୍ତ ପରିମାଣ ସକାଶେ ସୁଧ ଗଣନା କରିବା ବହୁ ଶ୍ରମ ଓ ସମୟ ସାପେକ୍ଷ । ଅବଶ୍ୟ ଏଥି ନିମନ୍ତେ ସୁଧର ସାରଣୀ (Table) ର ସାହାଯ୍ୟ ନିଆଯାଇ ପାରେ । ମାତ୍ର ଯଦି କୌଣସି କାରଣରୁ ଏପରି ସାରଣୀର ବ୍ୟବହାର ନିଷିଦ୍ଧ ଥାଏ ତାହାହେଲେ ଗୁଣନ ପଦ୍ଧତି ସାହାଯ୍ୟରେ ସୁଧ ନିର୍ଣ୍ଣୟ କରିବା ସହଜ ହୁଏ । ଉଦାହରଣ ସ୍ୱରୂପ, ୧୦୦ ଟଙ୍କାର ୮ ମାସର ସୁଧ ନିର୍ଣ୍ଣୟ କରିବା କଷ୍ଟକର ହୋଇପାରେ କିନ୍ତୁ ୮୦୦ ଟଙ୍କାର ୧ ମାସର ସୁଧ ନିର୍ଣ୍ଣୟ କରିବା ସହଜ ହୋଇପାରେ, ଅଥଚ ଉତ୍ତର ଉଭୟ କ୍ଷେତ୍ରରେ ସମାନ ହେବ; ତେଣୁ ଯଦି ମାସ ଅନୁଯାୟୀ ବିଭିନ୍ନ ପରିମାଣର ସୁଧ ନିର୍ଣ୍ଣୟ କରିବା ଆବଶ୍ୟକ ହୁଏ ତାହାହେଲେ ପରିମାଣକୁ ମାସର ସଂଖ୍ୟା ସହିତ ଗୁଣ କର । ତତ୍ପରେ ଗୁଣଫଳଗୁଡ଼ିକ ଯୋଗ କର ଓ ଯୋଗଫଳ ରାଶିର ଗୋଟିଏ ମାସର ସୁଧ ନିର୍ଣ୍ଣୟ କର । ଯଦି ସୁଧ ଦିବସାନୁଯାୟୀ ଗଣନା କରିବା ଆବଶ୍ୟକ ହୁଏ ତାହାହେଲେ ପ୍ରତି ସଂଖ୍ୟାକୁ ଯେତେ ଦିବସ ନିମନ୍ତେ ସୁଧ କଷା ଯିବ ତେତେ ଦିବସ ଦ୍ୱାରା ଗୁଣ କରାଯିବ । ଏହି ଗୁଣଫଳଗୁଡ଼ିକ ଯୋଗ କରି ଯୋଗଫଳ ରାଶିର ଗୋଟିଏ ଦିବସର ସୁଧ ନିର୍ଣ୍ଣୟ କର । ଏତଦ୍ୱାରା ସୁଧ ନିର୍ଣ୍ଣୟ କରିବା ସହଜ ହେବ । ଏଠାରେ ଗୋଟିଏ ବିଷୟ ସ୍ମରଣ ରଖିବାକୁ ହେବ ଯେ ଯେଉଁଦିନ ଗୋଟିଏ ନେଣ ଦେଣ ସମ୍ପାଦିତ ହୋଇଛି ସେ ଦିନଟି ଗୁଣ କରିବା ସମୟରେ ହିସାବକୁ ନିଆଯିବ ନାହିଁ ।

ଏହାର ଏକ ଦୃଷ୍ଟାନ୍ତ ନିମ୍ନରେ ପ୍ରଦତ୍ତ ହେଲା ।

### ଦୃଷ୍ଟାନ୍ତ ( ୧୭ )

୧୯୬୩ ମସିହା ଜାନୁୟାରୀ ୧ ତାରିଖରେ ଯଦୁ ମଧୁଠାରେ ୪୦୦ ଟଙ୍କା ସକାଶେ ଋଣୀ ଥିଲେ । ଏହା ପରେ ଯଦୁ ଓ ମଧୁ ମଧ୍ୟରେ ନିମ୍ନଲିଖିତ ନେଣ ଦେଣ ଗୁଡ଼ିକ ସଂଘଟିତ ହୋଇଥିଲା ।

| | ଟଙ୍କା |
|---|---|
| ଜାନୁ ୨୦ ତାରିଖରେ ଯଦୁ ପଣ୍ୟ କ୍ରୟ କଲେ | —୫୦୦ |
| ଫେବୃ ୧୫ ତାରିଖରେ ଯଦୁ ଟଙ୍କା ଉଧାର ଆଣିଲେ | —୪୦୦ |
| ମାର୍ଚ୍ଚ ୨୫ ତାରିଖରେ ଯଦୁ ପଣ୍ୟ କ୍ରୟ କଲେ | —୬୦୦ |

ମଧୁ ପ୍ରତି ଧନର ବାକି ଟଙ୍କା ଉପରେ ଶତକଡ଼ା ବାର୍ଷିକ ୬ ହାରରେ ସୁଧ ନିଅନ୍ତି । ୧୯୬୩ ମସିହା ମାର୍ଚ୍ଚ ୩୧ ତାରିଖରେ ଯଦୁ ମଧୁକୁ ସୁଧ ବାବଦ କେତେ ଦେବେ ତାହା ଗଣନା କର ।

## ସମାଧାନ :

| ତାରିଖ (୧) | ପରିମାଣ (୨) ଟଙ୍କା | ମାର୍ଚ୍ଚ ୩୧ ତାରିଖ ପର୍ଯ୍ୟନ୍ତ ଦିନର ସଂଖ୍ୟା (୩) | ଗୁଣଫଳ (୨)×(୩) |
|---|---|---|---|
| ଜାନୁ-୧ | ୪୦୦ | ୯୦ | ୩୬,୦୦୦ |
| ଜାନୁ-୨୦ | ୫୦୦ | ୭୦ | ୩୫,୦୦୦ |
| ଫେବ୍ରୁ-୧୫ | ୪୦୦ | ୪୪ | ୧୭,୬୦୦ |
| ମାର୍ଚ୍ଚ-୨୫ | ୬୦୦ | ୬ | ୪,୨୦୦ |
| | | | ୯୨,୮୦୦ |

୯୨,୮୦୦ଙ୍କାର ୬% ହାରରେ ଦିନକର ସୁଧ

$$\frac{୯୨,୮୦୦ \times ୬}{୧୦୦ \times ୩୬୫} = ଟ୧୫.୨୫$$

## ହାରାହାରି ପରିଶୋଧ୍ୟ ଦିବସ :

ଯଦି ଜଣେ ବ୍ୟକ୍ତି ଅନ୍ୟ ଜଣେ ବ୍ୟକ୍ତିଙ୍କଠାରୁ ବିଭିନ୍ନ ତାରିଖରେ ବିଭିନ୍ନ ପରିମାଣରେ ଋଣ କରିଥାଏ ତାହା ହେଲେ ସେ ଏକ କାଳୀନ ସମସ୍ତ ପରିମାଣକୁ ଏପରି ଏକ ତାରିଖରେ ପରିଶୋଧ କରିବାକୁ ଇଚ୍ଛା କରିପାରେ ଯଦ୍ୱାରା କୌଣସି ପକ୍ଷ ସୁଧ ବାବଦ କ୍ଷତିଗ୍ରସ୍ତ ହେବେ ନାହିଁ । ଏହିପରି ଦିବସକୁ ହାରାହାରି ପରିଶୋଧ୍ୟ ଦିବସ କୁହାଯାଏ । ଏହି ଦିବସ ଗଣନା କରିବାର ପ୍ରଣାଳୀ ନିମ୍ନରେ ପ୍ରଦତ୍ତ ହେଲା ।

(୧) ଯେ କୌଣସି ଏକ ପରିଶୋଧ୍ୟ ଦିବସକୁ ମୂଳ ଦିବସରୂପେ ସ୍ଥିର କର ।

(୨) ଏହି ମୂଳ ଦିବସରୁ ପ୍ରତ୍ୟେକ ଋଣ ପରିମାଣର ପରିଶୋଧ୍ୟ ଦିବସର ଦୂରତ୍ୱ ବା ବ୍ୟବଧାନ ଗଣନା କର । ଏହି ବ୍ୟବଧାନ ଦିବସ ମାଧ୍ୟମରେ ପ୍ରକାଶ କରାଯିବ ।

(୩) ଦ୍ୱିତୀୟ ପର୍ଯ୍ୟାୟରେ ଯେତେ ଦିବସ ଉତ୍ତର ହେଲା ତାହା ସହିତ ତାହାର ସଂପୃକ୍ତ ଋଣ ପରିମାଣକୁ ଗୁଣ କର ।

(୪) ଋଣର ପରିମାଣ ଓ ତୃତୀୟ ପର୍ଯ୍ୟାୟର ଉତ୍ତରରେ ପ୍ରାପ୍ତ ଗୁଣଫଳ ଗୁଡ଼ିକୁ ପୃଥକ୍ ଭାବରେ ଯୋଗ କର ।

(୫) ଗୁଣଫଳଗୁଡ଼ିକର ଯୋଗଫଳକୁ ଋଣ ପରିମାଣର ଯୋଗଫଳ ଦ୍ୱାରା ଭାଗ କର । ଭାଗଫଳ ଯାହା ହେବ ତାହା ହେଲା ଦିବସର ସଂଖ୍ୟା । ମୂଳ ତାରିଖରୁ ସେତିକ ଦିନ ପରେ ଯେଉଁ ତାରିଖ ହେବ ତାହାହିଁ ହାରାହାରି ପରିଶୋଧ ଦିବସ ବା ତାରିଖ ।

(୬) ଏହି ତାରିଖ ନିର୍ଣ୍ଣୟ କରିବା ସକାଶେ ମୂଳ ତାରିଖ ସହିତ ସେତିକ ଦିନ ଯୋଗ କରାଯିବ ।

ଏହାର ଏକ ଦୃଷ୍ଟାନ୍ତ ନିମ୍ନରେ ପ୍ରଦତ୍ତ ହେଲା ।

## ଦୃଷ୍ଟାନ୍ତ (୧୮)

ନିମ୍ନଲିଖିତ ହୁଣ୍ଡି (ଦେୟ) ଗୁଡ଼ିକ ବିଭିନ୍ନ ତାରିଖରେ ପରିଶୋଧ । ସମସ୍ତ ହୁଣ୍ଡି ପରିମାଣକୁ ଏକକାଳୀନ ଗୋଟିଏ ତାରିଖରେ ପରିଶୋଧ କରିବା ନିମନ୍ତେ ଦାୟକ ଇଚ୍ଛା କରନ୍ତି । ହାରାହାରି ପରିଶୋଧ ତାରିଖ ନିର୍ଣ୍ଣୟ କର ।

ମାର୍ଚ୍ଚ ୧ ତାରିଖର ହୁଣ୍ଡି ୫୦୦ଟଙ୍କା ସକାଶେ, ଦେୟ ତାରିଖ ଅପ୍ରେଲ ୪

ଅପ୍ରେଲ ୫ ତାରିଖର ହୁଣ୍ଡି ୧,୦୦୦ଟଙ୍କା ସକାଶେ, ଦେୟ ତାରିଖ ଜୁନ୍ ୮

ମଇ ୧୦ ତାରିଖର ହୁଣ୍ଡି ୨,୦୦୦ଟଙ୍କା ସକାଶେ, ଦେୟ ତାରିଖ ଅଗଷ୍ଟ ୧୩

ମଇ ୧୫ ତାରିଖର ହୁଣ୍ଡି ୧,୫୦୦ଟଙ୍କା ସକାଶେ, ଦେୟ ତାରିଖ ଅଗଷ୍ଟ ୧୮ ।

## ସମାଧାନ :

| ଦେୟ ତାରିଖ | ପରିମାଣ | ମୂଳ ତାରିଖ ଅପ୍ରେଲ ୪ରୁ ଦିବସର ବ୍ୟବଧାନ | ଗୁଣଫଳ ୨ × (୩) |
|---|---|---|---|
| (୧) | (୨) | (୩) | |
| | ଟଙ୍କା | | |
| ଅପ୍ରେଲ—୪ | ୫୦୦ | — | — |
| ଜୁନ୍—୮ | ୧,୦୦୦ | ୬୫ | ୬୫,୦୦୦ |
| ଅଗଷ୍ଟ –୧୩ | ୨,୦୦୦ | ୧୩୧ | ୨୬୨,୦୦୦ |
| ଅଗଷ୍ଟ—୧୮ | ୧,୫୦୦ | ୧୩୬ | ୨୦୪,୦୦୦ |
| ମୋଟ | ୫,୦୦୦ | | ୫୩୧,୦୦୦ |

୫୩୧,୦୦୦କୁ ୫,୦୦୦ ଦ୍ୱାରା ଭାଗ କରିବାରୁ ଭାଗଫଳ ୧୦୬ ହୋଇ ୧,୦୦୦ ଭାଗ ଶେଷ ରହିଲା । ଯେହେତୁ ଭାଗଶେଷ ଭାଜକ ସଂଖ୍ୟାର ଅର୍ଦ୍ଧେକରୁ ଊଣା ତେଣୁ ଏହାକୁ ଉପେକ୍ଷା କରାଗଲା । ଅପ୍ରେଲ ୪ ତାରିଖରୁ ୧୦୬ ଦିନ ଗଣନା କଲେ ଜୁଲାଇ ୧୯ ତାରିଖ ହୁଏ । ସୁତରାଂ ଏହାହିଁ ହାରାହାରି ପରିଶୋଧ ତାରିଖ । ମୂଳ ତାରିଖରୁ ଦିବସ ଗଣନା କଲାବେଳେ ମୂଳ ତାରିଖଟି ଗଣନାରୁ ବାଦ୍ ଦିଆଯିବ ।

## ହାରାହାରି ପରିଶୋଧ୍ୟ ତାରିଖ ସାହାଯ୍ୟରେ ସୁଧର ଗଣନା ପଦ୍ଧତି-

ହାରାହାରି ପରିଶୋଧ୍ୟ ଦିବସ ଏପରି ଏକ ଦିବସ ଅଟେ । ଯେବେ ସମସ୍ତ ଋଣ ପରିମାଣ ପରିଶୋଧ କରାଗଲେ କୌଣସି ପକ୍ଷକୁ ସୁଧ ବାବଦ କ୍ଷତି ସହିବାକୁ ପଡ଼େ ନାହିଁ । ମାତ୍ର ଯଦି ସେହି ଦିବସରେ ଋଣ ପରିଶୋଧ କରା ନ ଯାଇ ତାହାର ପରବର୍ତ୍ତୀ କୌଣସି ତାରିଖରେ ଋଣ ପରିଶୋଧ କରାଯାଏ ତାହାହେଲେ ଋଣ ଗ୍ରହୀତାଙ୍କୁ ହାରାହାରି ପରିଶୋଧ୍ୟ ଦିବସଠାରୁ ଋଣ ପରିଶୋଧର ପ୍ରକୃତ ତାରିଖ ପର୍ଯ୍ୟନ୍ତ ଏହି ଅନ୍ତର୍ବର୍ତ୍ତୀ କାଳ ସକାଶେ ସମସ୍ତ ଋଣ ପରିମାଣ ଉପରେ ସୁଧ ଦେବାକୁ ପଡ଼େ । ଏହି ସୁଧ ଗଣନା କରିବା ସକାଶେ ହାରାହାରି ପରିଶୋଧ୍ୟ ଦିବସର ସାହାଯ୍ୟ ନିଆଯାଇ ପାରେ । ଅର୍ଥାତ୍ ଏହି ହାରାହାରି ପରିଶୋଧ୍ୟ ତାରିଖଠାରୁ ଋଣ ପରିଶୋଧର ପ୍ରକୃତ ତାରିଖ ପର୍ଯ୍ୟନ୍ତ ଅନ୍ତର୍ବର୍ତ୍ତୀ ଦିବସର ସଂଖ୍ୟା ଗଣନା କରି ସମସ୍ତ ଋଣ ପରିମାଣ ଉପରେ ପ୍ରଦତ୍ତ ସୁଧ ହାରରେ ସୁଧ ଗଣନା କରାଯାଇ ପାରେ । ଏହାର ଏକ ଦୃଷ୍ଟାନ୍ତ ନିମ୍ନରେ ପ୍ରଦତ୍ତ ହେଲା ।

## ଦୃଷ୍ଟାନ୍ତ (୧୯)

ପ୍ରଶାନ୍ତ ୧୯୭୩ ମସିହା ଜୁନ୍ ୧ ତାରିଖରେ ବଜାଣଙ୍କଠାରେ ୮୦୦ ଟଙ୍କା ପକାଶେ ଋଣୀ ଥିଲେ । ଏହା ପରେ ସେ ନିମ୍ନଲିଖିତ ପ୍ରକାରରେ ବଜାଣଙ୍କଠାରୁ ଅର୍ଥ କମ୍ବା ପଦାର୍ଥ ଗ୍ରହଣ କରିଥିଲେ ।

ଜୁନ୍ ୧୫—୫୦୦ ଟଙ୍କା ମୂଲ୍ୟର ପଣ୍ୟ ଆଣିଲେ ।
ଜୁଲାଇ ୪—୭୦୦ ଟଙ୍କା ଆଣିଲେ ।
ଅଗଷ୍ଟ ୧୪—୧,୦୦୦ ଟଙ୍କାର ପଣ୍ୟ ଆଣିଲେ ।
ଅଗଷ୍ଟ ୨୫—୮୦୦ ଟଙ୍କାର ପଣ୍ୟ ଆଣିଲେ ।

ପ୍ରଶାନ୍ତ ୧୯୭୩ ମସିହା ଡ଼ିସେମ୍ବର ୩୧ ତାରିଖରେ ବଜାଣଙ୍କର ସମସ୍ତ ଦେୟ ପରିମାଣ ଶତକଡ଼ା ବାର୍ଷିକ ୬ ହାର ସୁଧ ସମେତ୍ ପରିଶୋଧ କଲେ । ହାରାହାରି ପରିଶୋଧ୍ୟ ଦିବସ ପଦ୍ଧତି ଅନୁଯାୟୀ ସୁଧ ନିର୍ଣ୍ଣୟ କର ।

### ସମାଧାନ

| ପରିଶୋଧ୍ୟ ତାରିଖ | ପରିମାଣ | ଜୁନ୍ ୧ ତାରିଖରୁ ଦିବସର ସଂଖ୍ୟା | ଗୁଣଫଳ (୨)×(୩) |
|---|---|---|---|
| (୧) | (୨) | (୩) | |
| | ଟଙ୍କା | | |
| ଜୁନ୍ ୧— | ୮୦୦ | — | — |
| ଜୁନ୍ ୧୫— | ୫୦୦ | ୧୪ | ୭,୦୦୦ |
| ଜୁଲାଇ ୪— | ୭୦୦ | ୩୩ | ୨,୩,୧୦୦ |
| ଅଗଷ୍ଟ ୧୪— | ୧,୦୦୦ | ୭୪ | ୭୪,୦୦୦ |
| ଅଗଷ୍ଟ ୨୫— | ୮୦୦ | ୮୫ | ୬୮,୦୦୦ |
| ମୋଟ | ୩,୮୦୦ | | ୧,୭୨,୧୦୦ |

୧,୭୨,୧୦୦କୁ ୩,୮୦୦ ଦ୍ୱାରା ଭାଗ କରିବାରୁ ଭାଗଫଳ ୪୫ ହେଲା । ଜୁନ୍ ୧ ତାରିଖରୁ ୪୫ ଦିନ ଗଣନା କଲେ ଜୁଲାଇ ୧୫ ହୁଏ । ଅର୍ଥାତ୍ ତାହାହିଁ ହାରାହାରି ପରିଶୋଧ୍ୟ ଦିବସ ।

ତେଣୁ ୩,୮୦୦ ଟଙ୍କା ଉପରେ ଜୁଲାଇ ୧୫ ତାରିଖ ଠାରୁ ଡ଼ିସେମ୍ବର ୩୧ ତାରିଖ ପର୍ଯ୍ୟନ୍ତ ଦିନର ସୁଧ ଶତକଡ଼ା ୬ ହାରରେ ଗଣନା କରାଯିବ ।

$$ସୁଧ = \frac{୩,୮୦୦ \times ୧୬୯ \times ୬}{୩୬୫ \times ୧୦୦} = ଟ ୧୦୫-୫୭ ପଇସା$$

## ଚଳନ୍ତି ହିସାବ :

ଯେତେବେଳେ ଦୁଇ ପକ୍ଷ ମଧ୍ୟରେ ବହୁ ସଂଖ୍ୟକ ଦେଣ ନେଣ ହୁଏ ସେତେବେଳେ ସାଧାରଣତଃ ସୁଧ ହିସାବ କରାଯାଏ । ଗୋଟିଏ ପକ୍ଷ ଅନ୍ୟ ପକ୍ଷକୁ ନେଣ ଦେଣଗୁଡ଼ିକ ଲିପିବଦ୍ଧ ହୋଇଥିବା ଏକ ବିବରଣୀ ପ୍ରଦାନ କରନ୍ତି । ଏଥିରେ ପ୍ରାପ୍ୟ ଓ ଦେୟ ସୁଧ ମଧ୍ୟ ଅନ୍ତର୍ଭୁକ୍ତ କରାଯାଏ । ଏହା ସାଧାରଣତଃ ଏକ ଖତିୟାନ ହିସାବ ଆକାରରେ ଲେଖାଯାଏ ।

ଏହି ସୁଧ ସାଧାରଣତଃ ଗୁଣଫଳ ପଦ୍ଧତି ଅନୁଯାୟୀ ଗଣନା କରାଯାଏ । ପ୍ରତ୍ୟେକ ନେଣ ଦେଣ ସଂପୃକ୍ତ ପରିମାଣ ସହିତ ନେଣ ଦେଣ ସଂଘଟିତ ତାରିଖ- ଠାରୁ ହିସାବ ନିକାଶୀ ତାରିଖ ଅଥବା ହିସାବ ବନ୍ଦ କରିବା ତାରିଖ ପର୍ଯ୍ୟନ୍ତ ଯେତେ ଦିନ ହୁଏ ସେହି ଦିବସର ସଂଖ୍ୟାକୁ ଗୁଣ କରାଯାଇ ଗୁଣଫଳ ନିର୍ଣ୍ଣୀତ ହୁଏ । ହିସାବର ଦୁଇ ପାର୍ଶ୍ୱରେ ଏହି ଗୁଣଫଳଗୁଡ଼ିକ ଏକ ସ୍ୱତନ୍ତ୍ର ସ୍ତମ୍ଭରେ ଲେଖାଯାଏ । ଉଭୟ ପାର୍ଶ୍ୱର ଗୁଣଫଳର ସମଷ୍ଟିର ପାର୍ଥକ୍ୟ ଉପରେ ନିର୍ଦ୍ଦିଷ୍ଟ ହାରରେ ଗୋଟିଏ ଦିନ ସକାଶେ ସୁଧ ଗଣନା କରାଯାଏ । ଯେଉଁ ପାର୍ଶ୍ୱର ଗୁଣ ଫଳର ସମଷ୍ଟି ଅଧିକ ସୁଧ ସେହି ପାର୍ଶ୍ୱରେ ଲିପିବଦ୍ଧ କରାଯିବ । ଏହା ପରେ ଏହି ହିସାବର ବାକି ନିର୍ଣ୍ଣୟ କରାଯିବ ।

ଏଠାରେ ସ୍ମରଣ ରଖିବାକୁ ହେବ ଯେ ଯଦି ଏପରି କୌଣସି ନେଣ ଦେଣ ଘଟେ ଯାହାର ପରିଶୋଧ୍ୟ ତାରିଖ ଏହି ହିସାବ ବନ୍ଦ ହେଉଥିବା ତାରିଖ ପରେ ପଡ଼େ ତାହାହେଲେ ହିସାବ ବନ୍ଦ ହେବା ତାରିଖଠାରୁ ପରିଶୋଧ୍ୟ ତାରିଖ ପର୍ଯ୍ୟନ୍ତ କାଳର ସୁଧ କେବଳ ଯେ ଅନ୍ୟ ସୁଧ ସହିତ ଯୋଗ କରାଯିବ ନାହିଁ; ତେତିକ ନୁହେଁ, ଏହି ସୁଧ ଅନ୍ୟାନ୍ୟ ସୁଧ ପରିମାଣରୁ ବିୟୋଗ କରାଯିବ । ମନେକର ହିସାବଟି ଡିସେମ୍ବର ୩୧ ତାରିଖ ପର୍ଯ୍ୟନ୍ତ ଦିଆଯାଉଛି; ଏବଂ ରାମ ଏହି ହିସାବ ଶ୍ୟାମକୁ ଦେଉଛନ୍ତି । ମନେକର ରାମ ନଭେମ୍ବର ୧୫ ତାରିଖରେ ଦୁଇ ମାସ ମିଆଦରେ ୩୦୦ ଟଙ୍କା ସକାଶେ ପ୍ରସ୍ତୁତ ହୋଇଥିବା ଏକ ହୁଣ୍ଡି ସ୍ୱୀକାର କଲେ । ଯେହେତୁ ଏହି ନେଣ ଦେଣଟି ଡିସେମ୍ବର ୩୧ ତାରିଖ ପୂର୍ବରୁ ଘଟିଛି, ତେଣୁ ଏହା ଏହି ହିସାବରେ ଅନ୍ତର୍ଭୁକ୍ତ ହେବ । କିନ୍ତୁ ଯେହେତୁ ଏହି ହୁଣ୍ଡିର ପରିଶୋଧ୍ୟ ତାରିଖ ପରବର୍ଷ ଜାନୁୟାରୀ ୧୮ ତାରିଖ ତେଣୁ ଡିସେମ୍ବର ୩୧ ତାରିଖ ଠାରୁ ଜାନୁୟାରୀ ୧୮ ତାରିଖ ଅର୍ଥାତ୍ ଏହି ୧୮ ଦିନର ସୁଧ ରାମ ଦ୍ୱାରା ଦେୟ ସୁଧ ପରିମାଣରୁ ବିୟୋଗ କରାଯିବ । ଏହି ହିସାବର ଯେଉଁ ପାର୍ଶ୍ୱରେ ହୁଣ୍ଡି ଲେଖାଯିବ ସେହି ପାର୍ଶ୍ୱର ଗୁଣଫଳର ସମଷ୍ଟିରୁ ୧୮ × ୩୦୦ = ୫,୪୦୦ ବିୟୋଗ କରାଯିବ । ଦୁଇ ପକ୍ଷଙ୍କ ମଧ୍ୟରେ ଘଟିଥିବା କାରବାରଗୁଡ଼ିକ ଲିପିବଦ୍ଧ କରିଥିବା ଏହି ହିସାବକୁ ଚଳନ୍ତି ହିସାବ କୁହାଯାଏ । ଏହି ହିସାବ ଯାହା ନିକଟକୁ ପ୍ରେରିତ ହୁଏ ସେହି ପକ୍ଷର ନାମ ଏହି ହିସାବର ଶିରୋନାମାରେ ପ୍ରଥମେ ଲେଖାଯାଏ ଏବଂ ଯେଉଁ ପକ୍ଷ ହିସାବ ପ୍ରସ୍ତୁତ କରୁଛନ୍ତି ତାଙ୍କ ନାମ

ଶେଷରେ ଆସେ । ଯଦି ରାମ ଶ୍ୟାମଙ୍କ ନିକଟକୁ ହିସାବ ପ୍ରେରଣ କରୁଥାଆନ୍ତି ତାହାହେଲେ ଏହି ହିସାବରେ ଶ୍ୟାମଙ୍କ ନାମ ପ୍ରଥମେ ରହିବ, ଯଥା କିନ୍ତୁ ଓଡ଼ିଆରେ ଏହା ଲେଖିଲେ ବିପରୀତ ହେବ, ଯେପରି "ରାମଙ୍କ ସହିତ ଶ୍ୟାମଙ୍କର ଚଳନ୍ତି ହିସାବ ।" ଏହାର ଅର୍ଥ ରାମଙ୍କ ଖାତାସ୍ଥାନରେ ଶ୍ୟାମଙ୍କର ଖାତାସ୍ଥାନ ହିସାବ । ଏହାର ଏକ ଦୃଷ୍ଟାନ୍ତ ନିମ୍ନରେ ପ୍ରଦତ୍ତ ହେଲା ।

## ଦୃଷ୍ଟାନ୍ତ (୨୦)

ବୋକାଶ ଓ ରମେଶଙ୍କ ମଧ୍ୟରେ ୧୯୭୩ ମସିହା ଜୁଲାଇ ୧ ତାରିଖରୁ ଡିସେମ୍ବର ୩୧ ତାରିଖ ମଧ୍ୟରେ ନିମ୍ନଲିଖିତ କେଣ ଦେଣଗୁଡିକ ଘଟିଥିଲା ହୋଇଥିଲା :

(୧) ୧୯୭୩ ମସିହା ଜୁଲାଇ ୧ ତାରିଖରେ ରମେଶ ବିକାଶଙ୍କଠାରେ ୫୫୦ ଟଙ୍କା ନିମନ୍ତେ ଋଣୀ ଥିଲେ ।

(୨) ଜୁଲାଇ ୧୫ ତାରିଖରେ ବିକାଶ ରମେଶଙ୍କୁ ୫୦୦ ଟଙ୍କାର ପଣ୍ୟ ବିକ୍ରୟ କଲେ ।

(୩) ଅଗଷ୍ଟ ୮ ତାରିଖରେ ରମେଶ ବିକାଶଙ୍କୁ ୭୦୦ ଟଙ୍କାର ପଣ୍ୟ ଯୋଗାଇଲେ—ଗ୍ରହଣ ସେପ୍ଟେମ୍ବର ୧ ତାରିଖରେ ପ୍ରସ୍ତୁତ ହୋଇଥିଲା ।

(୪) ବିକାଶ ରମେଶ ଯୋଗାଇଥିବା ପଣ୍ୟରୁ ୫୦ ଟଙ୍କାର ପଣ୍ୟ ଅଗଷ୍ଟ ୧୭ ତାରିଖରେ ଫେରସ୍ତ ପଠାଇଲେ ।

(୫) ରମେଶ ବିକାଶଙ୍କୁ ସେପ୍ଟେମ୍ବର ୧୮ ତାରିଖରେ ୮୦୦ ଟଙ୍କା ମୂଲ୍ୟର ପଣ୍ୟ ବିକ୍ରୟ କଲେ—ଏହାର ଗ୍ରହଣ ତାରିଖ ଅକ୍ଟୋବର ୧ ତାରିଖ ଥିଲା ।

(୬) ରମେଶ ୩୦୦ ଟଙ୍କା ଯକାଶେ ୩ ମାସ ମିଆଦରେ ପ୍ରସ୍ତୁତ ହୋଇଥିବା ଏକ ହୁଣ୍ଡି ବିକାଶଙ୍କ ଉପରେ କାଟିଲେ । ବିକାଶ ଏହି ହୁଣ୍ଡିଟା ଅକ୍ଟୋବର ୨୫ ତାରିଖରେ ସ୍ୱୀକାର କଲେ ।

(୭) ବିକାଶ ନଭେମ୍ବର ୧ ତାରିଖରେ ରମେଶଙ୍କୁ ୪୦୦ ଟଙ୍କା ନଗଦ ଦେଲେ ।

(୮) ବିକାଶ ରମେଶଙ୍କୁ ୫୦୦ ଟଙ୍କା ମୂଲ୍ୟର ପଣ୍ୟ ବିକ୍ରୟ କଲେ—ନଭେମ୍ବର ୧୫ ତାରିଖରେ—ଗ୍ରହଣ ତାରିଖ ଡିସେମ୍ବର ୧ ତାରିଖ ।

(୯) ରମେଶ ବିକାଶଙ୍କୁ ୩୦୦ ଟଙ୍କା ମୂଲ୍ୟର ପଣ୍ୟ ଡିସେମ୍ବର ୨୦ ତାରିଖରେ ବିକ୍ରୟ କଲେ—ଗ୍ରହଣ ତାରିଖ—୧୯୭୪ ମସିହା ଜାନୁୟାରୀ ୧୦ ତାରିଖ ।

୧୯୭୩ ମସିହା ଡିସେମ୍ବର ୩୧ ତାରିଖ ପର୍ଯ୍ୟନ୍ତ ବିକାଶ ଏକ ଚଳନ୍ତି ହିସାବ ପ୍ରସ୍ତୁତ କରି ରମେଶଙ୍କ ନିକଟକୁ ପ୍ରେରଣ କଲେ । ସେ ୭% ହାରରେ ସୁଧ କଷିଲେ । ଏହି ହିସାବ ଦର୍ଶାଅ ।

ବିକାଶଙ୍କ ଖାତାରେ ରମେଶଙ୍କର ଚଳନ୍ତି ହିସାବ

| ଦାୟୀ | | | | | | ଦାତା | | | | | |
|---|---|---|---|---|---|---|---|---|---|---|---|
| ତାରିଖ | ଦେୟ ତାରିଖ | ବିବରଣୀ | ପରିମାଣ | ଡିସେମ୍ବର ୩୧ ପର୍ଯ୍ୟନ୍ତ ଦିନସଂଖ୍ୟା | ଗୁଣଫଳ | ତାରିଖ | ଦେୟ ତାରିଖ | ବିବରଣୀ | ପରିମାଣ | ଡିସେମ୍ବର ୩୧ ପର୍ଯ୍ୟନ୍ତ ଦିନସଂଖ୍ୟା | ଗୁଣଫଳ |
| | | | ଟଙ୍କା | | | | | | ଟଙ୍କା | | |
| ୧୯୭୩ | | | | | | ୧୯୭୩ | | | | | |
| ଜୁଲାଇ ୧ | ଜୁଲାଇ ୧ | ପୂର୍ବ ବାକି ବାବଦ | ୫୫୦ | ୧୮୪ | ୧,୦୧,୨୦୦ | ଅଗଷ୍ଟ ୮ | ଅକ୍ଟୋବର ୮ | ନଗଦ ହୁଃ ବାଃ | ୬୦୦ | ୧୪୫ | ୮୭,୦୦୦ |
| ଜୁଲାଇ ୧୫ | ୧୫ | ବିକ୍ରି ହୁଃ ବାଃ | ୫୦୦ | ୧୬୯ | ୮୪,୫୦୦ | ସେପ୍ଟେମ୍ବର ୧୮ | ଅକ୍ଟୋବର ୧ | ନଗଦ ହୁଃ ବାଃ | ୮୦୦ | ୯୧ | ୭୨,୮୦୦ |
| ଅଗଷ୍ଟ ୧୬ | ଅଗଷ୍ଟ ୧୬ | ବହିର୍ମୁଖୀ ଫେରନ୍ତ ହିସାବ ବାବଦ | ୫୦ | ୧୩୭ | ୬,୮୫୦ | ଡିସେମ୍ବର ୨୦ | ୧୯୭୪ ଜାନୁ-୧୦ | ନଗଦ ହୁଃ ବାଃ | ୩୦୦ | —୧୦ | —୩,୦୦୦ |
| ଅକ୍ଟୋବର ୨୫ | ଜାନୁ ୨୮ | ଦେୟ ହୁଣ୍ଡି ହିସାବ ବାବଦ | ୩୦୦ | —୨୮ | —୮,୪୦୦ | ଡିସେମ୍ବର ୩୧ | | ବାକି ଗଡ଼ଲ | ୬୧୧ | | ୬୬,୩୫୦ |
| ନଭେମ୍ବର ୧ | ନଭେମ୍ବର ୧ | ନଗଦ ଉଦ୍ଧାର ହିସାବ ବାବଦ | ୪୦୦ | ୬୦ | ୨୪,୦୦୦ | | | | | | |
| ୧୫ | ଡିସେମ୍ବର ୧ | ବିକ୍ରି ହିସାବ ବାବଦ | ୫୦୦ | ୩୦ | ୧୫,୦୦୦ | | | | | | |
| ଡିସେମ୍ବର ୩୧ | | ସୁଧ ହୁଃ ବାବଦ $\frac{୬୭,୩୫୦ \times ୬}{୧୦୦ \times ୩୬୫}$ | ୧୧ | | | | | | | | |
| | | | ୨,୩୧୧ | | ୨,୨୩,୧୫୦ | | | | ୨,୩୧୧ | | ୨,୨୩,୧୫୦ |
| ୧୯୭୪ ଜାନୁ-୧ | | ପୂର୍ବ ବାକି ବାବଦ | ୬୧୧ | | | | | | | | |

# ଅନୁଶୀଳନୀ - (୭)

୧। (କ) ଚାଲଣୀ କାରବାର କହିଲେ କ'ଣ ବୁଝ ? ପଣ୍ୟ ବିକ୍ରୟ ସହିତ ଏହାର ପାର୍ଥକ୍ୟ କ'ଣ ?

(ଖ) ବିକ୍ରୟ ହିସାବ ଓ ବିକ୍ରୟ ବିବରଣ ମଧ୍ୟରେ ଥିବା ପାର୍ଥକ୍ୟ ବୁଝାଅ ଓ କାଳ୍ପନିକ ବିବରଣୀ ସାହାଯ୍ୟରେ ଏକ ବିକ୍ରୟ ବିବରଣ ପ୍ରସ୍ତୁତ କର ।

(ଗ) ଚାଲଣୀ କାରବାରରେ ଯଦି ଅବିକ୍ରୀତ ପଣ୍ୟ ଅବଶିଷ୍ଟ ରହେ ତାହା ହେଲେ ଏହି ମହଜୁଦ୍ ପଣ୍ୟର ମୂଲ୍ୟ କିପରି ନିରୂପିତ ହୁଏ ତାହା ଉଦାହରଣ ସହ ବ୍ୟାଖ୍ୟା କର ।

(ଘ) ବିବରଣୀ ଚାଲଣ ହିସାବ କାହାକୁ କହନ୍ତି ? ସାଧାରଣ ଚାଲଣୀ ହିସାବ ସହିତ ଏହାର ପାର୍ଥକ୍ୟ କେଉଁଠି ? ଏହାର ବିଶେଷ ଲକ୍ଷଣଗୁଡ଼ିକ ବର୍ଣ୍ଣନା କର ।

(ଙ) ଚାଲଣୀ କାରବାର ଓ ଯୌଥ ଉଦ୍‌ଯୋଗ କାରବାର ମଧ୍ୟ ସ୍ଥିତ ପାର୍ଥକ୍ୟ ବ୍ୟାଖ୍ୟା କର ।

(ଚ) ବିବରଣୀ ଯୌଥ ଉଦ୍‌ଯୋଗ ହିସାବ କିପରି ପ୍ରସ୍ତୁତ କରାଯାଏ ତାହା ନମୁନା ସାହାଯ୍ୟରେ ବୁଝାଅ ।

(ଛ) ଗୁଣଫଳ ପଦ୍ଧତି ଅନୁଯାୟୀ କିପରି ସୁଧ ଗଣନା କରାଯାଏ ତାହା ଦୃଷ୍ଟାନ୍ତ ସାହାଯ୍ୟରେ ବର୍ଣ୍ଣନା କର ।

(ଜ) ହାରାହାରି ପରିଶୋଧ୍ୟ ତାରିଖ କହିଲେ କ'ଣ ବୁଝ ? ଏହା କେଉଁଠାରେ ବ୍ୟବହୃତ ହୁଏ ? ଏହା କିପରି ଗଣନା କରାଯାଏ ?

(ଝ) ଚଳନ୍ତି ହିସାବ କାହାକୁ କହନ୍ତି ? ଏଥିରେ ସୁଧ ନିର୍ଣ୍ଣୟ କରିବା ପଦ୍ଧତି ବର୍ଣ୍ଣନା କର ।

(ଞ) କ୍ଷତିଗ୍ରସ୍ତ ଚାଲଣୀ ପଣ୍ୟର ମୂଲ୍ୟ କିପରି ସାବ୍ୟସ୍ତ କରାଯାଏ ?

୨। ୧୯୬୩ ମସିହା ଜାନୁଆରୀ ୧ ତାରିଖରେ ରଜତ କୁମାର କଟକରୁ ତାଙ୍କ ଦାୟିତ୍ୱରେ ବିକ୍ରୟ କରିବା ନିମନ୍ତେ କେନ୍ଦୁଝରର ନାଥ ବ୍ରଦାର୍ସଙ୍କ ନିକଟକୁ ପ୍ରତି ପେଟି ୫୦ ଟଙ୍କା ଦରରେ ୨୦୦ ପେଟି ପଣ୍ୟ ଚାଲାଣ କଲେ ? ରଜତ କୁମାର ପଣ୍ୟ ପ୍ରେରଣ କରିବା ନିମନ୍ତେ ଗାଡ଼ିଭଡ଼ା ବାବଦ ୧,୪୦୦ ଟଙ୍କା ଓ ବୀମା ବାବଦ

୫୦ ଟଙ୍କା ବ୍ୟୟ କଲେ । ଏହି ଚାଲାଣୀ ପଣ୍ୟ ବାବଦ ରଜତ୍ କୁମାର ୬୦୦୦ ଟଙ୍କା ସକାଶେ ୩ ମାସ ମିଆଦରେ ଏକ ହୁଣ୍ଡି ପ୍ରସ୍ତୁତ କରି ନାଥ ବ୍ରଦାର୍ସଙ୍କ ନିକଟକୁ ପ୍ରେରଣ କଲେ । ନାଥ ବ୍ରଦାର୍ସ ଏହି ହୁଣ୍ଡି ଜାନୁଆରୀ ୧୦ ତାରିଖରେ ସ୍ୱୀକାର କରି ପଠାଇଲେ । ରଜତ୍ କୁମାର ଏହି ହୁଣ୍ଡିଟି ନିଜ ବ୍ୟାଙ୍କ୍‌ରେ ଶତକଡ଼ା ୬ ହାରରେ ସେହି ତାରିଖରେ ଭଙ୍ଗାଇଲେ ।

ନାଥ ବ୍ରଦାର୍ସ ଜାନୁଆରୀ ୧୫ ତାରିଖରେ ପ୍ରତି ପେଟି ୯୦ ଟଙ୍କା ହାରରେ ୧୧୦ ପେଟି ପଣ୍ୟ ବିକ୍ରୟ କଲେ । ଫେବୃଆରୀ ୧୦ ତାରିଖରେ ପ୍ରତି ପେଟି ୮୦ ଟଙ୍କା ହାରରେ ୫୦ ପେଟି ଓ ଅବଶିଷ୍ଟ ପଣ୍ୟ ପ୍ରତି ପେଟି ୭୦ ଟଙ୍କା ହାରରେ ମାର୍ଚ୍ଚ ୧୮ ତାରିଖରେ ବିକ୍ରୟ କଲେ । ବିକ୍ରୟ ଲବ୍ଧ ଅର୍ଥ ଉପରେ ଶତକଡ଼ା ୧୦ ହାରରେ କମିସନ୍ ପାଇବା ସକାଶେ ନାଥ ବ୍ରଦାର୍ସ ଚୁକ୍ତି କରିଛନ୍ତି । ପଣ୍ୟ ବିକ୍ରୟ କରିବା ନିମନ୍ତେ ନାଥ ବ୍ରଦାର୍ସ ୩୦୦ ଟଙ୍କା ବ୍ୟୟ କରିଥିଲେ । ମାର୍ଚ୍ଚ ୩୧ ତାରିଖରେ ସେମାନେ ତାଙ୍କର ବ୍ୟୟ, କମିସନ୍ ଓ ଅଗ୍ରିମ ବାବଦ ଟଙ୍କା ବାଦ୍ ଦେଇ ବାକି ଟଙ୍କା ସକାଶେ ଏକ ବ୍ୟାଙ୍କ୍ ଡ୍ରାଫ୍ଟ ପ୍ରସ୍ତୁତ କରି ବିକ୍ରୟ ବିବରଣୀ ସହିତ ରଜତ୍ କୁମାରଙ୍କ ନିକଟକୁ ପଠାଇଲେ ।

ରଜତ୍ କୁମାରଙ୍କ ବହିରେ ବିକ୍ରୟ ବିବରଣୀ ଓ ପ୍ରେରଣ ହିସାବ ଓ ନାଥ ବ୍ରଦାର୍ସଙ୍କ ବହିରେ ଜାବେଦା ପ୍ରସ୍ତୁତ କର ।

(ଉତ୍ତର : ଲାଭ—୩,୨୮୦ ଟଙ୍କା)

୩ । କାନପୁରର ମୁରାରୀ ପ୍ରସାଦ କଲିକତାର ସୁକୁମାରଙ୍କ ନିକଟକୁ ପ୍ରତି ପେଟି ୨୨୦ ଟଙ୍କା ଦରରେ ୫୦ ପେଟି କାନପୁରୀ ଚପଲ ନିଜ ଦାୟିତ୍ୱରେ ବିକ୍ରୟ କରିବା ନିମନ୍ତେ ଚାଲାଣ ପଠାଇଲେ । ଏହି ଚାଲାଣ ସମ୍ପର୍କରେ ମୁରାରୀ ପ୍ରସାଦ ପରିବେଷ୍ଟନ ବାବଦ ୧୦୦ ଟଙ୍କା, ପରିବହନ ବାବଦ ୨୨୦ ଟଙ୍କା ଓ ବୀମା ବାବଦ ୩୦ ଟଙ୍କା ବ୍ୟୟ କଲେ । ସୁକୁମାର ମାତ୍ର ୪୮ ପେଟି ମାଲ ପାଇଲେ । ମାର୍ଗରେ ୨ ପେଟି ମାଲ ବିନଷ୍ଟ ହୋଇଥିଲା । ସେ ଗାଡ଼ିଭଡ଼ା ବାବଦ ୩୬ ଟଙ୍କା ବ୍ୟୟ କଲେ ।

ସୁକୁମାର ପ୍ରତି ପେଟି ୨୦୦ ଟଙ୍କା ହାରରେ ୧୬ ପେଟି, ୧୬୦ ଟଙ୍କା ଦରରେ ୨୪ ପେଟି ଓ ୧୫୦ ଟଙ୍କା ଦରରେ ଅବଶିଷ୍ଟ ପେଟିର ମାଲ ବିକ୍ରୟ କଲେ । ସେ ଗୋଦାମ ଭଡ଼ା ବାବଦ ୧୫୦ ଟଙ୍କା ଓ ବିକ୍ରୟକାରୀଙ୍କ ପାରିଶ୍ରମିକ ବାବଦ ୨୦୦ ଟଙ୍କା ବ୍ୟୟ କଲେ । ସେ ବିକ୍ରୟ ଲବ୍ଧ ଅର୍ଥ ଉପରେ ୮% ହାରରେ କମିସନ ପାଇବେ । ସେ ବହନ କରିଥିବା ସମସ୍ତ ଖର୍ଚ୍ଚ ଓ ନିଜର

କମିସନ ବାଦ୍ ଦେଇ ବଳକା ବିକ୍ରୟ ଲବ୍ଧ ଅର୍ଥ ସକାଶେ ଏକ ବ୍ୟାଙ୍କ୍ ଡ୍ରାଫ୍ଟ କରି ବିକ୍ରୟ ବିବରଣ ସହିତ ମୁରଲୀ ପ୍ରସାଦଙ୍କ ନିକଟକୁ ପ୍ରେରଣ କଲେ । ମୁରଲୀ ପ୍ରସାଦ ରେଳବାଇରୁ ୨ ପେଟି ବିନଷ୍ଟ ମାଲ ବାବଦ ୨୦୦ ଟଙ୍କା ପାଇଲେ ।

ଉପରୋକ୍ତ ନେଣ ଦେଣଗୁଡ଼ିକ ମୁରଲୀ ପ୍ରସାଦଙ୍କ ବହିରେ କପରି ହିସାବ ଭୁକ୍ତ ହେବ ତାହା ଜାବଦା ଓ ଖତିୟାନ ହିସାବ ପ୍ରସ୍ତୁତ କରି ଦର୍ଶାଅ ।

( ଉତ୍ତର : ଲାଭ ୧,୦୧୧ ଟଙ୍କା ଓ ଅସ୍ୱାଭାବିକ କ୍ଷତି ୨୫୪ ଟଙ୍କା )

୪ । କଟକର ରମେଶ୍ୱରଲାଲ ଦିଲ୍ଲୀର ଗିରିଧାରୀ ସାମନ୍ତଙ୍କ ନିକଟକୁ ୧୯୭୩ ମସିହା ଅପ୍ରେଲ ୪ ତାରିଖରେ ପ୍ରତି ଗାଣ୍ଠି ୨୦୦ ଟଙ୍କା ଦରରେ ୫୦ ଗାଣ୍ଠି କପଡ଼ା ନିଜ ଦାୟିତ୍ୱରେ ବିକ୍ରୟ କରିବା ସକାଶେ ଚାଲାଣ କଲେ । ଏଥି ସକାଶେ ରମେଶ୍ୱର ଲାଲ ଯେଉଁ ଦର୍ଶନାର୍ଥ ଚାଲାଣ ପ୍ରସ୍ତୁତ କରି ପଠାଇଲେ ତହିଁରେ ପ୍ରତି ଗାଣ୍ଠିର ଦର ୨୫୦ ଟଙ୍କା ଲେଖାଥିଲା । ଏହି ଚାଲାଣୀ ପଣ୍ୟ ପ୍ରେରଣ କରିବା ନିମନ୍ତେ ରମେଶ୍ୱର ଲାଲ ଗାଡ଼ିଭଡ଼ା, ରେଳ ଭଡ଼ା ପ୍ରଭୃତି ବାବଦ ୫୦୦ ଟଙ୍କା ବ୍ୟୟ କଲେ । ସେ ଚାଲାଣ ସମ୍ବନ୍ଧୀୟ ସମସ୍ତ କାଗଜ ପତ୍ର ଅନ୍ଧ୍ର ବ୍ୟାଙ୍କ୍ ଜରିଆରେ ପଠାଇ ଗିରିଧାରୀ ସାମନ୍ତଙ୍କ ଉପରେ ୪,୦୦୦ ଟଙ୍କା ସକାଶେ ୧ମାସ ମିଆଦରେ ପ୍ରସ୍ତୁତ ହୋଇଥିବା ଏକ ହୁଣ୍ଡି କାଟିଲେ । ଏହି ହୁଣ୍ଡିଟି ଅପ୍ରେଲ ୧୦ ତାରିଖରେ ସ୍ୱୀକୃତ ହୋଇ ଫେରିବାରୁ ରମେଶ୍ୱର ଲାଲ ତାହାକୁ ନିଜ ବ୍ୟାଙ୍କ୍‌ରେ ୩,୯୮୦ ଟଙ୍କାରେ ଭଙ୍ଗାଇଲେ । ଏହି ହୁଣ୍ଡିଟି ଯଥା ସମୟରେ ସମ୍ମାନିତ ହୋଇଥିଲା ।

ଗିରିଧାରୀ ସାମନ୍ତ ଜୁନ୍ ୧ ତାରିଖରେ ବିକ୍ରୟ ବିବରଣ ପଠାଇଲେ । ସେଥିରେ ସେ ଜଣାଇଲେ ଯେ ୩୦ ଗାଣ୍ଠି କପଡ଼ା ପ୍ରତି ଗାଣ୍ଠି ୨୮୦ ଟଙ୍କା ଦରରେ ଓ ୧୫ ଗାଣ୍ଠି ପ୍ରତି ଗାଣ୍ଠି ୨୭୦ ଟଙ୍କା ଦରରେ ବିକ୍ରୀତ ହୋଇଛି ଓ ୫ ଗାଣ୍ଠି କପଡ଼ା ଅବିକ୍ରୀତ ହେଉଛି । ଏହି ବିକ୍ରୟ ସମ୍ପର୍କରେ ସେ ୩୦୦ ଟଙ୍କା ବ୍ୟୟ କରିଛନ୍ତି । ସେ ବିକ୍ରୟ ଲବ୍ଧ ଅର୍ଥ ଉପରେ ଶତକଡ଼ା ୮ ହାରରେ ତାଙ୍କର କମିସନ ଓ ସେ କରିଥିବା ଖର୍ଚ୍ଚ ବାଦ୍ ଦେଇ ବଳକା ଅର୍ଥ ସକାଶେ ଏକ ବ୍ୟାଙ୍କ୍ ଡ୍ରାଫ୍ଟ ବିକ୍ରୟ ବିବରଣ ସହିତ ପଠାଇଲେ ।

ଜୁନ୍ ୧୨ ତାରିଖରେ ସେ ପୁଣି ଜଣାଇଲେ ଯେ ୫ଟି ଅବିକ୍ରୀତ ଗାଣ୍ଠି ମଧ୍ୟରୁ ଗୋଟିଏ ଗାଣ୍ଠି କପଡ଼ା ଉତ୍ତମ ଭାବରେ ସଂରକ୍ଷିତ ନ ହୋଇ ଥିବାରୁ ସେ କପଡ଼ାର ରଙ୍ଗ ଉଠି ଯାଇଛି ଓ ତାହାର ବଜାର ଦର ୧୫୦ ଟଙ୍କାରୁ ଅଧିକ ହେବ ନାହିଁ । ଉଭୟ ବ୍ୟବସାୟୀ ତାଙ୍କର ବାର୍ଷିକ ହିସାବ ଜୁନ୍ ୩୦ ତାରିଖରେ ବନ୍ଦ କରନ୍ତି ।

ପ୍ରେରକ ଓ ପ୍ରାପକ ଉଭୟଙ୍କ ବହିରେ ଖତିୟାନ ହିସାବ ପ୍ରସ୍ତୁତ କର ।

( ଉତ୍ତର : ଲାଭ, ୧,୫୦୨ ଟଙ୍କା, ଅସ୍ୱାଭାବିକ କ୍ଷତି ୨୦ ଟଙ୍କା ଓ ଗିରିଧାରୀ ସାମନ୍ତ ପଠାଇ ଥିବା ବ୍ୟାଙ୍କ୍ ଡ୍ରାଫ୍‌ଟର ପରିମାଣ ୬,୭୭୨ ଟଙ୍କା )

୫ । କାଳନାର କୁଞ୍ଜଲାଲ ୧୯୬୮ ସାଲ ଜାନୁୟାରୀ ୧ ତାରିଖରେ ମରୁଙ୍ଗାର ମହୀତୋଷଙ୍କ ନିକଟକୁ ୬୦୦ ସିଲାଇ ମେସିନ ଚାଲାଣ ସ୍ୱରୂପ ପଠାଇଲେ । ପ୍ରତି ସିଲାଇ ମେସିନର କ୍ରୟ ମୂଲ୍ୟ ୩୫୦ ଟଙ୍କା । କୁଞ୍ଜଲାଲ ଏହି ଚାଲାଣୀ ମାଲ ପଠାଇବା ନିମନ୍ତେ ପରିବହନ ଖର୍ଚ୍ଚ ବାବଦ ୧,୬୦୦ ଟଙ୍କା ଓ ବୀମା ବାବଦ ୩୯୦ ଟଙ୍କା ବ୍ୟୟ କଲେ । ଚାଲାଣୀ ମାଲ ମରୁଙ୍ଗାରେ ପହଞ୍ଚିଲା ପରେ ମହୀତୋଷ ଏହି ଚାଲାଣୀ ମାଲ ସମ୍ବନ୍ଧରେ ବିଭିନ୍ନ ହିସାବ ବାବଦ ୧,୫୦୦ ଟଙ୍କା ବ୍ୟୟ କଲେ । ଚାଲାଣ ପ୍ରେରକ ୪୦,୦୦୦ ଟଙ୍କା ସକାଶେ କୁଞ୍ଜଲାଲଙ୍କ ନିକଟକୁ ଏକ ଦର୍ଶନୀ ହୁଣ୍ଡି ପ୍ରେରଣ କଲେ । ଏହି ସିଲାଇ ମେସିନଗୁଡ଼ିକ ୫୦୦ ଟଙ୍କା ଦରରେ ବିକ୍ରୀତ ହେଲା । ଜଣେ ଗ୍ରାହକ, ଯେ କି ପାଞ୍ଚ ଗୋଟି ସିଲାଇ ମେସିନ ଉଧାରରେ କ୍ରୟ କରିଥିଲେ, ସେ କେଉଁଆଡ଼େ ଫେରାର ହୋଇ ଯିବାରୁ ତାଙ୍କଠାରୁ ଏଥି ବାବଦ ଟଙ୍କା ଆଦାୟ ହୋଇ ପାରିଲା ନାହିଁ ଓ ଏହା ଅନାଦାୟୀ ଋଣ ରୂପେ ବିବେଚିତ ହେଲା । ପ୍ରାପକ ୧୯୬୮ ସାଲ ନଭେମ୍ବର ୩୦ ତାରିଖରେ ବିକ୍ରୟ ବିବରଣ ପଠାଇଲେ । ସେଥିରୁ ଜଣାଗଲା ଯେ ସେ ୧୦% ହାରରେ ସାଧାରଣ କମିସନ୍ ଓ ୭ ୧/୨% ହାରରେ ଝୁଙ୍କି ବାହକ କମିସନ କାଟି ନେଇଛନ୍ତି ।

କୁଞ୍ଜ ଲାଲଙ୍କ ହିସାବ ବହିରେ (କ) ମରୁଙ୍ଗା ଚାଲାଣୀ ହିସାବ (ଖ) ମହୀତୋଷଙ୍କର ବ୍ୟକ୍ତିଗତ ହିସାବ ଓ (ଗ) ଚାଲାଣ ଯାଇଥିବା ପଣ୍ୟ ହିସାବ ପ୍ରସ୍ତୁତ କର ।

( ଉତ୍ତର—ଲାଭ, ୯,୪୧୦ ଟଙ୍କା; ମହୀତୋଷଙ୍କ ଠାରୁ କୁଞ୍ଜ ଲାଲଙ୍କୁ ଦେୟ, ୪୧,୦୦୦ ଟଙ୍କା )

୬ । କୈଳାଶଚନ୍ଦ୍ର ନିଜ ଦାୟିତ୍ୱରେ ବିକ୍ରୟ କରିବା ନିମନ୍ତେ ୪୦ ପେଟି ପଣ୍ୟ ମହିମା ଙ୍କେରକୁ ଚାଲାଣ କଲେ । ପ୍ରତି ପେଟିର କ୍ରୟ ମୂଲ୍ୟ ୩,୦୦୦ ଟଙ୍କା ଥିଲା । ଏହି ଚାଲାଣୀ ପଣ୍ୟ ପ୍ରେରଣ କରିବା ନିମନ୍ତେ କୈଳାଶ ଚନ୍ଦ୍ର ନିମ୍ନଲିଖିତ ଖର୍ଚ୍ଚମାନ କଲେ :

| | | ଟଙ୍କା |
|---|---|---|
| ଗାଡ଼ିଭଡ଼ା | | ୩୦୦ |
| କୁଲି ଖର୍ଚ୍ଚ | ... | ୧୨୦ |
| ରେଳ ଭଡ଼ା | .... | ୨,୦୦୦ |
| ବୀମା | .... | ୧,୧୬୦ |
| | | ୩,୫୮୦ |

ଏହି ପଣ୍ୟ ପହଞ୍ଚିଲା ପରେ ମହିମା ଶଙ୍କର ପଣ୍ୟ ଛଡ଼ାଇବା ନିମନ୍ତେ ୧୮୦ ଟଙ୍କା, ଗାଡ଼ିଭଡ଼ା ବାବଦ ୨୪୦ ଟଙ୍କା ବ୍ୟୟ କଲେ । ପାଞ୍ଚ ଗୋଟି ପେଟି ରେଳରେ ଅଗ୍ନିକାଣ୍ଡ ହେତୁ ବିନଷ୍ଟ ହୋଇଥିଲା ଓ ବୀମା କମ୍ପାନୀରୁ କ୍ଷତି ପୂରଣ ବାବଦ ୧୨,୦୦୦ ଟଙ୍କା ମିଳିଲା ।

ଅବଶିଷ୍ଟ ୩୫ ପେଟି ମଧ୍ୟରୁ ୩୦ ପେଟି ପଣ୍ୟ ପ୍ରତି ପେଟି ୪,୦୦୦ ଟଙ୍କା ଦରରେ ବିକ୍ରୀତ ହେଲା । ମହିମାଶଙ୍କର ଗୋଦାମ ଭଡ଼ା ବାବଦ ୪୦୦ ଟଙ୍କା ଓ ବିକ୍ରୟକାରୀଙ୍କ ପାରିଶ୍ରମିକ ବାବଦ ୫୦୦ ଟଙ୍କା ବ୍ୟୟ କଲେ । ସେ ୬% ହାରରେ କମିସନ ପାଇବେ ବୋଲି ପୂର୍ବରୁ ଚୁକ୍ତି ହୋଇଛି । ସେ ଏ ସମସ୍ତ ବିଷୟ ବିକ୍ରୟ ବିବରଣୀରେ ପ୍ରକାଶ କରିଥିଲେ । ତାଙ୍କର ସମସ୍ତ ପ୍ରାପ୍ୟ ବାଦ୍ ଦେଇ ସେ ବଳକା ଦେୟ ଟଙ୍କା ବ୍ୟାଙ୍କ୍ ଡ୍ରାଫ୍ଟ ଆକାରରେ କୈଳାଶ ଚନ୍ଦ୍ରଙ୍କ ନିକଟକୁ ବିକ୍ରୟ ବିବରଣ ସହିତ ପ୍ରେରଣ କଲେ ।

ପ୍ରେରକଙ୍କ ବହିରେ ଚାଲାଣୀ ହିସାବ ଓ ପ୍ରାପକଙ୍କର ବ୍ୟକ୍ତିକ ହିସାବ ପ୍ରସ୍ତୁତ କର ଓ ଅସ୍ୱାଭାବିକ କ୍ଷତିର ପରିମାଣ ନିର୍ଣ୍ଣୟ କର ।

( ଉତ୍ତର—ଚାଲାଣୀ କାରବାରରେ ଲାଭ ୧୮,୮୫୫ ଟଙ୍କା, ଅସ୍ୱାଭାବିକ କ୍ଷତି ୧୫,୪୪୭.୫୦ ଟଙ୍କା ଅବିକ୍ରୀତ ମହଜୁଦ୍ ପଣ୍ୟ ୧୫,୫୦୭.୫୦ ଟଙ୍କା ଓ ମହିମା ଶଙ୍କର ପଠାଇଥିବା ବ୍ୟାଙ୍କ୍ ଡ୍ରାଫ୍ଟର ପରିମାଣ ୧,୧୧,୪୮୦ ଟଙ୍କା । )

୬ । ୧୯୫୯ ମସିହା ଜାନୁଆରୀ ୧ ତାରିଖରେ କଲିକତାର ଲିଲା ଏଣ୍ଡ କୋ: ୧୦୦ ପେଟି ଗୁଣ୍ଡ ଦୁଗ୍ଧ ବମ୍ବାଇର ଶିଲା ଏଣ୍ଡ କୋ: ଙ୍କ ନିକଟକୁ ଚାଲାଣ କଲେ । ପ୍ରୋ ଫର୍ମା ଚାଲାଣରେ ଏହାର ମୂଲ୍ୟ ୧୦,୦୦୦ ଟଙ୍କା ଦର୍ଶା ଯାଇଥିଲା । ଏହି ମୂଲ୍ୟରେ ଶତକଡ଼ା ୨୫ ହାରରେ ଲାଭ ଅନ୍ତର୍ଭୁକ୍ତ ଥିଲା । ସେହି ତାରିଖରେ ପ୍ରେରକମାନେ ପରିବହନ ଓ ବୀମା ବାବଦ ୬୮୦ ଟଙ୍କା ବ୍ୟୟ କଲେ । ଜୁଲାଇ ୧ ତାରିଖରେ ପ୍ରାପକମାନେ ଆମଦାନି ଶୁଳ୍କ ବାବଦ ୧,୦୦୦ ଟଙ୍କା

ବ୍ୟୟ କଲେ । ଏହା ବ୍ୟତୀତ ସେମାନେ ବନ୍ଦର ମାସୁଲ ବାବଦ ୨୦୦ ଟଙ୍କା ମଧ୍ୟ ବ୍ୟୟ କଲେ । ସେହି ତାରିଖରେ ସେମାନେ ପ୍ରେରକଙ୍କ ନିକଟକୁ ଅଗ୍ରିମ ସ୍ୱରୂପ ୪,୦୦୦ ଟଙ୍କାର ଏକ ବ୍ୟାଙ୍କ୍ ଡ୍ରାଫ୍ଟ ପଠାଇଲେ । ଅଗଷ୍ଟ ୧ ତାରିଖରେ ସେମାନେ ୧୦,୫୦୦ ଟଙ୍କା ମୂଲ୍ୟରେ ୮୦ ପେଟି ପଣ୍ୟ ବିକ୍ରୟ କରି ବିକ୍ରୟଲବ୍ଧ ଅର୍ଥ ଉପରେ ୫% ହାରରେ କମିସନ ଓ ଅନ୍ୟାନ୍ୟ ଖର୍ଚ୍ଚ ବାଦେ ବାକି ଦେୟ ଟଙ୍କା ପ୍ରେରକଙ୍କୁ ପଠାଇଲେ ।

ପ୍ରେରକଙ୍କ ବହିରେ ଖତିୟାନ ହିସାବ ପ୍ରସ୍ତୁତ କର ।

( ଉତ୍ତର—ଚାଲାଣୀ କାରବାରର ଲାଭ ୨,୫୩୫ ଟଙ୍କା; ଅବିକ୍ରୀତ ପଣ୍ୟର ମୂଲ୍ୟ ୨,୩୬୦ ଟଙ୍କା ପ୍ରାପକ ଶେଷରେ ପଠାଇଥିବା ଅର୍ଥର ପରିମାଣ ୫,୭୭୫ ଟଙ୍କା । )

୮ । କଲିକତାର ଭବାନୀ ମିଲସ୍ ଲିମିଟେଡ୍ କଟକର ବଦ୍ରୀନାରାୟଣଙ୍କ ନିକଟକୁ ୮,୦୦୦ ଟଙ୍କା ମୂଲ୍ୟର ଛିଟ କପଡ଼ା ତାଙ୍କ ଦାୟିତ୍ୱରେ ବିକ୍ରୟ କରିବା ନିମନ୍ତେ ଚାଲାଣ ପଠାଇଲେ ଓ ଉକ୍ତ ପରିମାଣ ଟଙ୍କା ସକାଶେ ଏକ ମାସ ମିଆଦରେ ବଦ୍ରୀନାରାୟଣଙ୍କ ଉପରେ ଏକ ହୁଣ୍ଡି କାଟିଲେ ।

ସେମାନେ ଚାଲାଣୀ ପଣ୍ୟ ପ୍ରେରଣ କରିବା ନିମନ୍ତେ ୫୨୫ ଟଙ୍କା ଖର୍ଚ୍ଚ କଲେ । ହୁଣ୍ଡିଟି ସ୍ୱୀକୃତ ହୋଇ ଆସିଲା ପରେ ସେମାନେ ତାହାକୁ ୧୫୦ ଟଙ୍କା ବଟାରେ ନିଜ ବ୍ୟାଙ୍କ୍‌ରେ ଭଙ୍ଗାଇଲେ । ଏହି ନେଣ ଦେଣଗୁଡ଼ିକ କମ୍ପାନୀ ହିସାବ ବହିରେ କିପରି ଲିପିବଦ୍ଧ ହେବ ? ଏହା ନିମନ୍ତେ ଆବଶ୍ୟକ ଜାବେଦା ପ୍ରସ୍ତୁତ କରି ତାହା ଖତିୟାନ ହିସାବରେ ଲିପିବଦ୍ଧ କର ।

ପଣ୍ୟଗୁଡ଼ିକ କଟକରେ ବିକ୍ରୀତ ହେଲା ଏବଂ ଯଥା ସମୟରେ କମ୍ପାନୀ ନିମ୍ନଲିଖିତ ବିକ୍ରୟ ବିବରଣୀ ପାଇଲେ :

କଲିକତାର ଭବାନୀ ମିଲସ୍ ଲିମିଟେଡ୍‌ଙ୍କ ଠାରୁ ପ୍ରାପ୍ତ ୧୦୦ ବେଲ୍ ଛିଟ କପଡ଼ାର ବିକ୍ରୟ ବିବରଣୀ ।

| | | ଟଙ୍କା |
|---|---|---|
| ପ୍ରତି ବେଲ ୧୦୦ ଟଙ୍କା ଦରରେ ୧୦୦ ବେଲ | | ୧୦,୦୦୦ |
| ବାଦ୍ ଖର୍ଚ୍ଚ | ଟଙ୍କା | |
| କୁଲି ଖର୍ଚ୍ଚ ଓ ଗାଡ଼ିଭଡ଼ା | ୩୦୦ | |
| ଗୋଦାମ ଭଡ଼ା | ୫୦ | |
| ବୀମା | ୬୦ | |

| | | |
|---|---|---|
| ବିବିଧ ଖର୍ଚ୍ଚ | ୩୦ | |
| କମିସନ | ୫୦୦ | ୯୪୦ |
| | | ୯,୦୨୦ |
| ଅଗ୍ରିମ ପ୍ରଦତ୍ତ (ହୁଣ୍ଡି ବାବଦ) | | ୮,୦୦୦ |
| ବାକି ଦେୟ ଅର୍ଥ ସକାଶେ ସଂଲଗ୍ନ ବ୍ୟାଙ୍କ୍ ଡ୍ରାଫ୍ଟ | | ୧,୦୨୦ |

ଏହି ବିବରଣୀ ଗୁଡ଼ିକ ମଧ୍ୟ କଲିକତା କମ୍ପାନୀ ବହିରେ ଲିପିବଦ୍ଧ କରି ଚାଲାଣୀ କାରବାରର ଲାଭ ବା କ୍ଷତି ନିର୍ଣ୍ଣୟ କର ।

( ଉତ୍ତର—ଚାଲଣୀ କାରବାରରେ ଲାଭ, ୫୩୫ ଟଙ୍କା । )

୯ । ପ୍ରତି କିଲୋ ୮ ଟଙ୍କା ଦରରେ ୧,୦୦,୦୦୦ କିଲୋ ଚା ୧୯୬୨ ମସିହା ଜାନୁୟାରି ୧ ତାରିଖରେ ଜଣେ ଏଜେଣ୍ଟଙ୍କ ନିକଟକୁ ୫% କମିସନରେ ବିକ୍ରୟ କରିବା ସକାଶେ ଚାଲାଣ କରାଗଲା । ନିମ୍ନଲିଖିତ ଅର୍ଥ ବ୍ୟୟିତ ହେଲା :

(କ) ପ୍ରେରକଙ୍କ ଦ୍ଵାରା— ଟଙ୍କା

| | | |
|---|---|---|
| ପରିବହନ ଓ ବୀମା | | ୨,୦୦୦ |
| ବନ୍ଦର ମାସୁଲ ଓ ବିବିଧ ବ୍ୟୟ | | ୮୦୦ |

(ଖ) ପ୍ରାପକଙ୍କ ଦ୍ଵାରା—

| | | |
|---|---|---|
| ଗୋଦାମ ଭଡ଼ା ଓ ବୀମା | .... | ୮୦୦ |
| ବିବିଧ ବ୍ୟୟ | ... | ୧,୪୦୦ |

୨,୦୦୦ କିଲୋ ଓଜନର ଚା ଭର୍ତ୍ତି ପେଟି ପଥରେ ବିନଷ୍ଟ ହୋଇଗଲା ଏବଂ ପଣ୍ୟ ଖଲାସ କରିବା ପରେ ଏହା ବିକ୍ରୀର ଅଯୋଗ୍ୟ ବୋଲି ଦେଖାଗଲା । ପ୍ରତି କିଲୋ ୧୦ ଟଙ୍କା ଦରରେ ୬୦,୦୦୦ କିଲୋ ଚା ବିକ୍ରୀତ ହେଲା ଓ ୧୯୬୨ ମସିହା ଜୁନ୍ ୩୦ ତାରିଖରେ ଯେତେବେଳେ ବାର୍ଷିକ ହିସାବ ବନ୍ଦ କରାଯାଏ ସେତେବେଳେ ଅବଶିଷ୍ଟ ଚା ପେଟିରେ ବନ୍ଦ ଅବସ୍ଥାରେ ଅବିକ୍ରୀତ ରହିଲା ।

ପ୍ରେରକଙ୍କ ବହିରେ ଚା ଚାଲଣୀ ହିସାବ ଓ ପ୍ରାପକଙ୍କ ବ୍ୟକ୍ତିକ ହିସାବ ପ୍ରସ୍ତୁତ କରି ତହିଁରେ ୧୯୬୨ ମସିହା ଜୁନ୍ ୩୦ ତାରିଖରେ ଯେତେବେଳେ ବାର୍ଷିକ ହିସାବ ବନ୍ଦ ହେଲା ସେତେବେଳେ ପ୍ରାପକଙ୍କର ପ୍ରେରକଙ୍କୁ ଦେୟ ଅର୍ଥ କେତେ ଥିଲା ତାହା ଦର୍ଶାଅ ।

( ଉତ୍ତର—ଚାଲଣୀ କାରବାରରେ ଲାଭ ୧,୦୦,୮୪୦ ଟଙ୍କା, ପ୍ରାପକଙ୍କ ଠାରୁ ପ୍ରାପ୍ୟ ପରିମାଣ ୨,୨୨,୮୦୦ ଟଙ୍କା । )

୧୦ । ଅହମଦାବାଦ୍‌ର ଡ୍ୟୁରେବଲ କଟନ୍ ମିଲ କଟକର କାଦମ୍ବିନୀ ଏଜେଣ୍ଟଙ୍କୁ ନିୟମିତ ଭାବରେ ଜିନ୍ କପଡ଼ା ମିଲ ତରଫରୁ ଓ ମିଲ ଦାୟିତ୍ୱରେ ବିକ୍ରୟ କରିବା ନିମନ୍ତେ ଚାଲାଣ ପଠାନ୍ତି ।

ନିମ୍ନଲିଖିତ ନେଣ ଦେଣଗୁଡ଼ିକ ମିଲର ହିସାବ ବହିରେ କିପରି ଲିପିବଦ୍ଧ କରାଯିବ ତାହା ଦର୍ଶାଅ । କଟକର ଏଜେଣ୍ଟ (କାଦମ୍ବିନୀ) ବିକ୍ରୀତ ମିଟର ପ୍ରତି ୭୦ ପଇସା ହାରରେ କମିଶନ ପାଆନ୍ତି ।

ବର୍ଷ ଆରମ୍ଭରେ ଏଜେଣ୍ଟଙ୍କଠାରେ ୮୧୦ ମିଟର କପଡ଼ା ମହଜୁଦ୍ ଥିଲା । ଏହାର ଉତ୍ପାଦନ ମୂଲ୍ୟ ୧୦,୭୮୦ ଟଙ୍କା । ପ୍ରତି ମିଟର ୧୨ ଟଙ୍କା ଦରରେ ବର୍ଷ ମଧ୍ୟରେ ୪,୨୦୦ ମିଟର କପଡ଼ା ଏଜେଣ୍ଟଙ୍କ ନିକଟକୁ ପ୍ରେରିତ ହୋଇଥିଲା । ବର୍ଷ ମଧ୍ୟରେ ପ୍ରତି ମିଟର ୧୭ ଟଙ୍କା ଦରରେ ୪,୪୦୦ ମିଟର କପଡ଼ା ବିକ୍ରୀତ ହୋଇଥିଲା ।

ଏଜେଣ୍ଟ ମିଲ୍‌କୁ ବର୍ଷ ମଧ୍ୟରେ ୫୦,୦୦୦ ଟଙ୍କା ପଠାଇଥିଲେ । ଏଜେଣ୍ଟ ପରିବହନ ଓ ଅନ୍ୟାନ୍ୟ ଖର୍ଚ୍ଚ ବାବଦ ୮,୮୦୦ ଟଙ୍କା ବ୍ୟୟ କରିଥିଲେ ।

ଏହି ଚାଲାଣୀ କାରବାରରେ ମିଲର କେତେ ଲାଭ ହେଲା ଓ ମିଲ ଏଜେଣ୍ଟଙ୍କ ଠାରୁ କେତେ ଟଙ୍କା ପାଇବେ ତାହା ନିର୍ଣ୍ଣୟ କର ।

( ଉତ୍ତର—ଚାଲାଣୀ କାରବାରର ଲାଭ, ୧୦,୧୨୦ ଟଙ୍କା ଓ ଏଜେଣ୍ଟଙ୍କ ଠାରୁ ପ୍ରାପ୍ୟ, ଅବିକ୍ରୀତ ପଣ୍ୟ ବାଦେ ୧୧,୮୮୦ ଟଙ୍କା । )

## ଯୌଥ ଉଦଯୋଗ –

୧୧ । ମାୟାଧର ଓ ସୁମନ୍ତ ଗୋଟିଏ ଯୌଥ ଉଦ୍‌ଯୋଗ କାରବାରରେ ଯଥାକ୍ରମେ ୩/୫ ଓ ୨/୫ ଅଂଶର ଅଂଶୀଦାର ଥିଲେ । ମାୟାଧର ୬,୦୦୦ ଟଙ୍କା ମୂଲ୍ୟର ପଣ୍ୟ ଯୋଗାଇଲେ ଏବଂ ଏଥି ସକାଶେ ତାଙ୍କର ୩୫୦ ଟଙ୍କା ଆନୁଷଙ୍ଗିକ ଖର୍ଚ୍ଚ ହେଲା । ସୁମନ୍ତ ୪,୦୦୦ ଟଙ୍କାର ପଣ୍ୟ ଯୋଗାଇଲେ ଓ ପରିବହନ ଆଦି ଆନୁଷଙ୍ଗିକ ଖର୍ଚ୍ଚ ବାବଦ ୨୫୦ ଟଙ୍କା ବ୍ୟୟ କଲେ । ସୁମନ୍ତ ସମସ୍ତ ପଣ୍ୟ ୧୪,୩୦୦ ଟଙ୍କାରେ ବିକ୍ରୟ କଲେ । ସେ ବିକ୍ରୟ ଲବ୍ଧ ଅର୍ଥ ଉପରେ ୫% ହାରରେ କମିଶନ ପାଇବେ । ସୁମନ୍ତ ବ୍ୟାଙ୍କ୍ ଡ୍ରାଫ୍ଟ ଜରିଆରେ ତାଙ୍କର ହିସାବ ନିକାଶ କଲେ ।

ଉଭୟ ପକ୍ଷଙ୍କ ହିସାବ ବହିରେ ଉପରୋକ୍ତ ନେଣ ଦେଣଗୁଡ଼ିକ ଲିପିବଦ୍ଧ କର ।

( ଉତ୍ତର—ଯୌଥ ଉଦ୍‌ଯୋଗର ଲାଭ ୨,୮୮୫ ଟଙ୍କା ; ମାୟାଧରଙ୍କର ଅଂଶ ୧,୬୯୧ ଟଙ୍କା ଓ ସୁମନ୍ତଙ୍କର ଅଂଶ ୧,୧୯୪ ଟଙ୍କା । ସୁମନ୍ତ ମାୟାଧରଙ୍କ ନିକଟକୁ କାରବାର ଅବସାନରେ ୮,୧୪୧ ଟଙ୍କା ପଠାଇଲେ । )

୧୨ । ସ୍ୱରୂପ ଓ ଦଳପ ଏକ ଯୌଥ ଉଦ୍‌ଯୋଗ କାରବାର ଆରମ୍ଭ କଲେ । ସେମାନେ ଲାଭର ଯଥାକ୍ରମେ ୭୫% ଓ ୨୫% ଭାଗ କରି ନେବାକୁ ସ୍ୱୀକୃତ ହେଲେ । ୧୯୭୩ ମସିହା ଜାନୁୟାରୀ ୧ ତାରିଖରେ ସ୍ୱରୂପ ଦଳପଙ୍କ ନିକଟକୁ ୮,୦୦୦ ଟଙ୍କା ପଠାଇଲେ । ଦଳପ ସେହି ଟଙ୍କାରେ ନିମ୍ନଲିଖିତ ପଣ୍ୟ କ୍ରୟ କରି ସ୍ୱରୂପଙ୍କ ନିକଟକୁ ପ୍ରେରଣ କଲେ । କ୍ରୟର ବିଶଦ ବିବରଣୀ ନିମ୍ନରେ ପ୍ରଦତ୍ତ ହେଲା ।

ପ୍ରତି ବନାରସୀ ସିଲ୍‌କ ଶାଢ଼ୀ ୧୫୦ ଟଙ୍କା ଦରରେ ୩୦ ଖଣ୍ଡ ବନାରସୀ ଶାଢ଼ୀ, ପ୍ରତି ସିଲ୍‌କ ପଞ୍ଜାବୀ ୫୦ ଟଙ୍କା ଦରରେ ୪୦ ଖଣ୍ଡ ଓ ପ୍ରତି ଖଣ୍ଡ ୩୦ ଟଙ୍କା ଦରରେ ୫୦ ଖଣ୍ଡ ସିଲ୍‌କ ସାର୍ଟ କ୍ରୟ କରି ସ୍ୱରୂପଙ୍କ ନିକଟକୁ ପଠାଇଲେ । ସେ ଆନୁଷଙ୍ଗିକ ଖର୍ଚ୍ଚ ବାବଦ ୨୦୦ ଟଙ୍କା ବ୍ୟୟ କଲେ ।

ସ୍ୱରୂପ ପ୍ରତି ଶାଢ଼ୀ ୨୦୦ ଟଙ୍କା, ପ୍ରତି ପଞ୍ଜାବୀ ୬୦ ଟଙ୍କା ଓ ପ୍ରତି ସାର୍ଟ ୪୫ ଟଙ୍କା ଦରରେ ବିକ୍ରୟ କଲେ । ଏଥିସକାଶେ ସେ ୫୦୦ ଟଙ୍କା ବ୍ୟୟ କଲେ ।

ଯୌଥ ଉଦ୍‌ଯୋଗ ହିସାବ ପ୍ରସ୍ତୁତ କରି ଏହି କାରବାରର ଲାଭ ବା କ୍ଷତି ଓ ଏଥିରେ ଅଂଶଗ୍ରହଣକାରୀଙ୍କର ଅଂଶ ନିର୍ଣ୍ଣୟ କର ।

( ଉତ୍ତର—ଲାଭ ୨,୩୫୦ ଟଙ୍କା, ସ୍ୱରୂପଙ୍କ ଅଂଶ ୧,୭୬୩ ଟଙ୍କା ଓ ଦଳପଙ୍କର ଅଂଶ ୫୮୭ ଟଙ୍କା । )

୧୩ । M ଓ N ପୁରାତନ ମଟର ଗାଡ଼ି କ୍ରୟ କରି ବିକ୍ରୟ କରିବା ଉଦ୍ଦେଶ୍ୟରେ ଏକ ଯୌଥ ଉଦ୍‌ଯୋଗ କାରବାର ଆରମ୍ଭ କରି ଲାଭ ଓ କ୍ଷତି ଯଥାକ୍ରମେ ୩, ୨ ଅନୁପାତରେ ଭୋଗ କରିବାକୁ ସ୍ଥିର କଲେ ।

୧୯୭୪ ମସିହା ଜାନୁୟାରୀ ୧୫ ତାରିଖରେ M ୪୩,୦୦୦ ଟଙ୍କା ମୂଲ୍ୟରେ ୫ଟି ପୁରାତନ ମଟର ଗାଡ଼ି କ୍ରୟ କରି ଜାନୁୟାରୀ ୨୦ ତାରିଖରେ କର ଓ ବୀମା ବାବଦ ୧,୬୦୦ ଟଙ୍କା ବ୍ୟୟ କଲେ । ୧୯୭୫ ମସିହା ଜାନୁୟାରୀ ୩୧ ତାରିଖରେ ସେ ଏହି ମଟର ଗାଡ଼ିଗୁଡ଼ିକ ୫୮,୦୦୦ ଟଙ୍କା ମୂଲ୍ୟରେ ବିକ୍ରୟ କଲେ ଓ Nଙ୍କୁ ୧୧,୦୦୦ ଟଙ୍କା ପଠାଇ ନିଜ ବ୍ୟାଙ୍କ ହିସାବରେ ଅବଶିଷ୍ଟ ଟଙ୍କା ଜମା କଲେ ।

୧୯୬୪ ମସିହା ଜାନୁସ୍ୱାରୀ ୧୫ ତାରଖରେ N ୩୬,୦୦୦ ଟଙ୍କା ମୂଲ୍ୟରେ ଉକ୍ତ ଗୋଟି ପୁରାତନ ମଟର ଗାଡ଼ି କ୍ରୟ କଲେ, ଓ ଜାନୁସ୍ୱାରୀ ୨୫ ତାରଖରେ ସେ କର ଓ ବୀମା ବାବଦ ୧,୪୦୦ ଟଙ୍କା ଓ ମରାମତ ବାବଦ ୨,୦୦୦ ଟଙ୍କା ବ୍ୟୟ କଲେ । ସେ ୧୯୬୪ ମସିହା ଫେବୃସ୍ୱାରୀ ୨ ତାରଖରେ ୧୪,୦୦୦ ଟଙ୍କା ମୂଲ୍ୟରେ ଗୋଟିଏ ମଟର ଗାଡ଼ି ବିକ୍ରୟ କଲେ । ସେ ଏହି ଟଙ୍କା ନିଜ ବ୍ୟାଙ୍କ୍ ହିସାବରେ ଜମା କଲେ । ତତ୍ପରେ M ଅବଶିଷ୍ଟ ଦୁଇଟି ମଟର ଗାଡ଼ି ୨୬,୦୦୦ ଟଙ୍କା ମୂଲ୍ୟରେ କ୍ରୟ କରି ନେଲେ ଓ ୧୯୬୪ ମସିହା ଫେବୃସ୍ୱାରୀ ୧୦ ତାରଖରେ ଯୌଥ ଉଦ୍‌ଯୋଗ କାରବାର ହିସାବ ବନ୍ଦ କରାଗଲା ।

Mଙ୍କ ହିସାବ ଖାତାରେ ବିବରଣୀ ଯୌଥ ଉଦ୍‌ଯୋଗ ହିସାବ ଓ Nଙ୍କ ସହିତ ଯୌଥ ଉଦ୍‌ଯୋଗ ହିସାବ ପ୍ରସ୍ତୁତ କର ।

( ଉତ୍ତର—ଯୌଥ ଉଦ୍‌ଯୋଗ କାରବାରର ଲାଭ Mଙ୍କ ଅଂଶ ୮,୪୦୦ ଟଙ୍କା ଓ Nଙ୍କର ଅଂଶ ୫,୬୦୦ ଟଙ୍କା । )

୧୪ । କୁମାରଙ୍କ ଓ କୁବେରଙ୍କ ଗୃହ ନିର୍ମାଣ କାର୍ଯ୍ୟରେ ଠିକାଦାର । ସେମାନେ ଗୋଟିଏ କମ୍ପାନୀ ସକାଶେ ୧,୨୦,୦୦୦ ଟଙ୍କା ମୂଲ୍ୟରେ ଗୋଟିଏ ଅଟ୍ଟାଳିକା ଯୌଥ ଉଦ୍‌ଯୋଗରେ ନିର୍ମାଣ କରିବା ସକାଶେ ସ୍ୱୀକୃତ ହେଲେ । ଏହି ୧,୨୦,୦୦୦ ଟଙ୍କା ମଧ୍ୟରୁ ୮୦,୦୦୦ ଟଙ୍କା ନଗଦ ଆକାରରେ ଏବଂ ଅବଶିଷ୍ଟ ୪୦,୦୦୦ ଟଙ୍କା ନୂତନ କମ୍ପାନୀର ପୂର୍ଣ୍ଣ ପ୍ରଦତ୍ତ ଅଂଶ ପତ୍ର ଆକାରରେ ମିଳିବ । ଉଭୟଙ୍କ ନାମରେ ଏକ ଯୁଗ୍ମ ବ୍ୟାଙ୍କ୍ ହିସାବ ଖୋଲାଗଲା ଓ ଏହି ହିସାବରେ ଜମା କରିବା ନିମନ୍ତେ କୁମାରଙ୍କ ୩୦,୦୦୦ ଟଙ୍କା ଓ କୁବେରଙ୍କ ୨୦,୦୦୦ ଟଙ୍କା ପ୍ରଦାନ କଲେ । ଲାଭ ବା କ୍ଷତିର କୁମାରଙ୍କ ୨/୩ ଅଂଶ ଓ କୁବେରଙ୍କ ୧/୩ ଅଂଶ ଭୋଗ କରିବେ ବୋଲି ସାବ୍ୟସ୍ତ ହେଲା ।

ସେମାନଙ୍କର ନେଣ ଦେଣଗୁଡ଼ିକ ନିମ୍ନରେ ପ୍ରଦତ୍ତ ହେଲା :

୮୦,୦୦୦ ଟଙ୍କା ମୂଲ୍ୟର ସାମଗ୍ରୀ କ୍ରୀତ ହେଲା, ମଜୁରି ବାବଦ ୩୨,୦୦୦ ଟଙ୍କା ଦିଆଗଲା । କୁମାରଙ୍କ ନିଜ ଗୋଦାମରୁ ୭,୦୦୦ ଟଙ୍କା ମୂଲ୍ୟର ସାମଗ୍ରୀ ଓ କୁବେରଙ୍କ ୫,୦୦୦ ଟଙ୍କା ମୂଲ୍ୟର ସାମଗ୍ରୀ ନିଜ ଗୋଦାମରୁ ଯୋଗାଇଲେ । ସ୍ଥପତି ବିଶାରଦଙ୍କ ପାରିଶ୍ରମିକ ବାବଦ କୁମାରଙ୍କ ୩,୦୦୦ ଟଙ୍କା ବ୍ୟୟ କଲେ ।

କୁମାରଙ୍କ ନୂତନ କମ୍ପାନୀର ସମସ୍ତ ଅଂଶ ୩୬,୦୦୦ ଟଙ୍କା ମୂଲ୍ୟରେ କ୍ରୟ କରିନେଲେ । କୁବେରଙ୍କ ସମସ୍ତ ବଳକା ସାମଗ୍ରୀ ୧୪,୦୦୦ ଟଙ୍କା ସ୍ୱୀକୃତ

ମୂଲ୍ୟରେ କ୍ରୟ କରିନେବା ପରେ ଯୌଥ ଉଦ୍‌ଯୋଗ ହିସାବ ବନ୍ଦ କରାଗଲା ।

ଠିକା କାର୍ଯ୍ୟ, ଯଥା ସମୟରେ ସମାପ୍ତ ହେଲା ଓ ସ୍ୱୀକୃତ ଅର୍ଥ ମଧ୍ୟ ମିଳିଲା ।

ଯୌଥ ଉଦ୍‌ଯୋଗ ହିସାବ, ଯୁଗ୍ମ ବ୍ୟାଙ୍କ ହିସାବ ଓ ଅଂଶଗ୍ରହଣକାରୀଙ୍କ ବ୍ୟକ୍ତିକ ହିସାବ ପ୍ରସ୍ତୁତ କର ।

( ଉତ୍ତର—ଯୌଥ କାରବାରର ମୋଟ ଲାଭ ୩,୦୦୦ ଟଙ୍କା, କୁମାରଙ୍କର ଅଂଶ ୨,୦୦୦ ଟଙ୍କା ଓ କୁବେରଙ୍କ ଅଂଶ । ୧,୦୦୦ ଟଙ୍କା, ବ୍ୟାଙ୍କ ହିସାବର ସମଷ୍ଟି ୧,୩୦,୦୦୦; ଚୂଡ଼ାନ୍ତ ପରିଶୋଧନ, କୁମାରଙ୍କ ୭,୦୦୦ ଟଙ୍କା ଓ କୁବେରଙ୍କ ୧୨,୦୦୦ ଟଙ୍କା । )

୧୫ । ଅଧିକାରୀ ଓ ବରାଟ୍ ଲୌହ ଓ ଇସ୍ପାତ ବ୍ୟବସାୟୀ ଏବଂ ପ୍ରତ୍ୟେକ ନିଜ ନିଜର ସ୍ୱତନ୍ତ୍ର ବ୍ୟବସାୟ ପରିଚାଳନା କରନ୍ତି । ମାତ୍ର ମଧ୍ୟେ ମଧ୍ୟେ ସେମାନେ ଯୌଥ ଉଦ୍‌ଯୋଗ ନେଣ ଦେଣରେ ଆବଦ୍ଧ ହୁଅନ୍ତି ଏବଂ ଲାଭ ଅଥବା କ୍ଷତି ସମାନ ଅଂଶରେ ବଣ୍ଟନ କରନ୍ତି । ସେମାନେ ନିଜ ନିଜ ବହିରେ ନେଣ ଦେଣଗୁଡ଼ିକ ଲିପିବଦ୍ଧ କରନ୍ତି ଓ ପ୍ରତ୍ୟେକେ ଅନ୍ୟକୁ ନିଜଦ୍ୱାରା ସମ୍ପାଦିତ ଯୌଥ ଉଦ୍‌ଯୋଗ ସମ୍ବନ୍ଧୀୟ କାରବାରର ବିବରଣୀ ପ୍ରଦାନ କରନ୍ତି ।

ନିମ୍ନଲିଖିତ ନେଣ ଦେଣଗୁଡ଼ିକ ୧୯୬୨ ମସିହାରେ ଲିପିବଦ୍ଧ କରାଯାଇ ଥିଲା ।

ଅଧିକାରୀ କେତେକ ଭଗ୍ନାବଶେଷ ୨୪,୮୦୦ ଟଙ୍କା ମୂଲ୍ୟରେ କ୍ରୟ କରିଥିଲେ ଓ ଏହି ପଣ୍ୟକୁ ଗୋଦାମରେ ରଖିବା ନିମନ୍ତେ ୫୦୦ ଟଙ୍କା ଖର୍ଚ୍ଚ କଲେ ।

ବରାଟ୍ ଏହାର କେତେକ ଅଂଶ ୨୮,୪୦୦ ଟଙ୍କା ମୂଲ୍ୟରେ ବିକ୍ରୟ କଲେ ଓ ଅଧିକାରୀ ଅବଶିଷ୍ଟ ପଣ୍ୟକୁ ୩,୦୦୦ ଟଙ୍କା ମୂଲ୍ୟରେ ବିକ୍ରୟ କଲେ ।

ବରାଟ ୬୨,୬୦୦ ଟଙ୍କା ମୂଲ୍ୟରେ ଇସ୍ପାତ କ୍ରୟ କଲେ ଓ ଏହାର ପରିବହନ ସକାଶେ ୧,୨୦୦ ଟଙ୍କା ବ୍ୟୟ କଲେ ।

ଅଧିକାରୀ ଏହି ଇସ୍ପାତର ଅର୍ଦ୍ଧେକାଂଶ ୧,୦୫,୦୦୦ ଟଙ୍କା ମୂଲ୍ୟରେ ବିକ୍ରୟ କଲେ ଏବଂ ଏଥି ସକାଶେ କମିସନ ବାବଦ ୧,୩୦୦ ଟଙ୍କା ବ୍ୟୟ କଲେ । ଅବଶିଷ୍ଟ ଇସ୍ପାତକୁ ବରାଟ୍ ୩୭,୧୮୦ ଟଙ୍କା ମୂଲ୍ୟରେ ନିଜ ବ୍ୟବସାୟ ସକାଶେ କ୍ରୟ କଲେ ।

ଯୌଥ ଉଦ୍‌ଯୋଗର ସାଧାରଣ ବ୍ୟୟ ବାବଦ ଅଧିକାରୀ ୪,୮୦୦ ଟଙ୍କା ଓ ବରାଟ୍ ୩,୨୦୦ ଟଙ୍କା ପାଇବେ ବୋଲି ପୂର୍ବରୁ ଚୁକ୍ତି ହୋଇଥିଲା ।

ଏହି ସମସ୍ତ ନେଇ ଦେବେଗୁଡ଼ିକ ସକାଶେ ଏକ ବିବରଣୀ ଯୌଥ ଉଦ୍‌ଯୋଗ ହିସାବ ପ୍ରସ୍ତୁତ କରି ତାହାର ଫଳାଫଳ ଦର୍ଶାଅ ଓ ସ୍ଥିତ ପକ୍ଷଙ୍କ ବହିରେ ଜାବ୍‌ଦା ପ୍ରସ୍ତୁତ କର ।

( ଉତ୍ତର—ଲାଭ, ଅଧିକାରୀ ୩୫,୦୪୦ ଟଙ୍କା; ବରାଟ୍ ୩୫,୦୪୦ ଟଙ୍କା; ଅଧିକାରୀଙ୍କଠାରୁ ବରାଟ୍‌ଙ୍କର ପ୍ରାପ୍ୟ ୪୧,୪୦୦ ଟଙ୍କା । )

୧୭ । ରେଙ୍ଗୁନର ମୂର୍ତ୍ତି ଓ ମାନ୍ଦ୍ରାଜର ରମନ୍ ରାଓ ଏକ ଯୌଥ ଉଦ୍‌ଯୋଗ କାରବାର ଖୋଲିବାକୁ ସ୍ୱୀକୃତ ହେଲେ । ରେଙ୍ଗୁନରୁ ଶାଗୁଆନ କାଠ ଆଣି ମାନ୍ଦ୍ରାଜରେ ବିକ୍ରୟ କରିବା ଓ ମାନ୍ଦ୍ରାଜରୁ ତନ୍ତ ଲୁଗା ନେଇ ରେଙ୍ଗୁନରେ ବିକ୍ରୟ କରିବା ଏହି ଯୌଥ ଉଦ୍‌ଯୋଗର ବ୍ୟବସାୟ ହେବ । ଉଭୟ ସମାନ ଅଂଶରେ ଲାଭ ଅଥବା କ୍ଷତି ଭୋଗ କରିବେ ବୋଲି ଚୁକ୍ତି ହେଲା । ଜାହାଜରେ ପଠାଯାଇଥିବା ପଣ୍ୟର ବିବରଣୀ ନିମ୍ନରେ ପ୍ରଦତ୍ତ ହେଲା :

ମୂର୍ତ୍ତି ପ୍ରତି ଟନ୍ ୪୫୦ ଟଙ୍କା ଦରରେ ୨୦୦ ଟନ୍ ଶାଗୁଆନ କାଠ ପ୍ରେରଣ କଲେ ଓ ପରିବହନ ବାବଦ ତାଙ୍କର ଖର୍ଚ୍ଚ କ୍ରୟ ମୂଲ୍ୟର ୪% ହୋଇଥିଲା । ଏହି ପଣ୍ୟ ମାନ୍ଦ୍ରାଜରେ ପହଞ୍ଚିବା ପରେ ପଣ୍ୟ ଖଲାସ କରିବା ସକାଶେ ୧%, ଗୋଦାମ ଭଡ଼ା ୨% ଏବଂ ବୀମା ବାବଦ ୧୦/୦ ବ୍ୟୟିତ ହେଲା । ଏହି ଶତକଡ଼ା ଗୁଡ଼ିକ କ୍ରୟ ମୂଲ୍ୟ ଉପରେ ହିସାବ କରାଯିବ ।

ସେହିପରି ରମନ୍ ରାଓ ମାନ୍ଦ୍ରାଜରୁ ୫୦ ବେଲ ଲୁଙ୍ଗି (ପ୍ରତ୍ୟେକରେ ୩୦୦ ଲୁଙ୍ଗି ଥିଲା, ଓ ପ୍ରତ୍ୟେକ ଲୁଙ୍ଗିର କ୍ରୟ ମୂଲ୍ୟ ୭ ଟଙ୍କା ଥିଲା), ଜାହାଜରେ ରେଙ୍ଗୁନ୍ ପଠାଇଲେ ଏବଂ ପରିବହନ ବ୍ୟୟ ବାବଦ କ୍ରୟ ମୂଲ୍ୟର ୨୦/୦ ଖର୍ଚ୍ଚ କଲେ । ରେଙ୍ଗୁନରେ ଗୋଦାମ ଭଡ଼ା ବାବଦ କ୍ରୟ ମୂଲ୍ୟର ୧ ୧/୨୦/୦ ଓ ବୀମା ବାବଦ ୧୦/୦ ଖର୍ଚ୍ଚ ହେଲା ।

ମାନ୍ଦ୍ରାଜରେ ଶାଗୁଆନ କାଠ ପ୍ରତି ଟନ୍ ୨୫୦ ଟଙ୍କା ଦରରେ ୧୮୦ ଟନ୍ ବିକ୍ରୀତ ହେଲା ଓ ଅବଶିଷ୍ଟ ଶାଗୁଆନ କାଠ ମାନ୍ଦ୍ରାଜରେ ପହଞ୍ଚିବା ପରିବ୍ୟୟ ସମେତ କ୍ରୟ ମୂଲ୍ୟରେ ତତ୍ ଅନୁଯାୟୀ ରମନ ରାଓ କ୍ରୟ କରିନେଲେ ।

ରେଙ୍ଗୁନରେ ୪୮ ବେଲ ଲୁଙ୍ଗି ପ୍ରତି ଖଣ୍ଡ ୧୦ ଟଙ୍କା ଦରରେ ବିକ୍ରୀତ ହେଲା । ଅବଶିଷ୍ଟ ୨ ବେଲ ଲୁଙ୍ଗି ଜାହାଜରେ ଆସିବା ବେଳେ ଲୁଣ୍ଠି ପବନ

ଯୋଗୁଁ ନଷ୍ଟ ହୋଇ ଯାଇଥିଲା ଏବଂ ସେଗୁଡ଼ିକ ବୀମା କମ୍ପାନୀରେ ଜମା ହେବାରୁ ବୀମା କମ୍ପାନୀ ଠାରୁ ୩,୦୦୦ ଟଙ୍କା କ୍ଷତି ପୂରଣ ମିଳିଲା ।

ପ୍ରତି ପକ୍ଷ ଚୁକ୍ତି ବନ୍ଧନ ବାବଦ ବିକ୍ରୟ ଲବ୍ଧ ଅର୍ଥ ଉପରେ ୩୦/୦ କମିସନ ପାଇବେ ବୋଲି ପୂର୍ବରୁ ଚୁକ୍ତି ହୋଇଛି ।

ପ୍ରତି ପକ୍ଷ ଅପରଙ୍କ ନିକଟକୁ ଯେଉଁ ଯୌଥ ଉଦ୍ୟୋଗ ହିସାବ ପଠାଇବେ ତାହାର ନକଲ ପ୍ରସ୍ତୁତ କର । ମନେକର ଯେ ଉଭୟ ଦେଶରେ ଟଙ୍କାର ମୂଲ୍ୟ ସମାନ ଥିଲା ଓ ଯୌଥ କାରବାର ହିସାବ ବନ୍ଦ ହେଲା ।

( ଉତ୍ତର—ଯୌଥ କାରବାରର ଲାଭ—୭୭,୦୧୦ ଟଙ୍କା । )

୧୭ । ଜଣେ ବ୍ୟବସାୟୀ ଅନ୍ୟ ଜଣେ ବ୍ୟବସାୟୀଙ୍କ ଠାରୁ ୧୯୬୩ ମସିହା ଡିସେମ୍ବର ୩୧ ତାରିଖରେ ଶେଷ ହେଉଥିବା ୭ ମାସ ମଧ୍ୟରେ ନିମ୍ନଲିଖିତ ପରିମାଣର ଅର୍ଥ ଋଣ ସ୍ୱରୂପ ଗ୍ରହଣ କରିଛନ୍ତି । ସେ ସେହି ପରିମାଣର ଅର୍ଥ ହାରାହାରି ପରିଶୋଧ ଅବସରରେ ପରିଶୋଧ କରିବାକୁ ଇଚ୍ଛୁକ । ସେହି ହାରାହାରି ପରିଶୋଧ ଅବଧି ନିର୍ଣ୍ଣୟ କର ।

| | | ଟଙ୍କା |
|---|---|---|
| ଜୁଲାଇ ୧ | ତାରିଖ | ୫୦୦ |
| ଅଗଷ୍ଟ ୧୦ | ,, | ୭୦୦ |
| ସେପ୍ଟେମ୍ବର ୧୫ | ,, | ୪୦୦ |
| ଅକ୍ଟୋବର ୩ | ,, | ୧,୦୦୦ |
| ନଭେମ୍ବର ୧୬ | ,, | ୮୦୦ |

୧୮ । ଜଣେ ଅଂଶୀଦାରୀ ବ୍ୟବସାୟରୁ ନିମ୍ନଲିଖିତ ପରିମାଣର ଅର୍ଥ ଉଠାଇ ନେଇଛନ୍ତି । ଏହି ବ୍ୟବସାୟର ହିସାବ ଜୁନ ୩୦ ତାରିଖରେ ବନ୍ଦ ହୁଏ । ଏହି ଉପରେ ୫୦/୦ ହାରରେ ତାଙ୍କୁ ସୁଧ ଦେବାକୁ ପଡ଼ିବ ।

| ୧୯୬୩ | | ଟଙ୍କା |
|---|---|---|
| ଜାନୁୟାରୀ | ୧ | ୩୦୦ |
| ଫେବୃଆରୀ | ୧୦ | ୫୦୦ |
| ମାର୍ଚ୍ଚ | ୧୬ | ୪୦୦ |
| ଅପ୍ରେଲ | ୧୫ | ୫୦୦ |
| ମଇ | ୧୦ | ୧,୦୦୦ |

ହାରହାରି ପରିଶୋଧ ଦିବସ ନିର୍ଣ୍ଣୟକରି ଓ ସୁଧ ହିସାବ କର ।

୧୯ । ହରିହର ଓ ଦିବାକରଙ୍କ ମଧ୍ୟରେ ନିମ୍ନଲିଖିତ ନେଣ ଦେଣଗୁଡ଼ିକ ସଂଘଟିତ ହୋଇଥିଲା :

୧୯୬୭

ଜାନୁୟାରୀ ୫ — ଦିବାକରଙ୍କଠାରୁ ୧,୫୦୦ ଟଙ୍କା ମୂଲ୍ୟର ପଣ୍ୟ ମିଳିଲା—ନିର୍ଦ୍ଦିଷ୍ଟ ଦିବସ ଜାନୁୟାରୀ ୩୧ ତାରିଖ ।

ଫେବୃଆରୀ ୧୦ — ଦିବାକରଙ୍କୁ ୮୦୦ ଟଙ୍କାର ପଣ୍ୟ ବିକ୍ରୟ କରାଗଲା—ନିର୍ଦ୍ଦିଷ୍ଟ ଦିବସ ଫେବୃୟାରୀ ୨୮ ।

ମାର୍ଚ୍ଚ ୧୫ — ଦିବାକରଙ୍କୁ ୫୦୦ ଟଙ୍କା ନଗଦ ଦିଆଗଲା ।

ମାର୍ଚ୍ଚ ୧୮ — ଦିବାକରଙ୍କଠାରୁ ୧,୨୦୦ ଟଙ୍କାର ପଣ୍ୟ ମିଳିଲା, ନିର୍ଦ୍ଦିଷ୍ଟ ଦିବସ ମାର୍ଚ୍ଚ ୩୧ ।

ଅପ୍ରେଲ ୧ — ଦିବାକର ୨ମାସ ମିଆଦରେ, ୧,୦୦୦ ଟଙ୍କା ସକାଶେ ପ୍ରସ୍ତୁତ କରିଥିବା ଏକ ହୁଣ୍ଡି ସ୍ୱୀକାର କରାଗଲା ।

ହରିହର ଅପ୍ରେଲ ୩୦ ତାରିଖରେ ଦିବାକରଙ୍କୁ ଯେଉଁ ଚଳନ୍ତି ହିସାବ ପ୍ରେରଣ କରିବେ ତାହାର ଏକ ନକଲ ପ୍ରସ୍ତୁତ କର ।

ଶତକଡ଼ା ବାର୍ଷିକ ସୁଧ ୫ ହାରରେ ହିସାବ କରାଯିବ ।

—o—

ପୃଥିବୀର କୌଣସି ବସ୍ତୁ ଚିରସ୍ଥାୟୀ ନୁହେଁ । ଦୃଶ୍ୟ ବା ଅଦୃଶ୍ୟ କାରଣ ହେତୁ କ୍ରମାଗତ ଭାବରେ ଏହାର କ୍ଷୟ ଘଟି ଚାଲିଛି । ଆମେ ଏଠାରେ କେବଳ ସେହି ସମସ୍ତ ପରିସମ୍ପତ୍ତିର କ୍ଷୟ କ୍ଷତି ବିଷୟରେ ଆଲୋଚନା କରିବୁ ଯାହା ସାହାଯ୍ୟରେ ଗୋଟିଏ ବ୍ୟବସାୟ ପରିଚାଳିତ ହୁଏ, ଯେପରି କୋଠାବାଡ଼ି, ଆସବାବ୍ ପତ୍ର, ଯନ୍ତ୍ର ପାତି, ସାଜ ସରଞ୍ଜାମ, ଉପକରଣ ଇତ୍ୟାଦି । ଏହାର ଯେ କ୍ଷୟ ଘଟିଛି ତାହା ତାହାର ଗୁଣ ବା ପରିମାଣର ନ୍ୟୂନତା ଦ୍ୱାରା ସୂଚୀତ ହୁଏ । ଅବଶ୍ୟ କେତେକ ପରିସମ୍ପତ୍ତିର କ୍ଷୟ ଦ୍ରୁତ ହାରରେ ଘଟେ ଓ ଅନ୍ୟ କେତେକ ପରିସମ୍ପତ୍ତିର କ୍ଷୟର ହାର ଅପେକ୍ଷାକୃତ ମନ୍ଥର । ଯେଉଁ କୋଠା ଘରେ ବ୍ୟବସାୟ ପରିଚାଳିତ ହେଉଛି ତାହା ବିଚାର କରାଯାଉ । ଗୋଟିଏ କୋଠାଘର ନିର୍ମିତ ହେବା ସଙ୍ଗେ ସଙ୍ଗେ ଯେପରି ମଜବୁତ୍ ଥାଏ, ଯେଉଁଭଳି ସୁନ୍ଦର ଦିଶେ ଓ କାର୍ଯ୍ୟକ୍ଷମ ଥାଏ କେତେକ ବର୍ଷ ପରେ ଏହା ସେହିପରି ମଜବୁତ୍ ଓ କାର୍ଯ୍ୟକ୍ଷମ ରହେ ନାହିଁ । ଏହାର ଏକ ଆନୁମାନିକ ଆୟୁକାଳ ଅଛି ଯାହା ଅତିକ୍ରାନ୍ତ ହେଲେ କୋଠା ଘରଟି ଭୁଷୁଡ଼ି ପଡ଼େ ଓ ଆଉ କାର୍ଯ୍ୟକ୍ଷମ ହୁଏ ନାହିଁ । ସେହିଭଳି ଆସବାବ୍ ପତ୍ର ନିତ୍ୟ ବ୍ୟବହାର ଫଳରେ କ୍ରମେ ଜୀର୍ଣ୍ଣ ହୁଏ ଓ ଏପରି ଏକ ସମୟ ଆସେ ଯେତେବେଳେ ଏ ଗୁଡ଼ିକୁ ବାତିଲ କରି ଏହା ସ୍ଥାନରେ ନୂତନ ଆସବାବ୍ ପତ୍ର କ୍ରୟ କରିବାକୁ ପଡ଼େ । ଗୋଟିଏ ମଟର ଟ୍ରକ୍ ନୂତନ ଅବସ୍ଥାରେ ଯେତେ ମାଲ ବହନ କରିପାରେ ଓ ଯେଉଁ ବେଗରେ ଗତି କରିପାରେ କେତେକ ବର୍ଷ ପରେ ଆଉ ସେଭଳି କାର୍ଯ୍ୟକ୍ଷମ ହୁଏ ନାହିଁ । ନିତ୍ୟ ବ୍ୟବହାର ଫଳରେ ଏହାର କଳରେ ନାନାଦି ବିକଳତା ଦେଖାଯାଏ ଓ କ୍ରମେ ଏହାର ପରିବହନ ଶକ୍ତି ଓ ଗତି ହ୍ରାସ ପାଏ ।

# ଅଷ୍ଟମ ପରିଚ୍ଛେଦ

## ମୂଲ୍ୟହ୍ରାସ, ସଞ୍ଚିତ, ଭବିଷ୍ୟତ୍ ବ୍ୟବସ୍ଥା ଓ ପ୍ରତିପୂରକ ନିଧି

### ମୂଲ୍ୟ ହ୍ରାସ

**ଅର୍ଥ ଓ କାରଣ :**

ଗୋଟିଏ ପରିସମ୍ପତ୍ତିର ଗୁଣ, ପରିମାଣ ଅଥବା ମୂଲ୍ୟର ସ୍ଥାୟୀ ଏବଂ କ୍ରମାଗତ ହ୍ରାସକୁ ମୂଲ୍ୟ ହ୍ରାସ ବୁଝାଯାଏ । କୌଣସି ସମ୍ପତ୍ତିର ଗୁଣ ବା ପରିମାଣ ହ୍ରାସ ପାଇଲେ ଏହାର ମୂଲ୍ୟ ମଧ୍ୟ ହ୍ରାସ ପାଇବ । ଉଦାହରଣ ସ୍ୱରୂପ, ଯଦି ଗୋଟିଏ ଯନ୍ତ୍ର ନୂତନ ଅବସ୍ଥାରେ କ୍ରୟ କଲାବେଳେ ଘଣ୍ଟାକୁ ୧୨୦ଟି ଉତ୍ପାଦ ଉତ୍ପନ୍ନ କରୁଥିଲା ଏବଂ ବର୍ଷକ ପରେ ଘଣ୍ଟାକୁ ୧୧୦ଟି ଓ ଦୁଇ ବର୍ଷ ପରେ ଘଣ୍ଟାକୁ ୧୦୦ଟି ଉତ୍ପାଦ ଉତ୍ପନ୍ନ କରେ, ତାହାହେଲେ ଏହାର ଗୁଣ ବା କାର୍ଯ୍ୟକାରିତା ହ୍ରାସ ପାଉଛି ବୋଲି ବୁଝିବାକୁ ହେବ । ତେଣୁ ନୂତନ ଅବସ୍ଥାରେ ଏହାର ମୂଲ୍ୟ ଯାହା ଥିଲା ଦୁଇ ବର୍ଷ ପରେ ତାହାର ମୂଲ୍ୟ ନିଶ୍ଚୟ ହ୍ରାସ ପାଇବ । ସେହିପରି ମନେକର ଗୋଟିଏ ଖଣିରେ ୫,୦୦,୦୦୦ ଟନ୍ କୋଇଲା ଥିଲା ଏବଂ ପ୍ରତି ବର୍ଷ ୧୦୦,୦୦୦ ଟନ୍ କୋଇଲା ଏଥିରୁ ଉତ୍ତୋଳିତ ହେଉଛି । ଯେହେତୁ ଏହି ପରିସମ୍ପତ୍ତିର ପରିମାଣ ବର୍ଷକ ପରେ ହ୍ରାସ ପାଇବ ତେଣୁ ବର୍ଷ ଆରମ୍ଭରେ ଏହାର ଯାହା ମୂଲ୍ୟ ଥିଲା ବର୍ଷ ଶେଷରେ ଏହାର ମୂଲ୍ୟ ତାହାଠାରୁ ନିଶ୍ଚୟ ହ୍ରାସ ପାଇବ ।

ଅଧିକାଂଶ ପରିସମ୍ପତ୍ତିର ମୂଲ୍ୟ ଏହିପରି କ୍ରମାଗତ ଭାବରେ ହ୍ରାସ ପାଏ । ବର୍ତ୍ତମାନ ଦେଖାଯାଉ କି କାରଣ ହେତୁ ଏହି ମୂଲ୍ୟ ହ୍ରାସ ଘଟେ । ଏହି କାରଣଗୁଡ଼ିକ ନିମ୍ନରେ ବର୍ଣ୍ଣିତ ହେଲା ।

୧ । ବ୍ୟବହାର ଜନିତ ଜୀର୍ଣ୍ଣତା : ଚଳ ଚକ୍ରା, ଯନ୍ତ୍ରପାତି, ଅଫିସ୍ ପତ୍ର, ସାଜ ସରଞ୍ଜାମ ପ୍ରଭୃତି କ୍ରମାଗତ ବ୍ୟବହାର ଫଳରେ ଜୀର୍ଣ୍ଣ ହୋଇଯାଏ ଏବଂ କେବଳ କାଳର ଗତି ଯୋଗୁଁ ଏଗୁଡ଼ିକର ମୂଲ୍ୟ ହ୍ରାସ ଘଟେ ।

୨ । ପ୍ରତ୍ୟକ୍ଷ ସମ୍ଭୋଗ : ଖଣିଜ ସମ୍ପଦ, ବନ ସମ୍ପଦ ପ୍ରଭୃତିରୁ ଖଣିଜ ପଦାର୍ଥ କ୍ରମାଗତ ଉତ୍ତୋଳିତ ହେଉଥିବାରୁ ଓ ବନର ବୃକ୍ଷାଦି କର୍ତ୍ତନ ଫଳରେ କାଳ କ୍ରମେ ଏହି ସମ୍ପଦଗୁଡ଼ିକ ନିଃଶେଷିତ ହୋଇଥାଏ ।

୩ । କାଳାବର୍ତ୍ତନ : କେତେକ ସମ୍ପତ୍ତି ଅଛି, ଯଥା ନିର୍ଦ୍ଦିଷ୍ଟକାଳ ସକାଶେ ପଟ୍ଟା ନିଆ ଯାଇଥିବା ସମ୍ପତ୍ତି, ଆବିଷ୍କୃତ ପଣ୍ୟରେ ସ୍ୱତ୍ୱାଧିକାର, ଛନ୍ଦ-ସ୍ୱତ୍ୱ ପ୍ରଭୃତି ଯାହାର ମୂଲ୍ୟ କାଳ କ୍ରମେ ହ୍ରାସ ପାଉଥାଏ ।

୪ । ବଜାର ଦରର ସ୍ଥାୟୀ ପତନ : ଅନେକ ସମୟରେ କମ୍ପାନୀ ଅଂଶ ପତ୍ରରେ ପୁଞ୍ଜି ବିନିଯୋଗ କରାଯାଏ । ଏହି ବିନିଯୋଗର ମୂଲ୍ୟ ବଜାର ଦର ଅଥବା ଶେୟାର ବଜାରର କଥିତ ଦର ଉପରେ ନିର୍ଭର କରେ । ଯଦି କୌଣସି କାରଣରୁ ଏହି ଅଂଶ ପତ୍ରଗୁଡ଼ିକର ବଜାର ଦର ସ୍ଥାୟୀ ଭାବରେ ନ୍ୟୂନ ହୁଏ ତାହାହେଲେ ବିନିଯୋଗର ମୂଲ୍ୟ ହ୍ରାସ ପାଏ ।

୫ । ଅପ୍ରଚଳନ : କେତେକ ସମୟରେ କ୍ରମାଗତ ଗବେଷଣା ଫଳରେ ନୂତନ ଓ ଉନ୍ନତ ଯନ୍ତ୍ରପାତି, ଉପକରଣ ପ୍ରଭୃତିର ଉଦ୍ଭାବନ ଫଳରେ ପୁରାତନ ଧରଣର ଯନ୍ତ୍ରପାତି, ଉପକରଣ ପ୍ରଭୃତି ଅପ୍ରଚଳିତ ହୁଏ । ସେ କ୍ଷେତ୍ରରେ ପୁରାତନ ନକ୍ସା ବା ନମୁନାର ଯନ୍ତ୍ରପାତି, ଉପକରଣ ପ୍ରଭୃତିର ମୂଲ୍ୟ ହ୍ରାସ ଘଟିଥାଏ । ନୂତନ ମଡେଲର ମଟରଗାଡ଼ି ପ୍ରସ୍ତୁତ ହେଲେ ପୁରାତନ ମଡେଲର ମଟରଗାଡ଼ିର ମୂଲ୍ୟ ହ୍ରାସ ପ୍ରାପ୍ତ ହୁଏ ।

## ପରିସମ୍ପତ୍ତିର କାର୍ଯ୍ୟକାରୀ ସ୍ଥିତିକାଳ :

ପ୍ରତ୍ୟେକ ପରିସମ୍ପତ୍ତିର ଏକ ଆନୁମାନିକ ଆୟୁଷ୍କାଳ ବା ସ୍ଥିତିକାଳ ଅଛି । ଏହି କାଳ ମଧ୍ୟରେ ଏହାକୁ ଉତ୍ପାଦନ ଅଥବା ନାନାଦି ସେବାରେ ନିୟୋଜିତ କରାଯାଇ ପାରେ । କେତେକ କ୍ଷେତ୍ରରେ ଏହି ସ୍ଥିତିକାଳ ନିର୍ଦ୍ଦିଷ୍ଟ, କିନ୍ତୁ ଅନ୍ୟ କେତେକ କ୍ଷେତ୍ରରେ ଏହି ସ୍ଥିତିକାଳ ନିଜ ଅଭିଜ୍ଞତାରୁ ଅଥବା ବିଶେଷଜ୍ଞଙ୍କ ମତ ଉପରେ ନିର୍ଭର କରି ସ୍ଥିର କରାଯାଏ । ଏହି ସ୍ଥିତିକାଳର ଅବସାନରେ କେତେକ ସମ୍ପତ୍ତିର ଅବଶେଷ ମୂଲ୍ୟ ଆଦୌ କିଛି ରହେ ନାହିଁ । ଉଦାହରଣ ସ୍ୱରୂପ, ନିର୍ଦ୍ଦିଷ୍ଟକାଳ ସକାଶେ ପଟ୍ଟାରେ ନିଆଯାଇ ଥିବା ଜମି ବା ଜମି ଓ

କୋଠା, ସେଥିରେ ସ୍ଥିତ ପ୍ରଭୃତିର ନାମ ଉଲ୍ଲେଖ କରାଯାଇ ପାରେ । ଅନ୍ୟ କେତେକ ପରିସମ୍ପତ୍ତିର ଭଗ୍ନାବଶେଷ ରହେ ଏବଂ ଏହାର ମୂଲ୍ୟରୁ ଯଥେଷ୍ଟ ଅର୍ଥାଗମ ମଧ୍ୟ ହୋଇଥାଏ । ଏହାକୁ ଭଗ୍ନାବଶେଷର ମୂଲ୍ୟ କୁହାଯାଏ । ଉଦାହରଣ ସ୍ୱରୂପ, ଯନ୍ତ୍ର, ଆସବାବ ପତ୍ର, ସାଜ ସରଞ୍ଜାମ, ଉପକରଣ ପ୍ରଭୃତି ପରିସମ୍ପତ୍ତିର ନାମ ଉଲ୍ଲେଖ କରାଯାଇ ପାରେ । ଉତ୍ପାଦନ କାର୍ଯ୍ୟରେ ବ୍ୟବହୃତ ହୋଇ ନ ପାରିଲେ ମଧ୍ୟ ଏଗୁଡ଼ିକ କେବଳ ରଦ୍ଦି ଲୁହା ବା କାଠ ସଦୃଶ ଓଜନ ଦରରେ ବିକ୍ରୀତ ହୋଇ ପାରେ ।

## ମୂଲ୍ୟ ହ୍ରାସକୁ ହିସାବଭୁକ୍ତ କରିବାର ପ୍ରୟୋଜନୀୟତା --

ପୂର୍ବରୁ କୁହାଯାଇଛି ଯେ, ଯେ କୌଣସି ବ୍ୟବସାୟ ପରିଚାଳନା କରିବା ନିମନ୍ତେ ବିଭିନ୍ନ ପ୍ରକାର ଓ ବିଭିନ୍ନ ଶ୍ରେଣୀର ପରିସମ୍ପତ୍ତିର ସାହାଯ୍ୟ ନେବାକୁ ପଡ଼େ । ଏଥିମଧ୍ୟରୁ ଚଳନ୍ତି ପରିସମ୍ପତ୍ତି ଅତି ଅଳ୍ପ କାଳ ସ୍ଥାୟୀ ହୁଏ । ଏପକ୍ଷେ ସ୍ଥାୟୀ ପରିସମ୍ପତ୍ତିଗୁଡ଼ିକ ସ୍ଥାୟୀ ହେଲେ ମଧ୍ୟ ଚିରସ୍ଥାୟୀ ନୁହେଁ । ଏଗୁଡ଼ିକର କାର୍ଯ୍ୟକାରୀ ସ୍ଥିତିକାଳ ଅଛି । ଏହି କାଳ ମଧ୍ୟରେ ଏଗୁଡ଼ିକର ସଦୁପଯୋଗ କରାଯାଇ ବ୍ୟବସାୟର ଲାଭ ଅର୍ଜନ କରାଯାଏ । ଏହି କାଳ ପରେ ଏହାର ମୂଲ୍ୟ ହ୍ରାସ ଘଟେ । ମନେକର ବ୍ୟବସାୟର କୌଣସି ପଣ୍ୟ ଉତ୍ପାଦନ କରିବା ନିମନ୍ତେ ୨୧,୦୦୦ ଟଙ୍କା ମୂଲ୍ୟରେ ଗୋଟିଏ ଯନ୍ତ୍ର ସସ୍ଥାପିତ ହୋଇଛି । ଏହାର ସ୍ଥିତି କାଳ ୧୦ ବର୍ଷ । ଅର୍ଥାତ୍ ୧୦ ବର୍ଷ ପରେ ଏହା ଉତ୍ପାଦନ କାର୍ଯ୍ୟ ସକାଶେ ଅଯୋଗ୍ୟ ହୋଇଯିବ । ହୁଏତ ଏହାର ଭଗ୍ନାବଶେଷର ବିକ୍ରୟରୁ ୧,୦୦୦ ଟଙ୍କା ମିଳି ପାରିବ । ତେଣୁ ଦେଖାଯାଉଛି ଯେ ପ୍ରତି ବର୍ଷ ଏହି ଯନ୍ତ୍ରର ମୂଲ୍ୟ ୨,୦୦୦ ଟଙ୍କା ହାରରେ ହ୍ରାସ ପାଉଛି । ଏହା ବ୍ୟବସାୟର ଏକ ଅଦୃଶ୍ୟ କ୍ଷତି । ଏବେ ବିଚାର କରାଯାଉ ଏହି ମୂଲ୍ୟ ହ୍ରାସ ଜନିତ କ୍ଷତି ଅନ୍ୟାନ୍ୟ ଅପ-ପୂର୍ଣ୍ଣି ଜାତୀୟ ବ୍ୟୟ ବା କ୍ଷତି ସଦୃଶ ନିଟ୍ ଲାଭ-କ୍ଷତି ହିସାବର ଦାୟୀ ପାର୍ଶ୍ୱକୁ ନିଆଯିବ କି ନାହିଁ ।

ବ୍ୟବସାୟ ଚଳାଇବା ନିମନ୍ତେ ଯଦି ଗୋଟିଏ ଘର ଭଡ଼ା ନିଆ ହୋଇଥାଏ ତାହାହେଲେ ମୋଟ ଲାଭ ବା ସ୍ଥୂଳ ଲାଭରୁ ଏହି ଘରଭଡ଼ା ବାଦ୍ ନ ଦେଇ ନିଟ୍ ଲାଭ ନିର୍ଦ୍ଧାରିତ ହୋଇ ପାରେ ନାହିଁ । ସ୍ଥୂଳ ଲାଭରୁ ଏହାକୁ ବାଦ୍ ନ ଦେଲେ ତାହା ତ୍ରୁଟି-ଯୁକ୍ତ ହେବ । ଠିକ୍ ସେହିପରି ବ୍ୟବସାୟର ଲାଭ ଅର୍ଜନ କରିବା ନିମନ୍ତେ ଯେହେତୁ ଯନ୍ତ୍ରର ମୂଲ୍ୟ ୨,୦୦୦ ଟଙ୍କା ପରିମାଣରେ ହ୍ରାସ ପାଇଛି ତେଣୁ ଏହି କ୍ଷତିକୁ ସ୍ଥୂଳ ଲାଭ ବା ମୋଟ ଲାଭରୁ ବାଦ ନ ଦେଇ ଯଦି ନିଟ୍ ଲାଭ ନିର୍ଦ୍ଧାରିତ ହୁଏ ତାହାହେଲେ ତାହା ତ୍ରୁଟି

ବବୁଦ୍ଧ ହେବ ଓ ନଟ୍ ଲଭ କ୍ଷତ ହସାବ ପ୍ରକୃତ ଲଭ ପ୍ରତଫଳତ କରବ ନାହିଁ । ତେଣୁ ଯନ୍ତ୍ରର ମୂଲ୍ୟହ୍ରାସ ବାବଦ ଏହ ବାର୍ଷିକ ୬,୦୦୦ ଟଙ୍କା ବାର୍ଷିକ ନଟ୍ ଲଭ କ୍ଷତ ହସାବର ଦାସ୍ଥୀ ପାର୍ଶ୍ୱରେ ଅନ୍ତର୍ଭୁକ୍ତ ହେବା ଉଚତ ।

(ଖ) ପୂର୍ବରୁ କୁହାଯାଇଛି ଯେ ହସାବ ବର୍ଷ ଶେଷରେ ପ୍ରତ୍ୟେକ ବ୍ୟବସାୟରେ ଯେଉଁ ଉଦ୍‌ବୃତ୍ତ ପତ୍ର ପ୍ରସ୍ତୁତ କରାଯାଏ ତାହା ବ୍ୟବସାୟର ପ୍ରକୃତ ଆର୍ଥିକ ଅବସ୍ଥା ପ୍ରତ-ଫଳତ କରୁଥିବ । ପୂର୍ବ ଉଦାହରଣରେ ଦେଖାଗଲ ଯେ ପ୍ରତ ବର୍ଷ ଯନ୍ତ୍ରର ମୂଲ୍ୟ ୬,୦୦୦ ଟଙ୍କା ପରମାଣରେ ହ୍ରାସ ପାଉଛି । ତେଣୁ ଯଦ ଯନ୍ତ୍ରର କ୍ରୟ ମୂଲ୍ୟ, ଅର୍ଥାତ୍ ୬୧,୦୦୦ ଟଙ୍କା ପ୍ରତ ବର୍ଷ ଉଦ୍‌ବୃତ୍ତ ପତ୍ରରେ ଅନ୍ତର୍ଭୁକ୍ତ କରାଯାଏ ତାହାହେଲେ ଉଦ୍‌ବୃତ୍ତ ପତ୍ର ବ୍ୟବସାୟର ପ୍ରକୃତ ଆର୍ଥିକ ଚତ୍ର ଦେବାକୁ ଅକ୍ଷମ ହେବ । ତେଣୁ ପ୍ରତ ବର୍ଷ ମୂଲ୍ୟ ହ୍ରାସ ବାବଦ ଏହ ୬,୦୦୦ ଟଙ୍କା ସକାଶେ ନଟ୍ ଲଭ କ୍ଷତ ହସାବକୁ ଦାସ୍ଥୀ କରାଯିବ ଓ ଯନ୍ତ୍ର ହସାବକୁ ଦାତା କରାଯିବ । ଯେହେତୁ ଯନ୍ତ୍ର ହସାବକୁ କ୍ରୟ ମୂଲ୍ୟ ବାବଦ ୬୧,୦୦୦ ଟଙ୍କା ସକାଶେ ପ୍ରଥମେ ଦାସ୍ଥୀ କରାଯାଇ ଥିଲ ତେଣୁ ପ୍ରଥମ ହସାବ ବର୍ଷ ଶେଷରେ ଏହ ହସାବକୁ ୬,୦୦୦ ଟଙ୍କା ସକାଶେ ଦାତା କରାଗଲେ ଏହାର ବାଙ୍କ ବା ବଳକା ୧୯,୦୦୦ ଟଙ୍କା ହେବ ଏବଂ ଏହ ୧୯,୦୦୦ ଟଙ୍କା ଉଦ୍‌ବୃତ୍ତ ପତ୍ରରେ ପ୍ରକାଶିତ ହେବ । ଏପରି କରାଗଲେ ଉଦ୍‌ବୃତ୍ତ ପତ୍ର ବ୍ୟବସାୟର ପ୍ରକୃତ ଆର୍ଥିକ ଅବସ୍ଥା ପ୍ରତଫଳତ କରବ ।

(ଗ) ଯୁଦି ପ୍ରତ ବର୍ଷର ମୂଲ୍ୟ ହ୍ରାସ ଯଦ ହସାବକୁ ନଆ ନ ଯାଏ ତାହାହେଲେ ହଠାତ୍ ଗୋଟିଏ ବର୍ଷ ଦେଖାଯିବ ଯେ ବହୁ ମୂଲ୍ୟରେ କ୍ରୟ କରାଯାଇଥିବା ଏକ ପରସମ୍ପତ୍ତିର ମୂଲ୍ୟ ଶୂନ୍ୟ ଅଥବା ଏକ ଅତ ନଗଣ୍ୟ ପରମାଣରେ ଆସି ପହଞ୍ଚିଛି । ପୂର୍ବ ଉଦାହରଣଟି ନଆଯାଉ । ଯନ୍ତ୍ରଟି ୬୧,୦୦୦ ଟଙ୍କା ମୂଲ୍ୟରେ କ୍ରୟ କରାଯାଇ ଥିଲ, ତହିଁରୁ ଯଦ ପ୍ରତ ବର୍ଷ ମୂଲ୍ୟ ହ୍ରାସ ବାବଦ କୌଣସି ପରମାଣ ବାଦ୍ ଦଆ ନ ଯାଏ, ତାହାହେଲେ ୧୦ ବର୍ଷ ପରେ ହଠାତ୍ ଦେଖାଯିବ ଯେ ଏହାର ମୂଲ୍ୟ ୧,୦୦୦ ଟଙ୍କାରେ ପରଣତ ହୋଇଛି । ପୁନଶ୍ଚ ଏହା ମଧ୍ୟ ଦେଖାଯିବ ଯେ ଏହ ଯନ୍ତ୍ର ଉତ୍ପାଦନ କାର୍ଯ୍ୟ ସକାଶେ ଅଯୋଗ୍ୟ ହୋଇଛି । ଯଦ ଏହ ବ୍ୟବସାୟ ଉତ୍ପାଦନ କାର୍ଯ୍ୟ ନର୍ବାହ କରବା ସକାଶେ ଏହ ଗୋଟିଏ ଯନ୍ତ୍ର ଉପରେ ନର୍ଭର କରୁଥାଏ ତାହାହେଲେ ଏପରି ପରସ୍ଥିତରେ ହୁଏତ ୬୧,୦୦୦ ଟଙ୍କା ଅଥବା ତାହାଠାରୁ ଅଧିକ ମୂଲ୍ୟରେ ଅନ୍ୟ ଏକ ଯନ୍ତ୍ର କ୍ରୟ କରବାକୁ ପଡ଼ବ ନଚେତ୍ ବ୍ୟବସାୟ ବନ୍ଦ କରବାକୁ ପଡବ । ଯଦ ବ୍ୟବସାୟକୁ ଚାଲୁ ରଖିବାକୁ ହୁଏ ତାହାହେଲେ ତତ୍‌କ୍ଷଣାତ୍ ପ୍ରାୟ ୬୫,୦୦୦ ଟଙ୍କା ବ୍ୟୟରେ ଏକ ନୂତନ ଯନ୍ତ୍ର କ୍ରୟ କରବାକୁ ପଡ଼ବ । ଯଦ ପୂର୍ବରୁ ବ୍ୟବସ୍ଥା କରାଯାଇ ନ ଥାଏ ତାହାହେଲେ

ଏକକାଳୀନ ଏତେ ଅଧିକ ପରିମାଣ ଟଙ୍କା ବ୍ୟବସାୟରୁ ବାହାର କରିଦେବା ପ୍ରାୟ ଅସମ୍ଭବ ଅଥବା ଅତ୍ୟନ୍ତ ଅସୁବିଧାଜନକ ହେବ । ହୁଏତ ଅନ୍ୟାନ୍ୟ ଚଳନ୍ତି ସମ୍ପତ୍ତି ବିକ୍ରୟ କରି ଏହି ଅର୍ଥ ସଂଗ୍ରହ କରିବାକୁ ପଡ଼ିବ ଅଥବା ବାହାରୁ ଋଣ ଆଣିବାକୁ ପଡ଼ିବ । ବ୍ୟବସାୟରୁ ଏକକାଳୀନ ଏତେ ଅଧିକ ଅର୍ଥ ବାହାରିଗଲେ ବ୍ୟବସାୟ ଚଳାଇବା ନିମନ୍ତେ କାର୍ଯ୍ୟକାରୀ ପୁଞ୍ଜିର ଅଭାବ ଦେଖାଦିବା ସୁନିଶ୍ଚିତ । ବାହାରୁ ଋଣ ସଂଗ୍ରହ କରିବା ସହଜସାଧ୍ୟ ନୁହେଁ ଏବଂ ସଂଗୃହୀତ ହେଲେ ମଧ୍ୟ ଏଥି ନିମନ୍ତେ ଅତ୍ୟଧିକ ହାରରେ ସୁଧ ଦେବାକୁ ପଡ଼ିବ ଏବଂ କିସ୍ତିଓ୍ୱାରୀ ଏହି ଋଣ ପରିଶୋଧ କରିବାକୁ ପଡ଼ିବ ।

ଏହି ଅସୁବିଧାର ସମ୍ମୁଖୀନ ହେବା ପରିବର୍ତ୍ତେ ଯଦି ପ୍ରତି ବର୍ଷ ଲାଭରୁ ୨,୦୦୦ ଟଙ୍କା କାଟି ରଖାଯାଏ ତାହାହେଲେ ୧୦ ବର୍ଷ ପରେ ବ୍ୟବସାୟରେ ୨୦,୦୦୦ ଟଙ୍କା ଜମା ହୋଇଥିବ ଏବଂ ଯନ୍ତ୍ରର ଭଗ୍ନାବଶେଷ ବିକ୍ରୟରୁ ୧,୦୦୦ ଟଙ୍କା ଅଥବା ତଦୂର୍ଦ୍ଧ୍ୱ ଅର୍ଥ ମିଳିବ । ଏହି ଅର୍ଥ ଅଥବା ଏହା ସହିତ ବ୍ୟବସାୟରୁ ଅଧିକ ୩,୦୦୦/୪,୦୦୦ ଟଙ୍କା ବ୍ୟୟ କରି ସୁବିଧାରେ ନୂତନ ଯନ୍ତ୍ର କ୍ରୟ କରିଯାଇ ପାରିବ । ଅନେକ ସମୟରେ ପ୍ରତି ବର୍ଷ ମୂଲ୍ୟ ହ୍ରାସ ବାବଦ କଟା ହେଉଥିବା ୨,୦୦୦ ଟଙ୍କା ବ୍ୟବସାୟର ଅନ୍ୟାନ୍ୟ ସମ୍ପତ୍ତି ସହିତ ଅଥବା କାର୍ଯ୍ୟକାରୀ ପୁଞ୍ଜି ସହିତ ମିଶି ଯାଇଥାଏ, ତେଣୁ ଏହାକୁ ସହସା ନଗଦ ଆକାରରେ ପାଇବା କଠିନ ହୁଏ । ଏହି କାରଣରୁ ଅନେକ ବ୍ୟବସାୟୀ ଏହି ଅର୍ଥକୁ ଏକ ନିକ୍ଷେପ ନିଧି କରିଥାରେ ବାହାରେ ବିନିଯୋଗ କରନ୍ତି । ତେଣୁ ଆବଶ୍ୟକ ବେଳେ ଏହି ବିନିଯୁକ୍ତ ଅର୍ଥକୁ ନଗଦ ଆକାରରେ ପରିଣତ କରିବା ସହଜ ସାଧ୍ୟ ହୁଏ ।

ଉପରୋକ୍ତ କାରଣଗୁଡ଼ିକ ଯୋଗୁଁ ପ୍ରତି ବର୍ଷ ସ୍ଥାୟୀ ପରିସମ୍ପତ୍ତିର ମୂଲ୍ୟ ହ୍ରାସ ହିସାବ ଭୁକ୍ତ କରିବା ଅତ୍ୟନ୍ତ ଆବଶ୍ୟକ । ଅର୍ଥାତ୍ ମୂଲ୍ୟ ହ୍ରାସର ପରିମାଣ ସକାଶେ ବାର୍ଷିକ ନିଟ୍ ଲାଭ କ୍ଷତି ହିସାବକୁ ଦାୟୀ କରାଯାଏ ଏବଂ ସମ୍ପୃକ୍ତ ପରିସମ୍ପତ୍ତି ହିସାବକୁ ଦାତା କରିବା ଦ୍ୱାରା ଏହାର ବହି ମୂଲ୍ୟକୁ ଅପହ୍ରାସିତ କରାଯାଏ । ଏହି ବ୍ୟବସାୟିକ ନୀତି ସାଧାରଣତଃ ସମସ୍ତ ବ୍ୟବସାୟ ପ୍ରତିଷ୍ଠାନରେ ଅନୁସୃତ ହୁଏ ।

ପ୍ରସଙ୍ଗତଃ ଏଠାରେ କୁହାଯାଇ ପାରେ ଯେ ଏହି ନୀତି ବ୍ୟବସାୟ ପ୍ରତିଷ୍ଠାନର ସ୍ୱାର୍ଥ ଦୃଷ୍ଟିରୁ ସଙ୍ଗତ ପାଳିତ ହୁଏ, ମାତ୍ର ଏଥି ନିମନ୍ତେ କୌଣସି ଆଇନଗତ ବାଧ୍ୟ ବାଧକତା ନାହିଁ । ଅତୀତର କେତେକ ମକଦ୍ଦମାର ରାୟ ପର୍ଯ୍ୟାଲୋଚନା କଲେ ଦେଖାଯାଏ ଯେ କେତେକ ଯୌଥ କମ୍ପାନୀର ନିର୍ଦ୍ଦେଶକ

ମଣ୍ଡଳୀ ସ୍ଥାୟୀ ସମ୍ପତ୍ତିର ମୂଲ୍ୟ ହ୍ରାସ ବାବଦ ଅର୍ଥ ନିଟ୍ ଲାଭରୁ ବାଦ୍ ନ ଦେଇ ଲାଭାଂଶ ବଣ୍ଟନ କରିଥିବା ସତ୍ତ୍ୱେ ମାନ୍ୟବର ବିଚାରକ ତାଙ୍କ ସପକ୍ଷରେ ରାୟ ଦେଇଛନ୍ତି । ତେଣୁ ଏହା ସ୍ମରଣ ରଖିବା ଉଚିତ ଯେ ମୂଲ୍ୟ ହ୍ରାସ ସକାଶେ ନିଟ୍ ଲାଭ କ୍ଷତି ହିସାବକୁ ପ୍ରଭାବିତ କରିବା ନିମନ୍ତେ କୌଣସି ଆଇନଗତ ବାଧ୍ୟବାଧକତା ନାହିଁ ମାତ୍ର ବ୍ୟବସାୟୀଙ୍କ ସୁବିଧା ଓ ବ୍ୟବସାୟ ପ୍ରତିଷ୍ଠାନର ହିତ ଦୃଷ୍ଟିରୁ ଏପରି କରିବା ସର୍ବଥା ବାଞ୍ଛନୀୟ ।

## ମୂଲ୍ୟ ହ୍ରାସ ଗଣନାରେ ମୌଳିକ ବିଷୟ :—

ମୂଲ୍ୟ ହ୍ରାସ ଗଣନା କରିବା ସମୟରେ ନିମ୍ନଲିଖିତ ମୌଳିକ ବିଷୟଗୁଡ଼ିକ ଏକାନ୍ତ ପ୍ରୟୋଜନ :

୧ । ସମ୍ପତ୍ତିର କ୍ରୟ ମୂଲ୍ୟ;

୨ । ଏହାର ଆନୁମାନିକ କାର୍ଯ୍ୟକାରୀ ସ୍ଥିତି କାଳ ।

୩ । ଏହାର କାର୍ଯ୍ୟକାରୀ ସ୍ଥିତିକାଳ ପରେ ଅବଶେଷ ବା ଭଗ୍ନାବଶେଷର ମୂଲ୍ୟ । ଗୋଟିଏ ସମ୍ପତ୍ତିର ସ୍ଥିତିକାଳ ହୁଏତ ଦୀର୍ଘ ହୋଇ ପାରେ, ମାତ୍ର ତାହା ଏଠାରେ ପ୍ରାସଙ୍ଗିକ ନୁହେଁ । ଏଠାରେ କାର୍ଯ୍ୟକାରୀ ସ୍ଥିତିକାଳ ହିଁ ପ୍ରାସଙ୍ଗିକ । ହୁଏତ ଗୋଟିଏ ସମ୍ପତ୍ତିର ସ୍ଥିତିକାଳ ୨୦ ବର୍ଷ ହୋଇ ପାରେ କିନ୍ତୁ ନୂତନ ଧରଣର ସମ୍ପତ୍ତି ଉଦ୍ଭାବିତ ହେଲେ ପୁରାତନ ପ୍ରକାର ସମ୍ପତ୍ତି ଅପ୍ରଚଳିତ ହୋଇଯାଇ ପାରେ । ତେଣୁ ମୂଲ୍ୟ ହ୍ରାସ ଗଣନା କରିବା ସମୟରେ ସମ୍ପତ୍ତିର ଆନୁମାନିକ କାର୍ଯ୍ୟକାରୀ ସ୍ଥିତିକାଳ ପ୍ରଥମେ ନିର୍ଦ୍ଧାରଣ କରିବା ଆବଶ୍ୟକ । ପ୍ରତିବର୍ଷ ସେହି ପରିମାଣରେ ମୂଲ୍ୟ ହ୍ରାସ ବାଦ୍ ଦିଆଯିବା ଆବଶ୍ୟକ ଯାହା କାର୍ଯ୍ୟକାରୀ ସ୍ଥିତିକାଳ ପରେ ସମ୍ପତ୍ତିର ବହି ମୂଲ୍ୟ ଅପହ୍ରାସିତ ହୋଇ ଅବଶେଷ ଅଥବା ଭଗ୍ନାବଶେଷ ମୂଲ୍ୟ ସହିତ ସମାନ ହେବ ।

## ମୂଲ୍ୟହ୍ରାସ ଧାର୍ଯ୍ୟ କରିବାର ବିଭିନ୍ନ ପଦ୍ଧତି :—

୧ । ସ୍ଥିର କିସ୍ତି ପଦ୍ଧତି ଅଥବା ସରଳ ରେଖା ପଦ୍ଧତି ।

୨ । କ୍ରମ ହ୍ରାସମାନ ବାଲାନ୍ସ ପଦ୍ଧତି ଅଥବା କ୍ରମ ହ୍ରାସମାନ କିସ୍ତି ପଦ୍ଧତି ।

୩ । ବାର୍ଷିକ ସମକିସ୍ତି ପଦ୍ଧତି ।

୪ । ମୂଲ୍ୟ ହ୍ରାସ ନିଧି ପଦ୍ଧତି ।

୫ । ବୀମା ପତ୍ର ପଦ୍ଧତି ।

୬ । ପୁନର୍ମୂଲ୍ୟାୟନ ପଦ୍ଧତି ।

୭ । ନିଃଶେଷ କରଣ ପଦ୍ଧତି ।

୮ । ଯାନ୍ତ୍ରିକ ଘଣ୍ଟା ହାର ପଦ୍ଧତି ।
୯ । ବର୍ଷ ସଂଖ୍ୟାର ସମଷ୍ଟି ପଦ୍ଧତି ।

## ୧ । ସ୍ଥିର କିସ୍ତି ପଦ୍ଧତି ଅଥବା କ୍ରୟ ମୂଲ୍ୟର ସ୍ଥିର ଶତକଡ଼ା ପଦ୍ଧତି ଅଥବା ସରଳରେଖା ପଦ୍ଧତି ।

ଏହି ପଦ୍ଧତି ଅନୁଯାୟୀ ପରିସମ୍ପତ୍ତିର କ୍ରୟ ମୂଲ୍ୟ ଉପରେ ଏକ ନିର୍ଦ୍ଦିଷ୍ଟ ଶତକଡ଼ା ପରିମାଣର ମୂଲ୍ୟ ହ୍ରାସ ପ୍ରତିବର୍ଷ ଧାର୍ଯ୍ୟ କରାଯାଏ । ଏହି ଶତକଡ଼ା ଏପରି ଭାବରେ ଗଣନା କରାଯାଇ ଥାଏ ଯେ ଏହି ଉପସମ୍ପତ୍ତିର କାର୍ଯ୍ୟକାରୀ ସ୍ଥିତିକାଳ ଶେଷରେ ପରିସମ୍ପତ୍ତିର ମୂଲ୍ୟ ଶୂନ୍ୟରେ ଅଥବା ଅବଶେଷ ମୂଲ୍ୟରେ ପରିଣତ ହେବ । ଏହି ମୂଲ୍ୟହ୍ରାସ ହିସାବ ବର୍ଷ ଶେଷରେ ଚୂଡ଼ାନ୍ତ ବା କାଳାନ୍ତ ହିସାବ କରିବା ସମୟରେ ଧାର୍ଯ୍ୟ କରି ନିଟ୍ ଲାଭ-କ୍ଷତି ହିସାବକୁ ମୂଲ୍ୟହ୍ରାସ ପରିମାଣ ସକାଶେ ଦାୟୀ ଓ ସଂପୃକ୍ତ ପରିସମ୍ପତ୍ତି ହିସାବକୁ ଦାତା କରାଯାଏ ।

ଯଦି ହିସାବ ବର୍ଷ ମଧ୍ୟରେ କୌଣସି ପରିସମ୍ପତ୍ତି ବିକ୍ରୟ କରାଯାଏ ଅଥବା ନୂତନ ପରିସମ୍ପତ୍ତି କ୍ରୟ କରାଯାଏ ତାହାହେଲେ ସେହି ଆଂଶିକ କାଳ ସକାଶେ ମୂଲ୍ୟହ୍ରାସ ଗଣନା କରାଯିବ । ଏଥିସକାଶେ ନିମ୍ନଲିଖିତ ସୂତ୍ର ବ୍ୟବହୃତ କରାଯାଏ :

$$\text{ମୋଟ ବାର୍ଷିକ ମୂଲ୍ୟହ୍ରାସ} = \frac{\text{କ୍ରୟମୂଲ୍ୟ—ଅବଶେଷ ମୂଲ୍ୟ}}{\text{କାର୍ଯ୍ୟକାରୀ ସ୍ଥିତିକାଳ}}$$

ଏହି ପଦ୍ଧତି ସେହି ସମସ୍ତ ପରିସମ୍ପତ୍ତି ପ୍ରତି ପ୍ରଯୁଜ୍ୟ ଯୋଉଗୁଡ଼ିକ ତାଙ୍କର କାର୍ଯ୍ୟକାରୀ ସ୍ଥିତିକାଳ ମଧ୍ୟରେ ସବୁସମୟରେ ସମାନ କାର୍ଯ୍ୟକ୍ଷମ ଅଥବା ସେବା-ପ୍ରଦ ଥାଆନ୍ତି ଏବଂ କାର୍ଯ୍ୟକାରୀ ସ୍ଥିତିକାଳ ଶେଷରେ ଯାହାଙ୍କର ମୂଲ୍ୟ ଶୂନ୍ୟ ଅଥବା ଅବଶେଷ ମୂଲ୍ୟରେ ଆସି ପହଞ୍ଚେ । ଏହାର ଆଉ ଗୋଟିଏ ଲକ୍ଷଣ ହେଲା ସାଧାରଣତଃ ଯେଉଁ ପରିସମ୍ପତ୍ତି ଗୁଡ଼ିକରେ ସ୍ଥିତିକାଳ ମଧ୍ୟରେ ସଂଯୋଜନ ବା ବିଯୋଜନ ଘଟେ ନାହିଁ । ଉଦାହରଣ ସ୍ୱରୂପ ନିର୍ଦ୍ଦିଷ୍ଟ କାଳ ସକାଶେ ପଟ୍ଟା ଜରିଆରେ ସଂଗୃହୀତ ହୋଇଥିବା ଭୂମି, କୋଠା ପ୍ରଭୃତି, ପେଟେଣ୍ଟ, କପିରାଇଟ୍ ଆଦିର ନାମ ଉଲ୍ଲେଖ କରାଯାଇପାରେ ।

ଏହି ପଦ୍ଧତିର ସୁବିଧା—

(କ) ଏହି ପଦ୍ଧତି ଅନୁଯାୟୀ ମୂଲ୍ୟହ୍ରାସର ପରିମାଣ ନିର୍ଦ୍ଧାରଣ କରିବା ଅତି ସହଜ ଓ ସରଳ ।

(ଖ) ଏହାର କୌଣସି ଅବଶେଷ ମୂଲ୍ୟ ନ ଥିଲେ କାର୍ଯ୍ୟକରୀ ସ୍ଥିତିକାଳ ପରେ ଏହାର ମୂଲ୍ୟ ଶୂନ୍ୟରେ ପରିଣତ ହୁଏ ।

ଅସୁବିଧା—

(କ) ଯଦି କୌଣସି ସଂଯୋଜନ ବା ବିୟୋଜନ ଘଟେ ତାହାହେଲେ ନୂତନ ଭାବରେ ମୂଲ୍ୟ ହ୍ରାସର କିସ୍ତି ଗଣନା କରିବାକୁ ପଡ଼େ ଏବଂ ତାହା ଗଣନା କରିବା ଅସୁବିଧାଜନକ ହୋଇଥାଏ ।

(ଖ) ଯଦି ଏହି ପଦ୍ଧତି କୌଣସି ଯନ୍ତ୍ର ପ୍ରତି ପ୍ରୟୋଗ କରା ହୋଇଥାଏ ତାହାହେଲେ ଯନ୍ତ୍ରର ସ୍ଥିତିକାଳର ପ୍ରଥମ କେତେ ବର୍ଷ ଏହା ଅଧିକ କାର୍ଯ୍ୟକ୍ଷମ ଥାଏ ଓ ଏହାର ମରାମତି ଖର୍ଚ୍ଚ ନଗଣ୍ୟ ଅଥବା ଅତି ସାମାନ୍ୟ ହୁଏ ମାତ୍ର ଯନ୍ତ୍ରଟି ଯେତେ ପୁରାତନ ହୁଏ ଏହାର ମରାମତି ଖର୍ଚ୍ଚ ବୃଦ୍ଧି ପାଏ । ତେଣୁ ମୂଲ୍ୟ ହ୍ରାସ ଓ ମରାମତି ଖର୍ଚ୍ଚର ମୋଟ ପରିମାଣ ପ୍ରଥମ କେତେ ବର୍ଷରେ ଅଳ୍ପ ଓ ଶେଷ କେତେ ବର୍ଷରେ ଅଧିକ ହୁଏ । ଅର୍ଥାତ୍ ପ୍ରଥମ ପର୍ଯ୍ୟାୟରେ ନିଟ୍ ଲାଭ ଅଧିକ ଓ ଶେଷ ପର୍ଯ୍ୟାୟରେ ଏହା ଊଣା ହୁଏ । ଏହି ଦୁଇ ବାବଦ ଖର୍ଚ୍ଚ ପରିସମ୍ପତ୍ତିର କାର୍ଯ୍ୟକରୀ ସ୍ଥିତିକାଳ ମଧ୍ୟରେ ସମପରିମାଣ ରହିବା ବାଞ୍ଛନୀୟ ।

ମୂଲ୍ୟ ହ୍ରାସ ସକାଶେ ନିମ୍ନଲିଖିତ ଜାବେଦା ଲେଖାଯିବ :

ମୂଲ୍ୟ ହ୍ରାସ ହିସାବ ଦାସ୍ତୀ
ପରିସମ୍ପତ୍ତି ହିସାବ ବାବଦ
( ବାର୍ଷିକ ଶତକଡ଼ା···ହାରରେ
ମୂଲ୍ୟ ହ୍ରାସ ଧାର୍ଯ୍ୟ କରାଗଲା । )

---

ନିଟ୍ ଲାଭ କ୍ଷତି ହିସାବ ଦାସ୍ତୀ
ମୂଲ୍ୟ ହ୍ରାସ ହିସାବ ବାବଦ
( ମୂଲ୍ୟ ହ୍ରାସ ହିସାବର ବାକି
ନିଟ୍ ଲାଭ-କ୍ଷତି ହିସାବକୁ
ସ୍ଥାନାନ୍ତରିତ କରାଗଲା )

---

## ଦୃଷ୍ଟାନ୍ତ—(୧)

୧୯୭୦ ମସିହା ଜାନୁୟାରୀ ୧ ତାରିଖରେ ଗୋଟିଏ ଯନ୍ତ୍ର ୧୨,୦୦୦ ଟଙ୍କା ମୂଲ୍ୟରେ କ୍ରୟ କରାଗଲା । କ୍ରୟ ମୂଲ୍ୟ ଉପରେ ଶତକଡ଼ା ବାର୍ଷିକ ୧୦ ହାରରେ ମୂଲ୍ୟ ହ୍ରାସ ଗଣନା କରାଯିବ । ୩ ବର୍ଷର ଯନ୍ତ୍ର ହିସାବ ଓ ମୂଲ୍ୟ ହ୍ରାସ ହିସାବ ପ୍ରସ୍ତୁତ କର ।

## ସମାଧାନ —

ଦାୟୀ **ଯନ୍ତ୍ର ହିସାବ** ଦାତା

| ତାରିଖ | ବିବରଣୀ | ଟଙ୍କା | ତାରିଖ | ବିବରଣୀ | ଟଙ୍କା |
|---|---|---|---|---|---|
| ୧୯୭୦ ଜାନୁ-୧ | ବ୍ୟାଙ୍କ୍ ହିସାବ ବାବଦ | ୧୨,୦୦୦ | ୧୯୭୦ ଡିସେ-୩୧ | ମୂଲ୍ୟ ହ୍ରାସ ହିଃ ବାଃ | ୧,୨୦୦ |
| | | | ଡିସେ-୩୧ | ବାକି ଗଡ଼ିଲା | ୧୦,୮୦୦ |
| | | ୧୨,୦୦୦ | | | ୧୨,୦୦୦ |
| ୧୯୭୧ ଜାନୁ-୧ | ପୂର୍ବବାକି ବାଃ | ୧୦,୮୦୦ | ୧୯୭୧ ଡିସେ-୩୧ | ମୂଲ୍ୟ ହ୍ରାସ ହିଃବାଃ | ୧,୨୦୦ |
| | | | ଡିସେ-୩୧ | ବାକି ଗଡ଼ିଲା | ୯,୬୦୦ |
| | | ୧୦,୮୦୦ | | | ୧୦,୮୦୦ |
| ୧୯୭୨ ଜାନୁ-୧ | ପୂର୍ବ ବାକି ବାଃ | ୯,୬୦୦ | ୧୯୭୨ ଡିସେ-୩୧ | ମୂଲ୍ୟ ହ୍ରାସ ହିଃ ବାଃ | ୧,୨୦୦ |
| | | | ଡିସେ-୩୧ | ବାକି ଗଡ଼ିଲା | ୮,୪୦୦ |
| | | ୯,୬୦୦ | | | ୯,୬୦୦ |
| ୧୯୭୩ ଜାନୁ-୧ | ପୂର୍ବ ବାକି ବାଃ | ୮,୪୦୦ | | | |

ଦାୟୀ **ମୂଲ୍ୟ ହ୍ରାସ ହିସାବ** ଦାତା

| ତାରିଖ | ବିବରଣୀ | ଟଙ୍କା | ତାରିଖ | ବିବରଣୀ | ଟଙ୍କା |
|---|---|---|---|---|---|
| ୧୯୭୦ ଡିସେ-୩୧ | ଯନ୍ତ୍ର ହିସାବ ବାବଦ | ୧,୨୦୦ | ୧୯୭୦ ଡିସେ-୩୧ | ନିଟ୍ ଲାଭ-କ୍ଷତି ହିସାବ ବାବଦ | ୧,୨୦୦ |
| ୧୯୭୧ ଡିସେ-୩୧ | ଯନ୍ତ୍ର ହିସାବ ବାବଦ | ୧,୨୦୦ | ୧୯୭୧ ଡିସେ-୩୧ | ନିଟ୍ ଲାଭ-କ୍ଷତି ହିସାବ ବାବଦ | ୧,୨୦୦ |
| ୧୯୭୨ ଡିସେ-୩୧ | ଯନ୍ତ୍ର ହିସାବ ବାବଦ | ୧,୨୦୦ | ୧୯୭୨ ଡିସେ-୩୧ | ନିଟ୍ ଲାଭ-କ୍ଷତି ହିସାବ ବାବଦ | ୧,୨୦୦ |

## ଦୃଷ୍ଟାନ୍ତ (୨)

ଶିବଦାସ ଏଣ୍ଡ କୋ ୧୪,୦୦୦ ଟଙ୍କା ମୂଲ୍ୟରେ ଗୋଟିଏ ଯନ୍ତ୍ର ୧୯୬୯ ମସିହା ଜାନୁୟାରି ୧ ତାରିଖରେ କ୍ରୟ କଲେ । ଏହି ଯନ୍ତ୍ରର କାର୍ଯ୍ୟକାରୀ ସ୍ଥିତିକାଳ ୪ ବର୍ଷ ହେବ ଓ ଏହାର ଅବଶେଷ ମୂଲ୍ୟ ୪ ବର୍ଷ ପରେ ୨,୦୦୦ ଟଙ୍କା ରହିବ ବୋଲି ଯନ୍ତ୍ର ବିଶେଷଜ୍ଞ ମତ ପ୍ରକାଶ କରିଥିଲେ । କିନ୍ତୁ ୪ ବର୍ଷ ପରେ ଏହି ଯନ୍ତ୍ରର ଭଗ୍ନାବଶେଷ ୧,୪୦୦ ଟଙ୍କା ମୂଲ୍ୟରେ ପ୍ରକୃତ ପକ୍ଷେ ବିକ୍ରୀତ ହେଲା ।

ସରଳରେଖା ପଦ୍ଧତି ଅନୁଯାୟୀ ମୂଲ୍ୟ ହ୍ରାସ ଗଣନା କରି ଏହି ୪ ବର୍ଷର ଯନ୍ତ୍ର ହିସାବ ଦର୍ଶାଅ ।

**ସମାଧାନ—**

ପାସ୍ୱୀ ଯନ୍ତ୍ର ହିସାବ ଦାତା

| ତାରିଖ | ବିବରଣୀ | ଟଙ୍କା | ତାରିଖ | ବିବରଣୀ | ଟଙ୍କା |
|---|---|---|---|---|---|
| ୧୯୬୯ | | | ୧୯୬୯ | | |
| ଜାନୁ-୧ | ବ୍ୟାଙ୍କ୍ ହିଃ ବାଃ | ୧୪,୦୦୦ | ଡିସେ-୩୧ | ମୂଲ୍ୟ ହ୍ରାସ ହିସାବ ବାଃ | ୩,୦୦୦ |
| | | | ,, ୩୧ | ବାକି ଗଡ଼ିଲା | ୧୧,୦୦୦ |
| | | ୧୪,୦୦୦ | | | ୧୪,୦୦୦ |
| ୧୯୭୦ | | | ୧୯୭୦ | | |
| ଜାନୁ-୧ | ପୂର୍ବ ବାକି ବାଃ | ୧୧,୦୦୦ | ଡିସେ-୩୧ | ମୂଲ୍ୟ ହ୍ରାସ ହିଃ ବାଃ | ୩,୦୦୦ |
| | | | ,, ୩୧ | ବାକି ଗଡ଼ିଲା | ୮,୦୦୦ |
| | | ୧୧,୦୦୦ | | | ୧୧,୦୦୦ |
| ୧୯୭୧ | | | ୧୯୭୧ | | |
| ଜାନୁ-୧ | ପୂର୍ବ ବାକି ବାଃ | ୮,୦୦୦ | ଡିସେ-୩୧ | ମୂଲ୍ୟ ହ୍ରାସ ହିଃ ବା | ୩,୦୦୦ |
| | | | ,, ୩୧ | ବାକି ଚଡ଼ିଲା | ୫,୦୦୦ |
| | | ୮,୦୦୦ | | | ୮,୦୦୦ |
| ୧୯୭୨ | | | ୧୯୭୨ | | |
| ଜାନୁ-୧ | ପୂର୍ବ ବାକି ବାଃ | ୫,୦୦୦ | ଡିସେ-୩୧ | ମୂଲ୍ୟ ହ୍ରାସ ହିଃ ବାଃ | ୩,୦୦୦ |
| | | | ,, ୩୧ | ବ୍ୟାଙ୍କ୍ ହିସାବ ବାବଦ (ଭଗ୍ନ ବିଶେଷର ବିଃମୂଲ୍ୟ) | ୧,୪୦୦ |
| | | | ,, ୩୧ | ନଷ୍ଟ ଲାଭ-କ୍ଷତି ହିଃ ବାଃ | ୬୦୦ |
| | | | ,, ୩୧ | | |
| | | ୫,୦୦୦ | | (କ୍ଷତିର ସ୍ଥାନାନ୍ତରଣ) | ୫,୦୦୦ |

## ଦୃଷ୍ଟାନ୍ତ (୩)

ଶ୍ରୀ ଜୟନ୍ତ ଚୌଧୁରୀ ୬,୦୦୦ ଟଙ୍କା ମୂଲ୍ୟରେ ଗୋଟିଏ ଯନ୍ତ୍ର ୧-୧-୧୯୬୯ ତାରିଖରେ କ୍ରୟ କଲେ । ଏହାର କାର୍ଯ୍ୟକାରୀ ସ୍ଥିତିକାଳ ୧୦ ବର୍ଷ । ତୃତୀୟ ଓ ଚତୁର୍ଥ ବର୍ଷ ଆରମ୍ଭରେ ଯଥାକ୍ରମେ ୫୦୦ ଟଙ୍କା ଓ ୪୦୦ ଟଙ୍କାର ସଂଯୋଜନ କରାଗଲା ।

ପ୍ରତି ବର୍ଷ ଶତକଡ଼ା ବାର୍ଷିକ ୧୦ ହାରରେ କ୍ରୟ ମୂଲ୍ୟ ଉପରେ ମୂଲ୍ୟ ହ୍ରାସ ବାଦ୍ ଦେଇ ୫ ବର୍ଷର ଯନ୍ତ୍ର ହିସାବ ପ୍ରସ୍ତୁତ କର । ପ୍ରତି ବର୍ଷର ମୂଲ୍ୟ ହ୍ରାସ ପରିମାଣ କିପରି ଗଣନା କରାଯାଇଛି ତାହା ଦର୍ଶାଅ ।

## ସମାଧାନ —

ଦାୟୀ ଯନ୍ତ୍ର ହିସାବ ଦାତା

| ତାରିଖ | ବିବରଣୀ | ଟଙ୍କା | ତାରିଖ | ବିବରଣୀ | ଟଙ୍କା |
|---|---|---|---|---|---|
| ୧୯୬୯ ଜାନୁ-୧ | ବ୍ୟାଙ୍କ୍ ହିଃ ବାଃ | ୬,୦୦୦ | ୧୯୬୯ ଡିସେ-୩୧ | ମୂଲ୍ୟ ହ୍ରାସ ହିଃ ବାଃ | ୬୦୦ |
| | | | ,, ୩୧ | ବାକି ଗଡ଼ିଲା | ୫,୪୦୦ |
| | | ୬,୦୦୦ | | | ୬,୦୦୦ |
| ୧୯୭୦ ଜାନୁ-୧ | ପୂର୍ବ ବାକି ବାଃ | ୫,୪୦୦ | ୧୯୭୦ ଡିସେ-୩୧ | ମୂଲ୍ୟ ହ୍ରାସ ହିଃ ବାଃ | ୬୦୦ |
| | | | ,, ୩୧ | ବାକି ଗଡ଼ିଲା | ୪,୮୦୦ |
| | | ୫,୪୦୦ | | | ୫,୪୦୦ |
| ୧୯୭୧ ଜାନୁ-୧ | ପୂର୍ବ ବାକି ବାଃ | ୪,୮୦୦ | ୧୯୭୧ ଡିସେ-୩୧ | ମୂଲ୍ୟ ହ୍ରାସ ହିଃ ବାଃ | ୬୫୦ |
| ଜାନୁ-୧ | ବ୍ୟାଙ୍କ୍ ହିଃ ବାଃ ନୂତନ ସଂଯୋଜନ | ୫୦୦ | ,, ୩୧ | ବାକି ଗଡ଼ିଲା | ୪,୬୫୦ |
| | | ୫,୩୦୦ | | | ୫,୩୦୦ |
| ୧୯୭୨ ଜାନୁ-୧ | ପୂର୍ବ ବାକି ବାଃ | ୪,୬୫୦ | ୧୯୭୨ ଡିସେ-୩୧ | ମୂଲ୍ୟ ହ୍ରାସ ହିଃ ବାଃ | ୬୯୦ |
| ,, ୧ | ବ୍ୟାଙ୍କ୍ ହିଃ ବାଃ ନୂତନ ସଂଯୋଜନ | ୪୦୦ | ,, ୩୧ | ବାକି ଗଡ଼ିଲା | ୪,୩୬୦ |
| | | ୫,୦୫୦ | | | ୫,୦୫୦ |
| ୧୯୭୩ ଜାନୁ-୧ | ପୂର୍ବ ବାକି ବାଃ | ୪,୩୬୦ | ୧୯୭୩ ଡିସେ-୩୧ | ମୂଲ୍ୟ ହ୍ରାସ ହିଃ ବାଃ | ୬୯୦ |
| | | | ,, ୩୧ | ବାକି ଗଡ଼ିଲା | ୩,୬୭୦ |
| | | ୪,୩୬୦ | | | ୪,୩୬୦ |
| ୧୯୭୪ ଜାନୁ-୧ | ପୂର୍ବ ବାକି ବାଃ | ୩,୬୭୦ | | | |

ମୂଲ୍ୟ ହ୍ରାସ ଅଭିଲେଖ

| ବର୍ଷ | ବିବରଣୀ | ଯନ୍ତ୍ରର ସଂଖ୍ୟା | | | | | ମୂଲ୍ୟ ହ୍ରାସର ମୋଟ ପରିମାଣ |
|---|---|---|---|---|---|---|---|
| | | ୧ | ୨ | ୩ | ୪ | — | |
| | | ଟଙ୍କା | ଟଙ୍କା | ଟଙ୍କା | | | ଟଙ୍କା |
| ୧ | ବସ୍ତୁ ମୂଲ୍ୟ<br>ମୂଲ୍ୟ ହ୍ରାସ | ୬,୦୦୦<br>୬୦୦ | | | | | ୬୦୦ |
| ୨ | ବସ୍ତୁ ମୂଲ୍ୟ<br>ମୂଲ୍ୟ ହ୍ରାସ | ୫,୪୦୦<br>୬୦୦ | | | | | ୬୦୦ |
| ୩ | ବସ୍ତୁ ମୂଲ୍ୟ<br>ମୂଲ୍ୟ ହ୍ରାସ | ୪,୮୦୦<br>୬୦୦ | ୫୦୦<br>୫୦ | | | | ୬୫୦ |
| ୪ | ବସ୍ତୁ ମୂଲ୍ୟ<br>ମୂଲ୍ୟ ହ୍ରାସ | ୪,୨୦୦<br>୬୦୦ | ୪୫୦<br>୫୦ | ୪୦୦<br>୪୦ | | | ୬୯୦ |
| ୫ | ବସ୍ତୁ ମୂଲ୍ୟ<br>ମୂଲ୍ୟ ହ୍ରାସ | ୩,୬୦୦<br>୬୦୦ | ୪୦୦<br>୫୦ | ୩୬୦<br>୪୦ | | | ୬୯୦ |
| ୬ | ବସ୍ତୁ ମୂଲ୍ୟ | ୩,୦୦୦ | ୩୫୦ | ୩୨୦ | | | |

## ଦୃଷ୍ଟାନ୍ତ—(୪)

ମେସର୍ସ ଜୀବନ ଲାଲ ଏଣ୍ଡ କୋ ୧୯୬୧ ମସିହା ଜୁଲାଇ ୧ ତାରିଖରେ ୨୦,୦୦୦ ଟଙ୍କା ମୂଲ୍ୟରେ ଗୋଟିଏ ଯନ୍ତ୍ର କ୍ରୟ କଲେ ଓ ଏହା ସ୍ଥାପନ କରିବା ନିମନ୍ତେ ତାଙ୍କର ୪,୦୦୦ ଟଙ୍କା ବ୍ୟୟ ହେଲା ।

୧୯୭୦ ମସିହା ଜାନୁଆରୀ ୧ ତାରିଖରେ କମ୍ପାନୀ ୧୫,୦୦୦ ଟଙ୍କା ମୂଲ୍ୟରେ ଅନ୍ୟ ଏକ ଯନ୍ତ୍ର କ୍ରୟ କଲେ । ୧୯୭୦ ମସିହା ଜୁଲାଇ ୧ ତାରିଖରେ ପ୍ରଥମ ଯନ୍ତ୍ରଟି ୧୯,୦୦୦ ଟଙ୍କା ମୂଲ୍ୟରେ ବିକ୍ରୀତ ହେଲା ଓ ୧୯୭୧ ମସିହା ଜାନୁଆରୀ ୧ ତାରିଖରେ ଅନ୍ୟ ଏକ ଯନ୍ତ୍ର ୨୫,୦୦୦ ଟଙ୍କା ମୂଲ୍ୟରେ କ୍ରୟ କରାଯାଇ ସେହି ଶୂନ୍ୟ ସ୍ଥାନରେ ସଂସ୍ଥାପିତ ହେଲା ।

କମ୍ପାନୀ ଶତକଡ଼ା ବାର୍ଷିକ ୧୦ ହାରରେ ଏହାର ଯନ୍ତ୍ରଗୁଡ଼ିକ ଉପରେ ମୂଲ୍ୟ ହ୍ରାସ ଧାର୍ଯ୍ୟ କରନ୍ତି । ୧୯୭୨ ମସିହା ଜୁନ୍ ୩୦ ତାରିଖ ପର୍ଯ୍ୟନ୍ତ ଯନ୍ତ୍ର ହିସାବ ପ୍ରସ୍ତୁତ କର । କମ୍ପାନୀର ବାର୍ଷିକ ହିସାବ ପ୍ରତି ବର୍ଷ ଜୁନ୍ ୩୦ ତାରିଖରେ ବନ୍ଦ କରାଯାଏ ।

**ସମାଧାନ—**

ମୂଲ୍ୟହ୍ରାସ ଅଭିଲେଖ

| ବର୍ଷ | ବିବରଣୀ | ଯନ୍ତ୍ରର ସଂଖ୍ୟା | | | ମୂଲ୍ୟ ହ୍ରାସର ମୋଟ ପରିମାଣ |
|---|---|---|---|---|---|
| | | ୧ମ | ୨ୟ | ୩ୟ | |
| ୧ମ | ବହି ମୂଲ୍ୟ | ୨୪,୦୦୦ | ୧୫,୦୦୦ | | |
| | ମୂଲ୍ୟ ହ୍ରାସ | ୨,୪୦୦ | ୭୫୦ | | ୩,୧୫୦ |
| ୨ୟ | ବହି ମୂଲ୍ୟ | ୨୧,୬୦୦ | ୧୪,୨୫୦ | ୨୫,୦୦୦ | |
| | ବିକ୍ରୟ | ୧୯,୦୦୦ | | | |
| | କ୍ଷତି | ୨,୬୦୦ | | | |
| | ମୂଲ୍ୟ ହ୍ରାସ | | ୧,୪୨୫ | ୧,୨୫୦ | ୨,୬୭୫ |
| ୩ୟ | ବହି ମୂଲ୍ୟ | × | ୧୨,୮୨୫ | ୨୩,୭୫୦ | |
| | ମୂଲ୍ୟ ହ୍ରାସ | × | ୧,୨୮୩ | ୨,୩୭୫ | ୩,୬୫୮ |
| ୪ର୍ଥ | ବହି ମୂଲ୍ୟ | | ୧୧,୫୪୨ | ୨୧,୩୭୫ | |

ଶତକଡ଼ା ବାର୍ଷିକ ୧୦ ହାରରେ ମୂଲ୍ୟ ହ୍ରାସ

ଦାୟୀ ଯନ୍ତ୍ର ହିସାବ ଦାତା

| ତାରିଖ | ବିବରଣୀ | ଟଙ୍କା | ତାରିଖ | ବିବରଣୀ | ଟଙ୍କା |
|---|---|---|---|---|---|
| ୧୯୬୯ | | ଟଙ୍କା | ୧୯୭୦ | | ଟଙ୍କା |
| ଜୁଲାଇ-୧ | ବ୍ୟାଙ୍କ୍ ହିଃ ବାଃ | ୨୦,୦୦୦ | ଜୁନ୍-୩୦ | ମୂଲ୍ୟ ହ୍ରାସ ହିଃ ବାଃ | ୩,୧୫୦ |
| ,, ୧ | ବ୍ୟାଙ୍କ୍ ହିଃ ବାଃ | ୪,୦୦୦ | ,, ୩୦ | ବାକି ଗଡ଼ିଲା | ୩୫,୮୫୦ |
| ୧୯୭୦ | | | | | |
| ଜାନୁ-୧ | ବ୍ୟାଙ୍କ୍ ହିଃ ବାଃ | ୧୫,୦୦୦ | | | |
| | | ୩୯, ୦୦ | | | ୩୯,୦୦୦ |
| ୧୯୭୦ | | | ୧୯୭୦ | | |
| ଜୁଲାଇ-୧ | ପୂର୍ବ ବାକି ବାଃ | ୩୫,୮୫୦ | ଜୁଲାଇ-୧ | ବ୍ୟାଙ୍କ୍ ହିଃ ବାବଦ | ୧୯,୦୦୦ |
| ୧୯୭୧ | | | ,, ୧ | ବିକ୍ରୟର କ୍ଷତି ହିଃବାଃ | ୨,୬୦୦ |
| ଜାନୁ-୧ | ବ୍ୟାଙ୍କ୍ ହିଃ ବାଃ | ୨୫,୦୦୦ | ୧୯୭୧ | | |
| | | | ଜୁଲାଇ ୩୧ | ମୂଲ୍ୟ ହ୍ରାସ ହିଃ ବାଃ | ୨,୬୭୫ |
| | | | ,, ୩୧ | ବାକି ଗଡ଼ିଲା | ୩୬,୫୭୫ |
| | | ୬୦,୮୫୦ | | | ୬୦,୮୫୦ |
| ୧୯୭୧ | | | ୧୯୭୨ | | |
| ଜୁଲାଇ-୧ | ପୂର୍ବ ବାକି ବାଃ | ୩୬,୫୭୫ | ଜୁନ୍-୩୦ | ମୂଲ୍ୟ ହ୍ରାସ ହିଃ ବାଃ | ୩,୬୫୮ |
| | | | ,, ୩୦ | ବାକି ଗଡ଼ିଲା | ୩୨,୯୧୭ |
| | | ୩୬,୫୭୫ | | | ୩୬,୫୭୫ |
| ୧୯୭୨ | | | | | |
| ଜୁଲାଇ-୧ | ପୂର୍ବ ବାକି ବାଃ | ୩୨,୯୧୭ | | | |

## ୨। କ୍ରମ ହ୍ରାସମାନ କିସ୍ତି ପଦ୍ଧତି ଅଥବା କ୍ରମ ହ୍ରାସମାନ ବଳକା ପଦ୍ଧତି —

ଏହି ପଦ୍ଧତି ଅନୁଯାୟୀ ମୂଲ୍ୟ ହ୍ରାସର ନିର୍ଦ୍ଦିଷ୍ଟ ହାର ସର୍ବଦା ସମ୍ପତ୍ତିର କ୍ରୟ ମୂଲ୍ୟ ଉପରେ ଗଣନା କରା ନ ଯାଇ ପୂର୍ବ ବର୍ଷର ମୂଲ୍ୟ ହ୍ରାସ ବାଦ୍ ଦେଲ ପରେ ସମ୍ପତ୍ତିର ଯେଉଁ ମୂଲ୍ୟ ବଳକା ବା ଅବଶିଷ୍ଟ ରହେ ସେହି ପରିମାଣ ଉପରେ ଗଣନା କରାଯାଏ ।

ସ୍ଥିର କିସ୍ତି ପଦ୍ଧତି ସହିତ ଏହାର ପାର୍ଥକ୍ୟ ହେଉଛି ଏହି ଯେ ସ୍ଥିର କିସ୍ତି ପଦ୍ଧତିରେ ପ୍ରତି ବର୍ଷ ମୂଲ୍ୟ ହ୍ରାସ ନିର୍ଦ୍ଦିଷ୍ଟ ହାରରେ ସମ୍ପତ୍ତିର କ୍ରୟ ମୂଲ୍ୟ ଉପରେ ଗଣନା କରାଯାଏ ମାତ୍ର ଏହି (କ୍ରମ ହ୍ରାସମାନ କିସ୍ତି) ପଦ୍ଧତି ଅନୁଯାୟୀ ମୂଲ୍ୟ ହ୍ରାସ କେବଳ ପ୍ରଥମ ବର୍ଷ ସମ୍ପତ୍ତିର କ୍ରୟ ମୂଲ୍ୟ ଉପରେ ନିର୍ଦ୍ଦିଷ୍ଟ

ହାରରେ ଗଣନା କରାଯାଏ; କିନ୍ତୁ ପରବର୍ତ୍ତୀ ବର୍ଷମାନଙ୍କରେ ମୂଲ୍ୟ ହ୍ରାସ ପରିମାଣ ବିଯୁକ୍ତ କରିବା ପରେ ସମ୍ପତ୍ତିର ଯାହା ମୂଲ୍ୟ ଅବଶିଷ୍ଟ ରହେ ସେହି ମୂଲ୍ୟ ଉପରେ ଗଣନା କରାଯାଏ । ଯେହେତୁ ଏହି ମୂଲ୍ୟ ପ୍ରତି ବର୍ଷ କ୍ରମେ ହ୍ରାସ ପ୍ରାପ୍ତ ହୁଏ ତେଣୁ ମୂଲ୍ୟ ହ୍ରାସର କିସ୍ତି ପରିମାଣ ଅନୁରୂପ ହ୍ରାସ ପାଏ ।

ଏହି ପଦ୍ଧତିର ସୁବିଧା :—

(କ) ଏହି ପଦ୍ଧତି ଅନୁଯାୟୀ ମୂଲ୍ୟ ହ୍ରାସର ପରିମାଣ କ୍ରମେ ହ୍ରାସ ପାଏ ଅର୍ଥାତ୍ ସମ୍ପତ୍ତିର କାର୍ଯ୍ୟକାରୀ ସ୍ଥିତିକାଳର ଗତି ଅନୁସାରେ ମୂଲ୍ୟ ହ୍ରାସର ପରିମାଣ କ୍ରମେ ନ୍ୟୂନ ହୋଇଥାଏ । ଅପର ପକ୍ଷରେ ସମ୍ପତ୍ତିର ଆୟୁଷ୍କାଳ ବୃଦ୍ଧି ପାଇବା ସଙ୍ଗେ ସଙ୍ଗେ ମରାମତି ଖର୍ଚ୍ଚ କ୍ରମେ ବୃଦ୍ଧି ପାଏ । ଏହା କହିବା ବାହୁଲ୍ୟ ଯେ ଏହି ଉଭୟ ପ୍ରକାର ଅର୍ଥାତ୍ ମୂଲ୍ୟ ହ୍ରାସ ଓ ମରାମତି ପରିମାଣ ନିଟ୍ ଲାଭ-କ୍ଷତି ହିସାବକୁ ପ୍ରଭାରିତ କରାଯାଏ । ତେଣୁ ସମ୍ପତ୍ତିର ସ୍ଥିତିକାଳ ମଧ୍ୟରେ ଏହି ଦୁଇ ବାବଦ ପ୍ରକାର ମିଶି ପ୍ରତି ବର୍ଷ ପ୍ରାୟ ସମ ପରିମାଣରେ ଅର୍ଥ ନିଟ୍ ଲାଭ-କ୍ଷତି ହିସାବକୁ ପ୍ରଭାରିତ କରାଯାଏ ।

(ଖ) ଏହି ପଦ୍ଧତି ଅନୁଯାୟୀ ମୂଲ୍ୟ ହ୍ରାସ ପରିମାଣ ଗଣନା କରିବା ସହଜ ହୁଏ; କାରଣ ଗତ ବର୍ଷର ବାକି ପରିମାଣ ଉପରେ ମୂଲ୍ୟ ହ୍ରାସ ଗଣନା କରାଯାଏ ଓ ପ୍ରତି ବର୍ଷ ମୂଳ କ୍ରୟ ମୂଲ୍ୟ ଅନୁସନ୍ଧାନ କରିବା ଆବଶ୍ୟକ ହୁଏ ନାହିଁ । ଅଧିକନ୍ତୁ କୌଣସି ସମ୍ପତ୍ତି ବିକ୍ରୟ ହୋଇଥିଲେ ସେଥିପ୍ରତି ଧ୍ୟାନ ଦେବା ପ୍ରୟୋଜନ ହୁଏ ନାହିଁ ।

(ଗ) ସମ୍ପତ୍ତି ହିସାବ ଏହି ପଦ୍ଧତି ଅନୁଯାୟୀ ଶୂନ୍ୟରେ ପରିଣତ ହୁଏ ନାହିଁ । ତେଣୁ ହିସାବ ବହିରୁ ହିଁ ସମ୍ପତ୍ତିର ଅସ୍ତିତ୍ୱ ଜଣାଯାଏ ଓ ସମ୍ପତ୍ତି ତୋଷରଫ୍ କରିବା ସହଜସାଧ୍ୟ ହୁଏନାହିଁ ।

ଏହି ପଦ୍ଧତିର ଅସୁବିଧା :—

(କ) ମୂଳ୍ୟ ହ୍ରାସର ଶତକଡ଼ା ବାର୍ଷିକ ହାର ଅତି ଉଚ୍ଚ ନ ରଖିଲେ ସମ୍ପତ୍ତିର କାର୍ଯ୍ୟକାରୀ ସ୍ଥିତିକାଳ ମଧ୍ୟରେ ଭଗ୍ନାବଶେଷ ମୂଲ୍ୟରେ ପହଞ୍ଚି ହୁଏ ନାହିଁ । ଏହି ମୂଲ୍ୟରେ ପହଞ୍ଚିବା ନିମନ୍ତେ ପଦ ଉଚ୍ଚ ହାରରେ ମୂଲ୍ୟ ହ୍ରାସ ଧାର୍ଯ୍ୟ କରାଯାଏ ତାହାହେଲେ ନିଟ୍ ଲାଭ-କ୍ଷତି ହିସାବକୁ ଅଯଥା ଅଧିକ ପରିମାଣ ଅର୍ଥ ପ୍ରଭାରିତ କରିବାକୁ ପଡ଼େ । ଏପରି କରାଯାଇ ଥିଲେ ନିଟ୍ ଲାଭ-କ୍ଷତି ହିସାବ ପ୍ରକୃତ ନିଟ୍ ଲାଭ ବା କ୍ଷତି ପ୍ରତିଫଳନ କରିବାକୁ ଅକ୍ଷମ ହୁଏ ।

(ଖ) ପଟା ଜରିଆରେ ସଂସ୍କୃତ ସମ୍ପତ୍ତି, ଗ୍ରନ୍ଥସ୍ୱତ୍ୱ, ପେଟେଣ୍ଟ୍ ସ୍ୱତ୍ୱ ଆଦି ସମ୍ପତ୍ତି ସ୍ଥିତିକାଳ ପରେ ଯାହାର ମୂଲ୍ୟ ଶୂନ୍ୟରେ ପରିଣତ ହୁଏ ତାହା ପ୍ରତି ଏହି ପଦ୍ଧତି ପ୍ରଯୁଜ୍ୟ ହୁଏ ନାହିଁ ।

ଏହି ପରିପ୍ରେକ୍ଷୀରେ ବିଚାର କଲେ ଦେଖାଯିବ ଯେ ଯେଉଁ ସମ୍ପତ୍ତିର ଉତ୍ପାଦନକାରୀ କ୍ଷମତା କାର୍ଯ୍ୟକ୍ଷମ ସ୍ଥିତିକାଳର ଶେଷ ପରକୁ ଊଣା କାର୍ଯ୍ୟକ୍ଷମ ବା ସେବା ପ୍ରଦ ହୁଏ ଅଥବା ନୂତନ ଅଂଶ ଏଥିରେ ଯୋଗ କରାଯାଏ ଏବଂ ଯେଉଁ ସମ୍ପତ୍ତିର ମୂଲ୍ୟ ସ୍ଥିତିକାଳ ପରେ ଶୂନ୍ୟରେ ପରିଣତ ହୁଏ ନାହିଁ ଏହି ପଦ୍ଧତି ସେହି ପ୍ରକାର ସମ୍ପତ୍ତି ପ୍ରତି ପ୍ରଯୁଜ୍ୟ ହୁଏ । ଉଦାହରଣ ସ୍ୱରୂପ, କଳକବ୍‌ଜା, ଉପକରଣ, ଯନ୍ତ୍ରପାତି, ସାଜ ସରଞ୍ଜାମ ଓ ଦୃଢ଼ ସଜ୍ଜା, ଆସବାବ୍ ପ୍ରଭୃତିର ନାମ ଉଲ୍ଲେଖ କରାଯାଇ ପାରେ ।

ଯଦିଓ ଅତୀତରେ ଏହି ପଦ୍ଧତି ହିସାବ ରକ୍ଷକଙ୍କ ଦ୍ୱାରା ଅଧିମାତ୍ରାରେ ସମାଦୃତ ହେଉଥିଲା ତଥାପି ବର୍ତ୍ତମାନ ଯୁଗରେ ଏହା କ୍ରମେ ଅପ୍ରଚଳ ହୋଇ ଯାଉଛି କାରଣ ବିଜ୍ଞାନ ଓ ଟେକ୍‌ନୋଲଜିର ବିକାଶ ହେତୁ ବହୁ ନୂତନ ଧରଣର ଅଧିକ କାର୍ଯ୍ୟକ୍ଷମ କଳକବ୍‌ଜା, ଯନ୍ତ୍ରପାତି ପ୍ରଭୃତି ହଠାତ୍ ହଠାତ୍ ଉଦ୍ଭାବିତ ହେଉଛି ଏବଂ କାର୍ଯ୍ୟକ୍ଷମ ଆୟୁକାଳ ଶେଷ ହେବା ପୂର୍ବରୁ ଏହି ପୁରାତନ ସମ୍ପତ୍ତି-ଗୁଡ଼ିକ ଅପ୍ରଚଳିତ ହୋଇ ଯାଉଛି । ଏହି ପୁରାତନ ସମ୍ପତ୍ତିଗୁଡ଼ିକ ଦୀର୍ଘକାଳ ସ୍ଥାୟୀ ହେଉ ନ ଥିବାରୁ ମୂଲ୍ୟ ହ୍ରାସର ଏହି ପଦ୍ଧତି ଏଥିପ୍ରତି ପ୍ରଯୁଜ୍ୟ ହେଉନାହିଁ । ତେଣୁ ଏହାର ଆଦର କ୍ରମେ ହ୍ରାସ ପାଉଛି ।

ଏହି ପଦ୍ଧତି ଅନୁଯାୟୀ ମୂଲ୍ୟ ହ୍ରାସ ଧାର୍ଯ୍ୟ କରିବା ନିମନ୍ତେ ଯେଉଁ ଜାବ୍‌ଦା ପ୍ରୟୋଜନ ହୁଏ ତାହା ପ୍ରଥମ ପଦ୍ଧତିରେ ଆବଶ୍ୟକ ଜାବ୍‌ଦାର ଅନୁରୂପ ଯଥା :

ମୂଲ୍ୟ ହ୍ରାସ ହିସାବ ଦାୟୀ
ପରିସମ୍ପତ୍ତି ହିସାବ ବାବଦ
( ଶତକଡ଼ା ବାର୍ଷିକ······ହାରରେ
ମୂଲ୍ୟ ହ୍ରାସ ଗଣନା କରାଗଲା । )

---

ନଟ୍ ଲାଭ-କ୍ଷତି ହିସାବ ଦାୟୀ
ମୂଲ୍ୟ ହ୍ରାସ ହିସାବ ବାବଦ
( ମୂଲ୍ୟ ହ୍ରାସ ହିସାବର ବାକି
ନଟ୍ ଲାଭ-କ୍ଷତି ହିସାବକୁ
ସ୍ଥାନାନ୍ତରିତ କରାଗଲା । )

---

ମୂଲ୍ୟହ୍ରାସ ପରିମାଣ ନଟ୍ ଲାଭ-କ୍ଷତି ହିସାବର ଦାୟୀ ପାର୍ଶ୍ୱରେ ଅନ୍ତର୍ଭୁକ୍ତ ହେବ । ପରିସମ୍ପତ୍ତି ହିସାବର ପୂର୍ବ ବର୍ଷ ବାକୀରୁ ଏହି ମୂଲ୍ୟହ୍ରାସ ପରିମାଣ ବିୟୋଗ କରାଯାଇ ପରିସମ୍ପତ୍ତିର ନଟ୍ ପରିମାଣ ସ୍ଥିତି ପତ୍ରରେ ପ୍ରକାଶିତ ହେବ ।

ବିକଳ୍ପ ପ୍ରଣାଳୀ :—

ବିକଳ୍ପ ଭାବରେ ମୂଲ୍ୟହ୍ରାସ ହିସାବକୁ ଦାୟୀ କରାଯାଏ ମାତ୍ର ପରିସମ୍ପତ୍ତି ହିସାବକୁ ଦାତା କରା ନ ଯାଇ ମୂଲ୍ୟହ୍ରାସ ସଞ୍ଚିତ ହିସାବକୁ ଦାତା କରାଯାଏ । ଏହି ହିସାବର ବାକୀ (ଦାତା) ସ୍ଥିତି ପତ୍ରର ମୂଳଧନ ଓ ଦାୟ ପାର୍ଶ୍ୱରେ ଅନ୍ତର୍ଭୁକ୍ତ ହୁଏ ଓ ପରିସମ୍ପତ୍ତି ସ୍ଥିତି ପତ୍ରର ପରିସମ୍ପତ୍ତି ଓ ପ୍ରାପ୍ୟ ପାର୍ଶ୍ୱରେ କ୍ରୟ ମୂଲ୍ୟରେ ପ୍ରକାଶିତ ହୁଏ । ପରିସମ୍ପତ୍ତି ଯେତେବେଳେ ବିକ୍ରୀତ ହୁଏ ତାହା ପରିସମ୍ପତ୍ତି ହିସାବର ଦାତା ପାର୍ଶ୍ୱରେ ଅନ୍ତର୍ଭୁକ୍ତ ହେବ ଓ ଏହି ହିସାବର ବାକୀ ଦାୟୀ ବା ଦାତା ଯାହା ହେଉ ନା କାହିଁକି ତାହା ମୂଲ୍ୟହ୍ରାସ ସଞ୍ଚିତ ହିସାବକୁ ସ୍ଥାନାନ୍ତରିତ ହୁଏ । ମୂଲ୍ୟହ୍ରାସ ସଞ୍ଚିତ ହିସାବର ବାକୀ ନଟ୍ ଲାଭ-କ୍ଷତି ହିସାବକୁ ସ୍ଥାନାନ୍ତରିତ ହୁଏ । ଯେଉଁ ବ୍ୟବସାୟ ପ୍ରତିଷ୍ଠାନରେ ପରିସମ୍ପତ୍ତି କ୍ରୟ କରିବା ଦିନଠାରୁ ମୋଟ କେତେ ପରିମାଣର ମୂଲ୍ୟହ୍ରାସ ବାଦ୍ ଦିଆଯାଇଛି ତାହା ଦର୍ଶାଇବାକୁ ପଡ଼େ ସେ କ୍ଷେତ୍ରରେ ଏହି ବିକଳ୍ପ ପ୍ରଣାଳୀ ଅନୁସୃତ ହୁଏ, ଯେପରି ଯୌଥ କମ୍ପାନୀ ହିସାବରେ ହୋଇଥାଏ ।

## ଦୃଷ୍ଟାନ୍ତ—(୫)

ଗୋଟିଏ ଯନ୍ତ୍ର ୧୦,୦୦୦ ଟଙ୍କା ମୂଲ୍ୟରେ କ୍ରୟ କରାଗଲା । ଏହାର କାର୍ଯ୍ୟକାରୀ ସ୍ଥିତିକାଳ ୪ ବର୍ଷ ଏବଂ ଅବଶେଷ ମୂଲ୍ୟ ୪,୦୯୬ ଟଙ୍କା । କ୍ରମ ହ୍ରାସମାନ କିସ୍ତି ପଦ୍ଧତି ଅନୁଯାୟୀ ଶତକଡ଼ା ବାର୍ଷିକ ୨୦ ହାରରେ ମୂଲ୍ୟହ୍ରାସ ଗଣନା କରି ୪ ବର୍ଷର ଯନ୍ତ୍ର ହିସାବ ପ୍ରସ୍ତୁତ କର ।

## ସମାଧାନ

ଦାୟୀ — ଯନ୍ତ୍ର ହିସାବ — ଦାତା

| ବର୍ଷ | | ଟଙ୍କା | ବର୍ଷ | | ଟଙ୍କା |
|---|---|---|---|---|---|
| ୧ | ବ୍ୟାଙ୍କ୍ ହିସାବ ବାବଦ | ୧୦,୦୦୦ | ୧ | ମୂଲ୍ୟ ହ୍ରାସ ହିଃ ବାଃ | ୨,୦୦୦ |
| | | | | ବାକି ଗଡ଼ିଲା | ୮,୦୦୦ |
| | | ୧୦,୦୦୦ | | | ୧୦,୦୦୦ |
| ୨ | ପୂର୍ବ ବାକି ବାବଦ | ୮,୦୦୦ | ୨ | ମୂଲ୍ୟ ହ୍ରାସ ହିଃ ବାଃ | ୧,୬୦୦ |
| | | | | ବାକି ଗଡ଼ିଲା | ୬,୪୦୦ |
| | | ୮,୦୦୦ | | | ୮,୦୦୦ |
| ୩ | ପୂର୍ବ ବାକି ବାବଦ | ୬,୪୦୦ | ୩ | ମୂଲ୍ୟ ହ୍ରାସ ହିଃ ବାଃ | ୧,୨୮୦ |
| | | | | ବାକି ଗଡ଼ିଲା | ୫,୧୨୦ |
| | | ୬,୪୦୦ | | | ୬,୪୦୦ |
| ୪ | ପୂର୍ବ ବାକି ବାବଦ | ୫,୧୨୦ | ୪ | ମୂଲ୍ୟ ହ୍ରାସ ହିଃ ବାଃ | ୧,୦୨୪ |
| | | | | ବାକି ଗଡ଼ିଲା | ୪,୦୯୬ |
| | | ୫,୧୨୦ | | | ୫,୧୨୦ |
| ୫ | ପୂର୍ବ ବାକି ବାବଦ | ୪,୦୯୬ | | | |

## ଦୃଷ୍ଟାନ୍ତ ( ୭ )

ବରଜା ଇଣ୍ଡଷ୍ଟ୍ରିଜ୍ ଲିମିଟେଡ୍ ୧୦,୦୦୦ ଟଙ୍କା ମୂଲ୍ୟରେ ଗୋଟିଏ ଯନ୍ତ୍ର କ୍ରୟ କଲେ । ପ୍ରତି ବର୍ଷ ଶତକଡ଼ା ବାର୍ଷିକ ୨୫ ହାରରେ କ୍ରମ ହ୍ରାସମାନ କିସ୍ତି ପଦ୍ଧତି ଅନୁଯାୟୀ ଏହାର ମୂଲ୍ୟହ୍ରାସ ଗଣନା କରାଯିବ ବୋଲି କର୍ମମଣ୍ଡଳୀ ସ୍ଥିର କଲେ । ଏହି ଯନ୍ତ୍ରଟି ୧୯୬୯ ମସିହା ଜାନୁୟାରୀ ୧ ତାରିଖରେ କ୍ରୟ କରାଯାଇଥିଲା । ୪ ବର୍ଷ ପରେ ଏହି ଯନ୍ତ୍ରଟି ୨,୫୦୦ ଟଙ୍କା ମୂଲ୍ୟରେ ବିକ୍ରୀତ ହେଲା । ଉକ୍ତ ବର୍ଷର ଯନ୍ତ୍ର ହିସାବ ଓ ମୂଲ୍ୟ ହ୍ରାସ ସଞ୍ଚିତ ହିସାବ ପ୍ରସ୍ତୁତ କର । ପ୍ରତିବର୍ଷ ଯନ୍ତ୍ରଟି କ୍ରୟ ମୂଲ୍ୟରେ ପ୍ରଦର୍ଶିତ ହେବ । ଏହି କମ୍ପାନୀର ହିସାବ ଡିସେମ୍ବର ୩୧ ତାରିଖରେ ବନ୍ଦ କରାଯାଏ ।

**ସମାଧାନ—**

ଦାୟୀ                    ଯନ୍ତ୍ର ହିସାବ                    ଦାତା

| | | ଟଙ୍କା | | | ଟଙ୍କା |
|---|---|---|---|---|---|
| ୧୯୬୯ ଜାନୁ-୧ | ବ୍ୟାଙ୍କ ହିଃ ବାଃ | ୧୦,୦୦୦ | ୧୯୬୯ ଡିସେ-୩୧ | ବାକି ଗଡ଼ିଲା | ୧୦,୦୦୦ |
| ୧୯୭୦ ଜାନୁ-୧ | ପୂର୍ବ ବାକି ବାଃ | ୧୦,୦୦୦ | ୧୯୭୦ ଡିସେ-୩୧ | ବାକି ଗଡ଼ିଲା | ୧୦,୦୦୦ |
| ୧୯୭୧ ଜାନୁ-୧ | ପୂର୍ବ ବାକି ବାଃ | ୧୦,୦୦୦ | ୧୯୭୧ ଡିସେ-୩୧ | ବାକି ଗଡ଼ିଲା | ୧୦,୦୦୦ |
| ୧୯୭୨ ଜାନୁ-୧ | ପୂର୍ବ ବାକି ବାଃ | ୧୦,୦୦୦ | ୧୯୭୨ ଡିସେ-୩୧ | ବ୍ୟାଙ୍କ ହିଃ ବାଃ | ୨,୫୦୦ |
| | | | ଡିସେ-୩୧ | ମୂଃ ହ୍ରାଃ ସଞ୍ଚିତ ହିସାବ ବାବଦ | ୭,୫୦୦ |
| | | ୧୦,୦୦୦ | | | ୧୦,୦୦୦ |

ଦାୟୀ ମୂଲ୍ୟ ହ୍ରାସ ସଞ୍ଚିତ ହିସାବ ଦାତା

| | | ଟଙ୍କା | | | ଟଙ୍କା |
|---|---|---|---|---|---|
| ୧୯୬୯ ଡିସେ-୩୧ | ବାକି ନେଇଲା | ୨,୫୦୦ | ୧୯୬୯ ଡିସେ-୩୧ | ମୂଲ୍ୟ ହ୍ରାସ ହିଃ ବାଃ | ୨,୫୦୦ |
| ୧୯୭୦ ଡିସେ-୩୧ | ବାକି ଗଡ଼ିଲା | ୪,୩୭୫ | ୧୯୭୦ ଜାନୁ-୧ | ପୂର୍ବ ବାକି ବାବଦ | ୨,୫୦୦ |
| | | | ଡିସେ-୩୧ | ମୂଲ୍ୟ ହ୍ରାସ ହିଃ ବାଃ | ୧,୮୭୫ |
| | | ୪,୩୭୫ | | | ୪,୩୭୫ |
| ୧୯୭୧ ଡିସେ-୩୧ | ବାକି ଗଡ଼ିଲା | ୫,୭୮୧ | ୧୯୭୧ ଜାନୁ-୧ | ପୂର୍ବ ବାକି ବାବଦ | ୪,୩୭୫ |
| | | | ଡିସେ-୩୧ | ମୂଲ୍ୟ ହ୍ରାସ ହିଃ ବାଃ | ୧,୪୦୬ |
| | | ୫,୭୮୧ | | | ୫,୭୮୧ |
| ୧୯୭୨ ଡିସେ-୩୧ | ଯନ୍ତ୍ର ହିସାବ ବା | ୭,୫୦୦ | ୧୯୭୨ ଜାନୁ-୧ | ପୂର୍ବ ବାକି ବାବଦ | ୫,୭୮୧ |
| | | | ଡିସେ-୩୧ | ମୂଲ୍ୟ ହ୍ରାସ ହିଃ ବାଃ | ୧,୦୫୫ |
| | | | ଡିସେ-୩୧ | ନିଟ୍ ଲାଭ-କ୍ଷତି ହିଃ ବାବଦ (ନିଅଣ୍ଟ) | ୬୬୪ |
| | | ୭,୫୦୦ | | | ୭,୫୦୦ |

## (ଗ) ବାର୍ଷିକ ସମକିସ୍ତି ପଦ୍ଧତି—

କୌଣସି ବ୍ୟବସାୟୀ ଯେତେବେଳେ କୌଣସି ଏକ ପରିସମ୍ପତ୍ତି ବ୍ୟବସାୟର ଆୟବୃଦ୍ଧି ଉଦ୍ଦେଶ୍ୟରେ କ୍ରୟ କରନ୍ତି ଏହି ପରିସମ୍ପତ୍ତିର କ୍ରୟ ମୂଲ୍ୟ ଅର୍ଥର ବିନିଯୋଗ ରୂପେ ପରିଗଣିତ ହୁଏ । ମାତ୍ର ସାଧାରଣ ବିନିଯୋଗ କହିଲେ ଆମେ ଯାହା ବୁଝିଥାଉ ଏ ବିନିଯୋଗ ତାହାଠାରୁ ସମ୍ପୂର୍ଣ୍ଣ ପୃଥକ୍ । ପରିସମ୍ପତ୍ତି କ୍ରୟ କରାଯାଇ ଥିବା ଅର୍ଥକୁ ଯଦି ବ୍ୟବସାୟ ପ୍ରତିଷ୍ଠାନ ବାହାରେ ବ୍ୟାଙ୍କରେ ଗଚ୍ଛିତ ରଖାଯାଇ ଥାଆନ୍ତା ଅଥବା କୌଣସି କମ୍ପାନୀର ଅଂଶ ପତ୍ର ବା ଋଣ ପତ୍ର ଅଥବା ସରକାରୀ ଋଣ ପତ୍ରରେ ବିନିଯୋଗ କରାଯାଇ ଥାଆନ୍ତା, ତାହାହେଲେ ପ୍ରତି ବର୍ଷ ଏପରି ବିନିଯୋଗରୁ ଏକ ନିର୍ଦ୍ଦିଷ୍ଟ ହାରରେ ସୁଧ ମିଳିଥାଆନ୍ତା । ମାତ୍ର ଯନ୍ତ୍ର, ଉପକରଣ, ଆସବାବ୍ ପତ୍ର ପ୍ରଭୃତି ପରିସମ୍ପତ୍ତି କ୍ରୟ କରିବାରେ ଯଦି ଏହି

ଅର୍ଥ ବିନିଯୋଗ କରାଯାଏ ତାହାହେଲେ ଏହି ବିନିଯୁକ୍ତ ଅର୍ଥ ବାବଦ କେବଳ ଯେ ସୁଧ ବିନଷ୍ଟ ହୁଏ ତାହା ନୁହେଁ । ଏହି ପରିସମ୍ପତ୍ତିର ବର୍ଷ ଶେଷରେ ମୂଲ୍ୟହ୍ରାସ ମଧ୍ୟ ଘଟେ । ଅତ୍ୟେବ, ବ୍ୟବସାୟ ପକ୍ଷରେ ମୂଲ୍ୟହ୍ରାସର ପ୍ରକୃତ ମୂଲ୍ୟହ୍ରାସର ପ୍ରକୃତ ପରିମାଣ ଯୁକ୍ତ ନିର୍ଦ୍ଦିଷ୍ଟ ହାରରେ ପରିସମ୍ପତ୍ତିର କ୍ରୟ ମୂଲ୍ୟ ଉପରେ ଯେଉଁ ସୁଧ ମିଳି ଥାଆନ୍ତା ସେହି ବିନଷ୍ଟ ସୁଧର ପରିମାଣ । ବାର୍ଷିକ ସମକିସ୍ତି ମୂଲ୍ୟହ୍ରାସ ପଦ୍ଧତି ହିଁ ଏକମାତ୍ର ପଦ୍ଧତି ଯାହା ଏହି ଉଭୟ ପ୍ରକାର ଦ୍ରବ୍ୟର ବା ଦରକୁ ବିଚାରକୁ ନିଏ ।

ଏହି ପଦ୍ଧତି ଅନୁଯାୟୀ ବର୍ଷ ଆରମ୍ଭରେ ପରିସମ୍ପତ୍ତିର ଯେଉଁ ମୂଲ୍ୟ ପ୍ରଦର୍ଶିତ ହୁଏ ବର୍ଷ ଶେଷରେ ସେହି ପରିମାଣ ଅର୍ଥ ଉପରେ ନିର୍ଦ୍ଦିଷ୍ଟ ଶତକଡ଼ା ବାର୍ଷିକ ହାରରେ ସୁଧ କଷା ଯାଇ, ସେହି ପରିମାଣ ସହାରେ ପରିସମ୍ପତ୍ତି ହିସାବକୁ ଦାୟୀ କରାଯାଏ ଓ ସୁଧ ହିସାବକୁ ଦାତା କରାଯାଏ । ପରିସମ୍ପତ୍ତିର ମୂଲ୍ୟ ଓ ଏହି ସୁଧର ପରିମାଣକୁ ଯୋଗ କରି ଯେଉଁ ଯୋଗଫଳ ନିର୍ଣ୍ଣୀତ ହୁଏ ସେହି ପରିମାଣରୁ ପ୍ରତି ବର୍ଷ ଏକ ନିର୍ଦ୍ଦିଷ୍ଟ ପରିମାଣର ମୂଲ୍ୟହ୍ରାସ ବାଦ୍ ଦିଆଯାଏ । ଏହି ରୀତିରେ ମୂଲ୍ୟହ୍ରାସ ବାଦ୍ ଦେବା ଫଳରେ ପରିସମ୍ପତ୍ତିର ମୂଲ୍ୟ କ୍ରମେ ହ୍ରାସ ପ୍ରାପ୍ତ ହୋଇ ଅବଶେଷରେ ଶୂନ୍ୟରେ ପରିଣତ ହୁଏ । ମୂଲ୍ୟହ୍ରାସର ପରିମାଣ ପ୍ରତି ବର୍ଷ ସମାନ ଥିବା ହେତୁ ଏହି ପଦ୍ଧତିକୁ ବାର୍ଷିକ ସମକିସ୍ତି ମୂଲ୍ୟହ୍ରାସ ପଦ୍ଧତି କୁହାଯାଏ ।

କେତେ ପରିମାଣରେ ପ୍ରତିବର୍ଷ ମୂଲ୍ୟହ୍ରାସ ବାଦ୍ ଦିଆଯିବ ତାହା ପରିସମ୍ପତ୍ତିର ମୂଲ୍ୟ, ବାର୍ଷିକ ଶତକଡ଼ା ସୁଧର ହାର ଓ ପରିସମ୍ପତ୍ତିର ସ୍ଥିତିକାଳ ପ୍ରଭୃତି ବିଷୟ ଉପରେ ନିର୍ଭର କରେ । ବିଭିନ୍ନ ସୁଧର ହାର ଅନୁଯାୟୀ ଓ ପରିସମ୍ପତ୍ତିର ସ୍ଥିତିକାଳ ଅନୁଯାୟୀ ୧ ଟଙ୍କା ମୂଲ୍ୟର ପରିସମ୍ପତ୍ତିକୁ ଶୂନ୍ୟରେ ପରିଣତ କରିବା ନିମନ୍ତେ ମୂଲ୍ୟହ୍ରାସର ପରିମାଣ କେତେ ହେବ ତାହା ଗାଣିତିକ ସୂତ୍ର ସାହାଯ୍ୟରେ ନିର୍ଣ୍ଣୟ କରାଯାଇ ପାରେ । ଅନ୍ୟଥା ଏଥିସକାଶେ ଆନୁଇଟି ଟେବୁଲ ମଧ୍ୟ ବ୍ୟବହାର କରାଯାଇ ପାରେ । ଶେଷୋକ୍ତ ପ୍ରଣାଳୀ ଅଧିକ ପ୍ରଚଳିତ । ଏକ ବାର୍ଷିକ ସମକିସ୍ତି ହାର ଟେବୁଲର ନମୁନା ନିମ୍ନରେ ପ୍ରଦତ୍ତ ହେଲା ।

## ବାର୍ଷିକ ସମକିସ୍ତି ହାର ଟେବୁଲ

### ଏକ ଟଙ୍କାକୁ ଶୂନ୍ୟରେ ପରିଣତ କରିବା ନିମନ୍ତେ ଆବଶ୍ୟକ ଜନ୍ଟବର୍ତ୍ତୀ ପରିମାଣ

| ବର୍ଷ | ୩% | ୩ ୧/୨% | ୪% | ୪ ୧/୨% | ୫% |
|---|---|---|---|---|---|
| ୩ | ୦.୩୫୩୫୩୦ | ୦.୩୫୬୯୩୩ | ୦.୩୬୦୩୪୮ | ୦.୩୭୩୭୭୩ | ୦.୩୬୭୨୦୮ |
| ୪ | ୦.୨୬୯୦୨୮ | ୦.୨୭୨୨୫ | ୦ ୨୭୫୪୯୦ | ୦.୨୭୮୭୪୪ | ୦.୨୮୨୦୧୨ |
| ୫ | ୦.୨୧୮୩୫୪ | ୦.୨୨୧୪୮୧ | ୦.୨୨୪୭୨୭ | ୦.୨୨୭୭୯୨ | ୦ ୨୩୦୯୭୫ |
| ୬ | ୦.୧୮୪୫୯୭ | ୦.୧୮୭୭୭ | ୦.୧୯୦୭୬୧ | ୦.୧୯୩୮୬୮ | ୦.୧୯୭୦୧୭ |
| ୭ | ୦.୧୬୦୫୦୨ | ୦.୧୭୩୫୪୪ | ୦.୧୬୭୬୦୯ | ୦.୧୬୯୭୦୧ | ୦.୧୭୨୮୧୯ |
| ୮ | ୦.୧୪୨୪୫୬ | ୦.୧୪୫୪୭୬ | ୦.୧୪୮୫୨୭ | ୦.୧୫୧୬୦୯ | ୦.୧୫୦୭୨୧ |
| ୯ | ୦.୧୨୮୪୩୩ | ୦.୧୩୧୪୪୬ | ୦.୧୩୪୪୯୩ | ୦.୧୩୭୫୭୪ | ୦.୧୪୦୬୯୦ |
| ୧୦ | ୦.୧୧୭୨୩୦ | ୦.୧୨୦୨୪୧ | ୦.୧୨୩୨୯୧ | ୦.୧୨୬୩୭୮ | ୦.୧୨୯୫୦୪ |

ମନେକର ୫,୦୦୦ ଟଙ୍କା ମୂଲ୍ୟରେ ଗୋଟିଏ ପରିସମ୍ପତ୍ତି କ୍ରୟ କରାଯାଇଛି ଓ ଏହାକୁ ୩ ବର୍ଷ ମଧ୍ୟରେ ଶୂନ୍ୟରେ ପରିଣତ କରିବାକୁ ହେବ ଓ ଏହି ଅର୍ଥ ବିନିଯୁକ୍ତ ହୋଇଥିଲେ ବାର୍ଷିକ ୩% ହାରରେ ସୁଧ ମିଳି ଥାଆନ୍ତା । ତାହାହେଲେ ଏହି ସମ୍ପତ୍ତିରୁ ପ୍ରତି ବର୍ଷ ୫,୦୦୦ ଟଙ୍କା × ୦,୩୫୩୫୩୦ = ୧,୬୭୭.୬୫ ଟଙ୍କା ମୂଲ୍ୟହ୍ରାସ ବାବଦ ବାଦ୍ ଦିଆଯିବ ।

ସାଧାରଣତଃ ଯେଉଁ ସମସ୍ତ ପରିସମ୍ପତ୍ତିର ସ୍ଥିତି କାଳ ପରେ ମୂଲ୍ୟ ଶୂନ୍ୟରେ ପରିଣତ ହୁଏ ଏହି ପଦ୍ଧତି ସେହି ସମସ୍ତ ପରିସମ୍ପତ୍ତି ପ୍ରତି ପ୍ରଯୁଜ୍ୟ । ଉଦାହରଣ ସ୍ୱରୂପ, ପଟ୍ଟାଦାର ସମ୍ପତ୍ତି, କୋଠାବାଡ଼ି, ଗ୍ରନ୍ଥ ସ୍ୱତ୍ୱ, ପେଟେଣ୍ଟ ସ୍ୱତ୍ୱ, ଯନ୍ତ୍ର, ଆସବାବ ପତ୍ର ପ୍ରଭୃତିର ନାମ ଉଲ୍ଲେଖ କରାଯାଇ ପାରେ । ଯେଉଁ ସମସ୍ତ ସମ୍ପତ୍ତି ସହିତ ପରବର୍ତ୍ତୀ କାଳରେ ନୂତନ ସମ୍ପତ୍ତି ଯଯୁକ୍ତ ହୁଏ ନାହିଁ ଏହି ପଦ୍ଧତି ତାହା ପ୍ରତି ସୁବିଧାରେ ପ୍ରଯୁଜ୍ୟ ହୁଏ ମାତ୍ର ଯଦି ନୂତନ ସମ୍ପତ୍ତି ପୁରାତନ ସମ୍ପତ୍ତି ସହିତ ଯଯୁକ୍ତ ହୁଏ ତାହାହେଲେ ମୂଲ୍ୟହ୍ରାସ ପରିମାଣ ପୁନଃ ନିର୍ଦ୍ଧାରିତ କରିବାକୁ ପଡ଼େ ତେଣୁ ଏହି ପଦ୍ଧତିର ପ୍ରୟୋଗ ସୁବିଧାଜନକ ହୁଏ ନାହିଁ ।

ଏହି ପଦ୍ଧତିକୁ କାର୍ଯ୍ୟକାରୀ କରିବା ନିମନ୍ତେ ନିମ୍ନଲିଖିତ ଜାବ୍ଦା ଆବଶ୍ୟକ ହୁଏ :

ପ୍ରତି ବର୍ଷ ଶେଷରେ

ପରିସମ୍ପତ୍ତି ହିସାବ          ଦାୟୀ
ସୁଧ ହିସାବ ବାବଦ

ମୂଲ୍ୟ ହ୍ରାସ ହିସାବ          ଦାୟୀ
ପରିସମ୍ପତ୍ତି ହିସାବ ବାବଦ

ସୁଧ ହିସାବର ଦାତା ବାକୀ ଓ ମୂଲ୍ୟହ୍ରାସ ହିସାବର ଦାୟୀ ବାକୀ ଉଭୟ ନିଟ୍ ଲଭ-କ୍ଷତି ହିସାବକୁ ସ୍ଥାନାନ୍ତରିତ ହେବ ।

## ଦୃଷ୍ଟାନ୍ତ—(୭)

ଗୋଟିଏ ବ୍ୟବସାୟ ପ୍ରତିଷ୍ଠାନ ୬,୦୦୦ ଟଙ୍କା ବ୍ୟୟରେ ଏକ ପଟ୍ଟାଦାର ସମ୍ପତ୍ତି କ୍ରୟ କଲେ । ଏହାର ସ୍ଥିତିକାଳ ୪ ବର୍ଷ ଓ ଏହି ଅର୍ଥ ଉପରେ ୪% ହାରରେ ସୁଧ ହିସାବ କରାଯିବ । ବାର୍ଷିକ ସମକିସ୍ତି ପଦ୍ଧତି ଅନୁଯାୟୀ ମୂଲ୍ୟହ୍ରାସ ଗଣନା କରାଯିବ । ୧ ଟଙ୍କାକୁ ଶୂନ୍ୟରେ ପରିଣତ କରିବା ନିମନ୍ତେ ପ୍ରତି ବର୍ଷ ୦,୨୭୫୪୯୦ ଟଙ୍କା ମୂଲ୍ୟହ୍ରାସ ବାବଦ ବାଦ୍ ଦିଆଯିବା ଆବଶ୍ୟକ । ଏହି ପରିସମ୍ପତ୍ତି ୧୯୬୯ ମସିହା ଜାନୁୟାରୀ ୧ ତାରିଖରେ କ୍ରୟ କରାଯାଇ ଥିଲା । ଏହି ବ୍ୟବସାୟର ବାର୍ଷିକ ହିସାବ ଡିସେମ୍ବର ୩୧ ତାରିଖରେ ପ୍ରସ୍ତୁତ କରାଯାଏ । ନିକଟତମ ଟଙ୍କା ପର୍ଯ୍ୟନ୍ତ ହିସାବ କରାଯିବ ।

ଏହି ସମ୍ପତ୍ତିର ୪ ବର୍ଷର ହିସାବ ପ୍ରସ୍ତୁତ କର ।

**ସମାଧାନ—**

୬,୦୦୦ ଟଙ୍କା ଉପରେ ମୂଲ୍ୟହ୍ରାସର ପରିମାଣ

୬,୦୦୦ ଟଙ୍କା × ୦·୨୭୫୫୦ = ୧,୬୫୩ ଟଙ୍କା

| ଡେବିଟ୍ | ପଟ୍ଟାଦାର ସମ୍ପତ୍ତି | | | | କ୍ରେଡିଟ୍ |
|---|---|---|---|---|---|
| | | ଟଙ୍କା | | | ଟଙ୍କା |
| ୧୯୬୯ | | | ୧୯୬୯ | | |
| ଜାନୁ-୧ | ବ୍ୟାଙ୍କ୍ ହିଃ ବାଃ | ୬,୦୦୦ | ଡିସେ-୩୧ | ମୂଲ୍ୟହ୍ରାସ ହିସାବବାବଦ | ୧,୬୫୩ |
| ଡିସେ-୩୧ | ସୁଧ ହିଃ ବାବଦ | ୧୪୦ | ,, ୩୧ | ବାକି ଗଡ଼ାଇ | ୪,୪୮୭ |
| | | ୬,୧୪୦ | | | ୬,୧୪୦ |
| ୧୯୭୦ | | | ୧୯୭୦ | | |
| ଜାନୁ-୧ | ପୂର୍ବ ବାକି ବାବଦ | ୪,୪୮୭ | ଡିସେ-୩୧ | ମୂଲ୍ୟହ୍ରାସ ହିସାବ ବାଃ | ୧,୬୫୩ |
| ଡିସେ-୩୧ | ସୁଧ ହିଃ ବାବଦ | ୧୮୩ | ,, ୩୧ | ବାକି ଗଡ଼ାଇ | ୩,୦୧୭ |
| | | ୪,୬୭୦ | | | ୪,୬୭୦ |
| ୧୯୭୧ | | | ୧୯୭୧ | | |
| ଜାନୁ-୧ | ପୂର୍ବ ବାକି ବାବଦ | ୩,୦୧୭ | ଡିସେ-୩୧ | ମୂଲ୍ୟହ୍ରାସ ହିସାବ ବାଃ | ୧,୬୫୩ |
| ଡିସେ-୩୧ | ସୁଧ ହିଃ ବାବଦ | ୧୨୪ | ,, ୩୧ | ବାକି ଗଡ଼ାଇ | ୧,୪୮୮ |
| | | ୩,୧୪୧ | | | ୩,୧୪୧ |
| ୧୯୭୨ | | | ୧୯୭୨ | | |
| ଜାନୁ-୧ | ପୂର୍ବ ବାକି ବାବଦ | ୧,୪୮୮ | ଡିସେ-୩୧ | ମୂଲ୍ୟହ୍ରାସ ହିସାବ ବାଃ | ୧,୬୫୩ |
| ଡିସେ-୩୧ | ସୁଧ ହିଃ ବାବଦ | ୬୪ | | | |
| | | ୧,୬୫୩ | | | ୧,୬୫୩ |

## (୪) ମୂଲ୍ୟହ୍ରାସ ନିଧି ପଦ୍ଧତି—

ଏହି ପଦ୍ଧତିକୁ ପ୍ରତିପୂରକ ନିଧି ମୂଲ୍ୟହ୍ରାସ ପଦ୍ଧତି ମଧ୍ୟ କୁହାଯାଏ ।

ପୂର୍ବରୁ କୁହାଯାଇଛି ଯେ ମୂଲ୍ୟହ୍ରାସ ବାବଦ ଯେଉଁ ଅର୍ଥ ପ୍ରତିବର୍ଷ ନିଟ୍ ଲାଭ-କ୍ଷତି ହିସାବକୁ ଡେବିଟ୍ କରାଯାଏ ଅର୍ଥାତ୍ ନିଟ୍ ଲାଭରୁ ଯେଉଁ ପରିମାଣ ବାଦ୍ ଦିଆଯାଏ ତାହା ସେହି ବ୍ୟବସାୟରେ ହିଁ ରହିଥାଏ । ମାତ୍ର ତାହା ନଗଦ ଟଙ୍କା ଆକାରରେ ନ ଥାଏ । ତେଣୁ ପ୍ରଚଳିତ ସମ୍ପତ୍ତିର ସ୍ଥିତିକାଳ ପୂର୍ଣ୍ଣ ହେବା ପରେ ଯେତେବେଳେ ନୂତନ ସମ୍ପତ୍ତି କ୍ରୟ କରିବା ଆବଶ୍ୟକ ହୁଏ ସେତେବେଳେ ମୂଲ୍ୟହ୍ରାସ ବାବଦ କଟାଯାଇଥିବା ଅର୍ଥ ନଗଦ ଆକାରରେ

ନ ଥିବା ହେତୁ କାର୍ଯ୍ୟୋପଯୋଗୀ ହୋଇ ପାରେ ନାହିଁ । ଏହି ଅସୁବିଧା ଦୂରୀଭୂତ କରିବା ନିମନ୍ତେ ଉପସ୍ଥିତ ପଦ୍ଧତି ପରିକଳ୍ପିତ ହୋଇଛି ।

ଏହି ପଦ୍ଧତି ଅନୁଯାୟୀ ଏକ ନିର୍ଦ୍ଦିଷ୍ଟ ପରିମାଣ ଅର୍ଥ ପ୍ରକାଶେ ବର୍ଷ ଶେଷରେ ନିଟ୍ ଲାଭ-କ୍ଷତି ହିସାବକୁ ଦାୟୀ ଓ ମୂଲ୍ୟହ୍ରାସ ନିଧି ହିସାବକୁ ଦାତା କରାଯାଏ । ପୁଣି ସେହି ପରିମାଣର ଅର୍ଥକୁ ବ୍ୟବସାୟ ପ୍ରତିଷ୍ଠାନ ତାହାରେ ବ୍ୟାଙ୍କରେ ଜମା ରଖାଯାଏ ଅଥବା କମ୍ପାନୀର ଅଂଶ ପତ୍ର ବା ଋଣ ପତ୍ର ଅଥବା ସରକାରୀ ଋଣ ପତ୍ରରେ ବିନିଯୋଗ କରାଯାଏ । ପରିସମ୍ପତ୍ତିର ସ୍ଥିତିକାଳ ଯେତେ ବୃଦ୍ଧି ପାଏ ବିନିଯୋଗ ଓ ବିନିଯୋଗରୁ ପ୍ରାପ୍ତ ସୁଧ ଚକ୍ରବୃଦ୍ଧି ହାରରେ ତେତେ ବୃଦ୍ଧି ପାଉଥାଏ । ପରିସମ୍ପତ୍ତିର ସ୍ଥିତିକାଳ ଶେଷରେ ଯେତେବେଳେ ନୂତନ ପରିସମ୍ପତ୍ତି କ୍ରୟ କରିବା ସମସ୍ୟ ହୁଏ ସେତେବେଳେ ଅଂଶ ପତ୍ର ବା ଋଣ ପତ୍ରଗୁଡ଼ିକ ବିକ୍ରୟ କରାଯାଇ ନଗଦ ଅର୍ଥ ସଂଗୃହୀତ ହୁଏ ଏବଂ ଏହି ଅର୍ଥ ସାହାଯ୍ୟରେ ନୂତନ ପରିସମ୍ପତ୍ତି କ୍ରୟ କରାଯାଏ ।

ଏହି ପଦ୍ଧତିର ସୁବିଧା—

ଏହି ପଦ୍ଧତିର ବିଶିଷ୍ଟ ସୁବିଧା ହେଲା ଏହି ଯେ ନୂତନ ପରିସମ୍ପତ୍ତି କ୍ରୟ କରିବା ନିମନ୍ତେ ଆବଶ୍ୟକ ନଗଦ ଅର୍ଥ ପ୍ରକାଶେ ବ୍ୟବସାୟର ଅନ୍ୟ ପରିସମ୍ପତ୍ତି ବିକ୍ରୟ କରିବାକୁ ପଡ଼େ ନାହିଁ; ଅଥବା କାର୍ଯ୍ୟକାରୀ ପୁଞ୍ଜି ବ୍ୟବହାର କରିବା ଆବଶ୍ୟକ ହୁଏ ନାହିଁ । ନୂତନ ପରିସମ୍ପତ୍ତି କ୍ରୟ କରିବା ନିମନ୍ତେ ବ୍ୟବସାୟ ଉପରେ ଯେଉଁ ଆର୍ଥିକ ଚାପ ପଡ଼ିଥାଆନ୍ତା ଏହି ପଦ୍ଧତି ବ୍ୟବସାୟକୁ ତହିଁରୁ ଅବ୍ୟାହତି ଦିଏ ।

ଏହି ପଦ୍ଧତି ଅନୁଯାୟୀ କେତେ ପରିମାଣର ମୂଲ୍ୟହ୍ରାସ ପ୍ରକାଶେ ପ୍ରତିବର୍ଷ ନିଟ୍ ଲାଭ-କ୍ଷତି ହିସାବକୁ ଦାୟୀ କରିଯିବ ତାହା ଗାଣିତିକ ସୂତ୍ର ଦ୍ୱାରା ନିର୍ଣ୍ଣୀତ ହୋଇ ପାରେ । ତେବେ ସାଧାରଣତଃ ଏଥି ପ୍ରକାଶେ ପ୍ରତିପୂରକ ନିଧି ଟେବୁଲ ବ୍ୟବହାର କରାଯାଏ । ଏହିପରି ଏକ ଟେବୁଲର ନମୁନା ନିମ୍ନରେ ପ୍ରଦତ୍ତ ହେଲା ।

## ପ୍ରତିପୂରକ ନିଧି ଟେବୁଲ

### ଗୋଟିଏ ଟଙ୍କାର ବ୍ୟବସ୍ଥା କରିବା ନିମନ୍ତେ ଆବଶ୍ୟକ

### ବାର୍ଷିକ କିସ୍ତିର ନିକଟବର୍ତ୍ତୀ ପରିମାଣ

| ବର୍ଷ | ୩% | ୩୧/୨% | ୪% | ୪୧/୨% | ୫% |
|---|---|---|---|---|---|
| ୩ | ୦·୩୨୩୫୩୦ | ୦ ୩୨୧୯୮୩ | ୦·୩୨୦୩୪୮ | ୦·୩୧୮୭୭୩ | ୦·୩୧୭୨୦୮ |
| ୪ | ୦·୨୩୯୦୨୮ | ୦·୨୩୭୭୫୧ | ୦·୨୩୫୪୯୦ | ୦·୨୩୩୭୪୪ | ୦·୨୩୨୦୧୨ |
| ୫ | ୦·୧୮୮୩୫୪ | ୦·୧୮୬୪୮୧ | ୦·୧୮୪୬୨୭ | ୦·୧୮୨୭୯୧ | ୦·୧୮୦୯୭୫ |
| ୬ | ୦·୧୫୪୫୯୭ | ୦·୧୫୨୬୬୮ | ୦·୧୫୦୭୬୧ | ୦ ୧୪୮୮୭୮ | ୦·୧୪୭୬୧୭ |
| ୭ | ୦·୧୩୦୫୦୬ | ୦·୧୨୮୫୪୪ | ୦·୧୨୬୬୦୯ | ୦·୧୨୪୭୦୧ | ୦·୧୨୨୮୮୯ |
| ୮ | ୦·୧୧୨୪୫୬ | ୦·୧୧୦୪୭୭ | ୦·୧୦୮୫୨୭ | ୦·୧୦୬୬୦୯ | ୦·୧୦୪୭୨୧ |
| ୯ | ୦·୦୯୮୪୩୩ | ୦·୦୯୬୪୪୬ | ୦·୦୯୪୪୯୩ | ୦·୦୯୨୫୭୪ | ୦·୦୯୦୬୯୦ |
| ୧୦ | ୦·୦୮୭୨୩୦ | ୦ ·୦୮୫୨୪୧ | ୦·୦୮୩୨୯୧ | ୦·୦୮୧୩୭୮ | ୦·୦୭୯୫୦୪ |

ନିମ୍ନଲିଖିତ ରୋଜନାମା ସାହାଯ୍ୟରେ ମୂଲ୍ୟହ୍ରାସ ନିଧି ବା ପରିପୂରକ ନିଧି ସମ୍ବନ୍ଧୀୟ ନେଣ ଦେଣଗୁଡ଼ିକ ହିସାବରେ ଲିପିବଦ୍ଧ କରାଯାଏ ।

(କ) ପ୍ରଥମ ବର୍ଷ ଶେଷରେ :

| | | |
|---|---|---|
| (୧) ମୂଲ୍ୟହ୍ରାସ ହିସାବ ବା ନଟ୍ ଲଭ-କ୍ଷତି ହିସାବ ଦାୟୀ<br>ମୂଲ୍ୟହ୍ରାସ ନିଧି ହିସାବ ବାବଦ | | ମୂଲ୍ୟହ୍ରାସର ବାର୍ଷିକ କିସ୍ତି ସକାଶେ |
| (୨) ମୂଲ୍ୟହ୍ରାସ ନିଧି ବିନିଯୋଗ ହିସାବ<br>ବ୍ୟାଙ୍କ୍ ହିସାବ ବାବଦ | ଦାୟୀ | |

ଉପରୋକ୍ତ (୧)ରେ ଥିବା ମୂଲ୍ୟହ୍ରାସ ହିସାବକୁ ଯଦି ଦାୟୀ କରାଯାଇ ଥାଏ ତାହାହେଲେ ସେହି ହିସାବର ବାକୀ ନଟ୍ ଲଭ-କ୍ଷତି ହିସାବକୁ ସ୍ଥାନାନ୍ତରିତ କରାଯିବ । ମୂଲ୍ୟହ୍ରାସ ନିଧି ହିସାବ ଯାହାର ବାକୀ ଦାତା ତାହା ସ୍ଥିତି-ପତ୍ର (ବା ଉଦ୍‌ବୃତ୍ତ ପତ୍ର)ର ମୂଳଧନ ଓ ଦାୟ ପାର୍ଶ୍ୱରେ ପ୍ରକାଶିତ ହେବ ଓ ମୂଲ୍ୟହ୍ରାସ ନିଧି ବିନିଯୋଗ ହିସାବ ଯାହାର ବାକୀ ଦାୟୀ ଅଟେ ତାହା ସ୍ଥିତି-ପତ୍ରର ପରିସମ୍ପତ୍ତି ପାର୍ଶ୍ୱରେ ପ୍ରକାଶ ପାଇବ ।

(ଖ) ତତ୍‌ପରବର୍ତ୍ତୀ ପ୍ରତ୍ୟେକ ବର୍ଷ ଶେଷରେ :

| | | |
|---|---|---|
| (୩) ବ୍ୟାଙ୍କ୍ ହିସାବ<br>ମୂଲ୍ୟହ୍ରାସ ନିଧି ହିସାବ ବାବଦ | ଦାୟୀ | ବିନିଯୁକ୍ତ ଅର୍ଥର ବାର୍ଷିକ ସୁଧ ପରିମାଣ ସକାଶେ |
| (୪) ମୂଲ୍ୟହ୍ରାସ ହିସାବ ବା<br>ନଟ୍ ଲାଭ-କ୍ଷତି ହିସାବ ଦାୟୀ<br>ମୂଲ୍ୟହ୍ରାସ ନିଧି ହିସାବ ବାବଦ | | ମୂଲ୍ୟହ୍ରାସର ବାର୍ଷିକ କିସ୍ତି ସକାଶେ |
| (୫) ମୂଲ୍ୟହ୍ରାସ ନିଧି ବିନିଯୋଗ ହିସାବ<br>ବ୍ୟାଙ୍କ୍ ହିସାବ ବାବଦ | ଦାୟୀ | ମୂଲ୍ୟହ୍ରାସର ବାର୍ଷିକ କିସ୍ତି + ବିନିଯୁକ୍ତ ଅର୍ଥର ସୁଧ ପରିମାଣ ସକାଶେ |

(ଗ) ଶେଷ ବର୍ଷର ଶେଷରେ :

| | | |
|---|---|---|
| (୬) ବ୍ୟାଙ୍କ୍ ହିସାବ<br>ମୂଲ୍ୟହ୍ରାସ ନିଧି ହିସାବ ବାବଦ | ଦାୟୀ | ବିନିଯୁକ୍ତ ଅର୍ଥର ବାର୍ଷିକ ସୁଧ ପରିମାଣ ସକାଶେ |
| (୭) ମୂଲ୍ୟହ୍ରାସ ହିସାବ ବା<br>ନଟ୍ ଲଭ-କ୍ଷତି ହିସାବ<br>ମୂଲ୍ୟହ୍ରାସ ନିଧି ହିସାବ ବାବଦ | ଦାୟୀ | ମୂଲ୍ୟହ୍ରାସର ବାର୍ଷିକ କିସ୍ତି ସକାଶେ |

(୮) ବ୍ୟାଙ୍କ୍ ହିସାବ ଦାୟୀ
ମୂଲ୍ୟହ୍ରାସ ନିଧି ବିନିଯୋଗ ହିସାବ ବାବଦ } ବିନିଯୁକ୍ତ ଅର୍ଥରେ କ୍ରୀତ ସରକାରୀ ଋଣ ପତ୍ରର ବିକ୍ରୟ-ଲବ୍ଧ ଅର୍ଥ ସକାଶେ

(୯) ମୂଲ୍ୟହ୍ରାସ ନିଧି ବିନିଯୋଗ ହିସାବ ଦାୟୀ
ମୂଲ୍ୟହ୍ରାସ ନିଧି ହିସାବ ବାବଦ } ବିନିଯୋଗ ହିସାବର ଲାଭ ନିଧି ହିସାବକୁ ସ୍ଥାନାନ୍ତରିତ ହେଲା

ଅଥବା

ମୂଲ୍ୟହ୍ରାସ ନିଧି ହିସାବ ଦାୟୀ
ମୂଲ୍ୟହ୍ରାସ ନିଧି ବିନିଯୋଗ ହିଃ ବାବଦ } ବିନିଯୋଗ ହିସାବର କ୍ଷତି ନିଧି ହିସାବକୁ ସ୍ଥାନାନ୍ତରିତ ହେଲା ।

(୧୦) ମୂଲ୍ୟହ୍ରାସ ନିଧି ହିସାବ ଦାୟୀ
ପରିସମ୍ପତ୍ତି ହିସାବ ବାବଦ } ପରିସମ୍ପତ୍ତି ଯେତେ ପରିମାଣରେ ସ୍ଥିତି ପତ୍ରରେ ପ୍ରଦର୍ଶିତ ହୋଇଛି ସେହି ପରିମାଣ ସକାଶେ ।

(୧୧) ମୂଲ୍ୟହ୍ରାସ ନିଧି ହିସାବ ଦାୟୀ
ନିଟ୍ ଲାଭ-କ୍ଷତି ହିସାବ ବାବଦ } ଯଦି ନିଧି ହିସାବର ଦାତା ବାକି ଥାଏ

ଅଥବା

ନିଟ୍ ଲାଭ-କ୍ଷତି ହିସାବ ଦାୟୀ
ମୂଲ୍ୟହ୍ରାସ ନିଧି ହିସାବ ବାବଦ } ଯଦି ନିଧି ହିସାବର ବାକୀ ଦାୟୀ ହୁଏ

ବିନିଯୁକ୍ତ ଅର୍ଥରେ କ୍ରୀତ ସରକାରୀ ଋଣ ପତ୍ର ବିକ୍ରୟ କରି ଯେଉଁ ଅର୍ଥ ବ୍ୟାଙ୍କରେ ଗଚ୍ଛିତ ଅଛି (୮ ନମ୍ବର ରୋଜନାମା ଦ୍ରଷ୍ଟବ୍ୟ) ସେହି ଅର୍ଥ ସାହାଯ୍ୟରେ ବ୍ୟବସାୟ ପ୍ରତିଷ୍ଠାନ ନୂତନ ଯନ୍ତ୍ର ବା ଉପକରଣ କ୍ରୟ କରି ପାରିବ । ଏତଦ୍ଦ୍ୱାରା ପ୍ରତିଷ୍ଠାନକୁ ପୁରାତନ ପରିସମ୍ପତ୍ତି ଅକାମୀ ହେଲା ପରେ ଏହା ସ୍ଥଳରେ ନୂତନ ପରିସମ୍ପତ୍ତି ପ୍ରତିଷ୍ଠାପନ କରିବା ନିମନ୍ତେ ଅର୍ଥ ସଙ୍କଟର ସମ୍ମୁଖୀନ ହେବାକୁ ପଡ଼ିବ ନାହିଁ ଅଥବା କାର୍ଯ୍ୟକାରୀ ପୁଞ୍ଜିର ଉପଯୋଗ କରିବା ଆବଶ୍ୟକ ହେବ ନାହିଁ । ଏହି ପଦ୍ଧତିର ଏକ ଦୃଷ୍ଟାନ୍ତ ନିମ୍ନରେ ପ୍ରଦତ୍ତ ହେଲା ।

## ଦୃଷ୍ଟାନ୍ତ - (୮)

ଗୋଟିଏ ବ୍ୟବସାୟ ପ୍ରତିଷ୍ଠାନ ୧୯୭୦ ମସିହା ଜାନୁୟାରୀ ୧ ତାରିଖରେ ୧୨,୦୦୦ ଟଙ୍କା ବ୍ୟୟରେ ଗୋଟିଏ ଯନ୍ତ୍ର କ୍ରୟ କଲେ । ଏହି ଅର୍ଥକୁ ମୂଲ୍ୟହ୍ରାସ ନିଧି ପଦ୍ଧତି ଅନୁଯାୟୀ ଚାରି ବର୍ଷରେ ନିଃଶେଷିତ କରିଯିବା ସାବ୍ୟସ୍ତ ହେଲା । ମୂଲ୍ୟହ୍ରାସ ପରିମାଣର ଅର୍ଥ ପ୍ରତି ବର୍ଷ ଶତକଡ଼ା ୫ ହାର ସୁଧରେ ସରକାରୀ ଋଣ ପତ୍ରରେ ବିନିଯୋଗ କରାଯିବ । ଚାରିବର୍ଷ ଅନ୍ତେ ଏହି ସରକାରୀ ଋଣ ପତ୍ରକୁ ବିକ୍ରୟ କରି ସେହି ଅର୍ଥ ସାହାଯ୍ୟରେ ପୁରାତନ ଯନ୍ତ୍ର ସ୍ଥାନରେ ନୂତନ ଯନ୍ତ୍ର ପ୍ରତିଷ୍ଠାପିତ ହେବ । ମନେକର ଯେ ସରକାରୀ ଋଣ ପତ୍ରଗୁଡ଼ିକ ୧୯୭୩ ମସିହା ଡିସେମ୍ବର ୩୧ ତାରିଖରେ ବିକ୍ରୀତ ହେଲା ।

ଚାରି ବର୍ଷର ଖତିୟାନ ହିସାବ ପ୍ରସ୍ତୁତ କର ।

### ସମାଧାନ—

ମୂଲ୍ୟହ୍ରାସର ବାର୍ଷିକ କିସ୍ତି = ୦·୨୩୨୦୧୨ ଟଙ୍କା × ୧୨,୦୦୦ = ୨,୭୮୪ ଟଙ୍କା ।

ଦାୟୀ — ଯନ୍ତ୍ର ହିସାବ — ଦାତା

| | | ଟଙ୍କା | | | ଟଙ୍କା |
|---|---|---|---|---|---|
| ୧୯୭୦ ଜାନୁ-୧ | ବ୍ୟାଙ୍କ୍ ହିଃ ବାବଦ | ୧୨,୦୦୦ | ୧୯୭୦ ଡିସେ-୩୧ | ବାକି ଗଡ଼ିଲା | ୧୨,୦୦୦ |
| ୧୯୭୧ ଜାନୁ-୧ | ପୂର୍ବ ବାକି ବାବଦ | ୧୨,୦୦୦ | ୧୯୭୧ ଡିସେ-୩୧ | ବାକୀ ଗଡିଲା | ୧୨,୦୦୦ |
| ୧୯୭୨ ଜାନୁ-୧ | ପୂର୍ବ ବାକି ବାବଦ | ୧୨,୦୦୦ | ୧୯୭୨ ଡିସେ-୩୧ | ବାକୀ ଗଡିଲା | ୧୨,୦୦୦ |
| ୧୯୭୩ ଜାନୁ-୧ | ପୂର୍ବ ବାକି ବାବଦ | ୧୨,୦୦୦ | ୧୯୭୩ ଡିସେ-୩୧ | ମୂଲ୍ୟହ୍ରାସ ନିଧି ହିସାବ ଦାଃ (ସ୍ଥାନାନ୍ତରଣ) | ୧୨,୦୦୦ |

## ମୂଲ୍ୟହ୍ରାସ ହିସାବ

ଦାୟୀ ... ଦାତା

| | | ଟଙ୍କା | | | ଟଙ୍କା |
|---|---|---|---|---|---|
| ୧୯୭୦ ଡିସେ-୩୧ | ମୂଲ୍ୟହ୍ରାସ ନିଧି ହି: ବା: | ୨,୭୮୪ | ୧୯୭୦ ଡିସେ-୩୧ | ନିଟ୍ ଲାଭ କ୍ଷତି ହି:ବା: | ୨,୭୮୪ |
| ୧୯୭୧ ଡିସେ-୩୧ | ମୂଲ୍ୟହ୍ରାସ ନିଧି ହି: ବା: | ୨,୭୮୪ | ୧୯୭୧ ଡିସେ-୩୧ | ନିଟ୍ ଲାଭ-କ୍ଷତି ହି:ବା: | ୨,୭୮୪ |
| ୧୯୭୨ ଡିସେ-୩୧ | ମୂଲ୍ୟହ୍ରାସ ନିଧି ହି: ବା: | ୨,୭୮୪ | ୧୯୭୨ ଡିସେ-୩୧ | ନିଟ୍ ଲାଭ-କ୍ଷତି ହି:ବା: | ୨,୭୮୪ |
| ୧୯୭୩ ଡିସେ-୩୧ | ମୂଲ୍ୟହ୍ରାସ ନିଧି ହି: ବା: | ୨,୭୮୪ | ୧୯୭୩ ଡିସେ-୩୧ | ନିଟ୍ ଲାଭ-କ୍ଷତି ହି:ବା: | ୨,୭୮୪ |

## ମୂଲ୍ୟହ୍ରାସ ନିଧି ହିସାବ

ଦାୟୀ ... ଦାତା

| | | ଟଙ୍କା | | | ଟଙ୍କା |
|---|---|---|---|---|---|
| ୧୯୭୦ ଡିସେ-୩୧ | ବାକୀ ଗଡ଼ଲା | ୨,୭୮୪ | ୧୯୭୦ ଡିସେ-୩୧ | ମୂଲ୍ୟହ୍ରାସ ହିସାବ ବା: | ୨,୭୮୪ |
| ୧୯୭୧ ଡିସେ-୩୧ | ବାକୀ ଗଡ଼ଲା | ୫,୭୦୭ | ୧୯୭୧ ଜାନୁ-୧ | ପୂର୍ବ ବାକୀ ବାବଦ | ୨,୭୮୪ |
| | | | ଡିସେ-୩୧ | ବ୍ୟାଙ୍କ୍ ହି; ବା: (ସୁଧ) | ୧୩୯ |
| | | | ୩୧ | ମୂଲ୍ୟହ୍ରାସ ହି: ବାବଦ | ୨,୭୮୪ |
| | | ୫,୭୦୭ | | | ୫,୭୦୭ |

## ମୂଲ୍ୟହ୍ରାସ ନିଧି ହିସାବ (ଅବଶିଷ୍ଟ)

| ଦାୟୀ | | | | | | | ଦାତା |
|---|---|---|---|---|---|---|---|
| | | | ଟଙ୍କା | | | | ଟଙ୍କା |
| ୧୯୭୨<br>ଡିସେ-୩୧ | ବାକି ଗଡ଼ଲ | | ୮,୬୭୬ | ୧୯୭୨<br>ଜାନୁ-୧<br>ଡିସେ-୩୧<br><br>ଡିସେ-୩୧ | ପୂର୍ବ ବାକି ବାବଦ<br>ବ୍ୟାଙ୍କ୍ ହିସାବ ବାବଦ ସୁଧ<br>ମୂଲ୍ୟହ୍ରାସ ହିଃ ବାଃ | | ୫,୬୦୭<br><br>୩୮୫<br>୨,୬୮୪ |
| | | | ୮,୬୭୬ | | | | ୮,୬୭୬ |
| ୧୯୭୩<br>ଡିସେ-୩୧ | ଯନ୍ତ୍ର ହିସାବ ବାଃ | | ୧୨,୦୦୦ | ୧୯୭୩<br>ଜାନୁ-୧<br>ଡିସେ-୩୧<br><br>ଡିସେ-୩୧<br>ଡିସେ-୩୧ | ପୂର୍ବ ବାକି ବାବଦ<br>ବ୍ୟାଙ୍କ୍ ହିସାବ ବାଃ ସୁଧ<br>ମୂଲ୍ୟ ହ୍ରାସ ହିଃ ବାଃ<br>ନିଟ୍ ଲାଭ-କ୍ଷତିହିଃବାଃ | | ୮,୬୭୬<br><br>୬୩୯<br>୨,୬୮୪<br>୧ |
| | | | ୧୨,୦୦୦ | | | | ୧୨,୦୦୦ |

## ମୂଲ୍ୟହ୍ରାସ ନିଧି ବିନିଯୋଗ ହିସାବ

| ଦାୟୀ | | | | | | | ଦାତା |
|---|---|---|---|---|---|---|---|
| | | | ଟଙ୍କା | | | | ଟଙ୍କା |
| ୧୯୭୦<br>ଡିସେ-୩୧ | ବ୍ୟାଙ୍କ୍ ହିସାବ ବାଃ | | ୨,୬୮୪ | ୧୯୭୦<br>ଡିସେ-୩୧ | ବାକୀ ଗଡ଼ଲ | | ୨,୬୮୪ |
| ୧୯୭୧<br>ଜାନୁ-୧<br>ଡିସେ-୩୧ | ପୂର୍ବ ବାକି ବାବଦ<br>ବ୍ୟାଙ୍କ୍ ହିସାବ ବାଃ | | ୨,୬୮୪<br>୨,୯୨୩ | ୧୯୭୧<br>ଡିସେ-୩୧ | ବାକୀ ଗଡ଼ଲ | | ୫,୬୦୭ |
| | | | ୫,୬୦୭ | | | | ୫,୬୦୭ |
| ୧୯୭୨<br>ଜାନୁ-୧<br>ଡିସେ-୩୧ | ପୂର୍ବ ବାକି ବାବଦ<br>ବ୍ୟାଙ୍କ୍ ହିସାବ ବାଃ | | ୫,୬୦୭<br>୩,୦୬୯ | ୧୯୭୨<br>ଡିସେ-୩୧ | ବାକୀ ଗଡ଼ଲ | | ୮,୬୭୬ |
| | | | ୮,୬୭୬ | | | | ୮,୬୭୬ |
| ୧୯୭୩<br>ଜାନୁ-୧ | ପୂର୍ବ ବାକି ବାବଦ | | ୮,୬୭୬ | ୧୯୭୩<br>ଡିସେ-୩୧ | ବ୍ୟାଙ୍କ୍ ହିଃ ବାଃ | | ୮,୬୭୬ |

## (୫) ବୀମା ପତ୍ର ପଦ୍ଧତି—

ବୀମା ପତ୍ର ପଦ୍ଧତିର ଉଦ୍ଦେଶ୍ୟ ମୂଲ୍ୟ ହ୍ରାସ ନିଧି ପଦ୍ଧତିର ଅନୁରୂପ । ଅର୍ଥାତ୍ ଏହି ପଦ୍ଧତି ଅନୁସୃତ ହେଲେ ବ୍ୟବସାୟ ପ୍ରତିଷ୍ଠାନ ପୁରାତନ ପରିସମ୍ପତ୍ତି ପରିବର୍ତ୍ତେ ନୂତନ ପରିସମ୍ପତ୍ତିର ପ୍ରତି ସ୍ଥାପନ ନିମନ୍ତେ ବୀମା କମ୍ପାନୀ ଠାରୁ ଅର୍ଥ ପାଉଥିବାରୁ କାର୍ଯ୍ୟକାରୀ ପୁଞ୍ଜିର ଉପଯୋଗ ନ କରି ଅଥବା ଅନ୍ୟ ପରିସମ୍ପତ୍ତି ବିକ୍ରୟ ନ କରି ଅନାୟାସେ ତାହା ସମ୍ପାଦନ କରି ପାରେ । ମୂଲ୍ୟ-ହ୍ରାସ ନିଧି ପଦ୍ଧତି ସହିତ ଏହାର ପାର୍ଥକ୍ୟ ମାତ୍ର ଏତିକି ଯେ ମୂଲ୍ୟ ହ୍ରାସ ବାବଦ ବାର୍ଷିକ କିସ୍ତି ପରିମାଣ ବାହାର କମ୍ପାନୀର ଅଂଶ ବା ଋଣ ପତ୍ର ଅଥବା ସରକାରୀ ଋଣ ପତ୍ର ଆଦିରେ ବିନିଯୁକ୍ତ ନ ହୋଇ ବୀମା କମ୍ପାନୀକୁ ପ୍ରିମିୟମ୍ ସ୍ୱରୂପ ପ୍ରଦତ୍ତ ହୁଏ । ପରିସମ୍ପତ୍ତିର କାର୍ଯ୍ୟକାରୀ ସ୍ଥିତିକାଳ ଯେବେ ଶେଷ ହୁଏ ପରିସମ୍ପତ୍ତି ବାବଦ ନିଆଯାଇଥିବା ପଲିସି ମଧ୍ୟ ସେହି ସମୟରେ ମ୍ୟାଚ୍ୟୁର୍ କରେ ଓ ପଲିସି ବାବଦ ପ୍ରତ୍ୟାହୃତ ଅର୍ଥ ବୀମା କମ୍ପାନୀ ଠାରୁ ମିଳେ । ଏହି ପଦ୍ଧତି ଅନୁଯାୟୀ ନେଣ ଦେଣଗୁଡ଼ିକୁ ହିସାବଭୁକ୍ତ କରିବା ନିମନ୍ତେ ନିମ୍ନଲିଖିତ ରୋଜନାମା ଆବଶ୍ୟକ ।

ପ୍ରଥମ ଓ ତତ୍‌ପରବର୍ତ୍ତୀ ବର୍ଷ ମାନଙ୍କରେ :

ଜାନୁ-୧ ମୂଲ୍ୟ ହ୍ରାସ ନିଧି ପଲିସି ହିସାବ ଦାୟୀ<br>
ବ୍ୟାଙ୍କ ହିସାବ ବାବଦ } ପ୍ରିମିୟମର ବାର୍ଷିକ କିସ୍ତି ସକାଶେ

ଡିସେ-୩୧ ମୂଲ୍ୟ ହ୍ରାସ ହିସାବ<br>
ଅଥବା<br>
ନିଟ୍ ଲାଭ-କ୍ଷତି ହିସାବ ଦାୟୀ<br>
ମୂଲ୍ୟ ହ୍ରାସ ନିଧି ହିସାବ ବାବଦ } ବାର୍ଷିକ ମୂଲ୍ୟହ୍ରାସ ସକାଶେ

ମୂଲ୍ୟ ହ୍ରାସ ନିଧି ପଲିସି ହିସାବ ଦାୟୀ<br>
ମୂଲ୍ୟ ହ୍ରାସ ନିଧି ହିସାବ ବାବଦ } ଯଦି କୌଣସି ପୃଥକ ହିସାବ କରାଯାଏ ତା ହେଲେ ପୃଥକ ପରିମାଣ ସକାଶେ

ବର୍ଷ ଶେଷରେ ମୂଲ୍ୟ ହ୍ରାସ ହିସାବର ବାକି ନିଟ୍ ଲାଭ-କ୍ଷତି ହିସାବକୁ ସ୍ଥାନାନ୍ତରିତ କରାଯାଏ । ମୂଲ୍ୟ ହ୍ରାସ ନିଧି ହିସାବର ବାକୀ ସ୍ଥିତି-ପତ୍ରର ଦାୟ ଓ ଦେଣା ପାର୍ଶ୍ୱରେ ପ୍ରକାଶ ପାଇବ ଓ ମୂଲ୍ୟ ହ୍ରାସ ନିଧି ପଲିସି ହିସାବର ବାକୀ ସ୍ଥିତି ପତ୍ରର ପରିସମ୍ପତ୍ତି ପାର୍ଶ୍ୱରେ ପ୍ରକାଶିତ ହେବ ।

ଶେଷ ବର୍ଷ :

ଜାନୁ-୧ ମୂଲ୍ୟ ହ୍ରାସ ନିଧି ପଲିସି ହିସାବ ଡାଏରି } ପ୍ରିମିୟମର ବାର୍ଷିକ
ବ୍ୟାଙ୍କ ହିସାବ ବାବଦ } କିସ୍ତି ସକାଶେ

ଡ଼ିସେ-୩୧ ମୂଲ୍ୟ ହ୍ରାସ ହିସାବ ଡାଏରି } ବାର୍ଷିକ
ବା } ମୂଲ୍ୟ ହ୍ରାସ
ନିଟ୍ ଲାଭ-କ୍ଷତି ହିସାବ ଡାଏରି } ପରିମାଣ
ମୂଲ୍ୟହ୍ରାସ ନିଧି ହିସାବ ବାବଦ } ସକାଶେ

ମୂଲ୍ୟହ୍ରାସ ନିଧି ପଲିସି ହିସାବ ଡାଏରି } ଯଦି କୌଣସି ସୁଧ ହିସାବ
ମୂଲ୍ୟ ହ୍ରାସ ନିଧି ହିସାବ ବାବଦ } କରାଯାଏ, ତାହା ସକାଶେ

ବ୍ୟାଙ୍କ୍ ହିସାବ ଡାଏରି } ମିଆଦ ଅନ୍ତେ ବୀମା
ମୂଲ୍ୟ ହ୍ରାସ ନିଧି ପଲିସି ହିସାବ ବାବଦ } କମ୍ପାନୀ ଠାରୁ ପଲିସି ବାବଦ
ପ୍ରାପ୍ତ ଅର୍ଥ ସକାଶେ

ମୂଲ୍ୟ ହ୍ରାସ ନିଧି ପଲିସି ହିସାବ ଡାଏରି } ପଲିସି ହିସାବରେ ଜମା
ମୂଲ୍ୟ ହ୍ରାସ ନିଧି ହିସାବ ବାବଦ } ବାଙ୍କିଥିଲେ ସେଥି ନିମନ୍ତେ

ଅଥବା

ମୂଲ୍ୟ ହ୍ରାସ ନିଧି ହିସାବ ଡାଏରି } ପଲିସି ହିସାବରେ ଡାଏରି
ମୂଲ୍ୟ ହ୍ରାସ ନିଧି ପଲିସି ହିସାବ ବାବଦ } ବାଙ୍କିଥିଲେ ସେଥି ନିମନ୍ତେ

ସର୍ବଶେଷରେ ମୂଲ୍ୟ ହ୍ରାସ ନିଧି ହିସାବରେ ଯଦି କୌଣସି ବାଙ୍କି ଥାଏ ତାହା ନିଟ୍ ଲାଭ-କ୍ଷତି ହିସାବକୁ ସ୍ଥାନାନ୍ତରିତ ହୁଏ ।

## ଦୃଷ୍ଟାନ୍ତ (୯)

ଗୋଟିଏ କମ୍ପାନୀ ୧୯୬୦ ମସିହା ଜାନୁଆରୀ ୧ ତାରିଖରେ ୧୨,୦୦୦ ଟଙ୍କା ବ୍ୟୟରେ ଗୋଟିଏ କୋଠାଘର ୩ ବର୍ଷ ମିଆଦରେ ପଟ୍ଟା ନେଲେ ଏବଂ ତିନି ବର୍ଷ ମଧ୍ୟରେ ଏହାର ମୂଲ୍ୟ ହ୍ରାସ ସମ୍ପୂର୍ଣ୍ଣ କରିବାକୁ ସ୍ଥିର କଲେ । କିନ୍ତୁ ୩ ବର୍ଷ ଶେଷରେ ଏହି କୋଠାକୁ ପୁଣି ପଟ୍ଟାରେ ଆଣିବା ନିମନ୍ତେ କେତେକ

ଅଥବା ତାହାଠାରୁ ଅଧିକ ଅର୍ଥ ଆବଶ୍ୟକ ହେବ ଅନୁମାନ କରି ଏହି ପରି ସମ୍ପତ୍ତିର ପୁନର୍ସ୍ଥାପନ ସକାଶେ ଏକ ବୀମା ପତ୍ର ବା ପଲିସି ନେଲେ । ପ୍ରତି ବର୍ଷ ଜାନୁଆରୀ ୧ ତାରିଖରେ ଏହି ପଲିସି ବାବଦ ୩,୭୫୦ ଟଙ୍କା । ପ୍ରିମିୟମ୍ ଦେବାକୁ ପଡ଼ିବ ।

୧୯୭୩ ମସିହା ଜାନୁୟାରୀ ୧ ତାରିଖରେ ୧୪,୦୦୦ ଟଙ୍କା ବ୍ୟୟରେ ଏହି ପଟାର ନବୀକରଣ କରାଗଲା । ଆବଶ୍ୟକ ଖତିୟାନ ହିସାବ ପ୍ରସ୍ତୁତ କର ।

## ସମାଧାନ—

ଦାୟୀ — ପଟା ହିସାବ — ଦାତା

| ତାରିଖ | ବିବରଣୀ | ଟଙ୍କା | ତାରିଖ | ବିବରଣୀ | ଟଙ୍କା |
|---|---|---|---|---|---|
| ୧୯୭୦ ଜାନୁ-୧ | ବ୍ୟାଙ୍କ୍ ହିସାବ ବାବଦ | ୧୨,୦୦୦ | ୧୯୭୦ ଡିସେ-୩୧ | ବାକୀ ଗଡ଼ିଲ | ୧୨,୦୦୦ |
| ୧୯୭୧ ଜାନୁ-୧ | ପୂର୍ବ ବାକୀ ବାବଦ | ୧୨,୦୦୦ | ୧୯୭୧ ଡିସେ-୩୧ | ବାକୀ ଗଡ଼ିଲ | ୧୨,୦୦୦ |
| ୧୯୭୨ ଜାନୁ-୧ | ପୂର୍ବ ବାକୀ ବାବଦ | ୧୨,୦୦୦ | ୧୯୭୨ ଡିସେ-୩୧ | ମୂଲ୍ୟହ୍ରାସନିଧି ହିସାବ ବାଃ | ୧୨,୦୦୦ |

ଦାୟୀ — ମୂଲ୍ୟ ହ୍ରାସ ନିଧି ହିସାବ — ଦାତା

| ତାରିଖ | ବିବରଣୀ | ଟଙ୍କା | ତାରିଖ | ବିବରଣୀ | ଟଙ୍କା |
|---|---|---|---|---|---|
| ୧୯୭୦ ଡିସେ-୩୧ | ବାକୀ ଗଡ଼ିଲ | ୩,୭୫୦ | ୧୯୭୦ ଡିସେ-୩୧ | ମୂଲ୍ୟହ୍ରାସ ହିଃ ବାଃ | ୩,୭୫୦ |
| | | | ୧୯୭୧ ଜାନୁ-୧ | ପୂର୍ବ ବାକୀ ବାବଦ | ୩,୭୫୦ |
| ୧୯୭୧ ଡିସେ-୩୧ | ବାକୀ ଗଡ଼ିଲ | ୭,୫୦୦ | ଡିସେ-୩୧ | ମୂଲ୍ୟହ୍ରାସ ହିଃ ବାଃ | ୩,୭୫୦ |
| | | | | | ୭,୫୦୦ |
| | | ୭,୫୦୦ | ୧୯୭୨ ଜାନୁ-୧ | ପୂର୍ବ ବାକୀ ବାବଦ | ୭,୫୦୦ |
| | | | ଡିସେ-୩୧ | ମୂଲ୍ୟହ୍ରାସ ହିଃ ବା | ୩,୭୫୦ |
| ୧୯୭୨ ଡିସେ-୩୧ | ପଟା ହି'ବ ବାଃ | ୧୨,୦୦୦ | ଡିସେ-୩୧ | ମୂଲ୍ୟହ୍ରାସ ନିଧି ପଲିସି ହିଃ ବାବଦ | ୭୫୦ |
| | | ୧୨,୦୦୦ | | | ୧୨,୦୦୦ |

ଦାୟୀ — ମୂଲ୍ୟହ୍ରାସ ନିଧି ପଲିସି ହିସାବ — ଦାତା

| | | | ଟଙ୍କା | | | | ଟଙ୍କା |
|---|---|---|---|---|---|---|---|
| ୧୯୭୦<br>ଜାନୁ-୧ | ବ୍ୟାଙ୍କ ହିସାବ ବାବଦ (ପ୍ରିମିୟମ) | | ୩,୭୫୦ | ୧୯୭୦<br>ଡିସେ-୩ | ବାକି ଗଲା | | ୩,୭୫୦ |
| ୧୯୭୧<br>ଜାନୁ-୧ | ପୂର୍ବ ବାକି ବାବଦ | | ୩,୭୫୦ | ୧୯୭୧<br>ଡିସେ-୩୧ | ବାକି ଗଲା | | ୭,୫୦୦ |
| ୧ | ବ୍ୟାଙ୍କ ହିଃ ବାଃ (ପ୍ରିମିୟମ) | | ୩,୭୫୦ | | | | |
| | | | ୭,୫୦୦ | | | | ୭,୫୦୦ |
| ୧୯୭୨ | ପୂର୍ବ ବାକି ବାବଦ | | ୭,୫୦୦ | ୧୯୭୨<br>ଡିସେ-୩୧ | ବ୍ୟାଙ୍କ ହିଃ ବାଃ | | ୧୨,୦୦୦ |
| ଜାନୁ-୧ | ବ୍ୟାଙ୍କ ହିଃ ବାଃ (ପ୍ରିମିୟମ) | | ୩,୭୫୦ | | | | |
| ୧<br>ଡିସେ-୩୧ | ମୂଲ୍ୟହ୍ରାସ ନିଧି ହିସାବ ବାବଦ (ଲାଭର ସ୍ଥାନାନ୍ତରଣ) | | ୭୫୦ | | | | |
| | | | ୧୨,୦୦୦ | | | | ୧୨,୦୦୦ |

ଦାୟୀ — ପଟ୍ଟା (ନଗଦ) ହିସାବ — ଦାତା

| | | ଟଙ୍କା | | | | ଟଙ୍କା |
|---|---|---|---|---|---|---|
| ୧୯୭୩<br>ଜାନୁ-୧ | ବ୍ୟାଙ୍କ ହିସାବ ବାଃ | ୧୪,୦୦୦ | ୧୯୭୩ | | | |

## (୭) ପୁନର୍ମୂଲ୍ୟାୟନ ପଦ୍ଧତି :

ଯେଉଁ ସବୁ ସମ୍ପତ୍ତିର ମୂଲ୍ୟ ପରିବର୍ତ୍ତନଶୀଳ ସେଥିପ୍ରତି ଏହା ପ୍ରଯୁଜ୍ୟ ହୁଏ । ଉଦାହରଣ ସ୍ୱରୂପ ଗୋ, ମେଷ, ଗ୍ରାଗଲ ଦ, ଯନ୍ତ୍ରପାତି, ଚିନାମାଟିର ବାସନ ପ୍ରଭୃତି ସମ୍ପତ୍ତିର ନାମ ଉଲ୍ଲେଖ କରାଯାଇ ପାରେ । ମରିଯିବା, ହଜିଯିବା,

ହୁଜଯିବା ପ୍ରଭୃତି କାରଣଯୋଗୁଁ ଏହି ସମ୍ପତ୍ତିଗୁଡ଼ିକର ମୂଲ୍ୟହ୍ରାସ ଘଟିଥାଏ । ତେଣୁ ବର୍ଷ ଶେଷରେ ପ୍ରକୃତ ପକ୍ଷେ ଏହିପରି ସମ୍ପତ୍ତିର କେତେ ପରିମାଣ ଅବଶିଷ୍ଟ ଅଛି ତାହା ନିର୍ଦ୍ଧାରଣ କରିବା ସକାଶେ ଏହାର ପୁନର୍ମୂଲ୍ୟା-ୟନ ଆବଶ୍ୟକ ହୁଏ । ଏହାର ସଂଖ୍ୟା ବା ପରିମାଣ ଯାଞ୍ଚ କରି ବର୍ଷ ଶେଷରେ ଉପସ୍ଥିତ ମୂଲ୍ୟ ସ୍ଥିରୀକୃତ ହୁଏ । ବର୍ଷ ଆରମ୍ଭରେ ଖତିୟାନରେ ପ୍ରଦର୍ଶିତ ମୂଲ୍ୟ ଓ ବର୍ଷ ଶେଷରେ ପୁନର୍ମୂଲ୍ୟାୟନଜନିତ ମୂଲ୍ୟର ଅନ୍ତର ଫଳ ମୂଲ୍ୟହ୍ରାସ ଅଥବା ମୂଲ୍ୟବୃଦ୍ଧି ସୂଚାଏ । ଯଦି ମୂଲ୍ୟହ୍ରାସ ହୁଏ ତାହା ମୂଲ୍ୟହ୍ରାସ ହିସାବରେ ପ୍ରଥମେ ଲିପିବଦ୍ଧ କରାଯାଏ ଓ ପରେ ଏହି ହିସାବର ବାକି ନିଟ୍ ଲାଭ-କ୍ଷତି ହିସାବର ଡାହାଣି ପାର୍ଶ୍ୱକୁ ସ୍ଥାନାନ୍ତରିତ କରାଯାଇ ମୂଲ୍ୟ-ହ୍ରାସ ହିସାବକୁ ବନ୍ଦ କରାଯାଏ । ଅପର ପକ୍ଷରେ ଯଦି ମୂଲ୍ୟବୃଦ୍ଧି ହୁଏ ତାହା-ହେଲେ ବୃଦ୍ଧି ପରିମାଣ ନିଟ୍ ଲାଭ-କ୍ଷତି ହିସାବର ଡାହାଣ ପାର୍ଶ୍ୱକୁ ନିଆଯିବ ।

ମନେକର ଗୋଟିଏ ଉତ୍ପାଦନକାରୀ ବ୍ୟବସାୟରେ ଜାନୁୟାରୀ ୧ ତାରିଖରେ ୩,୦୦୦ ଟଙ୍କା ମୂଲ୍ୟର ଯନ୍ତ୍ରପାତି ଥିଲା । ବର୍ଷ ମଧ୍ୟରେ ୧,୫୦୦ ଟଙ୍କାର ଯନ୍ତ୍ରପାତି କ୍ରୟ କରାଯାଇଥିଲା । ମାତ୍ର ଡ଼ିସେମ୍ବର ୩୧ ତାରିଖରେ ପୁନର୍ମୂଲ୍ୟାୟନ ଫଳରେ ଦେଖାଗଲା ଯେ ୩,୯୦୦ ଟଙ୍କା ମୂଲ୍ୟର ଯନ୍ତ୍ରପାତି ମହଜୁଦ୍ ଅଛି । ତାହାହେଲେ ମୂଲ୍ୟହ୍ରାସର ପରିମାଣ

୩,୦୦୦ ଟଙ୍କା + ୧,୫୦୦ ଟଙ୍କା − ୩,୯୦୦ ଟଙ୍କା = ୬୦୦ ଟଙ୍କା ହେବ ।

ହୋଟେଲ, ରେଷ୍ଟୁରେଣ୍ଟ, କ୍ଲବ ପ୍ରଭୃତିରେ ଚିନା ମାଟିର ବାସନ ପ୍ରତି ଏହି ପଦ୍ଧତି ବିଶେଷ ଭାବରେ ପ୍ରଯୁଜ୍ୟ ।

## (୭) ନିଃଶେଷ କରଣ ପଦ୍ଧତି --

ଏହି ପଦ୍ଧତି କୋଇଲା ଖଣି, ତୈଳ ଖଣି, ଆକରିକ ଲୌହ ଖଣି ପ୍ରଭୃତି ପରିସମ୍ପତ୍ତି ପ୍ରତି ପ୍ରଯୁଜ୍ୟ । ଯେ କୌଣସି ଖଣିରେ କେତେ ପରିମାଣର ଖଣିଜ ପଦାର୍ଥ ଅଛି ତାହା ସଂପୃକ୍ତ ଖଣି ବିଶାରଦ ଗଣନା କରି ଜାଣି ପାରନ୍ତି । ଖଣିମାନଙ୍କରୁ ପ୍ରତିବର୍ଷ ଖଣିଜ ପଦାର୍ଥ ଉତ୍ତୋଳିତ ହେବା ଫଳରେ ଏହି ସମ୍ପଦ କ୍ରମେ ହ୍ରାସ ପ୍ରାପ୍ତ ହୁଏ ଏବଂ ଅବଶେଷରେ ଏହା ନିଃଶେଷିତ ହୁଏ, ଯାହା ପରେ ସମସ୍ତ ଖଣିଜ ପଦାର୍ଥ ସମ୍ପୂର୍ଣ୍ଣରୂପେ ନିଃଶେଷିତ ହୁଏ ଅଥବା ଏତେ ଅଳ୍ପ ପରିମାଣରେ ଅବଶିଷ୍ଟ ଥାଏ ଯାହାର ଉତ୍ତୋଳନ ଆଉ ଲାଭଜନକ ହୁଏ

ନାହିଁ । ତେଣୁ ଏହି ପ୍ରକାର ପଟ୍ଟା ସ୍ୱତ୍ୱ ସମ୍ପତ୍ତିର ମୂଲ୍ୟ ହ୍ରାସ ଏଥିରୁ ଉତ୍ତୋଳିତ ବାର୍ଷିକ ଖଣିଜ ପଦାର୍ଥର ପରିମାଣ ଉପରେ ନିର୍ଭର କରେ ।

ଉଦାହରଣ ସ୍ୱରୂପ ମନେକର ଜଣେ ବ୍ୟବସାୟୀ ୨,୦୦,୦୦୦ ଟଙ୍କା ବ୍ୟୟରେ ଗୋଟିଏ କୋଇଲା ଖଣିର ପଟ୍ଟା ସ୍ୱତ୍ୱ କ୍ରୟ କଲେ । ଏଥିରେ ୧୦,୦୦,୦୦୦ ଟନ୍ କୋଇଲା ଥିବାର ଅନୁମାନ କରାଯାଇଛି । ପ୍ରଥମ ବର୍ଷ ଏହି ଖଣିରୁ ୮,୦୦୦ ଟନ୍ ଓ ଦ୍ୱିତୀୟ ବର୍ଷ ୧୨,୦୦୦ ଟନ୍ କୋଇଲା ଉତ୍ତୋଳିତ ହୋଇଥିଲା ।

ଟ ୧,୦୦,୦୦୦ + ୨୦,୦୦,୦୦୦ ଟନ୍ = .୨୦ ପଇସା ଟନ୍ ପ୍ରତି
ମୂଲ୍ୟ ହ୍ରାସ = ୮,୦୦୦ x .୨୦ ପଇସା = ୧,୬୦୦ ଟଙ୍କା ୧ମ ବର୍ଷ ।
୧୨,୦୦୦ x .୨୦ ପଇସା = ୨,୪୦୦ ଟଙ୍କା ୨ୟ ବର୍ଷ ।

## (୮) ଯାନ୍ତ୍ରିକ ଘଣ୍ଟାହାର ପଦ୍ଧତି :

ଏହି ପଦ୍ଧତି ଶ୍ରମ୍ୟ ଘଣ୍ଟା ପଦ୍ଧତିର ଅନୁରୂପ । ମାତ୍ର ପାର୍ଥକ୍ୟ ଏତିକି ଯେ ଏହା ଖଣି ପରିବର୍ତ୍ତେ ଯନ୍ତ୍ର ବା ଉପକରଣ ପ୍ରଭୃତି ପ୍ରତି ପ୍ରଯୁଜ୍ୟ ହୁଏ । ସାଧାରଣତଃ ଗୋଟିଏ ଯନ୍ତ୍ରର କାର୍ଯ୍ୟକାଳୀ ସ୍ଥିତିକାଳ ବର୍ଷ ମାଧ୍ୟମରେ ପ୍ରକାଶିତ ହୁଏ । ମାତ୍ର ଏ କ୍ଷେତ୍ରରେ ବର୍ଷ ପରିବର୍ତ୍ତେ ଘଣ୍ଟା ମାଧ୍ୟମରେ ପ୍ରକାଶିତ ହୁଏ । ଗୋଟିଏ ଯନ୍ତ୍ରର ମୂଲ୍ୟକୁ ଏହାର କାର୍ଯ୍ୟକାଳୀ ଘଣ୍ଟା (ସ୍ଥିତିକାଳ) ଦ୍ୱାରା ଭାଗ କଲେ ଘଣ୍ଟା ପ୍ରତି ମୂଲ୍ୟ ହ୍ରାସ ନିର୍ଣ୍ଣୟ କରାଯାଇ ପାରିବ । ଗୋଟିଏ ବର୍ଷରେ ଏହି ଯନ୍ତ୍ରଟି ଯେତେ ଘଣ୍ଟା କାର୍ଯ୍ୟରେ ନିଯୁକ୍ତ କରାଯାଇଛି ସେହି ଘଣ୍ଟା ସହିତ ଘଣ୍ଟା ପ୍ରତି ମୂଲ୍ୟହ୍ରାସର ପରିମାଣ ଗୁଣ କଲେ ବାର୍ଷିକ ମୂଲ୍ୟ ହ୍ରାସ ପରିମାଣ ନିର୍ଦ୍ଧାରିତ ହୋଇ ପାରିବ ।

ମନେକର ଗୋଟିଏ ଯନ୍ତ୍ର ୧୮,୨୫୦ ଟଙ୍କା ମୂଲ୍ୟରେ କ୍ରୟ କରାଯାଇଛି ଓ ଏହାର କାର୍ଯ୍ୟକାଳୀ ସ୍ଥିତିକାଳ ୩ ବର୍ଷ ଅଟେ । ତାହା ହେଲେ ଘଣ୍ଟା ପ୍ରତି ଏହାର ମୂଲ୍ୟ ହ୍ରାସ

$$\frac{୧୮,୨୫୦}{୩୬୫ \times ୩ \times ୨୪} = .୭୦ \text{ ପଇସା (ନିକଟବର୍ତ୍ତୀ)}$$

ଯଦି କୌଣସି ବର୍ଷ ଏହି ଯନ୍ତ୍ର ୪,୦୦୦ ଘଣ୍ଟା କାର୍ଯ୍ୟ କରିଥାଏ ତାହାହେଲେ ଏହାର ମୂଲ୍ୟ ହ୍ରାସ

୪,୦୦୦ X .୬୦ ପଇସା = ୨,୮୦୦ ଟଙ୍କା ।

ବୃହତ୍ କାରଖାନାମାନଙ୍କରେ ଯେଉଁଠାରେ ବହୁ ମୂଲ୍ୟରେ ଯନ୍ତ୍ରମାନ ସଂସ୍ଥାପିତ ହୋଇଛି ସେହିଠାରେ ଉତ୍ପାଦିତ ପଣ୍ୟର ପରିବ୍ୟୟ ନିର୍ଦ୍ଧାରଣ କରିବା ସକାଶେ ଏହି ପଦ୍ଧତି ଅଧିକ ଉପଯୋଗୀ ହୋଇଥିବାରୁ ବହୁଳ ପରିମାଣରେ ବ୍ୟବହୃତ ହେଉଅଛି ।

## (୯) ବର୍ଷ ସଂଖ୍ୟାର ସମଷ୍ଟି ପଦ୍ଧତି :

ଏହି ପଦ୍ଧତି କ୍ରମ ହ୍ରାସମାନ କିସ୍ତି ପଦ୍ଧତିର ଏକ ପ୍ରକାର ଭେଦ କହିଲେ ଅତ୍ୟୁକ୍ତି ହେବ ନାହିଁ । କ୍ରମ ହ୍ରାସମାନ କିସ୍ତି ପଦ୍ଧତିରେ ପ୍ରତି ବର୍ଷର ମୂଲ୍ୟହ୍ରାସ ପରିମାଣ ଯେପରି ହ୍ରାସପ୍ରାପ୍ତ ହୁଏ ଏଥିରେ ମଧ୍ୟ ତାହାହିଁ ହୁଏ । ମାତ୍ର ଏହି କିସ୍ତିର ଗଣନା ଭିନ୍ନ ସୂତ୍ର ଅନୁଯାୟୀ କରାଯାଏ । ପ୍ରଥମେ ପରିସମ୍ପତ୍ତିର କ୍ରୟ ମୂଲ୍ୟରୁ କାର୍ଯ୍ୟକାଳ ସ୍ଥିତିକାଳ ପରେ ଏହାର ଯେଉଁ ଅବଶେଷ ମୂଲ୍ୟ ରହିବାରୁ ଅନୁମାନ କରାଯାଏ ତାହାକୁ ବିୟୋଗ କରାଯାଏ । ଏହି ଅନ୍ତର ଫଳକୁ କାର୍ଯ୍ୟକର (ସ୍ଥିତିକାଳ) ବର୍ଷ ସଂଖ୍ୟାର ସମଷ୍ଟି ଦ୍ୱାରା ଭାଗ କରାଯାଇ ପରିସମ୍ପତ୍ତି ଯେତେ ବର୍ଷ ସ୍ଥାୟୀ ରହିବ ପ୍ରଥମ ବର୍ଷ ସେହି ବର୍ଷ ସଂଖ୍ୟାଦ୍ୱାରା ଗୁଣନ କରାଯିବ; ଦ୍ୱିତୀୟ ବର୍ଷ ବର୍ଷେ ଊଣା ସଂଖ୍ୟା ଦ୍ୱାରା ଗୁଣ କରାଯିବ । ଏହି ପଦ୍ଧତି ଅନୁଯାୟୀ ମୂଲ୍ୟହ୍ରାସ ପରିମାଣ କିପରି ଭାବରେ ଗଣନା କରାଯାଏ ତାହା ଏକ ଦୃଷ୍ଟାନ୍ତ ସାହାଯ୍ୟରେ ବୁଝାଇ ଦିଆଗଲା ।

### ଦୃଷ୍ଟାନ୍ତ-(୧୦)

ଗୋଟିଏ କମ୍ପାନୀ ୧୯୭୮ ମସିହା ଜାନୁୟାରୀ ୧ ତାରିଖରେ ୧୬,୦୦୦ ଟଙ୍କା ବ୍ୟୟରେ ଗୋଟିଏ ଯନ୍ତ୍ର କ୍ରୟ କଲେ । ଏହାର କାର୍ଯ୍ୟକାରୀ ସ୍ଥିତିକାଳ ୫ ବର୍ଷ ଓ ୫ ବର୍ଷ ପରେ ଏହାର ଅବଶେଷ ମୂଲ୍ୟ ୧,୦୦୦ ଟଙ୍କା ହେବ ବୋଲି ଅନୁମାନ କରାଯାଇଛି । ବର୍ଷ ସଂଖ୍ୟାର ପଦ୍ଧତି ଅନୁଯାୟୀ ମୂଲ୍ୟ ହ୍ରାସ କରି ଯନ୍ତ୍ର ହିସାବ ପ୍ରସ୍ତୁତ କର ।

## ସମାଧାନ—

ଏହି ଯନ୍ତ୍ରର କାର୍ଯ୍ୟକାରୀ ସ୍ଥିତିକାଳ ୫ ବର୍ଷ । ତେଣୁ ୧ମରୁ ୫ମ ବର୍ଷ ପର୍ଯ୍ୟନ୍ତ ବର୍ଷ ସଂଖ୍ୟାର ସମଷ୍ଟି ୫ + ୪ + ୩ + ୨ + ୧ = ୧୫

ଟଙ୍କା

ପ୍ରଥମ ବର୍ଷର ମୂଲ୍ୟ ହ୍ରାସ = $\frac{୫}{୧୫}$ × (୧୩,୦୦୦ − ୧,୦୦୦) = ୪,୦୦୦

ଦ୍ୱିତୀୟ ବର୍ଷର ମୂଲ୍ୟ ହ୍ରାସ = $\frac{୪}{୧୫}$ × (୧୩,୦୦୦ − ୧,୦୦୦) = ୩,୨୦୦

ତୃତୀୟ ବର୍ଷର ମୂଲ୍ୟ ହ୍ରାସ — $\frac{୩}{୧୫}$ × (୧୩,୦୦୦ — ୧,୦୦୦) = ୨,୪୦୦

ଚତୁର୍ଥ ବର୍ଷର ମୂଲ୍ୟ ହ୍ରାସ $\frac{୨}{୧୫}$ × (୧୩,୦୦୦ − ୧,୦୦୦ = ୧,୬୦୦

ପଞ୍ଚମ ବର୍ଷର ମୂଲ୍ୟ ହ୍ରାସ — $\frac{୧}{୧୫}$ × (୧୩,୦୦୦ — ୧,୦୦୦) = ୮୦୦

ଦାୟୀ — ଯନ୍ତ୍ର ହିସାବ — ଦାତା

| | | ଟଙ୍କା | | | ଟଙ୍କା |
|---|---|---|---|---|---|
| ୧୯୬୮ ଜାନୁ-୧ | ବ୍ୟାଙ୍କ ହିସାବ ବାବଦ | ୧୩,୦୦୦ | ୧୯୬୮ ଡିସେ-୩୧ | ମୂଲ୍ୟ ହ୍ରାସ ହିଃ ବାଃ | ୪,୦୦୦ |
| | | | ୩୧ | ବାକି ଚଳିଲା | ୯,୦୦୦ |
| | | ୧୩,୦୦୦ | | | ୧୩,୦୦୦ |
| ୧୯୬୯ ଜାନୁ-୧ | ପୂର୍ବବାକି ବାବଦ | ୯,୦୦୦ | ୧୯୬୯ ଡିସେ-୩୧ | ମୂଲ୍ୟ ହ୍ରାସ ହିଃ ବାଃ | ୩,୨୦୦ |
| | | | ୩୧ | ବାକି ଚଳିଲା | ୫,୮୦୦ |
| | | ୯,୦୦୦ | | | ୯,୦୦୦ |
| ୧୯୭୦ ଜାନୁ-୧ | ପୂର୍ବ ବାକି ବାବଦ | ୫,୮୦୦ | ୧୯୭୦ ଡିସେ-୩୧ | ମୂଲ୍ୟ ହ୍ରାସ ହିଃ ବାଃ | ୨,୪୦୦ |
| | | | ୩୧ | ବାକି ଚଳିଲା | ୩,୪୦୦ |
| | | ୫,୮୦୦ | | | ୫,୮୦୦ |

| ଦାୟୀ | | | ଦାତା | | |
|---|---|---|---|---|---|
| ୧୯୭୧ | | ଟଙ୍କା | ୧୯୭୧ | | ଟଙ୍କା |
| ଜାନୁ-୧ | ପୂର୍ବ ବାକି ବାବଦ | ୩,୪୦୦ | ଡିସେ-୩୧ | ମୂଲ୍ୟ ହ୍ରାସ ହିଃ ବାଃ | ୧,୬୦୦ |
| | | | ୩୧ | ବାକି ଗଲା | ୧,୮୦୦ |
| | | ୩,୪୦୦ | | | ୩,୪୦୦ |
| ୧୯୭୨ | | | ୧୯୭୨ | | |
| ଜାନୁ-୧ | ପୂର୍ବ ବାକି ବାବଦ | ୧,୮୦୦ | ଡିସେ-୩୧ | ମୂଲ୍ୟ ହ୍ରାସ ହିଃ ବାଃ | ୮୦୦ |
| | | | ୩୧ | ବ୍ୟାଙ୍କ ହିସାବ ବାବଦ | ୧,୦୦୦ |
| | | ୧,୮୦୦ | | | ୧,୮୦୦ |

## ସଞ୍ଚିତ ଓ ଭବିଷ୍ୟତ ବ୍ୟବସ୍ଥା

**ସଞ୍ଚିତ**—ନିୟମିତ ବ୍ୟବସାୟରୁ ଅର୍ଜିତ ଲାଭ ବା ଉଦ୍‌ବୃତ୍ତର ଯେଉଁ ଅଂଶ ବ୍ୟବସାୟୀ ନିଜେ ଗ୍ରହଣ ନ କରି ଭବିଷ୍ୟତର କୌଣସି ନିର୍ଦ୍ଦିଷ୍ଟ ଅଥବା ଅନିର୍ଦ୍ଦିଷ୍ଟ ପ୍ରୟୋଜନ ମେଣ୍ଟାଇବା ନିମନ୍ତେ ବ୍ୟବସାୟ ମଧ୍ୟରେ ପୃଥକ୍ ଭାବେ ରଖିଦିଏ ତାହାକୁ ସଞ୍ଚିତ କୁହାଯାଏ । କୌଣସି ନିର୍ଦ୍ଦିଷ୍ଟ ଦାୟ ବା ଦାୟିତ୍ୱ ତୁଲାଇବା ନିମନ୍ତେ ଅଥବା ମୂଲ୍ୟ ହ୍ରାସ ଜନିତ କ୍ଷତି ପୂରଣ କରିବା ନିମନ୍ତେ ଏହି ପ୍ରକାର ସଞ୍ଚିତ ଗଢ଼ାଯାଏ ନାହିଁ । ସଞ୍ଚିତ ଓ ସଞ୍ଚିତ ନିଧି ଭବିଷ୍ୟତର ଆର୍ଥିକ ଦୈନ୍ୟ ବା ଦୁରବସ୍ଥା ମେଣ୍ଟାଇବା ଦୃଷ୍ଟିରୁ ରଖାଯାଏ କୌଣସି ନିର୍ଦ୍ଦିଷ୍ଟ ଦାୟିତ୍ୱ ମେଣ୍ଟାଇବା ସକାଶେ ନୁହେଁ । ଲାଭ କ୍ଷତି ବଣ୍ଟନ ହିସାବକୁ ଦାୟୀ କରି ଏହି ସଞ୍ଚିତ ହିସାବକୁ ଦାତା କରାଯାଏ । ସାଧାରଣ ସଞ୍ଚିତ, ମୂଳଧନ ସଞ୍ଚିତ, ଲଭ୍ୟାଂଶ ସମୀକରଣ ସଞ୍ଚିତ, ସମ୍ଭାବ୍ୟ ପରିସ୍ଥିତି ସଞ୍ଚିତ ପ୍ରଭୃତିର ନାମ ଉଦାହରଣ ସ୍ୱରୂପ ଉଲ୍ଲେଖ କରାଯାଇ ପାରେ । ଏହି ସଞ୍ଚିତଗୁଡ଼ିକ ସଞ୍ଚିତ ନିଧି ଅର୍ଥାତ୍ ସାଧାରଣ ସଞ୍ଚିତ ନିଧି, ମୂଳଧନ ଜାତ ସଞ୍ଚିତ ନିଧି, ଲଭ୍ୟାଂଶ ସମତା ବିଧାୟକ ସଞ୍ଚିତ ନିଧି, ସମ୍ଭାବ୍ୟ ପରିସ୍ଥିତି ସଞ୍ଚିତ ନିଧି ମଧ୍ୟ କୁହାଯାଏ । ସଞ୍ଚିତ ଓ ସଞ୍ଚିତ ନିଧି ମଧ୍ୟରେ ପାର୍ଥକ୍ୟ ହେଉଛି ଏହି ଯେ ସଞ୍ଚିତ ସାଧାରଣ ପରିସମ୍ପତ୍ତି ଦ୍ୱାରା ପ୍ରତିନିଧିତ ହୁଏ ମାତ୍ର ସଞ୍ଚିତ ନିଧି ସରକାରୀ ଋଣ ପତ୍ର, କମ୍ପାନୀ ଅଂଶ ପତ୍ର ବା ଋଣପତ୍ର ଦ୍ୱାରା ପ୍ରତିନିଧିତ ହୁଏ । ଏହି ସଞ୍ଚିତ ତଥା ସଞ୍ଚିତ ନିଧି ହିସାବର ବାକି ଦାତା ହୁଏ ଏବଂ ଏହା ସ୍ଥିତିପତ୍ର ବା ଉଦ୍‌ବୃତ୍ତ ପତ୍ରର ମୂଳଧନ

ଓ ଦେଣା ପାର୍ଶ୍ୱରେ ପ୍ରକାଶିତ ହୁଏ । ସଞ୍ଚିତ ନିଧି କ୍ଷେତ୍ରରେ ସମ-ପରିମାଣର ଅର୍ଥ ବ୍ୟବସାୟ ବାହାରେ ସରକାରୀ ଋଣପତ୍ର ପ୍ରଭୃତିରେ ନିୟୁକ୍ତ ହୁଏ ଏବଂ ଏହି ସଞ୍ଚିତ ନିଧି ବିନିଯୋଗ ହିସାବର ବାକି ପାଉଣା ହୁଏ ଓ ଏହା ସ୍ଥିତି-ପତ୍ରର ପରିସମ୍ପତ୍ତି ଓ ପାଉଣା ପାର୍ଶ୍ୱରେ ଅନ୍ତର୍ଭୁକ୍ତ ହୁଏ ।

ଅପର ପକ୍ଷରେ ନିଟ୍ ଲଭ-କ୍ଷତି ହିସାବ ଅଥବା ନିଟ୍ 'ରେଭିନ୍ୟୁ' ହିସାବ ଅଥବା ଆୟ ବ୍ୟୟ ହିସାବ ପ୍ରଭୃତିକୁ ଦାୟୀ କରି ଭବିଷ୍ୟତ୍ ବ୍ୟବସ୍ଥାର ସୃଷ୍ଟି କରାଯାଏ । ଉଦାହରଣ ସ୍ୱରୂପ ପରିସମ୍ପତ୍ତିର ମୂଲ୍ୟ ହ୍ରାସ, ନବୀକରଣ, ମରାମତି, ମୂଲ୍ୟ ଅସ୍ଥିରତା ସକାଶେ ଭବିଷ୍ୟତ୍ ବ୍ୟବସ୍ଥା କରାଯାଇ ପାରେ । ସେହିପରି କେତେକ ଦାୟିତ୍ୱ ଯାହାର ନିର୍ଦ୍ଦିଷ୍ଟ ପରିମାଣ ପୂର୍ବରୁ ଜଣାଯାଇ ନ ଥାଏ ତାହାକୁ ତୁଲାଇବା ନିମନ୍ତେ ମଧ୍ୟ ଭବିଷ୍ୟତ୍ ବ୍ୟବସ୍ଥା କରାଯାଇ ପାରେ ଯେପରି, ଅନାଦାୟୀ ଅଥବା ସମ୍ଭାବିତ ଅନାଦାୟୀ ଋଣ ନିମନ୍ତେ ଭବିଷ୍ୟତ୍ ବ୍ୟବସ୍ଥା, ଖାତକ ବା ଋଣ ଗ୍ରହୀତାମାନଙ୍କୁ ଦେୟ ବଟା ନିମନ୍ତେ ଭବିଷ୍ୟତ୍ ବ୍ୟବସ୍ଥା । ଏହି ପ୍ରକାର ଭବିଷ୍ୟତ୍ ବ୍ୟବସ୍ଥାକୁ ଅନେକେ ସଞ୍ଚିତ ମଧ୍ୟ କୁହନ୍ତି, ମାତ୍ର ତାହା ଭ୍ରମାତ୍ମକ ।

## ସଞ୍ଚିତ ଓ ଭବିଷ୍ୟତ୍ ବ୍ୟବସ୍ଥା ମଧ୍ୟରେ ପାର୍ଥକ୍ୟ—

(କ) ଲାଭ-କ୍ଷତି ବଣ୍ଟନ ହିସାବକୁ ଦାୟୀ କରି ସଞ୍ଚିତ ସୃଷ୍ଟି କରାଯାଏ ; ମାତ୍ର ନିଟ୍ ଲାଭ-କ୍ଷତି ହିସାବକୁ ଦାୟୀ କରି ଭବିଷ୍ୟତ୍ ବ୍ୟବସ୍ଥା କରାଯାଏ ।

(ଖ) ବ୍ୟବସାୟର ଲାଭ ହୋଇଥାଉ ଅଥବା କ୍ଷତି ହୋଇଥାଉ ଭବିଷ୍ୟତ୍ ବ୍ୟବସ୍ଥା ସକାଶେ ନିଟ୍ ଲାଭ ନିର୍ଣ୍ଣୟ କରିବା ପୂର୍ବରୁ ଏହି ଅର୍ଥ ଲାଭରୁ ଅନ୍ତର କରାଯାଏ । ଏହି ଅର୍ଥ ବାଦ୍ ନ ଦେଇ ନିଟ୍ ଲାଭ-କ୍ଷତି ହିସାବ ପ୍ରସ୍ତୁତ କଲେ ତାହା ହିସାବ ଶାସ୍ତ୍ରର ମତ ବିରୁଦ୍ଧ ହେବ । ମାତ୍ର ନିଟ୍ ଲଭ ନିର୍ଣ୍ଣୀତ ହେବା ପରେ ତାହାର ପରିମାଣ ଯଦି ପର୍ଯ୍ୟାପ୍ତ ହୁଏ ତାହେଲେ ଲାଭ ବଣ୍ଟନ ହିସାବକୁ ଦାୟୀ କରି ସଞ୍ଚିତ ଗଢ଼ାଯାଏ । ଅର୍ଥାତ୍ ସଞ୍ଚିତ ଗଢ଼ିବା ବ୍ୟାପାର ମାଲିକଙ୍କର ଇଚ୍ଛାଧୀନ । ସେ ଏହା ଗଢ଼ି ପାରନ୍ତି ଅଥବା ନ ଗଢ଼ି ପାରନ୍ତି । ବିବେଚକ ଏବଂ ପରିଣାମଦର୍ଶୀ ବ୍ୟବସାୟୀମାନେ ପ୍ରୟୋଜନ କାଳରେ ସୁବିଧା ଦୃଷ୍ଟିରୁ ଏପରି ସଞ୍ଚିତ ଗଢ଼ନ୍ତି ।

(ଗ) ଯେହେତୁ ବ୍ୟବସାୟୀଙ୍କର ପ୍ରାପ୍ୟ ନିଟ୍ ଲାଭରୁ ସଞ୍ଚିତ ତୋଳାଯାଏ ତେଣୁ ତାହା ଉପରେ ତାଙ୍କର ସ୍ୱତ୍ୱ ଥାଏ ଓ ତାହା ସର୍ବଦା ବ୍ୟବସାୟୀଙ୍କର ପ୍ରାପ୍ୟ । ଯଦି ପ୍ରୟୋଜନ ନ ହୁଏ ତାହେଲେ ବ୍ୟବସାୟୀ ସଞ୍ଚିତର ଅର୍ଥ ବ୍ୟବସାୟରୁ ଉଠାଇ

ଦେଇ ଭୋଗ କରି ପାରନ୍ତି । ମାତ୍ର ଭବିଷ୍ୟତ୍ ବ୍ୟବସ୍ଥା ସମ୍ବନ୍ଧରେ ଏହା ପ୍ରଯୁଜ୍ୟ ନୁହେଁ । ଏହା ଉପରେ ବ୍ୟବସାୟୀଙ୍କର ସ୍ୱତ୍ୱ ନ ଥାଏ । ଭବିଷ୍ୟତ୍ ବ୍ୟବସ୍ଥା ବାବଦ ରଖା ଯାଇଥିବା ଅର୍ଥକୁ ବ୍ୟବସାୟୀ ବ୍ୟବସାୟରୁ ଉଠାଇଦେବା ନୀତିବିରୁଦ୍ଧ । ଅବଶ୍ୟ ପ୍ରୟୋଜନୀୟତାକ୍ରମେ ଅର୍ଥ ସଞ୍ଚିତ ହିସାବକୁ ସ୍ଥାନାନ୍ତରିତ କରାଯାଇ ପାରେ ।

ଭବିଷ୍ୟତ୍ ବ୍ୟବସ୍ଥା ସମ୍ବନ୍ଧରେ ପୂର୍ବରୁ ଆଲୋଚନା କରାଯାଇଛି । ଏବେ କେବଳ ଗୋଟିଏ ଏହିପରି ବ୍ୟବସ୍ଥା ସମ୍ବନ୍ଧରେ ଆଲୋଚନା ପ୍ରୟୋଜନ । ତାହା ହେଲା ମରାମତି ଓ ନବୀକରଣ ନିମନ୍ତେ ଭବିଷ୍ୟତ୍ ବ୍ୟବସ୍ଥା ହିସାବ ।

ସାଧାରଣତଃ ଏହି ବ୍ୟବସ୍ଥା ଯନ୍ତ୍ର ପ୍ରତି ପ୍ରଯୁଜ୍ୟ । ଏପରି ବ୍ୟବସ୍ଥା କରିବାର ଉଦ୍ଦେଶ୍ୟ ହେଲା ଯନ୍ତ୍ରର କାର୍ଯ୍ୟକାରୀ ସ୍ଥିତିକାଳ ମଧ୍ୟରେ ମରାମତି ଓ ନବୀକରଣ ବାବଦ ପ୍ରତିବର୍ଷ ନିଟ୍ ଲାଭ-କ୍ଷତି ହିସାବକୁ ସମ-ପରିମାଣର ଅର୍ଥ ପ୍ରଭାରିତ କରିବା । ଗୋଟିଏ ନୂତନ ଯନ୍ତ୍ର କ୍ରୟ କରାଗଲେ ଏହାର କାର୍ଯ୍ୟକାରୀ ସ୍ଥିତିକାଳର ପ୍ରଥମ କେତେ ବର୍ଷରେ ମରାମତି ନିମନ୍ତେ ପ୍ରାୟ କିଛି ଖର୍ଚ୍ଚ ହୁଏ ନାହିଁ; କିନ୍ତୁ ସମୟର ଗତି ଅନୁଯାୟୀ କ୍ରମାଗତ ବ୍ୟବହାର ଫଳରେ ପ୍ରଥମ କେତେ ବର୍ଷ ପରେ ଏହାର ମରାମତି ଏବଂ କେତେକ ଅଂଶର ନବୀକରଣ ଆବଶ୍ୟକ ହୁଏ । ଏହାର ସ୍ଥିତିକାଳ ମଧ୍ୟରେ ଯନ୍ତ୍ରଟି ପ୍ରାୟ ସମ-ପରିମାଣର ସେବା ପ୍ରଦାନ କରେ କିନ୍ତୁ ଏହାର ମରାମତି ବାବଦ ଖର୍ଚ୍ଚ ପ୍ରଥମେ ଆଦୌ ନ ଥାଏ, ପରେ ଊଣା ପରିମାଣର ହୁଏ ଏବଂ ଶେଷ କେତେ ବର୍ଷ ଅତ୍ୟଧିକ ପରିମାଣରେ ହୋଇଥାଏ । ଯେହେତୁ ପ୍ରଥମରୁ ଶେଷ ପର୍ଯ୍ୟନ୍ତ ସେବାର ପରିମାଣ ପ୍ରାୟ ସମାନ ଥାଏ, ତେଣୁ ମରାମତି ଓ ନବୀକରଣ ବାବଦ ଖର୍ଚ୍ଚ ମଧ୍ୟ ପ୍ରତି ବର୍ଷ ସମ-ପରିମାଣର ହେବା ବାଞ୍ଛନୀୟ । ତେଣୁ ଯନ୍ତ୍ରର କାର୍ଯ୍ୟକାରୀ ସ୍ଥିତିକାଳ ମଧ୍ୟରେ ମରାମତି ଓ ନବୀକରଣ ବାବଦ ମୋଟ ପରିମାଣର ପ୍ରାକ୍କଳନ କରାଯାଇ ମଧ୍ୟମାନ ନିର୍ଣ୍ଣୟ କରାଯାଏ । ଏହି ମଧ୍ୟମାନ ବା ହାରାହାରି ପରିମାଣ ସକାଶେ ପ୍ରତି ବର୍ଷ ନିଟ୍ ଲାଭ-କ୍ଷତି ହିସାବକୁ ଦାୟୀ ଓ ମରାମତି ଓ ନବୀକରଣ ନିମନ୍ତେ ଭବିଷ୍ୟତ୍ ବ୍ୟବସ୍ଥା ହିସାବକୁ ଦାତା କରାଯାଏ । ଯେତେବେଳେ ମରାମତି ବାବଦ ପ୍ରକୃତ ଅର୍ଥ ବ୍ୟୟ ହୁଏ ସେତେବେଳେ ତାହା ସକାଶେ ଏହି ଭବିଷ୍ୟତ୍ ବ୍ୟବସ୍ଥା ହିସାବକୁ ଦାୟୀ କରାଯାଏ । ଏହି ହିସାବର ବାକି ପ୍ରତି ବର୍ଷ ଉଦ୍ବୃତ୍ତ ପତ୍ରରେ ଅନ୍ତର୍ଭୁକ୍ତ ହୁଏ ; ଏହି ହିସାବର ବାକି ଯନ୍ତ୍ରର ସ୍ଥିତି କାଳ ଶେଷରେ ପ୍ରାୟ ଶୂନ୍ୟରେ ପରିଣତ ହୋଇଥାଏ । ଏହାର ଏକ ଦୃଷ୍ଟାନ୍ତ ନିମ୍ନରେ ପ୍ରଦତ୍ତ ହେଲା ।

## ଦୃଷ୍ଟାନ୍ତ—(୧୧)

ଗୋଟିଏ ବ୍ୟବସାୟ ପ୍ରତିଷ୍ଠାନ ଏହାର ଯନ୍ତ୍ରର ମରାମତି ଓ ନବୀକରଣ ବାବଦ ନିଟ୍ ଲାଭ-କ୍ଷତି ହିସାବକୁ ପ୍ରତିବର୍ଷ ସମ-ପରିମାଣରେ ଦାୟୀ କରିବାକୁ ଇଚ୍ଛା କରେ । ଯନ୍ତ୍ରର କାର୍ଯ୍ୟକରୀ ସ୍ଥିତିକାଳ ମଧ୍ୟରେ ମରାମତି ଓ ନବୀକରଣ ବାବଦ ଯେତେ ଖର୍ଚ୍ଚ ହେବ ତାହାର ହାରାହାରି ବାର୍ଷିକ ପରିମାଣ ୫,୦୦୦ ଟଙ୍କା ହେବ ବୋଲି କଳନା କରାଯାଇଛି । ମରାମତି ଓ ନବୀକରଣ ବାବଦ ପ୍ରକୃତ ଖର୍ଚ୍ଚ ପ୍ରଥମ ବର୍ଷ ୫୦୦ ଟଙ୍କା, ଦ୍ୱିତୀୟ ବର୍ଷ ୧,୫୦୦ ଟଙ୍କା, ତୃତୀୟ ବର୍ଷ ୨,୩୦୦ ଟଙ୍କା ଓ ଚତୁର୍ଥ ବର୍ଷ ୩,୪୦୦ ଟଙ୍କା ହୋଇଥିଲା ।

ଖତିୟାନ ହିସାବ ପ୍ରସ୍ତୁତ କର :

### ମରାମତି ଓ ନବୀକରଣ ନିମନ୍ତେ ଭବିଷ୍ୟତ୍ ବ୍ୟବସ୍ଥା ହିସାବ

| ଦାୟୀ | | ଟଙ୍କା | | ଦାତା | ଟଙ୍କା |
|---|---|---|---|---|---|
| ୧ମ ବର୍ଷ ? | ବ୍ୟାଙ୍କ୍ ହିଃ ବାଃ | ୫୦୦ | ୧ମ ବର୍ଷ ଶେଷ | ନିଟ୍ ଲାଭ-କ୍ଷତି ହିସାବ ବାବଦ | ୫,୦୦୦ |
| | ବାକି ଗଡ଼ିଲା | ୪,୫୦୦ | | | |
| | | ୫,୦୦୦ | | | ୫,୦୦୦ |
| ୨ୟ ବର୍ଷ ? | ବ୍ୟାଙ୍କ୍ ହିଃ ବାଃ | ୧,୫୦୦ | ୨ୟ ବର୍ଷ ଶେଷ | ପୂର୍ବ ବାକି ବାବଦ | ୪,୫୦୦ |
| | ବାକି ଗଡ଼ିଲା | ୮,୦୦୦ | | ନିଟ୍ ଲାଭ-କ୍ଷତି ହିସାବ ବାବଦ | ୫,୦୦୦ |
| | | ୯,୫୦୦ | | | ୯,୫୦୦ |
| ୩ୟ ବର୍ଷ ? | ବ୍ୟାଙ୍କ୍ ହିଃ ବାଃ | ୨,୩୦୦ | ୩ୟ ବର୍ଷ ଶେଷ | ପୂର୍ବ ବାକି ବାବଦ | ୮,୦୦୦ |
| | ବାକି ଗଡ଼ିଲା | ୧୦,୭୦୦ | | ନିଟ୍ ଲାଭ-କ୍ଷତି ହିସାବ ବାବଦ | ୫,୦୦୦ |
| | | ୧୩,୦୦୦ | | | ୧୩,୦୦୦ |
| ୪ର୍ଥ ବର୍ଷ ? | ବ୍ୟାଙ୍କ୍ ହିଃ ବାଃ | ୩,୪୦୦ | ୪ର୍ଥ ବର୍ଷ ଶେଷ | ପୂର୍ବ ବାକି ବାବଦ | ୧୦,୭୦୦ |
| | ବାକି ଗଡ଼ିଲା | ୧୨,୩୦୦ | | ନିଟ୍ ଲାଭ-କ୍ଷତି ହିସାବ ବାବଦ | ୫,୦୦୦ |
| | | ୧୫,୭୦୦ | | | ୧୫,୭୦୦ |
| | | | ୫ମ ବର୍ଷ | ପୂର୍ବ ବାକି ବାଃ | ୧୨,୩୦୦ |

## ମୂଳଧନ ଜାତ ସଞ୍ଚିତ —

ନିୟମିତ ବ୍ୟବସାୟ ଲବ୍ଧ ଅଥବା ବ୍ୟାପାରିକ ଲାଭ ପରିବର୍ତ୍ତେ ଏହି ସଞ୍ଚିତି ମୂଳଧନ ଜାତୀୟ ଲାଭରୁ ଗଢ଼ାଯାଏ । ସାଧାରଣତଃ ଏପରି ସଞ୍ଚିତି ଯୌଥ କମ୍ପାନୀରେ ପରିଲକ୍ଷିତ ହୁଏ ଏବଂ ଏହା ଯୌଥ କମ୍ପାନୀର ନିମ୍ନଲିଖିତ ପ୍ରକାର ଲାଭରୁ ଗଢ଼ାଯାଏ :

(କ) କମ୍ପାନୀ ନିବନ୍ଧନ-ପୂର୍ବ ଲାଭ;

(ଖ) ଅଂଶ ପତ୍ର ଓ ଋଣ ପତ୍ର ଅଧି ମୂଲ୍ୟରେ ବିକ୍ରୀତ ହେଲେ ତହିଁରୁ ପ୍ରାପ୍ତ ଅଧିକା ଅର୍ଥ;

(ଗ) ଋଣ ପତ୍ର ପରିଶୋଧ କାଳୀନ ଲାଭ;

(ଘ) ପରିଶୋଧନୀୟ ଅଗ୍ରାଧିକାରଯୁକ୍ତ ଅଂଶର ପରିଶୋଧ ନିମନ୍ତେ ଲାଭରୁ ବ୍ୟବହୃତ ଅର୍ଥ;

(ଙ) ଅଂଶ ପତ୍ର ବାଜ୍ୟାପ୍ତ ହେଲେ ତହିଁରୁ ପ୍ରାପ୍ତ ଲାଭ;

(ଚ) ସ୍ଥାୟୀ ପରିସମ୍ପତ୍ତି ବିକ୍ରୟ ଲବ୍ଧ ଲାଭ ଏବଂ

(ଛ) ସ୍ଥାୟୀ ପରିସମ୍ପତ୍ତି ଅଥବା ଦାୟିତ୍ୱର ପୁନର୍ମୂଲ୍ୟାୟନ ଜନିତ ଲାଭ ।

ଏଥି ମଧ୍ୟରୁ କେତେକାଂଶ ଅଂଶଧାରୀମାନଙ୍କୁ ଲାଭାଂଶ ରୂପେ ବଣ୍ଟିତ ହୋଇପାରେ ଏବଂ ବଳକା ମୂଳଧନ ଜାତ ଲାଭ ଯୌଥ କମ୍ପାନୀ ଆଇନ, ୧୯୫୬ର ବିଭିନ୍ନ ଧାରା ଅନୁଯାୟୀ ବ୍ୟବହୃତ ହୁଏ । ଆଇନର ଧାରା ଯାହା ଥାଉନା କାହିଁକି ହିସାବ ଶାସ୍ତ୍ର ନୀତି ଅନୁଯାୟୀ ମୂଳଧନ ଜାତ ଲାଭରୁ ଭବିଷ୍ୟତ୍ ଦୁର୍ଦ୍ଦିନ ସକାଶେ ଏବଂ ବ୍ୟବସାୟ ପ୍ରତିଷ୍ଠାନର ଆର୍ଥିକ ଶ୍ରୀ ବୃଦ୍ଧି ସକାଶେ ମୂଳଧନ ଜାତ ସଞ୍ଚିତ ହିସାବକୁ ସ୍ଥାନାନ୍ତରିତ କରିବା ଉଚିତ । ଏପରି ଲାଭକୁ ଲାଭାଂଶ ରୂପେ ବଣ୍ଟନ କଲେ ତାହା କେତେକ ପରିସ୍ଥିତିରେ ଆଇନ-ସଙ୍ଗତ ହୋଇପାରେ, କିନ୍ତୁ ତାହା ପ୍ରତିଷ୍ଠାନ ପକ୍ଷରେ କ୍ଷତିକାରକ ।

## ଗୁପ୍ତ ସଞ୍ଚିତ —

ସାଧାରଣତଃ ଏପରି ସଞ୍ଚିତ ଯୌଥ କମ୍ପାନୀମାନଙ୍କରେ ରଖାଯାଏ । ଅଂଶଧାରୀମାନଙ୍କର ଅଜ୍ଞାତ ସାରରେ ଏପରି ସଞ୍ଚିତି ଗଢ଼ାଯାଏ ଏବଂ କମ୍ପାନୀ

ଉଦ୍‌ବୃତ୍ତ ପତ୍ରରୁ ଏହା'ର ଅସ୍ତିତ୍ୱ ଜଣାଯାଏ ନାହିଁ । ଯେଉଁ କମ୍ପାନୀରେ ଏପରି ଗୁପ୍ତ ସମ୍ପତ୍ତି ରଖାଯାଇ ଥାଏ ତାହାର ଉଦ୍‌ବୃତ୍ତ ପତ୍ରରୁ କମ୍ପାନୀର ଯେଉଁ ଆର୍ଥିକ ଅବସ୍ଥାର ଚିତ୍ର ମିଳେ ତାହାର ପ୍ରକୃତ ଆର୍ଥିକ ଅବସ୍ଥା ତାହାଠାରୁ ବହୁ ପରିମାଣରେ ଉନ୍ନତ । ଯେଉଁ ଯୌଥ କମ୍ପାନୀ ବ୍ୟାଙ୍କିଂ ବ୍ୟବସାୟ ଚଳାନ୍ତି ସେହିପରି କମ୍ପାନୀ ଗୁପ୍ତ ସମ୍ପତ୍ତି ରଖିବା ପ୍ରୟୋଜନ ବୋଧ କରନ୍ତି । ଯେ କୌଣସି ବ୍ୟାଙ୍କ୍ ପକ୍ଷରେ ଜନସାଧାରଣଙ୍କର ଆସ୍ଥା ଏକାନ୍ତ ଆବଶ୍ୟକ । ଯଦି କୌଣସି ବର୍ଷ ବ୍ୟାଙ୍କରେ ପ୍ରକୃତ ପକ୍ଷେ ଲାଭ ନ ହୋଇ କ୍ଷତି ହୋଇଥାଏ ଏବଂ ତାହା କାଳାନ୍ତକ ଚୂଡ଼ାନ୍ତ ହିସାବରେ ପ୍ରତିଫଳିତ ହୁଏ ତାହାହେଲେ ଏପରି ବ୍ୟାଙ୍କ୍ ଉପରେ ଜନସାଧାରଣ ଆସ୍ଥା ହରାଇବେ ଏବଂ ସେହି ବ୍ୟାଙ୍କ୍‌ରୁ ତାଙ୍କର ଗଚ୍ଛିତ ଅର୍ଥ ଉଠାଇ ନେବାକୁ ଚେଷ୍ଟା କରିବେ । ଅଧିକାଂଶ ଗଚ୍ଛିତକାରୀ ଯଦି ତାଙ୍କର ଗଚ୍ଛିତ ଅର୍ଥ ଏକକାଳୀନ ଉଠାଇ ନେବାକୁ ଆବେଦନ କରନ୍ତି ତାହା ହେଲେ ବ୍ୟାଙ୍କ୍ ଏହି ଅର୍ଥ ଫେରସ୍ତ ଦେବାକୁ ଅସମର୍ଥ ହେବ ଏବଂ ପରିଣାମରେ ବ୍ୟାଙ୍କ୍ ବନ୍ଦ ହୋଇଯିବ । ଏପରି ପରିସ୍ଥିତିକୁ ଏଡ଼ିବା ପାଇଁ ବ୍ୟାଙ୍କ୍ ସର୍ବଦା ଗୁପ୍ତ ସମ୍ପତ୍ତି ଗଢ଼ନ୍ତି ଏବଂ ଆବଶ୍ୟକ ସମୟରେ ଏହି ଅର୍ଥକୁ ଲାଭ ରୂପେ ବ୍ୟବହାର କରନ୍ତି । ନିମ୍ନଲିଖିତ ଉପାୟରେ ବ୍ୟାଙ୍କ୍ ଅଥବା ଏହି ପ୍ରକାର ଅନ୍ୟାନ୍ୟ ପ୍ରତିଷ୍ଠାନ ଗୁପ୍ତ ସମ୍ପତ୍ତି ଗଢ଼ି ଥାଆନ୍ତି :

(କ) ପ୍ରୟୋଜନ ଅତିରିକ୍ତ ହାରରେ ମୂଲ୍ୟ ହ୍ରାସ କରି;

(ଖ) ମୂଳଧନ ଜାତୀୟ ବ୍ୟୟ ସକାଶେ ନିଟ୍ ଲାଭ-କ୍ଷତି ହିସାବକୁ ପ୍ରଭାବିତ କରି;

(ଗ) ମହଜୁଦ୍ ମାଲର ଅବମୂଲ୍ୟାୟନ କରି;

(ଘ) ବକେୟାକୁ ହିସାବଭୁକ୍ତ ନ କରି;

(ଙ) ସମ୍ଭାବ୍ୟ ଦାୟକୁ ପ୍ରକୃତ ଦାୟରୂପେ ଦର୍ଶାଇ;

(ଚ) ପ୍ରକୃତ ପରିସମ୍ପତ୍ତିକୁ ଏକ ସମ୍ଭାବ୍ୟ ପରିସମ୍ପତ୍ତି ରୂପେ ଦର୍ଶାଇ;

(ଛ) ଅଣ-ଦୃଶ୍ୟ ଜାତୀୟ ଅଂଶକୁ ପରିସମ୍ପତ୍ତି ହିସାବରେ ଦର୍ଶାଇ;

(ଜ) ଯେଉଁ ପରିସମ୍ପତ୍ତିର ମୂଲ୍ୟ ସ୍ଥାୟୀ ଭାବରେ ବୃଦ୍ଧି ପାଇଛି ତାହାକୁ ହିସାବଭୁକ୍ତ ନ କରି ଓ

(ଝ) ଯେଉଁ ଦାୟର ମୂଲ୍ୟ ସ୍ଥାୟୀ ଭାବରେ ହ୍ରାସ ପ୍ରାପ୍ତ ହୋଇଛି ତାହାକୁ ହିସାବଭୁକ୍ତ ନ କରି ।

ଅନ୍ୟାନ୍ୟ ଅନେକ ଉପାୟରେ ମଧ୍ୟ ଗୁପ୍ତ ସଞ୍ଚିତି ଗଢ଼ାଯାଇ ପାରେ । ଏହି ପ୍ରକାର ସଞ୍ଚିତି କେତେକ ପ୍ରତିଷ୍ଠାନ ସକାଶେ ଯେ ଏକାନ୍ତ ଆବଶ୍ୟକ ଏଥିରେ କୌଣସି ସନ୍ଦେହ ନାହିଁ, ମାତ୍ର ଏହାର ଦୁଇଟି ବିପଦ ଅଛି, ଯଥା ନିର୍ଦ୍ଦେଶକ ମଣ୍ଡଳୀ ଯଦି ଅସତ୍ ହୁଅନ୍ତି ତାହା ହେଲେ ପ୍ରତିଷ୍ଠାନର ଅର୍ଥ ନିର୍ବିଘ୍ନରେ ଆତ୍ମସାତ୍ କରିବାର ସୁଯୋଗ ପାଆନ୍ତି ଏବଂ ପ୍ରତିଷ୍ଠାନର ଚୂଡ଼ାନ୍ତ ହିସାବ ପ୍ରତିଷ୍ଠାନର ପ୍ରକୃତ ଆର୍ଥିକ ଚିତ୍ର ଦେବାକୁ ଅକ୍ଷମ ହୁଏ ।

## ସାଧାରଣ ସଞ୍ଚିତ —

ପୂର୍ବରୁ କୁହାଯାଇଛି ଯେ ଲାଭ-କ୍ଷତି ବଣ୍ଟନ ହିସାବକୁ ଦାୟୀ କରି ଏହି ସଞ୍ଚିତି ଗଢ଼ାଯାଏ । ଏପରି ସଞ୍ଚିତିର କୌଣସି ବିଶେଷ ଉଦ୍ଦେଶ୍ୟ ନ ଥାଏ । କୌଣସି ଆକସ୍ମିକ ଘଟଣା ଜନିତ କ୍ଷତିରୁ ଉଦ୍ଧାର ପାଇବା ପାଇଁ ଅଥବା ପ୍ରତିଷ୍ଠାନର ସାଧାରଣ ଆର୍ଥିକ ଅବସ୍ଥାକୁ ଦୃଢ଼ କରିବା ଉଦ୍ଦେଶ୍ୟରେ ଏପରି ସଞ୍ଚିତି ଗଢ଼ାଯାଏ । ଏହାକୁ "ସଞ୍ଚିତି ନିଧି ଅଥବା ସମ୍ଭାବ୍ୟ ପରିସ୍ଥିତି ସଞ୍ଚିତି" ବୋଲି ମଧ୍ୟ କୁହାଯାଏ ।

## ବିଶେଷ ସଞ୍ଚିତ —

କୌଣସି ଏକ ନିର୍ଦ୍ଦିଷ୍ଟ ଉଦ୍ଦେଶ୍ୟରେ ଏପରି ସଞ୍ଚିତି ଗଢ଼ାଯାଏ । ଉଦାହରଣ ସ୍ୱରୂପ ଲାଭାଂଶ ସମତା ବିଧାୟକ ସଞ୍ଚିତି ନିଧିର ନାମ ଉଲ୍ଲେଖ କରାଯାଇ ପାରେ । ପ୍ରତି ବର୍ଷ ଲାଭର ପରିମାଣ କ୍ୱଚିତ୍ ସମାନ ହୁଏ । ତେଣୁ ଏହା ସ୍ୱତଃସିଦ୍ଧ ଯେ ଲାଭାଂଶର ପରିମାଣ ମଧ୍ୟ ଲାଭ ଅନୁପାତରେ ପରିବର୍ତ୍ତନଶୀଳ ହେବ । ଯଦି ପୂର୍ବ ବର୍ଷ ତୁଳନାରେ ଚଳିତ ବର୍ଷର ଲାଭ ଅଧିକ ହୁଏ ଏବଂ ପୂର୍ବ ବର୍ଷ ତୁଳନାରେ ଲାଭାଂଶର ହାର ଉଚ୍ଚତର ହୁଏ ତାହି ହେଲେ କମ୍ପାନୀକୁ କୌଣସି ଅସୁବିଧାର ସମ୍ମୁଖୀନ ହେବାକୁ ପଡ଼େ ନାହିଁ । ମାତ୍ର ଯଦି ଚଳିତ ବର୍ଷର ଲାଭ ପୂର୍ବ ବର୍ଷ ତୁଳନାରେ ଊଣା ହୁଏ ଏବଂ ଲାଭାଂଶର ହାର ହ୍ରାସ ପାଏ ତାହା ହେଲେ ଅଂଶଧାରୀମାନେ ଅସନ୍ତୁଷ୍ଟ ହୁଅନ୍ତି ଏବଂ ଏହା ନିର୍ଦ୍ଦେଶକ ମଣ୍ଡଳୀଙ୍କର ଅପାରଗତା ହେତୁ ଘଟିଛି ବୋଲି ଅଭିଯୋଗ କରନ୍ତି । ଅଧିକନ୍ତୁ ଲାଭାଂଶର ହାର ହ୍ରାସ ପ୍ରାପ୍ତ ହେଲେ ଶେୟାର ବଜାରରେ ଏହି କମ୍ପାନୀର ଅଂଶ ପତ୍ରର ମୂଲ୍ୟ ହ୍ରାସ ପାଇବାର ସମ୍ଭାବନା ଥାଏ । କମ୍ପାନୀ ଋଣ ସଂଗ୍ରହ କରିବାରେ ମଧ୍ୟ ଅସୁବିଧା ଭୋଗ କରେ । ଏହି ସମସ୍ତ ଅପ୍ରୀତିକର ପରିସ୍ଥିତି ଏଡ଼ାଇବା ସକାଶେ କମ୍ପାନୀ ଲାଭାଂଶ ସମତା ବିଧାୟକ ସଞ୍ଚିତି ନିଧି ସୃଷ୍ଟି କରେ । ଅଧିକ ଲାଭ କ୍ଷେତ୍ରରେ ଏକ ନିର୍ଦ୍ଦିଷ୍ଟ ହାରରେ ଲାଭାଂଶ ବଣ୍ଟନ ନିମନ୍ତେ ପର୍ଯ୍ୟାପ୍ତ ଲାଭ ରଖି ବଳକା ଅର୍ଥ ଏହି ସଞ୍ଚିତି ନିଧିକୁ ସ୍ଥାନାନ୍ତରିତ

କରାଯାଏ ଓ ଲାଭର ପରିମାଣ ଅପେକ୍ଷାକୃତ ଦୃଢ଼ ଥିଲେ ନିର୍ଦ୍ଦିଷ୍ଟ ହାରରେ ଲାଭାଂଶ ବଣ୍ଟନ ନିମନ୍ତେ ଆବଶ୍ୟକ ଅଭାବୀ ଅର୍ଥ ଏହି ସଞ୍ଚିତି ହିସାବରୁ ସ୍ଥାନାନ୍ତରିତ କରି ନିର୍ଦ୍ଦିଷ୍ଟ ହାରରେ ଲାଭ ବଣ୍ଟନ କରାଯାଏ ।

କୌଣସି ଏକ ନିର୍ଦ୍ଦିଷ୍ଟ ଦାୟରୁ ମୁକ୍ତ ହେବା ଉଦ୍ଦେଶ୍ୟରେ ମଧ୍ୟ ଏପରି ସଞ୍ଚିତି ବା ସଞ୍ଚିତି ନିଧି ଗଢ଼ାଯାଇପାରେ । ଉଦାହରଣ ସ୍ୱରୂପ, ପ୍ରତିପୂରକ ନିଧିର ନାମ ଉଲ୍ଲେଖ କରାଯାଇ ପାରେ ।

## ପ୍ରତିପୂରକ ନିଧି :

ଗୋଟିଏ ପରିସମ୍ପତ୍ତିର ସ୍ଥିତିକାଳ ଅନ୍ତେ ପ୍ରତିକଳନ ନିମନ୍ତେ କିପରି ପ୍ରତିପୂରକ ନିଧି ବ୍ୟବହୃତ ହୁଏ ତାହା ପୂର୍ବରୁ ଆଲୋଚିତ ହୋଇଛି । ପରିଶୋଧନୀୟ ଋଣ ପତ୍ରର ପରିଶୋଧ ଦିବସରେ ଆବଶ୍ୟକ ଅର୍ଥର ସଂସ୍ଥାନ କରିବା ଉଦ୍ଦେଶ୍ୟରେ ମଧ୍ୟ ପ୍ରତିପୂରକ ନିଧି ସୃଷ୍ଟି କରାଯାଇ ପାରେ । ଉଭୟ ମଧ୍ୟରେ ଥିବା ପାର୍ଥକ୍ୟ ନିମ୍ନରେ ପ୍ରଦତ୍ତ ହେଲା ।

(୧) ଯେତେବେଳେ କୌଣସି ଏକ ପରିସମ୍ପତ୍ତିର ପ୍ରତିସ୍ଥାପନ ନିମନ୍ତେ ପ୍ରତିପୂରକ ନିଧି ଗଢ଼ାଯାଏ ସେତେବେଳେ ପ୍ରତି ବର୍ଷ (ମୂଲ୍ୟ ହ୍ରାସ ନିଧି ଅଥବା) ପ୍ରତିପୂରକ ନିଧିକୁ ଯେଉଁ ଅର୍ଥ ସକାଶେ ଦାତା କରାଯାଏ ତାହା ନିଟ୍ ଲାଭ କ୍ଷତି ହିସାବକୁ ଦାୟୀ କରି ଲାଭ କରାଯାଏ, କାରଣ ଏହା ମୂଲ୍ୟ ହ୍ରାସ ସଂପୃକ୍ତ । ମାତ୍ର ଯେତେବେଳେ କୌଣସି ଦାୟର ପରିଶୋଧ ନିମନ୍ତେ ପ୍ରତିପୂରକ ନିଧି ସୃଷ୍ଟିକରାଯାଏ ସେତେବେଳେ ପ୍ରତି ବର୍ଷ ପ୍ରତିପୂରକ ନିଧିକୁ ଯେଉଁ ପରିମାଣରେ ଦାତା କରାଯାଏ ତାହା ଲାଭ-କ୍ଷତି ବଣ୍ଟନ ହିସାବକୁ ଦାୟୀ କରିବା ଦ୍ୱାରା ଲାଭ କରାଯାଏ । ଅର୍ଥାତ୍ ଅନ୍ୟାନ୍ୟ ସଞ୍ଚିତି ଗଢ଼ିବା ନିମନ୍ତେ ଯେଉଁ ପ୍ରଣାଳୀ ଅନୁସୃତ ହୁଏ ଏ କ୍ଷେତ୍ରରେ ମଧ୍ୟ ତାହାହିଁ କରାଯାଏ ।

(୨) ଯେତେବେଳେ ପରିସମ୍ପତ୍ତିର ପ୍ରତିସ୍ଥାପନ ନିମନ୍ତେ ପ୍ରତିପୂରକ ନିଧି ଗଢ଼ାଯାଏ ·ପରିସମ୍ପତ୍ତିର ସ୍ଥିତି-କାଳର ଶେଷ ବର୍ଷରେ ( ମୂଲ୍ୟ ହ୍ରାସ ନିଧି ବିନିଯୋଗ ହିସାବରେ ଅଥବା ) ପ୍ରତିପୂରକ ନିଧି ବିନିଯୋଗ ହିସାବ ସଂପୃକ୍ତ ସରକାରୀ ଋଣ ପତ୍ର ଆଦି ବିକ୍ରୟ କରି ଯେଉଁ ଅର୍ଥ ଲାଭ କରାଯାଏ ତଦ୍ୱାରା ଏକ ନୂତନ ପରିସମ୍ପତ୍ତି କ୍ରୟ କରାଯାଏ । ଅପର ପକ୍ଷରେ ଦାୟ ପରିଶୋଧ ନିମନ୍ତେ ପ୍ରତିପୂରକ ନିଧି ସୃଷ୍ଟି କରାଯାଇଥିଲେ ବିନିଯୋଗ ହିସାବ ସଂପୃକ୍ତ ସରକାରୀ ଋଣ ପତ୍ର ଆଦି ବିକ୍ରୟ କରି ଯେଉଁ ଅର୍ଥ ଲାଭ କରାଯାଏ ତଦ୍ୱାରା ଏକ ନିର୍ଦ୍ଦିଷ୍ଟ ଦାୟ ପରିଶୋଧ କରାଯାଏ ।

(ଗ) ପରିସମ୍ପତ୍ତିର ପ୍ରତିସ୍ଥାପନ କ୍ଷେତ୍ରରେ ପୁରାତନ ପରିସମ୍ପତ୍ତି ହିସାବର ବାକି (ମୂଲ୍ୟ ହ୍ରାସ ନିଧି ହିସାବ ଅଥବା) ପ୍ରତିପୂରକ ନିଧି ହିସାବକୁ ସ୍ଥାନାନ୍ତରିତ କରାଯାଏ । ପ୍ରତିପୂରକ ନିଧି ବିନିଯୋଗ ହିସାବ ଅପସୃତ ହୋଇ ତାହା ସ୍ଥଳରେ ନୂତନ ପରିସମ୍ପତ୍ତିର ଆବିର୍ଭାବ ହୁଏ । ଦାୟ ପରିଶୋଧ କ୍ଷେତ୍ରରେ ପ୍ରତିପୂରକ ନିଧି ବିନିଯୋଗ ହିସାବ ସଂପୃକ୍ତ ସରକାରୀ ଋଣ ପତ୍ର ବିକ୍ରୟ ଲବ୍ଧ ଅର୍ଥ ଏକ ନିର୍ଦ୍ଦିଷ୍ଟ ଦାୟ ପରିଶୋଧ କରିବାରେ ବ୍ୟବହୃତ ହେଉଥିବାରୁ ଉଦ୍‌ବୃତ୍ତ ପତ୍ରର ପରିସମ୍ପତ୍ତି ପାର୍ଶ୍ୱରୁ ପ୍ରତିପୂରକ ନିଧି ବିନିଯୋଗ ହିସାବ ଓ ମୂଳଧନ ଓ ଦେଣା ପାର୍ଶ୍ୱରୁ ସମପରିମାଣର ଏକ ଦାୟ ହିସାବ ଅନ୍ତର୍ହିତ ହୁଏ । ପ୍ରତିପୂରକ ନିଧି ହିସାବର ବାକି ସାଧାରଣ ସଞ୍ଚିତି ହିସାବକୁ ସ୍ଥାନାନ୍ତରିତ ହୁଏ ।

ଉଭୟ କ୍ଷେତ୍ରରେ ଜାବେଦାର ପାର୍ଥକ୍ୟ ନିମ୍ନରେ ପ୍ରଦତ୍ତ ହେଲା ।

| | କ<br>ସମ୍ପୃକ୍ତ ପରିସମ୍ପତ୍ତିର ପ୍ରତିସ୍ଥାପନ ନିମନ୍ତେ ପ୍ରତିପୂରକ ନିଧି | ଖ<br>ଦାୟ ପରିଶୋଧ ନିମନ୍ତେ ପ୍ରତିପୂରକ ନିଧି |
|---|---|---|
| **ପ୍ରଥମ ବର୍ଷ** | | |
| (୧) ବାର୍ଷିକ କିସ୍ତି ନିମନ୍ତେ | ନିଟ୍ ଲାଭ କ୍ଷତି ହିଃ ଦାୟୀ<br>ପ୍ରତିପୂରକ ନିଧି ହିଃ ବାବଦ | ଲାଭ-କ୍ଷତି ବଣ୍ଟନ ହିଃ ଦାୟୀ<br>ପ୍ରତିପୂରକ ନିଧି ହିଃ ବାଃ |
| (୨) ବାର୍ଷିକ କିସ୍ତିର ବିନିଯୋଗ ନିମନ୍ତେ | ପ୍ରତିପୂରକ ନିଧି ବିନିଯୋଗ ହିସାବ ଦାୟୀ<br>ବ୍ୟାଙ୍କ୍ ହିସାବ ବାବଦ | କ ତୁଲ୍ୟ |
| **ପରବର୍ତ୍ତୀ ବର୍ଷ ମାନଙ୍କରେ** | | |
| (୩) ବିନିଯୁକ୍ତ ଅର୍ଥର ବାର୍ଷିକ ସୁଧ ପ୍ରାପ୍ତି ନିମନ୍ତେ | ବ୍ୟାଙ୍କ୍ ହିସାବ ଦାୟୀ<br>ପ୍ରତିପୂରକ ନିଧି ହିଃ ବାବଦ | କ ତୁଲ୍ୟ |

| | କ | ଖ |
|---|---|---|
| (୪) ବାର୍ଷିକ କିସ୍ତି ନିମନ୍ତେ | ନିଟ୍ ଲାଭ-କ୍ଷତି ହିସାବ ଦାୟୀ<br>ପ୍ରତିପୂରକ ନିଧି ହିଃ ବାବଦ | ଲାଭ-କ୍ଷତି ବଣ୍ଟନ ହିଃ ଦାୟୀ<br>ପ୍ରତିପୂରକ ନିଧି ହିଃ ବାବଦ |
| (୫) ବିନିଯୁକ୍ତ ଅର୍ଥର ପ୍ରାପ୍ତ ବାର୍ଷିକ ସୁଧ ଓ ବାର୍ଷିକ କିସ୍ତିର ବିନିଯୋଗ ନିମନ୍ତେ | ପ୍ରତିପୂରକ ନିଧି ବିନିଯୋଗ<br>ହିସାବ ଦାୟୀ<br>ବ୍ୟାଙ୍କ୍ ହିସାବ ବାବଦ | କ ତୁଲ୍ୟ |
| **ଶେଷ ବର୍ଷ** | | |
| (୬) ବିନିଯୁକ୍ତ ଅର୍ଥର ବାର୍ଷିକ ସୁଧ ପ୍ରାପ୍ତି ନିମନ୍ତେ | ବ୍ୟାଙ୍କ୍ ହିସାବ ଦାୟୀ<br>ପ୍ରତିପୂରକ ନିଧି ହିଃ ବାବଦ | କ ତୁଲ୍ୟ |
| (୭) ବାର୍ଷିକ କିସ୍ତି ନିମନ୍ତେ | ନିଟ୍ ଲାଭ-କ୍ଷତି ହିଃ ଦାୟୀ<br>ପ୍ରତିପୂରକ ନିଧି ହିଃ ବାବଦ | ଲାଭ-କ୍ଷତି ବଣ୍ଟନ ହିଃ ଦାୟୀ<br>ପ୍ରତିପୂରକ ନିଧି ହିଃ ବାଃ |
| (୮) ବିନିଯୁକ୍ତ ଅର୍ଥ ଆଦାୟ କରିବା ନିମନ୍ତେ | ବ୍ୟାଙ୍କ୍ ହିସାବ ଦାୟୀ<br>ପ୍ରତିପୂରକ ନିଧି ବିନିଯୋଗ<br>ହିସାବ ବାବଦ | କ ତୁଲ୍ୟ |
| (୯) ପୁରାତନ ସମ୍ପତ୍ତିର ମୂଲ୍ୟ ହ୍ରାସ ଓ ନୂତନ ସମ୍ପତ୍ତିର କ୍ରୟ ନିମନ୍ତେ | (କ) ପ୍ରତିପୂରକ ନିଧି ହିଃ ଦାୟୀ<br>ପୁରାତନ ପରିସମ୍ପତ୍ତି ହିଃ ବାଃ<br>(ଖ) ନୂତନ ପରିସମ୍ପତ୍ତି ହିସାବ ଦାୟୀ<br>ବ୍ୟାଙ୍କ୍ ହିସାବ ବାବଦ | ନିଷ୍ପ୍ରୟୋଜନ |
| (୧୦) ଦାୟ ପରିଶୋଧ କରିବା ନିମନ୍ତେ | ନିଷ୍ପ୍ରୟୋଜନ | (କ) ଋଣପତ୍ର ହିଃ ଦାୟୀ<br>ଋଣପତ୍ରଧାରୀଙ୍କ ହିଃ ବାବଦ<br>(ଖ) ଋଣପତ୍ରଧାରୀଙ୍କ ହିସାବ ଦାୟୀ<br>ବ୍ୟାଙ୍କ ହିସାବ ବାବଦ |

(୩) ପରିସମ୍ପତ୍ତିର ପ୍ରତିସ୍ଥାପନ କ୍ଷେତ୍ରରେ ପୁରାତନ ପରିସମ୍ପତ୍ତି ହିସାବର ବାକି ( ମୂଲ୍ୟ ହ୍ରାସ ନିଧି ହିସାବ ଅଥବା ) ପ୍ରତିପୂରକ ନିଧି ହିସାବକୁ ସ୍ଥାନାନ୍ତରିତ କରାଯାଏ । ପ୍ରତିପୂରକ ନିଧି ବିନିଯୋଗ ହିସାବ ଅପସୃତ ହୋଇ ତାହା ସ୍ଥଳରେ ନୂତନ ପରିସମ୍ପତ୍ତିର ଆବିର୍ଭାବ ହୁଏ । ଦାୟ ପରିଶୋଧ କ୍ଷେତ୍ରରେ ପ୍ରତିପୂରକ ନିଧି ବିନିଯୋଗ ହିସାବ ସଂପୃକ୍ତ ସରକାରୀ ଋଣ ପତ୍ର ବିକ୍ରୟ ଲବ୍ଧ ଅର୍ଥ ଏକ ନିର୍ଦ୍ଦିଷ୍ଟ ଦାୟ ପରିଶୋଧ କରିବାରେ ବ୍ୟବହୃତ ହେଉଥିବାରୁ ଉଦ୍ବୃତ୍ତ ପତ୍ରର ପରିସମ୍ପତ୍ତି ପାର୍ଶ୍ୱରୁ ପ୍ରତିପୂରକ ନିଧି ବିନିଯୋଗ ହିସାବ ଓ ମୂଳଧନ ଓ ଦେଣା ପାର୍ଶ୍ୱରୁ ସମପରିମାଣର ଏକ ଦାୟ ହିସାବ ଅନ୍ତର୍ହିତ ହୁଏ । ପ୍ରତିପୂରକ ନିଧି ହିସାବର ବାକି ସାଧାରଣ ସଞ୍ଚିତି ହିସାବକୁ ସ୍ଥାନାନ୍ତରିତ ହୁଏ ।

ଉଭୟ କ୍ଷେତ୍ରରେ ଜାବେଦାର ପାର୍ଥକ୍ୟ ନିମ୍ନରେ ପ୍ରଦତ୍ତ ହେଲା ।

| | କ<br>କ୍ଷୟିଷ୍ଣୁ ପରିସମ୍ପତ୍ତିର ପ୍ରତିସ୍ଥାପନ ନିମନ୍ତେ ପ୍ରତିପୂରକ ନିଧି | ଖ<br>ଦାୟ ପରିଶୋଧ ନିମନ୍ତେ ପ୍ରତିପୂରକ ନିଧି |
|---|---|---|
| **ପ୍ରଥମ ବର୍ଷ** | | |
| (୧) ବାର୍ଷିକ କିସ୍ତି ନିମନ୍ତେ | ନିଟ୍ ଲାଭ କ୍ଷତି ହିଃ ଦାୟୀ<br>ପ୍ରତିପୂରକ ନିଧି ହିଃ ବାବଦ | ଲାଭ-କ୍ଷତି ବଣ୍ଟନ ହିଃ ଦାୟୀ<br>ପ୍ରତିପୂରକ ନିଧି ହିଃ ବାଃ |
| (୨) ବାର୍ଷିକ କିସ୍ତିର ବିନିଯୋଗ ନିମନ୍ତେ | ପ୍ରତିପୂରକ ନିଧି ବିନିଯୋଗ ହିସାବ ଦାୟୀ<br>ବ୍ୟାଙ୍କ୍ ହିସାବ ବାବଦ | କ ତୁଲ୍ୟ |
| **ପରବର୍ତ୍ତୀ ବର୍ଷ ମାନଙ୍କରେ** | | |
| (୩) ବିନିଯୁକ୍ତ ଅର୍ଥର ବାର୍ଷିକ ସୁଧ ପ୍ରାପ୍ତି ନିମନ୍ତେ | ବ୍ୟାଙ୍କ୍ ହିସାବ ଦାୟୀ<br>ପ୍ରତିପୂରକ ନିଧି ହିଃ ବାବଦ | କ ତୁଲ୍ୟ |

| | କ | ଖ |
|---|---|---|
| (୪) ବାର୍ଷିକ କିସ୍ତି ନିମନ୍ତେ | ନିଟ୍ ଲାଭ-କ୍ଷତି ହିସାବ ଦାୟୀ<br>ପ୍ରତିପୂରକ ନିଧି ହିଃ ବାବଦ | ଲାଭ-କ୍ଷତି ବଣ୍ଟନ ହିଃ ଦାୟୀ<br>ପ୍ରତିପୂରକ ନିଧି ହିଃ ବାବଦ |
| (୫) ବିନିଯୁକ୍ତ ଅର୍ଥର ପ୍ରାପ୍ତ ବାର୍ଷିକ ସୁଧ ଓ ବାର୍ଷିକ କିସ୍ତିର ବିନିଯୋଗ ନିମନ୍ତେ | ପ୍ରତିପୂରକ ନିଧି ବିନିଯୋଗ ହିସାବ ଦାୟୀ<br>ବ୍ୟାଙ୍କ୍ ହିସାବ ବାବଦ | କ ତୁଲ୍ୟ |
| **ଶେଷ ବର୍ଷ** | | |
| (୬) ବିନିଯୁକ୍ତ ଅର୍ଥର ବାର୍ଷିକ ସୁଧ ପ୍ରାପ୍ତି ନିମନ୍ତେ | ବ୍ୟାଙ୍କ୍ ହିସାବ ଦାୟୀ<br>ପ୍ରତିପୂରକ ନିଧି ହିଃ ବାବଦ | କ ତୁଲ୍ୟ |
| (୭) ବାର୍ଷିକ କିସ୍ତି ନିମନ୍ତେ | ନିଟ୍ ଲାଭ-କ୍ଷତି ହିଃ ଦାୟୀ<br>ପ୍ରତିପୂରକ ନିଧି ହିଃ ବାବଦ | ଲାଭ-କ୍ଷତି ବଣ୍ଟନ ହିଃ ଦାୟୀ<br>ପ୍ରତିପୂରକ ନିଧି ହିଃ ବାଃ |
| (୮) ବିନିଯୁକ୍ତ ଅର୍ଥ ଆଦାୟ କରିବା ନିମନ୍ତେ | ବ୍ୟାଙ୍କ୍ ହିସାବ ଦାୟୀ<br>ପ୍ରତିପୂରକ ନିଧି ବିନିଯୋଗ ହିସାବ ବାବଦ | କ ତୁଲ୍ୟ |
| (୯) ପୁରାତନ ସମ୍ପତ୍ତିର ମୂଲ୍ୟ ହ୍ରାସ ଓ ନୂତନ ସମ୍ପତ୍ତିର କ୍ରୟ ନିମନ୍ତେ | (କ) ପ୍ରତିପୂରକ ନିଧି ହିଃ ଦାୟୀ<br>ପୁରାତନ ପରିସମ୍ପତ୍ତି ହିଃ ବାଃ<br>(ଖ) ନୂତନ ପରିସମ୍ପତ୍ତି ହିସାବ ଦାୟୀ<br>ବ୍ୟାଙ୍କ୍ ହିସାବ ବାବଦ | ନିଷ୍ପ୍ରୟୋଜନ |
| (୧୦) ଦାୟ ପରିଶୋଧ କରିବା ନିମନ୍ତେ | ନିଷ୍ପ୍ରୟୋଜନ | (କ) ଋଣପତ୍ର ହିଃ ଦାୟୀ<br>ଋଣପତ୍ରଧାରୀଙ୍କ ହିଃ ବାବଦ<br>(ଖ) ଋଣପତ୍ରଧାରୀଙ୍କ ହିସାବ ଦାୟୀ<br>ବ୍ୟାଙ୍କ ହିସାବ ବାବଦ |

| | | (ଗ) ପ୍ରତିପୂରକ ନିଧି ହିସାବ ଦାୟୀ<br>ସାଧାରଣ ସମ୍ପତ୍ତି ହିସାବ ବାବଦ |
|---|---|---|

ଏହାର ଏକ ଦୃଷ୍ଟାନ୍ତ ନିମ୍ନରେ ପ୍ରଦତ୍ତ ହେଲା

## ଦୃଷ୍ଟାନ୍ତ (୧୨)

କ ଖ ଗ କମ୍ପାନୀ ଲିମିଟେଡ୍ ୧୯୭୦ ମସିହା ଜାନୁୟାରୀ ୧ ତାରିଖରେ ପ୍ରତି ଋଣପତ୍ର ୧୦୨ ଟଙ୍କା ମୂଲ୍ୟରେ ୪୦୦ ଋଣପତ୍ର ପ୍ରଚଳନ କଲେ । ଏହି ଋଣପତ୍ରଗୁଡ଼ିକ ସମ ମୂଲ୍ୟରେ ୧୯୭୩ ମସିହା ଡିସେମ୍ବର ୩୧ ତାରିଖରେ ପରିଶୋଧ । ଏହି ଋଣପତ୍ରର ପରିଶୋଧ ନିମନ୍ତେ କମ୍ପାନୀ ଏକ ପ୍ରତିପୂରକ ନିଧି ଗଢ଼ିଲେ ଓ ଚକ୍ରବୃଦ୍ଧି ସୁଧରେ ବାର୍ଷିକ ୫% ହାରରେ ନିଟ୍ ଆୟ ଲାଭ କରିବା ସକାଶେ ଆବଶ୍ୟକ ଅର୍ଥ ବିନିଯୋଗ କଲେ । ୧୯୭୩ ମସିହା ଡିସେମ୍ବର ୩୧ ତାରିଖରେ ସରକାରୀ ଋଣପତ୍ରଗୁଡ଼ିକ ସମମୂଲ୍ୟରେ ବିକ୍ରୟ କରି ବିକ୍ରୟ ଲବ୍ଧ ଅର୍ଥରେ କମ୍ପାନୀର ଋଣପତ୍ର ବାବଦ ଟଙ୍କା ପରିଶୋଧ କରାଗଲା ।

ଖତିୟାନ ହିସାବଗୁଡ଼ିକ ପ୍ରସ୍ତୁତ କର ।

ବାର୍ଷିକ କିସ୍ତି = ୦·୨୩୨୦୧୨ × ୪୦,୦୦୦ ଟଙ୍କା

= ୯,୨୮୦ ଟଙ୍କା ( ଆନୁମାନିକ )

## ସମାଧାନ—

### ଋଣପତ୍ର ହିସାବ

ଦାବୀ ପାଉଣା

| | | ଟଙ୍କା | | | ଟଙ୍କା |
|---|---|---|---|---|---|
| ୧୯୭୦ ଡିସେ-୩୧ | ବାକୀ ଗଡ଼ିଲା | ୪୦,୦୦୦ | ୧୯୭୦ ଜାନୁ-୧ | ବ୍ୟାଙ୍କ ହିଃ ବାବଦ | ୪୦,୦୦୦ |
| ୧୯୭୧ ଡିସେ-୩୧ | ବାକୀ ଗଡ଼ିଲା | ୪୦,୦୦୦ | ୧୯୭୧ ଜାନୁ-୧ | ପୂର୍ବ ବାକୀ ବାବଦ | ୪୦,୦୦୦ |
| ୧୯୭୨ ଡିସେ-୩୧ | ବାକୀ ଗଡ଼ିଲା | ୪୦,୦୦୦ | ୧୯୭୨ ଜାନୁ-୧ | ପୂର୍ବ ବାକୀ ବାବଦ | ୪୦,୦୦୦ |
| ୧୯୭୩ ଡିସେ-୩୧ | ଋଣପତ୍ର ଧାରୀଙ୍କ ହିସାବ ବାବଦ | ୪୦,୦୦୦ | ୧୯୭୩ ଜାନୁ-୧ | ପୂର୍ବ ବାକୀ ବାବଦ | ୪୦,୦୦୦ |

### ଋଣପତ୍ରଧାରୀଙ୍କ ହିସାବ

ଦାବୀ ପାଉଣା

| | | ଟଙ୍କା | | | ଟଙ୍କା |
|---|---|---|---|---|---|
| ୧୯୭୩ ଡିସେ-୩୧ | ବ୍ୟାଙ୍କ ହିଃ ବାବଦ | ୪୦,୦୦୦ | ୧୯୭୩ ଡିସେ-୩୧ | ଋଣପତ୍ର ହିଃ ବାଃ | ୪୦,୦୦୦ |

ଦାୟୀ ପ୍ରତିପୂରକ ଅର୍ଥ ହିସାବ ଦାତା

| ତାରିଖ | ବିବରଣୀ | ଟଙ୍କା | ତାରିଖ | ବିବରଣୀ | ଟଙ୍କା |
|---|---|---|---|---|---|
| ୧୯୭୦ ଡିସେ-୩୧ | ବାକି ଗଡ଼ିଲା | ୯,୨୮୦ | ୧୯୭୦ ଡିସେ-୩୧ | ଲାଭ-କ୍ଷତି ବଣ୍ଟନ ହିସାବ ବାବଦ | ୯,୨୮୦ |
| ୧୯୭୧ ଡିସେ-୩୧ | ବାକି ଗଡ଼ିଲା | ୧୯,୦୩୫ | ୧୯୭୧ ଜାନୁ-୧ | ପୂର୍ବ ବାକି ବାବଦ | ୯,୨୮୦ |
| | | | ଡିସେ-୩୧ | ବ୍ୟାଙ୍କ୍ ସୁଧ ବାଃ(ସୁଧ) | ୪୭୫ |
| | | | ୩୧ | ଲାଭ-କ୍ଷତି ବଣ୍ଟନ ହିସାବ ବାବଦ | ୯,୨୮୦ |
| | | ୧୯,୦୩୫ | | | ୧୯,୦୩୫ |
| ୧୯୭୨ ଡିସେ-୩୧ | ବାକି ଗଡ଼ିଲା | ୨୯,୨୬୭ | ୧୯୭୨ ଜାନୁ-୧ | ପୂର୍ବ ବାକି ବାବଦ | ୧୯,୦୩୫ |
| | | | ଡିସେ-୩୧ | ବ୍ୟାଙ୍କ୍ ସୁଧ ବାବଦ | ୯୫୨ |
| | | | ୩୧ | ଲାଭ-କ୍ଷତି ବଣ୍ଟନ ହିସାବ ବାବଦ | ୯,୨୮୦ |
| | | ୨୯,୨୬୭ | | | ୨୯,୨୬୭ |
| ୧୯୭୩ ଡିସେ-୩୧ | ସାଧାରଣ ସଞ୍ଚିତି ହିସାବ ବାବଦ | ୪୦,୦୦୦ | ୧୯୭୩ ଜାନୁ-୧ | ପୂର୍ବ ବାକି ବାବଦ | ୨୯,୨୬୭ |
| | | | ଡିସେ-୩୧ | ବ୍ୟାଙ୍କ୍ ସୁଧ ବାବଦ | ୧,୪୫୩ |
| | | | ୩୧ | ଲାଭ-କ୍ଷତି ବଣ୍ଟନ ହିସାବ ବାବଦ | ୯,୨୮୦ |
| | | ୪୦,୦୦୦ | | | ୪୦,୦୦୦ |

| ଦାୟୀ | | ପ୍ରତିପୂରକ ନିଧି ବିନିଯୋଗ ହିସାବ | | | | | ଦାତା |
|---|---|---|---|---|---|---|---|
| ୧୯୭୦ | | | ଟଙ୍କା | ୧୯୭୦ | | | ଟଙ୍କା |
| ଡିସେ-୩୧ | ବ୍ୟାଙ୍କ୍ ସୁଧ ବାଃ | | ୯,୨୮୦ | ଡିସେ-୩୧ | ବାକି ଗଡ଼ନ୍ତି | | ୯,୨୮୦ |
| ୧୯୭୧ | | | | ୧୯୭୧ | | | |
| ଜାନୁ-୧ | ପୂର୍ବ ବାକି ବାଃ | | ୯,୨୮୦ | ଡିସେ-୩୧ | ବାକି ଗଡ଼ନ୍ତି | | ୧୯,୦୨୫ |
| ଡିସେ-୩୧ | ବ୍ୟାଙ୍କ୍ ସୁଧ ବାଃ | | ୯,୭୪୫ | | | | |
| | | | ୧୯,୦୨୫ | | | | ୧୯,୦୨୫ |
| ୧୯୭୨ | | | | ୧୯୭୨ | | | |
| ଜାନୁ-୧ | ପୂର୍ବ ବାକି ବାଃ | | ୧୯,୦୨୫ | ଡିସେ-୩୧ | ବାକି ଗଡ଼ନ୍ତି | | ୨୯,୨୫୭ |
| ଡିସେ-୩୧ | ବ୍ୟାଙ୍କ୍ ସୁଧ ବାଃ | | ୧୦,୨୩୨ | | | | |
| | | | ୨୯,୨୫୭ | | | | ୨୯,୨୫୭ |
| ୧୯୭୩ | | | | ୧୯୭୩ | | | |
| ଜାନୁ-୧ | ପୂର୍ବ ବାକି ବାଃ | | ୨୯,୨୫୭ | ଡିସେ-୩୧ | ବ୍ୟାଙ୍କ୍ ସୁଧ ବାଃ | | ୨୯,୨୫୭ |

| ଦାୟୀ | | ସାଧାରଣ ସଞ୍ଚିତ ହିସାବ | | | | | ଦାତା |
|---|---|---|---|---|---|---|---|
| | | | ଟଙ୍କା | ୧୯୭୩ | | | ଟଙ୍କା |
| | | | | ଡିସେ-୩୧ | ପ୍ରତିପୂରକ ନିଧି ହିସାବ ବାବଦ | | ୪୦,୦୦୦ |

## ସମ୍ଭାବ୍ୟ ଦାୟ :

ଏହି ପ୍ରକାର ଦାୟ ବ୍ୟବସାୟର ଉପସ୍ଥିତ ଦାୟ ନୁହେଁ; ମାତ୍ର କୌଣସି ଏକ ଘଟଣା ଘଟିଲେ ବା ନ ଘଟିଲେ ଏହା ଦାୟରେ ପରିଣତ ହୋଇପାରେ । ମନେକର କ ଏକ ବ୍ୟବସାୟର ସ୍ୱତ୍ୱାଧିକାରୀ । ସେ ଆଦେଶାନୁଯାୟୀ ମାଲ ସରବରାହ କରନ୍ତି । ଖ ତାଙ୍କ ନାମରେ ଏକ ମୌଖିକ ଚୁକ୍ତି ଭଙ୍ଗ କରିଥିବା ଅଭିଯୋଗ କରି କ ଙ୍କ ବିରୁଦ୍ଧରେ ୬,୦୦୦ ଟଙ୍କାର କ୍ଷତି ପୂରଣ ଦାବୀ କରି ଏକ ମକଦ୍ଦମା ରୁଜୁ କଲେ । ଏହି ମକଦ୍ଦମାର ରାୟ ନ ବାହାରିବା ପର୍ଯ୍ୟନ୍ତ କ ଙ୍କ ପକ୍ଷରେ ଏହି ୬,୦୦୦ ଟଙ୍କା ଏକ ସମ୍ଭାବ୍ୟ ଦାୟ । ଯଦି ରାୟ ତାଙ୍କ ବିରୁଦ୍ଧରେ ଯାଏ ତାହାହେଲେ ଏହା ପ୍ରକୃତ ଦାୟରେ ପରିଣତ ହେବ, ମାତ୍ର ରାୟ ତାଙ୍କ ସପକ୍ଷରେ ଦିଆଗଲେ ଏହା ଆଦୌ ଦାୟ ରୂପେ ରହିବ ନାହିଁ । ଯେହେତୁ ବର୍ତ୍ତମାନ ଦାୟ ନୁହେଁ, ତେଣୁ ଏହି ୬,୦୦୦ ଟଙ୍କା କ ଙ୍କର ଉଦ୍‌ବୃତ୍ତ ପତ୍ରରେ ପ୍ରତ୍ୟକ୍ଷ ଭାବରେ ଅନ୍ତର୍ଭୁକ୍ତ ହେବ ନାହିଁ; ମାତ୍ର ଏକ ସମ୍ଭାବ୍ୟ ଦାୟର ଆଭାସ ଦେବା ନିମନ୍ତେ ଉଦ୍‌ବୃତ୍ତ ପତ୍ରର ନିମ୍ନରେ ଏକ ପାଦ-ଟୀକା ରୂପେ ପ୍ରକାଶିତ ହେବ ।

## ସମ୍ଭାବ୍ୟ ସମ୍ପତ୍ତି :

ଉକ୍ତ ଉଦାହରଣରେ ଉଲ୍ଲିଖିତ ୬,୦୦୦ ଟଙ୍କା 'କ' ଙ୍କ ପକ୍ଷରେ ଏକ ସମ୍ଭାବ୍ୟ ଦାୟ ଓ 'ଖ'ଙ୍କ ପକ୍ଷରେ ଏକ ସମ୍ଭାବ୍ୟ ସମ୍ପତ୍ତି । ଅର୍ଥାତ୍ ଯାହା ବର୍ତ୍ତମାନ ଏକ ସମ୍ପତ୍ତିରୂପେ ବିବେଚ୍ୟ ନୁହେଁ, ମାତ୍ର କୌଣସି ଏକ ଘଟଣା ଘଟିଲେ ତାହା ସମ୍ପତ୍ତିରୂପେ ବିବେଚିତ ହେବ ।

ସମ୍ଭାବ୍ୟ ଦାୟ ବିଷୟରେ ଉଲ୍ଲେଖ କରିବା ପ୍ରତି ବିଜ୍ଞ ବ୍ୟବସାୟୀଙ୍କ କର୍ତ୍ତବ୍ୟ ମାତ୍ର ସମ୍ଭାବ୍ୟ ସମ୍ପତ୍ତି ବିଷୟରେ ଉଲ୍ଲେଖ ନ ଲେଖିବା ହିଁ ଶ୍ରେୟସ୍କର ।

### ଅନୁଶୀଳନୀ ( ୮ )

୧ । ମୂଲ୍ୟହ୍ରାସ କହିଲେ କ'ଣ ବୁଝ ? ଏହା କାହିଁକି ହିସାବଭୁକ୍ତ କରାଯାଏ ? ମୂଲ୍ୟହ୍ରାସ ବାଦ୍ ଦିଆ ନ ଗଲେ କି କ୍ଷତି ହେବ ?

୨ । ମୂଲ୍ୟ ହ୍ରାସ ପରିମାଣ ମୂଳଧନ ଓ ପରସମ୍ପତ୍ତି ହିସାବକୁ ଦାୟୀ ଅଥବା ଦାତା କରାଯାଏ ? ଏହା ନିଟ୍ ଲାଭରୁ ଅନ୍ତର କରାଯାଏ ନା ଲାଭ କ୍ଷତି ବଣ୍ଟନ ହିସାବକୁ ପ୍ରଭାରିତ କରାଯାଏ ?

୩ । ମୂଲ୍ୟ ହ୍ରାସ କରିବାର ଯେ କୌଣସି ତିନି ଗୋଟି ପଦ୍ଧତି ସମ୍ବନ୍ଧରେ ଆଲୋଚନା କର ।

୪ । ନିମ୍ନଲିଖିତ ମୂଲ୍ୟ ହ୍ରାସ ପଦ୍ଧତି ସମ୍ବନ୍ଧରେ ସଂକ୍ଷିପ୍ତ ବିବରଣୀ ଦିଅ ଓ ପ୍ରତି ପଦ୍ଧତି କେଉଁ ପ୍ରକାର ପରିସମ୍ପତ୍ତି ପ୍ରତି ପ୍ରଯୁଜ୍ୟ ତାହା ବ୍ୟକ୍ତ କର ।

( କ ) ସ୍ଥିର କିସ୍ତି ପଦ୍ଧତି

( ଖ ) ହ୍ରାସମାନ କିସ୍ତି ପଦ୍ଧତି

( ଗ ) ମୂଲ୍ୟ ହ୍ରାସ ନିଧି ପଦ୍ଧତି ।

୫ । ମୂଲ୍ୟ ହ୍ରାସ ଓ ଭବିଷ୍ୟତ୍ ବ୍ୟବସ୍ଥା ମଧ୍ୟରେ ପାର୍ଥକ୍ୟ ଦେଖାଅ ।

୬ । ଭବିଷ୍ୟତ୍ ବ୍ୟବସ୍ଥା ସଞ୍ଚିତଠାରୁ କିପରି ପୃଥକ୍ ତାହା ବୁଝାଅ ।

୭ । ସଞ୍ଚିତ ଓ ସଞ୍ଚିତ ନିଧି ମଧ୍ୟରେ କୌଣସି ପାର୍ଥକ୍ୟ ଅଛି କି ? ଏଗୁଡ଼ିକ ଉଦ୍‌ବୃତ୍ତ ପତ୍ରରେ କିପରି ପ୍ରକାଶିତ ହୁଏ ?

୮ । ମୂଳଧନଯାଏ ସଞ୍ଚିତ କହିଲେ କ'ଣ ବୁଝ ? ଏହା କିପରି ଗଠିତ ହୁଏ ଓ କି କାର୍ଯ୍ୟରେ ବ୍ୟବହୃତ ହୁଏ ?

୯ । ଗୁପ୍ତ ସଞ୍ଚିତ କିପରି ଓ କାହିଁକି ଗଢ଼ାଯାଏ ? କେଉଁ ପ୍ରତିଷ୍ଠାନଗୁଡ଼ିକ ଗୁପ୍ତ ସଞ୍ଚିତ ଗଢ଼ନ୍ତି ?

୧୦ । ପ୍ରତିପୂରକ ନିଧି କହିଲେ କ'ଣ ବୁଝ ? ଏହା କେଉଁ ଉଦ୍ଦେଶ୍ୟରେ ଗଢ଼ାଯାଏ ? ଏ ବିଷୟରେ ଏକ ବିଶଦ ବିବରଣୀ ଲେଖ ।

୧୧ । ଗୋଟିଏ ବ୍ୟବସାୟ ପ୍ରତିଷ୍ଠାନ ୩୦,୦୦୦ ଟଙ୍କା ମୂଲ୍ୟରେ ୧୯୬୦ ମସିହା ଜାନୁୟାରି ୧ ତାରିଖରେ ଗୋଟିଏ ଯନ୍ତ୍ର କ୍ରୟ କରିଥିଲେ । ୧୯୬୨ ମସିହା ଜୁଲାଇ ୧ ତାରିଖରେ ପ୍ରତିଷ୍ଠାନ ୯,୦୦୦ ଟଙ୍କା ମୂଲ୍ୟରେ ଅନ୍ୟ ଏକ ଯନ୍ତ୍ର କ୍ରୟ କଲେ ଓ ଏହାକୁ ସଂସ୍ଥାପନ କରିବା ନିମନ୍ତେ ୧,୦୦୦ ଟଙ୍କା ବ୍ୟୟ କଲେ । ଏହି ବ୍ୟବସାୟର ହିସାବ ପ୍ରତି ବର୍ଷ ଡିସେମ୍ବର ୩୧ ତାରିଖରେ ବନ୍ଦ କରାଯାଏ । ପ୍ରତି ବର୍ଷ ୧୦% ହାରରେ ମୂଲ୍ୟ ହ୍ରାସ ବାଦ୍ ଦିଆଯିବ । ଉଭୟ ସ୍ଥିର କିସ୍ତି ପଦ୍ଧତି ଓ ହ୍ରାସମାନ କିସ୍ତି ପଦ୍ଧତି ଅନୁଯାୟୀ ମୂଲ୍ୟ ହ୍ରାସ ବାଦ୍ ଦେଇ ୪ବର୍ଷର ଯନ୍ତ୍ର ହିସାବ ପ୍ରସ୍ତୁତ କର ।

୧୨ । ନିମ୍ନଲିଖିତ ବିବରଣୀରୁ ମେସର୍ସ ତ୍ରିପାଠୀ ବ୍ରଦର୍ସ ତାଙ୍କ ନିଟ ଲାଭ-କ୍ଷତି ହିସାବକୁ ମୋଟ କେତେ ଟଙ୍କା ସକାଶେ ୧୯୬୨ ମସିହା ନିମନ୍ତେ ମୂଲ୍ୟ ହ୍ରାସ ବାବଦ ସ୍ଥାନାନ୍ତରିତ କରିବେ ?

| | ଟଙ୍କା |
|---|---|
| ଯନ୍ତ୍ର ହିସାବର ଦାୟୀ ବାକି (୧-୧-୧୯୬୨) | ୨୦,୦୦୦ |
| ସେହି ବର୍ଷ ନୂତନ ଯନ୍ତ୍ର କ୍ରୟ (୧ମ) | ୧୦,୦୦୦ |
| ସେହି ବର୍ଷ ନୂତନ ଯନ୍ତ୍ର କ୍ରୟ (୨ୟ) | ୮,୦୦୦ |

ମୂଲ୍ୟ ହ୍ରାସର ବାର୍ଷିକ ହାର ୧୦% ।

( ଉତ୍ତର — ୨,୯୦୦ ଟଙ୍କା )

( ଦ୍ରଷ୍ଟବ୍ୟ — ଏ କ୍ଷେତ୍ରରେ ନିର୍ଦ୍ଦିଷ୍ଟ ସମୟ ଦିଆଯାଇ ନ ଥିବାରୁ ମଧ୍ୟକାଳ ସକାଶେ ମୂଲ୍ୟ ହ୍ରାସ ଗଣନା କରାଯିବ ।

୧୩ । ଗୋଟିଏ ଯନ୍ତ୍ର ୧୯୬୦ ମସିହା ଜାନୁଆରୀ ୧ ତାରିଖରେ ୧୦,୦୦୦ ଟଙ୍କା ମୂଲ୍ୟରେ କ୍ରୟ କରାଯାଇଥିଲା । ପ୍ରତି ବର୍ଷ କ୍ରୟ ମୂଲ୍ୟ ଉପରେ ୨୦% ହାରରେ ମୂଲ୍ୟ ହ୍ରାସ ଗଣନା କରାଯିବ । କାର୍ଯ୍ୟକାରୀ ସ୍ଥିତିକାଳ ପରେ ଏହାର ଅବଶେଷ ମୂଲ୍ୟ ୫୦୦ ଟଙ୍କା ରହିବ ବୋଲି ଅନୁମାନ କରାଯାଇଛି । ପାଞ୍ଚ ବର୍ଷ ପରେ ଏହାର ଭଗ୍ନାବଶେଷ ୮୦୦ ଟଙ୍କାରେ ବିକ୍ରୀତ ହେଲା ।

ପାଞ୍ଚ ବର୍ଷର ଯନ୍ତ୍ର ହିସାବ ଦର୍ଶାଅ ।

( ଉତ୍ତର — ବାର୍ଷିକ ମୂଲ୍ୟ ହ୍ରାସ ୧,୯୦୦ ଟଙ୍କା;
ଭଗ୍ନାବଶେଷ ବିକ୍ରୟରେ ଲାଭ ୩୦୦ ଟଙ୍କା । )

୧୪ । ୧୯୬୮ ମସିହା ଜାନୁଆରୀ ୧ ତାରିଖରେ ଗୋଟିଏ ଯନ୍ତ୍ର ୧୨,୦୦୦ ଟଙ୍କା ମୂଲ୍ୟରେ କ୍ରୟ କରାଯାଇଥିଲା ଏବଂ ସ୍ଥିର କିସ୍ତି ପଦ୍ଧତି ଅନୁଯାୟୀ ବାର୍ଷିକ ୧୦% ହାରରେ ଦୁଇ ବର୍ଷ ମୂଲ୍ୟ ହ୍ରାସ ବାଦ୍ ଦିଆଗଲା । ତୃତୀୟ ବର୍ଷ ଆରମ୍ଭରେ ସ୍ଥିର କିସ୍ତି ପଦ୍ଧତି ପରିବର୍ତ୍ତେ ହ୍ରାସମାନ କିସ୍ତି ପଦ୍ଧତି ଅନୁଯାୟୀ ମୂଲ୍ୟ ହ୍ରାସ ଗଣନା କରିବାକୁ କର୍ତ୍ତୃପକ୍ଷ ସାବ୍ୟସ୍ତ କଲେ । ଚାରି ବର୍ଷର ଯନ୍ତ୍ର ହିସାବ ପ୍ରସ୍ତୁତ କର ।

( ଉତ୍ତର — ୧-୧-୧୯୬୨ ତାରିଖରେ ଯନ୍ତ୍ରର ହିସାବର ଦାୟୀ ବାକି — ୭,୭୭୬ ଟଙ୍କା । )

୧୫। ୧୯୬୯ ମସିହା ଜୁଲାଇ ୧ ତାରିଖରେ ମଦନଲାଲ ବ୍ରଦର୍ସ ୧୫,୦୨୦ ଟଙ୍କା ମୂଲ୍ୟରେ ଗୋଟିଏ ପୁରାତନ ଯନ୍ତ୍ର କ୍ରୟ କରି ଏହାକୁ କର୍ଯ୍ୟକ୍ଷମ କରି ସଂସ୍ଥାପନ କରିବା ନିମନ୍ତେ ୫,୦୦୦ ଟଙ୍କା ବ୍ୟୟ କଲେ । ୧୯୬୦ ମସିହା ଜାନୁୟାରି ୧ ତାରିଖରେ ଏହି ପ୍ରତିଷ୍ଠାନ ୧୪,୦୨୦ ଟଙ୍କା ମୂଲ୍ୟରେ ଏକ ନୂତନ ଯନ୍ତ୍ର କ୍ରୟ କଲେ । ୧୯୭୧ ମସିହା ଜୁନ ୩୦ ତାରିଖରେ ୧୯୭୦ ମସିହା ଜାନୁୟାରି ୧ ତାରିଖରେ କ୍ରୟ କରାଯାଇଥିବା ଯନ୍ତ୍ରଟି ୧୨,୦୦୦ ଟଙ୍କା ମୂଲ୍ୟରେ ବିକ୍ରୟ କଲେ । ୧୯୭୧ ମସିହା ଜୁଲାଇ ୧ ତାରିଖରେ ଗୋଟିଏ ନୂତନ ଯନ୍ତ୍ର ୧୬,୦୦୦ ଟଙ୍କା ମୂଲ୍ୟରେ କ୍ରୟ କରାଯାଇ ସଂସ୍ଥାପିତ ହେଲା । ଏହି ପ୍ରତିଷ୍ଠାନ କ୍ରୟ ମୂଲ୍ୟ ଉପରେ ଶତକଡ଼ା ବାର୍ଷିକ ୧୦ ହାରରେ ମୂଲ୍ୟ ହ୍ରାସ ଗଣନା କରନ୍ତି । ପ୍ରତି ବର୍ଷ ମାର୍ଚ୍ଚ ୩୧ ତାରିଖରେ ଏହି ପ୍ରତିଷ୍ଠାନର ବାର୍ଷିକ ହିସାବ ପ୍ରକାଶ କରାଯାଏ । ୧୯୭୨ ମସିହା ମାର୍ଚ୍ଚ ୩୧ ତାରିଖ ପର୍ଯ୍ୟନ୍ତ ଯନ୍ତ୍ର ହିସାବ ପ୍ରସ୍ତୁତ କର ।

( ଉତ୍ତର—୧-୪-୧୯୭୨ ତାରିଖରେ ଯନ୍ତ୍ର ହିସାବର ଦାୟୀ ବାକି—୨୯,୨୦୦ ଟଙ୍କା )

୧୬। କଣୋର ଟ୍ରାନସ୍‌ପୋର୍ଟ କମ୍ପାନୀ ପ୍ରତି ଟ୍ରକ୍ ୫୦,୦୦୦ ଟଙ୍କା ମୂଲ୍ୟରେ ୫ଟି ଟ୍ରକ୍ ୧୯୭୦ ମସିହା ଅପ୍ରେଲ ୧ ତାରିଖରେ କ୍ରୟ କଲେ । ୧୯୭୨ ମସିହା ଅକ୍ଟୋବର ୧ ତାରିଖରେ ଗୋଟିଏ ଟ୍ରକ୍ ଦୁର୍ଘଟଣାର ବଶବର୍ତ୍ତୀ ହୋଇ ସମ୍ପୂର୍ଣ୍ଣରୂପେ ବିନଷ୍ଟ ହୋଇ ଯାଇଥିଲା । ବୀମା କମ୍ପାନୀଠାରୁ କ୍ଷତିପୂରଣ ବାବଦ ମୋଟ ୨୫,୦୦୦ ଟଙ୍କା ମିଳିଲା । ସେହି ତାରିଖରେ କମ୍ପାନୀ ୫୫,୦୦୦ ଟଙ୍କା ମୂଲ୍ୟରେ ଗୋଟିଏ ନୂତନ ଟ୍ରକ୍ କ୍ରୟ କଲେ । କମ୍ପାନୀ କ୍ରୟ ମୂଲ୍ୟ ଉପରେ ବାର୍ଷିକ ୨୦% ହାରରେ ମୂଲ୍ୟ ହ୍ରାସ ଗଣନା କରନ୍ତି । କମ୍ପାନୀର ଚୂଡ଼ାନ୍ତ ହିସାବ ପ୍ରତି ବର୍ଷ ଡିସେମ୍ବର ୩୧ ତାରିଖରେ ପ୍ରସ୍ତୁତ କରାଯାଏ । ୧୯୭୩ ମସିହା ଡିସେମ୍ବର ୩୧ ତାରିଖ ପର୍ଯ୍ୟନ୍ତ ମଟର ଟ୍ରକ୍ ହିସାବ ପ୍ରସ୍ତୁତ କର ।

( ଉତ୍ତର—୧-୧-୧୯୭୪ ତାରିଖରେ ଟ୍ରକ୍ ହିସାବର ଦାୟୀ ବାକି—୬୬,୫୦୦ ଟଙ୍କା )

୧୭। ପ୍ରତି ବର୍ଷ ମରାମତି ଓ ନବୀକରଣ ବାବଦ ଭବିଷ୍ୟତ ବ୍ୟବସ୍ଥା କରିବା ସକାଶେ ଅଣସୃଷ୍ଟି ହିସାବକୁ ୧,୫୦୦ ଟଙ୍କା ସକାଶେ ଦାୟୀ କରାଯାଏ । ପରବର୍ତ୍ତୀ ତିନି ବର୍ଷରେ ମରାମତି ଓ ନବୀକରଣର ପ୍ରକୃତ ବ୍ୟୟ ଯଥାକ୍ରମେ (୧) ଟ ୧,୨୩୫·୩୫, (୨) ଟ ୧,୪୨୯·୮୨, (୩) ଟ ୧,୫୩୯·୬୦ ।

ଉପରୋକ୍ତ କାରବାର ଜାବ୍‌ଦା, ଖତିୟାନ ହିସାବ ଏବଂ ଉଦ୍‌ବୃତ୍ତ ପତ୍ରରେ କିପରି ଲିପିବଦ୍ଧ କରାଯିବ ତାହା ଦର୍ଶାଅ ।

( ଉତ୍ତର ମରାମତି ଓ ନବୀକରଣ ବାବଦ ଭବିଷ୍ୟତ୍ ବ୍ୟବସ୍ଥା ହିସାବର ଧାରା ବାକି ଚତୁର୍ଥ ବର୍ଷ ଶେଷରେ ଟ ୨୯୫'୨୩ )

୧୮ । ଗୋଟିଏ ଜମିର ପଟ୍ଟାସ୍ୱତ୍ୱ ୫ ବର୍ଷ ନିମନ୍ତେ ୧୫,୦୦୦ ଟଙ୍କା ବ୍ୟୟରେ କ୍ରୟ କରାଗଲା । ବାର୍ଷିକ ସମହାର କିସ୍ତି ପଦ୍ଧତି ଅନୁଯାୟୀ ଏହି ସମ୍ପତ୍ତିର ମୂଲ୍ୟ ହ୍ରାସ ଗଣନା କରାଯିବ । ମୂଲ୍ୟ ହ୍ରାସ କରାଯାଇ ନ ଥିବା ସମ୍ପତ୍ତି ପରିମାଣ ଶତକଡ଼ା ବାର୍ଷିକ ୫ ହାରରେ ସୁଧ ଅର୍ଜନ କରେ । ବାର୍ଷିକ ସମହାର କିସ୍ତି ଟେବୁଲ ଅନୁଯାୟୀ ୧ ଟଙ୍କା କୁ ଶୂନ୍ୟରେ ପରିଣତ କରିବା ନିମନ୍ତେ ପ୍ରତି ବର୍ଷ ମୂଲ୍ୟ ହ୍ରାସ ବାବଦ ୦·୨୩୦୯୭୫ ଟଙ୍କା ସମ୍ପତ୍ତି ହିସାବରୁ ବାଦ୍ ଦିଆଯିବ । ପାଞ୍ଚ ବର୍ଷ ସକାଶେ ସମ୍ପତ୍ତି ହିସାବ ପ୍ରସ୍ତୁତ କର ।

( ଉତ୍ତର—ପ୍ରତି ବର୍ଷ ମୂଲ୍ୟ ହ୍ରାସର ପରିମାଣ ଟ ୩,୪୬୪·୬୩ ପଇସା )

୧୯ । ଗୋଟିଏ ବ୍ୟବସାୟ ପ୍ରତିଷ୍ଠାନ ୧୦,୦୦୦ ଟଙ୍କା ବ୍ୟୟରେ ୧୦ ବର୍ଷ ସକାଶେ ଏକ ଜମିର ପଟ୍ଟା ସ୍ୱତ୍ୱ ୧୯୬୦ ମସିହା ଜାନୁୟାରୀ ୧ ତାରିଖରେ କ୍ରୟ କଲା । ଏହି ଜମି ଉପରେ (ଜମି ମୂଲ୍ୟ ବାଦେ) ୩୦,୦୦୦ ଟଙ୍କା ବ୍ୟୟରେ ଗୋଟିଏ କୋଠାଘର ନିର୍ମାଣ କରାଗଲା ଓ ଏହାର ନିର୍ମାଣ କାର୍ଯ୍ୟ ୧୯୬୦ ମସିହା ଡିସେମ୍ବର ୩୧ ତାରିଖରେ ସମ୍ପୂର୍ଣ୍ଣ ହେଲା । ଏହି ପଟ୍ଟା ସ୍ୱତ୍ୱର ସ୍ଥିତିକାଳ ଅନ୍ତେ ଏହି କୋଠାଘରକୁ ଭାଙ୍ଗିବା ନିମନ୍ତେ ୧,୦୦୦ ଟଙ୍କା ଦେବ ଆବଶ୍ୟକ ହେବ । ୧୯୬୨ ମସିହା ଜାନୁୟାରୀ ୧ ତାରିଖରେ ୫,୦୦୦ ଟଙ୍କାର ସଂଯୋଜନ କରାଯାଇଥିଲା ଏବଂ ୧୯୬୩ ମସିହାରେ କୋଠାଘରର ମରାମତି ନିମନ୍ତେ ୧,୫୦୦ ଟଙ୍କା ବ୍ୟୟ ହୋଇଥିଲା ।

ଏକ ଉପଯୁକ୍ତ ମୂଲ୍ୟ ହ୍ରାସ ପଦ୍ଧତି ବ୍ୟବହାର କରି ୧୯୬୦, ୧୯୬୧, ୧୯୬୨, ୧୯୬୩ ଓ ୧୯୬୪ ମସିହା ନିମନ୍ତେ ପଟ୍ଟା ସ୍ୱତ୍ୱ ସମ୍ପତ୍ତି ହିସାବ ପ୍ରସ୍ତୁତ କର ।

୨୦ । ବରଜା ଇଣ୍ଡଷ୍ଟ୍ରିଜ ଲିମିଟେଡ୍ ୧୯୬୦ ମସିହା ଅପ୍ରେଲ ୧ ତାରିଖରେ ଏକ କୋଇଲା ଖଣିର ପଟ୍ଟା ସ୍ୱତ୍ୱ ୨,୦୦,୦୦୦ ଟଙ୍କା ବ୍ୟୟରେ କ୍ରୟ କଲେ । ଏହି ଖଣିରେ ମୋଟ ୧,୦୦,୦୦୦, ଟନ କୋଇଲା ଥିବାର କଳନା କରାଯାଇଛି । ଏହି ଖଣିରୁ ଉତ୍ତୋଳିତ ବାର୍ଷିକ କୋଇଲା ପରିମାଣ ନିମ୍ନରେ ପ୍ରଦତ୍ତ ହେଲା ।

| | | | | | | | | ଟଙ୍କା |
|---|---|---|---|---|---|---|---|---|
| ୧୯୬୦ | ମସିହା | ଡ଼ିସେମ୍ବର | ୩୧ | ତାରିଖରେ | ଶେଷ | ହେଉଥିବା | ବର୍ଷରେ | ୮,୦୦୦ |
| ୧୯୬୧ | ,, | ,, | ,, | ,, | ,, | ,, | ,, | ୧୫,୦୦୦ |
| ୧୯୬୨ | ,, | ,, | ,, | ,, | ,, | ,, | ,, | ୨୦,୦୦୦ |
| ୧୯୬୩ | ,, | ,, | ,, | ,, | ,, | ,, | ,, | ୧୬,୦୦୦ |

ଶୂନ୍ୟୀକରଣ ପଦ୍ଧତି ଅନୁଯାୟୀ ମୂଲ୍ୟ ହ୍ରାସ ଗଣନା କରି ୪ ବର୍ଷର ଖଣି ହିସାବ ପ୍ରସ୍ତୁତ କର । ଡିସେମ୍ବର ୩୧ ତାରିଖରେ ହିସାବ ବନ୍ଦ କରାଯାଏ ।

( ଉତ୍ତର—୧୯୬୪ ମସିହା ଜାନୁଆରୀ ୧ ତାରିଖରେ ଖଣି ହିସାବର ବାକୀ ବାକି—୮୨,୦୦୦ ଟଙ୍କା । )

୨୧ । ସାରକ୍ଷ୍ଵଦ ମେସିନାରୀଜ ଲିମିଟେଡ ୪୫,୦୦୦ ଟଙ୍କା ବ୍ୟୟରେ ଏକ ଯନ୍ତ୍ର କ୍ରୟ କଲେ । ଏହାର ସ୍ଥିତିକାଳ ୭ ବର୍ଷ ବୋଲି କଳନା କରାଯାଇଥିଲା । ଏହି ସ୍ଥିତିକାଳ ପରେ ଯନ୍ତ୍ରଟି ପ୍ରତିସ୍ଥାପନ କରିବା ନିମନ୍ତେ ଏକ ମୂଲ୍ୟ ହ୍ରାସ ନିଧି ଗଢ଼ା ଯିବାର ନିଷ୍ପତ୍ତି ନିଆଗଲା । ମନେକର ଯେ ମୂଲ୍ୟ ହ୍ରାସ ନିଧି ବିନିଯୋଗ ହିସାବ ଅନ୍ତର୍ଗତ ସରକାରୀ ଋଣ ପତ୍ରର ବାର୍ଷିକ ସୁଧର ହାର ୭% । ପ୍ରତିପୂରକ ନିଧି ଟେବୁଲ ଅନୁଯାୟୀ ୧ଟଙ୍କା ପକାଣେ ପ୍ରତି ବର୍ଷ ୦·୧୨୫୬୦୯ ଟଙ୍କା ମୂଲ୍ୟ ହ୍ରାସ ବାବଦ ବାଦ୍ ଦିଆଯିବ ।

ଏହି ବର୍ଷମାନଙ୍କ ପକାଣେ ଯନ୍ତ୍ର ହିସାବ, ମୂଲ୍ୟ ହ୍ରାସ ନିଧି ହିସାବ ଓ ମୂଲ୍ୟ ହ୍ରାସ ନିଧି ବିନିଯୋଗ ହିସାବ ପ୍ରସ୍ତୁତ କର ।

( ଉତ୍ତର—ପ୍ରତି ବର୍ଷ ମୂଲ୍ୟ ହ୍ରାସର ପରିମାଣ ଟ ୫,୬୯୭·୪୦ ପ)

୨୨ । ଗୋଟିଏ କମ୍ପାନୀର ବାର୍ଷିକ ହିସାବ ପ୍ରତି ବର୍ଷ ଡିସେମ୍ବର ୩୧ ତାରିଖରେ ବନ୍ଦ କରାଯାଏ । ଏହି କମ୍ପାନୀ ୧୯୫୭ ମସିହା ଅପ୍ରେଲ ୧ ତାରିଖରେ ୩୦,୦୦୦ ଟଙ୍କା ମୂଲ୍ୟରେ କିଛି ଯନ୍ତ୍ର କ୍ରୟ କଲେ ।

ସେହି ବର୍ଷ ଅକ୍ଟୋବର ୧ ତାରିଖରେ କମ୍ପାନୀ କିଛି ଅଧିକା ଯନ୍ତ୍ର ୨୦,୦୦୦ ଟଙ୍କା ମୂଲ୍ୟରେ କ୍ରୟ କଲେ । ପୁଣି ୧୯୫୮ ମସିହା ଜୁଲାଇ ୧ ତାରିଖରେ ୧୦,୦୦୦ ଟଙ୍କା ମୂଲ୍ୟରେ ଅଉ କେତେକ ଯନ୍ତ୍ର କ୍ରୟ କଲେ ।

୧୯୫୯ ମସିହା ଜାନୁଆରୀ ୧ ତାରିଖରେ ଯେଉଁ ଯନ୍ତ୍ର ୧୯୫୭ ମସିହା ଅପ୍ରେଲ ୧ ତାରିଖରେ କ୍ରୟ କରାଯାଇଥିଲା ତାହାର ଏକ ତୃତୀୟାଂଶ ଅପ୍ରଚଳିତ ହୋଇଯିବାରୁ ୩,୦୦୦ ଟଙ୍କା ମୂଲ୍ୟରେ ବିକ୍ରୀତ ହେଲା ।

ଏହି କମ୍ପାନୀ ପ୍ରତି ବର୍ଷ ୧୦% ହାରରେ ସ୍ଥିର କିସ୍ତି ପଦ୍ଧତି ଅନୁଯାୟୀ ମୂଲ୍ୟ ହ୍ରାସ ବାଦ ଦେଉଥିଲେ । ଏହି ବର୍ଷମାନଙ୍କ ସକାଶେ ଯନ୍ତ୍ର ହିସାବ କିପରି ପ୍ରସ୍ତୁତ ହେବ ତାହା ଦର୍ଶାଅ ।

( ଉତ୍ତର – ଯନ୍ତ୍ର ହିସାବର ବାକି – ୩୮,୫୦୦ ଟଙ୍କା )

୨୩ । ଦ୍ୱିଟ୍ଫୋର୍ଡ ପେପର୍ସ ଲିମିଟେଡ୍ ଏହାର ଯନ୍ତ୍ର ହିସାବରୁ ପ୍ରତିବର୍ଷ ହ୍ରାସମାନ କିସ୍ତି ପଦ୍ଧତି ଅନୁଯାୟୀ ୧୦% ହାରରେ ମୂଲ୍ୟ ହ୍ରାସ ବାଦ୍ ଦିଏ । ୧୯୫୪ ମସିହା ଜାନୁୟାରୀ ୧ ତାରିଖରେ ଏହି ପ୍ରତିଷ୍ଠାନର ଯନ୍ତ୍ର ହିସାବର ଦାୟୀ ବାକିର ମୋଟ ପରିମାଣ ୯,୬୨,୦୦୦ ଟଙ୍କା ଥିଲା ।

୧୯୫୨ ମସିହା ଜାନୁୟାରୀ ୧ ତାରିଖରେ ୮୦,୦୦୦ ଟଙ୍କା ମୂଲ୍ୟରେ କ୍ରୟ କରାଯାଇଥିବା ଯନ୍ତ୍ରାଂଶ ୧୯୫୪ ମସିହା ଜୁଲାଇ ୧ ତାରିଖରେ ୪୫,୦୦୦ ଟଙ୍କା ମୂଲ୍ୟରେ ବିକ୍ରୀତ ହୋଇଥିଲା ଏବଂ ସେହି ତାରିଖରେ ୧,୫୦,୦୦୦ ଟଙ୍କା ମୂଲ୍ୟରେ ଏକ ନୂତନ ଯନ୍ତ୍ର କ୍ରୟ କରାଯାଇ ସଂସ୍ଥାପିତ ହୋଇଥିଲା—ସଂସ୍ଥାପନ ନିମନ୍ତେ ୮,୦୦୦ ଟଙ୍କା ବ୍ୟୟିତ ହୋଇଥିଲା ।

କମ୍ପାନୀ ହ୍ରାସମାନ କିସ୍ତି ପଦ୍ଧତିକୁ ପରିବର୍ତ୍ତନ କରି ୧୯୫୨ ମସିହା ଜାନୁୟାରୀ ୧ ତାରିଖରୁ ସ୍ଥିର କିସ୍ତି ପଦ୍ଧତି ଅନୁଯାୟୀ ମୂଲ୍ୟ ହ୍ରାସ ଧାର୍ଯ୍ୟ କରି ୧୯୫୪ ମସିହା ଡିସେମ୍ବର ୩୧ ତାରିଖ ପୂର୍ବରୁ ମୂଲ୍ୟ ହ୍ରାସ ପଦ୍ଧତିର ପରିବର୍ତ୍ତନ ହେତୁ ଉପୁଜିଥିବା ପାର୍ଥକ୍ୟର ସମଯୋଜନ କରିବାକୁ ଚାହେଁ । ମୂଲ୍ୟ ହ୍ରାସର ପୂର୍ବ ହାର ବଜାୟ ରହିବ ।

୧୯୫୪ ମସିହାର ଯନ୍ତ୍ର ହିସାବ ପ୍ରସ୍ତୁତ କର ଏବଂ ନଫା ଲାଭ କ୍ଷତି ହିସାବକୁ ମୂଲ୍ୟ ହ୍ରାସ ବାବଦ ଅଥବା ଅପ୍ରଚଳନ ହେତୁ କ୍ଷତି ବାବଦ ୧୯୫୪ ମସିହାରେ କେତେ ପରିମାଣ ସକାଶେ ସ୍ଥାନାନ୍ତରିତ କରାଯିବ ତାହା ସ୍ଥିର କର ।

( ଉତ୍ତର—୧୯୫୪ ମସିହା ଡିସେମ୍ବର ୩୧ ତାରିଖରେ ଯନ୍ତ୍ର ହିସାବର ଦାୟୀ ବାକୀ – ୯,୩୪,୧୦୦ ଟଙ୍କା )

୨୪ । ଗୋଟିଏ କମ୍ପାନୀର ସଂଯନ୍ତ୍ର ଓ ଯନ୍ତ୍ର ଉପରେ ସାମୂହିକ ଭାବରେ ଶତକଡ଼ା ବାର୍ଷିକ ୧୦ ହାରରେ ସ୍ଥିର କିସ୍ତି ପଦ୍ଧତି ଅନୁଯାୟୀ ମୂଲ୍ୟ ହ୍ରାସ ଗଣନା କରାଯାଏ । ପ୍ରତି ବର୍ଷ ଶେଷରେ ବିକ୍ରୀ ନ ହୋଇଥିବା ଏବଂ ଅପହ୍ରାସିତ ନ ହୋଇଥିବା ପରିମାଣ ବାବଦ ସମ୍ପୂର୍ଣ୍ଣ ବର୍ଷର ମୂଲ୍ୟ ହ୍ରାସ ଗଣନା କରାଯାଏ । ଗୋଟିଏ ବର୍ଷରେ କ୍ରୟ କରାଯାଇଥିବା ଯନ୍ତ୍ର ସମ୍ପୂର୍ଣ୍ଣ ବର୍ଷେ

ବ୍ୟବହୃତ ହୋଇ ନ ଥିଲେ ମଧ୍ୟ ଏହା ଉପରେ ସମ୍ପୂର୍ଣ୍ଣ ବର୍ଷର ମୂଲ୍ୟ ହ୍ରାସ ଗଣନା କରାଯାଏ । ଯନ୍ତ୍ର ବିକ୍ରୟ ବାବଦ ଲାଭ ଅଥବା କ୍ଷତି ବର୍ଷ ଶେଷରେ ନିଟ୍ ଲାଭ-କ୍ଷତି ହିସାବକୁ ସ୍ଥାନାନ୍ତରିତ ହୁଏ । ବାର୍ଷିକ ହିସାବ ଡିସେମ୍ବର ୩୧ ତାରିଖରେ ବନ୍ଦ ହୁଏ ।

ସେହି ବର୍ଷର ମୂଲ୍ୟ ହ୍ରାସ ବାଦ୍ ଦେଲା ପରେ ସଂଯନ୍ତ୍ର ଓ ଯନ୍ତ୍ର ହିସାବର ବାକୀ ୧୯୬୭ ମସିହା ଡିସେମ୍ବର ୩୧ ତାରିଖରେ ୧,୯୫,୧୫୦ ଟଙ୍କା ଥିଲା ଏବଂ ସହକାରୀ ଅଭିଲେଖରୁ ଜଣାଗଲା ଯେ ସେତେବେଳେ ବିଦ୍ୟମାନ ଥିବା ସଂଯନ୍ତ୍ରର କ୍ରୟ ମୂଲ୍ୟ ନିମ୍ନଲିଖିତ ରୂପେ ଗଠିତ ।

| | ଟଙ୍କା |
|---|---|
| ୧୯୫୬ ଅଥବା ପୂର୍ବରୁ କ୍ରୀତ | ୫୮,୦୦୦ |
| ୧୯୫୬ ମସିହାରେ କ୍ରୀତ | ୩୧,୦୦୦ |
| ୧୯୫୮ ମସିହାରେ କ୍ରୀତ | ୧୭,୦୦୦ |
| ୧୯୫୯ ମସିହା ଅଥବା ତତ୍ପରେ କ୍ରୀତ | ୨,୫୨,୦୦୦ |
| | ୩,୫୮,୦୦୦ |

୧୯୬୭ ମସିହାରେ ୨୯,୫୦୦ ଟଙ୍କା ମୂଲ୍ୟରେ ଏକ ନୂତନ ଯନ୍ତ୍ର କ୍ରୟ କରାଯାଇ ଥିଲା ଏବଂ ୧୯୫୫ ମସିହାରେ ୫,୫୦୦ ଟଙ୍କା ମୂଲ୍ୟରେ କ୍ରୟ କରାଯାଇଥିବା ଗୋଟିଏ ଯନ୍ତ୍ରର ଭଗ୍ନାବଶେଷ ୩୫୦ ଟଙ୍କାରେ ବିକ୍ରୀତ ହେଲା ।

୧୯୬୮ ମସିହାରେ ୧୮,୦୦୦ ଟଙ୍କା ମୂଲ୍ୟର ସଂଯୋଜକ କରାଯାଇଥିଲା ଏବଂ ଗୋଟିଏ ଯନ୍ତ୍ର ଯାହା ୧୯୬୪ ମସିହାରେ ୭,୦୦୦ ଟଙ୍କା ମୂଲ୍ୟରେ କ୍ରୟ କରାଯାଇଥିଲା ତାହା ୩,୫୦୦ ଟଙ୍କାରେ ବିକ୍ରୀତ ହୋଇଥିଲା ।

ତୁମର ସମସ୍ତ ଗଣନା ଦର୍ଶାଇ ୧୯୬୭ ଓ ୧୯୬୮ ମସିହାର ସଂଯନ୍ତ୍ର ଓ ଯନ୍ତ୍ର ହିସାବ ପ୍ରସ୍ତୁତ କର ।

( ଉତ୍ତର—ସଂଯନ୍ତ୍ର ଓ ଯନ୍ତ୍ର ହିସାବର ବାକୀ—୧,୭୯,୩୫୦ ଟଙ୍କା)

( ସମସ୍ୟାଟି ରୂପ୍ ରାମ ଗୁପ୍ତଙ୍କ ଲିଖିତ Advanced Accountancy ପୁସ୍ତକରୁ କେତେକ ପରିବର୍ତ୍ତନ ସହ ସଂଗୃହୀତ । )

# ନବମ ପରିଚ୍ଛେଦ

## ପ୍ରାପ୍ତି ଓ ପ୍ରଦାନ ହିସାବ ଆୟ-ବ୍ୟୟ ହିସାବ ଓ ଉଦବୃତ୍ତ ପତ୍ର

ପୂର୍ବବର୍ତ୍ତୀ ପରିଚ୍ଛେଦମାନଙ୍କରେ ବ୍ୟବସାୟ ପ୍ରତିଷ୍ଠାନ ଗୁଡ଼ିକର କାଳାନ୍ତିକ ବା ଚୂଡ଼ାନ୍ତ ହିସାବ ପ୍ରସ୍ତୁତ କରିବାର ପଦ୍ଧତି ଆଲୋଚିତ ହୋଇଛି । ବ୍ୟବସାୟ ପ୍ରତିଷ୍ଠାନଗୁଡ଼ିକ ପଣ୍ୟ ଅଥବା ସେବା କ୍ରୟ ବିକ୍ରୟ କରି ଲାଭ ଅର୍ଜନ କରନ୍ତି । ତେଣୁ ସେପରି ପ୍ରତିଷ୍ଠାନ ସକାଶେ ସ୍ଥୂଳ ବା ମୋଟ ଲାଭ-କ୍ଷତି ହିସାବ, ନିଟ୍ ଲାଭ-କ୍ଷତି ହିସାବ ଓ ଉଦ୍‌ବୃତ୍ତ ପତ୍ର ବା ସ୍ଥିତି ପତ୍ର ପ୍ରସ୍ତୁତ କରାଯାଏ । କିନ୍ତୁ ଲାଭ ଅର୍ଜନ କରିବା ଉଦ୍ଦେଶ୍ୟ ନ ଥାଇ ଅନେକ ପ୍ରତିଷ୍ଠାନ ସ୍ଥାପିତ ହୋଇପାରେ ସେଗୁଡ଼ିକ ସାଧାରଣତଃ ସେବା-ମୂଳକ ଅନୁଷ୍ଠାନ । ଉଦାହରଣ ସ୍ୱରୂପ କ୍ଲବ୍, ବ୍ୟାୟାମାଗାର, ପାଠାଗାର, ଗ୍ରନ୍ଥାଗାର, ଚିକିତ୍ସାଳୟ ପ୍ରଭୃତିର ନାମ ଉଲ୍ଲେଖ କରାଯାଇ ପାରେ । ଏଗୁଡ଼ିକୁ ଅଣ-ବ୍ୟବସାୟୀ ପ୍ରତିଷ୍ଠାନ କୁହାଯାଏ । ଏହି ପ୍ରତିଷ୍ଠାନଗୁଡ଼ିକର ହିସାବ କିପରି ପ୍ରସ୍ତୁତ କରାଯାଏ ତାହାହିଁ ଏହି ପରିଚ୍ଛେଦର ଆଲୋଚ୍ୟ ବିଷୟ ।

ଅବଶ୍ୟ ଏ ସବୁ ପ୍ରତିଷ୍ଠାନରେ ମଧ୍ୟ ଦ୍ୱିଲିଖନ ହିସାବ ପଦ୍ଧତି ଅନୁସୃତ ହୁଏ । ମାତ୍ର ଯେହେତୁ ଏପରି ପ୍ରତିଷ୍ଠାନରେ ଲାଭ ଅର୍ଜନ କରିବା ଉଦ୍ଦେଶ୍ୟ ନ ଥାଏ ତେଣୁ ହିସାବ ବର୍ଷ ଶେଷରେ ମୋଟ ଓ ନିଟ୍ ଲାଭ-କ୍ଷତି ହିସାବ ପ୍ରସ୍ତୁତ କରିବାର ପ୍ରଶ୍ନ ଉଠେ ନାହିଁ । ତେଣୁ ସାଧାରଣତଃ ଏପରି ପ୍ରତିଷ୍ଠାନରେ ହିସାବ ବିଶଦ ଭାବରେ ଲେଖା ନ ଯାଇ ସଂକ୍ଷେପରେ ରଖାଯାଏ । ସେ ହେତୁ ଯେ କୌଣସି ପ୍ରତିଷ୍ଠାନ ସକାଶେ ରେକଡ଼ ବହି ଅପରିହାର୍ଯ୍ୟ ତେଣୁ ନଗଦ ତହବିଲ ଓ ଚେକ୍ ସମ୍ବନ୍ଧୀୟ ଯାବତୀୟ ନେଣ ଦେଣ ଏହି ରେକଡ଼ ବହିରେ ଲିପିବଦ୍ଧ କରାଯାଏ । ଅଧିକାଂଶ କ୍ଷେତ୍ରରେ ବର୍ଷ ଶେଷରେ ଗୋଟିଏ ହିସାବ ପ୍ରସ୍ତୁତ କରାଯାଏ ଯାହାକୁ ପ୍ରାପ୍ତି ଓ ପ୍ରଦାନ ବା ପ୍ରାପ୍ତି ଓ ପରିଶୋଧନ ହିସାବ କୁହାଯାଏ । ଏହି ହିସାବର ବୈଶିଷ୍ଟ୍ୟ ନିମ୍ନରେ ପ୍ରଦତ୍ତ ହେଲା ।

## ପ୍ରାପ୍ତି ଓ ପ୍ରଦାନ ହିସାବର ପ୍ରକୃତି

୧ । ଏହା ରେକର୍ଡ଼ ବହିର ସଂକ୍ଷିପ୍ତ ସଂସ୍କରଣ । ସମସ୍ତ ବର୍ଷର ନଗଦ ଅର୍ଥର ଅଦାନ ପ୍ରଦାନ, ଯାହା ରେକର୍ଡ଼ ବହିରେ ଲିପିବଦ୍ଧ କରାଯାଇ ଥାଏ ତାହାକୁ ଆବଶ୍ୟକୀୟ କେତେଗୋଟି ଶିରୋନାମା ତଳେ ମୋଟ ଆକାରରେ ଲିପିବଦ୍ଧ କରାଯାଏ । ଯେପରି ସମସ୍ତ ବର୍ଷ ମଧ୍ୟରେ କ୍ଲବ୍‌ର ସଭ୍ୟମାନଙ୍କଠାରୁ ପ୍ରାପ୍ତ ଗ୍ରାହା, ପ୍ରାପ୍ତ ଗ୍ରାହା ଶିରୋନାମା ତଳେ ମୋଟ ପରିମାଣରେ ଲିପିବଦ୍ଧ କରାଯାଏ ।

୨ । ଏହି ହିସାବର ପ୍ରକୃତି ରେକର୍ଡ଼ ବହିର ଅନୁରୂପ । ଅର୍ଥାତ୍ ଅର୍ଥର ପ୍ରାପ୍ତି ଏହି ହିସାବର ଦାୟୀ ପାର୍ଶ୍ୱରେ ଓ ଅର୍ଥ ପ୍ରଦାନ ବା ପରିଶୋଧନ ଏହି ହିସାବର ଦାତା ପାର୍ଶ୍ୱରେ ଲିପିବଦ୍ଧ କରାଯାଏ ।

୩ । ଏହି ହିସାବରେ ରେକର୍ଡ଼ ବହି ସଦୃଶ ଉଭୟ ପୁଞ୍ଜି ଜାତୀୟ ଓ ଅଣ-ପୁଞ୍ଜି ଜାତୀୟ ନେଣ ଦେଣ ଲିପିବଦ୍ଧ କରାଯାଏ । ଉଦାହରଣ ସ୍ୱରୂପ, ସମ୍ପତ୍ତିର କ୍ରୟ ଓ ବିକ୍ରୟ, ସଭ୍ୟମାନଙ୍କଠାରୁ ମାସିକ ଗ୍ରାହା ଆଦାୟ, କର୍ମଚାରୀମାନଙ୍କର ମାସିକ ବେତନ ପ୍ରଭୃତି ସମସ୍ତ ଅର୍ଥର ଆଦାନ ଓ ପ୍ରଦାନ ଏହି ହିସାବରେ ଲିପିବଦ୍ଧ କରାଯାଏ ।

୪ । ସେହି ବର୍ଷ ମଧ୍ୟରେ ନଗଦ ଓ ଚେକ୍ ଜରିଆରେ ହୋଇଥିବା ସମସ୍ତ ପ୍ରକାରର ପ୍ରାପ୍ତି ଓ ପ୍ରଦାନ ଏହି ହିସାବରେ ଲିପିବଦ୍ଧ କରାଯାଏ ।

୫ । ପ୍ରାପ୍ତି ପ୍ରଦାନ ହିସାବରେ କୌଣସି ସମାଯୋଜନର ଆବଶ୍ୟକତା ନାହିଁ, ଯାହା ଲାଭ-କ୍ଷତି ହିସାବର ଏକ ଅପରିହାର୍ଯ୍ୟ ଅଙ୍ଗ । ଉଦାହରଣ ସ୍ୱରୂପ, ମନେକର ଯେ ୧୯୬୩ ମସିହା ଡିସେମ୍ବର ମାସର କର୍ମଚାରୀଙ୍କର ବେତନ ବାବଦ ୫°° ଟଙ୍କା ଦିଆ ଯାଇ ନାହିଁ । ଏହି ବକେୟା ଖର୍ଚ୍ଚ ପ୍ରାପ୍ତି ଓ ପ୍ରଦାନ ହିସାବରେ ସ୍ଥାନ ପାଇବ ନାହିଁ । ସେହିପରି ଯଦି ଘର ଭଡ଼ା ବାବଦ ଟଙ୍କା ୧୯୬୪ ମସିହା ସକାଶେ ଅଗ୍ରିମ ଦିଆ ଯାଇଥାଏ ତାହା ୧୯୬୩ ମସିହା ସକାଶେ ଦିଆ ଯାଇଥିବା ମୋଟ ଘରଭଡ଼ା ପରିମାଣରୁ ବାଦ୍ ଦିଆ ଯିବ ନାହିଁ ।

୬ । ପ୍ରଥମ ବର୍ଷ ବ୍ୟତୀତ ପରବର୍ତ୍ତୀ ସମସ୍ତ ପ୍ରାପ୍ତି ଓ ପ୍ରଦାନ ହିସାବର ଦାୟୀ ପାର୍ଶ୍ୱର ପ୍ରଥମ ବିଷୟ ଆଦ୍ୟ ମଜ୍ଜୁଦ୍ ନଗଦ ତହବିଲ ଓ ଦାତା ପାର୍ଶ୍ୱର ଶେଷ ବିଷୟଟି ଅନ୍ତ୍ୟ ମଜ୍ଜୁଦ୍ ନଗଦ ତହବିଲ । ଯଦି ଦାତା ପାର୍ଶ୍ୱର ମୋଟ ପରିମାଣ ଦାୟୀ ପାର୍ଶ୍ୱର ମୋଟ ପରିମାଣଠାରୁ ଅଧିକ ହୁଏ ତାହାହେଲେ ବୁଝାଯିବ ଯେ ବ୍ୟାଙ୍କରୁ ଅଧିକା ଉଠାଣ କରାଯାଇଛି ।

୭ । ଯଦି ଅନ୍ୟ ମହଜୁଦ ନଗଦ ଉଦ୍ୱୃତ୍ତ ଥାଏ ତହିଁରୁ ଏହା ବୁଝାଯିବ ନାହିଁ ଯେ ସେହି ବର୍ଷର ଆୟ ବ୍ୟୟଠାରୁ ଅଧିକ ହୋଇଛି । ଅନେକ ସମୟରେ ଅନ୍ୟ ମହଜୁଦ ନଗଦ ଉଦ୍ୱୃତ୍ତ ଥାଇ ସୁଦ୍ଧା ପ୍ରତିଷ୍ଠାନର ଆୟ ବ୍ୟୟଠାରୁ ଊଣା ହୋଇ ପାରେ ।

୮ । ପ୍ରାପ୍ତି ଓ ପ୍ରଦାନ ହିସାବ ଯଥାର୍ଥ ଉଦ୍‌ବୃତ୍ତ ପତ୍ର ବା ସ୍ଥିତି ପତ୍ର ହୋଇ ନାହିଁ; କାରଣ ପ୍ରାପ୍ତି ଓ ପ୍ରଦାନ ହିସାବ ଉଭୟ ପୁଞ୍ଜି ଓ ଅଣ-ପୁଞ୍ଜି ଜାତୀୟ ନେଣ ଦେଣର ଏକ ମିଶ୍ରଣ ।

ଏହାର ଏକ ଦୃଷ୍ଟାନ୍ତ ନିମ୍ନରେ ପ୍ରଦତ୍ତ ହେଲା ।

## ଦୃଷ୍ଟାନ୍ତ (୧)

ନିମ୍ନଲିଖିତ ବିବରଣୀରୁ ମହାନଦୀ କ୍ଲବ୍‌ର ୧୯୬୩ ମସିହା ଡିସେମ୍ବର ୩୧ ତାରିଖରେ ଶେଷ ହେଉଥିବା ବର୍ଷର ପ୍ରାପ୍ତି ଓ ପ୍ରଦାନ ହିସାବ ପ୍ରସ୍ତୁତ କର ।

| | ଟଙ୍କା | ଟଙ୍କା |
|---|---|---|
| ୧-୧-୧୯୬୩ ତାରିଖରେ ମହଜୁଦ ନଗଦ ଉଦ୍ୱୃତ୍ତ | | ୫,୯୦୪ |
| ସଭ୍ୟ ଚାନ୍ଦା ଆଦାୟ— | | |
| ୧୯୬୨ ମସିହା ସକାଶେ | ୪୫୦ | |
| ୧୯୬୩ ,, ,, | ୪,୨୦୦ | |
| ୧୯୬୪ ,, ,, | ୧୧୦ | ୪,୭୬୦ |
| ଗ୍ରନ୍ଥାଗାର ସକାଶେ ପୁସ୍ତକ କ୍ରୟ | | ୫୦୦ |
| କ୍ରୀଡ଼ା ସାମଗ୍ରୀ କ୍ରୟ | | ୮୦୦ |
| ପୁରୁଣା ଖବର କାଗଜ ବିକ୍ରିରୁ ପ୍ରାପ୍ତ ଅର୍ଥ | | ୪୦ |
| ଖବର କାଗଜ ଓ ପତ୍ର ପତ୍ରିକା କ୍ରୟ | | ୨୫୦ |
| ପ୍ରାପ୍ତ ଦାନ | | ୨,୫୦୧ |
| କ୍ରୀଡ଼ା ପ୍ରତିଯୋଗିତା ସକାଶେ ଖର୍ଚ୍ଚ | | ୫୨୦ |
| ଗୋଟିଏ ଇସ୍ପାତ ଆଲମାରି କ୍ରୟ | | ୬୦୦ |
| ସରକାରୀ ୭ ୧/୨% ଋଣ ପତ୍ରରେ ବିନିଯୋଗ (ଏହିବର୍ଷ) | | ୫,୦୦୦ |
| ଘରଭଡ଼ା (ପ୍ରଦତ୍ତ) | | ୨୫୦ |
| ବିବିଧ ଖର୍ଚ୍ଚ | | ୩୨୫ |
| କର୍ମଚାରୀଙ୍କ ବେତନ | | ୨୦୦ |

## ମହାନଦୀ କ୍ଲବର ୧୯୭୩ ମସିହା ଡିସେମ୍ବର ୩୧ ତାରିଖରେ ଶେଷ ହେଉଥିବା ବର୍ଷର ପ୍ରାପ୍ତି ଓ ପ୍ରଦାନ ହିସାବ

ଦାୟୀ | ଦାତା

| ପ୍ରାପ୍ତି | ଟଙ୍କା | ପ୍ରଦାନ | ଟଙ୍କା |
|---|---|---|---|
| ୧-୧-୧୯୭୩ ତାରିଖ ବାକି ବାବଦ | ୫,୯୦୪ | ଗ୍ରନ୍ଥାଗାର ସକାଶେ ପୁସ୍ତକ କ୍ରୟ ବାବଦ | ୫୦୦ |
| ସଭ୍ୟ ଚାନ୍ଦା ବାବଦ : | | କ୍ରୀଡ଼ା ସାମଗ୍ରୀ କ୍ରୟ ବାବଦ | ୮୦୦ |
| ୧୯୭୨ ମସିହା ସକାଶେ ଟ ୪୫୦ | | ପତ୍ର ପତ୍ରିକା କ୍ରୟ ବାବଦ | ୨୫୦ |
| ୧୯୭୩ ମସିହା ସକାଶେ ଟ୪,୨୦୦ | | କ୍ରୀଡ଼ା ପ୍ରତିଯୋଗିତା ସକାଶେ ଖର୍ଚ୍ଚ ବାବଦ | ୫୨୦ |
| ୧୯୭୪ ମସିହା ସକାଶେ ଟ ୧୧୦ | ୪,୭୬୦ | ଗଷ୍ଟାଡ଼ ଆଲମାରି କ୍ରୟ ବାବଦ | ୭୦୦ |
| ପୁରୁଣା ଖବର କାଗଜ ବିକ୍ରି ବାବଦ | ୪୦ | 7½% ସରକାରୀ ଋଣପତ୍ରରେ ବିନିଯୋଗ ବାବଦ | ୫,୦୦୦ |
| ଦାନ ବାବଦ | ୨,୫୦୧ | ଘରଭଡ଼ା ବାବଦ | ୨୫୦ |
| | | ବିବିଧ ଖର୍ଚ୍ଚ ବାବଦ | ୩୨୫ |
| | | କର୍ମଚାରୀଙ୍କ ବେତନ | ୬୦୦ |
| | | ୩୧-୧୨-୧୯୭୩ ତାରିଖର ବାକି ବାବଦ | ୪,୨୬୦ |
| | ୧୩,୨୦୫ | | ୧୩,୨୦୫ |
| ୧-୧-୧୯୭୪ ତାରିଖ ବାକି ବାବଦ | ୪,୬୨୦ | | |

ଏଠାରେ ଦ୍ରଷ୍ଟବ୍ୟ ଯେ ଉଭୟ ପୁଞ୍ଜିଜାତୀୟ ଓ ଅଣପୁଞ୍ଜିଜାତୀୟ ଆୟ ଓ ବ୍ୟୟ ଆଦାନ ପ୍ରଦାନ ହିସାବରେ ଅନ୍ତର୍ଭୁକ୍ତ ହୋଇଛି । ସେହିପରି ହିସାବ ବର୍ଷ ବହିର୍ଭୂତ ଆୟ ମଧ୍ୟ ଏ ହିସାବରେ ସ୍ଥାନ ପାଇଛି । ଯଦି କୌଣସି ଖର୍ଚ୍ଚ ବାବଦ ଟଙ୍କା ଅଗ୍ରିମ ଦିଆଯାଇଛି ଅଥବା କୌଣସି ଖର୍ଚ୍ଚ ବାବଦ ଟଙ୍କା ବର୍ଷ ଶେଷକୁ ବକେୟା ରହିଛି ସେ ବିଷୟର ଏଠାରେ କୌଣସି ଅବତାରଣା କରାଯାଇନାହିଁ । ପ୍ରାପ୍ତି ଓ ପ୍ରଦାନ ହିସାବର ପ୍ରକୃତି ବା ଲକ୍ଷଣ ଏହିପରି ହୋଇଥିବାରୁ ଏହି ହିସାବର ବାକି ବଳକା ଲାଭ ଅଥବା କ୍ଷତି ସୂଚାଇବ ନାହିଁ ଏବଂ ଏହା ସହିତ ଉଦ୍‌ବୃତ୍ତ ପତ୍ର ମଧ୍ୟ ରହିପାରିବ ନାହିଁ ।

### ଆୟ ବ୍ୟୟ ହିସାବ (Income & Expenditure A/c)

ଯେଉଁ ପ୍ରତିଷ୍ଠାନଗୁଡ଼ିକ ଲାଭ ଉଦ୍ଦେଶ୍ୟରେ କାର୍ଯ୍ୟ ପରିଚାଳନା କରନ୍ତି ନାହିଁ ସେହିପରି ପ୍ରତିଷ୍ଠାନ ପ୍ରତି ଏହି ହିସାବ ଲାଗୁ ହୁଏ । ଏହା ଲାଭ ଓ କ୍ଷତି ହିସାବର ନାମାନ୍ତର ମାତ୍ର । ଏହି ହିସାବ ଆୟ ବ୍ୟୟ ହିସାବ (Revenue A/c) ଶ୍ରେଣୀଭୁକ୍ତ, ତେଣୁ ଯାହା ଆୟ

କରିଯାଏ ତାହା ଦାତା ପକ୍ଷରେ ଓ ଯାହା ବ୍ୟୟ କରାଯାଏ ତାହା ଦାୟୀ ପାର୍ଶ୍ୱରେ ଅନ୍ତର୍ଭୁକ୍ତ ହୁଏ । ହିସାବ ବର୍ଷ ଶେଷରେ ଏହି ହିସାବରେ ସମାଯୋଜନ ସକାଶେ ବ୍ୟବସ୍ଥା ଥାଏ, ଅର୍ଥାତ୍ ଏହି ବର୍ଷର ପ୍ରାପ୍ୟ ଆୟ ଯଦି ସଂପୂର୍ଣ୍ଣରୂପେ ମିଳି ନ ଥାଏ ତାହା ହେଲେ ଅର୍ଜିତ ମାତ୍ର ଅପ୍ରାପ୍ତ ଆୟ ରୂପେ ଏହା ଏହି ବର୍ଷର ପ୍ରାପ୍ତ ଆୟ ସହିତ ସଯୁକ୍ତ ହେବ । ସେହିପରି ଯଦି ଅନର୍ଜିତ ଅର୍ଥାତ୍ ଏ ବର୍ଷରେ ଅ-ପ୍ରାପ୍ୟ କୌଣସି ଆୟ ଅଗ୍ରିମ ମିଳିଥାଏ ତାହା ପ୍ରାପ୍ତ ଆୟରୁ ବିଯୁକ୍ତ କରାଯିବ । ଏହି ହିସାବ ବର୍ଷ ସମ୍ପୃକ୍ତ କୌଣସି ଖର୍ଚ୍ଚ ଯଦି ଦିଆ ନ ଯାଇ ବକେୟା ଥାଏ ତାହା ହେଲେ ଦିଆ ଯାଇ ନ ଥିଲେ ମଧ୍ୟ ତାହା ବ୍ୟୟ ସହିତ ସଯୁକ୍ତ ହେବ । ସେହିପରି ଯଦି କୌଣସି ଖର୍ଚ୍ଚ ବାବଦ ଟଙ୍କା ଅଗ୍ରିମ ଦିଆଯାଇଥାଏ ତାହା ହେଲେ ସେହି ପରିମାଣ ଅର୍ଥ ମୋଟ ବ୍ୟୟରୁ ବିଯୁକ୍ତ କରାଯିବ । ଏହିପରି ସମାଯୋଜନ କରାଗଲେ ଏହି ହିସାବର ବାକି ବା ବଳକା ପ୍ରତିଷ୍ଠାନର ପ୍ରକୃତ ଉଦ୍‌ବୃତ୍ତ (Surplus) ଅଥବା ନିଅଣ୍ଟ ପରିମାଣ (Deficiency) ସୂଚାଇବ । ଏହି ବଳକା ଯଦି ଦାତା ହୁଏ ତାହା ହେଲେ ଏହାକୁ ବ୍ୟୟ ବାଦେ ବଳକା ଆୟ (Excess of Income over Expenditure) ଓ ବଳକା ବା ବାକି ଯଦି ଦାୟୀ ହୁଏ ତାହା ହେଲେ ଏହାକୁ ଆୟ ବାଦେ ବଳକା ବ୍ୟୟ (Excess of Expenditure over Income) କୁହାଯାଏ ।

ଏହି ହିସାବରେ କେବଳ ମୁନାଫା ବା ଅପେକ୍ଷିକ ଜାତୀୟ ଆୟ ବ୍ୟୟ ଅନ୍ତର୍ଭୁକ୍ତ ହୁଏ । ତେଣୁ ଏହି ହିସାବ ସହିତ ଏକ ଉଦ୍‌ବୃତ୍ତ ପତ୍ର ବା ସ୍ଥିତି ପତ୍ର ପ୍ରସ୍ତୁତ କରାଯାଇପାରେ । ପୂର୍ବରୁ କୁହାଯାଇଛି ଯେ, ଏହି ହିସାବ କ୍ଲବ, ସଂଘ, ସଂସ୍ଥା, ଦାତବ୍ୟ ଚିକିତ୍ସାଳୟ, ଶିକ୍ଷାନୁଷ୍ଠାନ, ପାଠାଗାର, ଗ୍ରନ୍ଥାଗାର ପ୍ରଭୃତି ପ୍ରତିଷ୍ଠାନ ସକାଶେ ପ୍ରସ୍ତୁତ କରାଯାଏ । ଏହି ହିସାବର ଏକ ଦୃଷ୍ଟାନ୍ତ ନିମ୍ନରେ ପ୍ରଦତ୍ତ ହେଲା ।

### ଦୃଷ୍ଟାନ୍ତ (୨)

ନିମ୍ନଲିଖିତ ବିବରଣୀରୁ ଶମ୍ଭାଦ କ୍ଲବର ୧୯୭୪ ମସିହା ଡିସେମ୍ବର ୩୧ ତାରିଖରେ ଶେଷ ହେଉଥିବା ବର୍ଷର ଆୟ ଓ ବ୍ୟୟ ହିସାବ ପ୍ରସ୍ତୁତ କର :

| | ଟଙ୍କା |
|---|---|
| ନଗଦ ତହବିଲ (୧-୧-୧୯୭୪) | ୨,୩୨୧ |
| ଚାନ୍ଦା ଆଦାୟ | ୭,୫୦୦ |
| ପ୍ରଦତ୍ତ ଘରଭଡ଼ା | ୧,୮୦୦ |
| ବେତନ | ୨,୪୦୦ |
| ଛପେଇ ଓ ଷ୍ଟେସନାରି | ୫୫୦ |
| ବିବିଧ ଖର୍ଚ୍ଚ | ୧,୨୦୦ |
| ବିଜ୍ଞାପନ | ୧୧୦ |
| ଅନ୍ତର୍ଦ୍ୱାର ପ୍ରତିଯୋଗିତା ସକାଶେ ପ୍ରାପ୍ତ ପ୍ରବେଶିକା ଫିସ | ୪୫୦ |
| ନୂତନ ସଦସ୍ୟମାନଙ୍କଠାରୁ ପ୍ରାପ୍ତ ପ୍ରବେଶିକା ଫିସ | ୫୦ |

ବକେୟା ଚାନ୍ଦା ୫୨୫ ଟଙ୍କା ; ଦେୟ ଘରଭଡ଼ା ୧୫୦ ଟଙ୍କା । ଗୋଟିଏ ମାସର ବେତନ ବାବଦ ବାକି ୨୦୦ ଟଙ୍କା । ବିଜ୍ଞାପନ ଖର୍ଚ୍ଚ ବାବଦ ୪୦ ଟଙ୍କା ଦିଆଯାଇନାହିଁ । ୧୯୭୩ ମସିହା ବାବଦ ୧୦୦ ଟଙ୍କା ଚାନ୍ଦା ଆଦାୟ ହୋଇଛି । ଜଣେ ସଦସ୍ୟ ୧୯୭୫ ମସିହା ସକାଶେ ୨୫ ଟଙ୍କା ଚାନ୍ଦା ଅଗ୍ରିମ ଦେଇଛନ୍ତି ।

**ସମାଧାନ :—**

ଶମ୍ଭାଦ୍ କ୍ଲବର

୧୯୭୪ ମସିହା ଡିସେମ୍ବର ୩୧ ତାରିଖରେ ଶେଷ ହେଉଥିବା ବର୍ଷର

ଆୟ ଓ ବ୍ୟୟ ହିସାବ ।

ଦାୟୀ | | | | | ଦାତା
--- | --- | --- | --- | --- | ---
 | ଟଙ୍କା | ଟଙ୍କା | | ଟଙ୍କା | ଟଙ୍କା
ଘରଭଡ଼ା ବାବଦ | ୧,୮୦୦ | | ଚାନ୍ଦା ବାବଦ | ୬,୫୦୦ |
ଯୁକ୍ତ ବକେୟା ଘରଭଡ଼ା | ୧୫୦ | ୧,୯୫୦ | ଯୁକ୍ତ ବକେୟା ଚାନ୍ଦା | ୫୨୫ |
 | | | | ୭.୦୨୫ |
ବେତନ ବାବଦ | ୨,୪୦୦ | | ବିଯୁକ୍ତ | |
ଯୁକ୍ତ ବକେୟା ବେତନ | ୨୦୦ | ୨,୬୦୦ | ୧୯୭୩ର ଚାନ୍ଦା ୧୦୦ | |
 | | | ୧୯୭୫ର ଚାନ୍ଦା ୨୫ | |
 | | | | ୧୨୫ | ୬,୯୦୦
ଛପେଇ ଓ ଷ୍ଟେସନାରି ବାବଦ | | ୫୫୦ | ନୂତନ ସଭ୍ୟଙ୍କର ପ୍ରବେଶିକା ଫିସ ବାବଦ | | ୫୦
ବିବିଧ ଖର୍ଚ୍ଚ ବାବଦ | | ୧,୨୦୦ | | |
ବିଜ୍ଞାପନ ବାବଦ | ୧୧୦ | | ପ୍ରତିଯୋଗିତା ସକାଶେ ପ୍ରାପ୍ତ ପ୍ରବେଶିକା ଫିସ ବାବଦ | | ୪୫୦
ଯୁକ୍ତ ବକେୟା ଖର୍ଚ୍ଚ | ୪୦ | ୧୫୦ | | |
ବ୍ୟୟ ବାଦେ ବଳକା ଆୟ— ମୂଳଧନ ପାଣ୍ଠିକୁ ସ୍ଥାନାନ୍ତରିତ ହେଲା । | | ୯୫୦ | | |
 | | ୭,୪୦୦ | | | ୭,୪୦୦

ଏହି ଦୃଷ୍ଟାନ୍ତରେ ଅବଧେୟ ଯେ ଏହି କ୍ଲବର ଏହି ହିସାବ ବର୍ଷ ସଂକ୍ରାନ୍ତ ସମସ୍ତ ଆୟ, ତାହା ପ୍ରାପ୍ତ ହୋଇଥାଉ ବା ନ ଥାଉ ଏବଂ ସମସ୍ତ ବ୍ୟୟ, ତାହା ପ୍ରକୃତରେ ଦିଆଯାଇଥାଉ ବା ନ ଥାଉ ତାହା ହିସାବଭୁକ୍ତ କରାଯାଇଛି । ସେହିପରି ଅଗ୍ରିମ ପ୍ରାପ୍ତ ଓ ପ୍ରଦତ୍ତ ସମସ୍ତ ଆୟ ଓ ବ୍ୟୟ ଏହି ହିସାବରୁ ବାଦ୍ ଦିଆଯାଇଛି । ପୁନଶ୍ଚ ଅଣ-ପୁଞ୍ଜିଜାତୀୟ ଆୟ ବା ବ୍ୟୟ ଏହି ହିସାବରେ ସ୍ଥାନ ପାଇନାହିଁ ।

## ନଗଦ ପ୍ରାପ୍ତି ଓ ପ୍ରଦାନ ହିସାବ ଓ ଆୟ ବ୍ୟୟ ହିସାବ ମଧ୍ୟରେ ପାର୍ଥକ୍ୟ ।

| ପ୍ରାପ୍ତି ଓ ପ୍ରଦାନ ହିସାବ : | ଆୟ ଓ ବ୍ୟୟ ହିସାବ : |
| --- | --- |
| (୧) ଏହି ହିସାବ ରେକଡ଼ ବହିର ସଂକ୍ଷିପ୍ତ ସଂସ୍କରଣ । | (୧) ଏହି ହିସାବ ଅଣ-ବ୍ୟାବସାୟିକ ପ୍ରତିଷ୍ଠାନର ଆୟ ଓ ବ୍ୟୟ ସୂଚାଏ ଏବଂ ଏହାର ଲକ୍ଷଣଗୁଡ଼ିକ ଲାଭ ଓ କ୍ଷତି ହିସାବର ଅନୁରୂପ । |
| (୨) ଏହି ହିସାବରେ ସମସ୍ତ ପ୍ରାପ୍ତି ଦାୟୀ ପାର୍ଶ୍ୱରେ ଓ ସମସ୍ତ ପ୍ରଦାନ ଦାତା ପାର୍ଶ୍ୱରେ ଲିପିବଦ୍ଧ କରାଯାଏ । | (୨) ଏହି ହିସାବରେ ସମସ୍ତ ଆୟ ଦାତା ପାର୍ଶ୍ୱରେ ଓ ସମସ୍ତ ବ୍ୟୟ ଦାୟୀ ପାର୍ଶ୍ୱରେ ଲିପିବଦ୍ଧ କରାଯାଏ । |
| (୩) ଏହି ହିସାବରେ ସଂପୃକ୍ତ ବର୍ଷ ମଧ୍ୟରେ ଯେଉଁ ଅର୍ଥ ପ୍ରାପ୍ତ ବା ପ୍ରଦତ୍ତ ହୁଏ କେବଳ ତାହାହିଁ ଲିପିବଦ୍ଧ କରାଯାଏ । ଏହି ପ୍ରାପ୍ତି ଓ ପ୍ରଦାନଗୁଡ଼ିକ ପୂର୍ବ ବର୍ଷ ଏବଂ ପରବର୍ତ୍ତୀ ବର୍ଷ ସଂକ୍ରାନ୍ତୀୟ ମଧ୍ୟ ହୋଇ-ପାରେ । | (୩) ଏହି ହିସାବରେ କେବଳ ନିର୍ଦ୍ଦିଷ୍ଟ ହିସାବ ବର୍ଷ ସଂକ୍ରାନ୍ତ ଆୟ ଓ ବ୍ୟୟ ଲିପିବଦ୍ଧ କରାଯାଏ । ତେଣୁ କୌଣସି ଆୟ ମିଳିଥାଉ ବା ନ ଥାଉ ଓ କୌଣସି ବ୍ୟୟ କରାଯାଇ-ଥାଉ ବା ନ ଥାଉ ତାହାକୁ ହିସାବଭୁକ୍ତ କରାଯାଏ । |
| (୪) ଅଗ୍ରିମ ପ୍ରାପ୍ତ ସମସ୍ତ ଅର୍ଥ ଓ ଅଗ୍ରିମ ପ୍ରଦତ୍ତ ସମସ୍ତ ଅର୍ଥ ଏହି ହିସାବରେ ସ୍ଥାନ ପାଏ । | (୪) ଅଗ୍ରିମ ପ୍ରାପ୍ତ ଆୟ ଓ ଅଗ୍ରିମ ପ୍ରଦତ୍ତ ବ୍ୟୟ ନିର୍ଦ୍ଦିଷ୍ଟ ହିସାବ ବର୍ଷ ସଂପୃକ୍ତ ନ ହୋଇଥିଲେ ତାହା ଏହି ହିସାବରୁ ବାଦ୍ ଦିଆଯାଏ । |
| (୫) ଏହି ହିସାବରେ କୌଣସି ସମା-ଯୋଜନର ସ୍ଥାନ ନାହିଁ । | (୫) ଏହି ହିସାବରେ ଆବଶ୍ୟକତା ଅନୁଯାୟୀ ସମାଯୋଜନ କରାଯାଏ । |
| (୬) ଏହି ହିସାବରେ କୌଣସି ପ୍ରାପ୍ତ ବା ପ୍ରଦତ୍ତ ଅର୍ଥ ଉଭୟ ପୁଞ୍ଜି ଓ ଅଣ-ପୁଞ୍ଜି ଜାତୀୟ ଅନ୍ତର୍ଭୁକ୍ତ କରାଯାଏ । | (୬) ଏହି ହିସାବରେ ମୁନାଫା ବା ଅଣ-ପୁଞ୍ଜି ଜାତୀୟ (Revenue) ଆୟ ଓ ବ୍ୟୟ ଅନ୍ତର୍ଭୁକ୍ତ ହୁଏ । |
| (୭) ଏହି ହିସାବରେ ଉଭୟ ପୁଞ୍ଜି ଓ ଅଣ-ପୁଞ୍ଜି ଜାତୀୟ ଅର୍ଥ ଅନ୍ତର୍ଭୁକ୍ତ ହେଉ-ଥିବାରୁ ଏହା ସହିତ ଉଦ୍‌ବୃତ୍ତ ପତ୍ର ସାଧା-ରଣତଃ ସଂଯୁକ୍ତ ହୋଇପାରେ ନାହିଁ । | (୭) ଏହି ହିସାବରେ କେବଳ ଅଣ-ପୁଞ୍ଜି ଜାତୀୟ ଆୟ ଓ ବ୍ୟୟ ଅନ୍ତର୍ଭୁକ୍ତ ହେଉଥିବାରୁ ଏହା ସହିତ ଉଦ୍‌ବୃତ୍ତ ପତ୍ର ବା ସ୍ଥିତି ପତ୍ର ସମ୍ପୃକ୍ତ କରିବା ସକାଶେ କୌଣସି ଅସୁବିଧା ହୁଏ ନାହିଁ । |

(୮) ସାଧାରଣତଃ ଏହି ହିସାବ ପୂର୍ବ ହିସାବ ବର୍ଷର ବଳକା ଅର୍ଥ ସହିତ ଆରମ୍ଭ ହୁଏ । ଏହା ଦାୟୀ ପାର୍ଶ୍ୱର ସର୍ବପ୍ରଥମ ବିଷୟ ରୂପେ ଉଲ୍ଲିଖିତ ହୁଏ ।

(୯) ଏହି ହିସାବର ବଳକା ଆଦୌ ନ ରହି ପାରେ ମାତ୍ର ଯଦି କୌଣସି ବଳକା ରହେ ତାହା ଦାୟୀ ପାର୍ଶ୍ୱର ବଳକା ହେବା ସୁନିଶ୍ଚିତ ଏବଂ ତାହା ଏହି ହିସାବର ଦାତା ପାର୍ଶ୍ୱର ସର୍ବଶେଷ ବିଷୟ ରୂପେ ଲେଖାଯାଏ ।

(୮) ପୂର୍ବ ବର୍ଷର କୌଣସି ବଳକା ଆୟ ବା ବ୍ୟୟ ଏ ବର୍ଷର ହିସାବକୁ ଅଣାଯାଏ ନାହିଁ ।

(୯) ଏହି ହିସାବର ବଳକା ଉଭୟ ଦାୟୀ ବା ଦାତା ହୋଇପାରେ । ବଳକା ଦାତା ହେଲେ ତାହାକୁ ବ୍ୟୟ ବାଦେ ବଳକା ଆୟ ଓ ବଳକା ଦାୟୀ ହେଲେ ତାହାକୁ ଆୟ ବାଦେ ବଳକା ବ୍ୟୟ ବୋଲି କୁହାଯାଏ । ପ୍ରଥମଟି ଦାୟୀ ପାର୍ଶ୍ୱ ଓ ଦ୍ୱିତୀୟଟି ଦାତା ପାର୍ଶ୍ୱର ସର୍ବଶେଷ ବିଷୟ-ରୂପେ ଲିପିବଦ୍ଧ କରାଯାଏ ।

## ପ୍ରାପ୍ତି ଓ ପ୍ରଦାନ ହିସାବକୁ ଆୟ ଓ ବ୍ୟୟ ହିସାବରେ ପରିଣତ କରିବାର ନିୟମ

୧ । ପ୍ରାପ୍ତି ଓ ପ୍ରଦାନ ହିସାବର ଆଦ୍ୟ ଓ ଅନ୍ତ୍ୟ ବଳକା ମହଜୁଦ ନଗଦ ତହବିଲ ଓ ବ୍ୟାଙ୍କରେ ଗଚ୍ଛିତ ତହବିଲ ଆୟ ଓ ବ୍ୟୟ ହିସାବରେ ଅନ୍ତର୍ଭୁକ୍ତ କରାଯିବ ନାହିଁ ।

୨ । ପୁଞ୍ଜି ଜାତୀୟ କୌଣସି ପ୍ରାପ୍ତି ବା ପ୍ରଦାନ ଆୟ ଓ ବ୍ୟୟ ହିସାବରେ ଅନ୍ତର୍ଭୁକ୍ତ କରାଯିବ ନାହିଁ ।

୩ । ଯଦି ପୂର୍ବ ହିସାବ ବର୍ଷ ବାବଦ କୌଣସି ଅର୍ଥ ପ୍ରାପ୍ତ ବା ପ୍ରଦତ୍ତ ହୋଇଥାଏ ଏବଂ ଯଦି କୌଣସି ଅର୍ଥ ଅଗ୍ରିମ ପ୍ରାପ୍ତ ବା ପ୍ରଦତ୍ତ ହୋଇଥାଏ, ତାହାହେଲେ ସେଗୁଡ଼ିକ ଆୟ ଓ ବ୍ୟୟ ହିସାବରେ ଅନ୍ତର୍ଭୁକ୍ତ କରାଯିବ ନାହିଁ ।

୪ । ଚଳିତ ବର୍ଷ ବାବଦ ଯଦି କୌଣସି ଆୟ ଅଥବା ବ୍ୟୟ ବକେୟା ଥାଏ, ତାହା-ହେଲେ ତାହାର ପରିମାଣ ନିର୍ଦ୍ଧାରିତ କରାଯାଇ ଆୟ ଓ ବ୍ୟୟ ହିସାବରେ ଅନ୍ତର୍ଭୁକ୍ତ କରାଯିବ ।

୫ । କୌଣସି ସମ୍ପତ୍ତି ବାବଦ ଯଦି ମୂଲ୍ୟ ହ୍ରାସ କରିବାର ଥାଏ ଏବଂ ଅନାଦାୟୀ ଅଥବା ସମ୍ଭାବିତ ଅନାଦାୟୀ ଋଣ ସକାଶେ ବ୍ୟବସ୍ଥା କରିବାକୁ ଥାଏ, ତାହାହେଲେ ସେଗୁଡ଼ିକ ସକାଶେ ଆୟ ଓ ବ୍ୟୟ ହିସାବରେ ବ୍ୟବସ୍ଥା କରାଯିବ ।

# ଅଣ-ବ୍ୟବସାୟୀ ପ୍ରତିଷ୍ଠାନର କେତେକ ବିଷୟ

## ୧ । ମୂଳଧନ ପାଣ୍ଠି (Capital Fund)

ବ୍ୟବସାୟୀ ପ୍ରତିଷ୍ଠାନ (Trading Concern) ମାନଙ୍କରେ ଆମେ ଦେଖିଛୁ ଯେ, ଏହାର ମୋଟ ସମ୍ପତ୍ତି ପରିମାଣରୁ ମୋଟ ଆଦାୟ ବା ଦେୟ ବାଦ ଦେଲେ ଯାହା ଅବଶିଷ୍ଟ ରହେ ତାହାକୁ ନିଟ୍ ସମ୍ପତ୍ତି କୁହାଯାଏ । ଉଦ୍‌ବୃତ୍ତ ପତ୍ର ବା ସ୍ଥିତି ପତ୍ରରେ ଏହି ନିଟ୍ ସମ୍ପତ୍ତି ମୂଳଧନ ହିସାବ (Capital Account)ଦ୍ୱାରା ପ୍ରତି ନିହିତ ହୁଏ । ଓକିଲ, ଡାକ୍ତର, ହିସାବରକ୍ଷକ ପ୍ରଭୃତି ଯଦି ନିଜ କାରବାର ସକାଶେ ଏହିପରି ଆୟ ଓ ବ୍ୟୟ ହିସାବ ଓ ସ୍ଥିତି ପତ୍ର ପ୍ରସ୍ତୁତ କରନ୍ତି ତାହାହେଲେ ସେମାନେ ନିଟ୍ ସମ୍ପତ୍ତିକୁ ଦାୟ ପାର୍ଶ୍ୱରେ ମୂଳଧନ ହିସାବ ରୂପେ ଦର୍ଶାଇଥାଆନ୍ତି । କିନ୍ତୁ ଅଣ-ବ୍ୟବସାୟୀ ପ୍ରତିଷ୍ଠାନ ଅ-ବ୍ୟକ୍ତିକ ହୋଇ-ଥିଲେ, ଯେପରି କ୍ଲବ, ସମିତି, ସଂସଦ, ପାଠାଗାର, ଚିକିତ୍ସାଳୟ ଇତ୍ୟାଦି ସେମାନେ ମୂଳଧନ ହିସାବ ପରିବର୍ତ୍ତେ ମୂଳଧନ ପାଣ୍ଠି (Capital Fund) ହିସାବ ଖୋଲନ୍ତି । ପ୍ରତିବର୍ଷର ବ୍ୟୟ ବାଦେ ବଳକା ଆୟ ଏହି ହିସାବକୁ ଦାତା କରାଯାଏ ଏବଂ ଆୟ ବାଦେ ବଳକା ବ୍ୟୟ ଏହି ହିସାବକୁ ଦାୟୀ କରାଯାଏ । କହିବା ବାହୁଲ୍ୟ ଯେ, ଏହି ହିସାବଟି ପୁଞ୍ଜି ଜାତୀୟ ଓ ଏହା ସ୍ଥିତିପତ୍ରର ଦାୟ ବା ଦେୟ ପାର୍ଶ୍ୱରେ ଅନ୍ତର୍ଭୁକ୍ତ ହୁଏ ।

## ୨ । ବିଶେଷ ପାଣ୍ଠି (Special Fund)

ଅନେକ ପ୍ରତିଷ୍ଠାନରେ ମୂଳଧନ ପାଣ୍ଠି ବ୍ୟତୀତ ଅନ୍ୟାନ୍ୟ ବିଶେଷ ପାଣ୍ଠି ଖୋଲି-ବାର ବ୍ୟବସ୍ଥା ଥାଏ । ପୁରସ୍କାର ପାଣ୍ଠି (Prize Fund), ଦାନ ପାଣ୍ଠି (Charity Fund), ପ୍ରତିଯୋଗିତା ପାଣ୍ଠି (Tournament Fund) ପ୍ରଭୃତିର ନାମ ଉଦାହରଣ ସ୍ୱରୂପ ଉଲ୍ଲେଖ କରାଯାଇପାରେ । ଏହି ପ୍ରକାର ପାଣ୍ଠି ଗଢ଼ାଗଲେ ସେ ସଂକ୍ରାନ୍ତ ଆୟବ୍ୟୟ ସେହି ପାଣ୍ଠି ହିସାବରେ ସ୍ୱତନ୍ତ୍ର ଭାବରେ ଲିପିବଦ୍ଧ କରାଯାଏ । ଯଦି ଏହି ପାଣ୍ଠିର ବ୍ୟୟରେ ସରକାରୀ ଋଣ ପତ୍ର ଅଥବା ଅନ୍ୟ କୌଣସି ବିନିଯୋଗ କରାଯାଇଥାଏ ତାହାହେଲେ ବିନିଯୁକ୍ତ ଅର୍ଥରୁ ପ୍ରାପ୍ତ ସୁଧ ବା ଲଭ୍ୟାଂଶ ସକାଶେ ସେହି ନିର୍ଦ୍ଦିଷ୍ଟ ବିଶେଷ ପାଣ୍ଠି ହିସାବକୁ ଦାତା କରାଯାଏ । ବର୍ଷ ଶେଷରେ ଏହି ପାଣ୍ଠି ହିସାବଗୁଡ଼ିକର ବାକି ବା ବଳକା ସ୍ଥିତିପତ୍ରର ଦାୟ ବା ଦେଣା ପାର୍ଶ୍ୱରେ ପ୍ରଦର୍ଶିତ ହୁଏ ।

## ୩ । ଦାନର ମୂଳଧନାୟନ (Capitalisation of Donation)

ଅଣ-ବ୍ୟବସାୟୀ ପ୍ରତିଷ୍ଠାନଗୁଡ଼ିକ ଅନେକ ସମୟରେ ଦାନ ଗ୍ରହଣ କରିଥାଆନ୍ତି । ଏହି ଦାନ ଲବ୍ଧ ଅର୍ଥର କେତେକାଂଶ ଅଣ-ପୁଞ୍ଜି ଜାତୀୟ ବ୍ୟୟ ବାବଦ ବ୍ୟୟିତ ହୁଏ ଓ ଅବଶିଷ୍ଟ ଅର୍ଥ ପୁଞ୍ଜି ଜାତୀୟ ବ୍ୟୟନରେ ନିୟୋଜିତ ହୁଏ । ଶେଷୋକ୍ତ ଅର୍ଥ ପରିମାଣକୁ ମୂଳ-

ଧନାୟନ କରାଯାଏ, ଦାନଲବ୍ଧ ଅର୍ଥର କେତେ ପରିମାଣର ମୂଳଧନାୟନ କରାଯିବ ତାହାର ନିର୍ଦ୍ଦେଶ ପ୍ରତିଷ୍ଠାନର ନିୟମାବଳୀରେ ଅନ୍ତର୍ଭୁକ୍ତ ହୋଇ-ଥାଏ । ଯଦି ଏପରି କୌଣସି ନିର୍ଦ୍ଦେଶ ନ ଥାଏ ତାହାହେଲେ ଏହି ଅର୍ଥକୁ ମୂଳଧନ ପାଣ୍ଠି ହିସାବରେ ଦାଖଲଭୁକ୍ତ କରାଯିବା ଉଚିତ । ଯଦି ଅନ୍ୟ କୌଣସି ବିଶେଷ ପାଣ୍ଠି ଖୋଲା-ଯାଇଥାଏ ତାହାହେଲେ ସେହି ପାଣ୍ଠି ହିସାବକୁ ଦାନ ଲବ୍ଧ ଅର୍ଥ ସକାଶେ ଧାର୍ଯ୍ୟ ମଧ୍ୟ କରାଯାଇପାରେ ।

## ୪ । ପ୍ରବେଶିକା ଫିସ (Entrance Fee)

ଅଣ ବ୍ୟବସାୟୀ ପ୍ରତିଷ୍ଠାନର ସଭ୍ୟ ହେବା ସମୟରେ ସାଧାରଣତଃ ପ୍ରତ୍ୟେକ ସଭ୍ୟଙ୍କଠାରୁ ପ୍ରବେଶିକା ଫିସ ଆଦାୟ କରାଯାଏ । ଏହାକୁ ପୁଞ୍ଜି ଜାତୀୟ ଆୟ ରୂପେ ମୂଳଧନ ପାଣ୍ଠି ହିସାବକୁ ଧାର୍ଯ୍ୟ କରାଯିବା ଉଚିତ । ମାତ୍ର ଯଦି ପ୍ରତିଷ୍ଠାନର ନିୟମାବଳୀରେ ଏହାକୁ ଅଣ-ପୁଞ୍ଜି ଜାତୀୟ ଆୟ ରୂପେ ବିବେଚନା କରିବାକୁ ନିର୍ଦ୍ଦେଶ ଥାଏ ତାହାହେଲେ ଏହି ଅର୍ଥ ସକାଶେ ଆୟ ଓ ବ୍ୟୟ ହିସାବକୁ ଧାର୍ଯ୍ୟ କରାଯିବ । ଏହି ଅର୍ଥର ପରିମାଣ ଅଳ୍ପ ହୋଇଥିଲେ ଏହାକୁ ଅଣ-ପୁଞ୍ଜି ଜାତୀୟ ଆୟ ରୂପେ ବିବେଚନା କରିବା ସକାଶେ କେତେକ ହିସାବଶାସ୍ତ୍ରବିଦ୍ ପ୍ରସ୍ତାବ କରିଛନ୍ତି ।

## ୫ । ଚାନ୍ଦା (Subscription)

ପ୍ରତ୍ୟେକ ସଭ୍ୟଙ୍କଠାରୁ ନିର୍ଦ୍ଦିଷ୍ଟ କାଳ ସକାଶେ ଚାନ୍ଦା ଆଦାୟ କରାଯାଏ । ଏହା ଅଣ-ପୁଞ୍ଜି ଜାତୀୟ ଆୟ ରୂପେ ଆୟ ଓ ବ୍ୟୟ ହିସାବର ଦାଖଲ ପାର୍ଶ୍ୱରେ ଲିପିବଦ୍ଧ କରାଯାଏ । ସେହି ହିସାବ ବର୍ଷ ସକାଶେ ଯେତେ ଚାନ୍ଦା ପ୍ରାପ୍ୟ ତାହା ଯଦି ସମ୍ପୂର୍ଣ୍ଣ ରୂପେ ଆଦାୟ ନ ହୋଇ ତନ୍ମଧ୍ୟରୁ କିଛି ପରିମାଣ ବକେୟା ଥାଏ, ତାହାହେଲେ ତାହା ହିସାବ କରାଯାଇ ଆୟ ଓ ବ୍ୟୟ ହିସାବର ଦାଖଲ ପାର୍ଶ୍ୱରେ ଆଦାୟ ହୋଇଥିବା ଚାନ୍ଦା ପରିମାଣ ସହିତ ସଂଯୁକ୍ତ ହେବ । ଯଦି ପୂର୍ବବର୍ଷର ବକେୟା ଚାନ୍ଦା ଚଳିତ ବର୍ଷରେ ଆଦାୟ କରା-ଯାଇଥାଏ, ତାହାହେଲେ ସେହି ପରିମାଣ ଆଦାୟ ହୋଇଥିବା ଚାନ୍ଦାର ମୋଟ ପରିମାଣରୁ ବିୟୁକ୍ତ କରାଯିବ । ସେହିପରି ଯଦି କୌଣସି ସଭ୍ୟ ଆଗାମୀ ବର୍ଷ ସକାଶେ ତାଙ୍କର ଚାନ୍ଦା ଅଗ୍ରିମ ଦେଇଥାଆନ୍ତି ତାହାହେଲେ ସେହି ଅଗ୍ରିମ ପ୍ରାପ୍ତ ଚାନ୍ଦା ମଧ୍ୟ ପ୍ରାପ୍ତ ମୋଟ ଚାନ୍ଦା ପରିମାଣରୁ ବିୟୋଗ କରାଯିବ ।

## ୬ । ଆଜୀବନ ସଭ୍ୟଙ୍କ ଚାନ୍ଦା (Life Membership Fee)

କେତେକ ସଭ୍ୟ ପ୍ରତିବର୍ଷ ଚାନ୍ଦା ଦେବା ଅସୁବିଧା ଓ ଦାୟିତ୍ୱରୁ ମୁକ୍ତ ହେବା ନିମନ୍ତେ ଏକକାଳୀନ ତାଙ୍କର ସାରା ଜୀବନ ସକାଶେ ଚାନ୍ଦା ଦେଇଥାଆନ୍ତି । ଏପରି କ୍ଷେତ୍ରରେ ଯେଉଁ ଅର୍ଥ ଲାଭ କରାଯାଏ ତାହାକୁ ଆଜୀବନ ସଭ୍ୟଙ୍କ ଚାନ୍ଦା ହିସାବର ଦାଖଲ ପାର୍ଶ୍ୱରେ ଅନ୍ତର୍ଭୁକ୍ତ କରାଯାଏ । ବର୍ଷ ଶେଷରେ ଯେତେବେଳେ ଉଦ୍‌ବୃତ୍ତ ପତ୍ର ବା ସ୍ଥିତି-

ପତ୍ର ପ୍ରସ୍ତୁତ କରାଯାଏ ସେତେବେଳେ ଏହି ଆଜୀବନ ସଭ୍ୟଙ୍କ ଚାନ୍ଦା ହିସାବ ଦାୟ ପାର୍ଶ୍ୱରେ ଅନ୍ତର୍ଭୁକ୍ତ କରାଯାଏ । ଯେତେବେଳେ କୌଣସି ଆଜୀବନ ସଭ୍ୟଙ୍କ ମୃତ୍ୟୁ ଘଟେ ସେତେବେଳେ ତାଙ୍କଠାରୁ ପ୍ରାପ୍ତ ଚାନ୍ଦା ପରିମାଣ ମୂଳଧନ ପାଣ୍ଠି ହିସାବରେ ଦାତା ପାର୍ଶ୍ୱକୁ ସ୍ଥାନାନ୍ତରିତ ହୁଏ । ଏହାର ବିକଳ୍ପ ପଦ୍ଧତି ମଧ୍ୟ ଅଛି ।

ଏହି ବିକଳ୍ପ ପଦ୍ଧତି ଅନୁଯାୟୀ ଏହି ପ୍ରକାର ସଭ୍ୟଙ୍କଠାରୁ ପ୍ରାପ୍ତ ଚାନ୍ଦା ଆଜୀବନ ସଭ୍ୟଙ୍କ ଚାନ୍ଦା ହିସାବରେ ଦାତାଭୁକ୍ତ କରାଯାଏ ଏବଂ ପ୍ରତିବର୍ଷ ସାଧାରଣ ସଭ୍ୟ ଯେଉଁ ପରିମାଣରେ ଚାନ୍ଦା ଦିଅନ୍ତି ସେହି ପରିମାଣର ଅର୍ଥ ଉପରୋକ୍ତ ହିସାବରୁ ଆୟ ଓ ବ୍ୟୟ ହିସାବର ଦାତା ପାର୍ଶ୍ୱକୁ ସ୍ଥାନାନ୍ତରିତ କରାଯାଏ । ବର୍ଷ ଶେଷରେ ଆଜୀବନ ସଭ୍ୟଙ୍କ ଚାନ୍ଦା ହିସାବର ବାକୀ ଓ ବଳକା ଉଦ୍‌ବୃତ୍ତ ପତ୍ରର ଦାୟ ଓ ଦେଣା ପାର୍ଶ୍ୱରୁ ପ୍ରକାଶ ପାଏ । ଏହି ପଦ୍ଧତିରେ ମଧ୍ୟ ଆଜୀବନ ସଭ୍ୟଙ୍କ ମୃତ୍ୟୁ ହେଲେ ତାଙ୍କଠାରୁ ପ୍ରାପ୍ତ ଚାନ୍ଦା ମଧ୍ୟରୁ ଯେତେ ଅର୍ଥ ଅବଶିଷ୍ଟ ଥାଏ ତାହା ମୂଳଧନ ପାଣ୍ଠି ହିସାବକୁ ସ୍ଥାନାନ୍ତରିତ କରାଯାଏ ।

ଏହି ଦୁଇ ପଦ୍ଧତି ବ୍ୟତୀତ ଅନ୍ୟ ଏକ ପଦ୍ଧତି ମଧ୍ୟ କେତେକ କ୍ଲବ ପ୍ରଭୃତିରେ ପ୍ରଚଳିତ ଅଛି । ଏହି ପଦ୍ଧତି ଅନୁଯାୟୀ ପ୍ରତ୍ୟେକ ଆଜୀବନ ସଭ୍ୟଙ୍କର ଆନୁମାନିକ ଆୟୁଷ୍କାଳ ସ୍ଥିର କରାଯାଇ ତାଙ୍କଠାରୁ ପ୍ରାପ୍ତ ଚାନ୍ଦାକୁ ସେହି ସଂଖ୍ୟାଦ୍ୱାରା ଭାଗ କରାଯାଇ ବାର୍ଷିକ ହାର ସ୍ଥିରୀକୃତ ହୁଏ । ପ୍ରତି ବର୍ଷ ଏହି ଆନୁପାତିକ ଅର୍ଥ ଆୟ ଓ ବ୍ୟୟ ହିସାବକୁ ଅଣାଯାଏ । ଅନ୍ୟାନ୍ୟ ବ୍ୟବସ୍ଥା ପୂର୍ବୋକ୍ତ ପଦ୍ଧତି ଅନୁଯାୟୀ ରହେ ।

ପ୍ରାପ୍ତି ଓ ପ୍ରଦାନ ହିସାବ ପ୍ରସ୍ତୁତ ଏବଂ ତହିଁରୁ ଆୟ ଓ ବ୍ୟୟ ହିସାବ କିପରି ପ୍ରସ୍ତୁତ କରାଯାଏ ତାହାର କେତେକ ଦୃଷ୍ଟାନ୍ତ ନିମ୍ନରେ ପ୍ରଦତ୍ତ ହେଲା ।

### ଦୃଷ୍ଟାନ୍ତ (୩)

ମହାମାୟା କ୍ଲବର ୧୯୬୧ ମସିହାର ଡିସେମ୍ବର ୩୧ ତାରିଖରେ ଶେଷ ହେଉଥିବା ବର୍ଷର ପ୍ରାପ୍ତି ଓ ପ୍ରଦାନ ନିମ୍ନରେ ପ୍ରଦତ୍ତ ହେଲା । ତହିଁରୁ ସେହି ବର୍ଷର ପ୍ରାପ୍ତି ଓ ପ୍ରଦାନ ହିସାବ ପ୍ରସ୍ତୁତ କର ।

| | ଟଙ୍କା | | ଟଙ୍କା |
|---|---|---|---|
| ସଭ୍ୟ ଚାନ୍ଦା | ୪, ୮୦୦ | ମଜୁରି | ୨୫୦ |
| ପ୍ରବେଶିକା ଫିସ | ୫୦୦ | ଜଳଯୋଗ ଜିନିଷ | ୨, ୪୦୦ |
| ସ୍କୁଲ ସକାଶେ ଦାନ | ୧୦, ୦୦୦ | ସ୍କୁଲ ଗୃହ ନିର୍ମାଣ | ୬, ୩୦୦ |
| ଜଳଯୋଗ ବିକ୍ରି | ୩, ୨୦୦ | ଘର ଭଡ଼ା ଇତ୍ୟାଦି | ୬୦୦ |
| ବେତନ | ୧, ୦୦୦ | ବିବିଧ ଖର୍ଚ୍ଚ | ୪୫୦ |
| ଛପା ଖର୍ଚ୍ଚ | ୨୦୦ | ବ୍ୟାଙ୍କ ଖର୍ଚ୍ଚ | ୨୫ |

୧-୧-୧୯୬୧ ତାରିଖରେ ନଗଦ ତହବିଲ ୪୩୦ ଟଙ୍କା

୧-୧-୧୯୬୧ ତାରିଖରେ ବ୍ୟାଙ୍କରେ ଗଚ୍ଛିତ ୧, ୨୫୦ ଟଙ୍କା

୩୧-୧୨-୧୯୬୧ ତାରିଖରେ ବ୍ୟାଙ୍କରେ ଗଚ୍ଛିତ ୨, ୭୦୦ ଟଙ୍କା

**ସମାଧାନ :**

## ମହାମାୟା କ୍ଲବ

୧୯୭୧ ମସିହା ଡିସେମ୍ବର ୩୧ ତାରିଖରେ ଶେଷ ହେଉଥିବା ବର୍ଷର ପ୍ରାପ୍ତି ଓ ପ୍ରଦାନ ହିସାବ

ଦାସ୍ତୀ — ଦାତା

| ୧୯୭୧ | ପ୍ରାପ୍ତି | ଟଙ୍କା | ୧୯୭୧ | ପ୍ରଦାନ | ଟଙ୍କା |
|---|---|---|---|---|---|
| ଜାନୁ: ୧ | ପୂର୍ବ ବାକି ବାବଦ : | | ଡିସେ: ୩୧ | ବେତନ ବାବଦ | ୧,୦୦୦ |
| | ନଗଦ ତହବିଲ | ୪୩୦ | | ଗ୍ରୁପା ଖର୍ଚ୍ଚ ବାବଦ | ୨୦୦ |
| | ବ୍ୟାଙ୍କ୍‌ରେ ଗଚ୍ଛିତ | ୧,୨୫୦ | | ମଜୁରି ବାବଦ | ୨୫୦ |
| ଡିସେ: ୩୧ | ସଭ୍ୟ ଚାନ୍ଦା ବାବଦ | ୪,୮୦୦ | | ସ୍କୁଲ ଘରନିର୍ମାଣ ବାବଦ | ୬,୩୦୦ |
| | ପ୍ରବେଶିକା ଫିସ୍ ବାବଦ | ୫୦୦ | | ଜଳଯୋଗ କ୍ରୟ ବାବଦ | ୨,୪୦୦ |
| | ସ୍କୁଲ ସକାଶେ ଦାନ ବାବଦ | ୧୦,୦୦୦ | | ଘରଭଡ଼ା ବାବଦ | ୬୦୦ |
| | ଜଳଯୋଗ ବିକ୍ରି ବାବଦ | ୩,୨୦୦ | | ବିବିଧ ଖର୍ଚ୍ଚ ବାବଦ | ୪୫୦ |
| | | | | ବ୍ୟାଙ୍କ୍ ଖର୍ଚ୍ଚ ବାବଦ | ୨୫ |
| | | | | ବାକି ଗଚ୍ଛିତ : | |
| | | | | ନଗଦ ତହବିଲ ବାବଦ | ୧,୨୫୫ |
| | | | | ବ୍ୟାଙ୍କ୍‌ରେ ଗଚ୍ଛିତ ବାବଦ | ୭,୭୦୦ |
| | | ୨୦,୧୮୦ | | | ୨୦,୧୮୦ |
| ୧୯୭୨ | ପୂର୍ବ ବାକି ବାବଦ | | | | |
| ଜାନୁ: ୧ | ନଗଦ ତହବିଲ | ୧,୨୫୫ | | | |
| | ବ୍ୟାଙ୍କରେ ଗଚ୍ଛିତ | ୭,୭୦୦ | | | |

## ଦୃଷ୍ଟାନ୍ତ (୪)

ପୂର୍ବ ଦୃଷ୍ଟାନ୍ତରେ ଦିଆ ଯାଇଥିବା ବିବରଣୀରୁ ମହାମାୟା କ୍ଲବର ୧୯୭୧ ମସିହା ଡିସେମ୍ବର ୩୧ ତାରିଖରେ ଶେଷ ହେଉଥିବା ବର୍ଷର ଆୟ ଓ ବ୍ୟୟ ହିସାବ ପ୍ରସ୍ତୁତ କର ।

ଏହି ସଂକ୍ରାନ୍ତରେ ମିଳିଥିବା କେତେକ ଅଧିକା ବିବରଣୀ ନିମ୍ନରେ ପ୍ରଦତ୍ତ ହେଲା ।

(କ) ପ୍ରାପ୍ତ ସଭ୍ୟ ଚାନ୍ଦା ମଧ୍ୟରେ ୧୯୭୦ ମସିହା ସକାଶେ ପ୍ରାପ୍ତି ୩୫୦ ଟଙ୍କା ଓ ୧୯୭୨ ମସିହା ସକାଶେ ଅଗ୍ରିମ ପ୍ରାପ୍ତ ୧୫୦ ଟଙ୍କା ଅନ୍ତର୍ଭୁକ୍ତ ଅଛି । ୧୯୭୧ ମସିହା ସକାଶେ ୪୫୦ ଟଙ୍କା ସଭ୍ୟ ଚାନ୍ଦା ଆଦାୟ ହୋଇ ନାହିଁ ।

(ଖ) ସ୍କୁଲ ସକାଶେ ପ୍ରାପ୍ତ ଦାନ ପୁଞ୍ଜିଗତ ପ୍ରାପ୍ତି ରୂପେ ପରିଗଣିତ ହେବ ।

(ଗ) ବେତନ ବାବଦ ୮୦ ଟଙ୍କା, ଛପା ଖର୍ଚ୍ଚ ବାବଦ ୫୦ ଟଙ୍କା ବାକି ଅଛି ।

(ଘ) ଘର ଭଡ଼ା ବାବଦ ୬୦ ଟଙ୍କା ଅଗ୍ରିମ ଦିଆଯାଇଛି ।

**ସମାଧାନ :**

## ମହାମାୟା କ୍ଲବ୍

### ୧୯୭୧ ମସିହା ଡିସେମ୍ବର ୩୧ ତାରିଖରେ ଶେଷ ହେଉଥିବା ବର୍ଷର ଆୟ ଓ ବ୍ୟୟ ହିସାବ

| ଦାୟୀ ବ୍ୟୟ | ଟଙ୍କା | ଟଙ୍କା | ଆୟ | ଟଙ୍କା | ଟଙ୍କା ଦାତା |
|---|---|---|---|---|---|
| ବେତନ ବାବଦ | ୧,୦୦୦ | | ସଭ୍ୟ ଚାନ୍ଦା ବାବଦ | ୪,୮୦୦ | |
| ଯୁକ୍ତ : ବକେୟା ବେତନ | ୮୦ | ୧,୦୮୦ | ଯୁକ୍ତ : ବକେୟା ଚାନ୍ଦା | ୪୫୦ | |
| ଛପା ଖର୍ଚ୍ଚ ବାବଦ | ୨୦୦ | | | ୫,୨୫୦ | |
| ଯୁକ୍ତ : ବକେୟା ଖର୍ଚ୍ଚ | ୫୦ | ୨୫୦ | ବିୟୁକ୍ତ : ୧୯୭୦ ଚାନ୍ଦା ୩୫୦ | | |
| | | | ୧୯୭୨ ଚାନ୍ଦା ୧୫୦ | ୫୦୦ | ୪,୭୫୦ |
| ମଜୁରି ବାବଦ | | ୨୫୦ | ପ୍ରବେଶିକା ଫିସ୍ ବାବଦ | | ୫୦୦ |
| ଜଳଯୋଗ ଦ୍ରବ୍ୟ ବାବଦ | | ୨,୪୦୦ | ଜଳଯୋଗ ବିକ୍ରି ବାବଦ | | ୩,୨୦୦ |
| ଘରଭଡ଼ା ବାବଦ | ୬୦୦ | | | | |
| ବିୟୁକ୍ତ : ଅଗ୍ରିମ ଦତ୍ତ | ୬୦ | ୫୪୦ | | | |
| ବିବିଧ ଖର୍ଚ୍ଚ ବାବଦ | | ୪୫୦ | | | |
| ବ୍ୟାଙ୍କ୍ ଖର୍ଚ୍ଚ ବାବଦ | | ୨୫ | | | |
| ବ୍ୟୟ ବାଦେ ବଳକା ଆୟ | | ୩,୪୫୫ | | | |
| | | ୮,୪୫୦ | | | ୮,୪୫୦ |

## ଦୃଷ୍ଟାନ୍ତ (୫)

୧୯୬୨ ମସିହା ଡିସେମ୍ବର ୩୧ ତାରିଖରେ ଶେଷ ହେଉଥିବା ବର୍ଷ ସକାଶେ କଟକ କ୍ଲବର ପ୍ରାପ୍ତି ଓ ପ୍ରଦାନ ହିସାବ ନିମ୍ନରେ ପ୍ରଦତ୍ତ ହେଲା ।

ଡାଏରୀ | ଡାଇଟ

| ପ୍ରାପ୍ତି | ଟଙ୍କା | ପ୍ରଦାନ | ଟଙ୍କା |
|---|---|---|---|
| ୧-୧-୧୯୬୨ର ନଗଦ ତହବିଲ ବାବଦ | ୧,୪୦୦ | ଘରଭଡ଼ା ବାବଦ | ୧,୨୦୦ |
| ପ୍ରବେଶିକା ଫିସ୍ ବାବଦ— | ୧,୮୦୦ | ମନୋହାରୀ ଦ୍ରବ୍ୟ କ୍ରୟ ବାବଦ | ୮୦୦ |
| ଚାନ୍ଦା ବାବଦ— | | ମଜୁରି ବାବଦ | ୨୨୫ |
| ୧୯୬୧ | ୯୦୦ | ବିଲିଆର୍ଡ଼ ଟେବୁଲ ବାବଦ | ୧୨,୫୦୦ |
| ୧୯୬୨ | ୨୯,୩୦୦ | ମରାମତି | ୬୨୫ |
| ୧୯୬୩ (ଅଗ୍ରିମ) | ୧,୨୦୦ | ସୁଧ ବାବଦ | ୪,୦୦୦ |
| ଲକର୍ ଭଡ଼ା ବାବଦ | ୧,୩୦୦ | ୩୧-୧୨-୧୯୬୨ର ବଳକା ତହବିଲ ବାବଦ | ୨୧,୬୫୦ |
| ରାଜ୍ୟପାଳଙ୍କ ଭୋଜି ସକାଶେ ବିଶେଷ ଚାନ୍ଦା ବାବଦ | ୫,୮୦୦ | | |
| | ୪୧,୭୦୦ | | ୪୧,୭୦୦ |

କେତେକ ଅଧିକା ବିବରଣୀ : ଲକର୍ ଭଡ଼ା ବାବଦ ୨୦୦ ଟଙ୍କା ୧୯୬୧ ମସିହା ସକାଶେ ମିଳିଛି ଏବଂ ୩୦୦ ଟଙ୍କା ୧୯୬୨ ମସିହା ବାବଦ ବାକି ଅଛି । ଘର ଭଡ଼ା ବାବଦ ୨୦୦ ଟଙ୍କା ୧୯୬୧ ମସିହା ସକାଶେ ଦିଆ ଯାଇଛି ଓ ୧୯୬୨ ସକାଶେ ୩୦୦ ଟଙ୍କା ବାକି ଅଛି । ୧୯୬୨ ମସିହା ସକାଶେ ୧, ୨୦୦ ଟଙ୍କା ସଭ୍ୟ ଚାନ୍ଦା ଆଦାୟ ହୋଇ ନାହିଁ । ରାଜ୍ୟପାଳଙ୍କ ଭୋଜି ସକାଶେ ବିଶେଷ ଚାନ୍ଦା ବାବଦ ୪୦୦ ଟଙ୍କା ବାକି ଅଛି । ବେତନ ବାବଦ ୧, ୮୦୦ ଟଙ୍କା ବାକି ଅଛି ।

ଉପରୋକ୍ତ ବିବରଣୀରୁ କଟକ କ୍ଲବର ୧୯୬୨ ମସିହା ଡିସେମ୍ବର ୩୧ ତାରିଖରେ ଶେଷ ହେଉଥିବା ବର୍ଷର ଆୟ ଓ ବ୍ୟୟ ହିସାବ ପ୍ରସ୍ତୁତ କର ।

## ସମାଧାନ :

### କଟକ କ୍ଲବ

୧୯୭୨ ମସିହା ଡିସେମ୍ବର ୩୧ ତାରିଖରେ ଶେଷ ହେଉଥିବା ବର୍ଷର
ଆୟ ଓ ବ୍ୟୟ ହିସାବ

| ବ୍ୟୟ | ଟଙ୍କା | ଟଙ୍କା | ଆୟ | ଟଙ୍କା | ଟଙ୍କା |
|---|---|---|---|---|---|
| ଘରଭଡ଼ା ବାବଦ | ୧,୨୦୦ | | ଚାନ୍ଦା ବାବଦ | ୨୯,୩୦୦ | |
| ବିଯୁକ୍ତ : ୧୯୭୧ର | | | ଯୁକ୍ତ : ଏ ବର୍ଷର | | |
| ଭଡ଼ା | ୨୦୦ | | ବକେୟା ଚାନ୍ଦା | ୧,୨୦୦ | ୩୦,୫୦୦ |
| | ୧,୦୦୦ | | ନିକର ଭଡ଼ା ବାବଦ | ୧,୩୦୦ | |
| ଯୁକ୍ତ : ଏ ବର୍ଷର | | | ବିଯୁକ୍ତ : ୧୯୭୧ର | | |
| ବକେୟା | ୩୦୦ | ୧,୩୦୦ | ଭଡ଼ା | ୨୦୦ | |
| ମନୋହାରୀ ବାବଦ | | ୮୦୦ | | ୧,୧୦୦ | |
| ମଜୁରି ବାବଦ | | ୨୧୫ | ଯୁକ୍ତ : ଏ ବର୍ଷର | | |
| ମରାମତି ବାବଦ | | ୭୨୫ | ବକେୟା | ୩୦୦ | ୧,୪୦୦ |
| ସୁଧ ବାବଦ | | ୪,୫୦୦ | | | |
| ବେତନ ବାବଦ | | ୧,୮୦୦ | | | |
| ବ୍ୟୟ ବାଦେ | | | | | |
| ବଳକା ଆୟ ବାବଦ | | ୨୨,୫୫୦ | | | |
| | | ୩୧,୯୦୦ | | | ୩୧,୯୦୦ |

ବିଶେଷ ଦ୍ରଷ୍ଟବ୍ୟ : (୧) ପ୍ରବେଶିକା ଫିସ ପୁଞ୍ଜିଗତ ଆୟ ବୋଲି ବିବେଚିତ ହେବାରୁ ତାହା ଏହି ହିସାବରେ ଅନ୍ତର୍ଭୁକ୍ତ ହୋଇ ନାହିଁ । (୨) ରାଜ୍ୟପାଳଙ୍କ ଭୋଜି ବାବଦ ଆଦାୟ ହୋଇଥିବା ଚାନ୍ଦା ବିଶେଷ ପାଣ୍ଠି ରୂପେ ପରିଗଣିତ ହେବାରୁ ତାହା ଏହି ହିସାବରେ ଅନ୍ତର୍ଭୁକ୍ତ ହୋଇ ନାହିଁ । (୩) ବିଲିଆର୍ଡ଼ ଟେବୁଲ କ୍ରୟ କରାଯାଇଥିବା ଅର୍ଥ ପୁଞ୍ଜିଗତ ବ୍ୟୟ ବୋଲି ବିବେଚିତ ହୋଇଥିବାରୁ ତାହା ଏହି ହିସାବରେ ଅନ୍ତର୍ଭୁକ୍ତ ହୋଇ ନାହିଁ ।

## ଦୃଷ୍ଟାନ୍ତ (୬)

ରାଧାନାଥ ଦାତବ୍ୟ ପ୍ରତିଷ୍ଠାନ ସମାଜକୁ ନାନା ଭାବରେ ସେବା କରେ । ଏହାର ୧୯୭୩ ମସିହା ଡିସେମ୍ବର ୩୧ ତାରିଖରେ ଶେଷ ହେଉଥିବା ବର୍ଷର ପ୍ରାପ୍ତି ଓ ପ୍ରଦାନ ହିସାବ ନିମ୍ନରେ ପ୍ରଦତ୍ତ ହେଲା । ଏହା ବ୍ୟତୀତ ଅନ୍ୟ କେତେକ ସଂପୃକ୍ତ ବିଷୟ ମଧ୍ୟ ଜଣା ଯାଇଛି ; ତାହା ମଧ୍ୟ ଏହିଠାରେ ଲିପିବଦ୍ଧ କରାଗଲା ।

(୧) ପରିଚାଳନା ସମିତି ନିଷ୍ପତ୍ତି ଗ୍ରହଣ କରିଛନ୍ତି ଯେ ୱିଲ ଜନିତ ପ୍ରାପ୍ତ ଅର୍ଥର ଅର୍ଦ୍ଧେକ ପରିମାଣ ଅଣ-ପୁଞ୍ଜି ଆୟ ଓ ଅବଶିଷ୍ଟ ଅର୍ଥ ପୁଞ୍ଜିଗତ ଆୟ ବୋଲି ବିବେଚିତ ହେବ ।

(୨) ବିଶେଷ ପାଣ୍ଠି ସାଧାରଣ ପାଣ୍ଠିରୁ ପୃଥକ୍ କରାଯିବ ।

(୩) ୩ ମାସର ଘର ଭଡ଼ା ଦିଆଯାଇ ନାହିଁ ।

(୪) ବିଜ୍ଞାପନ ଦେଇଥିବା କେତେକ ବ୍ୟକ୍ତିଙ୍କଠାରୁ ୨୨୫ ଟଙ୍କା ମିଳି ନାହିଁ ।

(୫) ବେତନ ବାବଦ ୩୦୦ ଟଙ୍କା ଦିଆଯାଇ ନାହିଁ ।

(୬) ବିନିଯୁକ୍ତ ଅର୍ଥର ସୁଧ ବାବଦ ୫୦୦ ମିଳି ନାହିଁ ।

ଏହି ପ୍ରତିଷ୍ଠାନର ୩୧-୧୨-୧୯୭୩ ତାରିଖରେ ଶେଷ ହେଉଥିବା ବର୍ଷର ଆୟ ଓ ବ୍ୟୟ ହିସାବ ପ୍ରସ୍ତୁତ କର ।

# ରାଧାନାଥ ଦାତବ୍ୟ ପ୍ରତିଷ୍ଠାନ

## ୧୯୭୩ ମସିହା ଡିସେମ୍ବର ୩୧ ତାରିଖରେ ଶେଷ ହୋଇଥିବା ବର୍ଷର

## ପ୍ରାପ୍ତି ଓ ପ୍ରଦାନ ହିସାବ

| ଦାୟୀ | ଟଙ୍କା | ଦାତା | ଟଙ୍କା |
|---|---|---|---|
| ୧-୧-୧୯୭୩ର ବାକି ବାବଦ | | ପେନ୍‌ସନ୍ ଭୋଗୀଙ୍କୁ ପ୍ରଦତ୍ତ ଅର୍ଥ | ୭,୧୦୦ |
| ସ୍ଥାୟୀ ଗଚ୍ଛିତ ଅର୍ଥ | ୪,୦୦୦ | | |
| ଚଳନ୍ତି ହିସାବ | ୧,୨୦୦ | ଘର ଭଡା (୯ ମାସର) | ୯୦୦ |
| ନଗଦ ତହବିଲ | ୧୫୦ | ଦପ୍ତର ଖର୍ଚ୍ଚ ଓ ବେତନ | ୨,୯୦୦ |
| ଦାନ ଓ ଚାନ୍ଦା ବାବଦ | ୧୧,୪୦୦ | ଚାନ୍ଦା ଆଦାୟକାରୀଙ୍କ କମିସନ୍ | ୨୫୦ |
| ଉଇଲ ଜନିତ ପ୍ରାପ୍ତ ଅର୍ଥ ବାବଦ | ୬,୦୦୦ | ଡାକ ଖର୍ଚ୍ଚ | ୧୫୦ |
| ବିଶେଷ ପାଣ୍ଠିକୁ ଦାନ ବାବଦ | ୧,୩୦୦ | ବାର୍ଷିକ ବିବରଣୀ ଛପେଇ ଖର୍ଚ୍ଚ | ୨୭୦ |
| ବିନିଯୋଗର ସୁଧ ବାବଦ | ୧,୦୦୦ | ବିଶେଷ ପାଣ୍ଠିରୁ ପ୍ରଦତ୍ତ ଅର୍ଥ | ୧,୪୫୦ |
| ସ୍ଥାୟୀ ଗଚ୍ଛିତ ଅର୍ଥର ସୁଧ ବାବଦ | ୨୮୦ | ୫% ଷ୍ଟକ୍‌ରେ ବିନିଯୋଗ | ୪,୦୦୦ |
| | | ବଳକା (୩୧-୧୨-୧୯୭୩) : | |
| | | ସ୍ଥାୟୀ ଗଚ୍ଛିତ ଅର୍ଥ | ୫,୦୦୦ |
| | | ଚଳନ୍ତି ହିସାବ | ୨,୯୦୦ |
| | | ନଗଦ ତହବିଲ | ୪୧୦ |
| | ୨୫,୩୩୦ | | ୨୫,୩୩୦ |

**ସମାଧାନ :**

## ଗ୍ରଧାନାଥ ଦାତବ୍ୟ ପ୍ରତିଷ୍ଠାନ

୧୯୭୩ ମସିହା ଡିସେମ୍ବର ୩୧ ତାରିଖରେ ଶେଷ ହେଉଥିବା ବର୍ଷର
ଆୟ ଓ ବ୍ୟୟ ହିସାବ

ଦାୟୀ ଦାତା

| ବ୍ୟୟ | ଟଙ୍କା | ଟଙ୍କା | ଆୟ | ଟଙ୍କା | ଟଙ୍କା |
|---|---|---|---|---|---|
| ପେନସନ୍‌ଭୋଗୀଙ୍କୁ ପ୍ରଦତ୍ତ ଅର୍ଥ ବାବଦ | | ୭,୧୦୦ | ଦାନ ଓ ଚାନ୍ଦା ବାବଦ | | ୧୧,୪୦୦ |
| ଘରଭଡ଼ା | ୯୦୦ | | ଉଇଲ ସୂତ୍ରରୁ ପ୍ରାପ୍ତ ଅର୍ଥ ବାବଦ (ଅଣ ପୁଞ୍ଜି, ଆୟ) | | ୩,୦୦୦ |
| ମୁକ୍ତ : ବକେୟା | ୩୦୦ | ୧,୨୦୦ | ବିନିଯୋଗର ସୁଧ ବାବଦ | ୧,୦୦୦ | |
| ଦପ୍ତର ଖର୍ଚ୍ଚ ଓ ବେତନ ବାବଦ | ୨,୯୦୦ | | ମୁକ୍ତ : ବକେୟା | ୫୦୦ | ୧,୫୦୦ |
| ମୁକ୍ତ : ବକେୟା ବେତନ | ୩୦୦ | ୩,୨୦୦ | ସ୍ଥାୟୀ ଗଚ୍ଛିତ ଅର୍ଥର ସୁଧ ବାବଦ | | ୨୮୦ |
| ଚାନ୍ଦା ଆଦାୟକାରୀଙ୍କ କମିସନ ବାବଦ | | ୨୫୦ | ବିଜ୍ଞାପନଦାତାଙ୍କଠାରୁ ପ୍ରାପ୍ୟ ଅର୍ଥ ବାବଦ | | ୨୨୫ |
| ବାର୍ଷିକ ବିବରଣୀ ଛପେଇ ଖର୍ଚ୍ଚ ବାବଦ | | ୨୭୦ | | | |
| ଡାକ ଖର୍ଚ୍ଚ ବାବଦ | | ୧୫୦ | | | |
| ବ୍ୟୟ ବାଦେ ବଳକା ଆୟ ବାବଦ | | ୪,୨୩୫ | | | |
| | | ୧୬,୪୦୫ | | | ୧୬,୪୦୫ |

### ଦୃଷ୍ଟାନ୍ତ (୭)

ରାଉରକେଲ କ୍ଲବର (୧) ୧୯୭୨ ମସିହା ଡିସେମ୍ବର ୩୧ ତାରିଖର ସ୍ଥିତି ପତ୍ର ଓ (୨) ୧୯୭୩ ମସିହା ଡିସେମ୍ବର ୩୧ ତାରିଖରେ ଶେଷ ହେଉଥିବା ବର୍ଷର ପ୍ରାପ୍ତି ଓ ପ୍ରଦାନ

ହିସାବ ଜମାରେ ପ୍ରଦତ୍ତ ହେଲା । (ଗ) ଅନ୍ୟ କେତେକ ଅଧିକା ବିବରଣୀ ମଧ୍ୟ ଜମାରେ ଦିଆଯାଇଛି । ଏହି ସମସ୍ତ ବିଷୟ ବିଚାର କରି ସେହି କ୍ଲବର ୧୯୭୩ ମସିହା ଡିସେମ୍ବର ୩୧ ତାରିଖରେ ଶେଷ ହେଉଥିବା ବର୍ଷର ଆୟ ଓ ବ୍ୟୟ ହିସାବ ଓ ସେହି ତାରିଖର ସ୍ଥିତି-ପତ୍ର ପ୍ରସ୍ତୁତ କର ।

(୧) ୧୯୭୨ ମସିହା ଡିସେମ୍ବର ୩୧ ତାରିଖର ସ୍ଥିତି ପତ୍ର

| ଦାୟ ଓ ଦେଣା | ଟଙ୍କା | ସମ୍ପତ୍ତି ଓ ପାଉଣା | ଟଙ୍କା |
|---|---|---|---|
| ମୂଳଧନ ପାଣ୍ଠି | ୧୫,୦୦୦ | କୋଠା ଓ ସଂଲଗ୍ନ ଭୂମି | ୮,୦୦୦ |
| ବକେୟା ବେତନ | ୪୦୦ | ଆସ୍‌ବାବ୍ | ୫୦୦ |
| ଅଗ୍ରିମ ପ୍ରଦତ୍ତ ଚାନ୍ଦା (୧୯୭୩ ସକାଶେ) | ୧୨୫ | ବକେୟା ଚାନ୍ଦା | ୧,୫୦୦ |
| | | ବ୍ୟାଙ୍କରେ ସ୍ଥାୟୀ ଗଚ୍ଛିତ ଅର୍ଥ | ୫,୦୦୦ |
| | | ନଗଦ ତହବିଲ | ୫୨୫ |
| | ୧୫,୫୨୫ | | ୧୫,୫୨୫ |

(୨) ୧୯୬୩ ମସିହା ଡିସେମ୍ବର ୩୧ ତାରିଖରେ ଶେଷ ହେଉଥିବା ବର୍ଷର
ପ୍ରାପ୍ତି ଓ ପ୍ରଦାନ ହିସାବ

| ପ୍ରାପ୍ତି | ଟଙ୍କା | ପ୍ରଦାନ | ଟଙ୍କା |
|---|---|---|---|
| ବଳକା ଚାବଦ (୧-୧-୧୯୬୩) | ୫୨୫ | ବେତନ ବାବଦ | ୧,୪୦୦ |
| ଚାନ୍ଦା ବାବଦ | ୧୨,୩୦୦ | ମନୋହାରୀ ଓ ଛପେଇବାବଦ | ୧,୮୦୦ |
| ଦାନ | ୮,୦୦୦ | ଡାକ ମାସୁଲ ବାବଦ | ୧୨୫ |
| ପ୍ରବେଶିକା ଫିସ | ୩୦୦ | ପ୍ରମୋଦ ବ୍ୟୟ ବାବଦ | ୬୫୦ |
| | | ବିବିଧ ଖର୍ଚ୍ଚ ବାବଦ | ୨,୩୫୦ |
| | | ବ୍ୟାଙ୍କରେ ସ୍ଥାୟୀ ଗଚ୍ଛିତ ଅର୍ଥ ବାବଦ | ୬,୦୦୦ |
| | | ୩୧-୧୨-୧୯୬୩ ତାରିଖରେ ନଗଦ ତହବିଲ ବାବଦ | ୮,୮୦୦ |
| | ୨୧,୧୨୫ | | ୨୧,୧୨୫ |

(୩) ଅଧିକା ବିବରଣୀ : (କ) ଦାନ ଓ ପ୍ରବେଶିକା ଫିସ ପୁଞ୍ଜିଗତ ଆୟ ବୋଲି ବିବେଚିତ ହେବ । (ଖ) ଛପେଇ ଖର୍ଚ୍ଚ ବାବଦ ୨୦୦ ଟଙ୍କା ବାକି ଅଛି । (ଗ) ୧୯୬୩ ମସିହା ବାବଦ ୨୦୦ ଟଙ୍କାର ବେତନ ବାକି ଅଛି । (ଘ) ବ୍ୟାଙ୍କରେ ସ୍ଥାୟୀ ଗଚ୍ଛିତ ଅର୍ଥର ସୁଧ ବାବଦ ୩୫୦ ଟଙ୍କା ମିଳି ନାହିଁ । (ଙ) ୧୯୬୨ ମସିହାର ବକେୟା ଚାନ୍ଦା ସମ୍ପୂର୍ଣ୍ଣ ରୂପେ ମିଳିଛି ମାତ୍ର ୧୯୬୩ ମସିହା ବାବଦ ୧, ୫୫୦ ଟଙ୍କାର ଚାନ୍ଦା ବାକି ଅଛି । (ଚ) କୋଠା ଓ ସଂଲଗ୍ନ ଭୂମିରୁ ୫% ହାରରେ ଓ ଆସବାବରୁ ୧୦% ହାରରେ ମୂଲ୍ୟ ହ୍ରାସ ବାଦ ଦିଆଯିବ ।

**ସମାଧାନ :**

## ରାଉରକେଲା କ୍ଳବ୍

୧୯୭୩ ମସିହା ଡିସେମ୍ବର ୩୧ ତାରିଖରେ ଶେଷ ହେଉଥିବା ବର୍ଷର
ଆୟ ଓ ବ୍ୟୟ ହିସାବ

ଦାୟୀ ପାଉଣା

| ବ୍ୟୟ | ଟଙ୍କା | ଟଙ୍କା | ଆୟ | ଟଙ୍କା | ଟଙ୍କା |
|---|---|---|---|---|---|
| ବେତନ ବାବଦ | ୧,୪୦୦ | | ଚାନ୍ଦା ବାବଦ | ୧୨,୩୦୦ | |
| ଯୁକ୍ତ : ୧୯୭୩ର ବକେୟା | ୨୦୦ | | ଯୁକ୍ତ : ୧୯୭୩ର ବକେୟା | ୧,୫୫୦ | |
| | ୧,୬୦୦ | | ଯୁକ୍ତ : ୧୯୭୨ରେ ପ୍ରାପ୍ତ | ୧୨୫ | |
| ବିଯୁକ୍ତ : ୧୯୭୨ର ବକେୟା | ୪୦୦ | ୧,୨୦୦ | | ୧୩,୯୭୫ | |
| ମନୋହାରୀ ଓ ଛପେଇ ବାବଦ | ୧,୮୦୦ | | ବିଯୁକ୍ତ : ୧୯୭୨ର ବକେୟା | ୧,୫୦୦ | ୧୨,୪୭୫ |
| ଯୁକ୍ତ : ବକେୟା | ୨୦୦ | ୨,୦୦୦ | ବ୍ୟାଙ୍କରେ ସ୍ଥାୟୀ ଗଚ୍ଛିତ ଅର୍ଥର ସୁଧ | | ୩୫୦ |
| ଡାକ ମାସୁଲ ବାବଦ | | ୧୨୫ | | | |
| ପ୍ରମୋଦ ବ୍ୟୟ ବାବଦ | | ୬୫୦ | | | |
| ବିବିଧ ଖର୍ଚ୍ଚ ବାବଦ | | ୨,୩୫୦ | | | |
| ମୂଲ୍ୟ ହ୍ରାସ ବାବଦ : | | | | | |
| କୋଠା ଓ ଭୂମି | ୪୦୦ | | | | |
| ଆସ୍‌ବାବ୍ | ୫୦ | ୪୫୦ | | | |
| ବ୍ୟୟ ବାଦେ ବଳକା ଆୟ ବାବଦ | | ୬,୦୫୦ | | | |
| | | ୧୨,୮୨୫ | | | ୧୨,୮୨୫ |

# ରାଉରକେଲା କ୍ଳବ୍

## ୧୯୭୩ ମସିହା ଡିସେମ୍ବର ୩୧ ତାରଖର ସ୍ଥିତ ପତ୍ର

| ଦାୟ ଓ ଦେଣା | ଟଙ୍କା | ଟଙ୍କା | ସମ୍ପତ୍ତି ଓ ପାଉଣା | ଟଙ୍କା | ଟଙ୍କା |
|---|---|---|---|---|---|
| ମୂଳଧନ ପାଣ୍ଠି | ୧୫,୦୦୦ | | କୋଠା ଓ | | |
| ଯୁକ୍ତ : ଦାନ | ୮,୦୦୦ | | ସଂଲଗ୍ନ ଭୂମି | ୮,୦୦୦ | |
| ଯୁକ୍ତ : ପ୍ରବେଶିକା | | | ବିଯୁକ୍ତ : ମୂଲ୍ୟ ହ୍ରାସ | ୪୦୦ | ୭,୬୦୦ |
| ଫିସ୍ | ୩୦୦ | | ଆସବାବ୍ | ୫୦୦ | |
| ଯୁକ୍ତ : ଏ ବର୍ଷର | | | ବିଯୁକ୍ତ : ମୂଲ୍ୟ ହ୍ରାସ | ୫୦ | ୪୫୦ |
| ବ୍ୟୟ ବାଦେ | | | ବକେୟା ଚାନ୍ଦା | | ୧,୫୫୦ |
| ବଳକା ଆୟ | ୨,୦୫୦ | ୨୫,୩୫୦ | ବ୍ୟାଙ୍କ୍‌ରେ ସ୍ଥାୟୀ | | |
| | | | ଗଚ୍ଛିତ | ୫,୦୦୦ | |
| ବକେୟା ବ୍ୟୟ : | | | ଯୁକ୍ତ : ଏ ବର୍ଷର | | |
| ଛପେଇ | ୨୦୦ | | ଗଚ୍ଛିତ | ୬,୦୦୦ | ୧୧,୦୦୦ |
| ବେତନ | ୨୦୦ | ୪୦୦ | ପ୍ରାପ୍ୟ ସୁଧ | | ୩୫୦ |
| | | | ନଗଦ ତହବିଲ | | ୮,୮୦୦ |
| | | ୨୫,୭୫୦ | | | ୨୯,୭୫୦ |

### ଦୃଷ୍ଟାନ୍ତ (୮)

ପରପୃଷ୍ଠାର ବିବରଣୀରୁ ସମ୍ବଲପୁର ଜେମ୍‌ସ ବଲ୍ଲାର କ୍ଳବର ୧୯୭୪ ମସିହା ମାର୍ଚ୍ଚ ୩୧ ତାରିଖରେ ଶେଷ ହେଉଥିବା ବର୍ଷର ଆୟ ଓ ବ୍ୟୟ ହିସାବ ଓ ଉକ୍ତ ତାରିଖର ଉଦ୍‌ବର୍ତ୍ତ ପତ୍ର (ବା ସ୍ଥିତ ପତ୍ର) ପ୍ରସ୍ତୁତ କର ।

୧୯୭୪ ମସିହା ମାର୍ଚ୍ଚ ୩୧ ତାରିଖରେ ଶେଷ ହେଉଥିବା ବର୍ଷର

## ପ୍ରାପ୍ତ ଓ ପ୍ରଦାନ ହିସାବ

| | ଟଙ୍କା | | ଟଙ୍କା |
|---|---|---|---|
| ୧୯୭୩ ଅପ୍ରେଲ୍ ୧ | | ୧୯୭୪ ମାର୍ଚ୍ଚ ୩୧ | |
| ପୂର୍ବବାକି ବାବଦ : | | ବେତନ ବାବଦ | ୨,୪୦୦ |
| ବ୍ୟାଙ୍କରେ ଗଚ୍ଛିତ | ୧,୫୦୦ | ଘର ଭଡ଼ା ବାବଦ | ୧,୨୦୦ |
| ନଗଦ ତହବିଲ | ୧୭୫ | ଡାକ ଟିକଟ ବାବଦ | ୩୦ |
| ୧୯୭୪ ମାର୍ଚ୍ଚ ୩୧ ଚାନ୍ଦା ବାବଦ (ଏଥିରେ ୧୯୭୪-୭୫ ସକାଶେ ୪୦୦ ଟଙ୍କା ଅନ୍ତର୍ଭୁକ୍ତ) | ୫,୫୦୦ | ବିବିଧ ଖର୍ଚ୍ଚ ବାବଦ | ୧୫୦ |
| | | ଆସବାବ କ୍ରୟ ବାବଦ | ୫୦୦ |
| | | ବାକି ବାବଦ : | |
| ବିନିଯୋଗର ସୁଧ ବାବଦ (ବିନିଯୋଗର କ୍ରୟ ମୂଲ୍ୟ ୧୫,୦୦୦ ଟଙ୍କା) | ୧,୨୦୦ | ବ୍ୟାଙ୍କରେ ଗଚ୍ଛିତ | ୪,୦୦୦ |
| ବ୍ୟାଙ୍କ ସୁଧ ବାବଦ | ୪୫ | ନଗଦ ତହବିଲ | ୩୪୦ |
| ଆସବାବ୍ ବିକ୍ରୟ ବାବଦ | ୨୦୦ | | |
| | ୮,୬୨୦ | | ୮,୬୨୦ |

ଉପରୋକ୍ତ ଚାନ୍ଦାରେ ୧୯୭୨-୭୩ ସକାଶେ ୨୦୦ ଟଙ୍କା ଅନ୍ତର୍ଭୁକ୍ତ ଅଛି । ୧୯୭୩-୭୪ ମସିହା ସକାଶେ ୫୫୦ ଟଙ୍କାର ଚାନ୍ଦା ବାକି ଅଛି । ମାର୍ଚ୍ଚ ୧୯୭୪ର ଘର ଭଡ଼ା (୧୦୦ ଟଙ୍କା ହାରରେ) ଦିଆଯାଇ ନାହିଁ । ବିବିଧ ଖର୍ଚ୍ଚ ବାବଦ ୫୦ ଟଙ୍କାର ଗୋଟିଏ ବିଲ୍ ଏ ପର୍ଯ୍ୟନ୍ତ ଦିଆଯାଇନାହିଁ । ଆସବାବର ବହି ମୂଲ୍ୟ ୩୨୫ ଟଙ୍କା ଥିଲା । ଘରଭଡ଼ାରେ ୧୯୭୩ ମାର୍ଚ୍ଚର ୧୦୦ ଟଙ୍କା ଅନ୍ତର୍ଭୁକ୍ତ ।

## ସମାଧାନ

ଯଦିଓ ପ୍ରଶ୍ନରେ ୩୧-୩-୧୯୭୪ ତାରିଖର ଉଦ୍‌ବୃତ୍ତ ପତ୍ର ପ୍ରସ୍ତୁତ କରିବାକୁ ଦିଆଯାଇଛି, ୩୧-୩-୧୯୭୩ ତାରିଖର ଉଦ୍‌ବୃତ୍ତ ପତ୍ର ଦିଆଯାଇନାହିଁ । ତେଣୁ ପ୍ରଥମେ ଉପ-

ପ୍ରୋକ୍ତ ବିବରଣୀରୁ ସେହି ତାରିଖର ଉଦ୍‌ବୃତ୍ତ ପତ୍ର ପ୍ରସ୍ତୁତ କରାଯିବ । ସମ୍ପତ୍ତି ଓ ପାଉଣାର ମୋଟ ପରିମାଣରୁ ମୋଟ ଦାୟ ବାଦ୍ ଗଲେ ଯାହା ବଳକା ରହିବ ତାହା ମୂଳଧନ ପାଣ୍ଠି ରୂପେ ବିବେଚିତ ହେବ ।

## ଜ୍ୟୋତିବିହାର କ୍ଲବ୍

୧୯୭୪ ମସିହା ମାର୍ଚ୍ଚ ୩୧ ତାରିଖରେ ଶେଷ ହେଉଥିବା ବର୍ଷର
ଆୟ ବ୍ୟୟ ହିସାବ

| ଦାୟୀ | | ଟଙ୍କା | ଦାତା | | ଟଙ୍କା |
|---|---|---|---|---|---|
| ବେତନ ବାବଦ : | | ୨,୪୦୦ | ଚାନ୍ଦା ବାବଦ : | | |
| ଘରଭଡ଼ା ବାବଦ | ୧,୨୦୦ | | ମୋଟ ଆଦାୟ | ୫,୫୦୦ | |
| ବିଯୁକ୍ତ : ୧୯୭୨-୭୩ର ବକେୟା ଭଡ଼ା | ୧୦୦ | | ବିଯୁକ୍ତ : ୧୯୭୨-୭୩ ବାବଦ ଚାନ୍ଦା | ୨୦୦ | |
| | ୧,୧୦୦ | | | ୫,୩୦୦ | |
| ଯୁକ୍ତ : ଚଳିତ ବର୍ଷର ବକେୟା | ୧୦୦ | ୧,୨୦୦ | ବିଯୁକ୍ତ : ୧୯୭୪-୭୫ ବାବଦ ଚାନ୍ଦା | ୪୦୦ | |
| ଡାକ ଟିକଟ ବାବଦ | | ୩୦ | | ୪,୯୦୦ | |
| ବିବିଧ ଖର୍ଚ୍ଚ ବାବଦ | ୧୫୦ | | ଯୁକ୍ତ : ୧୯୭୩-୭୪ ବାବଦ ବକେୟା | ୫୫୦ | ୫,୪୫୦ |
| ଯୁ : ବକେୟା ଖର୍ଚ୍ଚ | ୫୦ | ୨୦୦ | ବିନିଯୋଗର ସୁଧ ବାବଦ | | ୧,୨୦୦ |
| ଆସବାବ ବିକ୍ରୟ କ୍ଷତି ବାବଦ | | | ବ୍ୟାଙ୍କ ସୁଧ ବାବଦ | | ୪୫ |
| ବହି ମୂଲ୍ୟ | ୩୨୫ | | | | |
| ବିକ୍ରି ମୂଲ୍ୟ | ୨୦୦ | ୧୨୫ | | | |
| ବ୍ୟୟ ବାଦେ ବଳକା ଆୟ ବାବଦ | | ୨,୭୪୦ | | | |
| | | ୬,୬୯୫ | | | ୬,୬୯୫ |

## ୧୯୭୩ ମସିହା ମାର୍ଚ୍ଚ ୩୧ ତାରିଖର

### ଉଦ୍ବର୍ତ୍ତ ପତ୍ର

| ଦାୟ ଓ ଦେଣା | ଟଙ୍କା | ସମ୍ପତ୍ତି ଓ ପାଉଣା | ଟଙ୍କା |
|---|---|---|---|
| ବକେୟା ଘରଭଡ଼ା | ୧୦୦ | ବ୍ୟାଙ୍କରେ ଗଚ୍ଛିତ ତହବିଲ | ୧,୫୦୦ |
| ମୂଳଧନ ପାଣ୍ଠି | ୧୭,୧୦୦ | ନଗଦ ତହବିଲ | ୧୭୫ |
| | | ବିନିଯୋଗ | ୧୫,୦୦୦ |
| | | ବକେୟା ଚାନ୍ଦା | ୨୦୦ |
| | | ଆସବାବ | ୩୨୫ |
| | ୧୭,୨୦୦ | | ୧୭,୨୦୦ |

## ୧୯୭୪ ମସିହା ମାର୍ଚ୍ଚ ୩୧ ତାରିଖର

### ଉଦ୍ବର୍ତ୍ତ ପତ୍ର

| ଦାୟ ଓ ଦେଣା | ଟଙ୍କା | ସମ୍ପତ୍ତି ଓ ପାଉଣା | ଟଙ୍କା |
|---|---|---|---|
| ବକେୟା ଘରଭଡ଼ା | ୧୦୦ | ବ୍ୟାଙ୍କରେ ଗଚ୍ଛିତ ତହବିଲ | ୪,୦୦୦ |
| ଅଗ୍ରିମ ପ୍ରାପ୍ତ ଚାନ୍ଦା | ୪୦୦ | ନଗଦ ତହବିଲ | ୩୪୦ |
| ବକେୟା ବିବିଧ ଖର୍ଚ୍ଚ | ୫୦ | ବିନିଯୋଗ | ୧୫,୦୦୦ |
| ମୂଳଧନ ପାଣ୍ଠି ୧୭,୧୦୦ | | ବକେୟା ଚାନ୍ଦା | ୫୫୦ |
| ବଢ଼ନ୍ତି : ଏ ବର୍ଷର ବଳକା ୨,୭୪୦ | ୧୯,୮୪୦ | ଆସବାବ | ୫୦୦ |
| | ୨୦,୩୯୦ | | ୨୦,୩୯୦ |

## ଦୃଷ୍ଟାନ୍ତ (୯)

ନିମ୍ନରେ ବ୍ରହ୍ମପୁର ଦାତବ୍ୟ ଚିକିତ୍ସାଳୟର ୧୯୭୪ ମସିହା ଡିସେମ୍ବର ୩୧ ତାରିଖରେ ଶେଷ ହେଉଥିବା ବର୍ଷର ପ୍ରାପ୍ତି ଓ ପ୍ରଦାନ ପ୍ରଦତ୍ତ ହେଲା ।

| ପ୍ରାପ୍ତି | ଟଙ୍କା | ପ୍ରଦାନ | ଟଙ୍କା |
|---|---|---|---|
| ଆଦ୍ୟ ବାକି : | | | |
| ନଗଦ ତହବିଲ | ୫୦୦ | ଆସବାବ କ୍ରୟ | ୪୦୦ |
| ବ୍ୟାଙ୍କରେ ଗଚ୍ଛିତ | ୧୦,୫୦୦ | ବେତନ | ୫,୫୦୦ |
| ସରକାରୀ ବଣ୍ଡ | ୩୦,୦୦୦ | ଅସ୍ତ୍ରୋପଚାର ସକାଶେ ଯନ୍ତ୍ରପାତି କ୍ରୟ | ୩,୨୦୦ |
| ଚାନ୍ଦା | ୧୮,୨୦୦ | ପଥ୍ୟାଦି କ୍ରୟରେ ଖର୍ଚ୍ଚ | ୧,୫୦୦ |
| ସୁଧ | ୩,୦୦୦ | ଚିକିତ୍ସାଳୟର ବିବିଧ ଖର୍ଚ୍ଚ | ୨,୩୦୦ |
| ଦାନ | ୮,୫୦୦ | ଟିକସ ପ୍ରଦତ୍ତ | ୧୫୦ |
| ବିବିଧ ପ୍ରାପ୍ତି | ୩୦୦ | ଘର ଭଡ଼ା | ୨,୪୦୦ |
| | | ଦପ୍ତର ଖର୍ଚ୍ଚ | ୫୪୦ |
| | | ଅନ୍ତ୍ୟ ବାକି : | |
| | | ନଗଦ ତହବିଲ | ୩୩୦ |
| | | ବ୍ୟାଙ୍କରେ ଗଚ୍ଛିତ | ୨୪,୬୮୦ |
| | | ସରକାରୀ ବଣ୍ଡ | ୩୦,୦୦୦ |
| | ୭୧,୦୦୦ | | ୭୧,୦୦୦ |

ନିମ୍ନଲିଖିତ ବିଷୟଗୁଡ଼ିକ ବିଚାରକୁ ନେଇ ଏହି ଚିକିତ୍ସାଳୟର ୧୯୭୪ ମସିହା ଡିସେମ୍ବର ୩୧ ତାରିଖରେ ଶେଷ ହେଉଥିବା ବର୍ଷର ଆୟ ଓ ବ୍ୟୟ ହିସାବ ଓ ସେହି ତାରିଖର ଉଦ୍ବୃତ୍ତ ପତ୍ର ପ୍ରସ୍ତୁତ କର ।

୧-୧-୧୯୭୪ ତାରିଖର ଅନ୍ୟାନ୍ୟ ସମ୍ପତ୍ତି ଓ ପାଉଣା : ଆସବାବ ୩,୦୦୦ ଟଙ୍କା, ଯନ୍ତ୍ରପାତି ୧୫,୦୦୦ ଟଙ୍କା, ଜମି ୧୨,୦୦୦ ଟଙ୍କା, କୋଠା ୩୫,୦୦୦ ଟଙ୍କା । ଆସବାବର ୧୦%, ଯନ୍ତ୍ରପାତିର ୨୦%, ଜମିର ୨.୫% ଓ କୋଠାରୁ ୫% ହାରରେ ମୂଲ୍ୟ ହ୍ରାସ କରାଯିବ । ସରକାରୀ ବଣ୍ଡର ଅଙ୍କିତ ମୂଲ୍ୟ ୩୨,୦୦୦ ଟଙ୍କା ଓ କ୍ରୟ ମୂଲ୍ୟ ୩୦,୦୦୦ ଟଙ୍କା

ଓ ଏହା ଦାନ ପାଣ୍ଠି ତରଫରୁ କ୍ରୟ କରାଯାଇଛି । ଭଡ଼ା ମଧ୍ୟରେ ୧୯୭୩ ମସିହା ବାବଦ ୩,୦୦୦ ଟଙ୍କା ଓ ୧୯୭୫ ମସିହା ବାବଦ ୫୦୦ ଟଙ୍କା ଅନ୍ତର୍ଭୁକ୍ତ ଅଛି ଓ ୧୯୭୪ ମସିହା ସକାଶେ ୫,୮୦୦ ଟଙ୍କା ଭଡ଼ା ବାକି ଅଛି । ବେତନରେ ୧୯୭୩ ମସିହା ବାବଦ ଦିଆଯାଇଥିବା ୫୦୦ ଟଙ୍କା ଅନ୍ତର୍ଭୁକ୍ତ ଅଛି ଓ ୧୯୭୪ ମସିହା ବାବଦ ୪୦୦ ଟଙ୍କା ଦିଆଯାଇ ନାହିଁ । ସୁଧରେ ୧୯୭୩ ମସିହା ବାବଦ ୨୦୦ ଟଙ୍କା ଅନ୍ତର୍ଭୁକ୍ତ ଅଛି ଓ ଏ ବର୍ଷର ୩୧୫ ଟଙ୍କା ମିଳି ନାହିଁ ।

## ସମାଧାନ

ଉପରୋକ୍ତ ବିବରଣୀରେ ୧-୧-୧୯୭୪ ତାରିଖରେ ମୂଳଧନ ପାଣ୍ଠି କେତେ ଥିଲା ତାହା ପ୍ରଦତ୍ତ ହୋଇ ନାହିଁ । ତାହା ନିର୍ଣ୍ଣୟ କରିବା ସକାଶେ ସେହି ତାରିଖର ସମ୍ପତ୍ତି ଓ ପାଉଣାର ମୋଟ ପରିମାଣରୁ ସେହି ତାରିଖର ମୋଟ ଦାୟ ଓ ଦେଣା ପରିମାଣ ବାଦ୍ ଦିଆଯିବ । ଏହି ଦୁଇଟି ପରିମାଣର ବିୟୋଗ ଫଳହିଁ ମୂଳଧନ ପାଣ୍ଠି ସୂଚାଇବ । ଏଥି ସକାଶେ ୧-୧-୧୯୭୪ ତାରିଖର ଉଦ୍ବୃତ୍ତ ପତ୍ର ନିମ୍ନରେ ପ୍ରସ୍ତୁତ କରାଗଲା ।

### ବ୍ରହ୍ମପୁର ଦାତବ୍ୟ ଚିକିତ୍ସାଳୟ

୧୯୭୪ ମସିହା ଡିସେମ୍ବର ୩୧ ତାରିଖର ଉଦ୍ବୃତ୍ତ ପତ୍ର

| ଦାୟ ଓ ଦେଣା | ଟଙ୍କା | ସମ୍ପତ୍ତି ଓ ପାଉଣା | ଟଙ୍କା |
|---|---|---|---|
| ବକେୟା ବେତନ | ୫୦୦ | ନଗଦ ତହବିଲ | ୫୦୦ |
| ଦାନ ପାଣ୍ଠି | ୩୦,୦୦୦ | ବ୍ୟାଙ୍କରେ ଗଚ୍ଛିତ | ୧୦,୫୦୦ |
| ମୂଳଧନ ପାଣ୍ଠି | | ସରକାରୀ ବଣ୍ଡ | ୩୦,୦୦୦ |
| (ସମ୍ପତ୍ତି ଓ ପାଉଣା ବିଯୁକ୍ତ | | ଆସବାବ | ୩,୦୦୦ |
| ଦାୟ ଓ ଦେଣା) | ୭୬,୭୦୦ | ଯନ୍ତ୍ରପାତି | ୧୫,୦୦୦ |
| | | କୋଠା | ୩୫,୦୦୦ |
| | | ଜମି | ୧୦,୦୦୦ |
| | | ବକେୟା ଭଡ଼ା | ୩,୦୦୦ |
| | | ବକେୟା ସୁଧ | ୨୦୦ |
| | ୧,୦୭,୨୦୦ | | ୧,୦୭,୨୦୦ |

ବର୍ତ୍ତମାନ ୧୯୭୪ ମସିହାର ଆୟ ଓ ବ୍ୟୟ ହିସାବ ଓ ଉଦ୍ବୃତ୍ତ ପତ୍ର ପ୍ରସ୍ତୁତ କରାଯାଇପାରିବ ।

## ୧୯୭୪ ମସିହା ଡିସେମ୍ବର ୩୧ ତାରିଖରେ ଶେଷ ହେଉଥିବା ବର୍ଷର

### ଆୟ ଓ ବ୍ୟୟ ହିସାବ

ଦାୟୀ

| | | ଟଙ୍କା |
|---|---|---|
| ବେତନ ବାବଦ : | | |
| ପ୍ରଦତ୍ତ | ୫,୫୦୦ | |
| ବିଯୁକ୍ତ : ୧୯୭୩ର | ୫୦୦ | |
| | ୫,୦୦୦ | |
| ଯୁକ୍ତ ବକେୟା | ୪୦୦ | ୫,୪୦୦ |
| ପଥ୍ୟାଦି ଖର୍ଚ୍ଚ ବାବଦ | | ୧,୫୦୦ |
| ବିବିଧ ଖର୍ଚ୍ଚ ବାବଦ | | ୨,୩୦୦ |
| ଟିକସ ପ୍ରଭୃତି ବାବଦ | | ୧୫୦ |
| ଘରଭଡ଼ା ବାବଦ | | ୨,୪୦୦ |
| ଦପ୍ତର ଖର୍ଚ୍ଚ ବାବଦ | | ୫୪୦ |
| ମୂଲ୍ୟ ହ୍ରାସ ବାବଦ : | | |
| ଆସବାବ—୧୦% | ୩୦୦ | |
| ଯନ୍ତ୍ରପାତି—୨୦% | ୩,୦୦୦ | |
| କୋଠା —୫% | ୧,୭୫୦ | |
| ଜମି —୨.୫% | ୨୫୦ | ୫,୩୦୦ |
| ବ୍ୟୟ ବାଦେ ବଳକା ଆୟ ବାବଦ | | ୧୪,୮୨୫ |
| | | ୩୨,୪୧୫ |

ଦାତା

| | | ଟଙ୍କା |
|---|---|---|
| ଚାନ୍ଦା ବାବଦ : | | |
| ପ୍ରାପ୍ତ | ୧୮,୨୦୦ | |
| ବିଯୁକ୍ତ . ୧୯୭୩ର | ୩,୦୦୦ | |
| | ୧୫,୨୦୦ | |
| ବିଯୁକ୍ତ : ୧୯୭୫ର | ୫୦୦ | |
| | ୧୪,୭୦୦ | |
| ଯୁକ୍ତ : ବକେୟା ଚାନ୍ଦା | ୫,୮୦୦ | ୨୦,୫୦୦ |
| ଦାନ ବାବଦ | | ୮,୫୦୦ |
| ସୁଧ ବାବଦ : | | |
| ପ୍ରାପ୍ତ | ୩,୦୦୦ | |
| ବିଯୁକ୍ତ : ବକେୟା ସୁଧ (୧୯୭୩) | ୨୦୦ | |
| | ୨,୮୦୦ | |
| ଯୁକ୍ତ : ବକେୟା ସୁଧ (୧୯୭୪) | ୩୧୫ | ୩,୧୧୫ |
| ବିବିଧ ପ୍ରାପ୍ତି | | ୩୦୦ |
| | | ୩୨,୪୧୫ |

# ବ୍ରହ୍ମପୁର ଦାତବ୍ୟ ଚିକିତ୍ସାଳୟ

## ୧୯୭୪ ମସିହା ଡିସେମ୍ବର ୩୧ ତାରିଖର ଉଦ୍ବର୍ତ୍ତ ପତ୍ର

| ଦାୟ ଓ ଦେଣା | | ଟଙ୍କା | ସମ୍ପତ୍ତି ଓ ପାଉଣା | | ଟଙ୍କା |
|---|---|---|---|---|---|
| ବକେୟା ବେତନ | | ୪୦୦ | ନଗଦ ତହବିଲ | | ୩୩୦ |
| ଅଗ୍ରିମ ପ୍ରାପ୍ତ ଗ୍ରାହକ ଚାନ୍ଦା | | ୫୦୦ | ବ୍ୟାଙ୍କ୍‌ରେ ଗଚ୍ଛିତ | | ୨୪,୭୮୦ |
| ଦାନ ପାଣ୍ଠି | | ୩୦,୦୦୦ | ସରକାରୀ ବଣ୍ଡ୍ | | ୩୦,୦୦୦ |
| ମୂଳଧନ ପାଣ୍ଠି | ୭୬,୭୦୦ | | ଆସବାବ | ୩,୦୦୦ | |
| ଯୁକ୍ତ : ୧୯୭୪ର | | | ଯୁକ୍ତ : କ୍ରୟ | ୪୦୦ | |
| ବଳକା | ୧୪,୮୨୫ | ୯୧,୫୨୫ | | ୩,୪୦୦ | |
| | | | ବିଯୁକ୍ତ : ମୂଲ୍ୟ ହ୍ରାସ | ୩୦୦ | ୩,୧୦୦ |
| | | | ଯନ୍ତ୍ରପାତି | ୧୫,୦୦୦ | |
| | | | ଯୁକ୍ତ : କ୍ରୟ | ୩,୨୦୦ | |
| | | | | ୧୮,୨୦୦ | |
| | | | ବିଯୁକ୍ତ : ମୂଲ୍ୟହ୍ରାସ | ୩,୦୦୦ | ୧୫,୨୦୦ |
| | | | କୋଠା | ୩୫,୦୦୦ | |
| | | | ବିଯୁକ୍ତ : ମୂଲ୍ୟହ୍ରାସ | ୧,୭୫୦ | ୩୩,୨୫୦ |
| | | | ଜମି | ୧୦,୦୦୦ | |
| | | | ବିଯୁକ୍ତ ମୂଲ୍ୟହ୍ରାସ | ୨୫୦ | ୯,୭୫୦ |
| | | | ବକେୟା ଚାନ୍ଦା | | ୫,୮୦୦ |
| | | | ବକେୟା ସୁଧ | | ୩୧୫ |
| | | ୧୨୨୪୨୫ | | | ୧,୨୨,୪୨୫ |

ନୋଟ : (୧) ଦାନ ବାବଦ ପ୍ରାପ୍ତ ଅର୍ଥ ପୁଞ୍ଜିଗତ ଆୟ ରୂପେ ବିବେଚିତ ହେବ ବୋଲି କୌଣସି ଉଲ୍ଲେଖ ନ ଥିବାରୁ ଏହାକୁ ଅଣପୁଞ୍ଜିଗତ ଆୟ ରୂପେ ଆୟ ଓ ବ୍ୟୟ ହିସାବରେ ଅନ୍ତର୍ଭୁକ୍ତ କରାଯାଇଛି ।

(୨) ବିଭିନ୍ନ ସମ୍ପତ୍ତିର ଗତ ବର୍ଷର ବାକି ପରିମାଣରୁହିଁ ମୂଲ୍ୟ ହ୍ରାସ ବାଦ୍ ଦିଆଯାଇଛି । ଚଳିତ ବର୍ଷରେ କ୍ରୀତ ସମ୍ପତ୍ତିର ପରିମାଣ ଉପରେ ଅନ୍ତର୍ଭୁକ୍ତ କରାଯାଇ ନାହିଁ ।

(ଗ) ସରକାରୀ ବଣ୍ଡର ଅଙ୍କିତ ମୂଲ୍ୟ ୩୨,୦୦୦ ଟଙ୍କା ହୋଇଥିଲେ ମଧ୍ୟ ଏହାକୁ ଏହାର କ୍ରୟ ମୂଲ୍ୟ, ଅର୍ଥାତ୍ ୩୦,୦୦୦ ଟଙ୍କା ରୂପେ ଉଦ୍ବୃତ୍ତ ପତ୍ରରେ ଲିପିବଦ୍ଧ କରାଯାଇଛି ।

### ଦୃଷ୍ଟାନ୍ତ (୧୦)

ପୁରୀ କ୍ଲବର ୧୯୭୪ ମସିହା ଡିସେମ୍ବର ୩୧ ତାରିଖରେ ଶେଷ ହେଉଥିବା ବର୍ଷର କେତେକ ବିବରଣୀ ନିମ୍ନରେ ପ୍ରଦତ୍ତ ହେଲା । ତହିଁରୁ ଏହି କ୍ଲବର ଉପରୋକ୍ତ ତାରିଖରେ ଶେଷ ହେଉଥିବା ବର୍ଷର ପ୍ରାପ୍ତି ଓ ପ୍ରଦାନ ହିସାବ, ଆୟ ଓ ବ୍ୟୟ ହିସାବ, କ୍ଲବ ଅନ୍ତର୍ଗତ ରେସ୍ତୋରାଁର ମୋଟ (ବା ସ୍ଥୂଳ) ଲାଭ ଓ କ୍ଷତି ହିସାବ ଏବଂ ଉକ୍ତ ତାରିଖର ଉଦ୍ବୃତ୍ତ ପତ୍ର ପ୍ରସ୍ତୁତ କର ।

| | ଟଙ୍କା |
|---|---|
| ବିଲିଆର୍ଡ ଟେବୁଲ (୧।୧।୧୯୭୪) | ୧,୦୦୦ |
| ବ୍ୟାଡମିଣ୍ଟନ ସଂକ୍ରାନ୍ତ ଉପକରଣ (୧।୧।୧୯୭୪) | ୫୦୦ |
| ଆସବାବ (୧।୧।୧୯୭୪) | ୧,୪୦୦ |
| ଚଳିତ ବର୍ଷରେ କ୍ରୀତ ଆସବାବ | ୩୫୦ |
| ରେସ୍ତୋରାଁର ବାସନ ପତ୍ର ଇତ୍ୟାଦି (୧।୧।୧୯୭୪) | ୫୫୦ |
| ରେସ୍ତୋରାଁରୁ ଜଳଖିଆ ବିକ୍ରି ବାବଦ ପ୍ରାପ୍ତ ଅର୍ଥ (ସାରା ବର୍ଷର) | ୧୫,୩୦୦ |
| ରେସ୍ତୋରାଁରୁ ଆଦ୍ୟ ମହଜୁଦ ମାଲ (୧।୧।୧୯୭୪) | ୨୫୦ |
| ବିଲିଆର୍ଡ ଟେବୁଲ ବାବଦ ପ୍ରାପ୍ତ ଅର୍ଥ (ସାରା ବର୍ଷର) | ୩,୨୦୦ |
| ଚାନ୍ଦା ଆଦାୟ ... | ୧୦,୫୦୦ |
| ବ୍ୟାଙ୍କରେ ସ୍ଥାୟୀ ଗଚ୍ଛିତ ଅର୍ଥର ସୁଧ (Fixed Deposit A/c) | ୨୫୦ |
| ମ୍ୟାନେଜରଙ୍କର ବେତନ | ୨,୪୦୦ |
| ରେସ୍ତୋରାଁ ସକାଶେ କ୍ରୀତ ମାଲ | ୮,୬୦୦ |
| ଘରଭଡ଼ା ଓ ଟିକସ | ୨,୦୦୦ |
| ମଜୁରି (ରେସ୍ତୋରାଁ ୬୦୦ ଟଙ୍କା) | ୩,୪୦୦ |
| ମରାମତି ଓ ନବୀକରଣ | ୮୦୦ |
| କାଠ, କୋଇଲା ଇତ୍ୟାଦି | ୬୫୦ |
| ବିଜୁଳିବତି ଖର୍ଚ୍ଚ | ୪୬୮ |
| ବ୍ୟାଡମିଣ୍ଟନ ଖେଳରୁ ଆଦାୟ | ୫୬୦ |
| ବିବିଧ ଖର୍ଚ୍ଚ | ୪,୯୬୨ |
| ନଗଦ ତହବିଲ ୧।୧।୧୯୭୪ | ୨୮୦ |
| ବ୍ୟାଙ୍କରେ ଗଚ୍ଛିତ ଅର୍ଥ ୧।୧।୧୯୭୪ ... | ୧,୫୨୦ |
| ବ୍ୟାଙ୍କରେ ସ୍ଥାୟୀ ଗଚ୍ଛିତ ଅର୍ଥ (ସୁଧ ୫%) ୧।୧।୧୯୭୪ | ୧୦,୦୦୦ |
| ମୂଳଧନ ପାଣ୍ଠି ୧।୧।୧୯୭୪ | ୧୫,୩୬୫ |

ରେସ୍ତୋରାଁ ସକାଶେ କ୍ରୀତ ମାଲ ବାବଦ ପ୍ରଦତ୍ତ ଅର୍ଥ ମଧ୍ୟରେ ୨୫୦ ଟଙ୍କା ୧୯୭୩ ମସିହା ସକାଶେ ଦିଆଯାଇଛି । ୩୧ । ୧୨ । ୧୯୭୪ ତାରିଖରେ ରେସ୍ତୋରାଁର ଅନ୍ୟ ମହଜୁଦ ମାଲର ମୂଲ୍ୟ ୩୦୨ ଟଙ୍କା ଥିଲା । ଆଦାୟ ହୋଇଥିବା ଚାନ୍ଦା ମଧ୍ୟରୁ ୨୫ ଟଙ୍କା ୧୯୭୩ ମସିହାର ଓ ୨୩୦ ଟଙ୍କା ୧୯୭୫ ମସିହାର ଅଟେ । ୧୯୭୪ ମସିହା ବାବଦ ୪୫୦ ଟଙ୍କାର ଚାନ୍ଦା ବାକି ଅଛି । ନିମ୍ନଲିଖିତ ମତେ ମୂଲ୍ୟହ୍ରାସ ବାଦ ଦିଆଯିବ ।

ବାସନ ପତ୍ରରୁ ୨୦% ହାରରେ, ବିଲିଆର୍ଡ ଟେବୁଲରୁ ୧୨% ହାରରେ, ବ୍ୟାଡମିଣ୍ଟନ ଉପକରଣରୁ ୩୦% ହାରରେ, ଆସବାବରୁ ୧୦% ହାରରେ ।

କର୍ମଚାରୀମାନଙ୍କର ଖାଇବା ଖର୍ଚ୍ଚ ୨,୨୫୦ ଟଙ୍କା, ଏଥିମଧ୍ୟରୁ ୫୦୦ ଟଙ୍କା ସକାଶେ ରେସ୍ତୋରାଁକୁ ପ୍ରଭାବିତ କରାଯିବ । ୩୧ । ୧୨ । ୧୯୭୪ ତାରିଖରେ ଅନ୍ୟ ନଗଦ ତହବିଲର ପରିମାଣ ୩୫୦ ଟଙ୍କା ।

## ପୁରୀ କ୍ଲବ୍

୧୯୭୪ ମସିହା ଡିସେମ୍ବର ୩୧ ତାରିଖରେ ଶେଷ ହେଉଥିବା ବର୍ଷର
ପ୍ରାପ୍ତି ଓ ପ୍ରଦାନ ହିସାବ

ଦାୟୀ ଦାତା

| ପ୍ରାପ୍ତି | ଟଙ୍କା | ପ୍ରଦାନ | ଟଙ୍କା |
|---|---|---|---|
| ଆଦ୍ୟ ବାକି ବାବଦ : | | ଆସବାବ କ୍ରୟ ବାବଦ | ୩୫୦ |
| ନଗଦ ତହବିଲ | ୨୮୦ | ମ୍ୟାନେଜରଙ୍କ ବେତନ ବାବଦ | ୨,୪୦୦ |
| ବ୍ୟାଙ୍କ୍ରେ ଗଚ୍ଛିତ | ୧,୫୨୦ | ରେସ୍ତୋରାଁ ସକାଶେ | |
| ବ୍ୟାଙ୍କ୍ରେ ସ୍ଥାୟୀ ଗଚ୍ଛିତ | ୧୦,୦୦୦ | କ୍ରୀତ ମାଲ ବାବଦ | ୮,୬୦୦ |
| ରେସ୍ତୋରାଁରେ ଜଳଖିଆ | | ଘରଭଡ଼ା ଓ ଟିକସ ବାବଦ | ୨,୦୦୦ |
| ବିକ୍ରି ବାବଦ | ୧୫,୩୦୦ | ମଜୁରି ବାବଦ | ୩,୪୦୦ |
| ଚାନ୍ଦା ବାବଦ | ୧୦,୫୦୦ | ମରାମତି ଓ ନବୀକରଣ ବାବଦ | ୮୦୦ |
| ସୁଧ ବାବଦ | ୨୫୦ | କାଠ, କୋଇଲା ଇତ୍ୟାଦି | |
| ବିଲିଆର୍ଡ ଖେଳରୁ ଆଦାୟ | | ବାବଦ | ୬୫୦ |
| ବାବଦ | ୩,୨୦୦ | ବିଜୁଳିବତୀ ଖର୍ଚ୍ଚ ବାବଦ | ୪୬୮ |
| ବ୍ୟାଡ୍ମିଣ୍ଟନ ଖେଳରୁ | | ବିବିଧ ଖର୍ଚ୍ଚ ବାବଦ | ୪,୯୬୨ |
| ଆଦାୟ ବାବଦ | ୫୬୦ | ଅନ୍ୟ ବାକି ବାବଦ : | |
| | | ନଗଦ ତହବିଲ | ୩୫୦ |
| | | ବ୍ୟାଙ୍କରେ ଗଚ୍ଛିତ | ୬,[illegible]୦ |
| | | ବ୍ୟାଙ୍କରେ ସ୍ଥାୟୀ ଗଚ୍ଛିତ | ୧୦,୦୦୦ |
| | ୪୧,୬୧୦ | | ୪୧,୬୧୦ |

ନୋଟ୍ : ପ୍ରାପ୍ତ ମୋଟ ଅର୍ଥରୁ ସମସ୍ତ ଖର୍ଚ୍ଚ, ନଗଦ ତହବିଲ୍ ଓ ବ୍ୟାଙ୍କରେ ସ୍ଥାୟୀ ଗଚ୍ଛିତ ଅର୍ଥ ବାଦ୍ ଦେଇ ବ୍ୟାଙ୍କ୍‌ରେ ଗଚ୍ଛ ତ୍‌ତହବିଲ ନିର୍ଣ୍ଣୟ କରାଯାଇଛି ।

## ୧୯୭୪ ମସିହା ଡିସେମ୍ବର ୩୧ ତାରିଖରେ ଶେଷ ହେଉଥିବା ବର୍ଷର

## ଆୟ ଓ ବ୍ୟୟ ହିସାବ

ଦାୟୀ | ଦାତା

| ବ୍ୟୟ | | ଟଙ୍କା | ଆୟ | | ଟଙ୍କା |
|---|---|---|---|---|---|
| ମ୍ୟାନେଜରଙ୍କ ବେତନ ବାବଦ | | ୨,୪୦୦ | ଚାନ୍ଦା ବାବଦ | ୧୦,୫୦୦ | |
| ଘରଭଡ଼ା ଓ ଟିକସ ବାବଦ | | ୨,୦୦୦ | ବିୟୁକ୍ତ : | | |
| ମଜୁରି ବାବଦ | | ୨,୮୦୦ | ୧୯୭୩ର ୧୨୫ | | |
| ମରାମତି ଓ ନବୀକରଣ ବାବଦ | | ୮୦୦ | ୧୯୭୫ର ୨୩୦ | ୩୫୫ | |
| ବିଜୁଳିବତୀ ଖର୍ଚ୍ଚ ବାବଦ | | ୪୬୮ | | ୧୦,୧୪୫ | |
| କର୍ମଚାରୀଙ୍କର ଜଳଖିଆ ଖର୍ଚ୍ଚ ବାବଦ | | ୭୫୦ | ଯୁକ୍ତ : ୧୯୭୪ର ବକେୟା | ୪୫୦ | ୧୦,୫୯୫ |
| ବିବିଧ ଖର୍ଚ୍ଚ ବାବଦ | | ୪,୯୭୨ | ବିଲିଆର୍ଡ଼ ଖେଳରୁ ଆଦାୟ ବାବଦ | | ୩,୨୦୦ |
| ମୂଲ୍ୟହ୍ରାସ ବାବଦ : | | | ବ୍ୟାଡ୍‌ମିଣ୍ଟନ ଖେଳରୁ ଆଦାୟ ବାବଦ | | ୫୬୦ |
| ଆସବାବ ୧୦% | ୧୪୦ | | ସୁଧ ବାବଦ | ୨୫୦ | |
| ବିଲିଆର୍ଡ଼ ଟେବୁଲ ୧୨% | ୧୨୦ | | ଯୁକ୍ତ ବକେୟା | ୨୫୦ | ୫୦୦ |
| ବ୍ୟାଡ୍‌ମିଣ୍ଟନ ଉପକରଣ ୩୦% | ୧୫୦ | ୪୧୦ | ରେସ୍ତୋରାଁ ଲାଭ ବାବଦ | | ୬,୨୧୨ |
| ବ୍ୟୟ ବାଦେ ବଳକା ଆୟ | | ୬,୪୬୭ | | | |
| | | ୨୧,୦୬୭ | | | ୨୧,୦୬୭ |

୧୯୭୪ ମସିହା ଡିସେମ୍ବର ୩୧ ତାରିଖରେ ଶେଷ ହେଉଥିବା ବର୍ଷର
ରେସ୍ତୋରାଁ ମୋଟ ଲାଭ ଓ କ୍ଷତି ହିସାବ

| ଦାୟୀ | | | ଦାତା | ଟଙ୍କା |
|---|---|---|---|---|
| ଆଦ୍ୟ ମହଜୁଦ ମାଲ ବାବଦ | | ୨୫୦ | ଜଳଖିଆ ବିକ୍ରି ବାବଦ | ୧୫,୩୦୦ |
| କ୍ରୀତ ମାଲ ବାବଦ | ୮,୨୦୦ | | ଅନ୍ୟାନ୍ୟ କର୍ମଚାରୀଙ୍କ ଜଳଖିଆ ବାବଦ | ୧,୨୫୦ |
| ଯୁକ୍ତ : ୧୯୭୩ ସକାଶେ | ୨୫୦ | ୮,୪୫୦ | ଅନ୍ତ୍ୟ ମହଜୁଦ ମାଲ ବାବଦ | ୩୨୨ |
| ରେସ୍ତୋରାଁ କର୍ମଚାରୀଙ୍କ ଜଳଖିଆ ଖର୍ଚ୍ଚ ବାବଦ | | ୫୦୦ | | |
| କାଠ, କୋଇଲା ଇତ୍ୟାଦି ବାବଦ | | ୭୫୦ | | |
| ମଜୁରି ବାବଦ | | ୬୦୦ | | |
| ବାସନ ପତ୍ରର ମୂଲ୍ୟ ହ୍ରାସ | | ୧୧୦ | | |
| ଲାଭ ବାବଦ — ଆୟ ଓ ବ୍ୟୟ ହିସାବକୁ ସ୍ଥାନାନ୍ତରିତ | | ୬,୨୧୨ | | |
| | | ୧୬,୮୭୨ | | ୧୬,୮୭୨ |

## ୧୯୭୪ ମସିହା ଡିସେମ୍ବର ୩୧ ତାରିଖର
## ପୁଷ୍ପ କ୍ଲବ୍‌ର ଉଦ୍‌ବୃତ୍ତ ପତ୍ର

| ଦାୟ ଓ ଦେଣା | ଟଙ୍କା | ସମ୍ପତ୍ତି ଓ ପାଉଣା | ଟଙ୍କା |
|---|---|---|---|
| ଅଗ୍ରିମ ଓ ପ୍ରାପ୍ତ ଚାନ୍ଦା | ୨୩୦ | ନଗଦ ତହବିଲ | ୩୫୦ |
| ମୂଳଧନ ପାଣ୍ଠି ୧୫,୩୭୫ | | ବ୍ୟାଙ୍କ୍‌ରେ ଗଚ୍ଛିତ ତହବିଲ | ୭,୪୨୦ |
| ଯୁକ୍ତ : ବ୍ୟୟ ବାଦେ | | ବ୍ୟାଙ୍କ୍‌ରେ ସ୍ଥାୟୀ ଗଚ୍ଛିତ | ୧୦,୦୦୦ |
| ବଳକା ଆୟ ୬,୪୬୭ | ୨୧,୮୪୨ | ପ୍ରାପ୍ୟ ସୁଧ | ୨୫୦ |
| | | ବକେୟା ଚାନ୍ଦା (୧୯୭୪ର) | ୪୫୦ |
| | | ରେସ୍ତୋରାଁର ଅନ୍ୟ ମହଜୁଦ ମାଲ | ୩୨୨ |
| | | ଆସବାବ : ପୂର୍ବବାକି ୧,୪୦୦ | |
| | | ଯୁକ୍ତ : ଏ ବର୍ଷର କ୍ରୟ ୩୫୦ | |
| | | ୧,୭୫୦ | |
| | | ବିଯୁକ୍ତ : ମୂଲ୍ୟହ୍ରାସ ୧୪୦ | ୧,୬୧୦ |
| | | ବିଲିଆର୍ଡ଼ ଟେବୁଲ ୧,୦୦୦ | |
| | | ବିଯୁକ୍ତ : ମୂଲ୍ୟହ୍ରାସ ୧୨୦ | ୮୮୦ |
| | | ବ୍ୟାଡ଼ମିଣ୍ଟନ ଉପକରଣ ୫୦୦ | |
| | | ବିଯୁକ୍ତ : ମୂଲ୍ୟହ୍ରାସ ୧୫୦ | ୩୫୦ |
| | | ରେସ୍ତୋରାଁ ବାସନପତ୍ର ୫୫୦ | |
| | | ବିଯୁକ୍ତ : ମୂଲ୍ୟହ୍ରାସ ୧୧୦ | ୪୪୦ |
| | ୨୨,୦୭୨ | | ୨୨,୦୭୨ |

ନୋଟ : (୧) ବ୍ୟାଙ୍କରେ ସ୍ଥାୟୀ ଗଚ୍ଛିତ ତହବିଲର ସୁଧର ହାର ୫%। ସୁତରାଂ ମୋଟ ବାର୍ଷିକ ସୁଧ ୫୦୦ ଟଙ୍କା ହେବ। ସେହେତୁ ସୁଧ ବାବଦ ୨୫୦ ଟଙ୍କା ମାତ୍ର ମିଳିଛି ତେଣୁ ବାକି ୨୫୦ ଟଙ୍କାକୁ ପ୍ରାପ୍ୟ ସୁଧ ରୂପେ ଉଭୟ ଆୟ ଓ ବ୍ୟୟ ହିସାବ ଏବଂ ଉଦ୍‌ବୃତ୍ତ ପତ୍ରରେ ଅନ୍ତର୍ଭୁକ୍ତ କରାଯାଇଛି।

(୨) ଚଳିତ ବର୍ଷ କ୍ରୟ କରାଯାଇଥିବା ଆସବାବ ପରିମାଣରୁ ମୂଲ୍ୟହ୍ରାସ ବାଦ୍ ଦିଆଯାଇ ନାହିଁ।

## ଦୃଷ୍ଟାନ୍ତ (୧୧)

କଟକ ଯୁବ ସଂଘର ୧୯୭୪ ମସିହା ଡିସେମ୍ବର ୩୧ ତାରିଖରେ ଶେଷ ହୋଇଥିବା ବର୍ଷର ଆୟ ଓ ବ୍ୟୟ ହିସାବ ନିମ୍ନରେ ପ୍ରଦତ୍ତ ହେଲା :

୧୯୭୪ ମସିହା ଡିସେମ୍ବର ୩୧ ତାରିଖରେ ଶେଷ ହେଉଥିବା ବର୍ଷର
ଆୟ ଓ ବ୍ୟୟ ହିସାବ

| ଦାୟୀ | | ଟଙ୍କା | ପାଓଣା | ଟଙ୍କା |
|---|---|---|---|---|
| ବେତନ ବାବଦ | | ୨,୨୦୦ | ଚାନ୍ଦା ବାବଦ | ୧୫,୪୦୦ |
| ସାଧାରଣ ବ୍ୟୟ ବାବଦ | | ୩୫୦ | ପ୍ରବେଶିକା ଫିସ ବାବଦ | ୩୦୦ |
| ହିସାବ ସମୀକ୍ଷା ଫିସ ବାବଦ | | ୨୦୦ | ବାର୍ଷିକ ଭୋଜି ସକାଶେ ପ୍ରାପ୍ତି ବାବଦ | ୫୫୦ |
| ସଂପାଦକଙ୍କର ପାରିଶ୍ରମିକ ବାବଦ | | ୫୦୦ | ବାର୍ଷିକ କ୍ରୀଡ଼ା ପ୍ରତିଯୋଗିତାର ଲାଭ | ୯୫୦ |
| ମନୋହାରୀ ଓ ଛପେଇ | | ୩୬୦ | | |
| ବାର୍ଷିକ ଭୋଜିର ଖର୍ଚ୍ଚ | ,, | ୪୮୦ | | |
| ମଜୁରି | ,, | ୧୩୦ | | |
| ମୂଲ୍ୟ ହ୍ରାସ | ,, | ୩୦୦ | | |
| ବଳକା | ,, | ୧୨,୬୮୦ | | |
| | | ୧୭,୨୦୦ | | ୧୭,୨୦୦ |

ଏହି ହିସାବଟି ନିମ୍ନଲିଖିତ ସମାଯୋଜନ ପରେ ପ୍ରସ୍ତୁତ କରାଯାଇଛି :

୧୯୭୩ ମସିହା ଶେଷରେ ୪୩୦ ଟଙ୍କାର ଚାନ୍ଦା ବାକି ଥିଲା ।

୧୯୭୩ ମସିହା ଶେଷରେ ୩୨୦ ଟଙ୍କାର ଚାନ୍ଦା ଅଗ୍ରିମ ମିଳିଥିଲା ।

୧୯୭୪ ମସିହା ଶେଷରେ ୨୫୦ ଟଙ୍କାର ଚାନ୍ଦା ଅଗ୍ରିମ ମିଳିଥିଲା ।

୧୯୭୪ ମସିହା ସକାଶେ ୫୭୦ ଟଙ୍କାର ଚାନ୍ଦା ବାକି ଥିଲା ।

୧୯୭୪ ମସିହା ପ୍ରାରମ୍ଭରେ ଓ ଶେଷରେ ବେତନ ବାବଦ ଯଥାକ୍ରମେ ୧୨୦ ଟଙ୍କା ଓ ୨୦୦ ଟଙ୍କା ବାକି ଥିଲା । ସାଧାରଣ ବ୍ୟୟରେ ଅଗ୍ରିମ ପ୍ରଦତ୍ତ ୫୦ ଟଙ୍କା ଅନ୍ତର୍ଭୁକ୍ତ ଅଛି ।

୧୯୭୩ ମସିହା ସକାଶେ ହିସାବ ସମୀକ୍ଷା ବାବଦ ୧୫୦ ଟଙ୍କା ଦିଆଯାଇଥିଲା ଓ ୧୯୭୪ ମସିହାର ଏହି ବାବଦ ୫୦ ଟଙ୍କା ଦେୟ ଅଛି ।

ଏହି କ୍ଲବ ୯,୦୦୦ ଟଙ୍କା ମୂଲ୍ୟରେ ଗୋଟିଏ ଖେଳ ପଡ଼ିଆ ପଟ୍ଟା ନେଇଛନ୍ତି । ୧୯୭୪ ମସିହା ଜାନୁଆରି ୧ ତାରିଖରେ କ୍ଲବର କ୍ରୀଡ଼ା ଉପକରଣର ମୂଲ୍ୟ ୩,୦୦୦ ଟଙ୍କା ଥିଲା । ବର୍ଷ ଶେଷରେ ମୂଲ୍ୟ ହ୍ରାସ ବାଦ ଦିଆଯାଇ ଏହି ଉପକରଣର ମୂଲ୍ୟ ୩,୨୦୦ ଟଙ୍କା ଥିଲା । ୩୧।୧୨।୧୯୭୪ ତାରିଖରେ ଅନ୍ୟ ନଗଦ ତହବିଲର ପରିମାଣ ୧୭,୩୭୦ ଟଙ୍କା ଥିଲା ।

୧୯୭୪ ମସିହା ଡସେମ୍ବର ୩୧ ତାରଖରେ ଶେଷ ହେଉଥିବା ବର୍ଷ ସକାଶେ କ୍ଲବ୍‌ର ପ୍ରାପ୍ତି ଓ ପ୍ରଦାନ ହିସାବ ଏବଂ ସେହି ତାରିଖର ଉଦ୍‌ବୃତ୍ତ ପତ୍ର ପ୍ରସ୍ତୁତ କର ।

କଟକ କ୍ଲବ୍

୧୯୭୪ ମସିହା ଡିସେମ୍ବର ୩୧ ତାରିଖରେ ଶେଷ ହେଉଥିବା ବର୍ଷର
ପ୍ରାପ୍ତି ଓ ପ୍ରଦାନ ହିସାବ

ଦାୟୀ ଦାତା

| ପ୍ରାପ୍ତି | ଟଙ୍କା | ପ୍ରଦାନ | ଟଙ୍କା |
|---|---|---|---|
| ଆଦ୍ୟ ନଗଦ ତହବିଲ | ୪,୨୦୦ | ବେତନ ବାବଦ | |
| ଚାନ୍ଦା ବାବଦ : | | ଆୟ ଓ ବ୍ୟୟ ହି: ଆନୁଯାୟୀ ୨,୨୦୦ | |
| ଆୟ ଓ ବ୍ୟୟ ହିସାବ ଆନୁଯାୟୀ ୧୫,୪୦୦ | | ଯୁକ୍ତ : ୧୯୭୩ର ବେତନ ୧୨୦ | |
| ଯୁକ୍ତ : ୧୯୭୩ର ଚାନ୍ଦା ୪୩୦ | | ୨,୩୨୦ | |
| ୧୯୭୫ର ଚାନ୍ଦା ୨୫୦ | | ବିଯୁକ୍ତ : ୧୯୭୪ର ବକେୟା ୨୦୦ | ୨,୧୨୦ |
| ୧୬,୦୮୦ | | ସାଧାରଣ ଖର୍ଚ୍ଚ ବାବଦ ୩୫୦ | |
| ବିଯୁକ୍ତ : ୧୯୭୩ରେ ପ୍ରାପ୍ତ ୧୯୭୪ର ଚାନ୍ଦା ୩୫୦ | | ଯୁକ୍ତ : ୧୯୭୫ ସକାଶେ ପ୍ରଦତ୍ତ ୫୦ | ୪୦୦ |
| ୧୫,୭୩୦ | | ହିସାବ ସମୀକ୍ଷା ଫିସବାବଦ ୨୦୦ | |
| ବିଯୁକ୍ତ : ୧୯୭୪ର ବକେୟା ଚାନ୍ଦା ୫୭୦ | ୧୫,୨୬୦ | ଯୁକ୍ତ : ୧୯୭୩ ସକାଶେ ପ୍ରଦତ୍ତ ୧୫୦ | |
| ପ୍ରବେଶିକା ଫିସ ବାବଦ | ୩୦୦ | ୩୫୦ | |
| ବାର୍ଷିକ ଭୋଜ ସକାଶେ ପ୍ରାପ୍ତ ଅର୍ଥ ବାବଦ | ୫୫୦ | ବିଯୁକ୍ତ : ୧୯୭୪ର ଦେୟ ୫୦ | ୩୦୦ |
| ବାର୍ଷିକ କ୍ରୀଡ଼ା ପ୍ରତିଯୋଗିତାର ଲଭ ବାବଦ | ୯୫୦ | ସମ୍ପାଦକଙ୍କ ପାରିଶ୍ରମିକ ବାବଦ | ୫୦୦ |
| | | ମନୋହାରୀ ଓ ଛପେଇ ବାବଦ | ୩୭୦ |
| | | ବାର୍ଷିକ ଭୋଜର ଖର୍ଚ୍ଚ ବାବଦ | ୪୮୦ |
| | | ମଜୁରି | ୧୩୦ |
| | | କ୍ରୀଡ଼ା ଉପକରଣ କ୍ରୟ ବାବଦ {୩,୨୦୦ — ୩,୦୦୦ — ୩୦୦)} | ୫୦୦ |
| | ୨୧,୧୬୦ | ଅନ୍ତ୍ୟ ନଗଦ ତହବିଲ | ୧୬,୩୬୦ |
| ପୂର୍ବବାକି ବାବଦ | ୧୬,୩୬୦ | | ୨୧,୧୬୦ |

## କଟକ କ୍ଲବ୍

### ୧୯୭୪ ମସିହା ଡିସେମ୍ବର ୩୧ ତାରିଖର

### ଉଦ୍‌ବୃତ୍ତ ପତ୍ର

| ଦାୟ ଓ ଦେଣା | | ଟଙ୍କା | ସମ୍ପତ୍ତି ଓ ପାଉଣା | | ଟଙ୍କା |
|---|---|---|---|---|---|
| ଅଗ୍ରିମ ପ୍ରାପ୍ତ ଚାନ୍ଦା | | ୨୫୦ | ପଟ୍ଟା ନିଆଯାଇଥିବା ଖେଳପଡ଼ିଆ | | ୯,୦୦୦ |
| ବକେୟା ହିସାବ ସମୀକ୍ଷା ଫିସ | | ୫୦ | କ୍ରୀଡ଼ା ଉପକରଣ : | | |
| ବକେୟା ବେତନ | | ୨୦୦ | ପୂର୍ବ ବାକି | ୩,୦୦୦ | |
| ୧୯୭୩ର | | | ଯୁକ୍ତ : ଏ ବର୍ଷ କ୍ରୀତ | ୫୦୦ | |
| ମୂଳଧନ ପାଣ୍ଠି | ୨୬,୦୧୦ | | | ୩,୫୦୦ | |
| ୧୯୭୪ର ବଳକା | ୨,୬୮୦ | ୨୮,୬୯୦ | ବିଯୁକ୍ତ : ମୂଲ୍ୟ ହ୍ରାସ | ୩୦୦ | ୩,୨୦୦ |
| | | | ବକେୟା ଚାନ୍ଦା | | ୫୭୦ |
| | | | ଅଗ୍ରିମ ପ୍ରଦତ୍ତ ସାଧାରଣ ଖର୍ଚ୍ଚ | | ୫୦ |
| | | | ନଗଦ ତହବିଲ | | ୧୬,୩୭୦ |
| | | ୨୯,୧୯୦ | | | ୨୯,୧୯୦ |

ନୋଟ୍ : (୧) ପ୍ରାପ୍ତି ଓ ପ୍ରଦାନ ହିସାବରେ ଆଦ୍ୟ ନଗଦ ତହବିଲ ନିର୍ଣ୍ଣୟ କରିବା ସକାଶେ ଅନ୍ତ୍ୟ ନଗଦ ତହବିଲ ସମେତ ମୋଟ ପ୍ରଦତ୍ତ ଅର୍ଥରୁ ଅନ୍ୟାନ୍ୟ ସମସ୍ତ ପ୍ରାପ୍ତ ଅର୍ଥ ବାଦ୍ ଦିଆଯାଇଛି ।

(୨) ଉଦ୍‌ବୃତ୍ତ ପତ୍ରରେ ଥିବା ମୂଳଧନ ପାଣ୍ଠି (୧୯୭୩) ନିର୍ଣ୍ଣୟ କରିବା ।

ନିମ୍ନୋକ୍ତ ରୂପେ ୧୯୭୩ ମସିହା ଡିସେମ୍ବର ୩୧ ତାରିଖର ଉଦ୍ବୃତ୍ତ ପତ୍ର ପ୍ରସ୍ତୁତ କରାଯିବ ।

୧୯୭୩ ମସିହା ଡିସେମ୍ବର ୩୧ ତାରିଖର
ଉଦ୍ବୃତ୍ତ ପତ୍ର

| ଦାୟ ଓ ଦେଣା | ଟଙ୍କା | ସମ୍ପତ୍ତି ଓ ପାଉଣା | ଟଙ୍କା |
|---|---|---|---|
| ଅଗ୍ରିମ ପ୍ରାପ୍ତ ଚାନ୍ଦା | ୩୫୦ | ପଡ଼ିଆ ନିଆଯାଇଥିବା ଖେଳ ପଡ଼ିଆ | ୯,୦୦୦ |
| ବକେୟା ବେତନ | ୧୨୦ | କ୍ରୀଡ଼ା ଉପକରଣ | ୩,୦୦୦ |
| ବକେୟା ହିସାବ ସମୀକ୍ଷା ଫିସ | ୧୫୦ | ବକେୟା ଚାନ୍ଦା | ୪୩୦ |
| ମୂଳଧନ ପାଣ୍ଠି | ୧୬,୦୧୦ | ନଗଦ ତହବିଲ | ୪,୨୦୦ |
| | ୧୬,୬୩୦ | | ୧୬,୬୩୦ |

ଦୃଷ୍ଟାନ୍ତ (୧୨)

ଏଡଲ୍‌ଟ ଏଜୁକେଶନ ସୋସାଇଟି ଗୁମକୁ ୧୯୭୦ ମସିହା ମାର୍ଚ୍ଚ ୩୧ ତାରିଖରେ ଶେଷ ହେଉଥିବା ବର୍ଷର ନିମ୍ନଲିଖିତ ପ୍ରାପ୍ତି ଓ ପ୍ରଦାନ ହିସାବ ଏବଂ ଆୟ ଓ ବ୍ୟୟ ହିସାବ ଦେଇଛନ୍ତି ।

୧୯୬୯-୭୦ ଆର୍ଥିକ ବର୍ଷର ପ୍ରାପ୍ତି ଓ ପ୍ରଦାନ ହିସାବ

| | | ଟଙ୍କା | | ଟଙ୍କା |
|---|---|---|---|---|
| ଆଦ୍ୟ ବାକି ବାବଦ | | ୪୫୦ | ଛପେଇ ଖର୍ଚ୍ଚ ବାବଦ | ୭୫ |
| ସୁଧ ବାବଦ : | | | ବିଜ୍ଞାପନ ,, | ୧୪୧ |
| ୧୯୬୮-୬୯ | ୧୦୦ | | କର୍ମଚାରୀଙ୍କ ବେତନ ବାବଦ | ୧,୩୦୦ |
| ୧୯୬୯-୭୦ | ୧୫୦ | ୨୫୦ | ଆସବାବ କ୍ରୟ ବାବଦ | ୭୭୦ |
| ଦରମା ବାବଦ : | | | ଘରଭଡ଼ା ବାବଦ | ୫୨୦ |
| ୧୯୬୯-୭୦ | ୧,୦୦୦ | | ବିବିଧ ବ୍ୟୟ ,, | ୧୧୦ |
| ୧୯୭୦-୭୧ | ୧୦୦ | ୧,୧୦୦ | ଅନ୍ତ୍ୟ ବାକି ,, | ୧,୩୭୪ |
| ପ୍ରବେଶିକା ଫିସ | | | | |
| ୧୯୬୯-୭୦ | | ୪୨୦ | | |
| ସଭ୍ୟଚାନ୍ଦା ବାବଦ | | | | |
| ୧୯୬୮-୬୯ | ୩୦୦ | | | |
| ୧୯୬୯-୭୦ | ୧,୧୫୦ | | | |
| ୧୯୭୦-୭୧ | ୩୯୦ | ୧,୮୪୦ | | |
| ବିବିଧ ଆୟ | | ୧୩୦ | | |
| | | ୪,୧୯୦ | | ୪,୧୯୦ |

୧୯୬୯-୭୦ ଆର୍ଥିକ ବର୍ଷର ଆୟ ଓ ବ୍ୟୟ ହିସାବ

| | ଟଙ୍କା | | ଟଙ୍କା |
|---|---|---|---|
| ଛପେଇ ଖର୍ଚ୍ଚ ବାବଦ | ୮୦ | ଦରମା ବାବଦ | ୧,୧୦୦ |
| ବିଜ୍ଞାପନ ,, | ୧୫୦ | ସଭ୍ୟ ଚାନ୍ଦା ,, | ୧,୧୫୦ |
| ଘରଭଡ଼ା ,, | ୬୦୦ | ବିବିଧ ଆୟ ,, | ୧୩୦ |
| କର୍ମଚାରୀଙ୍କ ବେତନ ବାବଦ | ୧,୨୦୦ | ସୁଧ ,, | ୧୬୦ |
| ବିବିଧ ବ୍ୟୟ ,, | ୧୧୦ | | |
| ବ୍ୟୟ ବାଦେ ବଳକା ଆୟ ବାବଦ | ୪୦୦ | | |
| | ୨,୫୪୦ | | ୨,୫୪୦ |

ସୋସାଇଟିର ୧୯୬୯ ମସିହା ମାର୍ଚ୍ଚ ୩୧ ତାରିଖ ଓ ୧୯୭୦ ମସିହା ମାର୍ଚ୍ଚ ୩୧ ତାରିଖର ଉଦ୍‌ବୃତ୍ତ ପତ୍ର ପ୍ରସ୍ତୁତ କର ।

୧୯୬୯ ମସିହା ମାର୍ଚ୍ଚ ୩୧ ତାରିଖରେ ସୋସାଇଟିର ନିମ୍ନଲିଖିତ ସମ୍ପତ୍ତି ଓ ପାଉଣା ଥିଲି ବୋଲି ତୁମକୁ ଅଧିକା ସମ୍ବାଦ ଦିଆଯାଇଛି ।

| | ଟଙ୍କା |
|---|---|
| ବିନିଯୋଗ | ୪,୦୦୦ |
| ଆସବାବ | ୧,୦୦୦ |
| ଗ୍ରନ୍ଥାଳୟର ପୁସ୍ତକ | ୫୦୦ |

( ଗ୍ରାଜୁଏଟ୍ ଏକାଉଣ୍ଟେନ୍‌ସି ପରୀକ୍ଷାର ପ୍ରଶ୍ନ ପତ୍ରରୁ ଗୃହୀତ )

## ସମାଧାନ

### ଏଡଲ୍ଟ ଏଡୁକେଶନ ସୋସାଇଟି

୧୯୬୯ ମସିହା ମାର୍ଚ୍ଚ ୩୧ ତାରିଖର ଉଦ୍‌ବୃତ୍ତ ପତ୍ର

| ଦାୟ ଓ ଦେଣା | ଟଙ୍କା | ସମ୍ପତ୍ତି ଓ ପାଉଣା | ଟଙ୍କା |
|---|---|---|---|
| ବକେୟା ଦାୟ : | | ଆସବାବ | ୧,୦୦୦ |
| କର୍ମଚାରୀଙ୍କ ବେତନ | ୧୦୦ | ଗ୍ରନ୍ଥାଳୟର ପୁସ୍ତକ | ୫୦୦ |
| ମୂଳଧନ ପାଣ୍ଠି | ୬,୨୫୦ | ବିନିଯୋଗ | ୪,୦୦୦ |
| (୬,୩୫୦—୧୦୦) | | ପ୍ରାପ୍ୟ ସୁଧ | ୧୦୦ |
| | | ସଭ୍ୟ ଚାନ୍ଦା—ପ୍ରାପ୍ୟ | ୩୦୦ |
| | | ନଗଦ ତହବିଲ | ୪୫୦ |
| | ୬,୩୫୦ | | ୬,୩୫୦ |

୧୯୭୦ ମସିହା ମାର୍ଚ୍ଚ ୩୧ ତାରିଖର

ଉଦ୍‌ବୃତ୍ତ ପତ୍ର

| ଦାୟ ଓ ଦେଣା | ଟଙ୍କା | ଟଙ୍କା | ସମ୍ପତ୍ତି ଓ ପାଉଣା | ଟଙ୍କା | ଟଙ୍କା |
|---|---|---|---|---|---|
| ମୂଳଧନ ପାଣ୍ଠି : | | | ଆସବାବ | ୧,୦୦୦ | |
| ଆଦ୍ୟ ବାକି | ୬,୨୫୦ | | ଯୁକ୍ତ : ଚଳିତ | | |
| ଯୁକ୍ତ : ପ୍ରବେଶିକା ଫିସ | | | ବର୍ଷର ସଂଯୋଜନ | ୬୭୦ | ୧,୬୭୦ |
| (ମୂଳଧନାତ୍ମକ କରାଗଲା) | ୪୨୦ | | ଗ୍ରନ୍ଥାଳୟ ପୁସ୍ତକ | | ୫୦୦ |
| ଯୁକ୍ତ : ଚଳିତ ବର୍ଷର ବଳକା | ୪୦୦ | ୭,୦୭୦ | ବନ୍ଧଯୋଗ | | ୪,୦୦୦ |
| ବକେୟା ଖର୍ଚ୍ଚ : | | | ପ୍ରାପ୍ୟ ସୁଧ | | ୧୦ |
| ଟ୍ରେଜେଲ ଖର୍ଚ୍ଚ | ୫ | | ପ୍ରାପ୍ୟ ଦରମା | | |
| ବିଜ୍ଞାପନ | ୯ | | (ଗ୍ରନ୍ଥାଗାରିକଙ୍କଠାରୁ) | | ୧୦୦ |
| ଘରଭଡ଼ା | ୮୦ | ୯୪ | ନଗଦ ତହବିଲ | | ୧,୩୭୪ |
| ଅଗ୍ରିମ ପ୍ରାପ୍ତ ଦରମା | | | | | |
| (ଗ୍ରନ୍ଥାଗାରିକଙ୍କ ଠାରୁ) | | ୧୦୦ | | | |
| ଅଗ୍ରିମ ପ୍ରାପ୍ତ ସଭ୍ୟ ଚାନ୍ଦା | | ୩୯୦ | | | |
| | | ୭,୬୫୪ | | | ୭,୬୫୪ |

ଦୃଷ୍ଟାନ୍ତ (୧୩)

୧୯୭୦ ମସିହା ଜାନୁୟାରୀ ୧ ତାରିଖରେ ଭୁବନେଶ୍ୱର ଅଫିସର୍ସ କ୍ଲବର ସମ୍ପତ୍ତିଗୁଡ଼ିକ ନିମ୍ନରେ ପ୍ରଦତ୍ତ ହେଲା ।

ଆସବାବ ପତ୍ର ୩୦,୦୦୦ ଟଙ୍କା, କାଚ ବାସନ ୧୫,୦୦୦ ଟଙ୍କା, ମହଜୁଦ ଷ୍ଟେସନାରୀ ଦ୍ରବ୍ୟ ୧,୨୦୦ ଟଙ୍କା ଓ ମହଜୁଦ ସାମଗ୍ରୀ ୫,୬୦୦ ଟଙ୍କା ।

୧୯୭୦ ମସିହା ଡିସେମ୍ବର ୩୧ ତାରିଖରେ ମହଜୁଦ ଷ୍ଟେସନାରୀ ଦ୍ରବ୍ୟ ୨୫୦ ଟଙ୍କା ଓ ମହଜୁଦ ସାମଗ୍ରୀ ୫,୩୫୦ ଟଙ୍କାରେ ମୂଲ୍ୟାୟିତ ହୋଇଥିଲା । ୧୯୭୦ ମସିହା ସକାଶେ ୮୫୦ ଟଙ୍କାର ଚାନ୍ଦା ଆଦାୟ ହୋଇ ନ ଥିଲା । ଖାଦ୍ୟ ସାମଗ୍ରୀ ଯୋଗାଇଥିବା ବାବଦ ୬୩୦ ଟଙ୍କା ଦେୟ ଥିଲା । କର୍ମଚାରୀଙ୍କ ଡିସେମ୍ବର ମାସର ବେତନ ବାବଦ ୬୦୦ ଟଙ୍କା ଦେୟ ଥିଲା ।

ଏହି କ୍ଲବର ୧୯୭୦ ମସିହା ଡିସେମ୍ବର ୩୧ ତାରିଖରେ ଶେଷ ହେଉଥିବା ବର୍ଷର ପ୍ରାପ୍ତି ଓ ପ୍ରଦାନ ହିସାବ ନିମ୍ନରେ ପ୍ରଦତ୍ତ ହେଲା । ୧୯୭୦ ମସିହା ଡିସେମ୍ବର ୩୧ ତାରିଖରେ ଶେଷ ହେଉଥିବା ବର୍ଷର ଆୟ ଓ ବ୍ୟୟ ହିସାବ ଓ ସେହି ତାରିଖର ଉଦ୍‌ବୃତ୍ତ

ପତ୍ର ପ୍ରସ୍ତୁତ କର । ଆସବାବର ମୂଲ୍ୟରୁ ୧୨% ହାରରେ ଓ କାଚ ବାସନ ମୂଲ୍ୟରୁ ୩୦% ହାରରେ ମୂଲ୍ୟ ହ୍ରାସ ବାଦ୍ ଦିଆଯିବ ।

### ୧୯୭୦ ମସିହାର ପ୍ରାପ୍ତି ଓ ପ୍ରଦାନ ହିସାବ

| ପ୍ରାପ୍ତ | ଟଙ୍କା | ପ୍ରଦାନ | ଟଙ୍କା |
|---|---|---|---|
| ନଗଦ ଓ ବ୍ୟାଙ୍କରେ ଗଚ୍ଛିତ ତହବିଲ (୧-୧-୧୯୭୦) | ୧୨,୪୦୦ | କର୍ମଚାରୀଙ୍କ ବେତନ ୧୯୬୯ ୩୫୦; ୧୯୭୦ ୨,୩୦୦ | ୨,୬୫୦ |
| ବିଲିଆର୍ଡ ଖେଳରୁ ଆଦାୟ | ୪,୨୦୦ | କାଚବାସନ କ୍ରୟ | ୫,୨୦୦ |
| ବ୍ରିଜ ଖେଳରୁ ଆଦାୟ | ୮୪୦ | ୪% ସରକାରୀ ଋଣପତ୍ର କ୍ରୟ (ଅଙ୍କିତ ମୂଲ୍ୟ ଟ ୬,୦୦୦) | ୫,୬୦୦ |
| ଟେନିସ ଖେଳରୁ ଆଦାୟ | ୩,୪୫୦ | ୧୯୬୯ ମସିହା ବାବଦ ମହାଜନଙ୍କୁ ପ୍ରଦତ୍ତ | ୧,୪୦୦ |
| ବ୍ୟାଡମିଣ୍ଟନ ଖେଳରୁ ,, | ୪୫୦ | ବ୍ୟାଙ୍କରେ ସ୍ଥାୟୀ ଗଚ୍ଛିତ ଜମା କରାଗଲା—୬% (୧-୪-୧୯୭୦) | ୫,୦୦୦ |
| ଭୋଜନାଳୟରୁ ,, | ୨୦,୩୦୦ | ଖବର କାଗଜ, ପତ୍ର ପତ୍ରିକା | ୮୫୦ |
| ବିଦେଶୀ ମଦ୍ୟ ବିକ୍ରୟରୁ ଆଦାୟ | ୧୦,୬୦୦ | ନୃତ୍ୟଗୀତ ଓ ବାଦ୍ୟ | ୧,୨୦୦ |
| ଅଲମାରି ଲକର ଭଡ଼ା ୧୯୬୯ ୨୦୦; ୧୯୭୦ ୭୫୦ | ୯୫୦ | ବାର୍ଷିକ ମରାମତି ଓ ରଙ୍ଗ କରିବା | ୩,୪୦୦ |
| ବ୍ୟାୟାମଶାଳା ପାଣ୍ଠି | ୧୦,୦୦୦ | ବ୍ୟାୟାମ ଶାଳା ନିର୍ମାଣ | ୧୨,୫୦୦ |
| ବାର୍ଷିକ ଭୋଜି ଟିକଟ ବିକ୍ରି | ୪,୫୦୦ | ସଂପାଦକଙ୍କ ବେତନ | ୪,୮୦୦ |
| ପ୍ରବେଶିକା ଫିସ୍ | ୧,୨୦୦ | ସାଧାରଣ ଖର୍ଚ୍ଚ | ୩,୧୫୦ |
| ବାର୍ଷିକ ଚାନ୍ଦା : ୧୯୬୯ | ୧,୫୬୦ | ଛପେଇ ଷ୍ଟେସନାରୀ ଓ ଡାକ ମାସୁଲ | ୨,୪୦୦ |
| ୧୯୭୦ | ୧୫,୪୦୦ | ଖାଦ୍ୟ ସାମଗ୍ରୀ କ୍ରୟ | ୧୧,୩୦୦ |
| ୧୯୭୧ | ୨,୩୦୦ | ବିଦେଶୀ ମଦ୍ୟ କ୍ରୟ | ୬,୩୦୦ |
| | | ବାର୍ଷିକ ଭୋଜି ଖର୍ଚ୍ଚ | ୨,୪୦୦ |
| | | ଭଡ଼ା ଟିକସ | ୮,୦୦୦ |
| | | ନଗଦ ଓ ବ୍ୟାଙ୍କରେ ଗଚ୍ଛିତ | ୧୧,୧୦୦ |
| | ୮୮,୨୫୦ | | ୮୮,୨୫୦ |

## ସମାଧାନ

୧-୧-୧୯୬୦ ତାରିଖରେ ମୂଳଧନ ପାଣ୍ଠି କେତେ ଥିଲା ତାହା ନିର୍ଣ୍ଣୟ କରିବା ସକାଶେ ସେହି ତାରିଖର ଉଦ୍‌ବୃତ୍ତ ପତ୍ର ପ୍ରସ୍ତୁତ କରିବା ଆବଶ୍ୟକ ।

୧୯୬୦ ମସିହା ଜାନୁଆରୀ ୧ ତାରିଖର ଉଦ୍‌ବୃତ୍ତ ପତ୍ର

| ଦାୟ ଓ ଦେଣା | ଟଙ୍କା | ସମ୍ପତ୍ତି | ଟଙ୍କା |
|---|---|---|---|
| ବିବିଧ ମହାଜନ | ୧,୪୦୦ | ୧୯୬୯ର ବକେୟା ଲକର ଭଡ଼ା | ୨୦୦ |
| ଦେୟ ବେତନ | ୩୫୦ | ୧୯୬୯ର ବକେୟା ସୁଧ | ୧,୫୬୦ |
| ମୂଳଧନ ପାଣ୍ଠି {(୬୫,୯୬୦—(୧,୪୦୦+୩୫୦)} | ୬୪,୨୧୦ | ନଗଦ ଓ ବ୍ୟାଙ୍କ୍‌ରେ ଗଚ୍ଛିତ ତହବିଲ | ୧୨,୪୦୦ |
| | | ମହଜୁଦ୍ ସାମଗ୍ରୀ | ୫,୬୦୦ |
| | | ମହଜୁଦ୍ ଷ୍ଟେସନାରି | ୧,୨୦୦ |
| | | କାଚ ବାସନ | ୧୫,୦୦୦ |
| | | ଆସବାବ | ୩୦,୦୦୦ |
| | ୬୫,୯୬୦ | | ୬୫,୯୬୦ |

# ଭୁବନେଶ୍ୱର ଅଫିସର୍ସ କ୍ଲବ

## ୧୯୭୦ ମସିହା ଡିସେମ୍ବର ୩୧ ତାରିଖରେ ଶେଷ ହେଉଥିବା ବର୍ଷର

**ଦାୟୀ** — **ଆୟ ଓ ବ୍ୟୟ ହିସାବ** — **ଦାତା**

| ବ୍ୟୟ | | ଟଙ୍କା | ଆୟ | ଟଙ୍କା |
|---|---|---|---|---|
| ପ୍ରଦତ୍ତ ବେତନ ବାବଦ | ୨,୩୦୦ | | ପ୍ରାପ୍ତ କୋଠର ଭଡ଼ା ବାବଦ | ୬୫୦ |
| ଯୁକ୍ତ : ଦେୟ ବେତନ | ୬୦୦ | ୨,୯୦୦ | ପ୍ରାପ୍ତ ଚାନ୍ଦା ବାବଦ ୧୫,୪୦୦ | |
| ଖବର କାଗଜ, ପତ୍ର ଓ ପତ୍ରିକା ବାବଦ | | ୮୫୦ | ଯୁକ୍ତ : ବକେୟା ଚାନ୍ଦା ୮୫୦ | ୧୬,୨୫୦ |
| ନୃତ୍ୟ, ଗୀତ ଓ ବାଦ୍ୟ ବାବଦ | | ୧,୨୦୦ | ବିଲିଆର୍ଡ଼ ଖେଳରୁ ଆଦାୟ ବାବଦ | ୪,୨୦୦ |
| ମରାମତି ଇତ୍ୟାଦି ବାବଦ | | ୩,୪୦୦ | ବ୍ରିଜ୍ ଖେଳରୁ ଆଦାୟ ବାବଦ | ୮୪୦ |
| ସମ୍ପାଦକଙ୍କ ବେତନ ବାବଦ | | ୪,୮୦୦ | ଟେନିସ୍ ଖେଳରୁ ଆଦାୟ ବାବଦ | ୩,୪୫୦ |
| ବାର୍ଷିକ ଭୋଜି ଖର୍ଚ୍ଚ ବାବଦ | | ୨,୪୦୦ | ବ୍ୟାଡ୍‌ମିଣ୍ଟନ୍ ଖେଳରୁ ଆଦାୟ ବାବଦ | ୫୫୦ |
| ଭଡ଼ା ଓ ଟିକସ ବାବଦ | | ୮,୦୦୦ | ଭୋଜନାଳୟରୁ ଆଦାୟ ବାବଦ | ୨୦,୩୦୦ |
| ସାଧାରଣ ଖର୍ଚ୍ଚ ବାବଦ | | ୩,୧୫୦ | ବିଦେଶୀ ମଦ୍ୟ ବିକ୍ରିରୁ ଆଦାୟ ବାବଦ | ୧୦,୭୦୦ |
| ବ୍ୟବହୃତ ଖାଦ୍ୟ ସାମଗ୍ରୀ : | | | ବାର୍ଷିକ ଭୋଜି ଟିକଟ୍ ବିକ୍ରି ବାବଦ | ୪,୫୦୦ |
| ଆଦ୍ୟ ମହଜୁଦ | ୫,୬୦୦ | | ପ୍ରବେଶିକା ଫିସ୍ ବାବଦ | ୧,୨୦୦ |
| ଯୁକ୍ତ : ଖାଦ୍ୟ ସାମଗ୍ରୀ କ୍ରୟ | ୧୧,୯୫୦ | | ସ୍ଥାୟୀ ଗଚ୍ଛିତରେ ସୁଧ— ୬% ହାରରେ ୯ ମାସର | ୨୨୫ |
| ବିଦେଶୀ ମଦ୍ୟ କ୍ରୟ | ୭,୩୦୦ | | | |
| | ୨୪,୮୫୦ | | | |
| ବିୟୁକ୍ତ : ଅନ୍ତ୍ୟ ମହଜୁଦ | ୫,୩୭୦ | ୧୯,୪୮୦ | | |
| ବ୍ୟବହୃତ ଷ୍ଟେସନାରି : | | | | |
| ଆଦ୍ୟ ମହଜୁଦ | ୧,୨୦୦ | | | |
| ଯୁକ୍ତ : କ୍ରୟ | ୨,୪୦୦ | | | |
| | ୩,୬୦୦ | | | |
| ବିୟୁକ୍ତ : ଅନ୍ତ୍ୟ ମହଜୁଦ | ୯୫୦ | ୨,୬୫୦ | | |
| ମୂଲ୍ୟ ହ୍ରାସ ବାବଦ : | | | | |
| ଆସବାବ ୧୨% ହାରରେ | ୩,୬୦୦ | | | |
| କାଠବାସନ ୩୦% ହାରରେ | ୬,୦୬୦ | ୯,୬୬୦ | | |
| ବ୍ୟୟବାଦେ ବଳକା ଆୟ ବାବଦ | | ୪,୩୭୫ | | |
| | | ୬୨,୮୬୫ | | ୬୨,୮୬୫ |

## ଭୁବନେଶ୍ୱର ଅଫିସର୍ସ କ୍ଲବ୍

### ୧୯୬୦ ମସିହା ଡିସେମ୍ବର ୩୧ ତାରିଖର ଉଦ୍‌ବୃତ୍ତ ପତ୍ର

| ଦାୟ ଓ ଦେଣା | | ଟଙ୍କା | ସମ୍ପତ୍ତି ଓ ପାଉଣା | | ଟଙ୍କା |
|---|---|---|---|---|---|
| ବକେୟା ଦେୟ ବେତନ | | ୬୦୦ | ନଗଦ ଓ ବ୍ୟାଙ୍କରେ ଗଚ୍ଛିତ | | ୧୧,୧୦୦ |
| ଖାଦ୍ୟ ସାମଗ୍ରୀ ବାବଦ ଦେୟ | | ୬୩୦ | ବ୍ୟାଙ୍କରେ ସ୍ଥାୟୀ ଗଚ୍ଛିତ ୬% | | ୫,୦୦୦ |
| ଅଗ୍ରିମ ପ୍ରାପ୍ତ ବାର୍ଷିକ ଚାନ୍ଦା | | ୨,୩୦୦ | ପ୍ରାପ୍ୟ ସୁଧ | | ୨୨୫ |
| ବ୍ୟାୟାମଶାଳା ପାଣ୍ଠି | | ୧୦ ୦୦୦ | ପ୍ରାପ୍ୟ ବାର୍ଷିକ ଚାନ୍ଦା | | ୮୫୦ |
| ମୂଳଧନ ପାଣ୍ଠି | ୬୪,୨୦୦ | | ମହଜୁଦ ସାମଗ୍ରୀ | | ୫,୩୫୦ |
| ଯୁକ୍ତ : ବ୍ୟୟ ବାଦେ | | | ମହଜୁଦ ଷ୍ଟେସନାରି | | ୯୫୦ |
| ବଳକା ଆୟ | ୪,୩୭୫ | ୬୮,୫୭୫ | ୪% ସରକାରୀ ଋଣପତ୍ର | | |
| | | | (ଟ୬,୦୦୦) | | ୫,୬୦୦ |
| | | | ବ୍ୟାୟାମଶାଳା ଖର୍ଚ୍ଚ | | ୧୨,୫୦୦ |
| | | | ଆସବାବ | ୩୦,୦୦୦ | |
| | | | ବିଯୁକ୍ତ : ମୂଲ୍ୟହ୍ରାସ | ୩,୬୦୦ | ୨୬,୪୦୦ |
| | | | କାର ବାହନ | ୧୫,୦୦୦ | |
| | | | ଯୁକ୍ତ : କ୍ରୟ | ୫,୧୦୦ | |
| | | | | ୨୦,୧୦୦ | |
| | | | ବିଯୁକ୍ତ : ମୂଲ୍ୟ ହ୍ରାସ | ୬,୦୬୦ | ୧୪,୧୪୦ |
| | | ୮୨,୧୧୫ | | | ୮୨,୧୧୫ |

## ଅନୁଶୀଳନୀ

୧ । ପ୍ରାପ୍ତି ଓ ପ୍ରଦାନ ହିସାବ ଓ ଆୟ ଓ ବ୍ୟୟ ହିସାବ କି ପ୍ରକାର ପ୍ରତିଷ୍ଠାନରେ ବ୍ୟବହୃତ ହୁଏ ।

୨ । ପ୍ରାପ୍ତି ଓ ପ୍ରଦାନ ହିସାବ ଓ ଆୟ ଓ ବ୍ୟୟ ହିସାବ ମଧ୍ୟରେ ଥିବା ପାର୍ଥକ୍ୟ ଦର୍ଶାଅ ।

୩ । ପ୍ରାପ୍ତି ଓ ପ୍ରଦାନ ହିସାବରୁ ଆୟ ଓ ବ୍ୟୟ ହିସାବ କିପରି ପ୍ରସ୍ତୁତ କରାଯାଏ ତାହା ବୁଝାଅ ।

୪ । ଜଣୋର କ୍ଲବର ୧୯୬୨ ମସିହା ଡିସେମ୍ବର ୩୧ ତାରିଖରେ ଶେଷ ହେଉଥିବା ବର୍ଷର ପ୍ରାପ୍ତି ଓ ପ୍ରଦାନ ହିସାବ ନିମ୍ନରେ ପ୍ରଦତ୍ତ ହେଲା ।

## କିଶୋର କ୍ଲବର ପ୍ରାପ୍ତି ଓ ପ୍ରଦାନ ହିସାବ

| ପ୍ରାପ୍ତି | | ଟଙ୍କା | ପ୍ରଦାନ | | ଟଙ୍କା |
|---|---|---|---|---|---|
| ୧-୧-୧୯୭୨ ତାରିଖର | | | | | |
| ନଗଦ ତହବିଲ | | ୪୫୦ | ଆସବାବ କ୍ରୟ | | ୨,୫୦୦ |
| ବ୍ୟାଙ୍କରେ ଗଚ୍ଛିତ | | ୫,୨୦୦ | ପୁସ୍ତକ କ୍ରୟ | | ୨,୧୦୦ |
| ସଭ୍ୟ ଚାନ୍ଦା : | | | ବେତନ ୧୯୭୧ | ୫୦ | |
| ୧୯୭୧ | ୨୫୦ | | ୧୯୭୨ | ୧,୧୦୦ | ୧,୧୫୦ |
| ୧୯୭୨ | ୪,୮୦୦ | | | | |
| ୧୯୭୩ | ୩୫୦ | ୫,୪୦୦ | ଘରଭଡ଼ା | | ୯୦୦ |
| ପ୍ରବେଶିକା ଫିସ | | ୧୫୦ | କ୍ୟାରମ୍ ପ୍ରତିଯୋଗିତା ଖର୍ଚ୍ଚ | | ୨୬୦ |
| ଦାନ | | ୧,୫୦୦ | ବାର୍ଷିକ ଭୋଜି ବାବଦ ଖର୍ଚ୍ଚ | | ୮୮୦ |
| କ୍ୟାରମ ପ୍ରତିଯୋଗିତାର ଫିସ୍ | | ୪୩୦ | ଚା, କଫି ଇତ୍ୟାଦି ସକାଶେ ଖର୍ଚ୍ଚ | | ୩୭୦ |
| ଗ୍ରନ୍ଥାଳୟ ଚାନ୍ଦା | | ୨,୮୦୦ | | | |
| ତାସ ଖେଳରୁ ଆଦାୟ | | ୨୪୦ | ବାର୍ଷିକ ଅଧିବେଶନ ଖର୍ଚ୍ଚ | | ୨୫୦ |
| ବ୍ୟାଡମିଣ୍ଟନ ଖେଳରୁ ଆଦାୟ | | ୩୫୦ | ବିବିଧ ଖର୍ଚ୍ଚ | | ୧,୨୩୨ |
| ବାର୍ଷିକ ଭୋଜି ବାବଦ | | | ବ୍ୟାଡ଼୍‌ମିଣ୍ଟନ ର୍‌ୟାକେଟ କ୍ରୟ | | ୨୦୦ |
| ଆଦାୟ | | ୧,୨୫୦ | | | |
| ରଦ୍ଦି ଆସବାବ ବିକ୍ରି | | ୨୩୦ | ବ୍ୟାଙ୍କରେ ଗଚ୍ଛିତ | | ୮,୭୦୦ |
| ଚା, କଫି ଓ କୋକାକୋଲା | | | ମହଜୁଦ ନଗଦ ତହବିଲ୍ | | ୧,୦୦୮ |
| ବିକ୍ରିରୁ ଆଦାୟ | | ୫୫୦ | (୩୧-୧୨-୧୯୭୨) | | |
| | | ୧୮,୫୫୦ | | | ୧୮,୫୫୦ |

ନିମ୍ନଲିଖିତ କେତେକ ଅଧିକା ତଥ୍ୟ ଯୋଗାଇ ଦିଆଯାଇଛି । ସେ ସମସ୍ତ ବିଷୟ ବିଚାରକୁ ନେଇ ଏହି କ୍ଲବର ୧୯୭୨ ମସିହା ଡିସେମ୍ବର ୩୧ ତାରିଖରେ ଶେଷ ହେଉଥିବା ବର୍ଷର ଆୟ ଓ ବ୍ୟୟ ହିସାବ ପ୍ରସ୍ତୁତ କର ।

୧୯୭୨ ମସିହା ସକାଶେ ୪୮୦ ଟଙ୍କାର ବାର୍ଷିକ ଚାନ୍ଦା ବାକି ଅଛି । ଗ୍ରନ୍ଥାଳୟ ବାବଦ ୨୦୦ ଟଙ୍କା ଆଦାୟ ହୋଇ ନାହିଁ । ବାର୍ଷିକ ଭୋଜି ବାବଦ ମୋଟ ଖର୍ଚ୍ଚରୁ ୪୦ ଟଙ୍କା ଦିଆଯାଇ ନାହିଁ । ଡିସେମ୍ବର ମାସର ବେତନ ବାବଦ ୨୦୦ ଟଙ୍କା ବାକି ଅଛି । ୧୦୦ ଟଙ୍କା ହାରରେ ୩ ମାସର ଘରଭଡ଼ା ଦିଆଯାଇ ନାହିଁ । ବ୍ୟାଙ୍କରେ ଗଚ୍ଛିତ ୮,୭୦୦

ଟଙ୍କା ମଧ୍ୟରେ ୪,୦୦୦ ଟଙ୍କାର ସ୍ଥାୟୀ ଗଚ୍ଛିତ ଉଦ୍‌ବୃତ୍ତ ଅନ୍ତର୍ଭୁକ୍ତ ଅଛି । ଏହି ଟଙ୍କା ୧।୭।୧୯୭୬ ତାରିଖରେ ବ୍ୟାଙ୍କରେ ଜମା ଦିଆଯାଇଛି । ସୁଧର ବାର୍ଷିକ ହାର ୬% ।

( ଉତ୍ତର : ବ୍ୟୟ ବାଦେ ବଳକା ଆୟ ୬,୩୩୮ ଟଙ୍କା )

ନୋଟ : (୧) ଦାନ ବାବଦ ପ୍ରାପ୍ତ ଅର୍ଥକୁ ନିର୍ଦ୍ଦେଶ ଅଭାବରୁ ପୁଂଜିଗତ ଆୟ ବୋଲି ବିବେଚିତ ହୋଇନାହିଁ ।

(୨) ଆସବାବ, ପୁସ୍ତକ ଓ ବ୍ୟାଡ୍‌ମିଣ୍ଟନ ର୍‌ୟାକେଟ ସମ୍ପତ୍ତି ରୂପେ ବିବେଚିତ ହୋଇଛି । ମୂଲ୍ୟହ୍ରାସର ନିର୍ଦ୍ଦିଷ୍ଟ ହାର ଓ ପୂର୍ବ ବାକି ଅଜ୍ଞାତ ଥିବାରୁ ମୂଲ୍ୟ ହ୍ରାସ ବାଦ ଦିଆଯାଇ ନାହିଁ ।

(୩) ପ୍ରବେଶିକା ଫିସ୍‌କୁ ମଧ୍ୟ ନିର୍ଦ୍ଦେଶ ଅଭାବରୁ ଅଣ-ପୁଂଜି ଆୟ ବୋଲି ବିଚାର କରାଯାଇଛି ।

୫ । ୪ ନମ୍ବର ପ୍ରଶ୍ନ ବିବରଣୀ ସହିତ ନିମ୍ନଲିଖିତ ଅଧିକା କେତେକ ତଥ୍ୟ ଯୋଗାଇ ଦିଆଗଲି ।

(୧) କିଶୋର କ୍ଲବ୍‌ର ୧।୧।୧୯୭୬ ତାରିଖରେ ସମ୍ପତ୍ତିଗୁଡ଼ିକର ମୂଲ୍ୟ ନିମ୍ନପ୍ରକାର ଥିଲି :

ଆସବାବ ୫,୮୦୦ ଟଙ୍କା ; ପୁସ୍ତକ ୩,୪୦୦ ଟଙ୍କା, ବ୍ୟାଡ୍‌ମିଣ୍ଟନ ର୍‌ୟାକେଟ ୬୦୦ ଟଙ୍କା ।

(୨) ଆସବାବରୁ ୧୦%, ପୁସ୍ତକରୁ ୧୨% ଓ ବ୍ୟାଡ୍‌ମିଣ୍ଟନ୍ ର୍‌ୟାକେଟରୁ ୨୦% ହାରରେ ମୂଲ୍ୟହ୍ରାସ ବାଦ୍ ଦିଆଯିବ ।

(୩) ଦାନ ବାବଦ ପ୍ରାପ୍ତ ଅର୍ଥଦ୍ୱାରା ଗ୍ରନ୍ଥାଳୟ ପାଣ୍ଠି ଖୋଲାଯିବ ।

(୪) ପ୍ରବେଶିକା ଫିସ୍ ପୁଂଜିଗତ ଆୟ ରୂପେ ବିବେଚିତ ହେବ ।

ଉପରୋକ୍ତ ତଥ୍ୟଗୁଡ଼ିକ ବିଚାରକୁ ନେଇ ଏହି କ୍ଲବର ୧୯୭୬ ମସିହା ଡିସେମ୍ବର ୩୧ ତାରିଖରେ ଶେଷ ହେଉଥିବା ବର୍ଷର ସଂଶୋଧିତ ଆୟ ଓ ବ୍ୟୟ ହିସାବ ଏବଂ ସେହି ତାରିଖର ଉଦ୍‌ବୃତ୍ତ ପତ୍ର ପ୍ରସ୍ତୁତ କର ।

( ଉତ୍ତର : ବ୍ୟୟ ବାଦେ ବଳକା ଆୟ ୪,୧୬୯ ଟଙ୍କା ୧।୧।୧୯୭୬ ତାରିଖରେ ମୂଳଧନ ପାଣ୍ଠି ୧୫.୬୫୦ ଟଙ୍କା ଓ ୩୧ । ୧୨ । ୧୯୭୬ ତାରିଖ ଉଦ୍‌ବୃତ୍ତ ପତ୍ରର ମୋଟ ପରିମାଣ ୨୨,୩୫୯ ଟଙ୍କା )

୬ । ସିଟି କ୍ଲବ୍‌ର ୧୯୭୩ ମସିହା ମାର୍ଚ୍ଚ ୩୧ ତାରିଖରେ ଶେଷ ହେଉଥିବା ବର୍ଷର ପ୍ରାପ୍ତି ଓ ପ୍ରାଦନ ହିସାବ ପ୍ରଦତ୍ତ ହେଲା ।

| ପ୍ରାପ୍ତି | ଟଙ୍କା | ପ୍ରଦାନ | ଟଙ୍କା |
|---|---|---|---|
| ଆଦ୍ୟ ମହଜୁଦ ତହବିଲ ନଗଦ : | ୨୮୫ | ଘରଭଡ଼ା (୧୯୭୩-୭୪ ସକାଶେ | ୯୦୦ |
| ବ୍ୟାଙ୍କରେ ଗଚ୍ଛିତ | ୩,୫୦୦ | ୫୦ ଟଙ୍କା ଅଗ୍ରିମ ଦିଆ | |
| ସଭ୍ୟ ଚାନ୍ଦା ; | | ଯାଇଛି ) | |
| ୧୯୭୧-୭୨ | ୨୫୦ | ଇଲେକ୍‌ଟ୍ରିକ ଖର୍ଚ୍ଚ | ୩୦୦ |
| ୧୯୭୨-୭୩ | ୪,୮୦୦ | ଟେଲିଫୋନ ଖର୍ଚ୍ଚ | ୨୨୫ |
| ୧୯୭୩-୭୪ | ୩୪୦ | ବେତନ | ୬୦୦ |
| ପ୍ରବେଶିକା ଫିସ | ୫୦ | ଗ୍ରନ୍ଥାଗାର | ୮୦୦ |
| ସରକାରୀ ଋଣ ପତ୍ର ସୁଧ | ୧୦୦ | ସାଧାରଣ ଖର୍ଚ୍ଚ | ୧,୨୫୦ |
| ଦାନ | ୨,୦୦୦ | ଅନ୍ୟ ମହଜୁଦ ତହବିଲ : | |
| ହଲ ଭଡ଼ା | ୧୮୦ | ନଗଦ | ୧୧୫ |
| ପୁରୁଣା ଖବରକାଗଜ ବିକ୍ରି | ୧୫ | ବ୍ୟାଙ୍କରେ ଗଚ୍ଛିତ | ୭,୪୦୦ |
| | ୧୧,୫୭୦ | | ୧୧,୫୭୦ |

କେତେକ ଅଧିକା ତଥ୍ୟ ନିମ୍ନରେ ପ୍ରଦତ୍ତ ହେଲ :

(୧) କ୍ଲବର ୫,୦୦୦ ଟଙ୍କାର ସରକାରୀ ଋଣପତ୍ର ଅଛି, ସୁଧର ହାର ୭% ।

(୨) ୧।୪।୧୯୭୨ ତାରଖରେ ଗ୍ରନ୍ଥାଗାର ହିସାବର ଦାସ୍ତି ବାକି ୫,୫୦୦ ଟଙ୍କା ଥିଲା ।

(୩) ୧।୪।୧୯୭୨ ତାରିଖରେ କ୍ଲବର ସାଧାରଣ ପାଣ୍ଠିର ପରିମାଣ ୧୪,୪୩୫ ଟଙ୍କା ଥିଲା ।

(୪) ଦାନ ସ୍ୱରୂପ ପ୍ରାପ୍ତ ଅର୍ଥରେ ଏକ ପୁରସ୍କାର ପାଣ୍ଠି ଖୋଲଯିବ ।

(୫) ଜମି ଖଜଣା ବାବଦ ୩୫ ଟଙ୍କା ଓ ବେତନ ବାବଦ ୧୫୦ ଟଙ୍କା ଦିଆଯାଇ ନାହିଁ । ଗତ ବର୍ଷର ବେତନ ବାବଦ ୧୦୦ ଟଙ୍କା ଏ ବର୍ଷ ଦିଆ-ଯାଇଛି ।

(୬) ପ୍ରବେଶିକା ଫିସ୍ ଅ-ପୁଞ୍ଜି ଆୟ ରୂପେ ବିବେଚିତ ହେବ ।

(୭) ହଲ ଭଡା ବାବଦ ୧୨୦ ଟଙ୍କା ପ୍ରାପ୍ୟ ଅଛି ଓ ସଭ୍ୟ ଚାନ୍ଦା ବାବଦ ୪୨୦ ଟଙ୍କା ପ୍ରାପ୍ୟ ଅଛି ।

ଉପରୋକ୍ତ ବିବରଣୀରୁ ଏହି କ୍ଲବର ୧୯୭୩ ମସିହା ମାର୍ଚ୍ଚ ୩୧ ତାରିଖରେ ଶେଷ ହେଉଥିବା ବର୍ଷର ଆୟ ଓ ବ୍ୟୟ ହିସାବ ଓ ସେହି ତାରିଖର ଉଦ୍‌ବୃତ୍ତ ପତ୍ର ପ୍ରସ୍ତୁତ କର ।

( ଉତ୍ତର : ବ୍ୟୟ ବାଦେ ବଳକା ଆୟ ୨,୫୧୫ ଟଙ୍କା, ଉଦ୍‌ବୃତ୍ତ ପତ୍ରର ମୋଟ ପରିମାଣ ୧୯,୫୫୫ ଟଙ୍କା )

୭ । ମହାମାୟା କ୍ଲବର ୧୯୭୨ ମସିହା ଡିସେମ୍ବର ୩୧ ତାରିଖରେ ଶେଷ ହେଉଥିବା ବର୍ଷର ପ୍ରାପ୍ତି ଓ ପ୍ରଦାନ ହିସାବ ନିମ୍ନରେ ପ୍ରଦତ୍ତ ହେଲା ।

| ପ୍ରାପ୍ତି | | ଟଙ୍କା | ପ୍ରଦାନ | ଟଙ୍କା |
|---|---|---|---|---|
| ନଗଦ ତହବିଲ | | | ବେତନ | ୮୫୦ |
| (୧ । ୧ । ୧୯୭୨) | | ୪୩୩ | ଷ୍ଟେସନାରୀ | ୯୫ |
| ବ୍ୟାଙ୍କରେ ଗଚ୍ଛିତ | | | ଟିକସ | ୧୨୦ |
| (୧ । ୧ । ୧୯୭୨) | | ୩,୫୦୦ | ଟେଲିଫୋନ ପ୍ରଭାର | ୩୬୦ |
| ସଭ୍ୟ ଚାନ୍ଦା : | | | ବନ୍ଦଯୋଗ—୮% ହାରରେ | |
| ୧୯୭୧ | ୨୨୦ | | (୩୧ । ୧୨ । ୭୨) | |
| ୧୯୭୨ | ୮୪୦ | | ଅଙ୍କିତ ମୂଲ୍ୟ ୫୦୦ ଟଙ୍କା | ୫୦୦ |
| ୧୯୭୩ | ୧୫୦ | ୧,୨୧୦ | କ୍ରୀଡ଼ା ପ୍ରତିଯୋଗିତା ବ୍ୟୟ | ୧,୭୫୦ |
| କ୍ରୀଡ଼ା ପ୍ରତିଯୋଗିତା | | | ବିବିଧ ଖର୍ଚ୍ଚ | ୨୭୫ |
| ବାବଦ ଆୟ | | ୨,୮୦୦ | ନଗଦ ତହବିଲ | ୨୪୩ |
| | | | (୩୧ । ୧୨ । ୭୨) | |
| ସିନେମା ଚ୍ୟାରିଟି | | | ବ୍ୟାଙ୍କରେ ଗଚ୍ଛିତ | ୫,୦୦୦ |
| ସୋ'ରୁ ଲାଭ | | ୭୫୦ | (୩୧ । ୧୨ । ୭୨) | |
| ବନ୍ଦଯୋଗର ଲାଭାଂଶ | | ୫୦୦ | | |
| | | ୯,୧୯୩ | | ୯,୧୯୩ |

ନିମ୍ନରେ ଅନ୍ୟ କେତେକ ଅଧିକା ତଥ୍ୟ ପ୍ରଦତ୍ତ ହେଲା !

(୧) କ୍ଲବର ସଭ୍ୟ ସଂଖ୍ୟା ୪୧୦ ଏବଂ ପ୍ରତ୍ୟେକଙ୍କଠାରୁ ବାର୍ଷିକ ୩ ଟଙ୍କା ହାରରେ ସଭ୍ୟ ଚାନ୍ଦା ପ୍ରାପ୍ୟ । ୧୯୭୨ ମସିହା ଜାନୁୟାରୀ ୧ ତାରିଖରେ ୧୯୭୧ ମସିହାର ୨୪୦ ଟଙ୍କା ଚାନ୍ଦା ବାବଦ ବାକି ଥିଲା ।

(୨) ୧।୧।୭୨ରେ ଷ୍ଟେସନାରୀର ମହଜୁଦ ପରିମାଣ ୨୫ ଟଙ୍କା ଓ ୩୧।୧୨।୭୨ରେ ୩୫ ଟଙ୍କା ଥିଲା ।

(୩) ଟିକସର ବାର୍ଷିକ ଦେୟ ୧୨୦ ଟଙ୍କା ଓ ଏହା ୩୧ । ୩ । ୭୩ ତାରିଖ ସୁଦ୍ଧା ଦିଆଯାଇଛି ।

(୪) ମାସିକ ୩୦ ଟଙ୍କା ହାରରେ ୩ ମାସର ଟେଲିଫୋନ ପ୍ରଭାର ଅଗ୍ରିମ ଦିଆଯାଇଛି ।

(୫) ବିବିଧ ଖର୍ଚ୍ଚ ବାବଦ ୨୫ ଟଙ୍କାର ଗୋଟିଏ ବିଲ ୩୧ । ୧୨ । ୧୯୭୧ ତାରିଖରେ ବାକି ଥିଲା ।

(୬) ୩୧ । ୧୨ । ୭୧ ତାରିଖରେ କୋଠାଘରର ବହି ମୂଲ୍ୟ ୧୦,୦୦୦ ଟଙ୍କା, ଆସବାବର ବହି ମୂଲ୍ୟ ୫,୦୦୦ ଟଙ୍କା ଓ ବିନିଯୋଗର ମୂଲ୍ୟ ୮,୦୦୦ ଟଙ୍କା ଥିଲା, ଲଭ୍ୟାଂଶର ହାର ୮%, ଓ କୋଠା ଘରର ମୂଲ୍ୟରୁ ଶତକଡ଼ା ୧୦ ହାରରେ ଓ ଆସବାବ ମୂଲ୍ୟରୁ ଶତକଡ଼ା ୧୨ ହାରରେ ମୂଲ୍ୟ ହ୍ରାସ ବାଦ ଦିଆଯିବ ।

ମହାମାୟା କ୍ଲବର ୧୯୭୨ ମସିହା ଡିସେମ୍ବର ୩୧ ତାରିଖରେ ଶେଷ ହେଉଥିବା ବର୍ଷର ଆୟ ଓ ବ୍ୟୟ ହିସାବ ଏବଂ ସେହି ତାରିଖର ଉଦ୍‌ବୃତ୍ତ ପତ୍ର ପ୍ରସ୍ତୁତ କର ।

( ଉତ୍ତର : ୧ । ୧ । ୧୯୭୨ ତାରିଖର ମୂଳଧନ ପାଣ୍ଠି ୨୭,୧୭୩ ଟଙ୍କା ; ବ୍ୟୟ ବାଦେ ବଳକା ଆୟ ୫୨୫ ଟଙ୍କା ଓ ଉଦ୍‌ବୃତ୍ତ ପତ୍ରର ମୋଟ ପରିମାଣ ୨୭,୮୯୮ ଟଙ୍କା । )

୮ । କଲିକତା ଗ୍ରନ୍ଥାଗାରର ୧୯୪୩ ମସିହା ଜାନୁୟାରୀ ୧ ତାରିଖର ଉଦ୍‌ବୃତ୍ତ ପତ୍ର ନିମ୍ନରେ ପ୍ରଦତ୍ତ ହେଲା :

| ଦାୟ ଓ ଦେଣା | ଟଙ୍କା | ସଂପତ୍ତି ଓ ପାଉଣା | ଟଙ୍କା |
|---|---|---|---|
| ମୂଳଧନ ପାଣ୍ଠି | ୧,୫୦,୦୦୦ | କୋଠାଘର | ୫୦,୦୦୦ |
| ଖର୍ଚ୍ଚ ବାବଦ ଦେୟ | ୫,୦୦୦ | ଆସବାବ | ୫,୦୦୦ |
| | | ଗ୍ରନ୍ଥାଗାର | ୨୫,୦୦୦ |
| | | ବିନିଯୋଗ | ୫୦,୦୦୦ |
| | | ପ୍ରାପ୍ୟ ସଭ୍ୟଚାନ୍ଦା | ୨୦,୦୦୦ |
| | | ନଗଦ ତହବିଲ | ୫,୦୦୦ |
| | ୧,୫୫,୦୦୦ | | ୧,୫୫,୦୦୦ |

ଏହି ବର୍ଷର ଗ୍ରୋକଡ ବହିର ବିଶ୍ଳେଷଣ ନିମ୍ନରେ ପ୍ରଦତ୍ତ ହେଲା :

| ପ୍ରାପ୍ତି | ଟଙ୍କା | ପ୍ରଦାନ | ଟଙ୍କା |
|---|---|---|---|
| ସଭ୍ୟଚାନ୍ଦା ବାବଦ | ୭୫ ୦୦୦ | ବେତନ ବାବଦ | ୩,୭୦୦ |
| ଦାନ ବାବଦ | ୫୦,୦୦୦ | ପୁସ୍ତକ କ୍ରୟ ବାବଦ | ୪୦,୦୦୦ |
| ବିନିଯୋଗର ସୁଧ ବାବଦ | ୭୦୦ | ଘରଭଡ଼ା ଓ ଟିକସ | ୩ ୭୦୦ |
| ପୁରାତନ ଆସବାବ ବିକ୍ରି ବାବଦ | ୫୦୦ | ଦେଣା ଚୁକ୍ତି ବାବଦ | ୫ ୦୦୦ |
| ବକ୍ତୃତା ପ୍ରଭୃତିରୁ ପ୍ରାପ୍ତି ବାବଦ | ୮,୦୦୦ | ବୀମା ପ୍ରିମିୟମ ବାବଦ | ୧,୫୦୦ |
| | | ଛପେଇ ଓ ଷ୍ଟେସନାରୀ | ୪୫୦ |
| | | ଆସବାବ କ୍ରୟ ବାବଦ | ୭,୫୦୦ |
| | | ବିନିଯୋଗ ବାବଦ | ୭୫,୦୦୦ |
| | | ବିବିଧ ବ୍ୟୟ | ୪୫୦ |
| | | ଅନ୍ତ ମହଜୁଦ | ୨,୦୦୦ |

ନିମ୍ନଲିଖିତ ସମାଯୋଜନ ଆବଶ୍ୟକ :

(କ) ପ୍ରାପ୍ୟ ସଭ୍ୟ ଚାନ୍ଦାର ପରିମାଣ, ୧୫,୦୦୦ ଟଙ୍କା, (ଖ) ଖର୍ଚ୍ଚ ବାବଦ ଦେୟ ୭,୫୦୦ ଟଙ୍କା ; (ଗ) ବୀମା ପ୍ରିମିୟମ ୩୦୦ ଟଙ୍କା ଅଗ୍ରିମ ଦିଆଯାଇଛି ; (ଘ) କୋଠାଘର ମୂଲ୍ୟରୁ ଶତକଡ଼ା ୫ ହାରରେ ଗ୍ରନ୍ଥାଗାର ପୁସ୍ତକ ମୂଲ୍ୟରୁ ଶତକଡ଼ା ୧୦ ହାରରେ ଓ ବିନିଯୋଗ ପରିମାଣରୁ ଶତକଡ଼ା ୫ ହାରରେ ମୂଲ୍ୟ ହ୍ରାସ କରାଯିବ ।

୧୯୪୩ ମସିହା ଡିସେମ୍ବର ୩୧ ତାରିଖରେ ଶେଷ ହେଉଥିବା ବର୍ଷର ଆୟ ଓ ବ୍ୟୟ ହିସାବ ଏବଂ ସେହି ତାରିଖର ଉଦ୍ବୃତ୍ତ ପତ୍ର ପ୍ରସ୍ତୁତ କର ।

( C. U. B· Com Adv. 1944 )

(ଉତ୍ତର : ବ୍ୟୟ ବାଦେ ବଳକା ଆୟ ୪୬,୫୫୦ ଟଙ୍କା ଓ ଉଦ୍ବୃତ୍ତ ପତ୍ରର ମୋଟ ପରିମାଣ ୨୫,୪୫୦ ଟଙ୍କା)

୯ । ମହାନଦୀ କ୍ଲବର ୧୯୭୧ ମସିହା ଡିସେମ୍ବର ୩୧ ତାରିଖରେ ଶେଷ ହେଉଥିବା ବର୍ଷର ପ୍ରାପ୍ତି ଓ ପ୍ରଦାନ ହିସାବ ନିମ୍ନରେ ପ୍ରଦତ୍ତ ହେଲା ।

| ପ୍ରାପ୍ତି | ଟଙ୍କା | ପ୍ରଦାନ | ଟଙ୍କା |
|---|---|---|---|
| ଆଦ୍ୟ ମହଜୁଦ ନଗଦ | | ସୁଧ ବାବଦ | ୭,୫୦୦ |
| ତହବିଲ (୧-୧-୧୯୭୧) | ୧,୫୦୦ | ମରାମତି ଦ୍ରବ୍ୟାଦି ବାବଦ | ୪,୦୩୦ |
| ପ୍ରବେଶିକା ଫିସ ବାବଦ | ୨,୭୫୦ | ବିଲିଆର୍ଡ଼ ଖେଳରୁ ପ୍ରାପ୍ତ ଅର୍ଥ ବାବଦ | ୧୯,୫୦୦ |
| ସଭ୍ୟ ଚାନ୍ଦା ବାବଦ | | ମଜୁରି ବାବଦ | ୨୬,୭୫୦ |
| ୧୯୭୦ | ୧,୦୦୦ | ଷ୍ଟେସନାରି ଖର୍ଚ୍ଚ ବାବଦ | ୧୫,୩୨୦ |
| ୧୯୭୧ | ୮୪,୫୦୦ | ଘରଭଡ଼ା | ୨୬,୦୦୦ |
| ୧୯୭୨ | ୧,୫୦୦ | ଅନ୍ୟ ମହଜୁଦ | |
| ଲକର ଭଡ଼ା | ୨,୫୦୦ | ନଗଦ ତହବିଲ | |
| ବାର୍ଷିକ ଭୋଜି ସକାଶେ | | (୩୧-୧୨-୧୯୭୧) | ୧୧,୯୮୦ |
| ବିଶେଷ ଚାନ୍ଦା ବାବଦ | ୧୭,୨୫୦ | | |
| | ୧,୧୧,୦୦୦ | | ୧,୧୧,୦୦୦ |

ଘରଭଡ଼ା ବାବଦ ୬,୫୦୦ ଟଙ୍କା ୧୯୭୦ ମସିହା ସକାଶେ ଦିଆଯାଇଥିଲା ଏବଂ ୬,୫୦୦ ଟଙ୍କା ଦେୟ ଅଛି ; ଲକର ଭଡ଼ା ବାବଦ ୩୦୦ ଟଙ୍କା ୧୯୭୦ ମସିହା ସକାଶେ ମିଳିଛି ଏବଂ ଏ ବର୍ଷ ସକାଶେ ୫୫୦ ଟଙ୍କା ପ୍ରାପ୍ୟ ଅଛି । ୧,୫୬୦ ଟଙ୍କାର ଷ୍ଟେସନାରି ଖର୍ଚ୍ଚ ୧୯୭୦ ମସିହା ସକାଶେ ଦିଆଯାଇଛି ଏବଂ ୧,୮୨୦ ଟଙ୍କା ଏ ବର୍ଷ ସକାଶେ ଦେୟ ଅଛି ।

୧୯୭୧ ମସିହା ସକାଶେ ସଭ୍ୟଚାନ୍ଦା ବାବଦ ୨,୪୦୦ ଟଙ୍କା ପ୍ରାପ୍ୟ ଅଛି । ବାର୍ଷିକ ଭୋଜ ସକାଶେ ୨,୮୦୦ ଟଙ୍କାର ବିଶେଷ ଚାନ୍ଦା ପ୍ରାପ୍ୟ ଅଛି ।

ଉପରୋକ୍ତ ତଥ୍ୟରୁ ଏହି କ୍ଲବର ୧୯୭୧ ମସିହା ଡିସେମ୍ବର ୩୧ ତାରିଖରେ ଶେଷ ହେଉଥିବା ବର୍ଷର ଆୟ ଓ ବ୍ୟୟ ହିସାବ ଓ ସେହି ତାରିଖର ଉଦ୍‌ବୃତ୍ତ ପତ୍ର ପ୍ରସ୍ତୁତ କର ।

(S U. B. Com, Hons)

(ଉତ୍ତର ; ୧-୧-'୯୭' ତାରିଖରେ ନିବଦ୍ଧ ସମ୍ପତ୍ତିର ମୂଲ୍ୟ ୫,୨୬୦ ଟଙ୍କା ; ବ୍ୟୟ ବାଦେ ବଳକା ଆୟ ୧୩,୧୭୦ ଟଙ୍କା ଓ ଉଦ୍‌ବୃତ୍ତ ପତ୍ରର ମୋଟ ପରିମାଣ ୨୨,୯୧୦ ଟଙ୍କା )

୧୦ । ଅଳକା ବିଦ୍ୟାଳୟର ୧୯୭୩ ମସିହା ଡିସେମ୍ବର ୩୧ ତାରିଖର ରେଓୟା ମେଳ ନିମ୍ନରେ ପ୍ରଦତ୍ତ ହେଲା ।

| | ଦାୟୀ | ଦାତା |
|---|---|---|
| | ଟଙ୍କା | ଟଙ୍କା |
| ମୂଳଧନ ପାଣ୍ଠି | | ୧,୧୦,୦୦୦ |
| ଜମି ଓ କୋଠା | ୫୦,୦୦୦ | |
| ଆସବାବ ପତ୍ର | ୧୨,୦୦୦ | |
| ବିଦ୍ୟୁତ୍ ଆଲୋକର ସାଜ ସରଞ୍ଜାମ | ୧,୨୦୦ | |
| ଗ୍ରନ୍ଥାଗାର | ୮,୫୦୦ | |
| ବିନିଯୋଗ (ସରକାରୀ ୮ $\frac{୧}{୨}$ % ଋଣପତ୍ର) | ୫,୦୦୦ | |
| ପ୍ରଭିଡେଣ୍ଟ ଫଣ୍ଡ | | ୧୧,୦୦୦ |
| ପ୍ରବେଶିକା ଓ ସ୍ଥାନାନ୍ତର ଫିସ | | ୪୦୦ |
| ସାଧାରଣ ସଞ୍ଚିତ ପାଣ୍ଠି | | ୪,୦୦୦ |
| ଅଳକାପୁରୀ ସମବାୟ ବ୍ୟାଙ୍କରେ ସ୍ଥାୟୀ ଗଚ୍ଛିତ (ପ୍ରଭିଡେଣ୍ଟ ଫଣ୍ଡ) | ୧୧,୦୦୦ | |
| ଛାତ୍ରଙ୍କଠାରୁ ପ୍ରାପ୍ତ ଦରମା | | ୧୪,୫୫୦ |
| ଜୋରିମାନା | | ୧୨୦ |

| | | |
|---|---|---|
| ବାର୍ଷିକ ବିବିଧ ପ୍ରଭାର (Annual charges) | | ୮୯୦ |
| ସରକାରୀ ଅନୁଦାନ | | ୧,୫୦୦ |
| ଭଡ଼ା | | ୪୫୦ |
| ପ୍ରାପ୍ତ ସୁଧ | | ୨୨୫ |
| ଶିକ୍ଷକଙ୍କର ବେତନ | ୧୧,୮୦୦ | |
| ଛପେଇ ଓ ଷ୍ଟେସନାରୀ | ୬୦୦ | |
| କ୍ରୀଡ଼ା ଇତ୍ୟାଦି | ୫୪୦ | |
| ବକେୟା ଦରମା ( ପ୍ରାପ୍ତ ) | ୬୬୦ | |
| ଗବେଷଣାଗାର ବ୍ୟୟ | ୧୫୦ | |
| ପ୍ରଭିଡେଣ୍ଟ ଫଣ୍ଡକୁ ଆଂଶିକ ଦାନ | ୮୦୦ | |
| ପରୀକ୍ଷା ସଂକ୍ରାନ୍ତ ବ୍ୟୟ | ୨୩୦ | |
| ନଗଦ ତହବିଲ | ୩,୫୫ | |
| ବ୍ୟାଙ୍କରେ ଗଚ୍ଛିତ | ୩୬,୦୦୦ | |
| | ୧,୪୩,୧୩୫ | ୧,୪୩,୧୩୫ |

୩୧ । ୧୨ । ୧୯୭୩ ତାରିଖରେ ବକେୟା ଦରମାର ପରିମାଣ ୩,୦୦୦ ଟଙ୍କା ଥିଲା । ଡିସେମ୍ବର ମାସର ଶିକ୍ଷକଙ୍କ ବେତନ ବାବଦ ୮୦୦ ଟଙ୍କା ବାକି ଥିଲା । ଭଡ଼ା ବାବଦ ୧୫୦ ଟଙ୍କା ଡିସେମ୍ବର ୩୧ ତାରିଖ ସୁଦ୍ଧା ବାକି ଥିଲା ଏବଂ ୨୫ ଟଙ୍କାର ଭଡ଼ା ୧୯୭୪ ମସିହା ସକାଶେ ଅଗ୍ରିମ ମିଳିଥିଲା । ସରକାରୀ ଅନୁଦାନ ୧୫୦ ଟଙ୍କା ହାରରେ ଦୁଇ ମାସର ବାକି ଥିଲା । ଜମି ଓ କୋଠା ମୂଲ୍ୟରୁ ୧.୫% ହାରରେ, ଆସବାବ ପତ୍ରରୁ ୫% ହାରରେ, ପୁସ୍ତକ ମୂଲ୍ୟରୁ ୪% ହାରରେ ଓ ବିଦ୍ୟୁତ୍ ଆଲୋକ ସାଜସରଞ୍ଜାମରୁ ୧୦% ହାରରେ ମୂଲ୍ୟ ହ୍ରାସ ବାଦ ଦିଅ । ଏହା ଅନୁମାନ କରାଯାଇଛି ଯେ ବକେୟା ଦରମାର ୧୦% ଅାଦାୟ ହୋଇପାରିବ ନାହିଁ ।

ଉପରୋକ୍ତ ବିବରଣୀରୁ ଅଲକା ବିଦ୍ୟାଳୟର ୧୯୭୩ ମସିହା ଡିସେମ୍ବର ୩୧ ତାରିଖରେ ଶେଷ ହେଉଥିବା ବର୍ଷର ଆୟ ଓ ବ୍ୟୟ ହିସାବ ଏବଂ ସେହି ବର୍ଷର ଉଦ୍‌ବୃତ୍ତ ପତ୍ର ପ୍ରସ୍ତୁତ କର ।

(ଉତ୍ତର : ବ୍ୟୟ ବାଦେ ବଳକା ଆୟ, ୨,୯୪୦ ଟଙ୍କା ଉଦ୍‌ବୃତ୍ତ ପତ୍ରର ମୋଟ ପରିମାଣ ୧,୨୮,୭୭୫ ଟଙ୍କା )

୧୧ । ନିମ୍ନଲିଖିତ ବିବରଣୀ ବାଲେଶ୍ୱର ଅଫିସର୍ସ କ୍ଲବର ହିସାବ ଖାତାରୁ ଉଦ୍ଧୃତ କରାଯାଇଛି ।

## ୧୯୭୧ ମସିହା ଡିସେମ୍ବର ୩୧ ତାରିଖରେ ଶେଷ ହେଉଥିବା ବର୍ଷର ଆୟ ଓ ବ୍ୟୟ ହିସାବ

| ବ୍ୟୟ | ଟଙ୍କା | ଆୟ | ଟଙ୍କା |
|---|---|---|---|
| ବେତନ ବାବଦ | ୧,୨୦୦ | ସଭ୍ୟ ଚାନ୍ଦା ବାବଦ | ୧୨,୮୦୦ |
| ଜମିର ଟିକସ ବାବଦ | ୨୫୦ | ପ୍ରବେଶିକା ଫିସ ବାବଦ | ୧,୨୦୦ |
| ଛପେଇ ଓ ମନୋହାରୀ ବାବଦ | ୪୩୦ | ଘରଭଡ଼ା „ | ୪,୮୦୦ |
| ବିଜ୍ଞାପନ „ | ୧୫୦ | କ୍ରୀଡ଼ା ପ୍ରତିଯୋଗିତା ବାବଦ | ୪୩୦ |
| ସମୀକ୍ଷା ଫିସ „ | ୪୨୦ | | |
| ଅଗ୍ନିବୀମା ପ୍ରିମିୟମ „ | ୫୦୦ | | |
| କ୍ରୀଡ଼ା ସରଞ୍ଜାମ ମୂଲ୍ୟହ୍ରାସ „ | ୨,୦୦୦ | | |
| କୋଠାର ମୂଲ୍ୟ ହ୍ରାସ ବାବଦ | ୫୦୦ | | |
| ଆସବାବର ମୂଲ୍ୟ ହ୍ରାସ „ | ୬୦୦ | | |
| ବିବିଧ ବ୍ୟୟ | ୮୫୦ | | |
| ବ୍ୟୟ ବାଦ ବଳକା ଆୟ | ୧୨,୩୩୦ | | |
| | ୧୯,୨୩୦ | | ୧୯,୨୩୦ |

## ୧୯୭୧ ମସିହା ଡିସେମ୍ବର ୩୧ ତାରିଖରେ ଶେଷ ହେଉଥିବା ବର୍ଷର ପ୍ରାପ୍ତି ଓ ପ୍ରଦାନ ହିସାବ

| ପ୍ରାପ୍ତି | ଟଙ୍କା | ପ୍ରଦାନ | ଟଙ୍କା |
|---|---|---|---|
| ପୂର୍ବ ବାକି ବାବଦ | ୫,୪୦୦ | ବେତନ ବାବଦ | ୯୦୦ |
| ପ୍ରବେଶିକା ଫିସ୍ ବାବଦ | ୧,୨୦୦ | ଜମିର ଟିକସ ବାବଦ | ୨୯୦ |
| ସଭ୍ୟ ଚାନ୍ଦା „ | | ଛପେଇ ଓ ମନୋହାରୀ ବାବଦ | ୪୮୦ |
| ୧୯୭୦ | ୩୦୦ | ବିଜ୍ଞାପନ ବାବଦ | ୧୫୦ |
| ୧୯୭୧ | ୧୨,୩୦୦ | ଅଗ୍ନିବୀମା ପ୍ରିମିୟାମ ବାବଦ | ୬୦୦ |
| ୧୯୭୨ | ୪୦୦ | ବାକି „ | ୨୧,୯୧୦ |
| ଘରଭଡ଼ା „ | ୪,୩୦୦ | | |
| କ୍ରୀଡ଼ା ପ୍ରତିଯୋଗିତା ବାବଦ | ୪୩୦ | | |
| | ୨୪,୩୩୦ | | ୨୪,୩୩୦ |

୧୯୭୧ ମସିହା ଜାନୁୟାରି ୧ ତାରିଖରେ କ୍ଲବର ନିମ୍ନଲିଖିତ ସମ୍ପତ୍ତିଗୁଡ଼ିକ ବିଦ୍ୟମାନ ଥିଲ : କୋଠାଘର ୬୦,୦୦୦ ଟଙ୍କା, କ୍ରୀଡ଼ା ସରଞ୍ଜାମ ୧୦,୦୦୦ ଟଙ୍କା, ଆସବାବ ୪,୦୦୦ ଟଙ୍କା, ବକେୟା ସଭ୍ୟଚାନ୍ଦା ୪୫୦ ଟଙ୍କା ।

୧୯୭୧ ମସିହା ଡିସେମ୍ବର ୩୧ ତାରିଖର ଉଦ୍‌ବୃତ୍ତ ପତ୍ର ପ୍ରସ୍ତୁତ କର ।

( ଉତ୍ତର : ଉଦ୍‌ବୃତ୍ତ ପତ୍ରର ମୋଟ ପରିମାଣ ୫୪,୧୦୦ ଟଙ୍କା )

**ନୋଟ** (କ) ଛପେଇ ଓ ମନୋହାରୀ ବାବଦ ପ୍ରକୃତରେ ୪୮୦ ଟଙ୍କା ପ୍ରଦତ୍ତ ହୋଇଛି ; ଅଥଚ ଆୟ ଓ ବ୍ୟୟ ହିସାବରେ ଏ ବାବଦ ୪୩୦ ଟଙ୍କା ଏ ବର୍ଷର ବ୍ୟୟ ରୂପେ ଦିଆଯାଇଛି । ତେଣୁ ହୁଏତ ଏ ବାବଦ ୫୦ ଟଙ୍କା ୧୯୭୨ ସକାଶେ ଅଗ୍ରିମ ଦିଆଯାଇଛି ଅଥବା ୧୯୭୦ ମସିହାର ବାକି ବାବଦ ଦିଆଯାଇଛି । ଯେହେତୁ ଏହି ଜାତୀୟ ବ୍ୟୟ କ୍ୱଚିତ୍ ଅଗ୍ରିମ ଦିଆଯାଏ ; ତେଣୁ ଏହା ୧୯୭୦ ମସିହାର ବାକି ବାବଦ ଦିଆଯାଇଛି ବୋଲି ଅନୁମାନ କରାଯାଇଛି ।

(ଖ) ୧୯୭୧ ମସିହା ଜାନୁୟାରି ୧ ତାରିଖରେ ୧୯୭୦ ମସିହାର ବକେୟା ସଭ୍ୟ ଚାନ୍ଦାର ପରିମାଣ ୪୫୦ ଟଙ୍କା ଥିଲା । ମାତ୍ର ପ୍ରଦତ୍ତ ପ୍ରାପ୍ତି ଓ ପ୍ରଦାନ ହିସାବରେ ଦେଖାଯାଉଛି ଯେ ୧୯୭୦ ମସିହା ସକାଶେ ମାତ୍ର ୩୦୦ ଟଙ୍କାର ସଭ୍ୟ ଚାନ୍ଦା ମିଳିଛି । ତେଣୁ ଅବଶିଷ୍ଟ ବକେୟା ୧୫୦ ଟଙ୍କା ୧୯୭୨ ମସିହା ଡିସେମ୍ବର ୩୧ ତାରିଖର ଉଦ୍‌ବୃତ୍ତ ପତ୍ରରେ ଦର୍ଶାଇବାକୁ ପଡ଼ିବ ।

(ଗ) ପ୍ରଥମେ ୧।୧।୧୯୭୧ ତାରିଖରେ ଉଦ୍‌ବୃତ୍ତ ପତ୍ର ପ୍ରସ୍ତୁତ କରାଯାଇ ମୂଳଧନ ପାଣ୍ଠି ନିର୍ଣ୍ଣୀତ ହେବ । ଏ କ୍ଷେତ୍ରରେ ଏହାର ପରିମାଣ ୭୨,୧୦୦ ଟଙ୍କା ଥିଲା ବୋଲି ଏହି ଉଦ୍‌ବୃତ୍ତ ପତ୍ରରୁ ଜଣାପିବ ।

(ଘ) ଏହା କହିବା ବାହୁଲ୍ୟ ଯେ, ଯେଉଁ ବ୍ୟୟଗୁଡ଼ିକ ଆୟ ଓ ବ୍ୟୟ ହିସାବରେ ଅନ୍ତର୍ଭୁକ୍ତ ହୋଇଛି ମାତ୍ର ପ୍ରାପ୍ତି ଓ ପ୍ରଦାନ ହିସାବରେ ତାହାର ଉଲ୍ଲେଖ ନାହିଁ ସେହି ଖର୍ଚ୍ଚ ବାବଦ ଟଙ୍କା ଦିଆଯାଇ ନାହିଁ ବୋଲି ବୁଝିବାକୁ ହେବ ଓ ତାହାକୁ ୩୧।୧୨।୭୧ ତାରିଖର ଉଦ୍‌ବୃତ୍ତ ପତ୍ରରେ ଦାୟ ଓ ଦେଣା ପାର୍ଶ୍ୱରେ ଅନ୍ତର୍ଭୁକ୍ତ କରାଯିବ । ସମୀକ୍ଷା ଫିସ ଓ ବିବିଧ ବ୍ୟୟ ବିଷୟ ଏଠାରେ ଉଦାହରଣ ସ୍ୱରୂପ ଉଲ୍ଲେଖ କରାଯାଇ ପାରେ ।

୧୨ । ଟ୍ୟାଲସ୍ ଓ ଗିବନସ୍ ଅଂଶୀଦାର ରୂପେ ଗୋଟିଏ ବିଦ୍ୟାଳୟ ପ୍ରତିଷ୍ଠା କରି ପରିଚାଳନା କରନ୍ତି ; ସେମାନେ ଲାଭର ଯଥାକ୍ରମେ ଦୁଇ ତୃତୀୟାଂଶ ଓ ଏକ-ତୃତୀୟାଂଶ ଭୋଗ କରନ୍ତି ।

ତାଙ୍କର ୧୯୫୧ ମସିହା ଜୁଲାଇ ୩୧ ତାରିଖର ଉଦ୍‌ବର୍ତ୍ତ ପତ୍ର ନିମ୍ନରେ ପ୍ରଦତ୍ତ ହେଲା :

| | | ଟଙ୍କା | | | | ଟଙ୍କା |
|---|---|---|---|---|---|---|
| ମୂଳଧନ ହିସାବ : | | | | ଆସବାବ ପତ୍ର | | ୧,୩୦୦ |
| ଟ୍ୟାଲସ | ୧୦,୪୦୦ | | | ମହଜୁଦ ସାମଗ୍ରୀ : | | |
| ଶିବନସ୍ | ୫,୦୩୦ | ୧୫,୪୩୦ | | ଖାଦ୍ୟ ସାମଗ୍ରୀ | ୩୦୦ | |
| ମହାଜନ : | | | | ଜାଳେଣି | ୫୦୦ | ୮୦୦ |
| ପୁରାତନ ଛାତ୍ରଙ୍କ କ୍ଲବ | ୪୦ | | | ୧୯୫୧ ମସିହା ଗ୍ରୀଷ୍ମକାଳରେ ଶେଷ ହେଉଥିବା ଶିକ୍ଷାକାଳ ପକାଶେ ପ୍ରାପ୍ୟ ଅତିରିକ୍ତ | | |
| ଗ୍ୟାସ | ୨୫୦ | ୨୯୦ | | ସଭ୍ୟ ଶୁଳ୍କ | | ୩,୪୨୦ |
| | | | | ବ୍ୟାଙ୍କରେ ଗଚ୍ଛିତ | | ୧୦,୨୦୦ |
| | | ୧୫,୭୨୦ | | | | ୧୫,୭୨୦ |

ନିମ୍ନରେ ଛାତ୍ରଙ୍କ ଫିସ୍ ବାବଦର ସଂକ୍ଷିପ୍ତ ବିବରଣୀ ପ୍ରଦତ୍ତ ହେଲା :

| | ଶୀତକାଳୀନ ଶିକ୍ଷାଦାନ କାଳ ୧୯୫୧ | ବସନ୍ତକାଳୀନ ଶିକ୍ଷାଦାନ କାଳ ୧୯୫୨ | ଗ୍ରୀଷ୍ମକାଳୀନ ଶିକ୍ଷାଦାନ କାଳ ୧୯୫୨ |
|---|---|---|---|
| | ଟଙ୍କା | ଟଙ୍କା | ଟଙ୍କା |
| ଛାତ୍ରଙ୍କଠାରୁ ପ୍ରାପ୍ତ ଫିସ୍ | ୨୦,୨୧୦ | ୨୦,୮୭୦ | ୨୦,୯୦୦ |
| ପୂର୍ବବର୍ତ୍ତୀ ଶିକ୍ଷାକାଳ ପକାଶେ ପ୍ରାପ୍ତ ଅତିରିକ୍ତ ସଭ୍ୟଶୁଳ୍କ | ୩,୪୨୦ | ୨,୯୮୦ | ୩,୦୭୦ |
| ପୁରାତନ ଛାତ୍ରଙ୍କ କ୍ଲବ | ୨୨୦ | ୫୦ | — |

୧୯୫୨ ମସିହା ଜୁଲାଇ ୩୧ ତାରିଖରେ ଶେଷ ହେଉଥିବା ବର୍ଷର ରେକର୍ଡ଼ ବହିର ସଂକ୍ଷିପ୍ତ ସାର ନିମ୍ନରେ ପ୍ରଦତ୍ତ ହେଲା :

| | ଟଙ୍କା | | ଟଙ୍କା |
|---|---|---|---|
| ପୂର୍ବ ବାକି ବାବଦ | ୧୦,୨୦୦ | ଖାଦ୍ୟ | ୧୩,୬୦୦ |
| ଛାତ୍ରଙ୍କର ପିତାମାତାଙ୍କ-ଠାରୁ ପ୍ରାପ୍ତ | ୭୨,୧୬୦ | ବେତନ ଓ ମଜୁରି | ୧,୭୬୦ |
| | | ଛାତ୍ରପ ବାବଦ ଖର୍ଚ୍ଚ | ୫,୨୦୦ |
| | | ମରାମତି | ୧,୬୯୦ |
| | | ମନୋହାରୀ ଓ ଡାକ ଟିକଟ | ୧,୭୦୦ |
| | | ବିବିଧ ଖର୍ଚ୍ଚ | ୬,୨୦୦ |
| | | ପୁରାତନ ଛାତ୍ରଙ୍କ କ୍ଲବ | ୨୯୦ |
| | | ଅତିରିକ୍ତ ପାଠ ଦାନ ସକାଶେ ଛାତ୍ରଙ୍କର ପିତାମାତାଙ୍କଠାରୁ ପ୍ରାପ୍ୟ ଅର୍ଥ ବାବଦ ଖର୍ଚ୍ଚ | ୯,୧୦୦ |
| | | ଋଣ : ଟ୍ୟାକ୍ସ | ୧୩,୦୦୦ |
| | | ବିଜନେସ୍ | ୫,୦୦୦ |
| | | ବାକି ରହିଲା | ୬,୮୨୦ |
| | ୮୨,୩୬୦ | | ୮୨,୩୬୦ |

୧୯୫୨ ମସିହା ଜୁଲାଇ ୩୧ ତାରିଖରେ ମହଜୁଦ ଖାଦ୍ୟ ସାମଗ୍ରୀର ପରିମାଣ ୪୦୦ ଟଙ୍କା ଓ ଜାଳେଣୀର ପରିମାଣ ୩୫୦ ଟଙ୍କା ଥିଲା ଓ ଗ୍ୟାସ୍ ବାବଦ ୩୧୦ ଟଙ୍କା ଦେୟ ଥିଲା ।

ନିମ୍ନଲିଖିତ ତଥ୍ୟଗୁଡ଼ିକ ମଧ୍ୟ ପ୍ରାସଙ୍ଗିକ :

(୧) ପ୍ରତ୍ୟେକ ଶିକ୍ଷା ଦାନ କାଳର ପ୍ରାରମ୍ଭରେ ହିସାବ ପ୍ରସ୍ତୁତ କରାଯାଏ ଏବଂ କେବଳ ୨୪୦ ଟଙ୍କା ବ୍ୟତୀତ ଅନ୍ୟ ସମସ୍ତ ପ୍ରାପ୍ୟ ଟଙ୍କା ୧୯୫୨ ମସିହା ଜୁଲାଇ ୩୧ ତାରିଖ ସୁଦ୍ଧା ଆଦାୟ ହୋଇଥିଲା ଏବଂ ଉଲ୍ଲିଖିତ ୨୪୦ ଟଙ୍କା ଆଦାୟ ହୋଇପାରିବ ନାହିଁ ବୋଲି ହିସାବରୁ ବାଦ୍ ଦିଆଯିବା ସକାଶେ ସ୍ଥିର ହୋଇଥିଲା ।

(୨) ବିଦ୍ୟାଳୟର ଶିକ୍ଷା ଶେଷ କରିବା ପରେ ଯଦି କୌଣସି ଛାତ୍ର ପୁରାତନ ଛାତ୍ରଙ୍କ କ୍ଲବ୍‌ରେ ଯୋଗ ଦେବା ପାଇଁ ଇଚ୍ଛା କରନ୍ତି ତାହା ହେଲେ ତାଙ୍କଠାରୁ

ପ୍ରାପ୍ୟ ଗୃହ୍ନା ଅତିରିକ୍ତ ଆୟ ରୂପେ ହିସାବରେ ଅନ୍ତର୍ଭୁକ୍ତ କରାଯାଏ ଏବଂ ସେହି ଗୃହ୍ନା ଆଦାୟ ହେଲେ ତାହା କ୍ଲବକୁ ଦିଆଯାଏ ।

(୩) ୧୯୫୬ ମସିହା ଗ୍ରୀଷ୍ମକାଳୀନ ଶିକ୍ଷାଦାନ କାଳ ସମ୍ପର୍କରେ ଅତିରିକ୍ତ ଆୟ ୪,୦୨୦ ଟଙ୍କା ଥିଲା ।

ଅଂଶୀଦାରମାନେ ସମ୍ମତ ହୋଇଥିଲେ ଯେ :

(କ) ବିଦ୍ୟାଳୟ ପ୍ରତିଷ୍ଠିତ ହୋଇଥିବା ଗୃହ ଓ ତତ୍‌ସଂଲଗ୍ନ ଜମି ଟ୍ୟାଲିସ୍‌ଙ୍କର ହୋଇଥିବାରୁ ତାଙ୍କର ହିସାବକୁ ବାର୍ଷିକ ଭଡ଼ା ବାବଦ ୩,୦୦୦ ଟଙ୍କା ସକାଶେ ଦାଖଲ କରାଯିବ ।

(ଖ) ଟ୍ୟାଲିସ୍‌ଙ୍କର ଗୋଟିଏ ପୁଅ ଏହି ବିଦ୍ୟାଳୟର ଜଣେ ଛାତ୍ର । ତାଙ୍କଠାରୁ ଏ ବାବଦ ବର୍ଷକ ସକାଶେ ୭୦୦ ଟଙ୍କା ଆଦାୟ କରାଯିବ । (ଆଦାୟ ହୋଇଥିବା ଫିସ୍ ବାବଦରେ ଏହି ଫିସ୍ ଅନ୍ତର୍ଭୁକ୍ତ ହୋଇନାହିଁ ।)

(ଗ) ଶ୍ରୀମତୀ ଶିବନ୍‌ସ୍ ସମ୍ପାଦକାଙ୍କ କାର୍ଯ୍ୟ ନିର୍ବାହ କରୁଥିବାରୁ ତାଙ୍କ ସକାଶେ ୧,୦୦୦ ଟଙ୍କା ପାରିଶ୍ରମିକ ସ୍ୱରୂପ ବ୍ୟବସ୍ଥା କରାଯିବ ।

(ଘ) ୭୦୦ ଟଙ୍କା ମୂଲ୍ୟରେ ଆଳୁର ଗୋଟିଏ ଛଡ଼ାଇବା ଯନ୍ତ୍ର କ୍ରୟ କରାଯାଇ ମରାମତି ହିସାବ ଅନ୍ତର୍ଭୁକ୍ତ ହୋଇଛି । ତାହା ପୁଞ୍ଜିକାଳୀୟ ବ୍ୟୟ ବୋଲି ପରିଗଣିତ ହୋଇ ଆସବାବ ପତ୍ର ହିସାବରେ ଅନ୍ତର୍ଭୁକ୍ତ କରାଯିବ ।

(ଙ) ୧୯୫୬ ମସିହା ଜୁଲାଇ ୩୧ ତାରିଖରେ ଆସବାବ ପତ୍ରର ବହି ମୂଲ୍ୟରୁ ଶତକଡ଼ା ୧୦ ହାରରେ ମୂଲ୍ୟ ହ୍ରାସ ବାଦ୍ ଦିଆଯିବ ।

(ଚ) ଶ୍ରୀ ଟର୍ଲି ଏହି ବିଦ୍ୟାଳୟର ପ୍ରଧାନ ଶିକ୍ଷକ । ସେ ନିଟ୍ ଲାଭର ୫% କମିସନ୍ ସ୍ୱରୂପ ପାଇବେ । ତାଙ୍କୁ କମିସନ୍ ଦିଆଯିବା ପୂର୍ବରୁ ନିଟ୍ ଲାଭ ଯାହା ହେବ, ସେହି ପରିମାଣ ଉପରେ ଏହି କମିସନ୍ ଧାର୍ଯ୍ୟ କରାଯିବ । ୧୯୫୬ ମସିହା ଜୁଲାଇ ୩୧ ତାରିଖରେ ଶେଷ ହେଉଥିବା ବର୍ଷର ଆୟ ଓ ବ୍ୟୟ ହିସାବ ଏବଂ ସେହି ତାରିଖର ଉଦ୍‌ବୃତ୍ତ ପତ୍ର ପ୍ରସ୍ତୁତ କର ।

(ଉତ୍ତର : ନିଟ୍ ଲାଭ ୧୬,୫୪୦ ଟଙ୍କା ଓ ଉଦ୍‌ବୃତ୍ତ ପତ୍ରର ମୋଟ ପରିମାଣ ୧୪,୩୪୮ ଟଙ୍କା)

## ଦଶମ ପରିଚ୍ଛେଦ

# ଏକ ଲିଖନ ପଦ୍ଧତି

( Single Entry )

ଏକ ଲିଖନ ପଦ୍ଧତି ନାମରେ ଯେଉଁ ହିସାବ ରକ୍ଷଣ ପ୍ରଣାଳୀ କେତେକ ବ୍ୟବସାୟ ପ୍ରତିଷ୍ଠାନରେ ପ୍ରଚଳିତ ଥିବାର ପରିଲକ୍ଷିତ ହୁଏ ତାହା ପ୍ରକୃତରେ ଏକ ପଦ୍ଧତି ପଦବାଚ୍ୟ ନୁହେଁ । ଦ୍ୱି ଲିଖନ ପଦ୍ଧତି ଯେପରି କେତେକ ବୈଜ୍ଞାନିକ ନୀତି ଉପରେ ପ୍ରତିଷ୍ଠିତ ଏକ ଲିଖନ ହିସାବ ରକ୍ଷଣରେ ତାହା ଦେଖାଯାଏ ନାହିଁ । ଏହାର କୌଣସି ନିର୍ଦ୍ଦିଷ୍ଟ ନିୟମ କାନୁନ ନାହିଁ । ଏକ ନିର୍ଦ୍ଦିଷ୍ଟ ନୀତି ବା ନିୟମର ଅଭାବ ହେତୁ ଏପରି ହିସାବ ରକ୍ଷଣ ପ୍ରଣାଳୀରେ ବହୁ ବିଭିନ୍ନତା ଓ ପାର୍ଥକ୍ୟ ପରିଦୃଷ୍ଟ ହୁଏ । କୌଣସି ପ୍ରତିଷ୍ଠାନ କେବଳ ବ୍ୟକ୍ତିକ ହିସାବ ( Personal A/c ) ରଖନ୍ତି, ଅନ୍ୟ କେତେକ ପ୍ରତିଷ୍ଠାନ ବ୍ୟକ୍ତିକ ହିସାବ ଓ ରୋକଡ଼ ବହି ରଖନ୍ତି । ସାଧାରଣତଃ ଏକଲିଖନ ପ୍ରଣାଳୀ ଅନୁସରଣ କରୁଥିବା ପ୍ରତିଷ୍ଠାନଗୁଡିକ କେବଳ ରୋକଡ଼ ବହି ଓ ବ୍ୟକ୍ତିକ ହିସାବ ରଖନ୍ତି ।

ଏହାର ବୈଶିଷ୍ଟ୍ୟ ହେଲା ଏହି ଯେ ଯେତେବେଳେ କୌଣସି ଗୋଟିଏ ବ୍ୟାବସାୟିକ କାରବାର ବା ଦେଣ ନେଣ ଘଟେ ସେତେବେଳେ ଦୁଇ ପକ୍ଷଙ୍କ ହିସାବ ଲିପିବଦ୍ଧ ନ ହୋଇ କେବଳ ଗୋଟିଏ ପକ୍ଷଙ୍କ ହିସାବ ଲିପିବଦ୍ଧ କରାଯାଏ । ଉଦାହରଣ ସ୍ୱରୂପ ମନେ କର ଯେ ଗୋଟିଏ ବ୍ୟବସାୟୀ ୧୦୦ ଟଙ୍କା ମୂଲ୍ୟର ପଣ୍ୟ କ୍ରୟ କଲେ । ଦ୍ୱି ଲିଖନ ହିସାବ ପଦ୍ଧତି ଅନୁଯାୟୀ ପଣ୍ୟ ହିସାବକୁ ଦାୟୀ କରାଯାଇ ନଗଦ ତହବିଲ ହିସାବକୁ ଦାତା କରାଯାଏ । କିନ୍ତୁ ଏକ ଲିଖନ ପ୍ରଣାଳୀରେ କେବଳ ରୋକଡ଼ ବହିରେ ପଣ୍ୟ କ୍ରୟ ବାବଦ ୧୦୦ ଟଙ୍କାର ଖର୍ଚ୍ଚ ଲିପିବଦ୍ଧ କରାଯିବ । ଯେହେତୁ କୌଣସି ଖତିୟାନ ହିସାବ ରଖାଯାଏ ନାହିଁ ତେଣୁ ପଣ୍ୟ ହିସାବ ଖୋଲାଯାଇ ତାହାକୁ ଦାୟୀ କରାଯାଏ ନାହିଁ ।

ସେହିପରି ଏଥିରେ ଆୟ ବ୍ୟୟସୂଚକ ହିସାବର କୌଣସି ସ୍ଥାନ ନାହିଁ । ଯେପରି ମନେକର ଯେ ବ୍ୟବସାୟୀ ମଜୁରି ବାବଦ ୫ ଟଙ୍କା ବ୍ୟୟ କଲେ । ଏଠାରେ ଏହି ବିଷୟ କେବଳ ରୋକଡ଼ ବହିର ଖର୍ଚ୍ଚ ପାର୍ଶ୍ୱରେ ଲେଖାଯିବ । ମଜୁରି ହିସାବ ଖୋଲାଯାଇ ତାହାକୁ ୫ ଟଙ୍କା ସକାଶେ ଦାୟୀ କରାଯିବ ନାହିଁ । ଅର୍ଥାତ୍ ଗୋଟିଏ ନେଣ ଦେଣ ଦୁଇଟି ହିସାବରେ ଲିପିବଦ୍ଧ କରାନଯାଇ କେବଳ ଗୋଟିଏ ହିସାବରେ ଲିପିବଦ୍ଧ କରାଯାଏ । ଅନ୍ୟ ଭାଷାରେ କହିଲେ, ଗୋଟିଏ ନେଣ ଦେଣ ସମ୍ପୃକ୍ତ ଅର୍ଥ ଦୁଇଥର ଲେଖା ନ ଯାଇ କେବଳ ଥରେ ଲେଖାଯାଏ । ସୁତରାଂ ଦେଖାଯାଉଛି ଯେ, ଅବ୍ୟକ୍ତିକ ହିସାବ (Impersonal A/c) ମଧ୍ୟରୁ କେବଳ ରୋକଡ଼ ବହି ଖୋଲାଯାଏ କିନ୍ତୁ ଅନ୍ୟ କୌଣସି ବସ୍ତୁସୂଚକ ହିସାବ (Real A/c) ଖୋଲାଯାଏ ନାହିଁ । ସେହିପରି କୌଣସି ଆୟ ବ୍ୟୟ ସୂଚକ ହିସାବ ମଧ୍ୟ ଖୋଲାଯାଏ ନାହିଁ । ତେଣୁ ଏପରି ହିସାବ ରକ୍ଷଣରେ ନିମ୍ନଲିଖିତ ଅସୁବିଧା ଭୋଗ କରିବାକୁ ପଡ଼େ ।

(୧) ଏକ-ଲିଖନ ହିସାବ ପ୍ରଣାଳୀରେ କୌଣସି ନେଣ ଦେଣ ଘଟିଲେ ତାହା କେବଳ ଗୋଟିଏ ହିସାବରେ ଲିପିବଦ୍ଧ କରାଯାଏ । ତେଣୁ ଦ୍ୱିଲିଖନ ହିସାବ ପଦ୍ଧତିରେ ପ୍ରତ୍ୟେକ ନେଣ ଦେଣ ଦୁଇଟି ହିସାବରେ ଲିପିବଦ୍ଧ କରାଯାଉଥିବାରୁ ଯେପରି ରେଓ୍ୱାମେଲ ବା ସନ୍ତୁଳନ ପତ୍ର ପ୍ରସ୍ତୁତ କରାଯାଇପାରେ, ଏ କ୍ଷେତ୍ରରେ ତାହା ସମ୍ଭବ ହୁଏ ନାହିଁ । ଫଳତଃ ନେଣଦେଣଗୁଡ଼ିକ ଯଥାଯଥ ଭାବରେ ଲିପିବଦ୍ଧ କରାଯାଇଛି କି ନାହିଁ ତାହା ଯାଞ୍ଚ କରାଯାଇ ପାରେ ନାହିଁ ।

(୨) ଏହି ପ୍ରଣାଳୀରେ ନାମିକ ବା ଆୟ ବ୍ୟୟ ସୂଚକ ହିସାବ ଖତିୟାନରେ ଲେଖାଯାଉନଥିବାରୁ ମୋଟ ଓ ନିଟ୍ ଲାଭ ଓ କ୍ଷତି ହିସାବ ପ୍ରସ୍ତୁତ କରାଯାଇପାରେ ନାହିଁ । ଅବଶ୍ୟ ଅନ୍ୟ ଉପାୟରେ ଲାଭ ବା କ୍ଷତି ନିର୍ଣ୍ଣୟ କରାଯାଇପାରେ (ଯାହା ପରେ ଆଲୋଚିତ ହେବ) ସତ କିନ୍ତୁ ତାହା ନିର୍ଭରଯୋଗ୍ୟ ହୁଏ ନାହିଁ ।

(୩) ଯେହେତୁ ରୋକଡ଼ ବହି ବ୍ୟତୀତ ଅନ୍ୟ କୌଣସି ବସ୍ତୁସୂଚକ ହିସାବ ଖୋଲା ଯାଏ ନାହିଁ, ତେଣୁ ଯେଉଁ ପ୍ରତିଷ୍ଠାନ ଏକ ଲିଖନ ହିସାବ ପ୍ରଣାଳୀ ଅନୁସରଣ କରେ ତାହାର ଉଦ୍‌ବୃତ୍ତ ପତ୍ର ପ୍ରସ୍ତୁତ କରାଯାଇପାରେ ନାହିଁ । ସୁତରାଂ ଏହି ପ୍ରତିଷ୍ଠାନର ଆର୍ଥିକ ଅବସ୍ଥା ଜାଣିବା କଷ୍ଟକର ହୁଏ । ଏପରି ପ୍ରତିଷ୍ଠାନରେ ଏକ ଆର୍ଥିକ ଅବସ୍ଥାର ବିବରଣୀ ପ୍ରସ୍ତୁତ କରାଯାଏ, କିନ୍ତୁ ଏହାର ଅଧିକାଂଶ ତଥ୍ୟ ବ୍ୟବସାୟୀଙ୍କ ସ୍ମୃତିରୁ ଉଦ୍ଧାର କରାଯାଉଥିବାରୁ ଏହା ନିର୍ଭୁଲ ଅବସ୍ଥା ଜଣାଇ ପାରେ ନାହିଁ ଏବଂ ଏହା ଉପରେ ବିଶ୍ୱାସ ସ୍ଥାପନ କରିବା କଷ୍ଟକର ହୁଏ ।

(୪) ଆୟ ଓ ବ୍ୟୟର କୌଣସି ଖତିୟାନ ହିସାବ ଲେଖାଯାଉନଥିବାରୁ ଗୋଟିଏ ହିସାବ ବର୍ଷର ଆୟ ଓ ବ୍ୟୟକୁ ପୂର୍ବବର୍ତ୍ତୀ ହିସାବ ବର୍ଷ ବା ବର୍ଷମାନଙ୍କର ଆୟ ଓ ବ୍ୟୟ ସହିତ ତୁଳନା କରିବା ସମ୍ଭବ ହୁଏ ନାହିଁ ।

(୫) ଏପରି ହିସାବ ପ୍ରଣାଳୀ ଅନୁସରଣ କରୁଥିବା ବ୍ୟବସାୟର ସ୍ୱତ୍ୱାଧିକାରୀ ଅବସ୍ଥା ଗୃପରୁ ଯଦି ବ୍ୟବସାୟଟି ବିକ୍ରୟ କରିବାକୁ ଇଚ୍ଛା କରନ୍ତି ତାହା ହେଲେ ବିଭିନ୍ନ ସମ୍ପତ୍ତିଗୁଡ଼ିକର ମୂଲ୍ୟାଙ୍କନ କରିବା ଏବଂ ବିଶେଷତଃ ସୁନାମର ମୂଲ୍ୟାଙ୍କନ କରିବା ଅତୀବ କଷ୍ଟକର ହୁଏ ।

(୬) ଯେହେତୁ ଏହି ହିସାବ ପ୍ରଣାଳୀରେ ହିସାବଗୁଡ଼ିକ ବୈଜ୍ଞାନିକ ଉପାୟରେ ଲେଖାଯାଏ ନାହିଁ ତେଣୁ ବିକ୍ରୟ କର, ଆୟ କର, ବ୍ୟାଙ୍କର କର୍ତ୍ତୃପକ୍ଷମାନଙ୍କ ପକ୍ଷରେ ଏହି ହିସାବ ଗ୍ରହଣୀୟ ହୁଏ ନାହିଁ ।

ଏହା କହିବା ବାହୁଲ୍ୟ ଯେ, ଉପରୋକ୍ତ ଅସୁବିଧାଗୁଡ଼ିକ ହେତୁ ଏକଲିଖନ ପ୍ରଣାଳୀ ଅନୁଯାୟୀ ହିସାବ ରକ୍ଷଣ ଆଦୌ ବାଞ୍ଛନୀୟ ନୁହେଁ । ତେଣୁ କେଉଁ ପଦ୍ଧତି ଅନୁସରଣ କରିବା ଆବଶ୍ୟକ ଏହି ପ୍ରଶ୍ନ ଉଠିଲେ ଏହାର ନିଶ୍ଚିତ ଓ ଏକମାତ୍ର ଉତ୍ତର ହେଉଛି, ଦ୍ୱିଲିଖନ ହିସାବ ପଦ୍ଧତି ଅନୁଯାୟୀ ହିସାବ ରକ୍ଷଣ । ଏହି ପଦ୍ଧତି ବ୍ୟୟସାପେକ୍ଷ ହୋଇପାରେ, କିନ୍ତୁ ଯେହେତୁ ଏହା ବୈଜ୍ଞାନିକ ଭିତ୍ତି ଉପରେ ପ୍ରତିଷ୍ଠିତ ଏବଂ ଯେ କୌଣସି ସମୟରେ ବ୍ୟବସାୟର ପ୍ରକୃତ ଆର୍ଥିକ ଅବସ୍ଥା ନିର୍ଭୁଲ ଭାବରେ ଜଣାଇବାକୁ ସକ୍ଷମ ହୁଏ, ତେଣୁ ଏହି ପଦ୍ଧତି ପ୍ରତ୍ୟେକ ବ୍ୟବସାୟ ପ୍ରତିଷ୍ଠାନ ସକାଶେ ସୁପାରିସ କରାଯାଇପାରେ । ଅପର ପକ୍ଷରେ ଏକ ଲିଖନ ହିସାବ ପ୍ରଣାଳୀ ଅନୁଯାୟୀ ହିସାବ ଲେଖାଗଲେ ହିସାବରେ ନାନା ତ୍ରୁଟି ଓ ପ୍ରମାଦ ରହିବାର ସମ୍ଭାବନା ଥାଏ, ତହବିଲ ତୋସରଫ, ସାମଗ୍ରୀ ଆତ୍ମସାତ୍ କରିବାର ସୁଯୋଗ ଥାଏ । ଆବଶ୍ୟକ ବେଳେ ବ୍ୟାଙ୍କରୁ ଅଥବା ଅନ୍ୟ ମହାଜନଙ୍କଠାରୁ ଋଣ ସଂଗ୍ରହ କରିବା କଷ୍ଟକର ହୁଏ । କୌଣସି ଆକସ୍ମିକ ଦୁର୍ଘଟଣା ଯୋଗୁଁ ଆଂଶିକ କ୍ଷତି ଘଟିଲେ ବୀମା କରାଯାଇଥିବା ସତ୍ତ୍ୱେ ବୀମା କମ୍ପାନୀଠାରୁ ଦାବୀ ଅନୁଯାୟୀ କ୍ଷତିପୂରଣ ପାଇବା କଷ୍ଟକର ହୁଏ । ତେଣୁ ଏହି ପ୍ରଣାଳୀ ବର୍ଜନୀୟ ।

## ଏକ ଲିଖନ ହିସାବ ପଦ୍ଧତିରେ କାଳାନ୍ତକ ହିସାବ ପ୍ରଣାଳୀ

ପୂର୍ବରୁ କୁହାଯାଇଛି ଯେ ଏକ ଲିଖନ ହିସାବ ପଦ୍ଧତି ଅନୁସରଣ କରୁଥିବା ବ୍ୟବସାୟର ହିସାବରୁ ବର୍ଷ ଶେଷରେ ଲାଭ ଓ କ୍ଷତି ହିସାବ ପ୍ରସ୍ତୁତ କରିବା ସମ୍ଭବ ହୁଏ ନାହିଁ । କିନ୍ତୁ ବ୍ୟବସାୟୀଙ୍କ ପକ୍ଷରେ ଯେହେତୁ ଲାଭ ବା କ୍ଷତି ଜାଣିବା ଅତ୍ୟାବଶ୍ୟକ ତେଣୁ ଅନ୍ୟ

ଉପାୟରେ ଏହା ନିର୍ଣ୍ଣୟ କରିବାକୁ ପଡ଼େ । ଏଥି ନିମନ୍ତେ ଦୁଇଟି ବିବରଣୀ ପ୍ରସ୍ତୁତ କରାଯାଏ, ଯଥା : (୧) ଆର୍ଥିକ ଅବସ୍ଥାର ବିବରଣୀ (Statement of Affairs) ଓ (୨) ଲାଭ ଓ କ୍ଷତିର ବିବରଣୀ (Statement of profit & loss) । ଏହି ବିବରଣୀ-ମାନ କିପରି ପ୍ରସ୍ତୁତ କରାଯାଏ ତାହା ନିମ୍ନରେ ବୁଝାଇ ଦିଆଗଲା ।

## (୧) ଆର୍ଥିକ ଅବସ୍ଥାର ବିବରଣୀ

ପୂର୍ବରୁ କୁହାଯାଇଛି ଯେ କୌଣସି ବସ୍ତୁସୂଚକ ହିସାବ ଏହି ପଦ୍ଧତି ଅନୁଯାୟୀ ହିସାବ ରଖୁଥିବା ବ୍ୟବସାୟରେ ଖୋଲାଯାଏ ନାହିଁ । ତେଣୁ ଯଦି କୌଣସି ସମ୍ପତ୍ତି ନଗଦ ମୂଲ୍ୟରେ କ୍ରୟ କରାଯାଇଥାଏ ତାହାର ଉଲ୍ଲେଖ ରୋକଡ଼ ବହିରୁ ମିଳି ପାରିବ । ଯେଉଁ ସମ୍ପତ୍ତିଗୁଡ଼ିକ ପୂର୍ବ ବର୍ଷ ବା ପୂର୍ବବର୍ତ୍ତୀ ବର୍ଷମାନଙ୍କରେ କ୍ରୟ କରାଯାଇଥାଏ ସେ ବିଷୟ ବ୍ୟବସାୟୀ ତାଙ୍କ ସ୍ମୃତିରୁ ଉଦ୍ଧାର କରନ୍ତି । ଯଦି କୌଣସି ସମ୍ପତ୍ତି ଉଧାରରେ କ୍ରୟ କରାଯାଇଥାଏ ତାହାର ଉଲ୍ଲେଖ ବ୍ୟକ୍ତିକ ହିସାବରୁ ମିଳିପାରିବ । ନଗଦ ତହବିଲ ଓ ବ୍ୟାଙ୍କରେ ଗଚ୍ଛିତ ତହବିଲର ପରିମାଣ ରୋକଡ଼ ବହିରୁ ମିଳେ । ଅନ୍ତ୍ୟ ମହଜୁଦ ମାଲର ତାଲିକା ପ୍ରସ୍ତୁତ କରି ତାହାର ମୂଲ୍ୟାଙ୍କନ କରାଯାଇ ଅନ୍ତ୍ୟ ମହଜୁଦ ମାଲର ମୂଲ୍ୟ ସ୍ଥିର କରାଯାଏ । କାହାଠାରୁ କେତେ ପଣ୍ୟ ଉଧାରରେ ଆସିଛି ତାହା ବ୍ୟକ୍ତିକ ହିସାବରୁ ଜଣାଯାଏ । ଯଦି କାହାଠାରୁ ଟଙ୍କା ଋଣ ଆସିଥାଏ ତାହା-ହେଲେ ତାହା ଉଭୟ ରୋକଡ଼ ବହିରୁ ଓ ବ୍ୟକ୍ତିକ ହିସାବରୁ ମିଳିପାରେ । କାହାରିକୁ ଯଦି କିଛି ଅର୍ଥ ଦେୟ ଥାଏ ତାହା ବ୍ୟବସାୟୀଙ୍କର ସ୍ମରଣ ଥିଲେ ତାହାକୁ ମଧ୍ୟ ବିଚାରକୁ ନିଆ-ଯାଏ । ଏହିପରି ସମ୍ପତ୍ତି, ଦାୟ ଓ ଦେଣାର ଏକ ବିବରଣୀ ପ୍ରସ୍ତୁତ କରାଯାଏ । ଉଦ୍‌ବୃତ୍ତ ପତ୍ରରେ ସମ୍ପତ୍ତି ଓ ପାଉଣା ଯେପରି ଡାହାଣ ପାର୍ଶ୍ୱରେ ଓ ଦାୟ ଓ ଦେଣା ବାମ ପାର୍ଶ୍ୱରେ ଏହି ବିବରଣୀରେ ମଧ୍ୟ ସେହିପରି ସେଗୁଡ଼ିକ ଯଥାକ୍ରମେ ଡାହାଣ ଓ ବାମ ପାର୍ଶ୍ୱରେ ଲେଖାଯାଏ ଲେଖାଯାଏ । ସମ୍ପତ୍ତି ଓ ପାଉଣା ପାର୍ଶ୍ୱର ମୋଟ ପରିମାଣରୁ ଦେୟ ଓ ଦେଣାର ମୋଟ ପରିମାଣ ବିଯୁକ୍ତ କଲେ ବିୟୋଗ ଫଳ ପୁଞ୍ଜି ବା ମୂଳଧନ ଦର୍ଶାଏ ।

## ଆର୍ଥିକ ଅବସ୍ଥାର ବିବରଣୀ ଓ ଉଦ୍‌ବୃତ୍ତ ପତ୍ର ମଧ୍ୟରେ ଥିବା ପାର୍ଥକ୍ୟ

ଯଦିଓ ଉଭୟ ଆର୍ଥିକ ଅବସ୍ଥାର ବିବରଣୀ ଓ ଉଦ୍‌ବୃତ୍ତ ପତ୍ର ଗୋଟିଏ ବର୍ଷ ବା ହିସାବ ବର୍ଷ ଶେଷରେ କୌଣସି ଏକ ନିର୍ଦ୍ଦିଷ୍ଟ ଦିବସ ସକାଶେ ପ୍ରସ୍ତୁତ କରା ଯାଏ, ତଥାପି ଗଠନ ପ୍ରଣାଳୀ ଓ କାର୍ଯ୍ୟକାରିତା ଦୃଷ୍ଟିରୁ ଉଭୟଙ୍କ ମଧ୍ୟରେ ନିମ୍ନଲିଖିତ ପାର୍ଥକ୍ୟଗୁଡ଼ିକ ପରିଲକ୍ଷିତ ହୁଏ :

(କ) କେତେକ ବିଚ୍ଛିନ୍ନ କାଗଜ ପତ୍ରରୁ ବ୍ୟବସାୟୀଙ୍କ ସ୍ମୃତି ଓ ଅନୁମାନରୁ ଏବଂ କେତେକ ହିସାବରୁ ଆର୍ଥିକ ଅବସ୍ଥାର ବିବରଣୀ ପ୍ରସ୍ତୁତ ହେଉଥିବାରୁ ଏହା ଆଦୌ ନିର୍ଭର ଯୋଗ୍ୟ ହୁଏ ନାହିଁ । କିନ୍ତୁ ଦ୍ୱିବୃଦ୍ଧ ପଦ୍ଧ ଦ୍ୱିଲିଖନ ହିସାବ ପଦ୍ଧତି ଭିତ୍ତିରେ ପ୍ରସ୍ତୁତ ହୋଇଥିବା ରେଓସ୍ଥା ମେଳରୁ ପ୍ରସ୍ତୁତ ହେଉଥିବାରୁ ଏହା ଯଥେଷ୍ଟ ପରିମାଣରେ ନିର୍ଭରଯୋଗ୍ୟ ହୋଇଥାଏ ।

(ଖ) ଆର୍ଥିକ ଅବସ୍ଥାର ବିବରଣୀ ପ୍ରସ୍ତୁତ କରି ସମ୍ପତ୍ତି ଓ ପାଉଣାର ମୋଟ ପରିମାଣରୁ ଦାୟ ଓ ଦେଣାର ମୋଟ ପରିମାଣ ବିୟୋଗ କରି ମୂଳଧନ ନିର୍ଣ୍ଣୀତ ହୁଏ ଏବଂ ସେହି ପରିମାଣକୁ ଦାୟ ଓ ଦେଣା ପାର୍ଶ୍ୱରେ ଅନ୍ତର୍ଭୁକ୍ତ କରିବା ଫଳରେ ଉଭୟ ପାର୍ଶ୍ୱର ମୋଟ ପରିମାଣ ସମାନ ହୁଏ । ଏହିପରି କୃତ୍ରିମ ଉପାୟରେ ଉଭୟ ପାର୍ଶ୍ୱର ମୋଟ ପରିମାଣର ସମତା ଅଣାଯାଉଥିବାରୁ ଏହା ନିର୍ଭୁଲ ବା ନିର୍ଭରଯୋଗ୍ୟ ହୋଇପାରେ ନାହିଁ । ଅପର ପକ୍ଷରେ ଦ୍ୱିବୃଦ୍ଧ ପଦ୍ଧ ରେଓସ୍ଥା ମେଳ ଭିତ୍ତିରେ ପ୍ରସ୍ତୁତ ହେଉଥିବାରୁ ଏହାର ଉଭୟ ପାର୍ଶ୍ୱର ମୋଟ ପରିମାଣ ଆପେ ଆପେ ସମାନ ହୁଏ । ଯଦି ତାହା ନ ହୁଏ ତାହାହେଲେ ହିସାବ ରକ୍ଷଣରେ ଅଥବା ଗାଣିତିକ ହିସାବରେ କୌଣସି ତ୍ରୁଟି ଅଛି ବୋଲି ଜଣାଯାଏ ଏବଂ ସେହି ତ୍ରୁଟି ନିର୍ଣ୍ଣୟ କରି ଦ୍ୱିବୃଦ୍ଧ ପତ୍ରର ଦୁଇ ପାର୍ଶ୍ୱର ମୋଟ ପରିମାଣକୁ ସମାନ କରିବାକୁ ପଡ଼େ । ଆର୍ଥିକ ଅବସ୍ଥାର ବିବରଣୀରେ ଯଦି କୌଣସି ତ୍ରୁଟି ଥାଏ ତାହା ନିର୍ଣ୍ଣୀତ ହୋଇପାରେ ନାହିଁ । ତେଣୁ ଦ୍ୱିବୃଦ୍ଧ ପତ୍ର ସମ୍ପୂର୍ଣ୍ଣ ନିର୍ଭରଯୋଗ୍ୟ ହେଉଥିବା ସ୍ଥଳେ ଆର୍ଥିକ ଅବସ୍ଥାର ବିବରଣୀ ଆଦୌ ନିର୍ଭରଯୋଗ୍ୟ ହୋଇପାରେ ନାହିଁ ।

(ଗ) ଆର୍ଥିକ ଅବସ୍ଥାର ବିବରଣୀରେ ସମ୍ପତ୍ତିଗୁଡିକର ମୂଲ୍ୟ କିପରି ସ୍ଥିର କରାଯାଇଛି ସେ ବିଷୟରେ କୌଣସି କାରଣ ଜଣାଯାଏ ନାହିଁ, ଅର୍ଥାତ୍ ଏହାର ମୂଲ୍ୟାୟନ କୌଣସି ନୀତି ଉପରେ ପ୍ରତିଷ୍ଠିତ ନୁହେଁ । ସାଧାରଣତଃ ଏକଲିଖନ ହିସାବ ରକ୍ଷଣ ପଦ୍ଧତିରେ ମୂଲ୍ୟ ହ୍ରାସ (Depriciation) ସକାଶେ କୌଣସି ବ୍ୟବସ୍ଥା ନ ଥାଏ । ମାତ୍ର ଦ୍ୱିବୃଦ୍ଧ ପତ୍ରରେ ପ୍ରତ୍ୟେକ ସମ୍ପତ୍ତିର ଏକ ନିର୍ଦ୍ଦିଷ୍ଟ ନୀତି ଅନୁଯାୟୀ ମୂଲ୍ୟ ହ୍ରାସ କରାଯାଇ ସଂପତ୍ତିର ଉପସ୍ଥିତ ମୂଲ୍ୟ ସ୍ଥିର କରାଯାଏ । ତେଣୁ ଏହା ବୈଜ୍ଞାନିକ ନୀତିସମ୍ମତ ଓ ନିର୍ଭୁଲ ହେବା ସ୍ଥଳେ ଆର୍ଥିକ ଅବସ୍ଥା ବିବରଣୀରେ ଅନ୍ତର୍ଭୁକ୍ତ କରାଯାଉଥିବା ସଂପତ୍ତିର ମୂଲ୍ୟାୟନ ତ୍ରୁଟିପୂର୍ଣ୍ଣ ହୋଇଥାଏ ।

## (୨) ଲାଭ ଓ କ୍ଷତିର ବିବରଣୀ :

ପୂର୍ବରୁ କୁହାଯାଇଛି ଯେ ହିସାବ ବର୍ଷର ଶେଷ ଦିନର ଆର୍ଥିକ ଅବସ୍ଥାର ବିବରଣୀ ପ୍ରସ୍ତୁତ କରାଯାଇ ସେହି ତାରିଖର ମୂଳଧନ ନିର୍ଣ୍ଣୀତ ହୁଏ । ଏହା କିନ୍ତୁ ବ୍ୟବସାୟୀଙ୍କର ପ୍ରକୃତ ମୂଳଧନ ନୁହେଁ । ଏଥିରେ ଅନେକଗୋଟି ବିଷୟ ସଂଯୁକ୍ତ ଥାଏ, ଯଥା:

(କ) ହିସାବ ବର୍ଷ ଆରମ୍ଭର ମୂଳଧନ, (ଖ) ହିସାବ ବର୍ଷ ମଧ୍ୟରେ ବ୍ୟବସାୟୀ ପୁନ-ବିନିଯୋଗ କରିଥିବା ଅଧିକା ଅର୍ଥ ଅଥବା ବ୍ୟବସାୟରୁ ଉଠାଇ ନେଇଥିବା ଅର୍ଥ, ଏବଂ (ଗ) ଏହି ହିସାବ ବର୍ଷର ଲାଭ ବା କ୍ଷତି । ତେଣୁ ଏହି ହିସାବ ବର୍ଷର ଲାଭ ବା କ୍ଷତି ନିର୍ଣ୍ଣୟ କରିବା ସକାଶେ ହିସାବ ବର୍ଷ ଶେଷ ଦିନର ମୂଳଧନରୁ ବର୍ଷ ଆରମ୍ଭରେ ଥିବା ମୂଳଧନକୁ ବାଦ୍ ଦିଆଯିବ । ଯଦି ଏହି ହିସାବ ବର୍ଷ ମଧ୍ୟରେ କୌଣସି ଅଧିକା ପୁଂଜି ଯୋଗ କରା-ଯାଇନଥାଏ ଅଥବା କୌଣସି ଅର୍ଥ ଉଠାଇ ନିଆଯାଇନଥାଏ, ତାହାହେଲେ ଉପରୋକ୍ତ ଦୁଇ ମୂଳଧନର ବିୟୋଗ ଫଳ ଲାଭ ବା କ୍ଷତି ଦର୍ଶାଇବ । ଯଦି କିଛି ଅର୍ଥ ଯୋଗ କରାଯାଇଥାଏ ତାହାହେଲେ ତାହାକୁ ବିୟୋଗ ଫଳରୁ ବାଦ ଦିଆଯିବ ଓ ଯଦି କିଛି ଅର୍ଥ ଉଠାଇନିଆଯାଏ, ତାହାହେଲେ ସେହି ପରିମାଣ ବିୟୋଗଫଳ ସହିତ ଯୋଗ କରାଯିବ । ଏହିପରି ସମାଯୋଜନ ପରେ ଯେଉଁ ପରିମାଣ ନିରୂପିତ ହୁଏ ତାହାହିଁ ବ୍ୟବସାୟର ନିଟ୍ ଲାଭ ବା କ୍ଷତି ସୂଚାଇବ । ଗୋଟିଏ ଦୃଷ୍ଟାନ୍ତ ସାହାଯ୍ୟରେ ଏହାକୁ ସ୍ପଷ୍ଟ କରାଯାଇପାରେ ।

## ଦୃଷ୍ଟାନ୍ତ (୧)

ସନେକର ଶ୍ରୀ ସୁରେଶ୍ୱର ସାହୁ ୧୯୭୦ ମସିହା ଜାନୁୟାରି ୧ ତାରିଖରେ ୫,୦୦୦ ଟଙ୍କା ପୁଂଜି ବିନିଯୋଗ କରି ଗୋଟିଏ ବ୍ୟବସାୟ ଆରମ୍ଭ କଲେ । ସେ ବର୍ଷ ମଧ୍ୟରେ ଅଧିକା ୨,୦୦୦ ଟଙ୍କା ପରିମାଣର ଅର୍ଥ ବିନିଯୋଗ କରିଥିଲେ ଏବଂ ନିଜର ବ୍ୟକ୍ତିଗତ ଖର୍ଚ୍ଚ ସକାଶେ ପ୍ରତି ମାସରେ ୧୦୦ ଟଙ୍କା ହାରରେ ଅର୍ଥ ବ୍ୟବସାୟରୁ ଉଠାଇ ନେଇଥିଲେ । ୧୯୭୦ ମସିହା ଡିସେମ୍ବର ୩୧ ତାରିଖରେ ଅନ୍ୟାନ୍ୟ ଦାୟ ଓ ଦେଣା ବାଦେ ତାଙ୍କର ପରିସଂପତ୍ତିର ମୂଲ୍ୟ ୭,୪୦୦ ଟଙ୍କା ଥିଲା । ସେ ଏକଲିଖନ ହିସାବ ପ୍ରଣାଳୀ ଅନୁସରଣ କରନ୍ତି । ବର୍ଷ ଶେଷରେ ତାଙ୍କର କି ପରିମାଣର ଲାଭ ବା କ୍ଷତି ହେଲା ତାହା ନିର୍ଣ୍ଣୟ କର ।

**ସମାଧାନ**

| | | ଟଙ୍କା |
|---|---|---|
| | ୩୧ । ୧୨ । ୧୯୭୦ | |
| | ତାରିଖର ମୂଳଧନ | ୭,୪୦୦ |
| ବିୟୁକ୍ତ : | ୧-୧-୧୯୭୦ | |
| | ତାରିଖର ମୂଳଧନ | ୫,୦୦୦ |
| | ବ୍ୟବଧାନ | ୨୪୦୦ |
| ଯୁକ୍ତ : | ବ୍ୟବସାୟରୁ ଉଠାଇ | |
| | ନେଇଥିବା ଅର୍ଥ— | |

| | |
|---|---|
| ପ୍ରତିମାସ ୧୦୦ ଟଙ୍କା ହାରରେ | |
| ୧୨ ମାସର ମୋଟ ଉଠାଣ | ୧,୨୦୦ |
| | ୩,୬୦୦ |

| | |
|---|---|
| ବିଯୁକ୍ତ : ବ୍ୟବସାୟରେ ବର୍ଷ ମଧ୍ୟରେ | |
| ବିଯୁକ୍ତ ଅଧିକା ପୁଂଜି | ୨,୦୦୦ |
| ବର୍ଷ ଶେଷରେ ନିଟ୍ ଲାଭ ପରିମାଣ | ୧,୬୦୦ |

ଯଦି ବ୍ୟବସାୟରେ ଅଧିକା ପୁଂଜି ନିୟୋଜିତ ହୋଇନଥାଆନ୍ତା ଅଥବା କୌଣସି ପରିମାଣର ଅର୍ଥ ଯଦି ବ୍ୟବସାୟରୁ ଉଠାଇ ନିଆ ଯାଇ ନ ଥାଆନ୍ତା, ତାହାହେଲେ ମୋଟ ଲାଭର ପରିମାଣ (୭,୪୦୦—୫,୦୦୦=) ୨,୪୦୦ ଟଙ୍କା ହୋଇଥାଆନ୍ତା ।

ଯେଉଁ ଦୃଷ୍ଟାନ୍ତ ଦିଆଗଲା ତାହା ଯେ କୌଣସି ବ୍ୟବସାୟର ପ୍ରଥମ ବର୍ଷର ପରିସ୍ଥିତି ପ୍ରତିପାଦନ କରୁଛି । ମାତ୍ର ଚଳନ୍ତି ବ୍ୟବସାୟରେ ପରିସ୍ଥିତି ପୂର୍ବୋକ୍ତ ଦୃଷ୍ଟାନ୍ତ ଭଳି କ୍ୱଚିତ ସରଳ ହୋଇଥାଏ । ଅବଶ୍ୟ, ସମାନ ସୂତ୍ର-ପ୍ରୟୋଗପୂର୍ବକ ନିଟ୍ ଲାଭ ନିର୍ଣ୍ଣୟ କରାଯିବ, କିନ୍ତୁ ତାହା ସାଧାରଣତଃ ଏହା ଅପେକ୍ଷା ଅଧିକ ଜଟିଳ ହୋଇଥାଏ । ନିମ୍ନରେ ସେହିପରି ଏକ ଦୃଷ୍ଟାନ୍ତ ପ୍ରଦତ୍ତ ହେଲା ।

### ଦୃଷ୍ଟାନ୍ତ (୨)

ଶ୍ରୀ କେଶବ ସାହୁ ୧-୧-୧୯୭୨ ତାରିଖରେ ଗୋଟିଏ ବ୍ୟବସାୟ ଆରମ୍ଭ କଲେ । ସେତେବେଳେ ତାଙ୍କର ମୂଳଧନ ଥିଲା ୧୦,୦୦୦ ଟଙ୍କା । ୧-୧-୧୯୭୪ ତାରିଖରେ ତାଙ୍କ ବ୍ୟବସାୟର ପରିସଂପତ୍ତି, ଦାୟ ଓ ଦେଣା ନିମ୍ନପ୍ରକାର ଥିଲା ।

| | ଟଙ୍କା | | ଟଙ୍କା |
|---|---|---|---|
| ବିବିଧ ମହାଜନ | ୩,୩୦୦ | ପ୍ରାପ୍ୟ ହୁଣ୍ଡି | ୫,୬୦୦ |
| ବିବିଧ ଖାତକ | ୪,୨୦୦ | ଦେୟ ହୁଣ୍ଡି | ୨,୧୦୦ |
| ନଗଦ ତହବିଲ | ୨୫୦ | ବ୍ୟାଙ୍କ ଋଣ | ୩,୦୦୦ |
| ବ୍ୟାଙ୍କରେ ଗଚ୍ଛିତ | ୧,୦୦୦ | | |
| ଆସବାବ | ୮୦୦ | ଅନ୍ତ୍ୟ ମହଜୁଦ ମାଲ | ୫,୩୦୦ |
| ଘର | ୫,୦୦୦ | | |

ବର୍ଷ ଶେଷରେ ତାଙ୍କର ପରିସଂପତ୍ତି, ଦାୟ୍ୱ ଓ ଦେଣାର ପରିମାଣ ନିମ୍ନରେ ପ୍ରଦତ୍ତ ହେଲା ।

| | ଟଙ୍କା | | ଟଙ୍କା |
|---|---|---|---|
| ବିବିଧ ମହାଜନ | ୩,୪୦୦ | ଯନ୍ତ୍ର | ୫,୦୦୦ |
| ବିବିଧ ଖାତକ | ୪,୫୦୦ | ପ୍ରାପ୍ୟ ହୁଣ୍ଡି | ୭,୮୦୦ |
| ନଗଦ ତହବିଲ | ୧୫୦ | ଦେୟ ହୁଣ୍ଡି | ୨,୩୦୦ |
| ବ୍ୟାଙ୍କରେ ଗଚ୍ଛିତ | ୮୦୦ | ବ୍ୟାଙ୍କ ଋଣ | ୩,୦୦୦ |
| ଆସବାବ | ୧,୦୦୦ | ଅନ୍ୟ ମହଜୁଦ ମାଲ | ୭,୭୦୦ |

ଶ୍ରୀ ସାହୁ ବର୍ଷ ମଧ୍ୟରେ ୧,୦୦୦ ଟଙ୍କାର ଅଧିକା ପୁଂଜି ବ୍ୟବସାୟରେ ବିନିଯୋଗ କରିଥିଲେ ଏବଂ ନିଜର ବ୍ୟକ୍ତିଗତ ଖର୍ଚ୍ଚ ସକାଶେ ବ୍ୟବସାୟରୁ ୧,୨୦୦ ଟଙ୍କା ଉଠାଇ ନେଇଥିଲେ । ତାଙ୍କର ୩୧-୧୨-୧୯୭୪ ତାରିଖର ଆର୍ଥିକ ଅବସ୍ଥାର ବିବରଣୀ ପ୍ରସ୍ତୁତ କର ଏବଂ ନିଟ୍ ଲାଭ ନିର୍ଣ୍ଣୟ କର । ଯଦି ୧୯୭୨ ଓ ୧୯୭୩ ମସିହାରେ ସେ କୌଣସି ଅଧିକା ପୁଂଜି ବିନିଯୋଗ କରି ନ ଥାଆନ୍ତି ଅଥବା ବ୍ୟବସାୟରୁ କିଛି ଅର୍ଥ ଉଠାଇ ନେଇ ନ ଥାଆନ୍ତି ତାହାହେଲେ ଏହି ତିନି ବର୍ଷରେ ତାଙ୍କର ଲାଭର ପରିମାଣ ନିର୍ଣ୍ଣୟ କର । ଶ୍ରୀ ସାହୁ ତାଙ୍କ ବ୍ୟବସାୟର ହିସାବ ପତ୍ର ଏକ ଲିଖନ ହିସାବ ପ୍ରଣାଳୀ ଅନୁଯାୟୀ ରଖନ୍ତି ।

## ସମାଧାନ

ଶ୍ରୀ କେଶବ ସାହୁଙ୍କ ବ୍ୟବସାୟର

୧-୧-୧୯୭୪ ତାରିଖର ଆର୍ଥିକ ଅବସ୍ଥାର ବିବରଣୀ

(କ)

| ମୂଳଧନ ଓ ଦେଣା | ଟଙ୍କା | ପରିସଂପତ୍ତି ଓ ପାଉଣା | ଟଙ୍କା |
|---|---|---|---|
| ବିବିଧ ମହାଜନ | ୩,୩୦୦ | ନଗଦ ତହବିଲ | ୨୫୦ |
| ଦେୟ ହୁଣ୍ଡି | ୨,୧୦୦ | ବ୍ୟାଙ୍କରେ ଗଚ୍ଛିତ | ୧,୦୦୦ |
| ବ୍ୟାଙ୍କ ଋଣ | ୩,୦୦୦ | ପ୍ରାପ୍ୟ ହୁଣ୍ଡି | ୫,୭୦୦ |
| ମୂଳଧନ ( ଦେଣା ବାଦେ ପରିସମ୍ପତ୍ତି ଓ ପାଉଣାର ମୂଲ୍ୟ ) | ୧୩,୮୫୦ | ବିବିଧ ଖାତକ | ୪,୨୦୦ |
| | | ଅନ୍ୟ ମହଜୁଦ ମାଲ | ୫,୩୦୦ |
| | | ଆସବାବ | ୮୦୦ |
| | | ଯନ୍ତ୍ର | ୫,୦୦୦ |
| | ୨୨,୨୫୦ | | ୨୨,୨୫୦ |

(ଙ)

### ଶ୍ରୀ କେଶବ ସାହୁଙ୍କ ବ୍ୟବସାୟର
### ୩୧-୧୨-୧୯୭୪ ତାରିଖର ଆର୍ଥିକ ଅବସ୍ଥାର ବିବରଣୀ

| ମୂଳଧନ ଓ ଦେଣା | ଟଙ୍କା | ପରିସମ୍ପତ୍ତି ଓ ପାଉଣା | ଟଙ୍କା |
|---|---|---|---|
| ବିବିଧ ମହାଜନ | ୩,୪୦୦ | ନଗଦ ତହବିଲ | ୧୫୦ |
| ଦେୟ ହୁଣ୍ଡି | ୨,୩୦୦ | ବ୍ୟାଙ୍କରେ ଗଚ୍ଛିତ | ୮୦୦ |
| ବ୍ୟାଙ୍କ ଋଣ | ୩,୦୦୦ | ପ୍ରାପ୍ୟ ହୁଣ୍ଡି | ୬,୮୦୦ |
| ମୂଳଧନ ( ଦେଣା ବାଦେ ପରିସଂପତ୍ତି ଓ ପାଉଣାର ମୂଲ୍ୟ ) | ୧୬,୨୫୦ | ବିବିଧ ଖାତକ | ୪,୫୦୦ |
| | | ଅନ୍ୟ ମହଜୁଦ ମାଲ | ୬,୭୦୦ |
| | | ଆସବାବ | ୧,୦୦୦ |
| | | ଘର | ୫,୦୦୦ |
| | ୨୪,୯୫୦ | | ୨୪,୯୫୦ |

### ୧୯୭୪ ମସିହା ଡିସେମ୍ବର ୩୧ ତାରିଖରେ ଶେଷ ହୋଇଥିବା ବର୍ଷର ଲାଭ ଓ କ୍ଷତିର ବିବରଣୀ

(ଚ)

| | ଟଙ୍କା |
|---|---|
| ୧୯୭୪ ମସିହା ଡିସେମ୍ବର ୩୧ ତାରିଖର ମୂଳଧନ | ୧୬,୨୫୦ |
| ବିଯୁକ୍ତ : ୧୯୭୪ ମସିହା ଜାନୁଆରୀ ୧ ତାରିଖର ମୂଳଧନ | ୧୩,୮୫୦ |
| | ୨,୪୦୦ |
| ବିଯୁକ୍ତ : ୧୯୭୪ ମସିହାରେ ସଂଯୁକ୍ତ ଅଧିକା ପୁଞ୍ଜି | ୧,୦୦୦ |
| | ୧,୪୦୦ |
| ଯୁକ୍ତ : ୧୯୭୪ ମସିହାରେ ବ୍ୟବସାୟରୁ ଉଠାଇ ନେଇଥିବା ଅର୍ଥ | ୧,୨୦୦ |
| ୧୯୭୪ ମସିହାର ଲାଭ | ୨,୬୦୦ |

(ଘ) ଶ୍ରୀ କେଶବ ସାହୁଙ୍କ ବ୍ୟବସାୟର ୧୯୭୪ ମସିହା ଡିସେମ୍ବର ୩୧ ତାରିଖର ଚୂଡ଼ାନ୍ତ ଆର୍ଥିକ ଅବସ୍ଥାର ବିବରଣୀ

| ମୂଳଧନ ଓ ଦେଣା | | ଟଙ୍କା | ସମ୍ପତ୍ତି ଓ ପାଉଣା | ଟଙ୍କା |
|---|---|---|---|---|
| ବ୍ୟାଙ୍କ ଋଣ | | ୩,୦୦୦ | ନଗଦ ତହବିଲ | ୧୫୦ |
| ଦେୟ ହୁଣ୍ଡି | | ୨,୩୦୦ | ବ୍ୟାଙ୍କରେ ଗଚ୍ଛିତ | ୮୦୦ |
| ବିବିଧ ମହାଜନ | | ୩,୪୦୦ | ପ୍ରାପ୍ୟ ହୁଣ୍ଡି | ୬,୮୦୦ |
| ଆଦ୍ୟ ମୂଳଧନ | ୧୩,୮୫୦ | | ବିବିଧ ଖାତକ | ୪,୫୦୦ |
| ଯୁକ୍ତ : ବର୍ଷ ମଧ୍ୟରେ | | | ଅନ୍ତ୍ୟ ମହଜୁଦ ମାଲ | ୬,୭୦୦ |
| ସଂଯୁକ୍ତ ମୂଳଧନ | ୧,୦୦୦ | | ଆସବାବ | ୧,୦୦୦ |
| | ୧୪,୮୫୦ | | ଯନ୍ତ୍ର | ୫,୦୦୦ |
| ବିଯୁକ୍ତ : ବର୍ଷ ମଧ୍ୟରେ | | | | |
| ଉଠାଣ | ୧,୨୦୦ | | | |
| | ୧୩,୬୫୦ | | | |
| ଯୁକ୍ତ : ବର୍ଷର ଲାଭ | ୨,୬୦୦ | | | |
| ଅନ୍ତ୍ୟ ମୂଳଧନ | | ୧୬,୨୫୦ | | |
| | | ୨୪,୯୫୦ | | ୨୪,୯୫୦ |

(ଙ) ୧-୧-୧୯୭୨ ଠାରୁ ୩୧-୧୨-୧୯୭୪ ମଧ୍ୟରେ ଅର୍ଜିତ ଲାଭର ବିବରଣୀ

| | ଟଙ୍କା |
|---|---|
| ୩୧-୧୨-୧୯୭୪ ତାରିଖର ମୂଳଧନ | ୧୬,୨୫୦ |
| ବିଯୁକ୍ତ : ୧-୧-୧୯୭୨ ତାରିଖର ମୂଳଧନ | ୧୦,୦୦୦ |
| ତିନିବର୍ଷର ଲାଭ | ୬,୨୫୦ |

## ବିକଳ୍ପ ପଦ୍ଧତି

ଗୋଟିଏ ବର୍ଷ ଶେଷରେ ଆଦ୍ୟ ଓ ଅନ୍ତ୍ୟ ଆର୍ଥିକ ଅବସ୍ଥାର ବିବରଣୀ ଅନେକ ସମୟ ବିଭ୍ରାନ୍ତିକର ହୋଇଥାଏ, ତେଣୁ ଆଧୁନିକ ହିସାବ ରକ୍ଷକଗଣ ଦୁଇଟି ପରିବର୍ତ୍ତେ କେବଳ ଗୋଟିଏ, ଅର୍ଥାତ୍ ଆଦ୍ୟ ଆର୍ଥିକ ଅବସ୍ଥାର ବିବରଣୀ ପ୍ରସ୍ତୁତ କରନ୍ତି ଏବଂ ଏହା ସହିତ ଅନ୍ତ୍ୟ ପରିସମ୍ପତ୍ତି ଓ ଦେଣାର ପାର୍ଥକ୍ୟ ଲାଭ ଓ କ୍ଷତି ବିବରଣୀରେ ଅନ୍ତର୍ଭୁକ୍ତ କରନ୍ତି । ଏହି ବିବରଣୀର ଦ୍ୱିତୀୟ ପର୍ଯ୍ୟାୟରେ ନବସଂଯୁକ୍ତ ମୂଳଧନ ଓ ବ୍ୟବସାୟରୁ ଉଠାଇ ନିଆଯାଇଥିବା ଅର୍ଥ ସକାଶେ ଆବଶ୍ୟକ ସମାଯୋଜନ କରାଯାଇ ବର୍ଷ ମଧ୍ୟରେ ଅର୍ଜିତ ଲାଭର ପରିମାଣ ନିର୍ଣ୍ଣୟ କରାଯାଏ ।

ଦୃଷ୍ଟାନ୍ତ (୨)ରେ ଦିଆଯାଇଥିବା ପ୍ରଶ୍ନର ବିକଳ୍ପ ପଦ୍ଧତି ଅନୁଯାୟୀ ସମାଧାନ ନିମ୍ନରେ ପ୍ରଦତ୍ତ ହେଲା :—

## ବିକଳ୍ପ ପଦ୍ଧତି ଅନୁଯାୟୀ ସମାଧାନ

(କ) ୧୯୭୪ ମସିହା ଜାନୁୟାରୀ ୧ ତାରିଖର ଆର୍ଥିକ ଅବସ୍ଥାର ବିବରଣୀ

| ମୂଳଧନ ଓ ଦେଣା | ଟଙ୍କା | ଧନସମ୍ପତ୍ତି ଓ ପାଉଣା | ଟଙ୍କା |
|---|---|---|---|
| ବିବିଧ ମହାଜନ | ୩,୩୦୦ | ଯନ୍ତ୍ର | ୫,୦୦୦ |
| ଦେୟ ହୁଣ୍ଡି | ୨,୧୦୦ | ଆସବାବ | ୮୦୦ |
| ବ୍ୟାଙ୍କ ଋଣ | ୩,୦୦୦ | ଅନ୍ୟ ମହଜୁଦ ମାଲ | ୫,୩୦୦ |
| ମୂଳଧନ (ଦେଣା ବାଦେ | | ବିବିଧ ଖାତକ | ୪,୨୦୦ |
| ଧନସମ୍ପତ୍ତି ଓ ପାଉଣାର ମୂଲ୍ୟ) | ୧୩,୮୫୦ | ପ୍ରାପ୍ୟ ହୁଣ୍ଡି | ୫,୭୦୦ |
| | | ନଗଦ ତହବିଲ | ୨୫୦ |
| | | ବ୍ୟାଙ୍କରେ ଗଚ୍ଛିତ ତହବିଲ | ୧,୦୦୦ |
| | ୨୨,୨୫୦ | | ୨୨,୨୫୦ |

(ଖ ଓ (ଗ) ୧୯୭୪ ମସିହା ଡିସେମ୍ବର ୩୧ ତାରିଖରେ ଶେଷ ହେଉଥିବା ବର୍ଷର ଲାଭ ଓ କ୍ଷତି ବିବରଣୀ

| | ଟଙ୍କା | | ଟଙ୍କା |
|---|---|---|---|
| ଅନ୍ୟ ଦେଣା ବାବଦ : | | ଅନ୍ୟ ଧନସମ୍ପତ୍ତି ଓ ପାଉଣା | |
| ବିବିଧ ମହାଜନ | ୩,୪୦୦ | ବାବଦ : | |
| ଦେୟ ହୁଣ୍ଡି | ୨,୩୦୦ | ଯନ୍ତ୍ର | ୫,୦୦୦ |
| ବ୍ୟାଙ୍କ ଋଣ | ୩,୦୦୦ | ଆସବାବ | ୧,୦୦୦ |
| ମୂଳଧନ (ଦେଣା ବାଦେ | | ଅନ୍ୟ ମହଜୁଦ ମାଲ | ୬,୭୦୦ |
| ଧନସମ୍ପତ୍ତି ଓ ପାଉଣାର ମୂଲ୍ୟ) | ୧୬,୨୫୦ | ବିବିଧ ଖାତକ | ୪,୫୦୦ |
| | ୨୪,୯୫୦ | ପ୍ରାପ୍ୟ ହୁଣ୍ଡି | ୬,୮୦୦ |
| ଆଦ୍ୟ ମୂଳଧନ ବାବଦ | ୧୩,୮୫୦ | ନଗଦ ତହବିଲ | ୧୫୦ |
| ନବ ସଂଯୁକ୍ତ ମୂଳଧନ ବାବଦ | ୧,୦୦୦ | ବ୍ୟାଙ୍କରେ ଗଚ୍ଛିତ ତହବିଲ | ୮୦୦ |
| ନିଟ୍ ଲାଭ-ମୂଳଧନ ହିସାବକୁ | | | ୪,୯୫୦ |
| ନିଆଗଲା | ୨,୬୦୦ | ଅନ୍ତ ମୂଳଧନ ବାବଦ | ୧୬,୨୫୦ |
| | | ଉଠାଣ ବାବଦ | ୧,୨୦୦ |
| | ୧୭,୪୫୦ | | ୧୭,୪୫୦ |

(ଘ) ୧୯୭୪ ମସିହା ଡିସେମ୍ବର ୩୧ ତାରିଖର ଚୂଡ଼ାନ୍ତ ଆର୍ଥିକ ଅବସ୍ଥାର ବିବରଣୀ

| | | ଟଙ୍କା | | ଟଙ୍କା |
|---|---|---|---|---|
| ବିବିଧ ମହାଜନ | | ୩,୪୦୦ | ଯନ୍ତ୍ର | ୫,୦୦୦ |
| ଦେୟ ହୁଣ୍ଡି | | ୨,୩୦୦ | ଆସବାବ | ୧,୦୦୦ |
| ବ୍ୟାଙ୍କ ଋଣ | | ୩,୦୦୦ | ଅନ୍ତ୍ୟ ମହଜୁଦ ମାଲ | ୬,୭୦୦ |
| ଆଦ୍ୟ ମୂଳଧନ | ୧୩,୮୫୦ | | ବିବିଧ ଖାତକ | ୪,୫୦୦ |
| ଯୁକ୍ତ : ବର୍ଷ ମଧ୍ୟରେ | | | ପ୍ରାପ୍ୟ ହୁଣ୍ଡି | ୬,୮୦୦ |
| ସଂଯୁକ୍ତ ମୂଳଧନ | ୧,୦୦୦ | | ନଗଦ ତହବିଲ | ୧୫୦ |
| | ୧୪,୮୫୦ | | ବ୍ୟାଙ୍କରେ ଗଚ୍ଛିତ ତହବିଲ | ୮୦୦ |
| ବିଯୁକ୍ତ : ବର୍ଷ ମଧ୍ୟରେ | | | | |
| ଉଠାଣ | ୧,୨୦୦ | | | |
| | ୧୩,୬୫୦ | | | |
| ଯୁକ୍ତ . ବର୍ଷର ନିଟ୍ ଲାଭ | ୨,୬୦୦ | ୧୬,୨୫୦ | | |
| ଅନ୍ତ୍ୟ ମୂଳଧନ | | ୨୪,୯୫୦ | | ୨୪,୯୫୦ |

ଦୃଷ୍ଟାନ୍ତ (୩)

ଶ୍ରୀକାନ୍ତ ସାହୁ ତାଙ୍କ ହିସାବ ଏକ ଲିଖନ ହିସାବ ପ୍ରଣାଳୀ ଅନୁଯାୟୀ ରଖନ୍ତି । ୧୯୭୪ ମସିହା ଜାନୁୟାରି ୧ ତାରିଖରେ ତାଙ୍କ ବ୍ୟବସାୟର ଆର୍ଥିକ ଅବସ୍ଥା ନିମ୍ନରେ ପ୍ରଦତ୍ତ ହେଲା :

ନଗଦ ତହବିଲ ୨୦୦ ଟଙ୍କା ; ବ୍ୟାଙ୍କରେ ଗଚ୍ଛିତ ତହବିଲ ୫,୮୦୦ ଟଙ୍କା ; ବିବିଧ ମହାଜନ ୬,୪୦୦ ଟଙ୍କା ; ବିବିଧ ଖାତକ ୧୫,୨୦୦ ଟଙ୍କା ; ଯନ୍ତ୍ରପାତି ୧୦,୦୦୦ ଟଙ୍କା ; ଓ ମହଜୁଦ ମାଲ ୧୦,୭୦୦ ଟଙ୍କା ଓ ଆସବାବ ୪,୫୦୦ ଟଙ୍କା ।

୧୯୭୪ ମସିହା ଡିସେମ୍ବର ୩୧ ତାରିଖରେ ବ୍ୟବସାୟର ଆର୍ଥିକ ଅବସ୍ଥା ନିମ୍ନ ପ୍ରକାର ଥିଲା :

ନଗଦ ତହବିଲ ୩୫୦ ଟଙ୍କା ; ବ୍ୟାଙ୍କରେ ଗଚ୍ଛିତ ୮,୪୦୦ ଟଙ୍କା ; ବିବିଧ ମହାଜନ ୭,୨୫୦ ଟଙ୍କା ; ବିବିଧ ଖାତକ ୧୮,୫୦୦ ଟଙ୍କା ; ଯନ୍ତ୍ରପାତି ୧୫,୦୦୦ ଟଙ୍କା ; ମହଜୁଦ ମାଲ ୧୫,୩୦୦ ଟଙ୍କା ଓ ଆସବାବ ୬,୦୦୦ ଟଙ୍କା ।

ଶ୍ରୀକାନ୍ତ ସାହୁ ପ୍ରତି ମାସରେ ୨୦୦ ଟଙ୍କା ହାରରେ ନିଜର ବ୍ୟକ୍ତିଗତ ଖର୍ଚ୍ଚ ସକାଶେ ବ୍ୟବସାୟରୁ ଅର୍ଥ ଉଠାଇଛନ୍ତି ଓ ସେ ବର୍ଷ ମଧ୍ୟରେ ୫,୦୦୦ ଟଙ୍କାର ଅଧିକା ପୁଞ୍ଜି ବ୍ୟବସାୟରେ ବିନିଯୋଗ କରିଥିଲେ । ଯନ୍ତ୍ରପାତି ପରିମାଣରୁ ୧୦% ହାରରେ ଓ ଆସବାବରୁ

୧୨% ହାରରେ ମୂଲ୍ୟ ହ୍ରାସ କରାଯିବ । ଖାତକ ପରମାନେ ୩% ହାରରେ ଅନାଦେୟ ଋଣ ସଞ୍ଚିତ ଗଢ଼ା ଯିବ ।

ଏହି ବର୍ଷର ଲାଭ ଓ କ୍ଷତିର ବିବରଣୀ ଏବଂ ବର୍ଷ ଶେଷର ଆର୍ଥିକ ଅବସ୍ଥାର ବିବରଣୀ ପ୍ରସ୍ତୁତ କର ।

## ସମାଧାନ

(କ) ଶ୍ରୀକାନ୍ତ ସାହୁଙ୍କ ବ୍ୟବସାୟର ୧୯୦୪ ମସିହା ଜାନୁୟାରୀ ୧ ତାରିଖର ଆର୍ଥିକ ଅବସ୍ଥାର ବିବରଣୀ

| ଦେଣା | ଟଙ୍କା | ଧନସମ୍ପତ୍ତି | ଟଙ୍କା |
|---|---|---|---|
| ବିବିଧ ମହାଜନ | ୬,୪୦୦ | ଯନ୍ତ୍ରପାତି | ୧୦,୦୦୦ |
| ୧-୧-୧୯୭୪ | | ଆସବାବ | ୪,୫୦୦ |
| ତାରିଖର ମୂଳଧନ | | ମହଜୁଦ ମାଲ | ୧୦,୭୦୦ |
| (ଉଦ୍‌ବୃତ୍ତ ପରିମାଣ) | ୪୦,୦୦୦ | ବିବିଧ ଖାତକ | ୧୫,୨୦୦ |
| | | ନଗଦ ତହବିଲ | ୨୦୦ |
| | | ବ୍ୟାଙ୍କରେ ଗଚ୍ଛିତ ତହବିଲ | ୫,୮୦୦ |
| | ୪୬,୪୦୦ | | ୪୬,୪୦୦ |

(ଖ) ୧୯୭୪ ମସିହା ଡିସେମ୍ବର ୩୧ ତାରିଖର ଆର୍ଥିକ ଅବସ୍ଥାର ବିବରଣୀ

| ଦେଣା | ଟଙ୍କା | ଧନସମ୍ପତ୍ତି | ଟଙ୍କା |
|---|---|---|---|
| ବିବିଧ ମହାଜନ | ୮,୨୫୦ | ଯନ୍ତ୍ରପାତି | ୧୫,୦୦୦ |
| ୩୧-୧୨-୧୯୭୪ ତାରିଖର | | ଆସବାବ | ୬,୦୦୦ |
| ମୂଳଧନ (ଉଦ୍‌ବୃତ୍ତ ପରିମାଣ) | ୫୫,୩୦୦ | ମହଜୁଦ ମାଲ | ୧୫,୩୦୦ |
| | | ବିବିଧ ଖାତକ | ୧୮,୫୦୦ |
| | | ନଗଦ ତହବିଲ | ୩୫୦ |
| | | ବ୍ୟାଙ୍କରେ ଗଚ୍ଛିତ ତହବିଲ | ୮,୪୦୦ |
| | ୬୩,୫୫୦ | | ୬୩,୫୫୦ |

## (ଗ) ୧୯୭୪ ମସିହା ଡିସେମ୍ବର ୩୧ ତାରିଖରେ ଶେଷ ହେଉଥିବା ବର୍ଷର ଲାଭ ଓ କ୍ଷତିର ବିବରଣୀ

| | ଟଙ୍କା | ଟଙ୍କା |
|---|---|---|
| ୧୯୭୪ ମସିହା ଡିସେମ୍ବର ୩୧ ତାରିଖର ମୂଳଧନ | | ୫୫,୩୦୦ |
| ବିୟୁକ୍ତ ; ୧୯୭୪ ମସିହା ଜାନୁୟାରୀ ୧ ତାରିଖର ମୂଳଧନ | | ୪୦,୦୦୦ |
| | | ୧୫,୩୦୦ |
| ବିୟୁକ୍ତ : ବିନିଯୁକ୍ତ ଅଧିକା ପୁଞ୍ଜି | | ୫,୦୦୦ |
| | | ୧୦,୩୦୦ |
| ଯୁକ୍ତ : ଉଠାଣ (୨୦୦ × ୧୨) ମୋଟ ଲାଭ | | ୨,୪୦୦ |
| | | ୧୨,୭୦୦ |
| ବିୟୁକ୍ତ : ଯନ୍ତ୍ରପାତିର ମୂଲ୍ୟହ୍ରାସ | ୧,୨୫୦ | |
| ଆସବାବର ମୂଲ୍ୟହ୍ରାସ | ୬୩୦ | |
| ଅନାଦେୟ ଋଣର ସଞ୍ଚିତି ବର୍ଷର | ୫୫୫ | ୨,୪୩୫ |
| ନିଟ୍ ଲାଭ | | ୧୦,୨୬୫ |

## (ଘ) ୧୯୭୪ ମସିହା ଡିସେମ୍ବର ୩୧ ତାରିଖର ଚୂଡ଼ାନ୍ତ ଆର୍ଥିକ ଅବସ୍ଥାର ବିବରଣୀ

| ଦେଣା | | ଟଙ୍କା | ଧନସମ୍ପତ୍ତି | | ଟଙ୍କା |
|---|---|---|---|---|---|
| ବିବିଧ ମହାଜନ | | ୮,୨୫୦ | ଯନ୍ତ୍ରପାତି | ୧୫,୦୦୦ | |
| ୧-୧-୭୪ ମୂଳଧନ | ୪୦,୦୦୦ | | ବିୟୁକ୍ତ : ମୂଲ୍ୟହ୍ରାସ | ୧,୨୫୦ | ୧୩,୭୫୦ |
| ଯୁକ୍ତ : ବର୍ଷ ମଧ୍ୟରେ ବିନିଯୁକ୍ତ ପୁଞ୍ଜି | ୫,୦୦୦ | | ଆସବାବ | ୭,୦୦୦ | |
| | ୪୫,୦୦୦ | | ବିୟୁକ୍ତ : ମୂଲ୍ୟହ୍ରାସ | ୬୩୦ | ୬,୩୭୦ |
| ବିୟୁକ୍ତ : ଉଠାଣ | ୨,୪୦୦ | | ମହଜୁଦ ମାଲ | | ୧୫,୩୦୦ |
| | ୪୨,୬୦୦ | | ବିବିଧ ଖାତକ | ୧୮,୫୦୦ | |
| ଯୁକ୍ତ : ବର୍ଷର ନିଟ୍ ଲାଭ | ୧୦,୨୬୫ | | ବିୟୁକ୍ତ : ଅନାଦେୟ ଋଣର ସଞ୍ଚିତି | ୫୫୫ | ୧୭,୯୪୫ |
| ୩୧-୧୨-୭୪ ମୂଳଧନ | | ୫୨,୮୬୫ | ନଗଦ ତହବିଲ | | ୩୫୦ |
| | | | ବ୍ୟାଙ୍କରେ ଗଚ୍ଛିତ ତହବିଲ | | ୮,୪୦୦ |
| | | ୬୧,୧୧୫ | | | ୬୧,୧୧୫ |

## ବିକଳ୍ପ ପ୍ରଣାଳୀ—

(ଖ) ଓ (ଗ) ୧୯୭୪ ମସିହା ଡିସେମ୍ବର ୩୧ ତାରିଖରେ ଶେଷ
ହେଉଥିବା ବର୍ଷର ଲାଭ ଓ କ୍ଷତି ବିବରଣୀ

| | ଟଙ୍କା | | ଟଙ୍କା |
|---|---|---|---|
| ଅନ୍ୟ ଦେଣା ବାବଦ : | | ଅନ୍ୟ ପରିସମ୍ପତ୍ତି ବାବଦ : | |
| ବିବିଧ ମହାଜନ | ୮,୨୫୦ | ଯନ୍ତ୍ରପାତି | ୧୫,୦୦୦ |
| ୩୧-୧୨-୭୪ ତାରିଖ ମୂଳଧନ | | ଆସବାବ | ୬,୦୦୦ |
| —ତଳକୁ ନିଆଗଲା | ୫୫,୩୦୦ | ମହଜୁଦ ମାଲ | ୧୫,୩୦୦ |
| | | ବିବିଧ ଖାତକ | ୧୮,୫୦୦ |
| | | ନଗଦ ତହବିଲ | ୩୫୦ |
| | | ବ୍ୟାଙ୍କରେ ଗଚ୍ଛିତ ତହବିଲ | ୮,୧୦୦ |
| | ୬୩,୨୫୦ | | ୬୩,୨୫୦ |
| ୧-୧-୭୪ ତାରିଖର | | ୩୧-୧୨-୭୪ ତାରିଖର | |
| ମୂଳଧନ ବାବଦ | ୪୦,୦୦୦ | ମୂଳଧନ ବାବଦ— | |
| ଋଣମୁକ୍ତ ଅଧିକା ପୁଞ୍ଜି ବାବଦ | ୫,୦୦୦ | ଉପରୁ ଅଣାଗଲା | ୫୫,୩୦୦ |
| ମୋଟ ଲାଭ ବାବଦ— | | ଉଠାଣ ବାବଦ | ୨,୪୦୦ |
| ତଳକୁ ନିଆଗଲା | ୧୨,୭୦୦ | | |
| | ୫୭,୭୦୦ | | ୫୭,୭୦୦ |
| ଯନ୍ତ୍ରପାତିର ମୂଲ୍ୟହ୍ରାସ ବାବଦ | ୧,୨୫୦ | ମୋଟ ଲାଭ ବାବଦ | |
| ଆସବାବର ମୂଲ୍ୟହ୍ରାସ ବାବଦ | ୬୩୦ | ଉପରୁ ଅଣାଗଲା | ୧୨,୭୦୦ |
| ଅନାଦେୟ ଋଣର ସଞ୍ଚିତ ବାବଦ | ୫୫୫ | | |
| ଉଦ୍‌ବୃତ୍ତ ନେଟ୍ ଲାଭ ବାବଦ— | | | |
| ମୂଳଧନ ହିସାବକୁ ନିଆଗଲା | ୧୦,୨୬୫ | | |
| | ୧୨,୭୦୦ | | ୧୨,୭୦୦ |

(କ) ଓ (ଘ) ପୂର୍ବ ପଦ୍ଧତିର ଅନୁରୂପ ରହିବ ।

ନୋଟ : ଅଧିକା ଯନ୍ତ୍ରପାତି ଓ ଆସବାବ କେବେ କିଣା ଯାଇଛି ତାହା ପ୍ରଶ୍ନରେ ପ୍ରଦତ୍ତ ନ ହୋଇଥିବାରୁ ଅଧିକା ଅର୍ଥ ମୂଲ୍ୟର ଯନ୍ତ୍ରପାତି ଓ ଆସବାବ ପରିମାଣରୁ ୬ ମାସ ସକାଶେ ମୂଲ୍ୟ ହ୍ରାସ ବାଦ୍ ଦିଆଯାଇଛି ।

## ଦୃଷ୍ଟାନ୍ତ (୪)

ବିକାଶ ଓ ପ୍ରକାଶ ଗୋଟିଏ ଅଂଶୀଦାରୀ କାରବାରରେ ଅଂଶୀଦାର ଓ ସେମାନେ ଲାଭର ଯଥାକ୍ରମେ ୨/୩ ଓ ୧/୩ ଅଂଶ ଭୋଗ କରୁଥିଲେ । ସେମାନେ ଏକଲେଖନ ହିସାବ ପ୍ରଣାଳୀ ଅନୁଯାୟୀ ତାଙ୍କ ବ୍ୟବସାୟର ହିସାବ ରଖୁଥିଲେ । ୧୯୭୨ ମସିହା ମାର୍ଚ୍ଚ ୩୧ ତାରିଖରେ ତାଙ୍କ ବ୍ୟବସାୟର ନିମ୍ନଲିଖିତ ଆର୍ଥିକ ଅବସ୍ଥାର ବିବରଣୀ ପ୍ରସ୍ତୁତ କରାଯାଇଛି ।

| ମୂଳଧନ ଓ ଦେଣା | | ଟଙ୍କା | ପରିସମ୍ପତ୍ତି | ଟଙ୍କା |
|---|---|---|---|---|
| ମୂଳଧନ ହିସାବ : | | | କଳକବ୍ଜା | ୨୦,୦୦୦ |
| ବିକାଶ | ୨୫,୦୦୦ | | ମହଜୁଦ ମାଲ | ୧୪,୮୦୦ |
| ପ୍ରକାଶ | ୧୦,୦୦୦ | ୩୫,୦୦୦ | ବିବିଧ ଖାତକ | ୧୮,୪୦୦ |
| ଋଣ ହିସାବ—ବିକାଶ | | ୧୦,୦୦୦ | ନଗଦ ଓ ବ୍ୟାଙ୍କରେ | |
| ବିବିଧ ମହାଜନ | | ୧୩,୪୦୦ | ଗଚ୍ଛିତ ତହବିଲ | ୫,୨୦୦ |
| | | ୫୮,୪୦୦ | | ୫୮,୪୦୦ |

୧୯୭୩ ମସିହା ଅପ୍ରେଲ ୧ ତାରିଖରେ ତାଙ୍କ ବ୍ୟବସାୟର ପରିସମ୍ପତ୍ତି, ମୂଳଧନ ଓ ଦେଣା ନିମ୍ନ ପ୍ରକାର ଥିଲା :

କଳକବ୍ଜା ୨୫,୦୦୦ ଟଙ୍କା; ମହଜୁଦ ମାଲ ୧୯,୩୦୦ ଟଙ୍କା; ବିବିଧ ଖାତକ ୨୪,୭୦୦ ଟଙ୍କା ; ବ୍ୟାଙ୍କରେ ଗଚ୍ଛିତ ତହବିଲ ୧୦,୭୦୦ ଟଙ୍କା ; ବିବିଧ ମହାଜନ ୧୫,୬୦୦ ଟଙ୍କା ଓ ବିକାଶଙ୍କର ଋଣ ହିସାବ ୧୦,୦୦୦ ଟଙ୍କା ।

ନିମ୍ନଲିଖିତ ସମାଯୋଜନ ସକାଶେ ବ୍ୟବସ୍ଥା କରି ୧୯୭୩ ମସିହା ମାର୍ଚ୍ଚ ୩୧ ତାରିଖରେ ଶେଷ ହେଉଥିବା ବର୍ଷର ଲାଭ ଓ କ୍ଷତିର ବିବରଣୀ ଓ ଉକ୍ତ ତାରିଖର ଆର୍ଥିକ ଅବସ୍ଥାର ବିବରଣୀ ପ୍ରସ୍ତୁତ କର ।

(କ) କଳକବ୍ଜାରୁ ୧୦% ହାରରେ ମୂଲ୍ୟ ହ୍ରାସ କରାଯିବ (ମନେକର ଯେ, ଅଧିକା କଳକବ୍ଜା ୧-୭-୧୯୭୨ ତାରିଖରେ କ୍ରୟ କରାଯାଇଥିଲା)

(ଖ) ବିବିଧ ଖାତକ ପରିମାଣ ଉପରେ ୫% ହାରରେ ଅନାଦାୟୀ ଋଣର ସଞ୍ଚିତି ରଖାଯିବ;

(ଗ) ଅଂଶୀଦାରମାନେ ୪% ହାରରେ ସୁଧ ପାଇବେ;

(ଘ) ଋଣ ହିସାବ ଉପରେ ୬% ହାରରେ ସୁଧ ହିଆଯିବ;

(ଙ) ବର୍ଷ ମଧ୍ୟରେ ବିକାଶ ୧,୨୦୦ ଟଙ୍କା ଓ ପ୍ରକାଶ ୯୦୦ ଟଙ୍କା ଉଠାଇ ନେଇ ଥିଲେ ।

## ସମାଧାନ

(ବିକଳ୍ପ ପଦ୍ଧତି ଅନୁଯାୟୀ)

୧୯୬୩ ମସିହା ମାର୍ଚ୍ଚ ୩୧ ତାରିଖରେ ଶେଷ ହେଉଥିବା ବର୍ଷର ଲାଭ ଓ କ୍ଷତିର ବିବରଣୀ ।

| | ଟଙ୍କା | | ଟଙ୍କା |
|---|---|---|---|
| ଅନ୍ୟ ଦେଣା ବାବଦ : | | ଅନ୍ୟ ପରିସମ୍ପତ୍ତି ବାବଦ : | |
| ବିବିଧ ମହାଜନ | ୧୫,୫୦୦ | କଳକବ୍ଜା | ୨୫,୦୦୦ |
| ବିକାଶଙ୍କ ଋଣ ହିସାବ | ୧୦,୦୦୦ | ବିବିଧ ଖାତକ | ୨୪,୬୦୦ |
| ୩୧-୩-୬୩ ତାରିଖର ମିଳିତ ମୂଳଧନ ତଳକୁ ନିଆଗଲା | ୫୪,୦୦୦ | ମହଜୁଦ ମାଲ | ୧୯,୩୦୦ |
| | | ବ୍ୟାଙ୍କରେ ଗଚ୍ଛିତ ତହବିଲ | ୧୦,୬୦୦ |
| | ୭୯,୫୦୦ | | ୭୯,୫୦୦ |
| ୧-୪-୬୨ ତାରିଖର ମୂଳଧନ ବାବଦ : | | ୩୧-୩-୬୩ ତାରିଖର ମିଳିତ ମୂଳଧନ — ଉପରୁ ଅଣାଗଲା | ୫୪,୦୦୦ |
| ବିକାଶ | ୨୫,୦୦୦ | ଉଠାଣ ବାବଦ : | |
| ପ୍ରକାଶ | ୧୦,୦୦୦ | ବିକାଶ | ୧,୨୦୦ |
| ମୋଟ ଲାଭ ବାବଦ — ତଳକୁ ନିଆଗଲା | ୨୧,୧୦୦ | ପ୍ରକାଶ | ୯୦୦ |
| | ୫୬,୧୦୦ | | ୫୬,୧୦୦ |
| ବିକାଶଙ୍କ ଋଣ ହିସାବର ସୁଧ ବାବଦ | ୬୦୦ | ମୋଟ ଲାଭ ବାବଦ— ଉପରୁ ଅଣାଗଲା | ୨୧,୧୦୦ |
| ଅନାଦେୟ ଋଣ ସଞ୍ଚିତି ହିସାବ ବାବଦ | ୬୩୮ | | |
| ମୂଲ୍ୟହ୍ରାସ ହିସାବ ବାବଦ | ୨,୩୬୫ | | |
| ବ୍ୟାବସାୟିକ ଲାଭ ବାବଦ — ତଳକୁ ନିଆଗଲା | ୧୭,୪୯୭ | | |
| | ୨୧,୧୦୦ | | ୨୧,୧୦୦ |

| | ଟଙ୍କା | | ଟଙ୍କା |
|---|---|---|---|
| ଅଂଶୀଦାରଙ୍କ ସୁଧ ହିସାବ ବାବଦ | | ବ୍ୟବସାୟ ଲାଭ ବାବଦ | |
| ବିକାଶ | ୧,୦୦୦ | ଉପରୁ ଅଣା ଗଲା | ୧୭,୩୮୭ |
| ପ୍ରକାଶ | ୪୦୦ | | |
| ନିଟ୍ ଲାଭ ବାବଦ : | | | |
| ବିକାଶ (୨/୩ ଅଂଶ) | ୧୦,୬୫୮ | | |
| ପ୍ରକାଶ (୧/୩ ଅଂଶ) | ୫,୩୨୯ | | |
| | ୧୭,୩୮୭ | | ୧୭,୩୮୭ |

## ୧୯୭୩ ମସିହା ଅପ୍ରେଲ ୧ ତାରିଖର ଆର୍ଥିକ ଅବସ୍ଥାର ବିବରଣୀ

| ଦେଣା | | ଟଙ୍କା | ପରିସଂପତ୍ତି | | ଟଙ୍କା |
|---|---|---|---|---|---|
| ମୂଳଧନ : | | | କଳକବ୍ଜା | ୨୫,୦୦୦ | |
| ବିକାଶ ଆଦ୍ୟ ଉଦ୍‌ବୃତ୍ତ | ୨୫,୦୦୦ | | ବିମୁକ୍ତ : ମୂଲ୍ୟହ୍ରାସ | ୨,୩୭୫ | ୨୨,୬୨୫ |
| ଯୁକ୍ତ : ମୂଳଧନର ସୁଧ | ୧,୦୦୦ | | ବିବିଧ ଖାତକ | ୨୪,୬୦୦ | |
| ନିଟ୍ ଲାଭ | ୧୦,୬୫୮ | | ବିମୁକ୍ତ : ଅନାଦେୟ | | |
| | ୩୬,୬୫୮ | | ଋଣର ସଞ୍ଚିତ | ୬୩୮ | ୨୩,୮୬୨ |
| ବିମୁକ୍ତ : ଉଠାଣ | ୧,୨୦୦ | ୩୫,୪୫୮ | ମହଜୁଦ ମାଲ | | ୧୯,୩୦୦ |
| ପ୍ରକାଶ : | | | ନଗଦ ଓ ବ୍ୟାଙ୍କରେ ଗଚ୍ଛିତ | | |
| ଆଦ୍ୟ ଉଦ୍‌ବୃତ୍ତ | ୧୦,୦୦୦ | | ତହବିଲ | | ୧୦,୬୦୦ |
| ଯୁକ୍ତ : ମୂଳଧନର ସୁଧ | ୪୦୦ | | | | |
| ନିଟ୍ ଲାଭ | ୫,୩୨୯ | | | | |
| | ୧୫,୭୨୯ | | | | |
| ବିମୁକ୍ତ : ଉଠାଣ | ୯୦୦ | ୧୪,୮୨୯ | | | |
| ବିକାଶଙ୍କ ଋଣ ହିସାବ | ୧୦,୦୦୦ | | | | |
| ଯୁକ୍ତ : ପ୍ରାପ୍ୟ ସୁଧ | ୬୦୦ | ୧୦,୬୦୦ | | | |
| ବିବିଧ ମହାଜନ | | ୧୫,୫୦୦ | | | |
| | | ୭୬,୩୮୭ | | | ୭୬,୩୮୭ |

## ଦୃଷ୍ଟାନ୍ତ ( ୫ )

ଶଙ୍କର ମିଶ୍ରଙ୍କର ନିମ୍ନଲିଖିତ ଆର୍ଥିକ ଅବସ୍ଥାର ବିବରଣୀ ୧୯୭୪ ମସିହା ଜୁନ ୩୦ ତାରିଖରେ ତାଙ୍କର ହିସାବ ରକ୍ଷକଙ୍କଦ୍ୱାରା ପ୍ରସ୍ତୁତ ହୋଇଥିଲା :

### ୧୯୭୪ ମସିହା ଜୁନ ୩୦ ତାରିଖର ଆର୍ଥିକ ଅବସ୍ଥା ବିବରଣୀ

| | ଟଙ୍କା | | ଟଙ୍କା |
|---|---|---|---|
| ବିବିଧ ମହାଜନ | ୪,୮୦୦ | ନଗଦ ତହବିଲ | ୧୨୦ |
| ମୂଳଧନ | ୪୪,୯୨୦ | ମହଜୁଦ ମାଲ | ୮,୮୪୦ |
| | | ବିବିଧ ଖାତକ | ୧୧,୪୭୦ |
| | | ବ୍ୟାଙ୍କରେ ଗଚ୍ଛିତ | ୨,୫୦୦ |
| | | ଆସବାବ | ୪,୭୦୦ |
| | | ଯନ୍ତ୍ର | ୨୧,୨୦୦ |
| | ୪୯,୭୨୦ | | ୪୯,୭୨୦ |

ଆର୍ଥିକ ଅବସ୍ଥାର ବିବରଣୀ ପ୍ରସ୍ତୁତ ହେବା ପରେ ଦେଖାଗଲା ଯେ ମହଜୁଦ ମାଲର ମୂଲ୍ୟ ୫୮୦ ଟଙ୍କା ଅଧିକ ହୋଇଛି, ୮୪୦ ଟଙ୍କା ସକାଶେ ଋଣୀ ଥିବା ଗୋଟିଏ ଖାତକଙ୍କଠାରୁ ସେ ବ୍ୟବସାୟ ବନ୍ଦ କରିଦେଇଥିବା ହେତୁ ଆଦୌ କିଛି ଆଦାୟ ହୋଇ ପାରିବ ନାହିଁ । ଆସବାବର ମୂଲ୍ୟ ୩୨୦ ଟଙ୍କା ଅଧିକ ହୋଇଛି ।

ଉପରୋକ୍ତ ତ୍ରୁଟି ସଂଶୋଧନ କରି ଏହି ଅର୍ଥିକ ଅବସ୍ଥାର ବିବରଣୀକୁ ପୁନଃପ୍ରସ୍ତୁତ କର ଏବଂ ତହିଁରେ ଚଳନ୍ତି ଓ ସ୍ଥାୟୀ ସଂପତ୍ତି ଏବଂ ଚଳନ୍ତି ଦେଣାକୁ ସ୍ୱତନ୍ତ୍ର ଭାବରେ ଦର୍ଶାଅ ତଥା କାର୍ଯ୍ୟକାରୀ ମୂଳଧନ ନିର୍ଣ୍ଣୟ କର ।

## ସମାଧାନ

ଶ୍ରୀ ଶଙ୍କର ମିଶ୍ରଙ୍କ ବ୍ୟବସାୟର
୧୯୭୪ ମସିହା ଜୁନ ୩୦ ତାରିଖର ଆର୍ଥିକ
ଅବସ୍ଥାର ବିବରଣୀ

| ଦେଣା | ଟଙ୍କା | ଟଙ୍କା | ଧନସଂପତ୍ତି | ଟଙ୍କା | ଟଙ୍କା |
|---|---|---|---|---|---|
| ମୂଳଧନ (ଆଦ୍ୟ) | ୪୪,୯୨୦ | | ସ୍ଥାୟୀ ସଂପତ୍ତି : | | |
| ବିଯୁକ୍ତ : ସମାଯୋଜନ : | | | ଯନ୍ତ୍ର | ୨୧,୨୦୦ | |
| ଆସବାବ ୩୨୦ | | | ଆସବାବ ୪,୬୦୦ | | |
| ମହଜୁଦ ମାଲ ୫୮୦ | | | ବିଯୁକ୍ତ : ମୂଲ୍ୟର | | |
| ବିବିଧ ଖାତକ ୮୪୦ | ୧,୭୪୦ | ୪୩,୧୮୦ | ହ୍ରାସକରଣ ୩୨୦ | ୪,୨୮୦ | ୨୫,୪୮୦ |
| ଚଳନ୍ତି ଦେଣା : | | | ଚଳନ୍ତି ସଂପତ୍ତି | | |
| ବିବିଧ ମହାଜନ | | ୪,୮୦୦ | ମହଜୁଦ ମାଲ ,୮୪୦ | | |
| | | | ବିଯୁକ୍ତ ମୂଲ୍ୟର | | |
| | | | ହ୍ରାସକରଣ ୫୮୦ | ୮,୨୬୦ | |
| | | | ବିବିଧ ଖାତକ ୧୨,୪୬୦ | | |
| | | | ବିଯୁକ୍ତ : | | |
| | | | ଅନାଦେୟ ଋଣ ୮୪୦ | ୧୧,୬୨୦ | |
| | | | ବ୍ୟାଙ୍କରେ ଗଚ୍ଛିତ | ୨,୫୦୦ | |
| | | | ନଗଦ ତହବିଲ | ୧୨୦ | ୨୨,୫୦୦ |
| | | ୪୭,୯୮୦ | | | ୪୭,୯୮୦ |

| ଚଳନ୍ତି ସଂପତ୍ତି : | ଟଙ୍କା | ଟଙ୍କା |
|---|---|---|
| ମହଜୁଦ ମାଲ | ୮,୨୭୦ | |
| ବିବିଧ ଖାତକ | ୧୫,୬୨୦ | |
| ବ୍ୟାଙ୍କରେ ଗଚ୍ଛିତ | ୨,୫୦୦ | |
| ନଗଦ ତହବିଲ | ୧୨୦ | ୨୭,୫୦୦ |
| ବିଯୁକ୍ତ : ଚଳନ୍ତି ଦେଣା | | |
| ବିବିଧ ମହାଜନ | | ୪,୮୦୦ |
| କାର୍ଯ୍ୟକାରୀ ମୂଳଧନ | | ୨୧,୭୦୦ |

### ୩ । ଏକ ଲିଖନ ହିସାବ ପଦ୍ଧତିକୁ ଦ୍ୱିଲିଖନ ହିସାବ ପଦ୍ଧତିରେ ରୂପାନ୍ତରଣ—

ଏକ ଲିଖନ ହିସାବ ପ୍ରଣାଳୀର ବିଭିନ୍ନ ଅସୁବିଧା ଦୃଷ୍ଟିରୁ କୌଣସି ବ୍ୟବସାୟୀ ଏହି ପ୍ରଣାଳୀ ବର୍ଜନ କରି ତାଙ୍କ ବ୍ୟବସାୟ ସମ୍ବନ୍ଧରେ ସବିଶେଷ ଓ ନିର୍ଭୁଲ ତଥ୍ୟ ପାଇବା ଉଦ୍ଦେଶ୍ୟରେ ଏକ ଲିଖନ ହିସାବ ପ୍ରଣାଳୀକୁ ଦ୍ୱି ଲିଖନ ହିସାବ ପଦ୍ଧତିରେ ରୂପାନ୍ତରିତ କରିବାକୁ ଇଚ୍ଛା କରିପାରନ୍ତି । ସେପରି କ୍ଷେତ୍ରରେ ନିମ୍ନଲିଖିତ ପ୍ରକ୍ରିୟାଗୁଡ଼ିକ ଅବଲମ୍ବନ କରାଯିବ । ଏପରି ରୂପାନ୍ତରଣ ଦୁଇପ୍ରକାର ହୋଇପାରେ, ଯଥା—(କ) ବର୍ତ୍ତମାନ କାଳର କୌଣସି ତାରିଖରୁ ରୂପାନ୍ତରଣ । (ଖ) ଅତୀତର କୌଣସି ତାରିଖରୁ ରୂପାନ୍ତରଣ । ଉଭୟର ପ୍ରକ୍ରିୟା ନିମ୍ନରେ ବର୍ଣ୍ଣିତ ହେଲା ।

#### (କ) ବର୍ତ୍ତମାନ କାଳର କୌଣସି ତାରିଖରୁ ରୂପାନ୍ତରଣ (Converssion with Pospective Effect)

(୧) ଯେଉଁ ତାରିଖରୁ ଏକ ଲିଖନ ହିସାବ ପ୍ରଣାଳୀକୁ ଦ୍ୱି ଲିଖନ ହିସାବ ପଦ୍ଧତିରେ ରୂପାନ୍ତରିତ କରାଯିବ ସେହି ତାରିଖର ପରିସମ୍ପତ୍ତି, ଦାୟ ଓ ଦେଣାର ମୂଲ୍ୟ ନିର୍ଦ୍ଧାରଣ କରି ବ୍ୟବସାୟର ଆର୍ଥିକ ଅବସ୍ଥାର ଏକ ବିବରଣୀ ପ୍ରସ୍ତୁତ କରାଯିବ ।

(୨) ତତ୍ପରେ ଖାସ ଜାବ୍‌ଦା, ସାଧାରଣ ଝିଡ଼ୋସ୍ଥାନ ଓ ବିଭିନ୍ନ ପ୍ରାଥମିକ ବହି ଖୋଲାଯିବ ।

(୩) ଖାସ୍ ଜାବଦାରେ (୧)ରେ ଲିଖିତ ଧନସମ୍ପତ୍ତିଗୁଡ଼ିକୁ ଦାମ୍ପୀ କରାଯିବ ଓ ଦାୟ ଓ ଦେଣା ପରିମାଣକୁ ଦାତା କରାଯିବ ଏବଂ ଉଭୟ ପରିମାଣର ଅନ୍ତର ଫଳ, ଯାହା ମୂଳଧନ, ତାହାକୁ ମଧ୍ୟ ଦାତା କରାଯିବ । ଉଦାହରଣସ୍ୱରୂପ, ଯଦି ବ୍ୟବସାୟର କୌଣସି ନିର୍ଦ୍ଦିଷ୍ଟ ତାରିଖରେ ଧନସମ୍ପତ୍ତିର ମୂଲ୍ୟ ୧୦ ୫୦୦ ଟଙ୍କା ହୁଏ ଏବଂ ସେହି ତାରିଖରେ ଦାୟ ଓ ଦେଣାର ପରିମାଣ ୪,୫୦୦ ଟଙ୍କା ହୁଏ ତାହାହେଲେ ନିମ୍ନୋକ୍ତ ପ୍ରକାର ଜାବଦା ଲେଖାଯିବ :

| | | ଟଙ୍କା | ଟଙ୍କା |
|---|---|---|---|
| ଧନସମ୍ପତ୍ତି ହିସାବ | ଦାମ୍ପୀ | ୧୦,୫୦୦ | |
| ଦାୟ ଓ ଦେଣା ହିସାବ ବାବଦ | | | ୪,୫୦୦ |
| ମୂଳଧନ ହିସାବ ବାବଦ | | | ୬,୦୦୦ |

(୪) ଯେହେତୁ ଏକ ଲିଖନ ହିସାବ ପଦ୍ଧତିରେ ନଗଦ ତହବିଲ ବା ହିସାବ ରେକର୍ଡ଼ ବହି, ବିବିଧ ଖାତକ ଓ ବିବିଧ ମହାଜନଙ୍କ ହିସାବ ଲେଖା ଯାଇଥାଏ, ତେଣୁ ଏଗୁଡ଼ିକ ବାଦ୍ ଦେଇ ଖାସ୍ ଜାବଦାରେ ଲିଖିତ ଅନ୍ୟାନ୍ୟ ବିଷୟଗୁଡ଼ିକୁ ସାଧାରଣ ଖତିୟାନଭୁକ୍ତ କରାଯିବ ।

ଯେଉଁ ତାରିଖରେ ଏହି ସମସ୍ତ ପ୍ରବିଷ୍ଟି ଲିପିବଦ୍ଧ କରାଯାଏ ସେହି ତାରିଖରୁ ଏକ ଲିଖନ ହିସାବ ପ୍ରଣାଳୀ ଦ୍ୱିଲିଖନ ହିସାବ ପଦ୍ଧତିରେ ରୂପାନ୍ତରିତ କରାଯାଏ । ଏହାର ଏକ ଦୃଷ୍ଟାନ୍ତ ନିମ୍ନରେ ପ୍ରଦତ୍ତ ହେଲା ।

### ଦୃଷ୍ଟାନ୍ତ (୬)

୧୯୭୪ ମସିହା ଡିସେମ୍ବର ୩୧ ତାରିଖରେ ରାମେଶ୍ୱର ଲାଲଙ୍କ ଧନସମ୍ପତ୍ତି, ଦାୟ ଓ ଦେଣା ନିମ୍ନରେ ପ୍ରଦତ୍ତ ହେଲା । ସେ ତାଙ୍କ ବ୍ୟବସାୟରେ ଏକ ଲିଖନ ହିସାବ ପ୍ରଣାଳୀ ଅନୁସରଣ କରନ୍ତି ।

ଧନସମ୍ପତ୍ତି : ନଗଦ ତହବିଲ ୩,୪୦୦ ଟଙ୍କା, ମହଜୁଦ ମାଲ ୧୦,୮୦୦ ଟଙ୍କା, ବିବିଧ ଖାତକ ୮,୯୦୦ ଟଙ୍କା, ପ୍ରାପ୍ୟ ହୁଣ୍ଡି ୪,୧୦୦ ଟଙ୍କା, ଭୂମି ଓ ଭବନ ୧୦,୫୦୦ ଟଙ୍କା ଓ ଆସବାବ ପତ୍ର ୭,୪୦୦ ଟଙ୍କା ।

ଦାୟ ଓ ଦେଣା : ବିବିଧ ମହାଜନ ୫,୩୦୦ ଟଙ୍କା, ଦେୟ ହୁଣ୍ଡି ୧,୫୦୦ ଟଙ୍କା, ବ୍ୟାଙ୍କରୁ ଅଧିକା ଉଠାଣ ୧୦,୮୦୦ ଟଙ୍କା ଓ ବକେୟା ବେତନ ୧,୨୦୦ ଟଙ୍କା ।

୧୯୭୫ ମସିହା ଜାନୁଆରୀ ୧ ତାରିଖରୁ ଏକ ଲିଖନ ପଦ୍ଧତିକୁ ଦ୍ୱିଲିଖନ ହିସାବ ପଦ୍ଧତିରେ ରୂପାନ୍ତରିତ କରିବା ସକାଶେ ଆବଶ୍ୟକ ଜାବଦା ପ୍ରସ୍ତୁତ କର ।

## ସମାଧାନ

| ଜାବଦା | | ଦାୟୀ | ଦାତା |
|---|---|---|---|
| | | ଟଙ୍କା | ଟଙ୍କା |
| ୧୯୭୫ | | | |
| ଜାନୁଆରୀ ୧ ନଗଦ ତହବିଲ ହିସାବ | ଦାୟୀ | ୩,୪୦୦ | |
| ମହଜୁଦ ମାଲ ହିସାବ | ଦାୟୀ | ୧୦,୮୦୦ | |
| ବିବିଧ ଖାତକ ହିସାବ | ଦାୟୀ | ୮,୯୦୦ | |
| ପ୍ରାପ୍ୟ ହୁଣ୍ଡି ହିସାବ | ଦାୟୀ | ୪,୨୦୦ | |
| ଆସବାବ ହିସାବ | ଦାୟୀ | ୬,୪୦୦ | |
| ଭୂମି ଓ ଭବନ ହିସାବ | ଦାୟୀ | ୨୦,୫୦୦ | |
| ବିବିଧ ମହାଜନ ହିସାବ ବାବଦ | | | ୫,୩୦୦ |
| ଦେୟ ହୁଣ୍ଡି ହିସାବ ବାବଦ | | | ୨,୫୦୦ |
| ବ୍ୟାଙ୍କରୁ ଅଧିକା ଉଠାଣ ହିସାବ ବାବଦ | | | ୧୦,୮୦୦ |
| ବକେୟା ବେତନ ହିସାବ ବାବଦ | | | ୨,୫୦୦ |
| ମୂଳଧନ ହିସାବ ବାବଦ | | | ୩୩,୧୦୦ |
| (୧-୧-୧୯୭୫ ତାରିଖରେ ଏକ ଲିଖନ ହିସାବ ପଦ୍ଧତିକୁ ଦ୍ୱିଲିଖନ ହିସାବ ପଦ୍ଧତିରେ ରୂପାନ୍ତରିତ କରାଗଲା । ମୋଟ ସମ୍ପତ୍ତିରୁ ମୋଟ ଦାୟ ଓ ଦେଣା ବାଦ ଦେଇ ଅନ୍ତର ଫଳକୁ ସେହି ତାରିଖର ମୂଳଧନ ବୋଲି ସ୍ୱୀକାର କରାଗଲା ) | | | |

### (ଖ) ଅତୀତର କୌଣସି ତାରିଖରୁ ରୂପାନ୍ତରଣ (Converssion with Retrospective Effect)

କେତେକ ସମୟରେ ଏକ ଲିଖନ ପ୍ରଣାଳୀ ଅନୁସରଣ କରୁଥିବା କୌଣସି ବ୍ୟବସାୟୀ ଅତୀତର କୌଣସି ଏକ ନିର୍ଦ୍ଦିଷ୍ଟ ତାରିଖରୁ ତାଙ୍କର ହିସାବଗୁଡ଼ିକ ଦ୍ୱିଲିଖନ ହିସାବ ପଦ୍ଧତି ଅନୁଯାୟୀ ଲିପିବଦ୍ଧ କରିବାକୁ ଇଚ୍ଛା କରିପାରନ୍ତି । ସେପରି କ୍ଷେତ୍ରରେ ନିମ୍ନଲିଖିତ ପ୍ରକ୍ରିୟା ଅନୁସୃତ ହେବ ।

(୧) ରୁ (୪) (କ)ରେ ବର୍ଣ୍ଣିତ ପ୍ରକ୍ରିୟାର ଅନୁରୂପ ।

(୫) ଅନ୍ତତଃ ଯେଉଁ ତାରିଖରୁ ଏକ ଲିଖନ ପଦ୍ଧତିକୁ ଦ୍ୱି ଲିଖନ ହିସାବ ପଦ୍ଧତିରେ ରୂପାନ୍ତରିତ କରାଯିବ ସେହି ତାରିଖରୁ ରୋକଡ଼ ବହିର ଡାହାଣ ଓ ବାମ ପାର୍ଶ୍ୱରେ ଯେଉଁ ସମସ୍ତ ବସ୍ତୁ ସୂଚକ ଓ ଆୟ ବ୍ୟୟ ସୂଚକ ହିସାବର ଉଲ୍ଲେଖ ଅଛି ସେଗୁଡ଼ିକୁ ଖତିୟାନର ନିର୍ଦ୍ଦିଷ୍ଟ ହିସାବରେ ଅନ୍ତର୍ଭୁକ୍ତ କରାଯିବ କିନ୍ତୁ ରୋକଡ଼ ବହିରେ ବ୍ୟକ୍ତିକ ହିସାବ ସମ୍ବନ୍ଧୀୟ ପ୍ରବିଷ୍ଟିଗୁଡ଼ିକୁ ବାଦ ଦିଆଯିବ; କାରଣ ଏକକ ଲିଖନ ପଦ୍ଧତିରେ ବ୍ୟକ୍ତିକ ହିସାବ ପୂର୍ବରୁ ଲେଖାଯାଇଥିବ ।

(୬) ବ୍ୟକ୍ତିକ ହିସାବଗୁଡ଼ିକୁ ବିଶ୍ଲେଷଣ କରି ତହିଁରୁ ଉଧାର ବିକ୍ରି, ଉଧାର କ୍ରୟ, ପ୍ରାପ୍ତ ଓ ପ୍ରଦତ୍ତ ବଟ୍ଟା, ଏବଂ ବାଦ୍ ଦିଆଯାଇଥିବା ଅନାଦେୟ ଋଣଗୁଡ଼ିକୁ ଖତିୟାନର ନିଜ ନିଜ ହିସାବରେ ଲିପିବଦ୍ଧ କରାଯିବ ।

(୭) ପ୍ରାପ୍ୟ ହୁଣ୍ଡି ଓ ଦେୟ ହୁଣ୍ଡିର ବିବରଣୀ ପ୍ରସ୍ତୁତ କରାଯିବ ଓ ସେଗୁଡ଼ିକୁ ପ୍ରାପ୍ୟ ହୁଣ୍ଡି ହିସାବ ଓ ଦେୟ ହୁଣ୍ଡି ହିସାବରେ ଅନ୍ତର୍ଭୁକ୍ତ କରାଯିବ ।

(୮) ଅନ୍ୟାନ୍ୟ ଯଦି କୌଣସି ବିଷୟ ଥାଏ ଯାହା ପାଇଁ ସମାଯୋଜନ ଆବଶ୍ୟକ ସେଗୁଡ଼ିକୁ ଖାସ୍ ଜାବ୍ଦା ମାଧ୍ୟମରେ ସମାଯୋଜନ କରାଯାଇ ସଂଶ୍ଳିଷ୍ଟ ଖତିୟାନ ହିସାବଭୁକ୍ତ କରାଯିବ ।

(୯) ରୋକଡ଼ ବହିରେ ଲିପିବଦ୍ଧ ହୋଇଥିବା ନଗଦ କ୍ରୟ ଓ ନଗଦ ବିକ୍ରୟକୁ ଯଥାକ୍ରମେ କ୍ରୟ ଓ ବିକ୍ରୟ ହିସାବର ଅନ୍ତର୍ଭୁକ୍ତ କରାଯିବ ।

(୧୦) ଯଦି ବ୍ୟାଙ୍କ୍ ସ୍ତମ୍ଭ ରୋକଡ଼ ବହିରେ ଥାଏ ଅଥବା ସ୍ୱତନ୍ତ୍ର ବ୍ୟାଙ୍କ୍ ହିସାବ ଲେଖାହୋଇଥାଏ ତାହା ହେଲେ ତାହାକୁ ବିଶ୍ଲେଷଣ କରି ତହିଁରୁ ନଗଦ କ୍ରୟ, ନଗଦ ବିକ୍ରୟ, ବ୍ୟାଙ୍କ୍‌ରେ ବଟ୍ଟାରେ ବିକ୍ରି ହୋଇଥିବା ହୁଣ୍ଡି (discounted bill), ଅମାନ୍ୟକୃତ ବା ପ୍ରତ୍ୟାଖ୍ୟାତ ହୁଣ୍ଡି (dishonoured bill) ଓ ବ୍ୟାଙ୍କ୍ ପ୍ରଭାର (bank charges)

(୧୧) ସର୍ବଶେଷରେ ସେହି ରୂପାନ୍ତରଣ) ତାରିଖର ଏକ ସନ୍ତୁଳନ ପତ୍ର ବା ରେଣ୍ଡସ୍ଥା ମେଳ ପ୍ରସ୍ତୁତ କରାଯାଇ ଖତିୟାନ ପ୍ରବିଷ୍ଟିର ଅଙ୍କିକ ନିର୍ଭୁଲତା ସମ୍ବନ୍ଧରେ ନିଶ୍ଚିତ ହେବାକୁ ପଡ଼ିବ ।

## ୪ । ସଂକ୍ଷିପ୍ତ ରୂପାନ୍ତରଣ(Abridged Conversion)

ଉପରୋକ୍ତ ପ୍ରକ୍ରିୟା ଅନୁସରଣ କଲେ ଏକ ଲିଖନ ହିସାବ ପଦ୍ଧତିକୁ ଦ୍ୱିଲିଖନ ହିସାବ ପଦ୍ଧତିରେ ସମ୍ପୂର୍ଣ୍ଣ ରୂପେ ରୂପାନ୍ତରିତ କରାଯାଇପାରିବ । କିନ୍ତୁ ଏପରି ପ୍ରକ୍ରିୟା

ବହୁ ଶ୍ରମ ଓ ସମୟସାପେକ୍ଷ । ତେଣୁ ଏଠେ ବର୍ଣ୍ଣିତ ପ୍ରକ୍ରିୟା ପରିବର୍ତ୍ତେ ଏକ ସଂକ୍ଷିପ୍ତ ପ୍ରକ୍ରିୟା ନିମ୍ନରେ ବର୍ଣ୍ଣିତ ହେଲ, ଯାହା ଅତି ଅଳ୍ପ ଆୟାସରେ ତଥା ଅପେକ୍ଷାକୃତ ଅଳ୍ପ ସମୟ ମଧ୍ୟରେ ରୂପାନ୍ତରଣ ସମ୍ଭବ କରିପାରିବ ।

ଏହି ସଂକ୍ଷିପ୍ତ ରୂପାନ୍ତରଣ ପଦ୍ଧତି ସକାଶେ ଏକ ପ୍ରାପ୍ତି ଓ ପ୍ରଦାନ ହିସାବ ଅଥବା ରୋକଡ ବହିର ସଂକ୍ଷିପ୍ତସାର ପ୍ରସ୍ତୁତ କରାଯିବ । ସମସ୍ତ ହିସାବ କାଳ ମଧ୍ୟରେ କେତେଗୁଡ଼ିଏ ହିସାବ ବାବଦ ଯାହା ବ୍ୟୟ କରାଯାଇଛି ଏବଂ ଯାହା ପ୍ରାପ୍ତ ହୋଇଛି ସେଗୁଡ଼ିକର ସମଷ୍ଟି ଏଥିରେ ଲେଖାଯିବ । ଉଦାହରଣସ୍ୱରୂପ ଦାୟୀ ପାର୍ଶ୍ୱରେ ଗ୍ରାହକମାନଙ୍କ-ଠାରୁ ପ୍ରାପ୍ତ ଅର୍ଥ, ନଗଦ ବିକ୍ରିରୁ ପ୍ରାପ୍ତ ଅର୍ଥ, ଆସବାବ ବା ଅନ୍ୟାନ୍ୟ ସମ୍ପତ୍ତି ବିକ୍ରିରୁ ପ୍ରାପ୍ତ ଅର୍ଥ ବିନିଯୋଗରୁ ପ୍ରାପ୍ତ ସୁଧ ଇତ୍ୟାଦି ବିଷୟମାନ ଅନ୍ତର୍ଭୁକ୍ତ ହେବ ଏବଂ ଦାତା ପାର୍ଶ୍ୱରେ ବେତନ ଓ ମଜୁରି, ଘର ଭଡ଼ା, ଟିକସ ବାବଦ ବ୍ୟୟ, ବୀମା ପ୍ରିମିୟମ୍, ମହାଜନଙ୍କୁ ପ୍ରଦତ୍ତ ଅର୍ଥ, ନଗଦ ମୂଲ୍ୟରେ ପଣ୍ୟ କ୍ରୟ, ଆସବାବ୍ ଅଥବା କଳ କବଜା କ୍ରୟ, ଉଠାଣ ପ୍ରଭୃତି ବିଭିନ୍ନ ଶିରୋନାମା ତଳେ ଲେଖାଯିବ । ଏହାର ଏକ ନମୁନା ନିମ୍ନରେ ପ୍ରଦତ୍ତ ହେଲ ।

### ରୋକଡ଼ ବହି (ସଂକ୍ଷିପ୍ତ ସାର)

| ଦାୟୀ | ଟଙ୍କା | ଦାତା | ଟଙ୍କା |
|---|---|---|---|
| ପୂର୍ବବାକି ବାବଦ : | | ବେତନ ଓ ମଜୁରି ବାବଦ | ୩,୭୦୦ |
| ନଗଦ ତହବିଲ | ୨୧୫ | ଘରଭଡ଼ା ଓ ଟିକସ ବାବଦ | ୧,୫୦୦ |
| ବ୍ୟାଙ୍କରେ ଗଚ୍ଛିତ | ୧୫,୧୭୫ | ବୀମା ପ୍ରିମିୟମ ବାବଦ | ୪୦୦ |
| ଖାତକଙ୍କଠାରୁ ପ୍ରାପ୍ତ | | ବିବିଧ ବ୍ୟୟ ବାବଦ | ୧,୭୦୦ |
| ଅର୍ଥ ବାବଦ | ୧୦,୩୦୦ | ମହାଜନଙ୍କୁ ପ୍ରଦତ୍ତ ଅର୍ଥ | |
| ନଗଦ ବିକ୍ରି ବାବଦ | ୧୨,୪୦୦ | ବାବଦ | ୮,୨୫୦ |
| ଆସବାବ ବିକ୍ରି ବାବଦ | ୨,୧୫୦ | ନଗଦ ମୂଲ୍ୟରେ କ୍ରୟ ବାବଦ | ୬,୨୦୦ |
| ବିନିଯୋଗର ସୁଧ ବାବଦ | ୨୦୦ | କଳକବ୍ଜା କ୍ରୟ ବାବଦ | ୧୦,୦୦୦ |
| | | ଉଠାଣ ହିସାବ ବାବଦ | ୧,୨୦୦ |
| | | ବାକି ପଡ଼ିଲା : | |
| | | ନଗଦ ତହବିଲ | ୧୯୦ |
| | | ବ୍ୟାଙ୍କରେ ଗଚ୍ଛିତ | ୭,୫୦୦ |
| | ୪୦,୪୪୦ | | ୪୦,୪୪୦ |
| ପୂର୍ବ ବାକି ବାବଦ : | | | |
| ନଗଦ ତହବିଲ | ୧୯୦ | | |
| ବ୍ୟାଙ୍କରେ ଗଚ୍ଛିତ | ୭,୫୦୦ | | |

ଯଦି ଏହି ପଦ୍ଧତି ଅନୁଯାୟୀ ରୂପାନ୍ତରଣ କରିବାର ଇଚ୍ଛା ଥାଏ ତାହା ହେଲେ ବ୍ୟବସାୟୀ ରେକର୍ଡ଼ ବହିରେ ବିଭିନ୍ନ ସ୍ତମ୍ଭ ଖୋଲି ଏହି ବିଭିନ୍ନ ହିସାବ ବାବଦ ଅର୍ଥର ପ୍ରାପ୍ତି ଓ ପ୍ରଦାନ ଯଦି ଲିପିବଦ୍ଧ କରନ୍ତି ତାହା ହେଲେ ଅତି ଅଳ୍ପ ସମୟ ଓ ପରିଶ୍ରମରେ ଏକ ଲିଖନ ହିସାବ ଦ୍ୱିଲିଖନ ହିସାବ ପଦ୍ଧତିରେ ରୂପାନ୍ତରିତ ହୋଇପାରିବ ।

**୫ । ଅସମ୍ପୂର୍ଣ୍ଣ ନଥି ପତ୍ର ବା ପ୍ରଲେଖରୁ ହିସାବ ପ୍ରସ୍ତୁତିକରଣ :**

ବ୍ୟାବହାରିକ କ୍ଷେତ୍ରରେ ଅନେକ ସମୟରେ ଏକ ଲିଖନ ହିସାବ ପଦ୍ଧତି ବ୍ୟବହୃତ ହେଉଥିବା ବ୍ୟବସାୟମାନଙ୍କରେ ଦ୍ୱିଲିଖନ ହିସାବ ପଦ୍ଧତି ବିଦ୍ୟମାନ ଥିବା ତଥ୍ୟାବଳିକୁ ସ୍ପଷ୍ଟରୂପେ ଲିପିବଦ୍ଧ ହୋଇନଥାଏ, ମାତ୍ର ସେହିପରି ଅସମ୍ପୂର୍ଣ୍ଣ ପ୍ରଲେଖ (ରେକର୍ଡ଼)ରୁ ସ୍ଥୂଳ ବା ମୋଟ ଲାଭ ଓ କ୍ଷତି ହିସାବ ଓ ଉଦ୍‌ବୃତ୍ତ ପତ୍ର ପ୍ରସ୍ତୁତ କରିବାକୁ ପଡ଼େ । ପରୀକ୍ଷା ପ୍ରଶ୍ନ ପତ୍ରରେ ମଧ୍ୟ ଏ ପ୍ରକାର ପ୍ରଶ୍ନ ପଡ଼ିଥାଏ, ତେଣୁ ଏ ସମ୍ବନ୍ଧୀୟ କେତେକ ବିଷୟ ଏଠାରେ ଆଲୋଚିତ ହେଲା ।

**୧ । ଧାର ସୂତ୍ରରେ ବିକ୍ରୟ ଓ କ୍ରୟର ପରିମାଣ ନିର୍ଦ୍ଧାରଣ :**

କେତେକ ସମୟରେ ମୋଟ ଖାତକଙ୍କର ହିସାବ ପ୍ରଦତ୍ତ ଥାଏ ଅଥବା ତାହା ପ୍ରସ୍ତୁତ କରିବାକୁ ପଡ଼େ ଏବଂ ତହିଁରୁ ଧାର ସୂତ୍ରରେ ବିକ୍ରୀତ ପଣ୍ୟର ପରିମାଣ ନିର୍ଦ୍ଧାରଣ କରାଯାଏ । ଏହାର ଏକ ଦୃଷ୍ଟାନ୍ତ ନିମ୍ନରେ ପ୍ରଦତ୍ତ ହେଲା ।

ଦୃଷ୍ଟାନ୍ତ (୭)

ହିସାବ ବର୍ଷ ଆରମ୍ଭରେ ଖାତକଙ୍କର ମୋଟ ପରିମାଣ ୮,୭୦୦ ଟଙ୍କା ଥିଲା । ଏବଂ ବର୍ଷ ଶେଷରେ ଏହି ପରିମାଣ ୭,୩୦୦ଟଙ୍କା ହେଲା । ରେକର୍ଡ଼ ବହିରୁ ଦେଖାଯାଉଛି ଯେ ଖାତକମାନଙ୍କଠାରୁ ୧୫,୮୦୦ ଟଙ୍କା ମିଳିଛି । ଏହି ତଥ୍ୟାବଳୀରୁ ଧାର ସୂତ୍ରରେ ବିକ୍ରୟ ପରିମାଣ ନିର୍ଣ୍ଣୟ କର ।

**ସମାଧାନ**

ମୋଟ ଖାତକଙ୍କ ହିସାବ

ଦାୟୀ | | ଦାତା |
|---|---|---|---|
| | ଟଙ୍କା | | ଟଙ୍କା |
| ପୂର୍ବ ବାକୀ ବାବଦ | ୮,୭୦୦ | ନଗଦ ତହବିଲ ବାବଦ | ୧୫,୮୦୦ |
| ଧାରରେ ବିକ୍ରୟ ବାବଦ | | ବାକୀ ଗଡ଼ିଲା | ୭,୩୦୦ |
| (ସମତୁଳନକାରୀ ପରିମାଣ) | ୧୩,୪୦୦ | | |
| | ୨୨,୧୦୦ | | ୨୨,୧୦୦ |
| ପୂର୍ବ ବାକୀ ବାବଦ | ୭,୩୦୦ | | |

ସେହିପରି ଧାର ସୂତ୍ରରେ କ୍ରୟ ପରିମାଣ ନିର୍ଦ୍ଧାରଣ କରିବା ସକାଶେ ମୋଟ ମହାଜନଙ୍କ ହିସାବ ପ୍ରସ୍ତୁତ କରିବା ଆବଶ୍ୟକ ହୁଏ । ଏହାର ଏକ ଦୃଷ୍ଟାନ୍ତ ନିମ୍ନରେ ପ୍ରଦତ୍ତ ହେଲ ।

ଦୃଷ୍ଟାନ୍ତ (୮)

ହିସାବ ବର୍ଷ ପ୍ରାରମ୍ଭରେ ମୋଟ ମହାଜନଙ୍କ ପରିମାଣ ୧୧,୨୦୦ ଟଙ୍କା ଥିଲା ଓ ବର୍ଷ ଶେଷରେ ଏହି ପରିମାଣ ୯,୩୦୦ ଟଙ୍କା ହେଲା । ରୋକଡ଼ ବହିରୁ ଦେଖାଯାଉଛି ଯେ ମହାଜନମାନଙ୍କୁ ୧୫,୭୦୦ ଟଙ୍କା ଦିଆଯାଇଛି । ଧାର ସୂତ୍ରରେ କେତେ ମୂଲ୍ୟର ପଣ୍ୟ କ୍ରୟ କରାଯାଇଛି ତାହା ନିର୍ଣ୍ଣୟ କର ।

## ସମାଧାନ

ମୋଟ ମହାଜନଙ୍କ ହିସାବ

| ଦାୟୀ | ଟଙ୍କା | ଦାତା | ଟଙ୍କା |
|---|---|---|---|
| ନଗଦ ତହବିଲ ବାବଦ | ୧୫,୭୦୦ | ପୂର୍ବ ବାକି ବାବଦ | ୧୧,୨୦୦ |
| ବାକି ଗଡ଼ିଲ | ୯,୩୦୦ | ଧାର ସୂତ୍ରରେ କ୍ରୟ ବାବଦ (ସମତୁଲନକାରୀ ପରିମାଣ) | ୧୩,୮୦୦ |
| | ୨୫,୦୦୦ | | ୨୫,୦୦୦ |
| | | ପୂର୍ବ ବାକି ବାବଦ | ୯,୩୦୦ |

ଉଲ୍ଲିଖିତ ଦୃଷ୍ଟାନ୍ତ ଦୁଇଟିର ସରଳତା ପ୍ରକୃତ ବ୍ୟବସାୟ କ୍ଷେତ୍ରରେ କ୍ୱଚିତ୍ ପରିଦୃଷ୍ଟ ହୁଏ । ଯେଉଁ ବିଷୟଗୁଡ଼ିକ ପରିସ୍ଥିତି ଅଥବା ସମସ୍ୟାକୁ ଜଟିଳ କରିପାରେ ସେଗୁଡ଼ିକ ହେଉଛି ପ୍ରଦତ୍ତ ବା ପ୍ରାପ୍ତ ବଟ୍ଟା, ଅନ୍ତର୍ମୁଖୀ ଫେରସ୍ତ ଅଥବା ବହିର୍ମୁଖୀ ଫେରସ୍ତ, ପ୍ରାପ୍ୟ ଅଥବା ଦେୟ ହୁଣ୍ଡିର ପ୍ରତ୍ୟାଖ୍ୟାନ, ଅନ୍ୟାନ୍ୟ ପ୍ରଭାର ବାବଦ (ଯେପରି ଗାଡ଼ିଭଡ଼ା) ପ୍ରାପ୍ତ ବା ପ୍ରଦତ୍ତ ଅର୍ଥ, ଇତ୍ୟାଦି । ଏଥିମଧ୍ୟରୁ କେତେକ ବିଷୟ ନିୟୁମିତ କରି ନିମ୍ନରେ ଗୋଟିଏ ଦୃଷ୍ଟାନ୍ତ ଦିଆଗଲା ।

ଦୃଷ୍ଟାନ୍ତ (୯)

ନିମ୍ନଲିଖିତ ବିବରଣୀରୁ ୧୯୭୪ ମସିହାର ଧାର ସୂତ୍ରରେ ବିକ୍ରୟ ଓ କ୍ରୟ ପରିମାଣ ନିର୍ଦ୍ଧାରଣ କର—

| | ଟଙ୍କା |
|---|---|
| ୧୯୭୪ ମସିହା ଜାନୁଆରି ୧ ତାରିଖରେ ଖାତକଙ୍କର ମୋଟ ପରିମାଣ | ୧୫,୩୦୦ |
| ୧୯୭୪ ମସିହା ଜାନୁଆରି ୧ ତାରିଖରେ ମହାଜନଙ୍କର ମୋଟ ପରିମାଣ | ୯,୫୦୦ |
| ବର୍ଷ ମଧ୍ୟରେ ଖାତକମାନଙ୍କଠାରୁ ପ୍ରାପ୍ତ ଅର୍ଥ | ୪୦,୨୦୦ |
| ବର୍ଷ ମଧ୍ୟରେ ପ୍ରଦତ୍ତ ବଟ୍ଟା | ୩୫୦ |
| ଅନାଦେୟ ଋଣ | ୫୦୦ |
| ଅନ୍ତର୍ମୁଖୀ ଫେରସ୍ତ | ୭୧୦ |
| ଗ୍ରାହକମାନଙ୍କଠାରୁ ପ୍ରାପ୍ତ ହୁଣ୍ଡି | ୭,୪୦୦ |
| ମହାଜନମାନଙ୍କୁ ପ୍ରଦତ୍ତ ଅର୍ଥ | ୧୯,୮୦୦ |
| ସେମାନଙ୍କଠାରୁ ପ୍ରାପ୍ତ ବଟ୍ଟା | ୨୩୦ |
| ସେମାନଙ୍କୁ ଫେରସ୍ତ ଦିଆଯାଇଥିବା ପଣ୍ୟ | ୭୪୦ |
| ସେମାନଙ୍କୁ ଦିଆଯାଇଥିବା ହୁଣ୍ଡି | ୪,୩୦୦ |
| ୩୧-୧୨-୭୪ ତାରିଖରେ ମୋଟ ଖାତକଙ୍କ ପରିମାଣ | ୧୮,୨୦୦ |
| ୩୧-୧୨-୭୪ ତାରିଖରେ ମୋଟ ମହାଜନଙ୍କ ପରିମାଣ | ୭,୧୦୦ |

## ସମାଧାନ

ମୋଟ ଖାତକଙ୍କ ହିସାବ

| ଦାୟୀ | | ଟଙ୍କା | ଦାତା | | ଟଙ୍କା |
|---|---|---|---|---|---|
| ୧୯୭୪ | | | ୧୯୭୪ | | |
| ଜାନୁ-୧ | ପୂର୍ବବାକି ବାବଦ | ୧୫,୩୦୦ | ଜାନୁ-୧ରୁ | | |
| ଜାନୁ-୧ରୁ | ଧାର ସୂତ୍ରରେ | | ଡିସେ-୩୧ | ନଗଦ ତହବିଲ ବାବଦ | ୪୦,୨୦୦ |
| ଡିସେ-୩୧ | ବିକ୍ରୟ ବାବଦ (ସମତୁଳନକାରୀ ପରିମାଣ) | ୫୧,୦୭୦ | | ପ୍ରଦତ୍ତ ବଟ୍ଟା ବାବଦ | ୩୫୦ |
| | | | | ଅନାଦେୟ ଋଣ ବାବଦ | ୫୦୦ |
| | | | | ପ୍ରାପ୍ୟ ହୁଣ୍ଡି ବାବଦ | ୭,୪୦୦ |
| | | | | ଅନ୍ତର୍ମୁଖୀ ଫେରସ୍ତ ବାବଦ | ୭୧୦ |
| | | | ଡିସେ-୩୧ | ବାକି ଗଡ଼ିଲା | ୧୮,୨୦୦ |
| | | ୬୬,୩୭୦ | | | ୬୬,୩୭୦ |
| ୧୯୭୫ | | | | | |
| ଜାନୁ-୧ | ପୂର୍ବବାକି ବାବଦ | ୧୮,୨୦୦ | | | |

ମୋଟ ମହାଜନଙ୍କ ହିସାବ

| ଦାୟୀ | | ଟଙ୍କା | ଦାତା | | ଟଙ୍କା |
|---|---|---|---|---|---|
| ୧୯୭୪ | | | ୧୯୭୪ | | |
| ଜାନୁ-୧ରୁ | | | ଜାନୁ-୧ | ପୂର୍ବବାକି ବାବଦ | ୯,୫୦୦ |
| ଡିସେ-୩୧ | ନଗଦ ତହବିଲ ବାବଦ | ୧୯,୮୦୦ | ଜାନୁ-୧ରୁ | | |
| | ପ୍ରାପ୍ତ ବଟା ବାବଦ | ୨୩୦ | ଡିସେ-୩୧ | ଧାର ସୂତ୍ରରେ କ୍ରୟ ବାବଦ (ସମତୁଳନକାରୀ ପରିମାଣ) | ୨୨,୫୭୦ |
| | ବହିର୍ମୁଖୀ ଫେରସ୍ତ ବାବଦ | ୬୪୦ | | | |
| | ଦେୟ ହୁଣ୍ଡି ବାବଦ | ୪,୩୦୦ | | | |
| ଡିସେ-୩୧ | ବାକି ଗଚ୍ଛିତ | ୭,୧୦୦ | | | |
| | | ୩୨,୦୭୦ | | | ୩୨,୦୭୦ |
| | | | ୧୯୭୫ | | |
| | | | ଜାନୁ-୧ | ପୂର୍ବବାକି ବାବଦ | ୭,୧୦୦ |

## (୨) ପ୍ରାପ୍ୟ ଓ ଦେୟ ହୁଣ୍ଡି ହିସାବ ପ୍ରସ୍ତୁତକରଣ

ମୋଟ ଖାତକ ଓ ମୋଟ ମହାଜନ ପରିମାଣ ବ୍ୟତୀତ ଯଦି ପ୍ରାପ୍ୟ ହୁଣ୍ଡି ଓ ଦେୟ ହୁଣ୍ଡି ସଂକ୍ରାନ୍ତ କାରବାର ଥାଏ ତାହା ହେଲେ ପ୍ରାପ୍ୟ ହୁଣ୍ଡି ହିସାବ ଓ ଦେୟ ହୁଣ୍ଡି ହିସାବ ପ୍ରସ୍ତୁତ କରିବା ଆବଶ୍ୟକ ହେବ । ସେହି ହିସାବମାନଙ୍କରୁ କେତେ ହୁଣ୍ଡି ଗ୍ରାହକମାନେ ବର୍ଷ ମଧ୍ୟରେ ଦେଇଛନ୍ତି ଓ କେତେ ହୁଣ୍ଡି ମହାଜନମାନଙ୍କୁ ବର୍ଷ ମଧ୍ୟରେ ଦିଆଯାଇଛି ତାହା ଜଣାପିବ ।

### ଦୃଷ୍ଟାନ୍ତ (୧୦)

ମନେକର ଯେ, ବର୍ଷ ଆରମ୍ଭର ଆର୍ଥିକ ଅବସ୍ଥା ବିବରଣୀରେ ପ୍ରାପ୍ୟ ହୁଣ୍ଡିର ପରିମାଣ ୮,୩୦୦ ଟଙ୍କା ଥିଲା ଓ ରେକର୍ଡ଼ ବହିରୁ ଜଣାଯାଏ ଯେ ମୋଟ ୨୨,୫୦୦ ଟଙ୍କା ପ୍ରାପ୍ୟ ହୁଣ୍ଡି ବାବଦ ମିଳିଛି । ବର୍ଷ ଶେଷରେ ହାତରେ ୧୦,୨୦୦ ଟଙ୍କାର ପ୍ରାପ୍ୟ ହୁଣ୍ଡି ମହଜୁଦ ଅଛି । ଗ୍ରାହକମାନେ ମୋଟ କେତେ ଟଙ୍କାର ପ୍ରାପ୍ୟ ହୁଣ୍ଡି ସ୍ୱୀକାର କରିଥିଲେ ତାହା ନିର୍ଣ୍ଣୟ କର ।

## ସମାଧାନ

ପ୍ରାପ୍ୟ ହୁଣ୍ଡି ହିସାବ

| ଦାୟୀ | ଟଙ୍କା | ଦାତା | ଟଙ୍କା |
|---|---|---|---|
| ପୂର୍ବ ବାକି ବାବଦ | ୮,୩୦୦ | ନଗଦ ତହବିଲ ବାବଦ | ୨୨,୫୦୦ |
| ଖାତକମାନଙ୍କ ବାବଦ (ସନ୍ତୁଳନକାରୀ ପରିମାଣ) | ୨୪,୪୦୦ | ବାକି ଗଡ଼ିଲା | ୧୦,୨୦୦ |
| | ୩୨,୭୦୦ | | ୩୨,୭୦୦ |
| ପୂର୍ବ ବାକି ବାବଦ | ୧୦,୨୦୦ | | |

ସୁତରାଂ ୨୪,୪୦୦ ଟଙ୍କା ସକାଶେ ପ୍ରାପ୍ୟ ହୁଣ୍ଡି ବାବଦ ମୋଟ ଖାତକମାନଙ୍କ ହିସାବକୁ ଦାତା କରାଯିବ ।

### ଦୃଷ୍ଟାନ୍ତ (୧୧)

ବର୍ଷ ଆରମ୍ଭର ଆର୍ଥିକ ଅବସ୍ଥା ବିବରଣୀରେ ଦେୟ ହୁଣ୍ଡିର ମୋଟ ପରିମାଣ ୬,୪୦୦ ଟଙ୍କା ଥିଲା । ରେକର୍ଡ ବହିରୁ ଦେଖାଯାଏ ଯେ ଦେୟ ହୁଣ୍ଡି ବାବଦ ୧୧,୮୦୦ ଟଙ୍କା ମହାଜନମାନଙ୍କୁ ବର୍ଷ ମଧ୍ୟରେ ଦିଆଯାଇଛି । ବର୍ଷ ଶେଷରେ ୭,୬୦୦ ଟଙ୍କା ମୂଲ୍ୟର ହୁଣ୍ଡି ମହଜୁଦ ରହିଛି । ମୋଟ କେତେ ଦେୟ ହୁଣ୍ଡି ସ୍ୱୀକୃତ ହୋଇଛି ତାହା ନିର୍ଣ୍ଣୟ କର ।

ଦେୟ ହୁଣ୍ଡି ହିସାବ

| ଦାୟୀ | ଟଙ୍କା | ଦାତା | ଟଙ୍କା |
|---|---|---|---|
| ନଗଦ ତହବିଲ ବାବଦ | ୧୧,୮୦୦ | ପୂର୍ବ ବାକି ବାବଦ | ୬,୪୦୦ |
| ବାକି ଗଡ଼ିଲା | ୭,୬୦୦ | ମହାଜନମାନଙ୍କ ବାବଦ (ସନ୍ତୁଳନକାରୀ ପରିମାଣ) | ୧୩,୦୦୦ |
| | ୧୯,୪୦୦ | | ୧୯,୪୦୦ |
| | | ପୂର୍ବ ବାକି ବାବଦ | ୭,୬୦୦ |

ମୋଟ ମହାଜନମାନଙ୍କ ହିସାବକୁ ଦେୟ ହୁଣ୍ଡି ହିସାବ ବାବଦ ୧୩,୦୦୦ ଟଙ୍କା ସକାଶେ ଦାୟୀ କରାଯିବ ।

(ଗ) ଧାର ସୂତ୍ରରେ ବିକ୍ରୟ ଓ କ୍ରୟ ପ୍ରଦତ୍ତ ଥିଲେ ତହିଁରୁ ମୋଟ ଖାତକ ଓ ମୋଟ ମହାଜନ ପରିମାଣ ନିର୍ଣ୍ଣୟ କରିବା ।

କେତେକ ସମୟରେ ବିକ୍ରୟ ଓ କ୍ରୟ ପରିମାଣ ପ୍ରଦତ୍ତ ଥାଏ କିନ୍ତୁ ମୋଟ ଖାତକ, ମୋଟ ମହାଜନ ପରିମାଣ, ପ୍ରାପ୍ୟ ହୁଣ୍ଡି ଓ ଦେୟ ହୁଣ୍ଡିର ପରିମାଣ ନିର୍ଣ୍ଣୟ କରିବାକୁ ପଡ଼େ । ଏଥି ସକାଶେ ଏହି ଚାରି ଗୋଟି ହିସାବ ପ୍ରସ୍ତୁତ କରିବା ଆବଶ୍ୟକ ହୁଏ । ଏହି ହିସାବଗୁଡ଼ିକ ପ୍ରସ୍ତୁତ କରିବା ନିମନ୍ତେ ବର୍ଷ ଆରମ୍ଭର ଆର୍ଥିକ ଅବସ୍ଥାର ବିବରଣୀରେ ଆଦ୍ୟ ବାକି ବା ବଳକା ପରିମାଣଗୁଡ଼ିକ ପ୍ରଦତ୍ତ ହୋଇଥିବ । ପ୍ରାପ୍ତ ଅର୍ଥ ବା ପ୍ରଦତ୍ତ ଅର୍ଥର ପରିମାଣ ରୋକଡ଼ ବହିରୁ ମିଳିବ । ଅନ୍ୟାନ୍ୟ ଦେଣ ନେଣଗୁଡ଼ିକୁ ସାଧାରଣ ଭାବରେ ଖତିୟାନ-ଭୁକ୍ତ କରାଯିବ । ଉଦାହରଣସ୍ୱରୂପ ବିକ୍ରୟ ପରିମାଣ ସକାଶେ ମୋଟ ଖାତକଙ୍କ ହିସାବକୁ ଦାୟୀ କରାଯିବ, କ୍ରୟ ପରିମାଣ ସକାଶେ ମୋଟ ମହାଜନଙ୍କ ହିସାବକୁ ଦାତା କରାଯିବ, ପ୍ରାପ୍ୟ ହୁଣ୍ଡି ସକାଶେ ପ୍ରାପ୍ୟ ହୁଣ୍ଡି ହିସାବକୁ ଦାୟୀ ଓ ମୋଟ ଖାତକଙ୍କ ହିସାବକୁ ଦାତା କରାଯିବ ଓ ଦେୟ ହୁଣ୍ଡି ପରିମାଣ ସକାଶେ ଦେୟ ହୁଣ୍ଡି ହିସାବକୁ ଦାତା କରାଯିବ ଓ ମୋଟ ମହାଜନ ହିସାବକୁ ଦାୟୀ କରାଯିବ । ଯଦି ବଟା ପ୍ରଦତ୍ତ ହୋଇଥାଏ, ତାହା ହେଲେ ପ୍ରଦତ୍ତ ବଟା ହିସାବକୁ ଦାୟୀ କରାଯିବ ଓ ମୋଟ ଖାତକଙ୍କ ହିସାବକୁ ଦାତା କରାଯିବ । ଯଦି ତାଙ୍କଠାରୁ ପଣ୍ୟ ଫେରସ୍ତ ଆସିଥାଏ, ତାହା ହେଲେ ଅନ୍ତର୍ମୁଖୀ ଫେରସ୍ତ ହିସାବକୁ ଦାୟୀ କରାଯାଇ ମୋଟ ଖାତକଙ୍କ ହିସାବକୁ ଦାତା କରାଯିବ । ପ୍ରାପ୍ତ ବଟା ଓ ବହିର୍ମୁଖୀ ଫେରସ୍ତ ହିସାବକୁ ଦାତା କରାଯାଇ ମୋଟ ମହାଜନଙ୍କ ହିସାବକୁ ଦାୟୀ କରାଯିବ । ଏହା ପରେ ମୋଟ ଖାତକ ଓ ମୋଟ ମହାଜନଙ୍କ ହିସାବକୁ ସନ୍ତୁଳନ କରାଯାଇ ବାକି ବା ବଳକା ନିର୍ଣ୍ଣୟ କରାଯିବ ଓ ସେଗୁଡ଼ିକୁ ଉଦ୍‌ବୃତ୍ତ ପତ୍ରକୁ ନିଆଯିବ । ଏହାର ଏକ ଦୃଷ୍ଟାନ୍ତ ନିମ୍ନରେ ପ୍ରଦତ୍ତ ହେଲା ।

### ଦୃଷ୍ଟାନ୍ତ (୧୨)

ରମାକାନ୍ତଙ୍କର ୧୯୭୩ ମସିହା ଡିସେମ୍ବର ୩୧ ତାରିଖର ଉଦ୍‌ବୃତ୍ତ ପତ୍ର ନିମ୍ନରେ ଦିଆଗଲା

| | ଟଙ୍କା | | ଟଙ୍କା |
|---|---|---|---|
| ବ୍ୟାଙ୍କରୁ ଅଧିକା ଉଠାଣ | ୧,୦୦୦ | ନଗଦ ତହବିଲ | ୫୦ |
| ବିବିଧ ମହାଜନ | ୫,୪୫୦ | ପ୍ରାପ୍ୟ ହୁଣ୍ଡି | ୪,୨୦୦ |
| ଦେୟ ହୁଣ୍ଡି | ୩,୬୫୦ | ବିବିଧ ଖାତକ | ୭,୫୦୦ |
| ମୂଳଧନ | ୧୯,୯୦୦ | ମହଜୁଦ ପଣ୍ୟ | ୮,୨୫୦ |
| | | କଳକବଜା | ୯,୦୦୦ |
| | | ଭୂମି ଓ ଭବନ | ୧୨,୦୦୦ |
| | ୪୦,୦୦୦ | | ୪୦,୦୦୦ |

୧୯୭୪ ମସିହା ଡିସେମ୍ବର ୩୧ ତାରିଖରେ ଶେଷ ହେଉଥିବା ବର୍ଷର ନଗଦ ତହବିଲ ସଂକ୍ରାନ୍ତ ଦେଣ ନେଣ ନିମ୍ନରେ ଦିଆଗଲା—

| | ଟଙ୍କା | | ଟଙ୍କା |
|---|---|---|---|
| ପୂର୍ବବାକି ବାବଦ | ୫୦ | ବ୍ୟାଙ୍କରୁ ଅଧିକା ଉଠାଣ | ୧,୦୦୦ |
| ଖାତକଙ୍କଠାରୁ ପ୍ରାପ୍ତି ବାବଦ | ୧୨,୦୭୦ | ବେତନ ବାବଦ | ୩,୭୦୦ |
| ପ୍ରାପ୍ୟ ହୁଣ୍ଡି ବାବଦ | ୧୦,୨୦୦ | ମଜୁରି ବାବଦ | ୮୫୦ |
| ନଗଦ ବିକ୍ରି ବାବଦ | ୨,୯୦୦ | ଦେୟ ହୁଣ୍ଡି ବାବଦ | ୩,୨୦୦ |
| | | ମହାଜନଙ୍କୁ ପରିଶୋଧ ବାବଦ | ୧୧,୧୦୦ |
| | | ସାଧାରଣ ବ୍ୟୟ ବାବଦ | ୫୦୦ |
| | | ଉଠାଣ ହିସାବ ବାବଦ | ୧,୨୦୦ |
| | | ୧-୭-୭୪ ତାରିଖରେ ୪% ସରକାରୀ ଋଣ ପତ୍ରରେ ବିନିଯୋଗ ବାବଦ | ୨,୦୦୦ |
| | | ମହଜୁଦ ନଗଦ ତହବିଲ | ୭୦ |
| | | ବ୍ୟାଙ୍କରେ ଗଚ୍ଛିତ | ୭୦୦ |
| | ୨୫,୨୧୦ | | ୨୫,୨୧୦ |

ତାଙ୍କର ଅବଶିଷ୍ଟ ନେଣ ଦେଣ ବୃତ୍ତିକର ସଂକ୍ଷିପ୍ତ ସାର ନିମ୍ନରେ ପ୍ରଦତ୍ତ ହେଲା:

| | ଟଙ୍କା |
|---|---|
| ବିକ୍ରୟ (ଉଧାର) | ୨୫,୩୦୦ |
| ଗ୍ରାହକ/ଖାତକଙ୍କୁ ପ୍ରଦତ୍ତ ବଟ୍ଟା | ୧୪୦ |
| କ୍ରୟ | ୧୫,୫୦୦ |
| ପ୍ରାପ୍ତ ବଟ୍ଟା | ୧୮୦ |
| ପ୍ରାପ୍ୟ ହୁଣ୍ଡି (ପ୍ରାପ୍ତ) | ୧୧,୦୦୦ |
| ପ୍ରଦତ୍ତ ଦେୟ ହୁଣ୍ଡି | ୪,୦୦୦ |
| ମହଜୁଦ ପଣ୍ୟ (୩୧-୧୨-୭୪) | ୧୪,୨୦୦ |

ମୋଟ ଖାତକ ପରିମାଣର ୩% ହାରରେ ସନ୍ଦିଗ୍ଧ ଋଣର ସଞ୍ଚିତ ଗଢ଼ାଯିବ । କଳକବ୍ଜାରୁ ୫% ହାରରେ ଓ ଭୂମି ଭବନରୁ ୨·୫% ହାରରେ ମୂଲ୍ୟହ୍ରାସ ବାଦ ଦିଅ ।

ରମାକାନ୍ତଙ୍କର ୩୧-୧୨-୧୯୭୪ ତାରିଖରେ ଶେଷ ହେଉଥିବା ବର୍ଷର ମୋଟ ଓ ନିଟ୍ ଲାଭ ଓ କ୍ଷତି ହିସାବ ଓ ଉକ୍ତ ତାରିଖର ଉଦ୍‌ବୃତ୍ତ ପତ୍ର ପ୍ରସ୍ତୁତ କର ।

**ସମାଧାନ**

ଏଠାରେ ଅବଧେୟ ଯେ ଏହି ପ୍ରଶ୍ନରେ ସବୁ ଆବଶ୍ୟକ ତଥ୍ୟ ରହିଛି, ମାତ୍ର ବିବିଧ ଖାତକ ହିସାବ, ବିବିଧ ମହାଜନଙ୍କ ହିସାବ, ପ୍ରାପ୍ୟ ହୁଣ୍ଡି ହିସାବ ଓ ଦେୟ ହୁଣ୍ଡି ହିସାବଗୁଡ଼ିକର ଅନ୍ତ୍ୟ ବାକି ବା ବଳକା ଦିଆଯାଇନାହିଁ । ଯେହେତୁ ଉଦ୍‌ବୃତ୍ତ ପତ୍ର ପ୍ରସ୍ତୁତ କରିବା ସକାଶେ ଏହି ତଥ୍ୟଗୁଡ଼ିକ ଏକାନ୍ତ ପ୍ରୟୋଜନ, ତେଣୁ ଏହି ଚାରି ଗୋଟି ହିସାବ ନିମ୍ନରେ ପ୍ରଦତ୍ତ ହେଲା ।

ବିବିଧ ଖାତକଙ୍କ ହିସାବ

| ଦାୟୀ | ଟଙ୍କା | ଦାତା | ଟଙ୍କା |
|---|---|---|---|
| ୧୯୭୪ ପୂର୍ବ ବାକି ବାବଦ | ୭,୫୦୦ | ୧୯୭୪ | |
| ଜାନୁ:-୧ ବିକ୍ରୟ (ଧାର ସୂତ୍ରରେ) ବାବଦ | ୨୫,୩୦୦ | ଡିସେ:-୩୧ ନଗଦ ତହବିଲ ବାବଦ | ୧୧,୦୬୦ |
| | | ପ୍ରଦତ୍ତ ବଟା ବାବଦ | ୧୪୦ |
| | | ପ୍ରାପ୍ୟ ହୁଣ୍ଡି ,, | ୧୧,୦୦୦ |
| | | ବାକି ଗଡ଼ିଲା | ୮,୬୦୦ |
| | ୩୧,୮୦୦ | | ୩୧,୮୦୦ |
| ୧୯୭୫ ଜାନୁଆରୀ-୧ ପୂର୍ବବାକି ବାବଦ | ୮,୬୦୦ | | |

ବିବିଧ ମହାଜନଙ୍କ ହିସାବ

| | ଟଙ୍କା | | ଟଙ୍କା |
|---|---|---|---|
| ୧୯୭୦ | | ୧୯୭୪ | |
| ଡିସେ:-୩୧ ନଗଦ ତହବିଲ ବାବଦ | ୧୧,୧୦୦ | ଜାନୁ:-୧ ପୂର୍ବବାକି ବାବଦ | ୫,୦୫୦ |
| ପ୍ରାପ୍ତ ବଟା ,, | ୧୮୦ | କ୍ରୟ (ଧାର ସୂତ୍ରରେ) ବାବଦ | ୧୫,୫୦୦ |
| ଦେୟ ହୁଣ୍ଡି ,, | ୪,୦୦୦ | | |
| ବାକି ଗଡ଼ିଲା | ୫,୬୭୦ | | |
| | ୨୦,୯୫୦ | | ୨୦,୯୫୦ |
| | | ୧୯୭୫ ଜାନୁଆରୀ-୧ ପୂର୍ବ ବାକି ବାବଦ | ୫,୬୭୦ |

## ପ୍ରାପ୍ୟହୁଣ୍ଡି ହିସାବ

| ୧୯୭୪ | | ଟଙ୍କା | ୧୯୭୪ | | ଟଙ୍କା |
|---|---|---|---|---|---|
| ଜାନୁ:-୧ | ପୂର୍ବ ବାକୀ ବାବଦ | ୪,୨୦୦ | ଡିସେ:-୩୧ | ନଗଦ ତହବିଲ | |
| | ବିବିଧ ଖାତକ ,, | ୧୧,୦୦୦ | | ବାବଦ | ୧୦,୨୦୦ |
| | | | | ବାକୀ ଗଡ଼ିଲ | ୫, ୦୦ |
| | | ୧୫,୨୦୦ | | | ୧୫,[illegible] |
| ୧୯୭୫ | | | | | |
| ଜାନୁଆରୀ-୧ | ପୂର୍ବ ବାକୀ ବାବଦ | ୫ ୦୦୦ | | | |

## ଦେୟ ହୁଣ୍ଡି ହିସାବ

| ୧୯୭୪ | | ଟଙ୍କା | ୧୯୭୪ | | ଟଙ୍କା |
|---|---|---|---|---|---|
| ଡିସେ:-୩୧ | ନଗଦ ତହବିଲ | | ଜାନୁ-୧ | ପୂର୍ବ ବାକୀ ବାବଦ | ୩,୬୫୦ |
| | ବାବଦ | ୩,୨୦୦ | | ବିବିଧ ମହାଜନ ,, | ୪,୦୦୦ |
| | ବାକୀ ଗଡ଼ିଲ | ୪,୪୫୦ | | | |
| | | ୭,୬୫୦ | | | ୭,୬୫୦ |
| | | | ୧୯୭୫ | | |
| | | | ଜାନୁ:-୧ | ପୂର୍ବ ବାକୀ ବାବଦ | ୪,୪୫୦ |

### ରମାକାନ୍ତଙ୍କର
### ୧୯୭୪ ମସିହା ଡିସେମ୍ବର ୩୧ ତାରିଖରେ ଶେଷ ହେଉଥିବା ବର୍ଷର
### ମୋଟ ଓ ନେଟ୍ ଲାଭ ଓ କ୍ଷତି ହିସାବ

| ଦାୟୀ | ଟଙ୍କା | ପାଉଣା | ଟଙ୍କା | ଟଙ୍କା |
|---|---|---|---|---|
| ଆଦ୍ୟ ମହଜୁଦ ପଣ୍ୟ ବାବଦ | ୮,୨୫୦ | ବିକ୍ରୟ ବାବଦ : | | |
| କ୍ରୟ ,, | ୧୫,୫୦୦ | ନଗଦ | ୨,୯୦୦ | |
| ମଜୁରି ,, | ୮୫୦ | ଉଧାର | ୨୫,୩୦୦ | ୨୮,୨୦୦ |
| ମୋଟ ଲାଭ ,, | ୧୭,୮୦୦ | ଅନ୍ତ୍ୟ ମହଜୁଦ ପଣ୍ୟ ବାବଦ | | ୧୪,୨୦୦ |
| | ୪୨,୪୦୦ | | | ୪୨,୪୦୦ |
| ବେତନ ବାବଦ | ୩,୬୦୦ | ମୋଟ ଲାଭ ବାବଦ | | ୧୭,୮୦୦ |
| ସାଧାରଣ ବ୍ୟୟ ବାବଦ | ୫୦୦ | ପ୍ରାପ୍ତ ବଟ୍ଟା ବାବଦ | | ୧୮୦ |
| ପ୍ରଦତ୍ତ ବଟ୍ଟା ବାବଦ | ୧୪୦ | ବିନିଯୋଗ ଉପରେ ବକେୟା ସୁଧ ବାବଦ (୨,୦୦୦ ଟଙ୍କା ଉପରେ ୪% ହାରରେ ୬ ମାସର ସୁଧ) | | ୪୦ |
| ସନ୍ଦେହଜନକ ଋଣର ସଞ୍ଚିତ ବାବଦ (୮,୬୦୦ ଟଙ୍କା ଉପରେ ୩% ହାରରେ) | ୨୫୮ | | | |
| ମୂଲ୍ୟହ୍ରାସ ବାବଦ : | | | | |
| କଳକବ୍ଜା—୫% | ୪୫୦ | | | |
| ଭୂମି ଓ ଭବନ—୨.୫% | ୩୦୦ | | | |
| ନେଟ୍ ଲାଭ ବାବଦ | ୧୨,୭୭୨ | | | |
| | ୧୮,୦୨୦ | | | ୧୮,୦୨୦ |

## ରମାକାନ୍ତଙ୍କର
## ୧୯୭୪ ମସିହା ଡିସେମ୍ବର ୩୧ ତାରିଖର
## ଉଦ୍ବୃତ୍ତ ପତ୍ର

| ଦେଣା ଓ ମୂଳଧନ | | ଟଙ୍କା | ପରିସଂପତ୍ତି | ଟଙ୍କା | ଟଙ୍କା |
|---|---|---|---|---|---|
| ବିବିଧ ମହାଜନ | | ୫,୬୭୦ | ନଗଦ ତହବିଲ | | ୬୦ |
| ଦେୟ ହୁଣ୍ଡି | | ୪,୪୫୦ | ବ୍ୟାଙ୍କରେ ଗଚ୍ଛିତ ତହବିଲ | | ୬୦୦ |
| ମୂଳଧନ : | | | ବିନିଯୋଗ | | ୨,୦୦୦ |
| ୧।୧।୭୪ର ବାକି | ୨୯,୯୦୦ | | ବକେୟା ସୁଧ | | ୪୦ |
| ବିଯୁକ୍ତ : ନିଟ ଲାଭ | ୧୨,୭୭୨ | | ପ୍ରାପ୍ୟ ହୁଣ୍ଡି | | ୫,୦୦୦ |
| | ୪୨,୬୭୨ | | ବିବିଧ ଖାତକ | ୮,୬୦୦ | |
| ବିଯୁକ୍ତ : ଉଠାଣ | ୨,୨୦୦ | ୪୦,୪୭୨ | ବିଯୁକ୍ତ : ସନ୍ଦିଗ୍ଧ ଋଣର ସଞ୍ଚିତି | ୨୫୮ | ୮,୩୪୨ |
| | | | ଅନ୍ତ୍ୟ ମହଜୁଦ ପଣ୍ୟ | | ୧୪,୨୦୦ |
| | | | କଳକବ୍ଜା | ୯,୦୦୦ | |
| | | | ବିଯୁକ୍ତ : ମୂଲ୍ୟହ୍ରାସ | ୪୫୦ | ୮,୫୫୦ |
| | | | ଭୂମି ଓ ଭବନ | ୧୨,୦୦୦ | |
| | | | ବିଯୁକ୍ତ : ମୂଲ୍ୟହ୍ରାସ | ୩୦୦ | ୧୧,୭୦୦ |
| | | ୫୦,୫୯୨ | | | ୫୦,୫୯୨ |

(୪) ମହଜୁଦ ପଣ୍ୟ ଓ କ୍ରୟ ପରିମାଣରୁ ବିକ୍ରୟ ପରିମାଣ ନିର୍ଦ୍ଧାରଣ କେତେକ ସ୍ଥଳରେ ରେକର୍ଡ଼ ବହି ସଠିକ ଭାବରେ ରଖାଯାଇ ନ ଥାଏ, ତେଣୁ କେତେ ପରିମାଣର ଅର୍ଥ ମିଳିଛି ତାହା ନିଶ୍ଚିତ ରୂପେ ଜଣାଯାଏ ନାହିଁ, ଫଳତଃ ବିକ୍ରୟର ମୋଟ ପରିମାଣ ଜଣା-ପଡ଼େ ନାହିଁ । ଏପରି କ୍ଷେତ୍ରରେ ଅନୁମାନ କରିବା ବ୍ୟତୀତ ଅନ୍ୟ ଉପାୟ ଅବଲମ୍ବନ କରିବା ସମ୍ଭବ ହୁଏ ନାହିଁ । ଅବଶ୍ୟ ଏପରି ଅନୁମାନର କିଛି ଭିତ୍ତି ଥିବା ଆବଶ୍ୟକ । ଏଥିନିମନ୍ତେ ବିକ୍ରୀତ ପଣ୍ୟର କ୍ରୟ/ନିର୍ମାଣ ପରିବ୍ୟୟ ନିର୍ଣ୍ଣୟ କରିବାକୁ ପଡ଼େ । ଆଦ୍ୟ ସମ୍ଭାର ବା ମହଜୁଦ ପଣ୍ୟ ସହିତ କ୍ରୟ ପରିମାଣକୁ ଯୋଗ କରି ତହିଁରୁ ଅନ୍ତ୍ୟ ମହଜୁଦ ପଣ୍ୟକୁ ବିଯୁକ୍ତ କଲେ ବିକ୍ରୀତ ପଣ୍ୟର କ୍ରୟ ପରିବ୍ୟୟ ନିର୍ଣ୍ଣୀତ ହୋଇପାରିବ । ଏହି ପରିମାଣ ସହିତ

ଆନୁମାନିକ ମୋଟ ଲାଭ ଯୋଗ କଲେ ମୋଟ ବିକ୍ରୟ ପରିମାଣ ନିର୍ଦ୍ଧାରିତ ହୋଇପାରିବ । ମୋଟ ବିକ୍ରୟ ପରିମାଣ ଦତ୍ତ ଥିଲେ ତହିଁରୁ ବିପରୀତ ଭାବରେ ଅଗ୍ରସର ହୋଇ ଆଦ୍ୟ ମହଜୁଦ ପଣ୍ୟ ମଧ୍ୟ ନିର୍ଣ୍ଣୟ କରାଯାଇପାରିବ । ଏହାର କେତେକ ଦୃଷ୍ଟାନ୍ତ ନିମ୍ନରେ ପ୍ରଦତ୍ତ ହେଲା ।

### ଦୃଷ୍ଟାନ୍ତ (୧୩)

ରବିଶଙ୍କର ତାଙ୍କର ହିସାବ ଏକ ଲିଖନ ହିସାବ ପଦ୍ଧତି ଅନୁଯାୟୀ ରଖନ୍ତି ଓ ତାଙ୍କ ରୋକଡ଼ ବହି ଠିକ୍ ଭାବରେ ଲିପିବଦ୍ଧ ହୋଇ ନାହିଁ । ହିସାବ ବର୍ଷ ଆରମ୍ଭରେ ଆଦ୍ୟ ମହଜୁଦ ପଣ୍ୟର ପରିମାଣ ୧୨,୫୦୦ ଟଙ୍କା ଥିଲା ଏବଂ ସେ ୭୫,୦୦୦ ଟଙ୍କା ମୂଲ୍ୟର ପଣ୍ୟ ବର୍ଷ ମଧ୍ୟରେ କ୍ରୟ କରିଥିଲେ । ଅନ୍ତ୍ୟ ମହଜୁଦ ପଣ୍ୟର ମୂଲ୍ୟ ୧୫,୩୦୦ ଟଙ୍କା ଥିଲା । କ୍ରୟ ମୂଲ୍ୟ ଉପରେ ଶତକଡ଼ା ୨୫ ହାରରେ ସେ ମୋଟ ଲାଭ ରଖନ୍ତି । ତାଙ୍କର ବର୍ଷ ମଧ୍ୟରେ ମୋଟ ବିକ୍ରୟ ପରିମାଣ କେତେ ଥିଲା ତାହା ନିର୍ଣ୍ଣୟ କର ।

## ସମାଧାନ

| | ଟଙ୍କା |
|---|---|
| ଆଦ୍ୟ ମହଜୁଦ ପଣ୍ୟ | ୧୨,୫୦୦ |
| ଯୁକ୍ତ : କ୍ରୟ | ୭୫,୦୦୦ |
| | ୮୭,୫୦୦ |
| ବିମୁକ୍ତ : ଅନ୍ତ୍ୟ ମହଜୁଦ ପଣ୍ୟ | ୧୫,୩୦୦ |
| ବିକ୍ରୀତ ପଣ୍ୟର ପରିବ୍ୟୟ ବା କ୍ରୟ ମୂଲ୍ୟ | ୭୨,୨୦୦ |

ବିକ୍ରୟ ପରିମାଣ $= ୭୨,୨୦୦ \times \frac{୨୫}{୧୦୦} = ୧୮,୦୫୦$ ଟଙ୍କା

ଉପରେ ମୋଟ ଲାଭ

$\therefore$ ବିକ୍ରୟ ପରିମାଣ $= ୭୨,୨୦୦ + ୧୮,୦୫୦$

$= ୯୦,୨୫୦$ ଟଙ୍କା

### ଦୃଷ୍ଟାନ୍ତ (୧୪)

ହରିଶଙ୍କରଙ୍କର ମୋଟ ବିକ୍ରୟ ପରିମାଣ ୮୦,୦୦୦ ଟଙ୍କା । ସେ କ୍ରୟ ମୂଲ୍ୟ ଉପରେ ୩୦% ହାରରେ ମୋଟ ଲାଭ ରଖନ୍ତି । ସେ ବର୍ଷ ମଧ୍ୟରେ ୭୦,୦୦୦ ଟଙ୍କା ମୂଲ୍ୟରେ ପଣ୍ୟ କ୍ରୟ କରିଥିଲେ ଓ ବର୍ଷ ଶେଷରେ ତାଙ୍କର ଅନ୍ତ୍ୟ ମହଜୁଦ ପଣ୍ୟର ମୂଲ୍ୟ ୧୦,୪୦୦ ଟଙ୍କା ଥିଲା । ତାଙ୍କର ଆଦ୍ୟ ମହଜୁଦ ପଣ୍ୟର ମୂଲ୍ୟ ନିର୍ଦ୍ଧାରଣ କର ।

**ସମାଧାନ**

| | ଟଙ୍କା |
|---|---|
| ବିକ୍ରୟ | ୮୦,୦୦୦ |
| ବିୟୁକ୍ତ : ମୋଟ ଲାଭ ୩୦% ହାରରେ | ୨୪,୦୦୦ |
| ବିକ୍ରୀତ ପଣ୍ୟର କ୍ରୟ ମୂଲ୍ୟ | ୫୬,୦୦୦ |
| ଯୁକ୍ତ : ଅନ୍ତ୍ୟ ମହଜୁଦ ପଣ୍ୟ | ୧୦,୪୦୦ |
| | ୬୬,୪୦୦ |
| ବିୟୁକ୍ତ : କ୍ରୟ ପରିମାଣ | ୬୦,୦୦୦ |
| ଆଦ୍ୟ ମହଜୁଦ ପଣ୍ୟ | ୬,୪୦୦ |

ଦୃଷ୍ଟାନ୍ତ (୧୫)

ସୁଧାନିଧି ପଟ୍ଟନାୟକ ତାଙ୍କର ହିସାବ ଏକ ଲିଖନ ହିସାବ ପଦ୍ଧତି ଅନୁଯାୟୀ ରଖନ୍ତି । ସେ ତୁମ ସମ୍ମୁଖରେ ନିମ୍ନଲିଖିତ ବିବରଣୀ ଉପସ୍ଥାପିତ କରିଛନ୍ତି :

| ପରିସମ୍ପତ୍ତି ଓ ଦାୟ | ଜାନୁୟାରୀ ୧, ୧୯୭୪ | ଡିସେମ୍ବର ୩୧, ୧୯୭୪ |
|---|---|---|
| | ଟଙ୍କା | ଟଙ୍କା |
| ନଗଦ ଓ ବ୍ୟାଙ୍କରେ ଗଚ୍ଛିତ ତହବିଲ | ୨,୩୦୦ | ୬,୫୯୦ |
| ମହଜୁଦ ମାଲ | ୩,୬୦୦ | ୭,୨୦୦ |
| ବିବିଧ ଖାତକ | ? | ୫,୩୦୦ |
| ବିବିଧ ସମ୍ପତ୍ତି | ୪,୨୦୦ | ୪,୪୦୦ |
| ବିବିଧ ମହାଜନ | ୪,୩୫୦ | ୩,୧୦୦ |
| ବକେୟା ସାଧାରଣ ବ୍ୟୟ | ୨୩୦ | ୧୧୦ |

ବର୍ଷ ମଧ୍ୟରେ ତାଙ୍କର ବିବିଧ ଦେଣ ନେଣରେ ସଂକ୍ଷିପ୍ତସାର ନିମ୍ନରେ ପ୍ରଦତ୍ତ ହେଲା :

| | ଟଙ୍କା |
|---|---|
| ବିକ୍ରୟ—ନଗଦ ଓ ଉଧାର | ୨୩,୪୦୦ |
| ବିକ୍ରୟ ଫେରସ୍ତ | ୩୫୦ |
| ନଗଦ ଓ ବଟା ବାବଦ ବିବିଧ ଖାତକ ହିସାବକୁ ଦାଖଲ କରାଯାଇଛି | ୨୦,୧୦୦ |
| ବିବିଧ ଖାତକଙ୍କଠାରୁ ପ୍ରାପ୍ତ ଅର୍ଥ ବ୍ୟାଙ୍କରେ ଗଚ୍ଛିତ କରାଯାଇଛି | ୧୯,୬୦୦ |
| ଅନାଦେୟ ଋଣ | ୫୪୦ |

| | ଟଙ୍କା |
|---|---|
| କ୍ରୟ—ନଗଦ | ୪୧୦ |
| କ୍ରୟ ଫେରସ୍ତ | ୧୬୫ |
| ବିବିଧ ମହାଜନଙ୍କଠାରୁ ପ୍ରାପ୍ତ ବଟା | ୬୫୦ |
| ଚେକ୍ ଯୋଗେ ମହାଜନଙ୍କୁ ପ୍ରଦତ୍ତ ଅର୍ଥ | ୧୫,୬୦୦ |
| ସାଧାରଣ ବ୍ୟୟ—ନଗଦ ଆକାରରେ | ୩,୧୦୦ |
| ଅଧିକା ପୁଞ୍ଜିର ବିନିଯୋଗ (ବ୍ୟାଙ୍କରେ ଗଚ୍ଛିତ) | ୩,୦୦୦ |
| କ୍ରୀତ ନୂତନ ଯନ୍ତ୍ର—ଚେକ୍ ଯୋଗେ | ୬୦୦ |
| ମାଲିକଙ୍କଦ୍ୱାରା ବ୍ୟବସାୟରୁ ଉଠାଣ—ଚେକ୍ ଯୋଗେ | ୯୦୦ |
| ଦପ୍ତର ସକାଶେ ବ୍ୟାଙ୍କରୁ ଅଣାଯାଇଛି | ୩, ୦୦ |
| ବ୍ୟାଙ୍କରେ ନଗଦ ଅର୍ଥ ଜମା କରାଯାଇଛି | ୧,୮୦୦ |
| ନଗଦ ତହବିଲ—୩୧-୧୨-୧୯୭୪ | ୩୯୦ |

ସୁଧାନନ୍ଦ ପଟ୍ଟନାୟକ ତୁମକୁ ତାଙ୍କ ବ୍ୟବସାୟର ୧୯୭୪ ମସିହା ଡିସେମ୍ବର ୩୧ ତାରିଖରେ ଶେଷ ହେଉଥିବା ବର୍ଷର ମୋଟ ଓ ନିଟ୍-ଲାଭ-କ୍ଷତି ହିସାବ ଓ ଉକ୍ତ ତାରିଖର ଉଦ୍‌ବୃତ୍ତ ପତ୍ର ପ୍ରସ୍ତୁତ କରିବାକୁ ଅନୁରୋଧ କରିଛନ୍ତି ।

## ସମାଧାନ

ଏହି ପ୍ରଶ୍ନରେ ନିମ୍ନଲିଖିତ ବିଷୟଗୁଡ଼ିକ ଅଜ୍ଞାତ ଅଛି :

ନଗଦ ତହବିଲର ଆଦ୍ୟ ବାକି
ବ୍ୟାଙ୍କରେ ଗଚ୍ଛିତ ତହବିଲର ଆଦ୍ୟ ବାକି
ବିବିଧ ଖାତକ ହିସାବର ଆଦ୍ୟ ବାକି
ମୂଳଧନ ହିସାବର ଆଦ୍ୟ ବାକି
ଉଧାର କ୍ରୟ—ସାରା ବର୍ଷର
ଉଧାର ବିକ୍ରୟ—ସାରା ବର୍ଷର

ସୁତରାଂ ଶ୍ରୀ ପଟ୍ଟନାୟକଙ୍କ ଅନୁରୋଧ ଅନୁଯାୟୀ ମୋଟ ଓ ନିଟ୍ ଲାଭ କ୍ଷତି ହିସାବ ଓ ଉଦ୍‌ବୃତ୍ତ ପତ୍ର ପ୍ରସ୍ତୁତ କରିବା ପୂର୍ବରୁ ଉପରୋକ୍ତ ଅଜ୍ଞାତ ରାଶିଗୁଡ଼ିକ ପ୍ରଥମେ ନିରୂପଣ କରିବା ଆବଶ୍ୟକ । ଏଥି ନିମନ୍ତେ ରୋକଡ଼ ବହି, ମୋଟ ଖାତକଙ୍କ ହିସାବ, ମୋଟ ମହାଜନଙ୍କ ହିସାବ, ସାଧାରଣ ବ୍ୟୟ ହିସାବ, ଆଦ୍ୟ ଉଦ୍‌ବୃତ୍ତ ପତ୍ର (୧-୧-୭୪) ପ୍ରସ୍ତୁତ କରିବା ପ୍ରୟୋଜନ । ନୋଟ ସହିତ ଏହି ହିସାବଗୁଡ଼ିକ ନିମ୍ନରେ ପ୍ରଦତ୍ତ ହେଲା ।

# ରୋକଡ଼ ବହି

| ଡାସ୍ତୀ | | | ଟଙ୍କା ନଗଦ | ଟଙ୍କା ବ୍ୟାଙ୍କ | | | | ଟଙ୍କା ନଗଦ | ଟଙ୍କା ବ୍ୟାଙ୍କ |
|---|---|---|---|---|---|---|---|---|---|
| ୧୯୭୪ | ଆଦ୍ୟ ବାକି ବାବଦ | | | | ୧୯୭୪ | ନଗଦ କ୍ରୟ ବାବଦ | | ୪୧୦ | |
| ଜାନୁଆରି-୧ | (ପୂର୍ବ ବର୍ଷରୁ ଅଣାଗଲା) | | ୧,୦୦୦ | ୧,୩୦୦ | ଜାନୁଆରି | ସାଧାରଣ ବ୍ୟୟ ବାବଦ | | ୩,୧୦୦ | |
| ଜାନୁଆରି | ନଗଦ ବିକ୍ରି ବାବଦ | | ୧,୫୦୦ | | ଠାରୁ | ଯନ୍ତ୍ର ବାବଦ | | | ୨୦୦ |
| ଠାରୁ | ମୂଳଧନ ବାବଦ | | | | ଡିସେମ୍ବର | ଉଠାଣ ବାବଦ | | | ୯୦୦ |
| ଡିସେମ୍ବର | (ଅଧିକା ବିନିଯୁକ୍ତ) | | | ୩,୦୦୦ | | ମହାଜନ ବାବଦ | | | ୧୫,୨୦୦ |
| | ବିବିଧ ଖାତକ ବାବଦ | | | ୧୯,୬୦୦ | | ନଗଦ ବାବଦ | ପ୍ର | | ୩,୨୦୦ |
| | ବ୍ୟାଙ୍କ ବାବଦ | ପ୍ର | ୩,୨୦୦ | | | ବ୍ୟାଙ୍କ ବାବଦ | | ୧,୮୦୦ | |
| | ନଗଦ ବାବଦ | ପ୍ର | | ୧,୮୦୦ | | ବାକି ଗଡ଼ିଲା | | ୩୯୦ | ୬,୨୦୦ |
| | | | ୫,୭୦୦ | ୨୫,୭୦୦ | | | | ୫,୭୦୦ | ୨୫,୭୦୦ |
| ୧୯୭୫ | | | | | | | | | |
| ଜାନୁଆରି-୧ | ପୂର୍ବ ବାକି ବାବଦ | | ୩୯୦ | ୬,୨୦୦ | | | | | |

ନୋଟ୍ : (୧) ୩୧-୧୨-୧୯୭୪ ତାରିଖରେ ନଗଦ ଓ ବ୍ୟାଙ୍କରେ ଗଚ୍ଛିତ ତହବିଲର ପରିମାଣ ୭,୫୯୦ ଟଙ୍କା ଦିଆଯାଇଛି ଏବଂ ନଗଦ ତହବିଲର ପରିମାଣ ୩୯୦ ଟଙ୍କା ଦିଆଯାଇଛି । ସୁତରାଂ ୭,୫୯୦ – ୩୯୦ = ୭,୨୦୦ ଟଙ୍କା ବ୍ୟାଙ୍କରେ ଗଚ୍ଛିତ ଅଛି ବୋଲି ଜଣାଗଲା ।

(୨) ଯେଉଁ ବିବରଣୀ ଦିଆଯାଇଛି ସେଗୁଡ଼ିକୁ ରେକର୍ଡ଼ ବହିରେ ଲେଖିଲେ ବ୍ୟାଙ୍କ୍ ସ୍ତମ୍ଭର ଦାତା ପାର୍ଶ୍ୱର ମୋଟ ପରିମାଣ ୨୫,୭୦୦ ଟଙ୍କା ହେବ । ଏହିରୁ ଦାୟୀ ପାର୍ଶ୍ୱର ବ୍ୟାଙ୍କ୍ ସ୍ତମ୍ଭର ମୋଟ ପରିମାଣ ୨୪,୪୦୦ ଟଙ୍କା ବିଯୁକ୍ତ କଲେ ଆଦ୍ୟ ବାକି (୨୫,୭୦୦ – ୨୪,୪୦୦ = ୨,୩୦୦ ଟଙ୍କା ନିରୂପିତ ହେବ ।

(୩) ମୋଟ ନଗଦ ଓ ବ୍ୟାଙ୍କ୍‌ରେ ଗଚ୍ଛିତ ଆଦ୍ୟ ବାକି ୨,୩୦୦ ଟଙ୍କାରୁ ୧,୩୦୦ ଟଙ୍କା ବିଯୁକ୍ତ କଲେ ନଗଦ ତହବିଲର ଆଦ୍ୟ ବାକି ୧,୦୦୦ ଟଙ୍କା ନିରୂପିତ ହେବ ।

(୪) ବର୍ତ୍ତମାନ ନଗଦ ସ୍ତମ୍ଭର ଦାତା ପାର୍ଶ୍ୱର ମୋଟ ପରିମାଣରୁ ଦାୟୀ ପାର୍ଶ୍ୱର ପରିମାଣ, ଅର୍ଥାତ୍ ୫,୭୦୦ ଟଙ୍କାରୁ ୪,୨୦୦ ଟଙ୍କା ବାଦ ଦେଲେ ଅନ୍ତର ଫଳ ୧,୫୦୦ ଟଙ୍କା ନଗଦ ବିକ୍ରି ସ୍ଥିରହେବ ।

(୫) ବୁଝିବାକୁ ସୁବିଧା ହେବ ବୋଲି ନିରୂପିତ ରାଶିଗୁଡ଼ିକୁ ନାଲି କାଳିରେ ଲେଖାଯାଇଛି ।

ମୋଟ ବିବିଧ ଖାତକ ହିସାବ

| ଦାୟୀ | | | ଦାତା | | |
|---|---|---|---|---|---|
| ୧୯୭୪ | | ଟଙ୍କା | ୧୯୭୪ | | ଟଙ୍କା |
| ଜାନୁ:-୧ | ପୂର୍ବ ବାକି ବାବଦ | ୪,୩୯୦ | ଜାନୁ: | ବ୍ୟାଙ୍କ ବାବଦ | ୧୯,୭୦୦ |
| ଜାନୁ: | ଉଧାର ବିକ୍ରୟ | | ଠାରୁ | ପ୍ରଦତ୍ତ ବଟ୍ଟା ବାବଦ | ୫୦୦ |
| ଠାରୁ | ବାବଦ | ୨୧,୯୦୦ | ଡିସେ: | ଅନ୍ତର୍ମୁଖୀ ଫେରନ୍ତ ବାବଦ | ୩୫୦ |
| ଡିସେ: | | | | ଅନାଦେୟ ଋଣ ବାବଦ | ୫୪୦ |
| | | | ଡିସେ:-୩୧ | ବାକି ଗଡ଼ିଲା | ୫,୩୦୦ |
| | | ୨୭,୨୯୦ | | | ୨୭,୨୯୦ |
| ୧୯୭୫ | | | | | |
| ଜାନୁ:-୧ | ପୂର୍ବ ବାକି ବାବଦ | ୫,୩୦୦ | | | |

ନୋଟ୍ : (୧) ନଗଦ ଓ ବଟା ବାବଦ ବିବିଧ ଖାତକ ହିସାବକୁ ୨୦,୧୦୦ ଟଙ୍କା ସକାଶେ ଦାତା କରାଯାଇଛି । ତାଙ୍କଠାରୁ ମିଳିଥିବା ୧୯,୬୦୦ ଟଙ୍କା ବ୍ୟାଙ୍କ୍‌ରେ ଜମା କରାଯାଇଛି । ସୁତରାଂ ପ୍ରଦତ୍ତ ବଟା = (୨୦,୧୦୦—୧୯,୬୦୦) = ୫୦୦ ଟଙ୍କା।

(୨) ନଗଦ ଓ ଉଧାର ବିକ୍ରିର ପରିମାଣ ୨୩,୪୦୦ ଟଙ୍କା । ନଗଦ ବିକ୍ରିର ପରିମାଣ ୧,୫୦୦ ଟଙ୍କା । ପୂର୍ବରୁ ନିର୍ଣ୍ଣୀତ ହୋଇଥିବା ଉଧାର ବିକ୍ରି ପରିମାଣ ୨୩,୪୦୦—୧,୫୦୦ = ୨୧,୯୦୦ ଟଙ୍କା।

(୩) ଏହି ହିସାବର ଦାତା ପାର୍ଶ୍ୱର ମୋଟ ପରିମାଣ ୨୬,୨୯୦ ଟଙ୍କାରୁ ଦାୟୀ ପାର୍ଶ୍ୱର ୨୧,୯୦୦ ଟଙ୍କା ବିୟୋଗ କରାଗଲେ ଅନ୍ତର ଫଳ ୪,୩୯୦ ଟଙ୍କା ହେବ ; ଯାହା ଏହି ହିସାବର ଆଦ୍ୟ ବାକି ରୂପେ ବିବେଚିତ ହେବ ।

ବିବିଧ ମହାଜନ ହିସାବ

ଦାୟୀ ଦାତା

| ୧୯୬୪ | ଟଙ୍କା | ୧୯୬୪ | ଟଙ୍କା |
|---|---|---|---|
| ଜାନୁ : ବ୍ୟାଙ୍କ ବାବଦ | ୧୫,୨୦୦ | ଜାନୁ :- ପୂର୍ବ ବାକି ବାବଦ | ୪,୩୫୦ |
| ଠାରୁ | | ଜାନୁ : ଉଧାର କ୍ରୟ ବାବଦ | ୧୪,୩୧୫ |
| ଡିସେ : ପ୍ରାପ୍ତ ବଟା ବାବଦ | ୨୫୦ | ଠାରୁ | |
| ଡିସେ :-୩୧ ବାକି ଗଡ଼ିଲା | ୩,୧୦୦ | ଡିସେମ୍ବର | |
| | ୧୮,୬୬୫ | | ୧୮,୬୬୫ |
| | | ୧୯୬୫ | |
| | | ଜାନୁଆରି-୧ ପୂର୍ବ ବାକି ବାବଦ | ୩,୧୯୦ |

ନୋଟ : ଏହି ହିସାବର ଦାୟୀ ପାର୍ଶ୍ୱର ମୋଟ ପରିମାଣ ୧୮,୬୬୫ ଟଙ୍କାରୁ ଦାତା ପାର୍ଶ୍ୱର ୪,୩୫୦ ଟଙ୍କା ବାଦ୍ ଦିଆଯାଇ ଉଧାର କ୍ରୟ ପରିମାଣ ୧୪,୩୧୫ ନିରୂପିତ ହୋଇଛି ।

## ସାଧାରଣ ବ୍ୟୟ ହିସାବ

| ଦାୟୀ | ଟଙ୍କା | ଦାତା | ଟଙ୍କା |
|---|---|---|---|
| ୧୯୭୪ | | ୧୯୭୪ | |
| ଜାନୁ : ନଗଦ ତହବିଲ ଠାରୁ ବାବଦ | ୩,୧୦୦ | ଜାନୁ :-୧ ପୂର୍ବ ବାକି ବାବଦ | ୨୩୦ |
| ଡିସେ : | | ଡିସେ :-୩୧ — ଲାଭ-କ୍ଷତି ହିସାବକୁ ନିଆଗଲା | ୨,୯୮୦ |
| ଡିସେ : -୩୧ ବାକି ଗଡ଼ିଲା | ୧୧୦ | | |
| | ୩,୨୧୦ | | ୩,୨୧୦ |
| | | ୧୯୭୫ | |
| | | ଜାନୁଆରୀ-୧ ପର ବାକି ବାବଦ | ୧୧୦ |

ନୋଟ : ଏହି ହିସାବର ମୋଟ ଦାୟୀ ବାକି ୩,୨୧୦ ଟଙ୍କାରୁ ଦାତା ପାର୍ଶ୍ୱର ୨୩୦ ଟଙ୍କା ବାଦ ଦିଆଯାଇ ଲାଭ-କ୍ଷତି ହିସାବକୁ ସ୍ଥାନାନ୍ତରିତ ହେଉଥିବା ମୋଟ ସାଧାରଣ ବ୍ୟୟ ପରିମାଣ ନିର୍ଣ୍ଣୀତ ହୋଇଛି ।

### ୧୯୭୪ ମସିହା ଜାନୁୟାରୀ ୧ ତାରିଖର ଆଦ୍ୟ ଉଦ୍ବୃତ୍ତ ପତ୍ର

| ଦାୟ | ଟଙ୍କା | ସମ୍ପତ୍ତି | ଟଙ୍କା |
|---|---|---|---|
| ବିବିଧ ମହାଜନ | ୪,୩୫୦ | ବିବିଧ ସମ୍ପତ୍ତି | ୪,୨୦୦ |
| ବକେୟା ଦାୟ : | | ମହଜୁଦ ପଣ୍ୟ | ୩,୬୦୦ |
| ସାଧାରଣ ବ୍ୟୟ | ୨୩୦ | ବିବିଧ ଖାତକ | ୪,୩୯୦ |
| ମୂଳଧନ | ୯,୯୧୦ | ବ୍ୟାଙ୍କରେ ଗଚ୍ଛିତ | ୧,୩୦୦ |
| | | ନଗଦ ତହବିଲ | ୧,୦୦୦ |
| | ୧୪,୪୯୦ | | ୧୪,୪୯୦ |

## ୧୯୭୪ ମସିହା ଡିସେମ୍ବର ୩୧ ତାରିଖରେ ଶେଷ ହେଉଥିବା ବର୍ଷର ମୋଟ ଓ ନିଟ୍ ଲାଭ ଓ କ୍ଷତି ହିସାବ

ଦାୟୀ — ଦାତା

| | ଟଙ୍କା | ଟଙ୍କା | | ଟଙ୍କା | ଟଙ୍କା |
|---|---|---|---|---|---|
| ଆଦ୍ୟ ମହଜୁଦ | | | ବିକ୍ରୟ ବାବଦ : | | |
| ପଣ୍ୟ ବାବଦ | | ୩,୬୦୦ | ନଗଦ | ୧,୫୦୦ | |
| କ୍ରୟ ବାବଦ : | | | ଉଧାର | ୨୧,୯୦୦ | |
| ନଗଦ | ୪୧୦ | | | ୨୩,୪୦୦ | |
| ଉଧାର | ୧୪,୩୨୫ | | ବିଯୁକ୍ତ : ଫେରସ୍ତ | ୩୫୦ | ୨୩,୦୫୦ |
| | ୧୪,୭୩୫ | | ଅନ୍ତ୍ୟ ମହଜୁଦ ପଣ୍ୟ ବାବଦ | | ୭,୨୦୦ |
| ବିଯୁକ୍ତ : ଫେରସ୍ତ | ୧୨୫ | ୧୪,୬୧୦ | | | |
| ମୋଟ ଲାଭ ବାବଦ | | ୧୨,୦୪୦ | | | |
| | | ୩୦,୨୫୦ | | | ୩୦,୨୫୦ |
| | | | ମୋଟ ଲାଭ ବାବଦ | | ୧୨,୦୪୦ |
| ପ୍ରଦତ୍ତ ବଟା ବାବଦ | | ୫୦୦ | ପ୍ରାପ୍ତ ବଟା ବାବଦ | | ୨୫୦ |
| ଅନାଦେୟ ଋଣ ବାବଦ | | ୫୪୦ | | | |
| ସାଧାରଣ ବ୍ୟୟ ବାବଦ | | ୨,୯୮୦ | | | |
| ନିଟ୍ ଲାଭ ବାବଦ ମୂଳଧନ ହିସାବକୁ ସ୍ଥାନାନ୍ତରିତ କରାଗଲା | | ୮,୨୭୦ | | | |
| | | ୧୨,୨୯୦ | | | ୧୨,୨୯୦ |

### ୧୯୭୪ ମସିହା ଡିସେମ୍ବର ୩୧ ତାରିଖର

### ଉଦ୍‌ବୃତ୍ତ ପତ୍ର

| ଦାୟ | ଟଙ୍କା | ଟଙ୍କା | ସଂପତ୍ତି | ଟଙ୍କା | ଟଙ୍କା |
|---|---|---|---|---|---|
| ମୂଳଧନ : ଆଦ୍ୟ ବାକି | ୯,୯୧୦ | | ବିବିଧ ସଂପତ୍ତି | ୪,୨୦୦ | |
| ଯୁକ୍ତ : ଅଧିକା ବିନିଯୁକ୍ତ | ୩,୦୦୦ | | ଯୁକ୍ତ : ସଂଯୁକ୍ତ | ୨୦୦ | ୪,୪୦୦ |
| ନିଟ୍ ଲାଭ | ୮,୨୭୦ | | ମହଜୁଦ ପଣ୍ୟ | | ୬,୨୦୦ |
| | ୨୧,୧୮୦ | | ବିବିଧ ଖାତକ | | ୫,୩୦୦ |
| ବିଯୁକ୍ତ : ଉଠାଣ | ୯୦୦ | ୨୦,୨୮୦ | ବ୍ୟାଙ୍କରେ ଗଚ୍ଛିତ ତହବିଲ | | ୭,୨୦୦ |
| ବିବିଧ ମହାଜନ | | ୩,୧୦୦ | ନଗଦ ତହବିଲ | | ୩୯୦ |
| ବକେୟା ଦାୟ : ସାଧାରଣ ବ୍ୟୟ | | ୧୧୦ | | | |
| | | ୨୩,୪୯୦ | | | ୨୩,୪୯୦ |

### ଦୃଷ୍ଟାନ୍ତ (୧୭)

ଶ୍ରୀ ବ୍ରଜ ସାହୁ ତାଙ୍କ ବ୍ୟବସାୟରେ ଏକ ଲିଖନ ହିସାବ ପଦ୍ଧତି ଅନୁସରଣ କରନ୍ତି । ସେ ତାଙ୍କ ବ୍ୟବସାୟ ସମ୍ପର୍କରେ ୧୯୭୪ ମସିହା ଡିସେମ୍ବର ୩୧ ତାରିଖରେ ଶେଷ ହେଉଥିବା ବର୍ଷର ନିମ୍ନଲିଖିତ ବିବରଣୀ ଦେଇଛନ୍ତି :—

(୧) ବିକ୍ରୟଲବ୍ଧ ସମସ୍ତ ଅର୍ଥ ବ୍ୟାଙ୍କରେ ଜମା କରାଯାଏ, କିନ୍ତୁ ଏହି ଅର୍ଥ ପ୍ରେରଣ କରିବା ପୂର୍ବରୁ ବ୍ୟବସାୟ ସମ୍ପୃକ୍ତ ବ୍ୟୟ ଓ ତାଙ୍କର ବ୍ୟକ୍ତିଗତ ବ୍ୟୟ ଏହି ଅର୍ଥରୁ ବାଦ ଦିଆଯାଏ । ମହାଜନଙ୍କୁ ଚେକ୍ ମାଧ୍ୟମରେ ଅର୍ଥ ଦିଆଯାଏ । ଏହି ବର୍ଷ ମଧ୍ୟରେ ନଗଦ କ୍ରୟ ଅଥବା ନଗଦ ବିକ୍ରୟ ଆଦୌ ହୋଇନଥିଲା ।

(୨) ତାଙ୍କ ବ୍ୟାଙ୍କ ପାସ୍ ବହିରୁ ଦେଖାଯାଏ, ସେ ବର୍ଷ ମଧ୍ୟରେ ୩୫,୦୦୦ ଟଙ୍କା ବ୍ୟାଙ୍କରେ ଜମା କରିଥିଲେ ଏବଂ ବ୍ୟାଙ୍କରୁ ୨୫,୯୦୦ ଟଙ୍କା ଉଠାଇଥିଲେ ।

(୩) ସେ ବ୍ୟାଙ୍କରେ ୧୯୭୩ ମସିହା ଅପ୍ରେଲ ୧ ତାରିଖରେ ୪,୦୦୦ ଟଙ୍କା ୫% ସୁଧ ହାରରେ ସ୍ଥାୟୀ ଗଚ୍ଛିତ ରୂପେ ଜମା ରଖିଥିଲେ ଏବଂ ୧୯୭୪ ମସିହା ମାର୍ଚ୍ଚ ୩୧ ତାରିଖରେ ଏଥି ବାବଦ ମୂଳ ସୁଧ ପାଇଥିଲେ ।

(୪) ଘରଭଡ଼ା ବାବଦ ୧,୮୦୦ ଟଙ୍କା ଚେକ୍ ଯୋଗେ ଦିଆଯାଇଥିଲା । ଶ୍ରୀ ସାହୁ ଘରର ୨/୩ ଅଂଶ ନିଜ ସକାଶେ ବ୍ୟବହାର କରନ୍ତି, ୧/୩ ଅଂଶରେ ବ୍ୟବସାୟ ଚଳାନ୍ତି ।

(୫) ୩୧-୧୨-୧୯୭୩ ଓ ୩୧-୧୨-୧୯୭୪ ତାରିଖର ସମ୍ପତ୍ତି ଓ ଦେୟ ନିମ୍ନରେ ପ୍ରଦତ୍ତ ହେଲା :

| | ୧୯୭୩ | ୧୯୭୪ |
|---|---|---|
| | ଟଙ୍କା | ଟଙ୍କା |
| ବ୍ୟାଙ୍କ୍ ଉଦ୍‌ବୃତ୍ତ | ? | ୧୦,୨୦୦ |
| ମହଜୁଦ୍ ପଣ୍ୟ | ୮,୦୦୦ | ୧୨,୫୦୦ |
| ବିବିଧ ଖାତକ | ୧୪,୨୦୦ | ୧୭,୭୦୦ |
| ବିବିଧ ମହାଜନ | ୩,୪୦୦ | ୫,୨୦୦ |
| ନିଜସ୍ୱ ଭୂ ସମ୍ପତ୍ତି | ୨୦,୦୦୦ | ୨୦,୦୦୦ |

(୬) ବର୍ଷ ମଧ୍ୟରେ ୩,୨୦୦ ଟଙ୍କା ବ୍ୟବସାୟ ସକାଶେ ବ୍ୟୟ ହୋଇଥିଲା ଓ ସେ ତାଙ୍କର ବ୍ୟକ୍ତିଗତ ଖର୍ଚ୍ଚ ସକାଶେ ୨,୪୦୦ ଟଙ୍କା ନେଇଥିଲେ ।

(୭) ଭୂ ସମ୍ପତ୍ତିରୁ ପ୍ରାପ୍ତ ନିଟ୍ ଭଡ଼ା ବାବଦ ସେ ୧,୨୦୦ ଟଙ୍କା ପାଇଥିଲେ ଏବଂ ସେ ତାଙ୍କ ବ୍ୟକ୍ତିଗତ ଖର୍ଚ୍ଚରେ ତାହାକୁ ବ୍ୟବହାର କରିଥିଲେ ।

(୮) ଗୃହ ପରିସରର ମରାମତି ବାବଦ ୫୦୦ ଟଙ୍କା ଖର୍ଚ୍ଚ ହୋଇଥିଲା । ସେ ମିସ୍ତ୍ରୀଙ୍କୁ ୩୫୦ ଟଙ୍କାର ପଣ୍ୟ ଆଂଶିକ ପାରିଶ୍ରମିକ ରୂପେ ଦେଇଥିଲେ । ଅବଶିଷ୍ଟ ଟଙ୍କା ବର୍ଷ ଶେଷ ସୁଦ୍ଧା ଦିଆଯାଇନାହିଁ ।

(୯) ବିବିଧ ଖାତକ ମଧ୍ୟରେ ୨୫୦ ଟଙ୍କାର ଅନାଦେୟ ଋଣ ଅନ୍ତର୍ଭୁକ୍ତ ଅଛି ।

ଉପରୋକ୍ତ ବିବରଣୀରୁ ଶ୍ରୀ ବ୍ରଜ ସାହୁଙ୍କର ୧୯୭୪ ମସିହା ଡିସେମ୍ବର ୩୧ ତାରିଖରେ ଶେଷ ହେଉଥିବା ବର୍ଷର ମୋଟ ଓ ନିଟ୍ ଲାଭ ଓ କ୍ଷତି ହିସାବ ଓ ଉକ୍ତ ତାରିଖର ଉଦ୍‌ବୃତ୍ତ ପତ୍ର ପ୍ରସ୍ତୁତ କର ।

## ସମାଧାନ

ଏହି ପ୍ରଶ୍ନଟି ପର୍ଯ୍ୟାଲୋଚନା କଲେ ନିମ୍ନଲିଖିତ ବିଷୟଗୁଡ଼ିକ ଅଜ୍ଞାତ ଥିବାର ଦେଖାଯିବ—

(କ) ୧-୧-୧୯୭୪ ତାରିଖର ବ୍ୟାଙ୍କ ଉଦ୍‌ବୃତ୍ତ ।

(ଖ) ବିକ୍ରୟ ବାବଦ ଗ୍ରାହକଙ୍କଠାରୁ ପ୍ରାପ୍ତ ଅର୍ଥ ।

(ଗ) ବର୍ଷ ମଧ୍ୟରେ ସଂଘଟିତ ବିକ୍ରୟର ପରିମାଣ ।

(ଘ) ମହାଜନମାନଙ୍କୁ ପ୍ରଦତ୍ତ ଅର୍ଥ ।

(ଙ) ବର୍ଷ ମଧ୍ୟରେ ଉଧାରରେ କରାଯାଇଥିବା କ୍ରୟ ।

(ଚ) ୧-୧-୧୯୭୪ ତାରିଖର ମୂଳଧନ ।

ପ୍ରଥମେ ଏଗୁଡ଼ିକ ନିର୍ଣ୍ଣୟ କରାଗଲା ।

| | | ଟଙ୍କା |
|---|---|---|
| (କ) ୧-୧-୧୯୭୪ ତାରିଖର ବ୍ୟାଙ୍କ ଉଦ୍‌ବୃତ୍ତ : | | |
| ୩୧-୧୨-୧୯୭୪ ତାରିଖର ବ୍ୟାଙ୍କ ଉଦ୍‌ବୃତ୍ତ | | ୧୦,୨୦୦ |
| ଯୁକ୍ତ : ବର୍ଷ ମଧ୍ୟରେ ବ୍ୟାଙ୍କରୁ ଅଣାଯାଇଥିବା ଅର୍ଥ | | ୨୫,୯୦୦ |
| | | ୩୬,୧୦୦ |
| ବିଯୁକ୍ତ : ବ୍ୟାଙ୍କରେ ଜମା କରାଯାଇଥିବା ଅର୍ଥ | | ୩୫,୦୦୦ |
| ୧-୧-୧୯୭୪ ତାରିଖର ବ୍ୟାଙ୍କ ଉଦ୍‌ବୃତ୍ତ | | ୧,୧୦୦ |
| (ଖ) ଗ୍ରାହକମାନଙ୍କଠାରୁ ପ୍ରାପ୍ତ ବିକ୍ରୟଲବ୍ଧ ଅର୍ଥ : | | |
| ବ୍ୟାଙ୍କରେ ଜମା କରାଯାଇଥିବା ମୋଟ ପରିମାଣ | | ୩୫,୦୦୦ |
| ବିଯୁକ୍ତ : ପ୍ରାପ୍ତ ସ୍ଥାୟୀ ଗଚ୍ଛିତ | ୪,୦୦୦ | |
| ଏହାର ସୁଧ | ୨୦୦ | ୪,୨୦୦ |
| | | ୩୦,୮୦୦ |
| ଯୁକ୍ତ : ବ୍ୟବସାୟ ଖର୍ଚ୍ଚ ଓ ବ୍ୟକ୍ତିଗତ ଖର୍ଚ୍ଚ | | ୫,୬୦୦ |
| ଗ୍ରାହକମାନଙ୍କଠାରୁ ପ୍ରାପ୍ତ ମୋଟ ଅର୍ଥ | | ୩୬,୪୦୦ |
| (ଗ) ବର୍ଷ ମଧ୍ୟରେ ବିକ୍ରୟ : | | |
| ଗ୍ରାହକମାନଙ୍କଠାରୁ ପ୍ରାପ୍ତ ମୋଟ ଅର୍ଥ | | ୩୬,୪୦୦ |
| ଯୁକ୍ତ : ଅନ୍ତ୍ୟ ବିବିଧ ଖାତକଙ୍କ ପରିମାଣ | | ୧୬,୬୦୦ |
| | | ୫୩,୦୦୦ |
| ବିଯୁକ୍ତ : ଆଦ୍ୟ ବିବିଧ ଖାତକଙ୍କ ପରିମାଣ | | ୧୪,୨୦୦ |
| ଉଧାରରେ ବିକ୍ରୟ | | ୩୮,୮୦୦ |
| ଯୁକ୍ତ : ମିସ୍ତ୍ରୀଙ୍କୁ ଦିଆଯାଇଥିବା ପଣ୍ୟ | | ୩୫୦ |
| ମୋଟ ବିକ୍ରୟ ପରିମାଣ | | ୩୯,୧୫୦ |

(ଘ) ମହାଜନମାନଙ୍କୁ ପ୍ରଦତ୍ତ ଅର୍ଥ :

| | |
|---|---|
| ଦିଆଯାଇଥିବା ମୋଟ ଅର୍ଥ | ୨୫,୯୦୦ |
| ବିୟୁକ୍ତ : ପ୍ରଦତ୍ତ ଘର ଭଡ଼ା | ୧,୮୦୦ |
| ମହାଜନମାନଙ୍କୁ ପ୍ରଦତ୍ତ ଅର୍ଥ | ୨୪,୧୦୦ |

(ଙ) ବର୍ଷ ମଧ୍ୟରେ ଉଧାର କ୍ରୟ :

| | |
|---|---|
| ୩୧-୧୨-୧୯୭୪ ତାରିଖର ବିବିଧ ମହାଜନ | ୫,୨୦୦ |
| ଯୁକ୍ତ : ତାଙ୍କୁ ପ୍ରଦତ୍ତ ଅର୍ଥ | ୨୪,୧୦୦ |
| | ୨୯,୩୦୦ |
| ବିୟୁକ୍ତ ୧-୧-୧୯୭୪ ତାରିଖର ବିବିଧ ମହାଜନ | ୩,୪୦୦ |
| ଉଧାର କ୍ରୟ | ୨୫,୯୦୦ |

(ଚ) ୧-୧-୧୯୭୪ ତାରିଖର ମୂଳଧନ :

୧-୧-୧୯୭ ତାରିଖର ଉଦ୍‌ବୃତ୍ତ ପତ୍ର

| ଦେୟ | ଟଙ୍କା | ସମ୍ପତ୍ତି | ଟଙ୍କା |
|---|---|---|---|
| ବିବିଧ ମହାଜନ | ୩,୪୦୦ | ବ୍ୟାଙ୍କ୍ ଉଦ୍‌ବୃତ୍ତ | ୧,୧୦୦ |
| ମୂଳଧନ ( ସନ୍ତୁଳନକାରୀ) | | ମହଜୁଦ ପଣ୍ୟ | ୮,୦୦୦ |
| ପରିମାଣ | ୪୪,୦୫୦ | ବିବିଧ ଖାତକ | ୧୪,୨୦୦ |
| | | ନିଜସ୍ୱ ଭୂ-ସମ୍ପତ୍ତି | ୨୦,୦୦୦ |
| | | ସ୍ଥାୟୀ ଗଚ୍ଛିତ | ୪,୦୦୦ |
| | | ଅର୍ଜିତ ସୁଧ ୧-୪-୭୪ରୁ | |
| | | ୩୧-୧୨-୭୩ ପର୍ଯ୍ୟନ୍ତ | ୧୫୦ |
| | ୪୭,୪୫୦ | | ୪୭,୪୫୦ |

ଶ୍ରୀ ବ୍ରଜ ସାହୁଙ୍କର
୧୯୭୪ ମସିହା ଡିସେମ୍ବର ୩୧ ତାରିଖରେ ଶେଷ ହେଉଥିବା ବର୍ଷର
ମୋଟ ଓ ନିଟ୍ ଲଭ ଓ କ୍ଷତି ହିସାବ

| ଦାୟୀ | ଟଙ୍କା | ଦାତା | ଟଙ୍କା |
|---|---|---|---|
| ଆଦ୍ୟ ମହଜୁଦ ପଣ୍ୟ ବାବଦ | ୮,୦୦୦ | ବିକ୍ରୟ ବାବଦ | ୩୯,୧୫୦ |
| କ୍ରୟ ବାବଦ | ୨୫ ୯୦୦ | ଅନ୍ତ୍ୟ ମହଜୁଦ ପଣ୍ୟ ବାବଦ | ୧୨,୫୦୦ |
| ମୋଟ ଲଭ ବାବଦ | ୧୭,୭୫୦ | | |
| | ୫୧,୬୫୦ | | ୫୧,୬୫୦ |
| ବ୍ୟବସାୟ ଖର୍ଚ୍ଚ ବାବଦ | ୩,୨୦୦ | | |
| ଘରଭଡ଼ା ବାବଦ | ୬୦୦ | ମୋଟ ଲଭ ବାବଦ | ୧୭,୭୫୦ |
| ମରାମତି ବାବଦ | ୫୦୦ | ପ୍ରାପ୍ତ ଭଡ଼ା ବାବଦ | ୧,୨୦୦ |
| ଅନାଦେୟ ଋଣ ବାବଦ | ୨୫୦ | ସ୍ଥାୟୀ ଗଚ୍ଛିତର ସୁଧ ବାବଦ (ଛଅ ମାସର) | ୫୦ |
| ନିଟ୍ ଲଭ ବାବଦ | ୧୪,୪୫୦ | | |
| | ୧୯,୦୦୦ | | ୧୯,୦୦୦ |

ଶ୍ରୀ ବ୍ରଜ ସାହୁଙ୍କର ୧୯୭୪ ମସିହା
ଡିସେମ୍ବର ୩୧ ତାରିଖର ଉଦ୍‌ବୃତ୍ତ ପତ୍ର

| | | | ଟଙ୍କା | | | ଟଙ୍କା |
|---|---|---|---|---|---|---|
| ବିବିଧ ମହାଜନ | | | ୫,୨୦୦ | ବ୍ୟାଙ୍କରେ ଗଚ୍ଛିତ | | ୧୦,୨୦୦ |
| ମରାମତି ବାବଦ ଦେୟ | | | ୧୫୦ | ବିବିଧ ଖାତକ | ୧୬,୬୦୦ | |
| ମୂଳଧନ : | | | | ବିଯୁକ୍ତ : | | |
| ଆଦ୍ୟ ଉଦ୍‌ବୃତ୍ତ | ୪୪,୦୫୦ | | | ଅନାଦେୟ ଋଣ | ୨୫୦ | ୧୬,୩୫୦ |
| ଯୁକ୍ତ : ନିଟ୍ ଲଭ | ୧୪,୪୫୦ | | | ଅନ୍ତ୍ୟ ମହଜୁଦ ପଣ୍ୟ | | ୧୨,୫୦୦ |
| | ୫୮,୫୦୦ | | | ନିଜସ୍ୱ ଭୂ ସଂପତ୍ତି | | ୨୦,୦୦୦ |
| ବିଯୁକ୍ତ : ଉଠାଣ : | | | | | | |
| ନଗଦ | ୨,୪୦୦ | | | | | |
| ପ୍ରାପ୍ତ ଭଡ଼ା | ୧,୨୦୦ | | | | | |
| ପ୍ରଦତ୍ତ ଭଡ଼ା ବାବଦ | ୧,୨୦୦ | ୪,୮୦୦ | ୫୩,୭୦୦ | | | |
| | | | ୫୯,୦୫୦ | | | ୫୯,୦୫୦ |

## ଅନୁଶୀଳନୀ

୧। ଏକ ଲିଖନ ହିସାବ ପଦ୍ଧତି କାହାକୁ କହନ୍ତି ? ଏପରି ପଦ୍ଧତିର ଅସୁବିଧାଗୁଡ଼ିକ ଦର୍ଶାଅ ।

୨। ଏକ ଲିଖନ ହିସାବ ପଦ୍ଧତି ଏକ ସନ୍ତୋଷଜନକ ପଦ୍ଧତି ଅଟେ କି ? ଯଦି ନୁହେଁ, ତାହା ହେଲେ ଏହାର ବ୍ୟାବହାରିକ ଅସୁବିଧାଗୁଡ଼ିକ ବର୍ଣ୍ଣନା କର ।

୩। ଆର୍ଥିକ ଅବସ୍ଥାର ବିବରଣୀ ( statement of affairs ) କହିଲେ କ'ଣ ବୁଝ ? ଏହା ଉଦ୍‌ବୃତ୍ତ ପତ୍ରଠାରୁ କିପରି ପୃଥକ ?

୪। ଲାଭ ଓ କ୍ଷତି ବିବରଣୀ କିପରି ପ୍ରସ୍ତୁତ କରାଯାଏ ? ଲାଭ ଓ କ୍ଷତି ହିସାବ ସଦୃଶ ଏହା ଦ୍ୱାରା ବ୍ୟବସାୟର ଲାଭ ଅଥବା କ୍ଷତିର ନିର୍ଭୁଲ ପରିମାଣ ନିର୍ଣ୍ଣୀତ ହୋଇପାରେ କି ? ଯଦି ନ ହୋଇପାରେ ତାହାହେଲେ କାହିଁକି ଏହା ସମ୍ଭବ ହୁଏ ନାହିଁ ତାହାର କାରଣ ବୁଝାଇ ଲେଖ ।

୫। ଏକ ଲିଖନ ହିସାବ ପଦ୍ଧତି ଅନୁଯାୟୀ ପ୍ରସ୍ତୁତ ହିସାବ ପତ୍ରକୁ ଦ୍ୱିଲିଖନ ହିସାବ ପଦ୍ଧତିରେ କିପରି ରୂପାନ୍ତରିତ କରାଯାଏ ତାହା ବର୍ଣ୍ଣନା କର ।

୬। ସଂକ୍ଷିପ୍ତ ରୂପାନ୍ତରଣର ପ୍ରକ୍ରିୟା ବର୍ଣ୍ଣନା କର ।

୭। ଶ୍ରୀ ରାମସ୍ୱାମୀ ସେନାପତି ୧୯୭୩ ମସିହା ଜାନୁୟାରୀ ୧ ତାରିଖରେ ୭,୦୦୦ ଟଙ୍କା ବିନିଯୋଗ କରି ଗୋଟିଏ ବ୍ୟବସାୟ ଚଳାଇଲେ । ୧୯୭୩ ମସିହା ଡିସେମ୍ବର ୩୧ ତାରିଖରେ ତାଙ୍କର ସଂପତ୍ତି ଓ ଦାୟ ଦେଣା ନିମ୍ନରେ ପ୍ରଦତ୍ତ ହେଲା :

| | ଟଙ୍କା |
|---|---|
| ନଗଦ ତହବିଲ | ୨୩୦ |
| ବ୍ୟାଙ୍କରେ ଗଚ୍ଛିତ | ୧,୫୦୦ |
| ମହଜୁଦ ପଣ୍ୟ | ୩,୫୫୦ |
| ବିବିଧ ଖାତକ | ୫,୮୮୦ |
| ଆସବାବ | ୧,୨୦୦ |
| ବିବିଧ ମହାଜନ | ୨,୩୦୦ |
| ଖର୍ଚ୍ଚ ବାବଦ ଦେୟ | ୨୫୦ |

ଶ୍ରୀ ସେନାପତି ବର୍ଷ ମଧ୍ୟରେ ୨୦୦ ଟଙ୍କା ବ୍ୟବସାୟରୁ ନିଜର ବ୍ୟକ୍ତିଗତ ଖର୍ଚ୍ଚ ସକାଶେ ଉଠାଇନେଇଥିଲେ । ଏକ ଲାଭ ଓ କ୍ଷତିର ବିବରଣୀ ପ୍ରସ୍ତୁତ କରି ତାଙ୍କର ବର୍ଷ ମଧ୍ୟରେ ଉପାର୍ଜିତ ଲାଭର ପରିମାଣ ନିର୍ଣ୍ଣୟ କର ।

( ଉତ୍ତର : ଲାଭ—୩,୫୧୦ ଟଙ୍କା )

୮ । ଶ୍ରୀ ଅକ୍ଷୟ ବେହେରାଙ୍କର ବ୍ୟବସାୟର ୧୯୭୩ ମସିହା ଅପ୍ରେଲ ୧ ତାରିଖ ଓ ୧୯୭୪ ମସିହା ମାର୍ଚ୍ଚ ୩୧ ତାରିଖର ସଂପତ୍ତି, ଦାୟ ଓ ଦେଣା ନିମ୍ନରେ ପ୍ରଦତ୍ତ ହେଲା :

| | ୧-୪-୧୯୭୩ | ୩୧-୩-୧୯୭୪ |
|---|---|---|
| | ଟଙ୍କା | ଟଙ୍କା |
| ନଗଦ ତହବିଲ | ୨୧୦ | ୪୪୦ |
| ବ୍ୟାଙ୍କରେ ଗଚ୍ଛିତ | ୧,୪୦୦ | ୨,୨୯୦ |
| ମହଜୁଦ ପଣ୍ୟ | ୪,୩୦୦ | ୭,୮୦୦ |
| ବିବିଧ ଖାତକ | ୭,୨୦୦ | ୧୨,୫୦୦ |
| ବିବିଧ ମହାଜନ | ୩,୭୦୦ | ୪,୩୦୦ |
| କଳକବ୍ଜା | ୧୦,୦୦୦ | ୧୬,୦୦୦ |
| ଆସବାବପତ୍ର | ୨,୮୦୦ | ୫,୦୦୦ |

ବର୍ଷ ମଧ୍ୟରେ ସେ ୧,୮୦୦ ଟଙ୍କା ନିଜର ବ୍ୟକ୍ତିଗତ ଖର୍ଚ୍ଚ ସକାଶେ ବ୍ୟାଙ୍କରୁ ଉଠାଇ ନେଇଥିଲେ । ତାଙ୍କର ୧୯୭୪ ମସିହା ମାର୍ଚ୍ଚ ୩୧ ତାରିଖରେ ଶେଷ ହେଉଥିବା ବର୍ଷର ଲାଭ ଓ କ୍ଷତି ବିବରଣୀ ଓ ଉକ୍ତ ତାରିଖର ତାଙ୍କ ବ୍ୟବସାୟର ଆର୍ଥିକ ଅବସ୍ଥାର ବିବରଣୀ ପ୍ରସ୍ତୁତ କର । ଏହି କାଳାନ୍ତିକ ହିସାବ ପ୍ରସ୍ତୁତ କରିବା ପୂର୍ବରୁ ନିମ୍ନଲିଖିତ ସମାଯୋଜନ ଆବଶ୍ୟକ :—

କଳକବ୍ଜା ଓ ଆସବାବ ପତ୍ର ପରିମାଣରୁ ଯଥାକ୍ରମେ ୧୦% ଓ ୫% ହାରରେ ମୂଲ୍ୟହ୍ରାସ ବାଦ ଦିଆଯିବ । ବିବିଧ ଖାତକ ପରିମାଣର ୩% ହାରରେ ଅନାଦେୟ ଋଣର ସଞ୍ଚିତି ଗଢ଼ାଯିବ ।

( ଉତ୍ତର : ଲାଭ—୧୭,୨୭୦ ଟଙ୍କା ; ଆର୍ଥିକ ଅବସ୍ଥାର ବିବରଣୀ ମୋଟ ପରିମାଣ ४୨,୧୭୦ ଟଙ୍କା )

୯ । ଶ୍ରୀ ମହେନ୍ଦ୍ର ମହାନ୍ତି ୧୯୭୪ ମସିହା ଜାନୁଆରି ୧ ତାରିଖରେ ୨୫,୦୦୦ ଟଙ୍କା ମୂଳଧନ ରୂପେ ବିନିଯୋଗ କରି ବ୍ୟବସାୟ ଆରମ୍ଭ କଲେ । ସେ ତାଙ୍କର ହିସାବ ଏକକ ଲିଖନ ପଦ୍ଧତି ଅନୁଯାୟୀ ରଖୁଥିଲେ । ୧୯୭୪ ମସିହା ଡିସେମ୍ବର ୩୧ ତାରିଖରେ ତାଙ୍କ ହିସାବ ପତ୍ରରୁ ତାଙ୍କର ନିମ୍ନଲିଖିତ ଆର୍ଥିକ ପରିସ୍ଥିତି ପ୍ରକାଶ ପାଇଲା :

ବିବିଧ ମହାଜନ ଟ୮,୭୦୦; ଯନ୍ତ୍ର ଟ୧୫,୦୦୦; ମହଜୁଦ ପଣ୍ୟ (ଅନ୍ତ୍ୟ) ଟ୧୪,୮୦୦; ବିବିଧ ଖାତକ ଟ୧୫,୯୦୦ ଏବଂ ବ୍ୟାଙ୍କରେ ଗଚ୍ଛିତ ଟ୫,୭୦୦ । ସେ ପ୍ରତି ମାସରେ ଟ୩୦୦ ହାରରେ ବ୍ୟକ୍ତିଗତ ଖର୍ଚ୍ଚ ସକାଶେ ବ୍ୟବସାୟରୁ ଟଙ୍କା ଉଠାଇଛନ୍ତି । ସେ ୧୯୭୪ ମସିହା ଜୁଲାଇ ୧ ତାରିଖରେ ଅଧିକା ଟ୫,୦୦୦ ମୂଳଧନ ସ୍ୱରୂପ ବ୍ୟବସାୟକୁ ଆଣିଥିଲେ ।

୧୯୭୪ ମସିହା ଡିସେମ୍ବର ୩୧ ତାରିଖରେ ଶେଷ ହେଉଥିବା ବର୍ଷର ଲାଭ ଓ କ୍ଷତିର ବିବରଣୀ ଓ ଉକ୍ତ ତାରିଖର ଆର୍ଥିକ ଅବସ୍ଥାର ବିବରଣୀ ପ୍ରସ୍ତୁତ କର । ନିମ୍ନଲିଖିତ ବିଷୟଗୁଡ଼ିକ ସକାଶେ ବ୍ୟବସ୍ଥା କରିବା ଆବଶ୍ୟକ ।

(୧) ଯନ୍ତ୍ର ପରିମାଣରୁ ଶତକଡ଼ା ୧୫ ହାରରେ ମୂଲ୍ୟହ୍ରାସ ବାଦ ଦିଅ । (୨) ଟ୪୫୦ ପରିମାଣର ଋଣ ଅନାଦେୟ ବୋଲି ଜଣାଯାଇଥିବାରୁ ତାହା ବିବିଧ ଖାତକ ପରିମାଣରୁ ବାଦ୍ ଦିଆଯିବ । (୩) ବିବିଧ ଖାତକ ପରିମାଣ ଉପରେ ଶତକଡ଼ା ୨୧ ହାରରେ ଅନାଦେୟ ଓ ଅନିଶ୍ଚିତ ଋଣର ସଞ୍ଚିତି ଗଢ଼ାଯିବ ।

(ଉତ୍ତର : ଲାଭ ଟ୧୩,୨୧୩.୭୫ ପ: ଆର୍ଥିକ ଅବସ୍ଥା ବିବରଣୀର ମୋଟ ପରିମାଣ ଟ୪୮,୩୧୩.୭୫ ପ)

୧୦ । ଶ୍ରୀ ଲମ୍ବୋଧର ମିଶ୍ର ତାଙ୍କ ହିସାବପତ୍ର ଏକ ଲିଖନ ହିସାବ ପଦ୍ଧତି ଅନୁଯାୟୀ ରଖନ୍ତି । ତାଙ୍କ ସମ୍ପତ୍ତି ଓ ଦେଣାର ବିବରଣୀ ନିମ୍ନରେ ପ୍ରଦତ୍ତ ହେଲା :

(୩୧-୧୨-୧୯୭୪)

| ଦେଣା | ଟଙ୍କା | ସମ୍ପତ୍ତି | ଟଙ୍କା |
|---|---|---|---|
| ବିବିଧ ମହାଜନ | ୨୨,୨୦୦ | ଭୂମି ଓ ଭବନ | ୧୮,୦୦୦ |
| ଋଣ | ୨୦,୦୦୦ | ଆସବାବ ପତ୍ର | ୫,୦୦୦ |
| ବିବିଧ ଦେଣା | ୧୦,୮୦୦ | ଯନ୍ତ୍ରପାତି | ୨୦,୦୦୦ |
| | | ମହଜୁଦ ପଣ୍ୟ | ୧୪,୩୦୦ |
| | | ବିବିଧ ଖାତକ | ୩୦,୪୦୦ |
| | | ନଗଦ ତହବିଲ | ୧,୩୦୦ |
| | ୫୩,୦୦୦ | | ୮୯,୦୦୦ |

ବର୍ଷ ମଧ୍ୟରେ ୨,୪୦୦ ଟଙ୍କା ବ୍ୟବସାୟରୁ ଉଠାଇ ନେଇଥିଲେ । ଭୂମି ଓ ଭବନ ପରିମାଣରୁ ଶତକଡ଼ା ୫ ହାରରେ ଆସବାବପତ୍ର ପରିମାଣରୁ ଶତକଡ଼ା ୮ ହାରରେ ଓ ଯନ୍ତ୍ରପାତି ପରିମାଣରୁ ଶତକଡ଼ା ୧୦ ହାରରେ ମୂଲ୍ୟହ୍ରାସ ବାଦ ଦିଆଯିବ । ବିବିଧ ଖାତକ ପରିମାଣର ୨% ହାରରେ ଅନାଦେୟ ଓ ଅନିଶ୍ଚିତ ଋଣର ସଞ୍ଚିତି ଗଢ଼ାଯିବ । ଶ୍ରୀ ମିଶ୍ର ୫୦୦ ଟଙ୍କାର ପଣ୍ୟ ନିଜ ଘର ବ୍ୟବହାର ସକାଶେ ବ୍ୟବସାୟରୁ ନେଇଥିଲେ । ସେ ତାଙ୍କର ଗୃହ ଉପକରଣର କେତେକାଂଶ ୬୦୦ ଟଙ୍କା ମୂଲ୍ୟରେ ବିକ୍ରୟ କରି ତାହାକୁ ବ୍ୟବସାୟର ବ୍ୟାଙ୍କ ହିସାବରେ ସାମିଲ କରିଥିଲେ ।

ବର୍ଷ ଆରମ୍ଭରେ ଶ୍ରୀ ମିଶ୍ରଙ୍କର ମୂଳଧନର ପରିମାଣ ୨୫,୦୦୦ ଟଙ୍କା ଥିଲା ।

ଉପରୋକ୍ତ ବିବରଣୀରୁ ୧୯୬୪ ମସିହା ଡିସେମ୍ବର ୩୧ ତାରିଖରେ ଶେଷ ହେଉଥିବା ବର୍ଷର ଲାଭ ଓ କ୍ଷତିର ବିବରଣୀ ଏବଂ ଉଦ୍‌ବୃତ୍ତ ପତ୍ର ପ୍ରସ୍ତୁତ କର ।

(ଉତ୍ତର : ଲାଭ ୯,୩୯୨ ଟଙ୍କା; ଉଦ୍‌ବୃତ୍ତ ପତ୍ରର ମୋଟ ପରିମାଣ ୮୫,୦୯୨ ଟଙ୍କା)

୧୧ । କ୍ଷୀରୋଦ ଓ ବିନୋଦ ଗୋଟିଏ ଅଂଶୀଦାରୀ କାରବାରର ଅଂଶୀଦାର । ସେମାନେ ଲାଭ ଓ କ୍ଷତିର ଯଥାକ୍ରମେ ୩/୫ ଓ ୨/୫ ଅଂଶ ଭୋଗ କରୁଥିଲେ । ସେମାନେ ତାଙ୍କ ବ୍ୟବସାୟର ହିସାବ ଏକ ଲିଖନ ହିସାବ ପଦ୍ଧତି ଅନୁଯାୟୀ ରଖୁଥିଲେ । ତାଙ୍କ ବ୍ୟବସାୟର ୧୯୬୩ ମସିହା ଡିସେମ୍ବର ୩୧ ତାରିଖର ଆର୍ଥିକ ଅବସ୍ଥାର ବିବରଣୀ ନିମ୍ନରେ ପ୍ରଦତ୍ତ ହେଲା :

| ଦେଣା | | ଟଙ୍କା | ସମ୍ପତ୍ତି | ଟଙ୍କା |
|---|---|---|---|---|
| ବିବିଧ ମହାଜନ | | ୧୨,୦୦୦ | ଯନ୍ତ୍ର (Plant) | ୨୫,୦୦୦ |
| କ୍ଷୀରୋଦଙ୍କର ଋଣ ହିସାବ | | ୧୫,୦୦୦ | ମହଜୁଦ ପଣ୍ୟ | ୧୨,୧୦୦ |
| ମୂଳଧନ ହିସାବ : | | | ବିବିଧ ଖାତକ | ୧୮,୯୦୦ |
| କ୍ଷୀରୋଦ | ୨୦,୦୦୦ | | ବ୍ୟାଙ୍କରେ ଗଚ୍ଛିତ | ୧୪,୦୦୦ |
| ବିନୋଦ | ୧୫,୦୦୦ | ୩୫,୦୦୦ | | |
| | | ୬୨,୦୦୦ | | ୬୨,୦୦୦ |

୧୯୬୪ ମସିହା ଡିସେମ୍ବର ୩୧ ତାରିଖରେ ତାଙ୍କର ସମ୍ପତ୍ତି ଓ ଦେଣାର ବିବରଣୀ ନିମ୍ନପ୍ରକାର ଥିଲା :

ସଂଯନ୍ତ୍ର ୩୦,୦୦୦ ଟଙ୍କା; ମହଜୁଦ ପଣ୍ୟ ୧୮,୪୦୦ ଟଙ୍କା; ବିବିଧ ଖାତକ ୨୩,୫୦୦ ଟଙ୍କା; ବ୍ୟାଙ୍କରେ ଗଚ୍ଛିତ ୧୦,୦୦୦ ଟଙ୍କା; ବିବିଧ ମହାଜନ ୧୬,୧୦୦ ଟଙ୍କା; କ୍ଷୀରୋଦଙ୍କ ଋଣ ହିସାବ ୧୨,୦୦୦ ଟଙ୍କା ।

ତୁମକୁ ନିମ୍ନଲିଖିତ ସମାଯୋଜନ ପ୍ରତି ଦୃଷ୍ଟି ଦେଇ ଏହି ଅଂଶୀଦାରୀ କାରବାରରୁ ୧୯୭୪ ମସିହା ଡିସେମ୍ବର ୩୧ ତାରିଖରେ ଶେଷ ହେଉଥିବା ବର୍ଷର ଲାଭ ଓ କ୍ଷତିର ବିବରଣୀ ଏବଂ ଉକ୍ତ ତାରିଖର ଆର୍ଥିକ ଅବସ୍ଥାର ବିବରଣୀ ପ୍ରସ୍ତୁତ କରିବାକୁ ହେବ । ସଂଯନ୍ତ୍ର ପରିମାଣରୁ ୧୦% ହାରରେ ମୂଲ୍ୟହ୍ରାସ ବାଦ ଦିଆଯିବ । ମହଜୁଦ ପଣ୍ୟର ପରିମାଣ ୧୫,୨୦୦ ଟଙ୍କାକୁ ଅପହ୍ରାସିତ କରାଯିବ । ବିବିଧ ଖାତକ ପରିମାଣର ୨% ହାରରେ ଅନାଦେୟ ଓ ଅନିଶ୍ଚିତ ଋଣର ସଞ୍ଚିତି ଗଢାଯିବ । ଅଂଶୀଦାରମାନେ ୫% ହାରରେ ତାଙ୍କ ମୂଳଧନ ଉପରେ ସୁଧ ପାଇବେ ଓ କ୍ଷୀରୋଦଙ୍କ ଋଣ ହିସାବ ବାବଦ ସେ ୬% ହାରରେ ସୁଧ ପାଇବେ

(ଉତ୍ତର : ନିଟ ଲାଭ ୯,୫୬୦ ଟଙ୍କା ; ଆର୍ଥିକ ଅବସ୍ଥାର ବିବରଣୀର ମୋଟ ପରିମାଣ ୭୫,୦୩୦ ଟଙ୍କା)

୧୨ । ପ୍ରବୀର ଓ ସୁଶାନ୍ତ ୧୯୭୦ ମସିହା ଅପ୍ରେଲ ୧ ତାରିଖରେ ଏକ ଅଂଶୀଦାରୀ କାରବାର ଆରମ୍ଭ କଲେ ଓ ଯଥାକ୍ରମେ ୧୨,୦୦୦ ଟଙ୍କା ଓ ୭,୦୦୦ ଟଙ୍କା ମୂଳଧନ ସ୍ୱରୂପ ଆଣିଲେ । ସେମାନେ ମୂଳଧନ ବାବଦ ୫% ହାରରେ ସୁଧ ନେଲା ପରେ ଅବଶିଷ୍ଟ ଲାଭକୁ ତାଙ୍କର ମୂଳଧନ ଅନୁପାତରେ ବାଣ୍ଟି ନେବେ ବୋଲି ଚୁକ୍ତି କରିଥିଲେ ।

ସେମାନେ ତାଙ୍କର ହିସାବ ପତ୍ର ଏକ ଲିଖନ ହିସାବ ପଦ୍ଧତି ଅନୁଯାୟୀ ରଖୁଥିଲେ । ୧୯୭୩ ମସିହା ମାର୍ଚ୍ଚ ୩୧ ତାରିଖରେ ସେମାନେ ତାଙ୍କ ବ୍ୟବସାୟର ଆର୍ଥିକ ଅବସ୍ଥାର ଏକ ବିବରଣୀ ପ୍ରସ୍ତୁତ କଲେ, ଯାହା ନିମ୍ନରେ ପ୍ରଦତ୍ତ ହେଲା । ଏଥିରେ କିନ୍ତୁ ମୂଳଧନର ପରିମାଣ ଦିଆହୋଇନାହିଁ ।

| ଦେଣା | | ଟଙ୍କା | ସମ୍ପତ୍ତି | ଟଙ୍କା |
|---|---|---|---|---|
| ଭୂ-ସମ୍ପତ୍ତି ଉପରେ | | | ନିଜସ୍ୱ ଭୂ ସମ୍ପତ୍ତି | ୧୦,୦୦୦ |
| ବନ୍ଧକ ଋଣ | ୭,୦୦୦ | | ସଂଯନ୍ତ୍ର | ୫,୪୦୦ |
| ଦେୟ ସୁଧ | ୪୨୦ | ୭,୪୨୦ | ମହଜୁଦ ପଣ୍ୟ | ୧୦,୨୦୦ |
| ପ୍ରବିରଙ୍କ ଋଣ ହିସାବ | ୫,୦୦୦ | | ଖାତକ | ୧୨,୫୦୦ |
| ଦେୟ ସୁଧ | ୩୦୦ | ୫,୩୦୦ | ବ୍ୟାଙ୍କରେ ଗଚ୍ଛିତ | ୨,୪୦୦ |
| | | | ନଗଦ ତହବିଲ | ୨୦୦ |
| ମହାଜନ | | ୪,୨୮୦ | ଅଗ୍ରିମ ପ୍ରଦତ୍ତ ବ୍ୟୟ | ୧୦୦ |
| ଉଦ୍‌ବୃତ୍ତ | | ୨୩,୭୦୦ | | |
| | | ୪୦,୭୦୦ | | ୪୦,୭୦୦ |

ବ୍ୟବସାୟ ଆରମ୍ଭ ହେବା ଦିନଠାରୁ ପ୍ରବିର ମାସିକ ୮୦ ଟଙ୍କା ଓ ସୁଖାର ମାସିକ ୪୦ ଟଙ୍କା ହାରରେ ବ୍ୟବସାୟରୁ ନିଜର ବ୍ୟକ୍ତିଗତ ଖର୍ଚ୍ଚ ସକାଶେ ଅର୍ଥ ଉଠାଉଛନ୍ତି ।

୧୯୭୩ ମସିହା ମାର୍ଚ୍ଚ ୩୧ ତାରିଖରେ ତାଙ୍କର ଲାଭ ଓ କ୍ଷତିର ବିବରଣୀ ପ୍ରସ୍ତୁତ କର ଏବଂ ସେହି ତାରିଖରେ ତାଙ୍କର ହିସାବ ପତ୍ରକୁ ଦ୍ୱିଲିଖନ ହିସାବ ପଦ୍ଧତିରେ ରୂପାନ୍ତରିତ କରିବା ସକାଶେ ଜାବିଦା ପ୍ରସ୍ତୁତ କର । ୧୯୭୩ ମସିହା ମାର୍ଚ୍ଚ ୩୧ ତାରିଖର ଉଦ୍‌ବୃତ୍ତ ପତ୍ର ମଧ୍ୟ ପ୍ରସ୍ତୁତ କର ।

(ଉତ୍ତର : ୩ ବର୍ଷର ମୋଟ ଲାଭ ୭,୩୨୦ ଟଙ୍କା, ପ୍ରବିର ୪,୮୮୦ ଟଙ୍କା ଓ ସୁଖାର ୨,୪୪୦ ଟଙ୍କା ; ଉଦ୍‌ବୃତ୍ତ ପତ୍ରର ମୋଟ ପରିମାଣ ୪୦,୭୦୦ ଟଙ୍କା । )

୧୩ । ତୁମକୁ ନିମ୍ନଲିଖିତ ବିବରଣୀ ଦିଆଗଲା । ତାହାର ଭିତ୍ତିରେ ଦୁଇଟି ବିବରଣୀ ପ୍ରସ୍ତୁତ କର, ଯଥା—(୧) ଆଦ୍ୟ ଓ ଅନ୍ତ୍ୟ ମୂଳଧନ ଓ (୨) ବର୍ଷ ମଧ୍ୟରେ ସଂଘଟିତ ଉଧାର କ୍ରୟ ଓ ବିକ୍ରୟ ପରିମାଣ ।

| | ୧-୧-୧୯୭୪ ତାରିଖରେ | ୩୧-୧୨-୧୯୭୪ ତାରିଖରେ |
|---|---|---|
| | ଟଙ୍କା | ଟଙ୍କା |
| ଯନ୍ତ୍ରପାତି | ୮,୦୦୦ | ୭,୫୦୦ |
| ଆସବାବପତ୍ର | ୧,୨୦୦ | ୧,୧୦୦ |
| ବିନିଯୋଗ | ୨,୦୦୦ | ୨,୦୦୦ |
| ମହଜୁଦ ପଣ୍ୟ | ୪,୩୦୦ | ୬,୨୦୦ |
| ନଗଦ ତହବିଲ | ୨,୧୦୦ | ୪,୨୫୦ |
| ବିବିଧ ଖାତକ | ୭,୨୦୦ | ୮,୫୦୦ |
| ବିବିଧ ମହାଜନ | ୪,୨୦୦ | ୩,୧୦୦ |

ବିବିଧ ଖାତକମାନଙ୍କଠାରୁ ବର୍ଷ ମଧ୍ୟରେ ୧୨,୫୦୦ ଟଙ୍କା ମିଳିଥିଲା ଓ ମହାଜନମାନଙ୍କୁ ୫,୭୦୦ ଟଙ୍କା ଦିଆଯାଇଥିଲା ।

(ଉତ୍ତର : ୧-୧-୧୯୭୪ ତାରିଖର ମୂଳଧନ ୧୯,୬୦୦ ଟଙ୍କା ; ୩୧-୧୨-୧୯୭୪ ତାରିଖରେ ମୂଳଧନ ୨୬,୪୫୦ ଟଙ୍କା; ଉଧାର କ୍ରୟ ୪,୬୦୦ ଟଙ୍କା ଓ ଉଧାର ବିକ୍ରୟ ୧୪,୮୦୦ ଟଙ୍କା)

୧୪ । ଯଦୁନାଥ ତାଙ୍କ ବ୍ୟବସାୟର ହିସାବ ପତ୍ର ଏକ ଲିଖନ ହିସାବ ପଦ୍ଧତି ଅନୁଯାୟୀ ରଖନ୍ତି । ତାଙ୍କ ବ୍ୟବସାୟର ୧୯୭୪ ମସିହା ଜାନୁଆରୀ ୧ ତାରିଖର ଆର୍ଥିକ ଅବସ୍ଥାର ବିବରଣୀ ନିମ୍ନରେ ଦିଆଗଲା :

ବିବିଧ ମହାଜନ ୧୪,୦୦୦ ଟଙ୍କା; ଭୂସମ୍ପତ୍ତି ୩୦,୦୦୦ ଟଙ୍କା; ମହଜୁଦ ପଣ୍ୟ ୧୬,୪୦୦ ଟଙ୍କା; ବିବିଧ ଖାତକ ୧୮,୨୦୦ ଟଙ୍କା ଓ ଆସବାବ ୩,୦୦୦ ଟଙ୍କା ।

ବର୍ଷକର ରେକର୍ଡ଼ ବହିର ସାରାଂଶ ନିମ୍ନରେ ପ୍ରଦତ୍ତ ହେଲା :

| ପ୍ରାପ୍ତି | ଟଙ୍କା | ପ୍ରଦାନ | ଟଙ୍କା |
|---|---|---|---|
| ବିବିଧ ଖାତକ | ୧୩,୨୦୦ | ବ୍ୟାଙ୍କରୁ ଅଧିକ ଉଠାଣ (୧-୧-୧୯୭୪) | ୮,୦୦୦ |
| ନଗଦ ବିକ୍ରୀ | ୪୨,୮୦୦ | ବିବିଧ ବ୍ୟୟ | ୨୦, ୦୦ |
| | | ଉଠାଣ | ୨,୪୦୦ |
| | | ବିବିଧ ମହାଜନ | ୧୯,୦୦୦ |
| | | ନଗଦ ତହବିଲ | ୧,୪୦୦ |
| | | ବ୍ୟାଙ୍କରେ ଗଚ୍ଛିତ | ୫,୦୦୦ |
| | ୫୬,୦୦୦ | | ୫୬,୦୦୦ |

ବ୍ୟବସାୟ ସମ୍ପର୍କୀୟ କେତେକ ଅଧିକା ତଥ୍ୟ ନିମ୍ନରେ ପ୍ରଦତ୍ତ ହେଲା :

ଅନ୍ତ୍ୟ ମହଜୁଦ ପଣ୍ୟ ଟ ୧୦,୫୦୦ ; ବିବିଧ ଖାତକ (ଅନ୍ତ୍ୟ ବାକି) ଟ୨୨,୩୦୦, ବିବିଧ ମହାଜନ (ଅନ୍ତ୍ୟ ବାକି) ଟ ୧୦,୮୦୦ । ବର୍ଷ ମଧ୍ୟରେ ଭୂ-ସମ୍ପତ୍ତି ଅଥବା ଆସବାବ ସହିତ କୌଣସି ଅଧିକା ସମ୍ପତ୍ତି ସଂଯୁକ୍ତ ହୋଇନଥିଲା ମାତ୍ର ତହିଁରୁ ଯଥାକ୍ରମେ ୫% ଓ ୧୦% ହାରରେ ମୂଲ୍ୟ ହ୍ରାସ ବାଦ୍ ଦିଆଯିବ ।

୧୯୭୪ ମସିହା ଡିସେମ୍ବର ୩୧ ତାରିଖରେ ଶେଷ ହେଉଥିବା ବର୍ଷର ସ୍ଥୂଳ ଓ ନିଟ୍ ଲାଭ ଓ କ୍ଷତି ହିସାବ ଓ ଉକ୍ତ ତାରିଖର ଉଦ୍ବୃତ୍ତ ପତ୍ର ପ୍ରସ୍ତୁତ କର ।

(ଉତ୍ତର : ସ୍ଥୂଳ ଲାଭ ୪୭,୪୦୦ ଟଙ୍କା ; ନିଟ୍ ଲାଭ ୨୫,୪୦୦ ଟଙ୍କା ଓ ଉଦ୍ବୃତ୍ତ ପତ୍ରର ମୋଟ ପରିମାଣ ୭୯,୪୦୦ ଟଙ୍କା)

ନୋଟ : ୧-୧-୧୯୭୪ ତାରିଖର ମୂଳଧନ ନିର୍ଣ୍ଣୟ କରିବା ସକାଶେ ଉକ୍ତ ତାରିଖର ଆର୍ଥିକ ଅବସ୍ଥାର ବିବରଣୀ ପ୍ରସ୍ତୁତ କରାଯିବ । ବିବିଧ ଖାତକ ଓ ବିବିଧ ମହାଜନଙ୍କ ହିସାବ ପ୍ରସ୍ତୁତ କରାଯାଇ ଉଧାର ବିକ୍ରୟ ଓ କ୍ରୟ ପରିମାଣ ନିର୍ଣ୍ଣୟ କରାଯିବ ।

୧୫ । ସାହୁ, ମିଶ୍ର ଓ ପଟେଲ ଗୋଟିଏ ଅଂଶୀଦାର କାରବାର ଚଳାଉଥିଲେ । ୧୯୭୪ ମସିହା ଡିସେମ୍ବର ମାସରେ ତାଙ୍କ ବ୍ୟବସାୟରେ ଅଗ୍ନିକାଣ୍ଡ ଘଟିବା ହେତୁ ତାଙ୍କ ବ୍ୟବସାୟର ଅଧିକାଂଶ କାଗଜପତ୍ର ବିନଷ୍ଟ ହୋଇଯାଇଥିଲା । ସେମାନେ ବ୍ୟବସାୟର ହିସାବ ପତ୍ର ଏକ ଲିଖନ ହିସାବ ପଦ୍ଧତି ଅନୁଯାୟୀ ରଖୁଥିଲେ । ତାଙ୍କ ବ୍ୟବସାୟର ୧୯୭୩ ମସିହା ଡିସେମ୍ବର ୩୧ ତାରିଖର ଉଦ୍ବୃତ୍ତ ପତ୍ର ନିମ୍ନରେ ପ୍ରଦତ୍ତ ହେଲା :

| ଦାୟ ଓ ଦେଣା | | ଟଙ୍କା | ସମ୍ପତ୍ତି | ଟଙ୍କା |
|---|---|---|---|---|
| ବିବିଧ ମହାଜନ | | ୭,୨୦୦ | ବ୍ୟାଙ୍କରେ ଗଚ୍ଛିତ | ୫,୪୦୦ |
| ମୂଳଧନ ହିସାବ : | | | ବିବିଧ ଖାତକ | ୮,୯୦୦ |
| ସାହୁ | ୧୨,୦୦୦ | | ମହଜୁଦ ପଣ୍ୟ | ୧୬,୩୦୦ |
| ମିଶ୍ର | ୮,୦୦୦ | | ଯନ୍ତ୍ରପାତି | ୨,୪୦୦ |
| ପଟେଲ | ୪,୦୦୦ | ୨୪,୦୦୦ | ଆସବାବ ପତ୍ର | ୨,୦୦୦ |
| ଚଳନ୍ତି ହିସାବ : | | | ଅଗ୍ରୀମ ପ୍ରଦତ୍ତ ଅର୍ଥ | ୧୦୦ |
| ସାହୁ | ୪,୩୫୦ | | ପଟେଲଙ୍କ ଚଳନ୍ତି ହିସାବ | ୪୫୦ |
| ମିଶ୍ର | ୨,୦୦୦ | ୬,୩୫୦ | | |
| | | ୩୭,୫୫୦ | | ୩୭,୫୫୦ |

ବର୍ଷ ମଧ୍ୟରେ ଅଂଶୀଦାରମାନେ ନିମ୍ନଲିଖିତ ରୂପେ ବ୍ୟବସାୟରୁ ଅର୍ଥ ଉଠାଇଥିଲେ : ସାହୁ ୨,୪୦୦ ଟଙ୍କା ; ମିଶ୍ର ୧,୮୦୦ ଟଙ୍କା ଓ ପଟେଲ ୧,୨୦୦ ଟଙ୍କା । ୧୯୭୪ ମସିହା ଡିସେମ୍ବର ୩୧ ତାରିଖରେ ବ୍ୟାଙ୍କରେ ୮,୪୦୦ ଟଙ୍କା ଗଚ୍ଛିତ ଥିଲା ; ବିବିଧ ଖାତକଙ୍କର ପରିମାଣ ୧୨,୫୦୦ ଟଙ୍କା ; ମହଜୁଦ ପଣ୍ୟ ୧୭,୨୦୦ ଟଙ୍କା; ଅଗ୍ରିମ ପ୍ରଦତ୍ତ ଅର୍ଥ ୭୦ ଟଙ୍କା ; ବିବିଧ ମହାଜନ ୮,୧୦୦ ଟଙ୍କା ଥିଲା । ଯନ୍ତ୍ର ପାତିରୁ ୧୦% ହାରରେ ଓ ଆସବାବ ପତ୍ରରୁ ୧୨% ହାରରେ ମୂଲ୍ୟହ୍ରାସ ବାଦ ଦିଆଯିବ । ଅଂଶୀଦାରମାନଙ୍କ ମୂଳଧନ ଉପରେ ୫% ହାରରେ ସୁଧ ଦିଅଯିବ । ଅଂଶୀଦାରମାନେ ଲାଭ ଓ କ୍ଷତିର ଯଥାକ୍ରମେ ୧/୨, ୧/୩ ଓ ୧/୬ ଅଂଶ ଭୋଗ କରୁଥିଲେ ।

ଅଂଶୀଦାରି କାରବାରର ୧୯୭୪ ମସିହା ଡିସେମ୍ବର ୩୧ ତାରିଖରେ ଶେଷ ହେଉଥିବା ବର୍ଷର ଲାଭ ଓ କ୍ଷତିର ବିବରଣୀ ପ୍ରସ୍ତୁତ କର, ଅଂଶୀଦାରମାନେ କେତେ ପରିମାଣର ଲାଭ ପାଇବେ ତାହା ନିର୍ଣ୍ଣୟ କର ଓ ଉକ୍ତ ତାରିଖର ଉଦ୍‌ବୃତ୍ତ ପତ୍ର ପ୍ରସ୍ତୁତ କର ।

(ଉତ୍ତର : ଲାଭର ଅଂଶ : ସାହୁ ଟ ୫,୪୯୫ ; ମିଶ୍ର ଟ୩,୬୬୩.୩୪ ; ପଟେଲ ଟ ୧,୮୩୧.୬୬ ; ଉଦ୍‌ବୃତ୍ତ ପତ୍ର ଟ ୪୪,୭୯୦ । )

୧୬ । ଶ୍ୟାମସୁନ୍ଦର ତାଙ୍କ ବ୍ୟବସାୟର ୧୯୭୨ ମସିହା ଡିସେମ୍ବର ୩୧ ତାରିଖରେ ଶେଷ ହେଉଥିବା ବର୍ଷର ଲାଭ ଓ କ୍ଷତି ହିସାବ ଏବଂ ଉକ୍ତ ତାରିଖର ଉଦ୍‌ବୃତ୍ତ ପତ୍ର ପ୍ରସ୍ତୁତ କରିବା ସକାଶେ ଅନୁରୋଧ କରିଛନ୍ତି । ତାଙ୍କର କୌଣସି ହିସାବ ବହି ନାହିଁ, କିନ୍ତୁ ବ୍ୟବସାୟ ସଂକ୍ରାନ୍ତ ନେଣ ଦେଣଗୁଡ଼ିକ ସେ ନିମ୍ନୋକ୍ତ ପଦ୍ଧତିରେ ଲିପିବଦ୍ଧ କରନ୍ତି :—

ସେ ସମସ୍ତ ଉଧାର ବିକ୍ରୟ ସଂକ୍ରାନ୍ତ ବିଲ୍ ଅଥବା ଚାଲାଣଗୁଡ଼ିକର ନକଲ ରଖନ୍ତି ଏବଂ ଏଥିବାବଦ ଅର୍ଥ ମିଳଲେ ତାହାର ତାରିଖ ସେହି ଚାଲାଣରେ ଲିପିବଦ୍ଧ କରନ୍ତି । ନଗଦ ବିକ୍ରି ସକାଶେ ଦିଆଯାଉଥିବା ରସିଦ ବା କ୍ୟାସମେମୋର ସେ କୌଣସି ନକଲ ରଖନ୍ତିନାହିଁ କିନ୍ତୁ ସେ ଜଣାନ୍ତି ଯେ ନଗଦ ବିକ୍ରୟରୁ ହେଉ ଅଥବା ଉଧାର ବିକ୍ରୟରୁ ହେଉ, ସେ ଯେଉଁ ଅର୍ଥ ଲାଭ କରନ୍ତି ତାହା ସେ ବ୍ୟାଙ୍କ୍‌ରେ ଜମା କରନ୍ତି, କେବଳ କେତେକ ସମୟରେ ଖୁଚୁରା ଖର୍ଚ୍ଚ ସକାଶେ ଏବଂ ନିଜର ବ୍ୟକ୍ତିଗତ ଖର୍ଚ୍ଚ ସକାଶେ ବ୍ୟାଙ୍କ୍‌ରୁ ଟଙ୍କା ପ୍ରେରଣ କରିବା ପୂର୍ବରୁ କିଛି ଟଙ୍କା କାଟି ରଖନ୍ତି, ଯାହା ସେ ଗୋଟିଏ ଟିପା ଖାତାରେ ଲିପିବଦ୍ଧ କରନ୍ତି ।

ତାଙ୍କର ବ୍ୟାଙ୍କ୍ ପାସ୍ ବହି ବିଶ୍ଳେଷଣ କରି ନିମ୍ନଲିଖିତ ତଥ୍ୟମାନ ମିଳିଛି :

| | ଟଙ୍କା |
|---|---|
| ବ୍ୟାଙ୍କ୍‌କୁ ପ୍ରେରିତ ମୋଟ ପରିମାଣ | ୨୫,୪୦୦ |
| ଖର୍ଚ୍ଚ :— | |
| ବ୍ୟକ୍ତିଗତ ଖର୍ଚ୍ଚ ପାଇଁ ଉଠାଣ | ୨,୪୦୦ |
| କ୍ରୟ | ୨୦,୨୦୦ |
| ବେତନ | ୨,୦୦୦ |
| ଘରଭଡ଼ା | ୧,୨୦୦ |
| ବିଦ୍ୟୁତ୍ ଆଲୋକ | ୩୦୦ |
| ଛପେଇ ଓ ମନୋହାରୀ | ୧୫୦ |
| ବିଜ୍ଞାପନ | ୨୫୦ |

୧୯୭୨ ମସିହା ଡିସେମ୍ବର ୩୧ ତାରିଖରେ ବ୍ୟାଙ୍କ୍‌ରେ ତାଙ୍କର ୩୫୦ ଟଙ୍କା ଗଚ୍ଛିତ ଥିଲା ।

ଟିପା ଖାତାରୁ ଦେଖିବାକୁ ମିଳେ ଯେ, ସେ ବ୍ୟକ୍ତିଗତ ଖର୍ଚ୍ଚ ସକାଶେ ୭୦୦ ଟଙ୍କା ଏବଂ ଖୁଚୁରା ଖରଚ ସକାଶେ ୨୦୦ ଟଙ୍କା ପ୍ରାପ୍ତ ଅର୍ଥରୁ ବିଭିନ୍ନ ସମୟରେ କାଟି ରଖିଛନ୍ତି ।

ଗ୍ରାହକର ନକଲଗୁଡ଼ିକ ବିଶ୍ଳେଷଣ କରିବାରୁ ଦେଖାଗଲା ଯେ ୧୯୭୨ ମସିହାରେ ପ୍ରାପ୍ତ ଓ ବ୍ୟାଙ୍କ୍‌ରେ ଗଚ୍ଛିତ ୨,୧୦୦ ଟଙ୍କା ୧୯୭୧ ମସିହାର ଉଧାରି ବିକ୍ରୟ ବାବଦ ମିଳିଥିଲା ; ୧୯୭୨ ମସିହାରେ ଯେତେ ଉଧାର ବିକ୍ରୟ କରାଯାଇଥିଲା ସେଥି ବାବଦ ୩,୩୫୦ ଟଙ୍କା ବ୍ୟତୀତ ଅନ୍ୟ ସମସ୍ତ ଅର୍ଥ ଆଦାୟ ହୋଇଛି ଏବଂ ତିନିଗୋଟି ଗ୍ରାହକ, ଯାହାର ମୋଟ ପରିମାଣ ୩୫୦ ଟଙ୍କା, ସେଗୁଡ଼ିକ ବାବଦ ଟଙ୍କା ମିଳିବାର ସମ୍ଭାବନା ନାହିଁ ବୋଲି ଲେଖାଯାଇଛି ।

ତାଙ୍କର ଦାୟ ଓ ଦେଣା ନିମ୍ନୋକ୍ତ ପ୍ରକାର ଥିଲା :

| | ୧୯୭୧ ମସିହା ଡିସେମ୍ବର ୩୧ | ୧୯୭୨ ମସିହା ଡିସେମ୍ବର ୩୧ |
|---|---|---|
| | ଟଙ୍କା | ଟଙ୍କା |
| କ୍ରୟ | ୧,୮୦୦ | ୨,୨୦୦ |
| ଘରଭଡ଼ା | ୧୦୦ | ୧୦୦ |
| ବିଦ୍ୟୁତ୍ ଆଲୋକ | ୨୫ | ୩୦ |
| ବିଜ୍ଞାପନ | -- | ୧୨୦ |

୧୯୭୨ ମସିହା ଡିସେମ୍ବର ୩୧ ତାରିଖରେ ମହଜୁଦ୍ ପଣ୍ୟର କ୍ରୟମୂଲ୍ୟ ୨,୪୫୦ ଟଙ୍କା ଥିଲା, ମାତ୍ର ୧୯୭୧ ମସିହା ଡିସେମ୍ବର ୩୧ ତାରିଖରେ ତାଙ୍କର ମହଜୁଦ ପଣ୍ୟର ପରିମାଣ କେତେ ଥିଲା ତାହାର କୌଣସି ହିସାବ ତାଙ୍କଠାରେ ନାହିଁ । ମାତ୍ର ସେ ଜଣାଇଛନ୍ତି ଯେ ସେ ଅପରିବର୍ତ୍ତିତ ଭାବରେ ପଣ୍ୟକୁ କ୍ରୟମୂଲ୍ୟ ଯୁକ୍ତ କ୍ରୟମୂଲ୍ୟର ୩୩୧/୩ % ଦରରେ ବିକ୍ରୟ କରନ୍ତି ।

ଉପରୋକ୍ତ ବିବରଣୀରୁ ଲାଭ ଓ କ୍ଷତି ହିସାବ ଏବଂ ଉଦ୍‌ବୃତ୍ତ ପତ୍ର ପ୍ରସ୍ତୁତ କର ।

(ଉତ୍ତର : ୩୧-୧୨-୧୯୭୧ ର ମୂଳଧନ ହିସାବ ୫,୯୦୦ ଟଙ୍କା ; ୧୯୭୨ର ମୋଟ୍ ଲାଭ ୭,୪୭୫ ଟଙ୍କା, ନିଟ୍ ଲାଭ ୨,୯୦୦ ଟଙ୍କା ଓ ୩୧-୧୨-୧୯୭୨ର ଉଦ୍‌ବୃତ୍ତ ପତ୍ରର ମୋଟ ପରିମାଣ ୮,୨୫୦ ଟଙ୍କା । )

୧୭ । ଜଣେ ଖୁଚୁରା ବ୍ୟବସାୟୀ ତୁମକୁ ତାଙ୍କ ବ୍ୟବସାୟର ହିସାବ ପ୍ରସ୍ତୁତ କରିବାକୁ କହିଛନ୍ତି । ଏହି ହିସାବ ୧୯୭୩ ମସିହା ଡିସେମ୍ବର ୩୧ ତାରିଖରେ ଶେଷ ହେଉଥିବା ବର୍ଷ ସକାଶେ ପ୍ରସ୍ତୁତ କରାଯିବ । ତାଙ୍କ ହିସାବପତ୍ର ପରୀକ୍ଷା କରିବା ପରେ ତୁମେ ଦେଖିଲ ଯେ ଯଦିଓ ବ୍ୟବସାୟ ସଂପୃକ୍ତ ପ୍ରାପ୍ତି ଓ ପ୍ରଦାନ ଲିପିବଦ୍ଧ କରାଯାଇଛି, ତଥାପି ନଗଦ ତହବିଲ ସହିତ ତାହାର ସମନ୍ୱୟ କରାଯାଇ ନାହିଁ । ଥରକୁ ଥର ଟଙ୍କା ବ୍ୟାଙ୍କରେ ଜମା କରାଯାଇଛି ଏବଂ ବ୍ୟାଙ୍କରୁ ଚେକ୍ ମାରଫତ୍ ଉଭୟ ବ୍ୟବସାୟ ସକାଶେ ଏବଂ ନିଜର ବ୍ୟକ୍ତିଗତ ଖର୍ଚ୍ଚ ସକାଶେ ଟଙ୍କା ଉଠାଇ ଅଣାଯାଇଛି ।

ବ୍ୟବସାୟୀଙ୍କଠାରୁ ପ୍ରାପ୍ତ ଏବଂ ବ୍ୟବସାୟର ହିସାବ ପତ୍ରରୁ ପ୍ରାପ୍ତ ନିମ୍ନଲିଖିତ ବିବରଣୀରୁ ତାଙ୍କର ୧୯୭୩ ମସିହା ଡିସେମ୍ବର ୩୧ ତାରିଖରେ ଶେଷ ହେଉଥିବା ବର୍ଷର ମୋଟ ଓ ନିଟ ଲାଭ ଓ କ୍ଷତି ହିସାବ ଏବଂ ଉକ୍ତ ତାରିଖର ଉଦ୍‌ବୃତ୍ତପତ୍ର ପ୍ରସ୍ତୁତ କର । ବର୍ଷ ମଧ୍ୟରେ ୧୦୦ ଟଙ୍କା ତହବିଲ ବାକ୍ସରୁ ଚୋରି ଯାଇଛି । ନଗଦ ତହବିଲରୁ ବ୍ୟକ୍ତିଗତ ଖର୍ଚ୍ଚ ସକାଶେ ନିଆଯାଇଥିବା ଅର୍ଥର ହିସାବ ରଖାଯାଇନାହିଁ ଏବଂ ନଗଦ ତହବିଲ ହିସାବରେ ଦେଖାଦେଇଥିବା ୩୭୫ ଟଙ୍କାର ପାର୍ଥକ୍ୟ ବ୍ୟକ୍ତିଗତ ଉଠାଣରୂପେ ବିବେଚିତ ହେବ ।

ବ୍ୟାଙ୍କ୍‌ରେ ଜମା କରାଯାଇଥିବା ଅର୍ଥର ପରିମାଣ ୭,୫୦୦ ଟଙ୍କା ; ବ୍ୟକ୍ତିଗତ ଆୟ ବାବଦ ପ୍ରାପ୍ତ ୨୦୦ ଟଙ୍କା ବ୍ୟାଙ୍କରେ ଜମା କରାଯାଇଛି ; ବ୍ୟକ୍ତିଗତ ବ୍ୟୟ ବାବଦ ବ୍ୟାଙ୍କ୍‌ରୁ ୧,୩୦୦ ଟଙ୍କା ଉଠାଇ ଅଣାଯାଇଛି ; ବ୍ୟବସାୟ ବ୍ୟୟ ସଂକ୍ରାନ୍ତ ବ୍ୟାଙ୍କ୍‌ରୁ ୬,୧୦୦ ଟଙ୍କା ଦିଆଯାଇଛି । ଖାତକମାନେ ୧୨,୫୦୦ ଟଙ୍କା ଦେଇଛନ୍ତି ; ନଗଦ ଓ ବ୍ୟାଙ୍କ୍‌ରୁ ଚେକ୍ ଜରିଆରେ ୮,୦୦୦ ଟଙ୍କା ଦିଆଯାଇ ମାଲ ଖରିଦ କରାଯାଇଛି ; ମଜୁରି ବାବଦ ୨,୦୦୦ ଟଙ୍କା ଖର୍ଚ୍ଚ ହୋଇଛି; ମାଲ ପହଞ୍ଚାଇବା ସକାଶେ ୩୫୦ ଟଙ୍କା ଖର୍ଚ୍ଚ ହୋଇଛି ; ଘରଭଡ଼ା ଓ ଟିକସ ବାବଦ ୧୦୦ ଟଙ୍କା ଖର୍ଚ୍ଚ ହୋଇଛି ; ବିଦ୍ୟୁତ୍ ଆଲୋକ ବାବଦ ୫୦ ଟଙ୍କା ବ୍ୟୟିତ ହୋଇଛି ଓ ସାଧାରଣ ବ୍ୟୟ ବାବଦ ୨୮୦ ଟଙ୍କା ଖର୍ଚ୍ଚ ହୋଇଛି ।

ବ୍ୟବସାୟର ସମ୍ପତ୍ତି ଓ ଦେଣା ବର୍ଷ ଆରମ୍ଭ ଓ ଶେଷରେ ନିମ୍ନରେ ଥିଲା :

| | ଆଦ୍ୟ | ଅନ୍ତ୍ୟ |
|---|---|---|
| | ଟଙ୍କା | ଟଙ୍କା |
| ମହଜୁଦ ମାଲ | ୧,୦୦୦ | ୭୫୦ |
| ବ୍ୟାଙ୍କ ବାକି | ୪୦୦ | ୭୦୦ |
| ନଗଦ ତହବିଲ | ୧୫ | ୨୦ |
| ବିବିଧ ଖାତକ | ୭୦୦ | ୧,୦୦୦ |
| ବିବିଧ ମହାଜନ | ୧,୩୭୫ | ୧,୫୦୦ |
| ଭିନଯୋଗ | ୨,୫୦୦ | ୨,୫୦୦ |

(Adapted from S. A. A. Inter)

(ଉତ୍ତର : ମୋଟ ଲଭ ୨,୪୧୫ ଟଙ୍କା; ନିଟ୍ ଲଭ ୧,୫୮୫ ଟଙ୍କା ଓ ଉଦବୃତ୍ତ ପତ୍ରର ମୋଟ ପରିମାଣ ୪,୮୭୦ ଟଙ୍କା)

୧୮ । ଜଣେ ଖୁଚୁରା ବେପାରୀ ତାଙ୍କ ବ୍ୟବସାୟର ୧୯୪୧ ମସିହା ମାର୍ଚ୍ଚ ୩୧ ତାରିଖରେ ଶେଷ ହେଉଥିବା ବର୍ଷର ହିସାବ ପ୍ରସ୍ତୁତ କରିବାକୁ ଅନୁରୋଧ କରନ୍ତି । ବ୍ୟବସାୟରେ କୌଣସି ହିସାବପତ୍ର ରଖାଯାଇ ନାହିଁ ମାତ୍ର ନିମ୍ନଲିଖିତ ବିଷୟଗୁଡ଼ିକ ଜଣାଯାଇଛି :—

(୧) ବ୍ୟାଙ୍କ ପାସବହିରୁ ଜଣାଯାଇଛି ଯେ ବର୍ଷ ମଧ୍ୟରେ ୭,୦୧୦ ଟଙ୍କା ବ୍ୟାଙ୍କରେ ଜମା କରାଯାଇଛି ଏବଂ ବ୍ୟାଙ୍କରୁ ୫,୯୨୫ ଟଙ୍କା ଉଠାଇ ଅଣାଯାଇଛି ।

(୨) ୫୦୦ ଟଙ୍କା ସ୍ଥାୟୀ ଗଚ୍ଛିତରୂପେ ୧୯୪୭ ମସିହା ଡିସେମ୍ବର ୩୧ ତାରିଖରେ ଶତକଡ଼ା ୨ ହାର ସୁଧରେ ଜମା କରାଯାଇଥିଲା ଏବଂ ସୁଧ ସମେତ ୧୯୪୮ ମସିହା ଜୁନ ୩୦ ତାରିଖରେ ଉଠାଇ ଅଣାଯାଇଥିଲା ।

(୩) ୧,୦୦୦ ଟଙ୍କା ଅଙ୍କିତ ମୂଲ୍ୟର ୩ ୧/୨% ସରକାରୀ ଋଣ ପତ୍ର ୧୯୪୮ ମସିହା ଅପ୍ରେଲ ୧ ତାରିଖରେ ୧,୦୫୦ ଟଙ୍କା ମୂଲ୍ୟରେ କ୍ରୟ କରାଯାଇଥିଲା ।

(୪) ଉପରୋକ୍ତ ସମସ୍ତ ବିନିମୟ ଏବଂ ବ୍ୟବସାୟ ସଂକ୍ରାନ୍ତ ସମସ୍ତ ପରିଶୋଧନ (Payments) ବ୍ୟାଙ୍କ ହିସାବ ମାଧ୍ୟମରେ ହୋଇଥିଲା । ବ୍ୟବସାୟ ସଂକ୍ରାନ୍ତ ପ୍ରାପ୍ତ ଅର୍ଥରୁ ବ୍ୟବସାୟ ସଂକ୍ରାନ୍ତ ବ୍ୟୟ ଓ ବ୍ୟକ୍ତିଗତ ଖର୍ଚ୍ଚ ବାଦେ ବଳକା ଟଙ୍କା ବ୍ୟାଙ୍କରେ ଜମା କରାଯାଇଛି ।

(୫) ୧୯୪୧ ମସିହା ମାର୍ଚ୍ଚ ୩୧ ତାରିଖର ସମ୍ପତ୍ତି ଓ ଦେଣା ନିମ୍ନପ୍ରକାର ଥିଲା :— ମହଜୁଦ ମାଲ ୫୫୦ ଟଙ୍କା; ଖାତକ ୫୭୫ ଟଙ୍କା ; ବ୍ୟାଙ୍କ ହିସାବର ବାକି ୧୭୦ ଟଙ୍କା ; ନିଜସ୍ୱ ଗୃହ ୧,୦୦୦ ଟଙ୍କା; ମହାଜନ ୨୦୦ ଟଙ୍କା ।

(୭) ନିର୍ଭରଯୋଗ୍ୟ ତଥ୍ୟ ଅଭାବରୁ ନିମ୍ନଲିଖିତ ବିଷୟଗୁଡ଼ିକ ସମ୍ପର୍କରେ ଅନୁମାନ ଯୋଗାଇ ଦିଆଯାଇଛି :—(କ) ବର୍ଷ ମଧ୍ୟରେ ମହଜୁଦ୍ ମାଲ ଓ ଖାତକ ପରିମାଣ ପ୍ରତ୍ୟେକଟି ୫୦ ଟଙ୍କା ବୃଦ୍ଧିପାଇଛି; (ଖ) ୧୯୪୮ ମସିହା ଅପ୍ରେଲ ୧ ତାରିଖରେ ମହାଜନଙ୍କ ମୋଟ ପରିମାଣ ୧୦୦ ଟଙ୍କା ଥିଲା; (ଗ) ବର୍ଷ ମଧ୍ୟରେ ବ୍ୟକ୍ତିଗତ ଖର୍ଚ୍ଚର ପରିମାଣ ୪୦୦ ଟଙ୍କା ଥିଲା ଏବଂ ବ୍ୟବସାୟ ସଂକ୍ରାନ୍ତ ଖର୍ଚ୍ଚର ପରିମାଣ ୩୫୦ ଟଙ୍କା ଥିଲା ।

ଉପରୋକ୍ତ ବିବରଣୀରୁ ୧୯୪୯ ମସିହା ମାର୍ଚ୍ଚ ୩୧ ତାରିଖରେ ଶେଷ ହେଉଥିବା ବର୍ଷର ଲାଭ ଓ କ୍ଷତି ହିସାବ ଏବଂ ୧୯୪୮ ମସିହା ମାର୍ଚ୍ଚ ୩୧ ତାରିଖ ଓ ୧୯୪୯ ମସିହା ମାର୍ଚ୍ଚ ୩୧ ତାରିଖର ଉଦ୍‌ବୃତ୍ତ ପତ୍ର ପ୍ରସ୍ତୁତକର ।

(Bombay B. Com.)

(ଉତ୍ତର : ୩୧–୩–୧୯୪୮ ତାରିଖର ମୂଳଧନ ଟ ୨,୫୦୨.୫୦ , ନିଟ୍ ଲାଭ ଟ ୧,୦୩୨.୫୦; ଓ ଉଦ୍‌ବୃତ୍ତ ପତ୍ରର ମୋଟ ପରିମାଣ ଟ ୩,୩୩୫ ।)

## ଏକାଦଶ ପରିଚ୍ଛେଦ

# ଅଂଶୀଦାରୀ କାରବାରର ହିସାବ - ୧

## (Partnership Accounts)

## ସାଧାରଣ ନୀତି ସମୂହ ଓ କାଳାନ୍ତକ ହିସାବ

## (General Pri ciples And Final Accounts)

ଏପର୍ଯ୍ୟନ୍ତ ଆମେ ଏକକ-ମାଲିକାନା ବ୍ୟବସାୟର ହିସାବରକ୍ଷଣ ପ୍ରଣାଳୀର ଆଲୋଚନା କରୁଛୁ । ଏକାଧିକ ବ୍ୟକ୍ତି ମଧ୍ୟ ମିଳିତ ହୋଇ ଗୋଟିଏ ବ୍ୟବସାୟ ବା କାରବାର ପ୍ରଚଳନ କରିପାରନ୍ତି । ଏହି ପରିଚ୍ଛେଦରେ ଏହିପରିଭାବରେ ପ୍ରଚଳିତ କାରବାରର ହିସାବ ରକ୍ଷଣ ପ୍ରଣାଳୀ ଆଲୋଚିତ ହେବ ।

ଯେତେବେଳେ ଗୋଟିଏ ଉଦ୍ୟମ ପ୍ରଥମେ ଆରମ୍ଭ କରାଯାଏ ସେତେବେଳେ ସାଧାରଣତଃ ଜଣେ ବ୍ୟବସାୟୀଙ୍କଦ୍ୱାରା ଆରମ୍ଭ କରାଯାଇଥାଏ । କିନ୍ତୁ ଯେତେବେଳେ ବ୍ୟବସାୟ ଆଶାତୀତ ଭାବରେ ଲାଭଜନକ ହୁଏ ଏବଂ ଏହାର ପ୍ରସାରଣ ସକାଶେ ସୁଯୋଗ ଓ ସୁବିଧା ଥାଏ ସେତେବେଳେ ଏହାର ମାଲିକ ବା ସ୍ୱତ୍ୱାଧିକାରୀ ଏହି ବ୍ୟବସାୟର ପରିଧି ପ୍ରସାରିତ କରିବାକୁ ଇଚ୍ଛାକରନ୍ତି । ଯେତେଦିନ ପର୍ଯ୍ୟନ୍ତ ସେ ଏହାର ପ୍ରସାରଣ ନିମନ୍ତେ ଆବଶ୍ୟକ ପୁଞ୍ଜି ଯୋଗାଇପାରନ୍ତି ଏବଂ ବ୍ୟବସାୟର ତତ୍ତ୍ୱାବଧାନ କରିବାକୁ ସମର୍ଥ ହୁଅନ୍ତି ସେତେଦିନ ଯାଏ ସେ ବ୍ୟବସାୟର ସଙ୍ଗଠନରେ କୌଣସି ପରିବର୍ତ୍ତନ ଆଣନ୍ତି ନାହିଁ । ମାତ୍ର ଯେତେବେଳେ ସେ ନିଜେ ଆବଶ୍ୟକ ପୁଞ୍ଜି ବିନିଯୋଗ କରିବାକୁ ଅସମର୍ଥ ହୁଅନ୍ତି ଅଥବା ବ୍ୟବସାୟର ପରିସର ବୃଦ୍ଧି ହେତୁ ଏହାକୁ ସୁଚାରୁରୂପେ ପରିଚାଳନା କରିବାକୁ ଅସମର୍ଥ ହୁଅନ୍ତି ସେତେବେଳେ ସେ ଅନ୍ୟ କୌଣସି ବ୍ୟକ୍ତିଙ୍କୁ କିମ୍ବା ଏକାଧିକ ବ୍ୟକ୍ତିଙ୍କୁ ବ୍ୟବସାୟରେ ଅଂଶୀଦାରରୂପେ ଯୋଗଦେବାକୁ ଅନୁରୋଧ କରନ୍ତି । ଅବଶ୍ୟ ପୂର୍ବୋକ୍ତ

କାରଣ ଉଠନ୍ତି ମୁଖ୍ୟ ହୋଇପାରେ, କିନ୍ତୁ ଅନ୍ୟାନ୍ୟ ବହୁ କାରଣରୁ ବ୍ୟବସାୟୀ ଅଂଶୀଦାର ଗ୍ରହଣ କରିପାରନ୍ତି । ଏହିପରି ବ୍ୟବସାୟକୁ ଅଂଶୀଦାରୀ କାରବାର କୁହାଯାଏ ଏବଂ ଏହାର ମାଲିକମାନଙ୍କୁ ଅଂଶୀଦାର କୁହାଯାଏ ।

୧୯୩୨ ମସିହାର ଭାରତୀୟ ଅଂଶୀଦାରୀଆଇନ ଏହିପରି ଅଂଶୀଦାରୀ କାରବାରର ସଂଜ୍ଞା ନିମ୍ନଲିଖିତ ରୂପେ ନିରୂପଣ କରନ୍ତି ; ଯଥା : କେତେଜଣ ବ୍ୟକ୍ତିଙ୍କଦ୍ୱାରା ଅଥବା ତାଙ୍କ ମଧ୍ୟରୁ ଜଣକଦ୍ୱାରା ପରିଚାଳିତ ବ୍ୟବସାୟର ଲାଭ ନିଜ ନିଜ ମଧ୍ୟରେ ବଣ୍ଟନକରିବା ସକାଶେ ସେମାନଙ୍କ ମଧ୍ୟରେ ଯେଉଁ ଚୁକ୍ତି-ଜନିତ ସମ୍ପର୍କ ସୃଷ୍ଟିହୁଏ ତାହାକୁ ଅଂଶୀଦାରୀ କୁହାଯାଏ । ଯେଉଁ ସମସ୍ତ ବ୍ୟକ୍ତି ପରସ୍ପର ସହିତ ଏହିପରି ସମ୍ପର୍କରେ ଆବଦ୍ଧ ହୁଅନ୍ତି ତାଙ୍କର ପ୍ରତ୍ୟେକଙ୍କୁ 'ଅଂଶୀଦାର' ଓ ସେମାନଙ୍କୁ ମିଳିତଭାବରେ 'ଅଂଶୀଦାରୀ ପ୍ରତିଷ୍ଠାନ' (Firm) କୁହାଯାଏ ଏବଂ ଯେଉଁ ନାମରେ ଏହି ବ୍ୟବସାୟ ପରିଚାଳିତ ହୁଏ ତାହାକୁ 'ଅଂଶୀଦାରୀ ପ୍ରତିଷ୍ଠାନର ନାମ' (Firm name) କୁହାଯାଏ ।

## ଅଂଶୀଦାରୀର ଅପରିହାର୍ଯ୍ୟ ଉପାଦାନ

ଉପରୋକ୍ତ ସଂଜ୍ଞା ବିଶ୍ଳେଷଣ କଲେ ନିମ୍ନଲିଖିତ ମୌଳିକ ଉପାଦାନଗୁଡ଼ିକ ସ୍ପଷ୍ଟ ହୁଏ : (କ) କୌଣସି ବ୍ୟବସାୟ ବା କାରବାର ସକାଶେ ଦୁଇ ବା ତତୋଧିକ ବ୍ୟକ୍ତିଙ୍କ ମଧ୍ୟରେ ଏକ ଚୁକ୍ତିର ଅସ୍ତିତ୍ୱ ; (ଖ) ବ୍ୟବସାୟର ଲାଭ ଅର୍ଜନ ଓ ବଣ୍ଟନ ଓ (ଗ) ସମସ୍ତଙ୍କ ଦ୍ୱାରା ଅଥବା ସମସ୍ତଙ୍କ ପ୍ରତିନିଧିରୂପେ ଜଣଙ୍କଦ୍ୱାରା ବ୍ୟବସାୟର ପରିଚାଳନା । ଏହି ଉପାଦାନଗୁଡ଼ିକ ମଧ୍ୟରୁ କୌଣସି ଗୋଟିକୁ ବାଦଦେଲେ ତାହା ଅଂଶୀଦାରୀ କାରବାର ନାମରେ ଅଭିହିତ ହୋଇପାରିବ ନାହିଁ । ଏହି ଉପାଦାନଗୁଡ଼ିକୁ ନିମ୍ନରେ ବିଶଦଭାବରେ ଆଲୋଚନା କରାଗଲା ।

(କ) ଏହାର ସର୍ବପ୍ରଧାନ ଉପାଦାନ ହେଲା 'ଦୁଇ ଅଥବା ତତୋଧିକ ବ୍ୟକ୍ତିଙ୍କ-ଦ୍ୱାରା ପରିଚାଳିତ ବ୍ୟବସାୟ' । ଅନ୍ତତଃପକ୍ଷେ ଦୁଇଜଣ ବ୍ୟକ୍ତି ନ ହେଲେ ସେହି ବ୍ୟବସାୟକୁ ଅଂଶୀଦାରୀ ବ୍ୟବସାୟ କୁହାଯାଇ ପାରିବନାହିଁ । ଭାରତୀୟ ଅଂଶୀଦାରୀ (୧୯୩୨) ଅନୁଯାୟୀ ଅଂଶୀଦାରଙ୍କର ମୋଟ ସଂଖ୍ୟା ୨୦ଜଣ ପର୍ଯ୍ୟନ୍ତ ବୃଦ୍ଧି ପାଇପାରେ, ମାତ୍ର ବ୍ୟାଙ୍କିଙ୍ଗ୍ ବ୍ୟବସାୟ କ୍ଷେତ୍ରରେ ଏହି ସଂଖ୍ୟା ୧୦ରେ ସୀମିତ । ପୁନଶ୍ଚ ଏହି ଅଂଶୀଦାରମାନେ ସମ୍ମିଳିତହୋଇ ଗୋଟିଏ ଚୁକ୍ତିରେ ଅବଶ୍ୟ ଆବଦ୍ଧ ହେବେ, କାରଣ ଚୁକ୍ତିର ଅସ୍ତିତ୍ୱ ଏକାନ୍ତ ଆବଶ୍ୟକ । ଏହି ଚୁକ୍ତି ମୌଖିକ ହୋଇପାରେ ଅଥବା ଲିଖିତ ହୋଇପାରେ । ଅବଶ୍ୟ ଅଂଶୀଦାରମାନଙ୍କର ନିଜନିଜର ଭବିଷ୍ୟତ ସ୍ୱାର୍ଥ ଦୃଷ୍ଟିରୁ ଏହି ଚୁକ୍ତି ଲିଖିତ ହେବା ଅଧିକ ବାଞ୍ଛନୀୟ । ଯେ ଯାହା-ହେଉ ଏ କ୍ଷେତ୍ରରେ ଚୁକ୍ତି ହେବା ଅତ୍ୟାବଶ୍ୟକ, କାରଣ କେବଳ ଚୁକ୍ତିରୁହିଁ ଅଂଶୀଦାରୀ ସମ୍ପର୍କର ଉଦ୍‌ଭବ ହୋଇଥାଏ, ଜନ୍ମଗତ ଅଥବା ସାମାଜିକ ଅଧିକାରରୁ ନୁହେଁ ।

(ଖ) ଅଂଶୀଦାରୀ କାରବାରର ଅନ୍ୟ ଏକ ମୌଳିକ ଉପାଦାନ ହେଉଛି ଲାଭ-ର୍ଜନ ଉଦ୍ଦେଶ୍ୟରେ ବ୍ୟବସାୟର ପରିଚାଳନ ଏବଂ ଏହି ଅର୍ଜିତ ଲାଭକୁ ଅଂଶୀଦାରମାନଙ୍କ ମଧ୍ୟରେ ବଣ୍ଟନ କରିବାର ସମ୍ମତି । ଅଂଶୀଦାରମାନେ ଯେ ସର୍ବଦା ଏହି ଲାଭକୁ ସମାନ ଅଂଶରେ ବାଣ୍ଟିନେବେ ଏପରି କୌଣସି ବାଧ୍ୟବାଧକତା ନାହିଁ । ଏହି ଅଂଶ ଅସମାନ ମଧ୍ୟ ହୋଇପାରେ ଏବଂ ଏହା ଲାଭ ନ ହୋଇ କ୍ଷତି ମଧ୍ୟ ହୋଇପାରେ । ଯାହା ଅନୁଚ୍ଛେଦ-ପୂର୍ବ ତାହା ହେଲା ଲାଭ ବଣ୍ଟନକରି ଭୋଗ କରିବାର ସମ୍ମତି । କେଉଁ ଅଂଶୀଦାର ଲାଭ ବା କ୍ଷତିର କେତେ ଅଂଶ ଭୋଗ କରିବେ ତାହା ଚୁକ୍ତିରେ ବର୍ଣ୍ଣିତ ହୋଇଥାଏ ।

(ଗ) ଯଦିଓ ଅଂଶୀଦାରୀ କାରବାର ଦୁଇ ବା ତତୋଧିକ ବ୍ୟକ୍ତିଙ୍କଦ୍ୱାରା ଗଠିତ ହୁଏ, ତଥାପି ସମସ୍ତେ ଯେ ବ୍ୟବସାୟ ପରିଚାଳନାରେ ଅଂଶ ଗ୍ରହଣ କରିବାକୁ ବାଧ୍ୟ ତାହା ନୁହେଁ । ଇଚ୍ଛାକଲେ ପରିଚାଳନାରେ ସମସ୍ତେ ଭାଗ ନେଇପାରନ୍ତି ପୁଣି ଇଚ୍ଛାକଲେ ସମସ୍ତଙ୍କ ପକ୍ଷରୁ ଜଣେ ତାଙ୍କର ପ୍ରତିନିଧିରୂପେ ମଧ୍ୟ ଏହି ବ୍ୟବସାୟ ପରିଚାଳନା କରିପାରିବେ । ସଂପୃକ୍ତ ଆଇନରେ ଏପରି ବ୍ୟବସ୍ଥା ଥିବା ହେତୁ ତାହା କେତେକ ଅଂଶୀ-ଦାରଙ୍କ ପକ୍ଷରେ ଅତ୍ୟନ୍ତ ସୁବିଧାଜନକ ହୁଏ । ଉଦାହରଣ ସ୍ୱରୂପ, ଜଣେ ବ୍ୟକ୍ତିଙ୍କର କେବଳ ମୂଳଧନ ଅଛି ଅଥଚ ବ୍ୟବସାୟ ପରିଚାଳନା ବ୍ୟାପାରରେ ସେ ଅଜ୍ଞ ବା ଅନଭିଜ୍ଞ ହୋଇପାରନ୍ତି ଅଥବା ଅଭିଜ୍ଞତା ଥିବା ସତ୍ତ୍ୱେ ବ୍ୟବସାୟ ପରିଚାଳନା କରିବା ସକାଶେ ତାଙ୍କର ଅବସର ନ ଥାଇପାରେ, କିନ୍ତୁ ତଥାପି ସେ ଜଣେ ଅଂଶୀଦାର ହେବାର କୌଣସି ଆଇନଗତ ବାଧା ନାହିଁ । ପୁନଶ୍ଚ ପ୍ରତିନିଧିଙ୍କ ଦ୍ୱାରା ବ୍ୟବସାୟ ପରିଚାଳନା ମୂଳରେ ବିଶ୍ୱସ୍ତତା (Fidelity)ର ବାତାବରଣ ସୃଷ୍ଟି ହୁଏ, ଯାହା ଅଂଶୀଦାରୀ କାରବାରର ସଫଳତା ସକାଶେ ଅଂଶୀଦାରମାନଙ୍କ ମଧ୍ୟରେ ରହିବା ଏକାନ୍ତ ପ୍ରୟୋଜନୀୟ ।

## ଅଂଶୀଦାରୀ ଓ ଅନୁରୂପ ଅନ୍ୟାନ୍ୟ ପ୍ରତିଷ୍ଠାନର ପାର୍ଥକ୍ୟ

ଯଦିଓ ଅନୁରୂପ କେତେକ ବ୍ୟବସାୟ ପ୍ରତିଷ୍ଠାନ ଅଂଶୀଦାରୀ କାରବାର ସ୍ୱରୂପ ମନେହୁଏ ତଥାପି ସେଗୁଡିକ ମଧ୍ୟରେ ବହୁ ପାର୍ଥକ୍ୟ ଅଛି । ସେହି ପାର୍ଥକ୍ୟଗୁଡିକ ନିମ୍ନରେ **ଆଲୋଚିତ ହେଲା :**

### (କ) ଅଂଶୀଦାରୀ ଓ ସହ-ମାଲିକାନା
### (Partnership and co ownership)

ଏକାଧିକ ବ୍ୟକ୍ତି ମିଳିତ ହୋଇ ଯଦି କୌଣସି ସମ୍ପତ୍ତିରୁ ଲାଭ ବା ମୁନାଫା ଭୋଗ କରନ୍ତି ତାହା ହେଲେ ଯେଉଁ ସମ୍ପର୍କର ସୃଷ୍ଟି ହୁଏ ତାହାକୁ ସହ-ମାଲିକାନା କୁହାଯାଏ । ଏ ପ୍ରକାର ସମ୍ପର୍କ କିନ୍ତୁ ଅଂଶୀଦାରୀ ସଂପର୍କ ନ ହୋଇପାରେ । ଏହି ଦୁଇଟି ମଧ୍ୟସ୍ଥିତ ସମ୍ପର୍କରେ ଥିବା ପାର୍ଥକ୍ୟଗୁଡିକ ନିମ୍ନରେ ବର୍ଣ୍ଣିତ ହେଲା ।

୧। ଅଂଶୀଦାରୀ ସମ୍ପର୍କର ପ୍ରଧାନ ଲକ୍ଷଣ ହେଉଛି ଅଂଶୀଦାରମାନଙ୍କ ମଧ୍ୟରେ ସଂଗଠିତ ଚୁକ୍ତି । ଯାହାର ଅବସ୍ଥିତି ସହମାଲିକମାନଙ୍କ ମଧ୍ୟରେ ପରିଲକ୍ଷିତ ହୁଏନାହିଁ ।

୨। ଅଂଶୀଦାରୀ କାରବାରରେ ଜଣେ ଅଂଶୀଦାର ଅପର ଅଂଶୀଦାରଙ୍କ ପ୍ରତିନିଧି ରୂପେ କାରବାର ପରିଚାଳନା କରିପାରନ୍ତି, ମାତ୍ର ସହ-ମାଲିକାନା କାରବାରରେ ତାହା ସମ୍ଭବ ହୁଏନାହିଁ ।

୩। ଅଂଶୀଦାରୀ କାରବାରରେ ଜଣେ ଅଂଶୀଦାର ଅଂଶୀଦାରୀ କାରବାରରେ ଥିବା ତାଙ୍କର ଅଂଶକୁ ଅନ୍ୟ ଅଂଶୀଦାରଙ୍କର ସମ୍ମତି ବିନା ଅନ୍ୟ କାହାରିକୁ ହସ୍ତାନ୍ତର କରିପାରନ୍ତିନାହିଁ । ସହ-ମାଲିକାନା କାରବାରରେ ଏପରି କୌଣସି କଟକଣା ନାହିଁ ।

୪। ବ୍ୟବସାୟ ପରିଚାଳନା କରି ତହିଁରୁ ଲାଭ ଅର୍ଜନ କରିବା ଅଂଶୀଦାରୀ କରବାରର ଏକ ମୌଳିକ ଉପାଦାନ । ସହ-ମାଲିକାନା ସମ୍ପର୍କ ମୁନାଫା ଭୋଗ କରିବା ବ୍ୟତୀତ ଅନ୍ୟ ଉଦ୍ଦେଶ୍ୟରେ ଗଢ଼ିଉଠିପାରେ । ଯଦି ଦୁଇଜଣ ବ୍ୟକ୍ତି ମିଳିତ ହୋଇ ଗୋଟିଏ ଜମି କ୍ରୟକରନ୍ତି ଅଥବା ବାସଗୃହ କ୍ରୟକରନ୍ତି, ତାହା ହେଲେ ତାହା ସହ-ମାଲିକାନା ନାମରେ ଅଭିହିତ ହୋଇପାରିବ ।

୫। ଯଦି ଜଣେ ଅଂଶୀଦାରଙ୍କର ମୃତ୍ୟୁ ହୁଏ ଅଥବା ସେ ଦେବାଳିଆ ସାବ୍ୟସ୍ତ ହୁଅନ୍ତି ତାହାହେଲେ ଅଂଶୀଦାରୀ କାରବାରର ଅବସାନ ଘଟେ ; କିନ୍ତୁ ସହ-ମାଲିକାନା କାରବାରରେ ସେପରି ଘଟେନାହିଁ ।

୬। ଅଂଶୀଦାରୀ କାରବାରର ଜଣେ ଅଂଶୀଦାରଙ୍କର ମୃତ୍ୟୁ ହେଲେ ତାଙ୍କର ଉତ୍ତରାଧି-କାରୀ ଉତ୍ତରାଧିକାର ସୂତ୍ରରେ ତାଙ୍କର ସ୍ଥଳାଭିଷିକ୍ତ ହୁଅନ୍ତିନାହିଁ । କାରବାରର ସୁବିଧାଗୁଡ଼ିକ ହୁଏତ ତାଙ୍କୁ ଭୋଗ କରିବାକୁ ଦିଆଯାଇପାରେ କିନ୍ତୁ ସେ ଅଂଶୀଦାର ରୂପେ ପରିଗଣିତ ହୋଇପାରିବେ ନାହିଁ । ଏଥିନିମନ୍ତେ ଅନ୍ୟ ଅଂଶୀଦାରମାନଙ୍କର ସମ୍ମତି ଆବଶ୍ୟକ ହୁଏ ଏବଂ ଉତ୍ତରାଧିକାରୀଙ୍କୁ ଚୁକ୍ତିବଦ୍ଧ ହେବାକୁ ପଡ଼େ । ସହ ମାଲିକାନା କାରବାରରେ କିନ୍ତୁ ଏପରି ବାଧି ନିଷେଧ ନାହିଁ । ଜଣେ ସହ-ମାଲିକ-ଙ୍କର ମୃତ୍ୟୁହେଲେ ତାଙ୍କର ଉତ୍ତରାଧିକାରୀ ସେହି ସୂତ୍ର ବା ଅଧିକାରରେ ଆପେ ଆପେ ଜଣେ ସହ-ମାଲିକ ହୁଅନ୍ତି ।

**(ଖ) ଅଂଶୀଦାରୀ ଓ ଏକାନ୍ନବର୍ତ୍ତୀ ହିନ୍ଦୁ ପାରିବାରିକ ବ୍ୟବସାୟ ପ୍ରତିଷ୍ଠାନ (partnership and joint Hindu Family Business)**

ଏକାନ୍ନବର୍ତ୍ତୀ ହିନ୍ଦୁ ପାରିବାରିକ ବ୍ୟବସାୟ ପ୍ରତିଷ୍ଠାନ ଅଧାତ ଦୃଷ୍ଟିରୁ ଅଂଶୀଦାରୀ କାରବାରଠାରୁ ଅଭିନ୍ନ ମନେହୁଏ ; କିନ୍ତୁ ଉତ୍ତମରୂପେ ବିଶ୍ଳେଷଣକଲେ ନିମ୍ନଲିଖିତ ପ୍ରଭେଦ-ଗୁଡ଼ିକ ଦୃଷ୍ଟିଗୋଚର ହୁଏ :

୧। ଅଂଶୀଦାରି କାରବାର ଚୁକ୍ତି ଦ୍ୱାରା ସୃଷ୍ଟିହୁଏ କିନ୍ତୁ ଅପରପକ୍ଷରେ ଏକାନ୍ନବର୍ତ୍ତୀ ହିନ୍ଦୁ ପରିବାରର ବ୍ୟବସାୟ ପ୍ରତିଷ୍ଠାନ ସକାଶେ ସେପରି କୌଣସି ଚୁକ୍ତିର ଆବଶ୍ୟକତା ନ ଥାଏ । ଏହା ଏକ ପାରିବାରିକ ବ୍ୟାପାର ରୂପେ ପରିଗଣିତ ହୁଏ ।

୨। ଅଂଶୀଦାରି କାରବାର ଭାରତୀୟ ଅଂଶୀଦାରି ଆଇନଦ୍ୱାରା ନିୟନ୍ତ୍ରିତ ହୁଏ କିନ୍ତୁ ଅନ୍ୟଟି ହିନ୍ଦୁ ଆଇନଦ୍ୱାରା ନିୟନ୍ତ୍ରିତ ହୁଏ ।

୩। ଅଂଶୀଦାରି କାରବାରରେ ଜଣେ ଅଂଶୀଦାର ଅନ୍ୟ ଅଂଶୀଦାରମାନଙ୍କ ପ୍ରତିନିଧି ରୂପେ କାର୍ଯ୍ୟ କରିପାରନ୍ତି ଏବଂ ତାଙ୍କ କାର୍ଯ୍ୟଦ୍ୱାରା ସେ ଅପର ଅଂଶୀଦାରମାନଙ୍କୁ ଦାୟବଦ୍ଧ କରିପାରନ୍ତି, ଅର୍ଥାତ୍ ତାଙ୍କ କାର୍ଯ୍ୟ ସକାଶେ (ଯେତେବେଳେ ସେପରି କାର୍ଯ୍ୟ ସତ୍ ଉଦ୍ଦେଶ୍ୟରେ ଏବଂ ସରଳ ବିଶ୍ୱାସରେ ସମ୍ପାଦିତ ହୋଇଥାଏ) ଅନ୍ୟ ଅଂଶୀଦାରମାନେ ଦାୟୀ ହୁଅନ୍ତି । କିନ୍ତୁ ଅପର ପ୍ରତିଷ୍ଠାନଟି ହିନ୍ଦୁ ପରିବାରର କର୍ତ୍ତାଙ୍କଦ୍ୱାରା ପରିଚାଳିତ ହୁଏ ଏବଂ ତାଙ୍କ କାର୍ଯ୍ୟ ସକାଶେ ପରିବାରର ଅନ୍ୟ ସଭ୍ୟମାନେ ଦାୟୀ ହୁଅନ୍ତି । ଅନ୍ୟ ସଭ୍ୟମାନେ ପରିଚାଳନାରେ ସାହାଯ୍ୟ କରିପାରନ୍ତି କିନ୍ତୁ ତାଙ୍କ କାର୍ଯ୍ୟଦ୍ୱାରା ସେ ଅନ୍ୟମାନଙ୍କୁ ଦାୟୀ କରିପାରନ୍ତିନାହିଁ । ପ୍ରକୃତପକ୍ଷେ ସେପରି କୌଣସି କାର୍ଯ୍ୟ କରିବା ସକାଶେ ତାଙ୍କର କୌଣସି ଅଧିକାର ନ ଥାଏ ।

୪। ନାବାଳକମାନେ ଆଇନତଃ ଚୁକ୍ତି କରିବାକୁ ଅକ୍ଷମ ହୋଇଥିବାରୁ ସେମାନେ ଅଂଶୀଦାରି କାରବାରର ସଭ୍ୟ ବା ଅଂଶୀଦାର ହୋଇପାରନ୍ତିନାହିଁ । କିନ୍ତୁ ଏକାନ୍ନବର୍ତ୍ତୀ ପରିବାରର ସମସ୍ତ ସଭ୍ୟ, ନାବାଳକ ସାବାଳକ ଯାହା ହୋଇଥାଆନ୍ତୁ, ସେମାନେ ଜନ୍ମଗତ ଅଧିକାର ହେତୁ ବ୍ୟବସାୟ ପ୍ରତିଷ୍ଠାନର ମୁନାଫା ଭୋଗ କରନ୍ତି ।

୫। ନାରୀ ଓ ପୁରୁଷ ଉଭୟ ଅଂଶୀଦାରି କାରବାରର ଅଂଶୀଦାର ହୋଇପାରନ୍ତି । ଦାୟଭାଗ ହିନ୍ଦୁ ଏକାନ୍ନବର୍ତ୍ତୀ ବ୍ୟବସାୟ ପ୍ରତିଷ୍ଠାନରେ ନାରୀ ଶରିକ ହୋଇପାରନ୍ତି, କିନ୍ତୁ ମିତାକ୍ଷରା ହିନ୍ଦୁ ଏକାନ୍ନବର୍ତ୍ତୀ ବ୍ୟବସାୟ ପ୍ରତିଷ୍ଠାନରେ କୌଣସି ନାରୀ ଶରିକ ହୋଇପାରନ୍ତିନାହିଁ ।

୬। ଅଂଶୀଦାରି କାରବାରର ଅଂଶୀଦାରମାନଙ୍କର ଦାୟ ଦାୟିତ୍ୱ ଅସୀମ (Unlimited liability); କିନ୍ତୁ ଏକାନ୍ନବର୍ତ୍ତୀ ହିନ୍ଦୁ ବ୍ୟବସାୟ ପ୍ରତିଷ୍ଠାନରେ କେବଳ କର୍ତ୍ତାଙ୍କର ଦାୟ ଦାୟିତ୍ୱ ଅସୀମ ହେଲେ ମଧ୍ୟ ପରିବାରର ଅନ୍ୟ ସଦସ୍ୟମାନଙ୍କର ଦାୟ-ଦାୟିତ୍ୱ ସୀମିତ ଥାଏ ।

୭। ଅଂଶୀଦାରମାନେ କେଉଁ ଅନୁପାତରେ ଅଂଶୀଦାରି କାରବାରର ଲାଭ ଭୋଗ କରିବେ ତାହା ତାଙ୍କଦ୍ୱାରା ସମ୍ପାଦିତ ଚୁକ୍ତିଦ୍ୱାରା ନିୟନ୍ତ୍ରିତ ହୁଏ । ତାଙ୍କର ଅଂଶ

ଯେ ସବୁଦା ସମାନ ହେବ ତାହା ବାଧ୍ୟତାମୂଳକ ନୁହେଁ । ଏହି ଅଂଶ ଅସମାନ ମଧ୍ୟ ହୋଇପାରେ । ମାତ୍ର ଏକାନ୍ନବର୍ତ୍ତୀ ହିନ୍ଦୁ ବ୍ୟବସାୟ ପ୍ରତିଷ୍ଠାନର ଶରିକମାନଙ୍କର ଲାଭ ଭୋଗକରିବାର ଅନୁପାତ ସାଧାରଣତଃ ସମାନ ହୋଇଥାଏ ।

୮ । କୌଣସି ଅଂଶୀଦାରଙ୍କର ମୃତ୍ୟୁ ହେଲେ ଅଥବା କୌଣସି ଅଂଶୀଦାର ଦେବାଳିଆ ସାବ୍ୟସ୍ତହେଲେ ଅଂଶୀଦାରୀ କାରବାରର ଅବସାନ ଘଟେ । ଅଂଶୀଦାରମାନେ ସମ୍ମତ ହେଲେ ଏକ ବିଜ୍ଞପ୍ତି ପ୍ରକାଶକରି ମଧ୍ୟ ସେମାନେ କାରବାରର ଅବସାନ ଘଟାଇପାରନ୍ତି । ମାତ୍ର ଏକାନ୍ନବର୍ତ୍ତୀ ହିନ୍ଦୁ ବ୍ୟବସାୟ ପ୍ରତିଷ୍ଠାନରେ କର୍ତ୍ତାଙ୍କର ମୃତ୍ୟୁ ହେଲେ ମଧ୍ୟ ବ୍ୟବସାୟର ଅବସାନ ଘଟେ ନାହିଁ । ଏହା ଧାରାବାହିକ ଭାବରେ ବିଦ୍ୟମାନ ରହେ ।

ଯୌଥ ଉଦ୍ୟୋଗ ସହିତ ଏହାର ପାର୍ଥକ୍ୟ ପୂର୍ବରୁ ବର୍ଣ୍ଣିତ ହୋଇଛି । ଅଂଶୀଦାରୀର ମୌଳିକ ଉପାଦାନଗୁଡ଼ିକ ମନେରଖିଲେ ଏହି ପାର୍ଥକ୍ୟ ନିର୍ଣ୍ଣୟକରିବା ଆଦୌ କଷ୍ଟକର ହେବନାହିଁ ।

## ଅଂଶୀଦାରୀ ପ୍ରତିଷ୍ଠାନର ନାମ (Firm name)

ପୂର୍ବରୁ କୁହାଯାଇଛି ଯେ ଅଂଶୀଦାରୀ କାରବାର ବା ପ୍ରତିଷ୍ଠାନ ଯେଉଁ ନାମରେ ବ୍ୟବସାୟ ପରିଚାଳନ କରେ ତାହାକୁ ଅଂଶୀଦାରୀ ପ୍ରତିଷ୍ଠାନର ନାମ କୁହାଯାଏ । ଯୌଥ କମ୍ପାନୀ ସ୍ୱରୂପ ଅଂଶୀଦାରୀ ପ୍ରତିଷ୍ଠାନର କୌଣସି ସ୍ୱତନ୍ତ୍ର ବା କୃତ୍ରିମ ସତ୍ତା (entity) ନାହିଁ । ସେହି ଦୃଷ୍ଟିରୁ ଅଂଶୀଦାରୀ ପ୍ରତିଷ୍ଠାନ ଓ ଅଂଶୀଦାରଙ୍କର ମିଳିତ ସତ୍ତା ଅଭିନ୍ନ । ଯେତେବେଳେ ଅଂଶୀଦାରୀ ପ୍ରତିଷ୍ଠାନର ନାମକରଣ କରାଯାଏ ସେତେବେଳେ ଦୁଇଟି ବିଷୟପ୍ରତି ଧ୍ୟାନଦେବା ପ୍ରୟୋଜନ । ବିଷୟ ଦୁଇଟି ନିମ୍ନରେ ବର୍ଣ୍ଣିତ ହେଲା :

୧ । ପୂର୍ବରୁ ପ୍ରତିଷ୍ଠିତ କୌଣସି ଅଂଶୀଦାରୀ ପ୍ରତିଷ୍ଠାନର ନାମର ଅନୁରୂପ ନାମ ଦିଆଯାଇ ପାରିବ ନାହିଁ ; ଯଦ୍ଦ୍ୱାରା ଜନସାଧାରଣ ଏହି ନବ ପ୍ରତିଷ୍ଠିତ କାରବାରକୁ ପୂର୍ବ ପ୍ରତିଷ୍ଠିତ ପ୍ରତିଷ୍ଠାନ ବୋଲି ମନେକରିପାରନ୍ତି । ପ୍ରତାରଣା ଉଦ୍ଦେଶ୍ୟରେ ଯଦି ଅନୁରୂପ ନାମକରଣ କରାଯାଏ ତାହାହେଲେ ବିଚାରାଳୟ ତାହା ନିଷିଦ୍ଧ କରିପାରନ୍ତି ।

୨ । ଅଂଶୀଦାରୀ ପ୍ରତିଷ୍ଠାନର ନାମ ଏପରି ହୋଇପାରିବ ନାହିଁ ଯଦ୍ଦ୍ୱାରା ମନେହୋଇ-ପାରେ ଯେ ଏହା ସରକାରୀ ପ୍ରତିଷ୍ଠାନ ଅଥବା ସରକାରୀ ପୃଷ୍ଠପୋଷକତା ଲାଭ କରୁଛି । ଅବଶ୍ୟ ସରକାରଙ୍କର ଅନୁମତିକ୍ରମେ ଏପରି ନାମ ଦିଆଯାଇପାରେ ।

ସାଧାରଣତଃ ଅଂଶୀଦାରମାନଙ୍କ ନାମାନୁଯାୟୀ ଅଥବା ଖ୍ୟାତନାମା ବୟୋଜ୍ୟେଷ୍ଠ ଅଂଶୀଦାରଙ୍କ ନାମାନୁଯାୟୀ ଅଂଶୀଦାର ପ୍ରତିଷ୍ଠାନର ନାମ ଦିଆଯାଇଥାଏ ।

## ଇଚ୍ଛାଧୀନ ଅଂଶୀଦାରୀ (Partnership at Will)

ଅଂଶୀଦାରମାନଙ୍କଦ୍ୱାରା ସମ୍ପାଦିତ ଚୁକ୍ତିରେ ଯଦି କୌଣସି ନିର୍ଦ୍ଦିଷ୍ଟ ସମୟ ପର୍ଯ୍ୟନ୍ତ ବ୍ୟବସାୟ ବର୍ତ୍ତମାନ ରହିବ ବୋଲି ଉଲ୍ଲେଖ ନ ଥାଏ, ତାହାହେଲେ ତାହାକୁ ଇଚ୍ଛାଧୀନ ଅଂଶୀଦାରୀ କୁହାଯାଏ । ଏପରି କ୍ଷେତ୍ରରେ ଯେକୌଣସି ଅଂଶୀଦାର ଯେକୌଣସି ସମୟରେ ବିଜ୍ଞପ୍ତି ଦେଇ ଅଂଶୀଦାରୀ ପ୍ରତିଷ୍ଠାନର ଅବସାନ ଘଟାଇପାରନ୍ତି ।

## ବିଶେଷ ଅଂଶୀଦାରୀ (Particular Partnership)

ଯଦି କୌଣସି ବିଶେଷ କାର୍ଯ୍ୟ ସମ୍ପାଦନ ଉଦ୍ଦେଶ୍ୟରେ ଗୋଟିଏ ଅଂଶୀଦାରୀ କାରବାର ପ୍ରତିଷ୍ଠିତ ହୋଇଥାଏ, ତାହାହେଲେ ସେହି କାର୍ଯ୍ୟ ସମ୍ପାଦିତ ନ ହେବା ପର୍ଯ୍ୟନ୍ତ ଏହି ପ୍ରତିଷ୍ଠାନ ବର୍ତ୍ତମାନ ଥାଏ ଏବଂ ତାହା ସମ୍ପାଦିତ ହେବା ପରେ ଏପରି ଅଂଶୀଦାରୀର ଅବସାନ ଘଟେ । ଅବଶ୍ୟ ଅଂଶୀଦାରମାନେ ଯଦି ଏହି ବ୍ୟବସାୟକୁ ପୂର୍ବପରି ଚାଲୁ ରଖିବାକୁ ସମ୍ମତ ହୁଅନ୍ତି, ତାହାହେଲେ ଏହାର ଅବସାନ ଘଟେ ନାହିଁ ଏବଂ ଅଂଶୀଦାରମାନଙ୍କର ପୂର୍ବ ସ୍ୱାର୍ଥ ଓ ଅଧିକାର ବଜାୟ ରହେ ।

## ଅଂଶୀଦାରୀ ଚୁକ୍ତିର ଦଲିଲ (Deed of Partnership)

ଯେହେତୁ ବିନା ଚୁକ୍ତିରେ ଅଂଶୀଦାରୀ ସମ୍ପର୍କର ସୃଷ୍ଟି ହୁଏ ନାହିଁ, ତେଣୁ ପ୍ରତ୍ୟେକ ଅଂଶୀଦାରୀ କାରବାରର ଗୋଟିଏ ଚୁକ୍ତି ବିଦ୍ୟମାନ ଥିବା ଅନୁମାନ କରାଯାଇପାରେ । ଏହି ଚୁକ୍ତି ଯେ ସର୍ବଦା ଲିଖିତ ଆକାରରେ ହେବା ଅପରିହାର୍ଯ୍ୟ ତାହା ନୁହେଁ । ଏହି ଚୁକ୍ତି ଅଲିଖିତ ମଧ୍ୟ ହୋଇପାରେ । ମାତ୍ର ଭବିଷ୍ୟତ ବିବାଦ, ବିରୋଧ ଓ ସଂଘର୍ଷର ସମ୍ଭାବନାକୁ ଦୂରୀଭୂତ କରିବା ସକାଶେ ଏହି ଚୁକ୍ତିକୁ ଲିଖିତ ଆକାରରେ ରଖିବା ଏକାନ୍ତ ବାଞ୍ଛନୀୟ । ଏଥିରେ କେଉଁ କେଉଁ ଧାରା ଅନ୍ତର୍ଭୁକ୍ତ କରାଯିବ ସେ ବିଷୟରେ କୌଣସି ନିର୍ଦ୍ଦିଷ୍ଟ ନିୟମ ନାହିଁ ; ମାତ୍ର ସାଧାରଣତଃ ନିମ୍ନଲିଖିତ ଧାରାଗୁଡ଼ିକ ଏହି ଚୁକ୍ତିରେ ଅନ୍ତର୍ଭୁକ୍ତ କରାଯାଏ;

(୧) ଅଂଶୀଦାରୀ ପ୍ରତିଷ୍ଠାନର ନାମ;

(୨) ଏହାର ଉଦ୍ଦେଶ୍ୟ : ଏହି ଧାରାରେ କି ପ୍ରକାର ବ୍ୟବସାୟ ପ୍ରଚଳିତ ହେବ ତାହାର ବିଶଦ ବିବରଣୀ ରହିବା ଆବଶ୍ୟକ;

(୩) ବ୍ୟବସାୟର ସ୍ଥାନ : ଏହାର ଅବସ୍ଥିତିର ଠିକଣା ଦିଆଯାଏ;

(୪) ଅଂଶୀଦାରମାନଙ୍କର ନାମ, ତାଙ୍କ ପିତା ଏବଂ ଅଂଶୀଦାର ସ୍ତ୍ରୀ ହୋଇଥିଲେ ତାଙ୍କ ସ୍ୱାମୀଙ୍କର ନାମ, ପେଶା ଓ ଠିକଣା ଦିଆଯାଏ;

(୫) ବ୍ୟବସାୟ ଆରମ୍ଭ ହେବାର ତାରିଖ ଓ ଏହାର କାର୍ଯ୍ୟକାଳ;

(୬) ବ୍ୟବସାୟର ପରିଚାଳନା ପ୍ରଣାଳୀ, ଅଂଶୀଦାରମାନଙ୍କର କ୍ଷମତା ଓ ଦାୟିତ୍ୱ;

(୭) ମୋଟ ମୂଳଧନ ଏବଂ ପ୍ରତ୍ୟେକ ଅଂଶୀଦାରଙ୍କର ମୂଳଧନର ପରିମାଣ ଓ ପ୍ରକୃତି, ଅର୍ଥାତ୍ ଏହି ସ୍ଥାୟୀ ବା ନିର୍ଦ୍ଦିଷ୍ଟ (Fixed) ଅଥବା ପରିବର୍ତ୍ତନଶୀଳ (Fluctuating),

(୮) ଅଂଶୀଦାରମାନଙ୍କ ମଧ୍ୟରେ ଲାଭ ଓ କ୍ଷତି ବଣ୍ଟନର ଅନୁପାତ (Profit and Loss—Sharnig ratio);

(୯) ମୂଳଧନ ଉପରେ ସୁଧ ଦିଆଯିବ କି ନାହିଁ ଓ ଯଦି ଦିଆଯାଏ, ତାହାହେଲେ ସୁଧର ହାର; ସେହିପରି ଉଠାଣ ଉପରେ ଯଦି ଆଦାୟ କରାଯିବ ତାହାହେଲେ ତାହାର ହାର ଓ ଅଂଶୀଦାରମାନଙ୍କଦ୍ୱାରା ପ୍ରଦତ୍ତ ଋଣ ଉପରେ ସୁଧ ଦିଆଗଲେ ତାହାର ହାର;

(୧୦) ଅଂଶୀଦାରମାନଙ୍କୁ ଯଦି ବେତନ, ଭତ୍ତା ବା କମିଶନ ଦିଆଯିବ ତାହାହେଲେ ତାହାର ପରିମାଣ;

(୧୧) ଜଣେ ଅଂଶୀଦାରଙ୍କର ମୃତ୍ୟୁ ହେଲେ ଅଥବା ସେ ଅବସର ଗ୍ରହଣ କଲେ ଅଥବା ତାଙ୍କର ମସ୍ତିଷ୍କ ବିକୃତ ହେଲେ ଅଥବା ସେ ଦେବାଳିଆ ସାବ୍ୟସ୍ତ ହେଲେ ବ୍ୟବସାୟ ପରିଚାଳନାର ନିୟମାବଳୀ;

(୧୨) ପ୍ରତିଷ୍ଠାନରେ ହିସାବ ରକ୍ଷଣ ପ୍ରଣାଳୀ, କାଳାନ୍ତିକ ବା ଚୂଡ଼ାନ୍ତ ହିସାବ ପ୍ରସ୍ତୁତର ତାରିଖ,

(୧୩) କୌଣସି ଅଂଶୀଦାରଙ୍କର ମୃତ୍ୟୁ ହେଲେ ଅଥବା ସେ ଅବସର ଗ୍ରହଣ କଲେ ବ୍ୟବସାୟର ସୁନାମ (Goodwill) କି ଭାବରେ ମୂଲ୍ୟାୟିତ ହେବ ଏବଂ ସେହି ଅଂଶୀଦାର ସେ ବାବଦ କେତେ ପରିମାଣର ଅର୍ଥ ପାଇବେ;

(୧୪) ଅଂଶୀଦାରମାନଙ୍କ କର୍ତ୍ତବ୍ୟ ଓ ଦାୟ (Liability) ଏବଂ ତୃତୀୟ ବ୍ୟକ୍ତିଙ୍କ ସହିତ ତାଙ୍କର ସମ୍ପର୍କ;

(୧୫) ଅଂଶୀଦାରମାନଙ୍କ ମଧ୍ୟରେ ମତଭେଦ ଘଟିଲେ ତାହା ନିଷ୍ପତ୍ତି କରିବା ସକାଶେ କାହାକୁ ମଧ୍ୟସ୍ଥ କରାଯିବ ତାଙ୍କର ନାମ, ଠିକଣା ଇତ୍ୟାଦି ।

## ବିଭିନ୍ନ ଶ୍ରେଣୀର ଅଂଶୀଦାର

ଗୋଟିଏ ଅଂଶୀଦାରୀ ବ୍ୟବସାୟରେ ବିଭିନ୍ନ ଶ୍ରେଣୀର ଅଂଶୀଦାର ଥାଇପାରନ୍ତି, ତାହା ନିମ୍ନରେ ଦିଆଗଲା :

(୧) ଯେଉଁ ଅଂଶୀଦାର ବ୍ୟବସାୟରେ ମୂଳଧନ ବିନିଯୋଗ କରନ୍ତି ଏବଂ ଏହାର ପରିଚାଳନାରେ ସକ୍ରିୟ ଅଂଶ ଗ୍ରହଣ କରନ୍ତି ତାଙ୍କୁ ସାଧାରଣ ଅଥବା ସକ୍ରିୟ ଅଂଶୀଦାର (Ordinary or Active Partner) କୁହାଯାଏ ।

(୨) ଯେଉଁ ଅଂଶୀଦାରମାନେ ଆଦୌ ମୂଳଧନ ବିନିଯୋଗ କରନ୍ତି ନାହିଁ କିମ୍ବା ନାମ ମାତ୍ର ମୂଳଧନ ବିନିଯୋଗ କରି ବ୍ୟବସାୟ ପରିଚାଳନାରେ ସକ୍ରିୟ ଅଂଶ ଗ୍ରହଣ କରନ୍ତି, ତାହାଙ୍କୁ କାର୍ଯ୍ୟକାରୀ ଅଂଶୀଦାର (Working Partner) କୁହାଯାଏ ।

(୩) ଯେଉଁ ଅଂଶୀଦାରମାନେ ବ୍ୟବସାୟରେ ମୂଳଧନ ବିନିଯୋଗ କରନ୍ତି, କିନ୍ତୁ ଏହାର ପରିଚାଳନାରେ ସକ୍ରିୟ ଅଂଶ ଗ୍ରହଣ କରନ୍ତିନାହିଁ ତାଙ୍କୁ ସୁପ୍ତ ଅଂଶୀଦାର (Sleeping Partner) କୁହାଯାଏ ।

(୪) ଯେଉଁ ଅଂଶୀଦାର ବ୍ୟବସାୟରେ ନାମ ମାତ୍ର ମୂଳଧନ ବିନିଯୋଗ କରନ୍ତି କିନ୍ତୁ ଏହାର ପରିଚାଳନାରେ କୌଣସି ଅଂଶ ଗ୍ରହଣ କରନ୍ତି ନାହିଁ ଓ ବ୍ୟବସାୟରେ ତାଙ୍କର ନାମ ବ୍ୟବହାର କରିବାକୁ ଅନୁମତି ଦିଅନ୍ତି ଓ ଦାୟ ବହନ କରିବାକୁ ସମ୍ମତ ହୁଅନ୍ତି, ତାଙ୍କୁ ନାମ ମାତ୍ର ଅଂଶୀଦାର (Nominal Partner) କୁହାଯାଏ ।

(୫) ଯେଉଁ ଅଂଶୀଦାର ବ୍ୟବସାୟରୁ ଅବସର ଗ୍ରହଣ କରିବା ପରେ ତାଙ୍କର ପ୍ରାପ୍ୟ ସମସ୍ତ ଅର୍ଥକୁ ଋଣ ଆକାରରେ ବ୍ୟବସାୟରେ ରଖିବାକୁ ସମ୍ମତ ହୁଅନ୍ତି ତାଙ୍କୁ ଆଭାସୀ ବା ଆପାତ ଅଂଶୀଦାର (Qussi Partner) କୁହାଯାଏ ।

(୬) କୌଣସି ନାବାଳକ ଚୁକ୍ତିବଦ୍ଧ ହେବାକୁ ଆଇନତଃ ଅସମର୍ଥ ହୋଇଥିବାରୁ ଗୋଟିଏ ଅଂଶୀଦାରୀ କାରବାରର ଅଂଶୀଦାର ହୋଇପାରିବନାହିଁ କିନ୍ତୁ ଯଦି ଏହି ପ୍ରତି-ଷ୍ଠାନର ଅନ୍ୟାନ୍ୟ ଅଂଶୀଦାରମାନେ ସମ୍ମତ ହୁଅନ୍ତି ତାହାହେଲେ ସେମାନେ ତାଙ୍କୁ ଅଂଶୀଦାରୀର ସମସ୍ତ ସୁବିଧା ଭୋଗ କରିବାକୁ ଦେଇପାରନ୍ତି । ଏଭଳି ଅଂଶୀଦାରଙ୍କୁ ନାବାଳକ ଅଂଶୀଦାର (Minor Partner) କୁହାଯାଏ ।

(୭) କୌଣସି ବ୍ୟକ୍ତି ଅଂଶୀଦାର ନ ହୋଇ ସୁଦ୍ଧା ଯଦି ନିଜ ନାମକୁ ଅଂଶୀଦାର ରୂପେ ପ୍ରଚାର କରିବାକୁ ଅନୁମତି ଦିଅନ୍ତି ଏବଂ ତାଙ୍କର ଆଚରଣରୁ ସେ ଅଂଶୀଦାର ବୋଲି ଅନୁମିତ ହୁଅନ୍ତି, ସେତେବେଳେ ତାଙ୍କୁ ଆଚରଣଜନିତ ଅଂଶୀଦାର (Partner by Holding Out) କୁହାଯାଏ । ଏପରି ଅଂଶୀଦାର ବ୍ୟବ-ସାୟର ଲଭ ଭୋଗ ନ କଲେ ମଧ୍ୟ ଏହାର ଦାୟ ବହନ କରିବାକୁ ବାଧ୍ୟ ହୁଅନ୍ତି ।

## ଅଂଶୀଦାରମାନଙ୍କ ମଧ୍ୟରେ ପାରସ୍ପରିକ ସମ୍ପର୍କ

ଭାରତୀୟ ଅଂଶୀଦାରୀ ଆଇନ ଏ ସମ୍ବନ୍ଧରେ ଦଶଗୋଟି ନୀତିର ଉଲ୍ଲେଖ କରିଛି । ସେଗୁଡ଼ିକ ନିମ୍ନରେ ବର୍ଣ୍ଣିତ ହେଲା :

(୧) ପ୍ରତ୍ୟେକ ଅଂଶୀଦାର ଅନ୍ୟ ଅଂଶୀଦାରମାନଙ୍କ ସହିତ ଏପରି ବ୍ୟବହାର କରିବେ ଯଦ୍ଦ୍ୱାରା ସେ ଅନ୍ୟମାନଙ୍କ ବିଶ୍ୱାସଭାଜନ ହେବେ । ପ୍ରତ୍ୟେକ ଅଂଶୀଦାର ଏପରି ଆଚରଣ କରିବା ଉଚିତ ଯଦ୍ଦ୍ୱାରା ସମସ୍ତେ ସର୍ବାଧିକ ସୁବିଧା ଭୋଗ କରିପାରିବେ । ପ୍ରତ୍ୟେକେ ବ୍ୟବସାୟ ସମ୍ପର୍କୀୟ ସମସ୍ତ କାରବାରକୁ ଯଥାଯଥ ଭାବରେ ହିସାବ-ଭୁକ୍ତ କରିବେ, କୌଣସି ସମ୍ବାଦ ଅନ୍ୟ ଅଂଶୀଦାରମାନଙ୍କଠାରୁ ଗୋପନ ରଖିବେ ନାହିଁ । ବ୍ୟବସାୟର ସମ୍ପତ୍ତିକୁ ନିଜ ସ୍ୱାର୍ଥରେ ବ୍ୟବହାର କରିବେ ନାହିଁ ।

(୨) ଯଦି କୌଣସି ଅଂଶୀଦାରଙ୍କର ପ୍ରତାରଣାମୂଳକ ବ୍ୟବହାର ଯୋଗୁଁ ବ୍ୟବସାୟର କୌଣସି କ୍ଷତି ଘଟେ, ତାହାହେଲେ ସେ ତାହା ପୂରଣ କରିବାକୁ ବାଧ୍ୟ ହେବେ ।

(୩) ଅଂଶୀଦାରୀ ବ୍ୟବସାୟର ସମ୍ପତ୍ତି ଅଂଶୀଦାରମାନେ କେବଳ ଅଂଶୀଦାରୀ ବ୍ୟବସାୟ ସକାଶେ ରଖିବେ ଓ ସେହି ଉଦ୍ଦେଶ୍ୟରେ ବ୍ୟବହାର କରିପାରିବେ ।

## ଅଂଶୀଦାରମାନଙ୍କର ଅଧିକାର (Partners' Rights)

ଅଂଶୀଦାରମାନଙ୍କର ଅଧିକାର ବହୁ ପରିମାଣରେ ସେମାନଙ୍କଦ୍ୱାରା ସଂପାଦିତ ଚୁକ୍ତିଦ୍ୱାରା ନିୟନ୍ତ୍ରିତ ହୁଏ, କିନ୍ତୁ ଚୁକ୍ତିରେ ନିର୍ଦ୍ଦିଷ୍ଟ ବିଷୟରେ କିଛି ଉଲ୍ଲେଖ ନ ଥିଲେ ସେମାନଙ୍କର ସାଧାରଣତଃ ଯେଉଁ ଅଧିକାର ଥାଏ ତାହା ନିମ୍ନରେ ବର୍ଣ୍ଣିତ ହେଲା :

୧ । ପ୍ରତ୍ୟେକ ଅଂଶୀଦାର ବ୍ୟବସାୟ ପରିଚାଳନାରେ ଅଂଶ ଗ୍ରହଣ କରିପାରିବେ ।

୨ । ଚୁକ୍ତିରେ ଅନ୍ୟଥା ଉକ୍ତ ନ ହୋଇଥିଲେ ସମସ୍ତ ଅଂଶୀଦାର ସମାନ ଅନୁପାତରେ ଲାଭ ବା କ୍ଷତି ଭାଗକରି ନେବେ ।

୩ । ଚୁକ୍ତିରେ ଅନ୍ୟଥା ଉକ୍ତ ନ ହୋଇଥିଲେ ଅଂଶୀଦାରମାନେ ତାଙ୍କଦ୍ୱାରା ବିନିଯୁକ୍ତ ମୂଳଧନ ବାବଦ କୌଣସି ସୁଧ ପାଇବେ ନାହିଁ ।

୪ । କୌଣସି ଅଂଶୀଦାର ଯଦି ଋଣ ସ୍ୱରୂପ କିଛି ଅର୍ଥ ବ୍ୟବସାୟକୁ ପ୍ରଦାନକରି ଥାଆନ୍ତି ତାହାହେଲେ ସେ ସେଥି ବାବଦ ଅନଧିକ ବାର୍ଷିକ ଶତକଡ଼ା ୬ ହାରରେ ସୁଧ ପାଇବେ ।

୫ । ପ୍ରତ୍ୟେକ ଅଂଶୀଦାରଙ୍କର ବ୍ୟବସାୟ ସଂକ୍ରାନ୍ତ ହିସାବ ଦେଖିବା ଓ ତାହାର ନକଲ ନେବାର ଅଧିକାର ରହିବ ।

୬ । ସାଧାରଣ ବ୍ୟବସାୟ ପରିଚାଳନା ସଂକ୍ରାନ୍ତ ବିଷୟରେ ଯଦି ମତବିରୋଧ ଘଟେ ତାହାହେଲେ ସଂଖ୍ୟାଗରିଷ୍ଠ ଅଂଶୀଦାରଙ୍କର ମତ କାୟେମ ରହିବ ।

୭ । ସମସ୍ତ ଅଂଶୀଦାର ସମ୍ମତ ନ ହେଲେ ଅଂଶୀଦାରୀ କାରବାରର ମୂଳ ପ୍ରକୃତି ପରିବର୍ତ୍ତିତ ହୋଇପାରିବ ନାହିଁ ।

୮ । ଚୁକ୍ତିପତ୍ରରେ ଅନ୍ୟଥା ଉକ୍ତ ନ ଥିଲେ କୌଣସି ଅଂଶୀଦାର ବ୍ୟବସାୟ ପରିଚାଳନା କରିବା ସକାଶେ କୌଣସି ପାରିଶ୍ରମିକ ପାଇପାରିବେ ନାହିଁ ।

୯ । କୌଣସି ଅଂଶୀଦାର ବ୍ୟବସାୟ ପରିଚାଳନା କାଳରେ ଯଦି ନିଜସ୍ୱ ଅର୍ଥ ବ୍ୟୟକରି-ଥାଆନ୍ତି ତାହାହେଲେ ବ୍ୟବସାୟରୁ ତାହାର କ୍ଷତିପୂରଣ ପାଇବା ସକାଶେ ଅଧିକାରୀ ହେବେ ।

୧୦ । କୌଣସି କରୁଣକାଳୀନ ଅବସ୍ଥାରେ କୌଣସି ଅଂଶୀଦାର ଯଦି ଏପରି କୌଣସି କାରଣ ଯୋଗୁଁ ଅର୍ଥବ୍ୟୟ କରିଥାଆନ୍ତି ଯାହା ଜଣେ ସାଧାରଣ ବୁଦ୍ଧି ସଂପନ୍ନ ବ୍ୟକ୍ତି ତାଙ୍କର ନିଜର ବ୍ୟକ୍ତିଗତ ସଂପତ୍ତି ରକ୍ଷାକରିବା ସକାଶେ ବ୍ୟୟକରିଥାଆନ୍ତେ";, ତାହାହେଲେ ସେ ସେପରି ଅର୍ଥ ବ୍ୟୟ ସକାଶେ କ୍ଷତିପୂରଣ ପାଇବାକୁ ଅଧିକାରୀ ହେବେ ।

## ଅଂଶୀଦାରମାନଙ୍କର କର୍ତ୍ତବ୍ୟ

୧ । ସମସ୍ତ ଅଂଶୀଦାର ଏପରି କାର୍ଯ୍ୟ କରିବେ ଯଦ୍ଦ୍ୱାରା ସର୍ବାଧିକ ସାଧାରଣ ସୁବିଧା ଓ ଲାଭ କରାଯାଇପାରିବ ଏବଂ ଯାହା ବିଶ୍ୱାସମୂଳକ ଓ ସତ୍ ହେବ ।

୨ । ବ୍ୟବସାୟର ସଂପତ୍ତି ବ୍ୟବସାୟ ସ୍ୱାର୍ଥରେ ସଂରକ୍ଷିତ ଓ ବ୍ୟବହୃତ ହେବ ।

୩ । ବ୍ୟବସାୟରେ କୌଣସି କ୍ଷତି ଘଟିଲେ ତାହାକୁ ପ୍ରତ୍ୟେକ ଅଂଶୀଦାର ଚୁକ୍ତିରେ ଅନ୍ୟପ୍ରକାର ବ୍ୟକ୍ତ ନ ହୋଇଥିଲେ ସମାନ ଅନୁପାତରେ ବହନ କରିବେ ।

୪ । ବ୍ୟବସାୟ ସଂକ୍ରାନ୍ତ ନେଣଦେଣରୁ କୌଣସି ଅଂଶୀଦାର ଯଦି କିଛି ଲାଭ ଅର୍ଜନ କରନ୍ତି, ତାହାହେଲେ ସେ ସେପରି ଲାଭ ବାବଦ ଅର୍ଥକୁ ବ୍ୟବସାୟରୁ ଅର୍ପଣ କରିବାକୁ ବାଧ୍ୟ ରହିବେ ।

୫ । କୌଣସି ଅଂଶୀଦାର ଯଦି ଅଂଶୀଦାରୀ ବ୍ୟବସାୟ ଅନୁରୂପ ଅଥବା ଏକ ପ୍ରତିଯୋଗୀ ବ୍ୟବସାୟ ପରିଚାଳନ କରନ୍ତି ତାହାହେଲେ ତହିଁରୁ ଅର୍ଜିତ ଲାଭକୁ ସେ ଅଂଶୀଦାରୀ ବ୍ୟବସାୟକୁ ଅର୍ପଣ କରିବାକୁ ବାଧ୍ୟ ରହିବେ ।

## ତୃତୀୟ ପକ୍ଷ ସହିତ ଅଂଶୀଦାରଙ୍କର ସମ୍ପର୍କ

ଅଂଶୀଦାରମାନେ ପ୍ରତ୍ୟେକେ ଅଂଶୀଦାରୀ କାରବାରର ପ୍ରତିନିଧି ଅଟନ୍ତି । ତାଙ୍କର ବ୍ୟବସାୟ ସମ୍ପର୍କୀୟ ସାଧାରଣ ଏବଂ ସ୍ୱାଭାବିକ କାର୍ଯ୍ୟଦ୍ୱାରା ସେ ଅଂଶୀଦାରୀ କାରବାରକୁ ଏବଂ ଅନ୍ୟ ଅଂଶୀଦାରମାନଙ୍କୁ ଦାୟବଦ୍ଧ କରିପାରନ୍ତି । ଅବଶ୍ୟ ଏହା ଅଂଶୀଦାରୀ ଆଇନର ବିଧାନସାପେକ୍ଷ । ମାତ୍ର ଏହିପରିଭାବରେ ଦାୟବଦ୍ଧ କରିବା ନିମନ୍ତେ ନିମ୍ନଲିଖିତ ସର୍ତ୍ତଗୁଡ଼ିକ ପାଳିତ ହେବା ଆବଶ୍ୟକ :

୧ । ଉକ୍ତ କାର୍ଯ୍ୟ ବ୍ୟବସାୟର ସ୍ୱାଭାବିକ କାର୍ଯ୍ୟ ହେବା ଆବଶ୍ୟକ ।

୨ । ସେହି ନେଣଦେଣଟି ବ୍ୟବସାୟ ପରିଚାଳନାର ସ୍ୱାଭାବିକ ରୀତି ନୀତି ଅନ୍ତର୍ଭୁକ୍ତ ହୋଇଥିବା ଆବଶ୍ୟକ ।

୩ । ନେଣଦେଣଟି ସର୍ବଦା ଅଂଶୀଦାରୀ ବ୍ୟବସାୟର ନାମରେ ଅବଶ୍ୟ ସମ୍ପାଦିତ ହୋଇଥିବା ଆବଶ୍ୟକ ।

୪ । ନେଣଦେଣଟି ସମ୍ପାଦନ କରିବା ସକାଶେ ଅଂଶୀଦାରଙ୍କର ବ୍ୟକ୍ତ ବା ଅନୁକ୍ତ କ୍ଷମତା ଥିବା ଆବଶ୍ୟକ ।

ନିମ୍ନଲିଖିତ କ୍ଷେତ୍ରମାନଙ୍କରେ ଅଂଶୀଦାରଙ୍କର କୌଣସି କ୍ଷମତା ନ ଥାଏ, ତେଣୁ ସେପରି କାର୍ଯ୍ୟ ସମ୍ପାଦନ କରିବାଦ୍ୱାରା ସେ ତୃତୀୟ ପକ୍ଷଙ୍କ ନିକଟରେ ଅଂଶୀଦାରୀ କାରବାରକୁ ଅଥବା ଅନ୍ୟ କୌଣସି ଅଂଶୀଦାରଙ୍କୁ ଦାୟବଦ୍ଧ କରିପାରିବେ ନାହିଁ । କିନ୍ତୁ ଯଦି ଅଂଶୀଦାରମାନେ ଏ ସମ୍ପର୍କରେ କୌଣସି ପ୍ରସ୍ତାବ ସର୍ବସମ୍ମତିକ୍ରମେ ଗ୍ରହଣ କରିଥାଆନ୍ତି ; ତାହାହେଲେ ସେମାନେ ଏହି କାର୍ଯ୍ୟ ସକାଶେ ତୃତୀୟପକ୍ଷଙ୍କ ନିକଟରେ ଦାୟବଦ୍ଧ ହେବେ ।

୧ । ବ୍ୟବସାୟ ସମ୍ବନ୍ଧୀୟ କୌଣସି ବିବାଦକୁ ମଧ୍ୟସ୍ଥଙ୍କ ନିକଟକୁ ପ୍ରେରଣ କରିପାରିବେ ନାହିଁ ।

୨ । ବ୍ୟବସାୟ ତରଫରୁ କୌଣସି ଅଂଶୀଦାର ନିଜ ନାମରେ ବ୍ୟାଙ୍କ୍‌ରେ ହିସାବ ଖୋଲି ପାରିବେ ନାହିଁ ।

୩ । ବ୍ୟବସାୟର କୌଣସି ଦାବୀକୁ ଆଂଶିକ ଅଥବା ପୂର୍ଣ୍ଣମାତ୍ରାରେ ବର୍ଜ୍ଜନ କରିପାରିବେ ନାହିଁ ଅଥବା ସେ ସମ୍ପର୍କରେ କୌଣସି ଆପୋଷ ମୀମାଂସା କରିପାରିବେ ନାହିଁ ।

୪ । ବ୍ୟବସାୟ ତରଫରୁ ଯଦି କୌଣସି ମକଦ୍ଦମା ବିଚାରାଳୟରେ ଦାଏର ହୋଇଥିବ ତାହାକୁ ଉଠାଇ ଆଣିପାରିବେ ନାହିଁ ।

୫ । ବ୍ୟବସାୟ ସମ୍ପର୍କୀୟ କୌଣସି ମାମଲା ବିଚାରାଧୀନ ଥିଲେ ମାମଲା ସଂପୃକ୍ତ ଦାୟକୁ ସ୍ୱୀକାର କରିପାରିବେ ନାହିଁ ।

୬ । ବ୍ୟବସାୟ ପକ୍ଷରୁ କୌଣସି ସ୍ଥାବର ସମ୍ପତ୍ତି ନିଜ ନାମରେ କ୍ରୟ କରିପାରିବେ ନାହିଁ ।

୭ । ବ୍ୟବସାୟ ଅଧିକୃତ କୌଣସି ସ୍ଥାବର ସମ୍ପତ୍ତି ବିକ୍ରି କରିପାରିବେ ନାହିଁ ।

ପାରସ୍ପରିକ ସମ୍ମତିଦ୍ୱାରା ଅଂଶୀଦାରମାନଙ୍କର କ୍ଷମତା, ଅଧିକାର ଓ କର୍ତ୍ତବ୍ୟ ପରିବର୍ତ୍ତିତ ହୋଇପାରେ ।

## ଅଂଶୀଦାରୀ କାରବାରର କାର୍ଯ୍ୟ ସକାଶେ ଅଂଶୀଦାରଙ୍କର ଦାୟିତ୍ୱ

ଅଂଶୀଦାରୀ କାରବାରର ସମସ୍ତ କାର୍ଯ୍ୟ ସକାଶେ ପ୍ରତ୍ୟେକ ଅଂଶୀଦାରଙ୍କର ଅସୀମ ଦାୟିତ୍ୱ ଥାଏ । ବ୍ୟବସାୟ ଯଦି ଋଣ ଆଣିଥାଏ ତାହାହେଲେ ଋଣଦାତା ଇଚ୍ଛାକଲେ ଋଣର

ସମସ୍ତ ପରିମାଣ କୌଣସି ଜଣେ ଅଂଶୀଦାରଙ୍କଠାରୁ ଆଦାୟ କରିପାରିବେ । ସୁପ୍ତ ଅଥବା କାର୍ଯ୍ୟକାରକ ଅଂଶୀଦାର ଉଭୟଙ୍କର ଅବସ୍ଥା ଏ ବ୍ୟାପାରରେ ସମାନ ।

## ଅଂଶୀଦାରୀ ପ୍ରତିଷ୍ଠାନର ନିବନ୍ଧନ (Registration of Firms)

ଅଂଶୀଦାରୀ ଆଇନ ଅନୁଯାୟୀ ଅଂଶୀଦାରୀ ପ୍ରତିଷ୍ଠାନର ନିବନ୍ଧନ ବାଧ୍ୟତାମୂଳକ ନୁହେଁ । କିନ୍ତୁ କେତେକ ସୁବିଧା ଲାଭକରିବା ସକାଶେ ଏହାକୁ ନିବନ୍ଧିତ କରାଯାଏ । ଏହି ସୁବିଧାଗୁଡ଼ିକ ନିମ୍ନରେ ପ୍ରଦତ୍ତ ହେଲା ।

୧ । ପ୍ରତିଷ୍ଠାନ ନିବନ୍ଧିତ ହୋଇଥିଲେ ପ୍ରତିଷ୍ଠାନ କୌଣସି ଅଂଶୀଦାରଙ୍କ ବିରୁଦ୍ଧରେ ଏବଂ ଆବଶ୍ୟକ କ୍ଷେତ୍ରରେ ତୃତୀୟ ପକ୍ଷଙ୍କ ବିରୁଦ୍ଧରେ ମକଦ୍ଦମା ଦାଏର କରି-ପାରିବ ।

୨ । ଏହା ନିବନ୍ଧିତ ହୋଇଥିଲେ ଏହା କୌଣସି ମକଦ୍ଦମାର ବାଦୀ ପକ୍ଷ ବିରୁଦ୍ଧରେ ନିଜର ପ୍ରାପ୍ୟସକାଶେ ପାଉଣା ଦାବୀ କରିପାରିବ ।

୩ । ଆୟକର ସକାଶେ ଏହା ଏକ ବ୍ୟକ୍ତିରୂପେ ଗଣ୍ୟ ହେବ ଏବଂ ଏହାର ଲାଭ ପରିମାଣ ବାବଦ ଏହା ଆୟକର ଦେଇପାରିବ । ଏପରି କ୍ଷେତ୍ରରେ ଏହାର ଲାଭ ଉପରେ ଅଂଶୀଦାରମାନଙ୍କୁ ଦୋହରି କର ଦେବାକୁ ପଡ଼ିନାହିଁ ।

## ଅଂଶୀଦାରୀ ବ୍ୟବସାୟର ହିସାବ ଓ ହିସାବର ଖାତାପତ୍ର

ଭାରତୀୟ ଅଂଶୀଦାରୀ ଆଇନ (୧୯୩୨)ରେ ଏପରି ବ୍ୟବସାୟର ହିସାବ କିପରି ରଖାଯିବ ସେ ସମ୍ବନ୍ଧରେ କୌଣସି ନିର୍ଦ୍ଦେଶ ନାହିଁ । କୌଣସି ସରକାରୀ ସଂସ୍ଥାକୁ କୌଣସି ଉତ୍ତର (Return) ପ୍ରେରଣ କରିବାର କୌଣସି ଆବଶ୍ୟକତା ନାହିଁ । କେଉଁ ହିସାବ ଖାତା କେଉଁ ନିର୍ଦ୍ଦିଷ୍ଟ ଫାରମ୍‌ରେ ରଖାଯିବ ସେ ସମ୍ବନ୍ଧରେ ମଧ୍ୟ ଆଇନଗତ କୌଣସି ବିଧି ନିୟମ ନାହିଁ । ତେଣୁ ଏପରି ବ୍ୟବସାୟର ହିସାବ ପତ୍ର ପୂର୍ବ ବର୍ଣ୍ଣିତ ହିସାବ ପତ୍ରର ଅନୁରୂପ ହେବ । କେବଳ ଆୟକର ବିଭାଗ ଓ ବିକ୍ରୟକର ବିଭାଗ ଯେଉଁ ନିୟମ ଅନ୍ୟାନ୍ୟ ବ୍ୟବ-ସାୟ ସକାଶେ ପ୍ରଣୟନ କରିଛନ୍ତି ସେଗୁଡ଼ିକ ଅଂଶୀଦାରୀ କାରବାର ସକାଶେ ମଧ୍ୟ ପ୍ରଯୁଜ୍ୟ ହେବ । ତେଣୁ ସେହି ନିୟମଗୁଡ଼ିକ ଅନୁଯାୟୀ ହିସାବ ରଖାଗଲେ ତାହା ଯଥେଷ୍ଟ ହେବ । ତେବେ ଅଂଶୀଦାରୀ କାରବାରର କେତେକ ବିଷୟରେ କିଛି ବୈଶିଷ୍ଟ୍ୟ ଅଛି, ଯେପରି ମୂଳଧନ, ମୂଳଧନର ସୁଧ, ଉଠାଣର ସୁଧ, ବ୍ୟବସାୟର ଲାଭାଂଶ ବଣ୍ଟନ, ନୂତନ ଅଂଶୀଦାର ଗ୍ରହଣ, କୌଣସି ଅଂଶୀଦାରଙ୍କର ମୃତ୍ୟୁ ଅଥବା ଅବସର ଗ୍ରହଣ ଓ ବ୍ୟବସାୟର ସମାପନ ପ୍ରଭୃତି । ବ୍ୟବସାୟର ସମାପନ ବ୍ୟତୀତ ଅନ୍ୟାନ୍ୟ ବିଷୟଗୁଡ଼ିକ ଏହି ପରିଚ୍ଛେଦରେ ବର୍ଣ୍ଣିତ ହେବ ।

## ଅଂଶୀଦାରମାନଙ୍କର ମୂଳଧନର ହିସାବ

ଏକ-ସ୍ୱତ୍ୱାଧିକାରୀ ବ୍ୟବସାୟରେ ସ୍ୱତ୍ୱାଧିକାରୀ ମୂଳଧନ ସ୍ୱରୂପ ବ୍ୟବସାୟରେ ଯେତେ ଅର୍ଥ ବିନିଯୋଗ କରନ୍ତି ସେତେବେଳେ ଯେପରି ନଗଦ ତହବିଲ / ବ୍ୟାଙ୍କ ହିସାବକୁ ଡାଏବୀ କରି ମୂଳଧନ ହିସାବକୁ ଦାତା କରାଯାଏ, ଏ କ୍ଷେତ୍ରରେ ମଧ୍ୟ ତାହାହିଁ କରାଯିବ । ପାର୍ଥକ୍ୟ ଏତିକି ଯେ ସେଠାରେ ଜଣେ ମାଲିକଙ୍କର ଗୋଟିଏ ମୂଳଧନ ହିସାବ ଖୋଲାଯାଉଥିଲା ମାତ୍ର ଏଠାରେ ଏକାଧିକ ମାଲିକ ଅଥବା ଅଂଶୀଦାର ଥିବା ହେତୁ ପ୍ରତ୍ୟେକ ଅଂଶୀଦାରଙ୍କ ସକାଶେ ଗୋଟିଏ ଲେଖା ସ୍ୱତନ୍ତ୍ର ମୂଳଧନ ହିସାବ ଖୋଲାଯିବ । ପ୍ରତ୍ୟେକ ଅଂଶୀଦାର ଯେ ବ୍ୟବସାୟରେ ସମ ପରିମାଣର ମୂଳଧନ କରିବେ ଏପରି କୌଣସି ନିୟମ ନାହିଁ, ସେମାନେ ଅଂଶୀଦାରୀ ଚୁକ୍ତି ଅନୁଯାୟୀ ଯେ କୌଣସି ଅନୁପାତରେ ମୂଳଧନ ବିନିଯୋଗ କରିପାରନ୍ତି । ଅନେକ ସମୟରେ କୌଣସି ଅଂଶୀଦାର ଅର୍ଥ ପରିବର୍ତ୍ତେ କିଛି ସମ୍ପତ୍ତି ମଧ୍ୟ ମୂଳଧନ ରୂପେ ବ୍ୟବସାୟକୁ ଆଣିଥାଆନ୍ତି । ସେ କ୍ଷେତ୍ରରେ ସର୍ବସମ୍ମତିକ୍ରମେ ସମ୍ପତ୍ତିର ମୂଲ୍ୟାୟନ କରାଯାଇ ଏହାର ସ୍ୱୀକୃତ ମୂଲ୍ୟ ସକାଶେ ସେହି ଅଂଶୀଦାରଙ୍କର ମୂଳଧନ ହିସାବକୁ ଦାତା (Cr) କରାଯିବ ଓ ସମ୍ପତ୍ତି ହିସାବକୁ ଡାଏବୀ (Dr) କରାଯିବ । ଏହି ମୂଳଧନ ହିସାବ ଦୁଇ ପ୍ରକାରରେ ରଖାଯାଇପାରେ, ଯଥା : (୧) ପରିବର୍ତ୍ତନଶୀଳ ମୂଳଧନ ପଦ୍ଧତି (Fluctuating capital A/c) ଓ (୨) ସ୍ଥିର ମୂଳଧନ ପଦ୍ଧତି (Fixed capital A/c) ।

### (୧) ପରିବର୍ତ୍ତନଶୀଳ ମୂଳଧନ ପଦ୍ଧତି

ଏହି ପଦ୍ଧତି ଅନୁଯାୟୀ ଅଂଶୀଦାରଙ୍କର ମୂଳଧନ ହିସାବରେ ସର୍ବଦା ଏକ ନିର୍ଦ୍ଦିଷ୍ଟ ପରିମାଣର ଅର୍ଥ ବା ବାକି (balance) ରହିବା ଆବଶ୍ୟକ ହୁଏନାହିଁ । ତେଣୁ ହିସାବ ବର୍ଷ ଶେଷରେ ବ୍ୟବସାୟରୁ ସେ ଯେଉଁ ଲଭ୍ୟାଂଶ ପାଆନ୍ତି ତାହାକୁ ସେହି ହିସାବ ଅନ୍ତର୍ଭୁକ୍ତ କରାଯାଏ । ଏଥି ନିମନ୍ତେ ଲଭ୍ୟାଂଶ ପରିମାଣ ସକାଶେ ଲଭ ଓ କ୍ଷତି ହିସାବକୁ ଡାଏବୀ କରାଯାଏ ଓ ସଂପୃକ୍ତ ଅଂଶୀଦାରଙ୍କର ମୂଳଧନ ହିସାବକୁ ଦାତା କରାଯାଏ । ସେହିପରି, ତାଙ୍କର ଯଦି ମୂଳଧନ ବାବଦ ସୁଧ ପ୍ରାପ୍ୟ ହୁଏ, ତାହାହେଲେ ସୁଧ ହିସାବକୁ ଡାଏବୀ କରାଯାଇ ସୁଧ ପରିମାଣ ସକାଶେ ଅଂଶୀଦାରଙ୍କର ମୂଳଧନ ହିସାବକୁ ଦାତା କରାଯାଏ । ସେ ଯଦି କୌଣସି ପାରିଶ୍ରମିକ ପାଇବା ପାଇଁ ଅଧିକାରୀ ହୁଅନ୍ତି, ତାହାହେଲେ ଅଂଶୀଦାରଙ୍କର ବେତନ ହିସାବକୁ ଡାଏବୀ କରାଯାଇ ତାଙ୍କ ମୂଳଧନ ହିସାବକୁ ବେତନ ପରିମାଣ ଅର୍ଥ ସକାଶେ ଦାତା କରାଯାଏ । ଯଦି ସେ, ବର୍ଷ ମଧ୍ୟରେ କୌଣସି ଅର୍ଥ ନିଜର ବ୍ୟକ୍ତିଗତ ବ୍ୟବହାର ସକାଶେ ବ୍ୟବସାୟରୁ ଉଠାଇଥାଆନ୍ତି ତାହାହେଲେ ତାହା ପ୍ରତ୍ୟକ୍ଷ ଭାବରେ ମୂଳଧନ ହିସାବକୁ ଡାଏବୀ କରି ଓ ନଗଦ ତହବିଲ ହିସାବକୁ ଦାତା କରିବାଦ୍ୱାରା ଲିପିବଦ୍ଧ କରାଯାଇପାରେ । ଅବଶ୍ୟ ସାଧାରଣତଃ ଅଂଶୀଦାରଙ୍କଦ୍ୱାରା ଉଠାଇ ନିଆଯାଇଥିବା ଅର୍ଥ

ପ୍ରଥମତଃ ଉଠାଣ ହିସାବରେ ଲିପିବଦ୍ଧ କରାଯାଇ ପରେ ମୂଳଧନ ହିସାବକୁ ଅଣାଯାଏ । ସେପରି କ୍ଷେତ୍ରରେ ପ୍ରଥମେ ଉଠାଣ ହିସାବକୁ ଦାୟୀ କରି ନଗଦ ତହବିଲ ହିସାବକୁ ଦାତା କରାଯାଏ ଓ ବର୍ଷ ଶେଷରେ ଉଠାଣ ହିସାବର ବାକୀ ବା ଉଦ୍‌ବୃତ୍ତ, ଯାହାକି ସର୍ବଦା ଦାୟୀ ହୋଇଥାଏ, ତାହାକୁ ଦାତା କରାଯାଏ ଓ ସଂପୃକ୍ତ ମୂଳଧନ ହିସାବକୁ ଦାୟୀ କରାଯାଏ । ଫଳତଃ ଅଂଶୀଦାରଙ୍କର ବର୍ଷ ଆରମ୍ଭରେ ଯେତେ ପରିମାଣର ମୂଳଧନ ଥାଏ ବର୍ଷ ଶେଷରେ ଲାଭାଂଶ, ମୂଳଧନ ବାବଦ ସୁଧ, ପାରିଶ୍ରମିକ ଓ ଉଠାଣ ବାବଦ ସମାଯୋଜନ ପରେ ସ୍ୱାଭାବିକ ଭାବରେ ବର୍ଷ ଶେଷରେ ପରିବର୍ତ୍ତିତ ହୋଇଯାଏ ।

ଏ ସମସ୍ତ ବିଷୟ କହିବାର ଉଦ୍ଦେଶ୍ୟ ହେଉଛି ଏହି ଯେ, ମୂଳଧନର ପରିମାଣକୁ ସର୍ବଦା ସ୍ଥିରରଖିବା ସକାଶେ ଯଦି କୌଣସି ଚୁକ୍ତି ନ ଥାଏ, ତାହାହେଲେ ଏହି ହିସାବରେ ସମସ୍ତ ପ୍ରକାର ସମାଯୋଜନ କରାଯାଇପାରିବ । ଏପରି ସମାଯୋଜନ ସକାଶେ ସ୍ୱତନ୍ତ୍ର ହିସାବ ଖୋଲିବା ଆବଶ୍ୟକ ହେବନାହିଁ ଏହାର ଏକ ଦୃଷ୍ଟାନ୍ତ ନିମ୍ନରେ ପ୍ରଦତ୍ତ ହେଲା ।

## ଦୃଷ୍ଟାନ୍ତ (୧)

କ ଖ ଓ ଗ ଗୋଟିଏ ଅଂଶୀଦାରୀ କାରବାରର ସମାନ ଅଂଶୀଦାର । ୧୯୭୪ ମସିହା ଜାନୁୟାରୀ ୧ ତାରିଖରେ ସେମାନଙ୍କର ମୂଳଧନ ହିସାବର ଦାତା ବାକୀ ଯଥାକ୍ରମେ ୪,୦୦୦ ଟଙ୍କା, ୩,୦୦୦ ଟଙ୍କା ଓ ୨,୦୦୦ ଟଙ୍କା ଥିଲା । ସେମାନେ ମୂଳଧନ ଉପରେ ୫% ହାରରେ ସୁଧ ପାଇବେ ଓ ଉଠାଣ ଉପରେ ସେହି ହାରରେ ସୁଧ ଦେବେ । ସେମାନଙ୍କର ଉଠାଣ ପରିମାଣ ନିମ୍ନ ପ୍ରକାର ଥିଲା ।

| | କ | ଖ | ଗ |
|---|---|---|---|
| ମାର୍ଚ୍ଚ ୧ ତା | ୨୦୦ ଟଙ୍କା | | ୧୦୦ ଟଙ୍କା |
| ଜୁନ୍ ୧ ତା | | ୩୦୦ ଟଙ୍କା | ୧୦୦ ଟଙ୍କା |
| ସେପ ୧ ତା | ୧୦୦ ଟଙ୍କା | | ୧୦୦ ଟଙ୍କା |

ଗ ପ୍ରତି ମାସରେ ୧୦୦ ଟଙ୍କା ହାରରେ ବେତନ ପାଇବେ । ବର୍ଷ ଶେଷରେ ଲାଭ ବଣ୍ଟନ ପୂର୍ବରୁ ଅଂଶୀଦାରୀ କାରବାରର ବଣ୍ଟନଯୋଗ୍ୟ ନିଟ୍ ଲାଭର ପରିମାଣ ୩,୬୦୦ ଟଙ୍କା ଥିଲା । ଦୃଷ୍ଟାନ୍ତକୁ ସରଳ ରଖିବା ସକାଶେ ମନେକର ଯେ ମୂଳଧନର ସୁଧ, ଉଠାଣ ବାବଦ ସୁଧ ଓ ଅଂଶୀଦାରଙ୍କ ବେତନ ବାବତ ପରିମାଣ ଲାଭ ଓ କ୍ଷତି ହିସାବରେ ସମାଯୋଜିତ ହୋଇଛି । ଅଂଶୀଦାରଙ୍କର ମୂଳଧନ ହିସାବ ପ୍ରସ୍ତୁତ କର ।

## ସମାଧାନ

ଦାୟୀ — କ ଙ୍କର ମୂଳଧନ ହିସାବ — ଦାତା

| ୧୯୭୪ | | ଟଙ୍କା | ୧୯୭୪ | | ଟଙ୍କା |
|---|---|---|---|---|---|
| ମାର୍ଚ୍ଚ ୧ରୁ ଡିସେମ୍ବର ୩୧ | ଉଠାଣ ହିସାବ ବାବଦ | ୩୦୦ | ଜାନୁଆରୀ ୧ | ପୂର୍ବ ବାକି ବାବଦ | ୪,୦୦୦ |
| ୩୧ | ଲଭ ଓ କ୍ଷତି ହିସାବ ବଣ୍ଟନ (ସୁଧ) | ୧୦ | ଡିସେମ୍ବର ୩୧ | ଲଭ ଓ କ୍ଷତି ବଣ୍ଟନ ହିସାବ ବାବଦ ଲଭର ୧/୩ ଅଂଶ | ୧,୨୦୦ |
| ଡିସେମ୍ବର ୩୧ | ବାକି ଗଡ଼ିଲ | ୫,୦୯୦ | | ମୂଳ ଧନର ସୁଧ | ୨୦୦ |
| | | ୫,୪୦୦ | | | ୫,୪୦୦ |
| | | | ୧୯୭୫ ଜାନୁଆରୀ ୧ | ପୂର୍ବ ବାକି ବାବଦ | ୫,୦୯୦ |

ଦାୟୀ — ଖ ଙ୍କର ମୂଳଧନ ହିସାବ — ଦାତା

| ୧୯୭୪ | | ଟଙ୍କା | ୧୯୭୪ | | ଟଙ୍କା |
|---|---|---|---|---|---|
| ମାର୍ଚ୍ଚ ୧ ରୁ | ଉଠାଣ ହିସାବ ବାବଦ | ୩୦୦ | ଜାନୁଆରୀ ୧ | ପୂର୍ବ ବାକି ବାବଦ | ୩,୦୦୦ |
| ଡିସେ: ୩୧ | ଲଭ ଓ କ୍ଷତି ବଣ୍ଟନ ହିସାବ ସୁଧ | ୭୫୦ | ଡିସେମ୍ବର ୩୧ | ଲଭ ଓ କ୍ଷତି ବଣ୍ଟନ ହିସାବ ବାବଦ ଲଭର ୧/୩ ଅଂଶ | ୧,୨୦୦ |
| ଡିସେ: ୩୧ | ବାକି ଗଡ଼ିଲ | ୪,୦୪୨.୫୦ | | ମୂଳଧନର ସୁଧ | ୧୫୦ |
| | | ୪,୩୫୦ | | | ୪,୩୫୦ |
| | | | ୧୯୭୫ ଜାନୁଆରୀ ୧ | ପୂର୍ବ ବାକି ବାବଦ | ୪,୦୪୨.୫୦ |

| ଖାସ୍ତି | | ଗ ଙ୍କର ମୂଳଧନ ହିସାବ | | | ଦାଖା |
|---|---|---|---|---|---|
| ୧୯୭୪ | | ଟଙ୍କା | ୧୯୭୪ | | ଟଙ୍କା |
| ମାର୍ଚ୍ଚ ୧ | ଉଠାଣ ହିସାବ | | ଜାନୁଆରି ୧ | ପୂର୍ବ ବାକି | |
| ,, | ବାବଦ | ୩୦୦ | | ବାବଦ | ୨,୦୦୦ |
| ଡିସେମ୍ବର ୩୧ | ଲାଭ ଓ କ୍ଷତି | | ଡିସେମ୍ବର ୩୧ | ଲାଭ ଓ କ୍ଷତି | |
| | ବଣ୍ଟନ ହିସାବ | | | ବଣ୍ଟନ ହିସାବ | |
| | (ସୁଧ) ବାବଦ | ୮.୨୪ | | ବାବଦ | ୧,୨୦୦ |
| ଡିସେମ୍ବର ୩୧ | ବାକି | | | ଲାଭର ୧/୩ | |
| | ଗଲା | ୪,୧୯୧.୭୬ | | ଅଂଶ | |
| | | | | ମୂଳ ଧନର | |
| | | | | ସୁଧ | ୧୦୦ |
| | | | | ବେତନ | ୧,୨୦୦ |
| | | ୪,୫୦୦ | | | ୪,୫୦୦ |
| | | | ୧୯୭୫ | | |
| | | | ଜାନୁଆରି ୧ | ପୂର୍ବ ବାକି | |
| | | | | ବାବଦ | ୪,୧୯୧.୭୬ |

ଉପରୋକ୍ତ ଦୃଷ୍ଟାନ୍ତରୁ ଏହା ଦେଖାଯିବ ଯେ ବିଭିନ୍ନ ସମାଯୋଜନ ହେତୁ ପ୍ରତ୍ୟେକ ଅଂଶୀଦାରଙ୍କର ମୂଳଧନ ହିସାବର ଅନ୍ତ୍ୟ ବାକି ଆଦ୍ୟ ବାକିଠାରୁ ପୃଥକ ହୋଇଛି । ମୂଳଧନ ହିସାବ ପରିବର୍ତ୍ତନଶୀଳ ହୋଇଥିବା ହେତୁ ଆବଶ୍ୟକ ସମସ୍ତ ସମାଯୋଜନ ଏହି ହିସାବରେ ପ୍ରତ୍ୟକ୍ଷ ଭାବରେ ସମ୍ପନ୍ନ କରିବା ସମ୍ଭବ ହେଲା ।

## (୨) ସ୍ଥିର ମୂଳଧନ ପଦ୍ଧତି

ଏହି ପଦ୍ଧତି ଅନୁଯାୟୀ ଅଂଶୀଦାରି କାରବାର ବିଦ୍ୟମାନ ଥିବା ପର୍ଯ୍ୟନ୍ତ ମୂଳଧନ ପରିମାଣକୁ ସର୍ବଦା ଅପରିବର୍ତ୍ତିତ ରଖିବାକୁ ହୁଏ । ତେଣୁ ପୂର୍ବୋକ୍ତ ସମାଯୋଜନଗୁଡ଼ିକ ଆଉ ମୂଳଧନ ହିସାବରେ ସମ୍ପନ୍ନ କରିବା ସମ୍ଭବପର ହୁଏ ନାହିଁ । ଏଥିନିମନ୍ତେ ପ୍ରତ୍ୟେକ ଅଂଶୀଦାରଙ୍କ ସକାଶେ ମୂଳଧନ ହିସାବ ବ୍ୟତୀତ ଅନ୍ୟ ଗୋଟିଏ ହିସାବ, ଯଥା—ଚଳନ୍ତି ହିସାବ (Current A/c) ଖୋଲାଯାଏ । ଅଂଶୀଦାରଙ୍କର ଲାଭର ଅଂଶ ସମେତ ଅନ୍ୟ ସମସ୍ତ ପ୍ରାପ୍ୟ ଓ ଦେୟ ପରିମାଣ ସେହି ଚଳନ୍ତି ହିସାବରେ ଲିପିବଦ୍ଧ କରାଯାଏ । ଏହାର ଏକ ଦୃଷ୍ଟାନ୍ତ ନିମ୍ନରେ ପ୍ରଦତ୍ତ ହେଲା ।

## ଦୃଷ୍ଟାନ୍ତ (୨)

ପ୍ରଶ୍ନଟି ଦୃଷ୍ଟାନ୍ତ (୧)ର ପ୍ରଶ୍ନ ସହିତ ସମାନ । କେବଳ ଏ କ୍ଷେତ୍ରରେ ମୂଳଧନ ପରିବର୍ତ୍ତିନଶୀଳ ନ ହୋଇ ସ୍ଥିର ରହିବ । ଅଂଶୀଦାରମାନଙ୍କର ମୂଳଧନ ହିସାବ ଓ ଚଳନ୍ତି ହିସାବ ପ୍ରସ୍ତୁତ କର ।

## ସମାଧାନ

ଦାୟୀ — କ ଙ୍କର ମୂଳଧନ ହିସାବ — ଦାତା

| ତାରିଖ | ବିବରଣୀ | ଟଙ୍କା | ତାରିଖ | ବିବରଣୀ | ଟଙ୍କା |
|---|---|---|---|---|---|
| ୧୯୭୪ | | | ୧୯୭୪ | | |
| ଡିସେମ୍ବର ୩୧ | ବାକି ଗଡ଼ିଲା | ୪,୦୦୦ | ଜାନୁଆରୀ ୧ | ପୂର୍ବ ବାକି ବାବଦ | ୪,୦୦୦ |
| | | | ୧୯୭୫ | | |
| | | | ଜାନୁଆରୀ ୧ | ପୂର୍ବ ବାକି ବାବଦ | ୪,୦୦୦ |

ଦାୟୀ — କ ଙ୍କର ଚଳନ୍ତି ହିସାବ — ଦାତା

| ତାରିଖ | ବିବରଣୀ | ଟଙ୍କା | ତାରିଖ | ବିବରଣୀ | ଟଙ୍କା |
|---|---|---|---|---|---|
| ୧୯୭୪ | | | ୯୭୪ | | |
| ଡିସେମ୍ବର ୩୧ | ଉଠାଣ ହିସାବ ବାବଦ | ୩୦୦ | ଡିସେମ୍ବର ୩୧ | ଲାଭ ଓ କ୍ଷତି ବଣ୍ଟନ ହିସାବ ବାବଦ ଲାଭର ୧/୩ ଅଂଶ | ୧,୦୦୦ |
| | ଲାଭ ଓ କ୍ଷତି ବଣ୍ଟନ ହିସାବ (ସୁଧ) ବାବଦ | ୧୦ | | ମୂଳଧନର ସୁଧ | ୪୦୦ |
| | ବାକି ଗଡ଼ିଲ | ୧,୦୯୦ | | | |
| | | ୧,୪୦୦ | | | ୧,୪୦୦ |
| | | | ୧୯୭୫ | | |
| | | | ଜାନୁଆରୀ ୧ | ପୂର୍ବ ବାକି ବାବଦ | ୧,୦୯୦ |

| ଦାୟୀ | ଖ ଙ୍କର ମୂଳଧନ ହିସାବ | | ଟଙ୍କା |
|---|---|---|---|
| ୧୯୭୪ | ଟଙ୍କା | ୧୯୭୪ | ଟଙ୍କା |
| ଡିସେମ୍ବର ୩୧ ବାକି ଗଳିଲା | ୩,୦୦୦ | ଜାନୁଆରୀ ୧ ପୂର୍ବ ବାକି ବାବଦ | ୩,୦୦୦ |

| ଦାୟୀ | ଖ ଙ୍କର ଚଳନ୍ତି ହିସାବ | | ଦାତା |
|---|---|---|---|
| ୧୯୭୪ | ଟଙ୍କା | ୧୯୭୪ | ଟଙ୍କା |
| ଡିସେମ୍ବର ୩୧ ଉଠାଣ ହିସାବ ବାବଦ | ୩୦୦ | ଡିସେମ୍ବର ୩୧ ଲାଭ ଓ କ୍ଷତି ବଣ୍ଟନ ହିସାବ ବାବଦ ଲାଭର ୧/୩ ଅଂଶ | ୧,୨୦୦ |
| ଲାଭ ଓ କ୍ଷତି ବଣ୍ଟନ ହିସାବ (ସୁଧ) ବାବଦ | ୭.୫୦ | ମୂଳଧନର ସୁଧ | ୧୫୦ |
| ବାକି ଗଳିଲା | ୧,୦୪୨.୫୦ | | |
| | ୧,୩୫୦ | | ୧,୩୫୦ |
| | | ୧୯୭୫ | |
| | | ଜାନୁଆରୀ ୧ ପୂର୍ବ ବାକି ବାବଦ | ୧,୦୪୨.୫୦ |

| ଦାୟୀ | ଗ ଙ୍କର ମୂଳଧନ ହିସାବ | | ଦାତା |
|---|---|---|---|
| ୧୯୭୪ | ଟଙ୍କା | ୧୯୭୪ | |
| ଡିସେମ୍ବର ୩୧ ବାକି ଗଳିଲା | ୧,୦୦୦ | ଜାନୁଆରୀ ୧ ପୂର୍ବ ବାକି ବାବଦ | ୧,୦୦୦ |
| | | ୧୯୭୫ | |
| | | ଜାନୁଆରୀ ୧ ପୂର୍ବ ବାକି ବାବଦ | ୧,୦୦୦ |

ଗ ଙ୍କର ଚଳନ୍ତି ହିସାବ

| ଦାୟୀ | | | ଦାତା | | |
|---|---|---|---|---|---|
| | | ଟଙ୍କା | | | ଟଙ୍କା |
| ୧୯୭୪ | ଉଠାଣ ହିସାବ | | ୧୯୭୪ | | |
| ଡିସେ ୩୧ | ବାବଦ | ୩୦୦ | ଡିସେ-୩୧ | ଲାଭ ଓ କ୍ଷତି | |
| | ଲାଭ ଓ କ୍ଷତି | | | ବଣ୍ଟନ ହିସାବ ବାବଦ | |
| | ବଣ୍ଟନ ହିସାବ | | | ଲାଭର ୧/୩ ଅଂଶ | ୧,୧୦୦ |
| | (ସୁଧ) ବାବଦ | ୮.୩୪ | | ମୂଳଧନର ସୁଧ | ୧୦୦ |
| | ବାକି ଗଚ୍ଛିତ | ୨,୧୯୧.୬୬ | | ବେତନ | ୧,୨୦୦ |
| | | ୨,୫୦୦ | | | ୨,୫୦୦ |
| | | | ୧୯୭୫ | | |
| | | | ଜାନୁ-୧ | ପୂର୍ବବାକି | |
| | | | | ବାବଦ | ୨,୧୯୧.୬୬ |

ଏହି ଦୃଷ୍ଟାନ୍ତରୁ ଦେଖାଯିବ ଯେ, ସ୍ଥିର ମୂଳଧନ ପଦ୍ଧତି ଅନୁଯାୟୀ ମୂଳଧନ ହିସାବ ରଖାଗଲେ ଏଥିରେ କୌଣସି ପ୍ରକାର ସମାଯୋଜନ କରାଯାଏ ନାହିଁ । ତେଣୁ ଏହି ହିସାବର ଅନ୍ତ୍ୟବାକି ଆଦ୍ୟବାକି ସହିତ ସମାନ ରହେ ; ଅର୍ଥାତ୍ ମୂଳଧନ ପରିମାଣରେ କୌଣସି ପରିବର୍ତ୍ତନ ନ ହୋଇ ଅପରିବର୍ତ୍ତିତ ବା ସ୍ଥିର ରହେ । ଏପରି ପଦ୍ଧତିର ଗୋଟିଏ ସୁବିଧା ହେଉଛି ଏହି ଯେ ମୂଳଧନର ପରିମାଣ ଅପରିବର୍ତ୍ତିତ ରହିଲେ ମୂଳଧନ ବାବଦ ସୁଧ ହିସାବ କରିବା ସହଜସାଧ୍ୟ ହୁଏ । ଅଧିକନ୍ତୁ ଯଦି ଅଂଶୀଦାରମାନେ ବିନିଯୁକ୍ତ ମୂଳଧନ ଅନୁ-ପାତରେ ଲାଭ ଭାଗ କରିବା ସକାଶେ ଚୁକ୍ତି କରିଥାଆନ୍ତି ତାହାହେଲେ ମୂଳଧନର ଅନୁପାତ ସର୍ବଦା ସମାନ ରଖିବା ଆବଶ୍ୟକ ହୁଏ ଏବଂ ସେପରି ସ୍ଥଳେ ସ୍ଥିର ମୂଳଧନ ପଦ୍ଧତି ବ୍ୟବହାର କରିବା ପ୍ରୟୋଜନୀୟ ହୋଇଥାଏ ।

ମୂଳଧନକୁ ସ୍ଥିର ବା ଅପରିବର୍ତ୍ତିତ ରଖିବା ସକାଶେ ଯେଉଁ ଅନ୍ୟ ଗୋଟିଏ ହିସାବର ସାହାଯ୍ୟ ନିଆଯାଏ, ତାହାକୁ ଚଳନ୍ତି ହିସାବ (Current A/c) କୁହାଯାଏ । ଉପରୋକ୍ତ ଦୃଷ୍ଟାନ୍ତରୁ ଏହା ପରିଷ୍କାର ବୁଝାଯିବ ଯେ, ଏହା ଅଂଶୀଦାରଙ୍କର ମୂଳଧନ ହିସାବ ସଦୃଶ ଅନ୍ୟ ଏକ ବ୍ୟକ୍ତିଗତ ହିସାବ । ଅଂଶୀଦାର ବ୍ୟବସାୟରୁ ଯାହା ପାଇବେ, ଯଥା—ଲାଭର ଅଂଶ, ମୂଳଧନର ସୁଧ, ବେତନ, କମିଶନ ଇତ୍ୟାଦି ଆୟ ଏହି ହିସାବର ଦାତା ପାର୍ଶ୍ବରେ ଲିପିବଦ୍ଧ କରାଯିବ । ଅଂଶୀଦାର ବ୍ୟବସାୟରୁ ଯଦି ଟଙ୍କା ଉଠାଇ ନିଅନ୍ତି ଓ ସେହି ଉଠାଣ ଉପରେ ଯଦି ସୁଧ ଦେବାକୁ ପଡ଼େ ତାହାହେଲେ ଏହି ଦୁଇଟି ବିଷୟ ଏହି ଚଳନ୍ତି ହିସାବର

ଦାୟୀ ପାର୍ଶ୍ୱରେ ଲିପିବଦ୍ଧ କରାଯିବ । ଯଦି କୌଣସି ଅଂଶୀଦାର ବ୍ୟବସାୟର କୌଣସି ସମ୍ପତ୍ତି ବ୍ୟକ୍ତିଗତ ବ୍ୟବହାର ସକାଶେ ନେଇଯାଆନ୍ତି ତାହାହେଲେ ଏହି ସମ୍ପତ୍ତିର ସମ୍ମତ ମୂଲ୍ୟ ସେ ନଗଦ ଅର୍ଥ ଆକାରରେ ପ୍ରଦାନ କରନ୍ତି ନଚେତ୍ ସେଥି ସକାଶେ ତାଙ୍କର ଚଳନ୍ତି ହିସାବକୁ ଦାୟୀ କରାଯାଏ । ଏହି ହିସାବର ଦାୟୀ ବାକି ଯାହା କ୍ୱଚିତ ଦେଖାଯାଏ, ତାହା ଉଦ୍‌ବୃତ୍ତପତ୍ରର ସମ୍ପତ୍ତି ପାର୍ଶ୍ୱରେ (ଖାତକଙ୍କ କ୍ଷେତ୍ରରେ ଯେପରି ହୁଏ) ପ୍ରଦର୍ଶିତ ହେବ । କିନ୍ତୁ ଏହି ହିସାବର ବାକି ଯଦି ଦାତା ହୁଏ, ଯାହା ସାଧାରଣତଃ ହୋଇଥାଏ, ତାହା ଉଦ୍‌ବୃତ୍ତପତ୍ରର ମୂଳଧନ ଓ ଦେଣା ପାର୍ଶ୍ୱରେ ପ୍ରଦର୍ଶିତ ହେବ । କାରଣ ଏହା ବ୍ୟବସାୟର ଏକ ଦେଣା ସ୍ୱରୂପ ଅଟେ ।

ଏହି ଦୃଷ୍ଟାନ୍ତରେ ଅନ୍ୟ ଏକ ବିଷୟର ଉଲ୍ଲେଖ କରାଯାଇଛି, ଯଥା—ଉଠାଣ ହିସାବ (Drawings A/c) । ଜଣେ ଅଂଶୀଦାର ବ୍ୟବସାୟରୁ ନିଜର ବ୍ୟକ୍ତିଗତ ଖର୍ଚ୍ଚ ବା ବ୍ୟବହାର ସକାଶେ ଅର୍ଥ ଅଥବା ପଣ୍ୟ ଦ୍ରବ୍ୟ ଉଠାଇ ନିଅନ୍ତି ; ସେତେବେଳେ ଏହି ହିସାବକୁ ଦାୟୀ କରାଯାଏ ଏବଂ ତାହା ନଗଦ ଆକାରରେ ନିଆଯାଇଥିଲେ ନଗଦ ତହବିଲ ହିସାବ, ଚେକ୍ ଆକାରରେ ବ୍ୟାଙ୍କରୁ ନିଆଯାଇଥିଲେ ବ୍ୟାଙ୍କ ହିସାବ ଓ ପଣ୍ୟ ଆକାରରେ ନିଆଯାଇଥିଲେ ପଣ୍ୟ ବା ମାଲ ହିସାବକୁ ଦାତା କରାଯାଏ । ଏହି ହିସାବର ବାକି ସର୍ବଦା ଦାୟୀ ହୁଏ ଏବଂ ଉଦ୍‌ବୃତ୍ତ ପତ୍ରର ସମ୍ପତ୍ତି ଓ ପାଉଣା ପାର୍ଶ୍ୱରେ ପ୍ରଦର୍ଶିତ ହେବା ପରିବର୍ତ୍ତେ ଏହା ମୂଳଧନରୁ ବିଯୁକ୍ତ କରାଯାଏ । ଏକ-ମାଲିକାନା କାରବାରରେ ଏହି ରୀତି ପ୍ରଚଳିତ ହେଉଥିଲେହେଁ ଅଂଶୀଦାରୀ କାରବାରରେ ପରିବର୍ତ୍ତନଶୀଳ ମୂଳଧନ ପଦ୍ଧତିରେ ଉଠାଣ ଯାହା ଉଠାଣ ହିସାବର ଦାୟୀ ପାର୍ଶ୍ୱରେ ଥାଏ ତାହା ବର୍ଷ ଶେଷରେ ଅଂଶୀଦାରଙ୍କର ମୂଳଧନ ହିସାବର ଦାୟୀ ପାର୍ଶ୍ୱକୁ ସ୍ଥାନାନ୍ତରିତ କରାଯାଏ । ସୁତରାଂ କେବଳ ନିଟ୍ ପରିମାଣର ମୂଳଧନ ଉଦ୍‌ବୃତ୍ତ ପତ୍ରର ମୂଳଧନ ଓ ଦେଣା ପାର୍ଶ୍ୱରେ ପ୍ରକାଶିତ ହୁଏ । ସ୍ଥିର ମୂଳଧନ ପଦ୍ଧତି ଅନୁଯାୟୀ ହିସାବ ରଖାଯାଉଥିଲେ ଉଠାଣ ହିସାବର ଦାୟୀ ବାକି ବର୍ଷ ଶେଷରେ ଚଳନ୍ତି ହିସାବକୁ ଦାୟୀ ପାର୍ଶ୍ୱକୁ ସ୍ଥାନାନ୍ତରିତ କରାଯାଏ ।

ଏହି ଉଠାଣ ଲିପିବଦ୍ଧ କରିବାପାଇଁ ମୂଳଧନ ହିସାବ ଅଥବା ଚଳନ୍ତି ହିସାବର ସାହାଯ୍ୟ ନିଆଯାଇପାରନ୍ତା କିନ୍ତୁ ଏହାକୁ ଲିପିବଦ୍ଧ କରିବା ସକାଶେ ସ୍ୱତନ୍ତ୍ର ଏକ ଉଠାଣ ହିସାବ ଖୋଲିବାର ତାତ୍ପର୍ଯ୍ୟ ହେଉଛି ଏହି ଯେ ଏହି ହିସାବକୁ ପର୍ଯ୍ୟବେକ୍ଷଣ କଲେ କେଉଁ ଅଂଶୀ-ଦାର ବ୍ୟବସାୟରୁ କେବେ କେତେ ଟଙ୍କା ଉଠାଇଛନ୍ତି ତାହା ସଙ୍ଗେ ସଙ୍ଗେ ଜଣାପଡ଼େ । ଅନେକ ସମୟରେ ଅଂଶୀଦାରୀ ଚୁକ୍ତିରେ ଅଂଶୀଦାରମାନଙ୍କର ଉଠାଣରେ କେତେକ କଟକଣା ରଖାଯାଇଥାଏ, ଯେପରି ଏହାର ମାସିକ ବା ବାର୍ଷିକ ପରିମାଣ ସୀମିତ କରାଯାଇ ପାରିଥାଏ । ଏହି ସୀମା ଲଙ୍ଘିତ ହୋଇଛି କି ନାହିଁ ତାହା ଯାଞ୍ଚ କରିବା ସକାଶେ ସ୍ୱତନ୍ତ୍ର ଉଠାଣ ହିସାବ ଅପେକ୍ଷାକୃତ ଅଧିକ ଉପଯୋଗୀ ହୁଏ ।

ଏହି ଦୃଷ୍ଟାନ୍ତ ଦୁଇଟିରେ ଅନ୍ୟ ଏକ ହିସାବ, ଯଥା—ଲାଭ ଓ କ୍ଷତି ବଣ୍ଟନ ହିସାବ (Profit & Loss Appropriation A/c)ର ଉଲ୍ଲେଖ କରାଯାଇଛି । ବର୍ତ୍ତମାନ ତାହାହିଁ ଆଲୋଚନା କରାଯିବ ।

ଅଂଶୀଦାରି କାରବାରରେ ଏହା ଏକ ଅତି ପ୍ରୟୋଜନୀୟ ହିସାବ । ଅଂଶୀଦାରମାନଙ୍କର ଯାବତୀୟ ପ୍ରାପ୍ୟ ଓ ଦେୟ ଏହି ହିସାବରେ ଲିପିବଦ୍ଧ କରାଯାଏ । ଏହା ଏକ ସ୍ଥାୟୀ ହିସାବ ନୁହେଁ । ପ୍ରତିବର୍ଷ ଶେଷରେ ଏହା ଖୋଲାଯାଏ ଏବଂ ଏହାର ଉଦ୍‌ବୃତ୍ତ, ତାହା ଦାୟୀ ବା ଦାତା ଯାହା ହେଉ, ଅଂଶୀଦାରଙ୍କର ମୂଳଧନ/ଚଳନ୍ତି ହିସାବକୁ ସ୍ଥାନାନ୍ତରିତ କରାଯାଇ ଏହି ହିସାବକୁ ବନ୍ଦ କରାଯାଏ ।

ହିସାବ ବର୍ଷ ଶେଷରେ ନିଟ୍ ଲାଭ ଓ କ୍ଷତି ହିସାବ କରାଯାଇ ଯଦି ନିଟ୍ ଲାଭ ହୁଏ ତାହାହେଲେ ତାହା ଲାଭ ଓ କ୍ଷତି ବଣ୍ଟନ ହିସାବର ଦାତା ପାର୍ଶ୍ୱକୁ ଓ ନିଟ୍ କ୍ଷତି ସ୍ଥଳରେ ତାହା ଏହି ହିସାବର ଦାୟୀ ପାର୍ଶ୍ୱକୁ ଅଣାଯାଏ । ଯଦି ଅଂଶୀଦାରଙ୍କଠାରୁ ଉଠାଣ ଉପରେ ସୁଧ ଆଦାୟ କରାଯିବା ସକାଶେ ଚୁକ୍ତି ହୋଇଥାଏ, ତାହାହେଲେ ତାହା ହିସାବ କରାଯାଇ ଏହି ହିସାବର ଦାତା ପାର୍ଶ୍ୱକୁ ଅଣାଯାଏ । ଏହି ହିସାବର ଦାୟୀ ପାର୍ଶ୍ୱରେ ମୂଳଧନର ସୁଧ, ବେତନ, କମିଶନ ପ୍ରଭୃତି ବିଷୟ ଅନ୍ତର୍ଭୁକ୍ତ କରାଯାଏ । ଯାହା ବଳକା ରହେ ତହିଁରୁ ଚୁକ୍ତି ଅନୁଯାୟୀ ସଞ୍ଚିତ ପାଣ୍ଠି ଗଢ଼ାଯାଏ ଓ ଅବଶିଷ୍ଟ ପରିମାଣ ଲାଭ ଭାଗ କରିବା ଅନୁପାତରେ ଅଂଶୀଦାରମାନଙ୍କ ମଧ୍ୟରେ ବଣ୍ଟନ କରାଯାଏ । କିନ୍ତୁ ଏହି ସମସ୍ତ ବିଷୟ ସକାଶେ ଜାବ୍‌ଦା ମାଧ୍ୟମରେ ସମାଯୋଜନ ଆବଶ୍ୟକ ହୁଏ । ଏଗୁଡ଼ିକ ନିମ୍ନରେ ଆଲୋଚିତ ହେଲା ।

## (୧) ମୂଳଧନ ଉପରେ ସୁଧ ( Interest on Partners Capital )

ପୂର୍ବରୁ କୁହାଯାଇଛି ଯେ ସେପରି ଚୁକ୍ତି ସଂପାଦିତ ହୋଇନଥିଲେ ଅଂଶୀଦାରମାନେ ମୂଳଧନ ଉପରେ ସୁଧ ଦାବୀ କରିପାରିବେ ନାହିଁ । ଯେଉଁ କ୍ଷେତ୍ରରେ ଅଂଶୀଦାରମାନେ ଅସମ ପରିମାଣରେ ମୂଳଧନ ବିନିଯୋଗ କରନ୍ତି ମାତ୍ର ଲାଭ ସମାନ ଅନୁପାତରେ ବାଣ୍ଟିନଥାନ୍ତି ସେ କ୍ଷେତ୍ରରେ ମୂଳଧନ ଉପରେ ସୁଧ କଷିବା ତାତ୍ପର୍ଯ୍ୟପୂର୍ଣ୍ଣ ଅଟେ । ତାହା କରାନଗଲେ ଯେଉଁ ଅଂଶୀଦାର ଅନ୍ୟମାନଙ୍କ ତୁଳନାରେ ଅଧିକ ପରିମାଣ ଅର୍ଥ ମୂଳଧନ ସ୍ୱରୂପ ବିନିଯୋଗ କରିଥାଆନ୍ତି ସେ ସେଥିପାଇଁ କିଛି ଅଧିକ ସୁବିଧା ପାଆନ୍ତି ନାହିଁ ଏବଂ ଅପେକ୍ଷାକୃତ ନ୍ୟୂନ ପରିମାଣ ଅର୍ଥ ବିନିଯୋଗ କରିଥିବା ଅଂଶୀଦାର ଅଧିକ ସୁବିଧା ଭୋଗ କରନ୍ତି ।

୧ । ମନେକର କ ୫,୦୦୦ ଟଙ୍କା ଓ ଖ ୩,୦୦୦ ଟଙ୍କା ମୂଳଧନ ସ୍ୱରୂପ ବ୍ୟବସାୟକୁ ଆଣିଛନ୍ତି । ସେମାନେ ସମାନ ଅନୁପାତରେ ଲାଭ ବାଣ୍ଟନ୍ତି । ଯଦି ବ୍ୟବସାୟର

ଲଭ ୨,୦୦୦ ଟଙ୍କା ହୁଏ ତାହା ହେଲେ କ ୧,୦୦୦ ଟଙ୍କା ଓ ଖ ୧,୦୦୦ ଟଙ୍କା ଲଭ ସ୍ୱରୂପ ପାଇବେ । ଯଦି ମୂଳଧନ ଉପରେ ୫% ସୁଧର ବ୍ୟବସ୍ଥା ଥାଏ ତାହାହେଲେ କ ସୁଧ ବାବଦ ୨୫୦ ଟଙ୍କା ଓ ଖ ୧୫୦ ଟଙ୍କା ପାଇବେ ଓ ଲଭ ସ୍ୱରୂପ ଉଭୟ ୮୦୦ ଟଙ୍କା ପାଇବେ, ଅର୍ଥାତ ମୋଟରେ କ ୧,୦୫୦ ଟଙ୍କା ଓ ଖ ୯୫୦ ଟଙ୍କା ପାଇବେ । ସୁତରାଂ, ମୂଳଧନ ବାବଦ ସୁଧର ବ୍ୟବସ୍ଥା ଥିବା ଯୋଗୁଁ ଲଭ ଭାଗ କରିବାର ଅନୁପାତ ସମାନ ଥିବା ସତ୍ତ୍ୱେ କ ଅଧିକ ମୂଳଧନ ଆଣିଥିବା ହେତୁ ବ୍ୟବସାୟରୁ ଅପେକ୍ଷାକୃତ କିଛି ଅଧିକ ଆୟ ପାଇପାରିଲେ ଯାହା ତାଙ୍କର ପାଇବା ନ୍ୟାଯ୍ୟ ।

ଯଦି ଅଂଶୀଦାରମାନଙ୍କର ଲଭ ବଣ୍ଟନର ଅନୁପାତ ମୂଳଧନ ଅନୁପାତ ସହିତ ସମାନ ଥାଏ ସେ କ୍ଷେତ୍ରରେ ମୂଳଧନ ଉପରେ ସୁଧ ବ୍ୟବସ୍ଥା କରିବା ଆବଶ୍ୟକ ହୁଏନାହିଁ । କାରଣ ସୁଧ ପାଇବା ପରେ ମଧ୍ୟ ତାଙ୍କର ଆୟର ଅନୁପାତ ସମାନ ରହେ । କିନ୍ତୁ ଯେଉଁଠାରେ ଅଂଶୀଦାରମାନେ ସମ ପରିମାଣର ମୂଳଧନ ବିନିଯୋଗ କରନ୍ତି ଅଥଚ ଲଭ ବଣ୍ଟନର ଅନୁପାତ ଅସମ ଥାଏ ସେ କ୍ଷେତ୍ରରେ ମଧ୍ୟ ମୂଳଧନ ଉପରେ ସୁଧର ବ୍ୟବସ୍ଥାଦ୍ୱାରା ଅଂଶୀଦାରଙ୍କର ପାରସ୍ପରିକ ଆୟର ଅସମତା କେତେକ ପରିମାଣରେ ଦୂର ହୁଏ । ଉଦାହରଣ ସ୍ୱରୂପ ମନେକର ଯେ କ ଓ ଖ ଉଭୟେ ୫,୦୦୦ ଟଙ୍କା ହାରରେ ମୂଳଧନ ବିନିଯୋଗ କରିଛନ୍ତି : ମାତ୍ର ତାଙ୍କର ଲଭ ବଣ୍ଟନର ଅନୁପାତ ୨ : ୧ । ମନେକର ଯେ ବର୍ଷ ଶେଷରେ ନିଟ ଲଭର ପରିମାଣ ୩,୦୦୦ ଟଙ୍କା । ଯଦି ସୁଧ ପାଇବାରେ ଚୁକ୍ତି ନ ଥାଏ ତାହାହେଲେ ଲଭର ଅଂଶ ବାବଦ କ ୨,୦୦୦ ଟଙ୍କା ଓ ଖ ୧,୦୦୦ ଟଙ୍କା ପାଇବେ । ମନେକର ସେମାନେ ୬% ହାରରେ ମୂଳଧନ ଉପରେ ସୁଧ ପାଇବେ । ତାହାହେଲେ ସୁଧ ବାବଦ ପ୍ରତ୍ୟେକ ଅଂଶୀଦାର ୩୦୦ ଟଙ୍କା ପାଇବେ । ଲଭର ଅଂଶ ସ୍ୱରୂପ କ ୧,୬୦୦ ଟଙ୍କା ଓ ଖ ୮୦୦ ଟଙ୍କା ପାଇବେ । ଅର୍ଥାତ ମୋଟରେ କ ୧,୯୦୦ ଟଙ୍କା ଓ ଖ ୧,୧୦୦ ଟଙ୍କା ପାଇବେ । ଅର୍ଥାତ୍ ସମାନ ମୂଳଧନ ଥାଇ ଲଭ ବଣ୍ଟନର ଅସମତାର ତୀବ୍ରତା କେତେକ ପରିମାଣରେ ଊଣା ହେଲା ।

ଅଂଶୀଦାରୀ ଆଇନ ଅନୁଯାୟୀ ମୂଳଧନ ଉପରେ ସୁଧ ଲଭ ବଣ୍ଟନ ପ୍ରକ୍ରିୟାର ଅନ୍ତର୍ଭୁକ୍ତ । ତେଣୁ ଏହି ସୁଧ ସର୍ବଦା ଲଭ ଓ କ୍ଷତି ବଣ୍ଟନ ହିସାବରେ ସମାଯୋଜିତ ହୁଏ । ଯଦି ଲଭର ପରିମାଣ ଅଂଶୀଦାରମାନଙ୍କୁ ସୁଧ ଦେବା ସକାଶେ ଯଥେଷ୍ଟ ନ ହୁଏ ତାହା ହେଲେ ସୁଧର ପରିମାଣକୁ ଆନୁପାତିକ ଭାବରେ ନ୍ୟୂନ କରାଯାଇ ସେହି ପରିମାଣର ସୁଧ ଅଂଶୀଦାରମାନଙ୍କୁ ଦିଆଯିବ । ଯଦି ଆଦୌ ଲଭ ନ ହୋଇ କ୍ଷତି ହୁଏ ତାହାହେଲେ ଅଂଶୀଦାରମାନେ ସୁଧ ବାବଦ କିଛି ପାଇବେ ନାହିଁ । ଏହି ଅପ୍ରାପ୍ତ ସୁଧ ପରବର୍ତ୍ତୀ ବର୍ଷକୁ ବକେୟା ପ୍ରାପ୍ୟ ରୂପେ ନିଆଯାଇପାରିବ ନାହିଁ ।

ପୂର୍ବରୁ କୁହାଯାଇଛି ଯେ ସ୍ଥିର ମୂଳଧନ ପଦ୍ଧତିରେ ମୂଳଧନ ଉପରେ ସୁଧ ନିରୂପଣ କରିବା ସହଜସାଧ୍ୟ ହୁଏ ମାତ୍ର ପରିବର୍ତ୍ତନଶୀଳ ମୂଳଧନ ପଦ୍ଧତିରେ ମୂଳଧନର ପରିମାଣ ପ୍ରତିବର୍ଷ ପରିବର୍ତ୍ତିତ ହେଉଥିବାରୁ ମୂଳଧନର ସୁଧ ନିର୍ଣ୍ଣୟ କରିବା କଷ୍ଟକର ହୋଇଥାଏ । ଏପରି କ୍ଷେତ୍ରରେ ବର୍ଷ ଆରମ୍ଭରେ ଥିବା ମୂଳଧନର ପରିମାଣ ଉପରେ ସୁଧ କଷାଯାଇ-ପାରେ ଓ ଯଦି ବର୍ଷ ମଧ୍ୟରେ ଅଧିକା ମୂଳଧନ ବିନିଯୋଗ କରାଯାଏ ତାହାହେଲେ ବର୍ଷର ସେହି ଅଂଶ ବା କେତେକ ମାସ ପାଇଁ ସୁଧ ନିର୍ଣ୍ଣୟ କରାଯିବ । ଯଦି ଅଂଶୀଦାର କିଛି ପରିମାଣ ଅର୍ଥ ମୂଳଧନରୁ ଉଠାଇ ନେଇଥାଆନ୍ତି ତାହାହେଲେ ସେହି ପରିମାଣ ଉପରେ ସୁଧ କଷା ଯାଇ ତାହା ପ୍ରାପ୍ୟ ସୁଧରୁ ବାଦ ଦିଆଯିବ ।

ମୂଳଧନର ସୁଧକୁ ହିସାବଭୁକ୍ତ କରିବା ପାଇଁ ନିମ୍ନଲିଖିତ ଜାବ୍ଦା ପ୍ରସ୍ତୁତ କରାଯିବ ।

ଲାଭ ଓ କ୍ଷତି ବଣ୍ଟନ ହିସାବ ଦାୟୀ

ଅଂଶୀଦାରଙ୍କର ମୂଳଧନ ହିସାବ ବାବଦ

( ବାର୍ଷିକ ଶତକଡ଼ା···ହାରରେ··· ଟଙ୍କା ମୂଳଧନ ଉପରେ ସୁଧକୁ ହିସାବଭୁକ୍ତ କରାଗଲା )

ଯଦି ଅଂଶୀଦାରଙ୍କର ମୂଳଧନ ସ୍ଥିର ( **Fixed** ) ହୋଇଥାଏ ତାହାହେଲେ ଅଂଶୀଦାରଙ୍କର ମୂଳଧନ ହିସାବକୁ ଦାତା କରିବା ପରିବର୍ତ୍ତେ ଅଂଶୀଦାରଙ୍କର ଚଳନ୍ତି ହିସାବକୁ ଦାତା କରାଯିବ । ଏହାର ଏକ ଦୃଷ୍ଟାନ୍ତ ନିମ୍ନରେ ପ୍ରଦତ୍ତ ହେଲା ।

### ଦୃଷ୍ଟାନ୍ତ ( ୩ )

ପ୍ରତାପ ଓ କେଶରୀ ଗୋଟିଏ ଅଂଶୀଦାରୀ କାରବାରର ଅଂଶୀଦାର ; ସେମାନେ ଲାଭ ଓ କ୍ଷତି ୨ : ୧ ଅନୁପାତରେ ଭାଗ କରନ୍ତି । ତାଙ୍କର ମୂଳଧନ ୧ ୧-୧୯୭୪ ତାରିଖରେ ଯଥାକ୍ରମେ ୧,୦୦୦ ଟଙ୍କା ଓ ୭,୦୦୦ ଟଙ୍କା ଥିଲା । ସେମାନେ ତାଙ୍କ ମୂଳଧନ ଉପରେ ୫% ହାରରେ ସୁଧ ପାଇବା ପାଇଁ ଚୁକ୍ତି କରିଛନ୍ତି । ତାଙ୍କର ହିସାବ ବର୍ଷ ଜାନୁଆରୀ ୧ ତାରିଖରୁ ଆରମ୍ଭ ହୋଇ ଡିସେମ୍ବର ୩୧ ତାରିଖରେ ଶେଷ ହୁଏ । ପ୍ରତାପ ଜୁଲାଇ ମାସ ୧ ତାରିଖରେ ଅଧିକା ୩ ୦୦୦ ଟଙ୍କା ମୂଳଧନ ରୂପେ ବିନିଯୋଗ କରିଥିଲେ । ଅଂଶୀଦାରଙ୍କର ସୁଧ, ହିସାବକୁ ନିଆଯିବା ପୂର୍ବରୁ ବ୍ୟବସାୟର ନିଟ୍ ଲାଭର ପରିମାଣ ୫,୭୨୫ ଟଙ୍କା ହୋଇଥିଲା ।

ଆବଶ୍ୟକ ଜାବ୍ଦା, ଲାଭ ଓ କ୍ଷତି ବଣ୍ଟନ ହିସାବ, ଓ ଅଂଶୀଦାରଙ୍କର ମୂଳଧନ ହିସାବ ପ୍ରସ୍ତୁତ କର ।

## ସମାଧାନ

| | | ଡାଏରୀ | ଡାରା |
|---|---|---|---|
| ୧୯୭୪ | | ଟଙ୍କା | ଟଙ୍କା |
| ଡିସେମ୍ବର-୩୧ | ଲଭ ଓ କ୍ଷତି ବଣ୍ଟନ ହିସାବ ଡାଏରୀ | ୮୨୫ | |
| | ପ୍ରତାପଙ୍କର ମୂଳଧନ ହିସାବ ବାବଦ | | ୫୨୫ |
| | କେଶବଙ୍କର ମୂଳଧନ ହିସାବ ବାବଦ | | ୩୦୦ |
| | ( ଅଂଶୀଦାରୀ ଚୁକ୍ତି ଅନୁଯାୟୀ ଅଂଶୀଦାରଙ୍କର ମୂଳଧନ ଉପରେ ଶତକଡ଼ା ବାର୍ଷିକ ୫ ହାରରେ ସୁଧ ହିସାବଭୁକ୍ତ କରାଗଲା ) | | |
| ୩୧ | ଲଭ ଓ କ୍ଷତି ବଣ୍ଟନ ହିସାବ ଡାଏରୀ | ୪,୮୦୦ | |
| | ପ୍ରତାପଙ୍କର ମୂଳଧନ ହିସାବ ବାବଦ | | ୩,୨୦୦ |
| | କେଶବଙ୍କର ମୂଳଧନ ହିସାବ ବାବଦ | | ୧,୬୦୦ |
| | ( ଅବଶିଷ୍ଟ ଲଭ ଅଂଶୀଦାରଙ୍କ ମଧ୍ୟରେ ୨ : ୧ ଅନୁପାତରେ ଭାଗ କରାଗଲା ) | | |

### ୧୯୭୪ ମସିହା ଡିସେମ୍ବର ୩୧ ତାରିଖରେ ଶେଷ ହେଉଥିବା ବର୍ଷର ଲାଭ ଓ କ୍ଷତି ବଣ୍ଟନ ହିସାବ

| ଡାଏରୀ | ଟଙ୍କା | ଟଙ୍କା | ଡାରା | ଟଙ୍କା | ଟଙ୍କା |
|---|---|---|---|---|---|
| ମୂଳଧନର ସୁଧ ବାବଦ : | | | ଲାଭ ଓ କ୍ଷତି ହିସାବ ବାବଦ : | | ୫,୬୨୫ |
| ପ୍ରତାପ | ୫୨୫ | | | | |
| କେଶବ | ୩୦୦ | ୮୨୫ | | | |
| ଲାଭର ଉଦ୍‌ବୃତ୍ତ ବାବଦ : | | | | | |
| ପ୍ରତାପ | ୩,୨୦୦ | | | | |
| କେଶବ | ୧,୬୦୦ | ୪,୮୦୦ | | | |
| | | ୫,୬୨୫ | | | ୫,୬୨୫ |

## ପ୍ରତାପଙ୍କର ମୂଳଧନ ହିସାବ

| ୧୯୭୪ | | ଟଙ୍କା | ୧୯୭୪ | | ଟଙ୍କା |
|---|---|---|---|---|---|
| ଡି. ସମ୍ବର-୩୧ | ବାକୀ ଗଡ଼ିଲା | ୧୫,୭୨୫ | ଜାନୁୟାରୀ-୧ | ପୂର୍ବ ବାକୀ ବାବଦ | ୯,୦୦୦ |
| | | | ଜୁଲାଇ-୧ | ନଗଦ ତହବିଲ ବାବଦ | ୩,୦୦୦ |
| | | | ଡିସେମ୍ବର-୩୧ | ମୂଳଧନର ସୁଧ ବାବଦ | ୫୨୫ |
| | | | ୩୧ | ଲାଭ ଓ କ୍ଷତି ବଣ୍ଟନ ହିସାବ ବାବଦ— ଲାଭର ୨/୩ ଅଂଶ | ୩,୨୦୦ |
| | | ୧୫,୭୨୫ | | | ୧୫,୭୨୫ |
| | | | ୧୯୭୫ | | |
| | | | ଜାନୁଆରୀ ୧ | ପୂର୍ବ ବାକୀ ବାବଦ | ୧୫,୭୨୫ |

## କେଶରୀଙ୍କର ମୂଳଧନ ହିସାବ

ଦାୟୀ ଦାତା

| ୧୯୭୪ | | ଟଙ୍କା | ୧୯୭୪ | | ଟଙ୍କା |
|---|---|---|---|---|---|
| ଡିସେମ୍ବର-୩୧ | ବାକୀ ଗଡ଼ିଲ | ୭,୯୦୦ | ଜାନୁଆରୀ-୧ | ପୂର୍ବବାକୀବାବଦ | ୬,୦୦୦ |
| | | | ଡିସେମ୍ବର-୩୧ | ମୂଳଧନର ସୁଧ ବାବଦ | ୩୦୦ |
| | | | ୩୧ | ଲାଭ ଓ କ୍ଷତି ବଣ୍ଟନ ହିସାବ ବାବଦ ଲାଭର ୧/୩ ଅଂଶ | ୧,୬୦୦ |
| | | | | | ୭,୯୦୦ |
| | | | ୧୯୭୫ | | |
| | | ୭,୯୦୦ | ଜାନୁଆରୀ-୧ | ପୂର୍ବବାକୀ ବାବଦ | ୭,୯୦୦ |

ଉପରୋକ୍ତ ଦୃଷ୍ଟାନ୍ତରେ ଏହା ଅନୁମାନ କରାଯାଇଛି ଯେ ଅଂଶୀଦାରଙ୍କର ମୂଳଧନ ପରିବର୍ତ୍ତନଶୀଳ ଅଟେ ; ଅପର ପକ୍ଷରେ ଯଦି ଅଂଶୀଦାରଙ୍କର ମୂଳଧନ ସ୍ଥିର ହୋଇଥାଏ, ତାହାହେଲେ ଅଂଶୀଦାରଙ୍କର ମୂଳଧନ ବର୍ଷ ଆରମ୍ଭରେ ଯାହା ଥିଲା ବର୍ଷ ଶେଷରେ ମଧ୍ୟ ତାହାହିଁ ରହିବ । ମୂଳଧନର ସୁଧ ଓ ଲାଭର ଅଂଶ ମୂଳଧନ ହିସାବ ପରିବର୍ତ୍ତେ ଅଂଶୀଦାରଙ୍କର ଚଳନ୍ତି ହିସାବରେ ଅନ୍ତର୍ଭୁକ୍ତ ହେବ ।

## (୧) ଉଠାଣ ବାବଦ ସୁଧ (Interest on Drawings)

ଉଠାଣ ଉପରେ ସୁଧ ଯେ ମୂଳଧନ ଉପରେ ସୁଧଠାରୁ ସମ୍ପୂର୍ଣ୍ଣ ପୃଥକ ଏହା କହିବା ବାହୁଲ୍ୟ ମାତ୍ର । ମୂଳଧନ ଉପରେ ସୁଧ ଦେବାର ବ୍ୟବସ୍ଥା ଥିଲେ ଯେ ସ୍ୱତଃସିଦ୍ଧ ଭାବରେ ଉଠାଣ ଉପରେ ସୁଧ ଆଦାୟ କରାଯିବ ଏପରି ନୁହେଁ । ଏଥିନିମନ୍ତେ ଅଂଶୀଦାରୀ ଚୁକ୍ତିରେ ସର୍ତ୍ତ ଥିବା ଆବଶ୍ୟକ ଅଥବା ଅଂଶୀଦାରମାନଙ୍କର ସମ୍ମତି ଥିବା ଆବଶ୍ୟକ । ସାଧାରଣତଃ ଯେଉଁଠାରେ ଅଂଶୀଦାରମାନେ ଅଂଶୀଦାରୀ କାରବାରରୁ ସମପରିମାଣରେ ଅର୍ଥ ଉଠାନ୍ତି ସେ କ୍ଷେତ୍ରରେ ଅଂଶୀଦାରମାନେ ଉଠାଣ ଉପରେ ସୁଧ ଆଦାୟ କରିବା ସକାଶେ ସମ୍ମତ ହୋଇ-ପାରନ୍ତି ।

ମୂଳଧନ ଉପରେ ସୁଧ ବ୍ୟବସାୟର ଏକ ବ୍ୟୟ କିନ୍ତୁ ଉଠାଣ ଉପରେ ସୁଧ ବ୍ୟବସାୟର ଏକ ଆୟ । ଅବଶ୍ୟ ଅନ୍ୟାନ୍ୟ ଆୟ ସଦୃଶ ଏହା ଲାଭ ଓ କ୍ଷତି ହିସାବରେ ଅନ୍ତର୍ଭୁକ୍ତ ନ ହୋଇ ଲାଭ ଓ କ୍ଷତି ବଣ୍ଟନ ହିସାବରେ ପ୍ରକାଶିତ ହୁଏ । ଏଥିନିମନ୍ତେ ନିମ୍ନ-ଲିଖିତ ଜାବ୍‌ଦା ସାହାଯ୍ୟରେ ସମାଯୋଜନ ଆବଶ୍ୟକ ହୁଏ :

ଅଂଶୀଦାରଙ୍କର ମୂଳଧନ ହିସାବ/ଚଳନ୍ତି ହିସାବ ଦାୟୀ

ଲାଭ ଓ କ୍ଷତି ବଣ୍ଟନ ହିସାବ ବାବଦ

(ଅଂଶୀଦାରୀ ଚୁକ୍ତି ଅନୁଯାୟୀ ଅଂଶୀଦାରଙ୍କର ଉଠାଣ ଉପରେ ଶତକଡ଼ା ବାର୍ଷିକ ···ହାରରେ ସୁଧ ସମାଯୋଜିତ ହେଲା)

ଉଠାଣ ଉପରେ ସୁଧ ନିର୍ଣ୍ଣୟ କରିବା କଷ୍ଟକର ହୁଏ କାରଣ ଅଂଶୀଦାରମାନେ ମାସର ଯେକୌଣସି ତାରିଖରେ ଏହା ଉଠାଇ ପାରନ୍ତି, ତେଣୁ ସୁଧ ନିର୍ଣ୍ଣୟ କରିବା ସକାଶେ ପୂର୍ବ ବର୍ଣ୍ଣିତ ଗୁଣଫଳ ପଦ୍ଧତି ବ୍ୟବହୃତ ହୁଏ ।

ଅନେକ ସମୟରେ ପ୍ରଶ୍ନରେ ଉଠାଣର ତାରିଖ ଦିଆଯାଇ ନ ଥାଏ । ସେପରି କ୍ଷେତ୍ରରେ ଉଠାଣ ପରିମାଣର ଅର୍ଦ୍ଧେକ ଟଙ୍କା ଉପରେ ପ୍ରଦତ୍ତ ହାରରେ ସୁଧ କଷାଯାଏ । ଯେପରି ଅଂଶୀଦାରଙ୍କର ବାର୍ଷିକ ଉଠାଣ ପରିମାଣ ଯଦି ୮୦୦ ଟଙ୍କା ହୋଇଥାଏ ଏବଂ

କେଉଁ ମାସରେ କେତେ ଟଙ୍କା ଅଂଶୀଦାର ଉଠାଉଛନ୍ତି ତାହାର ଯଦି କୌଣସି ଉଲ୍ଲେଖ ନ ଥାଏ, ତାହାହେଲେ ନିର୍ଦ୍ଦିଷ୍ଟ ହାରରେ ୬ ମାସ ସକାଶେ ସୁଧ କଷାଯିବ । ଯଦି ଅଂଶୀଦାରମାନେ ମାସର ଶେଷ ତାରିଖରେ ଟଙ୍କା ଉଠାଇଥାଆନ୍ତି ତାହାହେଲେ ୫ ୧/୨ ମାସ ସକାଶେ ସୁଧ କଷାଯିବ ।

### (୩) ଅଂଶୀଦାରଙ୍କ ବେତନ

କେତେକ ଅଂଶୀଦାରୀ କାରବାରରେ ସବୁ ଅଂଶୀଦାରଙ୍କର ପ୍ରତିନିଧି ସ୍ୱରୂପ ଜଣେ ଅଂଶୀଦାର କାରବାର ପରିଚାଳନା କରିପାରନ୍ତି । ସେପରି କ୍ଷେତ୍ରରେ ତାଙ୍କୁ କାର୍ଯ୍ୟକାରକ ଅଂଶୀଦାର ବୋଲି କୁହାଯାଏ ଏବଂ ତାଙ୍କର ଅଧିକା କାର୍ଯ୍ୟ ସକାଶେ ପାରିଶ୍ରମିକ ସ୍ୱରୂପ ମାସିକ ବେତନ ମଧ୍ୟ ଦିଆଯାଏ । ଅଂଶୀଦାରୀ ଚୁକ୍ତିରେ ଏଥିନିମନ୍ତେ ଏକ ସର୍ତ୍ତ ରହିବା ଆବଶ୍ୟକ । କାରବାରର ଏହା ଏକ ବ୍ୟୟ । ଯେହେତୁ ଏହା ଅଂଶୀଦାରଙ୍କର ଲାଭାଂଶ ବଣ୍ଟନର ଏକ ଅଙ୍ଗ ରୂପେ ଧରାଯାଏ, ତେଣୁ ଅଂଶୀଦାରଙ୍କୁ ଦେୟ ବେତନ ଅଥବା ଭତ୍ତା (Allowance) ଲାଭ ଓ କ୍ଷତି ବଣ୍ଟନ ହିସାବରେ ଅନ୍ତର୍ଭୁକ୍ତ ହୁଏ । ଏହାକୁ ହିସାବଭୁକ୍ତ କରିବା ସକାଶେ ଏକ ସମାଯୋଜନକାରୀ ଜାବଦା ପ୍ରସ୍ତୁତ କରିବା ଆବଶ୍ୟକ ହୁଏ । ଏହି ଜାବଦା ନିମ୍ନପ୍ରକାରର ହୋଇଥାଏ ।

ଲାଭ ଓ କ୍ଷତି ବଣ୍ଟନ ହିସାବ ଦାୟୀ
ଅଂଶୀଦାରଙ୍କର ମୂଳଧନ ହିସାବ/ଚଳନ୍ତି ହିସାବ ବାବଦ

(ଅଂଶୀଦାରୀ ଚୁକ୍ତି ଅନୁଯାୟୀ ମାସିକ···ହାରରେ ଅଂଶୀଦାରଙ୍କର ବେତନ ହିସାବଭୁକ୍ତ କରାଗଲା) ।

### (୪) ଲାଭ ଓ କ୍ଷତିର ଅଂଶ ବଣ୍ଟନ (Sharing in profits and Losses)

ଲାଭ ଓ କ୍ଷତି ବଣ୍ଟନ ହିସାବରେ ଉଠାଣର ସୁଧ, ଅଂଶୀଦାରଙ୍କୁ ଦେୟ ମୂଳଧନ ଉପରେ ସୁଧ, ଅଂଶୀଦାରଙ୍କର ବେତନ/ଭତ୍ତା ସମାଯୋଜିତ ହେଲାପରେ ଲାଭ ଓ କ୍ଷତି ବଣ୍ଟନ ହିସାବରେ ଯାହା ଅବଶିଷ୍ଟ ରହେ, ତାହା ଲାଭ ହେଉ ଅଥବା କ୍ଷତି ହେଉ, ତାହା ଅଂଶୀଦାରୀ ଚୁକ୍ତି ଅନୁଯାୟୀ ଅଂଶୀଦାରଙ୍କ ମଧ୍ୟରେ ବଣ୍ଟନ କରାଯାଏ । ଏଠାରେ ସ୍ମରଣ ରଖିବାକୁ ହେବ ଯେ, ଲାଭ ଓ କ୍ଷତି ବଣ୍ଟନର ଅନୁପାତ ଯଦି ଅଂଶୀଦାରୀ ଚୁକ୍ତିରେ ଉଲ୍ଲିଖିତ ନ ଥାଏ ତାହାହେଲେ ଅଂଶୀଦାରମାନେ ଲାଭ ଅଥବା କ୍ଷତିକୁ ସମାନ ଅଂଶରେ ବାଣ୍ଟି ନେବେ । ଏହାକୁ ହିସାବଭୁକ୍ତ କରିବା ସକାଶେ ନିମ୍ନଲିଖିତ ଜାବଦା ଆବଶ୍ୟକ ହେବ :

| | |
|---|---|
| ଲଭ ଓ କ୍ଷତି ବଣ୍ଟନ ହିସାବ | ଦାୟୀ |
| ଅଂଶୀଦାରଙ୍କର ମୂଳଧନ ହିସାବ | |
| ଚଳନ୍ତି ହିସାବ ବାବଦ | |
| (ଅଂଶୀଦାରୀ ଚୁକ୍ତି ଅନୁଯାୟୀ ଅଂଶୀଦାର ଲଭର···ଅଂଶ ପାଇଲେ ) | |

କେତେକ ସମୟରେ ଅଂଶୀଦାରମାନଙ୍କର ଲଭ ବଣ୍ଟନର ଅନୁପାତ ମୂଳଧନର ଅନୁପାତ ଅନୁଯାୟୀ ହୋଇଥାଏ । ଏହାକୁ ମୂଳଧନ ହାର କୁହାଯାଏ । ଯେତେବେଳେ ଅଂଶୀଦାରଙ୍କର ମୂଳଧନ ସ୍ଥିର ଥାଏ ସେତେବେଳେ ଲଭ ବଣ୍ଟନର ଅନୁପାତ ନିର୍ଣ୍ଣୟ କରିବା ଆଦୌ କଷ୍ଟକର ହୁଏ ନାହିଁ । କେବଳ ଯେତେବେଳେ କୌଣସି ଅଂଶୀଦାର ବର୍ଷ ମଧ୍ୟରେ ଅଧିକା ମୂଳଧନ ବିନିଯୋଗ କରନ୍ତି ସେତେବେଳେ ଅନୁପାତ ନିର୍ଣ୍ଣୟ କରିବା ସକାଶେ ବର୍ଷର ଆରମ୍ଭରୁ ଯେତେ ମୂଳଧନ ଥିଲା ତାହା ସହିତ ୧୨ (ମାସ) ଗୁଣ କରାଯିବ ଏବଂ ଅଧିକା ମୂଳଧନ ଯେଉଁ ମାସରେ ବିନିଯୁକ୍ତ ହୋଇଛି ସେହି ମାସଠାରୁ ବର୍ଷ ଶେଷ ପର୍ଯ୍ୟନ୍ତ ଯେତେ ମାସ ସେହି ସଂଖ୍ୟା ସହିତ ଅଧିକା ମୂଳଧନ ପରିମାଣକୁ ଗୁଣ କରାଯିବ । ଉଭୟ ଗୁଣଫଳକୁ ଯୋଗ କରି ୧୨ ଦ୍ୱାରା ଭାଗ କରାଗଲେ ଭାଗଫଳ ଯାହା ହେବ ତାହା ହିଁ ତାଙ୍କର ହାରାହାରି ମୂଳଧନ ବୋଲି ଧରାଯିବ । ଏହାର ଏକ ଉଦାହରଣ ନିମ୍ନରେ ପ୍ରଦତ୍ତ ହେଲା ।

ମନେକର କ ଙ୍କର ବର୍ଷ ଆରମ୍ଭରୁ ଗୋଟିଏ ଅଂଶୀଦାରୀ କାରବାରରେ ୬,୦୦୦ ଟଙ୍କା ମୂଳଧନ ଥିଲା । ସେ ଅପ୍ରେଲ ୧ ତାରିଖରେ ଅଧିକା ୨,୦୦୦ ଟଙ୍କା ମୂଳଧନ ସ୍ୱରୂପ ବ୍ୟବସାୟରେ ବିନିଯୋଗ କଲେ । ତାହାହେଲେ ତାଙ୍କର ହାରାହାରି ମୂଳଧନ

$$(୬,୦୦୦ \times ୧୨)+(୨,୦୦୦ \times ୯) \div ୧୨$$
$$=(୭୨,୦୦୦+୧୮,୦୦୦) \div ୧୨$$
$$=୯୦,୦୦୦ \div ୧୨$$
$$=୭,୫୦୦ \text{ ଟଙ୍କା ହେବ ।}$$

ଯେତେବେଳେ ଅଂଶୀଦାରୀ କାରବାରରେ ପରିବର୍ତ୍ତନଶୀଳ ମୂଳଧନ ପଦ୍ଧତି ଅନୁସୃତ ହୁଏ ସେ କ୍ଷେତ୍ରରେ ଯଦି ଲଭ ବଣ୍ଟନର ଅନୁପାତ ମୂଳଧନ ଭିତ୍ତିରେ ସ୍ଥିରୀକୃତ ହେବା ସକାଶେ ଚୁକ୍ତି ଅନୁଷ୍ଠିତ ହୋଇଥାଏ, ତାହାହେଲେ ହାରାହାରି ମୂଳଧନ ଅନୁପାତ ନିର୍ଣ୍ଣୟ କରିବା ଅତ୍ୟନ୍ତ କଷ୍ଟକର ହୁଏ । ସେପରି ସ୍ଥଳେ ବର୍ଷ ଆରମ୍ଭ ଅଥବା ବର୍ଷ ଶେଷର ମୂଳଧନ ଅନୁଯାୟୀ ଏହି ଅନୁପାତ ସ୍ଥିର କରାଯିବ, ସେ ବିଷୟରେ ସାଧାରଣତଃ ନିର୍ଦ୍ଦେଶ ଥାଏ । ସେପରି କୌଣସି ନିର୍ଦ୍ଦେଶ ନ ଥିଲେ ଯେ କୌଣସିଟିକୁ ଭିତ୍ତି କରି ଅନୁପାତ ନିର୍ଣ୍ଣୟ କରାଯିବ ଓ ସେ ବିଷୟରେ ଏକ ମନ୍ତବ୍ୟ ଦେଇ ଦିଆ ଆବଶ୍ୟକ । ଯେହେତୁ ପରିବର୍ତ୍ତନଶୀଳ ମୂଳଧନ ପଦ୍ଧତି ଅନୁଯାୟୀ କୌଣସି ଅଂଶୀଦାରଙ୍କର ମୂଳଧନ ଆଦୌ ନ ଥାଇପାରେ

ଅଥବା ତାଙ୍କର ମୂଳଧନ ହିସାବର ଉଦ୍‌ବୃତ୍ତ ଦାୟୀ ହୋଇପାରେ । ସେପରି କ୍ଷେତ୍ରରେ ମୂଳଧନର ହାରାହାରି ଅନୁପାତ ସ୍ଥିର କରିବା ଏକ ଜଟିଳ ସମସ୍ୟା ହୋଇଥାଏ । ଅବଶ୍ୟ ଏପରି ପରିସ୍ଥିତି କ୍ୱଚିତ୍ ଦେଖାଯାଏ ।

ଅନ୍ୟ ଗୋଟିଏ ବିଷୟ ସକାଶେ ଯଦିଓ ଲାଭ ଓ କ୍ଷତି ବଣ୍ଟନ ହିସାବରେ କୌଣସି ସମାଯୋଜନ ଆବଶ୍ୟକ ହୁଏ ନାହିଁ, ତଥାପି ଅଂଶୀଦାରଙ୍କର ମୂଳଧନ/ଚଳନ୍ତି ହିସାବରେ ସମାଯୋଜନ ଆବଶ୍ୟକ ହୁଏ । ତାହା ହେଉଛି ଅଂଶୀଦାରମାନଙ୍କଦ୍ୱାରା ବ୍ୟବସାୟକୁ ପ୍ରଦତ୍ତ ଋଣ ଅଥବା ଅଗ୍ରିମ ଅର୍ଥ ଉପରେ ସୁଧ (Interest on Partners' Loans and Advances ) ।

ଅଂଶୀଦାରଙ୍କର ମୂଳଧନ ଉପରେ ସୁଧ ଦିଆଯିବା ବିଷୟ ଅଂଶୀଦାରୀ ଚୁକ୍ତିରେ ଉଲ୍ଲିଖିତ ହୋଇଥାଏ । ଯଦି ଏ ସମ୍ବନ୍ଧରେ କୌଣସି ଉଲ୍ଲେଖ ନ ଥାଏ ତାହାହେଲେ ଅଂଶୀଦାରମାନେ ମୂଳଧନ ଉପରେ ସୁଧ ଦାବି କରିପାରନ୍ତି ନାହିଁ । କିନ୍ତୁ ଯଦି କୌଣସି ଅଂଶୀଦାର ବ୍ୟବସାୟକୁ କିଛି ଅର୍ଥ ଋଣ ସ୍ୱରୂପ ଅଥବା ଅଗ୍ରିମ ଦେଇଥାଆନ୍ତି ସେପରି ଅର୍ଥ ଉପରେ ସୁଧ ଦେବା ବାଧ୍ୟତାମୂଳକ । ଏହା ଅଂଶୀଦାରୀ କାରବାରର ଲାଭ ଉପରେ ଏକ ପ୍ରଭାର (Charge against Profit) ରୂପେ ବିବେଚିତ ହୁଏ । ଯଦି ଏପରି ସୁଧର ହାର ସମ୍ପର୍କରେ ଅଂଶୀଦାରୀ ଚୁକ୍ତିରେ କୌଣସି ସର୍ତ୍ତ ନ ଥାଏ ତାହାହେଲେ ଏହି ଅର୍ଥ ପରିମାଣ ଉପରେ ଭାରତୀୟ ଅଂଶୀଦାରୀ ଆଇନ (୧୯୩୨) ଅନୁଯାୟୀ ୬% ହାରରେ ସୁଧ ଦିଆଯିବ ।

## ଦୃଷ୍ଟାନ୍ତ (୪)

୧୯୭୪ ମସିହା ଜାନୁୟାରୀ ୧ ତାରିଖରେ ବିଶ୍ୱଜିତ୍ ଓ ରଣଜିତ୍ ଗୋଟିଏ ଅଂଶୀଦାରୀ କାରବାର ଆରମ୍ଭ କଲେ । ମୂଳଧନ ବାବଦ ବିଶ୍ୱଜିତ୍ ୧୨,୦୦୦ ଓ ରଣଜିତ୍ ୮,୦୦୦ ଟଙ୍କା ବିନିଯୋଗ କଲେ । ସେମାନେ ମୂଳଧନ ଉପରେ ଶତକଡ଼ା ବାର୍ଷିକ ୫ ହାରରେ ସୁଧ ପାଇବେ ଓ ତାଙ୍କର ଉଠାଣ ଉପରେ ସେହି ହାରରେ ସୁଧ ଦେବେ । ରଣଜିତ୍ ମାସିକ ୨୦୦ ଟଙ୍କା ହାରରେ ବେତନ ପାଇବେ । ବର୍ଷ ମଧ୍ୟରେ ବିଶ୍ୱଜିତ୍ ୩,୬୦୦ ଟଙ୍କା ଓ ରଣଜିତ୍ ୨,୪୦୦ ଟଙ୍କା ଉଠାଇ ନେଇଥିଲେ । ସେମାନେ ଲାଭ ବା କ୍ଷତିକୁ ୨ : ୧ ଅନୁପାତରେ ଭାଗ କରି ନେବେ । ସମାଯୋଜନ ପୂର୍ବରୁ ବର୍ଷ ଶେଷରେ ତାଙ୍କର ନିଟ୍ ଲାଭର ପରିମାଣ ୯,୮୫୦ ଟଙ୍କା ଥିଲା । ସେମାନେ କିପରି ଭାବରେ ଲାଭ ବଣ୍ଟନ କରିବେ ତାହା ଦର୍ଶାଅ ଏବଂ ଅଂଶୀଦାରମାନଙ୍କର ମୂଳଧନ ହିସାବ ମଧ୍ୟ ପ୍ରସ୍ତୁତ କର । (କ) ପରିବର୍ତ୍ତନଶୀଳ ମୂଳଧନ ପଦ୍ଧତି ଅନୁଯାୟୀ ଓ (ଖ) ସ୍ଥିର ମୂଳଧନ ପଦ୍ଧତି ଅନୁଯାୟୀ ଅଂଶୀଦାରମାନଙ୍କର ମୂଳଧନ ହିସାବ ରଖାଯାଏ ଏହା ଅନୁମାନ କରି ହିସାବଗୁଡ଼ିକ ପ୍ରସ୍ତୁତ କର ।

## ସମାଧାନ

ଲାଭ ବଣ୍ଟନ

ଦାୟୀ ଲାଭ ଓ କ୍ଷତି ବଣ୍ଟନ ହିସାବ ଦାତା

| | | | ଟଙ୍କା | | | | ଟଙ୍କା |
|---|---|---|---|---|---|---|---|
| ୧୯୭୪ ଡିସେ-୩୧ | ରଞ୍ଜିତଙ୍କ ବେତନ ବାବଦ | | ୨,୪୦୦ | ୧୯୭୪ ଡିସେ-୩୧ | ନିଟ ଲାଭ ବାବଦ | | ୯,୮୫୦ |
| | ମୂଳଧନ ଉପରେ ସୁଧ ବାବଦ | | | | ଉଠାଣ ଉପରେ ସୁଧ ବାବଦ | | |
| | ବିଶ୍ୱଜିତ | ୬୦୦ | | | ବିଶ୍ୱଜିତ | ୯୦ | |
| | ରଞ୍ଜିତ | ୪୦୦ | ୧,୦୦୦ | | ରଞ୍ଜିତ | ୬୦ | ୧୫୦ |
| | ଲାଭ ବଣ୍ଟନ ବାବଦ : | | | | | | |
| | ବିଶ୍ୱଜିତ ୨/୩ ଅଂଶ | ୪,୪୦୦ | ୬,୬୦୦ | | | | |
| | ରଞ୍ଜିତ ୧/୩ ଅଂଶ | ୨,୨୦୦ | | | | | |
| | | | ୧୦,୦୦୦ | | | | ୧୦,୦୦୦ |

(କ) ମୂଳଧନ : ପରିବର୍ତ୍ତନଶୀଳ

ବିଶ୍ୱଜିତଙ୍କର ମୂଳଧନ ହିସାବ

| | | ଟଙ୍କା | | | ଟଙ୍କା |
|---|---|---|---|---|---|
| ୧୯୭୪ ଡିସେ-୩୧ | ଉଠାଣ ବାବଦ | ୩,୬୦୦ | ୧୯୭୪ ଜାନୁ-୧ | ବ୍ୟାଙ୍କ ହିସାବ ବାବଦ | ୧୨,୦୦୦ |
| | ଉଠାଣର ସୁଧ ବାବଦ | ୯୦ | ଡିସେ-୩୧ | ମୂଳଧନର ସୁଧ ବାବଦ | ୬୦୦ |
| | ବାକି ଗଡ଼ିଲ | ୧୩,୩୧୦ | | ଲାଭ ଓ କ୍ଷତି ବଣ୍ଟନ ହିସାବ ବାବଦ ଲାଭର ୨/୩ ଅଂଶ | ୪,୪୦୦ |
| | | ୧୭,୦୦୦ | | | ୧୭,୦୦୦ |
| | | | ୧୯୭୫ ଜାନୁ-୧ | ପୂର୍ବ ବାକି ବାବଦ | ୧୩,୩୧୦ |

ରଞ୍ଜିତଙ୍କର ମୂଳଧନ ହିସାବ

| | | ଟଙ୍କା | | | ଟଙ୍କା |
|---|---|---|---|---|---|
| ୧୯୭୪ ଡିସେ-୩୧ | ଉଠାଣ ବାବଦ | ୨,୪୦୦ | ୧୯୭୪ ଜାନୁ-୧ | ବ୍ୟାଙ୍କ ହିସାବ ବାବଦ | |
| | ଉଠାଣର ସୁଧ ବାବଦ | ୬୦ | | ନବତନ ହିସାବ ବାବଦ | ୮,୦୦୦ |
| | ବାକି ଗଡ଼ିଲ | ୧୦,୫୪୦ | ଡିସେ-୩୧ | ମୂଳଧନର ସୁଧ ବାବଦ | ୨,୪୦୦ |
| | | | | ଲାଭ ଓ କ୍ଷତି ବଣ୍ଟନ ବାବଦ | ୪୦୦ |
| | | | | ଲାଭର ୧/୩ ଅଂଶ | ୨,୨୦୦ |
| | | ୧୩,୦୦୦ | | | ୧୩,୦୦୦ |
| | | | ୧୯୭୫ ଜାନୁ-୧ | ପୂର୍ବ ବାକି ବାବଦ | ୧୦,୫୪୦ |

(ଖ) ସ୍ଥିର ମୂଳଧନ

### ବିଶ୍ୱଜିତ୍‌ଙ୍କର ମୂଳଧନ ହିସାବ

| | | | | | |
|---|---|---|---|---|---|
| ୧୯୭୪ ଡିସେ-୩୧ | ବାକି ଗଡ଼ିଲ | ୧୨,୦୦୦ | ୧୯୭୪ ଜାନୁ-୧ | ବ୍ୟାଙ୍କ୍ ହିସାବ ବାବଦ | ୧୨,୦୦୦ |
| | | | ୧୯୭୫ ଜାନୁ-୧ | ପୂର୍ବ ବାକି ବାବଦ | ୧୨,୦୦୦ |

### ବିଶ୍ୱଜିତ୍‌ଙ୍କର ଚଳନ୍ତି ହିସାବ

ଦାୟୀ | ଦାତା

| | | ଟଙ୍କା | | | ଟଙ୍କା |
|---|---|---|---|---|---|
| ୧୯୭୪ ଡିସେ-୩୧ | ଉଠାଣ ବାବଦ | ୩,୬୦୦ | ୧୯୭୪ ଡିସେ-୩୧ | ମୂଳଧନର ସୁଧ ବାବଦ | ୬୦୦ |
| | ଉଠାଣରେ ସୁଧ ବାବଦ | ୯୦ | | ଲାଭ ଓ କ୍ଷତି ବଣ୍ଟନ ହି ବାବଦ | |
| | ବାକି ଗଡ଼ିଲ | ୧,୩୧୦ | | ଲାଭର ୩/୫ ଅଂଶ | ୪,୪୦୦ |
| | | ୫,୦୦୦ | | | ୫,୦୦୦ |
| | | | ୧୯୭୫ ଜାନୁ-୧ | ପୂର୍ବ ବାକି ବାବଦ | ୧,୩୧୦ |

### ରବୀନ୍ଦ୍ରଙ୍କର ମୂଳଧନ ହିସାବ

| | | ଟଙ୍କା | | | ଟଙ୍କା |
|---|---|---|---|---|---|
| ୧୯୭୪ ଡିସେ-୩୧ | ବାକି ଗଡ଼ିଲ | ୮,୦୦୦ | ୧୯୭୪ ଜାନୁ-୧ | ବ୍ୟାଙ୍କ୍ ହିସାବ ବାବଦ | ୮,୦୦୦ |
| | | | ୧୯୭୫ ଜାନୁ-୧ | ପୂର୍ବ ବାକି ବାବଦ | ୮,୦୦୦ |

ରଣଜିତଙ୍କର ଚଳନ୍ତି ହିସାବ

| | | ଟଙ୍କା | | | ଟଙ୍କା |
|---|---|---|---|---|---|
| ୧୯୭୪ | ଉଠାଣ ବାବଦ | ୨,୪୦୦ | ୧୯୭୪ | ମୂଳଧନର ସୁଧ ବାବଦ | ୪୦୦ |
| ଡିସେ-୩୧ | ଉଠାଣର ସୁଧ ବାବଦ | ୬୦ | ଡିସେ-୩୧ | ବେତନ ବାବଦ | ୨,୪୦୦ |
| | ବାକି ଗଡ଼ିଲ | ୨,୫୪୦ | | ଲଭ ଓ କ୍ଷତ ବଣ୍ଟନ ହି ବାବଦ ଲଭର ⅔ ଅଂଶ | ୨,୨୦୦ |
| | | ୫,୦୦୦ | | | ୫,୦୦୦ |
| | | | ୧୯୭୫ ଜାନୁ-୧ | ପୂର୍ବ ବାକି ବାବଦ | ୨,୫୪୦ |

ମନ୍ତବ୍ୟ : ଅଂଶୀଦାରମାନେ ଯେଉଁ ନିର୍ଦ୍ଦିଷ୍ଟ ମାସରେ ବ୍ୟବସାୟରୁ ଟଙ୍କା ଉଠାଇଛନ୍ତି ତାହା ପ୍ରଶ୍ନରେ ଉକ୍ତ ନ ଥିବା ହେତୁ ପ୍ରତି କ୍ଷେତ୍ରରେ ଉଠାଣ ଉପରେ ସୁଧ ୨/୬ ମାସ ସକାଶେ ହିସାବ କରାଯାଇଛି ।

## ଲଭ ଓ କ୍ଷତ ସମାଯୋଜନ ହିସାବ ( Profit and Loss Adjustment A/C )

କେତେକ ସମୟରେ ଭୁଲବଶତଃ ଅଂଶୀଦାରଙ୍କର ପ୍ରାପ୍ୟ ଦେବା ପୂର୍ବରୁ ଅଥବା ତାଙ୍କଦ୍ୱାରା ଦେୟ କୌଣସି ଅର୍ଥ ହିସାବଭୁକ୍ତ ହେବା ପୂର୍ବରୁ ଲଭ ବା କ୍ଷତ ବଣ୍ଟିତ ହୋଇପାରିଥାଏ । ଉଦାହରଣ ସ୍ୱରୂପ ଅଂଶୀଦାରଙ୍କର ମୂଳଧନ ଉପରେ ସୁଧ ଅଥବା ଅଂଶୀଦାରଙ୍କର ବେତନ ଲଭ ଓ କ୍ଷତ ବଣ୍ଟନ ହିସାବକୁ ନିଆ ନ ଯାଇ ଅଥବା ଉଠାଣ ଉପରେ ସୁଧ ଏହି ହିସାବକୁ ଅଣା ନ ଯାଇ ଲଭ ବା କ୍ଷତ ବଣ୍ଟିତ ହୋଇପାରିଥାଏ । ଯେତେବେଳେ ଏହି ତ୍ରୁଟି ଧରାପଡ଼େ ସେତେବେଳେ ଲଭ ଓ କ୍ଷତ ସମାଯୋଜନ ହିସାବରେ ଏହାର ସଂଶୋଧନ କରାଯାଏ ।

ଅନେକ ସମୟରେ ଅଂଶୀଦାରମାନେ ଏକ ପରବର୍ତ୍ତୀ ସମୟରେ ପୂର୍ବବର୍ତ୍ତୀ ଏକ ନିର୍ଦ୍ଦିଷ୍ଟ ଦିନଠାରୁ ଲଭ ବଣ୍ଟନର ଅନୁପାତ ପରିବର୍ତ୍ତିତ କରିବାକୁ ସ୍ଥିର କରିପାରନ୍ତି । ସେପରି ସ୍ଥଳେ ଏ ପ୍ରକାର ନିଷ୍ପତ୍ତିକୁ କାର୍ଯ୍ୟକାରୀ କରି ମୂଳଧନ ହିସାବର ଉଦ୍‌ବୃତ୍ତ ବା ବାକିକୁ ପରିବର୍ତ୍ତିତ କରିବା ସକାଶେ ମଧ୍ୟ ଏହି ଲଭ ଓ କ୍ଷତ ସମାଯୋଜନ ହିସାବର ସାହାଯ୍ୟ ନେବାକୁ ହୁଏ । ଏହାର କେତେକ ଦୃଷ୍ଟାନ୍ତ ନିମ୍ନରେ ପ୍ରଦତ୍ତ ହେଲା ।

## ଦୃଷ୍ଟାନ୍ତ (୫)

କ, ଖ ଓ ଗ ଗୋଟିଏ ଅଂଶୀଦାରୀ କାରବାରର ଅଂଶୀଦାର । ୧୯୭୪ ମସିହା ଡିସେମ୍ବର ୩୧ ତାରିଖରେ ଲଭ ବଣ୍ଟନ ପରେ ତାଙ୍କର ମୂଳଧନର ପରିମାଣ ଯଥାକ୍ରମେ ୨୦,୦୦୦ ଟଙ୍କା, ୧୬,୦୦୦ ଟଙ୍କା ଓ ୧୨,୦୦୦ ଟଙ୍କା ଥିଲା । ଭୁଲବଶତଃ ମୂଳଧନ ଉପରେ ଶତକଡ଼ା ବାର୍ଷିକ ୫ ହାରରେ ସୁଧ ଯାହା ପାଇବା ସକାଶେ ସେମାନେ ପୂର୍ବରୁ ଚୁକ୍ତି କରିଛନ୍ତି, ତାହା ଲଭ ଓ କ୍ଷତି ବଣ୍ଟନ ହିସାବକୁ ଅଣାଯାଇ ନାହିଁ । ସେହିପରି ଉଠାଣ ଉପରେ ଉକ୍ତ ହାରରେ ସୁଧ ମଧ୍ୟ ହିସାବଭୁକ୍ତ ହୋଇ ନାହିଁ । ବର୍ଷ ମଧ୍ୟରେ କ, ଖ ଓ ଗ ଯଥାକ୍ରମେ ୪,୦୦୦, ୩,୦୦୦ ଓ ୨,୦୦୦ ଟଙ୍କା ବ୍ୟବସାୟରୁ ଉଠାଇ ନେଇଥିଲେ । ଲଭ ବଣ୍ଟନ ପୂର୍ବରୁ ନିଟ୍ ଲଭର ପରିମାଣ ୧୪,୪୦୦ ଟଙ୍କା ଥିଲା । ଅଂଶୀଦାରମାନେ ଲଭର କ ½, ଖ ¼ ଓ ଗ ¼ ଅଂଶ ଭୋଗ କରନ୍ତି ।

ଲଭ ଓ କ୍ଷତି ସମାଯୋଜନ ହିସାବ ଅଂଶୀଦାରମାନଙ୍କର ମୂଳଧନ ହିସାବ ପ୍ରସ୍ତୁତ କର । ମନେକର ଯେ ବର୍ଷ ମଧ୍ୟରେ ଅଂଶୀଦାରମାନେ ଅଧିକା ଅର୍ଥ ବିନିଯୋଗ କରି ନ ଥିଲେ ଏବଂ ପରିବର୍ତ୍ତନଶୀଳ ମୂଳଧନ ପଦ୍ଧତି ଅନୁଯାୟୀ ମୂଳଧନ ହିସାବ ରଖାଯାଏ ।

## ସମାଧାନ

ପ୍ରଶ୍ନରେ ଯେଉଁ ମୂଳଧନ ପରିମାଣ ପ୍ରଦତ୍ତ ହୋଇଛି ତାହା ଅଂଶୀଦାରମାନଙ୍କର ଆଦ୍ୟ ମୂଳଧନ ନୁହେଁ, କାରଣ ତହିଁରୁ ଉଠାଣ ପରିମାଣ ବାଦ୍ ଦିଆଯାଇଛି ଓ ଲଭର ଅଂଶ ଯୋଗ କରାଯାଇଛି । ତେଣୁ ମୂଳଧନର ସୁଧ ନିର୍ଣ୍ଣୟ କରିବା ସକାଶେ ପ୍ରଥମ ମୂଳଧନର ଆଦ୍ୟ ପରିମାଣ ନିରୂପଣ କରିବା ଆବଶ୍ୟକ ।

| | କ | ଖ | ଗ |
|---|---|---|---|
| | ଟଙ୍କା | ଟଙ୍କା | ଟଙ୍କା |
| ବର୍ଷଶେଷର ମୂଳଧନ | ୨୦,୦୦୦ | ୧୬,୦୦୦ | ୧୨,୦୦୦ |
| ମୁକ୍ତ ଉଠାଣ | ୪,୦୦୦ | ୩,୦୦୦ | ୨,୦୦୦ |
| | ୨୪,୦୦୦ | ୧୯,୦୦୦ | ୧୪,୦୦୦ |
| ବିମୁକ୍ତ ଲଭର ଅଂଶ | ୭,୨୦୦ | ୩,୬୦୦ | ୩,୬୦୦ |
| | ୧୬,୮୦୦ | ୧୫,୪୦୦ | ୧୦,୪୦୦ |

## ଲାଭ ଓ କ୍ଷତି ସମାଯୋଜନ ହିସାବ

ଦାସ୍ତା | ଦାତା

| | | ଟଙ୍କା | ଟଙ୍କା | | | ଟଙ୍କା | ଟଙ୍କା |
|---|---|---|---|---|---|---|---|
| ୧୯୭୪ ଡିସେ- ୩୧ | ଅଂଶୀଦାରମାନଙ୍କର ମୂଳଧନ ହିସାବ ବାବଦ ମୂଳଧନର ସୁଧ | | | ୧୯୭୪ ଡିସେ- ୩୧ | ଅଂଶୀଦାରମାନଙ୍କର ମୂଳଧନ ହିସାବ ବାବଦ ଉଠାଣର ସୁଧ | | |
| | କ | ୭୭୧ | | | କ | ୮୦ | |
| | ଖ | ୫୧୬ | | | ଖ | ୬୦ | |
| | ଗ | ୪୧୭ | ୧,୭୦୪ | ୩୧ | ଗ | ୪୦ | ୧୮୦ |
| | | | | | କ୍ଷତି ଅଂଶୀଦାରଙ୍କର ମୂଳଧନ ହିସାବକୁ ସ୍ଥାନାନ୍ତରିତ ହେଲା | | |
| | | | | | କ ½ ଅଂଶ | ୭୬୨ | |
| | | | | | ଖ ¼ ଅଂଶ | ୩୮୧ | |
| | | | | | ଗ ¼ ଅଂଶ | ୩୮୧ | ୧,୫୨୪ |
| | | | | | | | ୧,୭୦୪ |
| | | | ୧,୭୦୪ | | | | |

## କ ଙ୍କର ମୂଳଧନ ହିସାବ

| | | ଟଙ୍କା | | | ଟଙ୍କା |
|---|---|---|---|---|---|
| ୧୯୭୪ ଡିସେ- ୩୧ | ଲାଭ ଓ କ୍ଷତି ସମାଯୋଜନ ହିସାବ ବାବଦ | | ୧୯୭୪ ଡିସେ- ୩୧ | ପୂର୍ବ ବାକି ବାବଦ | ୧୦,୦୦୦ |
| | ଉଠାଣ ଉପରେ ସୁଧ | ୮୦ | | ଲାଭ ଓ କ୍ଷତି ସମାଯୋଜନ ହିସାବ ବାବଦ— ମୂଳଧନର ସୁଧ | ୭୭୧ |
| | କ୍ଷତିର ½ ଅଂଶ | ୭୬୨ | | | ୧୦,୭୭୧ |
| ୩୧ | ବାକି ରହିଲ | ୧୯,୮୩୦ | ୧୯୭୫ ଜାନୁ- ୧ | ପୂର୍ବ ବାକି ବାବଦ | ୧୯,୮୩୦ |
| | | ୧୦,୬୭୧ | | | |

### ଖ ଙ୍କର ମୂଳଧନ ହିସାବ

| | | ଟଙ୍କା | | | ଟଙ୍କା |
|---|---|---|---|---|---|
| ୧୯୭୪ ଡିସେ- ୩୧ | ଲଭ ଓ କ୍ଷତି ସମାଯୋଜନ ହିସାବ ବାବଦ | | ୧୯୭୪ ଡିସେ- ୩୧ | ପୂର୍ବ ବାକୀ ବାବଦ | ୧୬,୦୦୦ |
| | ଉଠାଣ ଉପରେ ସୁଧ | ୬୦ | | ଲଭ ଓ କ୍ଷତି ସମାଯୋଜନ ହିସାବ ବାବଦ— | |
| | କ୍ଷତିର ⅓ ଅଂଶ | ୩୮୧ | | ମୂଳଧନର ସୁଧ | ୬୧୬ |
| ୩୧ | ବାକୀ ଗଡ଼ିଲା | ୧୬,୧୭୫ | | | |
| | | ୧୬,୬୧୬ | | | ୧୬,୬୧୬ |
| | | | ୧୯୭୫ ଜାନୁ- ୧ | ପୂର୍ବ ବାକୀ ବାବଦ | ୧୬,୧୭୫ |

### ଗ ଙ୍କର ମୂଳଧନ ହିସାବ

| | | ଟଙ୍କା | | | ଟଙ୍କା |
|---|---|---|---|---|---|
| ୧୯୭୪ ଡିସେ- ୩୧ | ଲଭ ଓ କ୍ଷତି ସମାଯୋଜନ ହିସାବ ବାବଦ | | ୧୯୭୪ ଡିସେ- | ପୂର୍ବ ବାକୀ ବାବଦ | ୧୨,୦୦୦ |
| | ଉଠାଣ ଉପରେ ସୁଧ | ୪୦ | ୩୧ | ଲଭ ଓ କ୍ଷତି ସମାଯୋଜନ ହିସାବ ବାବଦ— | |
| | କ୍ଷତିର ⅓ ଅଂଶ | ୩୮୧ | ୩୧ | ମୂଳଧନର ସୁଧ | ୪୧୬ |
| ୩୧ | ବାକୀ ଗଡ଼ିଲା | ୧୧,୯୯୫ | | | |
| | | ୧୨,୪୧୬ | | | ୧୨,୪୧୬ |
| | | | ୧୯୭୫ ଜାନୁ- ୧ | ପୂର୍ବ ବାକୀ ବାବଦ | ୧୧,୯୯୫ |

### ଦୃଷ୍ଟାନ୍ତ (୬)

କ, ଖ ଓ ଗ ଗୋଟିଏ ଅଂଶୀଦାରୀ କାରବାରର ସମାନ ଅଂଶୀଦାର । ସେମାନେ ଗତ ଗୃଶ ବର୍ଷ ହେବ ବ୍ୟବସାୟ ଚଳାଇ ଆସୁଛନ୍ତି । ୧୯୭୪ ମସିହା ଜାନୁୟାରୀ ୧ ତାରିଖରେ ସେମାନେ ନିଷ୍ପତ୍ତି ଗ୍ରହଣ କଲେ ଯେ ୧୯୭୧ ମସିହାଠାରୁ ସେମାନେ ୪:୩:୨ ଅନୁପାତରେ ଲଭ ଓ କ୍ଷତି ଭାଗ କରିବେ । ଏହି ଅଂଶୀଦାରୀ କାରବାରର ଲଭ ନିମ୍ନ ପ୍ରକାରେ ଥିଲା, ଯଥା—୧୯୬୯, ୪,୪୦୦ ଟଙ୍କା; ୧୯୭୦, ୬,୩୦୦ ଟଙ୍କା; ୧୯୭୧, ୮,୫୦୦ ଟଙ୍କା; ୧୯୭୨, ୧୦,୪୦୦ ଟଙ୍କା ଓ ୧୯୭୩, ୧୨,୬୦୦ ଟଙ୍କା ।

ନୂତନ ଲଭ ବଣ୍ଟନ ଅନୁପାତକୁ କାର୍ଯ୍ୟକାରୀ କରିବା ସକାଶେ ସମାଯୋଜନକାରୀ ଜାବେଦା ପ୍ରସ୍ତୁତ କର ।

## ସମାଧାନ

| | ଜାବ୍ଦା | ଦାସ୍ତୀ | ଦାତା |
|---|---|---|---|
| | | ଟଙ୍କା | ଟଙ୍କା |
| ୧୯୭୪ ଜାନୁ ୧ | କ ଙ୍କର ମୂଳଧନ ହିସାବ ଦାସ୍ତୀ | ୧୦,୫୦୦ | |
| | ଖ ଙ୍କର ମୂଳଧନ ହିସାବ ଦାସ୍ତୀ | ୧୦,୫୦୦ | |
| | ଗ ଙ୍କର ମୂଳଧନ ହିସାବ ଦାସ୍ତୀ | ୧୦,୫୦୦ | |
| | ଲଭ ଓ କ୍ଷତି ସମାଯୋଜନ ହିସାବ ବାବଦ | | ୩୧,୫୦୦ |
| | (ଲଭ ବଣ୍ଟନର ନୂତନ ଅନୁପାତକୁ କାର୍ଯ୍ୟକାରୀ କରିବା ସକାଶେ ତିନ ବର୍ଷର ଲଭକୁ ପୂର୍ବ ଲଭ ବଣ୍ଟନ ଅନୁପାତରେ ଅଂଶୀଦାରମାନଙ୍କର ମୂଳଧନ ହିସାବକୁ ଦାସ୍ତୀ କରାଗଲ —(୮,୫୦୦+୧୦,୪୦୦+୧୨,୬୦୦) ÷୩=୧୦,୫୦୦ ଟଙ୍କା ) | | |
| ୧ | ଲଭ ଓ କ୍ଷତି ସମାଯୋଜନ ହିସାବ ଦାସ୍ତୀ | ୩୧,୫୦୦ | |
| | କ ଙ୍କର ମୂଳଧନ ହିସାବ ବାବଦ | | ୧୪,୦୦୦ |
| | ଖ ଙ୍କର ମୂଳଧନ ହିସାବ ବାବଦ | | ୧୦,୫୦୦ |
| | ଗ ଙ୍କର ମୂଳଧନ ହିସାବ ବାବଦ | | ୭,୦୦୦ |
| | (ଲଭ ବଣ୍ଟନର ନୂତନ ଅନୁପାତକୁ କାର୍ଯ୍ୟକାରୀ କରିବା ସକାଶେ ୩ ବର୍ଷର ଲଭକୁ ଅଂଶୀଦାର-ମାନଙ୍କର ମୂଳଧନ ହିସାବକୁ ୪ : ୩ : ୨ ଅନୁପାତରେ ଦାତା କରାଗଲ ) | | |

ଏହି ଦୁଇଟି ଜାବ୍‌ଦାକୁ ଯଦି ଗୋଟିଏ ଜାବ୍‌ଦାରେ ପ୍ରକାଶ କରିବା ଆବଶ୍ୟକ ହୁଏ ତାହାହେଲେ ସେହି ଜାବ୍‌ଦାଟି ନିମ୍ନ ପ୍ରକାର ହେବ ।

| | | | ଟଙ୍କା | ଟଙ୍କା |
|---|---|---|---|---|
| ୧୯୭୪ ଜାନୁ-୧ | ଗ ଙ୍କର ମୂଳଧନ ହିସାବ | ଦାୟୀ | ୩,୬୦୦ | |
| | କ ଙ୍କର ମୂଳଧନ ହିସାବ ବାବଦ | | | ୩,୬୦୦ |
| | ( ନୂତନ ଲଭ ବଣ୍ଟନ ଅନୁପାତ ଫଳରେ କ ଲଭ ୧/୮ ଅଂଶ ଅଧିକ ଓ ଗ ୧/୮ ଅଂଶ ଊଣା ପାଉଥିବାରୁ ୩୧,୬୦୦ ଟଙ୍କାର ୧/୮ ଅଂଶ =୩,୬୦୦ ଟଙ୍କା ସକାଶେ ଗ ଙ୍କର ମୂଳଧନ ହିସାବକୁ ଦାୟୀ କରି କ ଙ୍କର ମୂଳଧନ ହିସାବକୁ ଦାତା କରାଗଲା । ) | | | |

ମାତ୍ର ଗୋଟିଏ ଜାବ୍‌ଦା ପ୍ରସ୍ତୁତ କରିବା ପୂର୍ବରୁ ଏକ ସମାଯୋଜନ ବିବରଣୀ ପ୍ରସ୍ତୁତ କରିବା ଆବଶ୍ୟକ । ତାହାର ଏକ ଦୃଷ୍ଟାନ୍ତ ନିମ୍ନରେ ପ୍ରଦତ୍ତ ହେଲା ।

ଦୃଷ୍ଟାନ୍ତ (୭)

ଉପରୋକ୍ତ ଦୃଷ୍ଟାନ୍ତର ପ୍ରଶ୍ନର ଉତ୍ତର ଗୋଟିଏ ଜାବ୍‌ଦାରେ ଦିଅ ।

## ସମାଧାନ

ସମାଯୋଜନ ବିବରଣୀ

| | କ | | ଖ | | ଗ | |
|---|---|---|---|---|---|---|
| | ଦାୟୀ | ଦାତା | ଦାୟୀ | ଦାତା | ଦାୟୀ | ଦାତା |
| | ଟଙ୍କା | ଟଙ୍କା | ଟଙ୍କା | ଟଙ୍କା | ଟଙ୍କା | ଟଙ୍କା |
| ପୂର୍ବ ଅନୁପାତ ଅନୁଯାୟୀ ତିନି ବର୍ଷର ଲଭ ଅଂଶୀଦାରଙ୍କର ମୂଳଧନରୁ ବାଦ ଦିଆଗଲା (୧ : ୧ : ୧) | ୧୦,୫୦୦ | | ୧୦,୫୦୦ | | ୧୦,୫୦୦ | |
| ନୂତନ ଅନୁପାତ ଅନୁଯାୟୀ ତିନି ବର୍ଷର ଲଭ ଅଂଶୀଦାରଙ୍କର ମୂଳଧନ ସହିତ ଯୋଗ କରାଗଲା । (୪ : ୩ : ୨) | | ୧୪,୦୦୦ | | ୧୦,୫୦୦ | | ୭,୦୦୦ |
| ମୋଟ | ୧୦,୫୦୦ | ୧୪,୦୦୦ | ୧୦,୫୦୦ | ୧୦,୫୦୦ | ୧୦,୫୦୦ | ୭,୦୦୦ |
| ନିଟ୍ ପ୍ରତିକ୍ରିୟା | ଦାତା ୩,୫୦୦ ଟଙ୍କା | | କିଛି ନାହିଁ | | ଦାୟୀ ୩,୫୦୦ ଟଙ୍କା | |

ଅତଏବ ଗ ଙ୍କର ମୂଳଧନ ହିସାବକୁ ୩,୫୦୦ ଟଙ୍କା ସକାଶେ ଦାୟୀ ଓ କ ଙ୍କର ମୂଳଧନ ହିସାବକୁ ଦାତା କରାଗଲେ ଗୋଟିଏ ମାତ୍ର ଜାବ୍‌ଦାରେ ନୂତନ ଲଭ ବଣ୍ଟନ ଅନୁପାତକୁ କାର୍ଯ୍ୟକାରୀ କରାଯାଇପାରିବ ।

ଅଂଶୀଦାରମାନଙ୍କ ମୂଳଧନ ଉପରେ ସୁଧ ଦିଆ ନ ଯାଇ ଯଦି ବ୍ୟବସାୟର ଲଭ ବାଣ୍ଟି ଦିଆଯାଇଥାଏ ତାହାହେଲେ ସେହି ତ୍ରୁଟିକୁ ସଂଶୋଧନ କରିବା ସକାଶେ ମଧ୍ୟ ଏହିପରି ସମାଯୋଜନ ବିବରଣୀ ( Memorandum Adjustment Sta ement ) ପ୍ରସ୍ତୁତ କରାଯାଇପାରେ । ଯେତେବେଳେ ଗୋଟିଏ ମାତ୍ର ସମାଯୋଜନ-କାରୀ ଜାବ୍‌ଦା ପ୍ରସ୍ତୁତ କରିବା ଆବଶ୍ୟକ ହୁଏ, କେବଳ ସେତେବେଳେ ଏପରି ବିବରଣୀର ସାହାଯ୍ୟ ନିଆଯାଏ । ଏହାର ଏକ ଦୃଷ୍ଟାନ୍ତ ନିମ୍ନରେ ପ୍ରଦତ୍ତ ହେଲା ।

## ଦୃଷ୍ଟାନ୍ତ ( ୮ )

କ, ଖ ଓ ଗ ଗୋଟିଏ ଅଂଶୀଦାରୀ କାରବାରର ଅଂଶୀଦାର । ସେମାନେ ଲାଭ ଓ କ୍ଷତି ୩ : ୨ : ୧ ଅନୁପାତରେ ଭାଗ କରନ୍ତି । ୧୯୭୩ ମସିହା ଡିସେମ୍ବର ୩୧ ତାରିଖରେ ତାଙ୍କର ମୂଳଧନର ପରିମାଣ ଯଥାକ୍ରମେ ୧୦,୦୦୦ ଟଙ୍କା, ୮,୦୦୦ ଟଙ୍କା ଓ ୬,୦୦୦ ଟଙ୍କା ଥିଲା । ସେମାନେ ବର୍ଷ ମଧ୍ୟରେ ମୂଳଧନ ସ୍ୱରୂପ କୌଣସି ଅଧିକା ଅର୍ଥ ବିନିଯୋଗ କରି ନ ଥିଲେ । ସେମାନେ ବାର୍ଷିକ ୫% ହାରରେ ମୂଳଧନ ଉପରେ ସୁଧ ପାଇବା ସକାଶେ ଚୁକ୍ତି କରିଥିଲେ । ମାତ୍ର ସେମାନେ ଲାଭ ବଣ୍ଟନ କରିବା ପୂର୍ବରୁ ମୂଳଧନ ଉପରେ ସୁଧ ହିସାବ କରିବାକୁ ଭୁଲି ଯାଇଥିଲେ ।

୧୯୭୩ ମସିହାର ଚୂଡ଼ାନ୍ତ ହିସାବ ପ୍ରସ୍ତୁତ ହୋଇ ତାହା ସ୍ୱାକ୍ଷରିତ ହୋଇ-ସାରିଥିବା ଦୃଷ୍ଟିରୁ ୧୯୭୪ ମସିହା ଜାନୁଆରୀ ୧ ତାରିଖରେ ଗୋଟିଏ ମାତ୍ର ଜାବ୍ଦା ସାହାଯ୍ୟରେ ଆବଶ୍ୟକ ସମାଯୋଜନ କରିବାକୁ ହେବ । ସମାଯୋଜନ ବିବରଣୀ ଓ ଜାବ୍ଦା ପ୍ରସ୍ତୁତ କର ।

## ସମାଧାନ

ସମାଯୋଜନ ବିବରଣୀ

| | କ | | ଖ | | ଗ | | ମୋଟ | |
|---|---|---|---|---|---|---|---|---|
| | ଦାୟୀ | ଦାତା | ଦାୟୀ | ଦାତା | ଦାୟୀ | ଦାତା | ଦାୟୀ | ଦାତା |
| | ଟଙ୍କା | ଟଙ୍କା | ଟଙ୍କା | ଟଙ୍କା | ଟଙ୍କା | ଟଙ୍କା | ଟଙ୍କା | ଟଙ୍କା |
| ମୂଳଧନ ଉପରେ ସୁଧ | | ୫୦୦ | | ୪୦୦ | | ୩୦୦ | | ୧,୨୦୦ |
| ସୁଧ ଦିଆଯିବାରୁ ଅଂଶୀଦାରଙ୍କର ମୂଳଧନ ଉପରେ କ୍ଷତିର ଅଂଶ, ୧,୨୦୦ ଟଙ୍କା : (କ $\frac{3}{6}$ ଅଂଶ, ଖ $\frac{2}{6}$ ଅଂଶ ଗ $\frac{1}{6}$ ଅଂଶ) | ୬୦୦ | | ୪୦୦ | | ୨୦୦ | | ୧,୨୦୦ | |
| ମୋଟ | ୬୦୦ | ୫୦୦ | ୪୦୦ | ୪୦୦ | ୨୦୦ | ୩୦୦ | ୧,୨୦୦ | ୧,୨୦୦ |
| ନିଟ୍ ପ୍ରଭାବ | ଦାୟୀ ଟ ୧୦୦ | | କିଛି ନାହିଁ | | ଦାତା ଟ ୧୦୦ | | କିଛି ନାହିଁ | |

ସମାଯୋଜନ ଜାବ୍‌ଦା

| | | ଦାୟୀ | ଦାତା |
|---|---|---|---|
| | | ଟଙ୍କା | ଟଙ୍କା |
| ୧୯୭୪ କ ଙ୍କର ମୂଳଧନ ହିସାବ | ଦାୟୀ | ୧୦୦ | |
| ଜାକୁ- ଗ ଙ୍କର ମୂଳଧନ ହିସାବ ବାବଦ | | | ୧୦୦ |
| (ସମାଯୋଜନ ବିବରଣୀ ଅନୁଯାୟୀ ୧୯୭୩ ମସିହା ସକାଶେ ଅଂଶୀଦାରମାନଙ୍କର ମୂଳଧନ ଉପରେ ୫% ହାରରେ ସୁଧ ସକାଶେ ସମାଯୋଜନ କରାଗଲା । ) | | | |

## ସୁନାମ (Good-will )

ସୁନାମ ହେଉଛି ଗୋଟିଏ ବ୍ୟବସାୟର ସୁଖ୍ୟାତି । ଗୋଟିଏ ବ୍ୟବସାୟ ପ୍ରତିଷ୍ଠାନ କିଛି କାଳ ବ୍ୟବସାୟ ପ୍ରଚଳନ କରିବା ପରେ ଏହି ସୁଖ୍ୟାତି ଅର୍ଜନ କରିପାରେ । ସାଧାରଣତଃ ଏହା ବ୍ୟବସାୟୀଙ୍କ ଅମାୟିକ ବ୍ୟବହାର, କାରବାରରେ ସାଧୁତା, ପଣ୍ୟ ଦ୍ରବ୍ୟର ଉତ୍କୃଷ୍ଟତା ଇତ୍ୟାଦି ଯୋଗୁଁ ଲାଭ କରାଯାଏ । କେତେକ ସମୟରେ ବ୍ୟବସାୟର ଅବସ୍ଥିତି ମଧ୍ୟ ସୁନାମର କାରଣ ହୋଇପାରେ । ଏହି ସୁନାମ ଯୋଗୁଁ କୌଣସି ଗ୍ରାହକ ଥରେ ଗୋଟିଏ ବ୍ୟବସାୟ ପ୍ରତିଷ୍ଠାନରୁ ପଣ୍ୟ କ୍ରୟ କଲେ ସେ ସେହିଠାରୁ ସର୍ବଦା ପଣ୍ୟ କ୍ରୟ କରିବା ନିମନ୍ତେ ଆକୃଷ୍ଟ ହୁଅନ୍ତି । ଏହିପରି ବହୁ ଗ୍ରାହକ ଏକ ନିର୍ଦ୍ଦିଷ୍ଟ ବ୍ୟବସାୟ ପ୍ରତିଷ୍ଠାନରୁ ସେମାନଙ୍କର ଆବଶ୍ୟକ ଦ୍ରବ୍ୟ ଯଦି କ୍ରୟ କରନ୍ତି, ତାହାହେଲେ ସେହି ପ୍ରତିଷ୍ଠାନ କେତେକ ପରିମାଣରେ ବିକ୍ରୟ ସମ୍ବନ୍ଧରେ ନିଶ୍ଚିତ ହୁଅନ୍ତି ଏବଂ ସାଧାରଣ ବ୍ୟବସାୟ ଅପେକ୍ଷା ଅଧିକା ଲାଭ ଅର୍ଜନ କରିବାରେ ସମର୍ଥ ହୁଅନ୍ତି । ସୁନାମ ବ୍ୟବସାୟକୁ ଅତିରିକ୍ତ ଲାଭ ଅର୍ଜନ କରିବାକୁ ସାହାଯ୍ୟ କରେ । ବ୍ୟବସାୟ ପ୍ରତିଷ୍ଠାନକୁ ଏହିପରି ଭାବରେ ସହାୟତା କରୁଥିବାରୁ ଏହାକୁ ଏକ ସମ୍ପତ୍ତି (Asset) ରୂପେ ଗଣ୍ୟ କରାଯାଏ । ଅବଶ୍ୟ ଏହି ସମ୍ପତ୍ତି ଅମୂର୍ତ୍ତ (intangible) ହୋଇଥିବାରୁ ଏହାକୁ ଦେଖାଯାଇପାରେ ନାହିଁ କିମ୍ବା ଏହାକୁ ସ୍ପର୍ଶ ମଧ୍ୟ କରାଯାଇପାରେ ନାହିଁ । କିନ୍ତୁ ତଥାପି ଏହା ଅଳୀକ ବା କାଳ୍ପନିକ ନୁହେଁ, ଏହା ଅଦୃଶ୍ୟ ଭାବରେ ବିଦ୍ୟମାନ ଥାଏ ।

କେତେକ ପରିସ୍ଥିତିରେ ଏହାର ମୂଲ୍ୟ ନିରୂପଣ କରିବା ଆବଶ୍ୟକ ହୁଏ । ଯଦି ଗୋଟିଏ ଚ୍ଛାଲୁ ବା ଚଳନ୍ତି ବ୍ୟବସାୟକୁ ଏହାର ମାଲିକ ବିକ୍ରୟ କରନ୍ତି ତାହାହେଲେ କ୍ରେତାଙ୍କୁ ବ୍ୟବସାୟର ଅନ୍ୟାନ୍ୟ ସମ୍ପତ୍ତି ସଦୃଶ ସୁନାମକୁ ମଧ୍ୟ କ୍ରୟ କରିବାକୁ ପଡ଼େ ।

ଯେତେବେଳେ କୌଣସି ଅଂଶୀଦାରୀ କାରବାରର ଜଣେ ଅଂଶୀଦାର ବ୍ୟବସାୟରୁ ଅବସର ଗ୍ରହଣ କରନ୍ତି ଅଥବା ତାଙ୍କର ମୃତ୍ୟୁ ହୁଏ ସେତେବେଳେ ମଧ୍ୟ ସୁନାମର ମୂଲ୍ୟ ନିରୂପିତ ହୋଇ ତାଙ୍କୁ ଅଥବା ତାଙ୍କର ଉତ୍ତରାଧିକାରୀଙ୍କୁ ଅଂଶୀଦାରଙ୍କର ଲଭ ଓ କ୍ଷତି ଭୋଗ କରିବାର ଅନୁପାତ ଅନୁଯାୟୀ ସୁନାମ ମୂଲ୍ୟର ଅଂଶ ଦିଆଯାଏ । ଯେହେତୁ ଏହି ସୁନାମ ଅର୍ଜନ କରିବାକୁ ସେମାନେ ସାହାଯ୍ୟ କରିଥିଲେ, ତେଣୁ ତାଙ୍କୁ ଏହାର ଭାଗ ଦିଆଯାଏ । ସେହିପରି ଯେତେବେଳେ କୌଣସି ନୂତନ ଅଂଶୀଦାରଙ୍କୁ ଅଂଶୀଦାରୀ କାରବାରରେ ଯୋଗ ଦେବାକୁ ଅନୁମତି ଦିଆଯାଏ ସେତେବେଳେ ମଧ୍ୟ ତାଙ୍କଠାରୁ ସୁନାମ ବାବଦ ଆନୁପାତିକ ମୂଲ୍ୟ ଆଦାୟ କରାଯାଏ ।

ସୁନାମ ସାଧାରଣତଃ ନିମ୍ନଲିଖିତ କେତେଗୋଟି କାରଣ ଯୋଗୁଁ ସୃଷ୍ଟି ହୋଇଥାଏ ।

(୧) ବ୍ୟବସାୟ ପ୍ରତିଷ୍ଠାନର ମାଲିକ ଅଥବା ଏହାର କର୍ମଚାରୀଙ୍କର ଅମାୟିକ, ସାଧୁ ଓ ରୁଚିସମ୍ମତ ବ୍ୟବହାର ।

(୨) ପଣ୍ୟଦ୍ରବ୍ୟର ବୈଶିଷ୍ଟ୍ୟ ବା ଉନ୍ନତ ମାନ ।

(୩) ବ୍ୟବସାୟ ପ୍ରତିଷ୍ଠାନର ଅବସ୍ଥିତି ।

(୪) ବ୍ୟବସାୟ ପ୍ରତିଷ୍ଠାନର ସାଜସଜ୍ଜା ।

(୫) କୌଣସି ପଣ୍ୟଦ୍ରବ୍ୟର ଏକଚାଟିଆ କାରବାର ।

(୬) ପେଶାଗତ ବ୍ୟବସାୟରେ ମାଲିକଙ୍କର ସେହି ପେଶା ବା ବୃତ୍ତିଗତ କ୍ଷେତ୍ରରେ ସୁଖ୍ୟାତି ।

ଏଥି ମଧ୍ୟରୁ କୌଣସି ଏକ ବା ଏକାଧିକ କାରଣ ଯୋଗୁଁ ଗୋଟିଏ ବ୍ୟବସାୟ ପ୍ରତିଷ୍ଠାନ ପ୍ରତି ଗ୍ରାହକମାନେ ଆକୃଷ୍ଟ ହୁଅନ୍ତି ଏବଂ ସେଠାରୁ ପଣ୍ୟଦ୍ରବ୍ୟ ଅଥବା ସେବା କ୍ରୟ କରନ୍ତି । ଏତଦ୍ଵାରା ପ୍ରତିଷ୍ଠାନ କେତେକ ପରିମାଣର ବିକ୍ରୟ ସମ୍ବନ୍ଧରେ ନିଶ୍ଚିତ ହୁଏ ଓ ସେହି ସୂତ୍ରରୁ ବ୍ୟବସାୟର ଲଭ ପରିମାଣ ବୃଦ୍ଧି ପାଏ । ଯେହେତୁ ଏହା ଏକ ବିକ୍ରୟଯୋଗ୍ୟ ସମ୍ପତ୍ତି, ତେଣୁ ଏହାର ମୂଲ୍ୟ ନିର୍ଦ୍ଧାରଣ କରିବା ଆବଶ୍ୟକ । ଏହାର ମୂଲ୍ୟାଙ୍କନର କେତେକ ପଦ୍ଧତି ନିମ୍ନରେ ଆଲୋଚିତ ହେଲା ।

(୧) ହାରାହାରି ଲଭଭିତ୍ତିକ ପଦ୍ଧତି (Average Profit Basis Method)—

ସୁନାମର ମୂଲ୍ୟାଙ୍କନ ନିମନ୍ତେ ସାଧାରଣତଃ ଏହି ପଦ୍ଧତି ବ୍ୟବହୃତ ହୁଏ । ଏହି ପଦ୍ଧତି ଅନୁଯାୟୀ ବ୍ୟବସାୟରେ ଅର୍ଜିତ ନିର୍ଦ୍ଦିଷ୍ଟ କେତେକ ବର୍ଷର ଲଭର ହାରାହାରି ପରିମାଣର କେତେ ଗୁଣକୁ ସୁନାମର ମୂଲ୍ୟରୂପେ ଧାର୍ଯ୍ୟ କରାଯାଏ । ଏହାର ଏକ ଦୃଷ୍ଟାନ୍ତ ନିମ୍ନରେ ପ୍ରଦତ୍ତ ହେଲା ।

## ଦୃଷ୍ଟାନ୍ତ (୧)

ଗୋଟିଏ ଅଂଶୀଦାରି ବ୍ୟବସାୟ ପ୍ରତିଷ୍ଠାନର ନିଟ୍ ଲଭର ପରିମାଣ ୧୯୭୦, ୧୯୭୧ ଓ ୧୯୭୨ ମସିହାରେ ଯଥାକ୍ରମେ ୧୦,୦୦୦ ଟଙ୍କା, ୮,୦୦୦ ଟଙ୍କା ଓ ୧୨,୦୦୦ ଟଙ୍କା ଥିଲା । ଏକ ନୂତନ ଅଂଶୀଦାର ଗ୍ରହଣ କରିବା ସମୟରେ ପୂର୍ବରୁ ଚୁକ୍ତି କରାଯାଇଥିଲା ଯେ ସୁନାମର ମୂଲ୍ୟ ତିନି ବର୍ଷର ହାରାହାରି ଲଭ ପରିମାଣର ଦୁଇ ଗୁଣ ରୂପେ ଧାର୍ଯ୍ୟ କରାଯିବ । ଏହି ବ୍ୟବସାୟ ପ୍ରତିଷ୍ଠାନର ସୁନାମର ମୋଟ ମୂଲ୍ୟ ନିରୂପଣ କର ।

### ସମାଧାନ

$$\frac{(୧୦,୦୦୦\ ଟଙ୍କା + ୮,୦୦୦\ ଟଙ୍କା + ୧୨,୦୦୦\ ଟଙ୍କା) \times ୨}{୩}$$

$$= \frac{୩୦,୦୦୦\ ଟଙ୍କା \times ୨}{୩}$$

$$= \frac{୬୦,୦୦୦\ ଟଙ୍କା}{୩}$$

$= ୨୦,୦୦୦$ ଟଙ୍କା ।

(୨) ଭାରଯୁକ୍ତ ହାରାହାରି ଭିତ୍ତିକ ପଦ୍ଧତି **(Weighted Average Basis Method)** —

ଏହି ପଦ୍ଧତି ଅନୁଯାୟୀ ପ୍ରତି ବର୍ଷର ଲଭ ପରିମାଣକୁ ୧, ୨, ୩, ୪ ପ୍ରଭୃତି ସଂଖ୍ୟାଦ୍ୱାରା ଗୁଣ କରି ଯେଉଁ ଗୁଣଫଳ ମିଳେ ସେହି ସଂଖ୍ୟାଗୁଡ଼ିକର ହାରାହାରି ନିର୍ଣ୍ଣୟ କରାଯାଏ । ସେହି ହାରାହାରି ପରିମାଣର ୨ ଅଥବା ୩ ଗୁଣକୁ ସୁନାମର ମୂଲ୍ୟରୂପେ ପରିଗଣିତ କରାଯାଏ । ଏହା ପ୍ରଥମ ପଦ୍ଧତିର ସାମାନ୍ୟ ସଂଶୋଧିତ ରୂପ ମାତ୍ର । ଯେଉଁ ବ୍ୟବସାୟରେ ଲଭର ପରିମାଣ ପ୍ରତିବର୍ଷ ବୃଦ୍ଧି ପାଉଥାଏ ସେହିଠାରେ ସୁନାମର ମୂଲ୍ୟ ଏହି ପଦ୍ଧତି ଅନୁଯାୟୀ ନିରୂପିତ ହୁଏ । ଏହାର ଏକ ଦୃଷ୍ଟାନ୍ତ ନିମ୍ନରେ ପ୍ରଦତ୍ତ ହେଲା ।

ଦୃଷ୍ଟାନ୍ତ (୧୦)

ଗୋଟିଏ ଅଂଶୀଦାରୀ କାରବାରର ଚୁକ୍ତି ଅନୁଯାୟୀ ସ୍ଥିର ହୋଇଥିଲା ଯେ ଏହି ବ୍ୟବସାୟର ସୁନାମର ମୂଲ୍ୟ ଭାରଯୁକ୍ତ ହାରାହାରିଭିତ୍ତିକ ପଦ୍ଧତି ଅନୁଯାୟୀ ସ୍ଥିରୀକୃତ ହେବ । କ୍ରମାଗତ ଗତ ବର୍ଷର ଲାଭ ସହିତ ଯଥାକ୍ରମେ ୧, ୨, ୩ ଓ ୪ ଗୁଣ କରାଯିବ ଓ ଗୁଣଫଳଗୁଡ଼ିକର ହାରାହାରି ପରିମାଣର ୩ ଗୁଣ ସୁନାମର ମୂଲ୍ୟ ରୂପେ ବିବେଚିତ ହେବ । ୧୯୭୦-୭୩ ବର୍ଷମାନଙ୍କରେ ଏହି ବ୍ୟବସାୟର ନିଟ୍ ଲାଭ ଯଥାକ୍ରମେ ୮,୦୦୦, ୧୦,୦୦୦, ୧୨,୦୦୦ ଓ ୧୬,୦୦୦ ଟଙ୍କା ହୋଇଥିଲା । ସୁନାମର ମୂଲ୍ୟ ନିରୂପଣ କର ।

## ସମାଧାନ

| ବର୍ଷ | ବାର୍ଷିକ ଲାଭ | ଭାର | ଗୁଣଫଳ |
|---|---|---|---|
| | ଟଙ୍କା | | ଟଙ୍କା |
| ୧୯୭୦ | ୮,୦୦୦ | ୧ | ୮,୦୦୦ |
| ୧୯୭୧ | ୧୦,୦୦୦ | ୨ | ୨୦,୦୦୦ |
| ୧୯୭୨ | ୧୨,୦୦୦ | ୩ | ୩୬,୦୦୦ |
| ୧୯୭୩ | ୧୬,୦୦୦ | ୪ | ୬୪,୦୦୦ |
| | | ୧୦ | ୧,୨୮,୦୦୦ |

ସୁତରାଂ ୪ ବର୍ଷର ଭାରଯୁକ୍ତ ହାରାହାରି

$$= \frac{୧,୨୮,୦୦୦}{୧୦} = ୧୨,୮୦୦$$

ସୁତରାଂ ସୁନାମର ମୂଲ୍ୟ ୧୨,୮୦୦ × ୩ = ୩୮,୪୦୦ ଟଙ୍କା

(୩) ଅତି-ଲାଭ-ଭିତ୍ତିକ ପଦ୍ଧତି (Super Profit Method)—

ଯେ କୌଣସି ବ୍ୟବସାୟରେ ଯେତେ ମୂଳଧନ ବିନିଯୋଗ କରାଯାଏ ପ୍ରଚଳିତ ହାରରେ ତାହାର ସୁଧ ଓ ବ୍ୟବସାୟର ମାଲିକ ଯଦି ନିଜେ ବ୍ୟବସାୟ ପରିଚାଳନା କରନ୍ତି ତାହାହେଲେ ତାଙ୍କର ବେତନ ବା ପାରିଶ୍ରମିକର ମୋଟ ପରିମାଣଠାରୁ ବ୍ୟବସାୟର ନିଟ୍ ଲାଭ ଊଣା ହେବା ଉଚିତ ନୁହେଁ । ଏହାକୁ ସ୍ୱାଭାବିକ ଲାଭ (normal profit) କୁହାଯାଇପାରେ । ବ୍ୟବସାୟର ପ୍ରକାରଭେଦ ଓ ଅନିଶ୍ଚିତତା-ଭେଦ ଦୃଷ୍ଟିରୁ ବିଭିନ୍ନ ପ୍ରକାର ବ୍ୟବସାୟଗୋଷ୍ଠୀର ସ୍ୱାଭାବିକ ଲାଭରେ ତାରତମ୍ୟ

ହୋଇପାରେ । ଯଦି ବ୍ୟବସାୟର ଲାଭ ଏହି ସ୍ୱାଭାବିକ ଲାଭ ପରିମାଣଠାରୁ ଊଣା ହୁଏ, ତାହାହେଲେ ଏପରି ବ୍ୟବସାୟରେ କେହି ମୂଳଧନ ବିନିଯୋଗ କରିବେ ନାହିଁ । କିନ୍ତୁ ବ୍ୟବସାୟର ପ୍ରକୃତ ଲାଭ ଯଦି ଏହି ସ୍ୱାଭାବିକ ଲାଭ ପରିମାଣଠାରୁ ଅଧିକ ହୁଏ ତାହାହେଲେ ସେହି ଅଧିକା ଲାଭ ପରିମାଣକୁ ଅତି ଲାଭ କୁହାଯାଏ, ଯାହା ବ୍ୟବସାୟର ସୁନାମ ଯୋଗୁଁ ମିଳୁଛି ବୋଲି ଅନୁମାନ । କେତେକ ନିର୍ଦ୍ଦିଷ୍ଟ ବର୍ଷର ଅତି ଲାଭ ସହିତ ସୁନାମର ମୂଲ୍ୟ ସମାନ ହୋଇଥାଏ । ଏହାର ଏକ ଦୃଷ୍ଟାନ୍ତ ନିମ୍ନରେ ପ୍ରଦତ୍ତ ହେଲା ।

## ଦୃଷ୍ଟାନ୍ତ (୧୧)

ରାମ ଓ ହରି ଗୋଟିଏ ଅଂଶୀଦାରୀ କାରବାରର ଅଂଶୀଦାର । ସେମାନେ ବ୍ୟବସାୟରେ ୨୨,୦୦୦ ଟଙ୍କା ବିନିଯୋଗ କରିଛନ୍ତି । ଏହି ପ୍ରକାର ବ୍ୟବସାୟରେ ସ୍ୱାଭାବିକ ଆୟ ୮% ହେବା ଉଚିତ । ରାମ ଓ ହରି ବ୍ୟବସାୟଟି ନିଜେ ପରିଚାଳନା କରନ୍ତି ଏବଂ ସେମାନେ ମାସିକ ବେତନ ସ୍ୱରୂପ ଯଥାକ୍ରମେ ୪୦୦ ଟଙ୍କା ଓ ୩୦୦ ଟଙ୍କା ପାଇବା ନ୍ୟାଯ୍ୟ ବୋଲି ବିବେଚନା କରନ୍ତି । ୩ ବର୍ଷର ଅଧିଲାଭ ଭିତ୍ତିରେ ବ୍ୟବସାୟର ସୁନାମ ସ୍ଥିରୀକୃତ ହେବ । ବ୍ୟବସାୟର ୫ ବର୍ଷର ହାରାହାରି ଲାଭର ପରିମାଣ ୧୪,୪୦୦ ଟଙ୍କା । ସୁନାମର ମୂଲ୍ୟ ନିରୂପଣ କର ।

**ସମାଧାନ**

| | ଟଙ୍କା |
|---|---|
| ବିନିଯୁକ୍ତ ମୂଳଧନ | ୨୨,୦୦୦ |
| ନ୍ୟାଯ୍ୟ ଆୟ ୨୨,୦୦୦ ଟଙ୍କାର ୮% | ୧,୭୬୦ |
| ଅଂଶୀଦାରଙ୍କର ବାର୍ଷିକ ବେତନ | |
| (୪୦୦+୩୦୦) × ୧୨ | ୮,୪୦୦ |
| ସ୍ୱାଭାବିକ ଲାଭ | ୧୦,୧୬୦ |
| ପ୍ରକୃତ ହାରାହାରି ଲାଭ | ୧୪,୪୦୦ |
| ବିଯୁକ୍ତ ସ୍ୱାଭାବିକ ଲାଭ | ୧୦,୧୬୦ |
| ଅତି ଲାଭ | ୪,୨୪୦ |
| ସୁନାମ ମୂଲ୍ୟ—୪,୨୪୦ ଟଙ୍କା × ୩ | ୧୨,୭୨୦ |

(୮) ମୂଳଧନାୟନ ପଦ୍ଧତି (Capitalisations Method)—

ଏହି ପଦ୍ଧତି ଅନୁଯାୟୀ ବ୍ୟବସାୟର ସ୍ୱାଭାବିକ ଆୟ ଭିତ୍ତିରେ ସମଗ୍ର ବ୍ୟବସାୟର ମୂଲ୍ୟ ନିରୂପଣ କରାଯାଏ ଓ ତହିଁରୁ ବ୍ୟବସାୟର ମୋଟ ସମ୍ପତ୍ତି ବିଯୁକ୍ତ ବହିର୍ଦେୟ

ପରିମାଣ, ଅର୍ଥାତ୍ ନେଟ୍ ମୂଲ୍ୟ ବା ବିନିଯୁକ୍ତ ମୂଳଧନ ବିୟୋଗ କରାଯାଏ । ଏହି ଦୁଇଟିର ବିୟୋଗଫଳ ସୁନାମର ମୂଲ୍ୟ ରୂପେ ବିବେଚିତ ହୁଏ । ଏହାର ଏକ ଦୃଷ୍ଟାନ୍ତ ନିମ୍ନରେ ପ୍ରଦତ୍ତ ହେଲା ।

ଦୃଷ୍ଟାନ୍ତ (୧)

କମଳାକାନ୍ତ ଓ ଶ୍ୟାମାକାନ୍ତ ଗୋଟିଏ ଅଂଶୀଦାରୀ କାରବାରର ଅଂଶୀଦାର । ସେମାନେ ବ୍ୟବସାୟରେ ୨୦,୦୦୦ ଟଙ୍କା ମୂଳଧନ ସ୍ୱରୂପ ବିନିଯୋଗ କରିଛନ୍ତି । ଏହି ପ୍ରକାର ବ୍ୟବସାୟରେ ସେମାନେ ଶତକଡ଼ା ୧୦ ସ୍ୱାଭାବିକ ଆୟ ଆଶା କରନ୍ତି । ୧୯୭୨ ମସିହାରେ ତାଙ୍କର ପ୍ରକୃତ ଲାଭର ପରିମାଣ ୩,୦୦୦ ଟଙ୍କା ହୋଇଥିଲା । ସୁନାମର ମୂଲ୍ୟ ନିରୂପଣ କର ।

## ସମାଧାନ

୧୦ ଟଙ୍କା ସ୍ୱାଭାବିକ ଲାଭ ହେଲେ ମୂଳଧନର ପରିମାଣ ୧୦୦ ଟଙ୍କା ହେବା ଉଚିତ ।

୩,୦୦୦ ଟଙ୍କା ସ୍ୱାଭାବିକ ଲାଭ ହେଲେ ମୂଳଧନର ପରିମାଣ $\frac{୩,୦୦୦ \times ୧୦୦}{୧୦}$

=୩୦,୦୦୦ ଟଙ୍କା ହେବା ଉଚିତ ।

କିନ୍ତୁ ବ୍ୟବସାୟରେ ବିନିଯୁକ୍ତ ହୋଇଥିବା ପ୍ରକୃତ ମୂଳଧନ—୨୦,୦୦୦ ଟଙ୍କା

∴ ସୁନାମର ମୂଲ୍ୟ ୩୦,୦୦୦ ଟଙ୍କା—୨୦,୦୦୦ ଟଙ୍କା=୧୦,୦୦୦ ଟଙ୍କା

(୫) କ୍ରୟ ପ୍ରତିଦାନ ଓ ନେଟ୍ ସମ୍ପତ୍ତିର ଅନ୍ତର ପଦ୍ଧତି (Difference of Purchase Consideration and Net Assets)—

ଗୋଟିଏ ଚଳନ୍ତି ବ୍ୟବସାୟ ଯେତେବେଳେ ବିକ୍ରୟ କରାଯାଏ ସେତେବେଳେ କ୍ରେତା ସାଧାରଣତଃ ବ୍ୟବସାୟର ନେଟ୍ ମୂଲ୍ୟ ଅପେକ୍ଷା କିଛି ଅଧିକ ପରିମାଣ ଦେଇଥାନ୍ତି । ଏହି ଅଧିକା ମୂଲ୍ୟ ହିଁ ସୁନାମର ମୂଲ୍ୟ । ଅବଶ୍ୟ ବ୍ୟବସାୟରୁ ଯଦି ହେଉ ନ ଥାଏ ତାହାହେଲେ କ୍ରେତା ନେଟ୍ ମୂଲ୍ୟଠାରୁ ଊଣା ପରିମାଣ କ୍ରୟ ପ୍ରତିଦାନ ସ୍ୱରୂପ ଦିଅନ୍ତି । ସେପରି କ୍ଷେତ୍ରରେ ଏହା ସୁନାମର ଅଭାବ ବୁଝାଇବ ।

ସୁନାମ ବାବଦ ଯେଉଁ ଅର୍ଥ ମିଳେ ତାହା ସକାଶେ ସୁନାମ ହିସାବକୁ ଡାହାଣ କରାଯାଏ । ମାତ୍ର ଯେଉଁଠାରେ କ୍ରୟ ପ୍ରତିଦାନ ନେଟ୍ ସମ୍ପତ୍ତି ଅପେକ୍ଷା ଊଣା ହୁଏ ସେ

କ୍ଷେତ୍ରରେ ବ୍ୟବଧାନକୁ ମୂଳଧନ ସଞ୍ଚିତ ହିସାବ ( Capital Reserve— A/c ) ରୁ ଦାକ୍ତା କରାଯାଏ । ଏହାର ଦୁଇଟି ଦୃଷ୍ଟାନ୍ତ ନିମ୍ନରେ ପ୍ରଦତ୍ତ ହେଲା ।

### ଦୃଷ୍ଟାନ୍ତ ( ୧୩ )

କରମଗୃନ୍ଥ ସାହୁ ଓ ଦାସଙ୍କର ବ୍ୟବସାୟ ପ୍ରତିଷ୍ଠାନଟି ୮୦,୦୦୦ ଟଙ୍କାରେ କ୍ରୟ କରିବାକୁ ସ୍ୱୀକୃତ ହେଲେ । ସାହୁ ଓ ଦାସଙ୍କର ବ୍ୟବସାୟର ମୋଟ ସମ୍ପତ୍ତିର ମୂଲ୍ୟ ୭୦,୦୦୦ ଟଙ୍କା ଓ ଦେୟର ମୋଟ ପରିମାଣ ୧୫,୦୦୦ ଟଙ୍କା ଥିଲା । କରମଗୃନ୍ଥ ଏହି ଦେୟ ବାବଦ ଟଙ୍କା ମହାଜନଙ୍କୁ ପରିଶୋଧ କରିବେ ବୋଲି ପ୍ରତିଶ୍ରୁତି ମଧ୍ୟ ଦେଲେ । ବ୍ୟବସାୟର ସୁନାମର ମୂଲ୍ୟ ନିରୂପଣ କର ।

## ସମାଧାନ

ବ୍ୟବସାୟର ନିଟ୍ ମୂଲ୍ୟ ୭୦,୦୦୦—୧୫,୦୦୦ ଟଙ୍କା=୫୫,୦୦୦ ଟଙ୍କା

ସୁନାମର ମୂଲ୍ୟ=କ୍ରୟ ପ୍ରତିଦାନ ୮୦,୦୦୦ ଟଙ୍କା—୫୫,୦୦୦ ଟଙ୍କା

=୨୫,୦୦୦ ଟଙ୍କା

### ଦୃଷ୍ଟାନ୍ତ (୧୪)

କରମଗୃନ୍ଥ ସାହୁ ଓ ଦାସଙ୍କର ବ୍ୟବସାୟକୁ ( ଦୃଷ୍ଟାନ୍ତ ୧୩ ) ମୋଟ ୫୦,୦୦୦ ଟଙ୍କାରେ କ୍ରୟ କରିବାକୁ ସ୍ୱୀକୃତ ହେଲେ । ଏହି ନେଣଦେଣଟି ସାହୁ ଓ ଦାସଙ୍କ ବ୍ୟବସାୟ ହିସାବ ଖାତାରେ କିପରି ଲିପିବଦ୍ଧ କରାଯିବ ତାହାର ଜାବ୍ଦା ପ୍ରସ୍ତୁତ କର ।

## ସମାଧାନ

| | | ଟଙ୍କା | ଟଙ୍କା |
|---|---|---|---|
| ସମ୍ପତ୍ତି ହିସାବ | ଦାୟୀ | ୭୦,୦୦୦ | |
| ଦେୟ ହିସାବ ବାବଦ | | | ୧୫,୦୦୦ |
| କରମଗୃନ୍ଥଙ୍କ ହିସାବ ବାବଦ | | | ୫୦,୦୦୦ |
| ମୂଳଧନ ସଞ୍ଚିତ ହିସାବ ବାବଦ | | | ୫,୦୦୦ |
| ( କ୍ରୟ ପ୍ରତିଦାନ ବ୍ୟବସାୟର ନିଟ୍ ମୂଲ୍ୟଠାରୁ ଊଣା ହେବାରୁ ଉଭୟ ପରିମାଣର ପାର୍ଥକ୍ୟ ସକାଶେ ମୂଳଧନ ସଞ୍ଚିତ ହିସାବକୁ ଦାକ୍ତା କରାଗଲା ।) | | | |

ନିମ୍ନଲିଖିତ ପରିସ୍ଥିତିମାନଙ୍କରେ ସୁନାମର ମୂଲ୍ୟ ନିରୂପଣ କରିବା ଆବଶ୍ୟକ ହୁଏ ।

୧ । ଯେତେବେଳେ ଅଂଶୀଦାରମାନଙ୍କ ମଧ୍ୟରେ ଲାଭ ବଣ୍ଟନ କରିବାର ଅନୁପାତ ପରିବର୍ତ୍ତିତ ହୁଏ ।

୨ । ଯେତେବେଳେ ଜଣେ ନୂତନ ଅଂଶୀଦାରକୁ ଅଂଶୀଦାରୀ କାରବାରରେ ଗ୍ରହଣ କରାଯାଏ ।

୩ । ଯେତେବେଳେ କୌଣସି ଅଂଶୀଦାର ଅବସର ଗ୍ରହଣ କରନ୍ତି ଅଥବା ତାଙ୍କର ମୃତ୍ୟୁ ହୁଏ ।

୪ । ଯେତେବେଳେ ଅଂଶୀଦାରୀ କାରବାରର ସମାପନ ହୁଏ ଅଥବା ଏହା ବିକ୍ରିତ ହୁଏ ।

## ୧ । ଯେତେବେଳେ ଅଂଶୀଦାରମାନଙ୍କ ମଧ୍ୟରେ ଲାଭ ବଣ୍ଟନ କରିବାର ଅନୁପାତ ପରିବର୍ତ୍ତିତ ହୁଏ –

ଲାଭ ଭୋଗ କରିବାର ପାରସ୍ପରିକ ଅନୁପାତରେ ଯେତେବେଳେ ପରିବର୍ତ୍ତନ ଘଟେ ସେତେବେଳେ ସ୍ୱାଭାବିକ ଭାବରେ ଜଣେ ଅଂଶୀଦାର ଲାଭବାନ ହୁଅନ୍ତି ଓ ଅନ୍ୟ ଜଣେ କ୍ଷତିଗ୍ରସ୍ତ ହୁଅନ୍ତି । ଉଦାହରଣ ସ୍ୱରୂପ ମନେକର ଯେ ରାମ ଲାଭର $\frac{୨}{୩}$ ଅଂଶ ଓ ହରି $\frac{୧}{୩}$ ଅଂଶ ଭୋଗ କରୁଥିଲେ । ସେମାନେ ସାବ୍ୟସ୍ତ କଲେ ଯେ ଭବିଷ୍ୟତରେ ରାମ ଲାଭର $\frac{୧}{୨}$ ଅଂଶ ଓ ହରି ମଧ୍ୟ $\frac{୧}{୨}$ ଅଂଶ ପାଇବେ । ଏହାଦ୍ୱାରା ରାମ ଭବିଷ୍ୟତ୍ ଲାଭର $\frac{୨}{୩}-\frac{୧}{୨}=\frac{୧}{୬}$ ଅଂଶ ହରାଇବେ ଏବଂ ହରି $\frac{୧}{୨}-\frac{୧}{୩}=\frac{୧}{୬}$ ଅଂଶ ଲାଭ କରିବେ ।

ରାମ ଭବିଷ୍ୟତ୍ ଲାଭରୁ $\frac{୧}{୬}$ ଅଂଶ ପରିତ୍ୟାଗ କରିବା ପାଇଁ ସମ୍ମତ ହୋଇଥିବାରୁ ସେ ହରିଠାରୁ ଏଥି ନିମନ୍ତେ କ୍ଷତିପୂରଣ ଦାବୀ କରିବା ସ୍ୱାଭାବିକ । ଏହି କ୍ଷତିପୂରଣ ସୁନାମ ସାହାଯ୍ୟରେ କରାଯାଏ । ଏହି କାରଣ ଯୋଗୁ ସୁନାମର ମୂଲ୍ୟ ନିରୂପଣ କରାଯାଏ ଓ ତାହାର ଆନୁପାତିକ ମୂଲ୍ୟ କ୍ଷତିଗ୍ରସ୍ତ ଅଂଶୀଦାରଙ୍କୁ ଦିଆଯାଏ । ମନେକରଯାଉ ସୁନାମର ମୂଲ୍ୟ ୧୨,୦୦୦ ଟଙ୍କା, ଯଦି ଲାଭ ଭାଗ କରିବାର ଅନୁପାତ ପରିବର୍ତ୍ତିତ ହୋଇ ନ ଥାଆନ୍ତା, ତାହାହେଲେ ରାମ ୧୨,୦୦୦ $\times \frac{୨}{୩}$ = ୮,୦୦୦ ଟଙ୍କା ପାଇ ଥାଆନ୍ତେ, କିନ୍ତୁ ଅନୁପାତ ପରିବର୍ତ୍ତିତ ହେବା ଫଳରେ ସେ ୧୨,୦୦୦ $\times \frac{୧}{୨}$ = ୬,୦୦୦ ଟଙ୍କା ପାଇବେ । ଅର୍ଥାତ୍ ସେ ୮,୦୦୦ — ୬,୦୦୦ = ୨,୦୦୦ ଟଙ୍କା ନିମନ୍ତେ କ୍ଷତିଗ୍ରସ୍ତ ହେଲେ । ତେଣୁ ହରିଙ୍କୁ ଏହି କ୍ଷତିପୂରଣ ବାବଦ ରାମଙ୍କୁ ୨,୦୦୦ ଟଙ୍କା ଦେବାକୁ ପଡ଼ିବ, ଯାହା ରାମ ତ୍ୟାଗ କରୁଥିବା $\frac{୧}{୬}$ ଅଂଶର ଆନୁପାତିକ ମୂଲ୍ୟ ( ୧୨,୦୦୦ $\times \frac{୧}{୬}$ = ୨,୦୦୦ ଟଙ୍କା । )

ଏହାକୁ ଦୁଇ ପ୍ରକାର ପ୍ରଣାଳୀରେ ହିସାବଭୁକ୍ତ କରାଯାଇପାରେ; ଯଥା---(କ) ସୁନାମର ମୂଲ୍ୟ ନିରୂପଣ କରାଯିବ ଏବଂ ଏହାକୁ ପୁରାତନ ଲଭ ଭାଗ କରିବା ଅନୁପାତରେ ଭାଗ କରାଯିବ ଓ ତତ୍ପରେ ନୂତନ ଅନୁପାତ ଅନୁଯାୟୀ ସୁନାମ ହିସାବକୁ ନାମ ଦା ଲେଖା କରାଯିବ । ଯେ କୌଣସି ଚଳନ୍ତି ହିସାବରେ ସାଧାରଣତଃ ସୁନାମ ହିସାବକୁ ସମ୍ପତ୍ତି ରୂପେ ଉଦ୍‌ବୃତ୍ତ ପତ୍ରରେ ପ୍ରକାଶ କରିବା ବାଞ୍ଛନୀୟ ନୁହେଁ ବୋଲି ଏହି ହିସାବର ଆବଶ୍ୟକତା ପୂରଣ ହେବା ପରେ ଏହାକୁ ଉଦ୍‌ବୃତ୍ତ ପତ୍ରରୁ ଅପସାରିତ କରାଯାଏ । (ଖ) ଯେତକ ପରିମାଣ ହରି ରାମଙ୍କୁ ଦେବେ କେବଳ ସେତିକି ପରିମାଣ ସକାଶେ ହରିଙ୍କ ମୂଳଧନ ହିସାବକୁ ଦାୟୀ କରାଯାଇ ରାମଙ୍କ ମୂଳଧନ ହିସାବକୁ ଦାତା କରାଯାଏ ।

ଲଭ ଭାଗ କରିବା ଅନୁପାତରେ ପରିବର୍ତ୍ତନ ହେଲେ ଏହାର ଅନ୍ୟ ଏକ ଅନ୍ତର୍ନିହିତ ଦିଗ ଗୁରୁତ୍ୱ ଲଭ କରେ । ତାହା ହେଲା ମୂଳଧନର ପାରସ୍ପରିକ ଅନୁପାତ ସାଧାରଣତଃ ଲଭ ଭାଗ କରିବାର ପରିବର୍ତ୍ତନ ସଙ୍ଗେ ସଙ୍ଗେ ଅଂଶୀଦାରମାନଙ୍କର ମୂଳଧନର ଅନୁପାତ ମଧ୍ୟ ଅନୁରୂପ ଅନୁପାତରେ ସମାଯୋଜିତ ହୁଏ । ପୂର୍ବୋକ୍ତ ଉଦାହରଣରେ ମନେକର ରାମଙ୍କର ମୂଳଧନ ୨୪,୦୦୦ ଟଙ୍କା ଥିଲି ଓ ହରିଙ୍କର ମୂଳଧନର ପରିମାଣ ୧୨,୦୦୦ ଟଙ୍କା ଥିଲା । ମାତ୍ର ଯେତେବେଳେ ଲଭ ଭାଗ କରିବାର ଅନୁପାତ ପରିବର୍ତ୍ତିତ ହେଲା ସେତେବେଳେ, ଅର୍ଥାତ୍ ଉଭୟ ଅଂଶୀଦାରମାନେ ସମପରିମାଣରେ ଲଭ ଭାଗ କରିବେ, ସେତେବେଳେ ରାମ ଅଧିକା ଅର୍ଥ ଦେବା ଅଯୌକ୍ତିକ । ତେଣୁ ମୂଳଧନର ପରିମାଣକୁ ମଧ୍ୟ ଲଭ ଅନୁପାତରେ ସମାଯୋଜିତ କରାଯିବ । ଏହାର ପ୍ରଣାଳୀ ନିମ୍ନରେ ବୁଝାଇ ଦିଆଯାଇଛି ।

ହରି ଯେତେବେଳେ ଲଭର $\frac{1}{3}$ ଅଂଶ ଭୋଗ କରୁଥିଲେ ସେତେବେଳେ ତାଙ୍କର ମୂଳଧନ ଥିଲି ୧୦,୦୦୦ ଟଙ୍କା । ସେ ଯଦି ଲଭର $\frac{1}{2}$ ଅଂଶ ଭୋଗ କରିବେ ସେତେବେଳେ ତାଙ୍କର ମୂଳଧନ

$\frac{1}{3}$ ଅଂଶ ସକାଶେ ମୂଳଧନ ୧୦,୦୦୦ ଟଙ୍କା

$\frac{1}{2}$ ଅଂଶ ସକାଶେ ମୂଳଧନ $\frac{\frac{1}{2} \times ୧୦,୦୦୦}{\frac{1}{3}}$

= ୧୮,୦୦୦ ଟଙ୍କା ହେବ ।

ଉଭୟଙ୍କର ଲଭ ସମାନ ହୋଇଥିବାରୁ ରାମଙ୍କର ମୂଳଧନ ମଧ୍ୟ ୧୮,୦୦୦ ଟଙ୍କା ହେବ । ତେଣୁ ରାମ ୨୪,୦୦୦ – ୧୮,୦୦୦ = ୬,୦୦୦ ଟଙ୍କା ଫେରସ୍ତ ପାଇବେ ଓ ହରି ୧୮,୦୦୦ – ୧୨,୦୦୦ = ୬,୦୦୦ ଟଙ୍କା ବ୍ୟବସାୟରେ ଅଧିକା ବିନିଯୋଗ କରିବେ ।

### ଦୃଷ୍ଟାନ୍ତ (୧୫)

ଉପରୋକ୍ତ ବିବରଣୀ ସକାଶେ ଜାବ୍‌ଦା ପ୍ରସ୍ତୁତ କର ।

## ସମାଧାନ

| (କ) | ଦାୟୀ | ଦାତା |
|---|---|---|
| | ଟଙ୍କା | ଟଙ୍କା |
| ସୁନାମ ହିସାବ ଦାୟୀ | ୧୨,୦୦୦ | |
| ରାମଙ୍କ ମୂଳଧନ ହିସାବ ବାବଦ | | ୮,୦୦୦ |
| ହରିଙ୍କ ମୂଳ ଧନ ହିସାବ ବାବଦ | | ୪,୦୦୦ |
| (ସୁନାମର ମୂଲ୍ୟକୁ ଉଭୟ ଅଂଶୀଦାର ତାଙ୍କର ପୁରାତନ ଲାଭ ଓ କ୍ଷତି ଭାଗ କରିବା ଅନୁପାତ ଅର୍ଥାତ୍ ୨:୧ରେ ଭାଗ କରିଦେଲେ, ଅର୍ଥାତ୍ | | |
| ରାମଙ୍କ ମୂଳଧନ ହିସାବ ଦାୟୀ | ୬,୦୦୦ | |
| ହରିଙ୍କ ମୂଳଧନ ହିସାବ ଦାୟୀ | ୬,୦୦୦ | |
| ସୁନାମ ହିସାବ ବାବଦ | | ୧୨,୦୦୦ |
| (ନୂତନ ଅନୁପାତ, ଅର୍ଥାତ୍ ୧:୧ ଅନୁଯାୟୀ ସୁନାମ ହିସାବର ବିଲୋପ ସାଧନ କରାଗଲା) | | |
| ବ୍ୟାଙ୍କ୍ ହିସାବ ଦାୟୀ | ୮,୦୦୦ | |
| ହରିଙ୍କ ମୂଳଧନ ହିସାବ ବାବଦ | | ୮,୦୦୦ |
| (ହରି ସୁନାମ ବାବଦ (୬,୦୦୦—୪,୦୦୦=) ୨,୦୦୦ ଟଙ୍କା ଓ ମୂଳଧନ ବାବଦ (୧୮,୦୦୦—୧୨,୦୦୦=) ୬,୦୦୦ ଟଙ୍କା ଆଣିଲେ ।) | | |

| | ଦାୟୀ | ଦାତା |
|---|---|---|
| | ଟଙ୍କା | ଟଙ୍କା |
| ରାମଙ୍କ ମୂଳଧନ ହିସାବ ଦାୟୀ | ୮,୦୦୦ | |
| ବ୍ୟାଙ୍କ ହିସାବ ବାବଦ | | ୮,୦୦୦ |
| (ଲାଭର ୧/୩ ଅଂଶ ତ୍ୟାଗ କରିଥିବା ହେତୁ (୮,୦୦୦—୬,୦୦୦=) ୨,୦୦୦ ଟଙ୍କା ସୁନାମ ବାବଦ ଓ (୨୪,୦୦୦—୧୮,୦୦୦=) ୬,୦୦୦ ଟଙ୍କା ମୂଳଧନ ବାବଦ ବ୍ୟବସାୟରୁ ଫେରସ୍ତ ପାଇଲେ ।) | | |

ଏହି କାର୍ଯ୍ୟ ଫଳରେ ରାମ ଓ ହରି ପ୍ରତ୍ୟେକଙ୍କର ମୂଳଧନ ୧୮,୦୦୦ ଟଙ୍କା ରହିଲ ଓ ଉଭୟ ଭବିଷ୍ୟତରେ ଲାଭ ଓ କ୍ଷତି ସମାନ ଅନୁପାତରେ ଭାଗ କରିବେ ।

| (ଖ) | ଦାୟୀ ଟଙ୍କା | ଦାତା ଟଙ୍କା |
|---|---|---|
| ହରିଙ୍କ ମୂଳଧନ ହିସାବ ଦାୟୀ | ୨,୦୦୦ | |
| ରାମଙ୍କ ମୂଳଧନ ହିସାବ ବାବଦ | | ୨,୦୦୦ |
| (ରାମ ଭବିଷ୍ୟତ ଲାଭର ୧/୬ ଅଂଶ ତ୍ୟାଗ କରୁଥିବାରୁ ସେ ସୁନାମର ଆନୁପାତିକ ମୂଲ୍ୟ (୧୨,୦୦୦ × ୧/୬ = ୨,୦୦୦) ହରିଙ୍କଠାରୁ କ୍ଷତିପୂରଣ ରୂପେ ପାଇଲେ ।) | | |
| ବ୍ୟାଙ୍କ ହିସାବ ଦାୟୀ | ୮,୦୦୦ | |
| ହରିଙ୍କ ମୂଳଧନ ହିସାବ ବାବଦ | | ୮,୦୦୦ |
| (ହରି ଭବିଷ୍ୟତ ଲାଭ ଓ କ୍ଷତିର ୧/୬ ଅଂଶ ଅଧିକା ପାଉଥିବାରୁ କ୍ଷତିପୂରଣ ବାବଦ ସେ ରାମଙ୍କୁ ସୁନାମ ବାବଦ ୨,୦୦୦ ଟଙ୍କା ଓ ତାଙ୍କର ମୂଳଧନ ପରିମାଣକୁ ୧୨,୦୦୦ ଟଙ୍କାରୁ ୧୮,୦୦୦ ଟଙ୍କାକୁ ବୃଦ୍ଧି କରିବା ସକାଶେ ଅଧିକା ୬,୦୦୦ ଟଙ୍କା ବ୍ୟବସାୟରେ ବିନିଯୋଗ କଲେ ।) | | |
| ରାମଙ୍କ ମୂଳଧନ ହିସାବ ଦାୟୀ | ୮,୦୦୦ | |
| ବ୍ୟାଙ୍କ ହିସାବ ବାବଦ | | ୮,୦୦୦ |
| (ରାମ ସୁନାମ ବାବଦ ମିଳିଥିବା ୨,୦୦୦ ଟଙ୍କା ଓ ନିଜ ମୂଳଧନ ପରିମାଣକୁ (୨୪,୦୦୦ − ୧୮,୦୦୦ = ୬,୦୦୦ ଟଙ୍କା) ୧୮,୦୦୦ ଟଙ୍କାକୁ ହ୍ରାସ କରିବା ସକାଶେ ବଳକା ୬,୦୦୦ ଟଙ୍କା ବ୍ୟବସାୟରୁ ଉଠାଇନେଲେ ।) | | |

(କ) ଓ (ଖ) ଉଭୟ ପ୍ରଣାଳୀର ଫଳାଫଳ ସମାନ । ପାର୍ଥକ୍ୟ କେବଳ ଏତିକି ଯେ (କ) ଅନୁଯାୟୀ ସୁନାମର ମୂଲ୍ୟ ପୂର୍ଣ୍ଣମାତ୍ରାରେ ହିସାବଭୁକ୍ତ କରାଯାଇ ପରେ ତାହାକୁ ବିଲୁପ୍ତ କରାଯାଇଛି ଓ (ଖ) ପ୍ରଣାଳୀ ଅନୁଯାୟୀ ସୁନାମ ହିସାବ ସ୍ୱତନ୍ତ୍ରରୂପେ ଖୋଲା ନ ଯାଇ କେବଳ ଏହାର ମୂଲ୍ୟ ନିର୍ଦ୍ଧାରିତ କରି ଆବଶ୍ୟକ ଅଂଶ ଅର୍ଥାତ୍ (୧୨,୦୦୦ର ୧/୬ =) ୨,୦୦୦ ଟଙ୍କା ହିସାବକୁ ଅଣାଯାଇଛି ।

ଏହି ଦୃଷ୍ଟାନ୍ତରେ ସୁନାମ ମୂଲ୍ୟ ୧୨,୦୦୦ ଟଙ୍କା ବୋଲି ଅନୁମାନ କରାଯାଇଛି । କିନ୍ତୁ ସାଧାରଣତଃ ସୁନାମର ମୂଲ୍ୟ ନିର୍ଦ୍ଧାରଣ କରିବା ପ୍ରଣାଳୀ ସମ୍ବନ୍ଧରେ ଅଂଶୀଦାରମାନଙ୍କ

ମଧ୍ୟରେ ପୂର୍ବରୁ ଚୁକ୍ତି ଥାଏ ଅଥବା ସେମାନେ କୌଣସି ଏକ ପ୍ରଣାଳୀ ଅନୁଯାୟୀ ସୁନାମର ମୂଲ୍ୟ ନିର୍ଦ୍ଧାରଣ କରିବା ସକାଶେ ସମ୍ମତ ହୁଅନ୍ତି ।

ଲାଭ ବା କ୍ଷତି ବଣ୍ଟନର ପୂର୍ବ ଅନୁପାତ ପରିବର୍ତ୍ତିତ ହେଲେ ଅନ୍ୟ ଏକ ସମସ୍ୟାର ସୃଷ୍ଟି ହୁଏ । ତାହା ବାଦ୍ ଦିଆଯାଇଥିବା ଅନାଦେୟ ଋଣ ବାବଦ ଟଙ୍କା ଯେତେବେଳେ ଗ୍ରାହକଙ୍କଠାରୁ ଆଦାୟ ହୁଏ । ହିସାବ ବହିରେ ଏହା କିପରି ଭାବରେ ଲିପିବଦ୍ଧ କରାଯିବ ତାହା ଅଂଶୀଦାରମାନଙ୍କର ଉଦ୍ଦେଶ୍ୟ ଉପରେ ନିର୍ଭର କରିବ ।

(କ) ଯଦି କୌଣସି ଋଣ ପ୍ରକୃତପକ୍ଷେ ଅନାଦେୟ ବିବେଚିତ ହୋଇ ଗ୍ରାହକଙ୍କ ହିସାବରୁ ବାଦ୍ ଦିଆଯାଇଥିବ, ତାହାହେଲେ ଏହି ଅନାଦେୟ ଋଣ ସକାଶେ ଲାଭ ଓ କ୍ଷତି ହିସାବକୁ ଦାୟୀ କରାଯାଇଥିବ ଏବଂ ଅଂଶୀଦାରମାନେ ପୁରାତନ ଲାଭ ବଣ୍ଟନ ଅନୁପାତରେ ଏହି କ୍ଷତି ବହନ କରିଥିବେ । ଏହି ପ୍ରକାର ଅନାଦେୟ ଋଣ ବାବଦ ଟଙ୍କା ଯଦି ଅକସ୍ମାତ୍ ଗ୍ରାହକଙ୍କଠାରୁ ଆଦାୟ ହୁଏ, ତାହାହେଲେ ତାହା ସକାଶେ ଲାଭ ଓ କ୍ଷତି ହିସାବକୁ ଦାତା କରାଯିବ ଓ ଅଂଶୀଦାରମାନେ ସେହି ଲାଭକୁ ନୂତନ ଲାଭ ବଣ୍ଟନ ଅନୁପାତରେ ବାଣ୍ଟିନେବେ ।

(ଖ) ଯେତେବେଳେ କୌଣସି ଋଣକୁ ସତର୍କତାମୂଳକ ଭାବରେ ଅନାଦେୟ ବୋଲି ଧରାଯାଇ ତାହାକୁ ଗ୍ରାହକଙ୍କ ହିସାବରୁ ବାଦ୍ ଦିଆଯାଇଥାଏ ସେହିପରି କ୍ଷେତ୍ରରେ ସେଥି ବାବଦ ଯେଉଁ ଟଙ୍କା ଆଦାୟ ହୁଏ ତାହା ପୁରାତନ ଲାଭ ବଣ୍ଟନ ଅନୁପାତରେ ଅଂଶୀଦାରମାନେ ଭାଗ କରି ନିଅନ୍ତି ।

(ଗ) କେତେକ ସମୟରେ ଲାଭ ବଣ୍ଟନର ଅନୁପାତ ପରିବର୍ତ୍ତିତ ହେବା ସମୟରେ ସମ୍ପତ୍ତିଗୁଡ଼ିକର ପୁନର୍ମୂଲ୍ୟାୟନ କରାଯାଏ । କିନ୍ତୁ ସମ୍ପତ୍ତିର ବହି ମୂଲ୍ୟ (Book value)କୁ ଅପରିବର୍ତ୍ତିତ ରଖାଯାଇ ବହି ମୂଲ୍ୟ ଓ ପ୍ରକୃତ ମୂଲ୍ୟର ବ୍ୟବଧାନକୁ ବିବରଣୀ ପୁନର୍ମୂଲ୍ୟାୟନ ହିସାବକୁ ଅଣାଯାଏ ଏବଂ ଅନୁରୂପ ପରିମାଣ ସକାଶେ ଅଂଶୀଦାରମାନଙ୍କର ମୂଳଧନ ହିସାବକୁ ପୁରାତନ ଅନୁପାତରେ ଦାୟୀ ଅଥବା ଦାତା କରାଯାଏ । ତତ୍ପରେ ନୂତନ ଅନୁପାତ ଅନୁଯାୟୀ ଅଂଶୀଦାରଙ୍କର ମୂଳଧନ ହିସାବଗୁଡ଼ିକୁ ଦାୟୀ ଅଥବା ଦାତା କରିବାଦ୍ୱାରା "ବିବରଣୀ ମୂଲ୍ୟାୟନ ହିସାବ"କୁ ବନ୍ଦ କରାଯାଏ । ଏହାର ଏକ ଦୃଷ୍ଟାନ୍ତ ନିମ୍ନରେ ପ୍ରଦତ୍ତ ହେଲା ।

## ଦୃଷ୍ଟାନ୍ତ (୧୬)

ଉମାକାନ୍ତ ଓ ରମାକାନ୍ତ ଗୋଟିଏ ଅଂଶୀଦାରୀ କାରବାରର ଅଂଶୀଦାର ଓ ସେମାନେ ୨:୧ ଅନୁପାତରେ ଲାଭ ବଣ୍ଟନ କରନ୍ତି । ବ୍ୟବସାୟରେ ଅନାଦେୟ ଋଣରେ

ପରିମାଣ ୧,୫୦୦ ଟଙ୍କା ହୋଇଥିଲା । ସେମାନେ ଲଭ ବଣ୍ଟନ ଅନୁପାତକୁ ୩:୨ କୁ ପରିବର୍ତ୍ତିତ କରିବାକୁ ସ୍ଥିର କରନ୍ତି । ସମ୍ପତ୍ତିର ମୂଲ୍ୟ ପରିବର୍ତ୍ତନ ନ କରି 'ବଦରଣୀ ପୁନର୍ମୂଲ୍ୟାୟନ' ହିସାବ ସାହାଯ୍ୟରେ ଏହାର ସମାଯୋଜନ କର ।

## ସମାଧାନ

| | | ଟଙ୍କା | ଟଙ୍କା |
|---|---|---|---|
| ଉମାକାନ୍ତଙ୍କ ମୂଳଧନ ହିସାବ | ଦାୟୀ | ୧,୦୦୦ | |
| ରମାକାନ୍ତଙ୍କ ମୂଳଧନ ହିସାବ | ଦାୟୀ | ୫୦୦ | |
| ବଦରଣୀ ପୁନର୍ମୂଲ୍ୟାୟନ ହି: ବାବଦ | | | ୧,୫୦୦ |
| (ଅନାଦେୟ ଋଣ ବାବଦ କ୍ଷତି ପୁରାତନ ଲଭ ବଣ୍ଟନ ଅନୁପାତରେ ଅଂଶୀଦାରମାନେ ବହନ କଲେ ।) | | | |
| ବଦରଣୀ ପୁନର୍ମୂଲ୍ୟାଙ୍କନ ହିସାବ | ଦାୟୀ | ୧,୫୦୦ | |
| ଉମାକାନ୍ତଙ୍କ ମୂଳଧନ ହିସାବ ବାବଦ | | | ୯୦୦ |
| ରମାକାନ୍ତଙ୍କ ମୂଳଧନ ହିସାବ ବାବଦ | | | ୬୦୦ |
| (ନୂତନ ଲଭ ବଣ୍ଟନ ଅନୁପାତରେ ଏହି କ୍ଷତିକୁ ଅଂଶୀଦାରଙ୍କ ମୂଳଧନ ହିସାବକୁ ସ୍ଥାନାନ୍ତରିତ କରି ବଦରଣୀ ପୁନର୍ମୂଲ୍ୟାୟନ ହିସାବକୁ ବନ୍ଦ କରାଗଲା ।) | | | |

ଏହି ଦୁଇଟି କାରବାରକୁ ଗୋଟିଏ କାରବାରରେ ପ୍ରକାଶ କରାଯାଇପାରେ, ଯଥା—

| | | ଟଙ୍କା | ଟଙ୍କା |
|---|---|---|---|
| ଉମାକାନ୍ତଙ୍କ ମୂଳଧନ ହିସାବ | ଦାୟୀ | ୧୦୦ | |
| ରମାକାନ୍ତଙ୍କ ମୂଳଧନ ହିସାବ ବାବଦ | | | ୧୦୦ |

ଏହି ୧୦୦ ଟଙ୍କା ଅନାଦେୟ ଋଣରେ ( ୨/୩ — ୩/୫ = ) ୧/୧୫ ପ୍ରତିନିଧାନ କରୁଛି ।

ଏହା ଅନାଦେୟ ଋଣ ବାବଦ ଟଙ୍କା ଯଦି ପ୍ରକୃତରେ ଆଦାୟ ହେବ ତାହାହେଲେ ତାହା ସକାଶେ ଗ୍ରାହକଙ୍କ ହିସାବକୁ ଦାତା କରାଯିବ । ଅଂଶୀଦାରମାନଙ୍କର ମୂଳଧନ ହିସାବରେ ଅନ୍ୟ କୌଣସି ସମାଯୋଜନ ଆବଶ୍ୟକ ହେବ ନାହିଁ ।

ଯଦି ଏହି ଅନାଦେୟ ଋଣକୁ ଅବଶେଷରେ ଖାତକ ହିସାବରୁ ବାଦ୍ ଦିଆଯିବ ସେତେବେଳେ ନିମ୍ନଲିଖିତ କାରବାର ଲେଖାଯିବ ।

ଅନାଦେୟ ଋଣ ହିସାବ ଦାୟୀ
ଖାତକଙ୍କ ହିସାବ ବାବଦ
ଅଂଶୀଦାରମାନେ ଏହି କ୍ଷତିକୁ ନୂତନ ଲାଭ ବଣ୍ଟନ ଅନୁପାତରେ ବହନ କରିବେ ।

(ଗ) ଯଦି ପୁନର୍ମୂଲ୍ୟାୟନ କେବଳ ସତର୍କତାମୂଳକ ହୋଇଥାଏ ଏବଂ ସମ୍ପତ୍ତିର ପ୍ରକୃତ ମୂଲ୍ୟକୁ ପରିବର୍ତ୍ତନ କରିବାର କୌଣସି ଅଭିପ୍ରାୟ ନ ଥାଏ ତାହାହେଲେ କୌଣସି ଜାବ୍ଦା ପ୍ରସ୍ତୁତ ନ କଲେ ମଧ୍ୟ ଚଳିବ । କିନ୍ତୁ ଅଧିକାଂଶ ସମୟରେ ଏହି ବିଷୟର ଏକ ଅଭିଲେଖ ( record ) ରଖିବା ନିମନ୍ତେ ନିମ୍ନଲିଖିତ ଜାବ୍ଦା ପ୍ରସ୍ତୁତ କରାଯାଏ । (ପୂର୍ବୋକ୍ତ ଦୃଷ୍ଟାନ୍ତର ବିବରଣୀ ଅନୁଯାୟୀ )

| | | ଟଙ୍କା | ଟଙ୍କା |
|---|---|---|---|
| (i) ଉମାକାନ୍ତଙ୍କ ମୂଳଧନ ହିସାବ | ଦାୟୀ | ୧,୦୦୦ | |
| ରମାକାନ୍ତଙ୍କ ମୂଳଧନ ହିସାବ | ଦାୟୀ | ୫୦୦ | |
| ବିବରଣୀ ପୁନର୍ମୂଲ୍ୟାୟନ ହିସାବ ବାବଦ | | | ୧,୫୦୦ |
| (ଅନାଦେୟ ଋଣ ବାବଦ ଅର୍ଜ୍ଜିତ କ୍ଷତି ବଣ୍ଟନ କରାଗଲା) | | | |
| (ii) ବିବରଣୀ ପୁନର୍ମୂଲ୍ୟାୟନ ହିସାବ | ଦାୟୀ | ୧,୫୦୦ | |
| ଉମାକାନ୍ତଙ୍କ ମୂଳଧନ ହିସାବ ବାବଦ | | | ୧,୦୦୦ |
| ରମାକାନ୍ତଙ୍କ ମୂଳଧନ ହିସାବ ବାବଦ | | | ୫୦୦ |
| ଅଂଶୀଦାରମାନଙ୍କର ମୂଳଧନ ହିସାବକୁ ପୁରାତନ ଅନୁପାତରେ ବିବରଣୀ ପୁନର୍ମୂଲ୍ୟାୟନ ହିସାବର ବାକିକୁ ସ୍ଥାନାନ୍ତରିତ କରି ଶେଷୋକ୍ତ ହିସାବକୁ ବନ୍ଦ କରାଗଲା ।) | | | |

ଏ କ୍ଷେତ୍ରରେ ଗ୍ରାହକଙ୍କ ହିସାବରୁ ଅର୍ଜ୍ଜିତ ଅନାଦେୟ ଋଣ ବାଦ୍ ଦିଆଯାଇ ନାହିଁ । ଯଦି ଏହି ଅନାଦେୟ ଋଣ ବାବଦ ଟଙ୍କା ମିଳେ ତାହାହେଲେ ତାହା ଗ୍ରାହକଙ୍କ ହିସାବକୁ ଦାତା କରାଯିବ; ମାତ୍ର ଯଦି ଏ ବାବଦ ଟଙ୍କା ଅଦାୟ ନ ହୁଏ ତାହାହେଲେ ଅଂଶୀଦାରମାନେ ଏହି କ୍ଷତିକୁ ନୂତନ ଅନୁପାତ ଅନୁଯାୟୀ ବହନ କରିବେ ।

## ୬ । ନୂତନ ଅଂଶୀଦାର ଗ୍ରହଣ—

ଯେତେବେଳେ ଜଣେ ନୂତନ ଅଂଶୀଦାରଙ୍କୁ ଗ୍ରହଣ କରାଯାଏ ସେତେବେଳେ ଦୁଇଟି ମୁଖ୍ୟ ସମସ୍ୟାର ସୃଷ୍ଟି ହୁଏ । ଯଥା—(କ) ସୁନାମ ସମ୍ପର୍କୀୟ ଲିପିକରଣ ଓ (ଖ) ଅଂଶୀଦାରୀ କାରବାରର ସମ୍ପତ୍ତି ଓ ଦେୟର ପୁନର୍ମୂଲ୍ୟାୟନ ।

(କ) ସୁନାମ

ସୁନାମର ମୋଟ ମୂଲ୍ୟ କପର ଭାବରେ ନିର୍ଦ୍ଧାରିତ ହେବ ସାଧାରଣତଃ ଅଂଶୀଦାରୀ ଚୁକ୍ତିରେ ତାହାର ଉଲ୍ଲେଖ ଥାଏ । ଯଦି ତାହା ନ ଥାଏ, ତାହାହେଲେ ନୂତନ ଅଂଶୀଦାରଙ୍କ ସମେତ ସବୁ ଅଂଶୀଦାରଙ୍କର ସମ୍ମତିକ୍ରମେ ସୁନାମର ମୋଟ ମୂଲ୍ୟ ନିରୂପିତ ହୁଏ, ନୂତନ ଅଂଶୀଦାର ସୁନାମ ବାବଦ କେତେ ପରିମାଣର ଅର୍ଥ ଦେବେ ତାହା ଅଂଶୀଦାରୀ କାରବାରର ଭବିଷ୍ୟତ୍ ଲାଭର ସେ ଯେତେ ଅଂଶ ଭୋଗ କରିବେ ତାହା ଉପରେ ନିର୍ଭର କରେ । ସେ ଏହି ପରିମାଣର ଅର୍ଥ (i) ନଗଦ ଆକାରରେ ଆଣିପାରନ୍ତି ଯାହା ବ୍ୟବସାୟର ହିସାବରେ ଲିପିବଦ୍ଧ କରାଯାଏ, (ii) ସେ ଏହି ଅର୍ଥ ପୁରାତନ ଅଂଶୀଦାରମାନଙ୍କୁ ପରୋକ୍ଷ ଭାବରେ ଦେଇପାରନ୍ତି ଯାହାର କୌଣସି ଉଲ୍ଲେଖ ହିସାବପତ୍ରରେ ରହେ ନାହିଁ, (iii) ସେ ସୁନାମ ବାବଦ କୌଣସି ଅର୍ଥ ଆଣନ୍ତି ନାହିଁ, ମାତ୍ର ଏକ ସୁନାମ ହିସାବ ଖୋଲଯାଇ ତାହା ପୁରାତନ ଅଂଶୀଦାରମାନଙ୍କ ମଧ୍ୟରେ ବଣ୍ଟିତ ହୁଏ ଓ (iv) ସୁନାମ ବାବଦ ଖୋଲଯାଇଥିବା ହିସାବକୁ ଲୋପ କରାଯାଏ ।

ଅଧିଲାଭ ପଦ୍ଧତି ( Premium Method )—

(i) ନୂତନ ଅଂଶୀଦାର ମୂଳଧନ ଓ ସୁନାମ ବାବଦ ଯେଉଁ ଅର୍ଥ ଆଣନ୍ତି ସେହି ଅର୍ଥ ସକାଶେ ବ୍ୟାଙ୍କ୍ ହିସାବକୁ ଦାୟୀ କରାଯାଏ ଓ ମୂଳଧନ ହିସାବ ଓ ସୁନାମ ହିସାବକୁ ଦାତା କରାଯାଏ । ମନେକର କ ଓ ଖ ଗୋଟିଏ ଅଂଶୀଦାରୀ କାରବାରର ସମାନ ଅଂଶୀଦାର ଓ ସେମାନେ ଗ କୁ ଭବିଷ୍ୟତ୍ ଲାଭର ଏକ-ଚତୁର୍ଥାଂଶ ଦେବାକୁ ସମ୍ମତ ହେଲେ । ସର୍ତ୍ତ ରହିଲା ଯେ ଗ ମୂଳଧନ ବାବଦ ୧୨,୦୦୦ ଟଙ୍କା ଓ ସୁନାମ ବାବଦ ୪,୦୦୦ ଟଙ୍କା ଆଣିବେ । ଗ ସର୍ତ୍ତାନୁଯାୟୀ ଟଙ୍କା ଆଣିଲେ ବ୍ୟବସାୟ ଖାତାରେ ନିମ୍ନ ରୂପ ଜାବେଦା ପ୍ରସ୍ତୁତ କରାଯିବ ।

| | | ଟଙ୍କା | ଟଙ୍କା |
|---|---|---|---|
| ବ୍ୟାଙ୍କ ହିସାବ | ଦାୟୀ | ୧୬,୦୦୦ | |
| ଗ ଙ୍କର ମୂଳଧନ ହିସାବ ବାବଦ | | | ୧୨,୦୦୦ |
| ସୁନାମ ହିସାବ ବାବଦ | | | ୪,୦୦୦ |
| (ଗ ମୂଳଧନ ବାବଦ ୧୨,୦୦୦ ଟଙ୍କା ଓ ସୁନାମ ବାବଦ ୪,୦୦୦ ଟଙ୍କା ବ୍ୟବସାୟକୁ ଆଣିଲେ ।) | | | |

ଚଳାଚଳିତ ପ୍ରଥାନୁଯାୟୀ ନୂତନ ଅଂଶୀଦାର ସୁନାମ ବାବଦ ଆଣିଥିବା ଟଙ୍କା ପୁରାତନ ଅଂଶୀଦାରମାନେ ପୁରାତନ ଲଭ ବଣ୍ଟନ ଅନୁପାତରେ ଭାଗ କରି ନିଅନ୍ତି । ସେପରି କ୍ଷେତ୍ରରେ ନିମ୍ନଲିଖିତ ଜାବ୍‌ଦା ପ୍ରସ୍ତୁତ କରାଯିବ ।

| | | ଟଙ୍କା | ଟଙ୍କା |
|---|---|---|---|
| ସୁନାମ ହିସାବ | ଦାୟୀ | ୪,୦୦୦ | |
| କ ଙ୍କର ମୂଳଧନ ହିସାବ ବାବଦ | | | ୨,୦୦୦ |
| ଖ ଙ୍କର ମୂଳଧନ ହିସାବ ବାବଦ | | | ୨,୦୦୦ |
| (ନୂତନ ଅଂଶୀଦାର ସୁନାମ ବାବଦ ଆଣିଥିବା ଟଙ୍କା ପୁରାତନ ଅଂଶୀଦାରମାନେ ଲଭ ବଣ୍ଟନର ପୁରାତନ ଅନୁପାତରେ ଭାଗ କରିନେଲେ । ) | | | |

ସାଧାରଣତଃ ପୁରାତନ ଅଂଶୀଦାରମାନେ ଏହି ଅର୍ଥକୁ ବ୍ୟବସାୟରୁ ଉଠାଇ ନିଅନ୍ତି । ସେପରି କ୍ଷେତ୍ରରେ ନିମ୍ନରୂପ ଜାବ୍‌ଦା ପ୍ରସ୍ତୁତ କରାଯାଏ ।

| | | ଟଙ୍କା | ଟଙ୍କା |
|---|---|---|---|
| କ ଙ୍କର ମୂଳଧନ ହିସାବ | ଦାୟୀ | ୨,୦୦୦ | |
| ଖ ଙ୍କର ମୂଳଧନ ହିସାବ | ଦାୟୀ | ୨,୦୦୦ | |
| ବ୍ୟାଙ୍କ୍ ହିସାବ ବାବଦ | | | ୪,୦୦୦ |
| (ସୁନାମ ବାବଦ ଟଙ୍କା କ ଓ ଖ ବ୍ୟବସାୟରୁ ଉଠାଇନେଲେ । ) | | | |

ନୂତନ ଅଂଶୀଦାର ଗ୍ରହଣ କରିବା ପରେ ଯଦି କ ଓ ଖ ଙ୍କର ଲଭ ବଣ୍ଟନର ଅନୁପାତ ପରସ୍ପର ମଧ୍ୟରେ ପୂର୍ବପରି ସମାନ ରହେ ଅର୍ଥାତ୍ (୧ − ୧/୪)ର ୧/୨ = ୩/୮ ରହେ ତାହାହେଲେ ସୁନାମ ମୂଲ୍ୟକୁ ଉଭୟ ଅଂଶୀଦାର ସମପରିମାଣରେ ଭାଗ କରିବାରେ ଆପତ୍ତିର କୌଣସି କାରଣ ରହିବ ନାହିଁ, ଯେହେତୁ ଉଭୟ ଅଂଶୀଦାରଙ୍କର ତ୍ୟାଗ ସମାନ (୧/୨ − ୩/୮ = ୧/୮) କ ଙ୍କ ଲଭାଂଶର ୧/୮ ଓ ଖ ଙ୍କର ଲଭାଂଶର ୧/୮ ମିଶି ଗ ୧/୪ ଅଂଶ ଲଭ ପାଉଛନ୍ତି । କିନ୍ତୁ ଯେଉଁଠାରେ ନୂତନ ଅଂଶୀଦାର ଗ୍ରହଣ କରିବା ପରେ ପୁରାତନ ଅଂଶୀଦାରମାନଙ୍କର ପାରସ୍ପରିକ ଲଭ ବଣ୍ଟନର ଅନୁପାତ ପୂର୍ବପରି ନ ରହି ପରିବର୍ତ୍ତିତ ହୁଏ ସେ କ୍ଷେତ୍ରରେ ପୂର୍ବ ଲଭ ବଣ୍ଟନ ଅନୁପାତରେ ସୁନାମ ମୂଲ୍ୟ ବଣ୍ଟନର ଚଳାଚଳିତ ପ୍ରଥା ଅଯୌକ୍ତିକ ହୁଏ । ସେପରି ପରିସ୍ଥିତିରେ ତ୍ୟାଗାନୁପାତିକ ପ୍ରଥା ଅଧିକ ଯୁକ୍ତିଯୁକ୍ତ ।

ମନେକର ଯଦି ଗ ଙ୍କୁ ଅଂଶୀଦାର ରୂପେ ଗ୍ରହଣ କରିବା ପରେ ଲଭ ବଣ୍ଟନର ନୂତନ ଅନୁପାତ ଯଥାକ୍ରମେ ୭:୫:୪ ହୁଏ, ତାହାହେଲେ ଦେଖାଯିବ ଯେ ଗ ଙ୍କୁ

ଭବିଷ୍ୟତ୍ ଲାଭର ୪/୧୦ ଅଥବା ୨/୫ ଅଂଶ ଦେବା ସକାଶେ କ ୧/୨ − ୨/୫ = ୧/୧୦ ଅଂଶ ଓ ଖ ୧/୨ − ୨/୧୦ = ୩/୧୦ ଅଂଶ ତ୍ୟାଗ କରିଛନ୍ତି । ଏପରି କ୍ଷେତ୍ରରେ ସୁନାମର ମୂଲ୍ୟ ୧:୩ ଅନୁପାତରେ ଭାଗ କରିବା ଅଧିକ ଯୁକ୍ତିଯୁକ୍ତ ହେବ । କାରଣ ସେମାନେ ସେହି ଅନୁପାତରେ ତ୍ୟାଗ ସ୍ୱୀକାର କରିଛନ୍ତି । ତାହାହେଲେ ସୁନାମ ବଣ୍ଟନ ସକାଶେ ନିମ୍ନଲିଖିତ ଜାବେଦା ପ୍ରସ୍ତୁତ କରାଯିବ ।

| | | ଟଙ୍କା | ଟଙ୍କା |
|---|---|---|---|
| ସୁନାମ ହିସାବ | ଡାଏଁ | ୪,୦୦୦ | |
| କ ଙ୍କର ମୂଳଧନ ହିସାବ ବାବଦ | | | ୧,୦୦୦ |
| ଖ ଙ୍କର ମୂଳଧନ ହିସାବ ବାବଦ | | | ୩,୦୦୦ |
| (କ ଓ ଖ ସୁନାମ ମୂଲ୍ୟକୁ ତ୍ୟାଗ ଅନୁପାତରେ ବଣ୍ଟନ କଲେ ।) | | | |

ଅଧିକାଂଶ ଅଂଶୀଦାରୀ କାରବାରରେ ଏବେ ଏହି ପ୍ରଥା ଅଧିକ ପରିମାଣରେ ପ୍ରଚଳିତ ହେଉଛି । କାରଣ ଯୌକ୍ତିକତା ଦୃଷ୍ଟିରୁ ଏହା ଅଧିକ ଜନପ୍ରିୟ ହୋଇଛି ।

ପୂର୍ବେ କୁହାଯାଇଥିଲା ଯେ ପୁରାତନ ଅଂଶୀଦାରମାନେ ସାଧାରଣତଃ ସୁନାମ ବାବଦ ମିଳିଥିବା ଟଙ୍କା ବ୍ୟବସାୟରୁ ଉଠାଇ ନିଅନ୍ତି । ଏପରି କରାଗଲେ ନୂତନ ଅଂଶୀଦାର ଏହି ଅର୍ଥ ବାବଦ କୌଣସି ଉପକାର ପାଇପାରନ୍ତି ନାହିଁ । ଯଦି ଏହି ଅର୍ଥକୁ ବ୍ୟବସାୟରେ ରଖି କାରବାରରେ ବିନିଯୋଗ କରାଯାଏ ତାହାହେଲେ ବ୍ୟବସାୟର ଲାଭର ପରିମାଣ ବୃଦ୍ଧି ପାଇବାର ସମ୍ଭାବନା ଅଧିକ ହୁଏ । ସେପରି କ୍ଷେତ୍ରରେ ନୂତନ ଅଂଶୀଦାର ମଧ୍ୟ ସେହି ଅର୍ଥରୁ ଉପକାର ଲାଭ କରିପାରିବେ । ତେଣୁ କେତେକ ସମୟରେ ନୂତନ ଅଂଶୀଦାରଙ୍କ ଅନୁରୋଧକ୍ରମେ ସେ ବ୍ୟବସାୟକୁ ଆଣିଥିବା ସୁନାମ ବାବଦ ଟଙ୍କା ଅଂଶୀଦାରମାନେ ବଣ୍ଟନ କରିବା ପରେ ବ୍ୟବସାୟରେ ରଖାଯାଏ । ଏହା ଫଳରେ ପୁରାତନ ଅଂଶୀଦାରଙ୍କର ମୂଳଧନ ହିସାବ କେବଳ ବୃଦ୍ଧି ପାଏ, ସେମାନେ ତାହାକୁ ନଗଦ ଆକାରରେ ବ୍ୟବସାୟରୁ ଉଠାଇ ନିଅନ୍ତି ନାହିଁ ।

କେତେକ ସମୟରେ ନୂତନ ଅଂଶୀଦାର ସୁନାମର ମୂଲ୍ୟ ବାବଦ ଯେତେ ଟଙ୍କା ଆଣନ୍ତି ତାହାକୁ ତାଙ୍କର ଲାଭ ବଣ୍ଟନ ଅନୁପାତର ମୂଲ୍ୟ ରୂପେ ପରିଗଣିତ କରାଯାଇ ସୁନାମର ପୂର୍ଣ୍ଣ ମୂଲ୍ୟ ନିର୍ଦ୍ଧାରଣ କରାଯାଏ । ଉଦାହରଣ ସ୍ୱରୂପ, ନୂତନ ଅଂଶୀଦାର ଯଦି ଭବିଷ୍ୟତ୍ ଲାଭର ୧/୪ ଅଂଶ ପାଉଥାଆନ୍ତି ଏବଂ ସେ ସୁନାମ ବାବଦ ୪,୦୦୦ ଟଙ୍କା ଆଣନ୍ତି, ତାହାହେଲେ ସୁନାମର ପୂର୍ଣ୍ଣ ମୂଲ୍ୟ ୪,୦୦୦ × ୪/୧ = ୧୬,୦୦୦ ଟଙ୍କା ରୂପେ ନିର୍ଦ୍ଧାରିତ ହୁଏ । ଏହାକୁ ପୁରାତନ ଅଂଶୀଦାରମାନେ ପୁରାତନ ଲାଭ ବଣ୍ଟନ ଅନୁପାତରେ ଭାଗ କରି ନିଅନ୍ତି । ନୂତନ ଅଂଶୀଦାର ଆଣିଥିବା ଉଭୟ ମୂଳଧନ ଓ

ସୁନାମ ବାବଦ ଟଙ୍କା ସକାଶେ ତାଙ୍କର ମୂଳଧନ ହିସାବକୁ ଦାତା କରାଯାଏ । ତତ୍ପରେ ସମସ୍ତ ଅଂଶୀଦାରଙ୍କ ମୂଳଧନ ହିସାବକୁ ନୂତନ ଲଭ ବଣ୍ଟନ ଅନୁପାତରେ ଦାୟୀ କରାଯାଇ ସୁନାମ ହିସାବକୁ ଦାତା କରାଯାଇ ସେ ହିସାବକୁ ବନ୍ଦ କରାଯାଏ ।

ଦୃଷ୍ଟାନ୍ତ ( ୬ )

ଉପେନ୍ଦ୍ର ଓ ନରେନ୍ଦ୍ର ଗୋଟିଏ ଅଂଶୀଦାରୀ କାରବାରର ଅଂଶୀଦାର ରୂପେ ଲଭର ଯଥାକ୍ରମେ $\frac{୨}{୩}$ ଓ $\frac{୧}{୩}$ ଅଂଶ ଭୋଗ କରୁଥିଲେ । ସେମାନେ ହରେନ୍ଦ୍ରକୁ ନୂତନ ଅଂଶୀଦାର ରୂପେ ଗ୍ରହଣ କରିବାକୁ ସମ୍ମତ ହେଲେ । ହରେନ୍ଦ୍ର ବ୍ୟବସାୟକୁ ୧୦,୦୦୦ ଟଙ୍କା ମୂଳଧନ ସ୍ୱରୂପ ଓ ୬,୦୦୦ ଟଙ୍କା ସୁନାମ ସ୍ୱରୂପ ଆଣିବେ ଓ ସେ ଭବିଷ୍ୟତ ଲଭର $\frac{୪}{୧୮}$ ଅଂଶ ପାଇବେ । ଲଭ ବଣ୍ଟନର ନୂତନ ଅନୁପାତ ୯:୫:୪ ହେବ । ହରେନ୍ଦ୍ର ସମସ୍ତ ସର୍ତ୍ତ ପାଳନ କଲେ । ଏଥି ନେଣଦେଣ ସକାଶେ ଜାବ୍ଦା ପ୍ରସ୍ତୁତ କର ।

**ସମାଧାନ**

| ଜାବ୍ଦା | | ଦାୟୀ | ଦାତା |
|---|---|---|---|
| | | ଟଙ୍କା | ଟଙ୍କା |
| ବ୍ୟାଙ୍କ ହିସାବ | ଦାୟୀ | ୧୬,୦୦୦ | |
| ହରେନ୍ଦ୍ରଙ୍କ ମୂଳଧନ ହିସାବ ବାବଦ | | | ୧୦,୦୦୦ |
| ସୁନାମ ହିସାବ ବାବଦ | | | ୬,୦୦୦ |
| (ହରେନ୍ଦ୍ର ମୂଳଧନ ବାବଦ ୧୦,୦୦୦ ଟଙ୍କା ଓ ସୁନାମ ବାବଦ ୬,୦୦୦ ଟଙ୍କା ବ୍ୟବସାୟକୁ ଆଣିଲେ ।) | | | |

| | | ଦାୟୀ | ଦାତା |
|---|---|---|---|
| | | ଟଙ୍କା | ଟଙ୍କା |
| ସୁନାମ ହିସାବ | ଦାୟୀ | ୬,୦୦୦ | |
| ଉପେନ୍ଦ୍ରଙ୍କ ମୂଳଧନ ହିସାବ ବାବଦ | | | ୪,୫୦୦ |
| ନରେନ୍ଦ୍ରଙ୍କ ମୂଳଧନ ହିସାବ ବାବଦ | | | ୧,୫୦୦ |
| ( ଉପେନ୍ଦ୍ର ଓ ନରେନ୍ଦ୍ର ସୁନାମର ମୂଲ୍ୟକୁ ତ୍ୟାଗାନୁପାତରେ ($\frac{୨}{୩} - \frac{୯}{୧୮} = \frac{୩}{୧୮}$) ଓ ($\frac{୧}{୩} - \frac{୫}{୧୮} = \frac{୧}{୧୮}$ ) ଅର୍ଥାତ୍ ୩ : ୧ ଅନୁପାତରେ ଭାଗ କରି ନେଲେ ।) | | | |

ଏଠାରେ ସୁନାମ ବାବଦ ଅର୍ଥ ବ୍ୟବସାୟରେ ରଖାଯାଇ କାରବାରରେ ବିନିଯୋଗ କରାଯାଇଛି । ଯଦି ପୁରାତନ ଅଂଶୀଦାରମାନେ ସୁନାମ ବାବଦ ଟଙ୍କା ଉଠାଇ ନେବାକୁ ସ୍ଥିର କରନ୍ତି ତାହାହେଲେ ନିମ୍ନଲିଖିତ ଜାବ୍ଦା ପ୍ରସ୍ତୁତ କରାଯିବ ।

| | | ଟଙ୍କା | ଟଙ୍କା |
|---|---|---|---|
| ଉପେନ୍ଦ୍ରଙ୍କ ମୂଳଧନ ହିସାବ | ଦାୟୀ | ୪,୫୦୦ | |
| ନରେନ୍ଦ୍ରଙ୍କ ମୂଳଧନ ହିସାବ | ଦାୟୀ | ୧,୫୦୦ | ୬,୦୦୦ |
| ବ୍ୟାଙ୍କ ହିସାବ ବାବଦ<br>(ସୁନାମ ବାବଦ ଟଙ୍କା ପୁରାତନ ଅଂଶୀଦାରମାନେ ବ୍ୟବସାୟରୁ ଉଠାଇନେଲେ ।) | | | |

ବିଶେଷ ଦ୍ରଷ୍ଟବ୍ୟ : ଯଦି ଚିରାଚରିତ ପ୍ରଥା ଅନୁଯାୟୀ ସୁନାମକୁ ଭାଗ କରାଯାଇଥାଆନ୍ତା ତାହାହେଲେ ତାଙ୍କର ପୁରାତନ ଲାଭ ବଣ୍ଟନ ଅନୁପାତ ୨ : ୧ ଅନୁସାରେ ଉପେନ୍ଦ୍ର ୪,୦୦୦ ଟଙ୍କା ଓ ନରେନ୍ଦ୍ର ୨,୦୦୦ ଟଙ୍କା ପାଇଥାଆନ୍ତେ । କିନ୍ତୁ ଏହା ଅଯୌକ୍ତିକ ହୋଇଥିବାରୁ ଉଭୟଙ୍କର ତ୍ୟାଗ ଅନୁପାତରେ ସେମାନେ ସୁନାମକୁ ଭାଗ କରିନେଲେ ।

**ବିକଳ୍ପ ପଦ୍ଧତି (୨)**

| ଜାବଦା | | ଦାୟୀ | ଦାତା |
|---|---|---|---|
| ସୁନାମ ହିସାବ | ଦାୟୀ | ୨୭,୦୦୦ | |
| ଉପେନ୍ଦ୍ରଙ୍କ ମୂଳଧନ ହିସାବ ବାବଦ | | | ୧୮,୦୦୦ |
| ନରେନ୍ଦ୍ରଙ୍କ ମୂଳଧନ ହିସାବ ବାବଦ | | | ୯,୦୦୦ |
| ( ସୁନାମର ପୂର୍ଣ୍ଣ ମୂଲ୍ୟ ନିର୍ଣ୍ଣୟ କରାଯାଇ ସୁନାମ ହିସାବ ଖୋଲାଗଲା ଓ ପୁରାତନ ଅଂଶୀଦାରମାନେ ତାହା ପୁରାତନ ଲାଭ ବଣ୍ଟନ ଅନୁପାତରେ ଭାଗ କରି ନେଲେ ) | | | |
| ବ୍ୟାଙ୍କ ହିସାବ | ଦାୟୀ | ୧୬,୦୦୦ | |
| ( ହରେନ୍ଦ୍ରଙ୍କ ମୂଳଧନ ହିସାବ ବାବଦ | | | ୧୬,୦୦୦ |
| ହରେନ୍ଦ୍ର ଆଣିଥିବା ସମସ୍ତ ଟଙ୍କା ସକାଶେ ତାଙ୍କର ମୂଳଧନ ହିସାବକୁ ଦାତା କରାଗଲା । ) | | | |

| | | ଟଙ୍କା | ଟଙ୍କା |
|---|---|---|---|
| ଉପେନ୍ଦ୍ରଙ୍କ ମୂଳଧନ ହିସାବ | ଦାୟୀ | ୧୩,୫୦୦ | |
| ନରେନ୍ଦ୍ରଙ୍କ ମୂଳଧନ ହିସାବ | ଦାୟୀ | ୭,୫୦୦ | |
| ହରେନ୍ଦ୍ରଙ୍କ ମୂଳଧନ ହିସାବ | ଦାୟୀ | ୬,୦୦୦ | |
| ସୁନାମ ହିସାବ ବାବଦ | | | ୨୭,୦୦୦ |
| ( ନୂତନ ଲାଭ ବଣ୍ଟନ ଅନୁପାତରେ ସବୁ ଅଂଶୀଦାରଙ୍କର ମୂଳଧନ ହିସାବକୁ ଦାୟୀ କରାଯାଇ ସୁନାମ ହିସାବକୁ ଲୋପ କରାଗଲା ।) | | | |

ଏହି ଜାବଦାଗୁଡ଼ିକୁ ପର୍ଯ୍ୟାଲୋଚନା କଲେ ଦେଖାଯିବ ଯେ ନିଟ୍ ଫଳାଫଳରେ କୌଣସି ପରିବର୍ତ୍ତନ ଘଟି ନାହିଁ, ତାହା ପୂର୍ବପରି ରହିଛି । ଉପେନ୍ଦ୍ର ପ୍ରଥମ ଜାବଦା ଅନୁଯାୟୀ ସୁନାମ ବାବଦ ୧୮,୦୦୦ ଟଙ୍କା ପାଇଥିଲେ କିନ୍ତୁ ତୃତୀୟ ଜାବଦା ଫଳରେ ତାହିଁରୁ ୧୩,୫୦୦ ଟଙ୍କା ବାହାର କରି ନିଆଗଲା, ସୁତରାଂ ସେ ସୁନାମ ବାବଦ ୧୮,୦୦୦–୧୩,୫୦୦ = ୪,୫୦୦ ଟଙ୍କା ହିଁ ପାଇଲେ । ସେହିପରି ନରେନ୍ଦ୍ର ୯,୦୦୦ – ୭,୫୦୦ = ୧,୫୦୦ ଟଙ୍କା ପାଇଲେ ଏବଂ ହରେନ୍ଦ୍ର ସୁନାମ ବାବଦ କିଛି ପାଇଲେ ନାହିଁ ଓ ତାଙ୍କ ମୂଳଧନ ହିସାବର ଦାତା ବାକି ପୂର୍ବପରି ସେହି ୧୦,୦୦୦ ଟଙ୍କା ରହିଲା ।

**ବିକଳ୍ପ ପଦ୍ଧତି ୨)**

| | ଟଙ୍କା | ଟଙ୍କା |
|---|---|---|
| ବ୍ୟାଙ୍କ୍ ହିସାବ ଦାୟୀ<br>ହରେନ୍ଦ୍ରଙ୍କ ମୂଳଧନ ହିସାବ ବାବଦ<br>( ହରେନ୍ଦ୍ର ଆଣିଥିବା ସମସ୍ତ ଟଙ୍କା ସକାଶେ ତାଙ୍କ ମୂଳଧନ ହିସାବକୁ ଦାତା କରାଗଲା । ) | ୧୬,୦୦୦ | ୧୬,୦୦୦ |
| ହରେନ୍ଦ୍ରଙ୍କ ମୂଳଧନ ହିସାବ ଦାୟୀ<br>ଉପେନ୍ଦ୍ରଙ୍କ ମୂଳଧନ ହିସାବ ବାବଦ<br>ନରେନ୍ଦ୍ରଙ୍କ ମୂଳଧନ ହିସାବ ବାବଦ<br>( ସୁନାମ ବାବଦ ଟଙ୍କା ହରେନ୍ଦ୍ରଙ୍କ ମୂଳଧନ ହିସାବରୁ ଅଣାଯାଇ ପୁରାତନ ଅଂଶୀଦାରଙ୍କ ମୂଳଧନ ହିସାବରେ ତ୍ୟାଗ ଅନୁପାତରେ ଦାତା କରାଗଲା ।) | ୬,୦୦୦ | <br>୪,୫୦୦<br>୧,୫୦୦ |

(ii) କେତେକ ସମୟରେ ନବାଗତ ଅଂଶୀଦାର ମୂଳଧନ ବାବଦ ଅର୍ଥକୁ ପୁରାତନ ଅଂଶୀଦାରମାନଙ୍କୁ ଘରୋଇ ଭାବରେ ଦିଅନ୍ତି । ଫଳତଃ ଏ ସମ୍ପର୍କୀୟ ନେଣଦେଣ ବ୍ୟବସାୟୀ ପ୍ରତିଷ୍ଠାନର ହିସାବପତ୍ରରେ ଲିପିବଦ୍ଧ ହୁଏ ନାହିଁ । ଏପରି ଭାବରେ ସୁନାମ ବାବଦ ଅର୍ଥ ଦେବା ଆଦୌ ଯୁକ୍ତିଯୁକ୍ତ ନୁହେ । କାରଣ ନୂତନ ଅଂଶୀଦାର ଯେ ସୁନାମ ବାବଦ ଅର୍ଥ ପ୍ରଦାନ କରିଛନ୍ତି ଆବଶ୍ୟକ ବେଳେ ସେ ତାହା ପ୍ରମାଣ କରିପାରିବେ ନାହିଁ । ତେଣୁ ଏହି ପଦ୍ଧତି ଆଦୌ ବାଞ୍ଛନୀୟ ନୁହେଁ ।

(iii) ପୁନର୍ମୂଲ୍ୟାୟନ ପଦ୍ଧତି (Revaluation method)

କେତେକ ସମୟରେ ନୂତନ ଅଂଶୀଦାର ମୂଳଧନ ବାବଦ ଅର୍ଥ ଆଣିଲେ ମଧ୍ୟ ସୁନାମ ବାବଦ ଅର୍ଥ ପ୍ରଦାନ କରିବାକୁ ସକ୍ଷମ ହୁଅନ୍ତି ନାହିଁ । ସେପରି କ୍ଷେତ୍ରରେ ସୁନାମର ପୂର୍ଣ୍ଣ ମୂଲ୍ୟ

ହିସାବ କରାଯାଇ ସେହି ପରିମାଣ ସକାଶେ ସୁନାମ ହିସାବକୁ ଦାୟୀ କରାଯାଏ ଓ ପୁରାତନ ଅଂଶୀଦାରମାନଙ୍କର ମୂଳଧନ ହିସାବକୁ ପୁରାତନ ଅନୁପାତରେ ଦାତା କରାଯାଏ । ଯେହେତୁ ସୁନାମ ବାବଦ କୌଣସି ଅର୍ଥ ବ୍ୟବସାୟକୁ ଅଣାଯାଇ ନାହିଁ, ତେଣୁ ପୁରାତନ ଅଂଶୀଦାର-ମାନଙ୍କ ପକ୍ଷରେ ସୁନାମ ବାବଦ ଟଙ୍କା ବ୍ୟବସାୟରୁ ଉଠାଇଦେବା ପ୍ରଶ୍ନ ଉଠେନାହିଁ । ଏପରି କ୍ଷେତ୍ରରେ ସୁନାମ ହିସାବର ଦାୟୀ ବାକି ଏକ ସମ୍ପତ୍ତି ସ୍ୱରୂପ ଅଂଶୀଦାରୀ କାରବାରର ଉଦ୍‌ବୃତ୍ତ ପତ୍ରରେ ପ୍ରକାଶିତ ହୁଏ । ଯେହେତୁ ଏହା ଏକ ଅମୂର୍ତ୍ତି ସମ୍ପତ୍ତି ଏହାକୁ କ୍ରମଶଃ ବାର୍ଷିକ କିସ୍ତି ଅନୁଯାୟୀ ଲେପ କରାଯାଏ ।

## ଦୃଷ୍ଟାନ୍ତ (୧୮)

ଶରତ୍ ଓ ହେମନ୍ତ ଗୋଟିଏ ଅଂଶୀଦାରୀ କାରବାରର ଅଂଶୀଦାର ; ସେମାନେ ଲାଭ ଓ କ୍ଷତି ୩:୨ ଅନୁପାତରେ ଭୋଗ କରୁଥିଲେ । ସେମାନେ ଶିଶିରକୁ ନୂତନ ଅଂଶୀଦାର ରୂପେ ଗ୍ରହଣ କରିବାକୁ ସ୍ୱୀକୃତ ହେଲେ । ଶିଶିର ମୂଳଧନ ବାବଦ ୮,୦୦୦ ଟଙ୍କା ଆଣିବେ, କିନ୍ତୁ ସେ ସୁନାମ ବାବଦ କିଛି ଅର୍ଥ ଆଣିବାକୁ ଅସମର୍ଥ ହେଉଥିବାରୁ ସୁନାମର ମୂଲ୍ୟ ନିର୍ଦ୍ଧାରଣ କରାଯାଇ ଏହି ସୁନାମ ହିସାବ ଖୋଲାଯିବ । ସୁନାମର ମୂଲ୍ୟ ଗତ ତିନିବର୍ଷର ହାରାହାରି ଲାଭର ଦୁଇଗୁଣ ରୂପେ ନିର୍ଦ୍ଧାରିତ ହେବ । ଏହି ତିନିବର୍ଷର ଲାଭ ୫,୦୦୦ ଟଙ୍କା, ୬,୦୦୦ ଟଙ୍କା ଓ ୭,୫୦୦ ଟଙ୍କା ହୋଇଥିଲା । ଅଂଶୀଦାରମାନଙ୍କର ନୂତନ ଲାଭ ବଣ୍ଟନର ଅନୁପାତ ଯଥାକ୍ରମେ ୩ : ୨ : ୧ ହେବ । ଆବଶ୍ୟକ ଜାବଡ଼ା ପ୍ରସ୍ତୁତ କର ।

## ସମାଧାନ

| | | ଟଙ୍କା | ଟଙ୍କା |
|---|---|---|---|
| ବ୍ୟାଙ୍କ ହିସାବ | ଦାୟୀ | ୮,୦୦୦ | |
| ଶିଶିରଙ୍କର ମୂଳଧନ ହିସାବ ବାବଦ | | | ୮୦୦୦ |
| (ଶିଶିର ମୂଳଧନ ବାବଦ ୮,୦୦୦ ଟଙ୍କା ବ୍ୟାଙ୍କରେ ଗଚ୍ଛିତ କରାଗଲା ) | | | |

| | | ଟଙ୍କା | ଟଙ୍କା |
|---|---|---|---|
| ସୁନାମ ହିସାବ | ଦାୟୀ | ୧୨,୦୦୦ | |
| ଶରତଙ୍କ ମୂଳଧନ ହିସାବ ବାବଦ | | | ୭,୨୦୦ |
| ହେମନ୍ତଙ୍କ ମୂଳଧନ ହିସାବ ବାବଦ $\left\{\frac{(୫,୦୦୦+୭,୦୦୦+୭,୦୦୦\times ୨)}{୩}\right.$ | | | ୪,୮୦୦ |
| =୧୨,୦୦୦ ଟଙ୍କା ସୁନାମର ମୂଲ୍ୟ ନିର୍ଦ୍ଧାରିତ ହେଲା ଓ ପୁରାତନ ଅଂଶୀଦାରମାନେ ଏହାକୁ ୩ : ୨ ଅନୁପାତରେ ଭାଗ କରିନେଲେ ।) | | | |

### (iv) ବିବରଣୀ ପୁନର୍ମୂଲ୍ୟାୟନ ପଦ୍ଧତି (Memorandum Revaluation Method)

ଏହାର ପୂର୍ବତନ ପଦ୍ଧତିରେ ଯେପରି ପରିସ୍ଥିତି ହୋଇଥିଲା ଏଠାରେ ମଧ୍ୟ ନୂତନ ଅଂଶୀଦାର ସୁନାମ ବାବଦ କୌଣସି ଅର୍ଥ ଆଣିବାକୁ ଅସମର୍ଥ ହୁଅନ୍ତି ଓ ଏକ ସୁନାମ ହିସାବ ଖୋଲିଯାଏ । ପାର୍ଥକ୍ୟ ଏତିକି ଯେ, ପୂର୍ବତନ ପଦ୍ଧତିରେ ସୁନାମ ହିସାବକୁ ବନ୍ଦ କରି ନ ଯାଇ ତାହାକୁ ଉଦ୍‌ବୃତ୍ତ ପତ୍ରରେ ପ୍ରକାଶ କରାଯାଏ କିନ୍ତୁ ଏହି ପଦ୍ଧତି ଅନୁଯାୟୀ ସୁନାମ ହିସାବକୁ ସଙ୍ଗେ ସଙ୍ଗେ ବନ୍ଦ କରାଯାଏ । ଏପରି କରିବା ସକାଶେ ସମସ୍ତ ଅଂଶୀଦାରଙ୍କ ମୂଳଧନ ହିସାବକୁ ନୂତନ ଲାଭ ବଣ୍ଟନ ଅନୁପାତରେ ଦାୟୀ କରାଯାଏ । ସୁନାମ ହିସାବକୁ ଦାତା କରାଯାଏ । ଏ କ୍ଷେତ୍ରରେ ସୁନାମ ହିସାବ ବନ୍ଦ ହୋଇଯାଉଥିବାରୁ ଏହାକୁ ଉଦ୍‌ବୃତ୍ତ ପତ୍ରରେ ଅନ୍ତର୍ଭୁକ୍ତ କରିବା ପ୍ରଶ୍ନ ଉଠେନାହିଁ । ପୂର୍ବ ପଦ୍ଧତି ତୁଳନାରେ ଏହି ପଦ୍ଧତି ଅଧିକ ଯୁକ୍ତିଯୁକ୍ତ ମନେହୁଏ ।

#### ଦୃଷ୍ଟାନ୍ତ (୧୯)

ଦୃଷ୍ଟାନ୍ତ (୧୮) ସହିତ ବିବରଣୀ ସମାନ । କେବଳ ସୁନାମ ହିସାବର ବିକ୍ଷେପ ସାଧନ କରିଯିବ । ଆବଶ୍ୟକ ଜାବ୍‌ଦା ପ୍ରସ୍ତୁତ କର ।

**ସମାଧାନ**

| | | ଟଙ୍କା | ଟଙ୍କା |
|---|---|---|---|
| ସୁନାମ ହିସାବ | ଦାୟୀ | ୧୨,୦୦୦ | |
| ଶରତଙ୍କ ମୂଳଧନ ହିସାବ ବାବଦ | | | ୭,୨୦୦ |
| ହେମନ୍ତଙ୍କ ମୂଳଧନ ହିସାବ ବାବଦ | | | ୪,୮୦୦ |
| (ସୁନାମ ହିସାବ ଖୋଲିଯାଇ ପୁରାତନ ଅଂଶୀଦାରଙ୍କର ମୂଳଧନ ହିସାବକୁ ପୁରାତନ ଲାଭ ବଣ୍ଟନ ଅନୁପାତରେ ଦାତା କରାଗଲା ।) | | | |

| | | ଟଙ୍କା | ଟଙ୍କା |
|---|---|---|---|
| ଶରତଙ୍କ ମୂଳଧନ ହିସାବ | ଡାଏଁ | ୬,୦୦୦ | |
| ହେମନ୍ତଙ୍କ ମୂଳଧନ ହିସାବ | ଡାଏଁ | ୪,୦୦୦ | |
| ଶିଶିରଙ୍କ ମୂଳଧନ ହିସାବ | ଡାଏଁ | ୨,୦୦୦ | |
| ସୁନାମ ହିସାବ ବାବଦ | | | ୧୨,୦୦୦ |
| ( ଅଂଶୀଦାରମାନଙ୍କର ମୂଳଧନ ହିସାବକୁ ୩ : ୨ : ୧ ଅନୁପାତରେ ଡାଏଁ କରାଯାଇ ସୁନାମ ହିସାବ ବନ୍ଦ କରାଗଲା ) | | | |

ଯେହେତୁ ସୁନାମ ହିସାବରେ କୌଣସି ବାକି ରହିଲା ନାହିଁ ତେଣୁ ଏହି ହିସାବ ଉଦ୍‌ବୃତ୍ତ ପତ୍ରରେ ପ୍ରକାଶିତ ହେବନାହିଁ ।

କେତେକ ସମୟରେ ସୁନାମ ହିସାବ ଉଦ୍‌ବୃତ୍ତ ପତ୍ରରେ ପୂର୍ବରୁ ଅନ୍ତର୍ଭୁକ୍ତ ଥାଇପାରେ । ଏପରି କ୍ଷେତ୍ରରେ ଯଦି ନୂତନ ଅଂଶୀଦାର ଗ୍ରହଣ କରାଯାଏ ଏବଂ ସୁନାମର ମୂଲ୍ୟ ପୂର୍ବ ପରିମାଣ ଅପେକ୍ଷା ଅଧିକ ହୁଏ ତାହାହେଲେ କେବଳ ଅଧିକା ପରିମାଣକୁ ହିସାବଭୁକ୍ତ କରାଯାଏ । ଅର୍ଥାତ୍ ଅଧିକା ପରିମାଣ ସକାଶେ ସୁନାମ ହିସାବକୁ ଡାଏଁ କରାଯାଏ ଓ ପୁରାତନ ଅଂଶୀଦାରମାନଙ୍କର ମୂଳଧନ ହିସାବକୁ ପୁରାତନ ଲାଭ ବଣ୍ଟନ ଅନୁପାତରେ ଡାବା କରାଯାଏ । କିନ୍ତୁ ସୁନାମର ମୂଲ୍ୟାଙ୍କନ ଫଳରେ ଯଦି ସୁନାମର ମୂଲ୍ୟ ହ୍ରାସପାଏ ତାହାହେଲେ ସେହି କ୍ଷତିକୁ ହିସାବଭୁକ୍ତ କରାଯାଏ, ଅର୍ଥାତ୍ ସୁନାମ ହିସାବକୁ ଡାବା କରାଯାଏ ଓ ପୁରାତନ ଅଂଶୀଦାରଙ୍କର ମୂଳଧନ ହିସାବକୁ ପୁରାତନ ଲାଭ ବଣ୍ଟନ ଅନୁପାତରେ ଡାଏଁ କରାଯାଏ ।

### ଦୃଷ୍ଟାନ୍ତ (୨୦)

କ ଓ ଖ ଗୋଟିଏ ଅଂଶୀଦାରି କାରବାରର ଯଥାକ୍ରମେ ୨/୩ ଓ ୧/୩ ଅଂଶର ଅଂଶୀଦାର । ସେମାନେ ଗ କୁ ନୂତନ ଅଂଶୀଦାର ରୂପେ ଗ୍ରହଣ କଲେ । ଗ ମୂଳଧନ ବାବଦ ୪,୦୦୦ ଟଙ୍କା ଆଣିବେ । ସୁନାମ ବାବଦ ସେ କୌଣସି ଅର୍ଥ ଆଣିବାକୁ ଅକ୍ଷମ ହୋଇ ଥିବାରୁ ସୁନାମର ମୂଲ୍ୟାଙ୍କନ କରାଯାଇ ଏହାର ମୂଲ୍ୟ ୬,୦୦୦ ଟଙ୍କା ଧାର୍ଯ୍ୟ ହେଲା । ନୂତନ ଲାଭ ଓ କ୍ଷତି ବଣ୍ଟନର ଅନୁପାତ ଯଥାକ୍ରମେ ୩ : ୨ : ୧ ହେବ । ତାଙ୍କର ସଂକ୍ଷିପ୍ତ ଉଦ୍‌ବୃତ୍ତ ପତ୍ର ନିମ୍ନପ୍ରକାର ଥିଲା :

| | ଟଙ୍କା | | ଟଙ୍କା |
|---|---|---|---|
| କ ଙ୍କର ମୂଳଧନ | ୮,୦୦୦ | ବିବିଧ ସମ୍ପତ୍ତି | ୧୦,୦୦୦ |
| ଖ ଙ୍କର ମୂଳଧନ | ୬,୦୦୦ | ବ୍ୟାଙ୍କ ହିସାବ | ୨,୫୦୦ |
| ବିବିଧ ମହାଜନ | ୩,୦୦୦ | ସୁନାମ ହିସାବ | ୪,୫୦୦ |
| | ୧୭,୦୦୦ | | ୧୭,୦୦୦ |

ଆବଶ୍ୟକୀୟ ଜାବ୍‌ଦା ଓ ଉଦ୍‌ବୃତ୍ତ ପତ୍ର ପ୍ରସ୍ତୁତ କର ।

## ସମାଧାନ

| | | ଟଙ୍କା | ଟଙ୍କା |
|---|---|---|---|
| ବ୍ୟାଙ୍କ ହିସାବ | ଡାଏରି | ୪,୦୦୦ | |
| ଗ ଙ୍କର ମୂଳଧନ ହିସାବ ବାବଦ | | | ୪,୦୦୦ |
| ( ଗ ମୂଳଧନ ବାବଦ ୪,୦୦୦ ଟଙ୍କା ଆଣିଲେ ) | | | |
| ସୁନାମ ହିସାବ | ଡାଏରି | ୧,୫୦୦ | |
| କ ଙ୍କର ମୂଳଧନ ହିସାବ ବାବଦ | | | ୧,୦୦୦ |
| ଖ ଙ୍କର ମୂଳଧନ ହିସାବ ବାବଦ | | | ୫୦୦ |
| ( ସୁନାମ ବାବଦ ଅଧିକା ମୂଲ୍ୟ ୬,୦୦୦—୪,୫୦୦ =୧,୫୦୦ ଟଙ୍କାକୁ ପୁରାତନ ଅଂଶୀଦାରମାନେ ପୁରାତନ ଲାଭ ଓ କ୍ଷତି ବଣ୍ଟନ ଅନୁପାତ, ଅର୍ଥାତ୍ ୨ : ୧ ଅନୁପାତରେ ବାଣ୍ଟି ନେଲେ । | | | |

ଉଦ୍‌ବର୍ତ୍ତ ପତ୍ର

| | ଟଙ୍କା | | ଟଙ୍କା |
|---|---|---|---|
| କ ଙ୍କର ମୂଳଧନ | ୯,୦୦୦ | ବିବିଧ ସଂପତ୍ତି | ୧୦,୦୦୦ |
| ଖ ଙ୍କର ମୂଳଧନ | ୬,୫୦୦ | ବ୍ୟାଙ୍କ ହିସାବ | ୬,୫୦୦ |
| ଗ ଙ୍କର ମୂଳଧନ | ୪,୦୦୦ | ସୁନାମ ହିସାବ | ୬,୦୦୦ |
| ବିବିଧ ମହାଜନ | ୩,୦୦୦ | | |
| | ୨୨,୫୦୦ | | ୨୨,୫୦୦ |

ଯଦି ନୂତନ ଅଂଶୀଦାର ଯୋଗ ଦେବା ପରେ ଅଂଶୀଦାରମାନେ ଉଦ୍‌ବର୍ତ୍ତ ପତ୍ରରେ ସୁନାମ ହିସାବ ଦର୍ଶାଇବେ ନାହିଁ ବୋଲି ସ୍ଥିର କରନ୍ତି, ତାହାହେଲେ ଅଂଶୀଦାରମାନଙ୍କର ମୂଳଧନ ହିସାବକୁ ନୂତନ ଲାଭ ଓ କ୍ଷତି ବଣ୍ଟନ ଅନୁପାତରେ ଡାଏରି କରି ସୁନାମ ହିସାବକୁ ଲୋପ କରାଯାଇପାରେ । ସେପରି କ୍ଷେତ୍ରରେ ନିମ୍ନଲିଖିତ ଜାବ୍‌ଦା ପ୍ରସ୍ତୁତ କରାଯିବ ।

| | | ଟଙ୍କା | ଟଙ୍କା |
|---|---|---|---|
| କ ଙ୍କର ମୂଳଧନ ହିସାବ | ଦାୟୀ | ୩,୦୦୦ | |
| ଖ ଙ୍କର ମୂଳଧନ ହିସାବ | ଦାୟୀ | ୨,୦୦୦ | |
| ଗ ଙ୍କର ମୂଳଧନ ହିସାବ | ଦାୟୀ | ୧,୦୦୦ | |
| ସୁନାମ ହିସାବ ବାବଦ | | | ୬,୦୦୦ |
| ( ସମସ୍ତ ଅଂଶୀଦାରଙ୍କର ମୂଳଧନ ହିସାବକୁ ନୂତନ ଲାଭ ଓ କ୍ଷତି ବଣ୍ଟନ ଅନୁପାତ, ଅର୍ଥାତ୍ ୩ : ୨ : ୧ ଅନୁପାତରେ ଦାୟୀ କରାଯାଇ ସୁନାମ ହିସାବକୁ ବନ୍ଦ କରାଗଲା ) | | | |

ଉଦ୍‌ବୃତ୍ତ ପତ୍ର

| | ଟଙ୍କା | | ଟଙ୍କା |
|---|---|---|---|
| କ ଙ୍କର ମୂଳଧନ | ୬,୦୦୦ | ବିବିଧ ସଂପତ୍ତି | ୧୦,୦୦୦ |
| ଖ ଙ୍କର ମୂଳଧନ | ୪,୫୦୦ | ବ୍ୟାଙ୍କ ହିସାବ | ୬,୫୦୦ |
| ଗ ଙ୍କର ମୂଳଧନ | ୩,୦୦୦ | | |
| ବିବିଧ ମହାଜନ | ୩,୦୦୦ | | |
| | ୧୬,୫୦୦ | | ୧୬,୫୦୦ |

କେତେକ ସମୟରେ ସୁନାମର ପରିମାଣ ଉକ୍ତ ହୋଇନଥାଏ, କିନ୍ତୁ ଅଂଶୀଦାରଙ୍କର ମୂଳଧନର ପରିମାଣ ଏବଂ ସେମାନଙ୍କର ଲାଭ ଓ କ୍ଷତି ବଣ୍ଟନର ଅନୁପାତରୁ ସୁନାମର ମୂଲ୍ୟ ଅନୁମାନ କରିବାକୁ ପଡ଼େ ।

## ଦୃଷ୍ଟାନ୍ତ (୨୧)

କ ଓ ଖ ଗୋଟିଏ ଅଂଶୀଦାରି କାରବାରର ଅଂଶୀଦାର ଥାଇ ଲାଭ ଓ କ୍ଷତି ୩ : ୨ ଅନୁପାତରେ ଭୋଗ କରୁଥିଲେ । ତାଙ୍କର ମୂଳଧନ ଯଥାକ୍ରମେ ୬,୦୦୦ ଟଙ୍କା ଓ ୪,୦୦୦ ଟଙ୍କା ଥିଲା । ସେମାନେ ଗ କୁ ଭବିଷ୍ୟ ଲାଭର ୧/୬ ଅଂଶ ଦେବାକୁ ସ୍ୱୀକୃତ ହେଲେ, ଲାଭ ଓ କ୍ଷତି ବଣ୍ଟନର ନୂତନ ଅନୁପାତ ୩ : ୨ : ୧ ହେଲା । ଗ କୁ ମୂଳଧନ ବାବଦ ୩,୦୦୦ ଟଙ୍କା ଆଣିବାକୁ କୁହାଗଲା । ଆବଶ୍ୟକ ଜାବ୍‌ଦା ପ୍ରସ୍ତୁତ କର ।

## ସମାଧାନ

ଏହି ପ୍ରଶ୍ନଟି ପର୍ଯ୍ୟାଲୋଚନା କଲେ ଦେଖାଯିବ ଯେ ଯେହେତୁ ନୂତନ ଲାଭ ଓ କ୍ଷତି ବଣ୍ଟନର ଅନୁପାତ ୩ : ୨ : ୧, ତେଣୁ କ ଙ୍କର ମୂଳଧନ ୬,୦୦୦ ଟଙ୍କା ଓ ଖ ଙ୍କର ମୂଳଧନ ୪,୦୦୦ ଟଙ୍କା ହୁଏ, ତାହାହେଲେ ସେହି କ୍ରମରେ ଗ ଙ୍କର ମୂଳଧନ ୨,୦୦୦ ଟଙ୍କା ହେବା ଉଚିତ; କିନ୍ତୁ ତାହା ପରିବର୍ତ୍ତେ ଯେତେବେଳେ ୩,୦୦୦ ଟଙ୍କା ମୂଳଧନ ବାବଦ ଆଣିବାକୁ କୁହାଯାଇଛି, ତେଣୁ ସେହି କ୍ରମରେ କ ଓ ଖ ଙ୍କର ମୂଳଧନ ଯଥାକ୍ରମେ ୯,୦୦୦ ଟଙ୍କା ଓ ୬,୦୦୦ ଟଙ୍କା ହେବ । ତାହାହେଲେ {(୯,୦୦୦ + ୬,୦୦୦) — (୬,୦୦୦ + ୪ ୦୦୦)} = {୧୫,୦୦୦—୧୦ ୦୦୦} = ୫,୦୦୦ ଟଙ୍କା ସୁନାମର ମୂଲ୍ୟ ବୋଲି ଗ୍ରହଣ କରିବାକୁ ହେବ, ଯାହା କ ଓ ଖ ତାଙ୍କର ପୁରାତନ ଲାଭ ବଣ୍ଟନ ଅନୁପାତରେ ଭାଗ କରିଦେବେ ।

ଜାବ୍‌ଦା

| | ଟଙ୍କା | ଟଙ୍କା |
|---|---|---|
| ବ୍ୟାଙ୍କ ହିସାବ ଦାୟୀ | ୩,୦୦୦ | |
| ଗ ଙ୍କର ମୂଳଧନ ହିସାବ ବାବଦ | | ୩,୦୦୦ |
| ( ଗ ମୂଳଧନ ବାବଦ ୩,୦୦୦ ଟଙ୍କା ଆଣିଲେ ) | | |
| ସୁନାମ ହିସାବ ଦାୟୀ | ୫,୦୦୦ | |
| କ ଙ୍କର ମୂଳଧନ ହିସାବ ବାବଦ | | ୩,୦୦୦ |
| ଖ ଙ୍କର ମୂଳଧନ ହିସାବ ବାବଦ | | ୨,୦୦୦ |
| ( ୫,୦୦୦ ଟଙ୍କା ସକାଶେ ସୁନାମ ହିସାବ ଖୋଲାଗଲା ଓ ତାହାକୁ କ ଓ ଖ ପୁରାତନ ଲାଭ ବଣ୍ଟନ ଅନୁପାତ, ଅର୍ଥାତ୍ ୩ : ୨ ଅନୁପାତରେ ଭାଗ କରିନେଲେ । ) | | |

### (ଖ) ସମ୍ପତ୍ତି ଓ ଦେୟର ପୁନର୍ମୂଲ୍ୟାୟନ (Revaluation of Assets and Liabilities)

କୌଣସି ଅଂଶୀଦାରୀ କାରବାରରେ ଯେତେବେଳେ ଜଣେ ନୂତନ ଅଂଶୀଦାର ଗ୍ରହଣ କରାଯାଏ, ସେତେବେଳେ ସାଧାରଣତଃ କାରବାରର ସମ୍ପତ୍ତି ଓ ଦେୟ ବା ଦାୟର ପୁନର୍ମୂଲ୍ୟାୟନ ଆବଶ୍ୟକ ହୁଏ । ଏହା ଦୁଇଟି କାରଣରୁ ଆବଶ୍ୟକ ହୁଏ, (୧) ଯଦି ପୁନର୍ମୂଲ୍ୟାୟନରେ କୌଣସି ଲାଭ ହେବାର ସମ୍ଭାବନା ଥାଏ, ତାହାହେଲେ ପୁରାତନ ଅଂଶୀଦାରମାନେ ନୂତନ ଅଂଶୀଦାରଙ୍କୁ ତାହାର ଭାଗ ଦେବାକୁ ସ୍ୱାଭାବିକ ଭାବରେ ଚାହାନ୍ତି ନାହିଁ ।

(୬) ଯଦି ପୁନର୍ମୂଲ୍ୟାୟନରେ କ୍ଷତି ହେବାର ସମ୍ଭାବନା ଥାଏ, ତାହାହେଲେ ନୂତନ ଅଂଶୀଦାର ତାହା ବହନ କରିବାକୁ ସ୍ୱୀକୃତ ନ ହେବା ସ୍ୱାଭାବିକ । ଯାହା ହେଉ, କାରବାରର ସମ୍ପତ୍ତି ଓ ଦାୟର ପୁନର୍ମୂଲ୍ୟାୟନ ହୋଇଥାଏ । ଏହା ଦୁଇଟି ପ୍ରଣାଳୀରେ କରାଯାଇପାରେ ; ଯଥା: (୧) ସମ୍ପତ୍ତି ଓ ଦାୟର ପୁନର୍ମୂଲ୍ୟାଙ୍କିତ ପରିମାଣ ହିସାବ ବହିରେ ଲିପିବଦ୍ଧ କରାଯାଇପାରେ ଓ (୬) ପୁନର୍ମୂଲ୍ୟାଙ୍କିତ ପରିମାଣ ହିସାବ ବହିରେ ଲିପିବଦ୍ଧ କରାଯାଏ ନାହିଁ । ଏହି ଦୁଇଟି ପ୍ରଣାଳୀ ନିମ୍ନରେ ବିଶଦ ଭାବରେ ବ୍ୟାଖ୍ୟା କରାଗଲା ।

**(୧) ଯେଉଁଠାରେ ପୁନର୍ମୂଲ୍ୟାଙ୍କିତ ପରିମାଣ ହିସାବ ବହିରେ ଲିପିବଦ୍ଧ କରାଯାଏ ।**

ଏପରି କ୍ଷେତ୍ରରେ ଖାତାସ୍ଥାନରେ ପୁନର୍ମୂଲ୍ୟାଙ୍କନ ହିସାବ (Revaluation A/C) ନାମକ ଗୋଟିଏ ନୂତନ ହିସାବ ଖୋଲାଯାଏ ଏବଂ ଏହାକୁ ନିମ୍ନଲିଖିତ ପ୍ରଣାଳୀରେ ଦାୟୀ ବା ଦାତା କରାଯାଏ ।

(i) କୌଣସି ସମ୍ପତ୍ତିର ମୂଲ୍ୟ ବୃଦ୍ଧି ପାଇଲେ :

| | | |
|---|---|---|
| ସମ୍ପତ୍ତି ହିସାବ | ଦାୟୀ | ଅଧିକା ପରିମାଣ |
| ପୁନର୍ମୂଲ୍ୟାୟନ ହିସାବ ବାବଦ | | ସକାଶେ |

(ii) କୌଣସି ସମ୍ପତ୍ତିର ମୂଲ୍ୟ ହ୍ରାସ ପାଇଲେ :

| | | |
|---|---|---|
| ପୁନର୍ମୂଲ୍ୟାୟନ ହିସାବ | ଦାୟୀ | ନୂତନ ଓ ପୁରାତନ |
| ସମ୍ପତ୍ତି ହିସାବ ବାବଦ | | ମୂଲ୍ୟର ବ୍ୟବଧାନ |
| | | ସକାଶେ |

ଏଠାରେ ସ୍ମରଣ ରଖିବାକୁ ହେବ ଯେ, ଏହି ନିୟମ ସ୍ଥାୟୀ ସମ୍ପତ୍ତି ସକାଶେ ପ୍ରଯୁଜ୍ୟ ମାତ୍ର ଚଳନ୍ତି ସମ୍ପତ୍ତି କ୍ଷେତ୍ରରେ ଏବଂ ବିଶେଷତଃ ଖାତକ, ବିନିଯୋଗ ଓ ମହଜୁଦ ପଣ୍ୟର ମୂଲ୍ୟ ହ୍ରାସ ପାଇଲେ ସେହି ସମ୍ପତ୍ତି ହିସାବଗୁଡ଼ିକୁ ପ୍ରତ୍ୟକ୍ଷ ଭାବରେ ଦାତା ନ କରି ସେଥି ନିମନ୍ତେ ସଞ୍ଚିତ ହିସାବକୁ ଦାତା କରିବା ଅଧିକ ଯୁକ୍ତିଯୁକ୍ତ ହେବ, କାରଣ ଏଗୁଡ଼ିକର ବଜାର ଦର ପରିବର୍ତ୍ତନଶୀଳ । ମନେକର ଯଦି କାରବାରର ଉଦ୍‌ବୃତ୍ତ ପତ୍ରରେ ମହଜୁଦ ପଣ୍ୟର ମୂଲ୍ୟ ୧୬,୦୦୦ ଟଙ୍କା ଲିପିବଦ୍ଧ କରାଯାଇଛି କିନ୍ତୁ ପୁନର୍ମୂଲ୍ୟାୟନ ଫଳରେ ଏହାର ମୂଲ୍ୟ ୧୦,୦୦୦ ଟଙ୍କା ସାବ୍ୟସ୍ତ ହୁଏ । ତାହାହେଲେ ମହଜୁଦ ପଣ୍ୟ ହିସାବକୁ ୬,୦୦୦ ଟଙ୍କା ସକାଶେ ଦାତା ନ କରି ମହଜୁଦ ପଣ୍ୟ ସଞ୍ଚିତ ହିସାବ (Stock Reserve A/c)କୁ ଦାତା କରାଯିବ ।

(ii) କୌଣସି ଦାୟିତ୍ୱ (Liabilities)ର ମୂଲ୍ୟ ବୃଦ୍ଧି ପାଇଲେ :

| | | |
|---|---|---|
| ପୁନର୍ମୂଲ୍ୟାୟନ ହିସାବ | ଦାୟୀ | ଦାୟିତ୍ୱର ନୂତନ ଓ ପୁରାତନ ମୂଲ୍ୟର ଅନ୍ତରଫଳ ସହାଶେ |
| ଦାୟିତ୍ୱ ହିସାବ ବାବଦ | | |

(iv) କୌଣସି ଦାୟିତ୍ୱର ମୂଲ୍ୟ ହ୍ରାସ ପାଇଲେ :

| | | |
|---|---|---|
| ଦାୟିତ୍ୱ ହିସାବ | ଦାୟୀ | ଦାୟିତ୍ୱର ନୂତନ ଓ ପୁରାତନ ମୂଲ୍ୟର ଅନ୍ତରଫଳ ସହାଶେ |
| ପୁନର୍ମୂଲ୍ୟାୟନ ହିସାବ ବାବଦ | | |

(v) ଅଂଶୀଦାରୀ କାରବାରରେ ଉଦ୍‌ବୃତ୍ତ ପତ୍ରରେ ଯଦି ସାଧାରଣ ସଞ୍ଚିତ ହିସାବ (General Reserve A/c) ଅଥବା ଲାଭ ଓ କ୍ଷତି ହିସାବରେ କୌଣସି ଦାତା ବାକୀ ଥାଏ, ତାହାହେଲେ ତାହାକୁ ପୁରାତନ ଅନୁପାତରେ ଭାଗ କରି ନେବେ ।

ସାଧାରଣ ସଞ୍ଚିତ ହିସାବ ଦାୟୀ
ଅଥବା
ଲାଭ ଓ କ୍ଷତି ହିସାବ ଦାୟୀ
ପୁରାତନ ଅଂଶୀଦାରଙ୍କର
ମୂଳଧନ/ଚଳନ୍ତି ହିସାବ ବାବଦ

ଲାଭ ଓ କ୍ଷତି ହିସାବର ବାକୀ ଯଦି ଦାତା ନ ହୋଇ ଦାୟୀ ହୋଇଥାଏ ତାହାହେଲେ ନିମ୍ନୋକ୍ତ ପ୍ରକାର ଜାବ୍‌ଦା ପ୍ରସ୍ତୁତ କରାଯିବ ।

ପୁରାତନ ଅଂଶୀଦାରଙ୍କର
ମୂଳଧନ/ଚଳନ୍ତି ହିସାବ ଦାୟୀ
ଲାଭ ଓ କ୍ଷତି ହିସାବ ବାବଦ

ବିଶେଷ ଦ୍ରଷ୍ଟବ୍ୟ : ଯଦି ପ୍ରଶ୍ନ ପତ୍ରରେ ସାଧାରଣ ସଞ୍ଚିତ ହିସାବ (ଯାହାର ବାକୀ ସର୍ବଦା ଦାତା ହୋଇଥାଏ) ଉଦ୍‌ବୃତ୍ତ ପତ୍ରରେ ଅନ୍ତର୍ଭୁକ୍ତ ହୋଇଥାଏ ଏବଂ ତହିଁରେ ଲାଭ ଓ କ୍ଷତି ହିସାବର ବାକୀ ମଧ୍ୟ ଥାଏ, ତାହାହେଲେ ଅନ୍ୟ ନିର୍ଦ୍ଦେଶ ନ ଥିଲେ ପରୀକ୍ଷାର୍ଥୀଙ୍କ ପକ୍ଷରେ ଏହି ବାକୀ ବା ବାକୀଗୁଡ଼ିକୁ ପୁରାତନ ଅଂଶୀଦାରଙ୍କ ମଧ୍ୟରେ ସେମାନଙ୍କର ଲାଭ ଓ କ୍ଷତି ବଣ୍ଟନର ପୁରାତନ ଅନୁପାତରେ ବଣ୍ଟନ କରିଦେବା ବିଧେୟ ହେବ ।

(vi) ଅବଶେଷରେ ପୁନର୍ମୂଲ୍ୟାୟନ ହିସାବକୁ ବନ୍ଦ କରାଯାଏ । ଯଦି ଏହି ହିସାବର ବାକୀ ଦାତା ହୁଏ ତାହାହେଲେ ତାହା ଲାଭ ଓ ଯଦି ଏହି ହିସାବର ବାକୀ ଦାୟୀ ହୁଏ

ତାହାହେଲେ ତାହା କ୍ଷତି ବୋଲି ପରିଗଣିତ ହେବ । ପୁନର୍ମୂଲ୍ୟାୟନ ହିସାବ ଏକ ଆୟ ବ୍ୟୟ ସୂଚକ ହିସାବ ଏବଂ ଏହା ସାହାଯ୍ୟରେ ସମ୍ପତ୍ତି ଓ ଦେୟ ବା ଦାୟ ହିସାବଗୁଡ଼ିକର ସମାଯୋଜନ କରାଯାଏ ; ଏହା ବସ୍ତୁସୂଚକ ହିସାବ ନୁହେଁ । ଏଥି ନିମନ୍ତେ ଏହାର ଅନ୍ୟ ଏକ ନାମ ଲାଭ ଓ କ୍ଷତି ସମାଯୋଜନ ହିସାବ (Profit and Loss Adjustment A/c) ଅଟେ । ଏହି ହିସାବର ଲାଭ ବା କ୍ଷତି ଯାହା ହେଉନା କାହିଁକ ତାହା ପୁରାତନ ଅଂଶୀଦାରମାନେ ତାଙ୍କର ପୁରାତନ ଲାଭ ଓ କ୍ଷତି ବଣ୍ଟନ ଅନୁପାତରେ ଭାଗ କରି ନିଅନ୍ତି । ଏହାର ଜାବ୍‌ଦା ନିମ୍ନରେ ପ୍ରଦତ୍ତ ହେଲା :

| | | |
|---|---|---|
| ପୁନର୍ମୂଲ୍ୟାୟନ ହିସାବ ଦାୟୀ<br>ପୁରାତନ ଅଂଶୀଦାରଙ୍କର<br>ମୂଳଧନ/ଚଳନ୍ତି ହିସାବ ବାବଦ | } | ପୁନର୍ମୂଲ୍ୟାୟନ ଫଳରେ<br>ଲାଭ ହେଲେ ତାହା<br>ସକାଶେ |
| ପୁରାତନ ଅଂଶୀଦାରଙ୍କର<br>ମୂଳଧନ/ଚଳନ୍ତି ହିସାବ ଦାୟୀ<br>ପୁନର୍ମୂଲ୍ୟାୟନ ହିସାବ ବାବଦ | } | ପୁନର୍ମୂଲ୍ୟାୟନ ଫଳରେ<br>କ୍ଷତି ହେଲେ ତାହା<br>ସକାଶେ |

### ଦୃଷ୍ଟାନ୍ତ ( ୨୨ )

ବିକାଶ ଓ ପ୍ରକାଶ ଗୋଟିଏ ଅଂଶୀଦାରୀ କାରବାରର ଅଂଶୀଦାର । ସେମାନେ ଲାଭ ଓ କ୍ଷତି ୩ : ୨ ଅନୁପାତରେ ଭାଗ କରନ୍ତି । ୧୯୭୫ ମସିହା ଜାନୁୟାରୀ ୧ ତାରିଖରେ ସେମାନେ ସୁବାସକୁ ଏକ ଅଂଶୀଦାର ରୂପେ ଗ୍ରହଣ କରିବାକୁ ନିମ୍ନଲିଖିତ ସର୍ତ୍ତମତେ ସ୍ୱୀକୃତ ହେଲେ :

(୧) ସୁବାସ ସୁନାମ ବାବଦ ୫,୦୦୦ ଟଙ୍କା ଆଣିବେ ଓ ତାହା ବ୍ୟବସାୟରେ ରଖାଯିବ ।

(୨) ଯନ୍ତ୍ରର ମୂଲ୍ୟ ୧୦% ହ୍ରାସ କରାଯିବ ଓ ମହଜୁଦ ପଣ୍ୟର ମୂଲ୍ୟ ୬,୦୦୦ ଟଙ୍କା ଧାର୍ଯ୍ୟ କରାଯିବ ।

(୩) ସୁବାସ ଭବିଷ୍ୟତ ଲାଭର ୧/୬ ଅଂଶ ପାଇବେ ।

(୪) ସେ ବିକାଶ ଓ ପ୍ରକାଶଙ୍କର ମିଳିତ ସମାଯୋଜିତ ମୂଳଧନର ୧/୩ ପରିମାଣ ମୂଳଧନ ସ୍ୱରୂପ ଆଣିବେ ।

ବିକାଶ ଓ ପ୍ରକାଶଙ୍କର ଅଂଶୀଦାର୍ଯ୍ୟ କାରବାରର ୧୯୮୪ ମସିହା ଡିସେମ୍ବର ୩୧ ତାରିଖର ଉଦ୍‌ବୃତ୍ତ ପତ୍ର ନିମ୍ନରେ ପ୍ରଦତ୍ତ ହେଲା ।

| ଦେୟ | ଟଙ୍କା | ଟଙ୍କା | ସମ୍ପତ୍ତି | ଟଙ୍କା |
|---|---|---|---|---|
| ବିବିଧ ମହାଜନ | | ୧୨,୦୦୦ | ଯନ୍ତ୍ର | ୧୦,୦୦୦ |
| ସାଧାରଣ ସଞ୍ଚିତ | | ୧୦,୦୦୦ | ମହଜୁଦ୍ ପଣ୍ୟ | ୮,୦୦୦ |
| ମୂଳଧନ ହିସାବ : | | | ବିବିଧ ଖାତକ | ୧୫,୦୦୦ |
| ବିକାଶ | ୯,୦୦୦ | | ନଗଦ ତହବିଲ | ୪,୦୦୦ |
| ପ୍ରକାଶ | ୬,୦୦୦ | ୧୫,୦୦୦ | | |
| | | ୩୭,୦୦୦ | | ୩୭,୦୦୦ |

ଅଂଶୀଦାର୍ଯ୍ୟ କାରବାରର ହିସାବ ବହିରେ ଜାବ୍‌ଦା ଓ ଖତିୟାନ ହିସାବ ପ୍ରସ୍ତୁତ କର । ନୂତନ ଅଂଶୀଦାର ଗୃହୀତ ହେବା ପରେ ସେମାନଙ୍କର ନୂତନ ଉଦ୍‌ବୃତ୍ତ ପତ୍ର ପ୍ରସ୍ତୁତ କର ଓ ଅଂଶୀଦାରମାନଙ୍କର ନୂତନ ଲାଭ ଓ କ୍ଷତି ବଣ୍ଟନର ଅନୁପାତ ସ୍ଥିର କର ।

ଉଦ୍‌ବୃତ ପତ୍ର ପ୍ରସ୍ତୁତ କର ଓ ଅଂଶୀଦାର ମାନଙ୍କର ନୂତନ ଲାଭ କ୍ଷତି ବଣ୍ଟନର ଅନୁପାତ ସ୍ଥିର କର ।

**ସମାଧାନ**

| ଜାବଦା | | ଦାସ୍ତୀ | ଜମା |
|---|---|---|---|
| | | ଟଙ୍କା | ଟଙ୍କା |
| ପୁନର୍ମୂଲ୍ୟାୟନ ହିସାବ | ଦାସ୍ତୀ | ୩,୦୦୦ | |
| ଯନ୍ତ୍ର ହିସାବ ବାବଦ | | | ୧,୦୦୦ |
| ମହଜୁଦ ପଣ୍ୟ ସଞ୍ଚିତ ହିସାବ ବାବଦ | | | ୨,୦୦୦ |
| ( ନୂତନ ଅଂଶୀଦାର ଗ୍ରହଣ ଯୋଗୁଁ ପୁନର୍ମୂଲ୍ୟାୟନ କରାଯାଇ ଯନ୍ତ୍ର ଓ ମହଜୁଦ ପଣ୍ୟର ମୂଲ୍ୟହ୍ରାସ କରାଗଲା । ) | | | |
| ବିକାଶଙ୍କ ମୂଳଧନ ହିସାବ | ଦାସ୍ତୀ | ୧,୮୦୦ | |
| ପ୍ରକାଶଙ୍କ ମୂଳଧନ ହିସାବ | ଦାସ୍ତୀ | ୧,୨୦୦ | |
| ପୁନର୍ମୂଲ୍ୟାୟନ ହିସାବ ବାବଦ | | | ୩,୦୦୦ |
| ( ପୁନର୍ମୂଲ୍ୟାୟନ ହିସାବର ଦାସ୍ତୀ ବାକୀକୁ ପୁରାତନ ଅଂଶୀଦାରମାନଙ୍କ ମୂଳଧନ ହିସାବ ମଧ୍ୟରେ ତାଙ୍କର ପୁରାତନ ଲାଭ ଓ କ୍ଷତି ବଣ୍ଟନ ଅନୁପାତରେ ଭାଗ କରାଯାଇ ସେହି ହିସାବ ବନ୍ଦ କରାଗଲା । ) | | | |

| | | ଦାୟୀ | ଦାତା |
|---|---|---|---|
| ସାଧାରଣ ସଞ୍ଚିତ ହିସାବ | ଦାୟୀ | ୧୦,୦୦୦ | |
| ବିକାଶଙ୍କ ମୂଳଧନ ହିସାବ ବାବଦ | | | ୬,୦୦୦ |
| ପ୍ରକାଶଙ୍କ ମୂଳଧନ ହିସାବ ବାବଦ | | | ୪,୦୦୦ |
| ( ସାଧାରଣ ସଞ୍ଚିତ ହିସାବର ପରିମାଣକୁ ପୁରାତନ ଅଂଶୀଦାରମାନେ ପୁରାତନ ଲାଭ ଓ କ୍ଷତି ବଣ୍ଟନ ଅନୁପାତରେ ଭାଗ କରିଦେଲେ । ) | | | |
| ନଗଦ ତହବିଲ ହିସାବ | ଦାୟୀ | ୧୪,୦୦୦ | |
| ସୁବାସଙ୍କ ମୂଳଧନ ହିସାବ ବାବଦ | | | ୯,୦୦୦ |
| ସୁନାମ ହିସାବ ବାବଦ | | | ୫,୦୦୦ |
| ( ସୁବାସ ମୂଳଧନ ଓ ସୁନାମ ବାବଦ ଟଙ୍କା ଆଣିଲେ । ) | | | |
| ସୁନାମ ହିସାବ | ଦାୟୀ | ୫,୦୦୦ | |
| ବିକାଶଙ୍କ ମୂଳଧନ ହିସାବ ବାବଦ | | | ୩,୦୦୦ |
| ପ୍ରକାଶଙ୍କ ମୂଳଧନ ହିସାବ ବାବଦ | | | ୨,୦୦୦ |
| ( ସୁନାମ ହିସାବର ପରିମାଣକୁ ପୁରାତନ ଅଂଶୀଦାରମାନେ ପୁରାତନ ଲାଭ ଓ କ୍ଷତି ବଣ୍ଟନ ଅନୁପାତରେ ଭାଗ କରି ନେଲେ । ) | | | |

## ଖତିୟାନ ହିସାବ

### ପୁନର୍ମୂଲ୍ୟାୟନ ହିସାବ

| ଦାୟୀ | ଟଙ୍କା | ଦାତା | ଟଙ୍କା |
|---|---|---|---|
| ଯନ୍ତ୍ର ହିସାବ ବାବଦ | ୧,୦୦୦ | ବିକାଶଙ୍କ ମୂଳଧନ ହିସାବ ବାବଦ | ୧,୮୦୦ |
| ମହଜୁଦ ସମ୍ପତ୍ତି ହିସାବ ବାବଦ | ୨,୦୦୦ | ପ୍ରକାଶଙ୍କ ମୂଳଧନ ହିସାବ ବାବଦ | ୧,୨୦୦ |
| | ୩,୦୦୦ | | ୩,୦୦୦ |

**ଦାୟୀ — ନଗଦ ତହବିଲ ହିସାବ — ଦାତା**

| | ଟଙ୍କା | | ଟଙ୍କା |
|---|---|---|---|
| ପୂର୍ବ ବାକି ବାବଦ | ୪,୦୦୦ | ବାକି ଗଡ଼ିଲା | ୧୮,୦୦୦ |
| ସୁବାସଙ୍କ ମୂଳଧନ ହିସାବ ବାବଦ | ୯,୦୦୦ | | |
| ସୁନାମ ହିସାବ ବାବଦ | ୫,୦୦୦ | | |
| | ୧୮,୦୦୦ | | ୧୮,୦୦୦ |
| ପୂର୍ବ ବାକି ବାବଦ | ୧୮,୦୦୦ | | |

**ଦାୟୀ — ବିକାଶଙ୍କ ମୂଳଧନ ହିସାବ — ଦାତା**

| | ଟଙ୍କା | | ଟଙ୍କା |
|---|---|---|---|
| ପୁନର୍ମୂଲ୍ୟାୟନ ହିସାବ ବାବଦ | ୧,୮୦୦ | ପୂର୍ବ ବାକି ବାବଦ | ୯,୦୦୦ |
| ବାକି ଗଡ଼ିଲା | ୧୬,୨୦୦ | ସାଧାରଣ ସଞ୍ଚିତ ହିସାବ ବାବଦ | ୬,୦୦୦ |
| | | ସୁନାମ ହିସାବ ବାବଦ | ୩,୦୦୦ |
| | ୧୮,୦୦୦ | | ୧୮,୦୦୦ |
| | | ପୂର୍ବ ବାକି ବାବଦ | ୧୬,୨୦୦ |

**ଦାୟୀ — ପ୍ରକାଶଙ୍କ ମୂଳଧନ ହିସାବ — ଦାତା**

| | ଟଙ୍କା | | ଟଙ୍କା |
|---|---|---|---|
| ପୁନର୍ମୂଲ୍ୟାୟନ ହିସାବ ବାବଦ | ୧,୨୦୦ | ପୂର୍ବ ବାକି ବାବଦ | ୬,୦୦୦ |
| ବାକି ଗଡ଼ିଲା | ୧୦,୮୦୦ | ସାଧାରଣ ସଂଚିତ ହିସାବ ବାବଦ | ୪,୦୦୦ |
| | | ସୁନାମ ହିସାବ ବାବଦ | [illegible],୦୦୦ |
| | ୧୨,୦୦୦ | | ୧୨,୦୦୦ |
| | | ପୂର୍ବ ବାକି ବାବଦ | ୧୦,୮୦୦ |

### ପ୍ରବାସଙ୍କ ମୂଳଧନ ହିସାବ

| ଦାୟୀ | ଟଙ୍କା | ଦାତା | ଟଙ୍କା |
|---|---|---|---|
| ବାକି ଗଡ଼ିଲି | ୯,୦୦୦ | ନଗଦ ତହବିଲ ହିସାବ ବାବଦ | ୯,୦୦୦ |
| | | ପୂର୍ବ ବାକି ବାବଦ | ୯,୦୦୦ |

### ଯନ୍ତ୍ର ହିସାବ

| ଦାୟୀ | ଟଙ୍କା | ଦାତା | ଟଙ୍କା |
|---|---|---|---|
| ପୂର୍ବ ବାକି ବାବଦ | ୧୦,୦୦୦ | ପୁନର୍ମୂଲ୍ୟାୟନ ହିସାବ ବାବଦ | ୧,୦୦୦ |
| | | ବାକି ଗଡ଼ିଲି | ୯,୦୦୦ |
| | ୧୦,୦୦୦ | | ୧୦,୦୦୦ |
| ପୂର୍ବ ବାକି ବାବଦ | ୯,୦୦୦ | | |

### ମହଜୁଦ୍ ପଣ୍ୟ ହିସାବ

| ଦାୟୀ | ଟଙ୍କା | ଦାତା | ଟଙ୍କା |
|---|---|---|---|
| ପୂର୍ବ ବାକି ବବାଦ | ୮,୦୦୦ | | |

### ମହଜୁଦ ପଣ୍ୟ ସଞ୍ଚିତ ହିସାବ

| ଦାୟୀ | ଟଙ୍କା | ଦାତା | ଟଙ୍କା |
|---|---|---|---|
| | | ପୁନର୍ମୂଲ୍ୟାୟନ ହିସାବ ବାବଦ | ୨,୦୦୦ |

### ବିବିଧ ଖାତକ ହିସାବ

| ଦାୟୀ | ଟଙ୍କା | ଦାତା | ଟଙ୍କା |
|---|---|---|---|
| ପୂର୍ବ ବାକି ବାବଦ | ୧୫,୦୦୦ | | |

| ଦାୟୀ | | ବିବିଧ ମହାଜନ ହିସାବ | ଦାତା |
|---|---|---|---|
| | ଟଙ୍କା | | ଟଙ୍କା |
| | | ପୂର୍ବ ବାକି ବାବଦ | ୧୨,୦୦୦ |

| ଦାୟୀ | | ସାଧାରଣ ସଞ୍ଚିତ ହିସାବ | ଦାତା |
|---|---|---|---|
| | | | ଟଙ୍କା |
| ବିକାଶଙ୍କ ମୂଳଧନ ହିସାବ ବାବଦ | ୬,୦୦୦ | ପୂର୍ବ ବାକି ବାବଦ | ୧୦,୦୦୦ |
| ପ୍ରକାଶଙ୍କ ମୂଳଧନ ହିସାବ ବାବଦ | ୪,୦୦୦ | | |
| | ୧୦,୦୦୦ | | ୧୦,୦୦୦ |

| ଦାୟୀ | | ସୁନାମ ହିସାବ | ଦାତା |
|---|---|---|---|
| | ଟଙ୍କା | | ଟଙ୍କା |
| ବିକାଶଙ୍କ ମୂଳଧନ ହିସାବ ବାବଦ | ୩,୦୦୦ | ନଗଦ ତହବିଲ ହିସାବ ବାବଦ | ୫,୦୦୦ |
| ପ୍ରକାଶଙ୍କ ମୂଳଧନ ହିସାବ ବାବଦ | ୨,୦୦୦ | | |
| | ୫,୦୦୦ | | ୫,୦୦୦ |

### ବିକାଶ, ପ୍ରକାଶ ଓ ସୁବାସଙ୍କର
### ୧୯୭୫ ମସିହା ଜାନୁୟାରୀ ୧ ତାରିଖରେ ଉଦ୍‌ବୃତ୍ତ ପତ୍ର

| ଦେୟ | ଟଙ୍କା | ଟଙ୍କା | ସମ୍ପତ୍ତି | ଟଙ୍କା | ଟଙ୍କା |
|---|---|---|---|---|---|
| ମୂଳଧନ ହିସାବ : | | | ଘର | ୧୦,୦୦୦ | |
| ବିକାଶ | ୧୬,୨୦୦ | | ବାଦ୍ ଦିଆଯାଇଛି | ୧,୦୦୦ | ୯,୦୦୦ |
| ପ୍ରକାଶ | ୧୦,୮୦୦ | | ମହଜୁଦ୍ ପଣ୍ୟ | ୮,୦୦୦ | |
| ସୁବାସ | ୯,୦୦୦ | ୩୬,୦୦୦ | ବାଦ୍-ସଞ୍ଚିତ | ୨,୦୦୦ | ୬,୦୦୦ |
| ବିବିଧ ମହାଜନ | | ୧୨,୦୦୦ | ବିବିଧ ଖାତକ | | ୧୫,୦୦୦ |
| | | | ନଗଦ ତହବିଲ | | ୧୮,୦୦୦ |
| | | ୪୮,୦୦୦ | | | ୪୮,୦୦୦ |

ସୁବାସଙ୍କୁ ଲାଭର ୧/୬ ଅଂଶ ଦେବା ପରେ ଲାଭର ୧ – ୧/୬ = ୫/୬ ଅଂଶ ଅବଶିଷ୍ଟ ରହିଲା । ତହିଁରୁ ବିକାଶଙ୍କର ଅଂଶ ୫/୬ × ୩/୫ = ୩/୬ ଓ ପ୍ରକାଶଙ୍କର ଅଂଶ ୫/୬ × ୨/୫ = ୨/୬ ହେବ, ଅର୍ଥାତ୍ ତାଙ୍କର ଲାଭ ଓ କ୍ଷତି ବଣ୍ଟନର ଅନୁପାତ ୩ : ୨ : ୧ ହେବ ।

ମନ୍ତବ୍ୟ :—

ବିକାଶ ଓ ପ୍ରକାଶଙ୍କର ସମାଯୋଜିତ ମୂଳଧନ ଯଥାକ୍ରମେ ୧୬,୨୦୦ ଟଙ୍କା ଓ ୧୦,୮୦୦ ଟଙ୍କା, ଅର୍ଥାତ୍ ମୋଟରେ ୧୬,୨୦୦ + ୧୦,୮୦୦ = ୨୭,୦୦୦ ଟଙ୍କା । ସୁବାସ ଏହି ପରିମାଣର ୧/୩ ଅଂଶ ଅର୍ଥାତ୍ ୨୭,୦୦୦ × ୧/୩ = ୯,୦୦୦ ଟଙ୍କା ମୂଳଧନ ସ୍ୱରୂପ ଆଣିଲେ ।

## ଦୃଷ୍ଟାନ୍ତ ( ୨୩ )

ଧୀରେନ୍ଦ୍ର ଓ ହିରେନ୍ଦ୍ର ଗୋଟିଏ ଅଂଶୀଦାରୀ କାରବାରର ଅଂଶୀଦାର ଥାଇ ଲାଭର ଯଥାକ୍ରମେ ୨/୩ ଓ ୧/୩ ଅଂଶ ଭୋଗ କରୁଥିଲେ । ୧୯୭୪ ମସିହା ଜୁନ୍ ୩୧ ତାରିଖରେ ତାଙ୍କ କାରବାରର ଉଦ୍‌ବର୍ତ୍ତ ପତ୍ର ନିମ୍ନରୂପେ ଥିଲା :

| ଦେୟ | ଟଙ୍କା | ସମ୍ପତ୍ତି | ଟଙ୍କା |
|---|---|---|---|
| ବିବିଧ ମହାଜନ | ୧୫,୦୦୦ | ବ୍ୟାଙ୍କ୍ | ୮,୦୦୦ |
| ମୂଳଧନ ହିସାବ : | | ପ୍ରାପ୍ୟ ହୁଣ୍ଡି | ୧୨,୦୦୦ |
| ଧୀରେନ୍ଦ୍ର | ୪୦,୦୦୦ | ବିବିଧ ଖାତକ | ୧୮,୦୦୦ |
| ହିରେନ୍ଦ୍ର | ୨୦,୦୦୦ | ମହଜୁଦ୍ ମାଲ | ୧୦,୦୦୦ |
| | | ଆସବାବ୍ ପତ୍ର | ୭,୦୦୦ |
| | | ଭୂମି ଓ ଭବନ | ୨୦,୦୦୦ |
| | ୭୫,୦୦୦ | | ୭୫,୦୦୦ |

୧୯୭୪ ମସିହା ଜୁଲାଇ ୧ ତାରିଖରେ ଅଂଶୀଦାରମାନେ ନିମ୍ନଲିଖିତ ସର୍ତ୍ତ ଅନୁଯାୟୀ ନରେନ୍ଦ୍ରଙ୍କୁ ନୂତନ ଅଂଶୀଦାର ରୂପେ ଗ୍ରହଣ କଲେ :

(୧) ନରେନ୍ଦ୍ର ଭବିଷ୍ୟତ୍ ଲାଭର ୧/୫ ଅଂଶ ସକାଶେ ମୂଳଧନ ସ୍ୱରୂପ ୧୫,୦୦୦ ଟଙ୍କା ଆଣିବେ ।

(୨) ମୂଳଧନ ବ୍ୟତୀତ ସୁନାମ ବାବଦ ନରେନ୍ଦ୍ର ୧୨,୦୦୦ ଟଙ୍କା ଆଣିବେ ଓ ଏହାର ଶତକଡ଼ା ୫୦ ପୁରାତନ ଅଂଶୀଦାରମାନେ ବ୍ୟବସାୟରୁ ଉଠାଇଦେବେ ।

(୩) ପ୍ରାପ୍ୟ ହୁଣ୍ଡି ଓ ବିବିଧ ଖାତକ ଉପରେ ୫% ହାରରେ ଅନାଦେୟ ଋଣର ସଞ୍ଚିତ ରଖାଯିବ ।

(୪) ମହଜୁଦ୍ ମାଲର ମୂଲ୍ୟକୁ ୧୦ % ହାରରେ ହ୍ରାସ କରାଯିବ ।

(୫) ଆସବାବ୍ ପତ୍ରର ମୂଲ୍ୟ ୫ % ହ୍ରାସ କରାଯିବ ।

(୬) ଭୂମି ଓ ଭବନର ମୂଲ୍ୟ ୩୦,୦୦୦ ଟଙ୍କା ରୂପେ ଧାର୍ଯ୍ୟ ହେବ ।

(୭) ଅଂଶୀଦାରି କାରବାର ବିରୁଦ୍ଧରେ ୨,୦୦୦ ଟଙ୍କା କ୍ଷତିପୂରଣ ସକାଶେ ଗୋଟିଏ ମକଦ୍ଦମା ବିଚାରାଳୟରେ ବିଚାରାଧୀନ ଅଛି । ଉକ୍ତ ପରିମାଣ ସକାଶେ ବ୍ୟବସ୍ଥା କରାଯିବ ।

(୮) ବିବିଧ ମହାଜନ ପରିମାଣରୁ ୨,୫୦୦ ଟଙ୍କା ବାଦ୍ ଦିଆଯିବ ।

(୯) ଧୀରେନ୍ଦ୍ର ଓ ହରେନ୍ଦ୍ରଙ୍କର ଲଭ ବଣ୍ଟନର ପୂର୍ବ ଅନୁପାତ ବଜାୟ ରହିବ ।

ସବୁଗୁଡ଼ିକ ସର୍ତ୍ତ ଯଥାରୀତି ପାଳିତ ହୋଇଛି ବୋଲି ଅନୁମାନ କରି ଜାବଦା, ପ୍ରୟୋଜନୀୟ ଖତିୟାନ ହିସାବ ଓ ନୂତନ ଅଂଶୀଦାର ଗୃହୀତ ହେବା ପରେ କାରବାରର ପ୍ରାରମ୍ଭିକ ଉଦ୍ବୃତ୍ତ ପତ୍ର ପ୍ରସ୍ତୁତ କର ।

## ସମାଧାନ :

| | ଜାବଦା | | ଦାୟୀ | ଦାତା |
|---|---|---|---|---|
| ୧୯୭୪ | | | ଟଙ୍କା | ଟଙ୍କା |
| ଜୁଲାଇ ୧ | ପୁନର୍ମୂଲ୍ୟାୟନ ହିସାବ | ଦାୟୀ | ୨,୮୫୦ | |
| | ପ୍ରାପ୍ୟ ହୁଣ୍ଡି ସଞ୍ଚିତ ହିସାବ ବାବଦ | | | ୭୦୦ |
| | ଅନାଦେୟ ଋଣ ସଞ୍ଚିତ ହିସାବ ବାବଦ | | | ୯୦୦ |
| | ମହଜୁଦ୍ ମାଲ୍ ସଞ୍ଚିତ ହିସାବ ବାବଦ | | | [illegible],୦୦୦ |
| | ଆସବାବ୍ ପତ୍ର ହିସାବ ବାବଦ | | | ୩୫୧ |
| | ( ନରେନ୍ଦ୍ରଙ୍କୁ ନୂତନ ଅଂଶୀଦାରରୂପେ ଗ୍ରହଣ କରିବା ସମୟରେ ପୁନର୍ମୂଲ୍ୟାୟନ ଫଳରେ ବିଭିନ୍ନ ସମ୍ପତ୍ତିର ମୂଲ୍ୟ ହ୍ରାସ କରାଗଲା । ) | | | |
| ୧ | ପୁନର୍ମୂଲ୍ୟାୟନ ହିସାବ | ଦାୟୀ | ୨,୦୦୦ | |
| | ସମ୍ଭାବ୍ୟ ଦାୟର ସଞ୍ଚିତ ହିସାବ ବାବଦ | | | ୨,୦୦୦ |
| | ( କାରବାର ବିରୁଦ୍ଧରେ ବିଚାରାଧୀନ କ୍ଷତିପୂରଣ ମକଦ୍ଦମା ବାବଦ ସମ୍ଭାବିତ ଦାୟ ସକାଶେ ସଞ୍ଚିତ ରଖାଗଲା । ) | | | |

| | | ଦାସ୍ତୀ | ଦାତା |
|---|---|---|---|
| | | ଟଙ୍କା | ଟଙ୍କା |
| ୧ | ଭୂମି ଓ ଭବନ ହିସାବ ଦାସ୍ତୀ | ୧୦,୦୦୦ | |
| | ପୁନର୍ମୂଲ୍ୟାୟନ ହିସାବ ବାବଦ | | ୧୦,୦୦୦ |
| | (ପୁନର୍ମୂଲ୍ୟାୟନ ଫଳରେ ଭୂମି ଓ ଭବନର ମୂଲ୍ୟ ବୃଦ୍ଧି ପାଇଲା ।) | | |
| ୧ | ବିବିଧ ମହାଜନ ହିସାବ ଦାସ୍ତୀ | ୨,୫୦୦ | |
| | ପୁନର୍ମୂଲ୍ୟାୟନ ହିସାବ ବାବଦ | | ୨,୫୦୦ |
| | (ବିବିଧ ମହାଜନ ହିସାବରୁ ନା ଦାବି ବାବଦ ୨,୫୦୦ ଟଙ୍କା ବାଦ୍ ଦିଆଗଲା ।) | | |
| ୧ | ପୁନର୍ମୂଲ୍ୟାୟନ ହିସାବ ଦାସ୍ତୀ | ୭,୬୫୦ | |
| | ଧୀରେନ୍ଦ୍ରଙ୍କ ମୂଳଧନ ହିସାବ ବାବଦ | | ୫,୧୦୦ |
| | ହରେନ୍ଦ୍ରଙ୍କ ମୂଳଧନ ହିସାବ ବାବଦ | | ୨,୫୫୦ |
| | (ପୁ: ସମ୍ପତ୍ତି ଓ ଦେୟର ପୁନର୍ମୂଲ୍ୟାୟନର ଲଭ ପୁରାତନ ଅଂଶୀଦାରମାନେ ୨ : ୧ ଅନୁପାତରେ ଭାଗ କରି ନେଲେ ।) | | |
| ୧ | ସୁନାମ ହିସାବ ଦାସ୍ତୀ | ୧୨,୦୦୦ | |
| | ଧୀରେନ୍ଦ୍ରଙ୍କ ମୂଳଧନ ହିସାବ ବାବଦ | | ୮,୦୦୦ |
| | ହରେନ୍ଦ୍ରଙ୍କ ମୂଳଧନ ହିସାବ ବାବଦ | | ୪,୦୦୦ |
| | (ନରେନ୍ଦ୍ରଙ୍କଠାରୁ ସୁନାମ ବାବଦ ମିଳିଥିବା ଧନମାନଙ୍କୁ ପୁରାତନ ଅଂଶୀଦାରମାନେ ୨ : ୧ ଅନୁପାତରେ ଭାଗ କରି ନେଲେ ।) | | |

## ଖତିୟାନ ହିସାବ

ଦାୟୀ — ରୋକଡ଼ ବହି (ବ୍ୟାଙ୍କ ସ୍ତମ୍ଭ) — ଦାତା

| | | ଟଙ୍କା | | | ଟଙ୍କା |
|---|---|---|---|---|---|
| ୧୯୭୪ | ପୂର୍ବବାକି ବାବଦ | ୮,୦୦୦ | ୧୯୭୪ | ଧୀରେନ୍ଦ୍ରଙ୍କ ମୂଳ- | |
| ଜୁଲାଇ-୧ | ନରେନ୍ଦ୍ରଙ୍କ ମୂଳ- | | ଜୁଲାଇ-୩ | ଧନ ହିସାବ ବାବଦ | ୪,୦୦୦ |
| | ଧନ ହି : ବାବଦ | ୧୫,୦୦୦ | ୧ | ହରେନ୍ଦ୍ରଙ୍କ ମୂଳ- | |
| | ସୁନାମ ହିସାବ | ୧୨,୦୦୦ | | ଧନ ହି : ବାବଦ | ୨,୦୦୦ |
| | | ୩୫,୦୦୦ | | (ସୁନାମ ବାବଦ) | |
| ଜୁଲାଇ-୨ | ପୂର୍ବବାକି ବାବଦ | ୨୯,୦୦୦ | ୧ | ବାକି ଗଡ଼ନ୍ତି | ୨୯,୦୦୦ |
| | | | | | ୩୫,୦୦୦ |

ଦାୟୀ — ପୁନର୍ମୂଲ୍ୟାୟନ ହିସାବ — ଦାତା

| | | ଟଙ୍କା | | | ଟଙ୍କା |
|---|---|---|---|---|---|
| ୧୯୭୪ | ପ୍ରାପ୍ୟ ହୁଣ୍ଡି ସମ୍ପର୍କିତ | | ୧୯୭୪ | | |
| ଜୁଲାଇ-୧ | ହି : ବାବଦ | ୬୦୦ | ଜୁଲାଇ-୧ | ଭୂମି ଓ ଭବନ | |
| | ଅନାଦେୟ ଋଣ ସମ୍ପର୍କିତ | | | ହିସାବ ବାବଦ | ୧୦,୦୦୦ |
| | ହି : ବାବଦ | ୯୦୦ | | ବିବିଧ ମହାଜନ | |
| | ମହଜୁଦ ମାଲ ସମ୍ପର୍କିତ | | | ହିସାବ ବାବଦ | ୨,୫୦୦ |
| | ହି : ବାବଦ | ୧,୦୦୦ | | | |
| | ଆସବାବ ପତ୍ର | | | | |
| | ହି : ବାବଦ | ୩୫୦ | | | |
| | ସମ୍ଭାବ୍ୟ ଦାୟିତ୍ୱ | | | | |
| | ସମ୍ପର୍କିତ ହି: ବାବଦ | ୨,୦୦୦ | | | |
| | ଧୀରେନ୍ଦ୍ରଙ୍କ ମୂଳ- | | | | |
| | ଧନ ହି: ବାବଦ | ୫,୧୦୦ | | | |
| | ହରେନ୍ଦ୍ରଙ୍କ ମୂଳ- | | | | |
| | ଧନ ହି: ବାବଦ | ୨,୫୫୦ | | | |
| | | ୧୨,୫୦୦ | | | ୧୨,୫୦୦ |

| ଦାସ୍ତୀ | ଧୀରେନ୍ଦ୍ରଙ୍କ ମୂଳଧନ ହିସାବ | | ଦାତା |
|---|---|---|---|
| | ଟଙ୍କା | | ଟଙ୍କା |
| ୧୯୭୪ | | ୧୯୭୪ | |
| ଜୁଲାଇ-୧ ବ୍ୟାଙ୍କ ହିସାବ ବାବଦ | ୪,୦୦୦ | ଜୁଲାଇ-୧ ପୂର୍ବ ବାକୀ ବାବଦ | ୪୦,୦୦୦ |
| ବାକୀ ଗଡ଼ିଲା | ୪୯,୧୦୦ | ୧ ପୁନର୍ମୂଲ୍ୟାୟନ ହି: ବାବଦ | ୫,୧୦୦ |
| | | ୧ ସୁନାମ ହିସାବ ବାବଦ | ୮,୦୦୦ |
| | ୫୩,୧୦୦ | | ୫୩,୧୦୦ |
| | | ଜୁଲାଇ-୨ ପୂର୍ବବାକୀ ବାବଦ | ୪୯,୧୦୦ |

| ଦାସ୍ତୀ | ହରେନ୍ଦ୍ରଙ୍କ ମୂଳଧନ ହିସାବ | | ଦାତା |
|---|---|---|---|
| ୧୯୭୪ | ଟଙ୍କା | ୧୯୭୪ | ଟଙ୍କା |
| ଜୁଲାଇ-୧ ବ୍ୟାଙ୍କ ହିସାବ ବାବଦ | ୨,୦୦୦ | ଜୁଲାଇ-୧ ପୂର୍ବ ବାକୀ ବାବଦ | ୨୦,୦୦୦ |
| ବାକୀ ଗଡ଼ିଲା | ୨୪,୫୫୦ | ୧ ପୁନର୍ମୂଲ୍ୟାୟନ ହି: ବାବଦ | ୨,୫୫୦ |
| | | ୧ ସୁନାମ ହିସାବ ବାବଦ | ୪,୦୦୦ |
| | ୨୬,୫୫୦ | | ୨୬,୫୫୦ |
| | | ଜୁଲାଇ-୨ ପୂର୍ବବାକୀ ବାବଦ | ୨୪,୫୫୦ |

| ଦାସ୍ତୀ | ନରେନ୍ଦ୍ରଙ୍କ ମୂଳଧନ ହିସାବ | | ଦାତା |
|---|---|---|---|
| ୧୯୭୪ | ଟଙ୍କା | ୧୯୦୪ | ଟଙ୍କା |
| | | ଜୁଲାଇ ୧ ବ୍ୟାଙ୍କ ହିସାବ ବାବଦ | ୧୫,୦୦୦ |
| ଜୁଲାଇ-୧ ବାକୀ ଗଡ଼ିଲା | ୧୫,୦୦୦ | | |
| | | ଜୁଲାଇ-୨ ପୂର୍ବ ବାକୀ ବାବଦ | ୧୫,୦୦୦ |

| ଦାୟୀ | ସୁନାମ ହିସାବ | | ଦାତା |
|---|---|---|---|
| ୧୯୭୪ | ଟଙ୍କା | | ଟଙ୍କା |
| ଜୁଲାଇ ୧ ଧୀରେନ୍ଦ୍ରଙ୍କ ମୂଳ-ଧନ ହି: ବାବଦ | ୮,୦୦୦ | ୧୯୭୪ ଜୁଲାଇ ୧ ବ୍ୟାଙ୍କ ହିସାବ ବାବଦ | ୧୨,୦୦୦ |
| ହରେନ୍ଦ୍ରଙ୍କ ମୂଳ ଧନ ହି: ବାବଦ | ୪,୦୦୦ | | |
| | ୧୨,୦୦୦ | | ୧୨,୦୦୦ |

ଧୀରେନ୍ଦ୍ର, ହରେନ୍ଦ୍ର ଓ ନରେନ୍ଦ୍ରଙ୍କର

୧୯୭୪ ମସିହା ଜୁଲାଇ ୧ ତାରିଖର ଉଦ୍‌ବୃତ୍ତ ପତ୍ର

| ଦେୟ | ଟଙ୍କା | ଟଙ୍କା | ସମ୍ପତ୍ତି | ଟଙ୍କା | ଟଙ୍କା |
|---|---|---|---|---|---|
| ବିବିଧ ମହାଜନ | ୧୫,୦୦୦ | | ବ୍ୟାଙ୍କରେ ଗଚ୍ଛିତ ତହବିଲ | | ୨୯,୦୦୦ |
| ବାଦ୍ ଦିଆଗଲା | ୨,୫୦୦ | ୧୨,୫୦୦ | ପ୍ରାପ୍ୟ ହୁଣ୍ଡି | ୧୨,୦୦୦ | |
| ସମ୍ଭାବ୍ୟ ଦାୟର ସଞ୍ଚିତ | | ୨,୦୦୦ | ବିୟୁକ୍ତ : ସଞ୍ଚିତ | ୬୦୦ | ୧୧,୪୦୦ |
| ମୂଳଧନ ହିସାବ : | | | ବିବିଧ ଖାତକ | ୧୮,୦୦୦ | |
| ଧୀରେନ୍ଦ୍ର | ୪୯,୧୦୦ | | ବିୟୁକ୍ତ : ଅନାଦେୟ ଋଣର ସଞ୍ଚିତ | ୯୦୦ | ୧୭,୧୦୦ |
| ହରେନ୍ଦ୍ର | ୨୪,୫୫୦ | | ମହଜୁଦ ମାଲ | ୧୦,୦୦୦ | |
| ନରେନ୍ଦ୍ର | ୧୫,୦୦୦ | ୮୮,୬୫୦ | ବିୟୁକ୍ତ : ସଞ୍ଚିତ | ୧,୦୦୦ | ୯,୦୦୦ |
| | | | ଆସବାବ ପତ୍ର | ୭,୦୦୦ | |
| | | | ବାଦ୍ ଦିଆଗଲା | ୩୫୦ | ୬,୬୫୦ |
| | | | ଭୂମି ଓ ଭବନ | ୨୦,୦୦୦ | |
| | | | ଯୁକ୍ତ : ମୂଲ୍ୟ ବୃଦ୍ଧି | ୧୦,୦୦୦ | ୩୦,୦୦୦ |
| | | ୧,୦୩,୧୫୦ | | | ୧,୦୩,୧୫୦ |

ଅଂଶୀଦାରମାନଙ୍କର ଭବିଷ୍ୟତ୍ ଲାଭ ବଣ୍ଟନର ଅନୁପାତ :

ନରେନ୍ଦ୍ର ଲାଭର ୧/୫ ଅଂଶ ପାଇବେ । ଅବଶିଷ୍ଟ ୪/୫ର ୨/୩=୮/୧୫ ଅଂଶ ଧୀରେନ୍ଦ୍ର ପାଇବେ ଓ ୪/୫ର ୧/୩=୪/୧୫ ଅଂଶ ହରେନ୍ଦ୍ର ପାଇବେ ଅର୍ଥାତ୍ ଧୀରେନ୍ଦ୍ର ୮/୧୫, ହରେନ୍ଦ୍ର ୪/୧୫ ଓ ନରେନ୍ଦ୍ର ୩/୧୫ ଅଂଶ ପାଇବେ । ଅତଏବ ତାଙ୍କର ଭବିଷ୍ୟତ୍ ଲାଭ ବଣ୍ଟନର ଅନୁପାତ ଯଥାକ୍ରମେ ୮ : ୪ : ୩ ହେବ । ଏଥିରୁ ଦେଖାଯିବ ଯେ ଧୀରେନ୍ଦ୍ର ଓ ହରେନ୍ଦ୍ରଙ୍କ ଅନୁପାତ ପୂର୍ବଭଳି ରହିଲା, ଅର୍ଥାତ୍ ୨ : ୧ ।

## (୬) ଯେଉଁଠାରେ ପରିବର୍ତ୍ତିତ ମୂଲ୍ୟ ହିସାବ ବହିରେ ଲିପିବଦ୍ଧ କରାଯାଏ ନାହିଁ

ଏପରି କ୍ଷେତ୍ରରେ ବିବରଣୀ ପୁନର୍ମୂଲ୍ୟାୟନ ହିସାବ (Memorandum Revaluation A/c) ନାମକ ଗୋଟିଏ ନୂତନ ହିସାବ ଖୋଲାଯାଏ । ଏହି ହିସାବକୁ ଦୁଇଭାଗ, ଯଥା: ଊର୍ଦ୍ଧ୍ୱାଂଶ ଓ ନିମ୍ନାଂଶରେ ଭାଗ କରାଯାଏ । ଅନ୍ୟାନ୍ୟ ହିସାବ ସଦୃଶ ଏହାର ଦାୟୀ ଓ ଦାତା ପାର୍ଶ୍ୱ ଥାଏ । ଊର୍ଦ୍ଧ୍ୱାଂଶକୁ ପୁରାତନ ବ୍ୟବସାୟ ପ୍ରତିଷ୍ଠାନର ଦେଣ ନେଣ ସଂକ୍ରାନ୍ତ ଲିଖନ ସକାଶେ ଓ ନିମ୍ନାଂଶକୁ ନବପ୍ରତିଷ୍ଠିତ ପ୍ରତିଷ୍ଠାନର ନେଣ ଦେଣ ସଂକ୍ରାନ୍ତ ଲିଖନ ସକାଶେ ବ୍ୟବହାର କରାଯାଏ ।

ପୁନର୍ମୂଲ୍ୟାୟନ ସମୟରେ ପ୍ରତିଷ୍ଠାନର କୌଣସି ସମ୍ପତ୍ତିର ମୂଲ୍ୟ ବୃଦ୍ଧି ପାଇଲେ ସେହି ବୃଦ୍ଧି ପରିମାଣକୁ ଊର୍ଦ୍ଧ୍ୱାଂଶ ହିସାବର ଦାତା ପାର୍ଶ୍ୱରେ ଲିପିବଦ୍ଧ କରାଯାଏ ଏବଂ ସମ୍ପତ୍ତିର ମୂଲ୍ୟ ହ୍ରାସ ପାଇଲେ ହ୍ରାସ ପରିମାଣ ସେହି ହିସାବର ଦାୟୀ ପାର୍ଶ୍ୱରେ ଲିପିବଦ୍ଧ କରାଯାଏ । କୌଣସି ଦେୟର ପରିମାଣ ଯଦି ହ୍ରାସପାଏ, ତାହାହେଲେ ସେହି ହ୍ରାସ ପରିମାଣ ଏହି ହିସାବର ଦାତା ପାର୍ଶ୍ୱରେ ଓ ବୃଦ୍ଧିପାଇଲେ ସେହି ବୃଦ୍ଧି ପରିମାଣ ଏହି ହିସାବର ଦାୟୀ ପାର୍ଶ୍ୱରେ ଲିପିବଦ୍ଧ କରାଯାଏ । ଏହାପରେ ଏହି ହିସାବର ବାକି ନିର୍ଣ୍ଣୟ କରାଯାଏ । ଏହି ବାକି, ଦାୟୀ ବା ଦାତା ଯାହାହେଉନା କାହିଁକି, ତାହାକୁ ପୁରାତନ ଅଂଶୀଦାରମାନେ ପୁରାତନ ଲାଭ ଓ କ୍ଷତି ବଣ୍ଟନ ଅନୁପାତରେ ଭାଗକରି ନିଅନ୍ତି । ଅଂଶୀଦାରମାନଙ୍କର ମୂଳଧନ ଅଥବା ଚଳନ୍ତି ହିସାବକୁ ଏହି ହିସାବର ବାକିକୁ ସ୍ଥାନାନ୍ତରିତ କରିବା ସକାଶେ ଜାବଦାର ସାହାଯ୍ୟ ନେବାକୁ ପଡ଼େ । ଏଠାରେ ମନେରଖିବାକୁ ପଡ଼ିବ ଯେ ଊର୍ଦ୍ଧ୍ୱାଂଶ ହିସାବରେ ଯେଉଁ ନେଣ ଦେଣ ଲିପିବଦ୍ଧ କରାଯିବ ତାହାର ବିପରୀତ ଲିଖନ ସଂପୃକ୍ତ ଖତିୟାନ ହିସାବରେ କରି ଏହି ବିବରଣୀ ପୁନର୍ମୂଲ୍ୟାୟନ ହିସାବରେ ନିମ୍ନାଂଶରେ କରାଯିବ ।

ଊର୍ଦ୍ଧ୍ୱାଂଶ ହିସାବର ଦାତା ପାର୍ଶ୍ୱରେ ଯାହାକିଛି ଲିପିବଦ୍ଧ କରାଯାଏ ତାହାର ବିପରୀତ ଲିଖନ ନିମ୍ନାଂଶ ହିସାବର ଦାୟୀ ପାର୍ଶ୍ୱରେ କରାଯିବ ଓ ଊର୍ଦ୍ଧ୍ୱାଂଶ ହିସାବର

ଦାୟୀ ପାର୍ଶ୍ୱରେ ଯାହା ଲିପିବଦ୍ଧ ହୋଇଥିବ ତାହାର ବିପରୀତ ଲେଖନ ନିମ୍ନାଂଶ ହିସାବର ଦାତା ପାର୍ଶ୍ୱରେ ଲିପିବଦ୍ଧ କରାଯିବ । ତତ୍ପରେ ଏହି ହିସାବର ବାକୀ ନିର୍ଣ୍ଣୟ କରାଯିବ ଓ ତାହାକୁ ନୂତନ ଗୃହୀତ ଅଂଶୀଦାର ସମେତ ସବୁ ଅଂଶୀଦାରଙ୍କର ମୂଳଧନ ଚଳନ୍ତି ହିସାବକୁ ନୂତନ ଲଭ ଓ କ୍ଷତି ବଣ୍ଟନ ଅନୁପାତରେ ସ୍ଥାନାନ୍ତରିତ କରାଯିବ । ଏପରି ସ୍ଥାନାନ୍ତରଣ ସକାଶେ ମଧ୍ୟ ଜାବ୍‌ଦାର ସାହାଯ୍ୟ ନିଆଯାଏ ।

ନୂତନ ଅଂଶୀଦାର ମୂଳଧନ ଓ ସୁନାମ ବାବଦ ଯେଉଁ ଅର୍ଥ ଆଣନ୍ତି ତାହା ଯଥା-ରୀତି ରୋକଡ଼ ବହିରେ ଲିପିବଦ୍ଧ କରାଯାଏ ।

## ଦୃଷ୍ଟାନ୍ତ (୨୪)

ପୂର୍ଣ୍ଣେନ୍ଦୁ ଓ ବିଧୁଧେନ୍ଦୁ ଗୋଟିଏ ଅଂଶୀଦାରୀ କାରବାରର ସମାନ ଅଂଶୀଦାର । ସେମାନେ ଅର୍ଦ୍ଧେନ୍ଦୁଙ୍କୁ ଏକ ନୂତନ ଅଂଶୀଦାର ରୂପେ ଗ୍ରହଣ କରିବାକୁ ସମ୍ମତ ହେଲେ । ଅର୍ଦ୍ଧେନ୍ଦୁ ମୂଳଧନ ସ୍ୱରୂପ ୮,୦୦୦ ଟଙ୍କା ଆଣିବେ । ଏହା ସ୍ଥିରହେଲା ଯେ ଅର୍ଦ୍ଧେନ୍ଦୁ ବ୍ୟବସାୟରେ ଯୋଗଦେବା ପୂର୍ବରୁ ବ୍ୟବସାୟର ସମ୍ପତ୍ତି ଓ ଦେୟଗୁଡ଼ିକର ପୁନର୍ମୂଲ୍ୟାୟନ କରାଯିବ, ମାତ୍ର ବୃଦ୍ଧି ବା ହ୍ରାସ ପାଇଥିବା ମୂଲ୍ୟ ଖତିୟାନ ହିସାବରେ ସ୍ଥାୟୀଭାବରେ ଲିପିବଦ୍ଧ କରାଯିବ ନାହିଁ । ନୂତନ ଲଭ ଓ କ୍ଷତି ବଣ୍ଟନର ଅନୁପାତ ଯଥାକ୍ରମେ ୩ : ୩ : ୨ ହେବ । ଅର୍ଦ୍ଧେନ୍ଦୁ ବ୍ୟବସାୟରେ ଯୋଗଦେବା ପୂର୍ବରୁ ବ୍ୟବସାୟର ଉଦ୍‌ବୃତ୍ତ ପତ୍ର ନିମ୍ନରେ ଥିଲା ।

୧୯୭୪ ମସିହା ଡିସେମ୍ବର ୩୧ ତାରିଖର ଉଦ୍‌ବୃତ୍ତ ପତ୍ର ।

| ଦେୟ | | ଟଙ୍କା | ସମ୍ପତ୍ତି | ଟଙ୍କା |
|---|---|---|---|---|
| ମୂଳଧନ : | | | ଅସବାବ୍ | ୬,୦୦୦ |
| ପୂର୍ଣ୍ଣେନ୍ଦୁ | ଟ ୧୨,୦୦୦ | | ମହଜୁଦ୍ ପଣ୍ୟ | ୮,୦୦୦ |
| ବିଧୁଧେନ୍ଦୁ | ଟ ୧୦,୦୦୦ | ୨୨,୦୦୦ | ଖାତକ | ୧୪,୦୦୦ |
| ମହାଜନ | | ୧୦,୦୦୦ | ବ୍ୟାଙ୍କ୍‌ରେ ଗଚ୍ଛିତ | ୪,୦୦୦ |
| | | ୩୨,୦୦୦ | | ୩୨,୦୦୦ |

୧୯୭୫ ମସିହା ଜାନୁୟାରୀ ୧ ତାରିଖରେ ଅର୍ଦ୍ଧେନ୍ଦୁଙ୍କୁ ବ୍ୟବସାୟରେ ଗ୍ରହଣକରିବା ପୂର୍ବରୁ ଦେଖାଗଲା ଯେ, ସମ୍ପତ୍ତି ଓ ଦେୟର ମୂଲ୍ୟ ନିମ୍ନରୂପେ ପରିବର୍ତ୍ତିତ ହୋଇଛି :-

ଆସବାବ୍‌ର ମୂଲ୍ୟ ୫,୪୦୦କୁ ହ୍ରାସ ପାଇଛି । ମହଜୁଦ୍ ପଣ୍ୟର ମୂଲ୍ୟ ୯,୬୦୦କୁ ବୃଦ୍ଧି ପାଇଛି । ଖାତକ ପରିମାଣ ୧୩,୩୦୦କୁ ହ୍ରାସ ପାଇଛି ଏବଂ ମହାଜନଙ୍କର ପରିମାଣ ୧୦,୭୦୪କୁ ବୃଦ୍ଧିପାଇଛି ।

ବିବରଣୀ ପୁନର୍ମୂଲ୍ୟାୟନ ହିସାବ, ଅଂଶୀଦାରମାନଙ୍କର ମୂଳଧନ ହିସାବ, ଜାବଦା ଓ ନୂତନ ଉଦ୍‌ବୃତ୍ତ ପତ୍ର ପ୍ରସ୍ତୁତକର ।

## ସମାଧାନ

ଦାୟୀ — ବିବରଣୀ ପୁନର୍ମୂଲ୍ୟାୟନ ହିସାବ — ଦାତା

| ୧୯୭୫ | | | ଟଙ୍କା | ୧୯୭୫ | | | ଟଙ୍କା |
|---|---|---|---|---|---|---|---|
| ଜାନୁଆରି-୧ | ସଂପତ୍ତିର ମୂଲ୍ୟହ୍ରାସ ବାବଦ : | ଟଙ୍କା | | ଜାନୁଆରି-୧ | ସଂପତ୍ତିର ମୂଲ୍ୟବୃଦ୍ଧି ବାବଦ : | | |
| | ଆସବାବ | ୬୦୦ | | | ମହଜୁଦ୍ ପଣ୍ୟ | | ୧,୬୦୦ |
| | ଖାତକ | ୭୦୦ | ୧,୩୦୦ | ୧ | ମୂଳଧନ ହିସାବ ବାବଦ : (କ୍ଷତିର ସ୍ଥାନାନ୍ତରଣ) | ଟଙ୍କା | |
| ୧ | ଦେୟର ମୂଲ୍ୟବୃଦ୍ଧି ବାବଦ : | | | | ପୂର୍ଣ୍ଣେନ୍ଦୁ ୧/୨ | ୧୫୨ | |
| | ମହାଜନ | | ୬୦୪ | | ବିଭୁଧେନ୍ଦୁ ୧/୨ | ୧୫୨ | ୩୦୪ |
| | | | ୧,୯୦୪ | | | | ୧,୯୦୪ |
| ୧ | ବିପରୀତ ଲିଖନ ବାବଦ | | | | ବିପରୀତ ଲିଖନ ବାବଦ : | ଟଙ୍କା | |
| | ମହଜୁଦ୍ ପଣ୍ୟ | | ୧,୬୦୦ | | ଆସବାବ | ୬୦୦ | |
| ୧ | ମୂଳଧନ ହିସାବ ବାବଦ (ଲାଭର ସ୍ଥାନାନ୍ତରଣ) | ଟଙ୍କା | | | ଖାତକ | ୭୦୦ | |
| | ପୂର୍ଣ୍ଣେନ୍ଦୁ | ୧୧୪ | | | ମହାଜନ | ୬୦୪ | ୧,୯୦୪ |
| | ବିଭୁଧେନ୍ଦୁ | ୧୧୪ | | | | | |
| | ଅର୍ଦ୍ଧେନ୍ଦୁ | ୭୬ | ୩୦୪ | | | | |
| | | | ୧,୯୦୪ | | | | ୧,୯୦୪ |

| ଦାୟୀ | | ପୂର୍ଣ୍ଣେନ୍ଦୁଙ୍କର ମୂଳଧନ ହିସାବ | ଦାତା |
|---|---|---|---|
| ୧୯୭୫ | ଟଙ୍କା | ୧୯୭୫ | ଟଙ୍କା |
| ଜାନୁଆରି-୧ ପୁନର୍ମୂଲ୍ୟାୟନ କ୍ଷତି ବାବଦ | ୧୫୨ | ଜାନୁଆରି-୧ ପୂର୍ବ ବାକି ବାବଦ | ୧୨,୦୦୦ |
| ୧ ବାକି ଗଡ଼ଲା | ୧୧,୯୬୨ | ୧ ପୁନର୍ମୂଲ୍ୟାୟନ କ୍ଷତିପୂରଣ ବାବଦ | ୧୧୪ |
| | ୧୨,୧୧୪ | | ୧୨,୧୧୪ |
| | | ଜାନୁଆରି-୨ ପୂର୍ବ ବାକି ବାବଦ | ୧୧,୯୬୨ |

| ଦାୟୀ | | ବିବୁଧେନ୍ଦୁଙ୍କର ମୂଳଧନ ହିସାବ | ଦାତା |
|---|---|---|---|
| ୧୯୭୫ | ଟଙ୍କା | ୧୯୭୫ | ଟଙ୍କା |
| ଜାନୁଆରି-୧ ପୁନର୍ମୂଲ୍ୟାୟନ କ୍ଷତି ବାବଦ | ୧୫୨ | ଜାନୁଆରି-୧ ପୂର୍ବ ବାକି ବାବଦ | ୧୦,୦୦୦ |
| ୧ ବାକି ଗଡ଼ଲା | ୯,୯୬୨ | ୧ ପୁନର୍ମୂଲ୍ୟାୟନ କ୍ଷତିପୂରଣ ବାବଦ | ୧୧୪ |
| | ୧୦,୧୧୪ | | ୧୦,୧୧୪ |
| | | ଜାନୁଆରି-୨ ପୂର୍ବ ବାକି ବାବଦ | ୯,୯୬୨ |

**ଅର୍ଦ୍ଧେନ୍ଦୁଙ୍କର ମୂଳଧନ ହିସାବ**

| ଡାପ୍ତୀ | | | ଦାତା | | |
|---|---|---|---|---|---|
| ୧୯୭୫ | | ଟଙ୍କା | ୧୯୭୫ | | ଟଙ୍କା |
| ଜାନୁଆରି-୧ | ବାକୀ ଗଡ଼ିଲ | ୮,୦୭୬ | ଜାନୁଆରି-୧ | ବ୍ୟାଙ୍କ୍ ହିସାବ ବାବଦ | ୮,୦୦୦ |
| | | | ୧ | ପୁନର୍ମୂଲ୍ୟାୟନ କ୍ଷତିପୂରଣ ବାବଦ | ୭୬ |
| | | ୮,୦୭୬ | | | ୮,୦୭୬ |
| | | | ଜାନୁଆରି-୨ | ପୂର୍ବ ବାକୀ ବାବଦ | ୮,୦୭୬ |

**୧୯୭୫ ମସିହା ଜାନୁଆରି ୧ ତାରିଖରେ ପୂର୍ଣ୍ଣେନ୍ଦୁ, ବବୁଧେନ୍ଦୁ ଓ ଅର୍ଦ୍ଧେନ୍ଦୁଙ୍କର ଉଦ୍‌ବର୍ତ୍ତ ପତ୍ର ( ଅର୍ଦ୍ଧେନ୍ଦୁଙ୍କ ପ୍ରବେଶ ପରେ )**

| ଦେୟ | | ଟଙ୍କା | ସଂପତ୍ତି | ଟଙ୍କା |
|---|---|---|---|---|
| ମୂଳଧନ ହିସାବ : | | | ଆସବାବ | ୬,୦୦୦ |
| ପୂର୍ଣ୍ଣେନ୍ଦୁ | ୧୧,୯୬୨ | | ମହଜୁଦ୍ ପଣ୍ୟ | ୮,୦୦୦ |
| ବବୁଧେନ୍ଦୁ | ୯,୯୬୨ | | ଖାତକ | ୧୪,୦୦୦ |
| ଅର୍ଦ୍ଧେନ୍ଦୁ | ୮,୦୭୬ | ୩୦,୦୦୦ | ବ୍ୟାଙ୍କ୍‌ରେ ଗଚ୍ଛିତ | ୧୨,୦୦୦ |
| ମହାଜନ | | ୧୦,୦୦୦ | | |
| | | ୪୦,୦୦୦ | | ୪୦,୦୦୦ |

ବିବରଣୀ ପୁନର୍ମୂଲ୍ୟାୟନ ହିସାବର ବାକିଗୁଡ଼ିକର ସ୍ଥାନାନ୍ତରଣ ସକାଶେ ନିମ୍ନଲିଖିତ ଜାବେଦା ଆବଶ୍ୟକ ହେବ ।

| ଜାବେଦା | | | ଦାୟୀ | ଦାତା |
|---|---|---|---|---|
| ୧୯୭୫ | | | ଟଙ୍କା | ଟଙ୍କା |
| ଜାନୁଆରି ୧ | ପୂର୍ଣ୍ଣେନ୍ଦୁଙ୍କର ମୂଳଧନ ହିସାବ | ଦାୟୀ | ୧୫୨ | |
| | ବିଭୂଧେନ୍ଦୁଙ୍କର ମୂଳଧନ ହିସାବ | ଦାୟୀ | ୧୫୨ | |
| | ବିବରଣୀ ପୁନର୍ମୂଲ୍ୟାୟନ ହିସାବ ବାବଦ | | | ୩୦୪ |
| | (ସମ୍ପତ୍ତି ଓ ଦେୟର ପୁନର୍ମୂଲ୍ୟାୟନଜନିତ କ୍ଷତି ପୁରାତନ ଅଂଶୀଦାରମାନଙ୍କର ମୂଳଧନ ହିସାବକୁ ୧ : ୧ ଅନୁପାତରେ ସ୍ଥାନାନ୍ତରିତ ହେଲା ।) | | | |
| ୧ | ବିବରଣୀ ପୁନର୍ମୂଲ୍ୟାୟନ ହିସାବ | ଦାୟୀ | ୩୦୪ | |
| | ପୂର୍ଣ୍ଣେନ୍ଦୁଙ୍କର ମୂଳଧନ ହିସାବ ବାବଦ | | | ୧୧୪ |
| | ବିଭୂଧେନ୍ଦୁଙ୍କର ମୂଳଧନ ହିସାବ ବାବଦ | | | ୧୧୪ |
| | ଅର୍ଦ୍ଧେନ୍ଦୁଙ୍କର ମୂଳଧନ ହିସାବ ବାବଦ | | | ୭୬ |
| | (ପୁରାତନ ଅଂଶୀଦାରମାନେ ବହନ କରିଥିବା କ୍ଷତି ସମସ୍ତ ଅଂଶୀଦାରଙ୍କ ମୂଳଧନ ହିସାବକୁ ୩:୩:୨ ଅନୁପାତରେ ସ୍ଥାନାନ୍ତରିତ କରାଗଲା ।) | | | |

ବିକଳ୍ପ ପଦ୍ଧତି ଅନୁଯାୟୀ ଉପରୋକ୍ତ ଦୁଇଟି ଜାବେଦାକୁ ଗୋଟିଏ ଜାବେଦାରେ ପ୍ରକାଶ କରାଯାଇପାରିବ ।

| ଜାବେଦା | | | ଦାୟୀ | ଦାତା |
|---|---|---|---|---|
| ୧୯୭୫ | | | ଟଙ୍କା | ଟଙ୍କା |
| ଜାନୁଆରି-୧ | ପୂର୍ଣ୍ଣେନ୍ଦୁଙ୍କର ମୂଳଧନ ହିସାବ | ଦାୟୀ | ୩୮ | |
| | ବିଭୂଧେନ୍ଦୁଙ୍କର ମୂଳଧନ ହିସାବ | ଦାୟୀ | ୩୮ | |
| | ଅର୍ଦ୍ଧେନ୍ଦୁଙ୍କ ମୂଳଧନ ହିସାବ ବାବଦ | | | ୭୬ |
| | (ଅର୍ଦ୍ଧେନ୍ଦୁଙ୍କୁ ନୂତନ ଅଂଶୀଦାର ରୂପେ ଗ୍ରହଣ କରିବା ସମୟରେ ଅଂଶୀଦାରମାନଙ୍କର ମୂଳଧନକୁ ସମାଯୋଜିତ କରାଗଲା ।) | | | |

ନିମ୍ନଲିଖିତ ବିବରଣୀ ସାହାଯ୍ୟରେ ଉପରୋକ୍ତ ଦାୟୀ ଓ ଦାତାର ପରିମାଣଗୁଡ଼ିକ ନିର୍ଣ୍ଣୟ କରାଯାଇଛି ।

ସମାଯୋଜନ ବିବରଣୀ

| | ଦାୟୀ | ଦାତା | ବାକି | |
|---|---|---|---|---|
| | | | ଦାୟୀ | ଦାତା |
| ପୂର୍ଣ୍ଣେନ୍ଦୁ | ୧୫୨ | ୧୧୪ | ୩୮ | |
| ବିବୁଧେନ୍ଦୁ | ୧୫୨ | ୧୧୪ | ୩୮ | |
| ଅର୍ଦ୍ଧେନ୍ଦୁ | | ୭୬ | | ୭୬ |

## ଦୃଷ୍ଟାନ୍ତ (୨୫)

ବସନ୍ତ ଓ ଶରତ୍ ଗୋଟିଏ ଅଂଶୀଦାରୀ କାରବାରରେ ଅଂଶୀଦାର ଥାଇ ଲାଭର ଯଥାକ୍ରମେ ୨/୩ ଅଂଶ ଓ ୧/୩ ଅଂଶ ଭୋଗ କରୁଥିଲେ । ସେମାନେ ୧୯୭୫ ମସିହା ଜାନୁୟାରୀ ୧ ତାରିଖରେ ହେମନ୍ତଙ୍କୁ ଅଂଶୀଦାର ରୂପେ ଗ୍ରହଣ କରିବାକୁ ସମ୍ମତ ହେଲେ । ଏହା ସାବ୍ୟସ୍ତ ହେଲା ଯେ ହେମନ୍ତ ମୂଳଧନ ସ୍ୱରୂପ ୮,୦୦୦ ଟଙ୍କା ଆଣିବେ ଓ ସେ କାରବାରରେ ଯୋଗଦେବା ପୂର୍ବରୁ କାରବାରର ସମ୍ପତ୍ତି ଓ ଦେୟଗୁଡ଼ିକର ପୁନର୍ମୂଲ୍ୟାୟନ କରାଯିବ ଓ କେବଳ ଆସବାବ୍ ବ୍ୟତୀତ ଅନ୍ୟାନ୍ୟ ସମ୍ପତ୍ତି ଓ ଦେୟଗୁଡ଼ିକର ମୂଲ୍ୟ ସ୍ଥାୟୀ ଭାବରେ ଖତିୟାନ୍‌ରେ ଲିପିବଦ୍ଧ କରାଯିବ ନାହିଁ । ନୂତନ ଅଂଶୀଦାର ଯୋଗଦେବା ପରେ ଅଂଶୀଦାରମାନେ ୪ : ୨ : ୨ ଅନୁପାତରେ ଲାଭ ଓ କ୍ଷତି ଭାଗ କରିନେବେ ।

ନୂତନ ଅଂଶୀଦାର ଯୋଗଦେବା ପୂର୍ବରୁ ବସନ୍ତ ଓ ଶରତଙ୍କର ଉଦ୍‌ବୃତ୍ତ ପତ୍ର ନିମ୍ନରେ ପ୍ରଦତ୍ତ ହେଲା ।

୧୯୭୪ ମସିହା ଡିସେମ୍ବର ୩୧ ତାରିଖର ଉଦ୍‌ବୃତ୍ତ ପତ୍ର

| ଦେୟ | | ଟଙ୍କା | ସମ୍ପତ୍ତି | ଟଙ୍କା |
|---|---|---|---|---|
| ମୂଳଧନ : ଟଙ୍କା | | | ଆସବାବ୍ | ୫,୦୦୦ |
| ବସନ୍ତ | ୧୪,୦୦୦ | | ମହଜୁଦ୍ ପଣ୍ୟ | ୯,୦୦୦ |
| ଶରତ୍ | ୧୨,୦୦୦ | ୨୬,୦୦୦ | ବିବିଧ ଖାତକ | ୧୨,୦୦୦ |
| ବିବିଧ ମହାଜନ | | ୬,୦୦୦ | ବ୍ୟାଙ୍କ୍‌ରେ ଗଚ୍ଛିତ | ୬,୦୦୦ |
| | | ୩୨,୦୦୦ | | ୩୨,୦୦୦ |

୧୯୭୫ ମସିହା ଜାନୁୟାରୀ ୧ ତାରିଖରେ ହେମନ୍ତଙ୍କୁ ଅଂଶୀଦାର ରୂପେ ଗ୍ରହଣ କରିବା ପୂର୍ବରୁ ଦେଖାଗଲା ଯେ ଆସବାବ ର ମୂଲ୍ୟ ୬,୦୦୦ ଟଙ୍କାକୁ, ମହଜୁଦ ପଣ୍ୟର

ମୂଲ୍ୟ ୧୧,୦୦୦ ଟଙ୍କାକୁ ବୃଦ୍ଧି ପାଇଛି ଓ ବିବିଧ ଖାତକର ମୂଲ୍ୟ ୧୦,୫୦୦ ଟଙ୍କାକୁ ହ୍ରାସ ପାଇଛି । ବିବିଧ ମହାଜନ ପରିମାଣ ୫,୬୦୦ ଟଙ୍କାକୁ ହ୍ରାସ ପାଇଛି । ସୁନାମର ମୂଲ୍ୟ ୬,୦୦୦ ଟଙ୍କା ହୋଇଛି ।

ଜାବ୍ଦା, ବିବରଣୀ ପୁନର୍ମୂଲ୍ୟାୟନ ହିସାବ, ଅଂଶୀଦାରମାନଙ୍କର ମୂଳଧନ ହିସାବ ଓ ହେମନ୍ତ ଯୋଗଦେବା ପରେ ଅଂଶୀଦାରୀ କାରବାରର ନୂତନ ଉଦ୍ବୃତ୍ତ ପତ୍ର ପ୍ରସ୍ତୁତକର ।

## ସମାଧାନ

ଧାରୀ ବିବରଣୀ ପୁନର୍ମୂଲ୍ୟାୟନ ହିସାବ ଦାତା

| ୧୯୭୫ | ଟଙ୍କା | ୧୯୭୫ | ଟଙ୍କା |
|---|---|---|---|
| ଜାନୁଆରୀ-୧ ସମ୍ପତ୍ତିର ମୂଲ୍ୟହ୍ରାସ ବାବଦ : | | ଜାନୁଆରୀ-୧ ସମ୍ପତ୍ତିର ମୂଲ୍ୟବୃଦ୍ଧି ବାବଦ : | |
| ବିବିଧ ଖାତକ | ୧,୫୦୦ | ଆସବାବ | ୧,୦୦୦ |
| ୧ ମୂଳଧନ ହିସାବ ବାବଦ : (ଲାଭର ସ୍ଥାନାନ୍ତରଣ) | | ମହଜୁଦ୍ ପଣ୍ୟ | ୨,୦୦୦ |
| ବସନ୍ତ ଟ୫,୨୦୦ | | ସୁନାମ | ୬,୦୦୦ |
| ଶରତ ଟ୨,୬୦୦ | ୭,୮୦୦ | ଜାନୁଆରୀ-୧ ଦେୟର ମୂଲ୍ୟହ୍ରାସ ବାବଦ : | |
| | | ବିବିଧ ମହାଜନ | ୩୦୦ |
| | ୯,୩୦୦ | | ୯,୩୦୦ |
| ଜାନୁଆରୀ-୧ ବିପରୀତ ଲିଖନ ବାବଦ : | | ଜାନୁଆରୀ-୧ ବିପରୀତ ଲିଖନ ବାବଦ : | |
| ମହଜୁଦ ପଣ୍ୟ | ୨,୦୦୦ | ବିବିଧ ଖାତକ | ୧,୫୦୦ |
| ସୁନାମ | ୬,୦୦୦ | ୧ ମୂଳଧନ ହିସାବ ବାବଦ : (କ୍ଷତିର ସ୍ଥାନାନ୍ତରଣ) | |
| ବିବିଧ ମହାଜନ | ୩୦୦ | ବସନ୍ତ ଟ୩,୪୦୦ | |
| | | ଶରତ ଟ୧,୬୦୦ | |
| | | ହେମନ୍ତ ଟ୧,୦୦୦ | ୬,[illegible]୦୦ |
| | ୮,୩୦୦ | | ୮,୩୦୦ |

### ବସନ୍ତଙ୍କର ମୂଳଧନ ହିସାବ

| ଦାୟୀ | | | ଦାତା | | |
|---|---|---|---|---|---|
| ୧୯୭୫ | | ଟଙ୍କା | ୧୯୭୫ | | ଟଙ୍କା |
| ଜାନୁଆରି-୧ | ପୁନର୍ମୂଲ୍ୟାୟନ ଲଭ କାଟି ଦଆଯିବା ବାବଦ | ୩,୪୦୦ | ଜାନୁଆରି-୧ | ପୂର୍ବ ବାକୀ ବାବଦ | ୧୪,୦୦୦ |
| ୧ | ବାକୀ ଗଡ଼ିଲା | ୧୫,୮୦୦ | ୧ | ପୁନର୍ମୂଲ୍ୟାୟନ ଲଭବାବଦ | ୫,୨୦୦ |
| | | ୧୯,୨୦୦ | | | ୧୯,୨୦୦ |
| | | | ଜାନୁଆରି-୨ | ପୂର୍ବବାକୀ ବାବଦ | ୧୫,୮୦୦ |

| ଦାୟୀ | | | ଦାତା | | |
|---|---|---|---|---|---|
| ୧୯୭୫ | | ଟଙ୍କା | ୧୯୭୫ | | ଟଙ୍କା |
| ଜାନୁଆରି-୧ | ପୁନର୍ମୂଲ୍ୟାୟନ ଲଭ କାଟି ଦଆଯିବା ବାବଦ | ୧,୭୦୦ | ଜାନୁଆରି-୧ | ପୂର୍ବବାକୀ ବାବଦ | ୧୨,୦୦୦ |
| ୧ | ବାକୀ ଗଡ଼ିଲା | ୧୨,୯୦୦ | ୧ | ପୁନର୍ମୂଲ୍ୟାୟନ ଲଭ ବାବଦ | ୨,୬୦୦ |
| | | ୧୪,୬୦୦ | | | ୧୪,୬୦୦ |
| | | | ଜାନୁଆରି-୨ | ପୂର୍ବବାକୀ ବାବଦ | ୧୨,୯୦୦ |

| ଦାୟୀ | | | ଦାତା | | |
|---|---|---|---|---|---|
| ୧୯୭୫ | | ଟଙ୍କା | ୧୯୭୫ | | ଟଙ୍କା |
| ଜାନୁଆରି-୧ | ପୁନର୍ମୂଲ୍ୟାୟନ ଲଭ କାଟି ଦଆଯିବା ବାବଦ | ୧,୭୦୦ | ଜାନୁଆରି-୧ | ବ୍ୟାଙ୍କ୍ ହିସାବ ବାବଦ | ୮,୦୦୦ |
| ୧ | ବାକୀ ଗଡ଼ିଲା | ୬,୩୦୦ | | | |
| | | ୮,୦୦୦ | | | ୮,୦୦୦ |
| | | | ଜାନୁଆରି-୨ | ପୂର୍ବବାକୀ ବାବଦ | ୬,୩୦୦ |

## ୧୯୭୫ ମସିହା ଜାନୁଆରୀ ୧ ତାରିଖର ବସନ୍ତ, ଶରତ ଓ ହେମନ୍ତଙ୍କର ଉଦ୍ବୃତ୍ତ ପତ୍ର

| ଦେୟ | ଟଙ୍କା | ଟଙ୍କା | ସମ୍ପତ୍ତି | ଟଙ୍କା | ଟଙ୍କା |
|---|---|---|---|---|---|
| ମୂଳଧନ : | | | ଆସବାବ୍ | ୫,୦୦୦ | |
| ବସନ୍ତ | ୧୫,୮୦୦ | | ଯୁକ୍ତ : ମୂଲ୍ୟବୃଦ୍ଧି | ୧,୦୦୦ | ୬,୦୦୦ |
| ଶରତ | ୧୨,୯୦୦ | | ମହଜୁଦ୍ ପଣ୍ୟ | | ୯,୦୦୦ |
| ହେମନ୍ତ | ୬,୩୦୦ | ୩୫,୦୦୦ | ବିବିଧ ଖାତକ | | ୧୨,୦୦୦ |
| ବିବିଧ ମହାଜନ | | ୬,୦୦୦ | ବ୍ୟାଙ୍କରେ ଗଚ୍ଛିତ | | ୧୪,୦୦୦ |
| | | ୪୧,୦୦୦ | | | ୪୧,୦୦୦ |

| ଜାବେଦା | | ଦାୟୀ | ଦାତା |
|---|---|---|---|
| ୧୯୭୫ | | ଟଙ୍କା | ଟଙ୍କା |
| ଜାନୁଆରୀ-୧ | ବିବରଣୀ ପୁନର୍ମୂଲ୍ୟାୟନ ହିସାବ ଦାୟୀ | ୭,୮୦୦ | |
| | ବସନ୍ତଙ୍କର ମୂଳଧନ ହିସାବ ବାବଦ | | ୫,୨୦୦ |
| | ଶରତଙ୍କର ମୂଳଧନ ହିସାବ ବାବଦ | | ୨,୬୦୦ |
| | (ସମ୍ପତ୍ତି ଓ ଦେୟର ପୁନର୍ମୂଲ୍ୟାୟନ ହେତୁ ଲାଭ ପୁରାତନ ଅଂଶୀଦାରମାନଙ୍କର ମୂଳଧନ ହିସାବକୁ ପୁରାତନ ଲାଭ ବଣ୍ଟନ ଅନୁପାତ, ଅର୍ଥାତ୍ ୨:୧ ଅନୁପାତରେ ସ୍ଥାନାନ୍ତରିତ କରାଗଲା ।) | | |
| ୧ | ଆସବାବ୍ ହିସାବ ଦାୟୀ | ୧,୦୦୦ | |
| | ପୁନର୍ମୂଲ୍ୟାୟନ ହିସାବ ବାବଦ | | ୧,୦୦୦ |
| | (ଆସବାବ୍‌ର ମୂଲ୍ୟ ବୃଦ୍ଧି ସ୍ଥାୟୀ ଭାବରେ ଖାତା-ପତ୍ରରେ ଲିପିବଦ୍ଧ କରାଗଲା ।) | | |
| ୧ | ବସନ୍ତଙ୍କର ମୂଳଧନ ହିସାବ ଦାୟୀ | ୩,୪୦୦ | |
| | ଶରତଙ୍କର ମୂଳଧନ ହିସାବ ଦାୟୀ | ୧,୭୦୦ | |
| | ହେମନ୍ତଙ୍କର ମୂଳଧନ ହିସାବ ଦାୟୀ | ୧,୭୦୦ | |
| | ବିବରଣୀ ପୁନର୍ମୂଲ୍ୟାୟନ ହିସାବ ବାବଦ | | ୬,୮୦୦ |
| | (ବସନ୍ତ ଓ ଶରତଙ୍କର ମୂଳଧନ ହିସାବକୁ ପୁରାତନ ଲାଭ ବଣ୍ଟନ ଅନୁପାତରେ ଦାତା କରାଯାଇଥିବା ପୁନର୍ମୂଲ୍ୟାୟନର ଲାଭ ସମସ୍ତ ଅଂଶୀଦାରଙ୍କର ମୂଳଧନ ହିସାବରୁ ନୂତନ ଲାଭ ବଣ୍ଟନ ଅନୁପାତରେ ବାଦ ଦିଆଗଲା ।) | | |

ବିକଳ୍ପ ପଦ୍ଧତି

ଜାବ୍‌ଦା

| | | ଡାହ୍ମୀ | ଡାଭା |
|---|---|---|---|
| ୧୯୭୫ | | ଟଙ୍କା | ଟଙ୍କା |
| ଜାନୁଆରୀ-୧ | ଆସବାବ ହିସାବ ଡାହ୍ମୀ | ୧,୦୦୦ | |
| | ହେମନ୍ତଙ୍କର ମୂଳଧନ ହିସାବ ଡାହ୍ମୀ | ୧,୭୦୦ | |
| | ବସନ୍ତଙ୍କର ମୂଳଧନ ହିସାବ ବାବଦ | | ୧,୮୦୦ |
| | ଶରତଙ୍କର ମୂଳଧନ ହିସାବ ବାବଦ | | ୯୦୦ |
| | (ହେମନ୍ତଙ୍କୁ ନୂତନ ଅଂଶୀଦାର ରୂପେ ଗ୍ରହଣ କରିବା ସମୟରେ ଗୋଟିଏ ଜାବ୍‌ଦା ସାହାଯ୍ୟରେ ଅଂଶୀଦାରମାନଙ୍କର ମୂଳଧନ ହିସାବଗୁଡ଼ିକର ସମାଯୋଜନ କରାଗଲା ।) | | |

ସମାଯୋଜନ ବିବରଣୀ

| | ଡାହ୍ମୀ | ଡାଭା | ବାକି ଡାହ୍ମୀ | ବାକି ଡାଭା |
|---|---|---|---|---|
| | ଟଙ୍କା | ଟଙ୍କା | ଟଙ୍କା | ଟଙ୍କା |
| ବସନ୍ତ | ୩,୪୦୦ | ୫,୨୦୦ | | ୧,୮୦୦ |
| ଶରତ | ୧,୭୦୦ | ୨,୬୦୦ | | ୯୦୦ |
| ହେମନ୍ତ | ୧,୬୦୦ | | ୧,୭୦୦ | |
| ଆସବାବ | ୧,୦୦୦ | | ୧,୦୦୦ | |
| ମୋଟ | ୭,୮୦୦ | ୭,୮୦୦ | ୨,୭୦୦ | ୨,୭୦୦ |

**ଲାଭ ବଣ୍ଟନ ଅନୁପାତ ଅନୁଯାୟୀ ଅଂଶୀଦାରମାନଙ୍କର ମୂଳଧନ (Partners' Capitals Proportionate to profit sharing ratio) :**

ପୂର୍ବରୁ କୁହାଯାଇଛି ଯେ କେତେକ ସମୟରେ ଅଂଶୀଦାରମାନଙ୍କର ମୂଳଧନ ପରସ୍ପର ମଧ୍ୟରେ ଲାଭ ବଣ୍ଟନର ଅନୁପାତ ଅନୁଯାୟୀ ଥାଏ । ଏପରି କ୍ଷେତ୍ରରେ ଯେତେବେଳେ ନୂତନ ଅଂଶୀଦାର ଗ୍ରହଣ କରାଯାଏ, ସେତେବେଳେ ତାଙ୍କୁ ଲାଭର ଯେତେ ଅଂଶ ଛାଡ଼ି ଦିଆଯାଏ, ତାଙ୍କୁ ତଦନୁରୂପ ମୂଳଧନ ଆଣିବାକୁ ପଡ଼େ । ଅର୍ଥାତ୍ ଏ କ୍ଷେତ୍ରରେ ନବାଗତ ଅଂଶୀଦାରଙ୍କର ମୂଳଧନର ପରିମାଣ ପୁରାତନ ଅଂଶୀଦାରଙ୍କ ମୂଳଧନ ଭିତ୍ତିରେ

କଳନା କରାଯାଏ । ବିପରୀତ ଭାବରେ ନୂତନ ଅଂଶୀଦାରଙ୍କୁ ଯେଉଁ ପରିମାଣର ମୂଳଧନ ଆଣିବାକୁ କୁହାଯାଏ ଓ ତାଙ୍କୁ ଲାଭର ଯେତେ ଅଂଶ ଛାଡ଼ି ଦିଆଯାଏ ତାହାର ଭିତ୍ତିରେ ପୁରାତନ ଅଂଶୀଦାରମାନଙ୍କର ମୂଳଧନ ପରିମାଣ ସ୍ଥିରୀକୃତ ହୁଏ । ଯଦି କୌଣସି ଅଂଶୀଦାର ଅଧିକା ମୂଳଧନ ବିନିଯୋଗ କରି ଥାଆନ୍ତି ସେ ତାହା ବ୍ୟବସାୟରୁ ଉଠାଇ ନିଅନ୍ତି ଏବଂ ଯେଉଁ ଅଂଶୀଦାରଙ୍କର ମୂଳଧନ ପରିମାଣ ଲାଭ ବଣ୍ଟନ ଅନୁପାତ ତୁଳନାରେ ନ୍ୟୂନ ଥାଏ, ସେ ନ୍ୟୂନ ପରିମାଣ ଭରଣା କରନ୍ତି ।

ନୂତନ ଅଂଶୀଦାରଙ୍କୁ ଗ୍ରହଣ କରିବା ପୂର୍ବରୁ ଯଦି ବ୍ୟବସାୟର ସମ୍ପତ୍ତି ଓ ଦେୟଗୁଡ଼ିକର ପୁନର୍ମୂଲ୍ୟାୟନ କରିବା ସାବ୍ୟସ୍ତ ହୋଇଥାଏ, ତାହାହେଲେ ଏହିପରି ମୂଲ୍ୟାୟନ ଫଳରେ ଲାଭ ଅଥବା କ୍ଷତି ପୁରାତନ ଅଂଶୀଦାରଙ୍କର ମୂଳଧନ ହିସାବରେ ଲିପିବଦ୍ଧ କରାଯିବା ପରେ ତାଙ୍କ ମୂଳଧନ ହିସାବରେ ଯେଉଁ ବାକୀ ବା ଉଦ୍‌ବୃତ୍ତ ରହେ, ସେହି ପରିମାଣକୁହିଁ ଭିତ୍ତି ସ୍ୱରୂପ ନିଆଯାଏ, ପୁନର୍ମୂଲ୍ୟାୟନର ପୂର୍ବବର୍ତ୍ତୀ ମୂଳଧନ ପରିମାଣ ନୁହେଁ ।

ମନେକର କ ଓ ଖ ଗୋଟିଏ ଅଂଶୀଦାରୀ କାରବାରରେ ଅଂଶୀଦାର ରୂପେ ଲାଭର ଯଥାକ୍ରମେ ୨/୩ ଓ ୧/୩ ଅଂଶ ଭୋଗ କରୁଥିଲେ । ତାଙ୍କର ମୂଳଧନର ପରିମାଣ ଯଥାକ୍ରମେ ୧୨,୦୦୦ ଟଙ୍କା ଓ ୬,୦୦୦ ଟଙ୍କା ଥିଲା । ସେମାନେ ଗ କୁ ଭବିଷ୍ୟତ୍ ଲାଭର ୧/୬ ଅଂଶ ଦେଇ ନୂତନ ଅଂଶୀଦାର ରୂପେ ଗ୍ରହଣ କରିବାକୁ ସମ୍ମତ ହେଲେ । ଗ କୁ ଲାଭର ୧/୬ ଅଂଶ ଦେଲେ କ ଓ ଖ ଲାଭର ଅବଶିଷ୍ଟ ୧ − ୧/୬ = ୫/୬ ଭୋଗ କରିବେ । ସେମାନଙ୍କର ମିଳିତ ମୂଳଧନର ପରିମାଣ (୧୨,୦୦୦ + ୬,୦୦୦ =) ୧୮,୦୦୦ ଟଙ୍କା ଯାହା ୫/୬ ଅଂଶ ସହିତ ସମାନ । ତାହାହେଲେ ବ୍ୟବସାୟର ମୋଟ ମୂଳଧନର ପରିମାଣ ୧୮,୦୦୦ ଟଙ୍କା × ୬/୫ = ୨୧,୬୦୦ ଟଙ୍କା ହେବ । ତାହାହେଲେ ଗ ୨୧,୬୦୦ − ୧୮,୦୦୦ = ୩,୬୦୦ ଟଙ୍କା ମୂଳଧନ ସ୍ୱରୂପ ଆଣିବେ । ଅନ୍ୟ ପ୍ରଣାଳୀରେ ହିସାବ କଲେ ମଧ୍ୟ ସେ ୨୧,୬୦୦ ଟଙ୍କାର ୧/୬ ଅଂଶ ଅର୍ଥାତ୍ ୩,୬୦୦ ଟଙ୍କା ମୂଳଧନ ସ୍ୱରୂପ ଆଣିବେ । ଅଂଶୀଦାରଙ୍କର ନୂତନ ଲାଭ ବଣ୍ଟନର ଅନୁପାତ ନିମ୍ନପ୍ରକାର ହେବ ।

କ — ୫/୬ × ୨/୩ = ୧୦/୧୮

ଖ — ୫/୬ × ୧/୩ = ୫/୧୮

ଗ — ୧/୬ ଅଥବା ୩/୧୮

ବିପରୀତ ଭାବରେ ମନେକର ଯେ କ ଓ ଖ ଗୋଟିଏ ଅଂଶୀଦାର କାରବାରର ଅଂଶୀଦାର ଥାଇ ଲାଭର ଯଥାକ୍ରମେ ୩/୫ ଓ ୨/୫ ଅଂଶ ଭୋଗ କରୁଥିଲେ । ସେମାନେ ଗ କୁ ଭବିଷ୍ୟତ୍ ଲାଭର ୧/୪ ଅଂଶ ଦେଇ ନୂତନ ଅଂଶୀଦାର ରୂପେ ଗ୍ରହଣ କରିବାକୁ ସମ୍ମତ ହେଲେ । ଗ ବ୍ୟବସାୟକୁ ମୂଳଧନ ସ୍ୱରୂପ ୮,୦୦୦ ଟଙ୍କା ଆଣିବେ ବୋଲି ସ୍ଥିର ହେଲା । ଏପରି କ୍ଷେତ୍ରରେ କ ଓ ଖ ଙ୍କର ମୂଳଧନ ସ୍ଥିର କରିବା ସକାଶେ ତାଙ୍କର ମୂଳଧନ

ପରିମାଣକୁ ଭିତ୍ତି ସ୍ୱରୂପ ଧରାଯିବ । ଗ ଙ୍କର ୧/୪ ଅଂଶ ଲାଭ ସକାଶେ ତାଙ୍କ ମୂଳଧନର ପରିମାଣ ଯଦି ୮,୦୦୦ ଟଙ୍କା ହୁଏ, ତାହାହେଲେ ଅଂଶୀଦାରୀ କାରବାରର ମୋଟ ମୂଳଧନର ପରିମାଣ ଟ ୮,୦୦୦ × ୪/୧ = ୩୨,୦୦୦ ଟଙ୍କା ହେବ । କ ଭବିଷ୍ୟତ ଲାଭର (୧ − ୧/୪ =) ୩/୪ ର ୩/୫ = ୯/୨୦ ଅଂଶ ପାଇବେ ଓ ଖ ୩/୪ ର ୨/୫ = ୬/୨୦ ଅଂଶ ପାଇବେ । ସେହି ସମୟରେ ଗ ଙ୍କର ଲାଭର ଅଂଶ ୧/୪ ଅଥବା ୫/୨୦ ହେବ । ତାହାହେଲେ କ ଙ୍କର ମୂଳଧନ ୩୨,୦୦୦ × ୯/୨୦ = ୧୪,୪୦୦ ଟଙ୍କା ହେବ ଓ ଖ ଙ୍କର ମୂଳଧନ ୩୨,୦୦୦ × ୬/୨୦ = ୯,୬୦୦ ଟଙ୍କା ହେବ । ପୁନର୍ମୂଲ୍ୟାୟନ ପରେ ଯଦି କ ଓ ଖ ଙ୍କର ମୂଳଧନର ପରିମାଣ ଏହା ଅପେକ୍ଷା ଅଧିକ ଥାଏ, ତାହାହେଲେ ସେମାନେ ଅଧିକା ଟଙ୍କା ବ୍ୟବସାୟରୁ ଉଠାଇ ନେଇ ପାରନ୍ତି ଅଥବା ତାଙ୍କର ଚଳନ୍ତି ହିସାବକୁ ସ୍ଥାନାନ୍ତରିତ କରି ପାରନ୍ତି । ଅପର ପକ୍ଷରେ ଯଦି ତାଙ୍କର ମୂଳଧନର ପରିମାଣ ଏହାଠାରୁ ଊଣା ହୋଇଥାଏ, ତାହାହେଲେ ତାହାଙ୍କୁ ବ୍ୟବସାୟକୁ ଅଧିକା ଅର୍ଥ ଆଣି ଏହି ଅଭାବ ପୂରଣ କରିବାକୁ ହେବ ।

## ଦୃଷ୍ଟାନ୍ତ (୨୬)

ହରିଶ ଓ ଗିରୀଶ ଗୋଟିଏ ଅଂଶୀଦାରୀ କାରବାରରେ ଅଂଶୀଦାର ରୂପେ ଲାଭର ଯଥାକ୍ରମେ ୨/୩ ଓ ୧/୩ ଅଂଶ ଭୋଗ କରନ୍ତି । ତାଙ୍କର ୧୯୭୪ ମସିହା ଜୁନ୍ ୩୦ ତାରିଖର ଉଦ୍‌ବୃତ୍ତ ପତ୍ର ନିମ୍ନରେ ପ୍ରଦତ୍ତ ହେଲା ।

ହରିଶ ଓ ଗିରୀଶଙ୍କର

୧୯୭୪ ମସିହା ଜୁନ୍ ୩୦ ତାରିଖର ଉଦ୍‌ବୃତ୍ତ ପତ୍ର

| ଦେୟ | | ଟଙ୍କା | ସଂପତ୍ତି | ଟଙ୍କା |
|---|---|---|---|---|
| ମୂଳଧନ : | | | କଳକବ୍‌ଜା | ୧୦,୦୦୦ |
| ହରିଶ–ଟ | ୧୦,୦୦୦ | | ଆସବାବ୍ | ୪,୦୦୦ |
| ଗିରୀଶ–ଟ | ୪,୦୦୦ | | ମହଜୁଦ୍ ପଣ୍ୟ | ୩,୬୦୦ |
| | | ୧୪,୦୦୦ | ବିବିଧ ଖାତକ | ୮,୦୦୦ |
| ବିବିଧ ମହାଜନ | | ୧୨,୫୦୦ | ବ୍ୟାଙ୍କରେ ଗଚ୍ଛିତ | ୫,୪୦୦ |
| ସାଧାରଣ ସଞ୍ଚିତ | | ୪,୫୦୦ | | |
| | | ୩୧,୦୦୦ | | ୩୧,୦୦୦ |

ସେମାନେ ଭବିଷ୍ୟତ ଲାଭର ୧/୮ ଅଂଶ ଦେଇ ଶିରୀଷଙ୍କୁ ଏକ ନୂତନ ଅଂଶୀଦାର ରୂପେ ଗ୍ରହଣ କରିବାକୁ ନିମ୍ନଲିଖିତ ସର୍ତ୍ତ ଅନୁଯାୟୀ ସମ୍ମତ ହେଲେ ।

(୧) ଶିଶିର ୧-୭-୧୯୭୪ ତାରିଖରେ ମୂଳଧନ ସ୍ୱରୂପ ୭,୦୦୦ ଟଙ୍କା ଆଣିବେ ।
(୨) କଳକବ୍ଜା ପରିମାଣରୁ ୧୦% ହାରରେ ମୂଲ୍ୟହ୍ରାସ ବାଦ୍ ଦିଆଯିବ ; ଆସବାବର ମୂଲ୍ୟ ୩,୫୦୦ ଟଙ୍କାକୁ ହ୍ରାସ କରାଯିବ; ମହଜୁଦ ପଣ୍ୟର ମୂଲ୍ୟ ୪,୨୦୦କୁ ବୃଦ୍ଧି ପାଇବ ଓ ବିବିଧ ଖାତକର ପରିମାଣ ୭,୭୦୦ ଟଙ୍କା ରଖାଯିବ ।
(୩) ହରିଶ ଓ ଗିରିଶଙ୍କର ଅଂଶୀଦାରୀ କାରବାରର ସୁନାମର ମୂଲ୍ୟ ୩,୦୦୦ ଟଙ୍କା ରଖାଯିବ ।
(୪) ହରିଶ ଓ ଗିରିଶଙ୍କର ମୂଳଧନ ଶିଶିରଙ୍କର ମୂଳଧନ ଭିତ୍ତିରେ ସମାଯୋଜିତ ହେବ । ଆବଶ୍ୟକ ହେଲେ ସେମାନେ ନଅଣ୍ଟ ଅର୍ଥ ଆଣିବେ ଅଥବା ବଳକା ଅର୍ଥ ଉଠାଇନେବେ ।

ଆବଶ୍ୟକ ଜାବ୍ଦା, ପୁନର୍ମୂଲ୍ୟାୟନ ହିସାବ, ଅଂଶୀଦାରଙ୍କର ମୂଳଧନ ହିସାବ, ସୁନାମ ହିସାବ ଓ ବ୍ୟାଙ୍କ୍ ହିସାବ ପ୍ରସ୍ତୁତ କର । ଶିଶିର ନୂତନ ଅଂଶୀଦାର ରୂପେ ଯୋଗ ଦେବା ପରେ ନୂତନ ଅଂଶୀଦାରୀ କାରବାରର ପ୍ରଥମ ଉଦ୍ବୃତ୍ତ ପତ୍ର ପ୍ରସ୍ତୁତ କର ।

## ସମାଧାନ

| | ଜାବ୍ଦା | ଦାୟୀ | ଦାତା |
|---|---|---|---|
| ୧୯୭୪ | | ଟଙ୍କା | ଟଙ୍କା |
| ଜୁଲାଇ-୧ | ବ୍ୟାଙ୍କ୍ ହିସାବ ଦାୟୀ | ୭,୦୦୦ | |
| | ଶିଶିରଙ୍କର ମୂଳଧନ ହିସାବ ବାବଦ | | ୭,୦୦୦ |
| | (ଶିଶିର ମୂଳଧନ ସ୍ୱରୂପ ୭,୦୦୦ ଟଙ୍କା ଆଣିଲେ) | | |
| ୧ | ସୁନାମ ହିସାବ ଦାୟୀ | ୩,୦୦୦ | |
| | ହରିଶଙ୍କର ମୂଳଧନ ହିସାବ ବାବଦ | | ୨,୦୦୦ |
| | ଗିରିଶଙ୍କର ମୂଳଧନ ହିସାବ ବାବଦ | | ୧,୦୦୦ |
| | (ସୁନାମର ମୂଲ୍ୟ ପୁରାତନ ଅଂଶୀଦାରମାନଙ୍କର ମୂଳଧନ ହିସାବକୁ ୨ : ୧ ଅନୁପାତରେ ଦାତା କରାଗଲା ।) | | |
| ୧ | ସାଧାରଣ ସଞ୍ଚିତ ହିସାବ ଦାୟୀ | ୪,୫୦୦ | |
| | ହରିଶଙ୍କର ମୂଳଧନ ହିସାବ ବାବଦ | | ୩,୦୦୦ |
| | ଗିରିଶଙ୍କର ମୂଳଧନ ହିସାବ ବାବଦ | | ୧,୫୦୦ |
| | ( ସାଧାରଣ ସଞ୍ଚିତ ପରିମାଣକୁ ପୁରାତନ ଅଂଶୀଦାରମାନେ ୨ : ୧ ଅନୁପାତରେ ବାଣ୍ଟିନେଲେ ।) | | |

| | | ଦାୟୀ | ଦାତା |
|---|---|---|---|
| | | ଟଙ୍କା | ଟଙ୍କା |
| ୧୯୭୪<br>ଜୁଲାଇ-୧ | ପୁନର୍ମୂଲ୍ୟାୟନ ହିସାବ ଦାୟୀ | ୧,୮୦୦ | |
| | କଳକବ୍‌ଜା ହିସାବ ବାବଦ | | ୧,୦୦୦ |
| | ଆସବାବ ହିସାବ ବାବଦ | | ୫୦୦ |
| | ଅନାଦାୟୀ ଋଣ ସଞ୍ଚିତ ହିସାବ ବାବଦ | | ୩୦୦ |
| | (ପୁନର୍ମୂଲ୍ୟାୟନ ହେତୁ ସମ୍ପତ୍ତିଗୁଡ଼ିକର ମୂଲ୍ୟ ହ୍ରାସ ପାଇଲା ।) | | |
| ୧ | ମହଜୁଦ ପଣ୍ୟ ହିସାବ ଦାୟୀ | ୬୦୦ | |
| | ପୁନର୍ମୂଲ୍ୟାୟନ ହିସାବ ବାବଦ | | ୬୦୦ |
| | ( ପୁନର୍ମୂଲ୍ୟାୟନ ହେତୁ ସମ୍ପତ୍ତିର ମୂଲ୍ୟ ବୃଦ୍ଧି ପାଇଲା ।) | | |
| ୧ | ହରିଶଙ୍କର ମୂଳଧନ ହିସାବ ଦାୟୀ | ୮୦୦ | |
| | ଗିରିଶଙ୍କର ମୂଳଧନ ହିସାବ ଦାୟୀ | ୪୦୦ | |
| | ପୁନର୍ମୂଲ୍ୟାୟନ ହିସାବ ବାବଦ | | ୧,୨୦୦ |
| | ( ପୁନର୍ମୂଲ୍ୟାୟନ ହିସାବର ଦାୟୀ ବାକି ପୁରାତନ ଅଂଶୀଦାରମାନଙ୍କର ମୂଳଧନ ହିସାବକୁ ୨ : ୧ ଅନୁପାତରେ ସ୍ଥାନାନ୍ତରିତ ହେଲା ।) | | |
| | ବ୍ୟାଙ୍କ୍ ହିସାବ ଦାୟୀ | ୩,୬୦୦ | |
| | ହରିଶଙ୍କର ମୂଳଧନ ହିସାବ ବାବଦ | | ୧,୮୦୦ |
| | ଗିରିଶଙ୍କର ମୂଳଧନ ହିସାବ ବାବଦ | | ୧,୯୦୦ |
| | ( ହରିଶଙ୍କର ମୂଳଧନକୁ ୧୬,୦୦୦ ଟଙ୍କା ଓ ଗିରିଶଙ୍କର ମୂଳଧନକୁ ୮,୦୦୦ ଟଙ୍କା କରିବା ସକାଶେ ସେମାନେ ଅଧିକା ଟଙ୍କା ଜମାକଲେ ।) | | |

## ଖତିୟାନ

**ଦାୟୀ — ବ୍ୟାଙ୍କ୍ ହିସାବ — ଦାତା**

| ୧୯୭୪ | | ଟଙ୍କା | ୧୯୭୪ | | ଟଙ୍କା |
|---|---|---|---|---|---|
| ଜୁନ-୩୦ | ପୂର୍ବ ବାକି ବାବଦ | ୫,୪୦୦ | ଜୁଲାଇ-୧ | ବାକି ଶଗ୍ଡ଼ଲ | ୧୫,୧୦୦ |
| ଜୁଲାଇ-୧ | ଶିରୀଷଙ୍କର ମୂଳଧନ ବାବଦ | ୬,୦୦୦ | | | |
| ୧ | ହରିଶଙ୍କର ମୂଳଧନ ହି: ବାବଦ | ୧,୮୦୦ | | | |
| ୧ | ଗିରୀଶଙ୍କର ମୂଳଧନ ହି: ବାବଦ | ୧,୯୦୦ | | | |
| | | ୧୫,୧୦୦ | | | ୧୫,୧୦୦ |
| ଜୁଲାଇ-୨ | ପୂର୍ବ ବାକି ବାବଦ | ୧୫,୧୦୦ | | | |

**ଦାୟୀ — ପୁନର୍ମୂଲ୍ୟାୟନ ହିସାବ — ଦାତା**

| ୧୯୭୪ | | ଟଙ୍କା | ୧୯୭୪ | | ଟଙ୍କା |
|---|---|---|---|---|---|
| ଜୁଲାଇ-୧ | କଳକବ୍ଜା ହିସାବ ବାବଦ | ୧,୦୦୦ | ଜୁଲାଇ-୧ | ମହଜୁଦ୍ ପଣ୍ୟ ହିସାବ ବାବଦ | ୬୦୦ |
| ୧ | ଅସବାବ ହିସାବ ବାବଦ | ୫୦୦ | ୧ | ହରିଶଙ୍କର ମୂଳଧନ ହି: ବାବଦ | ୮୦୦ |
| ୧ | ଅନାଦାୟୀ ଋଣ ସଞ୍ଚିତ ହି: ବାବଦ | ୩୦୦ | ୧ | ଗିରୀଶଙ୍କର ମୂଳଧନ ହି: ବାବଦ | ୪୦୦ |
| | | ୧,୮୦୦ | | | ୧,୮୦୦ |

**ଦାୟୀ — ହରିଶଙ୍କର ମୂଳଧନ ହିସାବ — ଦାତା**

| ୧୯୭୪ | | ଟଙ୍କା | ୧୯୭୪ | | ଟଙ୍କା |
|---|---|---|---|---|---|
| ଜୁଲାଇ-୧ | ପୁନର୍ମୂଲ୍ୟାୟନ ହିସାବ ବାବଦ | ୮୦୦ | ଜୁନ-୩୦ | ପୂର୍ବ ବାକି ବାବଦ | ୧୦,୦୦୦ |
| ୧ | ବାକି ଶଗ୍ଡ଼ଲ | ୧୬,୦୦୦ | ଜୁଲାଇ-୧ | ସୁନାମ ହିସାବ ବାବଦ | ୨,୦୦୦ |
| | | | ୧ | ସାଧାରଣ ସଞ୍ଚିତ ହି: ବାବଦ | ୩,୦୦୦ |
| | | | ୧ | ବ୍ୟାଙ୍କ୍ ହିସାବ ବାବଦ | ୧,୮୦୦ |
| | | ୧୬,୮୦୦ | | | ୧୬,୮୦୦ |
| | | | ଜୁଲାଇ-୨ | ବାକି ଶଗ୍ଡ଼ଲ | ୧୬,୦୦୦ |

| ଦାୟୀ | | ଗିରିଶଙ୍କର ମୂଳଧନ ହିସାବ | | | ଦାତା |
|---|---|---|---|---|---|
| ୧୯୭୪ | | ଟଙ୍କା | ୧୯୭୪ | | ଟଙ୍କା |
| ଜୁଲାଇ-୧ | ପୁନର୍ମୂଲ୍ୟାୟନ ହିସାବ ବାବଦ | ୪୦୦ | ଜୁନ୍-୩୦ | ପୂର୍ବ ବାକି ବାବଦ | ୪,୦୦୦ |
| | | | ଜୁଲାଇ-୧ | ସୁନାମ ହିସାବ ବାବଦ | ୧,୦୦୦ |
| ୧ | ବାକି ଗଡ଼ିଲ | ୮,୦୦୦ | ୧ | ସାଧାରଣ ସଞ୍ଚିତ ହିସାବ ବାବଦ | ୧,୫୦୦ |
| | | | ୧ | ବ୍ୟାଙ୍କ ହିସାବ ବାବଦ | ୧,୯୦୦ |
| | | ୮,୪୦୦ | | | ୮,୪୦୦ |
| | | | ଜୁଲାଇ-୨ | ପୂର୍ବ ବାକି ବାବଦ | |

| ଦାୟୀ | | ଶିବଶଙ୍କର ମୂଳଧନ ହିସାବ | | | ଦାତା |
|---|---|---|---|---|---|
| ୧୯୭୪ | | ଟଙ୍କା | ୧୯୭୪ | | ଟଙ୍କା |
| ଜୁଲାଇ-୧ | ବାକି ପଡ଼ିଲ | ୭,୦୦୦ | ଜୁଲାଇ-୧ | ବ୍ୟାଙ୍କ ହିସାବ ବାବଦ | ୭,୦୦୦ |
| | | | ଜୁଲାଇ-୨ | ପୂର୍ବ ବାକି ବାବଦ | ୭,୦୦୦ |

| ଦାୟୀ | | ସୁନାମ ହିସାବ | | | ଦାତା |
|---|---|---|---|---|---|
| ୧୯୭୪ | | ଟଙ୍କା | ୧୯୭୪ | | ଟଙ୍କା |
| ଜୁଲାଇ-୧ | ହରିଶଙ୍କର ମୂଳଧନ ହି: ବାବଦ | ୨,୦୦୦ | ଜୁଲାଇ-୧ | ବାକି ଗଡ଼ିଲ | ୩,୦୦୦ |
| | | ୧,୦୦୦ | | | |
| ୧ | ଗିରିଶଙ୍କର ମୂଳଧନ ହି: ବାବଦ | ୩,୦୦୦ | | | ୩,୦୦୦ |
| ଜୁଲାଇ-୨ | ପୂର୍ବ ବାକି ବାବଦ | ୩,୦୦୦ | | | |

## ହରଣ, ଗିରୀଶ ଓ ଶିରୀଷଙ୍କର
## ୧୯୭୪ ମସିହା ଜୁଲାଇ ୧ ତାରିଖରେ ଉଦ୍‌ବୃତ୍ତ ପତ୍ର

| ଦେୟ | ଟଙ୍କା | ଟଙ୍କା | ସମ୍ପତ୍ତି | ଟଙ୍କା | ଟଙ୍କା |
|---|---|---|---|---|---|
| ମୂଳଧନ ହିସାବ : | | | ସୁନାମ | | ୩,୦୦୦ |
| ହରଣ | ୧୬,୦୦୦ | | କଳକବ୍ଜା | | ୯,୦୦୦ |
| ଗିରୀଶ | ୮,୦୦୦ | | ଆସବାବ୍ | | ୩,୫୦୦ |
| ଶିରୀଷ | ୬,୦୦୦ | | ମହଜୁଦ ପଣ୍ୟ | | ୪,୨୦୦ |
| | | ୩୦,୦୦୦ | ବିବିଧ ଖାତକ | ୮,୦୦୦ | |
| ବିବିଧ ମହାଜନ | | ୧୨,୫୦୦ | ବିମୁକ୍ତ ଅନାଦାୟୀ ଋଣ ସଞ୍ଚିତ | ୩୦୦ | ୭,୭୦୦ |
| | | | ବ୍ୟାଙ୍କରେ ଗଚ୍ଛିତ ତହବିଲ | | ୧୫,୧୦୦ |
| | | ୪୨,୫୦୦ | | | ୪୨,୫୦୦ |

ମନ୍ତବ୍ୟ : (୧) ଶିରୀଷଙ୍କୁ ଭବିଷ୍ୟତ୍ ଲାଭର $\frac{୧}{୫}$ ଅଂଶ ଦିଆଯିବା ଫଳରେ ଲାଭର $(୧-\frac{୧}{୫})$ $=\frac{୪}{୫}$ ଅଂଶ ଅବଶିଷ୍ଟ ରହିଲା । ତନ୍ମଧ୍ୟରୁ ହରଣ $\frac{୪}{୫}\times\frac{୨}{୩}=\frac{୮}{୧୫}$ ଅଂଶ ପାଇବେ ଓ ଗିରୀଶ $\frac{୪}{୫}\times\frac{୧}{୩}=\frac{୪}{୧୫}$ ଅଂଶ ପାଇବେ । ସେହି କ୍ରମରେ ଶିରୀଷଙ୍କର ଲାଭର ଅଂଶ $\frac{୩}{୧୫}$ ହେବ । ଅତଏବ ଲାଭ ବଣ୍ଟନର ନୂତନ ଅନୁପାତ ଯଥାକ୍ରମେ ୮ : ୪ : ୩ ହେବ ।

(୨) ଶିରୀଷଙ୍କୁ ଲାଭର $\frac{୧}{୫}$ ଅଂଶ ସକାଶେ ୬,୦୦୦ ଟଙ୍କା ଆଣିବାକୁ କୁହାଗଲା । ତାହାହେଲେ ବ୍ୟବସାୟର ମୋଟ ମୂଳଧନର ପରିମାଣ ଶିରୀଷଙ୍କର ମୂଳଧନ ଭିତ୍ତିରେ ୬,୦୦୦ ଟଙ୍କା × $\frac{୫}{୧}$ = ୩୦,୦୦୦ ଟଙ୍କା ହେବ । ତନ୍ମଧ୍ୟରୁ ହରଣଙ୍କର ମୂଳଧନ ଟ ୩୦,୦୦୦ ର $\frac{୮}{୧୫}$ ଅର୍ଥାତ୍ ୧୬,୦୦୦ ଟଙ୍କା ହେବ ଓ ଗିରୀଶଙ୍କର ମୂଳଧନର ପରିମାଣ ଟ ୩୦,୦୦୦ର $\frac{୪}{୧୫}$, ଅର୍ଥାତ୍ ୮,୦୦୦ ଟଙ୍କା ହେବ ।

(୩) ଅନ୍ୟ ନିର୍ଦ୍ଦେଶ ନ ଥିବା ହେତୁ ସାଧାରଣ ସଞ୍ଚିତ ହିସାବର ବାକିକୁ ପୁରାତନ ଅଂଶୀଦାରମାନଙ୍କ ମଧ୍ୟରେ ପୁରାତନ ଲାଭ ବଣ୍ଟନ ଅନୁପାତ, ଅର୍ଥାତ୍ ୨ : ୧ ଅନୁପାତରେ ଭାଗ କରି ଦିଆଗଲା ।

## ଦୃଷ୍ଟାନ୍ତ (୨୭)

ମନୀନ୍ଦ୍ର ଓ ଫଣୀନ୍ଦ୍ର ଗୋଟିଏ ଅଂଶୀଦାରୀ କାରବାରରେ ଲାଭର ଯଥାକ୍ରମେ ୩/୫ ଅଂଶ ଓ ୨/୫ ଅଂଶ ଭୋଗ କରୁଥିଲେ । ୧୯୭୪ ମସିହା ଡିସେମ୍ବର ୩୧ ତାରିଖରେ ପ୍ରସ୍ତୁତ ହୋଇଥିବା ତାଙ୍କର ଉଦ୍‌ବୃତ୍ତ ପତ୍ର ନିମ୍ନରେ ପ୍ରଦତ୍ତ ହେଲା ।

| ଦେୟ | ଟଙ୍କା | ସମ୍ପତ୍ତି | ଟଙ୍କା |
|---|---|---|---|
| ବିବିଧ ମହାଜନ | ୧୦,୫୦୦ | ଜମି ଓ କୋଠା | ୧୫,୦୦୦ |
| ସାଧାରଣ ସଞ୍ଚିତ | ୧୨,୦୦୦ | ଆସବାବ୍ | ୮,୦୦୦ |
| ମୂଳଧନ : ଟଙ୍କା | | ମହଜୁଦ୍ ପଣ୍ୟ | ୧୨,୦୦୦ |
| ମନୀନ୍ଦ୍ର ୨୦,୦୦୦ | | ବିବିଧ ଖାତକ | ୧୪,୦୦୦ |
| ଫଣୀନ୍ଦ୍ର ୧୪,୦୦୦ | ୩୪,୦୦୦ | ବ୍ୟାଙ୍କ୍‌ରେ ଗଚ୍ଛିତ | ୭,୫୦୦ |
| | ୫୬,୫୦୦ | | ୫୬,୫୦୦ |

ସେମାନେ ୧୯୭୫ ମସିହା ଜାନୁଆରୀ ୧ ତାରିଖରେ ଗିରୀନ୍ଦ୍ରଙ୍କୁ ଭବିଷ୍ୟତ୍ ଲାଭର ୧/୬ ଅଂଶ ଦେଇ ନୂତନ ଅଂଶୀଦାର ରୂପେ ଗ୍ରହଣ କରିବାକୁ ସ୍ୱୀକୃତ ହେଲେ । ସେ ମନୀନ୍ଦ୍ର ଓ ଫଣୀନ୍ଦ୍ରଙ୍କ ମିଳିତ ମୂଳଧନ ଭିତ୍ତିରେ ମୂଳଧନ ଆଣିବେ । ଜମି ଓ କୋଠାର ମୂଲ୍ୟ ୧୩,୦୦୦ ଟଙ୍କା ଓ ଆସବାବ୍‌ର ମୂଲ୍ୟକୁ ୭,୫୦୦ ଟଙ୍କା କୁ ହ୍ରାସ କରାଯିବ । ବିବିଧ ଖାତକ ବାବଦ ୫୦୦ ଟଙ୍କା ସକାଶେ ଅନାଦାୟୀ ଋଣର ସଞ୍ଚିତ ଗଢ଼ାଯିବ । ଗିରୀନ୍ଦ୍ର ସୁନାମ ବାବଦ ଅର୍ଥ ଆଣିବାକୁ ଅକ୍ଷମ ହୋଇଥିବାରୁ ୮,୦୦୦ ଟଙ୍କା ସକାଶେ ସୁନାମ ହିସାବ ଖୋଲାଯିବ । ଅନ୍ୟାନ୍ୟ ସମ୍ପତ୍ତି ଓ ଦେୟର ପରିମାଣ ବହି ମୂଲ୍ୟ ଅନୁଯାୟୀ ରଖାଯିବ ।

ଆବଶ୍ୟକ ଜାବଦା, ପ୍ରାସଙ୍ଗିକ ଖତିୟାନ ହିସାବ ଓ ନୂତନ ଅଂଶୀଦାର ବ୍ୟବସାୟରେ ଯୋଗ ଦେବା ପରେ ଅଂଶୀଦାରୀ କାରବାରର ନୂତନ ଉଦ୍‌ବୃତ୍ତ ପତ୍ର ପ୍ରସ୍ତୁତ କର ।

## ସମାଧାନ

| | ଜାବ୍ଦା | | ଦାୟୀ | ଦାତା |
|---|---|---|---|---|
| | | | ଟଙ୍କା | ଟଙ୍କା |
| ୧୯୭୫ ଜାନୁ-୧ | ସାଧାରଣ ସଞ୍ଚିତ ହିସାବ | ଦାୟୀ | ୧୨,୦୦୦ | |
| | ମନୀନ୍ଦ୍ରଙ୍କ ମୂଳଧନ ହିସାବ ବାବଦ | | | ୯,୦୦୦ |
| | ଫଣୀନ୍ଦ୍ରଙ୍କ ମୂଳଧନ ହିସାବ ବାବଦ | | | ୩,୦୦୦ |
| | (ସାଧାରଣ ସଞ୍ଚିତ ପରିମାଣକୁ ପୁରାତନ ଅଂଶୀଦାରଙ୍କ ମଧ୍ୟରେ ପୁରାତନ ଲଭ ବଣ୍ଟନ ଅନୁପାତ (୩:୧)ରେ ଭାଗ କରାଗଲା ।) | | | |
| ୧ | ସୁନାମ ହିସାବ | ଦାୟୀ | ୮,୦୦୦ | |
| | ମନୀନ୍ଦ୍ରଙ୍କ ମୂଳଧନ ହିସାବ ବାବଦ | | | ୬,୦୦୦ |
| | ଫଣୀନ୍ଦ୍ରଙ୍କ ମୂଳଧନ ହିସାବ ବାବଦ | | | ୨,୦୦୦ |
| | (ସୁନାମ ହିସାବ ଖୋଲାଯାଇ ପୁରାତନ ଲଭ ବଣ୍ଟନ ଅନୁପାତରେ ପୁରାତନ ଅଂଶୀଦାରଙ୍କର ମୂଳଧନ ହିସାବକୁ ଦାତା କରାଗଲା ।) | | | |
| ୧ | ପୁନର୍ମୂଲ୍ୟାୟନ ହିସାବ | ଦାୟୀ | ୪,୦୦୦ | |
| | ଜମି ଓ କୋଠା ହିସାବ ବାବଦ | | | ୨,୦୦୦ |
| | ଅସବାବ୍ ହିସାବ ବାବଦ | | | ୧,୫୦୦ |
| | ଅନାଦାୟୀ ଋଣ ସଞ୍ଚିତ ହିସାବ ବାବଦ | | | ୫୦୦ |
| | (ବିଭିନ୍ନ ସମ୍ପତ୍ତିର ମୂଲ୍ୟ ହ୍ରାସ ପାଇଥିବାରୁ ପୁନର୍ମୂଲ୍ୟାୟନ ହିସାବକୁ ଦାୟୀ କରାଗଲା) | | | |
| ୧ | ମନୀନ୍ଦ୍ରଙ୍କ ମୂଳଧନ ହିସାବ | ଦାୟୀ | ୩,୦୦୦ | |
| | ଫଣୀନ୍ଦ୍ରଙ୍କ ମୂଳଧନ ହିସାବ | ଦାୟୀ | ୧,୦୦୦ | |
| | ପୁନର୍ମୂଲ୍ୟାୟନ ହିସାବ ବାବଦ | | | ୪,୦୦୦ |
| | (ପୁନର୍ମୂଲ୍ୟାୟନ ହିସାବର ଦାୟୀ ବାକୀକୁ ପୁରାତନ ଅଂଶୀଦାରମାନଙ୍କ ମୂଳଧନ ହିସାବକୁ ପୁରାତନ ଲଭ ବଣ୍ଟନ ଅନୁପାତରେ ସ୍ଥାନାନ୍ତରିତ କରାଗଲା ।) | | | |

| | | ଦାସ୍ତୀ | ଦାତା |
|---|---|---|---|
| ୧୯୭୫ | | ଟଙ୍କା | ଟଙ୍କା |
| ଜାନୁ-୧ | ବ୍ୟାଙ୍କ୍ ହିସାବ ଦାସ୍ତୀ | ୧୦,୦୦୦ | |
| | ଗିରୀନ୍ଦ୍ରଙ୍କ ମୂଳଧନ ହିସାବ ବାବଦ | | ୧୦,୦୦୦ |
| | (ଗିରୀନ୍ଦ୍ର ପୁରାତନ ଅଂଶୀଦାରଙ୍କର ମିଳିତ ମୂଳଧନ ଭିତ୍ତିରେ ଲାଭର ⅙ ଅଂଶ ସକାଶେ ୧୦,୦୦୦ ଟଙ୍କା ଆଣିଲେ ।) | | |

## ଖତିୟାନ

ଦାସ୍ତୀ — ବ୍ୟାଙ୍କ୍ ହିସାବ — ଦାତା

| | | ଟଙ୍କା | | | ଟଙ୍କା |
|---|---|---|---|---|---|
| ୧୯୭୪ | | | ୧୯୭୫ | | |
| ଡିସେ-୩୧ | ପୂର୍ବ ବାକି ବାବଦ | ୭,୫୦୦ | ଜାନୁ-୧ | ବାକି ଗଲା | ୧୭,୫୦୦ |
| ୧୯୭୫ | | | | | |
| ଜାନୁ-୧ | ଗିରୀନ୍ଦ୍ରଙ୍କର ମୂଳଧନ ହିସାବ ବାବଦ | ୧୦,୦୦୦ | | | |
| | | ୧୭,୫୦୦ | | | ୧୭,୫୦୦ |
| ଜାନୁ-୨ | ପୂର୍ବ ବାକି ବାବଦ | ୧୭,୫୦୦ | | | |

ଦାସ୍ତୀ — ପୁନର୍ମୂଲ୍ୟାୟନ ହିସାବ — ଦାତା

| | | ଟଙ୍କା | | | ଟଙ୍କା |
|---|---|---|---|---|---|
| ୧୯୭୫ | | | ୧୯୭୫ | | |
| ଜାନୁ-୧ | ଜମି ଓ କୋଠା ହିସାବ ବାବଦ | ୨,୦୦୦ | ଜାନୁ-୧ | ମନୀନ୍ଦ୍ରଙ୍କର ମୂଳଧନ ହିସାବ ବାବଦ | ୩,୦୦୦ |
| ୧ | ଆସବାବ୍ ହିସାବ ବାବଦ | ୧,୫୦୦ | ୧ | ଫଣୀନ୍ଦ୍ରଙ୍କର ମୂଳଧନ ହିସାବ ବାବଦ | ୧,୦୦୦ |
| ୧ | ଅନାଦାସ୍ତୀ ଋଣ ସଞ୍ଚିତ ହିସାବ ବାବଦ | ୫୦୦ | | | |
| | | ୪,୦୦୦ | | | ୪,୦୦୦ |

**ଦାୟୀ** ମମାନନ୍ଦଙ୍କର ମୂଳଧନ ହିସାବ **ଦାତା**

| ୧୯୭୫ | ଟଙ୍କା | ୧୯୭୪ | ଟଙ୍କା |
|---|---|---|---|
| ଜାନୁ-୧ ପୁନର୍ମୂଲ୍ୟାୟନ ହିସାବ ବାବଦ | ୩,୦୦୦ | ଡିସେ-୩୧ ପୂର୍ବ ବାକି ବାବଦ | ୨୦,୦୦୦ |
| | | ୧୯୭୫ | |
| ୧ ବାକି ଗଡ଼ଲ | ୩୨,୦୦୦ | ଜାନୁ-୧ ସାଧାରଣ ସଞ୍ଚିତ ହିସାବ ବାବଦ | ୯,୦୦୦ |
| | | ୧ ସୁନାମ ହିସାବ ବାବଦ | ୬,୦୦୦ |
| | ୩୫,୦୦୦ | | ୩୫,୦୦୦ |
| | | ଜାନୁ-୨ ପୂର୍ବ ବାକି ବାବଦ | ୩୨,୦୦୦ |

**ଦାୟୀ** ଫଣୀନ୍ଦ୍ରଙ୍କର ମୂଳଧନ ହିସାବ **ଦାତା**

| ୧୯୭୫ | ଟଙ୍କା | ୧୯୭୪ | ଟଙ୍କା |
|---|---|---|---|
| ଜାନୁ-୧ ପୁନର୍ମୂଲ୍ୟାୟନ ହିସାବ ବାବଦ | ୧,୦୦୦ | ଡିସେ-୩୧ ପୂର୍ବ ବାକି ବାବଦ | ୧୪,୦୦୦ |
| | | ୧୯୭୫ | |
| ୧ ବାକି ଗଡ଼ଲ | ୧୮,୦୦୦ | ଜାନୁ-୧ ସାଧାରଣ ସଞ୍ଚିତ ହିସାବ ବାବଦ | ୩,୦୦୦ |
| | | ୧ ସୁନାମ ହିସାବ ବାବଦ | ୨,୦୦୦ |
| | ୧୯,୦୦୦ | | ୧୯,୦୦୦ |
| | | ଜାନୁ-୨ ପୂର୍ବ ବାକି ବାବଦ | ୧୮,୦୦୦ |

**ଦାୟୀ** ଗିରୀନ୍ଦ୍ରଙ୍କର ମୂଳଧନ ହିସାବ **ଦାତା**

| ୧୯୭୫ | ଟଙ୍କା | ୧୯୭୫ | ଟଙ୍କା |
|---|---|---|---|
| ଜାନୁ-୧ ବାକି ଗଡ଼ଲ | ୧୦,୦୦୦ | ଜାନୁ-୧ ବ୍ୟାଙ୍କ ହିସାବ ବାବଦ | ୧୦,୦୦୦ |

ଦାୟୀ ସୁନାମ ହିସାବ ଦାତା

| ୧୯୭୫ | ଟଙ୍କା | ୧୯୭୫ | ଟଙ୍କା |
|---|---|---|---|
| ଜାନୁ-୧ ମନୀନ୍ଦ୍ରଙ୍କ ମୂଳଧନ ହିସାବ ବାବଦ | ୭,୦୦୦ | ଜାନୁ-୧ ବାକି ଗଡ଼ିଲ | ୮,୦୦୦ |
| ୧ ଫଣୀନ୍ଦ୍ରଙ୍କ ମୂଳଧନ ହିସାବ ବାବଦ | ୨,୦୦୦ | | |
| | ୮,୦୦୦ | | ୮,୦୦୦ |
| ଜାନୁ-୨ ପୂର୍ବ ବାକି ବାବଦ | ୮,୦୦୦ | | |

ଦାୟୀ ସାଧାରଣ ସଞ୍ଚିତ ହିସାବ ଦାତା

| ୧୯୭୫ | ଟଙ୍କା | ୧୯୭୪ | ଟଙ୍କା |
|---|---|---|---|
| ଜାନୁ-୧ ମନୀନ୍ଦ୍ରଙ୍କ ମୂଳଧନ ହିସାବ ବାବଦ | ୯,୦୦୦ | ଡିସେ-୩୧ ପୂର୍ବ ବାକି ବାବଦ | ୧୨,୦୦୦ |
| ୧ ଫଣୀନ୍ଦ୍ରଙ୍କ ମୂଳଧନ ହିସାବ ବାବଦ | ୩,୦୦୦ | | |
| | ୧୨,୦୦୦ | | ୧୨,୦୦୦ |

ମନୀନ୍ଦ୍ର, ଫଣୀନ୍ଦ୍ର ଓ ଗିରୀନ୍ଦ୍ରଙ୍କର ୧୯୭୫ ମସିହା
ଜାନୁଆରୀ ୧ ତାରିଖର ଉଦ୍ବୃତ୍ତ ପତ୍ର

| ଦେୟ | ଟଙ୍କା | ଟଙ୍କା | ସମ୍ପତ୍ତି | ଟଙ୍କା | ଟଙ୍କା |
|---|---|---|---|---|---|
| ମୂଳଧନ ହିସାବ | ୩୨,୦୦୦ | | ସୁନାମ | | ୮,୦୦୦ |
| ଫଣୀନ୍ଦ୍ର | ୧୮,୦୦୦ | | ଜମି ଓ କୋଠା | | ୧୩,୦୦୦ |
| ଗିରୀନ୍ଦ୍ର | ୧୦,୦୦୦ | ୬୦,୦୦୦ | ଆସବାବ | | ୭,୫୦୦ |
| ବିବିଧ ମହାଜନ | | ୧୦,୫୦୦ | ମହଜୁଦ୍ ପଣ୍ୟ | | ୨,୦୦୦ |
| | | | ବିବିଧ ଖାତକ | ୧୪,୦୦୦ | |
| | | | ବାଦ୍ : ଅନାଦାୟୀ ଋଣର ସଞ୍ଚିତ | ୫୦୦ | ୧୩,୫୦୦ |
| | | | ବ୍ୟାଙ୍କ୍‌ରେ ଗଚ୍ଛିତ ତହବିଲ | | ୧୭,୫୦୦ |
| | | ୭୦,୫୦୦ | | | ୭୦,୫୦୦ |

ମନ୍ତବ୍ୟ : (୧) ଗିରୀନ୍ଦ୍ର ଭବିଷ୍ୟତ୍ ଲଭର ୧/୬ ଅଂଶ ପାଇବେ । ତେଣୁ ଲଭର (୧—୧/୬) =୫/୬ ଅଂଶ ଅବଶିଷ୍ଟ ରହିବ । ତାହାହେଲେ ମନୀନ୍ଦ୍ର ୫/୬ର ୩/୪ ଅଂଶ ଅର୍ଥାତ୍ ୧୫/୨୪ ଅଂଶ ପାଇବେ ଓ ଫଣୀନ୍ଦ୍ର ୫/୬ର ୧/୪ ଅଂଶ ଅର୍ଥାତ୍ ୫/୨୪ ଅଂଶ ପାଇବେ । ସେହି କ୍ରମରେ ଗିରୀନ୍ଦ୍ରଙ୍କର ଲଭର ଅଂଶ ୪/୨୪ ହେବ । ଅତଏବ ଲଭ ବଣ୍ଟନର ନୂତନ ଅନୁପାତ ଯଥାକ୍ରମେ ୧୫ : ୫ : ୪ ହେବ ।

(୨) ପୁନର୍ମୂଲ୍ୟାୟନ ଓ ସମସ୍ତ ସମାଯୋଜନ ପରେ ମନୀନ୍ଦ୍ର ଓ ଫଣୀନ୍ଦ୍ରଙ୍କର ମୂଳଧନର ପରିମାଣ ଯଥାକ୍ରମେ ୩୨,୦୦୦ ଟଙ୍କା ଓ ୧୮,୦୦୦ ଟଙ୍କା ହେଲ, ଅର୍ଥାତ୍ ଦୁହିଁଙ୍କର ମୂଳଧନର ମୋଟ ପରିମାଣ ୫୦,୦୦୦ ଟଙ୍କା ହେଲ । ଲଭର (୧—୧/୬=) ୫/୬ ଅଂଶ ସକାଶେ ମୂଳଧନର ପରିମାଣ ୫୦,୦୦୦ ଟଙ୍କା ହେଲେ ବ୍ୟବସାୟର ମୂଳଧନର ମୋଟ ପରିମାଣ ୫୦,୦୦୦ × ୬/୫ = ୬୦,୦୦୦ ଟଙ୍କା ହେବ । ତାହାହେଲେ ଗିରୀନ୍ଦ୍ରଙ୍କର ମୂଳଧନର ପରିମାଣ ଟ ୬୦,୦୦୦ର ୧/୬ = ୧୦,୦୦୦ ଟଙ୍କା ହେବ ଅଥବା (ଟ ୬୦,୦୦୦—ଟ ୫୦,୦୦୦ =) ୧୦,୦୦୦ ଟଙ୍କା ହେବ ।

(୩) ନବେ୍ଦଶ ଅସ୍ତ୍ରବରୁ ସାଧାରଣ ସଞ୍ଚିତର ପରିମାଣକୁ ପୁରାତନ ଅଂଶୀଦାରଙ୍କ ମଧ୍ୟରେ ପୁରାତନ ଲଭ ବଣ୍ଟନ ଅନୁପାତରେ ଭାଗ କରି ଦିଆଯାଇଛି ।

## ଅଂଶଗ୍ରହଣ ଓ ଅଂଶକ୍ରୟ ମଧ୍ୟରେ ପାର୍ଥକ୍ୟ

## (Distinction between Contribution and Purchase of Share)

ଗୋଟିଏ ଅଂଶୀଦାରୀ କାରବାରରେ ଯେତେବେଳେ ଜଣେ ନୂତନ ଅଂଶୀଦାର ଯୋଗ ଦେଇ ଭବିଷ୍ୟତ୍ ଲଭର ଗୋଟିଏ ଅଂଶୀଦାର ହୁଅନ୍ତି ସେତେବେଳେ ସେ ଲଭର ସେହି ଅଂଶ ଦୁଇଟି ପ୍ରଣାଳୀରେ ପାଇପାରନ୍ତି ; ଯଥା—(୧) ଅଂଶଗ୍ରହଣଦ୍ୱାରା ଓ (୨) ଅଂଶ କ୍ରୟ କରିବାଦ୍ୱାରା । ଏହି ଦୁଇଟି ପ୍ରଣାଳୀ ଆପାତ ଦୃଷ୍ଟିରୁ ଅଭିନ୍ନ ପ୍ରତୀୟମାନ ହେଲେ ମଧ୍ୟ ପ୍ରକୃତ ପକ୍ଷେ ଏହି ଦୁଇଟି ପ୍ରଣାଳୀ ମଧ୍ୟରେ ପ୍ରଭେଦ ପରିଲକ୍ଷିତ ହୁଏ ।

ପ୍ରଥମ କ୍ଷେତ୍ରରେ ନୂତନ ଅଂଶୀଦାର ମୂଳଧନ ବାବଦ ଯେଉଁ ଅର୍ଥ ବ୍ୟବସାୟକୁ ଆଣନ୍ତି ସେ ତାହା ବ୍ୟବସାୟକୁ ଅଂଶଦାନ ( Contribute ) କରନ୍ତି ଓ ଏତଦ୍ ପରିବର୍ତ୍ତେ ସେ ବ୍ୟବସାୟରେ ଅଂଶ ଗ୍ରହଣ କରନ୍ତି । ତାଙ୍କଦ୍ୱାରା ଆନୀତ ଅର୍ଥ ବ୍ୟବସାୟର

ଅନ୍ୟାନ୍ୟ ସମ୍ପତ୍ତି ରୂପରେ (ଏଠାରେ ନଗଦ ଆକାରରେ) ବ୍ୟବସାୟ ମଧ୍ୟରେ ସ୍ଥାୟୀ ହୋଇ ରହେ । ଅର୍ଥାତ୍ ସେହି ଅର୍ଥକୁ ପୁରାତନ ଅଂଶୀଦାରମାନେ ବ୍ୟବସାୟରୁ ଉଠାଇ ନେଇ-ପାରନ୍ତି ନାହିଁ । କିନ୍ତୁ ଦ୍ୱିତୀୟ କ୍ଷେତ୍ରରେ ନୂତନ ଅଂଶୀଦାର ଯାହାଙ୍କଠାରୁ ତାଙ୍କର ଲାଭର ଅଂଶ କ୍ରୟ କରନ୍ତି ସେହି ଅଂଶୀଦାର (ପୁରାତନ) ବ୍ୟବସାୟରୁ ନୂତନ ଅଂଶୀଦାର ମୂଳଧନ ବାବଦ ଆଣିଥିବା ଅର୍ଥକୁ ଉଠାଇ ନିଅନ୍ତି । ପ୍ରଥମ କ୍ଷେତ୍ରରେ ପ୍ରତିଷ୍ଠାନର ମୋଟ ସମ୍ପତ୍ତିର ପରିମାଣ ବୃଦ୍ଧି ପାଉଥିବା ସ୍ଥଳେ ଦ୍ୱିତୀୟ କ୍ଷେତ୍ରରେ ନୂତନ ଅଂଶୀଦାର ଯୋଗ ଦେବା ପରେ ମଧ୍ୟ ସମ୍ପତ୍ତିର ମୋଟ ପରିମାଣରେ କୌଣସି ପରିବର୍ତ୍ତନ ଘଟେ ନାହିଁ । ନିମ୍ନଲିଖିତ ଦୃଷ୍ଟାନ୍ତରୁ ଏହା ପ୍ରାଞ୍ଜଳ ଭାବରେ ବୁଝାଯିବ ।

## ଦୃଷ୍ଟାନ୍ତ (୨୮)

କ ଓ ଖ ଗୋଟିଏ ଅଂଶୀଦାରୀ କାରବାରର ଅଂଶୀଦାର ରୂପେ ଲାଭର ଯଥାକ୍ରମେ ୨/୩ ଓ ୧/୩ ଅଂଶ ଭୋଗ କରୁଥିଲେ । ସେମାନେ ଗ କୁ ଭବିଷ୍ୟତ୍ ଲାଭର ୧/୬ ଅଂଶ ଦେବାକୁ ସମ୍ମତ ହେଲେ । ଗ ପ୍ରତିଷ୍ଠାନରେ ଯୋଗ ଦେବା ପୂର୍ବରୁ ସୁନାମ ବାବଦ ସମାଯୋଜନ କରିବା ପରେ କ ଓ ଖ ଙ୍କର ବ୍ୟବସାୟର ଉଦ୍ବୃତ୍ତ ପତ୍ର ନିମ୍ନ ରୂପ ଥିଲା ।

କ ଓ ଖ ଙ୍କର ଉଦ୍ବୃତ୍ତ ପତ୍ର

| ଦେୟ | ଟଙ୍କା | ସମ୍ପତ୍ତି | ଟଙ୍କା |
|---|---|---|---|
| କ ଙ୍କର ମୂଳଧନ | ୧୦,୦୦୦ | ସୁନାମ | ୩,୦୦୦ |
| ଖ ଙ୍କର ମୂଳଧନ | ୮,୦୦୦ | ବିବିଧ ସମ୍ପତ୍ତି | ୧୫,୦୦୦ |
| | ୧୮,୦୦୦ | | ୧୮,୦୦୦ |

ଅଂଶଗ୍ରହଣ ଓ ଅଂଶକ୍ରୟ ଫଳରେ ଉଦ୍ବୃତ୍ତ ପତ୍ରରେ କି ପାର୍ଥକ୍ୟ ହେବ ତାହା ଦର୍ଶାଅ ।

(୧) ପ୍ରଥମ କ୍ଷେତ୍ରରେ ଗ ଭବିଷ୍ୟତ୍ ଲାଭର ୧/୬ ଅଂଶ ପାଇଲେ ଲାଭର ଅବଶିଷ୍ଟ ୫/୬ ଅଂଶ ରହିବ ଯାହା କ ଓ ଖ ଭୋଗ କରିବେ । ଏହି ଦୁଇ ଅଂଶୀଦାରଙ୍କର ମିଳିତ ମୂଳଧନର ପରିମାଣ ୧୦,୦୦୦+୮,୦୦୦=୧୮,୦୦୦ ଟଙ୍କା । ତାହାହେଲେ ବ୍ୟବସାୟ ପ୍ରତିଷ୍ଠାନର ମିଳିତ ମୂଳଧନର ମୋଟ ପରିମାଣ ୧୮,୦୦୦ × ୬/୫ = ୨୧,୬୦୦ ଟଙ୍କା ହେବ । ତେଣୁ ଗ ବ୍ୟବସାୟକୁ ଟ୨୧,୬୦୦ – ଟ୧୮,୦୦୦ = ଟ୩,୬୦୦ ଟଙ୍କା ମୂଳଧନ ସ୍ୱରୂପ ଆଣିବେ ଓ ତାହା ବ୍ୟବସାୟରେ ରହିବ ।

କ, ଖ ଓ ଗ ଙ୍କର ଉଦ୍‌ବୃତ୍ତ ପତ୍ର

| ଦେୟ | | ଟଙ୍କା | ସମ୍ପତ୍ତି | ଟଙ୍କା |
|---|---|---|---|---|
| ମୂଳଧନ ହିସାବ : | | | ସୁନାମ | ୩,୦୦୦ |
| କ | ଟ ୧୦,୦୦୦ | | ବିବିଧ ସମ୍ପତ୍ତି | ୧୫,୦୦୦ |
| ଖ | ଟ ୮,୦୦୦ | | ନଗଦ ତହବିଲ | ୩,୬୦୦ |
| ଗ | ଟ ୩,୬୦୦ | ୨୧,୬୦୦ | | |
| | | ୨୧,୬୦୦ | | ୨୧,୬୦୦ |

(୨) ମନେକର ଗ ଲାଭର $\frac{1}{6}$ ଅଂଶ କ ଙ୍କ ଠାରୁ କ୍ରୟ କଲେ । ତାହାହେଲେ ସେ ବ୍ୟବସାୟକୁ କ ଓ ଖ ଙ୍କର ମିଳିତ ମୂଳଧନ, ଅର୍ଥାତ୍ (୧୦,୦୦୦+୮,୦୦୦=) ୧୮,୦୦୦ ଟଙ୍କାର $\frac{1}{6}$ ଅଂଶ, ଅର୍ଥାତ୍ ୩,୦୦୦ ଟଙ୍କା ମୂଳଧନ ସ୍ୱରୂପ ଆଣିବେ, ଯାହା କ ବ୍ୟବସାୟରୁ ଉଠାଇନେବେ ।

କ, ଖ ଓ ଗ ଙ୍କର ଉଦ୍‌ବୃତ୍ତ ପତ୍ର

| ଦେୟ | ଟଙ୍କା | ସମ୍ପତ୍ତି | ଟଙ୍କା |
|---|---|---|---|
| ମୂଳଧନ ହିସାବ : | | ସୁନାମ | ୩,୦୦୦ |
| କ (୧୦,୦୦୦ – ୩,୦୦୦) | ୭,୦୦୦ | ବିବିଧ ସମ୍ପତ୍ତି | ୧୫,୦୦୦ |
| ଖ | ୮,୦୦୦ | | |
| ଗ | ୩,୦୦୦ | | |
| | ୧୮,୦୦୦ | | ୧୮,୦୦୦ |

ମନ୍ତବ୍ୟ :— ଏଠାରେ ଲକ୍ଷ୍ୟ କରାଯାଇପାରେ ଯେ ପ୍ରଥମ କ୍ଷେତ୍ରରେ ମୋଟ ସମ୍ପତ୍ତିର ପରିମାଣ ୨୧,୬୦୦ ଟଙ୍କା ହୋଇଥିବା ସ୍ଥଳେ ଦ୍ୱିତୀୟ କ୍ଷେତ୍ରରେ ସମ୍ପତ୍ତିର ମୋଟ ପରିମାଣ ପୂର୍ବଭଳି ୧୮,୦୦୦ ଟଙ୍କା ରହିଲା ।

## ୩ । ଅଂଶୀଦାରଙ୍କର ଅବସର ଗ୍ରହଣ (Retirement of a Partner) —

ଅଂଶୀଦାରୀ ପ୍ରତିଷ୍ଠାନର କୌଣସି ଅଂଶୀଦାର ଅବସର ଗ୍ରହଣ କଲେ ହିସାବ ରକ୍ଷଣ ସମ୍ବନ୍ଧୀୟ ନିମ୍ନଲିଖିତ ନିୟମଗୁଡ଼ିକ ପାଳନ କରିବା ଆବଶ୍ୟକ ହୁଏ ।

**(୧) ସୁନାମ—**

ଜଣେ ଅଂଶୀଦାର ଅବସର ଗ୍ରହଣ କଲେ ସୁନାମର ମୂଲ୍ୟ କିପରି ଭାବରେ ନିରୂପିତ ହେବ ସେ ବିଷୟରେ ସାଧାରଣତଃ ଅଂଶୀଦାରୀ ଚୁକ୍ତି ପତ୍ରରେ ନିର୍ଦ୍ଦେଶ ଦିଆଯାଇଥାଏ । ଯଦି ସେପରି କୌଣସି ନିର୍ଦ୍ଦେଶ ନ ଥାଏ ତାହାହେଲେ ଅବସର ଗ୍ରହଣ କରୁଥିବା ଅଂଶୀଦାରଙ୍କ ସମେତ ସବୁ ଅଂଶୀଦାରମାନେ ସୁନାମର ମୂଲ୍ୟ ନିର୍ଦ୍ଧାରଣ ପଦ୍ଧତି ବିଷୟରେ ଏକମତ ହୁଅନ୍ତି । ସେ କ୍ଷେତ୍ରରେ ସୁନାମର ମୂଲ୍ୟ ତଦନୁଯାୟୀ ନିରୂପିତ ହୁଏ । ସୁନାମର ମୂଲ୍ୟକୁ ହିସାବଭୁକ୍ତ କରିବା ନିମନ୍ତେ କେତେଗୁଡ଼ିଏ ପ୍ରଣାଳୀ ଅନୁସୃତ ହୁଏ । ସେଗୁଡ଼ିକ ନିମ୍ନରେ ବର୍ଣ୍ଣିତ ହେଲ ।

(କ) ଯେଉଁଠାରେ ସୁନାମର ସମ୍ପୂର୍ଣ୍ଣ ମୂଲ୍ୟ ହିସାବ ବହିରେ ଲିପିବଦ୍ଧ କରାଯାଏ, ସେ କ୍ଷେତ୍ରରେ ନିମ୍ନ ପ୍ରକାର ଜାବ୍ଦା ଆବଶ୍ୟକ ହୁଏ ।

ସୁନାମ ହିସାବ ଦାୟୀ<br>
ସମସ୍ତ ଅଂଶୀଦାରଙ୍କର ମୂଳଧନ ହିସାବ ବାବଦ } ଲାଭ ଓ କ୍ଷତି ବଣ୍ଟନର ପୂର୍ବତନ ହାରରେ

(ଖ) ଯଦି ଅବଶିଷ୍ଟ ଅଂଶୀଦାରମାନେ ତାଙ୍କ ବ୍ୟବସାୟରେ ଏହି ସୁନାମ ହିସାବକୁ ଏକ ସମ୍ପତ୍ତି ରୂପେ ଦର୍ଶାଇବାକୁ ଇଚ୍ଛା ନ କରନ୍ତି, ତାହାହେଲେ ନିମ୍ନଲିଖିତ ଜାବ୍ଦା ସାହାଯ୍ୟରେ ଏହାର ବିଲୋପସାଧନ କରାଯାଇପାରେ ।

ଅବଶିଷ୍ଟ ଅଂଶୀଦାରଙ୍କର<br>
ମୂଳଧନ ହିସାବ ଦାୟୀ<br>
ସୁନାମ ହିସାବ ବାବଦ } ଅବଶିଷ୍ଟ ଅଂଶୀଦାରଙ୍କର ଲାଭ ଓ କ୍ଷତି ବଣ୍ଟନ ହାରରେ

(ଗ) ଯେଉଁ ଅଂଶୀଦାର ଅବସର ଗ୍ରହଣ କରୁଛନ୍ତି କେବଳ ତାଙ୍କର ପ୍ରାପ୍ୟ ସୁନାମର ଅଂଶକୁ ହିସାବଭୁକ୍ତ କରିବା ପାଇଁ ମଧ୍ୟ କେତେକ ସମୟରେ ସ୍ଥିରୀକୃତ ହୁଏ । ସେପରି ସ୍ଥଳେ ନିମ୍ନରୂପ ଜାବ୍ଦା ଆବଶ୍ୟକ ହୁଏ ।

ସୁନାମ ହିସାବ ଦାୟୀ<br>
ଅବସର ଗ୍ରହଣ କରୁଥିବା ଅଂଶୀଦାରଙ୍କର<br>
ମୂଳଧନ ହିସାବ ବାବଦ } ଅବସର ଗ୍ରହଣ କରୁଥିବା ଅଂଶୀଦାରଙ୍କ ପ୍ରାପ୍ୟ ସୁନାମର ଅଂଶ ସହାରେ

(ଘ) ଯଦି ଅବଶିଷ୍ଟ ଅଂଶୀଦାରମାନେ ଚଳାଉଥିବା ଅଂଶୀଦାରୀ ବ୍ୟବସାୟରେ ସୁନାମର ଆଂଶିକ ମୂଲ୍ୟକୁ ଉଦ୍‌ବୃତ୍ତ ପତ୍ରରେ ଦର୍ଶାଇବାକୁ ଅନିଚ୍ଛୁକ ହୁଅନ୍ତି, ତାହାହେଲେ ନିମ୍ନଲିଖିତ ଜାବ୍ଦା ସାହାଯ୍ୟରେ ଏହି ସୁନାମ ହିସାବ ବନ୍ଦ କରାଯିବ ।

| ଅବଶିଷ୍ଟ ଅଂଶୀଦାରଙ୍କର ମୂଳଧନ ହିସାବ ସୁନାମ ହିସାବ ବାବଦ | ଦାସ୍ତୀ | ଅବଶିଷ୍ଟ ଅଂଶୀଦାରଙ୍କର ନୂତନ ଲଭ ଓ କ୍ଷତି ବଣ୍ଟନ ହାରରେ |
|---|---|---|

ଉପରୋକ୍ତ ଜାବ୍‌ଦାଖଲଟିକୁ ଏହି ଅନୁମାନ ଉପରେ ପ୍ରତିଷ୍ଠିତ ଯେ ପୂର୍ବରୁ ସୁନାମର ମୂଲ୍ୟାୟନ କରାଯାଇ ଖାତାସ୍ଥାନଭୁକ୍ତ କରାଯାଇ ନାହିଁ । କିନ୍ତୁ ପ୍ରକୃତ ପକ୍ଷେ ଯଦି କୌଣସି ଅଂଶୀଦାର ଅବସର ଗ୍ରହଣ କରିବା ସମୟରେ ପୂର୍ବରୁ ସୁନାମ ହିସାବ ଖୋଲାଯାଇଥାଏ, ତାହାହେଲେ କୌଣସି ଅଂଶୀଦାର ଅବସର ଗ୍ରହଣ କରିବା ସମୟରେ ସୁନାମର ପୁନର୍ମୂଲ୍ୟାୟନ କରାଯିବ । ପୁନର୍ମୂଲ୍ୟାୟନ ଫଳରେ ଯଦି ସୁନାମର ମୂଲ୍ୟ ବୃଦ୍ଧି ପାଇଥାଏ, ତାହାହେଲେ କେବଳ ଅଧିକା ପରିମାଣ ସକାଶେ ସୁନାମ ହିସାବକୁ ଦାସ୍ତୀ କରାଯିବ ଓ ସମସ୍ତ ଅଂଶୀଦାରଙ୍କ ମୂଳଧନ ହିସାବକୁ ଦାତା କରାଯିବ । ଯଦି ପୁନର୍ମୂଲ୍ୟାୟନ ଫଳରେ ସୁନାମର ମୂଲ୍ୟ ହ୍ରାସ ପାଏ, ତାହାହେଲେ ଦୁଇଟି ସଂଖ୍ୟାର ଅନ୍ତରଫଳର ଆନୁପାତିକ ପରିମାଣ ସକାଶେ ଅବସର ଗ୍ରହଣ କରୁଥିବା ଅଂଶୀଦାରଙ୍କର ମୂଳଧନ ହିସାବକୁ ଦାସ୍ତୀ କରାଯାଇ ସୁନାମ ହିସାବକୁ ଦାତା କରାଯିବ ।

(୨) ସମ୍ପତ୍ତି ଓ ଦେୟର ପୁନର୍ମୂଲ୍ୟାୟନ—

ପୁନର୍ମୂଲ୍ୟାୟନ ଫଳରେ ସମ୍ପତ୍ତି ଓ ଦେୟର ପରିମାଣ ବୃଦ୍ଧି ଅଥବା ହ୍ରାସ ପାଇଥିଲେ ତାହା ପୁନର୍ମୂଲ୍ୟାୟନ ହିସାବ ଅଥବା ଲଭ ଓ କ୍ଷତି ସମାଯୋଜନ ହିସାବକୁ ଅଣାଯିବ । ପୂର୍ବରୁ ଯେପରି ବର୍ଣ୍ଣିତ ହୋଇଛି ଏହି ହିସାବର ବାକି ବା ଉଦ୍‌ବୃତ୍ତ ସେହିପରି ଭାବରେ ନିର୍ଣ୍ଣିତ କରାଯିବ ଓ ତାହାକୁ ଅବସର ଗ୍ରହଣ କରୁଥିବା ଅଂଶୀଦାରଙ୍କ ସମେତ ସମସ୍ତ ଅଂଶୀଦାରଙ୍କର ମୂଳଧନ ହିସାବକୁ ପୁରାତନ ଲଭ ଓ କ୍ଷତି ବଣ୍ଟନ ଅନୁପାତରେ ସ୍ଥାନାନ୍ତରିତ କରାଯିବ ।

(୩) ସାଧାରଣ ସଞ୍ଚିତି ( General Reserve )—

ଯଦି ପୂର୍ବରୁ ସାଧାରଣ ସଞ୍ଚିତି ଅଥବା ଲଭ ଓ କ୍ଷତିର ବାକି ବିଦ୍ୟମାନ ଥାଏ, ତାହାହେଲେ ଏହାକୁ ପୁରାତନ ଲଭ ଓ କ୍ଷତି ବଣ୍ଟନ ଅନୁପାତରେ ଅବସର ଗ୍ରହଣ କରୁଥିବା ଅଂଶୀଦାର ସମେତ ସମସ୍ତ ଅଂଶୀଦାରଙ୍କର ମୂଳଧନ ହିସାବକୁ ସ୍ଥାନାନ୍ତରିତ କରାଯିବ ।

(୪) ଚଳିତ ବର୍ଷର ଲଭ ଓ କ୍ଷତିର ଅଂଶ ( Share of Profit and Loss of the Current Year)—

କେତେକ ସମୟରେ କୌଣସି ଅଂଶୀଦାର ହିସାବ ବର୍ଷ ଶେଷ ହେବା ପୂର୍ବରୁ ଅବସର ଗ୍ରହଣ କରିପାରନ୍ତି । ସେପରି କ୍ଷେତ୍ରରେ ଅବସର ଗ୍ରହଣକାରୀ ଅଂଶୀଦାର ଚଳିତ ବର୍ଷର ଲଭ ବା କ୍ଷତିର ଅନୁପାତିକ ପରିମାଣ ଦାବୀ କରିପାରନ୍ତି । ଏପରି କ୍ଷେତ୍ରରେ ଚଳିତ ବର୍ଷର ଲଭ କିପରି ନିର୍ଣ୍ଣୟ କରାଯିବ ସେ ସମ୍ପର୍କରେ ଅଂଶୀଦାରୀ ଚୁକ୍ତିନାମାରେ ନିର୍ଦ୍ଦେଶ ଥାଇପାରେ । ଯଦି ସେପରି କୌଣସି ନିର୍ଦ୍ଦେଶ ନ ଥାଏ ତାହାହେଲେ ସମସ୍ତ ଅଂଶୀଦାର ଚଳିତ ବର୍ଷର ଲଭ ନିର୍ଣ୍ଣୟ କରିବାର ଏକ ଯୁକ୍ତିସଙ୍ଗତ ପ୍ରଣାଳୀ ସର୍ବସମ୍ମତିକ୍ରମେ ସ୍ଥିର କରିପାରନ୍ତି । ସାଧାରଣତଃ ଗତ କେତେ ବର୍ଷର ଲଭର ମାଧ୍ୟମାନ ପରିମାଣକୁ ସେହି ବର୍ଷର ଲଭ ରୂପେ ସ୍ଥିର କରାଯାଏ ।

ଯଦି କୌଣସି ଅଂଶୀଦାର ଅବସର ଗ୍ରହଣ କରିବା ପରେ ଅବଶିଷ୍ଟ ଅଂଶୀଦାରଙ୍କର ଲଭ ବଣ୍ଟନର ହାର ପୂର୍ବଭଳି ରହେ ତାହାହେଲେ ଅଂଶଗ୍ରହଣକାରୀଙ୍କର ଚଳିତ ବର୍ଷର ଲଭର ଅନୁପାତିକ ଅଂଶ ସକାଶେ ନିମ୍ନଲିଖିତ ଜାବ୍ଦା ଆବଶ୍ୟକ ହେବ :

| | |
|---|---|
| ଲଭ ଓ କ୍ଷତି ଅନିଶ୍ଚିତ ହିସାବ ଦାୟୀ<br>ଅବସର ଗ୍ରହଣକାରୀ ଅଂଶୀଦାରଙ୍କର ମୂଳଧନ ହିସାବ ବାବଦ | ଲଭ କ୍ଷେତ୍ରରେ ଅବସର ଗ୍ରହଣକାରୀଙ୍କର ପ୍ରାପ୍ୟ ଲଭ ସକାଶେ |

ଅଥବା

| | |
|---|---|
| ଅବସର ଗ୍ରହଣକାରୀ ଅଂଶୀଦାରଙ୍କର ମୂଳଧନ ହିସାବ ଦାୟୀ<br>ଲଭ ଓ କ୍ଷତି ଅନିଶ୍ଚିତ ହିସାବ ବାବଦ | କ୍ଷତି କ୍ଷେତ୍ରରେ ଅବସର ଗ୍ରହଣକାରୀଙ୍କର କ୍ଷତିର ଅଂଶ ସକାଶେ |

ବର୍ଷ ଶେଷରେ ଲଭ ଓ କ୍ଷତି ଅନିଶ୍ଚିତ ହିସାବରେ ବାକି ଲଭ ଓ କ୍ଷତି ବଣ୍ଟନ ହିସାବକୁ ସ୍ଥାନାନ୍ତରିତ ହେବ ।

ଯଦି କୌଣସି ଅଂଶୀଦାରଙ୍କର ଅବସର ଗ୍ରହଣ ପରେ ଅବଶିଷ୍ଟ ଅଂଶୀଦାରଙ୍କର ଲଭ ଓ କ୍ଷତି ବଣ୍ଟନର ଅନୁପାତ ପରିବର୍ତ୍ତିତ ହୁଏ, ତାହାହେଲେ ନିମ୍ନଲିଖିତ ଜାବ୍ଦା ଆବଶ୍ୟକ ହେବ :

| | |
|---|---|
| ଅବଶିଷ୍ଟ ଅଂଶୀଦାରଙ୍କର ମୂଳଧନ ହିସାବ ଦାୟୀ<br>ଅବସର ଗ୍ରହଣକାରୀ ଅଂଶୀଦାରଙ୍କର ମୂଳଧନ ହିସାବ ବାବଦ | ଅବଶିଷ୍ଟ ଅଂଶୀଦାରଙ୍କର ଲଭ ଓ କ୍ଷତି ବଣ୍ଟନର ପୁରାତନ ହାରରେ |

(୫) ଅବଶେଷରେ ଅବସର ଗ୍ରହଣକାରୀ ଅଂଶୀଦାରଙ୍କର ମୂଳଧନ ହିସାବର ବାକୀ ନିମ୍ନଲିଖିତ ଜାବ୍‌ଦା ସାହାଯ୍ୟରେ ପରିଶୋଧ କରାଯିବ :

| | | |
|---|---|---|
| ଅବସର ଗ୍ରହଣକାରୀ ଅଂଶୀଦାରଙ୍କର ମୂଳଧନ ହିସାବ ଦାୟୀ<br>ବ୍ୟାଙ୍କ୍/ନଗଦ ତହବିଲ ହିସାବ ବାବଦ<br>ଅଥବା | } | ଅବସର ଗ୍ରହଣକାରୀଙ୍କର ମୂଳଧନ ହିସାବର ବାକୀ ନଗଦ ପରିଶୋଧ କରାଗଲେ |
| ଅବସର ଗ୍ରହଣକାରୀ ଅଂଶୀଦାରଙ୍କର ମୂଳଧନ ହିସାବ ଦାୟୀ<br>ଅବସର ଗ୍ରହଣକାରୀ ଅଂଶୀଦାରଙ୍କର ଋଣ ହିସାବ ବାବଦ | } | ଅବସର ଗ୍ରହଣକାରୀ ଅଂଶୀଦାରଙ୍କର ମୂଳଧନର ବାକୀ ତାଙ୍କର ଋଣ ହିସାବକୁ ସ୍ଥାନାନ୍ତରିତ ହେଲେ |

(୬) ଅବସର ଗ୍ରହଣକାରୀ ଅଂଶୀଦାରଙ୍କର ଋଣ ହିସାବ ସେତେବେଳେ ଖୋଲଯାଏ ଯେତେବେଳେ ଅବଶିଷ୍ଟ ଅଂଶୀଦାରମାନେ ପ୍ରଥମୋକ୍ତ ଅଂଶୀଦାରଙ୍କର ମୂଳଧନ ହିସାବର ବାକୀ ବାବଦ ଟଙ୍କା ଅବସର ଗ୍ରହଣ କରିବା ସଙ୍ଗେ ସଙ୍ଗେ ନଗଦ ଆକାରରେ ଦେବାକୁ ଅସମର୍ଥ ହୁଅନ୍ତି । ଏହି ହିସାବ ଖୋଲଗଲେ ତାହା ଅବସର ଗ୍ରହଣକାରୀ ଅଂଶୀଦାରଙ୍କ ସହିତ ଅବଶିଷ୍ଟ ଅଂଶୀଦାରଙ୍କର ଚୁକ୍ତିର ସର୍ତ୍ତ ଅନୁଯାୟୀ ପ୍ରଚଳିତ ହେବ ।

## ଦୃଷ୍ଟାନ୍ତ (୨୯)

କମଳ, ବିମଳ ଓ ଯୁଗଳ ଗୋଟିଏ ଅଂଶୀଦାରୀ କାରବାରର ଅଂଶୀଦାର ଥାଇ ଲାଭ ଓ କ୍ଷତି ଯଥାକ୍ରମେ ୪ : ୩ : ୨ ଅନୁପାତରେ ବଣ୍ଟନ କରୁଥିଲେ । ତାଙ୍କର ୧୯୬୪ ମସିହା ଡିସେମ୍ବର ୩୧ ତାରିଖର ଉଦ୍‌ବୃତ୍ତ ପତ୍ର ନିମ୍ନରେ ପ୍ରଦତ୍ତ ହେଲ :

| ଦେୟ | ଟଙ୍କା | ଟଙ୍କା | ସମ୍ପତ୍ତି | ଟଙ୍କା | ଟଙ୍କା |
|---|---|---|---|---|---|
| ମୂଳଧନ ହିସାବ : | | | ଭୂମି ଓ ଭବନ | | ୩୦,୦୦୦ |
| କମଳ | ୨୭,୦୦୦ | | କଳକବ୍‌ଜା | | ୨[illegible],୦୦୦ |
| ବିମଳ | ୨୧,୦୦୦ | | ମହଜୁଦ ପଣ୍ୟ | | ୧୮,୦୦୦ |
| ଯୁଗଳ | ୧୫,୦୦୦ | ୬୩,୦୦୦ | ଖାତକ | ୧୫,୦୦୦ | |
| ସାଧାରଣ ସଞ୍ଚିତ | | ୧୮,୦୦୦ | ବାଦ : ସମ୍ଭାବିତ | | |
| ବିବିଧ ମହାଜନ | | ୧୦,୦୦୦ | ଅନାଦାୟୀ ଋଣର | | |
| | | | ସଞ୍ଚିତ | ୩,୦୦୦ | [illegible],୦୦୦ |
| | | ୯୧,୦୦୦ | ବ୍ୟାଙ୍କ୍ | | [illegible],୦୦୦ |
| | | | | | ୯୧,୦୦୦ |

ବିମଳ ଉକ୍ତ ତାରିଖରେ ନିମ୍ନଲିଖିତ ସର୍ତ୍ତଗୁଡ଼ିକ ଅନୁଯାୟୀ ଅବସର ଗ୍ରହଣ କଲେ ।

(୧) ବ୍ୟବସାୟର ସୁନାମର ମୂଲ୍ୟ ୨୭,୦୦୦ ଟଙ୍କା ହେବ ।

(୨) କଳକବ୍‌ଜାର ମୂଲ୍ୟ ୧୦% ହ୍ରାସ କରାଯିବ ।

(୩) ଭୂମି ଓ ଭବନର ମୂଲ୍ୟ ୨୦% ବୃଦ୍ଧି କରାଯିବ ।

(୪) ମହଜୁଦ ପଣ୍ୟର ମୂଲ୍ୟ ୧୮,୬୦୦ ଟଙ୍କା ଧରାଯିବ ।

(୫) ଅନାଦାୟୀ ଋଣର ସଞ୍ଚିତକୁ ୩,୫୦୦ ଟଙ୍କାକୁ ବୃଦ୍ଧି କରାଯିବ ।

(୬) ଶ୍ରମିକଙ୍କ କ୍ଷତିପୂରଣ ବାବଦ ୧,୮୦୦ ଟଙ୍କା ସକାଶେ ଏକ ଦେୟକୁ ହିସାବ-ଭୁକ୍ତ କରାଯିବ ।

(୭) ବିମଳଙ୍କ ପ୍ରାପ୍ୟ ଟଙ୍କା ତାଙ୍କର ଋଣ ହିସାବକୁ ସ୍ଥାନାନ୍ତରିତ କରାଯିବ ।

ବିମଳଙ୍କ ଅବସର ଗ୍ରହଣ ପରେ କମଳ ଓ ଯୁଗଳ ୪:୨ ଅନୁପାତରେ ଭବିଷ୍ୟତ ଲାଭ ଓ କ୍ଷତି ବଣ୍ଟନ କରିବେ ।

ଉପରୋକ୍ତ ସମାଯୋଜନ ସକାଶେ ଜାବ୍‌ଦା ପ୍ରସ୍ତୁତ କର । ପୁନର୍ମୂଲ୍ୟାୟନ ହିସାବ, ଅଂଶୀଦାରମାନଙ୍କର ମୂଳଧନ ହିସାବ ଏବଂ କମଳ ଓ ଯୁଗଳଙ୍କର ପୁନର୍ଗଠିତ ଉଦ୍‌ବୃତ୍ତ ପତ୍ର ଦର୍ଶାଅ ।

ମନେକର ଯେ ସମ୍ପତ୍ତି ଓ ଦେୟଗୁଡ଼ିକର ମୂଲ୍ୟରେ ପରିବର୍ତ୍ତନ କାରବାରର ହିସାବ ବହିରେ ଲିପିବଦ୍ଧ ହୋଇ ରହିବ ।

## ସମାଧାନ

| | ଜାବ୍‌ଦା | ଦାୟୀ | ଦାତା |
|---|---|---|---|
| ୧୯୭୪ ଡିସେ-୩୧ | | ଟଙ୍କା | ଟଙ୍କା |
| | ସୁନାମ ହିସାବ ... ଦାୟୀ | ୨୭,୦୦୦ | |
| | କମଳଙ୍କ ମୂଳଧନ ହିସାବ ବାବଦ | | ୧୨,୦୦୦ |
| | ବିମଳଙ୍କ ମୂଳଧନ ହିସାବ ବାବଦ | | ୯,୦୦୦ |
| | ଯୁଗଳଙ୍କ ମୂଳଧନ ହିସାବ ବାବଦ | | ୬,୦୦୦ |
| | (ସୁନାମ ହିସାବ ଖୋଲାଗଲା ଓ ସୁନାମର ମୂଲ୍ୟକୁ ୪ : ୩ : ୨ ଅନୁପାତରେ ଅଂଶୀଦାରମାନଙ୍କର ମୂଳ-ଧନ ହିସାବକୁ ଦାତା କରାଗଲା । ) | | |

| | ଜାବ୍‌ଦା | | ଦାୟୀ | ଦାତା |
|---|---|---|---|---|
| ୩୧ | ପୁନର୍ମୂଲ୍ୟାୟନ ହିସାବ | ଦାୟୀ | ୪,୮୦୦ | |
| | କଳକବ୍‌ଜା ହିସାବ ବାବଦ | | | ୨,୫୦୦ |
| | ଅନାଦାୟୀ ଋଣର ସଞ୍ଚିତ ହିସାବ ବାବଦ | | | ୫୦୦ |
| | ଶ୍ରମିକଙ୍କ କ୍ଷତିପୂରଣ ହିସାବ ବାବଦ | | | ୧,୮୦୦ |
| | ( ସମ୍ପତ୍ତିର ମୂଲ୍ୟ ହ୍ରାସ ଓ ଦେୟର ମୂଲ୍ୟ ବୃଦ୍ଧି ସକାଶେ ) | | | |
| ୩୧ | ଭୂମି ଓ ଭବନ ହିସାବ | ଦାୟୀ | ୬,୦୦୦ | |
| | ମହଜୁଦ ପଣ୍ୟ ହିସାବ | ଦାୟୀ | ୬୦୦ | |
| | ପୁନର୍ମୂଲ୍ୟାୟନ ହିସାବ ବାବଦ | | | ୬,୬୦୦ |
| | ( ସମ୍ପତ୍ତିର ମୂଲ୍ୟ ବୃଦ୍ଧି ସକାଶେ ) | | | |
| ୩୧ | ପୁନର୍ମୂଲ୍ୟାୟନ ହିସାବ | ଦାୟୀ | ୧,୮୦୦ | |
| | କମଳଙ୍କ ମୂଳଧନ ହିସାବ ବାବଦ | | | ୮୦୦ |
| | ବିମଳଙ୍କ ମୂଳଧନ ହିସାବ ବାବଦ | | | ୬୦୦ |
| | ସରଳଙ୍କ ମୂଳଧନ ହିସାବ | | | ୪୦୦ |
| | ( ପୁନର୍ମୂଲ୍ୟାୟନ ହିସାବର ବାକୀ ଅଂଶୀଦାରମାନଙ୍କର ମୂଳଧନ ହିସାବକୁ ୪ : ୩ : ୨ ଅନୁପାତରେ ସ୍ଥାନାନ୍ତରିତ ହେଲା ) | | | |
| ୩୧ | ସାଧାରଣ ସଞ୍ଚିତ ହିସାବ | ଦାୟୀ | ୧୮,୦୦୦ | |
| | କମଳଙ୍କ ମୂଳଧନ ହିସାବ ବାବଦ | | | ୮,୦୦୦ |
| | ବିମଳଙ୍କ ମୂଳଧନ ହିସାବ ବାବଦ | | | ୬,୦୦୦ |
| | ସରଳ ମୂଳଧନ ହିସାବ ବାବଦ | | | ୪,୦୦୦ |
| | ( ସାଧାରଣ ସଞ୍ଚିତ ହିସାବର ବାକୀ ଅଂଶୀଦାରମାନଙ୍କର ମୂଳଧନ ହିସାବକୁ ୪ : ୩ : ୨ ଅନୁପାତରେ ସ୍ଥାନାନ୍ତରିତ କରାଗଲା ) | | | |
| ୩୧ | ବିମଳଙ୍କ ମୂଳଧନ ହିସାବ | ଦାୟୀ | ୩୬,୬୦୦ | |
| | ବିମଳଙ୍କ ଋଣ ହିସାବ ବାବଦ | | | ୩୬,୬୦୦ |
| | ( ଅବସର ଗ୍ରହଣ କରୁଥିବାରୁ ବିମଳଙ୍କର ସମସ୍ତ ପ୍ରାପ୍ୟ ଟଙ୍କା ତାଙ୍କର ଋଣ ହିସାବକୁ ସ୍ଥାନାନ୍ତରିତ କରାଗଲା ) | | | |

## ଖତିୟାନ

ଦାୟୀ — କମଳଙ୍କ ମୂଳଧନ ହିସାବ — ଦାତା

| ୧୯୭୪ | ଟଙ୍କା | ୧୯୭୪ | ଟଙ୍କା |
|---|---|---|---|
| ଡିସେ-୩୧ ବାକି ଗଡ଼ିଲା | ୪୭,୮୦୦ | ଡିସେ-୩୧ ପୂର୍ବ ବାକି ବାବଦ | ୨୭,୦୦୦ |
| | | ୩୧ ସୁନାମ ହିସାବ ବାବଦ | ୧୨,୦୦୦ |
| | | ୩୧ ପୁନର୍ମୂଲ୍ୟାୟନ ହିସାବ ବାବଦ | ୮୦୦ |
| | | ୩୧ ସାଧାରଣ ସଞ୍ଚିତ ହିସାବ ବାବଦ | ୮,୦୦୦ |
| | ୪୭,୮୦୦ | ୧୯୭୫ | ୪୭,୮୦୦ |
| | ୪୭,୮୦୦୦ | ଜାନୁ-୧ ପୂର୍ବ ବାକି ବାବଦ | ୪୭,୮୦୦ |

ଦାୟୀ — ବିମଳଙ୍କ ମୂଳଧନ ହିସାବ — ଦାତା

| ୧୯୭୪ | ଟଙ୍କା | ୧୯୭୪ | ଟଙ୍କା |
|---|---|---|---|
| ଡିସେ-୩୧ ବିମଳଙ୍କ ଋଣ ହିସାବ ବାବଦ ସ୍ଥାନାନ୍ତରଣ | ୩୬,୬୦୦ | ଡିସେ-୩୧ ପୂର୍ବ ବାକି ବାବଦ | ୨୧,୦୦୦ |
| | | ୩୧ ସୁନାମ ହିସାବ ବାବଦ | ୯,୦୦୦ |
| | | ୩୧ ପୁନର୍ମୂଲ୍ୟାୟନ ହିସାବ ବାବଦ | ୬୦୦ |
| | | ୩୧ ସାଧାରଣ ସଞ୍ଚିତ ହିସାବ ବାବଦ | ୬,୦୦୦ |
| | ୩୬,୬୦୦ | | ୩୬,୬୦୦ |

ଦାୟୀ — ମୁଗଲଙ୍କ ମୂଳଧନ ହିସାବ — ଦାତା

| ୧୯୭୪ | ଟଙ୍କା | ୧୯୭୪ | ଟଙ୍କା |
|---|---|---|---|
| ଡିସେ-୩୧ ବାକି ଗଡ଼ିଲା | ୨୫,୪୦୦ | ଡିସେ-୩୧ ପୂର୍ବ ବାକି ବାବଦ | ୧୫,୦୦୦ |
| | | ୩୧ ସୁନାମ ହିସାବ ବାବଦ | ୬,୦୦୦ |
| | | ୩୧ ପୁନର୍ମୂଲ୍ୟାୟନ ହିସାବ ବାବଦ | ୪୦୦ |
| | | ୩୧ ସାଧାରଣ ସଞ୍ଚିତ ହିସାବ ବାବଦ | ୪,୦୦୦ |
| | ୨୫,୪୦୦ | ୧୯୭୫ | ୨୫,୪୦୦ |
| | | ଜାନୁ-୧ ପୂର୍ବ ବାକି ବାବଦ | ୨୫,୪୦୦ |

ଦାୟୀ — ପୁନର୍ମୂଲ୍ୟାୟନ ହିସାବ — ଦାତା

| ୧୯୭୪ | ଟଙ୍କା | ୧୯୭୪ | ଟଙ୍କା |
|---|---|---|---|
| ଡିସେ-୩୧ କଳକବ୍ଜା ହି: ବାବଦ | ୨,୫୦୦ | ଡିସେ-୩୧ ଭୂମି ଓ ଭବନ ହିସାବ ବାବଦ | ୬,୦୦୦ |
| ୩୧ ଅନାଦାୟୀ ଋଣର ସଞ୍ଚିତ ହିସାବ ବାବଦ | ୫୦୦ | ମହଜୁଦ୍ ପଣ୍ୟ ହିସାବ ବାବଦ | ୭୦୦ |
| ୩୧ ଶ୍ରମିକଙ୍କ କ୍ଷତିପୂରଣ ହି: ବାବଦ | ୧,୮୦୦ | | |
| ୩୧ କମଳଙ୍କ ମୂଳଧନ ହି: ବାବଦ | ୮୦୦ | | |
| ବିମଳଙ୍କ ମୂଳଧନ ହି: ବାବଦ | ୭୦୦ | | |
| ମୁଗଳଙ୍କ ମୂଳଧନ ହିସାବ ବାବଦ | ୪୦୦ | | |
| | ୬,୭୦୦ | | ୬,୭୦୦ |

ଦାୟୀ — ସାଧାରଣ ସଞ୍ଚିତ ହିସାବ — ଦାତା

| ୧୯୭୪ | | ଟଙ୍କା | ୧୯୭୪ | ଟଙ୍କା |
|---|---|---|---|---|
| ଡିସେ-୩୧ ମୂଳଧନ ହିସାବକୁ ସ୍ଥାନାନ୍ତରଣ ବାବଦ | | | ଡିସେ-୩୧ ପୂର୍ବ ବାକୀ ବାବଦ | ୧୮,୦୦୦ |
| କମଳ | ଟ ୮,୦୦୦ | | | |
| ବିମଳ | ଟ ୬,୦୦୦ | | | |
| ମୁଗଳ | ଟ ୪,୦୦୦ | ୧୮,୦୦୦ | | |
| | | ୧୮,୦୦୦ | | ୧୮,୦୦୦ |

ଦାୟୀ — ସୁନାମ ହିସାବ — ଦାତା

| ୧୯୭୪ | ଟଙ୍କା | ୧୯୭୪ | ଟଙ୍କା |
|---|---|---|---|
| ଡିସେ-୩୧ କମଳଙ୍କ ମୂଳଧନ ହିସାବ ବାବଦ | ୧୨,୦୦୦ | ଡିସେ-୩୧ ବାକୀ ଗଡ଼ିଲ | ୨୭,୦୦୦ |
| ବିମଳଙ୍କ ମୂଳଧନ ହିସାବ ବାବଦ | ୯,୦୦୦ | | |
| ମୁଗଳଙ୍କ ମୂଳଧନ ହିସାବ ବାବଦ | ୬,୦୦୦ | | |
| | ୨୭,୦୦୦ | | ୨୭,୦୦୦ |
| ୧୯୭୫ | | | |
| ଜାନୁ-୧ ପୂର୍ବ ବାକୀ ବାବଦ | ୨୭,୦୦୦ | | |

କମଳ ଓ ମୁଗଲଙ୍କର ୧୯୭୪ ମସିହା
ଡିସେମ୍ବର ୩୧ ତାରିଖର ପୁନର୍ଗଠିତ ଉଦ୍‌ବୃତ୍ତ ପତ୍ର

| ଦେୟ | ଟଙ୍କା | ଟଙ୍କା | ସମ୍ପତ୍ତି | ଟଙ୍କା | ଟଙ୍କା |
|---|---|---|---|---|---|
| ମୂଳଧନ ହିସାବ | | | ସ୍ଥାୟୀ ସମ୍ପତ୍ତି : | | |
| କମଳ | ୪୭,୮୦୦ | | ସୁନାମ | | ୨୭,୦୦୦ |
| ମୁଗଲ | ୧୫,୪୦୦ | ୬୩,୨୦୦ | ଭୂମି ଓ ଭବନ | ୩୦,୦୦୦ | |
| ଶ୍ରମିକଙ୍କ କ୍ଷତିପୂରଣ | | | ଯୁକ୍ତ : ମୂଲ୍ୟ ବୃଦ୍ଧି | ୬,୦୦୦ | ୩୬,୦୦୦ |
| ବ୍ୟବସ୍ଥା | | ୧,୮୦୦ | କଳ କବ୍‌ଜା | ୧୫,୦୦୦ | |
| କମଳଙ୍କ ଋଣ ହିସାବ | | ୩୬,୬୦୦ | ବିୟୁକ୍ତ : ମୂଲ୍ୟ ହ୍ରାସ | ୨,୫୦୦ | ୧୨,୫୦୦ |
| ବିବିଧ ମହାଜନ | | ୧୦,୨୦୦ | ଚଳନ୍ତି ସମ୍ପତ୍ତି : | | |
| | | | ମହଜୁଦ୍ ପଣ୍ୟ | ୧୮,୦୦୦ | |
| | | | ଯୁକ୍ତ : ମୂଲ୍ୟ ବୃଦ୍ଧି | ୬୦୦ | ୧୮,୬୦୦ |
| | | | ବିବିଧ ଖାତକ | ୧୫,୦୦୦ | |
| | | | ବିୟୁକ୍ତ : ଅନାଦାୟୀ | | |
| | | | ଋଣ ସଞ୍ଚିତ | ୩,୫୦୦ | ୧୧,୫୦୦ |
| | | | ବ୍ୟାଙ୍କରେ ଗଚ୍ଛିତ | | ୬,୦୦୦ |
| | | ୧,୧୧,୬୦୦ | | | ୧,୧୧,୬୦୦ |

### ଦୃଷ୍ଟାନ୍ତ (୩୦)

ଦୃଷ୍ଟାନ୍ତ (୨୯)ରେ ଥିବା ସମସ୍ୟାରେ ପୁନର୍ମୂଲ୍ୟାୟନ ପରେ ସମ୍ପତ୍ତି ଓ ଦେୟର ମୂଲ୍ୟ ପୂର୍ବସ୍ଥାନରେ ଅପରିବର୍ତ୍ତିତ ରହିବ ବୋଲି ମନେକରି ଜାବ୍‌ଦା, ବିବରଣୀ, ପୁନର୍ମୂଲ୍ୟାୟନ ହିସାବ, କମଳ, କମଳ ଓ ମୁଗଲଙ୍କର ମୂଳଧନ ହିସାବ ଓ କମଳ ଓ ମୁଗଲଙ୍କର ପୁନର୍ଗଠିତ ଉଦ୍‌ବୃତ୍ତ ପତ୍ର ପ୍ରସ୍ତୁତ କର ।

**ସମାଧାନ**

ଜାବ୍‌ଦା

| | | ଦାୟୀ ଟଙ୍କା | ଦାତା ଟଙ୍କା |
|---|---|---|---|
| ୧୯୭୪ | | | |
| ଡିସେ-୩୧ | ସୁନାମ ହିସାବ ଦାୟୀ | ୨୭,୦୦୦ | |
| | କମଳଙ୍କର ମୂଳଧନ ହିସାବ ବାବଦ | | ୧୨,୦୦୦ |
| | କମଳଙ୍କର ମୂଳଧନ ହିସାବ ବାବଦ | | ୯,୦୦୦ |
| | ମୁଗଲଙ୍କର ମୂଳଧନ ହିସାବ ବାବଦ | | ୬,୦୦୦ |
| | (ସୁନାମର ମୂଲ୍ୟାୟନ କରାଯାଇ ଅଂଶୀଦାରମାନଙ୍କର ମୂଳଧନ ହିସାବକୁ ୪:୩:୨ ଅନୁପାତରେ ଦାତା କରାଗଲା ) | | |

| | | | |
|---|---|---|---|
| ୩୧ | କମଳଙ୍କର ମୂଳଧନ ହିସାବ ଦାୟୀ | ୧୮,୦୦୦ | |
| | ଯୁଗଳଙ୍କର ମୂଳଧନ ହିସାବ ଦାୟୀ | ୯,୦୦୦ | |
| | ସୁନାମ ହିସାବ ବାବଦ | | ୨୭,୦୦୦ |
| | (ସୁନାମର ମୂଲ୍ୟକୁ ଅବଶିଷ୍ଟ ଅଂଶୀଦାରଙ୍କର ମୂଳଧନ ହିସାବକୁ ୪:୨ ଅନୁପାତରେ ଦାୟୀ କରି ସୁନାମ ହିସାବ ବନ୍ଦ କରାଗଲା ) | | |
| ୧୯୭୪ | | ୭,୦୦୦ | |
| ଡିସେ-୩୧ | ସାଧାରଣ ସଞ୍ଚିତ ହିସାବ ଦାୟୀ | | ୭,୦୦୦ |
| | ବିମଳଙ୍କର ମୂଳଧନ ହିସାବ ବାବଦ | | |
| | (ସାଧାରଣ ସଞ୍ଚିତରେ ବିମଳଙ୍କର ଅଂଶ ତାଙ୍କର ଲାଭ ଓ କ୍ଷତି ବଣ୍ଟନ ଅନୁପାତରେ ସ୍ଥାନାନ୍ତରିତ ହେଲା । ) | | |
| ୩୧ | ବିବରଣୀ ପୁନର୍ମୂଲ୍ୟାୟନ ହିସାବ ଦାୟୀ | ୧,୮୦୦ | |
| | କମଳଙ୍କର ମୂଳଧନ ହିସାବ ବାବଦ | | ୮୦୦ |
| | ବିମଳଙ୍କର ମୂଳଧନ ହିସାବ ବାବଦ | | ୬୦୦ |
| | ଯୁଗଳଙ୍କର ମୂଳଧନ ହିସାବ ବାବଦ | | ୪୦୦ |
| | (ପୁନର୍ମୂଲ୍ୟାୟନ ହେତୁ ଲାଭ ସବୁ ଅଂଶୀଦାରମାନଙ୍କ ମୂଳଧନ ହିସାବକୁ ୪:୩:୨ ଅନୁପାତରେ ସ୍ଥାନାନ୍ତରିତ ହେଲା ) | | |
| ୩୧ | କମଳଙ୍କର ମୂଳଧନ ହିସାବ ଦାୟୀ | ୧,୨୦୦ | |
| | ଯୁଗଳଙ୍କର ମୂଳଧନ ହିସାବ ଦାୟୀ | ୬୦୦ | ୧,୮୦୦ |
| | ବିବରଣୀ ପୁନର୍ମୂଲ୍ୟାୟନ ହିସାବ ବାବଦ | | |
| | (ପୁନର୍ମୂଲ୍ୟାୟନ ହେତୁ ପୂର୍ବରୁ ସବୁ ଅଂଶୀଦାରମାନଙ୍କ ମଧ୍ୟରେ ବଣ୍ଟିତ ଲାଭ ଅବଶିଷ୍ଟ ଅଂଶୀଦାରଙ୍କ ମୂଳଧନ ହିସାବକୁ ୪:୨ ଅନୁପାତରେ ଦାୟୀ କରାଯାଇ ପୂର୍ବୋକ୍ତ ହିସାବକୁ ବନ୍ଦ କରାଗଲା) | | |
| ୩୧ | ବିମଳଙ୍କର ମୂଳଧନ ହିସାବ ଦାୟୀ | ୩୭,୬୦୦ | |
| | ବିମଳଙ୍କର ଋଣ ହିସାବ ବାବଦ | | ୩୬,୭୦୦ |
| | (ବିମଳଙ୍କର ମୂଳଧନ ହିସାବର ଦାତା ବାକୀ ତାଙ୍କର ଋଣ ହିସାବକୁ ସ୍ଥାନାନ୍ତରିତ ହେଲା) | | |

## ଖତିୟାନ

### କମଲଙ୍କର ମୂଳଧନ ହିସାବ

| ଦାୟୀ | | ଟଙ୍କା | ଦାତା | | ଟଙ୍କା |
|---|---|---|---|---|---|
| ୧୯୭୪ | | | ୧୯୭୪ | | |
| ଡିସେ-୩୧ | ସୁନାମ ହିସାବ ବାବଦ | ୧୮,୦୦୦ | ଡିସେ-୩୧ | ପୂର୍ବ ବାକି ବାବଦ | ୧୭,୦୦୦ |
| ୩୧ | ବିବରଣୀ ପୁନର୍ମୂଲ୍ୟାୟନ ହିସାବ ବାବଦ | ୧,୨୦୦ | ୩୧ | ସୁନାମ ହିସାବ ବାବଦ | ୧୨,୦୦୦ |
| ୩୧ | ବାକି ଗଡ଼ିଲା | ୧୦,୬୦୦ | ୩ | ବିବରଣୀ ପୁନର୍ମୂଲ୍ୟାୟନ ହିସାବ ବାବଦ | ୮୦୦ |
| | | ୨୯,୮୦୦ | | | ୨୯,୮୦୦ |
| | | | ଡିସେ-୩୧ | ପୂର୍ବ ବାକି ବାବଦ | ୧୦,୬୦୦ |

### ବିବରଣୀ ପୁନର୍ମୂଲ୍ୟାୟନ ହିସାବ

| ଦାୟୀ | | | ଟଙ୍କା | ଦାତା | | | ଟଙ୍କା |
|---|---|---|---|---|---|---|---|
| ୧୯୭୪ | | | | ୧୯୭୪ | | | |
| ଡିସେ-୩୧ | ସମ୍ପତ୍ତିର ମୂଲ୍ୟହ୍ରାସ ବାବଦ : | | | ଡିସେ-୩୧ | ସମ୍ପତ୍ତିର ମୂଲ୍ୟ ବୃଦ୍ଧି ବାବଦ | | |
| | କଳକବ୍ଜା | ଟ ୨,୫୦୦ | | | ଭୂମି ଓ ଭବନ | ଟ ୬,୦୦୦ | |
| | ବିବଧ ଖାତକ | ୫୦୦ | ୩,୦୦୦ | | ମହଜୁଦ୍ ପଣ୍ୟ | ଟ ୬୦୦ | ୬,୬୦୦ |
| ୩୧ | ଦେୟର ମୂଲ୍ୟବୃଦ୍ଧି ବାବଦ ଶ୍ରମିକଙ୍କ କ୍ଷତିପୂରଣ ବ୍ୟବସ୍ଥା ବାବଦ | | ୧,୮୦୦ | | | | |
| ୩୧ | ଲଭ ସ୍ଥାନାନ୍ତରଣ ବାବଦ | | | | | | |
| | କମଲଙ୍କର ମୂଳଧନ ହି: ବାବଦ | | ୮୦୦ | | | | |
| | ବିମଳଙ୍କର ମୂଳଧନ ହି: ବାବଦ | | ୬୦୦ | | | | |
| | ଯୁଗଳଙ୍କର ମୂଳଧନ ହି: ବାବଦ | | ୪୦୦ | | | | |
| | | | ୬,୬୦୦ | | | | ୬,୬୦୦ |
| ୧୯୭୪ | | | | ୧୯୭୪ | | | |
| ଡିସେ-୩୧ | ବିପରୀତ ଲିଖନ ବାବଦ | | | ଡିସେ-୩୧ | ବିପରୀତ ଲିଖନ ବାବଦ | | |
| | ଭୂମି ଓ ଭବନ | | ୬,୦୦୦ | | କଳକବ୍ଜା | | ୨,୫୦୦ |
| | ମହଜୁଦ୍ ପଣ୍ୟ | | ୬୦୦ | | ବିବଧ ଖାତକ | | ୫୦୦ |
| | | | | | ଶ୍ରମିକଙ୍କ କ୍ଷତିପୂରଣ | | ୧,୮୦୦ |
| | | | | ୩୧ | କ୍ଷତିର ସ୍ଥାନାନ୍ତରଣ ବାବଦ | | |
| | | | | | କମଲଙ୍କର ମୂଳଧନ ହି: | | ୧,୨୦୦ |
| | | | | | ଯୁଗଳଙ୍କର ମୂଳଧନ ହି: | | ୬ ୦ |
| | | | ୬,୬୦୦ | | | | ୬,୬୦୦ |

**ଦାୟୀ — ବିମଳଙ୍କର ମୂଳଧନ ହିସାବ — ଦାତା**

| ୧୯୭୪ | ଟଙ୍କା | ୧୯୭୪ | ଟଙ୍କା |
|---|---|---|---|
| ଡିସେ-୩୧ ବିମଳଙ୍କର ଋଣ ହିସାବ ବାବଦ (ସ୍ଥାନାନ୍ତରଣ) | ୩୭,୭୦୦ | ଡିସେ-୩୧ ପୂର୍ବ ବାକି ବାବଦ | ୨୧,୦୦୦ |
| | | ୩୧ ସୁନାମ ହିସାବ ବାବଦ | ୯,୦୦୦ |
| | | ବିବରଣୀ ପୁନର୍ମୂଲ୍ୟାୟନ ହିସାବ ବାବଦ | ୭୦୦ |
| | | ସାଧାରଣ ସଞ୍ଚିତ ହିସାବ ବାବଦ | ୭,୦୦୦ |
| | ୩୭,୭୦୦ | | ୩୭,୭୦୦ |

**ଦାୟୀ — ଯୁଗଳଙ୍କର ମୂଳଧନ ହିସାବ — ଦାତା**

| ୧୯୭୪ | ଟଙ୍କା | ୧୯୭୪ | ଟଙ୍କା |
|---|---|---|---|
| ଡିସେ-୩୧ ସୁନାମ ହିସାବ ବାବଦ | ୯,୦୦୦ | ଡିସେ-୩୧ ପୂର୍ବ ବାକି ବାବଦ | ୧୪,୦୦୦ |
| ୩୧ ବିବରଣୀ ପୁନର୍ମୂଲ୍ୟାୟନ ହିସାବ ବାବଦ | ୬୦୦ | ୩୧ ସୁନାମ ହିସାବ ବାବଦ | ୭,୦୦୦ |
| ୩୧ ବାକି ପଡ଼ିଲ | ୧୧,୮୦୦ | ୩୧ ବିବରଣୀ ପୁନର୍ମୂଲ୍ୟାୟନ ହିସାବ ବାବଦ | ୪୦୦ |
| | ୨୧,୪୦୦ | | ୨୧,୪୦୦ |
| | | ୧୯୭୫ | |
| | | ଡିସେ-୩୧ ପୂର୍ବ ବାକି ବାବଦ | ୧୧,୮୦୦ |

**କମଳ ଓ ଯୁଗଳଙ୍କର ୧୯୭୪ ମସିହା ଡିସେମ୍ବର ୩୧ ତାରିଖର ପୁନର୍ଗଠିତ ଉଦ୍ବୃତ୍ତ ପତ୍ର**

| ଦେୟ | ଟଙ୍କା | ଟଙ୍କା | ସମ୍ପତ୍ତି | ଟଙ୍କା | ଟଙ୍କା |
|---|---|---|---|---|---|
| ମୂଳଧନ ହିସାବ : | | | ସ୍ଥାୟୀ ସମ୍ପତ୍ତି : | | |
| କମଳ | ୨୦,୬୦୦ | | ଭୂମି ଓ ଭବନ | ୩୦,୦୦୦ | |
| ଯୁଗଳ | ୧୧,୮୦୦ | ୩୨,୪୦୦ | କଳ ଓ କବ୍‌ଜା | ୧୫,୦୦୦ | ୪୫,୦୦୦ |
| ବିମଳଙ୍କର ଋଣ ହିସାବ | | ୩୭,୭୦୦ | ଚଳନ୍ତି ସମ୍ପତ୍ତି : | | |
| ବିବିଧ ମହାଜନ | | ୧୦,୦୦୦ | ମହଜୁଦ୍ ପଣ୍ୟ | ୧୮,୦୦୦ | |
| ସାଧାରଣ ସଞ୍ଚିତ | ୧୮,୦୦୦ | | ବିବିଧ ଖାତକ | ୧୫,୦୦୦ | |
| ବାଦ୍ ବିମଳଙ୍କ ଅଂଶ | ୭,୦୦୦ | ୧୧,୦୦୦ | ବାଦ୍ ଅନାଦାୟୀ ଋଣ ସଞ୍ଚିତ | ୩,୦୦୦ | ୧୨,୦୦୦ |
| | | | ବ୍ୟାଙ୍କରେ ଗଚ୍ଛିତ | ୬,୦୦୦ | ୩୬,୦୦୦ |
| | | ୯୧,୦୦୦ | | | ୯୧,୦୦୦ |

## ଅବସରଗ୍ରହଣକାରୀ ଅଂଶୀଦାରଙ୍କର ପ୍ରାପ୍ୟ ଋଣ ପରିଶୋଧ

## ( Payment of Retiring Partners' Loan )

ପୂର୍ବରୁ କୁହାଯାଇଛି ଯେ ଅବସର ଗ୍ରହଣକାରୀ ଅଂଶୀଦାରଙ୍କର ପ୍ରାପ୍ୟ ଋଣର ପରି-ଶୋଧର ପ୍ରଣାଳୀ ଅବଶିଷ୍ଟ ଅଂଶୀଦାରଙ୍କ ସହିତ ତାଙ୍କର ଚୁକ୍ତିର ସର୍ତ୍ତ ଅନୁଯାୟୀ କରାଯାଏ । ସାଧାରଣତଃ ତାଙ୍କୁ ଅବସର ଗ୍ରହଣ କରୁଥିବା ତାରିଖରେ କିଛି ନଗଦ ଅର୍ଥ ଦିଆଯାଏ ଏବଂ ଅବଶିଷ୍ଟ ଅର୍ଥ ବାର୍ଷିକ କିସ୍ତିରେ କେତେକ ବର୍ଷ ମଧ୍ୟରେ ପରିଶୋଧ କରାଯାଏ । ଅପରିଶୋଧିତ ପରିମାଣ ଉପରେ ସାଧାରଣତଃ ଶତକଡ଼ା ବାର୍ଷିକ ୫ ଅଥବା ୬ ହାରରେ ସୁଧ ଦେବାକୁ ପଡ଼େ । ଏହାର ଏକ ଦୃଷ୍ଟାନ୍ତ ନିମ୍ନରେ ପ୍ରଦର୍ଶିତ ହେଲା ।

### ଦୃଷ୍ଟାନ୍ତ (୩୧)

୧୯୬୯ ମସିହା ଡିସେମ୍ବର ୩୧ ତାରିଖରେ ଖ ବ୍ୟବସାୟରୁ ଅବସର ଗ୍ରହଣ କଲେ । କ ଓ ଗ ସହିତ ତାଙ୍କର ଏହି ଚୁକ୍ତି ହେଲା ଯେ ୧୯୬୯ ମସିହା ଡିସେମ୍ବର ୩୧ ତାରିଖରେ ତାଙ୍କର ପ୍ରାପ୍ୟ ୩୬,୬୦୦ ଟଙ୍କା ମଧ୍ୟରୁ ତାଙ୍କୁ ୪,୬୦୦ ଟଙ୍କା ନଗଦ ଦିଆଯିବ ଓ ତତ୍ପରେ ପ୍ରତି ବର୍ଷ ଡିସେମ୍ବର ୩୧ ତାରିଖରେ ୮,୦୦୦ ଟଙ୍କା ପରିଶୋଧ କରାଯିବ । ବକେୟା ପରିମାଣ ଉପରେ ସେ ବାର୍ଷିକ ଶତକଡ଼ା ୫ ହାରରେ ସୁଧ ପାଇବେ । କ ଓ ଗ ଙ୍କର ଖାତାସ୍ଥାନରେ ଖ ଙ୍କର ଋଣ ହିସାବ ପ୍ରସ୍ତୁତ କର ।

## ସମାଧାନ

### କ ଓ ଗ ଙ୍କର ଖତିୟାନ—ଖ ଙ୍କର ଋଣ ହିସାବ

ଦାୟୀ | ଦାତା

| ତାରିଖ | ବିବରଣ | ଟଙ୍କା | ତାରିଖ | ବିବରଣ | ଟଙ୍କା |
|---|---|---|---|---|---|
| ୧୯୬୯ | | | ୧୯୬୯ | | |
| ଡିସେ-୩୧ | ବ୍ୟାଙ୍କ ହିସାବ ବାବଦ | ୪,୬୦୦ | ଡିସେ-୩୧ | କମଳଙ୍କର ମୂଳଧନ ହିସାବ ବାବଦ | ୩୬,୬୦୦ |
| | ବାକି ଗଚ୍ଛିତ | ୩୨,୦୦୦ | | | |
| | | ୩୬,୬୦୦ | | | ୩୬,୬୦୦ |
| ୧୯୭୦ | | | ୧୯୭୦ | | |
| ଡିସେ-୩୧ | ବ୍ୟାଙ୍କ ହିସାବ ବାବଦ | ୮,୦୦୦ | ଜାନୁ-୧ | ପୂର୍ବ ବାକି ବାବଦ | ୩୨,୦୦୦ |
| ୩୧ | ବାକି ଗଚ୍ଛିତ | ୨୫,୬୦୦ | ଡିସେ-୩୧ | ସୁଧ ହିସାବ ବାବଦ | ୧,୬୦୦ |
| | | ୩୩,୬୦୦ | | | ୩୩,୬୦୦ |
| ୧୯୭୧ | | | ୧୯୭୧ | | |
| ଡିସେ-୩୧ | ବ୍ୟାଙ୍କ ହିସାବ ବାବଦ | ୮,୦୦୦ | ଜାନୁ-୧ | ପୂର୍ବ ବାକି ବାବଦ | ୨୫,୬୦୦ |
| ୩୧ | ବାକି ଗଚ୍ଛିତ | ୧୮,୮୮୦ | ଡିସେ-୩୧ | ସୁଧ ହିସାବ ବାବଦ | ୧,୨୮୦ |
| | | ୨୬,୮୮୦ | | | ୨୬,୮୮୦ |
| ୧୯୭୨ | | | ୧୯୭୨ | | |
| ଡିସେ-୩୧ | ବ୍ୟାଙ୍କ ହିସାବ ବାବଦ | ୮,୦୦୦ | ଜାନୁ-୧ | ପୂର୍ବ ବାକି ବାବଦ | ୧୮,୮୮୦ |
| ୩୧ | ବାକି ଗଚ୍ଛିତ | ୧୧,୮୨୪ | ଡିସେ-୩୧ | ସୁଧ ହିସାବ ବାବଦ | ୯୪୪ |
| | | ୧୯,୮୨୪ | | | ୧୯,୮୨୪ |
| ୧୯୭୩ | | | ୧୯୭୩ | | |
| ଡିସେ-୩୧ | ବ୍ୟାଙ୍କ ହିସାବ ବାବଦ | ୮,୦୦୦ | ଜାନୁ-୧ | ପୂର୍ବ ବାକି ବାବଦ | ୧୧,୮୨୪ |
| ୩୧ | ବାକି ଗଚ୍ଛିତ | ୪,୪୧୫.୨୦ | ଡିସେ-୩୧ | ସୁଧ ହିସାବ ବାବଦ | ୫୯୧.୨୦ |
| | | ୧୨,୪୧୫.୨୦ | | | ୧୨,୪୧୫.୨୦ |
| ୧୯୭୪ | | | ୧୯୭୪ | | |
| ଡିସେ-୩୧ | ବ୍ୟାଙ୍କ ହିସାବ ବାବଦ | ୪,୬୩୫.୯୬ | ଜାନୁ-୧ | ପୂର୍ବ ବାକି ବାବଦ | ୪,୪୧୫.୨୦ |
| | | | ଡିସେ-୩୧ | ସୁଧ ହିସାବ ବାବଦ | ୨୨୦.୭୬ |
| | | ୪,୬୩୫.୯୬ | | | ୪,୬୩୫.୯୬ |

୪। ଅଂଶୀଦାରଙ୍କର ମୃତ୍ୟୁ (Death of a Partner)—

କୌଣସି ଅଂଶୀଦାରଙ୍କର ମୃତ୍ୟୁ ହେଲେ ଅଂଶୀଦାର ଅବସର ଗ୍ରହଣ କରିବା ସମୟରେ ହିସାବ ରକ୍ଷଣ ସମ୍ବନ୍ଧୀୟ ଯେଉଁ ସମାଯୋଜନ କରାଯାଏ ସେହି ସମାଯୋଜନଗୁଡ଼ିକ ପ୍ରଯୁଜ୍ୟ ହେବ। (୧)ଠାରୁ (୪) ପର୍ଯ୍ୟନ୍ତ ସମସ୍ତ ବିଷୟ ଅନୁରୂପ ରହିବ। କେବଳ ଅବସର ଗ୍ରହଣକାରୀ ଅଂଶୀଦାରଙ୍କର ଋଣ ହିସାବ ପରିବର୍ତ୍ତେ ଏ କ୍ଷେତ୍ରରେ ମୃତ ଅଂଶୀଦାରଙ୍କ ତତ୍ତ୍ୱାବଧାରକଙ୍କ ହିସାବ (Deceased Partner's Executor's A/c) ଖୋଲାଯିବ। ମୃତ ଅଂଶୀଦାରଙ୍କର ମୂଳଧନ ହିସାବର ବାକୀ ଏହି ହିସାବକୁ ସ୍ଥାନାନ୍ତରିତ ହେବ ଓ ମୃତ ଅଂଶୀଦାରଙ୍କର ପ୍ରାପ୍ୟ ଟଙ୍କା ତତ୍ତ୍ୱାବଧାରକଙ୍କୁ ନଗଦ ଆକାରରେ ଦିଆଯିବ। ଯଦି ଅସୁବିଧାବଶତଃ ଏହି ଟଙ୍କା ନଗଦ ଦିଆଯାଇ ନ ପାରେ ତାହାହେଲେ ତତ୍ତ୍ୱାବଧାରକଙ୍କ ସମ୍ମତିକ୍ରମେ ଏହି ବାକୀ ତତ୍ତ୍ୱାବଧାରକଙ୍କର ଋଣ ହିସାବକୁ ସ୍ଥାନାନ୍ତରିତ ହେବ। ପରେ ଚୁକ୍ତି ଅନୁଯାୟୀ କେତେକ କିସ୍ତିରେ ଏହି ଦେୟ ଅର୍ଥ ପରିଶୋଧ କରାଯାଏ।

ଯଦି କୌଣସି ଅଂଶୀଦାର ଦେଉଳିଆ ଘୋଷିତ ହୁଅନ୍ତି ତାହାହେଲେ ଉପରୋକ୍ତ କାର୍ଯ୍ୟଧାରା ତାଙ୍କ କ୍ଷେତ୍ରରେ ମଧ୍ୟ ପ୍ରଯୁଜ୍ୟ ହେବ। କାରଣ ଆଇନ ଅନୁଯାୟୀ ସେ ଅଂଶୀଦାରୀ କାରବାରର ଆଉ ଏକ ଅଂଶୀଦାର ରୂପେ ରହିପାରିବେ ନାହିଁ।

ଅଂଶୀଦାରଙ୍କ ମୃତ୍ୟୁ ଘଟିଲେ ହିସାବ ରକ୍ଷଣ ସମ୍ବନ୍ଧୀୟ ସମାଯୋଜନ କିପରି କରାଯିବ ତାହା ନିମ୍ନ ଦୃଷ୍ଟାନ୍ତରେ ପ୍ରଦତ୍ତ ହେଲା।

ଦୃଷ୍ଟାନ୍ତ (୩୨)

ରାଜକିଶୋର, ବ୍ରଜକିଶୋର ଓ ନବକିଶୋର ଗୋଟିଏ ଅଂଶୀଦାରୀ କାରବାରରେ ଅଂଶୀଦାର ଥାଇ ଲାଭର ଯଥାକ୍ରମେ ³⁄₁₀, ²⁄₅ ଓ ³⁄₁₀ ଅଂଶ ଭୋଗ କରୁଥିଲେ। ତାଙ୍କର ୧୯୭୦ ମସିହା ଡିସେମ୍ବର ୩୧ ତାରିଖର ଉଦ୍‌ବୃତ୍ତ ପତ୍ର ନିମ୍ନରେ ପ୍ରଦତ୍ତ ହେଲା।

| ଦେୟ | | ଟଙ୍କା | ସମ୍ପତ୍ତି | ଟଙ୍କା |
|---|---|---|---|---|
| ମୂଳଧନ ହିସାବ : | | | କଳକବ୍ଜା | ୩୦,୦୦୦ |
| ରାଜକିଶୋର | ଟ ୨୪,୦୦୦ | | ଆସବାବ୍ | ୧୦,୦୦୦ |
| ବ୍ରଜକିଶୋର | ଟ ୧୭,୦୦୦ | | ମହଜୁଦ୍ ପଣ୍ୟ | ୧୫,୦୦୦ |
| ନବକିଶୋର | ଟ ୧୨,୦୦୦ | ୫୨,୦୦୦ | ବିବିଧ ଖାତକ | ୧୨,୦୦୦ |
| ବିବିଧ ମହାଜନ | | ୧୦,୦୦୦ | ବ୍ୟାଙ୍କରେ ଗଚ୍ଛିତ | ୧୩,୦୦୦ |
| ସାଧାରଣ ସଞ୍ଚିତ | | ୧୮,୦୦୦ | | |
| | | ୮୦,୦୦୦ | | ୮୦,୦୦୦ |

ବ୍ରଜକିଶୋରଙ୍କର ୧୯୭୧ ମସିହା ଅପ୍ରେଲ ୩୦ ତାରିଖରେ ମୃତ୍ୟୁ ଘଟିଲା । ଅଂଶୀଦାରୀ ଚୁକ୍ତି ପତ୍ରରେ କୌଣସି ଅଂଶୀଦାରଙ୍କର ମୃତ୍ୟୁ ଘଟିଲେ ନିମ୍ନଲିଖିତ ସର୍ତ୍ତଗୁଡ଼ିକ ପାଳିତ ହେବ ବୋଲି ତହିଁରେ ଉଲ୍ଲିଖିତ ଥିଲା :

(୧) ପୂର୍ବ ହିସାବ ବର୍ଷ ଶେଷ ତାରିଖରେ ପ୍ରସ୍ତୁତ ହୋଇଥିବା ଉଦ୍ବୃତ୍ତ ପତ୍ରରେ ମୃତ ଅଂଶୀଦାରଙ୍କର ମୂଳଧନ ପରିମାଣ ଯେତେ ଥିବ ମୃତ୍ୟୁ ସମୟରେ ତାଙ୍କର ମୂଳଧନର ପରିମାଣ ସେତିକି ବୋଲି ଧରାଯିବ । ସେ ମୃତ୍ୟୁ ଦିନଠାରୁ ପର୍ଯ୍ୟନ୍ତ ଲାଭର ଆନୁପାତିକ ଅଂଶ ପାଇବେ ଓ ଏହି ଲାଭ ଗତ ତିନି ବର୍ଷର ହାରାହାରି ଲାଭର ପରିମାଣ ସହିତ ସମାନ ହେବ ।

(୨) ବ୍ୟବସାୟର ସୁନାମ ତିନି ବର୍ଷର ହାରାହାରି ଲାଭର ଦୁଇ ଗୁଣ ରୂପେ ଧାର୍ଯ୍ୟ କରାଯିବ ।

ମୃତ ଅଂଶୀଦାରଙ୍କର ସମୁଦାୟ ପ୍ରାପ୍ୟ ପରିମାଣ ତାଙ୍କ ଉତ୍ତରାଧିକାରୀଙ୍କ ନାମରେ ଏକ ଋଣ ହିସାବ ଖୋଲାଯାଇ ସେହି ହିସାବକୁ ସ୍ଥାନାନ୍ତରିତ ହେବ । ସମସ୍ତ ପରିମାଣ ୬ ମାସିଆ କିସ୍ତିରେ ଦୁଇଟି ହିସାବ ବର୍ଷ ମଧ୍ୟରେ ପରିଶୋଧ କରାଯିବ ଏବଂ ପ୍ରଥମ କିସ୍ତି ମୃତ୍ୟୁର ଅବ୍ୟବହିତ ପରେ ପରିଶୋଧ କରାଯିବ । ବାକିଥିବା ଦେୟ ପରିମାଣ ଉପରେ ଶତକଡ଼ା ୬ ହାରରେ ସୁଧ ଦିଆଯିବ ।

ଗତ ତିନି ବର୍ଷର ଲାଭ ଯଥାକ୍ରମେ ୧୬,୦୦୦ ଟଙ୍କା, ୧୮,୦୦୦ ଟଙ୍କା ଓ ୨୦,୦୦୦ ଟଙ୍କା ହୋଇଥିଲା ।

ଆବଶ୍ୟକ ଜାବେଦା ଓ ଉତ୍ତରାଧିକାରୀଙ୍କର ଋଣ ହିସାବ ବନ୍ଦ ହେବା ପର୍ଯ୍ୟନ୍ତ ତାହା କପରି ଲେଖାଯିବ ତାହା ମଧ୍ୟ ଦର୍ଶାଅ ।

## ସମାଧାନ

| ବର୍ଷ | ଲାଭର ପରିମାଣ |
|---|---|
| | ଟଙ୍କା |
| ୧୯୬୮ | ୧୬,୦୦୦ |
| ୧୯୬୯ | ୧୮,୦୦୦ |
| ୧୯୭୦ | ୨୦,୦୦୦ |
| ମୋଟ ଲାଭ | ୫୪,୦୦୦ |

ବାର୍ଷିକ ହାରାହାରି ଲାଭ — ଟ ୫୪,୦୦୦ ÷ ୩ = ଟ ୧୮,୦୦୦

ଅତଏବ ୧୯୭୧ ମସିହା ଅପ୍ରେଲ ୩୦ ତାରିଖ ପୁର୍ବା ଲଭର ପରିମାଣ ଟ ୧୮,୦୦୦ ÷ ୩ = ଟ ୬,୦୦୦ ।

ବ୍ରଜକିଶୋରଙ୍କର ଲଭର ଅଂଶ ଟ ୬,୦୦୦ର $\frac{୧}{୬}$ = ଟ ୧,୦୦୦ ।

ସୁନାମର ମୂଲ୍ୟ ଟ ୧୮,୦୦୦ × ୨ = ଟ ୩୬,୦୦୦ ।

ବ୍ରଜକିଶୋରଙ୍କ ଅଂଶ ଟ ୩୬,୦୦୦ ର $\frac{୧}{୩}$ = ଟ ୧୨,୦୦୦ ।

ଜାବେଦା

| | | ଦାୟୀ | ଦାତା |
|---|---|---|---|
| ୧୯୭୧ | ସୁନାମ ହିସାବ ଦାୟୀ | ଟଙ୍କା | ଟଙ୍କା |
| ଅପ୍ରେଲ- | ବ୍ରଜକିଶୋରଙ୍କର ମୂଳଧନ ହିସାବ ବାବଦ | ୧୨,୦୦୦ | |
| ୩୦ | (ସୁନାମର ମୂଲ୍ୟ ନିର୍ଣ୍ଣୟ କରାଯାଇ ବ୍ରଜକିଶୋରଙ୍କ ଅଂଶ ବାବଦ ପରିମାଣ ସହାରେ ତାଙ୍କର ମୂଳଧନ ହିସାବକୁ ଦାତା କରାଗଲା) | | ୧୨,୦୦୦ |
| ୩୦ | ରାଜକିଶୋରଙ୍କର ମୂଳଧନ ହିସାବ ଦାୟୀ | ୯,୦୦୦ | |
| | ନବକିଶୋରଙ୍କର ମୂଳଧନ ହିସାବ ଦାୟୀ | ୩,୦୦୦ | |
| | ସୁନାମ ହିସାବ ବାବଦ | | ୧୨,୦୦୦ |
| | ( ଅବଶିଷ୍ଟ ଅଂଶୀଦାରଙ୍କର ମୂଳଧନ ହିସାବକୁ ୩:୧ ଅନୁପାତରେ ଦାୟୀ କରାଯାଇ ସୁନାମ ହିସାବକୁ ବନ୍ଦ କରାଗଲା ) | | |
| ୩୦ | ଲଭ ଓ କ୍ଷତି ଅନିଶ୍ଚିତ ହିସାବ ଦାୟୀ | ୧,୦୦୦ | |
| | ବ୍ରଜକିଶୋରଙ୍କ ମୂଳଧନ ହିସାବ ବାବଦ | | ୧,୦୦୦ |
| | ( ଅପ୍ରେଲ ୩୦ ତାରିଖ ପର୍ଯ୍ୟନ୍ତ ୪ ମାସର ଆନୁପାତିକ ଲଭର ଅଂଶ ସହାରେ ବ୍ରଜକିଶୋରଙ୍କର ମୂଳଧନ ହିସାବକୁ ଦାତା କରାଗଲା ) | | |
| ୩୦ | ସାଧାରଣ ସଞ୍ଚିତ ହିସାବ ଦାୟୀ | ୬,୦୦୦ | |
| | ବ୍ରଜକିଶୋରଙ୍କର ମୂଳଧନ ହିସାବ ବାବଦ | | ୬,୦୦୦ |
| | ( ସାଧାରଣ ସଞ୍ଚିତର ଆନୁପାତିକ ଅଂଶ $\frac{୧}{୬}$ ଅଂଶ ବ୍ରଜକିଶୋରଙ୍କ ମୂଳଧନ ହିସାବକୁ ସ୍ଥାନାନ୍ତରିତ କରାଗଲା ) | | |
| ୩୦ | ବ୍ରଜକିଶୋରଙ୍କର ମୂଳଧନ ହିସାବ ଦାୟୀ | ୩୬,୦୦୦ | |
| | ବ୍ରଜକିଶୋରଙ୍କର ଉତ୍ତରାଧିକାରଙ୍କର ଋଣ ହିସାବ ବାବଦ | | ୩୬,୦୦୦ |
| | ( ବ୍ରଜକିଶୋରଙ୍କର ମୂଳଧନ ହିସାବର ବାକୀ ତାଙ୍କର ଉତ୍ତରାଧିକାରଙ୍କର ଋଣ ହିସାବକୁ ସ୍ଥାନାନ୍ତରିତ କରାଗଲା ) | | |

ଦାୟୀ — ବ୍ରଜକିଶୋରଙ୍କର ମୂଳଧନ ହିସାବ — ଦାତା

| ୧୯୭୧ | | ଟଙ୍କା | ୧୯୭୧ | | ଟଙ୍କା |
|---|---|---|---|---|---|
| ଅପ୍ରେଲ-୩୧ | ବ୍ରଜକିଶୋରଙ୍କର ଉତ୍ତରାଧିକାରୀଙ୍କର ଋଣ ହିସାବ ବାବଦ (ସ୍ଥାନାନ୍ତରଣ) | ୩୭,୦୦୦ | ଜାନୁ-୧ | ପୂର୍ବ ବାକୀ ବାବଦ | ୧୭,୦୦୦ |
| | | | ଅପ୍ରେଲ-୩୦ | ସୁନାମ ହିସାବ ବାବଦ | ୧୨,୦୦୦ |
| | | | ୩୦ | ସାଧାରଣ ସଞ୍ଚିତ ହିସାବ ବାବଦ | ୭,୦୦୦ |
| | | | ୩୦ | ଅନିର୍ଣ୍ଣିତ ଲାଭ ହି: ବାବଦ | ୨,୦୦୦ |
| | | ୩୭,୦୦୦ | | | ୩୭,୦୦୦ |

ଦାୟୀ — (ମୃତ) ବ୍ରଜକିଶୋରଙ୍କର ଉତ୍ତରାଧିକାରୀଙ୍କର ଋଣ ହିସାବ — ଦାତା

| ୧୯୭୧ | | ଟଙ୍କା | ୧୯୭୧ | | ଟଙ୍କା |
|---|---|---|---|---|---|
| ଅପ୍ରେଲ-୩୦ | ବ୍ୟାଙ୍କ ହିସାବ ବାବଦ | ୯,୦୦୦ | ଅପ୍ରେଲ-୩୦ | ବ୍ରଜକିଶୋରଙ୍କର ମୂଳଧନ ହିସାବ ବାବଦ | ୩୭,୦୦୦ |
| ଅକ୍ଟୋ-୩୧ | ବ୍ୟାଙ୍କ ହିସାବ ବାବଦ | ୯,୮୧୦ | ଅକ୍ଟୋ-୩୧ | ସୁଧ ହିସାବ ବାବଦ | ୮୧୦ |
| ଡିସେ-୩୧ | ବାକୀ ଗଡ଼ିଲା | ୧୮,୦୦୦ | | | |
| | | ୩୭,୮୧୦ | | | ୩୭,୮୧୦ |
| ୧୯୭୨ | | | ୧୯୭୨ | | |
| | | | ଜାନୁ-୧ | ପୂର୍ବ ବାକୀ ବାବଦ | ୧୮,୦୦୦ |
| ଅପ୍ରେଲ-୩୦ | ବ୍ୟାଙ୍କ ହିସାବ ବାବଦ | ୯,୫୪୦ | ଅପ୍ରେଲ-୩୦ | ସୁଧ ହିସାବ ବାବଦ | ୫୪୦ |
| ଅକ୍ଟୋ-୩୧ | ବ୍ୟାଙ୍କ ହିସାବ ବାବଦ | ୯,୨୭୦ | ଅକ୍ଟୋ-୩୧ | ସୁଧ ହିସାବ ବାବଦ | ୨୭୦ |
| | | ୧୮,୮୧୦ | | | ୧୮,୮୧୦ |

## ଯୌଥ-ଜୀବନ ବୀମା ପତ୍ର (Joint Life Policy)—

ଅଂଶୀଦାରୀ କାରବାରରେ—କୌଣସି ଅଂଶୀଦାରଙ୍କର ମୃତ୍ୟୁ ଘଟିଲେ ତାଙ୍କର ପ୍ରାପ୍ୟ ସମସ୍ତ ପରିମାଣ ତାଙ୍କର ଉତ୍ତରାଧିକାରୀଙ୍କୁ ଯଥା ଶୀଘ୍ର ପରିଶୋଧ କରିବା ସମୟରେ ନଗଦ ଅର୍ଥ ପ୍ରକାଶେ ବ୍ୟବସାୟ ଉପରେ ପ୍ରଭୂତ ପରିମାଣର ଚାପ ପଡ଼େ । କେତେକ

ସମୟରେ ଏହା ଏତେ ଗୁରୁତର ହୁଏ ଯେ ବ୍ୟବସାୟର କାର୍ଯ୍ୟକାରୀ ପୁଞ୍ଜି (Working Capital) ଅଭାବରୁ ତାହା ଅଚଳ ହୋଇପଡ଼େ ଏବଂ ଅବଶିଷ୍ଟ ଅଂଶୀଦାରମାନେ ବ୍ୟବସାୟ ବନ୍ଦ କରିବା ପାଇଁ ବାଧ୍ୟ ହୁଅନ୍ତି । ଏହି ଅନିଶ୍ଚିତ ବିପତ୍ତିରୁ ରକ୍ଷା ପାଇବା ସକାଶେ କେତେକ ଅଂଶୀଦାରୀ ବ୍ୟବସାୟସବୁ ଅଂଶୀଦାରଙ୍କ ନାମରେ ଏକ ଯୌଥ-ଜୀବନ ବୀମାପତ୍ର କରନ୍ତି । ଏହା ଫଳରେ କୌଣସି ଅଂଶୀଦାରଙ୍କର ମୃତ୍ୟୁ ଘଟିଲେ ଏହି ବୀମାପତ୍ର ବାବଦ ବୀମା କରାଯାଇଥିବା ଅର୍ଥ ବୀମା କମ୍ପାନୀରୁ ମିଳେ । ସେହି ଅର୍ଥ ସାହାଯ୍ୟରେ ମୃତ ଅଂଶୀଦାରଙ୍କର ପ୍ରାପ୍ୟ ପରିଶୋଧ କରିବା ସହଜ ହୁଏ ଓ ଏଥି ସକାଶେ ବ୍ୟବସାୟର ପୁଞ୍ଜି ଉପରେ କୌଣସି ଚାପ ପଡ଼େ ନାହିଁ । ଏପରି କ୍ଷେତ୍ରରେ ବିଭିନ୍ନ ପଦ୍ଧତିରେ ଏହାର ହିସାବ ରଖାଯାଏ । ଦୃଷ୍ଟାନ୍ତ ସହ ଏହି ପଦ୍ଧତିଗୁଡ଼ିକ ନିମ୍ନରେ ପ୍ରାଞ୍ଜଳ କରାଗଲା ।

**ପ୍ରଥମ ପଦ୍ଧତି** :—ଏହି ପଦ୍ଧତି ଅନୁଯାୟୀ ଏହି ବୀମା ବାବଦ ଯେଉଁ ପ୍ରିମିୟମ ଦିଆଯାଏ ସେଥି ସକାଶେ ପ୍ରିମିୟମ ହିସାବକୁ ଦାୟୀ ଓ ବ୍ୟାଙ୍କ୍ ହିସାବକୁ ଦାତା କରାଯାଏ । ଏହି ପ୍ରିମିୟମ ହିସାବ ବର୍ଷ ଶେଷରେ ଲାଭ ଓ କ୍ଷତି ହିସାବକୁ ସ୍ଥାନାନ୍ତରିତ ହୁଏ; କାରଣ ଏହା ବ୍ୟବସାୟର ଏକ ଖର୍ଚ୍ଚ ରୂପେ ପରିଗଣିତ ହୁଏ ; ମାତ୍ର ବୀମା ପତ୍ରକୁ ସମ୍ପତ୍ତି ଆକାରରେ ଉଦ୍‌ବୃତ୍ତ ପତ୍ରରେ ପ୍ରଦର୍ଶିତ ହୁଏ ନାହିଁ । ଯଦି କୌଣସି ଅଂଶୀଦାରଙ୍କର ମୃତ୍ୟୁ ଘଟେ ତାହାହେଲେ ଏହି ବୀମାପତ୍ର ବୀମା କମ୍ପାନୀରୁ ଯେଉଁ ଅର୍ଥ ମିଳେ ତାହା ସକାଶେ ବ୍ୟାଙ୍କ୍ ହିସାବକୁ ଦାୟୀ କରାଯାଏ ଓ ମୃତ ଅଂଶୀଦାରଙ୍କ ସମେତ ସବୁ ଅଂଶୀଦାରଙ୍କର ମୂଳଧନ । ଚଳନ୍ତି ହିସାବକୁ ତାଙ୍କର ଲାଭ-କ୍ଷତି ବଣ୍ଟନ ଅନୁପାତରେ ଦାତା କରାଯାଏ । ପୁନର୍ମୂଲ୍ୟାୟନ ସମୟରେ ଯେପରି ହୁଏ ଏହାର ପ୍ରକ୍ରିୟା ମଧ୍ୟ ଅନୁରୂପ ହୁଏ । ସେହି ନଗଦ ଅର୍ଥ ମିଳେ ତାହା ସାହାଯ୍ୟରେ ମୃତ ଅଂଶୀଦାରଙ୍କର ସମସ୍ତ ପ୍ରାପ୍ୟ ଯଥା ଶୀଘ୍ର ପରିଶୋଧ କରାଯାଏ ।

ଏହି ପଦ୍ଧତି ସରଳ ହେଲେ ମଧ୍ୟ ଏହାର ପ୍ରଧାନ ତ୍ରୁଟି ହେଉଛି ଏହି ଯେ ପ୍ରିମିୟମ ଦିଆଯାଇ ଯେଉଁ ସମ୍ପତ୍ତି ଆଂଶିକ ଭାବରେ କ୍ରୟ କରାଯାଉଛି ତାହା ଉଦ୍‌ବୃତ୍ତ ପତ୍ରରେ ପ୍ରକାଶିତ ହୁଏ ନାହିଁ, ଅର୍ଥାତ୍ ଉଦ୍‌ବୃତ୍ତ ପତ୍ର ବ୍ୟବସାୟର ପ୍ରକୃତ ଆର୍ଥିକ ପରିସ୍ଥିତି ପ୍ରକାଶ କରିବାରେ ଅସମର୍ଥ ହୁଏ ।

**ବିକଳ୍ପ ପଦ୍ଧତି**— ଏହି ପଦ୍ଧତି ଅନୁଯାୟୀ ପ୍ରତି ବର୍ଷ ଯୌଥ ଜୀବନ ବୀମା ସକାଶେ ଦିଆଯାଉଥିବା ପ୍ରିମିୟମ୍ ନିମନ୍ତେ ଯୌଥ-ଜୀବନ ବୀମାପତ୍ର ହିସାବକୁ ଦାୟୀ କରାଯାଏ ଓ ବ୍ୟାଙ୍କ୍ ହିସାବକୁ ଦାତା କରାଯାଏ । ବର୍ଷ ଶେଷରେ ଯୌଥ-ଜୀବନ ବୀମା ପତ୍ର ହିସାବର ଦାୟୀ ପାର୍ଶ୍ୱରେ ଥିବା ପରିମାଣରୁ ବୀମା ପତ୍ରର ପ୍ରତ୍ୟର୍ପଣ ମୂଲ୍ୟ (Surrender Value ) ବାଦ୍ ଦିଆଯାଇ ଅନ୍ତରଫଳ ସକାଶେ ଲାଭ ଓ କ୍ଷତି ହିସାବକୁ ଦାୟୀ ଓ ଯୌଥ-ଜୀବନ ବୀମା ପତ୍ର ହିସାବକୁ ଦାତା କରାଯାଏ । ଅର୍ଥାତ୍ ଯୌଥ-ଜୀବନ ବୀମା ପତ୍ର ହିସାବର ବାକୀ ବୀମା ପତ୍ରର ପ୍ରତ୍ୟର୍ପଣ ମୂଲ୍ୟ ସହିତ ସମାନ ହୁଏ ଓ ତାହା ଉଦ୍‌ବୃତ୍ତ ପତ୍ର ସମ୍ପତ୍ତି ପାର୍ଶ୍ୱରେ ପ୍ରଦର୍ଶିତ ହୁଏ ।

ଯେତେବେଳେ କୌଣସି ଅଂଶୀଦାରଙ୍କର ମୃତ୍ୟୁ ଘଟେ ସେତେବେଳେ ବ୍ୟାଙ୍କ ହିସାବକୁ ଦାୟୀ କରାଯାଏ ଓ ଯୌଥ-ଜୀବନବୀମା ପତ୍ର ହିସାବକୁ ଦାତା କରାଯାଏ । ଏହା ପରେ ଯୌଥ ଜୀବନ ବୀମା ପତ୍ର ହିସାବରେ ଯଦି କୌଣସି ବାକୀ ଅବଶିଷ୍ଟ ଥାଏ, ତାହାହେଲେ ତାହା ମୃତ ଅଂଶୀଦାରଙ୍କ ସମେତ ସମସ୍ତ ଅଂଶୀଦାରଙ୍କର ମୂଳଧନ/ଚଳନ୍ତି ହିସାବକୁ ଲାଭ ଓ କ୍ଷତି ବଣ୍ଟନ ଅନୁପାତରେ ସ୍ଥାନାନ୍ତରିତ ହୁଏ । ଏହାର ଏକ ଦୃଷ୍ଟାନ୍ତ ନିମ୍ନରେ ପ୍ରଦତ୍ତ ହେଲା ।

### ଦୃଷ୍ଟାନ୍ତ ( ୩୩ )

କ, ଖ ଓ ଗ ଗୋଟିଏ ଅଂଶୀଦାରୀ କାରବାରରେ ଅଂଶୀଦାର ଥାଇ ଲାଭ ଓ କ୍ଷତି ୫ : ୩ : ୨ ଅନୁପାତରେ ବଣ୍ଟନ କରୁଥିଲେ । ସେମାନେ ୧୯୬୮ ମସିହା ଅପ୍ରେଲ ୧ ତାରିଖରେ ସେମାନଙ୍କର ଜୀବନ ଉପରେ ଏକ ଯୌଥ ବୀମାପତ୍ର ନେଲେ । ଏହାର ବୀମାକୃତ ଅର୍ଥର ପରିମାଣ ୪୦,୦୦୦ ଟଙ୍କା ଥିଲା ଏବଂ ପ୍ରତି ବର୍ଷ ଅପ୍ରେଲ ୧ ତାରିଖରେ ତାଙ୍କୁ ପ୍ରିମିୟମ ସ୍ୱରୂପ ୨,୦୦୦ ଟଙ୍କା ଦେବାକୁ ହେଉଥିଲା ।

ଏହି ବୀମା ପତ୍ରର ପ୍ରତ୍ୟର୍ପଣ ମୂଲ୍ୟ ନିମ୍ନପ୍ରକାର ଥିଲା :

୧୯୬୮ରେ କିଛି ନାହିଁ, ୧୯୬୯ରେ ୨୦୦ ଟଙ୍କା, ୧୯୭୦ରେ ୮୦୦ ଟଙ୍କା, ୧୯୭୧ରେ ୧,୨୦୦ ଟଙ୍କା ଓ ୧୯୭୨ରେ ୧,୬୦୦ ଟଙ୍କା ଥିଲା । ଖ ଙ୍କର ୧୯୭୨ ମସିହା ଅକ୍ଟୋବର୍ ୧୦ ତାରିଖରେ ମୃତ୍ୟୁ ଘଟିଲା ଓ ବୀମା କମ୍ପାନୀଠାରୁ ୩୧ । ୧୨ । ୭୨ ତାରିଖରେ ସଂପୂର୍ଣ୍ଣ ବୀମାକୃତ ଅର୍ଥ ମିଳିଲା ।

କ, ଖ, ଗ ଏଣ୍ଡ କଂପାନୀ ନାମକ ଅଂଶୀଦାରୀ ବ୍ୟବସାୟରେ ଯୌଥ ବୀମା ପତ୍ର ହିସାବ ( Joint Late Policy A/c ) ପ୍ରସ୍ତୁତ କର ।

## ସମାଧାନ

କ, ଖ, ଗ ଓ କମ୍ପାନୀଙ୍କର ଖତିୟାନ

ଦାୟୀ — ଯୌଥ ଜୀବନ ବୀମା ପତ୍ର ହିସାବ — ଦାତା

| | | ଟଙ୍କା | | | ଟଙ୍କା |
|---|---|---|---|---|---|
| ୧୯୬୮ ଅପ୍ରେଲ-୧ | ବ୍ୟାଙ୍କ ହିସାବ ବାବଦ | ୨,୦୦୦ | ୧୯୬୮ ଡିସେ-୩୧ | ଲାଭ ଓ କ୍ଷତି ହିସାବ ବାବଦ | ୨,୦୦୦ |

| ଗ୍ରହୀ | | | | | ଦାତା |
|---|---|---|---|---|---|
| ୧୯୬୯ | | ଟଙ୍କା | ୧୯୬୯ | | ଟଙ୍କା |
| ଅପ୍ରେଲ-୧ | ବ୍ୟାଙ୍କ ହିସାବ ବାବଦ | ୨,୦୦୦ | ଡିସେ-୩୧ | ଲାଭ ଓ କ୍ଷତି ହିସାବ ବାବଦ | ୧,୮୦୦ |
| | | | ୩୧ | ବାକି ଗଲା | ୨୦୦ |
| | | ୨,୦୦୦ | | | ୨,୦୦୦ |
| ୧୯୭୦ | | | ୧୯୭୦ | | |
| ଜାନୁଆରୀ-୧ | ପୂର୍ବ ବାକି ବାବଦ | ୨୦୦ | ଡିସେ-୩୧ | ଲାଭ ଓ କ୍ଷତି ହିସାବ ବାବଦ | ୧,୪୦୦ |
| ଅପ୍ରେଲ-୧ | ବ୍ୟାଙ୍କ ହିସାବ ବାବଦ | ୨,୦୦୦ | ୩୧ | ବାକି ଗଲା | ୮୦୦ |
| | | ୨,୨୦୦ | | | ୨,୨୦୦ |
| ୧୯୭୧ | | | ୧୯୭୧ | | |
| ଜାନୁଆରୀ-୧ | ପୂର୍ବବାକି ବାବଦ | ୮୦୦ | ଡିସେ-୩୧ | ଲାଭ ଓ କ୍ଷତି ହିସାବ ବାବଦ | ୧,୬୦୦ |
| ଅପ୍ରେଲ ୧ | ବ୍ୟାଙ୍କ ହିସାବ ବାବଦ | ୨,୦୦୦ | ୩୧ | ବାକି ଗଲା | ୧,୨୦୦ |
| | | ୨,୮୦୦ | | | ୨,୮୦୦ |
| ୧୯୭୨ | | | ୧୯୭୨ | | |
| ଜାନୁଆରୀ-୧ | ପୂର୍ବ ବାକି ବାବଦ | ୧,୨୦୦ | ଡିସେମ୍ବର-୩୧ | ବ୍ୟାଙ୍କ ହିସାବ ବାବଦ ( ବୀମାକୃତ ଅର୍ଥ ) | ୪୦,୦୦୦ |
| ଅପ୍ରେଲ-୧ | ବ୍ୟାଙ୍କ ହିସାବ ବାବଦ | ୨,୦୦୦ | | | |
| ଡିସେମ୍ବର-୩୧ | ମୂଳଧନ ହିସାବ ଗୁଡ଼ିକୁ ଲାଭ ସ୍ଥାନାନ୍ତରିତ ହେଲ : କ ଟ ୧୮,୪୦୦ ଖ ଟ ୧୧,୦୪୦ ଗ ଟ ୭,୩୬୦ | ୩୬,୮୦୦ | | | |
| | | ୪୦,୦୦୦ | | | ୪୦,୦୦୦ |

ଏଠାରେ ଲକ୍ଷ୍ୟଣୀୟ ଯେ ପ୍ରତିବର୍ଷ ଶେଷରେ ଯେତେ ଟଙ୍କା ବାକି ରହୁଛି ତାହା ବୀମା ପତ୍ରର ପ୍ରତ୍ୟର୍ପଣ ମୂଲ୍ୟ (Surrender value) ସହିତ ସମାନ ଏବଂ ତାହା ସେହି ବର୍ଷର ଉଦ୍‌ବୃତ୍ତ ପତ୍ରର ସଂପତ୍ତି ପାର୍ଶ୍ୱରେ ଅନ୍ତର୍ଭୁକ୍ତ ହେବ । ଏହି ପଦ୍ଧତିର ସୁବିଧା ହେଉଛି

ଏହି ଯେ ବୀମା କମ୍ପାନୀଠାରୁ ମିଳିଥିବା ନଗଦ ଅର୍ଥଦ୍ୱାରା ମୃତ ଅଂଶୀଦାରଙ୍କର ସମସ୍ତ ପ୍ରାପ୍ୟ ତତ୍‌କ୍ଷଣାତ୍ ପରିଶୋଧ କରାଯାଇ ପାରିବ ଓ ସେପରି କରାଗଲେ ବ୍ୟବସାୟର କାର୍ଯ୍ୟକାରୀ ପୁଞ୍ଜି ଉପରେ ଆଦୌ କୌଣସି ଚାପ ପଡ଼ିବ ନାହିଁ ।

## ବାର୍ଷିକୀ ( Annuity )

କେତେକ ସମୟରେ ଅଂଶୀଦାରୀ ଚୁକ୍ତି ପତ୍ରରେ ଏପରି ଥାଇପାରେ ଯେ ଅବସର ପ୍ରାପ୍ତ ଅଂଶୀଦାରଙ୍କୁ ଅବସର ଗ୍ରହଣର ପରଠାରୁ କେତେକ ନିର୍ଦ୍ଦିଷ୍ଟ ବର୍ଷ ପର୍ଯ୍ୟନ୍ତ ଅଥବା ମୃତ ଅଂଶୀଦାରଙ୍କର ବିଧବା ସ୍ତ୍ରୀଙ୍କୁ ତାଙ୍କର ମୃତ୍ୟୁ ପର୍ଯ୍ୟନ୍ତ ଏକ ନିର୍ଦ୍ଦିଷ୍ଟ ପରିମାଣର ବାର୍ଷିକୀ ( ବାର୍ଷିକ ଭତ୍ତା ) ଦେବାକୁ ହେବ । ଏପରି କ୍ଷେତ୍ରରେ ବାର୍ଷିକୀ ପ୍ରଦାନ କରାଗଲେ ନିମ୍ନ-ଲିଖିତ ଜାବ୍‌ଦା ଆବଶ୍ୟକ ହେବ ।

| | | |
|---|---|---|
| ବାର୍ଷିକୀ ହିସାବ<br>ବ୍ୟାଙ୍କ ହିସାବ ବାବଦ | ଦାୟୀ | ବାର୍ଷିକୀର ପରିମାଣ ସକାଶେ |
| ଲାଭ ଓ କ୍ଷତି ହିସାବ<br>ବାର୍ଷିକୀ ହିସାବ ବାବଦ | ଦାୟୀ | ,, |

ଏଠାରେ ଅବଧେୟ ଯେ ପ୍ରଦତ୍ତ ବାର୍ଷିକୀ ପରିମାଣ ବ୍ୟବସାୟର ଏକ ଖର୍ଚ୍ଚ ( charge againest profit ) ରୂପେ ପରିଗଣିତ କରାଯାଇଛି ।

ଏହାର ବିକଳ୍ପରେ ଅବଶିଷ୍ଟ ଅଂଶୀଦାରମାନେ ଏହି ବାର୍ଷିକୀ ପରିମାଣ ପ୍ରତି ବର୍ଷ ଦେବା ସକାଶେ ଗୋଟିଏ ବୀମା କଂପାନୀ ସହିତ ଚୁକ୍ତି କରିପାରନ୍ତି । ଏଥିନିମନ୍ତେ ବୀମା କଂପାନୀକୁ ଏକକାଳୀନ ମୋଟ ପରିମାଣ ( lump sum ) ଦେବାକୁ ପଡ଼େ । ଏପରି କ୍ଷେତ୍ରରେ ନିମ୍ନଲିଖିତ ଜାବ୍‌ଦା ଆବଶ୍ୟକ ହେବ ।

| | | |
|---|---|---|
| ବାର୍ଷିକୀ ହିସାବ<br>ବ୍ୟାଙ୍କ ହିସାବ ବାବଦ<br>( ବୀମା କଂପାନୀକୁ ଦିଆଯାଇଥିବା ଟଙ୍କା ) | ଦାୟୀ | ଏକକାଳୀନ ମୋଟ ପରିମାଣ ସକାଶେ |
| ଅଂଶୀଦାରଙ୍କର ମୂଳଧନ ହିସାବ<br>( ଅବସରପ୍ରାପ୍ତ/ମୃତ ଅଂଶୀଦାର )<br>ବାର୍ଷିକୀ ହିସାବ ବାବଦ | ଦାୟୀ | ଏକକାଳୀନ ମୋଟ ପରିମାଣ ସକାଶେ |

ଏ କ୍ଷେତ୍ରରେ ଯଦିଓ ବୀମା କଂପାନୀକୁ ବାର୍ଷିକୀ ପରିମାଣ କ୍ରୟ କରିବା ନିମନ୍ତେ ଦିଆଯାଉଥିବା ଏକକାଳୀନ ମୋଟ ଟଙ୍କା ସକାଶେ ମୃତ ଅଥବା ଅବସରପ୍ରାପ୍ତ ଅଂଶୀ-ଦାରଙ୍କର ମୂଳଧନ ହିସାବକୁ ଦାୟୀ କରାଯାଏ, ତଥାପି ପୂର୍ବୋକ୍ତ ପଦ୍ଧତି ଅନୁଯାୟୀ

ବାର୍ଷିକୀକୁ ବ୍ୟବସାୟର ଏକ ଖର୍ଚ୍ଚ ରୂପେ ପରିଗଣିତ କରାଯାଏ । ଅବଶ୍ୟ ଏହା ଅଧିକାଂଶ ସମୟରେ ସୁନାମ ବାବଦ ତାଙ୍କର ପ୍ରାପ୍ୟ ପରିମାଣ ବଦଳରେ ଦିଆଯାଏ, ତେବେ କେତେକ ସମୟରେ ସୁନାମ ବାବଦ ତାଙ୍କ ଅଂଶ ବାହାରେ ମଧ୍ୟ ଦିଆଯାଇପାରେ । ଏହା ଅଂଶୀଦାରୀ ଚୁକ୍ତିର ସର୍ତ୍ତ ଉପରେ ନିର୍ଭର କରିବ ।

## ୫ । ଏକୀକରଣ ( Amalgamation )

ଅନେକ ସମୟରେ ଏକବିଧ ବ୍ୟବସାୟରେ ଲିପ୍ତ ଦୁଇଟି ଅଂଶୀଦାରୀ କାରବାର ପ୍ରତିଯୋଗିତା ଏଡ଼ାଇବା ସକାଶେ ଅଥବା ଅନ୍ୟାନ୍ୟ କୌଣସି ସୁବିଧା ଉପଭୋଗ କରିବା ସକାଶେ ଏକୀକୃତ କରାଯାଇ ଗୋଟିଏ ନୂତନ ଅଂଶୀଦାରୀ କାରବାର ଗଠନ କରାଯାଏ । ସେ କ୍ଷେତ୍ରରେ ପ୍ରତ୍ୟେକ ଅଂଶୀଦାରୀ କାରବାରର ସଂପତ୍ତି ଓ ଦେଣାଗୁଡ଼ିକର ପୁନର୍ମୂଲ୍ୟାୟନ କରାଯାଇ ଅଂଶୀଦାରମାନଙ୍କର ସମାଯୋଜିତ ମୂଳଧନ ହିସାବ ସାବ୍ୟସ୍ତ କରାଯାଏ ଏବଂ ଅଂଶୀଦାରମାନଙ୍କର ଏହି ମୂଳଧନ ପରିମାଣ ନୂତନ ଅଂଶୀଦାରୀ କାରବାରରେ ତାଙ୍କର ମୂଳଧନ ରୂପେ ବିବେଚିତ ହୁଏ । ଏଥି ସକାଶେ ନିମ୍ନଲିଖିତ ପଦକ୍ଷେପମାନ ଆବଶ୍ୟକ ହୁଏ ।

(କ) ପ୍ରତ୍ୟେକ ଅଂଶୀଦାରୀ କାରବାର ଏହାର ସଂପତ୍ତି ଓ ଦେୟ କ୍ଷମରେ ଗୋଟିଏ ପୁନର୍ମୂଲ୍ୟାୟନ ହିସାବ ଖୋଲିବା ଏହି ହିସାବର ବାକି ଅଂଶୀଦାରମାନଙ୍କର ମୂଳଧନ ହିସାବକୁ ସେମାନଙ୍କର ଲାଭ ଓ କ୍ଷତି ବର୍ଣ୍ଟନ ଅନୁପାତରେ ସ୍ଥାନାନ୍ତରିତ ହେବ ।

(ଖ) ସୁନାମ ହିସାବ ଖୋଲାଯାଇ ତାହାର ବାକିକୁ ଅଂଶୀଦାରମାନଙ୍କର ମୂଳଧନ ହିସାବକୁ ଲାଭ-କ୍ଷତି ବର୍ଣ୍ଟନ ଅନୁପାତରେ ସ୍ଥାନାନ୍ତରିତ କରାଯିବ ।

(ଗ) ଯେଉଁ ସମ୍ପତ୍ତି ଓ ଦେଣା ନୂତନ ଅଂଶୀଦାରୀ କାରବାର ଗ୍ରହଣ କରିବ ନାହିଁ ସେଗୁଡ଼ିକର ବାକିକୁ ପାରସ୍ପରିକ ମୂଳଧନ ଅନୁପାତରେ ସେମାନଙ୍କର ମୂଳଧନ ହିସାବକୁ ସ୍ଥାନାନ୍ତରିତ କରାଯାଇ ଉକ୍ତ ହିସାବଗୁଡ଼ିକୁ ବନ୍ଦ କରାଯିବ ।

(ଘ) ସମ୍ପତ୍ତି ଓ ଦେୟର ଅନ୍ତରଫଳ ସକାଶେ ନୂତନ ଅଂଶୀଦାରୀ କାରବାରକୁ ଦାୟୀ କରାଯିବ ଏବଂ ପ୍ରତି ଅଂଶୀଦାରୀ କାରବାରର ସମ୍ପତ୍ତି ହିସାବଗୁଡ଼ିକୁ ଦାତା ଓ ଦେୟ ହିସାବଗୁଡ଼ିକୁ ଦାୟୀ କରାଯିବ ।

(ଙ) ଅଂଶୀଦାରମାନଙ୍କର ମୂଳଧନ ହିସାବଗୁଡ଼ିକ ନୂତନ ଅଂଶୀଦାରୀ କାରବାରକୁ ସ୍ଥାନାନ୍ତରିତ କରାଯିବ ।

ଏହି ପଦକ୍ଷେପମାନ ନିଆଯିବା ଫଳରେ ପୁରାତନ ଅଂଶୀଦାରୀ କାରବାରର ହିସାବ-ଗୁଡ଼ିକ ବନ୍ଦ ହୋଇଯିବ । ନୂତନ ଅଂଶୀଦାରୀ କାରବାରର ହିସାବମାନ ଖୋଲିବା ନିମନ୍ତେ ନିମ୍ନଲିଖିତ ପଦକ୍ଷେପମାନ ନିଆଯିବ ।

(କ) ସମ୍ମତ ମୂଲ୍ୟରେ ସମ୍ପତ୍ତି ହିସାବଗୁଡ଼ିକୁ ଦାୟୀ କରାଯିବ ।

(ଖ) ସମ୍ମତ ମୂଲ୍ୟରେ ଦେୟ ହିସାବଗୁଡ଼ିକୁ ଦାତା କରାଯିବ ।

(ଗ) ଅଂଶୀଦାରମାନଙ୍କର ମୂଳଧନ ହିସାବକୁ ଦାତା କରାଯିବ । ଏହାର ଏକ ଦୃଷ୍ଟାନ୍ତ ନିମ୍ନରେ ପ୍ରଦତ୍ତ ହେଲା ।

### ଦୃଷ୍ଟାନ୍ତ (୩୪)

କ, ଖ ଓ କମ୍ପାନୀ ଏବଂ ଗ, ଘ ଓ କମ୍ପାନୀ ଦୁଇଟି ସ୍ୱତନ୍ତ୍ର ଅଂଶୀଦାରୀ କାରବାର ଅଟନ୍ତି । ସେହି ପ୍ରତିଷ୍ଠାନ ଦୁଇଟି ୧୯୭୪ ମସିହା ଜାନୁଆରୀ ୧ ତାରିଖରେ ମିଳିତ ହୋଇ କ ଖ ଗ ଘ ଓ କମ୍ପାନୀ ନାମକ ଏକ ନୂତନ ଅଂଶୀଦାରୀ କାରବାର ପ୍ରତିଷ୍ଠା କରିବେ ବୋଲି ସ୍ଥିର କଲେ । କ ଓ ଖ ଲାଭ ଓ କ୍ଷତିକୁ ୫ : ୩ ଅନୁପାତରେ ଓ ଗ ଓ ଘ ୨ : ୧ ଅନୁପାତରେ ବଣ୍ଟନ କରୁଥିଲେ । ନୂତନ ପ୍ରତିଷ୍ଠାନରେ ତାଙ୍କର ଲାଭ ଓ କ୍ଷତି ବଣ୍ଟନର ଅନୁପାତ ୪ : ୩ : ୨ : ୧ ରହିବାର ସ୍ଥିର ହେଲା ।

୧୯୭୩ ମସିହା ଡିସେମ୍ବର ୩୧ ତାରିଖରେ ତାଙ୍କର ଉଦ୍‌ବୃତ୍ତ ପତ୍ର ନିମ୍ନରେ ପ୍ରଦତ୍ତ ହେଲା :

| | | କ ଓ ଖ | ଗ ଓ ଘ | | କ ଓ ଖ | ଗ ଓ ଘ |
|---|---|---|---|---|---|---|
| | | ଟଙ୍କା | ଟଙ୍କା | | ଟଙ୍କା | ଟଙ୍କା |
| ବିବିଧ ମହାଜନ | | ୧୨,୦୦୦ | ୬,୦୦୦ | କଳକବ୍ଜା | ୩୦,୦୦୦ | ୨୦,୦୦୦ |
| କ ଙ୍କର ଋଣ | | ୯,୦୦୦ | | ମହଜୁଦ ପଣ୍ୟ | ୧୫,୦୦୦ | ୧୨,୦୦୦ |
| ସାଧାରଣ ସଞ୍ଚିତ | | ୮,୦୦୦ | ୭,୦୦୦ | ବିବିଧ ଖାତକ | ୧୮,୦୦୦ | ୧୧,୦୦୦ |
| ମୂଳଧନ | କ | ୩୦,୦୦୦ | | ବ୍ୟାଙ୍କରେ ଗଚ୍ଛିତ | ୮,୦୦୦ | ୫,୦୦୦ |
| | ଖ | ୨୨,୦୦୦ | | ହାତନଗଦ | ୧୦,୦୦୦ | |
| | ଗ | | ୨୦,୦୦୦ | | | |
| | ଘ | | ୧୫,୦୦୦ | | | |
| | | ୮୧,୦୦୦ | ୪୮,୦୦୦ | | ୮୧,୦୦୦ | ୪୮,୦୦୦ |

ଏକୀକରଣର ସର୍ତ୍ତାବଳୀ ନିମ୍ନରେ ପ୍ରଦତ୍ତ ହେଲା :

(କ) କ, ଖ ଓ କମ୍ପାନୀ—କଳକବ୍ଜାର ମୂଲ୍ୟ ୨୫,୦୦୦ ଟଙ୍କାକୁ ଓ ମହଜୁଦ ପଣ୍ୟର ମୂଲ୍ୟ ୧୩,୦୦୦ ଟଙ୍କାକୁ ହ୍ରାସ କରାଯିବ । ଆସବାବପତ୍ରର ମୂଲ୍ୟ ଅପରିବର୍ତ୍ତିତ ରହିବ । ବିବିଧ ଖାତକ ପରିମାଣ ଉପରେ ଶତକଡ଼ା ୧୦ ହାରରେ ଅନାଦାୟୀ ଋଣର ଏକ ସଞ୍ଚିତ ଗଢ଼ାଯିବ । ସୁନାମର ମୂଲ୍ୟ ୧୨,୦୦୦ ଟଙ୍କା ଧାର୍ଯ୍ୟ କରାଯିବ । କ ଙ୍କର ଋଣ ନୂତନ ଉଦ୍‌ବୃତ୍ତ ପତ୍ରରେ ସ୍ଥାନ ପାଇବ ।

(ଖ) ଗ, ଘ ଓ କମ୍ପାନୀ—କଳକବ୍ଜା ଓ ମହଜୁଦ ପଣ୍ୟର ମୂଲ୍ୟ ଯଥାକ୍ରମେ ୧୫,୦୦୦ ଟଙ୍କା ଓ ୧୪,୦୦୦ ଟଙ୍କା ରହିବ । ବିବିଧ ଖାତକ ପରିମାଣ ଉପରେ ଶତକଡ଼ା ୧୦ ହାରରେ ଅନାଦାୟୀ ଋଣର ଏକ ସଞ୍ଚିତ ଗଢ଼ାଯିବ । ବକେୟା ଘର ଭଡ଼ା ବାବଦ ୩୦୦ ଟଙ୍କା ସକାଶେ ବ୍ୟବସ୍ଥା କରାଯିବ । ଏହି ଅଂଶୀଦାରୀ କାରବାରର ସୁନାମ ୬,୦୦୦ ଟଙ୍କାରେ ମୂଲ୍ୟାୟିତ ହେବ ।

ପ୍ରତ୍ୟେକ ଅଂଶୀଦାରୀ ବ୍ୟବସାୟର ହିସାବ ବହିରେ ଆବଶ୍ୟକୀୟ ଜାବ୍‌ଦା, ଅଂଶୀଧାରଙ୍କର ମୂଳଧନ ହିସାବ ଓ ପୁନର୍ଗଠିତ ଉଦ୍‌ବୃତ୍ତ ପତ୍ର ଓ ଏକୀକୃତ କ, ଖ, ଗ, ଘ ଓ କମ୍ପାନୀ ବହିରେ ଆବଶ୍ୟକୀୟ ଜାବ୍‌ଦା ଓ ପ୍ରାରମ୍ଭିକ ଉଦ୍‌ବୃତ୍ତ ପତ୍ର ପ୍ରସ୍ତୁତ କର । କ ଙ୍କର ସମାଯୋଜିତ ମୂଳଧନ ପରିମାଣ ଭିତ୍ତିରେ ପ୍ରତ୍ୟେକ ଅଂଶୀଦାରଙ୍କର ମୂଳଧନର ପରିମାଣ ତାଙ୍କର ନୂତନ ଲାଭ ଓ କ୍ଷତି ବଣ୍ଟନ ଅନୁପାତରେ ରହିବ । ଆବଶ୍ୟକ ସ୍ଥଳେ ସେମାନେ ଅଧିକା ଟଙ୍କା ମୂଳଧନ ସ୍ୱରୂପ ଆଣିବେ ଏବଂ ବଳକା ହୋଇଥିଲେ ସେହି ଅଧିକା ଟଙ୍କା ତାଙ୍କର ଚଳନ୍ତି ହିସାବକୁ ସ୍ଥାନାନ୍ତରିତ କରାଯିବ ।

## ସମାଧାନ :

କ, ଖ ଓ କମ୍ପାନୀଙ୍କ ବହିରେ

| | ଜାବ୍‌ଦା | | ଦାୟୀ | ଦାତା |
|---|---|---|---|---|
| ୧୯୭୪ | | | ଟଙ୍କା | ଟଙ୍କା |
| ଜାନୁଆରୀ-୧ | ସୁନାମ ହିସାବ | ଦାୟୀ | ୧୨,୦୦୦ | |
| | ପୁନର୍ମୂଲ୍ୟାୟନ ହିସାବ ବାବଦ | | | ୧୨,୦୦୦ |
| | ( ପୁନର୍ମୂଲ୍ୟାୟନ ଫଳରେ ବଳକା ଟଙ୍କାର ସମାଯୋଜନ କରାଗଲା ) | | | |

| ୧୯୭୪ | | | | |
|---|---|---|---|---|
| ଜାନୁ : | ୧ | ପୁନର୍ମୂଲ୍ୟାୟନ ହିସାବ ଦାୟୀ | ୮,୮୦୦ | |
| | | କଳକବ୍‌ଜା ହିସାବ ବାବଦ | | ୫,୦୦୦ |
| | | ମହଜୁଦ ପଣ୍ୟ ହିସାବ ବାବଦ | | ୨,୦୦୦ |
| | | ଅନାଦାୟୀ ଋଣର ସଂଚିତ ହିସାବ ବାବଦ | | ୧,୮୦୦ |
| | | ( ପୁନର୍ମୂଲ୍ୟାୟନ ଫଳରେ ନ୍ୟୂନତା ପରିମାଣର ସମାଯୋଜନ କରାଗଲା ) | | |
| | ୧ | ପୁନର୍ମୂଲ୍ୟାୟନ ହିସାବ ଦାୟୀ | ୩,୨୦୦ | |
| | | କ ଙ୍କର ମୂଳଧନ ହିସାବ ବାବଦ | | ୨,୦୦୦ |
| | | ଖ ଙ୍କର ମୂଳଧନ ହିସାବ ବାବଦ | | ୧,୨୦୦ |
| | | (ପୁନର୍ମୂଲ୍ୟାୟନ ହିସାବର ଦାତା ବାକୀ କ ଓ ଖ ଙ୍କର ମୂଳଧନ ହିସାବକୁ ୫ : ୩ ଅନୁପାତରେ ସ୍ଥାନାନ୍ତରିତ କରାଗଲା ) | | |
| | ୧ | ସାଧାରଣ ସଂଚିତ ହିସାବ ଦାୟୀ | ୮,୦୦୦ | |
| | | କ ଙ୍କର ମୂଳଧନ ହିସାବ ବାବଦ | | ୫,୦୦୦ |
| | | ଖ ଙ୍କର ମୂଳଧନ ହିସାବ ବାବଦ | | ୩,୦୦୦ |
| | | ( ସଂଚିତ ହିସାବର ବାକୀ ଅଂଶୀଦାର, ମାନଙ୍କ ମୂଳଧନ ହିସାବକୁ ୫ : ୩ ଅନୁପାତରେ ସ୍ଥାନାନ୍ତରିତ କରାଗଲା ) | | |
| | ୧ | ବ୍ୟାଙ୍କ ହିସାବ ଦାୟୀ | ୧,୫୫୦ | |
| | | ଖ ଙ୍କର ମୂଳଧନ ହିସାବ ବାବଦ | | ୧,୫୫୦ |
| | | ( କ ଙ୍କର ସମାଯୋଜିତ ମୂଳଧନ ଭିତ୍ତିରେ ଖ ଙ୍କର ମୂଳଧନ ପରିମାଣକୁ ୩/୧୦ ଅଂଶକୁ ଆଣିବା ପାଇଁ ସେ ଆବଶ୍ୟକ ଟଙ୍କା ବ୍ୟାଙ୍କରେ ଜମା କଲେ ) | | |

ଦାୟୀ **କ ଙ୍କର ମୂଳଧନ ହିସାବ** ଦାତା

| ୧୯୭୪ | | ଟଙ୍କା | ୧୯୭୪ | | ଟଙ୍କା |
|---|---|---|---|---|---|
| ଜାନୁଆରୀ ୧ | ବାକି ଗଡ଼ିଲ | ୩୭,୦୦୦ | ଜାନୁଆରୀ-୧ | ପୂର୍ବ ବାକି ବାବଦ | ୩୦,୦୦୦ |
| | | | ୧ | ପୁନର୍ମୂଲ୍ୟାୟନ ହିସାବ ବାବଦ | ୨,୦୦୦ |
| | | | ୧ | ସାଧାରଣ ସଂଚିତ ହିସାବ ବାବଦ | ୫,୦୦୦ |
| | | ୩୭,୦୦୦ | | | ୩୭,୦୦୦ |
| | | | ଜାନୁଆରୀ-୨ | ପୂର୍ବ ବାକି ବାବଦ | ୩୭,୦୦୦ |

ଦାୟୀ **ଖଙ୍କର ମୂଳଧନ ହିସାବ** ଦାତା

| ୧୯୭୪ | | ଟଙ୍କା | ୧୯୭୪ | | ଟଙ୍କା |
|---|---|---|---|---|---|
| ଜାନୁଆରୀ-୧ | ବାକି ଗଡ଼ିଲ | ୨୭,୭୫୦ | ଜାନୁଆରୀ-୧ | ପୂର୍ବବାକି ବାବଦ | ୨୨,୦୦୦ |
| | | | ୧ | ପୁନର୍ମୂଲ୍ୟାୟନ ହିସାବ ବାବଦ | ୧,୨୦୦ |
| | | | ୧ | ସାଧାରଣ ସଞ୍ଚିତ ହିସାବ ବାବଦ | ୩,୦୦୦ |
| | | | ୧ | ବ୍ୟାଙ୍କ ହି: ବାବଦ | ୧,୫୫୦ |
| | | ୨୭,୭୫୦ | | | ୨୭,୭୫୦ |
| | | | ୨ | ପୂର୍ବବାକି ବାବଦ | ୨୭,୭୫୦ |

### କ ଖ ଓ କମ୍ପାନୀର ପୁନର୍ଗଠିତ ଉଦ୍‌ବୃତ୍ତ ପତ୍ର

| ଦେୟ | ଟଙ୍କା | ଟଙ୍କା | ସମ୍ପତ୍ତି | ଟଙ୍କା | ଟଙ୍କା |
|---|---|---|---|---|---|
| ବିବିଧ ମହାଜନ | | ୧୨,୦୦୦ | କଳକବ୍‌ଜା | | ୨୫,୦୦୦ |
| କ ଙ୍କର ଋଣ | | ୯,୦୦୦ | ମହଜୁଦ ପଣ୍ୟ | | ୧୩,୦୦୦ |
| ମୂଳଧନ ହିସାବ : | | | ବିବିଧ ଖାତକ | ୧୮,୦୦୦ | |
| କ | ୩୭,୦୦୦ | | ବାଦ୍ : | | |
| ଖ | ୨୭,୭୫୦ | ୬୪,୭୫୦ | ଅନାଦାୟୀ | | |
| | | | ଋଣର ସଞ୍ଚିତ | ୧,୮୦୦ | ୧୬, ୦୦ |
| | | | ସୁନାମ | | ୧୨,୦୦୦ |
| | | | ବିନିଯୋଗ | | ୧୦,୦୦୦ |
| | | | ବ୍ୟାଙ୍କରେ ଗଚ୍ଛିତ | | ୯,୫୫୦ |
| | | ୮୫,୭୫୦ | | | ୮୫,୭୫୦ |

### ଗ, ଘ ଓ କମ୍ପାନୀଙ୍କ ହିସାବ ବହିରେ

| | ଜାବଦା | | ଦାୟୀ | ଦାତା |
|---|---|---|---|---|
| ୧୯୬୪ | | | ଟଙ୍କା | ଟଙ୍କା |
| ଜାନୁଆରୀ ୧ | ମହଜୁଦ ପଣ୍ୟ ହିସାବ | ଦାୟୀ | ୨,୨୦୦ | |
| | ସୁନାମ ହିସାବ | ଦାୟୀ | ୬,୦୦୦ | |
| | ପୁନର୍ମୂଲ୍ୟାୟନ ହିସାବ ବାବଦ | | | ୮,୨୦୦ |
| | (ପୁନର୍ମୂଲ୍ୟାୟନ ଫଳରେ ବଳକା ଟଙ୍କାର ସମାଯୋଜନ କରାଗଲା) | | | |
| ୧ | ପୁନର୍ମୂଲ୍ୟାୟନ ହିସାବ | ଦାୟୀ | | |
| | କଳକବ୍‌ଜା ହିସାବ ବାବଦ | | ୬,୪୦୦ | |
| | ଅନାଦାୟୀ ଋଣର ସଞ୍ଚିତ ହିସାବ ବାବଦ | | | ୫,୦୦୦ |
| | ବକେୟା ଦେୟ ଘରଭଡ଼ା ହିସାବ ବାବଦ | | | ୧,୧୦୦ |
| | (ପୁନର୍ମୂଲ୍ୟାୟନ ଫଳରେ ନ୍ୟୂନତା ପରିମାଣର ସମାଯୋଜନ କରାଗଲା) | | | ୩୦୦ |

| ତାରିଖ | ବିବରଣୀ | | ଦାୟୀ ଟଙ୍କା | ଦାତା ଟଙ୍କା |
|---|---|---|---|---|
| ୧ | ପୁନର୍ମୂଲ୍ୟାୟନ ହିସାବ | ଦାୟୀ | ୧,୮୦୦ | |
| | ଗ ଙ୍କର ମୂଳଧନ ହିସାବ ବାବଦ | | | ୧,୨୦୦ |
| | ଘ ଙ୍କର ମୂଳଧନ ହିସାବ ବାବଦ | | | ୬୦୦ |
| | (ପୁନର୍ମୂଲ୍ୟାୟନ ହିସାବର ବାକି ଅଂଶୀଦାରମାନଙ୍କର ମୂଳଧନକୁ ୨:୧ ଅନୁପାତରେ ସ୍ଥାନାନ୍ତରିତ କରାଗଲା) | | | |
| ୧୯୭୪ ଜାନୁଆରି-୧ | ସାଧାରଣ ସଞ୍ଚିତ ହିସାବ | ଦାୟୀ | ୬,୦୦୦ | |
| | ଗ ଙ୍କର ମୂଳଧନ ହିସାବ ବାବଦ | | | ୪,୦୦୦ |
| | ଘ ଙ୍କର ମୂଳଧନ ହିସାବ ବାବଦ | | | ୨,୦୦୦ |
| | (ସାଧାରଣ ସଞ୍ଚିତ ହିସାବର ବାକି ଅଂଶୀଦାରମାନଙ୍କର ମୂଳଧନ ହିସାବକୁ ୨:୧ ଅନୁପାତରେ ସ୍ଥାନାନ୍ତରିତ କରାଗଲା) | | | |
| ୧ | ଗ ଙ୍କର ମୂଳଧନ ହିସାବ | ଦାୟୀ | ୬,୨୦୦ | |
| | ଗ ଙ୍କର ଚଳନ୍ତି ହିସାବ ବାବଦ | | | ୬,୨୦୦ |
| | (କ ଙ୍କର ମୂଳଧନ ଭିତ୍ତିରେ ଗ ଙ୍କର ମୂଳଧନର ୨/୧୦ ଅଂଶରୁ ବଳକା ପରିମାଣ ତାଙ୍କର ଚଳନ୍ତି ହିସାବକୁ ସ୍ଥାନାନ୍ତରିତ ହେଲା) | | | |
| | ଘ ଙ୍କର ମୂଳଧନ ହିସାବ | ଦାୟୀ | ୮,୩୫୦ | |
| | ଘ ଙ୍କର ଚଳନ୍ତି ହିସାବ ବାବଦ | | | ୮,୩୫୦ |
| | (କ ଙ୍କର ମୂଳଧନ ଭିତ୍ତିରେ ଘ ଙ୍କର ମୂଳଧନର ୧/୧୦ ଅଂଶର ବଳକା ପରିମାଣ ତାଙ୍କର ଚଳନ୍ତି ହିସାବକୁ ସ୍ଥାନାନ୍ତରିତ କରାଗଲା) | | | |

## ଗ, ଘ ଓ କମ୍ପାନୀଙ୍କର ପୁନର୍ଗଠିତ ଉଦ୍‌ବୃତ୍ତ ପତ୍ର
### ୧-୧-୧୯୭୪ ତାରିଖର

| ଦେୟ | ଟଙ୍କା | ଟଙ୍କା | ସଂପତ୍ତି | ଟଙ୍କା | ଟଙ୍କା |
|---|---|---|---|---|---|
| ଦେୟ ମହାଜନ | | ୭,୦୦୦ | କଳକବ୍‌ଜା | | ୧୫,୦୦୦ |
| ବକେୟା ଦେୟ ଘରଭଡ଼ା | | ୩୦୦ | ମହଜୁଦ ପଣ୍ୟ | | ୧୪,୨୦୦ |
| ମୂଳଧନ ହିସାବ : | | | ସୁନାମ | | ୬,୦୦୦ |
| | | | ଦେୟ ଖାତକ | ୧୧,୦୦୦ | |
| ଗ | ୧୮,୫୦୦ | | ବାଦ୍ : | | |
| ଘ | ୯,୨୫୦ | ୨୭,୭୫୦ | ଅନାଦାୟୀ | | |
| | | | ଋଣର ସଞ୍ଚିତ | ୧,୧୦୦ | ୯,୯୦୦ |
| ଚଳନ୍ତି ହିସାବ : | | | | | |
| | | | ବ୍ୟାଙ୍କରେ ଗଚ୍ଛିତ | | ୫,୦୦୦ |
| ଗ | ୬,୭୦୦ | | | | |
| ଘ | ୮,୩୫୦ | ୧୫,୦୫୦ | | | |
| | | ୫୦,୧୦୦ | | | ୫୦,୧୦୦ |

### ଗ ଙ୍କର ମୂଳଧନ ହିସାବ

| ଦାୟୀ | | ଟଙ୍କା | ଦାତା | | ଟଙ୍କା |
|---|---|---|---|---|---|
| ୧୯୭୪ | | | ୧୯୭୪ | | |
| ଜାନୁଆରୀ-୧ | ଚଳନ୍ତି ହିସାବ ବାବଦ | ୬,୭୦୦ | ଜାନୁଆରୀ-୧ | ପୂର୍ବ ବାକି ବାବଦ | ୨୦,୦୦୦ |
| ୧ | ବାକି ଗଚ୍ଛନ୍ତି | ୧୮,୫୦୦ | ୧ | ପୁନର୍ମୂଲ୍ୟାୟନ ହିସାବ ବାବଦ | ୧,୨୦୦ |
| | | | ୧ | ସାଧାରଣ ସଞ୍ଚିତ ହିସାବ ବାବଦ | ୪,୦୦୦ |
| | | ୨୫,୨୦୦ | | | ୨୫,୨୦୦ |
| | | | ଜାନୁଆରୀ-୨ | ପୂର୍ବ ବାକି ବାବଦ | ୧୮,୫୦୦ |

| ଦାୟୀ | | ଘ ଙ୍କର ମୂଳଧନ ହିସାବ | ଦାତା |
|---|---|---|---|
| ୧୯୭୪ | ଟଙ୍କା | ୧୯୭୪ | ଟଙ୍କା |
| ଜାନୁଆରି-୧ ଚଳନ୍ତି ହିସାବ ବାବଦ | ୮,୩୫୦ | ଜାନୁଆରି-୧ ପୂର୍ବ ବାଙ୍କି ବାବଦ | ୧୫,୦୦୦ |
| ୧ ବାଙ୍କି ଗଡ଼ାଇ | ୯,୨୫୦ | ୧ ପୁନର୍ମୂଲ୍ୟାଙ୍କନ ହିସାବ ବାବଦ | ୬୦୦ |
| | | ୧ ସାଧାରଣ ସଞ୍ଚିତ ହିସାବ ବାବଦ | ୨,୦୦୦ |
| | ୧୭,୬୦୦ | | ୧୭,୬୦୦ |
| | | ଜାନୁଆରି-୨ ପୂର୍ବ ବାଙ୍କି ବାବଦ | ୯,୨୫୦ |

କ, ଖ, ଗ, ଘ ଓ କଂପାନୀଙ୍କର
୧୯୭୪ ମସିହା ଜାନୁୟାରୀ ୧ ତାରିଖର
ଉଦ୍ବର୍ତ୍ତ ପତ୍ର

| ଦେୟ | ଟଙ୍କା | ଟଙ୍କା | ସଂପତ୍ତି | ଟଙ୍କା | ଟଙ୍କା |
|---|---|---|---|---|---|
| ବିବିଧ ମହାଜନ | | ୧୯,୦୦୦ | ବ୍ୟାଙ୍କରେ ଗଚ୍ଛିତ | | ୧୪,୫୫୦ |
| ଦେୟ ଘରଭଡ଼ା | | ୩୦୦ | ବିବିଧ ଖାତକ | ୨୯,୦୦୦ | |
| ମୂଳଧନ ହିସାବ : | | | ବାଦ୍ : | | |
| କ | ୩୭,୦୦୦ | | ଅନାଦାୟୀ ଋଣର | | |
| ଖ | ୨୭,୭୫୦ | | ସଞ୍ଚିତ | ୨,୯୦୦ | ୨୬,୧୦୦ |
| ଗ | ୧୮,୫୦୦ | | ମହଜୁଦ ପଣ୍ୟ | | ୨୭,୨୦୦ |
| ଘ | ୯,୨୫୦ | ୯୨,୫୦୦ | ବିଜନଯୋଗ | | ୧୦,୦୦୦ |
| ଚଳନ୍ତି ହିସାବ : | | | କଳକବ୍ଜା | | ୪୦,୦୦୦ |
| ଗ | ୭,୭୦୦ | | ସୁନାମ | | ୧୮,୦୦୦ |
| ଘ | ୮,୩୫୦ | ୧୬,୦୫୦ | | | |
| କ ଙ୍କର ଋଣ ହିସାବ | | ୯,୦୦୦ | | | |
| | | ୧,୩୬,୮୫୦ | | | ୧,୩୬,୮୫୦ |

କ, ଖ, ଗ, ଘ ଓ କଂପାନୀଙ୍କ ବହିରେ

| | ଜାବଦା | | ଦାୟୀ | ଦାତା |
|---|---|---|---|---|
| ୧୯୭୪ | | | ଟଙ୍କା | ଟଙ୍କା |
| ଜାନୁଆରୀ-୧ | ସୁନାମ ହିସାବ | ଦାୟୀ | ୧୮,୦୦୦ | |
| | କଳାକବ୍ଜା ହିସାବ | ,, | ୪୦,୦୦୦ | |
| | ଯନ୍ତ୍ରଯୋଗ ,, | ,, | ୧୦,୦୦୦ | |
| | ମହଜୁଦ ପଣ୍ୟ ହିସାବ | ,, | ୨୭,୨୦୦ | |
| | ବିବିଧ ଖାତକ ହିସାବ | ,, | ୨୯,୦୦୦ | |
| | ବ୍ୟାଙ୍କରେ ଗଚ୍ଛିତ ତହବିଲ ହିସାବ | ,, | ୧୪,୫୫୦ | |
| | କ ଙ୍କର ମୂଳଧନ ହିସାବ ବାବଦ | | | ୩୬,୦୦୦ |
| | ଖ ଙ୍କର ,, ,, ,, | | | ୨୭,୭୫୦ |
| | ଗ ଙ୍କର ,, ,, ,, | | | ୧୮,୫୦୦ |
| | ଘ ଙ୍କର ,, ,, ,, | | | ୯,୨୫୦ |
| | ଗ ଙ୍କର ଚଳନ୍ତି ,, ,, | | | ୭,୭୦୦ |
| | ଘ ଙ୍କର ,, ,, ,, | | | ୮,୩୫୦ |
| | କ ଙ୍କର ଋଣ ,, ,, | | | ୯,୦୦୦ |
| | ବିବିଧ ମହାଜନ ,, ,, | | | ୧୯,୦୦୦ |
| | ଅନାଦାୟୀ ଋଣର ସଞ୍ଚିତ ହିସାବ ବାବଦ | | | ୨,୯୦୦ |
| | ଦେୟ ଘରଭଡ଼ା ,, ,, | | | ୩୦୦ |

## ୭ । ସଂବିଳୟନ (Absorption)

କେତେକ ସମୟରେ ଗୋଟିଏ ଅଂଶୀଦାରୀ ବ୍ୟବସାୟ ଅନ୍ୟ ଏକ ସ୍ୱତ୍ୱାଧିକାରୀ ଅଥବା ଅଂଶୀଦାରୀ ବ୍ୟବସାୟକୁ ଗ୍ରସନ ଅଥବା ସଂବିଳୟନ କରେ । ଏହାଦ୍ୱାରା ପ୍ରଥମ ଅଂଶୀଦାରୀ ବ୍ୟବସାୟର ସତ୍ତା ପୂର୍ବବତ୍ ରହେ କିନ୍ତୁ ସଂବିଳୀନ ବ୍ୟବସାୟର ଅସ୍ତିତ୍ୱ ରହେ ନାହିଁ । ସାଧାରଣତଃ ଗୋଟିଏ ଅଂଶୀଦାରୀ ବ୍ୟବସାୟ ଅନ୍ୟ ଏକ ବ୍ୟବସାୟକୁ କ୍ରୟ କଲେ କ୍ରୀତ ବ୍ୟବସାୟର ଏହିପରି ଘଟେ ।

କ୍ରୀତ ବ୍ୟବସାୟର ସମ୍ପତ୍ତି ଓ ଦାୟିତ୍ୱଗୁଡ଼ିକର ପୁନର୍ମୂଲ୍ୟାୟନ କରାଯାଏ । ଏହାର ନିଟ୍ ମୂଲ୍ୟ (ଅର୍ଥାତ୍ ସମ୍ପତ୍ତି ବ୍ୟକ୍ତ ମୂଳଧନ ବ୍ୟତୀତ ଅନ୍ୟାନ୍ୟ ଦାୟ) ଯଦି କ୍ରୟ ମୂଲ୍ୟ ଅପେକ୍ଷା ଊଣା ହୁଏ, ତାହାହେଲେ କ୍ରୟକାରୀ ବ୍ୟବସାୟରେ ଏହି ଅନ୍ତର ଫଳ (diffe-

rence) ରୂପେ ବିବେଚିତ ହୁଏ । ଯଦି ବ୍ୟବସାୟର ନିଟ୍ ମୂଲ୍ୟ କ୍ରୟ ମୂଲ୍ୟଠାରୁ ଅଧିକ ହୁଏ, ତାହାହେଲେ ଅନ୍ତରଫଳ କ୍ରୟକାରୀ ବ୍ୟବସାୟର ପୁଞ୍ଜିଗତ ଲାଭ (capital profit) ରୂପେ ବିବେଚିତ ହୁଏ । ଏହାକୁ ପୁଞ୍ଜିଗତ ସଞ୍ଚିତ ହିସାବ (capital reserve A/c) କୁ ନିଆଯାଏ । ଏହାର ଏକ ଦୃଷ୍ଟାନ୍ତ ନିମ୍ନରେ ପ୍ରଦତ୍ତ ହେଲା ।

## ଦୃଷ୍ଟାନ୍ତ (୩୫)

କ ଓ ଖ କ, ଖ ଓ କମ୍ପାନୀର ଅଂଶୀଦାର ଥାଇ ଲାଭ ଓ କ୍ଷତିକୁ ୨ : ୧ ଅନୁପାତରେ ଭାଗ କରୁଥିଲେ । ତାଙ୍କର ୧୯୭୪ ମସିହା ଡିସେମ୍ବର ୩୧ ତାରିଖର ଉଦ୍‌ବୃତ୍ତ ପତ୍ର ନିମ୍ନରେ ପ୍ରଦତ୍ତ ହେଲା ।

| ଦାୟ | ଟଙ୍କା | ସମ୍ପତ୍ତି | ଟଙ୍କା |
|---|---|---|---|
| ମୂଳଧନ : କ | ୨୪,୦୦୦ | ଆସବାବ୍ ପତ୍ର | ୧୨,୦୦୦ |
| ଖ | ୧୨,୦୦୦ | ମହଜୁଦ ମାଲ | ୨୩,୦୦୦ |
| ସଞ୍ଚିତ ହିସାବ | ୧୫,୦୦୦ | ବିବିଧ ଖାତକ | ୧୫,୦୦୦ |
| ବିବିଧ ମହାଜନ | ୧୦,୦୦୦ | ବ୍ୟାଙ୍କରେ ଗଚ୍ଛିତ | ୧୧,୦୦୦ |
| | ୬୧,୦୦୦ | | ୬୧,୦୦୦ |

ଉକ୍ତ ତାରିଖର କ ଓ ଖ ଗ ଙ୍କର ବ୍ୟବସାୟ କ୍ରୟ କରିବାକୁ ସ୍ଥିର କଲେ । କ୍ରୟ ମୂଲ୍ୟ ୩୦,୦୦୦ ଟଙ୍କା ଧାର୍ଯ୍ୟ ହୋଇଥିଲା । କ ଓ ଖ ବ୍ୟାଙ୍କରୁ ଅଧି-ଉଠାଣ ଓ ନଗଦ ତହବିଲ ବ୍ୟତୀତ ଅନ୍ୟ ସମସ୍ତ ସମ୍ପତ୍ତି ଓ ଦାୟ ଦେବେ ବୋଲି ସ୍ଥିର ହେଲା । ୧୯୭୪ ମସିହା ଡିସେମ୍ବର ୩୧ ତାରିଖର ଉଦ୍‌ବୃତ୍ତ ପତ୍ର ନିମ୍ନ ପ୍ରକାର ଥିଲା :

| ଦାୟ | ଟଙ୍କା | ସଂପତ୍ତି | ଟଙ୍କା |
|---|---|---|---|
| ମୂଳଧନ | ୨୨,୦୦୦ | କାରଖାନା ଘର | ୪,୫୦୦ |
| ବ୍ୟାଙ୍କରୁ ଉଠାଣ | ୬,୦୦୦ | ଯନ୍ତ୍ରପାତି | ୧୫,୦୦୦ |
| ବିବିଧ ମହାଜନ | ୧୨,୫୦୦ | କଞ୍ଚାମାଲ | ୯,୦୦୦ |
| | | ବିବିଧ ଖାତକ | ୧୦,୩୦୦ |
| | | ଅଗ୍ରିମ ପ୍ରଦତ୍ତ ବୀମା ପ୍ରିମିୟମ | ୬୦୦ |
| | | ନଗଦ ତହବିଲ | ୧,୧୦୦ |
| | ୪୦,୫୦୦ | | ୪୦,୫୦୦ |

ଗ ଙ୍କର ସଂପତ୍ତି ଗୁଡ଼ିକ ନିମ୍ନଲିଖିତ ରୂପେ ମୂଲ୍ୟାଙ୍କିତ ହେବ :

କାରଖାନା ଘର ଓ ଯନ୍ତ୍ରପାତିରୁ ଶତକଡ଼ା ହାରରେ ମୂଲ୍ୟହ୍ରାସ ବାଦ୍ ଦିଆଯିବ । କଞ୍ଚାମାଲର ମୂଲ୍ୟ ୭,୦୦୦ ଟଙ୍କା ହେବ । ବିବିଧ ଖାତକ ପରିମାଣ ଉପରେ ଶତକଡ଼ା ୧୦ ହାରରେ ଅନାଦେୟ ଋଣର ସଞ୍ଚିତ ଗଢ଼ାଯିବ । ଅଗ୍ରିମ ପ୍ରଦତ୍ତ ବୀମା ପ୍ରିମିୟମର କୌଣସି ମୂଲ୍ୟ ଧାର୍ଯ୍ୟ କରାଯିବ ନାହିଁ । ଗ ଙ୍କ ବ୍ୟବସାୟର କ୍ରୟ ମୂଲ୍ୟ ଦେବା ନିମନ୍ତେ କ ଓ ଖ ଯଥାକ୍ରମେ ୧୭,୦୦୦ ଟଙ୍କା ଓ ୮,୦୦୦ ଟଙ୍କା ବ୍ୟବସାୟକୁ ଆଣିବେ ।

ଗ ଙ୍କ ବ୍ୟବସାୟର ସୁନାମ ନିର୍ଣ୍ଣୟ କର । ଗ ଙ୍କ ବ୍ୟବସାୟର ସଂପତ୍ତି ଓ ଦାୟ କ, ଖ ଓ କଂପାନୀରେ କିପରି ସଂବଳିତ ହେବ ତାହାର ଜାବଦା ଲେଖ ଏବଂ ସଂବଳନ ପରେ ଏହି କଂପାନୀର ପୁନର୍ଗଠିତ ଉଦ୍‌ବୃତ୍ତ ପତ୍ର ପ୍ରସ୍ତୁତ କର ।

## ସମାଧାନ

### ଗ ଙ୍କ ବ୍ୟବସାୟର ସୁନାମ ନିରୂପଣ

| ନିଆଯାଇଥିବା ସଂପତ୍ତି : | ଟଙ୍କା | ଟଙ୍କା |
|---|---|---|
| କାରଖାନା ଘର | ୪,୫୦୦ | |
| ଯନ୍ତ୍ରପାତି | ୧୫,୦୦୦ | |
| | ୧୯,୫୦୦ | |
| ବାଦ୍ ୧୦% ମୂଲ୍ୟହ୍ରାସ | ୧,୯୫୦ | ୧୭,୫୫୦ |
| କଞ୍ଚାମାଲ | | ୭,୦୦୦ |
| ବିବିଧ ଖାତକ | ୧୦,୩୦୦ | |
| ବାଦ : ଅନାଦାୟୀ ଋଣର ସଞ୍ଚିତ— ୫% ହାରରେ | ୫୧୫ | ୯,୭୮୫ |
| ସଂପତ୍ତିର ମୋଟ ମୂଲ୍ୟ | | ୩୪,୩୩୫ |
| ବାଦ : ନିଆଯାଇଥିବା ଦାୟ = ବିବିଧ ମହାଜନ | | ୧୨,୫୦୦ |
| ବ୍ୟବସାୟର ନିଟ୍ ମୂଲ୍ୟ | | ୨୧,୮୩୫ |
| ବ୍ୟବସାୟର କ୍ରୟ ମୂଲ୍ୟ | | ୩୦,୦୦୦ |
| ବିୟୁକ୍ତ : ବ୍ୟବସାୟର ନିଟ ମୂଲ୍ୟ | | ୨୧,୮୩୫ |
| ସୁନାମର ମୂଲ୍ୟ | | ୮,୧୬୫ |

## କ, ଖ ଓ କଂପାନୀଙ୍କ ବହିରେ

| | ଜାବଦା | | ଦାୟୀ | ଦାତା |
|---|---|---|---|---|
| | | | ଟଙ୍କା | ଟଙ୍କା |
| ୧୯୬୪ | ବ୍ୟାଙ୍କ ହିସାବ | ଦାୟୀ | ୨୪,୦୦୦ | |
| ଡିସେ-୧ | କ ଙ୍କର ମୂଳଧନ ହିସାବ | | | ୧୬,୦୦୦ |
| | ଖ ଙ୍କର ମୂଳଧନ ହିସାବ | | | ୮,୦୦୦ |
| | (ଅଂଶୀଦାରମାନେ ଅଧିକା ପୁଂଜି ବିନିଯୋଗ କଲେ) | | | |
| ୩୧ | କଞ୍ଚାମାଲ ହିସାବ | ଦାୟୀ | ୭,୦୦୦ | |
| | ବିବିଧ ଖାତକ ହିସାବ | ,, | ୧୦,୯୦୦ | |
| | ଯନ୍ତ୍ରପାତି ହିସାବ | ,, | ୧୩,୫୦୦ | |
| | କାରଖାନା ଘର ହିସାବ | ,, | ୪,୦୫୦ | |
| | ସୁନାମ ହିସାବ | ,, | ୮,୧୬୫ | |
| | ଅନାଦାୟୀ ଋଣର ସଞ୍ଚିତ ହିସାବ ବାବଦ | | | ୫୧୫ |
| | ବିବିଧ ମହାଜନ ହିସାବ ବାବଦ | | | ୧୨,୫୦୦ |
| | ବ୍ୟାଙ୍କ ହିସାବ ବାବଦ | | | ୩୦,୦୦୦ |
| | (ଗ ଙ୍କର ସମ୍ପତ୍ତି ଓ ଦାୟ ନିଆଗଲା ଓ ତାଙ୍କୁ କ୍ରୟମୂଲ୍ୟ ଦିଆଗଲା) | | | |

( ସଂମିଳିତ ପରେ ) କ, ଖ ଓ କମ୍ପାନୀଙ୍କର
୧୯୬୪ ମସିହା ଡିସେମ୍ବର ୩୧ ତାରିଖର

### ଉଦ୍ବର୍ତ୍ତ ପତ୍ର

| ଦାୟ | ଟଙ୍କା | ଟଙ୍କା | ସଂପତ୍ତି | ଟଙ୍କା | ଟଙ୍କା |
|---|---|---|---|---|---|
| ମୂଳଧନ ହିସାବ : | | | ସୁନାମ | | ୮,୧୬୫ |
| କ | ୪୦,୦୦୦ | | କାରଖାନା ଘର | | ୪,୦୫୦ |
| ଖ | ୨୦,୦୦୦ | ୬୦,୦୦୦ | ଯନ୍ତ୍ରପାତି | | ୧୩,୫୦୦ |
| | | | ଆସବାବ ପତ୍ର | | ୧୨,୦୦୦ |
| ସଞ୍ଚିତ ହିସାବ | | ୧୫,୦୦୦ | କଞ୍ଚାମାଲ | | ୭,୦୦୦ |
| ବିବିଧ ମହାଜନ | | ୨୨,୫୦୦ | ପ୍ରସ୍ତୁତ ମାଲ | | ୨୩,୦୦୦ |
| | | | ବିବିଧ ଖାତକ | ୨୫,୩୦୦ | |
| | | | ବାଦ : | | |
| | | | ଅନାଦାୟୀ ଋଣ | | |
| | | | ସଞ୍ଚିତ | ୫୧୫ | ୨୪,୭୮୫ |
| | | | ବ୍ୟାଙ୍କରେ ଗଚ୍ଛିତ | | |
| | | | ତହବିଲ | | ୫,୦୦୦ |
| | | ୯୭,୫୦୦ | | | ୯୭,୦୫୦ |

## ଅନୁଶୀଳନୀ

୧ । ଅଂଶୀଦାରୀ ଚୁକ୍ତି କାହାକୁ କହନ୍ତି ? କେଉଁ ପରିସ୍ଥିତିରେ ଏହାର ପରିବର୍ତ୍ତନ ଆବଶ୍ୟକ ହୋଇପାରେ ?

୨ । ସୁନାମ କାହାକୁ କହନ୍ତି ? ଅଂଶୀଦାରୀ ବ୍ୟବସାୟରେ ଏହାର ମୂଲ୍ୟ ସ୍ଥିର କରିବାର ପ୍ରଧାନ ପଦ୍ଧତିଗୁଡ଼ିକ ବୁଝାଅ ।

୩ । ଗୋଟିଏ ବ୍ୟବସାୟର ସୁନାମ କେଉଁ କାରଣରୁ ଉପୁଜେ ? ଏହାର ମୂଲ୍ୟ କି କି କାରଣରୁ ହ୍ରାସ ପାଇପାରେ ବୋଲି ତୁମେ ମନେ କର ?

୪ । 'ସ୍ଥିର ମୂଳଧନ ପଦ୍ଧତି' କହିଲେ କ'ଣ ବୁଝ ? ଏହା 'ପରିବର୍ତ୍ତନଶୀଳ ମୂଳଧନ ପଦ୍ଧତି'ଠାରୁ କିପରି ପୃଥକ୍ ? ଉଭୟର ସୁବିଧା ଓ ଅସୁବିଧାଗୁଡ଼ିକ ବୁଝାଅ ।

୫ । ଅଂଶୀଦାରମାନଙ୍କର 'ଚଳନ୍ତି ହିସାବ' କାହାକୁ କହନ୍ତି ? ଏହାର ଆବଶ୍ୟକତା କେତେବେଳେ ଅନୁଭୂତ ହୁଏ ? ଅଂଶୀଦାରମାନଙ୍କର 'ଉଠାଣ ହିସାବ'ଠାରୁ ଏହା କିପରି ପୃଥକ୍ ?

୬ । ଯୌଥ ଉଦ୍ୟୋଗ ଓ ଅଂଶୀଦାରୀ ବ୍ୟବସାୟ ମଧ୍ୟରେ ପାର୍ଥକ୍ୟ ଦର୍ଶାଅ ।

୭ । ଅଂଶୀଦାରମାନଙ୍କର ମୂଳଧନ ଉପରେ ସୁଧ ଦେବାର କି ସାର୍ଥକତା ଅଛି ?

## ଲାଭ ଓ କ୍ଷତି ବଣ୍ଟନ ହିସାବ

୮ । ଆଲୋକ, ବିକାଶ ଓ ଶ୍ରୀଦାମ ଗୋଟିଏ ଅଂଶୀଦାରୀ ବ୍ୟବସାୟରେ ଅଂଶୀଦାର ଥାଇ ଲାଭ ଓ କ୍ଷତିକୁ ଯଥାକ୍ରମେ ଶତକଡ଼ା ୬୦, ୩୦ ଓ ୧୦ ହାରରେ ବଣ୍ଟନ କରୁଥିଲେ । ୧୯୬୩ ମସିହା ଡିସେମ୍ବର ୩୧ ତାରିଖରେ ସେମାନଙ୍କର ମୂଳଧନ ଯଥାକ୍ରମେ ୬୦,୦୦୦ ଟଙ୍କା, ୩୦,୦୦୦ ଟଙ୍କା ଓ ୧୦,୦୦୦ ଟଙ୍କା ଥିଲା । ୧୯୬୪ ମସିହା ଡିସେମ୍ବର ୩୧ ତାରିଖରେ ସେମାନଙ୍କ ବ୍ୟବସାୟର ଲାଭ ଓ କ୍ଷତି ହିସାବ ୭୫,୦୦୦ ଟଙ୍କାର ନିଟ୍ ଲାଭ ଦର୍ଶାଇଥିଲା ।

ନିମ୍ନଲିଖିତ ବିଷୟଗୁଡ଼ିକ ବିଚାରକୁ ନେଇ ବ୍ୟବସାୟର ଲାଭ ଓ କ୍ଷତି ବଣ୍ଟନ ହିସାବ ପ୍ରସ୍ତୁତ କର :

(କ) ଅଂଶୀଦାରମାନେ ସେମାନଙ୍କ ମୂଳଧନ ଉପରେ ଶତକଡ଼ା ୫ ହାରରେ ସୁଧ ପାଇବେ; (ଖ) ଉଠାଣ ଉପରେ ଅଲୋକଙ୍କୁ ୭,୦୦୦ ଟଙ୍କା, ବକାଶଙ୍କୁ ୩,୦୦୦ ଟଙ୍କା ଓ ଶ୍ରୀଦାମଙ୍କୁ ୨,୦୦୦ ଟଙ୍କା ସୁଧ ଦେବାକୁ ହେବ । ବେତନ ବାବଦ ଅଲୋକ ୭,୦୦୦ ଟଙ୍କା, ବକାଶ ୫,୦୦୦ ଟଙ୍କା ଓ ଶ୍ରୀଦାମ ୩,୦୦୦ ଟଙ୍କା ପାଇବେ । ବ୍ୟବସାୟ ଅଲୋକଙ୍କଠାରୁ ୧୯୬୪ ମସିହା ଜାନୁୟାରି ୧ ତାରଖରେ ୫୦,୦୦୦ ଟଙ୍କା ଋଣ ନେଇଥିଲ ।

(C. U. Three-year Degree Course, B. Com., 1966)

(ଉତ୍ତର : ଲଭର ଅଂଶ : ଅଲୋକ ୩,୪୦୦ ଟଙ୍କା; ବକାଶ ୧୯,୨୦୦ ଟଙ୍କା ଓ ଶ୍ରୀଦାମ ୭,୪୦୦ ଟଙ୍କା)

୯ । କ, ଖ ଓ ଗ ଗୋଟିଏ ଅଂଶୀଦାରୀ କାରବାରର ଅଂଶୀଦାର । ସେମାନେ ନିଟ୍ ଲଭର ଶତକଡ଼ା ୭୦ ପର୍ଯ୍ୟନ୍ତ କ, ଶତକଡ଼ା ୮୦ ହାରରେ ଖ, ଶତକଡ଼ା ୧୦ ହାରରେ ଗ, ଶତକଡ଼ାର ୧୦ ହାରରେ ଲଭ ଓ କ୍ଷତି ବଣ୍ଟନ କରନ୍ତି, ଓ ଲଭ ବା କ୍ଷତିର ବଳକା ଶତକଡ଼ା ୪୦କୁ ସମାନ ଭାଗରେ ଭାଗ କରନ୍ତି । ୧୯୭୩ ମସିହା ଡିସେମ୍ବର ୩୧ ତାରିଖରେ ଶେଷ ହେଉଥିବା ବର୍ଷରେ କାରବାରର ଲଭର ପରିମାଣ ମୂଳଧନ ଉପରେ ସୁଧ ଓ ଅଂଶୀଦାରମାନଙ୍କର ବେତନ ଦେବା ପୂର୍ବରୁ ୭୫,୦୦୦ ଟଙ୍କା ଥିଲ । ଅଂଶୀଦାରମାନଙ୍କର ମୂଳଧନର ବାକି ବର୍ଷ ଆରମ୍ଭରେ ଯଥାକ୍ରମେ ୫୦,୦୦୦ ଟଙ୍କା; ୩୦,୦୦୦ ଟଙ୍କା ଓ ୨୦,୦୦୦ ଟଙ୍କା ଥିଲ । ମୂଳଧନ ଉପରେ ସେମାନେ ଶତକଡ଼ା ୫ ହାରରେ ସୁଧ ପାଇବେ । ସେମାନଙ୍କର ବାର୍ଷିକ ବେତନର ପରିମାଣ ଯଥାକ୍ରମେ ୫,୦୦୦ ଟଙ୍କା; ୩,୦୦୦ ଟଙ୍କା ଓ ୨,୦୦୦ ଟଙ୍କା ଥିଲ ।

ଅଂଶୀଦାରମାନଙ୍କର ମୂଳଧନର ପରିମାଣ ସ୍ଥିର ବୋଲି ଅନୁମାନ କରି ୩୧-୧୨-୭୩ ତାରିଖରେ ଶେଷ ହେଉଥିବା ବର୍ଷର ସେମାନଙ୍କର ଲଭ ଓ କ୍ଷତି ବଣ୍ଟନ ହିସାବ ପ୍ରସ୍ତୁତ କର ଓ ଉପରୋକ୍ତ ବିଷୟଗୁଡ଼ିକ ଅନ୍ତର୍ଭୁକ୍ତ କରି ସେମାନଙ୍କର ଚଳନ୍ତି ହିସାବ ଦର୍ଶାଅ ।

(ଉତ୍ତର : ଚଳନ୍ତି ହିସାବର ଦାତା ବାକି : କ ୪୪,୩୦୦ ଟଙ୍କା, ଖ ୧୭,୧୦୦ ଟଙ୍କା ଓ ଗ ୧୪,୭୦୦ ଟଙ୍କା)

୧୦ । କ ଓ ଖ ଗୋଟିଏ ଅଂଶୀଦାରୀ କାରବାରର ଅଂଶୀଦାର । ୧୯୫୪ ମସିହା ଜାନୁୟାରି ୧ ତାରିଖରେ ସେମାନଙ୍କର ମୂଳଧନର ପରିମାଣ କ ୨୫,୦୦୦ ଟଙ୍କା ଓ

ଖ ୨୦,୦୦୦ ଟଙ୍କା ଥିଲା । ଅପ୍ରେଲ୍ ୧ ତାରିଖରେ ଗ ଅଂଶୀଦାରୀ କାରବାରରେ ଯୋଗ ଦେଲେ ଓ ମୂଳଧନ ସ୍ୱରୂପ ୧୫,୦୦୦ ଟଙ୍କା ଆଣିଲେ । ସେହି ତାରିଖରେ କ ଓ ଖ ପ୍ରତ୍ୟେକେ ୫,୦୦୦ ଟଙ୍କା ଅଧିକ ମୂଳଧନ ରୂପେ ବ୍ୟବସାୟକୁ ଆଣିଲେ । ଅକ୍ଟୋବର ୧ ତାରିଖରେ ଘ ମଧ୍ୟ ଅଂଶୀଦାର ରୂପେ ମିଳିତ ହୋଇ ବ୍ୟବସାୟକୁ ୧୦,୦୦୦ ଟଙ୍କା ମୂଳଧନ ରୂପେ ଆଣିଲେ । ଡିସେମ୍ବର ୩୧ ତାରିଖରେ ବ୍ୟବସାୟର ନିଟ୍ ବ୍ୟବସାୟ-ଜନିତ ଲାଭର ପରିମାଣ ୧,୦୦,୦୦୦ ଟଙ୍କା ଥିଲା । ଅଂଶୀଦାରମାନେ ବ୍ୟବସାୟକୁ ଆଣିଥିବା ମୂଳଧନ ଅନୁପାତରେ ଲାଭ ବଣ୍ଟନ କରିବା ପାଇଁ ସମ୍ମତ ହେଲେ । ଅଂଶୀଦାରମାନେ ବାର୍ଷିକ ବେତନ ସ୍ୱରୂପ କ ୫,୦୦୦ ଟଙ୍କା, ଖ ୪,୦୦୦ ଟଙ୍କା, ଗ ୩,୦୦୦ ଟଙ୍କା ଓ ଘ ୨,୦୦୦ ଟଙ୍କା ପାଇବେ ।

୧୯୫୪ ମସିହା ଡିସେମ୍ବର ୩୧ ତାରିଖରେ ଶେଷ ହେଉଥିବା ବର୍ଷର ଲାଭ ଓ କ୍ଷତି ବଣ୍ଟନ ହିସାବ ପ୍ରସ୍ତୁତ କର ।

(C.U. B. Com., 1955)

(ଉତ୍ତର : ଲାଭ ବଣ୍ଟନ ସକାଶେ ହାରାହାରି ମୂଳଧନର ଅନୁପାତ କ:ଖ:ଗ:ଘ; ୨୩:୧୯:୧୧:୪; ନିକଟତମ ଟଙ୍କାରେ ଲାଭର ଅଂଶ—କ ୩୫,୭୦୯ ଟଙ୍କା; ଖ ୨୯,୪୧୭ ଟଙ୍କା; ଗ ୧୬,୦୩୧ ଟଙ୍କା; ଘ ୭,୧୯୩ ଟଙ୍କା)

୧୧ । କ ଓ ଖ ଗୋଟିଏ ଅଂଶୀଦାରୀ କାରବାରର ଅଂଶୀଦାର । ସେମାନେ ଗ କୁ ଏହି ପ୍ରତିଶ୍ରୁତି ଦେଇ ଅଂଶୀଦାର ରୂପେ ଗ୍ରହଣ କଲେ ଯେ ତାଙ୍କର ଲାଭର ଅଂଶ କୌଣସି ବର୍ଷ ୨,୪୦୦ ଟଙ୍କାରୁ ଊଣା ହେବ ନାହିଁ । ଲାଭ ବଣ୍ଟନର ଅନୁପାତ ଥିଲା କ $\frac{1}{2}$ ଅଂଶ, ଖ $\frac{1}{3}$ ଅଂଶ ଓ ଗ $\frac{1}{6}$ ଅଂଶ । ୧୯୫୭ ମସିହା ଜୁନ ୩୦ ତାରିଖରେ ଶେଷ ହେଉଥିବା ବର୍ଷରେ ଏହି ଅଂଶୀଦାରୀ କାରବାରରେ ଲାଭର ପରିମାଣ ୧୫,୨୮୦ ଟଙ୍କା ଥିଲା ।

ଅଂଶୀଦାରମାନଙ୍କ ମଧ୍ୟରେ ଲାଭର ବଣ୍ଟନ ଦର୍ଶାଇବା ନିମନ୍ତେ ଲାଭ ଓ କ୍ଷତି ବଣ୍ଟନ ହିସାବ ପ୍ରସ୍ତୁତ କର ।

(C U. B. Com., 1957)

(ଉତ୍ତର : ଲାଭର ଅଂଶ : କ ଟ ୭,୫୬୦, ଖ ଟ ୫,୨୨୦ ଓ ଗ ଟ ୨,୪୦୦)
ନୋଟ୍ : ଗ ଙ୍କର ନିଅଣ୍ଟ ଅର୍ଥ କ ଓ ଖ ୪:୩ ଅନୁପାତରେ ପୂରଣ କଲେ ।)

## ଲଭ ଓ କ୍ଷତି ସମାଯୋଜନ ହିସାବ

୧୨। କ, ଖ ଓ ଗ ଗୋଟିଏ ଅଂଶୀଦାରୀ ବ୍ୟବସାୟର ଅଂଶୀଦାର । ସେମାନେ ୨:୩:୧ ଅନୁପାତରେ ଲଭ ଓ କ୍ଷତି ବଣ୍ଟନ କରନ୍ତି । ୧୯୭୪ ମସିହା ଜାନୁଆରୀ ୧ ତାରିଖରେ ତାଙ୍କର ମୂଳଧନର ପରିମାଣ ଯଥାକ୍ରମେ ଟ ୬,୦୦୦, ଟ ୮,୦୦୦ ଓ ଟ ୧୦,୦୦୦ ଥିଲା । ସେମାନେ ମୂଳଧନ ଉପରେ ଶତକଡ଼ା ୫ ହାରରେ ସୁଧ ପାଆନ୍ତି । ୧୯୭୪ ମସିହା ଡିସେମ୍ବର ୩୧ ତାରିଖରେ ଶେଷ ହେଉଥିବା ବର୍ଷର ଲଭର ପରିମାଣ ୧୬,୦୦୦ ଟଙ୍କା ହୋଇଥିଲା । ଉପରୋକ୍ତ ଅନୁପାତରେ ସେମାନେ ଲଭ ବାଣ୍ଟି ନେଇଥିଲେ । ମାତ୍ର ୧୯୭୫ ମସିହା ଜାନୁଆରୀ ଏକ ତାରିଖରେ ଜଣାପଡ଼ିଲା ଯେ ମୂଳଧନ ଉପରେ ସୁଧ କଷା ନ ଯାଇ ଗତ ବର୍ଷର ଲଭ ବଣ୍ଟନ କରାଯାଇଛି । ଯେହେତୁ ଗତ ବର୍ଷର ହିସାବ ଚୂଡ଼ାନ୍ତ କରାଯାଇ ସ୍ୱାକ୍ଷରିତ ହୋଇ ସାରିଥିଲା, ତେଣୁ ଏହା ନିଷ୍ପତ୍ତି ହେଲା ଯେ ପୂର୍ବ ବର୍ଷ ହିସାବକୁ କଟାକଟି ନ କରି ସୁଧ କଷାଯିବା ଫଳରେ ଅଂଶୀଦାରମାନଙ୍କ ମୂଳଧନ ହିସାବରେ ଯେଉଁ ପରିବର୍ତ୍ତନ ଘଟିବ ତାହାକୁ ଗୋଟିଏ ଜାବ୍‌ଦା ସାହାଯ୍ୟରେ ଲିପିବଦ୍ଧ କରାଯିବ । ଏହି ଜାବ୍‌ଦା ପ୍ରସ୍ତୁତ କର ।

(ଉତ୍ତର—ଲଭ ବଣ୍ଟନର ନିଟ୍ ଫଳାଫଳ : କ ଙ୍କର ମୂଳଧନ ହିସାବ ଟ ୩୦୦ ପରିମାଣରେ ଓ ଖ ଙ୍କର ମୂଳଧନ ହିସାବ ଟ ୫୦ ପରିମାଣରେ ଦାୟୀ ହେବ ଓ ଗ ଙ୍କର ମୂଳଧନ ହିସାବ ଟ ୩୫୦ ସକାଶେ ଦାତା ହେବ ।)

୧୩। କ, ଖ ଓ ଗ ଗୋଟିଏ ଅଂଶୀଦାରୀ ବ୍ୟବସାୟର ଅଂଶୀଦାର ଥାଇ ଗତ ପାଞ୍ଚ ବର୍ଷ ହେବ ସମାନୁପାତରେ ଲଭ ଓ କ୍ଷତି ବଣ୍ଟନ କରି ଆସୁଥିଲେ । ୧୯୭୬ ମସିହା ଜାନୁଆରୀ ୧ ତାରିଖରେ ଏହା ସାବ୍ୟସ୍ତ ହେଲା । ୧୯୭୩ ମସିହା ଜାନୁଆରୀ ୧ ତାରିଖଠାରୁ ସେମାନଙ୍କର ଲଭ ଓ କ୍ଷତି ବଣ୍ଟନର ଅନୁପାତ ଯଥାକ୍ରମେ ୪ : ୩ : ୨ ହେବ ।

ବ୍ୟବସାୟର ଗତ ୫ ବର୍ଷର ଲଭ ନିମ୍ନ ରୂପ ଥିଲା :

୧୯୭୧—ଟ ୯,୦୦୦; ୧୯୭୨—ଟ ୧୦,୫୦୦; । ୧୯୭୩—ଟ ୧୨,୬୦୦;
୧୯୭୪—ଟ ୧୫,୩୦୦ ଓ ୧୯୭୫—ଟ ୧୮,୫୪୦ ।

ଏହି ନୂତନ ବ୍ୟବସ୍ଥାକୁ କାର୍ଯ୍ୟକାରୀ କରିବା ନିମନ୍ତେ ଅଂଶୀଦାରୀ ବ୍ୟବସାୟର ହିସାବ ଖାତାରେ କେଉଁ ସମାଯୋଜନ ଆବଶ୍ୟକ ହେବ ତାହା ଦର୍ଶାଅ ।

( ଉତ୍ତର : ଗ ଙ୍କର ମୂଳଧନ ହିସାବକୁ ଟ ୫,୧୬୦ ସକାଶେ ଦାୟୀ ଓ କ ଙ୍କର ମୂଳଧନ ହିସାବକୁ ଟ ୫,୧୬୦ ସକାଶେ ଦାତା କରାଯିବ । )

## ଅଂଶୀଦାରୀ କାରବାରର ଚୂଡ଼ାନ୍ତ ହିସାବ—

୧୪ । ଶ୍ରୀଧର ଓ ଗଙ୍ଗାଧର ଗୋଟିଏ ଅଂଶୀଦାରୀ ବ୍ୟବସାୟର ଅଂଶୀଦାର ଥାଇ ଲାଭ ଓ କ୍ଷତିର ଶ୍ରୀଧର ଶତକଡ଼ା ୬୦ ଓ ଗଙ୍ଗାଧର ଶତକଡ଼ା ୪୦ ଭୋଗ କରୁଥିଲେ । ବ୍ୟବସାୟର ୧୯୭୪ ମସିହା ଡିସେମ୍ବର ୩୧ ତାରିଖରେ ଶେଷ ହେଉଥିବା ବର୍ଷର ରେଓ୍ୱା ନିମ୍ନରେ ପ୍ରଦତ୍ତ ହେଲା :

| | ଟଙ୍କା | | ଟଙ୍କା |
|---|---|---|---|
| ଆଦ୍ୟ ମହଜୁଦ ପଣ୍ୟ | ୮,୪୬୦ | ମୂଳଧନ : | |
| କ୍ରୟ | ୧୨,୯୦୦ | ଶ୍ରୀଧର | ୧୮,୦୦୦ |
| ବିକ୍ରୟ ଫେରସ୍ତ | ୧,୨୦୦ | ଗଙ୍ଗାଧର | ୧୨,୦୦୦ |
| ଅନ୍ତର୍ମୁଖୀ ଗାଡ଼ିଭଡ଼ା | ୩୦୦ | ବିକ୍ରୟ | ୩୯,୦୦୦ |
| ବହିର୍ମୁଖୀ ଗାଡ଼ିଭଡ଼ା | ୧,୪୦୦ | ବିବିଧ ମହାଜନ | ୭,୬୦୦ |
| ମଜୁରି | ୬୦୦ | ବଟା | ୫୦୦ |
| ବେତନ | ୪,୮୦୦ | ଦେୟ ହୁଣ୍ଡି | ୩,୨୦୦ |
| ବିଜ୍ଞାପନ | ୬,୦୦୦ | ସଞ୍ଚିତ | ୨,୦୦୦ |
| କଳକବ୍ଜା | ୧୫,୦୦୦ | କ୍ରୟ ଫେରସ୍ତ | ୧,୦୦୦ |
| ଆସବାବ୍ | ୮,୦୦୦ | | |
| ପ୍ରାପ୍ୟ ହୁଣ୍ଡି | ୪,୫୦୦ | | |
| ବିବିଧ ଦପ୍ତର ଖର୍ଚ୍ଚ | ୩,୮୦୦ | | |
| ବିବିଧ ଖାତକ | ୧୨,୦୦୦ | | |
| ନଗଦ ଓ ବ୍ୟାଙ୍କରେ ଗଚ୍ଛିତ ତହବିଲ | ୪,୩୪୦ | | |
| | ୮୩,୩୦୦ | | ୮୩,୩୦୦ |

ନିମ୍ନଲିଖିତ ବିଷୟଗୁଡ଼ିକର ସମାଯୋଜନ କରି ଏହି ଅଂଶୀଦାରୀ ବ୍ୟବସାୟର ୧୯୭୪ ମସିହା ଡିସେମ୍ବର ୩୧ ତାରିଖରେ ଶେଷ ହେଉଥିବା ବର୍ଷର ମୋଟ ଓ ନିଟ୍ ଲାଭ-କ୍ଷତି ହିସାବ ଓ ଉକ୍ତ ତାରିଖର ଉଦ୍‌ବୃତ୍ତ ପତ୍ର ପ୍ରସ୍ତୁତ କର ।

(କ) କଳକବ୍ଜା ଉପରୁ ଶତକଡ଼ା ୧୦ ଓ ଆସବାବ ଉପରୁ ଶତକଡ଼ା ୧୨ ହାରରେ ମୂଲ୍ୟ ହ୍ରାସ ବାଦ୍ ଦିଆଯିବ ।

(ଖ) ବିବିଧ ଖାତକ ପରିମାଣ ଉପରେ ଶତକଡ଼ା ୫ ହାରରେ ଅନାଦାୟୀ ଋଣ ପାଣ୍ଠି ଗଢ଼ାଯିବ ।

(ଗ) ବିଜ୍ଞାପନ ପରିମାଣର ଅର୍ଦ୍ଧେକ ପରବର୍ତ୍ତୀ ବର୍ଷକୁ ନିଆଯିବ ।

(ଘ) ବେତନ ବାବଦ ୩୦୦ ଟଙ୍କା ଓ ମଜୁରି ବାବଦ ୧୫୦ ଟଙ୍କା ଦେୟ ଅଛି ।

(ଙ) ଅଂଶୀଦାରମାନେ ଶତକଡ଼ା ୫ ହାରରେ ସୁଧ ପାଇବେ ଓ ବାର୍ଷିକ ବେତନ ବାବଦ ଶ୍ରୀଧର ୩,୦୦୦ ଟଙ୍କା ଓ ଗଙ୍ଗାଧର ୧,୫୦୦ ଟଙ୍କା ପାଇବେ ।

(ଚ) ଅନ୍ତ୍ୟ ମହଜୁଦ୍ ପଣ୍ୟର ମୂଲ୍ୟ ୧୨,୩୦୦ ଟଙ୍କା ।

(ଛ) ଅଂଶୀଦାରମାନେ ମୂଳଧନ ବାବଦ ସୁଧ ଓ ବାର୍ଷିକ ବେତନ ପାଇବା ପୂର୍ବରୁ ନିଟ୍ ଲଭରୁ ଟ ୨,୦୦୦ ଟଙ୍କା ସଞ୍ଚିତ ହିସାବକୁ ନିଆଯିବ ।

( ଉତ୍ତର :—ମୋଟ ଲଭ ଟ ୨୮,୭୧୦; ନିଟ୍ ଲଭ ଟ ୧୨,୮୩୦; ଶ୍ରୀଧରଙ୍କର ମୂଳଧନ ହିସାବ (ଦାତା ବାକି) ଟ ୨୪,୭୧୮; ଗଙ୍ଗାଧରଙ୍କର ମୂଳଧନ ହିସାବ (ଦାତା ବାକି) ଟ ୧୭,୦୩୨; ଉଦ୍‌ବୃତ୍ତ ପତ୍ରର ମୋଟ ପରିମାଣ ଟ ୫୭,୦୮୦)

୧୫ । ନିମ୍ନଲିଖିତ X ଓ Y ଙ୍କର ୧୯୫୪ ମସିହା ଡିସେମ୍ବର ୩୧ ତାରିଖର ରେଓ୍ୱା ମେଳରୁ ସେହି ତାରିଖରେ ଶେଷ ହେଉଥିବା ବର୍ଷର ମୋଟ ଓ ନିଟ୍ ଲଭ ଓ କ୍ଷତି ହିସାବ ଓ ଉକ୍ତ ତାରିଖର ଉଦ୍‌ବୃତ୍ତ ପତ୍ର ପ୍ରସ୍ତୁତ କର ।

| | ଟଙ୍କା | ଟଙ୍କା |
|---|---|---|
| ଯନ୍ତ୍ର ଓ ଯନ୍ତ୍ର | ୭୦,୦୦୦ | |
| ଆଦ୍ୟ ମହଜୁଦ ପଣ୍ୟ | ୩୫,୦୦୦ | |
| କ୍ରୟ ଓ ବିକ୍ରୟ | ୭୫,୦୦୦ | ୧,୫୦,୦୦୦ |
| ଫେରନ୍ତ | ୧,୮୦୦ | ୨,୦୦୦ |
| ଭୂମି ଓ ଭବନ | ୬୦,୦୦୦ | |
| ଅନ୍ତର୍ମୁଖୀ ଗାଡ଼ିଭଡ଼ା | ୧,୫୦୦ | |
| ବହିର୍ମୁଖୀ ଗାଡ଼ିଭଡ଼ା | ୩,୫୦୦ | |
| ମଜୁରି | ୨୫,୦୦୦ | |
| ବିବିଧ ଖାତକ | ୪୮,୦୦୦ | |
| କୋଇଲା | ୩,୫୦୦ | |
| ଅନାଦାୟୀ ଋଣ | ୧,୫୦୦ | |
| ଗ୍ୟାସ୍ ଓ ଜଳ | ୩୫୦ | |
| ଆସବାବ୍‌ପତ୍ର | ୧୫,୪୦୦ | |

| | | |
|---|---|---|
| ଦେୟ ହୁଣ୍ଡି | | ୧୦,୫୦୦ |
| ବିବିଧ ମହାଜନ | | ୨୫,୦୦୦ |
| ବିଜ୍ଞାପନ | ୧୫,୦୦୦ | |
| ଘରଭଡ଼ା ଓ ଟିକସ | ୩,୫୦୦ | |
| ପ୍ରାପ୍ୟ ହୁଣ୍ଡି | ୨୨,୦୦୦ | |
| ମୂଳଧନ ହିସାବ : | | |
| X—ଟ ୮୦,୦୦୦ | | |
| Y—ଟ ୭୫,୦୦୦ | | |
| ବେତନ | ୧୬,୦୦୦ | ୧,୫୫,୦୦୦ |
| ଅଂଶୀଦାରଙ୍କର ଉଠାଣ : | | |
| X—ଟ ୫,୦୦୦ | | |
| Y—ଟ ୪,୦୦୦ | ୯,୦୦୦ | |
| ବ୍ୟବସାୟ ଖର୍ଚ୍ଚ | ୧୧,୦୦୦ | |
| ନଗଦ ତହବିଲ | ୭୫୦ | |
| ବ୍ୟାଙ୍କରେ ଗଚ୍ଛିତ | ୨୨,୬୦୦ | |
| | ୪,୪୧,୫୦୦ | ୪,୪୧,୫୦୦ |

ନିମ୍ନଲିଖିତ ଅଧିକା ତଥ୍ୟ ଦିଆଯାଇଛି :

(କ) ଅଂଶୀଦାରମାନେ ଲଭ ଓ କ୍ଷତିର ଯଥାକ୍ରମେ X, $\frac{3}{5}$ ଅଂଶ ଓ Y, $\frac{2}{5}$ ଅଂଶ ଭୋଗ କରନ୍ତି । (ଖ) ଅନ୍ତ୍ୟ ମହଜୁଦ ପଣ୍ୟର ମୂଲ୍ୟ ଟ ୪୦,୦୦୦ । (ଗ) କ୍ଷୟ କ୍ଷତି ବାବଦ ଦିଅ : ଯନ୍ତ୍ରାଂଶ ଓ ଯନ୍ତ୍ରରୁ ଶତକଡ଼ା ୧୦ ହାରରେ ଓ ଆସବାବ୍‌ପତ୍ରରୁ ଶତକଡ଼ା ୨୦ ହାରରେ । (ଘ) ବିବିଧ ଖାତକ ପରିମାଣ ଉପରେ ଶତକଡ଼ା ୨½ ହାରରେ ଅନାଦାୟୀ ଋଣରେ ସଞ୍ଚିତ ରଖାଯିବ । (ଙ) ମୂଳଧନ ବାବଦ ଶତକଡ଼ା ୫ ହାରରେ ଓ ଉଠାଣ ବାବଦ ଶତକଡ଼ା ୬ ହାରରେ ସୁଧ କଟାଯିବ ( ଉଠାଣ ବାବଦ ଟଙ୍କା ୧୯୫୪ ମସିହା ଜୁନ୍ ୩୦ ତାରିଖରେ ନିଆଯାଇଛି ବୋଲି ଅନୁମାନ କର) । (ଚ) ବେତନ ମଧ୍ୟରେ ଅଂଶୀଦାରମାନେ ସମାନ ଅଂଶରେ ନେଇଥିବା ବେତନ ବାବଦ ଟ୬,୦୦୦ ଅନ୍ତର୍ଭୁକ୍ତ ଅଛି । (ଛ) ବିଜ୍ଞାପନ ବାବଦ ଖର୍ଚ୍ଚ ଅର୍ଦ୍ଧ-ପୁଞ୍ଜି ରୂପେ ବିବେଚିତ ହେବ ଓ ୫ ବର୍ଷ ମଧ୍ୟରେ ଦ୍ରବୀଭୂତ ହେବ । (ଜ) ବକେୟା ଖର୍ଚ୍ଚ ସକାଶେ ବ୍ୟବସ୍ଥା କରାଯିବ : ମଜୁରି ଟ୨,୦୦୦ ଓ ବେତନ ଟ ୩,୦୦୦ । (ଝ) ଅଂଶୀଦାରମାନେ ପ୍ରତ୍ୟେକେ ବାର୍ଷିକ ଟ ୩,୦୦୦ ବେତନ ପାଇବେ । (ଅଂଶୀଦାରମାନଙ୍କ ସମ୍ବନ୍ଧୀୟ ସମସ୍ତ ସମାଯୋଜନ ଲଭ-କ୍ଷତି ହିସାବର ଉପଯୁକ୍ତ ଅଂଶରେ ଲିପିବଦ୍ଧ କରାଯିବ ।)

( C. U. B. Com., 1955 )

( ଉତ୍ତର : ମୋଟ ଲଭ, ଟ ୧,୪୬,୮୫୦; ନିଟ୍ ଲଭ ଟ ୯୬,୦୭୦; ଲଭର ଅଂଶ —X, ଟ ୬୬,୦୭୨ ଓ Y, ଟ ୨୯,୯୯୮; ଉଦ୍‌ବୃତ୍ତ ପତ୍ରର ମୋଟ ପରିମାଣ ଟ ୨,୭୯,୫୬୦ )

୧୬ । ଗୋଟିଏ ବ୍ୟବସାୟର ସୁନାମ କହିଲେ କ'ଣ ବୁଝ ? ସୁନାମର ମୂଲ୍ୟାୟନ ସକାଶେ କେଉଁ ବିଷୟଗୁଡ଼ିକ ବିଚାରକୁ ନିଆଯାଏ ? ସାଧାରଣତଃ କେଉଁ ପଦ୍ଧତି ଅନୁଯାୟୀ ସୁନାମର ମୂଲ୍ୟ ସ୍ଥିର କରାଯାଏ ?

୧୭ । ନିମ୍ନଲିଖିତ ପରିସ୍ଥିତିରେ ସୁନାମ ସମ୍ବନ୍ଧରେ କି ହିସାବ ରକ୍ଷଣ ବ୍ୟବସ୍ଥା ଗ୍ରହଣ କରାଯାଏ :

(କ) ଗୋଟିଏ ଅଂଶୀଦାର ଅବସର ଗ୍ରହଣ କରିବା ସମୟରେ ଯଦି ବ୍ୟବସାୟରେ ସୁନାମ ହିସାବ ଖୋଲା ଯାଇ ନ ଥାଏ ।

(ଖ) ଯେତେବେଳେ ଗୋଟିଏ କମ୍ପାନୀ ଅଂଶୀଦାରି ବ୍ୟବସାୟର ନିଟ୍ ସମ୍ପତ୍ତିର ମୂଲ୍ୟ ଅପେକ୍ଷା ଅଧିକ ମୂଲ୍ୟରେ ବ୍ୟବସାୟକୁ କ୍ରୟ କରେ ?

୧୮ । ଗୋଟିଏ ଅଂଶୀଦାରି କାରବାରରେ ଏକ ନୂତନ ଅଂଶୀଦାର ରୂପେ ଯୋଗ ଦେଉଥିବା ବ୍ୟକ୍ତି ମୂଳଧନ ସ୍ୱରୂପ ଯେଉଁ ଅର୍ଥ ବ୍ୟବସାୟକୁ ଆଣନ୍ତି ତାହା ବ୍ୟବସାୟ ହିସାବରେ କେଉଁ ବିଭିନ୍ନ ପ୍ରଣାଳୀରେ ଲିପିବଦ୍ଧ କରାଯାଏ ? ସେ ସୁନାମ ବାବଦ ଯଦି କୌଣସି ଅର୍ଥ ନ ଆଣନ୍ତି, ତାହାହେଲେ କ'ଣ କରାଯାଏ ?

୧୯ । ନିମ୍ନଲିଖିତ ପରିସ୍ଥିତିରେ ସୁନାମ ସମ୍ବନ୍ଧରେ କି ପ୍ରକାର ଜାବ୍‌ଦା ଆବଶ୍ୟକ ହୁଏ :

(କ) କୌଣସି ଅଂଶୀଦାର ଅବସର ଗ୍ରହଣ କରିବା ସମୟରେ ଯଦି ବ୍ୟବସାୟରେ କୌଣସି ସୁନାମ ହିସାବ ନ ଥାଏ ।

(ଖ) ବ୍ୟବସାୟର ବିକ୍ରି ସମୟରେ ଯଦି ସୁନାମ ହିସାବ ଥାଏ ଏବଂ ସୁନାମ ହିସାବ ନ ଥାଏ ।

**ସୁନାମର ମୂଲ୍ୟାୟନ :**

୨୦ । ହରିଶ ଓ ରମେଶ ଗୋଟିଏ ଅଂଶୀଦାରି କାରବାର ଚଳାଉଥିଲେ । ସେମାନେ ଗିରୀଶଙ୍କୁ ଏକ ନୂତନ ଅଂଶୀଦାର ରୂପେ ଗ୍ରହଣ କରିବାକୁ ସ୍ଥିର କଲେ । ବ୍ୟବସାୟର ସୁନାମ ଗତ ପାଞ୍ଚ ବର୍ଷର ହାରାହାରି ଲଭର ଦୁଇ ଗୁଣ ହେବ । ଗିରୀଶ ତାହାର ଏକ-ଚତୁର୍ଥାଂଶ ଆଣିବେ ।

ବ୍ୟବସାୟର ଗତ ପାଞ୍ଚ ବର୍ଷର ଲାଭ ନିମ୍ନପ୍ରକାର ଥିଲା ।

୧୯୬୯—୧୨,୦୦୦ ଟଙ୍କା
୧୯୭୦—୧୫,୦୦୦ ଟଙ୍କା
୧୯୭୧— ୧୯,୦୦୦ ଟଙ୍କା
୧୯୭୨—୨୪,୦୦୦ ଟଙ୍କା
୧୯୭୩—୨୫,୦୦୦ ଟଙ୍କା

ଗିରୀଶ ସୁନାମ ବାବଦ କେତେ ଟଙ୍କା ଆଣିବେ ତାହା ନିର୍ଣ୍ଣୟ କର ।

( ଉତ୍ତର—୯,୫୦୦ ଟଙ୍କା )

୨୧ । କ ଓ ଖ ଗୋଟିଏ ଅଂଶୀଦାରୀ କାରବାରର ଅଂଶୀଦାର । ସେମାନେ ଗ କୁ ନୂତନ ଅଂଶୀଦାର ରୂପେ ଗ୍ରହଣ କରିବାକୁ ସମ୍ମତ ହେଲେ । ପୁରାତନ ବ୍ୟବସାୟର ସୁନାମ ଗତ ପାଞ୍ଚ ବର୍ଷର ଲାଭ ଓ କ୍ଷତିର ହାରାହାରି ପରିମାଣର ଦ୍ୱିଗୁଣ ହେବ । ଗତ ପାଞ୍ଚ ବର୍ଷର ଲାଭ ଓ କ୍ଷତି ନିମ୍ନ ରୂପ ଥିଲା :

୧୯୭୦—ଲାଭ ୫,୦୦୦ ଟଙ୍କା
୧୯୭୧—କ୍ଷତି ୨,୦୦୦ ଟଙ୍କା
୧୯୭୨—କ୍ଷତି ୧,୦୦୦ ଟଙ୍କା
୧୯୭୩—ଲାଭ ୧୫,୦୦୦ ଟଙ୍କା
୧୯୭୪—ଲାଭ ୨୧,୫୦୦ ଟଙ୍କା

ବ୍ୟବସାୟର ସୁନାମର ମୂଲ୍ୟ ନିରୂପଣ କର ।

( ଉତ୍ତର—୧୫,୪୦୦ ଟଙ୍କା )

୨୨ । ନିମ୍ନଲିଖିତ ବିବରଣୀରୁ ଅମରେନ୍ଦ୍ରଙ୍କ ବ୍ୟବସାୟର ସୁନାମ ମୂଲ୍ୟ ନିରୂପଣ କର ।

ବ୍ୟବସାୟରେ ନିୟୋଜିତ ହାରାହାରି ମୂଳଧନର ପରିମାଣ ୧୯୭୨, ୧୯୭୩ ଓ ୧୯୭୪ ମସିହା ସକାଶେ ଯଥାକ୍ରମେ ଟ ୨୦,୦୦୦, ଟ ୩୦,୦୦୦ ଓ ଟ ୩୪,୦୦୦ ଥିଲା । ବ୍ୟବସାୟ ସମ୍ବନ୍ଧୀୟ ସମସ୍ତ ବ୍ୟୟ ଓ କ୍ଷୟ କ୍ଷତି ବାଦ୍ ଦେବା ପରେ ତାଙ୍କର ଲାଭ ଯଥାକ୍ରମେ ଟ୧୨,୦୦୦, ଟ୧୫,୫୦୦ ଓ ଟ ୧୯,୦୦୦ ଥିଲା । ଏହି ପ୍ରକାର ବ୍ୟବସାୟରେ ଅମରେନ୍ଦ୍ର ବାର୍ଷିକ ଶତକଡ଼ା ୧୦ ହାରରେ ଯୁକ୍ତିସଙ୍ଗତ ଆୟ ଆଶା କରିପାରନ୍ତି । ସେ ବ୍ୟବସାୟର ପରିଚାଳନାରେ ଯେଉଁ ଶ୍ରମ ଓ ବୁଦ୍ଧି ପ୍ରୟୋଗ କରନ୍ତି ସେଥି ନିମନ୍ତେ ଯୁକ୍ତିଯୁକ୍ତ ଭାବରେ ସେ ବାର୍ଷିକ ଟ୩,୦୦୦ ହାରରେ ପାରିଶ୍ରମିକ ପ୍ରତ୍ୟାଶା କରିପାରନ୍ତି । ବ୍ୟବସାୟର ସୁନାମ ୩ ବର୍ଷର ହାରାହାରି ଅଧି-ଲାଭ ( Super Profit ) ର ୩ ଗୁଣ ହେବ ।

(ଉତ୍ତର—ଟ ୨୯,୧୦୦—ସୁନାମର ମୂଲ୍ୟ)

**ନୂତନ ଅଂଶୀଦାର ଗ୍ରହଣ :**

୧୩ । କ ଓ ଖ ଗୋଟିଏ ଅଂଶୀଦାରୀ କାରବାରରେ ଅଂଶୀଦାର ରୂପେ ଲାଭର ଯଥାକ୍ରମେ ଶତକଡ଼ା ୭୫ ଓ ୨୫ ଭାଗ ଭୋଗ କରୁଥିଲେ । ସେମାନେ ଗ କୁ ଭବିଷ୍ୟତ୍ ଲାଭର ⅕ ଅଂଶ ଦେଇ ନୂତନ ଅଂଶୀଦାର ରୂପେ ଗ୍ରହଣ କରିବାକୁ ସମ୍ମତ ହେଲେ । ଗ ମୋଟରେ ୧୬,୦୦୦ ଟଙ୍କା ଆଣିଲେ ଓ ତନ୍ମଧ୍ୟରୁ ୮,୦୦୦ ଟଙ୍କା ସୁନାମ ବାବଦ ଆଣିଛନ୍ତି ବୋଲି ବିବେଚିତ ହୋଇଥିଲା ।

ଏହି କାରବାର ସକାଶେ ଜାବ୍ଦା ଲେଖ ଓ ଅଂଶୀଦାରଙ୍କର ଭବିଷ୍ୟତ୍ ଲାଭ ବଣ୍ଟନର ଅନୁପାତ ସ୍ଥିର କର ।

(ଉତ୍ତର – ଅନୁପାତ ୩ : ୧ : ୧)

୧୪ । କ ଓ ଖ ଗୋଟିଏ ଅଂଶୀଦାରୀ କାରବାରର ଅଂଶୀଦାର ଥାଇ ୩ : ୨ ଅନୁପାତରେ ଲାଭ ଓ ଲୋକସାନ ବଣ୍ଟନ କରୁଥିଲେ । ସେମାନେ ଗ ଙ୍କୁ ଭବିଷ୍ୟତ୍ ଲାଭର ଏକ-ଚତୁର୍ଥାଂଶ ଦେଇ ନୂତନ ଅଂଶୀଦାର ରୂପେ ଗ୍ରହଣ କରିବାକୁ ସମ୍ମତ ହେଲେ । ଗ ଙ୍କୁ ମୂଳଧନ ବାବଦ ୧୨,୦୦୦ ଟଙ୍କା ଓ ସୁନାମ ବାବଦ ୩,୦୦୦ ଟଙ୍କା ଆଣିବାକୁ ହେବ । କିନ୍ତୁ କୌଣସି ଏକ ଦୁର୍ଘଟଣା ହେତୁ ସେ କେବଳ ୧୦,୦୦୦ ଟଙ୍କା ଆଣିପାରିଲେ ଏବଂ ଅବଶିଷ୍ଟ ଟଙ୍କା ସେ ତାଙ୍କ ଭବିଷ୍ୟତ୍ ଲାଭରୁ ପରିଶୋଧ କରିବେ ବୋଲି ସ୍ୱୀକୃତ ହେଲେ । ଏପରି ସ୍ଥଳେ ଅଂଶୀଦାରୀ ବ୍ୟବସାୟରେ କିପରି ଜାବ୍ଦା ଲେଖାଯିବ ତାହା ଦର୍ଶାଅ ଓ ଅଂଶୀଦାରମାନଙ୍କର ଭବିଷ୍ୟତ୍ ଲାଭ-କ୍ଷତି ବଣ୍ଟନର ଅନୁପାତ ନିର୍ଣ୍ଣୟ କର ।

(ଉତ୍ତର—ଲାଭ-କ୍ଷତି ବଣ୍ଟନର ଅନୁପାତ ୯:୬:୫)

୧୫ । ବିକାଶ ଓ ପ୍ରକାଶ ଗୋଟିଏ ଅଂଶୀଦାରୀ କାରବାରର ଅଂଶୀଦାର ଥାଇ ୪ : ୩ ଅନୁପାତରେ ଲାଭ ଓ କ୍ଷତି ବଣ୍ଟନ କରୁଥିଲେ । ସେମାନେ ସୁବାସକୁ ଏକ ଅଂଶୀଦାର ରୂପେ ଗ୍ରହଣ କରିବାକୁ ସ୍ୱୀକୃତ ହେଲେ । ସୁବାସ ସୁନାମ ବାବଦ ୬,୩୦୦ ଟଙ୍କା ଆଣିବେ ଓ ତାହା ବ୍ୟବସାୟରେ ରଖାଯିବ ଓ ସେ ମୂଳଧନ ବାବଦ ୮,୦୦୦ ଟଙ୍କା ଆଣିବେ । ବିକାଶ ଓ ପ୍ରକାଶଙ୍କର ମୂଳଧନ ଯଥାକ୍ରମେ ୧୨,୦୦୦ ଟଙ୍କା ଓ ୧୦,୦୦୦ ଟଙ୍କା ଥିଲା । ସେମାନଙ୍କର ନୂତନ ଲାଭ ଓ କ୍ଷତି ବଣ୍ଟନର ଅନୁପାତ ୭ : ୫ : ୩ ହେବ । ନୂତନ ଅଂଶୀଦାରମାନଙ୍କର ପ୍ରବେଶ ପରେ ଅଂଶୀଦାରଙ୍କର ମୂଳଧନ ହିସାବର ବାକି ନିର୍ଣ୍ଣୟ କର ।

( ଉତ୍ତର : ମୂଳଧନ ହିସାବ—ବିକାଶ ୧୫,୩୦୦ ଟଙ୍କା, ପ୍ରକାଶ ୧୩,୦୦୦ ଟଙ୍କା ଓ ସୁବାସ ୮,୦୦୦ ଟଙ୍କା )

(ନୋଟ : ନୂତନ ଲାଭ-କ୍ଷତି ବଣ୍ଟନର ଅନୁପାତ ଦିଆଯାଇଥିବାରୁ ଏଠାରେ ସୁନାମ ବାବଦ ସ୍ୱରୂପ ଆଣିଥିବା ଟଙ୍କା ପୁରାତନ ଅଂଶୀଦାରମାନେ ତ୍ୟାଗାନୁପାତିକ ହାର, ଅର୍ଥାତ୍ ୧୧ : ୧୦ ହାରରେ ବଣ୍ଟନ କରିନେବେ ।)

୨୭ । ଅରୂପ ଓ ଅପରୂପଙ୍କର ୧୯୬୧ ମସିହା ଜାନୁଆରୀ ' ତାରିଖର ଉଦ୍‌ବୃତ୍ତ ପତ୍ର ନିମ୍ନରେ ପ୍ରଦତ୍ତ ହେଲା । ଅଂଶୀଦାରମାନେ ଲାଭ-କ୍ଷତିର ଯଥାକ୍ରମେ ୨/୩ ଓ ୧/୩ ଅଂଶ ଭୋଗ କରୁଥିଲେ :

୧୯୬୧ ମସିହା ଜାନୁଆରୀ ୧ ତାରିଖର ଉଦ୍‌ବୃତ୍ତ ପତ୍ର

| ଦାୟ | | ଟଙ୍କା | ସମ୍ପତ୍ତି | ଟଙ୍କା |
|---|---|---|---|---|
| ମହାଜନ | | ୧୫,୦୦୦ | ସଯନ୍ତ୍ର | ୫୦,୦୦୦ |
| ମୂଳଧନ ହିସାବ : | | | ମହଜୁଦ୍ ପଣ୍ୟ | ୨୦,୦୦୦ |
| ଅରୂପ | ଟ ୬୦,୦୦୦ | | ଖାତକ | ୩୦,୦୦୦ |
| ଅପରୂପ | ଟ ୩୦,୦୦୦ | ୯୦,୦୦୦ | ନଗଦ ତହବିଲ | ୫,୦୦୦ |
| | | ୧,୦୫,୦୦୦ | | ୧,୦୫,୦୦୦ |

ସ୍ୱରୂପ ନୂତନ ଅଂଶୀଦାର ରୂପେ ଗୃହୀତ ହେବାର ସ୍ଥିର ହେଲା । ବ୍ୟବସାୟର ସୁନାମ ଟ ୩୦,୦୦୦ ରୂପେ ସାବ୍ୟସ୍ତ ହେଲା ଓ ଏହି ମୂଲ୍ୟରେ ବ୍ୟବସାୟରେ ଏକ ସୁନାମ ହିସାବ ଖୋଲାଯିବାର ସ୍ଥିର ହେଲା । ଏହା ମଧ୍ୟ ସ୍ଥିର ହେଲା ଯେ ସୁନାମର ମୂଲ୍ୟ ଦୁଇ ଅଂଶୀଦାରଙ୍କର ମୂଳଧନ ହିସାବରେ ସମାଯୋଜିତ ହେଲା ପରେ ସ୍ୱରୂପ ଉପସ୍ଥିତ ଅଂଶୀଦାରଙ୍କର ମିଳିତ ମୂଳଧନ ପରିମାଣ ( ସୁନାମର ସମାଯୋଜନ ପରେ)ର ଅର୍ଦ୍ଧେକ ଟଙ୍କା ମୂଳଧନ ସ୍ୱରୂପ ଆଣିବେ ଓ ସେ ଭବିଷ୍ୟତ୍ ଲାଭର ୧/୩ ଅଂଶ ଭୋଗ କରିବେ ।

ଉପରୋକ୍ତ ନେଣଦେଣଗୁଡ଼ିକୁ ଜାବ୍‌ଦାଭୁକ୍ତ କର ଓ ସ୍ୱରୂପ ବ୍ୟବସାୟରେ ଯୋଗ ଦେବା ପରେ ନୂତନ ଅଂଶୀଦାରୀ କାରବାରର ପ୍ରଥମ ଉଦ୍‌ବୃତ୍ତ ପତ୍ର ପ୍ରସ୍ତୁତ କର ।

( C. U. B. Com., 1963 )

( ଉତ୍ତର :—ଉଦ୍‌ବୃତ୍ତ ପତ୍ରର ମୋଟ ପରିମାଣ ଟ ୧,୯୫,୦୦୦ )

୨୭ । ମିଶ୍ର ଓ ମହାପାତ୍ରଙ୍କର ୩୧-୩-୧୯୭୪ ତାରିଖର ଉଦ୍‌ବୃତ୍ତ ପତ୍ର ନିମ୍ନରେ ପ୍ରଦତ୍ତ ହେଲା ।

| | ଟଙ୍କା | | ଟଙ୍କା |
|---|---|---|---|
| ବିବିଧ ମହାଜନ | ୨୦,୦୦୦ | କଳକବ୍ଜା | ୧୨,୦୦୦ |
| ମୂଳଧନ ହିସାବ : | | ଆସବାବ୍‌ପତ୍ର | ୪,୦୦୦ |
| ମିଶ୍ର | ୧୨,୦୦୦ | ବିବିଧ ଖାତକ | ୧୦,୦୦୦ |
| ମହାପାତ୍ର | ୧୦,୦୦୦ | ମହଜୁଦ୍ ପଣ୍ୟ | ୯,୫୦୦ |
| | | ନଗଦ ଓ ବ୍ୟାଙ୍କ୍‌ରେ ଗଚ୍ଛିତ | ୬,୫୦୦ |
| | ୪୨,୦୦୦ | | ୪୨,୦୦୦ |

ସେମାନେ ନିମ୍ନଲିଖିତ ସର୍ତ୍ତରେ ମହାନ୍ତିଙ୍କୁ ଅଂଶୀଦାର ରୂପେ ଗ୍ରହଣ କରିବାକୁ ସ୍ୱୀକୃତ ହେଲେ :

(କ) ମହାନ୍ତି ବ୍ୟବସାୟର ସୁନାମ ବାବଦ ଟ ୮,୦୦୦ ଟଙ୍କା ନଗଦ ଆଣିବେ ଓ ଭବିଷ୍ୟତ୍ ଲଭର $\frac{1}{8}$ ଅଂଶ ଭୋଗ କରିବେ ।

(ଖ) ସେ ବ୍ୟବସାୟକୁ ଆଣୁଥିବା ନିମ୍ନଲିଖିତ ସମ୍ପତ୍ତିଗୁଡ଼ିକର ମୂଲ୍ୟ ସକାଶେ ମହାନ୍ତିଙ୍କ ହିସାବକୁ ଦାତା କରାଯିବ ।

ସୁନାମ— ଟ ୨,୦୦୦; ଆସବାବ୍‌ପତ୍ର ଟ ୨,୫୦୦; ମହଜୁଦ୍ ପଣ୍ୟ ଟ୪ ୦୦୦ ଓ ବିବିଧ ଖାତକ ଟ ୩,୫୦୦ ।

(ଗ) କଳକବ୍ଜାର ମୂଲ୍ୟ ଟ ୪ ୦୦୦ ରଖାଯିବ ।

(ଘ) ମିଶ୍ର ଓ ମହାପାତ୍ର ତାଙ୍କ ଲଭ ଓ କ୍ଷତିର ଅଂଶ ଅନୁପାତରେ ବ୍ୟବସାୟରେ ମୂଳଧନ ରଖି ବଳକା ଟଙ୍କା ଉଠାଇନେବେ ।

ଉପରୋକ୍ତ ନେଣଦେଣଗୁଡ଼ିକର ଜାବ୍‌ଦା ପ୍ରସ୍ତୁତ କର, ମିଶ୍ର ଓ ମହାପାତ୍ର ବ୍ୟବସାୟରୁ କେତେ ଟଙ୍କା ଉଠାଇନେଲେ ତାହା ନିର୍ଣ୍ଣୟ କର ଓ ନୂତନ ଉଦ୍ବୃତ୍ତ ପତ୍ର ପ୍ରସ୍ତୁତ କର ।

( ଉତ୍ତର : ବ୍ୟବସାୟରୁ ଉଠାଇନେବେ ମିଶ୍ର ଟ ୫,୦୦୦, ମହାପାତ୍ର ଟ୩,୦୦୦; ଉଦ୍ବୃତ୍ତ ପତ୍ରର ମୋଟ ପରିମାଣ ଟ ୫୭,୦୦୦ ।)

୨୮ । କ ଓ ଖ ଗୋଟିଏ ଅଂଶୀଦାରୀ ବ୍ୟବସାୟର ଅଂଶୀଦାର । ସେମାନଙ୍କର ୧୯୭୪ ମସିହା ଡିସେମ୍ବର ୩୧ ତାରିଖର ଉଦ୍ବୃତ୍ତ ପତ୍ର ନିମ୍ନରେ ପ୍ରଦତ୍ତ ହେଲା ।

୧୯୭୪ ମସିହା ଡିସେମ୍ବର ୩୧ ତାରିଖର ଉଦ୍ବୃତ୍ତ ପତ୍ର

| ଦାୟ | ଟଙ୍କା | ସମ୍ପତ୍ତି | ଟଙ୍କା |
|---|---|---|---|
| ବିବିଧ ମହାଜନ | ୧୨,୦୦୦ | ସଂଯନ୍ତ୍ର ଓ ଯନ୍ତ୍ର | ୧୮,୦୦୦ |
| ବ୍ୟାଙ୍କ୍ ଅଧି-ଉଠାଣ | ୮,୦୦୦ | ଆସବାବ୍‌ପତ୍ର | ୩,୫୦୦ |
| ମୂଳଧନ ହିସାବ : | | ମହଜୁଦ୍ ପଣ୍ୟ | ୧୨,୫୦୦ |
| କ—ଟ ୨୨,୦୦୦ | | ବିବିଧ ଖାତକ | ୧୪,୦୦୦ |
| ଖ—ଟ ୧୬,୦୦୦ | ୩୮,୦୦୦ | ବିନିଯୋଗ | ୧୦,୦୦୦ |
| | ୫୮,୦୦୦ | | ୫୮,୦୦୦ |

ସେମାନେ ଗ ଙ୍କୁ ନିମ୍ନଲିଖିତ ସର୍ତ୍ତମତେ ୧୯୭୫ ମସିହା ଜାନୁୟାରୀ ୧ ତାରିଖରୁ ନୂତନ ଅଂଶୀଦାର ରୂପେ ଗ୍ରହଣ କରିବାକୁ ସମ୍ମତ ହେଲେ : (୧) ସଂଯନ୍ତ୍ର ଓ ଯନ୍ତ୍ରରୁ ମୂଲ୍ୟ ହ୍ରାସ ବାବଦ ଶତକଡ଼ା ୫ ବାଦ୍ ଦିଆଯିବ, (୨) ଆସବାବପତ୍ରର ମୂଲ୍ୟ ଟ ୩,୦୦୦ ଧାର୍ଯ୍ୟ ହେବ, (୩) ବିବିଧ ଖାତକ ପରିମାଣ ଉପରେ ଶତକଡ଼ା ୨½ ହାରରେ ଅନାଦାୟୀ ଋଣର ସଞ୍ଚିତ ଗଢ଼ାଯିବ, (୪) ମହଜୁଦ୍ ପଣ୍ୟର ମୂଲ୍ୟ ଶତକଡ଼ା ୧୦ ହ୍ରାସ କରାଯିବ, (୫) ବିନିଯୋଗର ମୂଲ୍ୟ ଟ ୮,୦୦୦ କୁ ହ୍ରାସ କରାଯିବ, (୬) ଗ ୧୬,୦୦୦ ଟଙ୍କା ବ୍ୟବସାୟକୁ ଆଣିବେ, ତନ୍ମଧ୍ୟରୁ ୪,୦୦୦ ଟଙ୍କା ସୁନାମ ବାବଦ ଅର୍ଥ ରୂପେ ପରିଗଣିତ ହେବ ଏବଂ କ ଓ ଖ ତାହା ବ୍ୟବସାୟରୁ ଉଠାଇନେବେ । ଗ ଭବିଷ୍ୟତ୍ ଲାଭର ୧/୩ ଅଂଶ ପାଇବେ ।

ଉପରୋକ୍ତ କାରବାରଗୁଡ଼ିକ ବ୍ୟବସାୟର ହିସାବ ବହିରେ ଲିପିବଦ୍ଧ କର । ନୂତନ ଅଂଶୀଦାରୀ ବ୍ୟବସାୟର ପ୍ରଥମ ଉଦ୍ବୃତ୍ତ ପତ୍ର ପ୍ରସ୍ତୁତ କର । ନୂତନ ବ୍ୟବସାୟରେ ଅଂଶୀଦାରମାନଙ୍କର ଭବିଷ୍ୟତ୍ ଲାଭ-କ୍ଷତି ବଣ୍ଟନର ଅନୁପାତ ନିର୍ଣ୍ଣୟ କର ।

( ଉତ୍ତର—ନୂତନ ଉଦ୍ବୃତ୍ତ ପତ୍ରର ମୋଟ ପରିମାଣ ଟ ୬୫,୦୦୦; କ, ଖ ଓ ଗ ଙ୍କର ଲାଭ-କ୍ଷତି ବଣ୍ଟନର ଅନୁପାତ ୧ ୧ ୧)

୨୯ । ବିଜୟ ଓ ସଞ୍ଜୟ ଗୋଟିଏ ଅଂଶୀଦାରୀ ବ୍ୟବସାୟର ଅଂଶୀଦାର ଥାଇ ଲାଭ ଓ କ୍ଷତିକୁ ୩ : ୨ ଅନୁପାତରେ ବଣ୍ଟନ କରୁଥିଲେ । ତାଙ୍କର ୧୯୭୪ ମସିହା ମାର୍ଚ୍ଚ ୩୧ ତାରିଖର ଉଦ୍ବୃତ୍ତ ପତ୍ର ନିମ୍ନରେ ପ୍ରଦତ୍ତ ହେଲା ।

ଉଦ୍‌ବୃତ୍ତ ପତ୍ର

| ଦାୟ | ଟଙ୍କା | ସମ୍ପତ୍ତି | ଟଙ୍କା |
|---|---|---|---|
| ମୂଳଧନ ହିସାବ | | କଳକବ୍ଜା | ୧୫,୦୦୦ |
| ବିଜୟ ଟ ୨୦,୦୦୦ | | ମହଜୁଦ୍ ପଣ୍ୟ | ୧୩,୪୦୦ |
| ସନ୍ତୋଷ ଟ ୧୫,୦୦୦ | ୩୫,୦୦୦ | ବିବିଧ ଖାତକ | ୧୭,୬୦୦ |
| | | ଆସବାବ୍ | ୭,୫୦୦ |
| ବିବିଧ ମହାଜନ | ୧୫,୦୦୦ | ପ୍ରାପ୍ୟ ହୁଣ୍ଡି | ୪,୫୦୦ |
| ବ୍ୟାଙ୍କରୁ ଅଧି-ଉଠାଣ | ୧୦,୦୦୦ | ପେଟେଣ୍ଟ | ୨,୦୦୦ |
| | ୬୦,୦୦୦ | | ୬୦,୦୦୦ |

ସେମାନେ ଅଜୟଙ୍କୁ ସେହି ତାରିଖରେ ଏକ ଅଂଶୀଦାର ରୂପେ ଗ୍ରହଣ କରିବାକୁ ସ୍ୱୀକୃତ ହେଲେ । ସର୍ବସମ୍ମତିକ୍ରମେ ନିମ୍ନଲିଖିତ ସର୍ତ୍ତଗୁଡ଼ିକ ଗୃହୀତ ହୋଇଥିଲା ।

(କ) ଅଜୟ ବ୍ୟାଙ୍କରୁ ଅଧି-ଉଠାଣ ବାବଦ ଟଙ୍କା ପରିଶୋଧ କରିବେ ।

(ଖ) ସମ୍ପତ୍ତିଗୁଡ଼ିକ ନିମ୍ନଲିଖିତ ରୂପେ ମୂଲ୍ୟାୟିତ ହେବ ।

କଳକବ୍‌ଜାର ମୂଲ୍ୟ ଶତକଡ଼ା ୧୦ ଊଣା ହେବ; ଆସବାବର ମୂଲ୍ୟ ଟ୬,୦୦୦କୁ ହ୍ରାସ କରାଯିବ; ପେଟେଣ୍ଟର ମୂଲ୍ୟରୁ ଶତକଡ଼ା ୫ ବାଦ୍ ଦିଆଯିବ; ବିବିଧ ଖାତକ ପରିମାଣ ଉପରେ ଶତକଡ଼ା ୫ ହାରରେ ଅନାଦାୟୀ ଋଣର ସଞ୍ଚିତି ଗଢ଼ାଯିବ ଓ ମହଜୁଦ ପଣ୍ୟର ମୂଲ୍ୟ ଟ ୧୫,୮୮୦ କୁ ବୃଦ୍ଧି କରାଯିବ ।

(ଗ) ଅଜୟ ଉପସ୍ଥିତ ଅଂଶୀଦାରଙ୍କର ମିଳିତ ମୂଳଧନ ପରିମାଣର ଶତକଡ଼ା ୫୦ ଭାଗ ମୂଳଧନ ସ୍ୱରୂପ ଆଣିବେ ।

(ଘ) ଅଜୟ ଭବିଷ୍ୟତ୍ ଲଭର ୪/୫ ଅଂଶ ଭୋଗ କରିବେ ।

(୧) ଉପରୋକ୍ତ ନେଣଦେଣଗୁଡ଼ିକ ସକାଶେ ଜାବଦା ପ୍ରସ୍ତୁତ କର ।

(୨) ଅଜୟ ବ୍ୟବସାୟରେ ଯୋଗଦାନ କରିବା ପରେ ବ୍ୟବସାୟର ଉଦ୍‌ବୃତ୍ତ ପତ୍ର ଦର୍ଶାଅ ।

(୩) ଅଂଶୀଦାରଙ୍କର ଭବିଷ୍ୟତ ଲଭ-କ୍ଷତି ବଣ୍ଟନର ଅନୁପାତ ନିର୍ଣ୍ଣୟ କର ।

( ଉତ୍ତର : ଉଦ୍‌ବୃତ୍ତ ପତ୍ରର ମୋଟ ପରିମାଣ ଟ ୮୦,୨୫୦ ; ଭବିଷ୍ୟତ୍ ଲଭ-କ୍ଷତିର ବଣ୍ଟନ ଅନୁପାତ ଯଥାକ୍ରମେ ବିଜୟ, ସନ୍ତୋଷ ଓ ଅଜୟ ୩ : ୨ : ୨୦ ।)

୩୦ । କ ଓ ଖ ଗୋଟିଏ ଅଂଶୀଦାରୀ ବ୍ୟବସାୟରେ ଅଂଶୀଦାର ରୂପେ ଲାଭ ଓ କ୍ଷତିକୁ ସମାନ ଭାବରେ ଭାଗ କରୁଥିଲେ । ୧୯୭୪ ମସିହା ଡିସେମ୍ବର ୩୧ ତାରିଖରେ ତାଙ୍କର ମୂଳଧନ କ ୨୫,୦୦୦ ଓ ଖ ଟ ୨୦,୦୦୦ ଟଙ୍କା ଥିଲା । ସେହି ତାରିଖରେ ତାଙ୍କର ସମ୍ପତ୍ତି ଓ ଦେୟ ପରିମାଣ ନିମ୍ନରେ ପ୍ରଦତ୍ତ ହେଲା :

| | ଟଙ୍କା | ଟଙ୍କା |
|---|---|---|
| ଆସବାବପତ୍ର | ୨,୫୦୦ | |
| ମଟର ଟ୍ରକ୍ | ୧୨,୩୦୦ | |
| ବିବିଧ ମହାଜନ | | ୯,୨୦୦ |
| ବ୍ୟାଙ୍କରେ ଗଚ୍ଛିତ | ୯,୪୫୦ | |
| କଳକବ୍ଜା | ୧୪,୮୦୦ | |
| ଦେୟ ହୁଣ୍ଡି | | ୪,୮୦୦ |
| ବିବିଧ ଖାତକ | ୧୫,୬୦୦ | |
| ନଗଦ ତହବିଲ | ୩୫୦ | |
| ମହଜୁଦ ମାଲ | ୪,୦୦୦ | |

ସେମାନେ ଗ ଙ୍କୁ ନିମ୍ନଲିଖିତ ସର୍ତ୍ତମତେ ୧୯୭୫ ମସିହା ଜାନୁୟାରୀ ୧ ତାରିଖରୁ ନୂତନ ଅଂଶୀଦାର ରୂପେ ଗ୍ରହଣ କରିବାକୁ ସ୍ୱୀକୃତ ହେଲେ :

(୧) କ, ଖ ଓ ଗ ଭବିଷ୍ୟତ ଲାଭ ଓ କ୍ଷତିକୁ ଯଥାକ୍ରମେ ୨ : ୨ : ୧ ଅନୁପାତରେ ବଣ୍ଟନ କରିବେ ।

(୨) ଗ ବ୍ୟବସାୟକୁ ଟ ୬,୬୦୦ ପରିମାଣର ବିବିଧ ଖାତକ (ତହିଁରୁ ଶତକଡ଼ା ୫ ହାରରେ ଅନାଦାୟୀ ଋଣ ବାବଦ ବାଦ୍ ଦିଆଯିବ) ଓ ତାଙ୍କ ବ୍ୟବସାୟର ସୁନାମ ଆଣିବେ ଯାହାର ମୂଲ୍ୟ ଟ ୩,୪୦୦ । ନୂତନ ବ୍ୟବସାୟରେ ତାଙ୍କର ମୂଳଧନ ଟ ୧୨,୦୦୦ ହେବ ଓ ଅବଶିଷ୍ଟ ପରିମାଣ ସେ ନଗଦ ଆକାରରେ ଆଣିବେ ।

(୩) କ ଓ ଖ ଙ୍କର ୧୯୭୪ ମସିହା ଡିସେମ୍ବର ୩୧ ତାରିଖର ଉଦ୍ୱର୍ତ୍ତ ପତ୍ରର ବିଭିନ୍ନ ବିଷୟଗୁଡ଼ିକରେ ନିମ୍ନଲିଖିତ ସମାଯୋଜନ କରାଯିବ : ମଟର ଟ୍ରକର ମୂଲ୍ୟ ଟ ୧୫,୦୦୦; କଳକବ୍ଜାର ମୂଲ୍ୟ ଟ ୧୬,୦୦୦ ; ବିବିଧ ଖାତକ ପରିମାଣରୁ ଶତକଡ଼ା ୫ ହାରରେ ଅନାଦାୟୀ ଋଣର ସଞ୍ଚିତ ଗଢ଼ାଯିବ ; କ ଓ ଖ ଙ୍କର ବ୍ୟବସାୟର ସୁନାମର ମୂଲ୍ୟ ଟ ୬,୦୦୦ ରୂପେ ବିବେଚିତ ହେବ ।

(୪) ନୂତନ ବ୍ୟବସାୟରେ କ ଙ୍କର ମୂଳଧନ ପରିମାଣ ଖ ଙ୍କର ମୂଳଧନ ପରିମାଣ ସହିତ ସମାନ ରହିବ । ସେ ବଳକା ଟଙ୍କା ବ୍ୟବସାୟରୁ ଉଠାଇନେବେ ।

ସର୍ତ୍ତଗୁଡ଼ିକ ଯଥାଯଥ ରୂପେ ପାଳିତ ହେଲା । ଉପରୋକ୍ତ ସମାଯୋଜନଗୁଡ଼ିକୁ କାର୍ଯ୍ୟକାରୀ କରିବା ନିମନ୍ତେ ଆବଶ୍ୟକ ଜାବ୍‌ଦା ପ୍ରସ୍ତୁତ କର । ୧୯୭୫ ମସିହା ଜାନୁୟାରୀ ୧ ତାରିଖରେ ନୂତନ ଅଂଶୀଦାରୀ କାରବାରର ଯେଉଁ ଉଦ୍‌ବୃତ୍ତ ପତ୍ର ପ୍ରସ୍ତୁତ କରାଯିବ, ତାହା ଦର୍ଶାଅ ।

(ଉତ୍ତର : କ ବ୍ୟବସାୟରୁ ଟ ୫,୦୦୦ ଉଠାଇନେବେ । ନୂତନ ଅଂଶୀଦାରୀ କାରବାରର ପ୍ରଥମ ଉଦ୍‌ବୃତ୍ତ ପତ୍ରର ମୋଟ ପରିମାଣ ଟ ୭୫,୫୨୦ ।)

## ଅଂଶୀଦାରଙ୍କର ଅବସରଗ୍ରହଣ ଅଥବା ମୃତ୍ୟୁ :

୩୧ । କ, ଖ ଓ ଗ ଗୋଟିଏ ଅଂଶୀଦାରୀ କାରବାରର ସମାନ ଅଂଶୀଦାର ଥିଲେ । ୧୯୭୦ ମସିହା ଜାନୁୟାରୀ ୧ ତାରିଖରେ କ ବ୍ୟବସାୟରୁ ଅବସର ଗ୍ରହଣ କଲେ । ସେତେବେଳେ ବ୍ୟବସାୟର ଉଦ୍‌ବୃତ୍ତ ପତ୍ର ନିମ୍ନ ପ୍ରକାର ଥିଲା :

| ଦେୟ | ଟଙ୍କା | ସମ୍ପତ୍ତି | ଟଙ୍କା |
|---|---|---|---|
| ମୂଳଧନ ହିସାବ : | | ଭୂମି ଓ ଭବନ | ୭,୪୦୦ |
| କ—ଟ ୧୦,୦୦୦ | | କଳକବ୍‌ଜା | ୯,୩୦୦ |
| ଖ—ଟ ୭,୪୦୦ | | ବିବିଧ ଖାତକ | ୭,୨୦୦ |
| ଗ—ଟ ୮,୪୦୦ | ୨୫,୮୦୦ | ଷ୍ଟକ୍‌ଯୋଗ | ୭,୦୦୦ |
| ବିବିଧ ମହାଜନ | ୫,୭୦୦ | ନଗଦ ତହବିଲ | ୧,୭୦୦ |
| | ୩୧,୫୦୦ | | ୩୧,୫୦୦ |

ଅଂଶୀଦାରୀ ଚୁକ୍ତି ଅନୁଯାୟୀ କୌଣସି ଅଂଶୀଦାର ଅବସର ଗ୍ରହଣ କଲେ ବ୍ୟବସାୟର ସମ୍ପତ୍ତିଗୁଡ଼ିକ ନିମ୍ନଲିଖିତ ରୂପେ ପୁନର୍ମୂଲ୍ୟାୟିତ ହେବ ବୋଲି ଅଂଶୀଦାରମାନେ ପୂର୍ବରୁ ସ୍ୱୀକୃତ ହୋଇଥିଲେ :

ଭୂମି ଓ ଭବନ ଟ ୮,୮୦୦ ; କଳକବଜା ଟ ୮,୭୦୦ ଓ ଷ୍ଟକ୍‌ଯୋଗ ଟ ୭,୫୦୦ ।

ଏହା ବ୍ୟତୀତ ସେତେବେଳେ ବ୍ୟବସାୟର ସୁନାମର ମୂଲ୍ୟ ଟ ୮,୩୦୦ ରୂପେ ସାବ୍ୟସ୍ତ ହୋଇଥିଲା । କ ତାଙ୍କର ପ୍ରାପ୍ୟ ଅର୍ଥର ଆଂଶିକ ପରିଶୋଧ ରୂପେ ନୂତନ ମୂଲ୍ୟ ଅନୁଯାୟୀ ଯନ୍ତ୍ରପାତିକୁ ନେବା ପାଇଁ ସ୍ୱୀକୃତ ହେଲେ । କ ଙ୍କର ଅବଶିଷ୍ଟ ପ୍ରାପ୍ୟ ଟଙ୍କା ଖ ଓ ଗ ସମାନ ପରିମାଣରେ ନଗଦ ଆକାରରେ ବ୍ୟବସାୟକୁ ଆଣିବାର ସ୍ଥିର ହେଲା ।

ପୁନର୍ମୂଲ୍ୟାୟନ ହିସାବ, ଅଂଶୀଦାରମାନଙ୍କର ମୂଳଧନ ହିସାବ ଓ ଖ, ଗ ଙ୍କର ପୁନର୍ଗଠିତ ଉଦ୍‌ବୃତ୍ତ ପତ୍ର ପ୍ରସ୍ତୁତ କର ।

(ଉତ୍ତର କ ଙ୍କୁ ଦିଆଯାଇଥିବା ନଗଦ ଟଙ୍କାର ପରିମାଣ ଟ ୬,୦୦୦ ;
ଖ ଙ୍କର ମୂଳଧନ ହିସାବର ଦାତା ବାକି ଟ ୧୩,୯୦୦ ;
ଗ ଙ୍କର ମୂଳଧନ ହିସାବର ଦାତା ବାକି ଟ ୧୪,୯୦୦ ;
ପୁନର୍ମୂଲ୍ୟାୟନ ହିସାବର ଦାତା ବାକି ଟ ୧୦,୫୦୦ ଓ
ନୂତନ ଉଦ୍‌ବୃତ୍ତ ପତ୍ରର ମୋଟ ପରିମାଣ ଟ ୩୪,୫୦୦ ।

୩୨ । କ ଓ ଖ ଗୋଟିଏ ଅଂଶୀଦାରୀ ବ୍ୟବସାୟର ଅଂଶୀଦାର ଥାଇ ଲାଭ ଓ କ୍ଷତିକୁ ୩ : ୨ ଅନୁପାତରେ ବଣ୍ଟନ କରୁଥିଲେ । ସେମାନଙ୍କର ୩୧-୩-୭୩ ତାରିଖର ଉଦ୍‌ବୃତ୍ତ ପତ୍ର ନିମ୍ନରେ ପ୍ରଦତ୍ତ ହେଲା ।

| | ଟଙ୍କା | | ଟଙ୍କା |
|---|---|---|---|
| ମୂଳଧନ : | | ଯନ୍ତ୍ର | ୧୯,୫୦୦ |
| କ | ୨୦,୦୦୦ | ସୁନାମ | ୬,୦୦୦ |
| ଖ | ୧୫,୦୦୦ | ମହଜୁଦ ପଣ୍ୟ | ୧୦,୦୦୦ |
| ସଞ୍ଚିତି | ୧୫,୦୦୦ | ବିବିଧ ଖାତକ | ୧୫,୦୦୦ |
| ବିବିଧ ମହାଜନ | ୭,୫୦୦ | ନଗଦ ତହବିଲ | ୭,୦୦୦ |
| | ୫୭,୫୦୦ | | ୫୭,୫୦୦ |

ଉକ୍ତ ତାରିଖରେ ଖ ବ୍ୟବସାୟରୁ ଅବସର ଗ୍ରହଣ କଲେ ଓ କ ବ୍ୟବସାୟକୁ ନ୍ୟସ୍ତ କରିନେଲେ । ନିମ୍ନଲିଖିତ ପୁନର୍ମୂଲ୍ୟାୟନ କରାଯିବ :

(କ) ସୁନାମ ଟ ୧୫,୦୦୦ ; (ଖ) ଯନ୍ତ୍ର ଟ ୧୭,୫୫୦ ; (ଗ) ମହଜୁଦ ପଣ୍ୟ ଟ ୮,୫୦୦ ; (ଘ) ବିବିଧ ଖାତକ ପରିମାଣ ଉପରେ ଶତକଡ଼ା ୫ ହାରରେ ଅନାଦାୟୀ

ଲୁଡ଼ର ସଞ୍ଚିତ ଗଢ଼ାଯିବ ଓ ବିବିଧ ମହାଜନ ପରିମାଣ ଉପରେ ଶତକଡ଼ା ୨ ହାରରେ ପ୍ରାପ୍ୟ ବଟ୍ଟାର ସଞ୍ଚିତ ଗଢ଼ାଯିବ ।

ଅଂଶୀଦାରୀ ବ୍ୟବସାୟର ହିସାବ ବହିରେ ଉପରୋକ୍ତ ନେଣଦେଣଗୁଡ଼ିକୁ କାର୍ଯ୍ୟାଭୁକ୍ତ କର । କ ଙ୍କର ପ୍ରାରମ୍ଭିକ ଉଦ୍‌ବୃତ୍ତ ପତ୍ର ପ୍ରସ୍ତୁତ କର ।

( NTC—1974 S )

(ଉତ୍ତର : କ ଙ୍କର ଉଦ୍‌ବୃତ୍ତ ପତ୍ରର ମୋଟ ପରିମାଣ ଟ ୭୨,୩୦୦)

୩୩ । କ, ଖ ଓ ଗ ଗୋଟିଏ ଅଂଶୀଦାରୀ ବ୍ୟବସାୟର ଅଂଶୀଦାର ଥାଇ ଲଭ ଓ କ୍ଷତିର ଯଥାକ୍ରମେ ଶତକଡ଼ା ୫୦, ୩୦ ଓ ୨୦ ଭୋଗ କରୁଥିଲେ । ୧୯୭୪ ମସିହା ଡିସେମ୍ବର ୩୧ ତାରିଖରେ ସେମାନଙ୍କର ଉଦ୍‌ବୃତ୍ତ ପତ୍ର ନିମ୍ନରେ ପ୍ରଦତ୍ତ ହେଲା ।

| ଦେୟ | | ଟଙ୍କା | ସମ୍ପତ୍ତି | ଟଙ୍କା |
|---|---|---|---|---|
| ବିବିଧ ମହାଜନ | | ୧୫,୦୦୦ | ବ୍ୟାଙ୍କରେ ଗଚ୍ଛିତ | ୩,୫୦୦ |
| ମୂଳଧନ ହିସାବ : | | | ବିବିଧ ଖାତକ | ୩୦,୦୦୦ |
| କ—ଟ | ୪୦,୦୦୦ | | ମହଜୁଦ ପଣ୍ୟ | ୨୧,୫୦୦ |
| ଖ—ଟ | ୩୦,୦୦୦ | | ଯନ୍ତ୍ର | ୪୫,୦୦୦ |
| ଗ – ଟ | ୧୫,୦୦୦ | ୮୫,୦୦୦ | | |
| | | ୧,୦୦,୦୦୦ | | ୧,୦୦,୦୦୦ |

୨୯—୩-୧୯୭୫ ତାରିଖରେ କ ଙ୍କର ମୃତ୍ୟୁ ଘଟିଲା ।

କୌଣସି ଅଂଶୀଦାରଙ୍କର ମୃତ୍ୟୁ ଘଟିଲେ ଅଂଶୀଦାରୀ ଚୁକ୍ତିରେ ଅନ୍ୟାନ୍ୟ ବିଷୟଗୁଡ଼ିକ ମଧ୍ୟରେ ନିମ୍ନଲିଖିତ ବିଷୟ ଅନ୍ତର୍ଭୁକ୍ତ ଥିଲା :

(୧) ମୃତ ଅଂଶୀଦାରଙ୍କର ଉତ୍ତରାଧିକାରୀ ମୃତ୍ୟୁ ଦିବସ ପର୍ଯ୍ୟନ୍ତ ଲଭର ଆନୁପାତିକ ଅଂଶ ପାଇବେ ।

(୨) ମୂଳଧନ ଉପରେ ଶତକଡ଼ା ୫ ହାରରେ ସୁଧ ପାଇବେ ।

(୩) ସୁନାମର ଆନୁପାତିକ ଅଂଶ ପାଇବେ । ଗତ ୪ ବର୍ଷର ହାରାହାରି ଲଭର ୩ ଗୁଣ ସୁନାମର ମୂଲ୍ୟ ରୂପେ ବିବେଚିତ ହେବ ।

ଅଂଶୀଦାରୀ ବ୍ୟବସାୟର ଗତ ଚାରି ବର୍ଷର ଲାଭ ନିମ୍ନରୂପ ଥିଲା : ୧୯୭୧— ଟ ୧୫,୦୦୦; ୧୯୭୨ – ଟ ୨୦,୦୦୦; ୧୯୭୩ — ଟ ୩୫,୦୦୦ ଓ ୧୯୭୪—ଟ ४୨,୦୦୦ ।

କ ତାଙ୍କ ମୃତ୍ୟୁ ଦିବସ ପର୍ଯ୍ୟନ୍ତ ବର୍ଷ ଆରମ୍ଭରୁ ପ୍ରତି ମାସ ପହିଲା ତାରିଖରେ ଟ ୩୦୦ ହାରରେ ବ୍ୟବସାୟରୁ ଟଙ୍କା ଉଠାଇ ନେଇଛନ୍ତି । ଅଂଶୀଦାରୀ ଚୁକ୍ତି ଅନୁଯାୟୀ ଅଂଶୀଦାରଙ୍କର ଉଠାଣ ଉପରେ ଶତକଡ଼ା ୯ ହାରରେ ସୁଧ ଆଦାୟ ହେବ ।

କ ଙ୍କର ମୃତ୍ୟୁ ଦିବସ ପର୍ଯ୍ୟନ୍ତ ବ୍ୟବସାୟର ଲାଭର ପରିମାଣ ଟ ୧୩,୫୦୦ ହୋଇଥିଲା ।

କ ଙ୍କର ପ୍ରାପ୍ୟ ପରିମାଣ ଉପସ୍ଥିତ ତାଙ୍କର ଋଣ ହିସାବ ଖୋଲାଯାଇ ସେହି ହିସାବକୁ ସ୍ଥାନାନ୍ତରିତ କରାଯିବ ଓ ବାର୍ଷିକ ଶତକଡ଼ା ୫ ହାର ସୁଧ ସମେତ ତିନ ବାର୍ଷିକ କିସ୍ତିରେ ତାଙ୍କ ଉତ୍ତରାଧିକାରୀଙ୍କୁ ଦିଆଯିବ ।

(କ) ଉପରୋକ୍ତ ନେଣଦେଣ ସକାଶେ ଜାବ୍‌ଦା ପ୍ରସ୍ତୁତ କର ।

(ଖ) ସମସ୍ତ ସମାଯୋଜନ ପରେ ଋଣ ହିସାବର ଆଦ୍ୟ ବାକୀ ନିର୍ଣ୍ଣୟ କର ।

( ଉତ୍ତର : ସ୍ୱର୍ଗୀୟ କ ଙ୍କର ଋଣ ହିସାବର ଆଦ୍ୟ ବାକୀ ଟ ୮४,୫୭୯) ( ସୁଧ ହିସାବ କରିବା ବେଳେ ପଇସା ବାଦ୍ ଦିଆଯାଇଛି । )

୩४ । ଅଣ୍ଣ ଓ ଶିଶିର ଗୋଟିଏ ଅଂଶୀଦାରୀ କାରବାରର ଅଂଶୀଦାର ରୂପେ ଲାଭ ଓ କ୍ଷତିର ଯଥାକ୍ରମେ $\frac{3}{5}$ ଓ $\frac{2}{5}$ ଅଂଶ ଭୋଗ କରୁଥିଲେ । କୌଣସି ଅଂଶୀଦାରଙ୍କର ମୃତ୍ୟୁ ହେଲେ ତାଙ୍କୁ ଦେୟ ମୂଳଧନ ଓ ସୁନାମର ଅଂଶ ପରିଶୋଧ କରିବା ସକାଶେ ଟଙ୍କାର ବ୍ୟବସ୍ଥା କରିବା ଲାଗି ସେମାନେ ତାଙ୍କ ଜୀବନ ଉପରେ ଟ ४୦,୦୦୦ ପାଇଁ ଏକ ଯୌଥ ବୀମା ନେଇଥିଲେ ଏବଂ ଏଥି ବାବଦ ବାର୍ଷିକ ଟ ୧,୫୫୭ ଟଙ୍କା ପ୍ରିମିୟମ ଦେଉଥିଲେ, ଯାହା ଡିସେମ୍ବର ମାସରେ ବ୍ୟବସାୟର ଲାଭ ଓ କ୍ଷତି ହିସାବକୁ ଦାର୍ଯ୍ୟ କରାଯାଉଥିଲା ।

୧୯୭४ ମସିହା ଜୁନ୍ ୩୦ ତାରିଖରେ ଶିଶିରଙ୍କର ମୃତ୍ୟୁ ହେଲା । ଅଂଶୀଦାରୀ ଚୁକ୍ତିରେ ବ୍ୟବସ୍ଥା ଥିଲା ଯେ ତାଙ୍କର ପ୍ରତିନିଧି ମୃତ ଅଂଶୀଦାରଙ୍କର ମୂଳଧନ ବାବଦ ଶେଷ ଉଦ୍‌ବୃତ୍ତ ପତ୍ରରେ ପ୍ରଦର୍ଶିତ ପରିମାଣ ପାଇବେ ଓ ମୃତ୍ୟୁ ଦିବସ ପର୍ଯ୍ୟନ୍ତ ସେହି ପରିମାଣର ମୂଳଧନ ଉପରେ ଶତକଡ଼ା ୬ ହାରରେ ସୁଧ ପାଇବେ । ତାଙ୍କ ମୃତ୍ୟୁ ଦିବସ ପର୍ଯ୍ୟନ୍ତ ଲାଭର ଆନୁପାତିକ ଅଂଶ ପାଇବେ । ଏହି ଲାଭର ପରିମାଣ ଗତ ବର୍ଷର ଲାଭ ଭିତ୍ତିରେ

କଳନା କରାଯିବ । ତାଙ୍କ ସୁନାମର ଅନୁପାତିକ ଅଂଶ ମଧ୍ୟ ଦିଆଯିବ । ସୁନାମର ମୂଲ୍ୟ ଜୀବନ ବୀମା ପ୍ରିମିୟମ ହିସାବ କରିବା ପୂର୍ବରୁ ତିନ ବର୍ଷର ହାରାହାରି ନିଟ୍ ଲାଭର ଦୁଇ ଗୁଣ ରୂପେ ବିବେଚିତ ହେବ ।

ବୀମା ପ୍ରିମିୟମ ହିସାବକୁ ନିଆଯିବା ପରେ ବ୍ୟବସାୟର ପୂର୍ବତନ ତିନି ବର୍ଷର ନିଟ୍ ଲାଭ ଯଥାକ୍ରମେ ଟ ୧୦,୩୬୫, ଟ ୧୨,୨୯୦ ଓ ଟ ୧୦,୧୨୦ ଥିଲା ।

ଗତ ଉଦ୍‌ବର୍ତ୍ତ ପତ୍ର ଅନୁଯାୟୀ ଶିଶିରଙ୍କର ମୂଳଧନର ପରିମାଣ ଟ ୧୫,୦୦୦ ଓ ଓ ମୃତ୍ୟୁ ଦିବସ ପର୍ଯ୍ୟନ୍ତ ତାଙ୍କର ଉଠାଣର ପରିମାଣ ଟ ୩,୬୦୦ ଥିଲା ।

ଉପରୋକ୍ତ ବିଷୟଗୁଡ଼ିକର ସମାଯୋଜନ ପାଇଁ ଜାବ୍‌ଦା ଓ ତାଙ୍କ ପ୍ରତିନିଧିଙ୍କୁ କେତେ ଟଙ୍କା ଦେବାକୁ ହେବ ତାହା ଦର୍ଶାଇବା ପାଇଁ ଶିଶିରଙ୍କର ମୂଳଧନ ହିସାବ ପ୍ରସ୍ତୁତ କର ।

( C. U. Three-year Degree Course, B. Com., 1966 )

( ଉତ୍ତର : ଶିଶିରଙ୍କର ପ୍ରତିନିଧିଙ୍କୁ ୩୦-୬-୧୯୬୪ ତାରିଖରେ ଦେୟ ପରିମାଣ ଟ ୪୧,୮୭୮ )

୩୫ । କ, ଖ ଓ ଗ ଗୋଟିଏ ଅଂଶୀଦାରୀ ବ୍ୟବସାୟର ଅଂଶୀଦାର ରୂପେ ଲାଭ ଓ କ୍ଷତିକୁ ୨:୨:୧ ଅନୁପାତରେ ବଣ୍ଟନ କରୁଥିଲେ । ସେମାନେ କୌଣସି ଅଂଶୀଦାରଙ୍କର ମୃତ୍ୟୁ ହେଲେ ତାଙ୍କର ପ୍ରାପ୍ୟ ଟଙ୍କାର ସଂସ୍ଥାନ କରିବା ଉଦ୍ଦେଶ୍ୟରେ ୧୯୬୧ ମସିହା ଜାନୁୟାରୀ ୧୯ ତାରିଖରେ ଟ ୨୫,୦୦୦ ସକାଶେ ଗୋଟିଏ ଯୌଥ ଜୀବନ ବୀମା ପତ୍ର ଗ୍ରହଣ କଲେ । ଟ ୬୨୫ ପରିମାଣର ଶେଷ ପ୍ରିମିୟମ ୧୯୬୪ ମସିହା ଜାନୁୟାରୀ ୧୦ ତାରିଖରେ ଦିଆଯାଇଥିଲା ଓ ଖ ଙ୍କର ୧୯୬୪ ମସିହା ଫେବୃୟାରୀ ୧୫ ତାରିଖରେ ମୃତ୍ୟୁ ଘଟିଲା ।

ବୀମା ପତ୍ରର ପ୍ରତ୍ୟର୍ପଣ ମୂଲ୍ୟ ( Surrender Value ) ନିମ୍ନପ୍ରକାର ଥିଲା :
୧୯୬୧ରେ କିଛି ନାହିଁ; ୧୯୬୨ରେ ଟ ୧୭୫; ୧୯୬୩ରେ ଟ ୩୦୦ ।
ଖ ଙ୍କର ମୃତ୍ୟୁ ଦିବସରେ ବୀମାକୃତ ଅର୍ଥର ସମ୍ପୂର୍ଣ୍ଣ ପରିମାଣ ଆଦାୟ ହୋଇଥିଲା ।

ବୀମା ପତ୍ର ସମ୍ବନ୍ଧୀୟ ନେଣଦେଣଗୁଡ଼ିକ ସକାଶେ ଏବଂ ଖ ଙ୍କର ମୃତ୍ୟୁ ଦିବସରେ ଚୂଡ଼ାନ୍ତ ସମାଯୋଜନ ସକାଶେ ଆବଶ୍ୟକ ଜାବ୍‌ଦା ପ୍ରସ୍ତୁତ କର । ଏହି ବ୍ୟବସାୟର ବାର୍ଷିକ ହିସାବ ପ୍ରତି ବର୍ଷ ଡିସେମ୍ବର ୩୧ ତାରିଖରେ ପ୍ରସ୍ତୁତ କରାଯାଏ ।

( C. A., Nov., 1964 )

**ମିଶ୍ରଣ :**

୩୭ । ପରିବ୍ୟୟ ସଙ୍କୋଚରେ ଉପଦେଷ୍ଟା ଦୁଇଟି ବ୍ୟବସାୟ ପ୍ରତିଷ୍ଠାନ ଏକତ୍ର ବ୍ୟବସାୟ ଚଳାଇବା ଉଦ୍ଦେଶ୍ୟରେ ମିଶ୍ରଣ କରିବାକୁ ସ୍ୱୀକୃତ ହେଲେ । ସେମାନଙ୍କର ବ୍ୟବସାୟର ପାରସ୍ପରିକ ଅବସ୍ଥା ୩୧-୧୨-୧୯୫୪ ତାରିଖରେ ନିମ୍ନରୂପ ଥିଲା ।

| ଦେୟ | ଚ ଛ ଟଙ୍କା | କ ଖ ଟଙ୍କା | ସମ୍ପତ୍ତି | ଚ ଛ ଟଙ୍କା | କ ଖ ଟଙ୍କା |
|---|---|---|---|---|---|
| ବିବିଧ ମହାଜନ | ୫୨,୦୦୦ | ୨୭,୦୦୦ | ବ୍ୟାଙ୍କରେ ଗଚ୍ଛିତ | ୨୮,୦୦୦ | ୩୨,୫୦୦ |
| ମୂଳଧନ : | | | ବିବିଧ ଖାତକ | ୨୫,୦୦୦ | ୫୨,୦୦୦ |
| କ | ୯୧,୦୦୦ | | ପ୍ରାରବ୍ଧ କାର୍ଯ୍ୟ | ୨୭,୦୦୦ | ୧୩,୦୦୦ |
| ଖ | ୬୫ ୦୦୦ | | ଦପ୍ତର ଭବନ | ୩୯,୦୦୦ | |
| ଚ | | ୪୫,୫୦୦ | ଆସବାବ୍ | | ୬,୫୦୦ |
| ଛ | | ୩୨,୫୦୦ | | | |
| | ୨,୦୮,୦୦୦ | ୧,୦୪,୦୦୦ | | ୨,୦୮,୦୦୦ | ୧,୦୪,୦୦୦ |

ନୂତନ ଅଂଶୀଦାରୀ ବ୍ୟବସାୟ ପୁରାତନ ପ୍ରତିଷ୍ଠାନ ଦୁଇଟିର ବିବିଧ ଖାତକ ଓ ବିବିଧ ମହାଜନ ପରିମାଣକୁ ଗ୍ରହଣ କରି ନ ଥିଲା । ଚଛ ତାଙ୍କର ଦପ୍ତର ଭବନକୁ ନୂତନ ଅଂଶୀଦାରୀ ବ୍ୟବସାୟକୁ ନ ଦେଇ ନିଜେ ରଖିଥିଲେ । କିନ୍ତୁ ନୂତନ ବ୍ୟବସାୟ ତାଙ୍କୁ ପ୍ରତି ମାସରେ ଭଡ଼ା ବାବଦ ଟ ୨୦୦ ଦେବାକୁ ସ୍ୱୀକୃତ ହୋଇଥିଲା । ନୂତନ ଅଂଶୀଦାରୀ ବ୍ୟବସାୟର ଆବଶ୍ୟକ କାର୍ଯ୍ୟକାରୀ ପୁଞ୍ଜି ଅଂଶୀଦାରମାନେ ନିମ୍ନଲିଖିତ ଅନୁପାତରେ ଯୋଗାଇବାକୁ ସ୍ୱୀକୃତ ହେଲେ ।

ଚ ୩/୧୦, ଛ ୩/୧୦, କ ୨/୧୦, ଖ ୨/୧୦

(୧) ଚ, ଛ ଓ କ, ଖ ଙ୍କ ହିସାବ ବହିରେ ଖତିୟାନ ହିସାବ ଓ ରୋକଡ଼ ବହି ପ୍ରସ୍ତୁତ କର ।

(୨) ଚ, ଛ, କ, ଖ ଙ୍କର ଆଦ୍ୟ ଉଦ୍‌ବୃତ୍ତ ପତ୍ର ପ୍ରସ୍ତୁତ କର । ଯଦି କୌଣସି ବିଷୟ ଅନୁମାନ କରିଥାଅ ତାହାହେଲେ ତାହା ସ୍ପଷ୍ଟରୂପେ ବ୍ୟକ୍ତ କର ।

( C. A. Final May, 1955 )

( ଉତ୍ତର : ମିଶ୍ରିତ ଉଦ୍‌ବୃତ୍ତ ପତ୍ରର ମୋଟ ପରିମାଣ ଟ ୧,୧୦,୨୦୦ )

# ଦ୍ୱାଦଶ ପରିଚ୍ଛେଦ

## ଅଂଶୀଦାରୀ କାରବାରର ହିସାବ-୨

### ବିଲୋପସାଧନ ( Dissolution )

**୧ । ସାଧାରଣ**

କୌଣସି ଗୋଟିଏ ଅଂଶୀଦାରୀ ବ୍ୟବସାୟ ପ୍ରତିଷ୍ଠାନର ଅଂଶୀଦାରମାନଙ୍କ ମଧ୍ୟରେ ଥିବା ଅଂଶୀଦାରୀ ଚୁକ୍ତିର ବିଲୁପ୍ତିକୁ ଉକ୍ତ ପ୍ରତିଷ୍ଠାନର ବିଲୋପସାଧନ କୁହାଯାଏ । ଯେତେବେଳେ ପ୍ରତିଷ୍ଠାନର ସମସ୍ତ ଅଂଶୀଦାରଗଣ ତାଙ୍କ ମଧ୍ୟରେ ଥିବା ସମ୍ପର୍କର ବିଲୋପ-ସାଧନ କରନ୍ତି ସେତେବେଳେ ଅଂଶୀଦାରୀ ପ୍ରତିଷ୍ଠାନର ବିଲୋପସାଧନ ଘଟିଥାଏ । କିନ୍ତୁ ଯଦି କୌଣସି ଜଣେ ଅଂଶୀଦାର ଅନ୍ୟାନ୍ୟ ଅଂଶୀଦାରମାନଙ୍କଠାରୁ ତାଙ୍କର ସମ୍ପର୍କ ଛିନ୍ନ କରନ୍ତି ସେତେବେଳେ ପ୍ରତିଷ୍ଠାନର ବିଲୋପସାଧନ ଘଟିବା ଅନିବାର୍ଯ୍ୟ ନୁହେଁ ।

### ଅଂଶୀଦାରୀ ପ୍ରତିଷ୍ଠାନର ବିଲୋପସାଧନ ଓ ଅଂଶୀଦାରୀର ବିଲୋପସାଧନ

ଅଂଶୀଦାରୀ ସମ୍ପର୍କର ବିଲୋପସାଧନ ଘଟିଲେ ଯେ ପ୍ରତିଷ୍ଠାନର ବିଲୋପସାଧନ ସ୍ୱତଃ ଘଟିବ, ଏହା ଯଥାର୍ଥ ନୁହେଁ । ଯଦି ଜଣେ ଅଂଶୀଦାର ଅବସର ଗ୍ରହଣ କରନ୍ତି ଅଥବା ଜଣେ ନୂତନ ଅଂଶୀଦାର ପ୍ରତିଷ୍ଠାନରେ ଯୋଗଦାନ କରନ୍ତି ସେତେବେଳେ ଅଂଶୀଦାରୀ (Partnership)ର ବିଲୋପସାଧନ ଘଟେ; ତଥାପି ଏଭଳି ପୁନର୍ଗଠନଦ୍ୱାରା ଅଂଶୀଦାରୀ ପ୍ରତିଷ୍ଠାନ (Partnership firm)ର ବିଲୋପସାଧନ ନ ହୋଇପାରେ । ଏହି ଦୁଇଟି ସମ୍ବୋଧର ପାର୍ଥକ୍ୟ ଲକ୍ଷଣୀୟ ।

ନିମ୍ନଲିଖିତ ଯେ କୌଣସି ପରିସ୍ଥିତିରେ ଅଂଶୀଦାରୀ ( Partnership )ର ବିଲୋପସାଧନ ବା ସମାପନ ଘଟେ ।

(୧) ଯଦି ଏକ ନିର୍ଦ୍ଦିଷ୍ଟ କାଳ ସକାଶେ ଅଂଶୀଦାରୀ ଚୁକ୍ତି କରାଯାଇଥାଏ, ତାହାହେଲେ ସେହି କାଳ ଅତିବାହିତ ହେଲେ ;

(୨) ଯଦି କୌଣସି ନିର୍ଦ୍ଦିଷ୍ଟ କାର୍ଯ୍ୟ ସମ୍ପାଦନ ଉଦ୍ଦେଶ୍ୟରେ ଅଂଶୀଦାରୀ ଚୁକ୍ତି କରାଯାଇଥାଏ, ତାହାହେଲେ ସେହି କାର୍ଯ୍ୟ ସମ୍ପାଦିତ ହେଲେ ;

(୩) କୌଣସି ଅଂଶୀଦାରଙ୍କର ମୃତ୍ୟୁ ହେଲେ ;

(୪) କୌଣସି ଅଂଶୀଦାର ଦେବାଳିଆ (insolvent) ହେଲେ; ଓ

(୫) କୌଣସି ଅଂଶୀଦାର ଅବସର ଗ୍ରହଣ କଲେ ।

ପୂର୍ବୋକ୍ତ ସମସ୍ତ କ୍ଷେତ୍ରରେ ଅବଶିଷ୍ଟ ଅଂଶୀଦାରମାନେ ଯଦି ଇଚ୍ଛା କରନ୍ତି ତାହାହେଲେ ସେମାନେ ଏକ ନୂଆ ବା ନୂତନ ଚୁକ୍ତିଦ୍ୱାରା ଅଂଶୀଦାରୀ ବ୍ୟବସାୟଟି ଚଳାଇ-ପାରନ୍ତି । ସେଥିରେ କୌଣସି ବାଧା ନାହିଁ । ଯଦି ସେମାନେ ବ୍ୟବସାୟକୁ ଚାଲୁ ନ ରଖନ୍ତି ତାହାହେଲେ ଅଂଶୀଦାରୀ ପ୍ରତିଷ୍ଠାନର ସ୍ୱତଃ ବିଲୁପ୍ତି ଘଟେ । କିନ୍ତୁ ନିମ୍ନଲିଖିତ ପରିସ୍ଥିତି-ଗୁଡ଼ିକରେ ଅଂଶୀଦାରୀର ସମାପନ ସଙ୍ଗେ ସଙ୍ଗେ ଅଂଶୀଦାରୀ ପ୍ରତିଷ୍ଠାନର ମଧ୍ୟ ଅବସାନ ଘଟେ :

(କ) ଅଂଶୀଦାରୀ ପ୍ରତିଷ୍ଠାନର ଅବସାନ ଘଟାଇବା ପାଇଁ ଯେତେବେଳେ ଅଂଶୀଦାରମାନେ ଏକମତ ହୁଅନ୍ତି ;

(ଖ) ଯେତେବେଳେ ଜଣଙ୍କ ବ୍ୟତୀତ ଅନ୍ୟ ସମସ୍ତ ଅଂଶୀଦାର ଦେବାଳିଆ ହୁଅନ୍ତି ;

(ଗ) ଯେତେବେଳେ ବ୍ୟବସାୟଟି ବେଆଇନ ପର୍ଯ୍ୟାୟଭୁକ୍ତ ହୁଏ ; ଓ

(ଘ) ଯଦି ଅଂଶୀଦାରୀ ବ୍ୟବସାୟ ଐଚ୍ଛିକ ହୋଇଥାଏ ଏବଂ କୌଣସି ଅଂଶୀଦାର ବିଲୋପସାଧନ ସକାଶେ ବିଜ୍ଞପ୍ତି ଦିଅନ୍ତି ।

କେତେକ କ୍ଷେତ୍ରରେ ଗୋଟିଏ ଅଂଶୀଦାରୀ ପ୍ରତିଷ୍ଠାନର ବିଲୋପସାଧନ ସକାଶେ ବିଚାରାଳୟ ଆଦେଶ ପ୍ରଦାନ କରନ୍ତି । ଏହି ପରିସ୍ଥିତିଗୁଡ଼ିକ ନିମ୍ନରେ ପ୍ରଦତ୍ତ ହେଲା :

(୧) ଯେତେବେଳେ ଜଣେ ଅଂଶୀଦାରଙ୍କର ମସ୍ତିଷ୍କ ବିକୃତ ହୁଏ ;

(୨) ଯେତେବେଳେ ଜଣେ ଅଂଶୀଦାର ସ୍ଥାୟୀ ଭାବରେ ଅକର୍ମଣ୍ୟ ବା ଅସମର୍ଥ ହୋଇପଡ଼ନ୍ତି;

(୩) ଯେତେବେଳେ ଜଣେ ଅଂଶୀଦାର ଅଂଶୀଦାରୀ ବ୍ୟବସାୟକୁ ପ୍ରତିକୂଳ ଭାବରେ ପ୍ରଭାବିତ କରିବା ଭଳି କୌଣସି ଅପରାଧରେ ଅପରାଧୀ ସାବ୍ୟସ୍ତ ହୁଅନ୍ତି ;

(୪) ଯେତେବେଳେ ଜଣେ ଅଂଶୀଦାର ଅଂଶୀଦାରୀ ଚୁକ୍ତିକୁ ବାରମ୍ବାର ଅମାନ୍ୟ କରନ୍ତି ;

(୫) ଯେତେବେଳେ କୌଣସି ଅଂଶୀଦାର ଜଣେ ତୃତୀୟ ବ୍ୟକ୍ତିଙ୍କୁ ବ୍ୟବସାୟରେ ଥିବା ତାଙ୍କ ସ୍ୱାର୍ଥ ଅଥବା ଅଂଶ ସ୍ଥାନାନ୍ତରିତ କରନ୍ତି ;

(୬) ଯେତେବେଳେ ଗୋଟିଏ ଅଂଶୀଦାରୀ ବ୍ୟବସାୟ କ୍ଷତି ବିନା ଚାଲିତ ହୋଇ-ପାରିବାର ସମ୍ଭାବନା ନାହିଁ; ଏବଂ

(୭) ଯେତେବେଳେ ବିଲୋପସାଧନ ବିଚାରାଳୟଙ୍କ ଦୃଷ୍ଟିରୁ ନ୍ୟାୟସଙ୍ଗତ ଓ ନିରପେକ୍ଷ ବୋଲି ମନେହୁଏ ।

ଅଂଶୀଦାରୀ ବ୍ୟବସାୟ ପ୍ରତିଷ୍ଠାନର ବିଲୋପସାଧନ ହେବା ପରେ ବ୍ୟବସାୟର ସମାପନ ପାଇଁ ଆବଶ୍ୟକ ସମସ୍ତ ଅଧିକାର ଓ କର୍ତ୍ତବ୍ୟ ଅଂଶୀଦାରମାନଙ୍କର ବିଦ୍ୟମାନ ଥାଏ । ପ୍ରତିଷ୍ଠାନର ସମ୍ପତ୍ତିକୁ ପ୍ରତିଷ୍ଠାନର ଋଣ ପରିଶୋଧ ଦିଗରେ ଉପଯୋଗ କରିବାର ଅଧିକାର ପ୍ରତ୍ୟେକ ଅଂଶୀଦାରଙ୍କର ଥାଏ । ପ୍ରତିଷ୍ଠାନର ସମସ୍ତ ଋଣ ପରିଶୋଧ ହେବା ପରେ ଯେଉଁ ବଳକା ସମ୍ପତ୍ତି ଥାଏ ତାହାର ବଣ୍ଟନ ସମୟରେ ଅଂଶୀଦାରଙ୍କର ହିସାବ-ଗୁଡ଼ିକର ସମାଯୋଜନ କରିବାର ଅଧିକାର ଓ ନିଟ୍ ସମ୍ପତ୍ତିକୁ ଅଂଶୀଦାରମାନଙ୍କ ମଧ୍ୟରେ ସେମାନଙ୍କର ଅଧିକାର ଅନୁଯାୟୀ ବଣ୍ଟନ କରିବାର ଅଧିକାର ମଧ୍ୟ ଥାଏ ।

**୨ । ହିସାବର ନିଷ୍ପତ୍ତିକରଣ ( Settlement of Accounts )—**

ଅଂଶୀଦାରୀ ବ୍ୟବସାୟ ପ୍ରତିଷ୍ଠାନର ବିଲୋପସାଧନ ଘଟିଲେ ବ୍ୟବସାୟର ସମ୍ପତ୍ତି ନିମ୍ନଲିଖିତ ରୂପେ ନିୟୋଜିତ ହେବ :

(୧) ବ୍ୟବସାୟ ପ୍ରତିଷ୍ଠାନର ସମସ୍ତ ସମ୍ପତ୍ତି ( ଅଂଶୀଦାରମାନେ ମୂଳରୁ ବିନିଯୋଗ କରିଥିବା ସମ୍ପତ୍ତି ଓ ନିଅଣ୍ଟ ହେଲେ ଅଂଶୀଦାରମାନେ ତାହା ପୂରଣ କରିବା ପାଇଁ ଆଣିଥିବା ସମ୍ପତ୍ତି ) ପ୍ରଥମେ ବ୍ୟବସାୟର ତୃତୀୟ ପକ୍ଷଙ୍କୁ ଦେୟ ଋଣ ପରିଶୋଧ କରିବାରେ ବ୍ୟବହୃତ ହେବ ।

(୨) ଏହି ସମସ୍ତ ଦାୟ ବା ଦେୟ ପରିଶୋଧ କରିବା ପରେ ଯଦି ବଳକା ସମ୍ପତ୍ତି ଅବଶିଷ୍ଟ ରହେ, ତାହାହେଲେ ତାହା ଅଂଶୀଦାରମାନଙ୍କଠାରୁ ମୂଳଧନ ବ୍ୟତୀତ ସଂଗୃହୀତ

ହୋଇଥିବା ଋଣ (Loans and Advances) ପରିଶୋଧ କରିବାରେ ନିୟୋଜିତ ହେବ । ଯଦି ଅଂଶୀଦାରମାନଙ୍କୁ ଦେୟ ସମସ୍ତ ଋଣ ପରିଶୋଧ କରିବା ନିମନ୍ତେ ଯଥେଷ୍ଟ ସମ୍ପତ୍ତି ଅବଶିଷ୍ଟ ନ ଥାଏ, ତାହାହେଲେ ଆନୁପାତିକ ହାରରେ ଋଣ ପରିଶୋଧ କରାଯିବ ।

(ଗ) ଅଂଶୀଦାରମାନଙ୍କୁ ଦେୟ ଋଣ ପରିଶୋଧ କରାଯିବା ପରେ ଯଦି ବଳକା ସମ୍ପତ୍ତି ଥାଏ, ତାହାହେଲେ ତାହା ଅଂଶୀଦାରମାନଙ୍କର ମୂଳଧନ ପରିମାଣ ସହିତ ତୁଳନା କରାଯିବ । ଏହି ଦୁଇଟି ପରିମାଣର ପାର୍ଥକ୍ୟ ଅଂଶୀଦାରମାନଙ୍କର ଲାଭ-କ୍ଷତି ବଣ୍ଟନ ଅନୁପାତରେ ଅଂଶୀଦାରମାନଙ୍କର ମୂଳଧନ ହିସାବକୁ ସ୍ଥାନାନ୍ତରିତ କରାଯିବ ।

ଏପରି ସମାଯୋଜନ ପରେ ଅଂଶୀଦାରମାନଙ୍କର ମୂଳଧନର ମୋଟ ପରିମାଣ ନଗଦ ତହବିଲ ସହିତ ସମାନ ହୁଏ । ତେଣୁ ଅଂଶୀଦାରମାନେ ମୂଳଧନ ବାବଦ ତାଙ୍କର ପ୍ରାପ୍ୟ ଟଙ୍କା ନଗଦ ତହବିଲରୁ ପାଇବାରେ କୌଣସି ଅସୁବିଧା ହୁଏ ନାହିଁ । (ଯଦି କୌଣସି ଅଂଶୀଦାର ଦେବାଳିଆ ସାବ୍ୟସ୍ତ ହୋଇଥାଆନ୍ତି ଅଥବା ତାଙ୍କର ଅଂଶୀଦାରୀ ବ୍ୟବସାୟକୁ କିଛି ଅର୍ଥ ଦେୟ ଥାଏ, ତାହାହେଲେ ସେ କ୍ଷେତ୍ରରେ କି କାର୍ଯ୍ୟରୀତି ଅନୁସୃତ ହେବ ତାହା ପରେ ଆଲୋଚିତ ହୋଇଛି ।)

**ଅଂଶୀଦାରୀ ବ୍ୟବସାୟ ପ୍ରତିଷ୍ଠାନର ଋଣ ଓ ଅଂଶୀଦାରଙ୍କର ନିଜସ୍ୱ ଘରୋଇ ଋଣ—**

ଅଂଶୀଦାରୀ ଆଇନ ଅନୁଯାୟୀ ଅଂଶୀଦାରୀ ବ୍ୟବସାୟ ପ୍ରତିଷ୍ଠାନର ଋଣ ପ୍ରଥମେ ପ୍ରତିଷ୍ଠାନର ସମ୍ପତ୍ତିରୁ ପରିଶୋଧ କରାଯିବ । ପ୍ରତିଷ୍ଠାନର ସମସ୍ତ ଋଣ ପରିଶୋଧ କରାଯିବା ପରେ ଯଦି କିଛି ବଳକା ସମ୍ପତ୍ତି ଥାଏ ତାହାହେଲେ କେବଳ ସେହି ବଳକା ସମ୍ପତ୍ତିରେ ଥିବା ଅଂଶୀଦାରଙ୍କର ଅଂଶ ତାଙ୍କ ନିଜସ୍ୱ ଘରୋଇ ଋଣ ପରିଶୋଧରେ ନିୟୋଜିତ ହୋଇ-ପାରିବ । ସେହିପରି ଅଂଶୀଦାରଙ୍କର ନିଜସ୍ୱ ଘରୋଇ ସମ୍ପତ୍ତି ପ୍ରଥମେ ତାଙ୍କର ନିଜସ୍ୱ ଘରୋଇ ଋଣ ପରିଶୋଧରେ ନିୟୋଜିତ ହେବ । ଯଦି କିଛି ବଳକା ସମ୍ପତ୍ତି ରହେ, ତାହାହେଲେ ତାହା ଅଂଶୀଦାରୀ ପ୍ରତିଷ୍ଠାନର ଋଣ ପରିଶୋଧ କରିବାରେ ବ୍ୟବହୃତ ହେବ ।

**୩ । ବିଲୋପସାଧନରେ ଆବଶ୍ୟକ ଜାବଦା ଲିଖନ—**

ଅଂଶୀଦାରୀ ପ୍ରତିଷ୍ଠାନର ବିଲୋପସାଧନ ଘଟିଲେ ବ୍ୟବସାୟର ସମସ୍ତ ହିସାବକୁ ବନ୍ଦ କରାଯିବ । କିନ୍ତୁ ଏହା ପୂର୍ବରୁ ପ୍ରତିଷ୍ଠାନର ସମସ୍ତ ସମ୍ପତ୍ତି ନଗଦ ମୂଲ୍ୟରେ ବିକ୍ରିତ ହେବ ଅଥବା ଅନ୍ୟ ପ୍ରକାରରେ ବ୍ୟବହୃତ ହେବ । (ଯେପରି ଋଣ ପରିଶୋଧ କରିବାରେ) ଓ ପ୍ରତିଷ୍ଠାନରେ ଯାବତୀୟ ଋଣ ପରିଶୋଧ କରାଯିବ ଏବଂ ଅଂଶୀଦାରମାନଙ୍କର ଋଣ ବାବଦ ଦେଇଥିବା ଅର୍ଥ ଓ ମୂଳଧନ ବାବଦ ଅର୍ଥ ଫେରସ୍ତ ଦିଆଯିବ । ହିସାବଗୁଡ଼ିକ ବନ୍ଦ କରିବା ପାଇଁ ନିମ୍ନଲିଖିତ ପଦକ୍ଷେପମାନ ନିଆଯିବ ।

(କ) ପ୍ରଥମେ ଖତିୟାନ୍‌ରେ 'ଆଦାୟୀକରଣ' ହିସାବ ( Realisation A/c ) ନାମକ ଏକ ହିସାବ ଖୋଲ ଏହି ହିସାବର ଦାୟୀ ପାର୍ଶ୍ୱକୁ ବହି ମୂଲ୍ୟ ବା ଲିଖିତ ମୂଲ୍ୟ ( Book Value ରେ ସମସ୍ତ ସମ୍ପତ୍ତି ଆଣାଯିବ । କେବଳ ନଗଦ ତହବିଲ ଅଥବା ବ୍ୟାଙ୍କ୍‌ରେ ଗଚ୍ଛିତ ତହବିଲ ହିସାବ ଆଦାୟୀକରଣ ହିସାବକୁ ସ୍ଥାନାନ୍ତରିତ କରା ନ ଯାଇ ପୂର୍ବବତ୍ ରଖାଯିବ । ଏହା ଫଳରେ ନଗଦ ଓ ବ୍ୟାଙ୍କ୍‌ରେ ଗଚ୍ଛିତ ତହବିଲ ହିସାବ ବ୍ୟତୀତ ଖତିୟାନ୍‌ରେ ଥିବା ଅନ୍ୟ ସମସ୍ତ ସମ୍ପତ୍ତି ହିସାବ ବନ୍ଦ ହୋଇଯିବ, ଅର୍ଥାତ୍ ସେହି ସମସ୍ତ ହିସାବରେ ଆଦୌ କୌଣସି ବାକି ରହିବ ନାହିଁ ।

(ଖ) ତୃତୀୟ ପକ୍ଷଙ୍କଠାରୁ ଅଣାଯାଇଥିବା ସମସ୍ତ ଋଣ ବା ଦେୟ ହିସାବଗୁଡ଼ିକର ବାକିକୁ ଲିଖିତ ମୂଲ୍ୟରେ ଆଦାୟୀକରଣ ହିସାବର ଦାତା ପାର୍ଶ୍ୱକୁ ସ୍ଥାନାନ୍ତରିତ କରାଯିବ । ଫଳରେ ଖତିୟାନ୍‌ରେ ଅଂଶୀଦାରମାନଙ୍କ ମୂଳଧନ ହିସାବ, ଚଳନ୍ତି ହିସାବ ଓ ଅଂଶୀ-ଦାରଙ୍କର ଋଣ ହିସାବ ବ୍ୟତୀତ ବ୍ୟବସାୟର ଅନ୍ୟ ସମସ୍ତ ଦେୟ ବା ଦାୟ ହିସାବଗୁଡ଼ିକ ବନ୍ଦ ହୋଇଯିବ ।

(ଗ) ସଞ୍ଚିତ ପାଣ୍ଠି ( Reserve Fund ) ଏବଂ ଲାଭ ଓ କ୍ଷତି ହିସାବର ବାକିକୁ ଲାଭ-କ୍ଷତି ବଣ୍ଟନ ଅନୁପାତରେ ଅଂଶୀଦାରମାନଙ୍କର ମୂଳଧନ ହିସାବକୁ ସ୍ଥାନାନ୍ତରିତ କରାଯିବ ।

(ଘ) କୌଣସି ସମ୍ପତ୍ତି ବିକ୍ରିତ ହେଲେ ତାହାର ମୋଟ ପରିମାଣ ସକାଶେ ନଗଦ ବା ବ୍ୟାଙ୍କ୍ ହିସାବକୁ ଦାୟୀ କରାଯାଇ ଆଦାୟୀକରଣ ହିସାବକୁ ଦାତା କରାଯିବ ।

କୌଣସି ସମ୍ପତ୍ତିକୁ ଯଦି କୌଣସି ଅଂଶୀଦାର ତାଙ୍କ ନିଜ ବ୍ୟବହାର ସକାଶେ ନିଅନ୍ତି ତାହାହେଲେ ନିର୍ଦ୍ଧାରିତ ମୂଲ୍ୟ ସକାଶେ ସମ୍ପୃକ୍ତ ଅଂଶୀଦାରଙ୍କ ହିସାବକୁ ଦାୟୀ କରାଯିବ ଓ ଆଦାୟୀକରଣ ହିସାବକୁ ଦାତା କରାଯିବ ।

(ଙ) ବିଲୋପସାଧନ ସଂକ୍ରାନ୍ତ ଖର୍ଚ୍ଚ ସକାଶେ ଆଦାୟୀକରଣ ହିସାବକୁ ଦାୟୀ କରାଯିବ ଓ ନଗଦ ଅଥବା ବ୍ୟାଙ୍କ୍ ହିସାବକୁ ଦାତା କରାଯିବ ।

(ଚ) ତୃତୀୟ ପକ୍ଷଙ୍କୁ ଦେୟ ଅର୍ଥ ଦିଆଗଲେ ପ୍ରଦତ୍ତ ପ୍ରକୃତ ପରିମାଣ ସକାଶେ ଆଦାୟୀକରଣ ହିସାବକୁ ଦାୟୀ ଓ ନଗଦ ଅଥବା ବ୍ୟାଙ୍କ୍ ହିସାବକୁ ଦାତା କରାଯିବ ।

ଯଦି କୌଣସି ଅଂଶୀଦାର କୌଣସି ଦେଣା ପରିଶୋଧ କରିବାର ଦାୟିତ୍ୱ ଗ୍ରହଣ କରନ୍ତି ତାହାହେଲେ ଦେଣାର ପରିମାଣ ସକାଶେ ଆଦାୟୀକରଣ ହିସାବକୁ ଦାୟୀ କରାଯିବ ଓ ସମ୍ପୃକ୍ତ ଅଂଶୀଦାରଙ୍କର ମୂଳଧନ ହିସାବକୁ ଦାତା କରାଯିବ ।

(ଛ) ଆଦାୟୀକରଣ ହିସାବକୁ ସମତୁଲନା କରାଯିବ । ଏହାର ବାକୀ ଯଦି ଦାତା ହୁଏ, ତାହାହେଲେ ତାହା ଲାଭ ଓ ଏହି ବାକୀ ଯଦି ଦାୟୀ ହୁଏ, ତାହାହେଲେ ବିଲୋପସାଧନରେ କ୍ଷତି ହୋଇଛି ବୋଲି ବୁଝାଯିବ । ଲାଭ ବା କ୍ଷତି ଯାହା ହେଉନା କାହିଁକି, ତାହାକୁ ଲାଭ ଓ କ୍ଷତି ବଣ୍ଟନ ଅନୁପାତରେ ଅଂଶୀଦାରମାନଙ୍କ ମୂଳଧନ ହିସାବକୁ ସ୍ଥାନାନ୍ତରିତ କରାଯିବ ।

(ଜ) ଏହାପରେ ଅଂଶୀଦାରଙ୍କର ଋଣ ହିସାବ ବାବଦ ଟଙ୍କା ଦିଆଯିବ । ଏଥି ନିମନ୍ତେ ଋଣ ହିସାବକୁ ଦାୟୀ କରାଯିବ ଓ ନଗଦ । ବ୍ୟାଙ୍କ୍ ହିସାବକୁ ଦାତା କରାଯିବ ।

(ଝ) ଏହା ପରେ ଯଦି କୌଣସି ଅଂଶୀଦାରଙ୍କର ମୂଳଧନ ହିସାବରେ ଦାୟୀ ବାକୀ ଥାଏ, ତାହାହେଲେ ତାଙ୍କୁ ଏହି ଅର୍ଥ ଭରଣା କରିବାକୁ ହେବ । ଏଥି ନିମନ୍ତେ ନଗଦ/ବ୍ୟାଙ୍କ୍ ହିସାବକୁ ଦାୟୀ ଓ ସଂପୃକ୍ତ ଅଂଶୀଦାରଙ୍କର ହିସାବକୁ ଦାତା କରାଯିବ ।

(ଞ) ଏହା ପରେ ଯେଉଁ ଅଂଶୀଦାରଙ୍କର ମୂଳଧନ ହିସାବରେ ଯେତେ ଦାତା ବାକୀ ଥିବ ତାଙ୍କୁ ସେହି ପରିମାଣର ଅର୍ଥ ଦିଆଯିବ । ଏଥି ନିମନ୍ତେ ଅଂଶୀଦାରଙ୍କର ମୂଳଧନ ହିସାବକୁ ଦାୟୀ ଓ ନଗଦ । ବ୍ୟାଙ୍କ୍ ହିସାବକୁ ଦାତା କରାଯିବ । ଏହା ପରେ ଖାତାସ୍ଥାନର କୌଣସି ହିସାବରେ କିଛି ବାକୀ ରହିବ ନାହିଁ, ଅର୍ଥାତ୍ ସମସ୍ତ ହିସାବ ବନ୍ଦ ହୋଇଯିବ । ଯଦି କୌଣସି ହିସାବରେ କିଛି ବାକୀ ରହେ, ତାହାହେଲେ କୌଣସି ସ୍ଥଳରେ କିଛି ହିସାବଗତ ତ୍ରୁଟି ହୋଇଛି ବୋଲି ବୁଝିବାକୁ ହେବ ।

**ବିକଳ୍ପ ପଦ୍ଧତି—**

ଏହି ବିକଳ୍ପ ପଦ୍ଧତି ଅନୁଯାୟୀ ମଧ୍ୟ ଅଂଶୀଦାରୀ ପ୍ରତିଷ୍ଠାନର ବିଲୋପସାଧନ କରାଯାଇପାରେ । ଏ କ୍ଷେତ୍ରରେ ମଧ୍ୟ ଏକ ଆଦାୟୀକରଣ ହିସାବ ଖୋଲାଯିବ; ମାତ୍ର ବିଭିନ୍ନ ସମ୍ପତ୍ତି ଓ ଦେୟ ହିସାବଗୁଡ଼ିକର ବାକୀ ଏହି ହିସାବକୁ ସ୍ଥାନାନ୍ତରିତ କରାଯିବ ନାହିଁ ।

(କ) ଯେତେବେଳେ କୌଣସି ସମ୍ପତ୍ତି ବିକ୍ରିତ ହେବ, ସେତେବେଳେ ବିକ୍ରିତ ମୂଲ୍ୟ ସହକାରେ ନଗଦ/ବ୍ୟାଙ୍କ୍ ହିସାବକୁ ଦାୟୀ ଓ ସଂପୃକ୍ତ ସମ୍ପତ୍ତି ହିସାବକୁ ଦାତା କରାଯିବ । ଯଦି କୌଣସି ଅଂଶୀଦାର କୌଣସି ସମ୍ପତ୍ତିକୁ ନିଜ ବ୍ୟବହାର ସହକାରେ କ୍ରୟ କରନ୍ତି, ତାହାହେଲେ ନିର୍ଦ୍ଧାରିତ କ୍ରୟମୂଲ୍ୟ ସହକାରେ ସେହି ଅଂଶୀଦାରଙ୍କର ମୂଳଧନ ହିସାବକୁ ଦାୟୀ କରାଯିବ ଓ ନିର୍ଦ୍ଦିଷ୍ଟ ସମ୍ପତ୍ତି ହିସାବକୁ ଦାତା କରାଯିବ । ଏହାପରେ ସେହି ସମ୍ପତ୍ତି ହିସାବର ଦାୟୀ ବା ଦାତା ବାକୀ, ଯାହା ଥାଉ ନା କାହିଁକି, ତାହା ଓ ଅବିକ୍ରିତ ସମ୍ପତ୍ତିର ପରିମାଣ ଆଦାୟୀକରଣ ହିସାବକୁ ସ୍ଥାନାନ୍ତରିତ ହେବ ।

(ଖ) ଆଦାୟୀକରଣ ଖର୍ଚ୍ଚ ସକାଶେ ଆଦାୟୀକରଣ ହିସାବକୁ ଦାୟୀ କରାଯାଇ ନଗଦ/ବ୍ୟାଙ୍କ୍ ହିସାବକୁ ଦାତା କରାଯିବ ।

(ଗ) ତୃତୀୟ ପକ୍ଷଙ୍କ ଦେଣା ପରିଶୋଧ କରାଗଲେ ଦେଣା ବା ଦାୟ ହିସାବକୁ ଦାୟୀ କରାଯିବ ଓ ନଗଦ/ବ୍ୟାଙ୍କ୍ ହିସାବକୁ ଦାତା କରାଯିବ । କୌଣସି ଅଂଶୀଦାର ଦେଣା ପରିଶୋଧ କରିବା ଦାୟିତ୍ୱ ନେଲେ ତାଙ୍କ ମୂଳଧନ ହିସାବକୁ ଦାତା କରାଯିବ ଓ ଦେଣା ହିସାବକୁ ଦାୟୀ କରାଯିବ । ଏହି ହିସାବର ବାକି ଆଦାୟୀକରଣ ହିସାବକୁ ସ୍ଥାନାନ୍ତରିତ ହେବ ।

(ଘ) ଆଦାୟୀକରଣ ହିସାବର ବାକି ଲାଭ-କ୍ଷତି ବଣ୍ଟନ ଅନୁପାତରେ ଅଂଶୀ-ଦାରଙ୍କର ମୂଳଧନ ହିସାବକୁ ସ୍ଥାନାନ୍ତରିତ ହେବ ।

ଙ) ଯେଉଁ ଅଂଶୀଦାରଙ୍କର ମୂଳଧନ ହିସାବରେ ଦାୟୀ ବାକି ଥିବ ସେ ସେଥି ନିମନ୍ତେ ଅର୍ଥ ଆଣିବେ ଓ ତାହା ସକାଶେ ନଗଦ/ବ୍ୟାଙ୍କ୍ ହିସାବକୁ ଦାୟୀ କରାଯାଇ ସଂପୃକ୍ତ ଅଂଶୀଦାରଙ୍କର ମୂଳଧନ ହିସାବକୁ ଦାତା କରାଯିବ ।

(ଚ) ଏହା ପରେ ଅଂଶୀଦାରଙ୍କର ଋଣ ହିସାବ ବାବଦ ଟଙ୍କା ଦିଆଯିବ ଓ ଏଥିପାଇଁ ଏହି ହିସାବକୁ ଦାୟୀ କରାଯାଇ ନଗଦ/ବ୍ୟାଙ୍କ୍ ହିସାବକୁ ଦାତା କରାଯିବ ।

(ଛ) ମୂଳଧନ ହିସାବରେ ଦାତା ବାକି ଥିବା ଅଂଶୀଦାରମାନଙ୍କୁ ସେହି ପରିମାଣର ଅର୍ଥ ଦିଆଯିବ ଓ ସେହି ଅର୍ଥ ସକାଶେ ମୂଳଧନ ହିସାବକୁ ଦାୟୀ କରାଯାଇ ନଗଦ/ବ୍ୟାଙ୍କ୍ ହିସାବକୁ ଦାତା କରାଯିବ ।

**ବିଲୋପସାଧନରେ ସୁନାମ—**

ବିଲୋପସାଧନରେ ସୁନାମ ସଂକ୍ରାନ୍ତରେ ବିଶେଷ କିଛି କରଣୀୟ ନାହିଁ । ଏହା ଯଦି ହିସାବରେ ଦର୍ଶାଯାଇ ନ ଥାଏ ତାହାହେଲେ ଏ ହିସାବ ଆଉ ଖୋଲିବା ଆବଶ୍ୟକ ହୁଏ ନାହିଁ । ଯଦି ଏହା ଖୋଲାଯାଇଥାଏ, ତାହାହେଲେ ଅନ୍ୟାନ୍ୟ ସମ୍ପତ୍ତି ସଦୃଶ ଏହାର ବାକି ମଧ୍ୟ ଆଦାୟୀକରଣ ହିସାବକୁ ସ୍ଥାନାନ୍ତରିତ ହୁଏ । ଯଦି ଏହାକୁ କୌଣସି ଅଂଶୀଦାର କ୍ରୟ କରନ୍ତି ତାହାହେଲେ ସେହି ଅଂଶୀଦାରଙ୍କର ମୂଳଧନ ହିସାବକୁ ଦାୟୀ କରାଯାଇ ଆଦାୟୀକରଣ ହିସାବକୁ ଦାତା କରାଯିବ ।

## ଦୃଷ୍ଟାନ୍ତ (୧)

ସୁଧାକର ଓ ସୀତାକର ଗୋଟିଏ ଅଂଶୀଦାରୀ କାରବାରରେ ଅଂଶୀଦାର ଥାଇ ଲାଭର ଯଥାକ୍ରମେ $\frac{୨}{୩}$ ଅଂଶ ଓ $\frac{୧}{୩}$ ଅଂଶ ଭୋଗ କରୁଥିଲେ । ୧୯୭୪ ମସିହା ଡିସେମ୍ବର ୩୧ ତାରିଖରେ ଏହି ବ୍ୟବସାୟର ବିଲୋପସାଧନ କରାଗଲା ଓ ସେହି ତାରିଖରେ ବ୍ୟବସାୟର ଆର୍ଥିକ ଅବସ୍ଥା ନିମ୍ନ ପ୍ରକାର ଥିଲା :

| ଦେୟ | ଟଙ୍କା | ସମ୍ପତ୍ତି | ଟଙ୍କା |
|---|---|---|---|
| ବିବିଧ ମହାଜନ | ୧୫,୦୦୦ | ସୁନାମ | ୩,୫୦୦ |
| ସାଧାରଣ ସଞ୍ଚିତ | ୫,୦୦୦ | ଯନ୍ତ୍ର | ୫,୦୦୦ |
| ମୂଳଧନ ହିସାବ : | | ଆସବାବ୍ | ୫,୫୦୦ |
| ସୁଧାକର | ୧୭,୦୦୦ | ମହଜୁଦ୍ ପଣ୍ୟ | ୧୧,୩୦୦ |
| ସୀତାକର | ୧୦,୦୦୦ | ବିବିଧ ଖାତକ | ୧୭,୬୦୦ |
| | | ବ୍ୟାଙ୍କ୍‌ରେ ଗଚ୍ଛିତ ତହବିଲ | ୪,୧୦୦ |
| | ୪୭,୦୦୦ | | ୪୭,୦୦୦ |

(କ) ସୁଧାକର ସୁନାମକୁ ୯,୫୦୦ ଟଙ୍କା ଓ ମହଜୁଦ୍ ପଣ୍ୟକୁ ୮,୦୦୦ ଟଙ୍କା ମୂଲ୍ୟରେ କ୍ରୟ କରିବାକୁ ସ୍ୱୀକୃତ ହେଲେ ।

(ଖ) ସୀତାକର ଯନ୍ତ୍ର ଓ ଆସବାବ୍‌କୁ ଶତକଡ଼ା ୧୦ ଊଣା ମୂଲ୍ୟରେ କ୍ରୟ କରିବାକୁ ସ୍ୱୀକୃତ ହେଲେ ।

(ଗ) ବିବିଧ ଖାତକ ପରିମାଣରୁ ୬୦୦ ଟଙ୍କା ଅନାଦାୟୀ ଋଣ ହେଲା ।

(ଘ) ଆଦାୟୀକରଣ ସକାଶେ ମୋଟ ୩୨୦ ଟଙ୍କା ବ୍ୟୟ ହୋଇଥିଲା ।

(ଙ) ମହାଜନମାନେ ଶତକଡ଼ା ୩ ହାରରେ ବଟା ଦେବାକୁ ସ୍ୱୀକୃତ ହେଲେ ।

ବିଲୋପସାଧନ ଫଳରେ ହିସାବଗୁଡ଼ିକ ବନ୍ଦ କରିବା ନିମନ୍ତେ ଆବଶ୍ୟକ ଜାବଦା, ରୋକଡ଼ ବହି ଓ ବିଭିନ୍ନ ଖତିୟାନ୍ ହିସାବ ପ୍ରସ୍ତୁତ କର ।

## ସମାଧାନ

| ଜାବ୍ଦା | ଦାୟୀ | ଦାତା |
|---|---|---|
| ୧୯୭୪ | ଟଙ୍କା | ଟଙ୍କା |
| ଡିସେ-୩୧ ଆଦାୟୀକରଣ ହିସାବ ଦାୟୀ | ୪୧,୯୦୦ | |
| ସୁନାମ ହିସାବ ବାବଦ | | ୩,୫୦୦ |
| ଯନ୍ତ୍ର ହିସାବ ବାବଦ | | ୯,୦୦୦ |
| ଆସବାବ୍ ହିସାବ ବାବଦ | | ୫,୫୦୦ |
| ମହଜୁଦ୍ ପଣ୍ୟ ହିସାବ ବାବଦ | | ୧୧,୩୦୦ |
| ବିବିଧ ଖାତକ ହିସାବ ବାବଦ | | ୧୨,୬୦୦ |
| ( ବିଲୋପସାଧନ ହେତୁ ସମ୍ପତ୍ତିଗୁଡ଼ିକ ଲିଖିତ ମୂଲ୍ୟରେ ଆଦାୟୀକରଣ ହିସାବକୁ ସ୍ଥାନାନ୍ତରିତ ହେଲା) | | |
| ୧୯୭୪ | | |
| ଡିସେ-୩୧ ବିବିଧ ମହାଜନ ହିସାବ ଦାୟୀ | ୧୫,୦୦୦ | |
| ଆଦାୟୀକରଣ ହିସାବ ବାବଦ | | ୧୫,୦୦୦ |
| (ବିଲୋପସାଧନ ହେତୁ ବିବିଧ ମହାଜନ ହିସାବର ବାକି ଲିଖିତ ମୂଲ୍ୟରେ ଆଦାୟୀକରଣ ହିସାବକୁ ସ୍ଥାନାନ୍ତରିତ ହେଲା) | | |
| ,, ସୁଧାକରଙ୍କ ମୂଳଧନ ହିସାବ ଦାୟୀ | ୧୭,୫୦୦ | |
| ଆଦାୟୀକରଣ ହିସାବ ବାବଦ | | ୧୭,୫୦୦ |
| (ସୁଧାକର ଜନ୍ୟ କରିଥିବା ସୁନାମ ଓ ମହଜୁଦ୍ ପଣ୍ୟର ସ୍ୱୀକୃତ ମୂଲ୍ୟ ସକାଶେ ତାଙ୍କର ମୂଳଧନ ହିସାବକୁ ଦାୟୀ କରାଗଲା) | | |
| ,, ବାଣାକରଙ୍କ ମୂଳଧନ ହିସାବ ଦାୟୀ | ୧୩,୦୫୦ | |
| ଆଦାୟୀକରଣ ହିସାବ ବାବଦ | | ୧୩,୦୫୦ |
| (ବାଣାକର ଜନ୍ୟ କରିଥିବା ଯନ୍ତ୍ର ଓ ଆସବାବ୍‌ର ସ୍ୱୀକୃତ ମୂଲ୍ୟ ସକାଶେ ତାଙ୍କର ମୂଳଧନ ହିସାବକୁ ଦାୟୀ କରାଗଲା) | | |

| କାର୍ଯ୍ୟ | ଡେବିଟ୍ | କ୍ରେଡିଟ୍ |
|---|---|---|
| ,, ଆଦାୟୀକରଣ ହିସାବ ଡେବିଟ୍<br>ସୁଧାକରଙ୍କର ମୂଳଧନ ହିସାବ ବାବଦ<br>ବାଣାକରଙ୍କର ମୂଳଧନ ହିସାବ ବାବଦ<br>(ଆଦାୟୀକରଣର ଲାଭ ଅଂଶୀଦାରମାନଙ୍କ ମୂଳଧନ ହିସାବକୁ ସ୍ଥାନାନ୍ତରିତ ହେଲା) | ୬୮୦ | <br>୫୨୦<br>୨୬୦ |
| ,, ସାଧାରଣ ସଞ୍ଚିତ ହିସାବ ଡେବିଟ୍<br>ସୁଧାକରଙ୍କର ମୂଳଧନ ହିସାବ ବାବଦ<br>ବାଣାକରଙ୍କର ମୂଳଧନ ହିସାବ ବାବଦ<br>(ସାଧାରଣ ସଞ୍ଚିତ ହିସାବର ବାକି ଅଂଶୀଦାରମାନଙ୍କର ମୂଳଧନ ହିସାବକୁ ସ୍ଥାନାନ୍ତରିତ ହେଲା) | ୯,୦୦୦ | <br>୬,୦୦୦<br>୩,୦୦୦ |

| ଡେବିଟ୍ | | ରୋକଡ଼ ବହି (ବ୍ୟାଙ୍କ୍ ସ୍ତମ୍ଭ) | କ୍ରେଡିଟ୍ |
|---|---|---|---|
| ୧୯୬୪ | ଟଙ୍କା | ୧୯୬୪ | ଟଙ୍କା |
| ଡିସେ-୩୧ ପୂର୍ବ ବାକି ବାବଦ | ୪,୧୦୦ | ଡିସେ-୩୧ ଆଦାୟୀକରଣ ହି: ବାବଦ (ବିବିଧ ମହାଜନ) | ୧୪,୫୫୦ |
| ଆଦାୟୀକରଣ ହିସାବ ବାବଦ (ସମ୍ପତ୍ତିର ଆଦାୟୀକରଣ) | ୧୨,୦୦୦ | ଆଦାୟୀକରଣ ହି: ବାବଦ (ଖର୍ଚ୍ଚ) | ୩୨୦ |
| | | ମୂଳଧନ ହିସାବ :<br>ସୁଧାକର ଟ୧,୦୨୦<br>ବାଣାକର ଟ ୨୧୦ | ୧,୨୩୦ |
| | ୧୬,୧୦୦ | | ୧୬,୧୦୦ |

| ଦାୟୀ | | | ଆଦାୟୀକରଣ ହିସାବ | | ଦାତା |
|---|---|---|---|---|---|
| ୧୯୭୪ ବିବିଧ ସମ୍ପତ୍ତି : | ଟଙ୍କା | ଟଙ୍କା | ୧୯୭୪ | | ଟଙ୍କା |
| ଡିସେ-୩୧ ସୁନାମ ହିସାବ | ୩,୫୦୦ | | ଡିସେ-୩୧ ବିବିଧ ମହାଜନ ହିସାବ ବାବଦ | | ୧୫,୦୦୦ |
| ଯନ୍ତ୍ର ହିସାବ | ୯,୦୦୦ | | ସୁଧାକରଙ୍କର ମୂଳଧନ ହି: ବାବଦ | | ୧୭,୫୦୦ |
| ଆସବାବ ହିସାବ | ୫,୫୦୦ | | ଶ୍ରୀଣାକରଙ୍କର ମୂଳଧନ ହି: ବାବଦ | | ୧୩,୦୫୦ |
| ମହଜୁଦ୍ ପଣ୍ୟ ହି: | ୧୧,୩୦୦ | | ବ୍ୟାଙ୍କ୍ ହିସାବ ବାବଦ (ବିବିଧ ଖାତକ) | | ୧୨,୦୦୦ |
| ବିବିଧ ଖାତକ ହି: | ୧୨,୬୦୦ | ୪୧,୯୦୦ | | | |
| ବ୍ୟାଙ୍କ୍ ହିସାବ ବାବଦ (ଖର୍ଚ୍ଚ) | | ୩୨୦ | | | |
| ବ୍ୟାଙ୍କ୍ ହିସାବ ବାବଦ ବିବିଧ ମହାଜନ | | ୧୪,୫୫୦ | | | |
| ଆଦାୟୀକରଣରେ ଲାଭ : | | | | | |
| ସୁଧାକର ୨/୩ | ୫୨୦ | | | | |
| ଶ୍ରୀଣାକର ୧/୩ | ୨୬୦ | ୭୮୦ | | | |
| | | ୫୭,୫୫୦ | | | ୫୭,୫୫୦ |

| ଦାୟୀ | | ସୁନାମ ହିସାବ | ଦାତା |
|---|---|---|---|
| ୧୯୭୪ | ଟଙ୍କା | ୧୯୭୪ | ଟଙ୍କା |
| ଡିସେ-୩୧ ପୂର୍ବ ବାଲାନ୍ସ ବାବଦ | ୩,୫୦୦ | ଡିସେ-୩୧ ଆଦାୟୀକରଣ ହି: ବାବଦ | ୩,୫୦୦ |

| ଦାୟୀ | | ଯନ୍ତ୍ର ହିସାବ | ଦାତା |
|---|---|---|---|
| ୧୯୭୪ | ଟଙ୍କା | ୧୯୭୪ | ଟଙ୍କା |
| ଡିସେ-୩୧ ପୂର୍ବ ବାଲାନ୍ସ ବାବଦ | ୯,୦୦୦ | ଡିସେ-୩୧ ଆଦାୟୀକରଣ ହି: ବାବଦ | ୯,୦୦୦ |

| ଦାୟୀ | | ଆସବାବ୍ ହିସାବ | ଦାତା |
|---|---|---|---|
| ୧୯୭୪ | ଟଙ୍କା | ୧୯୭୪ | ଟଙ୍କା |
| ଡିସେ-୩୧ ପୂର୍ବ ବାଲାନ୍ସ ବାବଦ | ୫,୫୦୦ | ଡିସେ-୩୧ ଆଦାୟୀକରଣ ହି: ବାବଦ | ୫,୫୦୦ |

| ଦାୟୀ | ମହଜୁଦ୍ ପଣ୍ୟ ହିସାବ | | ଦାତା |
|---|---|---|---|
| ୧୯୭୪ | ଟଙ୍କା | ୧୯୭୦ | ଟଙ୍କା |
| ଡିସେ-୩୧ ପୂର୍ବ ବାକି ବାବଦ | ୧୧,୩୦୦ | ଡିସେ-୩୧ ଆଦାୟୀକରଣ ହି: ବାବଦ | ୧୧,୩୦୦ |

| ଦାୟୀ | ବିବିଧ ଖାତକ ହିସାବ | | ଦାତା |
|---|---|---|---|
| ୧୯୭୪ | ଟଙ୍କା | ୧୯୭୪ | ଟଙ୍କା |
| ଡିସେ-୩୧ ପୂର୍ବ ବାକି ବାବଦ | ୧୨,୭୦୦ | ଡିସେ-୩୧ ଆଦାୟୀକରଣ ହି: ବାବଦ | ୧୨,୭୦୦ |

| ଦାୟୀ | ବିବିଧ ମହାଜନ ହିସାବ | | ଦାତା |
|---|---|---|---|
| ୧୯୭୪ | ଟଙ୍କା | ୧୯୭୪ | ଟଙ୍କା |
| ଡିସେ-୩୧ ଆଦାୟୀକରଣ ହି: ବାବଦ | ୧୫,୦୦୦ | ଡିସେ-୩୧ ପୂର୍ବ ବାକି ବାବଦ | ୧୫,୦୦୦ |

| ଦାୟୀ | ସାଧାରଣ ସଞ୍ଚିତ ହିସାବ | | ଦାତା |
|---|---|---|---|
| ୧୯୭୪ | ଟଙ୍କା | ୧୯୭୪ | ଟଙ୍କା |
| ଡିସେ-୩୧ ସୁଧାକରଙ୍କ ମୂଳଧନ ହି: ବାବଦ | ୬,୦୦୦ | ଡିସେ-୩୧ ପୂର୍ବ ବାକି ବାବଦ | ୯,୦୦୦ |
| କ୍ଷୀଣାକରଙ୍କ ମୂଳଧନ ହି: ବାବଦ | ୩,୦୦୦ | | |
| | ୯,୦୦୦ | | ୯,୦୦୦ |

| ଦାୟୀ | ସୁଧାକରଙ୍କର ମୂଳଧନ ହିସାବ | | ଦାତା |
|---|---|---|---|
| ୧୯୭୪ | ଟଙ୍କା | ୧୯୭୪ | ଟଙ୍କା |
| ଡିସେ-୩୧ ଆଦାୟୀକରଣ ହି: ବାବଦ | ୧୭,୫୦୦ | ଡିସେ-୩୧ ପୂର୍ବ ବାକି ବାବଦ | ୧୨,୦୦୦ |
| ବ୍ୟାଙ୍କ୍ ହିସାବ ବାବଦ | ୧,୦୨୦ | ,, ଆଦାୟୀକରଣ ହି: ବାବଦ (ଲାଭ) | ୫୨୦ |
| | | ,, ସାଧାରଣ ସଞ୍ଚିତ ହି : ବାବଦ | ୬,୦୦୦ |
| | ୧୮,୫୨୦ | | ୮,୫୨୦ |

| ଦାୟୀ | ବାଣାକରଙ୍କର ମୂଳଧନ ହିସାବ | | ଦାତା |
|---|---|---|---|
| ୧୯୭୪ | ଟଙ୍କା | ୧୯୭୪ | ଟଙ୍କା |
| ଡିସେ-୩୧ ଆଦାୟୀକରଣ ହି: ବାବଦ | ୧୩,୦୫୦ | ଡିସେ-୩୧ ପୂର୍ବ ବାକି ବାବଦ | ୧୦,୦୦୦ |
| ,, ବ୍ୟାଙ୍କ ହିସାବ ବାବଦ | ୨୧୦ | ,, ଆଦାୟୀକରଣ ହିସାବ ବାବଦ (ଲାଭ) | ୨୬୦ |
| | | ,, ସାଧାରଣ ସଞ୍ଚିତ ହି: ବାବଦ | ୩,୦୦୦ |
| | ୧୩,୨୬୦ | | ୧୩,୨୬୦ |

## ବିକଳ୍ପ ପଦ୍ଧତି ଅନୁଯାୟୀ

| | ଜାବ୍ଦା | | ଦାୟୀ | ଦାତା |
|---|---|---|---|---|
| ୧୯୭୪ | | | ଟଙ୍କା | ଟଙ୍କା |
| ଡିସେ-୩୧ | ସୁଧାକରଙ୍କର ମୂଳଧନ ହିସାବ | ଦାୟୀ | ୧୭,୫୦୦ | |
| | ସୁନାମ ହିସାବ ବାବଦ | | | ୯,୫୦୦ |
| | ମହଜୁଦ୍ ପଣ୍ୟ ହିସାବ ବାବଦ | | | ୮,୦୦୦ |
| | (ସୁଧାକର ନିଜ ବ୍ୟବହାର ସକାଶେ ଏହି ଦୁଇଟି ସମ୍ପତ୍ତି ଉପରୋକ୍ତ ମୂଲ୍ୟରେ କ୍ରୟ କଲେ) | | | |
| ,, | ବାଣାକରଙ୍କର ମୂଳଧନ ହିସାବ | ଦାୟୀ | ୧୩,୦୫୦ | |
| | ଯନ୍ତ୍ର ହିସାବ ବାବଦ | | | ୮,୧୦୦ |
| | ଆସବାବ୍ ହିସାବ ବାବଦ | | | ୪,୯୫୦ |
| | (ବାଣାକର ଏହି ଦୁଇଟି ସମ୍ପତ୍ତିକୁ ଉପରୋକ୍ତ ମୂଲ୍ୟରେ କ୍ରୟ କଲେ) | | | |
| ,, | ବ୍ୟାଙ୍କ ହିସାବ | ଦାୟୀ | ୧୨,୦୦୦ | |
| | ବିବିଧ ଖାତକ ହିସାବ ବାବଦ | | | ୧୨,୦୦୦ |
| | (ବିବିଧ ଖାତକଙ୍କଠାରୁ ଟ ୧୨,୭୦୦ ସ୍ଥଳେ ଟ ୧୨,୦୦୦ ଆଦାୟ ହେଲା) | | | |

| ତାରିଖ | ଜାବଦା | | ଦାୟୀ | ଦାତା |
|---|---|---|---|---|
| ୧୯୭୪ | ବିବିଧ ମହାଜନ ହିସାବ | ଦାୟୀ | ୧୪,୫୫୦ | |
| ଡିସେ-୩୧ | ବ୍ୟାଙ୍କ୍ ହିସାବ ବାବଦ | | | ୧୪,୫୫୦ |
| | (ବିବିଧ ମହାଜନ ଟ ୪୫୦ର ବଟା ଛାଡ଼ିଲେ) | | | |
| ,, | ଆଦାୟକରଣ ହିସାବ | ଦାୟୀ | ୫,୩୫୦ | |
| | ମହଜୁଦ ପଣ୍ୟ ହିସାବ ବାବଦ | | | ୩,୩୦୦ |
| | ଯନ୍ତ୍ର ହିସାବ ବାବଦ | | | ୯୦୦ |
| | ଆସବାବ୍ ହିସାବ ବାବଦ | | | ୫୫୦ |
| | ବିବିଧ ଖାତକମାନଙ୍କ ହିସାବ ବାଦ | | | ୬୦୦ |
| | (ଉପରୋକ୍ତ ସମ୍ପତ୍ତି ହିସାବଗୁଡ଼ିକର ଦାୟୀ ବାକି ଆଦାୟକରଣ ହିସାବକୁ ସ୍ଥାନାନ୍ତରିତ ହେଲା) | | | |
| ,, | ସୁନାମ ହିସାବ | ଦାୟୀ | ୬,୦୦୦ | |
| | ବିବିଧ ମହାଜନ ହିସାବ | ଦାୟୀ | ୪୫୦ | |
| | ଆଦାୟକରଣ ହିସାବ ବାବଦ | | | ୬,୪୫୦ |
| | (ସୁନାମ ହିସାବ ଓ ବିବିଧ ମହାଜନ ହିସାବର ଦାତା ବାକି ଆଦାୟକରଣ ହିସାବକୁ ସ୍ଥାନାନ୍ତରିତ ହେଲା) | | | |
| ,, | ଆଦାୟକରଣ ହିସାବ | ଦାୟୀ | ୩୨୦ | |
| | ବାଙ୍କ୍ ହିସାବ ବାବଦ | | | ୩୨୦ |
| | (ଆଦାୟକରଣର ଖର୍ଚ୍ଚ ସକାଶେ) | | | |
| ,, | ଆଦାୟକରଣ ହିସାବ | ଦାୟୀ | ୭୮୦ | |
| | ସୁଧାକରଙ୍କ ମୂଳଧନ ହିସାବ ବାବଦ | | | ୫୨୦ |
| | ବୀଣାକରଙ୍କ ମୂଳଧନ ହିସାବ ବାବଦ | | | ୨୬୦ |
| | (ଆଦାୟକରଣର ଲାଭ ଓ କ୍ଷତି ବଣ୍ଟନ ଅନୁପାତରେ ଅଂଶୀଦାରଙ୍କର ମୂଳଧନ ହିସାବକୁ ସ୍ଥାନାନ୍ତରିତ ହେଲା) | | | |
| ,, | ସାଧାରଣ ସଞ୍ଚିତ ହିସାବ | ଦାୟୀ | ୯,୦୦୦ | |
| | ସୁଧାକରଙ୍କର ମୂଳଧନ ହିସାବ ବାବଦ | | | ୬,୦୦୦ |
| | ବୀଣାକରଙ୍କର ମୂଳଧନ ହିସାବ ବାବଦ | | | ୩,୦୦୦ |
| | (ସାଧାରଣ ସଞ୍ଚିତ ହିସାବର ବାକି ଅଂଶୀଦାରଙ୍କର ମୂଳଧନ ହିସାବକୁ ତାଙ୍କର ଲାଭ-କ୍ଷତି ବଣ୍ଟନ ଅନୁପାତରେ ସ୍ଥାନାନ୍ତରିତ କରାଗଲା) | | | |

| | | | ଦାୟୀ | ଦାତା |
|---|---|---|---|---|
| ୧୯୭୪ | | | ଟଙ୍କା | ଟଙ୍କା |
| ଡିସେ-୩୧ | ସୁଧାକରଙ୍କର ମୂଳଧନ ହିସାବ | ଦାୟୀ | ୧,୦୨୦ | |
| | ବୀଣାକରଙ୍କର ମୂଳଧନ ହିସାବ | ଦାୟୀ | ୨୧୦ | |
| | ବ୍ୟାଙ୍କ୍ ହିସାବ ବାବଦ | | | ୧,୨୩୦ |
| | (ଅଂଶୀଦାରମାନେ ତାଙ୍କର ମୂଳଧନ ହିସାବର ଦାତା ବାକି ଅନୁଯାୟୀ ଅର୍ଥ ବ୍ୟାଙ୍କରୁ ଉଠାଇ ନେଲେ) | | | |

ବିଶେଷ ଦ୍ରଷ୍ଟବ୍ୟ : ଏକ ସ୍ପଷ୍ଟ ଧାରଣା ଦେବା ସକାଶେ ବ୍ୟାଙ୍କ୍ ସଂକ୍ରାନ୍ତ କାରବାରଗୁଡ଼ିକୁ ମଧ୍ୟ ଜାବ୍‌ଦା ଅନ୍ତର୍ଭୁକ୍ତ କରାଯାଇଛି ।

ଖତିୟାନ

ସୁନାମ ହିସାବ

| ଦାୟୀ | | | ଦାତା | | |
|---|---|---|---|---|---|
| ୧୯୭୪ | | ଟଙ୍କା | ୧୯୭୪ | | ଟଙ୍କା |
| ଡିସେ-୩୧ | ପୂର୍ବବାକି ବାବଦ | ୩,୫୦୦ | ଡିସେ-୩୧ | ସୁଧାକରଙ୍କର ମୂଳଧନ ହିସାବ ବାବଦ | ୯,୫୦୦ |
| | ଆଦାୟୀକରଣ ହିସାବ ବାବଦ | ୬,୦୦୦ | | | |
| | | ୯,୫୦୦ | | | ୯,୫୦୦ |

ମହଜୁଦ୍ ପଣ୍ୟ ହିସାବ

| ଦାୟୀ | | | ଦାତା | | |
|---|---|---|---|---|---|
| ୧୯୭୪ | | ଟଙ୍କା | ୧୯୭୪ | | ଟଙ୍କା |
| ଡିସେ-୧ | ପୂର୍ବବାକି ବାବଦ | ୧୧,୩୦୦ | ଡିସେ-୩୧ | ସୁଧାକରଙ୍କର ମୂଳଧନ ହିସାବ ବାବଦ | [illegible],୦୦୦ |
| | | | | ଆଦାୟୀକରଣ ହିସାବ ବାବଦ | ୩,୩୦୦ |
| | | ୧୧,୩୦୦ | | | ୧୧,୩୦୦ |

**ଘର ହିସାବ**

| ଦାୟୀ | | ଟଙ୍କା | ଦାତା | | ଟଙ୍କା |
|---|---|---|---|---|---|
| ୧୯୭୪ | | | ୧୯୭୪ | | |
| ଡିସେ-୩୧ | ପୂର୍ବବାକି ବାବଦ | ୯,୦୦୦ | ଡିସେ-୩୧ | ବୀଣାକରଙ୍କର ମୂଳଧନ ହିସାବ ବାବଦ | ୮,୧୦୦ |
| | | | | ଆଦାୟକରଣ ହିସାବ ବାବଦ | ୯୦୦ |
| | | ୯,୦୦୦ | | | ୯,୦୦୦ |

**ଆସବାବ ହିସାବ**

| ଦାୟୀ | | ଟଙ୍କା | ଦାତା | | ଟଙ୍କା |
|---|---|---|---|---|---|
| ୧୯୭୪ | | | ୧୯୭୪ | | |
| ଡିସେ-୩୧ | ପୂର୍ବବାକି ବାବଦ | ୫,୫୦୦ | ଡିସେ-୩୧ | ବୀଣାକରଙ୍କର ମୂଳଧନ ହିସାବ ବାବଦ | ୪,୯୫୦ |
| | | | | ଆଦାୟକରଣ ହିସାବ ବାବଦ | ୫୫୦ |
| | | ୫,୫୦୦ | | | ୫,୫୦୦ |

**ବିବିଧ ଖାତକଙ୍କ ହିସାବ**

| ଦାୟୀ | | ଟଙ୍କା | ଦାତା | | ଟଙ୍କା |
|---|---|---|---|---|---|
| ୧୯୭୪ | | | ୧୯୭୪ | | |
| ଡିସେ-୩୧ | ପୂର୍ବବାକି ବାବଦ | ୧୨,୭୦୦ | ଡିସେ-୩୧ | ବ୍ୟାଙ୍କ ହିସାବ ବାବଦ | ୧୨,୦୦୦ |
| | | | | ଆଦାୟକରଣ ହିସାବ | ୭୦୦ |

**ବିବିଧ ମହାଜନଙ୍କ ହିସାବ**

| ଦାୟୀ | | ଟଙ୍କା | ଦାତା | | ଟଙ୍କା |
|---|---|---|---|---|---|
| ୧୯୭୪ | | | ୧୯୭୪ | | |
| ଡିସେ-୩୧ | ବ୍ୟାଙ୍କ ହିସାବ ବାବଦ | ୧୪,୫୫୦ | ଡିସେ-୩୧ | ପୂର୍ବବାକି ବାବଦ | ୧୫,୦୦୦ |
| | ଆଦାୟକରଣ ହିସାବ ବାବଦ | ୪୫୦ | | | |
| | | ୧୫,୦୦୦ | | | ୧୫,୦୦୦ |

ଦାୟୀ **ଆଦାୟୀକରଣ ହିସାବ** ଦାତା

| ୧୯୭୪ | | ଟଙ୍କା | ୧୯୭୪ | | ଟଙ୍କା |
|---|---|---|---|---|---|
| ଡିସେ-୩୧ | ମହଜୁଦ୍ ପଣ୍ୟ ହିସାବ ବାବଦ | ୩,୩୦୦ | ଡିସେ ୩୧ | ସୁନାମ ହିସାବ ବାବଦ | ୬,୦୦୦ |
| ,, | ଯନ୍ତ୍ର ହିସାବ ବାବଦ | ୯୦୦ | | ବିବିଧ ମହାଜନ ହିସାବ ବାବଦ | ୪୫୦ |
| ,, | ଆସବାବ୍ ହିସାବ ବାବଦ | ୫୫୦ | | | |
| ,, | ବିବିଧ ଖାତକ ହିସାବ ବାବଦ | ୭୦୦ | | | |
| ,, | ବ୍ୟାଙ୍କ୍ ହିସାବ ବାବଦ (ଆଦାୟୀକରଣ ଖର୍ଚ୍ଚ) | ୩୨୦ | | | |
| ,, | ଆଦାୟୀକରଣରେ ଲାଭ : | | | | |
| | ସୁଧାକର ୨/୩ ୫୨୦ | | | | |
| | ସୀତାକର ୧/୩ ୨୬୦ | ୭୮୦ | | | |
| | | ୬,୪୫୦ | | | ୬,୪୫୦ |

ଦାୟୀ **ସାଧାରଣ ସଞ୍ଚିତ ହିସାବ** ଦାତା

| ୧୯୭୪ | | ଟଙ୍କା | ୧୯୭୪ | | ଟଙ୍କା |
|---|---|---|---|---|---|
| ଡିସେ-୩୧ | ସୁଧାକରଙ୍କର ମୂଳଧନ ହିସାବ ବାବଦ | ୬,୦୦୦ | ଡିସେ-୩୧ | ପୂର୍ବବାକି ବାବଦ | ୯,୦୦୦ |
| ,, | ସୀତାକରଙ୍କର ମୂଳଧନ ହିସାବ ବାବଦ | ୩,୦୦୦ | | | |
| | | ୯,୦୦୦ | | | ୯,୦୦୦ |

ବିଶେଷ ଦ୍ରଷ୍ଟବ୍ୟ : ରେକର୍ଡ଼ ବହି ଓ ଅଂଶୀଦାରଙ୍କର ମୂଳଧନ ହିସାବରେ ବିକଳ୍ପ ପଦ୍ଧତି ଅନୁଯାୟୀ କୌଣସି ପରିବର୍ତ୍ତନ ହେଉନଥିବାରୁ ଏଗୁଡ଼ିକ ପ୍ରଥମ ପଦ୍ଧତି ଅନୁରୂପ ରହିବ ; ତେଣୁ ସେଗୁଡ଼ିକର ପୁନରାବୃତ୍ତି ନିଷ୍ପ୍ରୟୋଜନ ।

## ଦୃଷ୍ଟାନ୍ତ ( ୨ )

୧୯୭୫ ମସିହା ଜାନୁୟାରୀ ୧ ତାରିଖରେ ପ୍ରଶାନ୍ତ, ସୁଶାନ୍ତ ଓ ଜୟନ୍ତ ଚଳାଉଥିବା ଅଂଶୀଦାରୀ ବ୍ୟବସାୟର ବିଲୋପ ସାଧନ କରିବାକୁ ସେମାନେ ସ୍ଥିର କଲେ । ସେମାନେ ଲାଭ ଓ କ୍ଷତିକୁ ୩ : ୨ : ୧ ଅନୁପାତରେ ବଣ୍ଟନ କରୁଥିଲେ । ତାଙ୍କର ଉକ୍ତ ତାରିଖର ଉଦ୍‌ବୃତ୍ତ ପତ୍ର ନିମ୍ନରେ ପ୍ରଦତ୍ତ ହେଲା ।

ଉଦ୍‌ବୃତ୍ତ ପତ୍ର

| ଦାୟ | | ଟଙ୍କା | ସମ୍ପତ୍ତି | ଟଙ୍କା | ଟଙ୍କା |
|---|---|---|---|---|---|
| ବିବିଧ ମହାଜନ | | ୧୦,୦୦୦ | ଯନ୍ତ୍ର | | ୨୦,୦୦୦ |
| ଉପନିମିତ୍ତ ସଞ୍ଚିତ (Conti- gency Reserve) | | ୩,୬୦୦ | ମହଜୁଦ୍ ପଣ୍ୟ : | | ୧୨,୦୦୦ |
| ପ୍ରଶାନ୍ତଙ୍କ ସ୍ତ୍ରୀଙ୍କର ଋଣ | | ୪,୪୦୦ | ବିବିଧ ଖାତକ | ୧୩,୫୦୦ | |
| ମୂଳଧନ : | ଟଙ୍କା | | ଋମୁକ୍ତ ସଞ୍ଚିତ | ୫୦୦ | ୧୩,୦୦୦ |
| ପ୍ରଶାନ୍ତ | ୧୫,୦୦୦ | | ପେଟେଣ୍ଟ | | ୩,୦୦୦ |
| ସୁଶାନ୍ତ | ୧୨,୦୦୦ | | ସୁନାମ | | ୫,୦୦୦ |
| ଜୟନ୍ତ | ୧୦,୦୦୦ | ୩୭,୦୦୦ | ନଗଦ ତହବିଲ | | ୨,୦୦୦ |
| | | ୫୫,୦୦୦ | | | ୫୫,୦୦୦ |

ବିଭିନ୍ନ ମୂର୍ତ୍ତ ସମ୍ପତ୍ତିଗୁଡ଼ିକ ବିକ୍ରି କରିବାରୁ ଟ ୪୨,୦୦୦ ଅଦାୟ ହେଲା ଓ ସୁନାମକୁ ଟ ୩,୦୦୦ ମୂଲ୍ୟରେ ବିକ୍ରୟ କରାଗଲା । ପ୍ରଶାନ୍ତ ତାଙ୍କ ସ୍ତ୍ରୀଙ୍କର ଋଣ ପରିଶୋଧ କରିବାର ଭାର ନେଲେ । ବିବିଧ ମହାଜନ ୯,୫୦୦ ଟଙ୍କାରେ ଦେଣା ସମ୍ପୂର୍ଣ୍ଣ ରୂପେ ନିଷ୍ପତ୍ତି କରିବାକୁ ସ୍ୱୀକୃତ ହେଲେ । ବିଲୋପ ସାଧନ ସକାଶେ ମୋଟ ୯୦୦ ଟଙ୍କା ବ୍ୟୟିତ ହୋଇଥିଲା ।

ଉପରୋକ୍ତ ନେଣ ଦେଣଗୁଡ଼ିକ ସକାଶେ ଆବଶ୍ୟକ ଜାବ୍‌ଦା, ରୋକଡ଼ ବହି ଓ ପ୍ରୟୋଜନୀୟ ଖତିୟାନ ହିସାବମାନ ଦର୍ଶାଅ ।

## ସମାଧାନ :

| | ଜାବ୍‌ଦା | | ଦାୟୀ | ଦାତା |
|---|---|---|---|---|
| ୧୯୭୫ | | | ଟଙ୍କା | ଟଙ୍କା |
| ଜାନୁ-୧ | ଆଦାୟକରଣ ହିସାବ | ଦାୟୀ | ୫୩,୫୦୦ | |
| | ଯନ୍ତ୍ର ହିସାବ ବାବଦ | | | ୨୦,୦୦୦ |
| | ମହଜୁଦ୍ ପଣ୍ୟ ହିସାବ ବାବଦ | | | ୧୨,୦୦୦ |
| | ବିବିଧ ଖାତକ ହିସାବ ବାବଦ | | | ୧୩,୫୦୦ |
| | ପେଟେଣ୍ଟ ହିସାବ ବାବଦ | | | ୩,୦୦୦ |
| | ସୁନାମ ହିସାବ ବାବଦ | | | ୫,୦୦୦ |
| | (ବିଲୋପ ସାଧନ ହେତୁ ଉପରୋକ୍ତ ସମ୍ପତ୍ତିଗୁଡ଼ିକ ବାକି ଆଦାୟକରଣ ହିସାବକୁ ସ୍ଥାନାନ୍ତରିତ ହେଲା) | | | |
| ,, | ବିବିଧ ମହାଜନ ହିସାବ | ଦାୟୀ | ୧୦,୦୦୦ | |
| | ଅନିଶ୍ଚିତ ଋଣର ସଞ୍ଚିତ ହିସାବ | ଦାୟୀ | ୫୦୦ | |
| | ପ୍ରଶାନ୍ତଙ୍କର ସ୍ତ୍ରୀଙ୍କର ଋଣ | ଦାୟୀ | ୪,୪୦୦ | |
| | ଆଦାୟକରଣ ହିସାବ ବାବଦ | | | ୧୪,୯୦୦ |
| | (ସମସ୍ତ ଦାୟ ହିସାବଗୁଡ଼ିକର ବାକି ଆଦାୟକରଣ ହିସାବକୁ ସ୍ଥାନାନ୍ତରିତ ହେଲା) | | | |
| ,, | ଉପନମିତ୍ତ ସଞ୍ଚିତ ହିସାବ | ଦାୟୀ | ୩,୬୦୦ | |
| | ପ୍ରଶାନ୍ତଙ୍କ ମୂଳଧନ ହିସାବ ବାବଦ | | | ୧,୮୦୦ |
| | ସୁଶାନ୍ତଙ୍କ ମୂଳଧନ ହିସାବ ବାବଦ | | | ୧,୨୦୦ |
| | ଜୟନ୍ତଙ୍କ ମୂଳଧନ ହିସାବ ବାବଦ | | | ୬୦୦ |
| | (ଉପନମିତ୍ତ ସଞ୍ଚିତ ହିସାବର ବାକି ଅଂଶୀଦାରମାନଙ୍କର ମୂଳଧନ ହିସାବକୁ ତାଙ୍କର ଲାଭ ଓ କ୍ଷତି ବଣ୍ଟନ ଅନୁପାତରେ ସ୍ଥାନାନ୍ତରିତ ହେଲା) | | | |

| | ଜାବଡ଼ା | | ଦାୟୀ | ଦାତା |
|---|---|---|---|---|
| | | | ଟଙ୍କା | ଟଙ୍କା |
| ୧୯୭୫ | ନଗଦ ତହବିଲ ହିସାବ | ଦାୟୀ | ୪୫,୦୦୦ | |
| ଜାନୁ ୧ | ଆଦାୟକରଣ ହିସାବ ବାବଦ | | | ୪୫,୦୦୦ |
| | (ସମସ୍ତ ମୂର୍ତ୍ତି ସମ୍ପତ୍ତିଗୁଡ଼ିକ ୪୨,୦୦୦ ଟଙ୍କା ଓ ସୁନାମ ୩,୦୦୦ ଟଙ୍କା ମୂଲ୍ୟରେ ବିକ୍ରି ହେଲ) | | | |
| ,, | ଆଦାୟକରଣ ହିସାବ | ଦାୟୀ | ୯୦୦ | |
| | ନଗଦ ତହବିଲ ହିସାବ ବାବଦ | | | ୯୦୦ |
| | (ବିଲୋପ ସାଧନ ଖର୍ଚ୍ଚ ସକାଶେ) | | | |
| ,, | ଆଦାୟକରଣ ହିସାବ | ଦାୟୀ | ୯,୫୦୦ | |
| | ନଗଦ ତହବିଲ ହିସାବ ବାବଦ | | | ୯,୫୦୦ |
| | (ବିବିଧ ମହାଜନଙ୍କର ଋଣ ପରିଶୋଧ କରାଗଲା) | | | |
| ,, | ଆଦାୟକରଣ ହିସାବ | ଦାୟୀ | ୪,୪୦୦ | |
| | ପ୍ରଶାନ୍ତଙ୍କର ମୂଳଧନ ହିସାବ ବାବଦ | | | ୪,୪୦୦ |
| | (ପ୍ରଶାନ୍ତଙ୍କ ସ୍ତ୍ରୀଙ୍କର ଋଣ ପ୍ରଶାନ୍ତ ଶୋଧ କଲେ) | | | |
| ,, | ପ୍ରଶାନ୍ତଙ୍କ ମୂଳଧନ ହିସାବ | ଦାୟୀ | ୪,୨୦୦ | |
| | ସୁଶାନ୍ତଙ୍କ ମୂଳଧନ ହିସାବ | ଦାୟୀ | ୨,୮୦୦ | |
| | ଜୟନ୍ତଙ୍କ ମୂଳଧନ ହିସାବ | ଦାୟୀ | ୧,୪୦୦ | |
| | ଆଦାୟକରଣ ହିସାବ ବାବଦ | | | ୮,୪୦୦ |
| | (ଆଦାୟକରଣର କ୍ଷତି ଅଂଶୀଦାରଙ୍କର ମୂଳଧନ ହିସାବକୁ ସ୍ଥାନାନ୍ତରିତ ହେଲା) | | | |
| ,, | ପ୍ରଶାନ୍ତଙ୍କ ମୂଳଧନ ହିସାବ | ଦାୟୀ | ୧୭,୦୦୦ | |
| | ସୁଶାନ୍ତଙ୍କ ମୂଳଧନ ହିସାବ | ଦାୟୀ | ୧୦,୪୦୦ | |
| | ଜୟନ୍ତଙ୍କ ମୂଳଧନ ହିସାବ | ଦାୟୀ | ୯,୨୦୦ | |
| | ନଗଦ ତହବିଲ ହିସାବ ବାବଦ | | | ୩୬,୬୦୦ |
| | (ଅଂଶୀଦାରଙ୍କର ମୂଳଧନ ହିସାବରେ ଥିବା ଦାତା ବାକି ବାବଦ ଟଙ୍କା ସେମାନଙ୍କୁ ଦିଆଗଲା) | | | |

## ଖତିୟାନ

### ଦାୟୀ ଆଦାୟକରଣ ହିସାବ ଦାତା

| ୧୯୭୫ | ଟଙ୍କା | ୧୯୭୫ | ଟଙ୍କା |
|---|---|---|---|
| ଜାନୁ-୧ ଘର ହିସାବ ବାବଦ | ୨୦,୦୦୦ | ଜାନୁ-୧ ବିବିଧ ମହାଜନ ହିସାବ ବାବଦ | ୧୦,୦୦୦ |
| ମହଜୁଦ୍ ପଣ୍ୟ ହିସାବ ବାବଦ | ୧୨,୦୦୦ | ଅନିଶ୍ଚିତ ଋଣର ସଞ୍ଚିତ ହିସାବ ବାବଦ | ୫୦୦ |
| ବିବିଧ ଖାତକ ହିସାବ ବାବଦ | ୧୩,୫୦୦ | ପ୍ରଶାନ୍ତଙ୍କ ସ୍ତ୍ରୀଙ୍କର ଋଣ ହିସାବ ବାବଦ | ୪,୪୦୦ |
| ପେଟେଣ୍ଟ ହିସାବ ବାବଦ | ୩,୦୦୦ | ନଗଦ ତହବିଲ ହିସାବ ବାବଦ (ସମ୍ପତ୍ତିର ବିକ୍ରୟ ମୂଲ୍ୟ) | ୪୫,୦୦୦ |
| ସୁନାମ ହିସାବ ବାବଦ | ୫,୦୦୦ | ଆଦାୟକରଣ କ୍ଷତି : ଅଂଶୀଦାରଙ୍କର ମୂଳଧନ ହିସାବକୁ ସ୍ଥାନାନ୍ତରଣ ବାବଦ : | |
| ନଗଦ ତହବିଲ ହିସାବ ବାବଦ (ଆଦାୟକରଣ ଖର୍ଚ୍ଚ) | ୯୦୦ | ଟଙ୍କା | |
| ନଗଦ ତହବିଲ ହିସାବ ବାବଦ (ବିବିଧ ମହାଜନଙ୍କୁ ଋଣଶୋଧ) | ୯,୫୦୦ | ପ୍ରଶାନ୍ତ ୪,୨୦୦ | |
| ପ୍ରଶାନ୍ତଙ୍କ ମୂଳଧନ ହିସାବ ବାବଦ (ତାଙ୍କ ସ୍ତ୍ରୀଙ୍କର ଋଣ ପରିଶୋଧ ଭାର ଗ୍ରହଣ) | ୪,୪୦୦ | ସୁଶାନ୍ତ ୨,୮୦୦ | |
| | | ଜୟନ୍ତ ୧,୪୦୦ | ୮,୪୦୦ |
| | ୬୮,୩୦୦ | | ୬୮,୩୦୦ |

### ପ୍ରଶାନ୍ତଙ୍କ ସ୍ତ୍ରୀଙ୍କର ଋଣ ହିସାବ ଦାତା

| ୧୯୭୫ | ଟଙ୍କା | ୧୯୭୫ | ଟଙ୍କା |
|---|---|---|---|
| ଜାନୁ-୧ ପ୍ରଶାନ୍ତଙ୍କର ମୂଳଧନ ହିସାବ ବାବଦ | ୪,୪୦୦ | ଜାନୁ-୧ ପୂର୍ବବାକି ବାବଦ | ୪,୪୦୦ |

## ଦାୟୀ ଅନର୍ଜିତ ଋଣର ସମ୍ପୃକ୍ତ ହିସାବ ଦାତା

| | | ଟଙ୍କା | | | ଟଙ୍କା |
|---|---|---|---|---|---|
| ୧୯୭୫ | | | ୧୯୭୫ | | |
| ଜାନୁ-୧ | ଆଦାୟକରଣ ହିସାବ ବାବଦ | ୫୦୦ | ଜାନୁ-୧ | ପୂର୍ବବାକି ବାବଦ | ୫୦୦ |

## ଦାୟୀ ନଗଦ ତହବିଲ ହିସାବ ଦାତା

| | | ଟଙ୍କା | | | ଟଙ୍କା |
|---|---|---|---|---|---|
| ୧୯୭୫ | | | ୧୯୭୫ | | |
| ଜାନୁ-୧ | ପୂର୍ବବାକି ବାବଦ | ୨,୦୦୦ | ଜାନୁ-୧ | ଆଦାୟକରଣ ହିସାବ ବାବଦ (ଆଦାୟକରଣ ଖର୍ଚ୍ଚ) | ୯୦୦ |
| ,, | ଆଦାୟକରଣ ହିସାବ ବାବଦ (ସମ୍ପତ୍ତିଗୁଡ଼ିକର ବିକ୍ରୟ ମୂଲ୍ୟ) | ୪୫,୦୦୦ | ,, | ଆଦାୟକରଣ ହିସାବ ବାବଦ (ବିବିଧ ମହାଜନଙ୍କ ଋଣ ପରିଶୋଧ) | ୯,୫୦୦ |
| | | | ,, | ପ୍ରଶାନ୍ତଙ୍କ ମୂଳଧନ ହିସାବ ବାବଦ | ୧୭,୦୦୦ |
| | | | | ସୁଶାନ୍ତଙ୍କ ମୂଳଧନ ହିସାବ ବାବଦ | ୧୦,୪୦୦ |
| | | | | ଜୟନ୍ତଙ୍କ ମୂଳଧନ ହିସାବ ବାବଦ | ୯,୨୦୦ |
| | | ୪୭,୦୦୦ | | | ୪୭,୦୦୦ |

ଦାୟୀ — ପ୍ରଶାନ୍ତଙ୍କର ମୂଳଧନ ହିସାବ — ଦାତା

| ୧୯୭୫ | | ଟଙ୍କା | ୧୯୭୫ | | ଟଙ୍କା |
|---|---|---|---|---|---|
| ଜାନୁ-୧ | ଆଦାୟକରଣ ହିସାବ ବାବଦ | ୪,୨୦୦ | ଜାନୁ-୧ | ପୂର୍ବବାକି ବାବଦ | ୧୫,୦୦୦ |
| ,, | ନଗଦ ଉଦ୍ବୃତ୍ତ ହିସାବ ବାବଦ | ୧୭,୦୦୦ | ,, | ଉପାର୍ଜିତ ସଞ୍ଚିତ ହି : ବାବଦ | ୧,୮୦୦ |
| | | | ,, | ତାଙ୍କ ସ୍ତ୍ରୀଙ୍କର ଋଣ ହି : ବାବଦ | ୪,୪୦୦ |
| | | ୨୧,୨୦୦ | | | ୨୧,୨୦୦ |

ଦାୟୀ — ସୁଶାନ୍ତଙ୍କର ମୂଳଧନ ହିସାବ — ଦାତା

| ୧୯୭୫ | | ଟଙ୍କା | ୧୯୭୫ | | ଟଙ୍କା |
|---|---|---|---|---|---|
| ଜାନୁ-୧ | ଆଦାୟକରଣ ହିସାବ ବାବଦ | ୨,୮୦୦ | ଜାନୁ-୧ | ପୂର୍ବବାକି ବାବଦ | ୧୨,୦୦୦ |
| ,, | ନଗଦ ଉଦ୍ବୃତ୍ତ ହିସାବ ବାବଦ | ୧୦,୪୦୦ | ,, | ଉପାର୍ଜିତ ସଞ୍ଚିତ ହି : ବାବଦ | ୧,୨୦୦ |
| | | ୧୩,୨୦୦ | | | ୧୩,୨୦୦ |

ଦାୟୀ — ଜୟନ୍ତଙ୍କର ମୂଳଧନ ହିସାବ — ଦାତା

| ୧୯୭୫ | | ଟଙ୍କା | ୧୯୭୫ | | ଟଙ୍କା |
|---|---|---|---|---|---|
| ଜାନୁ-୧ | ଆଦାୟ କରଣ ହି : ବାବଦ | ୧,୪୦୦ | ଜାନୁ-୧ | ପୂର୍ବବାକି ବାବଦ | ୧୦,୦୦୦ |
| ,, | ନଗଦ ଉଦ୍ବୃତ୍ତ ହି : ବାବଦ | ୯,୨୦୦ | ,, | ଉପାର୍ଜିତ ସଞ୍ଚିତ ହି : ବାବଦ | ୬୦୦ |
| | | ୧୦,୬୦୦ | | | ୧୦,୬୦୦ |

| ଦାୟୀ | | ଉପଜମିଲ ସଞ୍ଚିତ ହିସାବ | | | ଦାତା |
|---|---|---|---|---|---|
| ୧୯୭୫ | | ଟଙ୍କା | ୧୯୭୫ | | ଟଙ୍କା |
| ଜାନୁ-୧ | ପ୍ରଶାନ୍ତଙ୍କ ମୂଳଧନ ହି : ବାବଦ | ୧,୮୦୦ | ଜାନୁ-୧ | ପୂର୍ବବାକି ବାବଦ | ୩,୭୦୦ |
| | ସୁଶାନ୍ତଙ୍କ ମୂଳଧନ ହି : ବାବଦ | ୧,୨୦୦ | | | |
| | ଜୟନ୍ତଙ୍କ ମୂଳଧନ ହି : ବାବଦ | ୭୦୦ | | | |
| | | ୩,୭୦୦ | | | ୩,୭୦୦ |

## ଦୃଷ୍ଟାନ୍ତ ( ୩ )

କ, ଖ ଓ ଗ ଗୋଟିଏ ଅଂଶୀଦାରୀ ବ୍ୟବସାୟର ଅଂଶୀଦାର ରୂପେ ଲାଭ ଓ କ୍ଷତିକୁ ୪ : ୩ : ୨ ଅନୁପାତରେ ବଣ୍ଟନ କରୁଥିଲେ । ସେମାନେ ୧୯୭୫ ମସିହା ଜୁନ୍ ୩୦ ତାରିଖରେ ବ୍ୟବସାୟର ବିଲୋପ ସାଧନ କରିବାକୁ ସ୍ଥିର କଲେ । ସେହି ତାରିଖରେ ତାଙ୍କ ବ୍ୟବସାୟର ଉଦ୍‌ବୃତ୍ତ ପତ୍ର ନିମ୍ନ ରୂପ ଥିଲା ।

### ଉଦ୍‌ବୃତ୍ତ ପତ୍ର

| ଦାୟ | | ଟଙ୍କା | ସଂପତ୍ତି | ଟଙ୍କା |
|---|---|---|---|---|
| ବିବିଧ ମହାଜନ | | ୨୦,୫୦୦ | ଘର | ୩୦,୦୦୦ |
| ଜୀବନ ବୀମା ନିଧି | | ୧୨,୦୦୦ | ଆସବାବ୍ | ୪,୫୦୦ |
| ବିନିଯୋଗ ଅସ୍ଥିରତା ନିଧି | | ୭,୩୦୦ | ମହଜୁଦ୍ ପଣ୍ୟ | ୧୫,୩୦୦ |
| ମୂଳଧନ ହିସାବ : | | | ବିବିଧ ଖାତକ | ୧୮,୨୦୦ |
| କ ଟ | ୩୮,୦୦୦ | | ଗ ଙ୍କର ଚଳନ୍ତି ହିସାବ | ୮,୭୦୦ |
| ଖ ଟ | ୨୭,୦୦୦ | ୭୪,୦୦୦ | ବ୍ୟାଙ୍କ୍‌ରେ ଗଚ୍ଛିତ | ୪,୨୦୦ |
| | | | ଯୌଥ ଜୀବନ ବୀମା ପତ୍ର | ୧୨,୦୦୦ |
| | | | ବିନିଯୋଗ | ୧୦,୦୦୦ |
| | | ୧,୦୨,୮୦୦ | | ୧,୦୨,୮୦୦ |

କ ମହଜୁଦ୍ ପଣ୍ୟକୁ ଟ ୧୨,୦୦୦, ଲିଖିତ ମୂଲ୍ୟ ଅନୁଯାୟୀ ଟ ୧୦,୦୦୦ର ବିବିଧ ଖାତକ ପରିମାଣକୁ ଟ ୮,୦୦୦ ମୂଲ୍ୟରେ ଗ୍ରହଣ କଲେ । ଖ ଆସବାବକୁ ଟ ୩,୦୦୦ ଓ ବିନିଯୋଗକୁ ଟ ୯,୫୦୦ ମୂଲ୍ୟରେ କ୍ରୟ କଲେ । ଅନ୍ୟ ବିକ୍ରୟରୁ ଟ ୨୫,୦୦୦ ମିଳିଲା । ଅବଶିଷ୍ଟ ଖାତକ ପରିମାଣରୁ ଶତକଡ଼ା ୫୦ ଭାଗ ଆଦାୟ ହେଲା । ବୀମାପତ୍ର ସମର୍ପଣ କରିବାରୁ କଂପାନୀ ଟ ୧୦,୦୦୦ ଦେଲା । ବିବିଧ ମହାଜନମାନଙ୍କର ମୋଟ ଋଣ ଟ ୧୮,୦୦୦ ସଂପୂର୍ଣ୍ଣ ରୂପେ ନିଷ୍ପତ୍ତି ହେଲା । ବିଲୋପ ସାଧନ ସକାଶେ ଟ ୬୦୦ ଖର୍ଚ୍ଚ ହେଲା ।

ଆଦାୟକରଣ ହିସାବ ବ୍ୟାଙ୍କ୍ ହିସାବ ଅଂଶୀଦାରମାନଙ୍କର ମୂଳଧନ ହିସାବ ଚଳନ୍ତି ହିସାବ ପ୍ରସ୍ତୁତ କର ।

## ସମାଧାନ

ଦାୟୀ — ବ୍ୟାଙ୍କ୍ ହିସାବ — ଦାତା

| ୧୯୬୫ | | ଟଙ୍କା | ୧୯୬୫ | | ଟଙ୍କା |
|---|---|---|---|---|---|
| ଜୁନ ୩୦ | ପୂର୍ବ ବାକି ବାବଦ | ୪,୨୦୦ | ଜୁନ୍ ୩୦ | ଆଦାୟ କରଣ ହିସାବ ବାବଦ ଖର୍ଚ୍ଚ | ୬୦୦ |
| ,, | ଆଦାୟକରଣ ହିସାବ ବାବଦ : ସଂପତ୍ତିର ବିକ୍ରୟ ମୂଲ୍ୟ | ୩୯,୧୦୦ | ,, | ଆଦାୟ କରଣ ହିସାବ ବାବଦ : ମହାଜନଙ୍କର ଦେଣା ପରିଶୋଧ | ୧୮,୦୦୦ |
| ,, | ଗ ଙ୍କର ଚଳନ୍ତି ହିସାବ ବାବଦ | ୮,୨୦୦ | ,, | କ ଙ୍କର ମଳଧନ ହିସାବ ବାବଦ | ୧୮,୮୦୦ |
| | | | ,, | ଖ ଙ୍କର ମୂଳଧନ ହିସାବ ବାବଦ | ୧୪,୧୦୦ |
| | | ୫୧,୫୦୦ | | | ୫୧,୫୦୦ |

## ଆଦାୟ କରଣ ହିସାବ

ଡାସ୍ତୀ

| ୧୯୭୫ | | ଟଙ୍କା | ଟଙ୍କା |
|---|---|---|---|
| ଜୁନ-୩୦ | ବିବିଧ ସଂପତ୍ତି ବାବଦ | | |
| | ଘର | ୩୦,୦୦୦ | |
| | ଆସବାବ | ୪,୫୦୦ | |
| | ମହଜୁଦ୍ ପଣ୍ୟ | ୧୫,୩୦୦ | |
| | ବିବିଧ ଖାତକ | ୧୮,୨୦୦ | |
| | ଯୌଥ ଜୀବନ ବୀମା ପତ୍ର | ୧୨,୦୦୦ | |
| | ବାଦଯୋଗ | ୧୦,୦୦୦ | ୯୦,୦୦୦ |
| | ,, ବ୍ୟାଙ୍କ୍ ହିସାବ ବାବଦ (ଆଦାୟ କରଣ ଖର୍ଚ୍ଚ) | | ୬୦୦ |
| | ,, ବ୍ୟାଙ୍କ୍ ହିସାବ ବାବଦ (ମହାଜନଙ୍କ ଦେଣା ପରିଶୋଧ) | | ୧୮,୦୦୦ |
| | ,, ଆଦାୟ କରଣ ଲାଭ ବାବଦ : | | |
| | କ ଙ୍କର ମୂଳଧନ ହିସାବ : | ୮୦୦ | |
| | ଖ ଙ୍କର ମୂଳଧନ ହିସାବ : | ୬୦୦ | |
| | ଗ ଙ୍କର ମୂଳଧନ ହିସାବ : | ୪୦୦ | ୧,୮୦୦ |
| | | | ୧,୧୦,୪୦୦ |

ଦାତା

| ୧୯୭୫ | | ଟଙ୍କା | ଟଙ୍କା |
|---|---|---|---|
| ଜୁନ୍-୩୦ | ବିବିଧ ଦାୟ ବାବଦ : | | |
| | ବିବିଧ ମହାଜନ | ୨୦,୫୦୦ | |
| | ଜୀବନ ବୀମା ନିଧି | ୧୨,୦୦୦ | |
| | ବାଦଯୋଗ ଅସ୍ଥିରତା ନିଧି | ୭,୩୦୦ | ୩[illegible],୮୦୦ |
| | ,, କ ଙ୍କର ମୂଳଧନ ହିସାବ ବାବଦ : | | |
| | ମହଜୁଦ ପଣ୍ୟ | ୧୨,୦୦୦ | |
| | ବିବିଧ ଖାତକ | ୮,୦୦୦ | ୨୦,୦୦୦ |
| | ,, ଖ ଙ୍କର ମୂଳଧନ ହିସାବ ବାବଦ : | | |
| | ଆସବାବ୍ | ୩,୦୦୦ | |
| | ବାଦଯୋଗ | ୯,୫୦୦ | ୧୨,୫୦୦ |
| | ,, ବ୍ୟାଙ୍କ ହିସାବ ବାବଦ : | | |
| | ଘର | ୨୫,୦୦୦ | |
| | ବିବିଧ ଖାତକ | ୪,୧୦୦ | |
| | ବୀମା ପତ୍ର | ୧୦,୦୦୦ | ୩୯,୧୦୦ |
| | | | ୧,୧୦,୪୦୦ |

| ଡାଏବି | କ ଙ୍କର ମୂଳଧନ ହିସାବ | | | | | ପାଉଣା |
|---|---|---|---|---|---|---|
| ୧୯୭୫ | | ଟଙ୍କା | ଟଙ୍କା | ୧୯୭୫ | | ଟଙ୍କା |
| ଜୁନ୍-୩୦ | ଆଦାୟ କରଣ ହିସାବ ବାବଦ : | | | ଜୁନ୍-୩୦ | ପୂର୍ବ ବାକି ବାବଦ | ୩୮,୦୦୦ |
| | ମହଜୁଦ ପଣ୍ୟ | ୧୨,୦୦୦ | | ,, | ଆଦାୟ କରଣ ହିସାବ ବାବଦ ଲଭ | ୮୦୦ |
| | ବଦ୍ଧ ଖାତକ | ୮,୦୦୦ | ୨୦,୦୦୦ | | | |
| ,, | ବ୍ୟାଙ୍କ ହିସାବ ବାବଦ | | ୧୮,୮୦୦ | | | |
| | | | ୩୮,୮୦୦ | | | ୩୮,୮୦୦ |

| ଡାଏବି | ଖ ଙ୍କର ମୂଳଧନ ହିସାବ | | | | | ପାଉଣା |
|---|---|---|---|---|---|---|
| ୧୯୭୫ | | | ଟଙ୍କା | ୧୯୭୫ | | ଟଙ୍କା |
| ଜୁନ୍-୩୦ | ଆଦାୟ କରଣ ହିସାବ ବାବଦ : | ଟଙ୍କା | | ଜୁନ୍-୩୦ | ପୂର୍ବ ବାକି ବାବଦ | ୨୬,୦୦୦ |
| | ଆସବାବ୍ | ୩,୦୦୦ | | ,, | ଆଦାୟ କରଣ ହିସାବ ବାବଦ : | |
| | ବନ୍ଦଯୋଗ | ୯,୫୦୦ | ୧୨,୫୦୦ | | ଲଭ | ୬୦୦ |
| ,, | ବ୍ୟାଙ୍କ ହିସାବ ବାବଦ | | ୧୪,୧୦୦ | | | |
| | | | ୨୬,୬୦୦ | | | ୨୬,୬୦୦ |

| ଡାଏବି | ଗ ଙ୍କର ଚଳନ୍ତି ହିସାବ | | | | ପାଉଣା |
|---|---|---|---|---|---|
| ୧୯୭୫ | | ଟଙ୍କା | ୧୯୭୫ | | ଟଙ୍କା |
| ଜୁନ୍-୩୦ | ପୂର୍ବ ବାକି ବାବଦ | ୮,୬୦୦ | ଜୁନ୍-୩୦ | ଆଦାୟ କରଣ ହିସାବ ବାବଦ : | |
| | | | | ଲଭ | ୪୦୦ |
| | | | ,, | ବ୍ୟାଙ୍କ ହିସାବ ବାବଦ | ୮,୨୦୦ |
| | | ୮,୬୦୦ | | | ୮,୬୦୦ |

## ଦୃଷ୍ଟାନ୍ତ (୪)

ସୁରଜିତ୍, ଅଭିଜିତ୍ ଓ ନବନୀତ୍ ଗୋଟିଏ ଅଂଶୀଦାରୀ କାରବାରରେ ଅଂଶୀଦାର ଥାଇ ଲାଭ ଓ କ୍ଷତି ୫: ୩: ୨ ଅନୁପାତରେ ବଣ୍ଟନ କରୁଥିଲେ । ସେମାନେ ୧୯୭୫ ମସିହା ଜାନୁୟାରୀ ୧ ତାରିଖରେ ଅଂଶୀଦାରୀ କାରବାରର ବିଲୋପ ସାଧନ କରିବାକୁ ସ୍ଥିର କଲେ । ତାଙ୍କର ସେଇ ତାରିଖର ଉଦ୍ୱର୍ତ୍ତ ପତ୍ର ନିମ୍ନରେ ପ୍ରଦତ୍ତ ହେଲା :

| ଦେୟ | | ଟଙ୍କା | ସମ୍ପତ୍ତି | ଟଙ୍କା |
|---|---|---|---|---|
| ବିବିଧ ମହାଜନ | | ୧୧,୦୦୦ | ଯନ୍ତ୍ର | ୨୫,୦୦୦ |
| ସୁରଜିତଙ୍କର ଋଣ | | ୧୦,୦୦୦ | ସରଞ୍ଜାମ | ୪,୦୦୦ |
| ମୂଳଧନ ହିସାବ | | | ମହଜୁଦ୍ ପଣ୍ୟ | ୧୭,୦୦୦ |
| ସୁରଜିତ୍ | ୨୦,୦୦୦ | | ବିବିଧ ଖାତକ | ୧୫,୦୦୦ |
| ଅଭିଜିତ୍ | ୧୫,୦୦୦ | | ବ୍ୟାଙ୍କରେ ଗଚ୍ଛିତ | |
| ନବନୀତ୍ | ୧୦,୦୦୦ | ୪୫,୦୦୦ | ତହବିଲ | ୫,୦୦୦ |
| | | ୬୬,୦୦୦ | | ୬୬,୦୦୦ |

ଅଭିଜିତ୍ ଓ ନବନୀତ୍ ଏହା ପରେ ବ୍ୟବସାୟକୁ ଚଳାଇବା ପାଇଁ ସ୍ଥିର କଲେ । ସେମାନେ ସୁରଜିତଙ୍କର ମୂଳଧନକୁ ଉପସ୍ଥିତ ଲାଭ କ୍ଷତି ବଣ୍ଟନ ଅନୁପାତରେ ଭରଣା କରିବେ ବୋଲି ସ୍ଥିର ହେଲା ଓ ବ୍ୟବସାୟର ବ୍ୟାଙ୍କରେ ଗଚ୍ଛିତ ତହବିଲକୁ ଏଥି ସକାଶେ ବ୍ୟବହାର କରିବେ ବୋଲି ମଧ୍ୟ ସ୍ଥିର ହୋଇଥିଲା ।

ବିଲୋପ ସାଧନ ଉଦ୍ଦେଶ୍ୟରେ ବ୍ୟବସାୟର କେତେକ ସମ୍ପତ୍ତିର ପୁନର୍ମୂଲ୍ୟାୟନ ନିମ୍ନ ଲିଖିତ ରୂପେ କରାଯିବ ବୋଲି ସାବ୍ୟସ୍ତ ହେଲା :

(କ) ସୁନାମ, ଟ୧୦,୦୦୦ , (ଖ) ଯନ୍ତ୍ରର ଶତକଡ଼ା ୧୦ ହାରରେ ମୂଲ୍ୟହ୍ରାସ କରାଯିବ ; (ଗ) ସରଞ୍ଜାମ ଟ୩,୦୦୦; (ଘ) ମହଜୁଦ୍ ପଣ୍ୟ ଟ୧୫,୦୦୦ ; (ଙ) ବିବିଧ ଖାତକ ପରିମାଣରୁ ଅନାଦାୟୀ ଋଣର ସମ୍ଭାବ୍ୟ ସକାଶେ ଟ୨,୦୦୦ ଓ ବଟା ସକାଶେ ଶତକଡ଼ା ୫ ବାଦ୍ ଦିଆଯିବ ।

ଅଭିଜିତ୍ ଓ ନବନୀତ୍ ବିବିଧ ମହାଜନଙ୍କର ଦେଣା ଶତକଡ଼ା ୨ ବଟା ବାଦ୍ ଦେଇ ପରିଶୋଧ କରିବାର ଦାୟିତ୍ୱ ଗ୍ରହଣ କଲେ । ସୁରଜିତ୍ ତାଙ୍କ ଋଣ ବାବଦ ପରିମାଣକୁ ବ୍ୟବସାୟରେ ରଖିବା ପାଇଁ ସମ୍ମତ ହେଲେ, କିନ୍ତୁ ସେ ବର୍ଷ ଶେଷରେ ଶତକଡ଼ା ୬ ହାରରେ ସୁଧ ପାଇବେ । ଅଭିଜିତ୍ ଓ ନବନୀତ୍ ଭବିଷ୍ୟତରେ ଉପସ୍ଥିତ ଅନୁପାତରେ ଲାଭ ଓ କ୍ଷତି ବଣ୍ଟନ କରିବେ ବୋଲି ସ୍ଥିର କଲେ ।

(କ) ବିଲୋପ ସାଧନ ସକାଶେ ଆଦାୟୀକରଣ ହିସାବ ସମେତ ଅନ୍ୟାନ୍ୟ ପ୍ରୟୋଜନୀୟ ଖତିୟାନ ପ୍ରସ୍ତୁତ କର ଓ (ଖ) ନୂତନ ଅଂଶୀଦାରୀ କାରବାରର ହିସାବ ବହିରେ ପ୍ରାରମ୍ଭିକ ଓ ଜାବ୍‌ଦା ଉଦ୍‌ବୃତ୍ତ ପତ୍ର ପ୍ରସ୍ତୁତ କର ।

ଖତିୟାନ

## ସମାଧାନ

ଧାର୍ଯ୍ୟ ଆଦାୟୀକରଣ ହିସାବ ଦାତା

| ୧୯୭୫ | ଟଙ୍କା | ଟଙ୍କା | ୧୯୭୫ | ଟଙ୍କା | ଟଙ୍କା |
|---|---|---|---|---|---|
| ଜାନୁ-୧ ବିବିଧ ସମ୍ପତ୍ତି ବାବଦ : | | | ଜାନୁ-୧ ବିବିଧ ମହାଜନ ହିସାବ ବାବଦ | | ୧୧,୦୦୦ |
| ଯନ୍ତ୍ର | ୨୫,୦୦୦ | | ସୁରଜିତଙ୍କ ଋଣ ହିସାବ ବାବଦ | | ୧୦,୦୦୦ |
| ସରଞ୍ଜାମ | ୪,୦୦୦ | | ,, ଅଭିଜିତ୍ ଓ ନବମୀତଙ୍କର ମୁଗ୍ମ ହିସାବ ବାବଦ (ସମ୍ପତ୍ତି ସମୂହ ନିଜ୍ଯ କଲେ) | | |
| ମହଜୁଦ ପଣ୍ୟ | ୧୭,୦୦୦ | | ସୁନାମ | ୧୦,୦୦୦ | |
| ବିବିଧ ଖାତକ | ୧୫,୦୦୦ | ୬୧,୦୦୦ | ଯନ୍ତ୍ର | ୨୨,୫୦୦ | |
| ,, ଅଭିଜିତ ଓ ନବମୀତଙ୍କର ଯୁଗ୍ମ ହିସାବ ବାବଦ (ଦେଣା ପରିଶୋଧର ଭାର ନେଲେ) | | | ସରଞ୍ଜାମ | ୩,୦୦୦ | |
| ବିବିଧ ମହାଜନ | ୧୦,୭୮୦ | | ମହଜୁଦ ପଣ୍ୟ | ୧୫,୦୦୦ | |
| ସୁରଜିତଙ୍କର ଋଣ | ୧୦,୦୦୦ | ୨୦,୭୮୦ | ବିବିଧ ଖାତକ | ୧୨,୩୫୦ | ୬୨,୮୫୦ |
| ,, ଲଭ ମୂଳଧନ ହିସାବକୁ ସ୍ଥାନାନ୍ତରିତ ହେଲା : | | | | | |
| ସୁରଜିତ୍ | ୧,୦୩୫ | | | | |
| ଅଭିଜିତ୍ | ୬୨୧ | | | | |
| ନବମୀତ | ୪୧୪ | ୨,୦୭୦ | | | |
| | | ୮୩,୮୫୦ | | | ୮୩,୮୫୦ |

| ଦାୟୀ | ବ୍ୟାଙ୍କ ହିସାବ | | ଦାତା |
|---|---|---|---|
| ୧୯୭୫ | ଟଙ୍କା | ୧୯୭୫ | ଟଙ୍କା |
| ଜାନୁ-୧ ପୂର୍ବବାକୀ ବାବଦ | ୫,୦୦୦ | ଜାନୁ-୧ ସୁରଜିତଙ୍କର ମୂଳଧନ ହି : ବାବଦ | ୨୧,୦୩୫ |
| ,, ଅଭିଜିତଙ୍କର ମୂଳଧନ ହି : ବାବଦ | ୯,୬୨୧ | | |
| ,, ନବନୀତଙ୍କର ମୂଳଧନ ହି : ବାବଦ | ୬,୪୧୪ | | |
| | ୨୧,୦୩୫ | | ୨୧,୦୩୫ |

| ଦାୟୀ | ସୁରଜିତଙ୍କର ମୂଳଧନ ହିସାବ | | ଦାତା |
|---|---|---|---|
| ୧୯୭୫ | ଟଙ୍କା | ୧୯୭୫ | ଟଙ୍କା |
| ଜାନୁ-୧ ବ୍ୟାଙ୍କ୍ ହିସାବ ବାବଦ | ୨୧,୦୩୫ | ଜାନୁ-୧ ପୂର୍ବବାକୀ ବାବଦ | ୨୦,୦୦୦ |
| | | ,, ଆଦାୟକରଣ ହିସାବ ବାବଦ | ୧,୦୩୫ |
| | ୨୧,୦୩୫ | | ୨୧,୦୩୫ |

| ଦାୟୀ | ଅଭିଜିତଙ୍କର ମୂଳଧନ ହିସାବ | | ଦାତା |
|---|---|---|---|
| ୧୯୭୫ | ଟଙ୍କା | ୧୯୭୫ | ଟଙ୍କା |
| ଜାନୁ-୧ ଅଭିଜିତ୍ ଓ ନବନୀତଙ୍କ ଯୁଗ୍ମ ହିସାବକୁ ସ୍ଥାନାନ୍ତରିତ ହେଲ | ୨୫,୨୪୨ | ଜାନୁ-୧ ପୂର୍ବବାକୀ ବାବଦ | ୧୫,୦୦୦ |
| | | ,, ଆଦାୟକରଣ ହିସାବ ବାବଦ | ୬୨୧ |
| | | ,, ବ୍ୟାଙ୍କ୍ ହିସାବ ବାବଦ | ୯,୬୨୧ |
| | ୨୫,୨୪୨ | | ୨୫,୨୪୨ |

| ଦାୟୀ | ନବନୀତଙ୍କର ମୂଳଧନ ହିସାବ | | ଦାତା |
|---|---|---|---|
| ୧୯୭୫ | ଟଙ୍କା | ୧୯୭୫ | ଟଙ୍କା |
| ଜାନୁ-୧ ଅଭିଜିତ୍ ଓ ନବନୀତଙ୍କ ଯୁଗ୍ମ ହିସାବକୁ ସ୍ଥାନାନ୍ତରିତ ହେଲ | ୧୬,୮୨୮ | ଜାନୁ-୧ ପୂର୍ବବାକୀ ବାବଦ | ୧୦,୦୦୦ |
| | | ,, ଆଦାୟକରଣ ହିସାବ ବାବଦ | ୪୧୪ |
| | | ,, ବ୍ୟାଙ୍କ୍ ହିସାବ ବାବଦ | ୬,୪୧୪ |
| | ୧୬,୮୨୮ | | ୧୬,୮୨୮ |

ଡାସ୍ତି ଅଭିଜିତ୍ ଓ ନବମୀଙ୍କର ଯୁଗ୍ମ ହିସାବ ଡାଡା

| ୧୯୭୫ | | ଟଙ୍କା | ୧୯୭୫ | | ଟଙ୍କା |
|---|---|---|---|---|---|
| ଜାନୁ-୧ | ଅାଦାୟକରଣ ହିସାବ ବାବଦ | ୭୨,୮୫୦ | ଜାନୁ-୧ | ଅାଦାୟକରଣ ହିସାବ ବାବଦ | ୨୦,୭୮୦ |
| | | | | ,, ଅଭିଜିତଙ୍କର ମୂଳଧନ ହି : ବାବଦ | ୨୫,୨୮୨ |
| | | | | ,, ନବମୀଙ୍କର ମୂଳଧନ ହି : ବାବଦ | ୧୭,୮୨୮ |
| | | ୭୨,୮୫୦ | | | ୭୨,୮୫୦ |

ମନ୍ତବ୍ୟ : (୧) ବିବିଧ ଖାତକଙ୍କ ପରିମାଣ ନିମ୍ନରୂପେ ନିର୍ଣ୍ଣିତ ହୋଇଛି :

| | ଟଙ୍କା |
|---|---|
| ବିବିଧ ଖାତକ ପରିମାଣ | ୧୫,୦୦୦ |
| ବାଦ୍ : ଅନାଦାୟୀ ଋଣର ସଞ୍ଚିତ | ୨,୦୦୦ |
| ଉତ୍ତମ ଖାତକ ପରିମାଣ | ୧୩,୦୦୦ |
| ବାଦ୍ : ଶତକଡ଼ା ୫ ହାରରେ ବଟା | ୬୫୦ |
| | ୧୨,୩୫୦ |

(୨) ସୁରଜିତଙ୍କର ମୂଳଧନ ପରିଶୋଧ କରିବା ପାଇଁ ଅଭିଜିତ୍ ଓ ନବମୀଙ୍କ ନିମ୍ନ ହିସାବମତେ ଟଙ୍କା ଭରଣା କଲେ :

| | | ଟଙ୍କା |
|---|---|---|
| ସୁରଜିତଙ୍କୁ ଦେୟ ମୋଟ ମୂଳଧନ ପରିମାଣ | | ୨୬,୦୩୫ |
| ବିଯୁକ୍ତ : ବ୍ୟାଙ୍କରେ ଗଚ୍ଛିତ ତହବିଲ | (−) | ୫,୦୦୦ |
| | | ୧୭,୦୩୫ |

ଅଭିଜିତ ଆଣିଲେ ୧୭,୦୩୫ $\times \frac{୩}{୫}$ = ୯,୬୨୧

ନବମୀଙ୍କ ଆଣିଲେ ୧୭,୦୩୫ $\times \frac{୨}{୫}$ = ୬,୪୧୪ ୧୭,୦୩୫

## ଅଭିଜିତ୍ ଓ ନବନୀତଙ୍କ ହିସାବ ବହିରେ

| | ଜାବଦା | | ଦାୟୀ | ଦାତା |
|---|---|---|---|---|
| ୧୯୭୫ | | | ଟଙ୍କା | ଟଙ୍କା |
| ଜାନୁଆରି-୧ | ସୁନାମ | ଦାୟୀ | ୧୦,୦୦୦ | |
| | ଗୃହ | ଦାୟୀ | ୨୨,୫୦୦ | |
| | ସରଞ୍ଜାମ | ଦାୟୀ | ୩,୦୦୦ | |
| | ମହଜୁଦ ପଣ୍ୟ | ଦାୟୀ | ୧୫,୦୦୦ | |
| | ବିବିଧ ଖାତକ | ଦାୟୀ | ୧୫,୦୦୦ | |
| | ପ୍ରାପ୍ୟ ବଟାର ସଞ୍ଚିତ | ଦାୟୀ | ୨୨୦ | |
| | ବିବିଧ ମହାଜନ | | | ୧୧,୦୦୦ |
| | ସୁରଜିତଙ୍କର ଋଣ | | | ୧୦,୦୦୦ |
| | ଦେୟ ବଟାର ସଞ୍ଚିତ | | | ୭୫୦ |
| | ଅନାଦାୟୀ ଋଣରେ ସଞ୍ଚିତ | | | ୨,୦୦୦ |
| | ଅଭିଜିତଙ୍କର ମୂଳଧନ | | | ୨୫,୨୪୨ |
| | ନବନୀତଙ୍କର ମୂଳଧନ | | | ୧୬,୮୨୮ |
| | (ସୁରଜିତ, ଅଭିଜିତ୍ ଓ ନବନୀତଙ୍କ ବ୍ୟବସାୟର ସମ୍ପତ୍ତି ଓ ଦେଣା ଜମା କରାଗଲା) | | | |

### ଅଭିଜିତ୍ ଓ ନବନୀତ୍ଙ୍କର

### ୧୯୭୫ ମସିହା ଜାନୁଆରି ୧ ତାରିଖର ଉଦ୍ବର୍ତ୍ତ ପତ୍ର

| ଦାୟ | ଟଙ୍କା | ଟଙ୍କା | ସମ୍ପତ୍ତି | ଟଙ୍କା | ଟଙ୍କା |
|---|---|---|---|---|---|
| ମୂଳଧନ ହିସାବ : | | | ସ୍ଥାୟୀ ସମ୍ପତ୍ତି : | | |
| ଅଭିଜିତ୍ | ୨୫,୨୪୬ | | ସୁନାମ | | ୧୦,୦୦୦ |
| ନବନୀତ୍ | ୧୬,୮୨୮ | ୪୨,୦୭୦ | ଯନ୍ତ୍ର | | ୨୨,୫୦୦ |
| ସୁରଜିତ୍ଙ୍କର ଋଣ | | ୧୦,୦୦୦ | ସରଞ୍ଜାମ | | ୩,୦୦୦ |
| ବିବିଧ ମହାଜନ | ୧୧,୦୦୦ | | ଚଳନ୍ତି ସମ୍ପତ୍ତି : | | |
| ବାଦ୍ : ପ୍ରାପ୍ୟ | | | ମହଜୁଦ ପଣ୍ୟ | | ୧୫,୦୦୦ |
| ବଟାର ସଞ୍ଚିତ | ୨୨୦ | ୧୦,୬୮୦ | ବିବିଧ ଖାତକ | ୧୫,୦୦୦ | |
| | | | ବାଦ୍ : | | |
| | | | ଅନାଦାୟୀ | | |
| | | | ଋଣ ସଞ୍ଚିତ | ୧,୦୦୦ | |
| | | | | ୧୩,୦୦୦ | |
| | | | ବାଦ : | | |
| | | | ଦେୟ ବଟାର | | |
| | | | ସଞ୍ଚିତ | ୬୫୦ | ୧୨,୩୫୦ |
| | | ୬୨,୮୫୦ | | | ୬୨,୮୫୦ |

୪ । **କୌଣସି ଅଂଶୀଦାର ଦେବାଳିଆ ଘୋଷିତ ହେଲେ (Insolvency of a Partner)**—୧୯୦୩ ମସିହାରେ Garner vrs Murray ମକଦ୍ଦମାର ରାୟ ବାହାରିବା ପୂର୍ବରୁ ଯଦି କୌଣସି ଅଂଶୀଦାର ଦେବାଳିଆ ଘୋଷିତ ହେଉଥିଲେ ଏବଂ ଆଦାୟୀକରଣର କ୍ଷତି ତଥା ତାଙ୍କ ମୂଳଧନ ହିସାବର ଦାୟୀ ବାକି ବାବଦ ଅର୍ଥ ଆଣିବାକୁ ଅକ୍ଷମ ହେଉଥିଲେ, ତାହାହେଲେ ସ୍ବଚ୍ଛଳ ଅବସ୍ଥାରେ ଥିବା ଅନ୍ୟାନ୍ୟ ଅଂଶୀଦାରମାନେ ଦେବାଳିଆ ଘୋଷିତ ହୋଇଥିବା ଅଂଶୀଦାରଙ୍କର ମୂଳଧନ ହିସାବର ଦାୟୀ ବାକିକୁ ସେମାନଙ୍କର ଲାଭ କ୍ଷତି ବଣ୍ଟନ ଅନୁପାତରେ ବହନ କରୁଥିଲେ । ଅର୍ଥାତ୍ ଏହି ପ୍ରକାର କ୍ଷତି ଓ ଆଦାୟୀକରଣର କ୍ଷତି ମଧ୍ୟରେ କୌଣସି ପାର୍ଥକ୍ୟ ଦେଖାଯାଉନଥିଲା । କିନ୍ତୁ

ଉକ୍ତ ମକଦ୍ଦମାର ରାୟ ବାହାରିବା ପରେ ଏହି ନୀତିର ପରିବର୍ତ୍ତନ ହୋଇଛି । ସେ ଯାହା ହେଉ ସେ ବିଷୟ ପରେ ବିଚାର କରାଯିବ । ପୂର୍ବରୁ ଯାହା ଘଟୁଥିଲା ତାହାର ପ୍ରଣାଳୀ ନିମ୍ନ ଦୃଷ୍ଟାନ୍ତରେ ପ୍ରଦର୍ଶିତ ହେଲା ।

## ଦୃଷ୍ଟାନ୍ତ (୫)

କ, ଖ ଓ ଗ ଗୋଟିଏ ଅଂଶୀଦାରୀ ବ୍ୟବସାୟର ଅଂଶୀଦାର ଥାଇ ଲାଭ ଓ କ୍ଷତିକୁ ୩ : ୨ : ୧ ଅନୁପାତରେ ବଣ୍ଟନ କରୁଥିଲେ । ସେମାନେ ୧୯୭୫ ମସିହା ଜାନୁୟାରୀ ୧ ତାରିଖରେ ଅଂଶୀଦାରୀ ବ୍ୟବସାୟର ବିଲୋପ ସାଧନ କରିବାକୁ ସ୍ଥିର କଲେ । ତାଙ୍କର ସେହି ତାରିଖର ଉଦ୍‌ବୃତ୍ତ ପତ୍ର ନିମ୍ନରେ ପ୍ରଦତ୍ତ ହେଲା :

| ଦେୟ | | ଟଙ୍କା | ସମ୍ପତ୍ତି | ଟଙ୍କା |
|---|---|---|---|---|
| ବିବିଧ ମହାଜନ | | ୧୦,୦୦୦ | ଯନ୍ତ୍ର | ୮,୦୦୦ |
| | | | ଆସବାବ୍ | ୨,୮୦୦ |
| କ ଙ୍କର ଋଣ | | ୩,୦୦୦ | ମହଜୁଦ୍ ପଣ୍ୟ | ୧୫,୧୩୫ |
| ମୂଳଧନ ହିସାବ : | | | ବିବିଧ ଖାତକ | ୧୨,୫୦୦ |
| | ଟଙ୍କା | | | |
| କ | ୧୫,୦୦୦ | | | |
| ଖ | ୧୨,୦୦୦ | ୨୭,୦୦୦ | ଗ ଙ୍କର ମୂଳଧନ ହିସାବ | ୫୩୫ |
| | | | ବ୍ୟାଙ୍କ୍‌ରେ ଗଚ୍ଛିତ ତହବିଲ | ୧,୦୩୦ |
| | | ୪୦,୦୦୦ | | ୪୦,୦୦୦ |

ବ୍ୟାଙ୍କ୍‌ରେ ଗଚ୍ଛିତ ତହବିଲ ବ୍ୟତୀତ ଅନ୍ୟ ସମସ୍ତ ସମ୍ପତ୍ତି ବିକ୍ରୟ କରିବାରୁ ଟ ୨୯,୨୨୫ ଆଦାୟ ହୋଇଥିଲା ଓ ଆଦାୟକରଣ ସକାଶେ ଟ ୨୭୦ ଖର୍ଚ୍ଚ ହେଲା । ଏହି ସମୟରେ ଗ ଦେବାଳିଆ ଘୋଷିତ ହୋଇଥିଲେ ।

ଉପରୋକ୍ତ ନେଣ ଦେଣ ସକାଶେ ପ୍ରୟୋଜନୀୟ ଖତିୟାନ ହିସାବ ସମୂହ ପ୍ରସ୍ତୁତ କର ।

## ସମାଧାନ :

ଖତିୟାନ

**ଆଦାୟକରଣ ହିସାବ**

| ଦାୟୀ | | ଦାତା | |
|---|---|---|---|
| ୧୯୭୫ | ଟଙ୍କା | ୧୯୭୫ | ଟଙ୍କା |
| ଜାନୁ- ୧ ବିବିଧ ସମ୍ପତ୍ତି ହିସାବ ବାବଦ | ୩୮,୪୩୫ | ଜାନୁ-୧ ବ୍ୟାଙ୍କ ହିସାବ ବାବଦ (ସମ୍ପତ୍ତିଗୁଡ଼ିକର ବିକ୍ରୟ ଲବ୍ଧ ଅର୍ଥ) | ୨୯,୨୨୫ |
| ବ୍ୟାଙ୍କ ହିସାବ ବାବଦ (ଆଦାୟକରଣ ଖର୍ଚ୍ଚ) | ୨୭୦ | ମୂଳଧନ ହିସାବ ବାବଦ : (ଆଦାୟକରଣରେ କ୍ଷତି)<br>କ-୩/୬—ଟ୪,୭୪୦<br>ଖ ୨/୬ —ଟ୩,୧୬୦<br>ଗ-୧/୬---ଟ୧,୫୮୦ | ୯,୪୮୦ |
| | ୩୮,୭୦୫ | | ୩୮,୭୦୫ |

**ବ୍ୟାଙ୍କ ହିସାବ**

| ଦାୟୀ | | ଦାତା | |
|---|---|---|---|
| ୧୯୭୫ | ଟଙ୍କା | ୧୯୭୫ | ଟଙ୍କା |
| ଜାନୁ- ୧ ପୂର୍ବ ବାକି ବାବଦ | ୧,୦୩୦ | ଜାନୁ-୧ ଆଦାୟକରଣ ହିସାବ ବାବଦ (ଖର୍ଚ୍ଚ) | ୨୭୦ |
| ଆଦାୟକରଣ ହିସାବ ବାବଦ (ସମ୍ପତ୍ତିର ବିକ୍ରୟ ଲବ୍ଧ ଅର୍ଥ) | ୨୯,୨୨୫ | ବିବିଧ ମହାଜନ ହିସାବ ବାବଦ | ୧୦,୦୦୦ |
| | | କ ଙ୍କର ଋଣ ହିସାବ ବାବଦ | ୩,୦୦୦ |
| | | କ ଙ୍କର ମୂଳଧନ ହିସାବ ବାବଦ | ୮,୯୯୧ |
| | | ଖ ଙ୍କର ମୂଳଧନ ହିସାବ ବାବଦ | ୭,୯୯୪ |
| | ୩୦,୨୫୫ | | ୩୦,୨୫୫ |

### ଦାୟୀ — କ ଙ୍କର ମୂଳଧନ ହିସାବ — ଦାତା

| ୧୯୭୫ | | ଟଙ୍କା | ୧୯୭୫ | | ଟଙ୍କା |
|---|---|---|---|---|---|
| ଜାନୁ-୧ | ଆଦାୟକରଣ ହିସାବ ବାବଦ (ଷଡର ୩/୬ ଅଂଶ) | ୪,୭୪୦ | ଜାନୁ-୧ | ପୂର୍ବ ବାକୀ ବାବଦ | ୧୫,୦୦୦ |
| | ଗ ଙ୍କର ମୂଳଧନ ହିସାବ ବାବଦ (୩/୫ ଅଂଶ) | ୧,୨୬୯ | | | |
| | ବ୍ୟାଙ୍କ ହିସାବ ବାବଦ | ୮,୯୯୧ | | | |
| | | ୧୫,୦୦୦ | | | ୧୫,୦୦୦ |

### ଦାୟୀ — ଖ ଙ୍କର ମୂଳଧନ ହିସାବ — ଦାତା

| ୧୯୭୫ | | ଟଙ୍କା | ୧୯୭୫ | | ଟଙ୍କା |
|---|---|---|---|---|---|
| ଜାନୁ-୧ | ଆଦାୟକରଣ ହିସାବ ବାବଦ ଷଡର ୨/୬ ଅଂଶ | ୩,୧୬୦ | ଜାନୁ-୧ | ପୂର୍ବ ବାକୀ ବାବଦ | ୧୨,୦୦୦ |
| ,, | ଗ ଙ୍କର ମୂଳଧନ ହିସାବ ବାବଦ (୨/୫ ଅଂଶ) | ୮୪୬ | | | |
| ,, | ବ୍ୟାଙ୍କ ହିସାବ ବାବଦ | ୭,୯୯୪ | | | |
| | | ୧୨,୦୦୦ | | | ୧୨,୦୦୦ |

### ଦାୟୀ — ଗ ଙ୍କର ମୂଳଧନ ହିସାବ — ଦାତା

| ୧୯୭୫ | | ଟଙ୍କା | ୧୯୭୫ | | ଟଙ୍କା |
|---|---|---|---|---|---|
| ଜାନୁ ୧ | ପୂର୍ବ ବାକୀ ବାବଦ | ୫୩୫ | ଜାନୁ-୧ | କ ଙ୍କର ମୂଳଧନ ହିସାବ ବାବଦ (୩/୫ ଅଂଶ) | ୧,୨୬୯ |
| | ଆଦାୟକରଣ ହିସାବ ବାବଦ (ଷଡ ୧/୬ ଅଂଶ) | ୧,୫୮୦ | ,, | ଖ ଙ୍କର ମୂଳଧନ ହିସାବ ବାବଦ (୨/୫ ଅଂଶ) | ୮୪୬ |
| | | ୨,୧୧୫ | | | ୨,୧୧୫ |

ଦାସ୍ତୀ ଖ ଙ୍କ ର ଋଣ ହିସାବ ପାଉଣା — actually:

| ଦାସ୍ତୀ | | ଶ୍ରୀଯୁଧ ମହାଜନଙ୍କ ହିସାବ | ଦାଖା |
|---|---|---|---|
| ୧୯୭୫ | ଟଙ୍କା | ୧୯୭୫ | ଟଙ୍କା |
| ଜାନୁ-୧ ବ୍ୟାଙ୍କ୍ ହିସାବ ବାବଦ | ୧୦,୦୦୦ | ଜାନୁ-୧ ପୂର୍ବ ବାକ୍ସ ବାବଦ | ୧୦,୦୦୦ |

| ଦାସ୍ତୀ | | କ ଙ୍କର ଋଣ ହିସାବ | ଦାଖା |
|---|---|---|---|
| ୧୯୭୫ | ଟଙ୍କା | ୧୯୭୫ | ଟଙ୍କା |
| ଜାନୁ-୧ ବ୍ୟାଙ୍କ ହିସାବ ବାବଦ | ୩,୦୦୦ | ଜାନୁ-୧ ପୂର୍ବ ବାକ୍ସ ବାବଦ | ୩,୦୦୦ |

ମନ୍ତବ୍ୟ : ଗ ଙ୍କର ମୂଳଧନ ହିସାବରେ ଦାସ୍ତୀ ବାକ୍ସ ଟ୫୩୫ ଥିଲା । ଆଦାୟ-କରଣ ବାବଦ କ୍ଷତିର ୧/୬ ଅଂଶ, ଟ୧,୫୮୦ ସକାଶେ ତାଙ୍କ ମୂଳଧନ ହିସାବକୁ ଦାସ୍ତୀ କରାଗଲା । ମୂଳଧନ ହିସାବର ମୋଟ ଦାସ୍ତୀ ବାକ୍ସ ଟ୨,୧୧୫ କୁ ଗ ଘରୁ ଟଙ୍କା ଆଣି ଭରଣା କରିଥାଆନ୍ତେ, କିନ୍ତୁ ସେ ଦେବାଳିଆ ଘୋଷିତ ହୋଇଥିବାରୁ ତାଙ୍କ ମୂଳଧନ ହିସାବର ଏହି ନ୍ୟୂନତା (Deficiency)କୁ କ ଓ ଖ ତାଙ୍କର ଲଭ÷କ୍ଷତି ବଣ୍ଟନ ଅନୁପାତ ଅର୍ଥାତ୍ ୩ : ୨ ଅନୁପାତରେ ବହନ କଲେ ।

## Garner vrs Murray ମକଦ୍ଦମାର ସିଦ୍ଧାନ୍ତ

Garner, Murray ଓ Wilkinson ଇଂଲଣ୍ଡରେ ଅସମାନ ମୂଳଧନ ଆଣି ଗୋଟିଏ ଅଂଶୀଦାରୀ ବ୍ୟବସାୟ ଚଳାଇବାକୁ ଚୁକ୍ତିବଦ୍ଧ ହେଲେ । ସେମାନେ ସମାନ ଭାବରେ ଲଭ ଓ କ୍ଷତି ବଣ୍ଟନ କରୁଥିଲେ । ୧୯୦୩ ମସିହାରେ ସେମାନେ ଅଂଶୀଦାରୀ ବ୍ୟବସାୟର ବିଲୋପସାଧନ କରିବାକୁ ସ୍ଥିର କଲେ । ଏହି ସମୟରେ Wilkinson ଙ୍କ ମୂଳଧନ ହିସାବରେ ଦାସ୍ତୀ ବାକ୍ସ ଥିଲା ଓ ସେ ସେହି ସମୟରେ ଦେବାଳିଆ ଘୋଷିତ ହେଲେ । Wilkinson ଙ୍କ ମୂଳଧନ ହିସାବର ଦାସ୍ତୀ ବାକ୍ସ ବାବଦ ଟଙ୍କାଠାରୁ ଆଦାୟ ହୋଇ ନ ପାରିବାରୁ ତାହାକୁ Garner ଓ Murray ଙ୍କୁ ସେହି କ୍ଷତି ବହନ କରିବାକୁ ପଡ଼ିଲା । ଅଂଶୀଦାରୀ ଚୁକ୍ତିରେ ଏ ସମ୍ବନ୍ଧରେ କୌଣସି ନିର୍ଦ୍ଦେଶ ନ ଥିଲା । ଏହି କ୍ଷତି ସ୍ୱଚ୍ଛଳ ଅବସ୍ଥାରେ ଥିବା ଅଂଶୀଦାର ଦ୍ୱୟ କେଉଁ ଅନୁପାତରେ ବହନ କରିବେ ଏହି ବିଷୟରେ ବିରୋଧ ଘଟିବାରୁ Garner, Murrayଙ୍କ ବିରୁଦ୍ଧରେ ମକଦ୍ଦମା ରୁଜୁ କଲେ ।

ବିଚାରକ Loyce ଏହି ମକଦ୍ଦମାର ରାୟ ପ୍ରଦାନ କରିବା ସମୟରେ ମନ୍ତବ୍ୟ କରିଥିଲେ ଯେ ଏହି ଧରଣର କ୍ଷତିକୁ ବ୍ୟାବସାୟିକ କ୍ଷତି (Trading Loss) ବୋଲି ବିବେଚନା କରାଯିବ ନାହିଁ । ତାଙ୍କ ରାୟରେ ସେ ନିମ୍ନଲିଖିତ ବିଷୟଗୁଡ଼ିକ ବିଶେଷ ଭାବେ ଉଲ୍ଲେଖ କରିଥିଲେ ।

(କ) ପ୍ରଥମତଃ ଅଂଶୀଦାରମାନେ ଆଦାୟୀକରଣ ହିସାବର କ୍ଷତିକୁ ସେମାନଙ୍କର ଲାଭ-କ୍ଷତି ବଣ୍ଟନ ଅନୁପାତରେ ବଣ୍ଟନ କରିବେ ଓ ସ୍ୱଚ୍ଛଳ ଅଂଶୀଦାରମାନେ ସେହି କ୍ଷତି ବାବଦ ଟଙ୍କା ନଗଦ ଆକାରରେ ଆଣି ବ୍ୟବସାୟରେ ଜମା କରିବେ ।

(ଖ) ଦେବାଳିଆ ଅଂଶୀଦାରଙ୍କଠାରୁ ପ୍ରାପ୍ୟ ଅର୍ଥକୁ ସ୍ୱଚ୍ଛଳ ଅଂଶୀଦାରମାନେ ତାଙ୍କର ତତ୍କାଳୀନ ମୂଳଧନ ପରିମାଣ (ଆଦାୟୀକରଣ କ୍ଷତି ବାବଦ ଟଙ୍କା ଆଣିଲା ପରେ) ଅନୁପାତରେ ବହନ କରିବେ ।

ଗାର୍ଣ୍ଣର ବନାମ ମାରେ ମକଦ୍ଦମାର ରାୟ ଅନୁଯାୟୀ ବିଲୋପ ସାଧନର ଏକ ଦୃଷ୍ଟାନ୍ତ ନିମ୍ନରେ ପ୍ରଦତ୍ତ ହେଲା ।

### ଦୃଷ୍ଟାନ୍ତ (୬)

ଦୃଷ୍ଟାନ୍ତ (୫)ରେ ଦିଆଯାଇଥିବା ସମସ୍ୟାର ସମାଧାନ ଗାର୍ଣ୍ଣର ବନାମ ମାରେ ମକଦ୍ଦମାର ରାୟ ଅନୁଯାୟୀ କର ।

### ସମାଧାନ

ଦାୟୀ — ବ୍ୟାଙ୍କ ହିସାବ — ଦାତା

| ୧୯୭୫ | | | ଟଙ୍କା | ୧୯୭୫ | | | ଟଙ୍କା |
|---|---|---|---|---|---|---|---|
| ଜାନୁ-୧ | ପୂର୍ବ ବାକି ବାବଦ | | ୧,୦୩୦ | ଜାନୁ-୧ | ଆଦାୟୀକରଣ ହିସାବ ବାବଦ (ଆଦାୟୀ କରଣ ଖର୍ଚ୍ଚ | | ୨୬୦ |
| | ଆଦାୟୀକରଣ ହିସାବ ବାବଦ (ବିବିଧ ସମ୍ପତ୍ତିର ବିକ୍ରୟ ଲବ୍‌ଧ ଅର୍ଥ) | | ୨୯,୨୨୫ | ,, | ବିବିଧ ମହାଜନ ହିସାବ ବାବଦ | | ୧୦,୦୦୦ |
| | | | | ,, | କ ଙ୍କର ଋଣ ହିସାବ ବାବଦ | | ୩,୦୦୦ |
| ,, | ମୂଳଧନ ହିସାବ ବାବଦ | | | ,, | ମୂଳଧନ ହିସାବ ବାବଦ : | | |
| | କ | ଟ ୪,୭୪୦ | | | କ | ଟ ୧୩,୮୨୫ | |
| | ଖ | ଟ ୩,୧୬୦ | ୭,୯୦୦ | | ଖ | ଟ ୧୧,୦୬୦ | ୨୪,୮[illegible]୫ |
| | | | ୩୮,୧୫୫ | | | | ୩୮,୧୫୫ |

### ଦାସ୍ତୀ — କ ଙ୍କର ମୂଳଧନ ହିସାବ — ଦାତା

| ୧୯୭୫ | | ଟଙ୍କା | ୧୯୭୫ | | ଟଙ୍କା |
|---|---|---|---|---|---|
| ଜାନୁ-୧ | ଆଦାୟକରଣ ହିସାବ ବାବଦ | ୪,୬୪୦ | ଜାନୁ-୧ | ପୂର୍ବ ବାକି ବାବଦ | ୧୫,୦୦୦ |
| ,, | ଖ ଙ୍କର ମୂଳଧନ ହିସାବ ବାବଦ (କ୍ଷତିର ୫/୯ ଅଂଶ) | ୧,୧୭୫ | ,, | ବ୍ୟାଙ୍କ ହିସାବ ବାବଦ | ୪,୬୪୦ |
| | ବ୍ୟାଙ୍କ ହିସାବ ବାବଦ | ୧୩,୮୨୫ | | | |
| | | ୧୯,୬୪୦ | | | ୧୯,୬୪୦ |

### ଦାସ୍ତୀ — ଖ ଙ୍କର ମୂଳଧନ ହିସାବ — ଦାତା

| ୧୯୭୫ | | ଟଙ୍କା | ୧୯୭୫ | | ଟଙ୍କା |
|---|---|---|---|---|---|
| ଜାନୁ-୧ | ଆଦାୟକରଣ ହିସାବ ବାବଦ | ୩,୧୬୦ | ଜାନୁ-୧ | ପୂର୍ବ ବାକି ବାବଦ | ୧୨,୦୦୦ |
| ,, | ଗ ଙ୍କର ମୂଳଧନ ହିସାବ ବାବଦ (କ୍ଷତିର ୪/୯ ଅଂଶ) | ୯୪୦ | ,, | ବ୍ୟାଙ୍କ ହିସାବ ବାବଦ | ୩,୧୬୦ |
| ,, | ବ୍ୟାଙ୍କ ହିସାବ ବାବଦ | ୧୧,୦୬୦ | | | |
| | | ୧୫,୧୬୦ | | | ୧୫,୧୬୦ |

### ଦାସ୍ତୀ — ଗ ଙ୍କର ମୂଳଧନ ହିସାବ — ଦାତା

| ୧୯୭୫ | | ଟଙ୍କା | ୧୯୭୫ | | ଟଙ୍କା |
|---|---|---|---|---|---|
| ଜାନୁ-୧ | ପୂର୍ବ ବାକି ବାବଦ | ୫୩୫ | ଜାନୁ-୧ | କ ଙ୍କର ମୂଳଧନ ହିସାବ ବାବଦ (ଦାସ୍ତୀ ବାକିର ୫/୯ ଅଂଶ) | ୧,୧୭୫ |
| ,, | ଆଦାୟକରଣ ହିସାବ ବାବଦ | ୧,୫୮୦ | ,, | ଖ ଙ୍କର ମୂଳଧନ ହିସାବ ବାବଦ (ଦାସ୍ତୀ ବାକିର ୪/୯ ଅଂଶ) | ୯୪୦ |
| | | ୨,୧୧୫ | | | ୨,୧୧୫ |

ମନ୍ତବ୍ୟ : (୧) କ ଓ ଖ ଙ୍କର ମୂଳଧନର ପରିମାଣ ଯଥାକ୍ରମେ ଟ ୨୫,୦୦୦ ଓ ଟ ୧୨,୦୦୦ ଥିଲା ଅର୍ଥାତ୍ ତାଙ୍କର ମୂଳଧନର ଅନୁପାତ ୫ : ୪ । ତେଣୁ ସେମାନେ ଗ ଙ୍କ ମୂଳଧନର ଦାୟୀ ବାକୀ ବା କ୍ଷତିର କ ଓ ଖ ଯଥାକ୍ରମେ ୫/୯ ଓ ୪/୯ ଅଂଶ ବହନ କଲେ । (୨) ଅନ୍ୟାନ୍ୟ ଖତିୟାନ ହିସାବଗୁଡ଼ିକରେ କୌଣସି ପରିବର୍ତ୍ତନ ହେଉନଥିବାରୁ ସେଗୁଡ଼ିକ ଏଠାରେ ପ୍ରଦର୍ଶିତ ହୋଇନାହିଁ ।

## ଗାର୍ଣ୍ଣର ବନାମ ମାରେ ମକଦ୍ଦମାର ରାୟର ସମାଲୋଚନା

ମାନ୍ୟବର ବିଚାରପତି ଜଷ୍ଟିସ୍ ଉପରୋକ୍ତ ରାୟ ଦେବା ପରଠାରୁ ବ୍ରିଟେନ୍ ଓ ଅନ୍ୟାନ୍ୟ ଦେଶରେ ଏହି ରାୟ ବିରୁଦ୍ଧରେ ହିସାବ ଶାସ୍ତ୍ରଜ୍ଞମାନଙ୍କଦ୍ୱାରା ବହୁ ସମାଲୋଚନା କରାଯାଇଛି । ସେଗୁଡ଼ିକର ସାରମର୍ମ ନିମ୍ନରେ ପ୍ରଦତ୍ତ ହେଲା ।

(କ) ସ୍ୱଚ୍ଛଳ ଅଂଶୀଦାରମାନଙ୍କର ମୂଳଧନ ହିସାବରେ ଦାତା ବାକୀ ଥିବା ସତ୍ତ୍ୱେ ଆଦାୟକରଣ ହିସାବର ଦାୟୀ ବାକୀ ବାବଦ ତାଙ୍କର ଆନୁପାତିକ କ୍ଷତିକୁ ପୂରଣ କରିବା ପାଇଁ ତାଙ୍କୁ ଯେ କାହିଁକି ନଗଦ ତହବିଲ ଆଣିବାକୁ ପଡ଼ିବ ଏହାର କୌଣସି ଯୁକ୍ତି-ସଙ୍ଗତ କାରଣ ନାହିଁ । ଏହି କ୍ଷତି ପୂରଣ କରିବା ପୂର୍ବରୁ ସେମାନଙ୍କର ସ୍ୱ ସ୍ୱ ମୂଳଧନ ମଧ୍ୟରେ ଯେଉଁ ଅନୁପାତ ଥିଲା, ଏହି କ୍ଷତି ପୂରଣ ପରେ ମଧ୍ୟ ତାହା ଅପରିବର୍ତ୍ତିତ ରହିବ ।

(ଖ) ଏହି ରାୟ ଅନୁଯାୟୀ ଦେବାଳିଆ ଘୋଷିତ ହୋଇଥିବା ଅଂଶୀଦାରଙ୍କର ମୂଳଧନର ଦାୟୀ ବାକି ବାବଦ କ୍ଷତିକୁ ସ୍ୱଚ୍ଛଳ ଅଂଶୀଦାରମାନେ ତାଙ୍କର ନିଜ ନିଜ ତତ୍କାଳୀନ ମୂଳଧନ ଅନୁପାତରେ ବହନ କରିବେ । ଏହା ନିମ୍ନଲିଖିତ କାରଣଗୁଡ଼ିକ ଯୋଗୁଁ ନ୍ୟାଯ୍ୟ ମନେ ହୁଏ ନାହିଁ ।

(i) ସ୍ୱଚ୍ଛଳ ଅଂଶୀଦାରମାନେ ଅଂଶୀଦାରୀ ବ୍ୟବସାୟରେ ଯେଉଁ ମୂଳଧନ ବିନିଯୋଗ କରିଛନ୍ତି, ଏତଦ୍ୱାରା କେବଳ ସେହି ପରିମାଣକୁ ବିଚାରକୁ ନିଆଯାଇଛି, ତାଙ୍କର ସମସ୍ତ ଘରୋଇ ସମ୍ପତ୍ତିକୁ ବିଚାରକୁ ନିଆଯାଇନାହିଁ । ଉପରୋକ୍ତ କ୍ଷତିକୁ ବହନ କରିବା ପାଇଁ ଯଦି ସ୍ୱଚ୍ଛଳ ଅଂଶୀଦାରଙ୍କର ଆର୍ଥିକ ସାମର୍ଥ୍ୟ ମାନଦଣ୍ଡ ରୂପେ ବିବେଚିତ ହୁଏ, ତାହା ହେଲେ ତାଙ୍କର ସମସ୍ତ ଘରୋଇ ସମ୍ପତ୍ତିକୁ ବିଚାରକୁ ନିଆଯିବା ଉଚିତ । ନରୁବା ଜଣେ ଅଂଶୀଦାରଙ୍କର ମୋଟ ଘରୋଇ ସମ୍ପତ୍ତି ଅପେକ୍ଷାକୃତ ଊଣା ଥାଇ ସେ ଯଦି ଏହି ଅଂଶୀ-ଦାରୀ ବ୍ୟବସାୟରେ ଅପେକ୍ଷାକୃତ ଅଧିକ ପରିମାଣର ମୂଳଧନ ବିନିଯୋଗ କରିଥାଆନ୍ତି ଓ ଅପର ଅଂଶୀଦାର ଅପେକ୍ଷାକୃତ ଅଧିକ ଘରୋଇ ସମ୍ପତ୍ତିର ମାଲିକ ହୋଇ ଅଂଶୀଦାରୀ ବ୍ୟବସାୟରେ ଅପେକ୍ଷାକୃତ ଊଣା ମୂଳଧନ ବିନିଯୋଗ କରିଥାଆନ୍ତି, ତାହାହେଲେ ଶେଷୋକ୍ତ ଅଂଶୀଦାରଙ୍କର ଆର୍ଥିକ ସାମର୍ଥ୍ୟ ଅଧିକ ହୋଇଥିବା ସତ୍ତ୍ୱେ ସେ ପୂର୍ବୋକ୍ତ

'ଅଂଶୀଦାରଙ୍କ ଅନୁପାତରେ ଦେବାଳିଆ ଅଂଶୀଦାରଙ୍କ କ୍ଷତିର ଅପେକ୍ଷାକୃତ ନ୍ୟୂନ ଅଂଶ ବହନ କରିବେ ।

(ii) ବିଲୋପ ସାଧନର ଅବ୍ୟବହିତ ପୂର୍ବେ ଯଦି ଜଣେ ଅଂଶୀଦାର ତାଙ୍କ ମୂଳ-ଧନରୁ ବୈବାଡ଼୍ ଅଧିକ ପରିମାଣ ଅର୍ଥ ଉଠାଇନେଇଥାଆନ୍ତି, ତାହାହେଲେ ସେ ଦେବାଳିଆ ଅଂଶୀଦାରଙ୍କ କ୍ଷତିର ସ୍ୱଳ୍ପ ଅଂଶ ବହନ କରିବେ -- ଏହା ଅନ୍ୟାନ୍ୟ ସ୍ୱଚ୍ଛଳ ଅଂଶୀ ଦାରଙ୍କର ସ୍ୱାର୍ଥର ପରିପନ୍ଥୀ ।

(iii) ସେହିଭଳି ଯଦି ଜଣେ ଅଂଶୀଦାର ବ୍ୟବସାୟର ଆବଶ୍ୟକତା ଦୃଷ୍ଟିରୁ ବିଲୋପ ସାଧନର ଅବ୍ୟବହିତ ପୂର୍ବରୁ ଅଧିକା ମୂଳଧନ ବିନିଯୋଗ କରିଥାଆନ୍ତି, ତାହା ହେଲେ ସେ ବ୍ୟବସାୟର ଅଧିକ ହିତାକାଂକ୍ଷୀ ହେବା ସତ୍ତ୍ୱେ ତାଙ୍କୁ ଦେବାଳିଆ ଅଂଶୀଦାରଙ୍କର କ୍ଷତି ବାବଦ ଅପେକ୍ଷାକୃତ ଅଧିକ ଅଂଶ ବହନ କରିବାକୁ ହେବ, ଯାହା ଆଦୌ ସମୀଚୀନ ନୁହେଁ ।

(ଗ) ଅଂଶୀଦାରଙ୍କ ଦୃଷ୍ଟିରୁ ବ୍ୟାବସାୟିକ କ୍ଷତି ଯାହା ଦେବାଳିଆ ଅଂଶୀଦାରଙ୍କ କ୍ଷତି ପରିମାଣ ବହନ କରିବା ମଧ୍ୟ ଅନୁରୂପ । ତେଣୁ ଉଭୟ ଶ୍ରେଣୀର କ୍ଷତିକୁ ବିଭିନ୍ନ ଅନୁପାତରେ ବହନ କରିବାର କୌଣସି ବିଶେଷ ତାତ୍ପର୍ଯ୍ୟ ନାହିଁ ।

(ଘ) ଦେବାଳିଆ ଅଂଶୀଦାରଙ୍କ କ୍ଷତିକୁ ସ୍ୱଚ୍ଛଳ ଅଂଶୀଦାରମାନେ ମୂଳଧନ ଭିତ୍ତିରେ ବହନ କଲେ ସେମାନଙ୍କର ପାରସ୍ପରିକ ମୂଳଧନର ଅନୁପାତ ନିର୍ଣ୍ଣୟ କରିବା ସ୍ଥିର ମୂଳଧନ ପଦ୍ଧତିରେ ସହଜ ହେଲେହେଁ ପରିବର୍ତ୍ତୀ ମୂଳଧନ ପଦ୍ଧତିରେ ସମସ୍ତ ସମାଯୋଜନ ପରେ ସ୍ୱଚ୍ଛଳ ଅଂଶୀଦାରମାନଙ୍କର ମୂଳଧନର ଅନୁପାତ ନିର୍ଣ୍ଣୟ କରିବା ବହୁ ଶ୍ରମସାପେକ୍ଷ ହୋଇପାରେ ।

ଏହି ସମସ୍ତ କାରଣରୁ ହିସାବ ଶାସ୍ତ୍ରଜ୍ଞମାନେ ଗାର୍ଣ୍ଣର ବନାମ ମାରେ ମକଦ୍ଦମାର ସିଦ୍ଧାନ୍ତକୁ ନ୍ୟାୟସଙ୍ଗତ (equitable) ବୋଲି ମନେ କରନ୍ତି ନାହିଁ । ବ୍ୟାବହାରିକ କ୍ଷେତ୍ରରେ ମଧ୍ୟ ସ୍ୱଚ୍ଛଳ ଅଂଶୀଦାରମାନେ ଆଦାୟକରଣ କ୍ଷତିକୁ ନଗଦ ତହବିଲ ଜମା କରି କ୍ୱଚିତ୍ ପୂରଣ କରନ୍ତି ।

ବ୍ୟାବହାରିକ କ୍ଷେତ୍ରରେ ଏହି ସମସ୍ତ ଅସୁବିଧା ଦୂର କରିବା ଉଦ୍ଦେଶ୍ୟରେ ଅଂଶୀ-ଦାରୀ ଚୁକ୍ତିନାମାରେ ଏ ସମ୍ପର୍କରେ ଏକ ନିର୍ଦ୍ଦେଶ ସଂଯୁକ୍ତ କରନ୍ତି ଏବଂ ବିଲୋପ ସାଧନ ବେଳେ ସେହି ନିର୍ଦ୍ଦେଶାନୁଯାୟୀ ହିସାବ ପ୍ରସ୍ତୁତ କରନ୍ତି । ଯେଉଁ କ୍ଷେତ୍ରରେ ଏଭଳି ନିର୍ଦ୍ଦେଶ ନ ଥାଏ କେବଳ ସେହିଠାରେ ଗାର୍ଣ୍ଣର ବନାମ ମାରେ ମକଦ୍ଦମାର ସିଦ୍ଧାନ୍ତ ଆଇନତଃ ପ୍ରଯୁଜ୍ୟ ହୁଏ ।

ବର୍ତ୍ତମାନ ଏହି ସିଦ୍ଧାନ୍ତର ଏକ ସଂଶୋଧିତ ପଦ୍ଧତି ପ୍ରଚଳିତ ହୋଇଛି । ତଦନୁଯାୟୀ କିପରି ହିସାବ ଲେଖାଯାଏ ତାହାର ଏକ ଦୃଷ୍ଟାନ୍ତ ନିମ୍ନରେ ପ୍ରଦତ୍ତ ହେଲା ।

### ଦୃଷ୍ଟାନ୍ତ (୭)

ଦୃଷ୍ଟାନ୍ତ (୫) ରେ ବର୍ଣ୍ଣିତ ସମସ୍ୟାର ଗାର୍ଣ୍ଣର ବନାମ ମାରେ ସିଦ୍ଧାନ୍ତର ସଂଶୋଧିତ ପଦ୍ଧତି ଅନୁଯାୟୀ ସମାଧାନ କର । କେବଳ ପ୍ରୟୋଜନୀୟ ଖତିୟାନ ହିସାବଗୁଡ଼ିକ ପ୍ରସ୍ତୁତ କର ।

## ସମାଧାନ

ଦାୟୀ — ଆଦାୟକରଣ ହିସାବ — ଦାତା

| ୧୯୭୫ | | ଟଙ୍କା | ୧୯୭୫ | | ଟଙ୍କା |
|---|---|---|---|---|---|
| ଜାନୁ-୧ | ବିବିଧ ସମ୍ପତ୍ତି ବାବଦ | ୩୮,୪୩୫ | ଜାନୁ-୧ | ବ୍ୟାଙ୍କ ହିସାବ ବାବଦ (ସମ୍ପତ୍ତିଗୁଡ଼ିକର ବିକ୍ରୟଲବ୍ଧ ଅର୍ଥ) | ୨୯,୨୨୫ |
| ,, | ବ୍ୟାଙ୍କ ହିସାବ ବାବଦ (ଆଦାୟକରଣ ଖର୍ଚ୍ଚ) | ୨୭୦ | ,, | ମୂଳଧନ ହିସାବ ବାବଦ<br>କ—୩/୭—ଟ ୪,୭୪୦<br>ଖ—୨/୭—ଟ ୩,୧୬୦<br>ଗ—୧/୭—ଟ ୧,୫୮୦ | ୯,୪୮୦ |
| | | ୩୮,୭୦୫ | | | ୩୮,୭୦୫ |

ଦାୟୀ — ବ୍ୟାଙ୍କ ହିସାବ — ଦାତା

| ୧୯୭୫ | | ଟଙ୍କା | ୧୯୭୫ | | ଟଙ୍କା |
|---|---|---|---|---|---|
| ଜାନୁ-୧ | ପୂର୍ବ ବାକି ବାବଦ | ୧,୦୩୦ | ଜାନୁ-୧ | ଆଦାୟକରଣ ହି: ବାବଦ (ଖର୍ଚ୍ଚ) | ୨୭୦ |
| | ଆଦାୟକରଣ ହି: ବାବଦ (ସମ୍ପତ୍ତିର ବିକ୍ରୟଲବ୍ଧ ଅର୍ଥ) | ୨୯,୨୨୫ | ,, | ବିବିଧ ମହାଜନ ହି: ବାବଦ | ୧୦,୦୦୦ |
| | | | ,, | କ ଙ୍କର ଋଣ ହିସାବ ବାବଦ | ୩,୦୦୦ |
| | | | ,, | ମୂଳଧନ ହିସାବ ବାବଦ<br>କ ଟ ୯,୦୮୫<br>ଖ—ଟ ୭,୯୦୦ | ୧୬,୯୮୫ |
| | | ୩୦,୨୫୫ | | | ୩୦,୨୫୫ |

### ଦାୟୀ — କ ଙ୍କର ମୂଳଧନ ହିସାବ — ଦାତା

| ୧୯୭୫ | ଟଙ୍କା | ୧୯୭୫ | ଟଙ୍କା |
|---|---|---|---|
| ଜାନୁ-୧ ଅଦାୟକରଣ ହିସାବ ବାବଦ | ୪,୭୪୦ | ଜାନୁ-୧ ପୂର୍ବ ବାକି ବାବଦ | ୧୫,୦୦୦ |
| ଗ ଙ୍କର ମୂଳଧନ ହି: ବାବଦ (ଷଷ୍ଠର ⅚ ଅଂଶ) | ୧,୧୭୫ | | |
| ,, ବ୍ୟାଙ୍କ ହିସାବ ବାବଦ | ୯,୦୮୫ | | |
| | ୧୫,୦୦୦ | | ୧୫,୦୦୦ |

### ଦାୟୀ — ଖ ଙ୍କର ମୂଳଧନ ହିସାବ — ଦାତା

| ୧୯୭୫ | ଟଙ୍କା | ୧୯୭୫ | ଟଙ୍କା |
|---|---|---|---|
| ଜାନୁ-୧ ଅଦାୟକରଣ ହିସାବ ବାବଦ | ୩,୧୬୦ | ଜାନୁ-୧ ପୂର୍ବ ବାକି ବାବଦ | ୧୨,୦୦୦ |
| ଗ ଙ୍କର ମୂଳଧନ ହିସାବ ବାବଦ (⅙ ଅଂଶ) | ୯୪୦ | | |
| ବ୍ୟାଙ୍କ ହିସାବ ବାବଦ | ୭,୯୦୦ | | |
| | ୧୨,୦୦୦ | | ୧୨,୦୦୦ |

### ଦାୟୀ — ଗ ଙ୍କର ମୂଳଧନ ହିସାବ — ଦାତା

| ୧୯୭୫ | ଟଙ୍କା | ୧୯୭୫ | ଟଙ୍କା |
|---|---|---|---|
| ଜାନୁ-୧ ପୂର୍ବ ବାକି ବାବଦ | ୫୩୫ | ଜାନୁ-୧ କ ଙ୍କର ମୂଳଧନ ହି: ବାବଦ (ଦାୟୀ ବାକିର ⅚ ଅଂଶ) | ୧,୧୭୫ |
| ,, ଅଦାୟକରଣ ହିସାବ ବାବଦ | ୧,୫୮୦ | ଖ ଙ୍କର ମୂଳଧନ ହିସାବ ବାବଦ (ଦାୟୀ ବାକିର ⅙ ଅଂଶ) | ୯୪୦ |
| | ୨,୧୧୫ | | ୨,୧୧୫ |

ଏଠାରେ ଲକ୍ଷଣୀୟ ଯେ ସଚ୍ଛଳ ଅଂଶୀଦାରମାନେ ଅଦାୟକରଣ ହିସାବର ଦାୟୀ ବାକି ବାବଦ ଟଙ୍କା ନଗଦ ଅର୍ଥ ଆଣି ଭରଣା କରି ନାହାନ୍ତି । ତାହା କେବଳ ତାଙ୍କ ମୂଳଧନ ହିସାବର ଦାୟୀ ପାର୍ଶ୍ୱକୁ ନିଆଯାଇଛି । ସେମାନେ ଅଧିକା ଅର୍ଥ ନ ଆଣିଥିବା ହେତୁ ହିସାବ ଚୂକ୍ତି ସମୟରେ ସେମାନେ ପୂର୍ବ ଦୃଷ୍ଟାନ୍ତ ଅନୁପାତରେ ଅପେକ୍ଷାକୃତ ଊଣା ଟଙ୍କା ପାଇଛନ୍ତି । ଅର୍ଥାତ୍ କ ଟ ୧୩,୮୨୫ ପରିବର୍ତ୍ତେ ଟ ୯,୮୨୫ ଓ ଖ ଟ ୧୧,୦୭୦ ପରିବର୍ତ୍ତେ ଟ ୭,୯୦୦ ପାଇଛନ୍ତି ।

## ସ୍ଥିର ମୂଳଧନ ଓ ପରିବର୍ତ୍ତ ମୂଳଧନ-ପଦ୍ଧତିରେ ଗାର୍ଣ୍ଣାର ବନାମ ମାରେଇ ସିଦ୍ଧାନ୍ତ ପ୍ରୟୋଗ

ପୂର୍ବରୁ କୁହାଯାଇଛି ଯେ ଏହି ସିଦ୍ଧାନ୍ତ ଅନୁଯାୟୀ ସଚ୍ଛଳ ଅଂଶୀଦାରମାନଙ୍କୁ ଦେବାଳିଆ ଅଂଶୀଦାରଙ୍କର ମୂଳଧନ ହିସାବର ଦାୟୀ ବାକି ପରିମାଣକୁ ସେମାନଙ୍କର ତତ୍କାଳୀନ ମୂଳଧନ ଅନୁପାତରେ ବହନ କରିବାକୁ ପଡ଼ିବ । ଯେଉଁ ଅଂଶୀଦାରୀ ବ୍ୟବସାୟରେ ଅଂଶୀଦାରମାନଙ୍କର ମୂଳଧନ ସ୍ଥିର ଥାଏ ସେଠାରେ ପରସ୍ପର ମୂଳଧନ ପରିମାଣର ଅନୁପାତ କଷ୍ଟକର ହୁଏ ନାହିଁ । କାରଣ ସମସ୍ତ ସମାଯୋଜନ ଚଳନ୍ତି ହିସାବ ମାଧ୍ୟମରେ ସମ୍ପାଦିତ ହୁଏ । କିନ୍ତୁ ପରିବର୍ତ୍ତୀ ମୂଳଧନ ପଦ୍ଧତିରେ ସମାଯୋଜନଗୁଡ଼ିକ ମୂଳଧନ ମାଧ୍ୟମରେ ସମ୍ପାଦିତ ହେଉଥିବାରୁ ସିଦ୍ଧାନ୍ତ ଅନୁଯାୟୀ ଆବଶ୍ୟକ ଅନୁପାତ କେଉଁ ସମୟର ମୂଳଧନ ଭିତ୍ତିରେ ନିର୍ଣ୍ଣୀତ ହେବ ତାହା ଏହି ସିଦ୍ଧାନ୍ତରେ ସ୍ପଷ୍ଟୀକୃତ କରାଯାଇ ନାହିଁ । ତେଣୁ ଏହି ମୂଳଧନ ପଦ୍ଧତି ଅନୁସୃତ ହେଉଥିଲେ ପାରସ୍ପରିକ ଅନୁପାତ ନିର୍ଣ୍ଣୟ କରିବା କଷ୍ଟକର । ଏପରି କ୍ଷେତ୍ରରେ ନିମ୍ନଲିଖିତ ପ୍ରଣାଳୀ ସାଧାରଣତଃ ଅନୁସୃତ ହୋଇଥାଏ ।

ବିଲୋପସାଧନ ସମୟରେ ଯଦି କୌଣସି ସଞ୍ଚିତ ପାଣ୍ଠି ( fund ) ଥାଏ ଅଥବା ଲାଭ ଓ କ୍ଷତିର ଅବଣ୍ଟିତ ବାକି ଥାଏ, ତାହା ଦାତା ହେଉ ଅଥବା ଦାୟୀ ହେଉ, ସେଭଳି ବାକିକୁ ପ୍ରଥମେ ସବୁ ଅଂଶୀଦାରଙ୍କ ମଧ୍ୟରେ ସେମାନଙ୍କର ଲାଭ-କ୍ଷତି ବଣ୍ଟନ ଅନୁପାତରେ ବଣ୍ଟନ କରାଯିବ । ଏହି ସମାଯୋଜନ ପରେ ମୂଳଧନ ହିସାବରେ ଯେଉଁ ବାକି ରହେ ତାହାରି ଭିତ୍ତିରେ ପୂର୍ବୋକ୍ତ ଅନୁପାତ ସ୍ଥିର କରାଯାଏ । ଏହାର ଏକ ସରଳ ଦୃଷ୍ଟାନ୍ତ ନିମ୍ନରେ ପ୍ରଦତ୍ତ ହେଲା ।

ମନେକର କ, ଖ ଓ ଗ ଗୋଟିଏ ଅଂଶୀଦାରୀ କାରବାରରେ ଅଂଶୀଦାର ଥାଇ ଲାଭ ଓ କ୍ଷତିକୁ ସମାନ ଭାବରେ ବଣ୍ଟନ କରୁଥିଲେ । ବିଲୋପସାଧନ ସମୟରେ କ ଓ ଖ ଙ୍କର ମୂଳଧନ ଯଥାକ୍ରମେ ଟ ୨୦,୦୦୦, ଟ ୧୬,୦୦୦ ଓ ଗ ଙ୍କର ମୂଳଧନ ହିସାବର ଦାୟୀ ବାକି ଟ ୭,୨୦୦ ଥିଲା । ସେହି ସମୟରେ ସାଧାରଣ ସଞ୍ଚିତ ପାଣ୍ଠି ଥିଲା ଟ ୧୨,୦୦୦ ଥିଲା ।

ଏପରି କ୍ଷେତ୍ରରେ ଯଦି ବ୍ୟବସାୟରେ ସ୍ଥିର ମୂଳଧନ ପଦ୍ଧତି ଅନୁସୃତ ହେଉଥାଏ ତାହାହେଲେ କ ଓ ଖ ୨୦:୧୬ ବା ୫:୪ ଅନୁପାତରେ ଗ ଙ୍କର ମୂଳଧନର ଦାୟୀ ନାକା ବାବଦ କ୍ଷତି ବହନ କରିବେ । କିନ୍ତୁ ବ୍ୟବସାୟରେ ଯଦି ପରିବର୍ତ୍ତୀ ମୂଳଧନ ପଦ୍ଧତି ଅନୁସୃତ ହେଉଥାଏ, ତାହାହେଲେ—

କ ଓ ଖ ୨୪:୨୦ ବା ୬:୫ ଅନୁପାତରେ ଗ ଙ୍କର ମୂଳଧନର ଦାୟୀ ନାକା ବାବଦ କ୍ଷତି ବହନ କରିବେ ।

## ଭାରତରେ ଗାର୍ଣ୍ଣର ବନାମ ମାରେ ସିଦ୍ଧାନ୍ତର ପ୍ରୟୋଗ

ଅନେକେ ମନେ କରନ୍ତି ଯେ ଏହି ସିଦ୍ଧାନ୍ତ ଭାରତରେ ଅବସ୍ଥିତ ଅଂଶୀଦାରୀ ବ୍ୟବସାୟ ପ୍ରତି ପ୍ରଯୁଜ୍ୟ ନୁହେଁ । କିନ୍ତୁ ଏହା ଯଥାର୍ଥ ନୁହେଁ । ଭାରତୀୟ ଅଂଶୀଦାରୀ ଆଇନରେ ଏ ସମ୍ପର୍କରେ କୌଣସି ଉଲ୍ଲେଖ ନାହିଁ । ତେଣୁ ଏହା ଭାରତୀୟ ଅଂଶୀଦାରୀ ବ୍ୟବସାୟ ପ୍ରତି ମଧ୍ୟ ପ୍ରଯୁଜ୍ୟ ହେବ । ଯଦି କୌଣସି ମକଦ୍ଦମାରେ ଏହି ସିଦ୍ଧାନ୍ତ ବିରୁଦ୍ଧରେ ଏକ ନିଷ୍ପତ୍ତି ଗୃହୀତ ହୁଏ, କେବଳ ତାହାହେଲେ ଗାର୍ଣ୍ଣର ବନାମ ମାରେ ସିଦ୍ଧାନ୍ତ ପ୍ରଯୁଜ୍ୟ ହେବ ନାହିଁ । ନଚେତ୍ ଏହି ସିଦ୍ଧାନ୍ତ ବଳବତ୍ତର ରହିବ ।

### ଦୃଷ୍ଟାନ୍ତ (୮)

ରାମଲାଲ, ଶ୍ୟାମଲାଲ ଓ ହରିଲାଲ ଗୋଟିଏ ଅଂଶୀଦାରୀ ବ୍ୟବସାୟରେ ଅଂଶୀଦାର ଥାଇ ଲାଭ ଓ କ୍ଷତିକୁ ସମାନ ଅଂଶରେ ବଣ୍ଟନ କରୁଥିଲେ । ୧୯୬୫ ମସିହା ଡିସେମ୍ବର ୩୧ ତାରିଖରେ ସେମାନେ ଏହି ଅଂଶୀଦାରୀ ବ୍ୟବସାୟର ବିଲୋପସାଧନ ଘଟାଇବାକୁ ସ୍ଥିର କଲେ । ତାଙ୍କ ବ୍ୟବସାୟର ଉକ୍ତ ତାରିଖର ଉଦ୍‌ବୃତ୍ତ ପତ୍ର ନିମ୍ନରେ ପ୍ରଦତ୍ତ ହେଲା :

| ଦାୟ | ଟଙ୍କା | ସମ୍ପତ୍ତି | ଟଙ୍କା |
|---|---|---|---|
| ବିବିଧ ମହାଜନ | ୧୦,୦୦୦ | ନଗଦ ତହବିଲ | ୪,୫୦୦ |
| ସାଧାରଣ ସଞ୍ଚିତି | ୯,୦୦୦ | କାରଖାନା ଓ ଯନ୍ତ୍ର | ୧୫,୦୦୦ |
| ମୂଳଧନ ହିସାବ : | | ମହଜୁଦ୍ ପଣ୍ୟ | ୯,୫୦୦ |
| | | ବିବିଧ ଖାତକ | ୬,୦୦୦ |
| ରାମଲାଲ | ୧୨,୦୦୦ | ହରିଲାଲଙ୍କର ମୂଳଧନ | |
| ଶ୍ୟାମଲାଲ | ୯,୦୦୦ | ହିସାବ | ୫,୦୦୦ |
| | ୪୦,୦୦୦ | | ୪୦,୦୦୦ |

ହୀରାଲାଲ ଦେବାଳିଆ ହୋଇଥିଲେ ହେଁ ତାଙ୍କ ସମ୍ପତ୍ତିରୁ ୧,୦୦୦ ଟଙ୍କା ମିଳିଥିଲା । ସମ୍ପତ୍ତିଗୁଡ଼ିକ ବିକ୍ରୟ କରି ଓ ଖାତକଙ୍କଠାରୁ ନିମ୍ନଲିଖିତ ଅର୍ଥ ଆଦାୟ ହୋଇଥିଲା ।

କାରଖାନା ଓ ଯନ୍ତ୍ର ଟ ୧୨,୦୦୦, ମହଜୁଦ୍ ପଣ୍ୟ ଟ ୮,୦୦୦ ଓ ବିବିଧ ଖାତକ ଟ ୪,୫୦୦ । ବିଲୋପସାଧନ ସକାଶେ ଟ ୪୫୦ ଖର୍ଚ୍ଚ ହେଲା ।

ବ୍ୟବସାୟର ହିସାବ ନିକାଶ କରିବା ସକାଶେ ଖତିୟାନ ହିସାବଗୁଡ଼ିକ ପ୍ରସ୍ତୁତ କର ଯଦି (୧) ସ୍ଥିର ମୂଳଧନ ପଦ୍ଧତି ଅନୁସୃତ ହୁଏ ଓ (୨) ପରିବର୍ତ୍ତୀ ମୂଳଧନ ପଦ୍ଧତି ଅନୁସୃତ ହୁଏ ।

## ସମାଧାନ

### (କ) ସ୍ଥିର ମୂଳଧନ ପଦ୍ଧତି ଅନୁଯାୟୀ

ଦାୟୀ — ଆଦାୟକରଣ ହିସାବ — ଦାତା

| ୧୯୭୫ | | ଟଙ୍କା | ୧୯୭୫ | | ଟଙ୍କା |
|---|---|---|---|---|---|
| ଡିସେ-୩୧ ବିବିଧ ସମ୍ପତ୍ତି ବାବଦ : | ଟଙ୍କା | | ଡିସେ-୩୧ ନଗଦ ତହବିଲ ବାବଦ : | ଟଙ୍କା | |
| କାରଖାନା ଓ ଯନ୍ତ୍ର | ୧୫,୦୦୦ | | ବିବିଧ ଖାତକ | ୪,୫୦୦ | |
| ମହଜୁଦ୍ ପଣ୍ୟ | ୯,୫୦୦ | | ମହଜୁଦ୍ ପଣ୍ୟ | ୮,୦୦୦ | |
| ବିବିଧ ଖାତକ | ୬,୦୦୦ | ୩୦,୫୦୦ | କାରଖାନା ଓ ଯନ୍ତ୍ର | ୧୨,୦୦୦ | ୨୪,୫୦୦ |
| ନଗଦ ତହବିଲ ବାବଦ (ଖର୍ଚ୍ଚ) | | ୪୫୦ | ମୂଳଧନ ହିସାବ ବାବଦ : (ଆଦାୟକରଣ କ୍ଷତି) | | |
| | | | ରାମଲାଲ | ୨,୧୫୦ | |
| | | | ଶ୍ୟାମଲାଲ | ୨,୧୫୦ | |
| | | | ହୀରାଲାଲ | ୨,୧୫୦ | ୬,୪୫୦ |
| | | ୩୦,୯୫୦ | | | ୩୦,୯୫୦ |

**ଦାସ୍ତୀ — ରୋକଡ଼ ବହି — ଦାତା**

| ୧୯୭୫ | | ଟଙ୍କା | ୧୯୭୫ | | ଟଙ୍କା |
|---|---|---|---|---|---|
| ଡିସେ-୩୧ | ପୂର୍ବ ବାକି ବାବଦ | ୪,୫୦୦ | ଡିସେ-୩୧ | ଆଦାୟକରଣ ହିସାବ (ଖର୍ଚ୍ଚ) | ୪୫୦ |
| | ଆଦାୟକରଣ ହିସାବ ବାବଦ (ସମ୍ପତ୍ତି ଗୁଡ଼ିକର ବିକ୍ରୟଲବ୍ଧ ଅର୍ଥ) | ୨୪,୫୦୦ | | ବିବିଧ ମହାଜନ ହିସାବ | ୧୦,୦୦୦ |
| | ହରିଲାଲଙ୍କ ମୂଳଧନ ହି: ବାବଦ | ୧,୦୦୦ | | ରାମଲାଲଙ୍କ ମୂଳଧନ ହି: ବାବଦ | ୧୧,୦୫୦ |
| | | | | ଶ୍ୟାମଲାଲଙ୍କ ମୂଳଧନ ହି: ବାବଦ | ୮,୫୦୦ |
| | | ୩୦,୦୦୦ | | | ୩୦,୦୦୦ |

**ଦାସ୍ତୀ — ରାମଲାଲଙ୍କର ମୂଳଧନ ହିସାବ — ଦାତା**

| ୧୯୭୫ | | ଟଙ୍କା | ୧୯୭୫ | | ଟଙ୍କା |
|---|---|---|---|---|---|
| ଡିସେ-୩୧ | ଆଦାୟକରଣ ହିସାବ (କ୍ଷତି) | ୨,୧୫୦ | ଡିସେ-୩୧ | ପୂର୍ବ ବାକି ବାବଦ | ୧୨,୦୦୦ |
| | ହରିଲାଲଙ୍କ ମୂଳଧନ ହିସାବ ବାବଦ (ଟ ୩,୧୫୦ର ୧୨:୯ ଅନୁପାତରେ) | ୧,୮୦୦ | | ସାଧାରଣ ସଞ୍ଚିତ ହି: ବାବଦ | ୩,୦୦୦ |
| | ନଗଦ ତହବିଲ ବାବଦ | ୧୧,୦୫୦ | | | |
| | | ୧୫,୦୦୦ | | | ୧୫,୦୦୦ |

**ଦାସ୍ତୀ — ଶ୍ୟାମଲାଲଙ୍କ ମୂଳଧନ ହିସାବ — ଦାତା**

| ୧୯୭୫ | | ଟଙ୍କା | ୧୯୭୫ | | ଟଙ୍କା |
|---|---|---|---|---|---|
| ଡିସେ-୩୧ | ଆଦାୟକରଣ ହିସାବ ବାବଦ (କ୍ଷତି) | ୨,୧୫୦ | ଡିସେ-୩୧ | ପୂର୍ବ ବାକି ବାବଦ | ୯,୦୦୦ |
| | ହରିଲାଲଙ୍କ ମୂଳଧନ ହି: ବାବଦ (ଟ ୩,୧୫୦ର ୧୨:୯ ଅନୁପାତରେ) | ୧,୩୫୦ | | ସାଧାରଣ ସଞ୍ଚିତ ହି: ବାବଦ | ୩,୦୦୦ |
| | ନଗଦ ତହବିଲ ବାବଦ | ୮,୫୦୦ | | | |
| | | ୧୨,୦୦୦ | | | ୧୨,୦୦୦ |

ହୀରାଲାଲଙ୍କ ମୂଳଧନ ହିସାବ

| ଦାୟୀ | | | ଦାତା | | |
|---|---|---|---|---|---|
| ୧୯୭୫ | | ଟଙ୍କା | ୧୯୭୫ | | ଟଙ୍କା |
| ଡିସେ-୩୧ | ପୂର୍ବ ବାକି ବାବଦ | ୫,୦୦୦ | ଡିସେ-୩୧ | ନଗଦ ତହବିଲ ବାବଦ | ୧,୦୦୦ |
| | ଆଦାୟକରଣ ହିସାବ ବାବଦ (କ୍ଷତି) | ୨,୧୫୦ | | ସାଧାରଣ ସଞ୍ଚିତ ହିସାବ ବାବଦ | ୩,୦୦୦ |
| | | | | ରାମଲାଲଙ୍କ ମୂଳଧନ ହି: ବାବଦ | ୧,[illegible]୦୦ |
| | | | | ଶ୍ୟାମଲାଲଙ୍କ ମୂଳଧନ ହି: ବାବଦ | ୧,୩୫୦ |
| | | ୭,୧୫୦ | | | ୭,୧୫୦ |

## (ଖ) ପରିବର୍ତ୍ତୀ ମୂଳଧନ ପଦ୍ଧତି ଅନୁଯାୟୀ

ରୋକଡ଼ ବହି

| ଦାୟୀ | | | ଦାତା | | |
|---|---|---|---|---|---|
| ୧୯୭୫ | | ଟଙ୍କା | ୧୯୭୫ | | ଟଙ୍କା |
| ଡିସେ-୩୧ | ପୂର୍ବ ବାକି ବାବଦ | ୪,୫୦୦ | ଡିସେ-୩୧ | ଆଦାୟକରଣ ହିସାବ ବାବଦ (ଖର୍ଚ୍ଚ) | ୪୫୦ |
| | ଆଦାୟକରଣ ହିସାବ ବାବଦ (ସମ୍ପତ୍ତି ବିକ୍ରିକର ବଳସ୍ତ୍ରଲବ୍ଧ ଅର୍ଥ) | ୨୪,୫୦୦ | | ବିବିଧ ମହାଜନ ହିସାବ ବାବଦ | ୧୦,୦୦୦ |
| | ହୀରାଲାଲଙ୍କ ମୂଳଧନ ହି: ବାବଦ | ୧,୦୦୦ | | ରାମଲାଲଙ୍କ ମୂଳଧନ ହି: ବାବଦ | ୧୧,୧୦୦ |
| | | | | ଶ୍ୟାମଲାଲଙ୍କ ମୂଳଧନ ହି: ବାବଦ | ୮,୪୫୦ |
| | | ୩୦,୦୦୦ | | | ୩୦,୦୦୦ |

ରାମଲାଲଙ୍କ ମୂଳଧନ ହିସାବ ବାବଦ

| ଦାୟୀ | | | ଦାତା | | |
|---|---|---|---|---|---|
| ୧୯୭୫ | | ଟଙ୍କା | ୧୯୭୫ | | ଟଙ୍କା |
| ଡିସେ-୩୧ | ଆଦାୟକରଣ ହିସାବ ବାବଦ (କ୍ଷତି) | ୨,୧୫୦ | ଡିସେ-୩୧ | ପୂର୍ବ ବାକି ବାବଦ | ୧୨,୦୦୦ |
| | ହୀରାଲାଲଙ୍କ ମୂଳଧନ ହି: ବାବଦ (ଟ ୩,୧୫୦ର ୧୫:୧୨ ଅନୁପାତରେ) | ୧,୭୫୦ | | ସାଧାରଣ ସଞ୍ଚିତ ହିସାବ ବା: | ୩,୦୦୦ |
| | ନଗଦ ତହବିଲ ବାବଦ | ୧୧,୧୦୦ | | | |
| | | ୧୫,୦୦୦ | | | ୧୫,୦୦୦ |

| ଦାୟୀ | ଶ୍ୟାମଲାଲଙ୍କ ମୂଳଧନ ହିସାବ | | | | ଦାତା |
|---|---|---|---|---|---|
| ୧୯୭୫ | | ଟଙ୍କା | ୧୯୭୫ | | ଟଙ୍କା |
| ଡିସେ-୩୧ | ଅଦାୟୀକରଣ ହି : ବାବଦ | ୨,୧୫୦ | ଡିସେ-୩୧ | ପୂର୍ବ ବାକି ବାବଦ | ୯,୦୦୦ |
| | ହୀରାଲାଲଙ୍କ ମୂଳଧନ ହି : ବାବଦ (ଟ ୩,୧୫୦ ର ୧୫:୧୨ ଅନୁପାତରେ ) | ୧,୪୦୦ | | ସାଧାରଣ ସଞ୍ଚିତ ହି : ବାବଦ | ୩,୦୦୦ |
| | ନଗଦ ତହବିଲ ବାବଦ | ୮,୪୫୦ | | | |
| | | ୧୨,୦୦୦ | | | ୧୨,୦୦୦ |

| ଦାୟୀ | ହୀରାଲାଲଙ୍କ ମୂଳଧନ ହିସାବ | | | | ଦାତା |
|---|---|---|---|---|---|
| ୧୯୭୫ | | ଟଙ୍କା | ୧୯୭୫ | | ଟଙ୍କା |
| ଡିସେ-୩୧ | ପୂର୍ବ ବାକି ବାବଦ | ୫,୦୦୦ | ଡିସେ-୩୧ | ସାଧାରଣ ସଞ୍ଚିତ ହିସାବ ବାବଦ | ୩,୦୦୦ |
| | ଅଦାୟୀକରଣ ହି : ବାବଦ (କ୍ଷତି) | ୨,୧୫୦ | | ନଗଦ ତହବିଲ ବାବଦ | ୧,୦୦୦ |
| | | | | ରାମଲାଲଙ୍କ ମୂଳଧନ ହି : ବାବଦ | ୧,୭୫୦ |
| | | | | ଶ୍ୟାମଲାଲଙ୍କ ମୂଳଧନ ହିସାବ ବାବଦ : | ୧,୪୦୦ |
| | | ୭,୧୫୦ | | | ୭,୧୫୦ |

ମନ୍ତବ୍ୟ : (୧) ଅଦାୟୀକରଣ ହିସାବରେ କୌଣସି ପରିବର୍ତ୍ତନ ହେଉ ନ ଥିବାରୁ (ଖ) ରେ ଏହି ହିସାବ ପୁନର୍ବାର ପ୍ରସ୍ତୁତ କରାଯାଇ ନାହିଁ । (୨) ହୀରାଲାଲଙ୍କ ମୂଳଧନ ହିସାବର ନିଟ୍ ଦାୟୀ ବାକି ଉଭୟ କ୍ଷେତ୍ରରେ ଟ ୩,୧୫୦ ହୋଇଛି । (କ) ରେ ଅଂଶୀଦାରଙ୍କର ମୂଳଧନ ସ୍ଥିର ଥିବା ହେତୁ ସକ୍ଷମ ଅଂଶୀଦାରମାନେ ଏହି କ୍ଷତିକୁ ତାଙ୍କର ମୂଳ ମୂଳଧନ ପରିମାଣ ଅର୍ଥାତ୍ ଟ ୧୨,୦୦୦ ଓ ଟ ୯,୦୦୦ ବା ୧୨ : ୯ ଅନୁପାତରେ ବହନ କରିଛନ୍ତି । ମାତ୍ର (ଖ)ରେ ଅଂଶୀଦାରଙ୍କର ମୂଳଧନ ପରିମାଣ ପରିବର୍ତ୍ତୀ ହୋଇଥିବାରୁ ହୀରାଲାଲଙ୍କ ମୂଳଧନ ହିସାବର ଦାୟୀ ବାକି ବାବଦ କ୍ଷତିକୁ ବହନ କରିବା ପୂର୍ବରୁ ତାଙ୍କ ମୂଳଧନ ସହିତ ସାଧାରଣ ସଞ୍ଚିତ ହିସାବର ଆନୁପାତିକ ଦାତା ବାକି ଅର୍ଥାତ୍ ପ୍ରତି କ୍ଷେତ୍ରରେ ଟ ୩,୦୦୦ ବୃଦ୍ଧି ପାଇଛି ଓ ତେଣୁ ସେମାନେ ଉକ୍ତ କ୍ଷତିକୁ (୧୨,୦୦୦+୩,୦୦୦=) ଟ ୧୫,୦୦୦ ଓ (୯,୦୦୦+୩,୦୦୦=) ଟ ୧୨,୦୦୦, ଅର୍ଥାତ୍ ୧୫ : ୧୨ ଅନୁପାତରେ ବହନ କରିଛନ୍ତି ।

(୩) ଉଭୟ କ୍ଷେତ୍ରରେ ବିବିଧ ମହାଜନଙ୍କୁ ଦେୟ ପରିମାଣ ଓ ପ୍ରଦତ୍ତ ପରିମାଣ ମଧ୍ୟରେ କୌଣସି ପାର୍ଥକ୍ୟ ନ ଥିବା ହେତୁ ଏହି ହିସାବକୁ ଆଦାୟୀକରଣ ହିସାବକୁ ସ୍ଥାନାନ୍ତରିତ କରି ନ ଯାଇ ସିଧାସଳଖ ରେକର୍ଡ ବହିରେ ଅନ୍ତର୍ଭୁକ୍ତ କରାଯାଇଛି ।

(୪) ଉଭୟ (କ) ଓ (ଖ) ରେ ଗାର୍ଣ୍ଣର ବନାମ ମାରେ ମକଦ୍ଦମାର ସିଦ୍ଧାନ୍ତର ତାତ୍ପର୍ଯ୍ୟପୂର୍ଣ୍ଣ ନିୟମ ପାଳିତ ହୋଇଛି ସତ, ମାତ୍ର ସଚ୍ଛଳ ଅଂଶୀଦାରଙ୍କର ମୂଳଧନ ହିସାବରେ ଯଥେଷ୍ଟ ପରିମାଣରେ ଦାଖଲ ବାକି ବିଦ୍ୟମାନ ଥିବାରୁ ଆଦାୟୀକରଣ ହିସାବର କ୍ଷତି ସେମାନେ ଘରୁ ନଗଦ ତହବିଲ ଆଣି ଭରଣା କରି ନାହାନ୍ତି ।

## ଯେଉଁଠାରେ ଦୁଇ ଜଣ ଅଂଶୀଦାର ଦେବାଳିଆ ଘୋଷିତ ହୁଅନ୍ତି

ଯେଉଁଠାରେ ତିନି ଜଣ ଅଂଶୀଦାରଙ୍କ ମଧ୍ୟରୁ ଦୁଇ ଜଣ ଅଂଶୀଦାର ଦେବାଳିଆ ଘୋଷିତ ହୁଅନ୍ତି, ସେ କ୍ଷେତ୍ରରେ ଅବଶିଷ୍ଟ ସଚ୍ଛଳ ଅଂଶୀଦାରଙ୍କୁ ଦେବାଳିଆ ଘୋଷିତ ହୋଇଥିବା ଅନ୍ୟ ଦୁଇ ଜଣ ଅଂଶୀଦାରଙ୍କର ମୂଳଧନ ହିସାବର ଦାୟୀ ବାକି ବାବଦ କ୍ଷତିର ସମସ୍ତ ପରିମାଣ ବହନ କରିବାକୁ ପଡ଼େ । ଜଣେ ଅଂଶୀଦାର ଦେବାଳିଆ ଘୋଷିତ ହୋଇଥିଲେ ବିଲୋପସାଧନର ଯେଉଁ ପ୍ରଣାଳୀ ବର୍ଣ୍ଣିତ ହୋଇଛି ଏ କ୍ଷେତ୍ରରେ ମଧ୍ୟ ସେହି ପ୍ରଣାଳୀ ଅନୁସୃତ ହେବ; ମାତ୍ର ପାର୍ଥକ୍ୟ ଏତିକି ଯେ ଏଠାରେ ଦେବାଳିଆ ଅଂଶୀଦାରଙ୍କର ମୂଳଧନ ହିସାବଗତ ପୂର୍ଣ୍ଣ କ୍ଷତି ସଚ୍ଛଳ ଅଂଶୀଦାରଙ୍କୁ ବହନ କରିବାକୁ ପଡ଼ିବ । ଏହାର ଏକ ଦୃଷ୍ଟାନ୍ତ ନିମ୍ନରେ ପ୍ରଦତ୍ତ ହେଲା ।

### ଦୃଷ୍ଟାନ୍ତ (୯)

କ, ଖ ଓ ଗ ଗୋଟିଏ ଅଂଶୀଦାରୀ ବ୍ୟବସାୟର ଅଂଶୀଦାର ଥାଇ ଲାଭ ଓ କ୍ଷତିକୁ ଯଥାକ୍ରମେ ୩ : ୨ : ୧ ଅନୁପାତରେ ବଣ୍ଟନ କରୁଥିଲେ । ୧୯୭୫ ମସିହା ମାର୍ଚ୍ଚ ୧ ତାରିଖରେ ସେମାନେ ବ୍ୟବସାୟର ବିଲୋପସାଧନ କରିବାକୁ ସ୍ୱୀକୃତ ହେଲେ । ତାଙ୍କ ବ୍ୟବସାୟର ସେହି ତାରିଖର ଉଦ୍‌ବୃତ୍ତ ପତ୍ର ନିମ୍ନ ରୂପ ଥିଲା :

| ଦାୟ | | ଟଙ୍କା | ସମ୍ପତ୍ତି | | ଟଙ୍କା |
|---|---|---|---|---|---|
| ବ୍ୟାଙ୍କରୁ ଅଧିଉତ୍ତୋଳନ (କ ଙ୍କଦ୍ୱାରା ପ୍ରତ୍ୟାଭୂତ) | | ୪,୦୦୦ | ସ୍ଥିତିବାନ ଭୂ-ସମ୍ପତ୍ତି | | ୭,୦୦୦ |
| ବିବିଧ ମହାଜନ | | ୭,୦୦୦ | ଯନ୍ତ୍ର | | ୧୨,୦୦୦ |
| ମୂଳଧନ ହିସାବ : | ଟଙ୍କା | | ମହଜୁଦ୍ ପଣ୍ୟ | | ୩,୭୦୦ |
| କ | ୯,୨୦୦ | | ବିବିଧ ଖାତକ | | ୨,୫୦୦ |
| ଖ | ୬,୫୦୦ | | ଚଳନ୍ତି ହିସାବ : | ଟଙ୍କା | |
| ଗ | ୩,୫୦୦ | ୧୯,୦୦୦ | ଖ | ୪,୫୦୦ | |
| | | | ଗ | ୫,୪୦୦ | ୯,୯୦୦ |
| ଚଳନ୍ତି ହିସାବ : | | | | | |
| କ | | ୫,୦୦୦ | | | |
| | | ୩୪,୦୦୦ | | | ୩୪,୦୦୦ |

ସ୍ଥିତିବାନ ଭୂ-ସମ୍ପତ୍ତି ଟ ୪,୫୦୦ ମୂଲ୍ୟରେ, ଯନ୍ତ୍ର ଟ ୭,୬୦୦ ମୂଲ୍ୟରେ ଓ ମହଜୁଦ୍ ପଣ୍ୟ ଟ ୨,୩୦୦ ରେ ବିକ୍ରିତ ହେଲା ଓ ଖାତକମାନଙ୍କଠାରୁ ଟ ୨,୦୦୦ ଆଦାୟ ହୋଇଥିଲା । ଆଦାୟକରଣ ବାବଦ ଟ ୪୨୦ ଖର୍ଚ୍ଚ ହେଲା । ଏହି ସମୟରେ ଖ ଓ ଗ ଦେବାଳିଆ ଘୋଷିତ ହୋଇଥିଲେ, ମାତ୍ର ଖ ଙ୍କର ପରେ୍ୱଇ ସମ୍ପତ୍ତିରୁ ଟଙ୍କା ପ୍ରତି ୫୦ ପଇସା ଓ ଗ ଙ୍କ ସମ୍ପତ୍ତିରୁ ଟଙ୍କା ପ୍ରତି ୨୦ ପଇସା ଆଦାୟ ହୋଇଥିଲା । କ ବ୍ୟାଙ୍କରୁ ଅଣାଯାଇଥିବା ଅଧିଉଠାଣ ପରିଶୋଧ କରିବା ଦାୟିତ୍ୱ ନେଇଥିଲେ ।

ବ୍ୟବସାୟର ହିସାବ ନିକାଶ କରି ଆବଶ୍ୟକ ଖତିୟାନ ହିସାବ ଦର୍ଶାଅ ।

## ସମାଧାନ

ଖତିୟାନ ହିସାବ

ଦାୟୀ — ଆଦାୟକରଣ ହିସାବ — ଦାତା

| ୧୯୭୫ | | | ଟଙ୍କା | ୧୯୭୫ | | | ଟଙ୍କା |
|---|---|---|---|---|---|---|---|
| ମାର୍ଚ୍ଚ-୧ | ବିବିଧ ସମ୍ପତ୍ତି ବାବଦ : | | | ମାର୍ଚ୍ଚ-୧ | ବିବିଧ ମହାଜନ ହି ବାବଦ | | ୬,୦୦୦ |
| | ସ୍ଥିତିବାନ | | | | ବ୍ୟାଙ୍କରୁ ଅଧିଉଠାଣ | | ୪,୦୦୦ |
| | ଭୂ-ସମ୍ପତ୍ତି | ୭,୦୦୦ | | | ନଗଦ ତହବିଲ ବାବଦ : | | |
| | ଯନ୍ତ୍ର | ୧୧,୦୦୦ | | | (ବିକ୍ରୟଲବ୍ଧ ଅର୍ଥ) | | |
| | ମହଜୁଦ୍ ପଣ୍ୟ | ୩,୬୦୦ | | | ସ୍ଥିତିବାନ | | |
| | ବିବିଧ ଖାତକ | ୨,୫୦୦ | ୨୪,୨୦୦ | | ଭୂ-ସମ୍ପତ୍ତି | ୪,୫୦୦ | |
| | କ ଙ୍କର ମୂଳଧନ ହିସାବ ବାବଦ | | | | ଯନ୍ତ୍ର | ୭,୬୦୦ | |
| | (ବ୍ୟାଙ୍କ୍ ଅଧିଉଠାଣ) | | ୪,୦୦୦ | | ମହଜୁଦ୍ ପଣ୍ୟ | ୨,୩୦୦ | |
| | ନଗଦ ତହବିଲ ବାବଦ | | | | ବିବିଧ ଖାତକ | ୨,୦୦୦ | ୧୬,୪୦୦ |
| | (ବିବିଧ ମହାଜନ) | | ୬,୦୦୦ | | ମୂଳଧନ ହିସାବ ବାବଦ : | | |
| | ନଗଦ ତହବିଲ ବାବଦ | | | | (ଆଦାୟକରଣ କ୍ଷତି) | | |
| | (ଖର୍ଚ୍ଚ) | | ୪୨୦ | | କ | ୪,୧୧୦ | |
| | | | | | ଖ | ୨,୭୪୦ | |
| | | | | | ଗ | ୧,୩୭୦ | ୮,୨୨୦ |
| | | | ୩୪,୬୨୦ | | | | ୩୪,୬୨୦ |

| ଦାସ୍ତୀ | | ରେକଡ଼ ବନ୍ଧ | ଦାତା |
|---|---|---|---|
| ୧୯୭୫ | ଟଙ୍କା | ୧୯୭୫ | ଟଙ୍କା |
| ମାର୍ଚ୍ଚ-୧ ଆଦାୟକରଣ ହିସାବ ବାବଦ (ସମ୍ପତ୍ତିର ବଢ଼ିଯିବାଲବ୍ଧ ଅର୍ଥ) | ୧୬,୪୦୦ | ମାର୍ଚ୍ଚ-୧ ଆଦାୟକରଣ ହିସାବ ବାବଦ (ଖର୍ଚ୍ଚ) | ୪୦୦ |
| ଖ ଙ୍କର ମୂଳଧନ ହି : ବାବଦ (ଟଙ୍କା ପ୍ରତି ୫୦ ପ.ହାରରେ) | ୩୭୦ | ଆଦାୟକରଣ ହିସାବ ବାବଦ (ବିବିଧ ମହାଜନ) | ୬,୦୦୦ |
| ଗ ଙ୍କର ମୂଳଧନ ହି : ବାବଦ (ଟଙ୍କା ପ୍ରତି ୨୦ ପ. ହାରରେ) | ୬୩୪ | କ ଙ୍କର ମୂଳଧନ ହି : ବାବଦ (ଅନ୍ତିମ ସଂଶୋଧନ) | ୧୦,୯୮୪ |
| | ୧୭,୪୦୪ | | ୧୭,୪୦୪ |

| ଦାସ୍ତୀ | | କ ଙ୍କର ମୂଳଧନ ହିସାବ | ଦାତା |
|---|---|---|---|
| ୧୯୭୫ | ଟଙ୍କା | ୧୯୭୫ | ଟଙ୍କା |
| ମାର୍ଚ୍ଚ-୧ ଆଦାୟକରଣ ହିସାବ ବାବଦ (ଷଷ୍ଠର ୨/୩ ଅଂଶ) | ୪,୧୧୦ | ମାର୍ଚ୍ଚ-୧ ପୂର୍ବ ବାଜ୍ଞ ବାବଦ | ୯,୦୦୦ |
| ଖ ଙ୍କର ମୂଳଧନ ହି : ବାବଦ | ୩୭୦ | ଚଳନ୍ତି ହିସାବର ସ୍ଥାନାନ୍ତରଣ ବାବଦ | ୫,୦୦୦ |
| ଗ ଙ୍କର ମୂଳଧନ ହି : ବାବଦ | ୨,୫୩୬ | ଆଦାୟକରଣ ହିସାବ ବାବଦ (ବ୍ୟାଙ୍କ୍ ଅଧିଉଠାଣ) | ୪,୦୦୦ |
| ନଗଦ ତହବିଲ ବାବଦ | ୧୦,୯୮୪ | | |
| | ୧୮,୦୦୦ | | ୧୮,୦୦୦ |

ଦାୟୀ — ଖ ଙ୍କର ମୂଳଧନ ହିସାବ — ଦାତା

| ୧୯୭୫ | ଟଙ୍କା | ୧୯୭୫ | ଟଙ୍କା |
|---|---|---|---|
| ମାର୍ଚ୍ଚ-୧ ଚଳନ୍ତି ହିସାବର ସ୍ଥାନାନ୍ତରଣ ବାବଦ | ୪,୫୦୦ | ମାର୍ଚ୍ଚ-୧ ପୂର୍ବ ବାକି ବାବଦ | ୬,୫୦୦ |
| ଆଦାୟକରଣ ହିସାବ ବାବଦ | ୨,୬୪୦ | ନଗଦ ଉହବିଲ ବାବଦ ( ନିଟ୍ କ୍ଷତି ଟ. ୬୪୦ର ଟଙ୍କା ପ୍ରତି ୫୦ ପ. ହାରରେ ) | ୩୨୦ |
| | | କ ଙ୍କର ମୂଳଧନ ହିସାବ ବାବଦ | ୩୨୦ |
| | ୭,୧୪୦ | | ୭,୧୪୦ |

ଦାୟୀ — ଗ ଙ୍କର ମୂଳଧନ ହିସାବ — ଦାତା

| ୧୯୭୫ | ଟଙ୍କା | ୧୯୭୫ | ଟଙ୍କା |
|---|---|---|---|
| ମାର୍ଚ୍ଚ-୧ ଚଳନ୍ତି ହିସାବର ସ୍ଥାନାନ୍ତରଣ ବାବଦ | ୫,୩୦୦ | ମାର୍ଚ୍ଚ-୧ ପୂର୍ବ ବାକି ବାବଦ | ୩,୫୫୦ |
| ଆଦାୟକରଣ ହିସାବ ବାବଦ ( କ୍ଷତିର ½ ଅଂଶ ) | ୧,୩୭୦ | ନଗଦ ଉହବିଲ ବାବଦ (ନିଟ୍ କ୍ଷତି ଟ ୩,୧୬୦ର ଟଙ୍କା ପ୍ରତି ୨୦ ପ. ହାରରେ ) | |
| | | କ ଙ୍କର ମୂଳଧନ ହି: ବାବଦ | ୨,୫୩୬ |
| | ୬,୬୭୦ | | ୬,୬୭୦ |

## ଯେଉଁଠାରେ ସବୁ ଅଂଶୀଦାର ଦେବାଳିଆ ଘୋଷିତ ହୁଅନ୍ତି

ଗୋଟିଏ ଅଂଶୀଦାରୀ ବ୍ୟବସାୟର ଯଦି ସବୁ ଅଂଶୀଦାର ଦେବାଳିଆ ଘୋଷିତ ହୁଅନ୍ତି ତାହାହେଲେ ବ୍ୟବସାୟର ବିଲୋପସାଧନ କରାଯାଏ । ଏ କ୍ଷେତ୍ରରେ ବିବିଧ ମହାଜନମାନଙ୍କର ସମସ୍ତ ଦେଣା ପରିଶୋଧ ନ ହୋଇପାରେ । ସେ କ୍ଷେତ୍ରରେ ବିବିଧ ମହାଜନ ହିସାବର ବାକିକୁ ଆଦାୟକରଣ ହିସାବକୁ ସ୍ଥାନାନ୍ତରିତ ନ କରି ସେହି ହିସାବକୁ ଖୋଲି ରଖିବା ଉଚିତ । ଯେଉଁ ପରିମାଣର ଅର୍ଥ ମିଳିବ ତହିଁରୁ ବିଲୋପସାଧନ ବାବଦ ଖର୍ଚ୍ଚ ବାଦ୍ ଦିଆଯାଇ ଅବଶିଷ୍ଟ ଅର୍ଥ ମହାଜନମାନଙ୍କର ଦେଣା ପରିଶୋଧରେ ବିନିଯୋଜିତ ହେବ । ଯେଉଁ ପରିମାଣ ଦିଆଯାଇପାରିବ ନାହିଁ ତାହାକୁ 'ଅପରିଶୋଧିତ ପରିମାଣ'

ହିସାବ ନାମକ ଏକ ନୂତନ ହିସାବକୁ ସ୍ଥାନାନ୍ତରିତ ହେବ । ଅବଶେଷରେ ଏହି ହିସାବର ବାକୀ ଅଂଶୀଦାରମାନଙ୍କର ମୂଳଧନ ହିସାବକୁ ଲାଭ-କ୍ଷତି ବଣ୍ଟନ ଅନୁପାତରେ ସ୍ଥାନାନ୍ତରିତ ହେବ । ଏହି ହିସାବ ପରିବର୍ତ୍ତେ ଅନେକେ ଏକ ଲାଭ-କ୍ଷତି ହିସାବ ଖୋଲନ୍ତି । ଅବଶ୍ୟ ଉଭୟ ହିସାବର ଉଦ୍ଦେଶ୍ୟ ଓ କାର୍ଯ୍ୟ ଏକପ୍ରକାର । ଅନ୍ୟ କୌଣସି ଋଣ ହିସାବ ଯଦି ଉଦ୍‌ବୃତ୍ତ ପତ୍ରରେ ବିଦ୍ୟମାନ ଥାଏ, ତାହାହେଲେ ତାହାର ବ୍ୟବସ୍ଥା ମଧ୍ୟ ଅନୁରୂପ ହେବ । ଏଥି ପୂର୍ବରୁ ଆଦାୟୀକରଣ ହିସାବର କ୍ଷତି ଅନ୍ୟାନ୍ୟ ବିଲୋପସାଧନ କ୍ଷେତ୍ରରେ ଯେପରି ହୁଏ ,ସେହିପରି ଭାବରେ ଅଂଶୀଦାରମାନଙ୍କର ମୂଳଧନ ହିସାବକୁ ଲାଭ-କ୍ଷତି ବଣ୍ଟନ ଅନୁପାତରେ ସ୍ଥାନାନ୍ତରିତ ହୁଏ । ଏହାର ଏକ ଦୃଷ୍ଟାନ୍ତ ନିମ୍ନରେ ପ୍ରଦତ୍ତ ହେଲା ।

## ଦୃଷ୍ଟାନ୍ତ (୧୦)

କ ଓ ଖ ଗୋଟିଏ ଅଂଶୀଦାରୀ ବ୍ୟବସାୟର ଅଂଶୀଦାର । ସେମାନେ ଲାଭ ଓ କ୍ଷତିକୁ ୩ : ୨ ଅନୁପାତରେ ବଣ୍ଟନ କରୁଥିଲେ । ସେମାନେ ୧୯୭୫ ମସିହା ଜୁନ୍ ୧ ତାରିଖରେ ବ୍ୟବସାୟର ବିଲୋପସାଧନ କରିବାକୁ ସ୍ଥିର କଲେ ଯେହେତୁ ଉଭୟ ଦେବାଳିଆ ଘୋଷିତ ହୋଇଥିଲେ । ତାଙ୍କ ବ୍ୟବସାୟର ଉକ୍ତ ତାରିଖର ଉଦ୍‌ବୃତ୍ତ ପତ୍ର ନିମ୍ନରେ ପ୍ରଦତ୍ତ ହେଲା ।

| ଦାୟୀ | ଟଙ୍କା | ସମ୍ପତ୍ତି | ଟଙ୍କା |
|---|---|---|---|
| ବିବିଧ ମହାଜନ | ୩୩,୦୦୦ | ନଗଦ ତହବିଲ | ୧,୮୦୦ |
| ମୂଳଧନ ହିସାବ : | | ବିବିଧ ଖାତକ | ୧୫,୫୦୦ |
| କ | ୧୨,୦୦୦ | ମହଜୁଦ ପଣ୍ୟ | ୧୪,୨୦୦ |
| ଖ | ୮,୦୦୦ | ଆସବାବ୍‌ପତ୍ର | ୨,୫୦୦ |
| | | ସୁନାମ | ୧୫,୦୦୦ |
| | ୫୩,୦୦୦ | | ୫୩,୦୦୦ |

ନଗଦ ତହବିଲ ବାବଦ ଅନ୍ୟାନ୍ୟ ସମ୍ପତ୍ତିଗୁଡ଼ିକରୁ ଟ ୨୫,୯୨୦ ଅଦାୟ ହେଲା ଓ ଟ ୧,୩୨୦ ଟଙ୍କା ବିଲୋପସାଧନ ବ୍ୟୟ ରୂପେ ବ୍ୟୟିତ ହୋଇଥିଲା । ଉଭୟ ଅଂଶୀଦାରଙ୍କର ବ୍ୟକ୍ତିଗତ ଋଣ ତାଙ୍କ ବ୍ୟକ୍ତିଗତ ସମ୍ପତ୍ତି ଅପେକ୍ଷା ଅଧିକ ଥିବାରୁ ତାହିଁରୁ ବ୍ୟବସାୟର କ୍ଷତିପୂରଣ କରିବା ପାଇଁ କୌଣସି ଅର୍ଥ ମିଳି ନ ଥିଲା । ବ୍ୟବସାୟର ଖତିଯାନ ହିସାବଗୁଡ଼ିକ ପ୍ରସ୍ତୁତ କର ।

## ସମାଧାନ

### ଖତିୟାନ

ଦାୟୀ — ଆଦାୟୀକରଣ ହିସାବ — ଦାତା

| ୧୯୭୫ | | ଟଙ୍କା | ୧୯୭୫ | | ଟଙ୍କା |
|---|---|---|---|---|---|
| ଜୁନ୍-୧ | ବିବିଧ ସମ୍ପତ୍ତି ବାବଦ | ୫୧,୨୦୦ | ଜୁନ୍-୧ | ନଗଦ ତହବିଲ ବାବଦ (ସମ୍ପତ୍ତିର ବିକ୍ରୟଲବ୍ଧ ଅର୍ଥ) | ୨୫,୯୨୦ |
| | ନଗଦ ତହବିଲ ବାବଦ (ଖର୍ଚ୍ଚ) | ୧,୩୨୦ | | ମୂଳଧନ ହିସାବ ବାବଦ : (ଆଦାୟୀକରଣ କ୍ଷତି) | |
| | | | | କ—⅗ ଅଂଶ ୧୫,୯୬୦ | |
| | | | | ଖ—⅖ ଅଂଶ ୧୦,୬୪୦ | ୨୬,୬୦୦ |
| | | ୫୨,୫୨୦ | | | ୫୨,୫୨୦ |

ଦାୟୀ — ରେକଡ଼ ବନ୍ଧ — ଦାତା

| ୧୯୭୫ | | ଟଙ୍କା | ୧୯୭୫ | | ଟଙ୍କା |
|---|---|---|---|---|---|
| ଜୁନ୍-୧ | ମୂଳ ବାଙ୍କ ବାବଦ | ୧,୮୦୦ | ଜୁନ୍-୧ | ଆଦାୟୀକରଣ ହିସାବ ବାବଦ (ଖର୍ଚ୍ଚ) | ୧,୩୨୦ |
| | ଆଦାୟୀକରଣ ହିସାବ ବାବଦ (ସମ୍ପତ୍ତିର ବିକ୍ରୟଲବ୍ଧ ଅର୍ଥ) | ୨୫,୯୨୦ | | ବିବିଧ ମହାଜନ ହିସାବ ବାବଦ (ଟ ୩୩,୦୦୦ ଉପରେ ଟଙ୍କା ପ୍ରତି ୮୦ ପ. ହାରରେ) | ୨୬,୪୦୦ |
| | | ୨୭,୭୨୦ | | | ୨୭,୬୨୦ |

## ବିବିଧ ମହାଜନ ହିସାବ

| ଦାୟୀ | | | ଦାତା | | |
|---|---|---|---|---|---|
| ୧୯୭୫ | | ଟଙ୍କା | ୧୯୭୫ | | ଟଙ୍କା |
| ଜୁନ୍-୧ | ନଗଦ ତହବିଲ ବାବଦ (ଟ ୩୩,୦୦୦ ଟଙ୍କା ଉପରେ ଟଙ୍କା ପ୍ରତି ୮୦ ପଇସା ହାରରେ ) | ୨୬,୪୦୦ | ଜୁନ୍-୧ | ପୂର୍ବ ବାକୀ ବାବଦ | ୩୩,୦୦୦ |
| | ଅପରିଶୋଧିତ ପରିମାଣ ହି : ବାବଦ | ୬,୬୦୦ | | | |
| | | ୩୩,୦୦୦ | | | ୩୩,୦୦୦ |

## ଅପରିଶୋଧିତ ପରିମାଣ ହିସାବ

| ଦାୟୀ | | | ଦାତା | | |
|---|---|---|---|---|---|
| ୧୯୭୫ | | ଟଙ୍କା | ୧୯୭୫ | | ଟଙ୍କା |
| ଜୁନ୍-୧ | ମୂଳଧନ ହିସାବ ବାବଦ: | | ଜୁନ୍-୧ | ବିବିଧ ମହାଜନ ହିସାବ ବାବଦ | ୬,୬୦୦ |
| | କ—⅗ ଅଂଶ ଟ ୩,୯୬୦ | | | | |
| | ଖ—⅖ ଅଂଶ ଟ ୨,୬୪୦ | ୬,୬୦୦ | | | |
| | | ୬,୬୦୦ | | | ୬,୬୦୦ |

## କ ଙ୍କର ମୂଳଧନ ହିସାବ

| ଦାୟୀ | | | ଦାତା | | |
|---|---|---|---|---|---|
| ୧୯୭୫ | | ଟଙ୍କା | ୧୯୭୫ | | ଟଙ୍କା |
| ଜୁନ୍ ୧ | ଅଦାୟକରଣ ହିସାବ ବାବଦ | ୧୫,୯୬୦ | ଜୁନ୍-୧ | ପୂର୍ବ ବାକୀ ବାବଦ | ୧୨,୦୦୦ |
| | | | | ଅପରିଶୋଧିତ ପରିମାଣ ହି : ବାବଦ | ୩,୯୬୦ |

## ଖ ଙ୍କର ମୂଳଧନ ହିସାବ

| ଦାୟୀ | | | ଦାତା | | |
|---|---|---|---|---|---|
| ୧୯୭୫ | | ଟଙ୍କା | ୧୯୭୫ | | ଟଙ୍କା |
| ଜୁନ୍-୧ | ଅଦାୟକରଣ ହିସାବ ବାବଦ | ୧୦,୬୪୦ | ଜୁନ୍-୧ | ପୂର୍ବ ବାକୀ ବାବଦ | ୮,୦୦୦ |
| | | | | ଅପରିଶୋଧିତ ପରିମାଣ ହିସାବ ବାବଦ | ୨,୬୪୦ |
| | | ୧୦,୬୪୦ | | | ୧୦,୬୪୦ |

**୫ । ଅଂଶୀଦାରମାନଙ୍କଦ୍ୱାରା ସମ୍ପତ୍ତି ଓ ଦାୟଗ୍ରହଣ ମାଧ୍ୟମରେ କାରବାରର ବିଲୋପସାଧନ—**

କେତେକ ସମୟରେ ଅଂଶୀଦାରମାନେ ଅଂଶୀଦାରୀ କାରବାରର ବିଲୋପସାଧନ ଘଟାନ୍ତି ସତ, କିନ୍ତୁ ବ୍ୟବସାୟର ସମ୍ପତ୍ତିଗୁଡ଼ିକ ବାହାର ଲୋକଙ୍କୁ ବିକ୍ରୟ କରିବା ପରିବର୍ତ୍ତେ ନିଜ ମଧ୍ୟରେ ଭାଗ କରିନିଅନ୍ତି । ସେହିଭଳି ବ୍ୟବସାୟର ଦାୟଗୁଡ଼ିକ ମଧ୍ୟ ପରସ୍ପର ମଧ୍ୟରେ ବଣ୍ଟିତ ହୁଏ । ଏହିପରି ଭାବରେ ବ୍ୟବସାୟର ସମସ୍ତ ସମ୍ପତ୍ତି ଦାୟ ଅଂଶୀଦାରମାନଙ୍କର ମୂଳଧନ ହିସାବକୁ ସ୍ଥାନାନ୍ତରିତ ହୁଏ । ବିଲୋପସାଧନର ଯେଉଁ ପଦ୍ଧତି ଏ ପର୍ଯ୍ୟନ୍ତ ଆଲୋଚିତ ହେଲା ସେହି ଏକାବିଧ ପଦ୍ଧତି ଏହି ପ୍ରକାର ବିଲୋପସାଧନ ପ୍ରତି ପ୍ରଯୁଜ୍ୟ ହେବ । ଯେହେତୁ କୌଣସି ସମ୍ପତ୍ତି ପ୍ରକୃତ ପକ୍ଷେ ବାହାର ଲୋକଙ୍କୁ ବିକ୍ରିତ ହେଉ ନାହିଁ, ତେଣୁ ଏ କ୍ଷେତ୍ରରେ ଆଦାୟକରଣ ହିସାବ ପରିବର୍ତ୍ତେ ବିଲୋପସାଧନ ହିସାବ (Dissolution A/c) ଖୋଲାଯିବ । ଏହାର ଏକ ଦୃଷ୍ଟାନ୍ତ ନିମ୍ନରେ ପ୍ରଦତ୍ତ ହେଲା ।

ଦୃଷ୍ଟାନ୍ତ (୧୧)

ଶରତ୍ ଓ ରଜତ୍ ଗୋଟିଏ ଅଂଶୀଦାରୀ କାରବାରର ଅଂଶୀଦାର ଥାଇ ଲାଭ ଓ କ୍ଷତିକୁ ୨ : ୧ ଅନୁପାତରେ ବଣ୍ଟନ କରୁଥିଲେ । ସେମାନେ ୧୯୭୫ ମସିହା ଡିସେମ୍ବର ୩୧ ତାରିଖରେ ବ୍ୟବସାୟର ବିଲୋପସାଧନ କରିବାକୁ ସ୍ୱୀକୃତ ହେଲେ । ତାଙ୍କ ବ୍ୟବସାୟର ସେହି ତାରିଖର ଉଦ୍‌ବୃତ୍ତ ପତ୍ର ନିମ୍ନରେ ପ୍ରଦତ୍ତ ହେଲା ।

| ଦାୟ | | ଟଙ୍କା | ସମ୍ପତ୍ତି | ଟଙ୍କା |
|---|---|---|---|---|
| ବିବିଧ ମହାଜନ | | ୨,୪୦୦ | ଆସବାବ୍ | ୩,୪୦୦ |
| ମୂଳଧନ ହିସାବ : | | | ମହଜୁଦ୍ ପଣ୍ୟ | ୩,୪୫୦ |
| ଶରତ୍ | ଟ ୫,୦୦୦ | | ବିବିଧ ଖାତକ | ୨,୭୦୦ |
| ରଜତ୍ | ଟ ୩,୦୦୦ | ୮,୦୦୦ | ନଗଦ ତହବିଲ | ୮୫୦ |
| | | ୧୦,୪୦୦ | | ୧୦,୪୦୦ |

ସେମାନେ ସ୍ୱତନ୍ତ୍ର ଭାବରେ ବ୍ୟବସାୟ ଚଳାଇବା ଉଦ୍ଦେଶ୍ୟରେ ସମ୍ପତ୍ତିକୁ ନିମ୍ନମତେ ଭାଗ କରିନେଲେ :

ଶରତ୍ ଆସବାବ୍‌ର କିଛି ଅଂଶ ଯାହାର ବହି ମୂଲ୍ୟ ଟ ୧,୮୦୦ ତାହାକୁ ଟ ୧,୫୦୦ରେ, ମହଜୁଦ୍ ପଣ୍ୟ ଯାହାର ବହି ମୂଲ୍ୟ ଟ ୧,୪୫୦ ତାହାକୁ ଟ ୧,୩୫୦ ମୂଲ୍ୟରେ କ୍ରୟ କଲେ ଓ ଖାତକ ପରିମାଣରୁ ସେ ଟ୧,୫୦୦ କୁ ଟ ୧,୪୦୦ ରୂପେ ଗ୍ରହଣ କଲେ । ରଜତ୍ ଅବଶିଷ୍ଟ ଆସବାବ୍‌କୁ ଟ ୧,୪୦୦, ମହଜୁଦ୍ ପଣ୍ୟ ଟ ୧,୮୫୦ ଓ ଖାତକ ପରିମାଣକୁ ଟ ୧,୧୦୦ ମୂଲ୍ୟରେ ଗ୍ରହଣ କଲେ । ବିବିଧ ମହାଜନ ପରିମାଣକୁ ସେମାନେ ସେମାନଙ୍କର ମୂଳଧନ ଅନୁପାତରେ ବାଣ୍ଟିନେଲେ ।

ବଳେପସାଧନ ସକାଶେ ଟ ୪୦ ବ୍ୟୟିତ ହେଲା ।

ଆବଶ୍ୟକ ଖତିୟାନ ହିସାବ ପ୍ରସ୍ତୁତ କର ।

## ସମାଧାନ

ଖତିୟାନ

ଦାୟୀ — ବଳେପସାଧନ ହିସାବ — ଦାତା

| ୧୯୭୫ | | ଟଙ୍କା | ଟଙ୍କା | ୧୯୭୫ | | ଟଙ୍କା | ଟଙ୍କା |
|---|---|---|---|---|---|---|---|
| ଡିସେ-୩୧ | ବିବିଧ ସମ୍ପତ୍ତି ବାବଦ : | | | ଡିସେ-୩୧ | ଶରତଙ୍କର ମୂଳଧନ ହି : ବାବଦ : (ଗୃହୀତ ସମ୍ପତ୍ତି) | ଟଙ୍କା | |
| | ଆସବାବ୍ | ୩,୪୦୦ | | | ଆସବାବ୍ | ୧,୫୦୦ | |
| | ମହଜୁଦ୍ ପଣ୍ୟ | ୩,୪୫୦ | | | ମହଜୁଦ୍ ପଣ୍ୟ | ୧,୩୫୦ | |
| | ବିବିଧ ଖାତକ | ୨,୭୦୦ | ୯,୫୫୦ | | ବିବିଧ ଖାତକ | ୧,୪୦୦ | ୪,୨୫୦ |
| | ନଗଦ ତହବିଲ ବାବଦ | | ୪୦ | | ରଜତଙ୍କର ମୂଳଧନ ହି : ବାବଦ (ଗୃହୀତ ସମ୍ପତ୍ତି) : | | |
| | | | | | ଆସବାବ୍ | ୧,୪୦୦ | |
| | | | | | ମହଜୁଦ୍ ପଣ୍ୟ | ୧,୮୫୦ | |
| | | | | | ବିବିଧ ଖାତକ | ୧,୧୦୦ | ୪,୩୫୦ |
| | | | | | ବଳେପସାଧନ କ୍ଷତି ମୂଳଧନ ହିସାବକୁ ସ୍ଥାନାନ୍ତରିତ ହେଲା : | | |
| | | | | | ଶରତ୍ (୨/୩) | ୬୬୦ | |
| | | | | | ରଜତ୍ (୧/୩) | ୩୩୦ | ୯୯୦ |
| | | | ୯,୫୯୦ | | | | ୯,୫୯୦ |

ଦାୟୀ — ରୋକଡ଼ ବହି — ଦାତା

| ୧୯୭୫ | | ଟଙ୍କା | ୧୯୭୫ | | ଟଙ୍କା |
|---|---|---|---|---|---|
| ଡିସେ-୩୧ | ପୂର୍ବ ବାକୀ ବାବଦ | ୮୫୦ | ଡିସେ-୩୧ | ବଳେପସାଧନ ହି : ବାବଦ (ଖର୍ଚ୍ଚ) | ୪୦ |
| | ରଜତଙ୍କର ମୂଳଧନ ହି : ବାବଦ | ୭୮୦ | | ଶରତଙ୍କର ମୂଳଧନ ହି: ବାବଦ | ୧,୫୯୦ |
| | | ୧,୬୩୦ | | | ୧,୬୩୦ |

### ଦାୟୀ ବିବିଧ ମହାଜନ ହିସାବ ଦାତା

| ୧୯୭୫ | | ଟଙ୍କା | ୧୯୭୫ | | ଟଙ୍କା |
|---|---|---|---|---|---|
| ଡିସେ-୩୧ | ଶରତ୍‌ଙ୍କର ମୂଳଧନ ହି:ବାବଦ (୫/୮) ସ୍ଥାନାନ୍ତରଣ | ୧,୫୦୦ | ଡିସେ-୩୧ | ପୂର୍ବ ବାକି ବାବଦ | ୨,୪୦୦ |
| | ରଜତ୍‌ଙ୍କର ମୂଳଧନ ହି: ବାବଦ (୩/୮) ସ୍ଥାନାନ୍ତରଣ | ୯୦୦ | | | |
| | | ୨,୪୦୦ | | | ୨,୪୦୦ |

### ଦାୟୀ ଶରତ୍‌ଙ୍କର ମୂଳଧନ ହିସାବ ଦାତା

| ୧୯୭୫ | | ଟଙ୍କା | ୧୯୭୫ | | ଟଙ୍କା |
|---|---|---|---|---|---|
| ଡିସେ-୩୧ | ବିଲୋପସାଧନ ହିସାବ ବାବଦ (କ୍ଷତିର ୨/୩ ଅଂଶ) | ୬୬୦ | ଡିସେ-୩୧ | ପୂର୍ବ ବାକି ବାବଦ | ୫,୦୦୦ |
| | ବିଲୋପସାଧନ ହି: ବାବଦ (ଗୃହୀତ ସମ୍ପତ୍ତି) | ୪,୨୫୦ | | ବିବିଧ ମହାଜନ ହି: ବାବଦ | ୧,୫୦୦ |
| | ନଗଦ ତହବିଲ ବାବଦ | ୧,୫୯୦ | | | |
| | | ୬,୫୦୦ | | | ୬,୫୦୦ |

### ଦାୟୀ ରଜତ୍‌ଙ୍କର ମୂଳଧନ ହିସାବ ଦାତା

| ୧୯୭୫ | | ଟଙ୍କା | ୧୯୭୫ | | ଟଙ୍କା |
|---|---|---|---|---|---|
| ଡିସେ-୩୧ | ବିଲୋପସାଧନ ହି: ବାବଦ (ଗୃହୀତ ସମ୍ପତ୍ତି) | ୪,୩୫୦ | ଡିସେ-୩୧ | ପୂର୍ବ ବାକି ବାବଦ | ୩,୦୦୦ |
| | ବିଲୋପସାଧନ ହି: ବାବଦ (କ୍ଷତିର ୧/୩ ଅଂଶ) | ୩୩୦ | | ବିବିଧ ମହାଜନ ହି: ବାବଦ | ୯୦୦ |
| | | | | ନଗଦ ତହବିଲ ବାବଦ | ୭୮୦ |
| | | ୪,୬୮୦ | | | ୪,୬୮୦ |

ବିଶେଷ ଦ୍ରଷ୍ଟବ୍ୟ : ଏଠାରେ ଅନୁମାନ କରାଯାଇଛି ଯେ ରଜତ୍ ତାଙ୍କ ମୂଳଧନ ହିସାବର ଦାୟୀ ବାକି ବାବଦ ପରିମାଣ (ଟ ୭୮୦) ନଗଦ ତହବିଲ ଆକାରରେ ଆଣି ବ୍ୟବସାୟରେ ଜମା କଲେ ।

## ୭ । ଗୋଟିଏ କମ୍ପାନୀକୁ ଅଂଶୀଦାରୀ ବ୍ୟବସାୟର ବିକ୍ରୟ—

କେତେକ ସମୟରେ ଗୋଟିଏ ଅଂଶୀଦାରୀ ବ୍ୟବସାୟକୁ ଗୋଟିଏ କମ୍ପାନୀରେ ପରିବର୍ତ୍ତିତ କରାଯାଏ ଅର୍ଥାତ୍ ଗୋଟିଏ ନୂତନ କମ୍ପାନୀ ଏହି ବ୍ୟବସାୟକୁ କ୍ରୟ କରେ ଅଥବା ବିଦ୍ୟମାନ ଥିବା ଗୋଟିଏ କମ୍ପାନୀ ଏହି ଅଂଶୀଦାରୀ ବ୍ୟବସାୟକୁ କ୍ରୟ କରିପାରେ । ଏପରି କ୍ଷେତ୍ରରେ ଅଂଶୀଦାରୀ ବ୍ୟବସାୟର ବିଲୋପସାଧନ କରାଯାଏ ଏବଂ ବିଲୋପସାଧନର ପୂର୍ବୋକ୍ତ ନିୟମଗୁଡ଼ିକ ଏଥିପ୍ରତି ପ୍ରଯୁଜ୍ୟ ହୁଏ । ଅଳ୍ପ କେତେକ ବିଶେଷତ୍ୱ ନିମ୍ନରେ ବ୍ୟକ୍ତ କରାଗଲା ।

(୧) ସାଧାରଣତଃ କମ୍ପାନୀ ଅଂଶୀଦାରୀ ବ୍ୟବସାୟର ନଗଦ ତହବିଲ ଅଥବା ବ୍ୟାଙ୍କ୍‌ରେ ଗଚ୍ଛିତ ତହବିଲକୁ ଅନ୍ୟାନ୍ୟ ସମ୍ପତ୍ତି ସହିତ କ୍ରୟ କରେ ନାହିଁ । ସେପରି ସ୍ଥଳେ ନଗଦ ଅଥବା ବ୍ୟାଙ୍କ୍‌ରେ ଗଚ୍ଛିତ ତହବିଲକୁ ଆଦାୟକରଣ ହିସାବକୁ ନିଆଯାଏ ନାହିଁ । ମାତ୍ର ଯଦି କମ୍ପାନୀ ଏହି ସମ୍ପତ୍ତିକୁ ମଧ୍ୟ କ୍ରୟ କରେ, ତାହାହେଲେ ନଗଦ ଓ ବ୍ୟାଙ୍କ୍‌ରେ ଗଚ୍ଛିତ ତହବିଲକୁ ଆଦାୟକରଣ ହିସାବକୁ ନିଆଯିବ ଓ ଏହା ଅନ୍ୟାନ୍ୟ ସମ୍ପତ୍ତି ସଦୃଶ ଦାୟୀ ପାର୍ଶ୍ୱରେ ଅନ୍ତର୍ଭୁକ୍ତ ହେବ ।

(୨) କମ୍ପାନୀ କ୍ରୟମୂଲ୍ୟକୁ ନଗଦ ତହବିଲ ଅଥବା ବ୍ୟାଙ୍କ୍ ଚେକ୍ ଅଥବା କମ୍ପାନୀ ଅଂଶ (Share) ଓ କମ୍ପାନୀ ଋଣ ପତ୍ର (Debenture) ଦ୍ୱାରା ପରିଶୋଧ କରେ । ଏହି ପରିମାଣ ସକାଶେ ଆଦାୟକରଣ ହିସାବକୁ ଦାତା କରାଯିବ ଓ ନଗଦ/ବ୍ୟାଙ୍କ୍/କମ୍ପାନୀ ଅଂଶ/କମ୍ପାନୀ ଋଣ ପତ୍ର ହିସାବକୁ ଦାୟୀ କରାଯାଏ । ଅଂଶ ବା ଋଣପତ୍ର ସକାଶେ କମ୍ପାନୀରେ ଅଂଶ ପତ୍ର/ଋଣ ପତ୍ର ହିସାବ ନାମକ ଏକ ନୂତନ ହିସାବ ଖୋଲାଯିବ । ଏହି ହିସାବ କମ୍ପାନୀ ଲିମିଟେଡ୍ ହିସାବ ବାବଦ ଦାୟୀ ହେବ ଏବଂ ଅଂଶ ପତ୍ର/ ଋଣ ପତ୍ର ଅଂଶୀଦାରମାନେ ପାଇଲା ପରେ ଏହି ହିସାବକୁ ଅଂଶୀଦାରମାନଙ୍କର ମୂଳଧନ ହିସାବ ବାବଦ ଦାତା କରାଯିବ ।

(୩) ଅଂଶ ପତ୍ର ଅଥବା ଋଣ ପତ୍ର ବଣ୍ଟନରେ ଭଗ୍ନାଂଶ ଦେଖାଦେଲେ ଆସନ୍ନ (Approximate) ପୂର୍ଣ୍ଣ ଅଙ୍କ ଅଂଶୀଦାରଙ୍କୁ ଦିଆଯିବ ଓ ଅବଶିଷ୍ଟ ଅଂଶ ନଗଦ ଆକାରରେ ଦିଆଯିବ ।

କେତେକ ହିସାବଶାସ୍ତ୍ରଜ୍ଞ ମତ ପୋଷଣ କରନ୍ତି ଯେ ଅଂଶୀଦାରମାନେ ଅଂଶୀଦାରୀ ବ୍ୟବସାୟରେ ଯେଉଁ ଅନୁପାତରେ ଲାଭ ଓ କ୍ଷତି ବଣ୍ଟନ କରୁଥିଲେ ତାଙ୍କୁ କମ୍ପାନୀର ଭବିଷ୍ୟତ୍ ଲାଭକୁ ସେହି ଅନୁପାତରେ ଭୋଗ କରିବା ପାଇଁ ସମର୍ଥ କରିବାକୁ କମ୍ପାନୀର ଅଂଶ

ପତ୍ର ସେହି ଅନୁପାତରେ ବଣ୍ଟିତ ହେବା ଉଚିତ । କିନ୍ତୁ ଭାରତୀୟ ଅଂଶୀଦାରୀ ଆଇନରେ ଏ ସମ୍ବନ୍ଧରେ କୌଣସି ଉଲ୍ଲେଖ ନ ଥିବା ହେତୁ ଅଂଶୀଦାରୀ ଚୁକ୍ତିନାମାରେ ଏଭଳି ସର୍ତ୍ତ ଅନ୍ତର୍ଭୁକ୍ତ ନ ଥିଲେ ଏହି ନିୟମ କାର୍ଯ୍ୟକାରୀ ହୁଏ ନାହିଁ । ତେବେ ଅଂଶୀଦାରଙ୍କର ମୂଳଧନ ପରିମାଣ ଅନୁପାତରେ ଅଂଶ ପତ୍ର ବଣ୍ଟିତ ହୋଇପାରେ । ଏହାର ଏକ ଦୃଷ୍ଟାନ୍ତ ନିମ୍ନରେ ପ୍ରଦତ୍ତ ହେଲା ।

## ଦୃଷ୍ଟାନ୍ତ (୧୬)

କ, ଖ ଓ ଗ ଗୋଟିଏ ଅଂଶୀଦାରୀ ବ୍ୟବସାୟର ଅଂଶୀଦାର ଥାଇ ଲଭ ଓ କ୍ଷତିକୁ ଯଥାକ୍ରମେ ୩ : ୨ : ୧ ହାରରେ ବଣ୍ଟନ କରୁଥିଲେ । ୧୯୭୫ ମସିହା ଡିସେମ୍ବର ୩୧ ତାରିଖରେ ସେମାନେ ତାଙ୍କ ବ୍ୟବସାୟକୁ ଓଡ଼ିଶା ଷ୍ଟୋର୍ସ ଲିମିଟେଡ୍‌କୁ ବିକ୍ରୟ କରିବାକୁ ସ୍ଥିର କଲେ । ତାଙ୍କ ବ୍ୟବସାୟର ସେହି ତାରିଖର ଉଦ୍‌ବୃତ୍ତି ପତ୍ର ନିମ୍ନରେ ପ୍ରଦତ୍ତ ହେଲା ।

ଉଦ୍‌ବୃତ୍ତ ପତ୍ର

| ଦାୟ | | ଟଙ୍କା | ସମ୍ପତ୍ତି | ଟଙ୍କା |
|---|---|---|---|---|
| ଋଣ ହିସାବ | | ୪,୦୦୦ | ନଗଦ ତହବିଲ | ୫,୦୦୦ |
| ବିବିଧ ମହାଜନ | | ୧୨,୦୦୦ | ମହଜୁଦ୍ ପଣ୍ୟ | ୧୬,୦୦୦ |
| ମୂଳଧନ ହିସାବ | | | | |
| କ—ଟ | ୨୫,୦୦୦ | | ବିବିଧ ଖାତକ | ୨୦,୦୦୦ |
| ଖ—ଟ | ୨୦,୦୦୦ | | ଯନ୍ତ୍ର | ୧୫,୦୦୦ |
| ଗ—ଟ | ୧୫,୦୦୦ | ୬୦,୦୦୦ | ଭୂମି ଓ ଭବନ | ୨୦,୦୦୦ |
| | | ୭୬,୦୦୦ | | ୭୬,୦୦୦ |

ଓଡ଼ିଶା ଷ୍ଟୋର୍ସ ଲିମିଟେଡ୍ ବିବିଧ ସମ୍ପତ୍ତିକୁ ନିମ୍ନଲିଖିତ ମୂଲ୍ୟରେ କ୍ରୟ କରିବାକୁ ସ୍ୱୀକୃତ ହେଲେ :

| | ଟଙ୍କା |
|---|---|
| ମହଜୁଦ୍ ପଣ୍ୟ— | ୧୪,୦୦୦ |
| ବିବିଧ ଖାତକ— | ୧୮,୦୦୦ |
| ଯନ୍ତ୍ର— | ୧୨,୦୦୦ |
| ଭୂମି ଓ ଭବନ— | ୨୫,୦୦୦ |
| ସୁନାମ— | ୧୧,୦୦୦ |

ଓଡ଼ିଶା ଷ୍ଟୋର୍ସ କମ୍ପାନୀ ବିବିଧ ମହାଜନଙ୍କୁ ଟ ୧୧,୭୦୦ ଦେଇ ତାଙ୍କ ହିସାବ ନିଷ୍ପତ୍ତି କରିବାକୁ ସ୍ୱୀକୃତ ହେଲେ ଓ ବିବିଧ ମହାଜନମାନେ ଏହି ପ୍ରସ୍ତାବ ଅନୁମୋଦନ କଲେ । ଆଦାୟୀକରଣରେ ଟ ୯୦୦ ଖର୍ଚ୍ଚ ହେଲା ।

କମ୍ପାନୀ କ୍ରୟମୂଲ୍ୟକୁ ପ୍ରତି ଅଂଶ ଟ ୧୦ ହାରରେ ୪,୭୮୮ ସାଧାରଣ ଅଂଶ ପତ୍ର ଦେଇ ଓ ଅବଶିଷ୍ଟ ପରିମାଣକୁ ନଗଦ ଅର୍ଥ ଆକାରରେ ପ୍ରଦାନ କରି ପରିଶୋଧ କଲା।

ଅଂଶୀଦାର ବ୍ୟବସାୟ ବହିରେ ଖତିୟାନ ହିସାବ ପ୍ରସ୍ତୁତ କର।

ଖତିୟାନ

## ସମାଧାନ

ଦାୟୀ — ଆଦାୟକରଣ ହିସାବ — ଦାତା

| ୧୯୭୫ | | ଟଙ୍କା | ୧୯୭୫ | | ଟଙ୍କା |
|---|---|---|---|---|---|
| ଡିସେ-୩୧ | ବିବିଧ ସମ୍ପତ୍ତି ହି : ବାବଦ (ନଗଦ ତହବିଲ ବ୍ୟତୀତ) | ୭୧,୦୦୦ | ଡିସେ-୩୧ | ଋଣ ହିସାବ ବାବଦ | ୪,୦୦୦ |
| | ନଗଦ ତହବିଲ ହି : ବାବଦ (ଖର୍ଚ୍ଚ) | ୯୦୦ | | ବିବିଧ ମହାଜନ ହି : ବାବଦ | ୧୨,୦୦୦ |
| | ନଗଦ ତହବିଲ ହିସାବ ବାବଦ (ଋଣ ପରିଶୋଧ) | ୪,୦୦୦ | | ଓଡ଼ିଶା ଲ୍ୟାମ୍ପସ୍ ଲି : ହି : ବାବଦ | |
| | ଲାଭ ସ୍ଥାନାନ୍ତରଣ ବାବଦ : | | | ଟଙ୍କା | |
| | ଟଙ୍କା | | | ମହଜୁଦ୍ ପଣ୍ୟ ୧୪,୦୦୦ | |
| | କ—୧/୨ ଅଂଶ ୪,୨୦୦ | | | ବିବିଧ ଖାତକ ୧୮,୦୦୦ | |
| | ଖ—୧/୩ ,, ୨,୮୦୦ | | | ଯନ୍ତ୍ର ୧୨,୦୦୦ | |
| | ଗ—୧/୬ ,, ୧,୪୦୦ | ୮,୪୦୦ | | ଭୂମି ଓ ଭବନ ୨୫,୦୦୦ | |
| | | | | ସୁନାମ ୧୧,୦୦୦ | |
| | | | | ୮୦,୦୦୦ | |
| | | | | ବାଦ୍ : ବିବିଧ ମହାଜନ ୧୧,୭୦୦ | ୬୮,୩୦୦ |
| | | ୮୪,୩୦୦ | | | ୮୪,୩୦୦ |

ଦାୟୀ — ଓଡ଼ିଶା ଲ୍ୟାମ୍ପସ୍ କମ୍ପାନୀ ଲିମିଟେଡ୍ — ଦାତା

| ୧୯୭୫ | | ଟଙ୍କା | ୧୯୭୫ | | ଟଙ୍କା |
|---|---|---|---|---|---|
| ଡିସେ-୩୧ | ଆଦାୟକରଣ ହିସାବ ବାବଦ | ୬୮,୩୦୦ | ଡିସେ ୩୧ | ଓଡ଼ିଶା ଲ୍ୟାମ୍ପସ୍ କମ୍ପାନୀର ଅଂଶ ପତ୍ର ବାବଦ | ୪୭,୮୮୦ |
| | | | | ନଗଦ ତହବିଲ ବାବଦ | ୨୦,୪୨୦ |
| | | ୬୮,୩୦୦ | | | ୬୮,୩୦୦ |

**ଦାୟୀ — ନଗଦ ଉଦ୍‌ବୃତ୍ତ ହିସାବ — ଦାତା**

| ୧୯୭୫ | | ଟଙ୍କା | ୧୯୭୫ | | ଟଙ୍କା |
|---|---|---|---|---|---|
| ଡିସେ-୩୧ | ପୂର୍ବ ବାକି ବାବଦ | ୫,୦୦୦ | ଡିସେ-୩୧ | ଆଦାୟକରଣ ହିସାବ ଖର୍ଚ୍ଚ | ୯୦୦ |
| | ଓଡ଼ିଶା ଲ୍ୟାମ୍ପସ୍ କୋ : ଲି: ହି : ବାବଦ | ୨୦,୪୨୦ | | ଋଣ | ୪,୦୦୦ |
| | | | | କ ଙ୍କର ମୂଳଧନ ହିସାବ ବାବଦ | ୮,୭୬୦ |
| | | | | ଖ ଙ୍କର ମୂଳଧନ ହିସାବ ବାବଦ | ୭,୮୪୦ |
| | | | | ଗ ଙ୍କର ମୂଳଧନ ହିସାବ ବାବଦ | ୪,୯୨୦ |
| | | ୨୫,୪୨୦ | | | ୨୫,୪୨୦ |

**ଦାୟୀ — ଓଡ଼ିଶା ଲ୍ୟାମ୍ପସ୍ କମ୍ପାନୀ ଲିମିଟେଡ୍‌ରେ ଅଂଶ ପତ୍ର ହିସାବ — ଦାତା**

| ୧୯୭୫ | | ଟଙ୍କା | ୧୯୭୫ | | ଟଙ୍କା |
|---|---|---|---|---|---|
| ଡିସେ-୩୧ | ଓଡ଼ିଶା ଲ୍ୟାମ୍ପସ୍ କୋ: ଲି: ହିସାବ ବାବଦ | ୪୭,୮୮୦ | ଡିସେ-୩୧ | ମୂଳଧନ ହିସାବ ବାବଦ : | |
| | | | | କ | ୨୦,୪୪୦ |
| | | | | ଖ | ୧୫,୯୬୦ |
| | | | | ଗ | ୧୧,୪୮୦ |
| | | ୪୭,୮୮୦ | | | ୪୭,୮୮୦ |

**ଦାୟୀ — କ ଙ୍କର ମୂଳଧନ ହିସାବ — ଦାତା**

| ୧୯୭୫ | | ଟଙ୍କା | ୧୯୭୫ | | ଟଙ୍କା |
|---|---|---|---|---|---|
| ଡିସେ-୩୧ | ଓଡ଼ିଶା ଲ୍ୟାମ୍ପସ୍ କୋ: ଲି:ରେ ଅଂଶ ପତ୍ର ବାବଦ | ୨୦,୪୪୦ | ଡିସେ-୩୧ | ପୂର୍ବ ବାକି ବାବଦ | ୨୫,୦୦୦ |
| | ନଗଦ ଉଦ୍‌ବୃତ୍ତ ହି : ବାବଦ | ୮,୭୬୦ | | ଆଦାୟକରଣ ହିସାବ ବାବଦ | ୪,୨୦୦ |
| | | ୨୯,୨୦୦ | | | ୨୯,୨୦୦ |

ଦାୟୀ ଖ ଙ୍କର ମୂଳଧନ ହିସାବ ଦାତା

| ୧୯୭୫ | | ଟଙ୍କା | ୧୯୭୫ | | ଟଙ୍କା |
|---|---|---|---|---|---|
| ଡିସେ-୩୧ | ଓଡ଼ିଶା ଲ୍ୟାମ୍ପସ୍ କୋ: ଲି: ରେ ଅଂଶ ପତ୍ର ବାବଦ | ୧୫,୧୬୦ | ଡିସେ-୩୧ | ପୂର୍ବ ବାକି ବାବଦ | ୨୦,୦୦୦ |
| | ନଗଦ ତହବିଲ ହିସାବ ବାବଦ | ୬,୮୪୦ | | ଅଦାୟକରଣ ହିସାବ ବାବଦ | ୨,୮୦୦ |
| | | ୨୨,୮୦୦ | | | ୨୨,୮୦୦ |

ଦାୟୀ ଗ ଙ୍କର ମୂଳଧନ ହିସାବ ଦାତା

| ୧୯୭୫ | | ଟଙ୍କା | ୧୯୭୫ | | ଟଙ୍କା |
|---|---|---|---|---|---|
| ଡିସେ-୩୧ | ଓଡ଼ିଶା ଲ୍ୟାମ୍ପସ୍ କୋ:ଲି: ରେ ଅଂଶ ପତ୍ର ବାବଦ | ୧୧,୪୮୦ | ଡିସେ-୩୧ | ପୂର୍ବ ବାକି ବାବଦ | ୧୫,୦୦୦ |
| | ନଗଦ ତହବିଲ ହିସାବ ବାବଦ | ୪,୯୨୦ | | ଅଦାୟକରଣ ହିସାବ ବାବଦ | ୧,୪୦୦ |
| | | ୧୬,୪୦୦ | | | ୧୬,୪୦୦ |

ବିଶେଷ ଦ୍ରଷ୍ଟବ୍ୟ—ଅଂଶ ପତ୍ରର ମୋଟ ସଂଖ୍ୟା ୪,୭୮୮ କୁ କ, ଖ ଓ ଗ ତାଙ୍କର ମୂଳଧନ ଅନୁପାତରେ ବଣ୍ଟନ କଲେ ।

| | ମୂଳଧନ | ଲାଭ | ମୋଟ | ଅନୁପାତ |
|---|---|---|---|---|
| | ଟଙ୍କା | ଟଙ୍କା | ଟଙ୍କା | |
| କ | ୨୫,୦୦୦ | ୪,୨୦୦ | ୨୯,୨୦୦ | ୭୩/୧୭୧ |
| ଖ | ୨୦,୦୦୦ | ୨,୮୦୦ | ୨୨,୮୦୦ | ୫୭/୧୭୧ |
| ଗ | ୧୫,୦୦୦ | ୧,୪୦୦ | ୧୬,୪୦୦ | ୪୧/୧୭୧ |
| | ୬୦,୦୦୦ | ୮,୪୦୦ | ୬୮,୪୦୦ | |

୭ । **କ୍ରମ ଅଦାୟ ଓ କ୍ରମ ବଣ୍ଟନ** (Gradual Realisation and Piecemeal Distribution)—ଉପରୋକ୍ତ ବିଲୋପସାଧନ ଦୃଷ୍ଟାନ୍ତମାନଙ୍କରେ ଏହା ଅନୁମାନ କରାଯାଇଛି ଯେ ଅଂଶୀଦାରି ବ୍ୟବସାୟର ସମ୍ପତ୍ତିଗୁଡ଼ିକ ବିଲୋପସାଧନ ଅବସରରେ ବିକ୍ରିତ ହୋଇଛି ଏବଂ ବିବିଧ ମହାଜନମାନଙ୍କର ଋଣ ଓ ଅନ୍ୟାନ୍ୟ ଋଣ

ହିଁକ୍ତ ତାରଖରେ ପରିଶୋଧିତ ହୋଇଛି । ବାସ୍ତବ କ୍ଷେତ୍ରରେ କିନ୍ତୁ ଏଭଳି ଦୃଷ୍ଟାନ୍ତ କ୍ୱଚିତ୍ ପରିଲକ୍ଷିତ ହୁଏ । ଯେଉଁ ବ୍ୟବସାୟକୁ ଗଢ଼ିବାକୁ ବର୍ଷ ବର୍ଷ ଧରି ଦୀର୍ଘକାଳ ଅତିବାହିତ ହୋଇଛି ତାହାର ସମ୍ପତ୍ତିଗୁଡ଼ିକୁ ଗୋଟିଏ ଦିନରେ ବିକ୍ରୟ କରିବା ପାଇଁ ଗ୍ରାହକ ପାଇବା ଏବଂ ବିବିଧ ଖାତକମାନଙ୍କଠାରୁ ଗୋଟିଏ ଦିନ ମଧ୍ୟରେ ସମସ୍ତ ପ୍ରାପ୍ୟ ଅାଦାୟ କରିବା ପ୍ରାୟ ଅସମ୍ଭବ କହିଲେ ଅତ୍ୟୁକ୍ତି ହେବ ନାହିଁ । ବାସ୍ତବରେ ଯାହା ଘଟେ ତାହା ହେଉଛି ଏହା ଯେ ବହୁ ପ୍ରୟାସ ପରେ କେତେକ ସମ୍ପତ୍ତି ପ୍ରଥମ ଦଫାରେ ଓ ଅନ୍ୟ କେତେକ ସମ୍ପତ୍ତି ଦ୍ୱିତୀୟ ଦଫାରେ ଏବଂ ଅବଶିଷ୍ଟ ସମ୍ପତ୍ତି ତୃତୀୟ ଅଥବା ଚତୁର୍ଥ ଦଫାରେ ବିକ୍ରି ହୁଏ । ଅର୍ଥାତ୍ ସମ୍ପତ୍ତିଗୁଡ଼ିକ ଦଫାଓ୍ୱାରି ଅଥବା କିସ୍ତି-ଓ୍ୱାରି ବିକ୍ରି ହୋଇ କ୍ରମେ କ୍ରମେ ଟଙ୍କା ଅାଦାୟ ହେଉଥାଏ ।

ଏପରି କ୍ଷେତ୍ରରେ ସବୁଠାରୁ ବଡ଼ ସମସ୍ୟା ଯାହାର ସମ୍ମୁଖୀନ ହେବାକୁ ପଡ଼େ, ତାହା ହେଉଛି ଅାଦାୟକରଣର ଲାଭ ଅଥବା କ୍ଷତି ନିର୍ଣ୍ଣୟ କରିବା । ସବୁଗୁଡ଼ିକ ସମ୍ପତ୍ତି ବିକ୍ରି ନ ହେବା ପର୍ଯ୍ୟନ୍ତ ଏହି କ୍ଷତି ବା ଲାଭ ନିର୍ଣ୍ଣୀତ ହୋଇପାରିବ ନାହିଁ ଏବଂ ଅଂଶୀଦାରମାନଙ୍କର ନିଟ୍ ପ୍ରାପ୍ୟ ପରିମାଣ ନିରୂପିତ ହୋଇପାରିବ ନାହିଁ । ଏପରି ସ୍ଥଳେ ଦଫାଓ୍ୱାରି ଅାଦାୟ ହେଉଥିବା ଅର୍ଥକୁ କିପରି ଭାବରେ ଅଂଶୀଦାରମାନଙ୍କ ମଧ୍ୟରେ ବଣ୍ଟନ କରାଯିବ ?

ଏଠାରେ ସ୍ମରଣ କରାଇ ଦିଆଯାଇପାରେ ଯେ ସମ୍ପତ୍ତି ବିକ୍ରୟ ଅର୍ଥ ଓ ନଗଦ ତହବିଲରୁ ପ୍ରଥମେ ବିଲୋପସାଧନର ଖର୍ଚ୍ଚ ବହନ କରାଯିବ । ତତ୍ପରେ ବାହାର ମହାଜନ ଓ ଅନ୍ୟାନ୍ୟମାନଙ୍କଠାରୁ ଅଣାଯାଇଥିବା ଋଣ ପରିଶୋଧ କରାଯିବ । ତତ୍ପରେ ଅଂଶୀଦାରଙ୍କଠାରୁ ଅଣାଯାଇଥିବା ଋଣ ସମ୍ପୂର୍ଣ୍ଣରୂପେ ଅଥବା ଟଙ୍କା ପ୍ରତି କେତେ ପଇସା ହାରରେ ପରିଶୋଧ କରାଯାଏ । ଅବଶେଷରେ ବଳକା ଅର୍ଥ ଅଂଶୀଦାରମାନଙ୍କର ମୂଳଧନ ହିସାବର ଦାବି ବାକି ଅନୁଯାୟୀ ତାଙ୍କୁ ଅର୍ଥ ପରିଶୋଧ କରାଯାଏ । ସୁତରାଂ ବ୍ୟବସାୟର ସମସ୍ତ ଋଣ ପରିଶୋଧ ନ ହେବା ପର୍ଯ୍ୟନ୍ତ ଅଂଶୀଦାରଙ୍କର ମୂଳଧନ ବାବଦ ଅର୍ଥ ଫେରନ୍ତ ଦେବାର ପ୍ରଶ୍ନ ଉଠେ ନାହିଁ । ମାତ୍ର ଯେତେବେଳେ ଏହି ସମସ୍ତ ଋଣ ପରିଶୋଧିତ ହୋଇଯାଏ ସେତେବେଳେ ବଳକା ଅର୍ଥ ଅଂଶୀଦାରମାନଙ୍କୁ ଦିଅଯାଏ ।

**(୧) ଆନୁପାତିକ ମୂଳଧନଭିତ୍ତିକ ପଦ୍ଧତି (Proportionate Capital Basis Method)**—ଯଦି ଅଂଶୀଦାରମାନଙ୍କର ମୂଳଧନର ଅନୁପାତ ତାଙ୍କର ଲାଭ-କ୍ଷତି ବଣ୍ଟନ ଅନୁପାତ ସହିତ ସମାନ ଥାଏ ତାହାହେଲେ କୌଣସି ଅସୁବିଧାର ସମ୍ମୁଖୀନ ହେବାକୁ ପଡ଼େ ନାହିଁ । ମାତ୍ର ଯେତେବେଳେ ଏହି ଦୁଇଟି ଅନୁପାତ ସମାନ ନ ଥାଏ ସେତେବେଳେ ଏହି ଦୁଇଟି ମଧ୍ୟରୁ କୌଣସି ଗୋଟିଏ ଅନୁପାତ ଭିତ୍ତିରେ

ଅଂଶୀଦାରମାନଙ୍କୁ ଅର୍ଥ ବଣ୍ଟନ କରାଗଲେ ତାହା ଅଯୌକ୍ତିକ ହେବ । ଏହି ଅଯୌକ୍ତିକତା ନିମ୍ନ ଦୃଷ୍ଟାନ୍ତରୁ ସ୍ପଷ୍ଟ ବୁଝାଯିବ ।

ମନେକର କ ଓ ଖ ଗୋଟିଏ ଅଂଶୀଦାରୀ କାରବାରର ଅଂଶୀଦାର ଥାଇ ଲାଭ ଓ କ୍ଷତି ଯଥାକ୍ରମେ ୨:୧ ଅନୁପାତରେ ବଣ୍ଟନ କରୁଥିଲେ । ମନେକର ଏହି ଅଂଶୀଦାରୀ ବ୍ୟବସାୟର ବିଲୋପସାଧନ ଆରମ୍ଭ ହେଲା ଓ କେତେକ ସମ୍ପତ୍ତି ବିକ୍ରି ହୋଇ ବିକ୍ରୟଲବ୍ଧ ଅର୍ଥରୁ ଖର୍ଚ୍ଚ ଓ ମହାଜନମାନଙ୍କର ସମସ୍ତ ଋଣ ପରିଶୋଧ କରିବା ପରେ କ ଓ ଖ ଙ୍କର ମୂଳଧନର ପରିମାଣ ଯଥାକ୍ରମେ ଟ ୪୦,୦୦୦ ଓ ଟ ୧୦,୦୦୦ ଥିଲା । ଏହା ପରେ ପ୍ରଥମ କିସ୍ତିରେ ଟ ୧୫,୦୦୦ ଓ ଦ୍ୱିତୀୟ କିସ୍ତିରେ ଟ ୧୨,୦୦୦ ଆଦାୟ ହେଲା । ଏହାକୁ ବଣ୍ଟନ କରିବା ପାଇଁ ଯଦି ଆମେ ଲାଭ, କ୍ଷତି ବଣ୍ଟନର ଅନୁପାତକୁ ଭିତ୍ତିରୂପେ ପ୍ରୟୋଗ କରୁ ତାହାହେଲେ ପରିଣାମ ନିମ୍ନୋକ୍ତ ପ୍ରକାର ହେବ :

| | କ<br>ଟଙ୍କା | ଖ<br>ଟଙ୍କା |
|---|---|---|
| ପ୍ରାପ୍ୟ ଅର୍ଥ | ୪୦,୦୦୦ | ୧୦,୦୦୦ |
| ପ୍ରଥମ କିସ୍ତିର ବଣ୍ଟନ ୨:୧ ଅନୁପାତରେ | ୧୦,୦୦୦ | ୫,୦୦୦ |
| ବାକି ପ୍ରାପ୍ୟ | ୩୦,୦୦୦ | ୫,୦୦୦ |
| ଦ୍ୱିତୀୟ କିସ୍ତିର ବଣ୍ଟନ ୨:୧ ଅନୁପାତରେ | ୮,୦୦୦ | ୪,୦୦୦ |
| ଅପରିଶୋଧିତ ଅର୍ଥ ଅଥବା କ୍ଷତି | ୨୨,୦୦୦ | ୧,୦୦୦ |

ଏଥିରୁ ଦେଖାଯିବ ଯେ କ ଓ ଖ ଙ୍କର କ୍ଷତିର ଅନୁପାତ ୨୨:୧ ହେଉଛି ଯାହା ସମ୍ପୂର୍ଣ୍ଣ ଅଯୌକ୍ତିକ ।

ବର୍ତ୍ତମାନ ସେମାନଙ୍କର ମୂଳଧନ ପରିମାଣର ଅନୁପାତ, ଅର୍ଥାତ୍ ୪:୧ ଭିତ୍ତିରେ ଉପରୋକ୍ତ ଦୁଇ କିସ୍ତିର ଅର୍ଥ ବଣ୍ଟନ କରାଯାଉ ।

| | କ<br>ଟଙ୍କା | ଖ<br>ଟଙ୍କା |
|---|---|---|
| ପ୍ରାପ୍ୟ ଅର୍ଥ | ୪୦,୦୦୦ | ୧୦,୦୦୦ |
| ପ୍ରଥମ କିସ୍ତିର ବଣ୍ଟନ ୪:୧ ଅନୁପାତରେ | ୧୨,୦୦୦ | ୩,୦୦୦ |
| ବାକି ପ୍ରାପ୍ୟ | ୨୮,୦୦୦ | ୭,୦୦୦ |
| ଦ୍ୱିତୀୟ କିସ୍ତିର ବଣ୍ଟନ ୪:୧ ଅନୁପାତରେ | ୯,୬୦୦ | ୨,୪୦୦ |
| ଅପରିଶୋଧିତ ପରିମାଣ ଅଥବା କ୍ଷତି | ୧୮,୪୦୦ | ୪,୬୦୦ |

ବର୍ତ୍ତମାନ କ ଓ ଖ ଙ୍କର କ୍ଷତିର ଅନୁପାତ ୪:୧ ହେବ ଯାହା ମଧ୍ୟ ଅଯୌକ୍ତିକ ।

ତେଣୁ ଏଭଳି କ୍ଷେତ୍ରରେ ଉଭୟ ଅଂଶୀଦାରଙ୍କର ମୂଳଧନକୁ ତାଙ୍କର ଲଭ:କ୍ଷତି ବଣ୍ଟନ ଅନୁପାତକୁ ପରିବର୍ତ୍ତିତ କରାଯିବ, ଅର୍ଥାତ୍ ସେମାନଙ୍କର ମୂଳଧନ ଆନୁପାତିକ ପରିମାଣକୁ ଅଣାଯିବ । ଯେଣୁ ଲଭର $\frac{1}{3}$ ଅଂଶ ଭୋଗ କରିବା ପାଇଁ ତାଙ୍କର ମୂଳଧନ ଯଦି ଟ ୧୦,୦୦୦ ହୁଏ, ତାହାହେଲେ ଲଭର $\frac{2}{3}$ ଅଂଶ ଭୋଗ କରିବା ପାଇଁ କ ଙ୍କର ମୂଳଧନ ଟ ୨୦,୦୦୦ ହେବା ଉଚିତ । ଅତଏବ କ ଙ୍କୁ ପ୍ରଥମେ ଟ ୨୦,୦୦୦ ଟଙ୍କା ଦିଆଯାଇ ତାଙ୍କର ମୂଳଧନ ପରିମାଣକୁ ଟ ୨୦,୦୦୦ ଙ୍କାକୁ ଅଣାଯିବ । ଅବଶିଷ୍ଟ ଟଙ୍କାକୁ ୨:୧ ଅନୁପାତରେ ବଣ୍ଟନ କରାଯିବ ।

| | କ | ଖ |
|---|---|---|
| | ଟଙ୍କା | ଟଙ୍କା |
| ମୂଳଧନ | ୪୦,୦୦୦ | ୧୦,୦୦୦ |
| ପ୍ରଥମ କିସ୍ତିର ବଣ୍ଟନ | ୧୫,୦୦୦ | — |
| ବାକି ପ୍ରାପ୍ୟ ଅର୍ଥ | ୨୫,୦୦୦ | ୧୦,୦୦୦ |
| ଦ୍ଵିତୀୟ କିସ୍ତିର ବଣ୍ଟନ | ୫,୦୦୦ | — |
| (ଟ ୧୨,୦୦୦—ଟ ୫,୦୦୦=)ଟ ୭,୦୦୦ର | ୨୦,୦୦୦ | ୧୦,୦୦୦ |
| ୨:୧ ଅନୁପାତରେ ବଣ୍ଟନ | ୪,୬୬୬$\frac{2}{3}$ | ୨,୩୩୩$\frac{1}{3}$ |
| ଅପରିଶୋଧିତ ଅର୍ଥ ବା କ୍ଷତି | ୧୫,୩୩୩$\frac{1}{3}$ | ୭,୬୬୬$\frac{2}{3}$ |

ବର୍ତ୍ତମାନ କ ଓ ଖ ଙ୍କର କ୍ଷତିର ଅନୁପାତ ୨:୧ ହେଲା ଯାହା ଯୁକ୍ତିଯୁକ୍ତ ।

ଉପରୋକ୍ତ ଦୃଷ୍ଟାନ୍ତରୁ ଆମେ ଏହି ନିୟମରେ ଉପନୀତ ହେଲୁ ଯେ ଯେତେବେଳେ ଅଂଶୀଦାରମାନଙ୍କର ମୂଳଧନ ପରିମାଣ ତାଙ୍କ ଲଭ-କ୍ଷତି ବଣ୍ଟନ ଅନୁପାତ ସହିତ ସମଞ୍ଜସ ନ ଥିବ ସେତେବେଳେ ଅଂଶୀଦାରମାନଙ୍କର ମୂଳଧନ ପରିମାଣକୁ ସେମାନଙ୍କର ଲଭ-କ୍ଷତି ବଣ୍ଟନ ଅନୁପାତ ଅନୁଯାୟୀ ଆନୁପାତିକ କରିବା ପାଇଁ କିସ୍ତିଲବ୍ଧ ଅର୍ଥ ପ୍ରଥମେ ବ୍ୟବହୃତ ହେବ । ତତ୍ପରବର୍ତ୍ତୀ କିସ୍ତିଲବ୍ଧ ଅର୍ଥ ଲଭ-କ୍ଷତି ବଣ୍ଟନ ଅନୁପାତରେ ବଣ୍ଟିତ ହେବ । ଏପରି କରାଗଲେ ଅଂଶୀଦାରମାନଙ୍କର କ୍ଷତି ଲଭ-କ୍ଷତି ବଣ୍ଟନ ଅନୁପାତ ଅନୁଯାୟୀ ରହିବ ।

ଏହାର ଏକ ଦୃଷ୍ଟାନ୍ତ ନିମ୍ନରେ ପ୍ରଦତ୍ତ ହେଲା ।

ଦୃଷ୍ଟାନ୍ତ (୧୩)

କ ଓ ଖ ଗୋଟିଏ ଅଂଶୀଦାରୀ କାରବାରର ଅଂଶୀଦାର ଅଟନ୍ତି । ସେମାନେ ଲଭ ଓ କ୍ଷତିକୁ ୩:୨ ଅନୁପାତରେ ବଣ୍ଟନ କରୁଥିଲେ । ସେମାନଙ୍କର ମୂଳଧନ ଯଥାକ୍ରମେ ଟ ୭,୯୦୦ ଓ ଟ ୫,୦୦୦ ଥିଲା । ସେମାନେ ତାଙ୍କର ବ୍ୟବସାୟର ବିଲୋପସାଧନ

ଘଟାଇବାକୁ ସ୍ଥିର କଲେ । ୧୯୭୫ ମସିହା ମାର୍ଚ୍ଚ ୩୧ ତାରିଖରେ ସେମାନେ ଟ ୬,୦୦୦ ଓ ଜୁନ୍ ୩୦ ତାରିଖରେ ଟ ୩,୦୦୦ ସମ୍ପତ୍ତି ବିକ୍ରୟରୁ ନିଟ୍ ବିକ୍ରୟଲବ୍ଧ ଅର୍ଥ ପାଇଲେ । ଅନ୍ୟ କୌଣସି ଅର୍ଥ ମିଳିବାର ସମ୍ଭାବନା ନାହିଁ । ଅନ୍ୟ କାହାରିକୁ କୌଣସି ଦେୟ ଅର୍ଥ ନାହିଁ ବୋଲି ଅନୁମାନ କରି ଏହି ବିକ୍ରୟଲବ୍ଧ ଅର୍ଥ ଅଂଶୀଦାରମାନଙ୍କ ମଧ୍ୟରେ କିପରି ବଣ୍ଟିତ ହେବ ତାହାର ଏକ ବିବରଣୀ ଦର୍ଶାଅ ।

## ସମାଧାନ

ନଗଦ ଉଦ୍ବୃତ୍ତ ବଣ୍ଟନ ବିବରଣୀ

| | | କ | ଖ |
|---|---|---|---|
| ଲାଭ ଓ କ୍ଷତି ବଣ୍ଟନ ଅନୁପାତ | | ୩ : | ୨ |
| | ଟଙ୍କା | ଟଙ୍କା | ଟଙ୍କା |
| ଅପରିଶୋଧିତ ମୂଳଧନ | | ୭,୯୦୦ | ୫,୦୦୦ |
| ୧୯୭୫ | | | |
| ମାର୍ଚ୍ଚ-୩୧ ଟ ୬,୦୦୦ର ବଣ୍ଟନ | | | |
| କ ଙ୍କର ମୂଳଧନକୁ ଲାଭ-କ୍ଷତି ବଣ୍ଟନ ଅନୁପାତ ସହିତ ସମଞ୍ଜସ କରିବା ପାଇଁ କ ଙ୍କୁ ଦିଆଗଲା | ୪୦୦ | ୪୦୦ | — |
| ଅପରିଶୋଧିତ ମୂଳଧନ | | ୭,୫୦୦ | ୫,୦୦୦ |
| କ ଓ ଖ ଙ୍କୁ ୩:୨ ଅନୁପାତରେ ଦିଆଗଲା | ୫,୬୦୦ | ୩,୩୬୦ | ୨,୨୪୦ |
| | ୬,୦୦୦ | | |
| ଅପରିଶୋଧିତ ମୂଳଧନ (ବାକି) | | ୪,୧୪୦ | ୨,୭୬୦ |
| ଜୁନ୍-୩୦ ଟ ୩,୦୦୦ର ବଣ୍ଟନ | | | |
| କ ଓ ଖ ଙ୍କୁ ୩:୨ ଅନୁପାତରେ ଦିଆଗଲା | ୩,୦୦୦ | ୧,୮୦୦ | ୧,୨୦୦ |
| ଅନାଦାୟୀକରଣ କ୍ଷତି | | ୨,୩୪୦ | ୧,୫୬୦ |

ବିଶେଷ ଦ୍ରଷ୍ଟବ୍ୟ :—ଅଂଶୀଦାରମାନଙ୍କର ମୂଳଧନର ଅନୁପାତକୁ ତାଙ୍କର ଲାଭ-କ୍ଷତି ବଣ୍ଟନର ଅନୁପାତ ସହିତ ସମଞ୍ଜସ କରିବା ପାଇଁ ଯେଉଁ ଅଂଶୀଦାରଙ୍କର ମୂଳଧନ ଅପେକ୍ଷାକୃତ ନ୍ୟୂନ ତାହାକୁ ଭିତ୍ତି ରୂପେ ବ୍ୟବହାର କରାଯିବ । ଉପରୋକ୍ତ ଦୃଷ୍ଟାନ୍ତରେ ଖ ଙ୍କର ମୂଳଧନର ପରିମାଣ କ ଙ୍କ ମୂଳଧନ ପରିମାଣଠାରୁ ନ୍ୟୂନ ଥିବାରୁ ତାହାକୁ ଭିତ୍ତି କରାଯାଇଛି । ତେଣୁ ଲାଭର ୨/୫ ଅଂଶ ସକାଶେ ମୂଳଧନ ଯଦି ଟ ୫,୦୦୦ ହୁଏ, ତାହାହେଲେ ଲାଭର ୩/୫ ଅଂଶ ସକାଶେ ମୂଳଧନର ପରିମାଣ ଟ ୫,୦୦୦ର ୩/୨ ଅର୍ଥାତ୍ ଟ ୭,୫୦୦ ହେବ । ତେଣୁ କ ଙ୍କୁ ଟ ୪୦୦ ଦିଆଯାଇ ତାଙ୍କ ମୂଳଧନ ପରିମାଣକୁ

୫୬,୯୦୦ ରୁ ୫୭,୫୦୦ କୁ ଅଣାଗଲା । ଏହାପରେ ଅଂଶୀଦାର ଦୁହିଁଙ୍କର ମୂଳଧନର ଅନୁପାତ ତାଙ୍କ ଲଭ-କ୍ଷତି ବଣ୍ଟନର ଅନୁପାତ ସହିତ ସମନ୍ତ୍ରସ ହୋଇଥିବାରୁ ପରବର୍ତ୍ତୀ ଅର୍ଥକୁ ୩:୨ ଅନୁପାତରେ ଦୁହିଁଙ୍କ ମଧ୍ୟରେ ଭାଗ କରାଯାଇଛି ।

**(୬) ସର୍ବାଧିକ ସମ୍ଭାବ୍ୟ କ୍ଷତିଭିତ୍ତିକ ପଦ୍ଧତି (Maximum Possible Loss Basis Method)** ପୂର୍ବରୁ କୁହାଯାଇଛି ଯେ ନଗଦ ତହବିଲ ଓ ସମ୍ପତ୍ତିଗୁଡ଼ିକର ବିକ୍ରୟଲବ୍ଧ ଅର୍ଥରୁ ପ୍ରଥମେ ବିଲୋପସାଧନ ଖର୍ଚ୍ଚ ପରିଶୋଧ କରାଯିବ, ତତ୍ପରେ ବିବିଧ ମହାଜନଙ୍କର ଋଣ ପରିଶୋଧ କରାଯିବ । ଅବଶିଷ୍ଟ ପରିମାଣରୁ ଅଂଶୀଦାରମାନେ ବ୍ୟବସାୟକୁ ଦେଇଥିବା ଋଣ ପରିଶୋଧ କରାଯିବ । ଯଦି ଏହା ପରେ ଅବଶିଷ୍ଟ କିଛି ଅର୍ଥ ଥାଏ, ତାହାହେଲେ ତାହାକୁ ଅଂଶୀଦାରଙ୍କୁ ଫେରସ୍ତ ଦିଆଯିବ । ଉଦ୍‌ବୃତ୍ତ ଅର୍ଥ ଅଂଶୀଦାରମାନଙ୍କୁ ଫେରସ୍ତ ଦେବା ପୂର୍ବରୁ ଏହା ଅନୁମାନ କରାଯିବ ଯେ ଅନ୍ୟାନ୍ୟ ଅବର୍ଣ୍ଣିତ ସମ୍ପତ୍ତିରୁ କୌଣସି ଅର୍ଥ ଆଦାୟ ହୋଇପାରିବ ନାହିଁ । ଏପରି କ୍ଷେତ୍ରରେ ସର୍ବାଧିକ କ୍ଷତିକୁ ଅଂଶୀଦାରମାନଙ୍କର ମୂଳଧନ ହିସାବକୁ ତାଙ୍କର ଲଭ-କ୍ଷତି ବଣ୍ଟନ ଅନୁପାତରେ ସ୍ଥାନାନ୍ତରିତ କରାଯିବ । ଯଦି ଏପରି କରିବାଦ୍ୱାରା କୌଣସି ଅଂଶୀଦାରଙ୍କର ମୂଳଧନ ହିସାବରେ ଦାୟୀ ବାକି ରହେ, ତାହାହେଲେ ସେହି ଅଂଶୀଦାର ଦେବାଳିଆ ବୋଲି ବିବେଚିତ ହେବେ ଏବଂ ତାଙ୍କ ମୂଳଧନର ଦାୟୀ ବାକି ଅନ୍ୟାନ୍ୟ ଅଂଶୀଦାରମାନଙ୍କର ମୂଳଧନ ହିସାବକୁ ତାଙ୍କର ପାରସ୍ପରିକ ମୂଳଧନ ଅନୁପାତରେ ସ୍ଥାନାନ୍ତରିତ କରାଯିବ । ଏହିପରି କ୍ଷତି ବାଦ୍ ଦେଲା ପରେ ମୂଳଧନ ହିସାବରେ ଯେଉଁ ଦାତା ବାକି ଅବଶିଷ୍ଟ ରହେ ତାହା ବଳକା ନଗଦ ତହବିଲ ସହିତ ସମାନ ହେବ ।

ଯଦି ପରେ ପୁଣି ଆଦାୟକରଣରୁ କିଛି ଅର୍ଥ ମିଳେ ତାହାହେଲେ ସେହିପରି ସର୍ବାଧିକ କ୍ଷତି ସାବ୍ୟସ୍ତ କରାଯିବ ଓ ତାହା ଅଂଶୀଦାରଙ୍କର ମୂଳଧନ ହିସାବରୁ ବାଦ୍ ଦିଆଯିବ । ଏହାପରେ ମୂଳଧନ ହିସାବଗୁଡ଼ିକରେ ଯେଉଁ ଦାତା ବାକି ରହିବ ତାହା ପ୍ରାପ୍ତ ଅର୍ଥ ସହିତ ସମାନ ହେବ । ସମ୍ପତ୍ତି ବିକ୍ରୟଲବ୍ଧ ଅର୍ଥ ଯେତେ କିସ୍ତିରେ ଆଦାୟ ହେବ ସେତେଥର ସର୍ବାଧିକ କ୍ଷତି ନିରୂପିତ ହୋଇ ପୂର୍ବୋକ୍ତ ପ୍ରଣାଳୀରେ ସେହି ଅର୍ଥ ଅଂଶୀଦାରମାନଙ୍କ ମଧ୍ୟରେ ତାଙ୍କର ଲଭ-କ୍ଷତି ବଣ୍ଟନ ଅନୁପାତରେ ଭାଗକରି ଦିଆଯିବ । ଏହାର ଏକ ଦୃଷ୍ଟାନ୍ତ ନିମ୍ନରେ ପ୍ରଦତ୍ତ ହେଲା ।

## ଦୃଷ୍ଟାନ୍ତ (୧୮)

ଦୃଷ୍ଟାନ୍ତ (୧୭)ରେ ଦିଆଯାଇଥିବା ସମସ୍ୟାର ସମାଧାନ ସର୍ବାଧିକ ସମ୍ଭାବ୍ୟ କ୍ଷତି-ଭିତ୍ତିକ ପଦ୍ଧତି ଅନୁଯାୟୀ ପ୍ରସ୍ତୁତ କର ।

## ସମାଧାନ

ନଗଦ ଉଦ୍‌ବୃତ୍ତ ବଣ୍ଟନର ବିବରଣୀ

| | | କ | ଖ |
|---|---|---|---|
| ପ୍ରଥମ କିସ୍ତି | ଟଙ୍କା | ଟଙ୍କା | ଟଙ୍କା |
| ଟ ୬,୦୦୦ର ବଣ୍ଟନ | | | |
| ଅପରିଶୋଧିତ ମୂଳଧନ | | ୭,୯୦୦ | ୫,୦୦୦ |
| ସର୍ବାଧିକ ସମ୍ଭାବ୍ୟ କ୍ଷତି ଟ ୬,୯୦୦ | | | |
| ଟ (୭,୯୦୦+୫,୦୦୦−୬,୦୦୦)=ଟ ୬,୯୦୦ | | | |
| କ ଓ ଖ ଙ୍କ ମଧ୍ୟରେ ତାଙ୍କର ଲାଭ-କ୍ଷତି ବଣ୍ଟନ ଅନୁପାତ ୩ : ୨ ହାରରେ ବଣ୍ଟିତ ହେଲା | | ୪,୧୪୦ | ୨,୭୬୦ |
| ବଳକା ଦାବୀ ବାକି | | ୩,୭୬୦ | ୨,୨୪୦ |
| କ ଓ ଖ ଙ୍କୁ ନଗଦ ଉଦ୍‌ବୃତ୍ତ ଦିଆଗଲା | ୬,୦୦୦ | ୩,୭୬୦ | ୨,୨୪୦ |
| ଦ୍ୱିତୀୟ କିସ୍ତି | | | |
| ଟ ୩,୦୦୦ର ବଣ୍ଟନ | | | |
| ଅପରିଶୋଧିତ ମୂଳଧନ | | ୪,୧୪୦ | ୨,୭୬୦ |
| ସର୍ବାଧିକ ସମ୍ଭାବ୍ୟ କ୍ଷତି ଟ ୩,୯୦୦ | | | |
| ଟ (୪,୧୪୦+୨,୭୬ −୩,୦୦୦)=ଟ ୩,୯୦୦ | | | |
| କ ଓ ଖ ଙ୍କ ମଧ୍ୟରେ ତାଙ୍କର ଲାଭ-କ୍ଷତି ବଣ୍ଟନ ଅନୁପାତ ୩ : ୨ ହାରରେ ବଣ୍ଟିତ ହେଲା । | | ୨,୩୪୦ | ୧,୫୬୦ |
| ବଳକା ଦାବୀ ବାକି | | ୧,୮୦୦ | ୧,୨୦୦ |
| କ ଓ ଖ ଙ୍କୁ ନଗଦ ଦିଆଗଲା | ୩,୦୦୦ | ୧,୮୦୦ | ୧,୨୦୦ |
| ଅପରିଶୋଧିତ ମୂଳଧନ କ୍ଷତିର ଅନୁପାତ | | ୨,୩୪୦ / ୩ | ୧,୫୬୦ / ୨ |

ବିଶେଷ ଦ୍ରଷ୍ଟବ୍ୟ : ପ୍ରତି କିସ୍ତିରେ ମିଳିଥିବା ନଗଦ ଉଦ୍‌ବୃତ୍ତକୁ ଅଂଶୀଦାରମାନଙ୍କ ମଧ୍ୟରେ ବଣ୍ଟନ କରିବା ସମୟରେ ତାହା ସେମାନଙ୍କର ଲାଭ କ୍ଷତି ବଣ୍ଟନ ଅନୁପାତରେ ଭାଗ କରିବା ପରେ ଯଦି ଦେଖାଯାଏ ଯେ କୌଣସି ଅଂଶୀଦାରଙ୍କର ଅଂଶ ତାଙ୍କ ମୂଳଧନ ପରିମାଣଠାରୁ ଅଧିକ ହେଉଛି ତାହାହେଲେ ତାଙ୍କର ଯେତିକି ଟଙ୍କା ପ୍ରାପ୍ୟ ତାଙ୍କୁ ସେତିକି ଦିଆଯାଇ ବଳକା ଟଙ୍କା ଅନ୍ୟ ଅଂଶୀଦାରଙ୍କୁ ଦିଆଯିବ । ବଣ୍ଟିତ ମୋଟ ପରିମାଣ ଯେପରି

କରିଲବ୍ଧ ନଗଦ ତହବିଲ ସହିତ ସମାନ ହୁଏ, ସେଥିପ୍ରତି ଦୃଷ୍ଟି ଦିଆଯିବ । ବିକଳ୍ପ ଭାବରେ ଯେଉଁ ଅଂଶୀଦାରଙ୍କର ଯେତେ ପ୍ରାପ୍ୟ ତାଙ୍କୁ ସେତିକି ଦିଆଯିବ ଏବଂ ମୋଟ ବଣ୍ଟିତ ପରିମାଣ କରିଓ୍ୟାର ଆଦାୟ ହୋଇଥିବା ନଗଦ ତହବିଲ ସହିତ ସମାନ ରହିବ ।

## ଦୃଷ୍ଟାନ୍ତ (୧୫)

ନିମ୍ନରେ ରାମ, ରହିମ ଓ ଗଣେଶଙ୍କର ୩୦-୯-୧୯୬୮ ତାରିଖର ସଂକ୍ଷିପ୍ତ ଉଦ୍ୱୃତ୍ତ ପତ୍ର ନିମ୍ନରେ ପ୍ରଦତ୍ତ ହେଲ :

| | ଟଙ୍କା | | ଟଙ୍କା |
|---|---|---|---|
| ବିବିଧ ମହାଜନ | ୬୨,୦୦୦ | ବିବିଧ ସମ୍ପତ୍ତି | ୨,୪୦,୦୦୦ |
| ରହିମଙ୍କର ଋଣ ହିସାବ | ୧୩,୦୦୦ | | |
| ମୂଳଧନ ହିସାବ : | | | |
| ରାମ ଟ୭୫,୦୦୦ | | | |
| ରହିମ ଟ୨୨,୫୦୦ | | | |
| ଗଣେଶ ଟ୬୭,୫୦୦ | ୧,୬୫,୦୦୦ | | |
| | ୨,୪୦,୦୦୦ | | ୨,୪୦,୦୦୦ |

ସେହି ତାରିଖରେ ସେମାନେ ଅଂଶୀଦାରି ବ୍ୟବସାୟର ବିଲୋପସାଧନ ଘଟାଇ ଯେତେବେଳେ ସମ୍ପତ୍ତିଗୁଡ଼ିକ ଆଦାୟ ହେବ ସେତେବେଳେ ଅଂଶୀଦାରମାନଙ୍କୁ ତାଙ୍କର ପ୍ରାପ୍ୟ ଅର୍ଥ ଦିଆଯିବ ବୋଲି ସ୍ଥିର କଲେ । ସମ୍ପତ୍ତିଗୁଡ଼ିକ ନିମ୍ନଲିଖିତମତେ ଆଦାୟ ହୋଇଥିଲ : ୮-୧୦-୬୮ ତାରିଖରେ ଟ୪୫,୦୦୦; ୧-୧୧-୬୮ ତାରିଖରେ ଟ୧,୦୯,୫୦୦ ଓ ୨-୧-୬୯ ତାରିଖରେ ଟ୬୦,୫୦୦ ।

ସର୍ବାଧିକ ସମ୍ଭାବ୍ୟ କ୍ଷତିଭିତ୍ତିକ ପଦ୍ଧତି ଅନୁଯାୟୀ ବିଭିନ୍ନ କିସ୍ତିରେ ଆଦାୟ ହୋଇଥିବା ଅର୍ଥ ଅଂଶୀଦାରମାନଙ୍କ ମଧ୍ୟରେ କିପରି ବଣ୍ଟିତ ହେବ ତାହାର ଏକ ବିବରଣୀ ପ୍ରସ୍ତୁତ କର ଓ ନଗଦ ତହବିଲ ହିସାବ, ଅଂଶୀଦାରମାନଙ୍କର ମୂଳଧନ ହିସାବ ଓ ଆଦାୟକରଣ ହିସାବ ମଧ୍ୟ ପ୍ରସ୍ତୁତ କର ।

[ C. U. Three-year Degree Course, B. Com., 1969 ପ୍ରଶ୍ନପତ୍ରରୁ ଗୃହୀତ ]

## ସମାଧାନ

ନଗଦ ଉଦ୍ବୃତ୍ତ ବଣ୍ଟନର ବିବରଣୀ

| | | ବିବିଧ ମହାଜନ | ରହିମଙ୍କର ଋଣ | ରାମ | ରହିମ | ରାଜେଶ |
|---|---|---|---|---|---|---|
| ୧ମ କିସ୍ତି | ଟଙ୍କା | ଟଙ୍କା | ଟଙ୍କା | ଟଙ୍କା | ଟଙ୍କା | ଟଙ୍କା |
| ଟ୪୫,୦୦୦ ର ବଣ୍ଟନ | | | | | | |
| ଅପରିଶୋଧିତ ପରିମାଣ | | ୬୨,୦୦୦ | ୧୩,୦୦୦ | ୭୫,୦୦୦ | ୨୨,୫୦୦ | ୭୭,୫୦୦ |
| ବିବିଧ ମହାଜନଙ୍କୁ ଦିଆଯାଇଥିବା ଅର୍ଥ | ୪୫,୦୦୦ | ୪୫,୦୦୦ | | | | |
| ଅପରିଶୋଧିତ ପରିମାଣ | | ୧୭,୦୦୦ | ୧୩,୦୦୦ | ୭୫,୦୦୦ | ୨୨,୫୦୦ | ୭୭,୫୦୦ |
| ୨ୟ କିସ୍ତି | | | | | | |
| ଟ ୧,୦୯,୫୦୦ ର ବଣ୍ଟନ | | | | | | |
| ଅପରିଶୋଧିତ ପରିମାଣ | | ୧୭,୦୦୦ | ୧୩,୦୦୦ | ୭୫,୦୦୦ | ୨୨,୫୦୦ | ୭୭,୫୦୦ |
| ବିବିଧ ମହାଜନ ଓ ରହିମଙ୍କର ଋଣ ପରିଶୋଧ | ୩୦,୦୦୦ | ୧୭,୦୦୦ | ୧୩,୦୦୦ | | | |
| ଅପରିଶୋଧିତ ମୂଳଧନ | | | | ୭୫,୦୦୦ | ୨୨,୫୦୦ | ୭୭,୫୦୦ |
| ସର୍ବାଧିକ କ୍ଷତି ଟ ୮୫,୫୦୦ [ ନଟ୍ ସମଷ୍ଟି ଟ (୬୫,୦୦୦+ ୨୨,୫୦୦ + ୭୭,୫୦୦ − ନଗଦ ଉଦ୍ବୃତ୍ତ ଟ(୧,୦୯,୫୦୦ − ୩୦,୦୦୦) =ଟ ୮୫,୫୦୦ ରାମ, ରହିମ ଓ ରାଜେଶଙ୍କ ମଧ୍ୟରେ ତାଙ୍କ ଲାଭ-କ୍ଷତି ବଣ୍ଟନ ଅନୁପାତ ୧ : ୧ : ୧ ରେ ବଣ୍ଟିତ ହେଲା ) | | | | ୨୮,୫୦୦ | ୨୮,୫୦୦ | ୨୮,୫୦୦ |
| ଅପରିଶୋଧିତ ପରିମାଣ | | | | ୪୬,୫୦୦ | (−) ୬,୦୦୦ | ୩୯,୦୦୦ |
| ରହିମଙ୍କର ଦାୟୀ ବାକି ରାମ ଓ ରାଜେଶଙ୍କ ମୂଳଧନ ଅନୁପାତ ୩୧ : ୨୬ରେ ତାଙ୍କ ମଧ୍ୟରେ ବଣ୍ଟିତ ହେଲା | | | | | | |

| | | | | |
|---|---|---|---|---|
| ( ଆସନ୍ନ ନିକଟବର୍ତ୍ତୀ ପରିମାଣ ) | | −୩,୨୬୩ | +୬,୦୦୦ | −୨,୭୩୭ |
| ଅପରିଶୋଧିତ ପରିମାଣ | | ୪୩,୨୩୭ | | ୩୭,୨୬୩ |
| ରାମ ଓ ରାଜେଶଙ୍କ ନଗଦ ତହବିଲ ଦିଆଗଲା ୭୯,୫୦୦ | | ୪୩,୨୩୭ | | ୩୭,୨୬୩ |
| ଅନ୍ୟ କିସ୍ତି ଟ ୬୦,୫୦୦ ର ବଣ୍ଟନ | | ୩୯,୭୬୩ | ୨୨,୫୦୦ | ୩୯,୨୩୭ |
| ଅପରିଶୋଧିତ ମୂଳଧନ | | | | |
| ସର୍ବାଧିକ ସମ୍ଭାବ୍ୟ କ୍ଷତି ଟ୧୫,୦୦୦ | | | | |
| [ନିଟ୍ ସମ୍ପତ୍ତି ଟ ( ୩୯,୭୬୩ + ୨୨,୫୦୦ + ୩୯,୨୩୭ − ନଗଦ ତହବିଲ ଟ ୭୦,୫୦୦) = ଟ୧୫,୦୦୦ ରାମ, ରହିମ ଓ ରାଜେଶଙ୍କ ମଧ୍ୟରେ ୧ : ୧ : ୧ ଅନୁପାତରେ ବଣ୍ଟିତ ହେଲ ] | | | | |
| ଦାତା ବାକି ୭୦,୫୦୦ | | | | |
| ରାମ, ରହିମ ଓ ରାଜେଶଙ୍କ ନଗଦ ଦିଆଗଲା | | ୫,୦୦୦ | ୫,୦୦୦ | ୫,୦୦୦ |
| | | ୨୭,୭୬୩ | ୧୭,୫୦୦ | ୨୭,୨୩୭ |
| | | ୨୭,୭୬୩ | ୧୭,୫୦୦ | ୨୭,୨୩୭ |
| ଅପରିଶୋଧିତ ମୂଳଧନ − କ୍ଷତି | | ୫,୦୦୦ | ୫,୦୦୦ | ୫,୦୦୦ |
| ଲାଭ − କ୍ଷତି ବଣ୍ଟନ ଅନୁପାତ | | ୧ | ୧ | ୧ |

## ଅନୁଶୀଳନ

୧ । ଅଂଶୀଦାରି ବ୍ୟବସାୟ ବିଲୋପସାଧନ ଓ ଅଂଶୀଦାରି ଚୁକ୍ତିର ବିଲୋପସାଧନ ମଧ୍ୟରେ ପାର୍ଥକ୍ୟ କ'ଣ ?

୨ । ସାଧାରଣତଃ କି କି କାରଣ ଯୋଗୁଁ ଅଂଶୀଦାରି ବ୍ୟବସାୟର ବିଲୋପସାଧନ ଘଟେ ?

୩ । ଅଂଶୀଦାରି ବ୍ୟବସାୟର ବିଲୋପସାଧନ ଘଟିଲେ ଅଂଶୀଦାରମାନଙ୍କର ଯେଉଁ ସମସ୍ତ ଅଧିକାର ଓ ଦାୟିତ୍ୱ ଥାଏ ତାହା ବର୍ଣ୍ଣନା କର ।

୪ । ଗାର୍ଣ୍ଣର ବନାମ ମାରେ ମକଦ୍ଦମାର ସିଦ୍ଧାନ୍ତ ବୁଝାଇ ଲେଖ ଓ ଏହି ସିଦ୍ଧାନ୍ତର ସାଧାରଣତଃ କି ସମାଲୋଚନା କରଯାଏ ତାହା ବର୍ଣ୍ଣନା କର ।

୫ । ବିଲୋପସାଧନ ଘଟିଲେ ଅଂଶୀଦାରୀ ବ୍ୟବସାୟର ଲଭ୍ୟ ଅର୍ଥର କେଉଁ କ୍ରମରେ ଉପଯୋଗ କରାଯାଏ ? ବିଲୋପସାଧନର ପର୍ଯ୍ୟାୟଗୁଡ଼ିକ ବର୍ଣ୍ଣନା କର ।

୬ । କ, ଖ ଓ ଗ ଗୋଟିଏ ଅଂଶୀଦାରୀ କାରବାରର ସମାନ ଅଂଶୀଦାର ଥିଲେ । ସେମାନେ ୧୯୭୫ ମସିହା ଡିସେମ୍ବର ୩୧ ତାରିଖରେ ବ୍ୟବସାୟର ବିଲୋପସାଧନ କରିବାକୁ ନିଷ୍ପତ୍ତି ଗ୍ରହଣ କଲେ । ସେହି ତାରିଖରେ ତାଙ୍କ ବ୍ୟବସାୟର ଉଦ୍ବୃତ୍ତ ପତ୍ର ନିମ୍ନ ପ୍ରକାର ଥିଲ ।

| ଦାୟ | | ଟଙ୍କା | ସମ୍ପତ୍ତି | ଟଙ୍କା |
|---|---|---|---|---|
| ମୂଳଧନ ହିସାବ : | | | ସ୍ଥିରଧାନ ଭୂସମ୍ପତ୍ତି | ୫,୦୦୦ |
| | ଟଙ୍କା | | ଆସବାବ୍ | ୧,୫୦୦ |
| କ | ୪,୦୦୦ | | ବିବିଧ ଖାତକ | ୩,୮୦୦ |
| ଖ | ୩,୦୦୦ | | ମହଜୁଦ୍ ପଣ୍ୟ | ୧,୨୦୦ |
| ଗ | ୨,୦୦୦ | ୯,୦୦୦ | | |
| ବିବିଧ ମହାଜନ | | ୩,୦୦୦ | ନଗଦ ତହବିଲ | ୫୦୦ |
| | | ୧୨,୦୦୦ | | ୧୨,୦୦୦ |

ଭୂ-ସମ୍ପତ୍ତି ଟ ୮,୦୦୦ ରେ ବିକ୍ରିତ ହେଲା । ଆସବାବ୍ ବହି ମୂଲ୍ୟର ଶତକଡ଼ା ୨ ଊଣାରେ ବିକ୍ରି ହେଲା । ବିବିଧ ଖାତକଙ୍କ ମଧ୍ୟରୁ ଟ ୩୦୦ ଅନାଦାୟୀ ଋଣ ହୋଇଥିଲା ଓ ମହଜୁଦ ପଣ୍ୟ ଟ ୧,୦୦୦ରେ ବିକ୍ରି ହେଲା । ଆଦାୟକରଣରେ ଟ ୧୦୦ ଖର୍ଚ୍ଚ ହେଲା । ବିବିଧ ମହାଜନ ଶତକଡ଼ା ୫ ବଟା ଦେବାକୁ ସ୍ୱୀକୃତ ହେଲେ ।

ଅଂଶୀଦାରୀ ବ୍ୟବସାୟର ହିସାବଗୁଡ଼ିକ ବନ୍ଦ କର ।

( ଉତ୍ତର : ଆଦାୟକରଣ ଲଭ ଟ ୨,୨୫୦ । କ, ଖ ଓ ଗ ଯଥାକ୍ରମେ ଟ ୪,୭୫୦, ଟ ୩,୭୫୦ ଓ ଟ ୨,୭୫୦ ବ୍ୟବସାୟରୁ ନଗଦ ପାଇଲେ । )

୭ । ଯଦୁ, ମଧୁ ଓ ସାଧୁ ଗୋଟିଏ ଅଂଶୀଦାରୀ ବ୍ୟବସାୟର ଅଂଶୀଦାର ରୂପେ ଲଭ ଓ କ୍ଷତିକୁ ୩ : ୨ : ୧ ଅନୁପାତରେ ବଣ୍ଟନ କରୁଥିଲେ । ୧୯୭୫ ମସିହା ଜୁନ୍ ୩୦ ତାରିଖରେ ସେମାନେ ବ୍ୟବସାୟର ବିଲୋପସାଧନ କରିବାକୁ ସ୍ଥିର କଲେ । ତାଙ୍କ ବ୍ୟବସାୟର ଉକ୍ତ ତାରିଖର ଉଦ୍ବୃତ୍ତ ପତ୍ର ନିମ୍ନରେ ପ୍ରଦତ୍ତ ହେଲା ।

| ଦାୟ | ଟଙ୍କା | ସମ୍ପତ୍ତି | ଟଙ୍କା |
|---|---|---|---|
| ବିବିଧ ମହାଜନ | ୧୨,୩୪୦ | ନଗଦ ତହବିଲ | ୪୪୦ |
| ମୂଳଧନ ହିସାବ : | | ବିବିଧ ଖାତକ | ୧୨,୭୦୦ |
| ଯଦୁ | ୧୨,୦୦୦ | ମହଜୁଦ ପଣ୍ୟ | ୧୧,୩୦୦ |
| ମଧୁ | ୯,୦୦୦ | ଆସବାବ୍ | ୩,୦୦୦ |
| ସାଧୁ | ୭,୦୦୦ | ଯନ୍ତ୍ର | ୧୨,୦୦୦ |
| | ୩୯,୩୪୦ | | ୩୯,୩୪୦ |

ବିବିଧ ଖାତକ ପରିମାଣରୁ ଶତକଡ଼ା ୫ ଅସବାବ ଓ ଯନ୍ତ୍ର ପରିମାଣରୁ ଶତକଡ଼ା ୧୦ ଊଣା ଆଦାୟ ହୋଇଥିଲା । ମହଜୁଦ ପଣ୍ୟ ଟ ୧୦,୭୦୦ରେ ବିକ୍ରି ହୋଇଥିଲା । ବିବିଧ ମହାଜନଙ୍କୁ ପୁରା ଟଙ୍କା ଦେବାକୁ ହୋଇଥିଲା । ବିଲୋପସାଧନ ସକାଶେ ମୋଟ ଖର୍ଚ୍ଚର ପରିମାଣ ଟ ୨୨। ଥିଲା ।

ଅଂଶୀଦାରି ବ୍ୟବସାୟର ହିସାବଗୁଡ଼ିକ ବନ୍ଦ କର ।

(ଉତ୍ତର : ଆଦାୟକରଣ କ୍ଷତି ଟ ୨,୯୫୮ । ଅଂଶୀଦାରି ବ୍ୟବସାୟରୁ ହିସାବ ଚୁକ୍ତି ହେବା ପରେ ଯଦୁ ଟ ୧୦,୫୨୧, ମଧୁ ଟ୮,୦୧୪ ଓ ସାଧୁ ଟ ୫,୫୦୭ ପାଇଲେ ।)

୮ । ସୁରେଶ ଓ ବରେନ ଗୋଟିଏ ଅଂଶୀଦାରି ବ୍ୟବସାୟର ଅଂଶୀଦାର ରୂପେ ଲାଭ ଓ କ୍ଷତିରୁ ଯଥାକ୍ରମେ $\frac{2}{3}$ ଅଂଶ ଓ $\frac{1}{3}$ ଅଂଶ ଭୋଗ କରୁଥିଲେ । ୧୯୬୮ ମସିହା ମାର୍ଚ୍ଚ ୩୧ ତାରିଖରେ ସେମାନେ ଅଂଶୀଦାରି ବ୍ୟବସାୟର ବିଲୋପସାଧନ କରିବାକୁ ସ୍ୱୀକୃତ ହେଲେ । ଉକ୍ତ ତାରିଖରେ ତାଙ୍କର ଖତିୟାନ ହିସାବଗୁଡ଼ିକର ବାକି ନିମ୍ନ ରୂପ ଥିଲା :

ବନଯୋଗ ଟ ୧୯,୦୦୦; ଆସବାବ୍‌ପତ୍ର ଟ୫,୪୦୦; ସୁନାମ ଟ ୨୦,୦୦୦; ବ୍ୟାଙ୍କ୍ ଅଧିବିତାଣ ଟ ୭,୭୦୦; ୩୧-୩-୬୮ ତାରିଖର ମହଜୁଦ୍ ପଣ୍ୟ ଟ ୩୨,୦୦୦; ବିବିଧ ଖାତକ ଟ ୨୦,୨୦୦; ବିବଧ ମହାଜନ ଟ ୨୯,୪୦୦; ସୁରେଶଙ୍କର ମୂଳଧନ ଟ ୪୦,୦୦୦ ଓ ବରେନଙ୍କର ମୂଳଧନ ଟ ୨୦,୦୦୦ ।

ସେମାନେ ବିବିଧ ଖାତକ ପରିମାଣରୁ ଟ ୧୮,୩୦୦ ଏବଂ ମହଜୁଦ୍ ପଣ୍ୟ ପରିମାଣର ଶତକଡ଼ା ୭୫ ଆଦାୟ କରିପାରିଥିଲେ । ଆସବାବ୍‌ପତ୍ର ଟ ୭,୦୦୦ ବିକ୍ରି ହୋଇଥିଲା, କିନ୍ତୁ ସୁନାମ ବାବଦ କିଛି ଅର୍ଥ ମିଳିଲା ନାହିଁ । ସୁରେଶ ବନଯୋଗକୁ ଟ ୨୧,୦୦୦ରେ କ୍ରୟ କଲେ ।

ଅଂଶୀଦାରି ବ୍ୟବସାୟର ହିସାବଗୁଡ଼ିକ ବନ୍ଦ କର ।

[ C U Three-year Degree Course, B. Com., 1968 ପ୍ରଶ୍ନପତ୍ରରୁ ଗୃହୀତ ]

( ଉତ୍ତର : ଆଦାୟକରଣ କ୍ଷତି : ସୁରେଶ ଟ ୧୬,୮୦୦; ବରେନ ଟ ୮,୯୦୦; ସୁରେଶଙ୍କୁ ଟ ୧,୨୦୦ ଓ ବରେନଙ୍କୁ ଟ ୧୧,୧୦୦ ଦିଆଯାଇ ତାଙ୍କ ହିସାବ ନିକାଶ କରାଗଲା ।

୯ । ଜୟନ୍ତ, ହେମନ୍ତ ଓ ଶ୍ରୀମନ୍ତ ଗୋଟିଏ ଅଂଶୀଦାରୀ ବ୍ୟବସାୟର ଅଂଶୀଦାର ରୂପେ ଲାଭ ଓ କ୍ଷତିର ଯଥାକ୍ରମେ ଶତକଡ଼ା ୫୦, ୩୦ ଓ ୨୦ ଅଂଶ ଭୋଗ କରୁଥିଲେ । ସେମାନେ ୧୯୭୫ ମସିହା ମାର୍ଚ୍ଚ ୩୧ ତାରିଖରେ ଅଂଶୀଦାରୀ ବ୍ୟବସାୟର ବିଲୋପ-ସାଧନ କରିବାକୁ ସ୍ଥିର କଲେ । ସେହି ତାରିଖରେ ତାଙ୍କର ଉଦ୍‌ବୃତ୍ତ ପତ୍ର ନିମ୍ନ ପ୍ରକାର ଥିଲା ।

| ଦାୟ | | ଟଙ୍କା | ସମ୍ପତ୍ତି | ଟଙ୍କା |
|---|---|---|---|---|
| ବିବିଧ ମହାଜନ | | ୮,୫୦୦ | ଭୂ-ସମ୍ପତ୍ତି | ୩୦,୦୦୦ |
| ବ୍ୟାଙ୍କ୍ ଅଧି-ଉଠାଣ | | ୫,୦୦୦ | ଯନ୍ତ୍ର | ୨୦,୦୦୦ |
| ମୂଳଧନ ହିସାବ : | | | ମହଜୁଦ ପଣ୍ୟ | ୧୫,୦୦୦ |
| ଜୟନ୍ତ | ଟ ୩୦,୦୦୦ | | ବିବିଧ ଖାତକ | ୧୨,୦୦୦ |
| ହେମନ୍ତ | ଟ ୨୦,୦୦୦ | | ନଗଦ ତହବିଲ | ୧,୫୦୦ |
| ଶ୍ରୀମନ୍ତ | ଟ ୧୫,୦୦୦ | ୬୫,୦୦୦ | | |
| | | ୭୮,୫୦୦ | | ୭୮,୫୦୦ |

ଜୟନ୍ତ ଭୂ-ସମ୍ପତ୍ତିକୁ ଟ ୨୦,୦୦୦ ମୂଲ୍ୟରେ ନେଲେ । ହେମନ୍ତ ମହଜୁଦ୍ ପଣ୍ୟକୁ ଟ ୧୨,୦୦୦ ମୂଲ୍ୟରେ କ୍ରୟ କଲେ ଓ ଶ୍ରୀମନ୍ତ ଶତକଡ଼ା ୧୦ ବଟାରେ ବିବିଧ ଖାତକ ପରିମାଣ ଆଦାୟ କରିବାର ଭାର ନେଲେ । ଯନ୍ତ୍ର ଟ ୨୫,୦୦୦ ମୂଲ୍ୟରେ ବିକ୍ରିତ ହେଲା । ବିଲୋପସାଧନର ବ୍ୟୟର ପରିମାଣ ଟ ୧,୩୦୦ ହୋଇଥିଲା ।

ଆଦାୟକରଣ ହିସାବ, ଅଂଶୀଦାରଙ୍କର ମୂଳଧନ ହିସାବ ଓ ନଗଦ ତହବିଲ ହିସାବ ପ୍ରସ୍ତୁତ କର ।

( ଉତ୍ତର : ଆଦାୟକରଣ କ୍ଷତି : ଜୟନ୍ତ ଟ ୫,୨୫୦; ହେମନ୍ତ ଟ ୩,୧୫୦ ଓ ଶ୍ରୀମନ୍ତ ଟ ୨,୧୦୦ । ଅଂଶୀଦାରମାନେ ବ୍ୟବସାୟରୁ ନଗଦ ପାଇଲେ ଜୟନ୍ତ ଟ ୪,୭୫୦; ହେମନ୍ତ ଟ ୪,୮୫୦ ଓ ଶ୍ରୀମନ୍ତ ଟ ୨,୧୦୦ ।)

୧୦ । କ, ଖ ଓ ଗ ଗୋଟିଏ ଅଂଶୀଦାରୀ କାରବାରର ଅଂଶୀଦାର ରୂପେ ଲାଭ ଓ କ୍ଷତିକୁ ୩:୧:୧ ଅନୁପାତରେ ବଣ୍ଟନ କରୁଥିଲେ । ୧୯୭୩ ମସିହା ଡିସେମ୍ବର ୩୧ ତାରିଖରେ ବ୍ୟବସାୟର ଆର୍ଥିକ ଅବସ୍ଥା ନିମ୍ନରେ ପ୍ରଦତ୍ତ ହେଲା :

| | ଟଙ୍କା | | ଟଙ୍କା |
|---|---|---|---|
| ବିବିଧ ମହାଜନ | ୧୫,୪୦୦ | ବ୍ୟାଙ୍କରେ ଗଚ୍ଛିତ ତହବିଲ | ୩,୫୦୦ |
| ଦେୟ ହୁଣ୍ଡି | ୩,୬୦୦ | ମହଜୁଦ୍ ପଣ୍ୟ | ୧୯,୮୦୦ |
| କ ଙ୍କର ଋଣ ହିସାବ | ୧୦,୦୦୦ | ବିବିଧ ଖାତକ | ୧୫,୦୦୦ |
| ଅନାଦାୟୀ ଋଣ ସଞ୍ଚିତ | ୧,୦୦୦ | ଯୌଥ ଜୀବନବୀମା ପତ୍ର | ୪,୦୦୦ |
| ମୂଳଧନ ହିସାବ : | | ଯନ୍ତ୍ର ଓ ଯନ୍ତ୍ର | ୪୩,୭୦୦ |
| କ | ୨୦,୦୦୦ | | |
| ଖ | ୧୬,୦୦୦ | | |
| ଗ | ୮,୦୦୦ | | |
| ସଞ୍ଚିତ ପାଣ୍ଠି | ୧୨,୦୦୦ | | |
| | ୮୬,୦୦୦ | | ୮୬,୦୦୦ |

୧୯୭୪ ମସିହା ଜାନୁୟାରୀ ୧ ତାରିଖରେ ଅଂଶୀଦାରୀ ବ୍ୟବସାୟର ବିଲୋପସାଧନ କରାଗଲା । କ ଯୌଥ ଜୀବନବୀମା ପତ୍ରକୁ ଟ ୫,୦୦୦ ରେ ଗ୍ରହଣ କଲେ । ମହଜୁଦ୍ ପଣ୍ୟ ବାବଦ ଟ ୧୮,୦୦୦ ଆଦାୟ ହେଲା । ଖାତକମାନଙ୍କଠାରୁ ଟ ୧୪,୬୦୦ ଆଦାୟ ହେଲା । ଯନ୍ତ୍ର ଓ ଯନ୍ତ୍ର ଟ ୩୬,୦୦୦ ମୂଲ୍ୟରେ ବର୍ଜିତ ହେଲା । ଟ ୬୦୦ ପରିମାଣର ଗୋଟିଏ ପ୍ରାପ୍ୟ ହୁଣ୍ଡି ଯାହାକୁ ବଟ୍ଟା ଦେଇ ବ୍ୟାଙ୍କରେ ଭଙ୍ଗାଇ ଦିଆଯାଇଥିଲା ତାହା ଅସମ୍ମାନିତ ହେବାରୁ ଅଂଶୀଦାରୀ ବ୍ୟବସାୟକୁ ହୁଣ୍ଡି ବାବଦ ଟଙ୍କା ଦେବାକୁ ହୋଇଥିଲା । ବ୍ୟବସାୟର ହିସାବଗୁଡ଼ିକ ବନ୍ଦ କର ।

[ MEF Accountancy 1974 (S) ପ୍ରଶ୍ନ ପତ୍ରରୁ ଗୃହୀତ ]

(ଉତ୍ତର : ଅଦାୟୀକରଣ କ୍ଷତି ଟ ୮,୬୦୦; ଅଂଶୀଦାରମାନେ ଫେରି ପାଇଲେ— କ (ଋଣ ସମେତ) ଟ ୨୭,୬୦୦; ଖ ଟ ୧୬,୧୩୩.୩୩ ପଇସା ଓ ଗ ଟ ୮,୫୬୬.୬୭ ପଇସା)

୧୧ । କ, ଖ ଓ ଗ ଗୋଟିଏ ଅଂଶୀଦାରୀ ବ୍ୟବସାୟର ଅଂଶୀଦାର ରୂପେ ଲାଭ ଓ କ୍ଷତିର ଯଥାକ୍ରମେ $\frac{1}{2}$, $\frac{1}{3}$ ଓ $\frac{1}{6}$ ଅଂଶ ଭୋଗ କରୁଥିଲେ । ସେମାନେ ଅଂଶୀଦାରୀ

କାରବାରର ଅବସାନ ଘଟାଇବାକୁ ସ୍ଥିର କରି ୧୯୫୪ ମସିହା ଅକ୍ଟୋବର ୧ ତାରିଖରେ ଅଂଶୀଦାରୀ ବ୍ୟବସାୟର ବିଲୋପସାଧନ କଲେ । ଉକ୍ତ ତାରିଖରେ ଅଂଶୀଦାରୀ ବ୍ୟବସାୟର ଉଦ୍‌ବୃତ୍ତ ପତ୍ର ନିମ୍ନ ପ୍ରକାର ଥିଲା ।

| ଦାୟ | | ଟଙ୍କା | ସମ୍ପତ୍ତି | ଟଙ୍କା |
|---|---|---|---|---|
| ମୂଳଧନ : | | | ଗୃହ ଓ ତତ୍ ସଂଲଗ୍ନ ଭୂମି | ୨୫,୬୫୦ |
| କ | ଟ ୨୦,୦୦୦ | | ଯନ୍ତ୍ର | ୧୦,୮୦୦ |
| ଖ | ଟ ୧୨,୦୦୦ | ୩୨,୦୦୦ | ମହଜୁଦ୍ ପଣ୍ୟ | ୮,୪୨୦ |
| ଉପାର୍ଜିତ ସଞ୍ଚିତ | | ୬,୦୦୦ | ବିବିଧ ଖାତକ | ୧୫,୮୩୦ |
| ବିବିଧ ମହାଜନ | | ୨୦,୨୬୦ | ପ୍ରାପ୍ୟ ହୁଣ୍ଡି | ୮୫୦ |
| ବ୍ୟାଙ୍କ୍ ଋଣ | | ୫,୧୨୦ | ଗ ଙ୍କର ହିସାବ | ୧,୨୫୦ |
| | | | ବ୍ୟାଙ୍କ୍‌ରେ ଗଚ୍ଛିତ ତହବିଲ | ୫୮୦ |
| | | ୬୩,୩୮୦ | | ୬୩,୩୮୦ |

ସମ୍ପତ୍ତିଗୁଡ଼ିକରୁ ନିମ୍ନଲିଖିତ ଅର୍ଥ ଆଦାୟ ହୋଇଥିଲା : ଗୃହ ଓ ତତ୍‌ସଂଲଗ୍ନ ଭୂମି ଟ ୧୫,୫୦୦; ଯନ୍ତ୍ର ଟ ୮,୦୦୦; ମହଜୁଦ୍ ପଣ୍ୟ ଟ ୯,୩୦୦, ବିବିଧ ଖାତକ ଟ ୧୪,୬୩୦; ପ୍ରାପ୍ୟ ହୁଣ୍ଡି ଟ ୮୫୦ । ବ୍ୟବସାୟର ସୁନାମ ଟ ୨,୫୦୦ ମୂଲ୍ୟରେ ବିକ୍ରିତ ହୋଇଥିଲା ।

ବିବିଧ ମହାଜନଙ୍କୁ ତାଙ୍କର ପ୍ରାପ୍ୟ ପରିଶୋଧ କରିବା ସମୟରେ ସେମାନେ ବଟା ବାବଦ ଟ ୩୨୦ ଛାଡ଼ିଲେ । ଆଦାୟୀକରଣରେ ଟ ୪୫୦ ଖର୍ଚ୍ଚ ହୋଇଥିଲା ।

ବିଲୋପସାଧନ କାଳରେ କ୍ଷତିପୂରଣ ବାବଦ ଟ. ୧୦,୦୦୦ ସକାଶେ ବ୍ୟବସ୍ଥା ଥିବା ଗୋଟିଏ ଦାୟ ଟ ୧୨,୦୦୦ରେ ମୀମାଂସିତ ହେଲା । ବ୍ୟବସାୟର ଖାତାରେ ଏହା ଲିପିବଦ୍ଧ କରାହୋଇ ନ ଥିଲା । ଆଦାୟୀକରଣର ଫଳାଫଳ ଦର୍ଶାଇବା ସକାଶେ ଆବଶ୍ୟକ ହିସାବସମୂହ ପ୍ରସ୍ତୁତ କର ଏବଂ ଅଂଶୀଦାରମାନଙ୍କ ମଧ୍ୟରେ ଅର୍ଥ କିପରି ବଣ୍ଟିତ ହେଲା ତାହା ମଧ୍ୟ ଦର୍ଶାଅ ।

[ C. A. First Nov. 1954 ର ପ୍ରଶ୍ନ ପତ୍ରରୁ ଗୃହୀତ ]

(ଉତ୍ତର : ଆଦାୟୀକରଣ କ୍ଷତି ଟ ୨୨,୯୦୦; ଗ ଟ ୫,୦୬୭ ଟଙ୍କା ଆଣିଲେ, କ ଓ ଖ ଯଥାକ୍ରମେ ଟ ୧୧,୫୫୦ ଓ ଟ ୭,୩୬୭ ପାଇଲେ । )

୧୨ । କ, ଖ ଓ ଗ ଗୋଟିଏ ଅଂଶୀଦାରୀ ବ୍ୟବସାୟର ଅଂଶୀଦାର ରୂପେ ଲାଭ ଓ କ୍ଷତିକୁ ୨ : ୧ : ୧ ଅନୁପାତରେ ବଣ୍ଟନ କରୁଥିଲେ । ୧୯୬୪ ମସିହା ଅପ୍ରେଲ ୧

ତାରଖରେ ସେମାନେ ତାଙ୍କ ଅଂଶୀଦାରୀ ବ୍ୟବସାୟର ବିଲୋପସାଧନ କରିବାକୁ ସ୍ଥିର କଲେ । ଉକ୍ତ ତାରିଖରେ ତାଙ୍କ ବ୍ୟବସାୟର ଉଦ୍‌ବୃତ୍ତ ପତ୍ର ନିମ୍ନରେ ପ୍ରଦତ୍ତ ହେଲା ।

ବିଲୋପସାଧନ ସମୟରେ ଗ ଦେବାଳିଆ ଘୋଷିତ ହେଲେ ଓ ତାଙ୍କ ଘରୋଇ ସମ୍ପତ୍ତିରୁ କୌଣସି ଅର୍ଥ ମିଳି ନ ଥିଲା ।

ଉଦ୍‌ବୃତ୍ତ ପତ୍ର

| ଦାୟ | | | ଟଙ୍କା | ସମ୍ପତ୍ତି | ଟଙ୍କା |
|---|---|---|---|---|---|
| ବିବିଧ ମହାଜନ | | | ୬,୮୦୦ | ନଗଦ ତହବିଲ | ୫୦୦ |
| ବ୍ୟାଙ୍କ୍ ଋଣ | | | ୫,୦୦୦ | ବିବିଧ ଖାତକ | ୮,୦୦୦ |
| ମୂଳଧନ ହିସାବ | | | | ମହଜୁଦ ପଣ୍ୟ | ୬,୩୦୦ |
| କ | ଟ | ୮,୦୦୦ | | ଯନ୍ତ୍ର | ୯,୦୦୦ |
| ଖ | ଟ | ୪,୦୦୦ | ୧୨,୦୦୦ | ସୁନାମ | ୩,୦୦୦ |
| ସାଧାରଣ ସଞ୍ଚିତ | | | ୬,୦୦୦ | ଗ ଙ୍କର ହିସାବ | ୨,୦୦୦ |
| | | | ୨୯,୮୦୦ | | ୨୯,୮୦୦ |

ସମ୍ପତ୍ତିଗୁଡ଼ିକରୁ ନିମ୍ନଲିଖିତ ପରିମାଣର ଅର୍ଥ ଆଦାୟ ହୋଇଥିଲା : ବିବିଧ ଖାତକ ଟ ୭,୦୦୦; ମହଜୁଦ୍ ପଣ୍ୟ ଟ ୭,୦୩୦; ଓ ଯନ୍ତ୍ର ଟ ୭,୯୦୦ । ସୁନାମ ବାବଦ କୌଣସି ଅର୍ଥ ମିଳିଲା ନାହିଁ । ଆଦାୟକରଣ ସକାଶେ ଟ ୨୩୦ ଖର୍ଚ୍ଚ ହୋଇଥିଲା । ବ୍ୟବସାୟର ହିସାବଗୁଡ଼ିକ ବନ୍ଦ କର ।

(ଉତ୍ତର : ଆଦାୟକରଣ କ୍ଷତି ଟ ୭,୬୦୦; କ ଓ ଖ ବ୍ୟବସାୟରୁ ଯଥାକ୍ରମେ ଟ ୫,୬୦୦ ଓ ଟ ୨,୮୦୦ ।)

୧୩ । ନିମ୍ନରେ ଗୋଟିଏ ଅଂଶୀଦାରୀ ବ୍ୟବସାୟର ୧୯୭୦ ମସିହା ଡିସେମ୍ବର ୩୧ ତାରିଖରେ ଉଦ୍‌ବୃତ୍ତ ପତ୍ର ପ୍ରଦତ୍ତ ହେଲା । ଏହି ବ୍ୟବସାୟରେ ଅଂଶୀଦାରୀ ଚୁକ୍ତି ଅନୁଯାୟୀ ଅଂଶୀଦାରମାନଙ୍କର ମୂଳଧନ ପରିମାଣ ସ୍ଥିର ଅଛି ଓ ଅଂଶୀଦାରମାନେ ଲାଭ ଓ କ୍ଷତିକୁ ସମପରିମାଣରେ ଭୋଗ କରନ୍ତି । ଗତ ଦୁଇ ବର୍ଷରେ ଉପର୍ଯ୍ୟୁପରି ଅତ୍ୟଧିକ ପରିମାଣରେ କ୍ଷତି ଉପୁଜି ଥିବାରୁ ସେମାନେ ବ୍ୟବସାୟର ବିଲୋପସାଧନ କରିବାକୁ ନିଷ୍ପତ୍ତି ଗ୍ରହଣ କଲେ । ବ୍ୟାଙ୍କ୍‌ରେ ଗଚ୍ଛିତ ତହବିଲ ବ୍ୟତୀତ ଅନ୍ୟାନ୍ୟ ସମ୍ପତ୍ତିରୁ ନିଟ୍ ଟ୨,୨୭,୮୮୦ ଆଦାୟ ହୋଇଥିଲା । ଗ ଦେବାଳିଆ ଘୋଷିତ ହୋଇଛନ୍ତି । ଚୂଡ଼ାନ୍ତ ଆଦାୟକରଣ ଓ ଅଂଶୀଦାରମାନଙ୍କ ମଧ୍ୟରେ ଅର୍ଥର ବଣ୍ଟନ ଦର୍ଶାଅ ।

| ମୂଳଧନ ଓ ଦାୟ | | ଟଙ୍କା | ଭୂତ ଅନ୍ୟାନ୍ୟ ସମ୍ପତ୍ତି | | ଟଙ୍କା |
|---|---|---|---|---|---|
| ମହାଜନ | | ୧,୦୨,୪୦୦ | ବ୍ୟାଙ୍କରେ ଗଚ୍ଛିତ ତହବିଲ | | ୫,୫୦୦ |
| ଋଣ | କ | ୩୦,୦୦୦ | ଖାତକ | | ୯୬,୦୬୦ |
| | ଖ | ୧୨,୦୦୦ | ମହଜୁଦ୍ ପଣ୍ୟ | | ୬୪,୦୦୦ |
| ଚଳନ୍ତି ହିସାବ | କ | ୨୧,୨୦୦ | ଯନ୍ତ୍ର | | ୮୮,୭୦୦ |
| | ଖ | ୨,୫୦୦ | ଭୂମି ଓ ଭବନ | | ୮୪,୦୦୦ |
| ମୂଳଧନ ହିସାବ | କ | ୭୦,୦୦୦ | ଚଳନ୍ତି ହିସାବ | ଗ | ୯,୯୪୦ |
| | ଖ | ୪୦,୦୦୦ | | | |
| | ଗ | ୨୦,୦୦୦ | | | |
| | | ୨,୮୮,୧୦୦ | | | ୨,୮୮,୧୦୦ |

[ B. U. B. Com. Hons 1973 (S) ପ୍ରଶ୍ନ ପତ୍ରରୁ ଗୃହୀତ ]

( ଉତ୍ତର : ଆଦାୟ କରଣ କ୍ଷତି ଟ ୪୫,୭୮୦; କ ଓ ଖ ବ୍ୟବସାୟରୁ ଯଥାକ୍ରମେ ଟ୬୨,୮୨୦ ଓ ଟ ୨୫,୧୬୦ ।)

୧୪ । କ, ଖ ଓ ଗ ଗୋଟିଏ ଅଂଶୀଦାରୀ କାରବାରର ଅଂଶୀଦାର ରୂପେ ଲାଭ ଓ କ୍ଷତିକୁ ଯଥାକ୍ରମେ $\frac{3}{8}$, $\frac{3}{10}$ ଓ $\frac{1}{2}$ ଅନୁପାତରେ ଭୋଗ କରୁଥିଲେ । ସେମାନଙ୍କର ୧୯୭୨ ମସିହା ଜୁନ୍ ୩୦ ତାରିଖର ଉଦ୍‌ବୃତ୍ତ ପତ୍ର ନିମ୍ନରେ ପ୍ରଦତ୍ତ ହେଲା । ସେହି ତାରିଖରେ ସେମାନେ ବ୍ୟବସାୟର ବିଲୋପସାଧନ କରିବାକୁ ସ୍ଥିର କଲେ ।

| | ଟଙ୍କା | | ଟଙ୍କା |
|---|---|---|---|
| କ ଙ୍କର ମୂଳଧନ | ୩,୦୦୦ | ନଗଦ ତହବିଲ | ୧,୦୦୦ |
| ଖ ଙ୍କର ମୂଳଧନ | ୪,୦୦୦ | ସଂଯନ୍ତ୍ର ଓ ଯନ୍ତ୍ର | ୫,୦୦୦ |
| ଗ ଙ୍କର ମୂଳଧନ | ୩,୦୦୦ | ବିବିଧ ଖାତକ | ୨୦,୦୦୦ |
| ବ୍ୟବସାୟିକ ମହାଜନ | ୧୨,୦୦୦ | କ ଙ୍କୁ ଦିଆଯାଇଥିବା ଋଣ | ୨,୦୦୦ |
| ଖାତକ, ସଂଯନ୍ତ୍ର ପ୍ରଭୃତି ବନ୍ଧକ ରଖି ବ୍ୟାଙ୍କରୁ ଅଣିଥିବା ଋଣ | ୧୪,୦୦୦ | ଅଦ୍ୟାବଧିକ କ୍ଷତି | ୮,୦୦୦ |
| | ୩୬,୦୦୦ | | ୩୬,୦୦୦ |

ସମ୍ପତ୍ତିରୁ ଟ ୨୦,୦୦୦ ଆଦାୟ ହୋଇଥିଲା । କ ଙ୍କର ଘରୋଇ ସମ୍ପତ୍ତିର ମୂଲ୍ୟ ଟ ୪,୦୦୦ । ଖ ଦେବାଳିଆ ଘୋଷିତ ହୋଇଛନ୍ତି । ଗ ଙ୍କର ଘରୋଇ ସମ୍ପତ୍ତିରୁ ଟଙ୍କା ପ୍ରତି ୫୦ ପଇସା ମିଳିଲା ।

ବିଲୋପସାଧନ ସଂକ୍ରାନ୍ତ ସମସ୍ତ ପ୍ରବିଷ୍ଟି ଆଦାୟ କରଣ ହିସାବ ଜରିଆରେ ଲିପିବଦ୍ଧ କରାଯାଏ, ଏହା ଅନୁମାନ କରି ଆଦାୟ କରଣ ହିସାବ ଓ ଅଂଶୀଦାରଙ୍କର ମୂଳଧନ ହିସାବ ଦର୍ଶାଅ ।

(Berhampur University B. Com.—1974)

ପରୀକ୍ଷା ପ୍ରଶ୍ନ ପତ୍ରରୁ ଗୃହୀତ । (ଉତ୍ତର : ଆଦାୟକରଣ କ୍ଷତି ଟ ୫,୦୦୦; କ ଟ ୩,୨୫୦ ଓ ଗ ଟ ୧,୭୫୦ ଘରୁ ଆଣିଲେ । ଗ ଙ୍କ ମୂଳଧନ ହିସାବର ଦାୟୀ ବାଳି ପୂରଣ କରିବା ପାଇଁ କ ଙ୍କୁ ଟ ୧,୭୫୦ ଓ ଖ ଙ୍କୁ ଟ ୧୦୦ ମୂଳଧନ ହିସାବରୁ ସ୍ଥାନାନ୍ତରଣ ଦ୍ୱାରା ଭରଣା କରିବାକୁ ପଡ଼ିଲା । )

୧୫। କ, ଖ ଓ ଗ ଗୋଟିଏ ଅଂଶୀଦାରୀ କାରବାରର ଅଂଶୀଦାର ରୂପେ ଲାଭ ହାନି ଓ କ୍ଷତିର ଯଥାକ୍ରମେ ଶତକଡ଼ା ୪୦, ୩୦ ଓ ୩୦ ଭୋଗ କରୁଥିଲେ । ସେମାନେ ବ୍ୟବସାୟର ବିଲୋପ ସାଧନ କରିବାକୁ ସ୍ଥିର କଲେ ଓ ସମ୍ପତ୍ତିଗୁଡ଼ିକର ଆଦାୟକରଣ ଓ ଓ ତାହାର ବଣ୍ଟନର ଭାର ଖ ଉପରେ ନ୍ୟସ୍ତ କଲେ । ଖ ଏଥି ସକାଶେ ତାଙ୍କର ପାରିଶ୍ରମିକ ସ୍ୱରୂପ ମହଜୁଦ୍ ପଣ୍ୟ ଓ ବିବିଧ ଖାତକଙ୍କଠାରୁ ଆଦାୟଲବ୍ଧ ଅର୍ଥର ଶତକଡ଼ା ୫ ପାଇବେ ଏବଂ ଆଦାୟକରଣର ସମସ୍ତ ବ୍ୟୟ ବହନ କରିବେ ।

ବ୍ୟବସାୟର ବିଲୋପସାଧନ ତାରିଖର ଉଦ୍‌ବର୍ତ୍ତ ପତ୍ର ନିମ୍ନରେ ପ୍ରଦତ୍ତ ହେଲା :

| ଦାୟ | ଟଙ୍କା | ଟଙ୍କା | ସମ୍ପତ୍ତି | ଟଙ୍କା | ଟଙ୍କା |
|---|---|---|---|---|---|
| ମହାଜନ | | ୫୯,୦୦୦ | ବ୍ୟାଙ୍କରେ ଗଚ୍ଛିତ | | |
| ମୂଳଧନ ହିସାବ : | | | ତହବିଲ | | ୧,୫୦୦ |
| କ | ୩୦,୦୦୦ | | ଖାତକ | ୪୫,୫୦୦ | |
| ଖ | ୨୦,୦୦୦ | ୫୦,୦୦୦ | ବାଦ୍ : ସଞ୍ଚିତ | ୨,୫୦୦ | ୪୩,୦୦୦ |
| | | | ମହଜୁଦ୍ ପଣ୍ୟ | | ୬୦,୦୦୦ |
| | | | ମୂଳଧନ ହିସାବ : | | |
| | | | ଗଙ୍କ ଦ୍ୱାରା ଅଧିକ | | |
| | | | ଉଠାଣ | | ୪,୫୦୦ |
| | | ୧,୦୯,୦୦୦ | | | ୧,୦୯,୦୦୦ |

| ଖ ଅଦାୟକରଣ ବାବଦ ନିମ୍ନଲିଖିତ ବିବୃତି ଦେଲେ : | ଟଙ୍କା |
|---|---|
| ଖାତକଙ୍କଠାରୁ ଅଦାୟ ହେଲା | ୩୫,୦୦୦ |
| ମହଜୁଦ୍ ପଣ୍ୟରୁ ଆଦାୟ ହେଲା | ୪୫,୦୦୦ |
| ସୁନାମ ବର୍ଜିତ ହେଲା | ୨,୦୦୦ |
| ମହାଜନଙ୍କୁ ଦିଆଗଲା ( ପୂର୍ଣ୍ଣ ପରିଶୋଧ ରୂପେ ) | ୫୭,୫୦୦ |
| ବକେୟା ଦାୟ ବାବଦ ଦିଆଗଲା | ୫୦୦ |

ଆଦାୟକରଣ ବାବଦ ଟ ୬୦୦ ଖର୍ଚ୍ଚ ହେଲା ଓ ଚୁକ୍ତି ଅନୁଯାୟୀ ଖ ଏହାକୁ ବ୍ୟକ୍ତିଗତ ଭାବରେ ବହନ କଲେ । କ ଓ ଖ ଗ ଙ୍କ ଠାରୁ ବ୍ୟବସାୟର ପ୍ରାପ୍ୟ ବାବଦ ପୂର୍ଣ୍ଣ ପରିଶୋଧ ରୂପେ ଟ ୩,୦୦୦ ନେବାକୁ ସ୍ୱୀକୃତ ହେଲେ । ବ୍ୟବସାୟର ମୂଳଧନ ହିସାବ ଓ ଅଦାୟକରଣ ହିସାବ ଦର୍ଶାଅ । (ଗାର୍ଣ୍ଣିର ବନାମ ମାରେ ସିଦ୍ଧାନ୍ତ ପ୍ରୟୋଗ କର । )

( C. U. B. Com. 1961 ପ୍ରଶ୍ନ ପତ୍ରରୁ ଗୃହୀତ )

(ଉତ୍ତର : ଆଦାୟକରଣ କ୍ଷତି ଟ ୨୪,୦୦୦; କ ଙ୍କୁ ଦିଆଗଲା ଟ ୨୪,୬୮୦ ଓ ଖ ଙ୍କୁ ଦିଆଗଲା ଟ ୧୯,୯୨୦—ଆଦାୟକରଣ କ୍ଷତି ପୂରଣ କରିବା ପାଇଁ କ ଓ ଖ ଆବଶ୍ୟକ ଅର୍ଥ ନଗଦ ଆଣିଥିଲେ ବୋଲି ଅନୁମାନ କର ।)

୧୬ । କ ଓ ଖ ଗୋଟିଏ ଅଂଶୀଦାରୀ ବ୍ୟବସାୟର ଅଂଶୀଦାର ଥାଇ ଲାଭ ଓ କ୍ଷତିକୁ ୩ : ୨ ଅନୁପାତରେ ବଣ୍ଟନ କରୁଥିଲେ । ତାଙ୍କ ବ୍ୟବସାୟର ୧୯୭୪ ମସିହା ଡିସେମ୍ବର ୩୧ ତାରିଖର ଉଦ୍‌ବୃତ୍ତ ପତ୍ର ନିମ୍ନରେ ପ୍ରଦତ୍ତ ହେଲା । ଅଂଶୀଦାରମାନେ ଉକ୍ତ ତାରିଖରେ ବ୍ୟବସାୟର ବିଲୋପସାଧନ କରିବାକୁ ସ୍ଥିର କଲେ । ଉଭୟ ଅଂଶୀଦାର ଦେବାଳିଆ ଘୋଷିତ ହେଲେ ।

| ଦାୟ | | ଟଙ୍କା | ସମ୍ପତ୍ତି | ଟଙ୍କା |
|---|---|---|---|---|
| ମୂଳଧନ : | | | ସୁନାମ | ୫,୦୦୦ |
| କ | ଟ ୬,୦୦୦ | | ଆସବାବ୍ | ୩,୦୦୦ |
| ଖ | ଟ ୪,୫୦୦ | ୧୦,୫୦୦ | ମହଜୁଦ୍ ପଣ୍ୟ | ୬,୨୦୦ |
| | | | ବିବିଧ ଖାତକ | ୩,୮୦୦ |
| ବିବିଧ ମହାଜନ | | ୮,୦୦୦ | ନଗଦ ତହବିଲ | ୫୦୦ |
| | | ୧୮,୫୦୦ | | ୧୮,୫୦୦ |

ନଗଦ ତହବିଲ ବ୍ୟତୀତ ଅନ୍ୟାନ୍ୟ ସମ୍ପତ୍ତି ଗୁଡ଼ିକରୁ ଟ ୫,୬୫୦ ଆଦାୟ ହୋଇଥିଲା ଓ ଟ ୧୫୦ ଆଦାୟକରଣ ଖର୍ଚ୍ଚ ହୋଇଥିଲା । ଅଂଶୀଦାରୀ ବ୍ୟବସାୟର ହିସାବଗୁଡ଼ିକ ବନ୍ଦ କର ।

( ଉତ୍ତର : ଆଦାୟକରଣ କ୍ଷତି : ଟ ୧୨,୫୦୦; ବିବିଧ ମହାଜନଙ୍କୁ ଟଙ୍କା ପ୍ରତି ୭୫ ପଇସା ହାରରେ ନଗଦ ଅର୍ଥ ଦେଇ ଦେଣା ପରିଶୋଧ କରାଗଲା ।)

୧୭ । ମାଧବ ଓ ମନସୁର ତାଙ୍କ ଅଂଶୀଦାରୀ ବ୍ୟବସାୟକୁ ଗୋଟିଏ ଲିମିଟେଡ୍ କମ୍ପାନୀକୁ ବିକ୍ରୟ କଲେ । ତାଙ୍କ ବ୍ୟବସାୟର ୧୯୫୪ ମସିହା ଡିସେମ୍ବର ୩୧ ତାରିଖର ଆର୍ଥିକ ଅବସ୍ଥା ନିମ୍ନରୂପ ଥିଲା :

| | ଟଙ୍କା |
|---|---|
| ନଗଦ ତହବିଲ | ୫୦୦ |
| ବିବିଧ ଖାତକ | ୩୫,୦୦୦ |
| ମହଜୁଦ୍ ପଣ୍ୟ | ୨୦,୦୦୦ |
| ସଂଯନ୍ତ୍ର ଓ ଯନ୍ତ୍ର | ୧୪,୫୦୦ |

ମୋଟ ଦାୟର ପରିମାଣ ଟ ୧୦,୦୦୦ ଥିଲା । ଅଂଶୀଦାର ଦୁହେଁ ଲାଭ ଓ କ୍ଷତିକୁ ୩ : ୨ ଅନୁପାତରେ ବଣ୍ଟନ କରୁଥିଲେ ଏବଂ ସେମାନଙ୍କର ମୂଳଧନର ପରିମାଣ ମଧ୍ୟ ଠିକ୍ ତାରିଖରେ ସେହି ଅନୁପାତରେ ଥିଲା । ନବଗଠିତ କମ୍ପାନୀ ନଗଦ ତହବିଲ ବ୍ୟତୀତ ଅନ୍ୟ ସମସ୍ତ ସମ୍ପତ୍ତି କ୍ରୟ କରିବାକୁ ଦାୟ ପରିଶୋଧ କରିବାକୁ ସ୍ୱୀକୃତ ହେଲେ ।

କମ୍ପାନୀର ମୂଳଧନ ପ୍ରତି ( ଅଗ୍ରାଧିକାର ) ଅଂଶ ଟ ୨୫ ହାରରେ ୧୦,୦୦୦ ଅଗ୍ରାଧିକାର ଅଂଶ ଓ ପ୍ରତି ( ସାଧାରଣ ) ଅଂଶ ଟ ୧୦ ହାରରେ ୨୫,୦୦୦ ସାଧାରଣ ଅଂଶଦ୍ୱାରା ଗଠିତ ହୋଇଥିଲା ।

ବ୍ୟବସାୟର କ୍ରୟମୂଲ୍ୟ ନିମ୍ନଲିଖିତ ଭିତ୍ତିରେ ସ୍ଥିରୀକୃତ ହୋଇଥିଲା :

| | ଟଙ୍କା |
|---|---|
| ବିବିଧ ଖାତକ | ୩୪,୫୦୦ |
| ମହଜୁଦ୍ ପଣ୍ୟ | ୧୯,୦୦୦ |
| ସଂଯନ୍ତ୍ର ଓ ଯନ୍ତ୍ର | ୧୪,୦୦୦ |

ଏବଂ ଏହି ପରିମାଣ ନିମ୍ନଲିଖିତ ରୂପେ ଦିଆଯିବ ବୋଲି ସ୍ଥିର ହୋଇଥିଲା :

(କ) ପୂର୍ଣ୍ଣ ପ୍ରଦତ୍ତ ( Fully paid up ) ୧,୦୦୦ ଅଗ୍ରାଧିକାର ଅଂଶ ।

(ଖ) ପୂର୍ଣ୍ଣ ପ୍ରଦତ୍ତ ୨,୦୦୦ ସାଧାରଣ ଅଂଶ ଓ

(ଗ) ଅବଶିଷ୍ଟ ପରିମାଣ ନଗଦ ତହବିଲ ଆକାରରେ ।

କମ୍ପାନୀ ଅବଶିଷ୍ଟ ଅଗ୍ରାଧିକାର ଅଂଶ ଓ ୧୫,୦୦୦ ସାଧାରଣ ଅଂଶକୁ ଜନସାଧାରଣଙ୍କୁ ବିକ୍ରୟ କରିଥିଲେ ଓ ସମସ୍ତଙ୍କଠାରୁ ଅଂଶ ବାବଦ ସମସ୍ତ ଅର୍ଥ ମିଳିଥିଲା ।

ତୁମକୁ ଅଂଶୀଦାରୀ ବ୍ୟବସାୟର ସମସ୍ତ ହିସାବ ବନ୍ଦ କରିବାକୁ ହେବ । (ମନେକର ଯେ ଅଂଶଗୁଡ଼ିକ ବ୍ୟବସାୟର ବିକ୍ରେତାଙ୍କୁ ଦିଆଯାଇଥିଲା ଓ ଅବଶିଷ୍ଟ ଦେୟ ଅର୍ଥ ନଗଦ ତହବିଲ ଆକାରରେ ଦିଆଗଲା ।)

(C. U. B. Com. 1956 ପ୍ରଶ୍ନ ପତ୍ରରୁ ଗୃହୀତ )

( ଉତ୍ତର : ଆଦାୟକରଣ କ୍ଷତି ଟ ୨,୦୦୦; କ୍ରୟ ମୂଲ୍ୟ ଟ ୫୭,୫୦୦; ମାଧବ ପାଇଲେ ସାଧାରଣ ଅଂଶ ଟ ୧୨,୦୦୦, ଅଗ୍ରାଧିକାର ଅଂଶ ଟ ୧୫,୦୦୦ ଓ ନଗଦ ତହବିଲ ଟ ୭,୮୦୦; ମନସୁର ପାଇଲେ ସାଧାରଣ ଅଂଶ ଟ ୮,୦୦୦; ଅଗ୍ରାଧିକାର ଅଂଶ ଟ ୧୦,୦୦୦ ଓ ନଗଦ ତହବିଲ ଟ ୫,୨୦୦ । )

୧୮ । କଟକ ଇନ୍‌ଭେଷ୍ଟମେଣ୍ଟ ଲିମିଟେଡ୍ ଆର୍. ଗୁମେଣୀ ଓ ପି. ରାଉତରାୟଙ୍କର ଅଂଶୀଦାରୀ ବ୍ୟବସାୟକୁ କ୍ରୟ କରି ଚଳାଇବା ଉଦ୍ଦେଶ୍ୟରେ ଗଠିତ ହୋଇଥିଲା । ଅଂଶୀଦାର ଦୁହେଁ ବ୍ୟବସାୟର ଲାଭ ଓ କ୍ଷତିର ଯଥାକ୍ରମେ $\frac{2}{3}$ ଓ $\frac{1}{3}$ ଅଂଶ ଭୋଗ କରୁଥିଲେ । ୧୯୭୯ ମସିହା ମାର୍ଚ୍ଚ ୩୧ ତାରିଖରେ ବ୍ୟବସାୟଟି ବିକ୍ରିତ ହୋଇଥିଲା । ବ୍ୟବସାୟର ସେହି ତାରିଖର ଉଦ୍‌ବୃତ୍ତ ପତ୍ର ନିମ୍ନରେ ପ୍ରଦତ୍ତ ହେଲା :

| | ଟଙ୍କା | | ଟଙ୍କା |
|---|---|---|---|
| ଦେୟ ହୁଣ୍ଡି | ୭,୦୦୦ | ଭୂମି ଓ ଭବନ | ୫୦,୦୦୦ |
| ବିବିଧ ମହାଜନ | ୧୫,୭୫୦ | ଯନ୍ତ୍ର | ୨୫,୦୦୦ |
| ଋଣ ହିସାବ | ୩,୫୦୦ | ମହଜୁଦ୍ ପଣ୍ୟ | ୨୦,୦୦୦ |
| ଚଳନ୍ତି ହିସାବ : | | ବିବିଧ ଖାତକ | ୧୮,୫୦୦ |
| ଆର୍. ଗୁମେଣୀ | ୧୯,୫୦୦ | ପ୍ରାପ୍ୟ ହୁଣ୍ଡି | ୭,୫୦୦ |
| ପି ରାଉତରାୟ | ୭,୫୦୦ | ବିନିଯୋଗ | ୫,୦୦୦ |
| ମୂଳଧନ ହିସାବ : | | ବ୍ୟାଙ୍କରେ ଗଚ୍ଛିତ | ୪,୫୦୦ |
| ଅର୍. ଗୁମେଣୀ | ୫୪,୦୦୦ | ନଗଦ ତହବିଲ | ୧,୭୫୦ |
| ପି. ରାଉତରାୟ | ୨୭,୦୦୦ | | |
| | ୧,୩୨,୨୫୦ | | ୧,୩୨,୨୫୦ |

କମ୍ପାନୀ ସଦ୍‌ନାମ୍ ସମେତ ବ୍ୟତୀତ ଅନ୍ୟ ସମସ୍ତ ସମ୍ପତ୍ତିକୁ ବହି ମୂଲ୍ୟରେ କ୍ରୟ କରିବାକୁ ସ୍ୱୀକୃତ ହେଲେ । କେବଳ ସଦ୍‌ନାମ୍ ସମେତ ଟ ୧୭,୫୦୦ ରେ ପୁନର୍ମୂଲ୍ୟାୟିତ ହେଲା । ବିନିଯୋଗକୁ ଅଂଶୀଦାରମାନେ ନିଜେ ରଖିଲେ ଓ ସେଗୁଡ଼ିକୁ ଟ ୪,୫୦୦ ମୂଲ୍ୟରେ କ୍ରୟ କଲେ । ଅଂଶୀଦାରମାନେ ବ୍ୟବସାୟର ଋଣ ପରିଶୋଧ କଲେ । ବ୍ୟବସାୟର ସୁନାମର ମୂଲ୍ୟ ଟ ୩୦,୦୦୦ ସ୍ଥିରୀକୃତ ହେଲା ।

କମ୍ପାନୀ ବ୍ୟବସାୟର କ୍ରୟ ମୂଲ୍ୟକୁ ପ୍ରତି ଅଂଶ ଟ ୧୦ ହାରରେ ୯,୦୦୦ ଅଂଶ ପତ୍ର ଓ ଅବଶିଷ୍ଟ ପରିମାଣ ନଗଦ ତହବିଲ ଆକାରରେ ଦେବାର ସ୍ଥିର ହେଲା ।

ଆବଶ୍ୟକ ଜାବ୍‌ଦା ଦର୍ଶାଇ ବ୍ୟବସାୟର ହିସାବ ବନ୍ଦ କର ।

[ Berhampur B. Com. (Hons), 19,3. ପ୍ରଶ୍ନ ପତ୍ରରୁ ଗୃହୀତ ]

( ଉତ୍ତର : ଆଦାୟକରଣ ଲାଭ ଟ ୨୭,୦୦୦; ବ୍ୟବସାୟର କ୍ରୟ ମୂଲ୍ୟ ଟ୧,୪୮,୫୦୦ ( ଅଂଶ ପ୍ରତି ଟ ୯୦,୦୦୦ ଓ ନଗଦ ତହବିଲ ଟ ୫୮,୫୦୦ ); ଆର୍. ଗୁଣମଣି ପାଇଲେ ଅଂଶ ପତ୍ର ଟ ୬୦,୦୦୦ ଓ ନଗଦ ତହବିଲ ଟ ୩୧,୫୦୦; ପି. ରାଉତରାୟ ପାଇଲେ ଅଂଶ ପତ୍ର ଟ ୩୦,୦୦୦ ଓ ନଗଦ ତହବିଲ ଟ ୧୬,୫୦୦ )

୧୯ । କ, ଖ ଓ ଗ ଗୋଟିଏ ଅଂଶୀଦାରୀ ବ୍ୟବସାୟରେ ଅଂଶୀଦାର ରୂପେ ଲାଭ ଓ କ୍ଷତିର ଯଥାକ୍ରମେ ୧/୨, ୧/୩ ଓ ୧/୬ ଅଂଶ ଭୋଗ କରୁଥିଲେ । ତାଙ୍କର ୧୯୭୭ ମସିହା ଡିସେମ୍ବର ୩୧ ତାରିଖର ଉଦ୍‌ବୃତ୍ତ ପତ୍ର ନିମ୍ନରେ ପ୍ରଦତ୍ତ ହେଲା :

| ଦାୟ | ଟଙ୍କା | ଟଙ୍କା | ସମ୍ପତ୍ତି | ଟଙ୍କା |
|---|---|---|---|---|
| ବିବିଧ ମହାଜନ | | ୩,୦୦୦ | ସୁନାମ | ୧୦,୦୦୦ |
| ମୂଳଧନ ହିସାବ : | | | ବିବିଧ ସମ୍ପତ୍ତି | ୧୨,୦୦୦ |
| କ | ୧୪,୦୦୦ | | ବ୍ୟାଙ୍କରେ ଗଚ୍ଛିତ | |
| ଖ | ୧୦,୦୦୦ | | ତହବିଲ | ୧୧,୦୦୦ |
| ଗ | ୬,୦୦୦ | ୩୦,୦୦୦ | | |
| | | ୩୩,୦୦୦ | | ୩୩,୦୦୦ |

୧୯୭୮ ମସିହା ଜାନୁଆରୀ ୧ ତାରିଖରେ ବ୍ୟବସାୟରେ ନିମ୍ନଲିଖିତ ପରିବର୍ତ୍ତନଗୁଡ଼ିକ ଘଟିଥିଲା :

(i) ଗ ବ୍ୟବସାୟରୁ ଅବସର ଗ୍ରହଣ କଲେ ଏବଂ ବ୍ୟବସାୟରେ ତାଙ୍କର ଅଂଶ ଟ୮,୦୦୦ ରୂପେ ମୂଲ୍ୟାଙ୍କିତ ହୋଇଥିଲା । କ ଓ ଖ ତାଙ୍କ ଅଂଶ କ୍ରୟ କଲେ ଓ ଘରୁ ଟଙ୍କା ଆଣି ଲାଭ-କ୍ଷତି ବଣ୍ଟନ ଅନୁପାତରେ ଗ ଙ୍କର ଅଂଶ ବାବଦ ଟଙ୍କା ପରିଶୋଧ କଲେ ।

(ii) ତତ୍ପରେ ଘ ଙ୍କୁ ଭବିଷ୍ୟତ୍ ଲାଭର ¼ ଅଂଶ ଦିଆଯାଇ ଏକ ନୂତନ ଅଂଶୀଦାର ରୂପେ ଗ୍ରହଣ କରାଗଲା । ଏହା ସର୍ତ୍ତ ରହିଲା ଯେ କ ଓ ଖ ଙ୍କର ମୂଳଧନ ହିସାବକୁ ତାଙ୍କର ପାରସ୍ପରିକ ଅନୁପାତରେ ଅଧିକା ଟ ୬,୦୦୦ ସକାଶେ ଦାତା କରାଯିବ ଏବଂ ସମସ୍ତ ସମାଯୋଜନ ପରେ କ ଓ ଖ ଙ୍କର ମୋଟ ମିଳିତ ମୂଳଧନ ପରିମାଣରେ ⅓ ଅଂଶ ଘ ମୂଳଧନ ସ୍ୱରୂପ ଆଣିବେ ।

(iii) ଉକ୍ତ ତାରିଖରେ ଏହି ନୂତନ ବ୍ୟବସାୟ ଏକ ସସୀମ କମ୍ପାନୀରେ ରୂପାନ୍ତରିତ ହେଲା ଓ କମ୍ପାନୀ ( ନଗଦ ତହବିଲ ବ୍ୟତୀତ ) ଅନ୍ୟାନ୍ୟ ସମସ୍ତ ସମ୍ପତ୍ତିକୁ ଟ ୩୪,୦୦୦ ମୂଲ୍ୟରେ କ୍ରୟ କରିବାକୁ ସ୍ୱୀକୃତ ହେଲା । କମ୍ପାନୀ ଏହି କ୍ରୟମୂଲ୍ୟକୁ ପ୍ରତି ଅଂଶ ପତ୍ର ଟ ୧୦ ହାରରେ ପୂର୍ଣ୍ଣ ପ୍ରଦତ୍ତ ଅଂଶ ପତ୍ରଦ୍ୱାରା ପରିଶୋଧ କଲେ ।

ବ୍ୟାଙ୍କ୍‌ରେ ଗଚ୍ଛିତ ତହବିଲ ବିବିଧ ମହାଜନଙ୍କ ଋଣ ପରିଶୋଧ କରିବାରେ ଓ ଅଂଶୀଦାରମାନଙ୍କୁ ଦେବାରେ ବ୍ୟବହୃତ ହେଲା ।

ଉପରୋକ୍ତ ଦେଣନେଣଗୁଡ଼ିକ ଲିପିବଦ୍ଧ କର ସମସ୍ତ ଅଂଶୀଦାରଙ୍କର ମୂଳଧନ ହିସାବ ପ୍ରସ୍ତୁତ କର ।

( C. U. B. Com 1959 ପ୍ରଶ୍ନ ପତ୍ରରୁ ଗୃହୀତ )

( ଉତ୍ତର : ଅଦାୟକରଣ ଲାଭ—ଟ ୬,୦୦୦; କ ଅଂଶ ପତ୍ର ଆକାରରେ ଟ ୧୭,୦୦୦ ଓ ନଗଦ ତହବିଲ ଆକାରରେ ଟ ୭,୨୦୦ ପାଇଲେ; ଓ ଖ ଅଂଶ ପତ୍ର ଆକାରରେ ଟ ୧୧,୩୩୦ ଓ ନଗଦ ତହବିଲ ଆକାରରେ ଟ ୫,୪୭୦ ଓ ଘ ଅଂଶ ପତ୍ର ଆକାରରେ ଟ ୫,୬୭୦ ଓ ନଗଦ ତହବିଲ ଆକାରରେ ଟ ୪,୩୩୦ ଟଙ୍କା ପାଇଲେ ।)

୨୦ । ଚ, ଛ ଓ ଜ ଗୋଟିଏ ଅଂଶୀଦାରୀ ବ୍ୟବସାୟର ଅଂଶୀଦାର ରୂପେ ଲାଭ ଓ କ୍ଷତିର ଯଥାକ୍ରମେ ½, ⅓ ଓ ⅙ ଅଂଶ ନେଉଥିଲେ । ସେମାନେ ୧୯୬୦ ମସିହା ଡିସେମ୍ବର ୩୧ ତାରିଖ ଦିନ ନିମ୍ନଲିଖିତ ଉଦ୍‌ବୃତ୍ତ ପତ୍ର ଭିତ୍ତିରେ ବ୍ୟବସାୟର ବିଲୋପ ସାଧନ କରିବାକୁ ସ୍ଥିର କଲେ ।

| ଦାୟ | ଟଙ୍କା | ଟଙ୍କା | ସମ୍ପତ୍ତି | ଟଙ୍କା |
|---|---|---|---|---|
| ବିବିଧ ମହାଜନ | | ୯୦,୦୦୦ | ନଗଦ ତହବିଲ | ୧୨,୦୦୦ |
| ମୂଳଧନ ହିସାବ : | | | ବିବିଧ ଖାତକ | ୧,୨୭,୦୦୦ |
| ଚ | ୬୦,୦୦୦ | | ମହଜୁଦ ପଣ୍ୟ | ୪୮,୦୦୦ |
| ଛ | ୩୦,୦୦୦ | | | |
| ଜ | ୭,୦୦୦ | ୯୭,୦୦୦ | | ୧,୮୭,୦୦୦ |
| | | ୧,୮୭,୦୦୦ | | |

ଏହା ସ୍ୱୀକୃତ ହୋଇଥିଲା ଯେ ଆଦାୟକରଣର ଖର୍ଚ୍ଚ ବାବଦ ନିଟ୍ ପରିମାଣ କ୍ରମେ ଆଦାୟ ହୋଇ ଅଂଶୀଦାରମାନଙ୍କ ମଧ୍ୟରେ କ୍ରମେ ବଣ୍ଟିତ ହେବ । ଆଦାୟକରଣର ନିମ୍ନ-ଲିଖିତ ଅନୁସୂଚୀ ପ୍ରଦତ୍ତ ହେଲା ।

| | ମାସ | ଆଦାୟକୃତ ଅର୍ଥ | ଖର୍ଚ୍ଚ |
|---|---|---|---|
| | | ଟଙ୍କା | ଟଙ୍କା |
| ଜାନୁୟାରୀ | ୧୯୬୧ | ୩୬,୦୦୦ | ୩,୦୦୦ |
| ଫେବୃୟାରୀ | ୧୯୬୧ | ୪୮,୦୦୦ | ୨,୪୦୦ |
| ମାର୍ଚ୍ଚ | ୧୯୬୧ | ୨୭,୨୫୦ | ୨,୮୫୦ |
| ଅପ୍ରେଲ | ୧୯୬୧ | ୨୫,୫୦୦ | ୧,୫୦୦ |
| ମଇ | ୧୯୬୧ | ୪୭,୨୫୦ | ୭୫୦ |

ଅଂଶୀଦାରମାନଙ୍କ ସବିସ୍ତର କ୍ରମବଣ୍ଟନ ଦର୍ଶାଇ ଏକ ମେମୋରାଣ୍ଡମ୍ ବିବରଣୀ ଓ ରୋକଡ଼ ବହି ପ୍ରସ୍ତୁତ କର ।

( C. U. B. Com. 1961 ପ୍ରଶ୍ନ ପତ୍ରରୁ ଗୃହୀତ )

( ଉତ୍ତର : ଅଂଶୀଦାରମାନଙ୍କୁ ନଗଦ ଉଦ୍ବୃତ୍ତ ବଣ୍ଟନ :

| | | ଚ | ଛ | ଜ |
|---|---|---|---|---|
| | | ଟଙ୍କା | ଟଙ୍କା | ଟଙ୍କା |
| ଫେବୃୟାରୀ | ୧୯୬୧ | ୭୦୦ | — | — |
| ମାର୍ଚ୍ଚ | ୧୯୬୧ | ୧୦,୬୦୦ | ୪,୨୦୦ | — |
| ଅପ୍ରେଲ | ୧୯୬୧ | ୧୪,୪୦୦ | ୯,୭୦୦ | — |
| ମଇ | ୧୯୬୧ | ୨୪,୩୦୦ | ୧୬,୨୦୦ | ୭୦୦୦ |

୨୧ । ସମୀର, ସୁଧୀର ଓ ପ୍ରବୀର ଗୋଟିଏ ଅଂଶୀଦାରୀ ବ୍ୟବସାୟର ଅଂଶୀଦାର ରୂପେ ଲାଭ ଓ କ୍ଷତିକୁ ଯଥାକ୍ରମେ ୩ : ୨ : ୧ ଅନୁପାତରେ ବଣ୍ଟନ କରୁଥିଲେ । ୧୯୬୩ ମସିହା ଡିସେମ୍ବର ୩୧ ତାରିଖରେ ସେମାନେ ତାଙ୍କ ବ୍ୟବସାୟର ବିଲୋପସାଧନ କରିବାକୁ ସ୍ଥିର କଲେ । ତାଙ୍କର ଉକ୍ତ ତାରିଖର ଉଦ୍ବୃତ୍ତ ପତ୍ର ନିମ୍ନରେ ପ୍ରଦତ୍ତ ହେଲା ।

| ଦାୟ | ଟଙ୍କା | ଟଙ୍କା | ସମ୍ପତ୍ତି | ଟଙ୍କା |
|---|---|---|---|---|
| ବିବିଧ ମହାଜନ | | ୧୨,୦୦୦ | ଯନ୍ତ୍ରପାତି | ୨୫,୬୦୦ |
| ମୂଳଧନ ହିସାବ : | | | ମହଜୁଦ୍ ପଣ୍ୟ | ୧୩,୯୦୦ |
| | | | ବିବିଧ ଖାତକ | ୭,୫୦୦ |
| ସମୀର | ୨୦,୦୦୦ | | ସରକାରୀ ଋଣ ପତ୍ର | ୫,୦୦୦ |
| ସୁଧୀର | ୧୫,୦୦୦ | | | |
| ପ୍ରବୀର | ୫,୦୦୦ | ୪୦,୦୦୦ | | |
| | | ୫୨,୦୦୦ | | ୫୨,୦୦୦ |

ଅଂଶୀଦାରମାନେ ଏ ବିଷୟରେ ଏକମତ ହୋଇଥିଲେ ଯେ ସମ୍ପତ୍ତିଗୁଡ଼ିକ ଯେଉଁ କ୍ରମ ଓ କିସ୍ତିରେ ଆଦାୟ ହେବ ସେହି ଅର୍ଥ ସେହି କ୍ରମରେ ଅଂଶୀଦାରମାନଙ୍କ ମଧ୍ୟରେ ବଣ୍ଟିତ ହେବ ।

ସମ୍ପତ୍ତିଗୁଡ଼ିକ ଖର୍ଚ୍ଚ ବାଦଦ ନିମ୍ନଲିଖିତ କ୍ରମ ଓ କିସ୍ତିରେ ଆଦାୟ ହୋଇଥିଲା ।

| ମାସ | ସମ୍ପତ୍ତି | ନିଟ୍ ଆଦାୟ ପରିମାଣ |
|---|---|---|
| ୧୯୭୩ | | ଟଙ୍କା |
| ଜାନୁୟାରୀ | ଯନ୍ତ୍ରପାତି | ୨୪,୪୦୦ |
| ଫେବୃଆରୀ | ମହଜୁଦ୍ ପଣ୍ୟ | ୧୩,୨୦୦ |
| ମାର୍ଚ୍ଚ | ବିବିଧ ଖାତକ | ୭,୨୦୦ |
| ଅପ୍ରେଲ | ସରକାରୀ ଋଣ ପତ୍ର | ୪,୮୦୦ |

ସର୍ବାଧିକ ସମ୍ଭାବ୍ୟ କ୍ଷତି-ଭିତ୍ତିକ ପଦ୍ଧତି ଅନୁଯାୟୀ ଦ୍ରୁତ କିସ୍ତିରେ ଆଦାୟ ହୋଇଥିବା ଅର୍ଥ ଅଂଶୀଦାରମାନଙ୍କ ମଧ୍ୟରେ କିପରି ବଣ୍ଟିତ ହେବ ତାହାର ଏକ ମେମୋରାଣ୍ଡମ୍ ବିବରଣୀ ପ୍ରସ୍ତୁତ କର ।

| ( ଉତ୍ତର : | ବିବିଧ ମହାଜନ | ସମୀର | ସୁଧୀର | ପ୍ରବୀର |
|---|---|---|---|---|
| | ଟଙ୍କା | ଟଙ୍କା | ଟଙ୍କା | ଟଙ୍କା |
| ଜାନୁୟାରୀ | ୧୨,୦୦୦ | ୬,୨୦୦ | ୫,୮୦୦ | ୪୦୦ |
| ଫେବୃଆରୀ | — | ୭,୬୦୦ | ୪,୪୦୦ | ୨,୨୦୦ |
| ମାର୍ଚ୍ଚ | — | ୩,୬୦୦ | ୨,୪୦୦ | ୧,୨୦୦ |
| ଅପ୍ରେଲ | — | ୨,୪୦୦ | ୧,୬୦୦ | ୮୦୦ |
| ଅପରିଶୋଧିତ ପରିମାଣ | | ୧,୨୦୦ | ୮୦୦ | ୪୦୦ |

# ତ୍ରୟୋଦଶ ପରିଚ୍ଛେଦ

## କମ୍ପାନୀ ହିସାବ (୧) (Company Account)

### ଭୂମିକା

୧ । **ସଂଜ୍ଞା**—ଗୋଟିଏ କମ୍ପାନୀ ଏକ ପ୍ରକାର ସଙ୍ଘ ଅଟେ । ଏହା କେତେକ ବ୍ୟକ୍ତିଙ୍କର ଏକ ଇଚ୍ଛାକୃତ ସଙ୍ଘ ଯାହା ଲଭ ଅର୍ଜନ କରିବା ଉଦ୍ଦେଶ୍ୟରେ ଗୋଟିଏ ବ୍ୟବସାୟ ଚଳାଇବା ପାଇଁ ଗଠିତ ହୁଏ । ଏହାର ମୂଳଧନ କେତେକ ହସ୍ତାନ୍ତରଯୋଗ୍ୟ ଅଂଶରେ ବିଭକ୍ତ ହୋଇଥାଏ । ଏହା ଏକ ଆଇନସୃଷ୍ଟ ବ୍ୟକ୍ତି ଏବଂ ଏହାର ଗୋଟିଏ ସାଧାରଣ ନାମାଙ୍କିତ ମୋହର ଥାଏ । ଏହା ଆଇନଦ୍ୱାରା ସୃଷ୍ଟି ହୋଇଥିବାରୁ କେତେକ ସମୟରେ ଏହାକୁ ଏକ ଅଦୃଶ୍ୟ କୃତ୍ରିମ ବ୍ୟକ୍ତି ବୋଲି କୁହାଯାଏ । ଏହାକୁ ଗଠନ କରିଥିବା ବ୍ୟକ୍ତିମାନଙ୍କଠାରୁ ଏହାର ଏକ ସ୍ୱତନ୍ତ୍ର ଅସ୍ତିତ୍ୱ ଥାଏ । ଏହାକୁ ଗଠନ କରିଥିବା ସଦସ୍ୟମାନେ ଏକାଧାରରେ ଏହାର ଅଂଶଧାରୀ ଓ ଋଣଦାତା ହୋଇପାରନ୍ତି । ଯଦ୍ୟପି ଜଣେ ଅଂଶଧାରୀ କମ୍ପାନୀର ସମସ୍ତ ଅଂଶର ମାଲିକ ହୁଅନ୍ତି, ତଥାପି ସେ କମ୍ପାନୀର କାର୍ଯ୍ୟାବଳୀ ସକାଶେ ଦାୟୀ ନୁହନ୍ତି । ସେହିଭଳି କମ୍ପାନୀ ଏହାର ଅଂଶଧାରୀମାନଙ୍କର କାର୍ଯ୍ୟାବଳୀ ସକାଶେ ଦାୟୀ ହୁଏ ନାହିଁ । ଗୋଟିଏ କମ୍ପାନୀ ଏକ କୃତ୍ରିମ ବ୍ୟକ୍ତି ହୋଇଥିବାରୁ ଏହା ଅନ୍ୟ ବ୍ୟକ୍ତିଙ୍କ ବିରୁଦ୍ଧରେ ମକଦ୍ଦମା ରୁଜୁ କରିପାରେ ଓ ଯେ କୌଣସି ବ୍ୟକ୍ତି କମ୍ପାନୀ ବିରୁଦ୍ଧରେ ମଧ୍ୟ ମକଦ୍ଦମା ଦାଏର କରିପାରନ୍ତି । କମ୍ପାନୀର ସମ୍ପତ୍ତିର ମାଲିକ ହେବାର, ନିଜ ନାମରେ ବ୍ୟାଙ୍କରେ ହିସାବ ଖୋଲିବା, କାହାରିଠାରୁ ଋଣ ସଂଗ୍ରହ କରିବା ଓ ଅନ୍ୟ କାହାରିକୁ ଋଣ ପ୍ରଦାନ କରିବାର ଅଧିକାର ଅଛି । ଏହାକୁ ଗଠନ କରିଥିବା ବ୍ୟକ୍ତିମାନଙ୍କର ମୃତ୍ୟୁ ସହିତ କମ୍ପାନୀର ସମାପନ ହୁଏ ନାହିଁ, ଏହା ଚିରସ୍ଥାୟୀ ଅଟେ । ଯେହେତୁ କମ୍ପାନୀ ଆଇନଦ୍ୱାରା ସୃଷ୍ଟ ଗୋଟିଏ କୃତ୍ରିମ ବ୍ୟକ୍ତି ଅଟେ ଏବଂ ଏହାର ଶାରୀରିକ ଅସ୍ତିତ୍ୱ ନାହିଁ, ତେଣୁ ଏହା କେବଳ ଏହାର ପ୍ରତିନିଧି, ଯଥା ନିର୍ଦ୍ଦେଶକମାନଙ୍କଦ୍ୱାରା କାର୍ଯ୍ୟ ପରିଚାଳନ କରିପାରେ ।

**ବିଭିନ୍ନ ଧରଣର ଯୌଥ କମ୍ପାନୀ**—ପ୍ରଥମେ ଯୌଥ କମ୍ପାନୀ ଇଂଲଣ୍ଡରେ ରାଜାଙ୍କର ସନନ୍ଦପ୍ରାପ୍ତ ହୋଇ ଗଠିତ ହେଉଥିଲା, ଯେପରି ଇଷ୍ଟଇଣ୍ଡିଆ କମ୍ପାନୀ । ଏଭଳି କମ୍ପାନୀକୁ ସନନ୍ଦପ୍ରାପ୍ତ କମ୍ପାନୀ କୁହାଯାଏ । ଭାରତରେ ଏଭଳି କମ୍ପାନୀ ଗଠିତ ହେବାର ସମ୍ଭାବନା ନାହିଁ । ଅବଶ୍ୟ ଭାରତରେ ଫାଇନ୍ୟାନସ୍ କର୍ପୋରେସନ୍,

ଷ୍ଟେଟ୍ ବ୍ୟାଙ୍କ୍ ଅଫ୍ ଇଣ୍ଡିଆ, ଦାମୋଦର ଭ୍ୟାଲି କର୍ପୋରେସନ ପ୍ରଭୃତି କମ୍ପାନି ବା କର୍ପୋରେସନ୍‌ଗୁଡ଼ିକ ଲୋକସଭାରେ ଗୃହୀତ ସ୍ୱତନ୍ତ୍ର ଆଇନଦ୍ୱାରା ଗଠିତ ହୋଇଛି; ମାତ୍ର ଅଧିକାଂଶ କମ୍ପାନି ୧୯୫୬ ମସିହାରେ ଗୃହୀତ କମ୍ପାନୀର ସର୍ତ୍ତାବଳୀ ପୂରଣ କରି ଗଠିତ ହୋଇଛି । ଏହି ଆଇନ ଅନୁଯାୟୀ ନିବନ୍ଧିତ କମ୍ପାନୀଗୁଡ଼ିକର ହିସାବରକ୍ଷଣ ପଦ୍ଧତି ଏହି ପରିଚ୍ଛେଦର ବିଷୟବସ୍ତୁ ।

ଅଂଶଧାରୀ ଅଥବା ସଦସ୍ୟମାନଙ୍କର ଆର୍ଥିକ ଦାୟିତ୍ୱ ଦୃଷ୍ଟିରୁ କମ୍ପାନୀଗୁଡ଼ିକୁ ତିନିଗୋଟି ଶ୍ରେଣୀରେ ବିଭକ୍ତ କରାଯାଇପାରେ—

(କ) ଅଂଶଧନ ସସୀମ କମ୍ପାନି (Companies Limited by Shares)-ଏହି ପ୍ରକାର କମ୍ପାନୀରେ ଅଂଶଧାରୀଙ୍କର ଆର୍ଥିକ ଦାୟିତ୍ୱ ତାଙ୍କଦ୍ୱାରା ଗୃହୀତ ଅଂଶପତ୍ରଗୁଡ଼ିକର ଅଙ୍କିତ ମୂଲ୍ୟ (face value) ପରିମାଣଦ୍ୱାରା ସୀମିତ । ମନେକର କ ଏହିଭଳି ଗୋଟିଏ କମ୍ପାନୀର ଟ ୧୦୦ ମୂଲ୍ୟର ଗୋଟିଏ ଅଂଶପତ୍ର ଗ୍ରହଣ କଲେ । ତାହାହେଲେ ତାଙ୍କର ଆର୍ଥିକ ଦାୟିତ୍ୱ ଟ୧୦୦ ରେ ସୀମିତ । ଯଦି ସେ ମୋଟ ଟଙ୍କା କମ୍ପାନୀକୁ ଦେଇ ନ ଥାନ୍ତି (କାରଣ ଅଧିକାଂଶ ସମୟରେ କମ୍ପାନି ଏହି ଅଂଶପତ୍ର (share) ବାବଦ ମୋଟ ପରିମାଣ ବିଭିନ୍ନ କିସ୍ତିରେ ଆଦାୟ କରନ୍ତି, ତାହାହେଲେ ସେ ଅପ୍ରଦତ୍ତ ପରିମାଣ ସକାଶେ କମ୍ପାନି ନିକଟରେ ଦାୟୀ ରହନ୍ତି । କିନ୍ତୁ ଟ୧୦୦ ଦେବା ପରେ କମ୍ପାନି ତାଙ୍କଠାରୁ କ୍ଷତି ହେଲେ ମଧ୍ୟ ଅଧିକା ଟଙ୍କା ଆଦାୟ କରି-ପାରିବ ନାହିଁ ।

(ଖ) ପ୍ରତିଭୂତି ସସୀମ କମ୍ପାନି (Companies Limited by Guarantee)—କମ୍ପାନୀର ସଦସ୍ୟମାନେ କମ୍ପାନୀର ସମାପନ (winding up) ବେଳେ ଯେଉଁ ଅର୍ଥ ପ୍ରଦାନ କରିବାକୁ ପ୍ରତିଭୂତି ଦେଇଥାଆନ୍ତି, ତାଙ୍କର ଦାୟିତ୍ୱ ସେହି ପରିମାଣର ଅର୍ଥଦ୍ୱାରା ସୀମିତ ହୁଏ ।

(ଗ) ଅସୀମ ଦେୟ କମ୍ପାନି (Unlimited Comparies)—ଏପରି କମ୍ପାନୀରେ ଅଂଶଧାରୀମାନଙ୍କର ଆର୍ଥିକ ଦାୟିତ୍ୱ ସୀମିତ ହୋଇ ନ ଥାଏ । କମ୍ପାନୀର ଋଣଦାତାମାନଙ୍କର ଋଣ ପୂର୍ଣ୍ଣମାତ୍ରାରେ ପରିଶୋଧ କରିବା ପାଇଁ ଯେତେ ଅର୍ଥ ପ୍ରୟୋଜନ ହୁଏ ତାହା ଦେବା ପାଇଁ ଅଂଶଧାରୀମାନେ ବାଧ୍ୟ ହୁଅନ୍ତି ।

ଏଥିମଧ୍ୟରୁ ଅଂଶ ଧନ ସସୀମ କମ୍ପାନୀର ପ୍ରଚଳନ ସର୍ବାପେକ୍ଷା ଅଧିକ । ଯେ ଯାହାହେଉ, ଗୋଟିଏ କମ୍ପାନୀରେ ଅଂଶଧାରୀମାନଙ୍କର ଦାୟିତ୍ୱ ସେମାନଙ୍କର ଅଂଶ ପରିମାଣଦ୍ୱାରା ସୀମିତ ଅଥବା ପ୍ରତିଭୂତି ପରିମାଣଦ୍ୱାରା ସୀମିତ ଅଥବା ତାଙ୍କର

ଦାୟିତ୍ୱ ଅସୀମ ତାହା ସଂସ୍ଥା ଜ୍ଞାପକପତ୍ର (Memorandom of Association)ରେ ବ୍ୟକ୍ତ କରାଯାଏ । ଯେଉଁ କମ୍ପାନୀରେ ଅଂଶଧାରୀମାନଙ୍କର ଦେୟଭାର ସୀମିତ ସେହି କମ୍ପାନୀର ନାମ ଶେଷରେ 'ଲିମିଟେଡ଼' ଶବ୍ଦଟି ସଂଯୁକ୍ତ କରାଯାଏ ।

ଅନ୍ୟ ଏକ ଦୃଷ୍ଟିରୁ କମ୍ପାନୀଗୁଡ଼ିକୁ ଦୁଇଟି ଶ୍ରେଣୀରେ ବିଭକ୍ତ କରାଯାଇପାରେ, ଯଥା—ସାଧାରଣ ଯୌଥ ମୂଳଧନୀ କମ୍ପାନୀ (Public Joint Stock Company) ଓ ଘରୋଇ କମ୍ପାନୀ (Private Company) ।

କମ୍ପାନୀ ଆଇନ ଗୋଟିଏ ଘରୋଇ କମ୍ପାନୀର ସଂଜ୍ଞା ନିରୂପଣ କରିବାକୁ ଯାଇ ଏହାକୁ ସେହିପରି କମ୍ପାନୀ ବୋଲି କହିଛନ୍ତି ଯାହା ପରିମେଳ ନିୟମାବଳୀ (Articles of Association) ଦ୍ୱାରା

(କ) ଏହାର ଅଂଶପତ୍ରର ହସ୍ତାନ୍ତରକରଣକୁ ସୀମିତ କରିଛି;

(ଖ) ଏହାର ସଭ୍ୟ ସଂଖ୍ୟାକୁ (କର୍ମଚାରୀଙ୍କ ବ୍ୟତୀତ ଯେଉଁମାନେ ଏହାର ସଭ୍ୟ ଅଛନ୍ତି ଓ ଭୂତପୂର୍ବ କର୍ମଚାରୀ ଯେଉଁମାନେ ଏବେ ମଧ୍ୟ ସଭ୍ୟ ଅଛନ୍ତି) ପଚାଶ ଜଣରେ ସୀମିତ ରଖିଛି; ଓ

(ଗ) ଏହାର କୌଣସି ଅଂଶପତ୍ର ଓ ଋଣପତ୍ର (Debenture) କ୍ରୟ କରିବା ଉଦ୍ଦେଶ୍ୟରେ ଏହା ଜନସାଧାରଣଙ୍କୁ ଆହ୍ୱାନ କରିପାରିବ ନାହିଁ ।

ଗୋଟିଏ ଘରୋଇ କମ୍ପାନୀ ଏହାର ନାମ ପଛରେ ଘରୋଇ ସସୀମ (Private Limited) ଶବ୍ଦ ଦୁଇଟି ସଂଯୁକ୍ତ କରିବ । ଯେଉଁ କମ୍ପାନୀଗୁଡ଼ିକର ପରିମେଳ ନିୟମାବଳୀରେ ଉପରୋକ୍ତ ସର୍ତ୍ତଗୁଡ଼ିକ ଲିପିବଦ୍ଧ ହୋଇ ନ ଥାଏ ତାହା ସାଧାରଣ କମ୍ପାନୀ ନାମରେ ଅଭିହିତ ହୁଏ ।

**କମ୍ପାନୀ ଓ ଅଂଶୀଦାରୀ ମଧ୍ୟରେ ପାର୍ଥକ୍ୟ**—ଏହି ଦୁଇ ଧରଣର ବ୍ୟବସାୟ ସଂସ୍ଥାର ସଂଜ୍ଞାକୁ ବିଶ୍ଳେଷଣ କଲେ ନିମ୍ନଲିଖିତ ପାର୍ଥକ୍ୟଗୁଡ଼ିକ ଦୃଷ୍ଟିଗୋଚର ହୁଏ :

(୧) କମ୍ପାନୀ ସରକାରୀ ନିବନ୍ଧନ (Registration) ବାଧ୍ୟତାମୂଳକ ଅଟେ; ମାତ୍ର ଅଂଶୀଦାରୀ କାରବାର ସରକାରୀ ନିବନ୍ଧୀକୃତ କରିବା ବାଧ୍ୟତାମୂଳକ ନୁହେଁ । ଅଂଶୀଦାରୀ ଚୁକ୍ତି ହିଁ ଅଂଶୀଦାରୀ କାରବାରର ପ୍ରଧାନ ଦଲିଲ ଅଟେ । ଅବଶ୍ୟ ଯେଉଁ ଅଂଶୀଦାରୀ କାରବାର ନିବନ୍ଧୀକୃତ ହୋଇଥାଏ ତାହା କେତେକ ସୁବିଧା ଉପଭୋଗ କରେ ।

(୨) ଘରୋଇ କମ୍ପାନୀର ସର୍ବନିମ୍ନ ସଭ୍ୟ ସଂଖ୍ୟା ଦୁଇ ଜଣ ଓ ସାଧାରଣ କମ୍ପାନୀର ସର୍ବନିମ୍ନ ସଭ୍ୟ ସଂଖ୍ୟା ୭ ଜଣ । ଅଂଶୀଦାରୀ କାରବାରର ସର୍ବନିମ୍ନ ସଭ୍ୟ ସଂଖ୍ୟା ୨ ଜଣ ।

(୩) ଘରୋଇ କମ୍ପାନୀର ସର୍ବାଧିକ ସଭ୍ୟ ସଂଖ୍ୟା ୫୦ ଓ ସାଧାରଣ କମ୍ପାନୀର ସର୍ବାଧିକ ସଭ୍ୟ ସଂଖ୍ୟା ଏହାର ଅଂଶଦ୍ୱାରା ସୀମିତ ହୁଏ । ଅଂଶୀଦାରୀ କାରବାରର ସର୍ବାଧିକ ସଭ୍ୟ ସଂଖ୍ୟା ୨୦, ମାତ୍ର ବ୍ୟାଙ୍କିଙ୍ଗ୍ କାରବାରରେ ଏହି ସଭ୍ୟ ସଂଖ୍ୟା ୧୦କୁ ହ୍ରାସ ପାଏ ।

(୪) ଆଇନ ଦୃଷ୍ଟିରୁ କମ୍ପାନୀର ଏକ ସ୍ୱତନ୍ତ୍ର ସ୍ଥିତି ଅଛି, ଯାହା ଏହାର ଅଂଶଧାରୀମାନଙ୍କଠାରୁ ସମ୍ପୂର୍ଣ୍ଣ ପୃଥକ୍ । ଏପରି କି ଜଣେ ଅଂଶଧାରୀ ତାଙ୍କର କମ୍ପାନୀ ସହିତ ଚୁକ୍ତିରେ ଆବଦ୍ଧ ହୋଇପାରନ୍ତି । କିନ୍ତୁ ଅଂଶୀଦାରମାନଙ୍କୁ ବାଦ ଦେଲେ ଅଂଶୀଦାରୀ କାରବାରର କୌଣସି ଅସ୍ତିତ୍ୱ ରହେ ନାହିଁ । କୌଣସି ଅଂଶୀଦାର ତାଙ୍କ ଅଂଶୀଦାରୀ ବ୍ୟବସାୟ (firm) ସହିତ ଏକ ଚୁକ୍ତିରେ ଆବଦ୍ଧ ହୋଇପାରନ୍ତି ନାହିଁ ।

(୫) କମ୍ପାନୀ ବ୍ୟବସାୟରେ ଏହାର ସଭ୍ୟମାନେ ଏହାର ପ୍ରତିନିଧି ନୁହନ୍ତି; ମାତ୍ର ଅଂଶୀଦାରୀ କାରବାରରେ ପ୍ରତ୍ୟେକ ଅଂଶୀଦାର ଅଂଶୀଦାରୀ ବ୍ୟବସାୟରେ ଜଣେ ଜଣେ ପ୍ରତିନିଧି ଅଟନ୍ତି ।

(୬) କମ୍ପାନୀ ବ୍ୟବସାୟରେ ଏହାର ସଭ୍ୟମାନେ ଏକ ନିର୍ଦ୍ଦେଶକମଣ୍ଡଳୀକୁ ନିର୍ବାଚିତ କରନ୍ତି ଏବଂ ସେହି ନିର୍ଦ୍ଦେଶକମାନେ କମ୍ପାନୀର ବ୍ୟବସାୟ ପରିଚାଳନା କରନ୍ତି । କିନ୍ତୁ ଗୋଟିଏ ଅଂଶୀଦାରୀ କାରବାରରେ ପ୍ରତ୍ୟେକ ଅଂଶୀଦାର ଏହାର ବ୍ୟବସାୟ ପରିଚାଳନା କରିପାରନ୍ତି ।

(୭) ଯେହେତୁ କମ୍ପାନୀ ଏକ କୃତ୍ରିମ ବ୍ୟକ୍ତି ଏହା ଅଂଶୀଦାରମାନଙ୍କର ମୃତ୍ୟୁ ବା ପରିବର୍ତ୍ତନଦ୍ୱାରା ପ୍ରଭାବିତ ହୁଏ ନାହିଁ ଏବଂ ଏହାର ଚିରନ୍ତନ ଅନୁକ୍ରମ (perpetual succession) ବଜାୟ ଥାଏ, କିନ୍ତୁ ଅଂଶୀଦାରୀ ବ୍ୟବସାୟରେ ଏପରି ହୁଏ ନାହିଁ ।

(୮) କମ୍ପାନୀର ଅଂଶଗୁଡ଼ିକ ସାଧାରଣତଃ ହସ୍ତାନ୍ତରଯୋଗ୍ୟ (transferable) ଅଟେ; କିନ୍ତୁ କୌଣସି ଅଂଶୀଦାର ଅଂଶୀଦାରୀ କାରବାରରେ ଥିବା ତାଙ୍କର ଅଂଶ ଓ ସ୍ୱତ୍ୱକୁ ଅନ୍ୟାନ୍ୟ ଅଂଶୀଦାରଙ୍କର ବିନା ସମ୍ମତିକ୍ରମେ ଅନ୍ୟ କାହାକୁ ହସ୍ତାନ୍ତର କରି ପାରନ୍ତି ନାହିଁ ।

(୯) କମ୍ପାନିର ବ୍ୟବସ୍ଥାପନା ଓ ପରିଚାଳନାରେ କେତେକ ଆଇନଗତ ବାଧ୍ୟବାଧକତା ଅଛି, ଯେପରି ହିସାବରକ୍ଷଣ, ହିସାବ ସମୀକ୍ଷା, ବୈଧାନିକ ବହି ବା ଖାତା (Statutory books & registers)ର ସଂରକ୍ଷଣ ସମ୍ବନ୍ଧରେ ଥାଏ; କିନ୍ତୁ ଅଂଶୀଦାରୀ କାରବାରରେ ଏଭଳି କୌଣସି ବାଧ୍ୟବାଧକତା ନାହିଁ ।

୨ । **କମ୍ପାନୀ ଗଠନ (Formation of a Company)**—କମ୍ପାନି ଗଠନରେ କେତେକ ଆଇନଗତ ଆନୁଷ୍ଠାନିକତା ଅବଶ୍ୟ ପାଳନୀୟ । ପ୍ରଥମେ କମ୍ପାନିର ନିବନ୍ଧନ (Registration) ଆବଶ୍ୟକ । ତତ୍ପୂର୍ବରୁ କମ୍ପାନିର ପ୍ରବର୍ତ୍ତକ-ମାନଙ୍କ (Promotors) ଦ୍ୱାରା କମ୍ପାନିର ଗଠନତନ୍ତ୍ର ପ୍ରସ୍ତୁତ କରାଯାଏ । ଏଥିନିମନ୍ତେ ଅତି ଗୁରୁତ୍ୱପୂର୍ଣ୍ଣ ଦୁଇଟି ଦଲିଲ ପ୍ରସ୍ତୁତ କରିବାକୁ ହୁଏ, ଯଥା (୧) ସଂସ୍ଥାଜ୍ଞାପକ ପତ୍ର ବା ପରିମେଳ ବନ୍ଧ (Memorandom of Association) ଓ (୨) ପରିମେଳ ନିୟମାବଳୀ (Articles of Association) । ପ୍ରଥମ ଦଲିଲରେ କମ୍ପାନିର ନାମ, ଉଦ୍ଦେଶ୍ୟ ସର୍ବୋଚ୍ଚ ମୂଳଧନ, ଦାୟ-ଦାୟିତ୍ୱ, କମ୍ପାନିର କାର୍ଯ୍ୟାଳୟର ସ୍ଥାନ, ଯୌଥଭାବରେ କମ୍ପାନି ଗଠନର ସ୍ୱୀକୃତ ଓ ସ୍ୱାକ୍ଷର ପ୍ରଭୃତ ଲିପିବଦ୍ଧ କରାଯାଏ । ଦ୍ୱିତୀୟ ଦଲିଲରେ କମ୍ପାନି ପରିଚାଳନାର ଆଭ୍ୟନ୍ତରୀଣ ନିୟମାବଳୀ ସନ୍ନିବେଶିତ ହୁଏ । ଗୋଟିଏ ସାଧାରଣ କମ୍ପାନି ଗଠନ କରିବା ନିମନ୍ତେ ନ୍ୟୂନତମ ୭ ଜଣ ସଭ୍ୟ ଓ ଘରୋଇ କମ୍ପାନି ଗଠନ ସକାଶେ ନ୍ୟୂନତମ ୨ ଜଣ ସଭ୍ୟ ଆବଶ୍ୟକ ହୁଅନ୍ତି ।

କମ୍ପାନିର କାର୍ଯ୍ୟାଳୟ ଯେଉଁ ରାଜ୍ୟରେ ଅବସ୍ଥାପିତ ହେବ ସେହି ରାଜ୍ୟର ନିବନ୍ଧକ (Registrar of Companies)ଙ୍କ ନିକଟରେ ଆବଶ୍ୟକ ଷ୍ଟାମ୍ପ ସହ ନିମ୍ନଲିଖିତ ଦଲିଲଗୁଡ଼ିକ ଦାଖଲ କରିବାକୁ ହୁଏ :

(୧) ପରିମେଳ ବନ୍ଧ

(୨) ପରିମେଳ ନିୟମାବଳୀ

(୩) କମ୍ପାନିର ନିର୍ଦ୍ଦେଶକମାନଙ୍କ (Directors)ର ନାମ, ଠିକଣା, ପେଶାର ବିବରଣୀସମ୍ବଳିତ ଏକ ତାଲିକା ।

(୪) ନିର୍ଦ୍ଦେଶକମାନେ ନିର୍ଦ୍ଦେଶକ ରୂପେ କାର୍ଯ୍ୟ କରିବାର ସମ୍ମତି ପତ୍ର (Letter of Consent) ଏବଂ ସେମାନେ ଯେ ନ୍ୟୂନତମ ମୂଲ୍ୟର ଅଂଶ କ୍ରୟ କରିବେ ତାହାର ଏକ ପ୍ରତିଶ୍ରୁତି ପତ୍ର । (ଘରୋଇ କମ୍ପାନି ପ୍ରତି ଏହା ପ୍ରଯୁଜ୍ୟ ନହେଁ ।)

(୫) ନୂତନ ବର୍ଣ୍ଣିତ ମୂଳଧନ ଯଦି ପଚଶ ଲକ୍ଷ ଟଙ୍କାରୁ ଅଧିକ ହୋଇଥାଏ, ତାହାହେଲେ ମୂଳଧନ ବଣ୍ଟନର ନିୟନ୍ତ୍ରକ (Controller of Capital Issues)ଙ୍କଠାରୁ ପ୍ରାପ୍ତ ଅନୁମତି ପତ୍ର ।

(୬) କମ୍ପାନୀର ବ୍ୟବସାୟ ଯଦି ଭାରତ ସରକାରଙ୍କର ନିୟନ୍ତ୍ରିତ ଶିଳ୍ପ ତାଲିକା ଅନ୍ତର୍ଗତ ହୋଇଥାଏ, ତାହାହେଲେ ତାଙ୍କଠାରୁ ପ୍ରାପ୍ତ ଅନୁମତି ପତ୍ର ।

(୭) କମ୍ପାନୀ ଆଇନ ଅନୁଯାୟୀ ସମସ୍ତ ସର୍ତ୍ତ ପାଳିତ ହୋଇଛି ଏହି ମର୍ମରେ ଏକ ବୈଧାନିକ ଘୋଷଣା ( Statutory Declaration) । କମ୍ପାନୀର ଜଣେ ନିର୍ଦ୍ଦେଶକ, ପରିଚାଳନାକାରୀ ନିର୍ଦ୍ଦେଶକ, ସମ୍ପାଦକ, ଚାର୍ଟାର୍ଡ଼ ଏକାଉଣ୍ଟାଣ୍ଟ ଅଥବା ଆଟର୍ଣ୍ଣି ଏଭଳି ଘୋଷଣା ଦେବାକୁ ସମର୍ଥ ।

ଏହି ସମସ୍ତ ଦଲିଲ୍ ପର୍ଯ୍ୟାଲୋଚନା କରିବା ପରେ ନିବନ୍ଧକ ଯଦି ସନ୍ତୁଷ୍ଟ ହୁଅନ୍ତି, ତାହାହେଲେ ସେ ଆବେଦନକାରୀଙ୍କୁ ଏକ ନିବନ୍ଧନ ପତ୍ର ( Certificate of Incorporation ) ପ୍ରଦାନ କରନ୍ତି । ଏହି ନିବନ୍ଧନ ପତ୍ର ଯେଉଁ ତାରିଖରେ ମିଳେ ସେହି ତାରିଖରେ କମ୍ପାନୀ ଅସ୍ତିତ୍ୱ ଲାଭ କରେ ।

## କମ୍ପାନୀର କାର୍ଯ୍ୟାରମ୍ଭ (Commencement of Business)

ଘରୋଇ କମ୍ପାନୀ ନିବନ୍ଧନ ପତ୍ର ପାଇବା ପରେ ଏହାର କାର୍ଯ୍ୟ ଆରମ୍ଭ କରିପାରେ; କିନ୍ତୁ ସାଧାରଣ କମ୍ପାନୀ ପକ୍ଷରେ କାର୍ଯ୍ୟାରମ୍ଭ କରିବା ପୂର୍ବରୁ ଅନ୍ୟ କେତେକ ଅନୁଷ୍ଠାନିକତା ପାଳନ କରିବା ଆବଶ୍ୟକ । ସେଗୁଡ଼ିକ ନିମ୍ନରେ ବର୍ଣ୍ଣିତ ହେଲା :

(୧) ବିବରଣ ପତ୍ର ( Prospectus ) ଅଥବା ତାହାର ବିକଳ୍ପ ବିବୃତି ( Statement in lieu of Prospectus ) ପ୍ରସ୍ତୁତ କରାଯିବ ଓ ତାହାର ଏକ କପି ନକଲ୍ ନିବନ୍ଧକଙ୍କ ନିକଟରେ ଦାଖଲ କରାଯିବ ।

(୨) ନିମ୍ନଲିଖିତ ସର୍ତ୍ତଗୁଡ଼ିକ ପାଳିତ ହୋଇଛି ଏହି ମର୍ମରେ କମ୍ପାନୀର ଜଣେ ପରିଚାଳକ ଅଥବା ସମ୍ପାଦକ ( Secretary ) ନିବନ୍ଧକଙ୍କ ନିକଟରେ ଏକ ସ୍ୱାକ୍ଷରିତ ଘୋଷଣା ଦାଖଲ କରିବେ :

(କ) ବିବରଣ ପତ୍ର ପ୍ରସ୍ତୁତ ହେବାର ୧୨୦ ଦିନ ମଧ୍ୟରେ କମ୍ପାନୀର ବିବରଣ ପତ୍ରରେ ଉଲ୍ଲିଖିତ ନ୍ୟୂନତମ ପୁଞ୍ଜି ( Minimum Subscription ) ସଂଗୃହୀତ ହୋଇଛି ।

(୯) ଉକ୍ତ ତାରିଖ ମଧ୍ୟରେ ପ୍ରତ୍ୟେକ ପରିଚାଳକ ତାଙ୍କର ଯୋଗ୍ୟତାସୂଚକ ଅଂଶ ( Stock Exchange ) ରେ କମ୍ପାନୀର ସେୟାର ବିକ୍ରୟଯୋଗ୍ୟ ସେୟାରର ତାଲିକାଭୁକ୍ତ ନ ହୋଇପାରିଲେ ସେଥିପାଇଁ ସେୟାର ଆବେଦନକାରୀଙ୍କୁ ଅର୍ଥ ଫେରସ୍ତ ଦେବାର କୌଣସି ଦାୟିତ୍ୱ ନାହିଁ ।

ଏହି ଘୋଷଣା ପାଇବା ପରେ ନିବନ୍ଧକ ଯଦି ସନ୍ତୁଷ୍ଟ ହୁଅନ୍ତି ତାହାହେଲେ ସେ କମ୍ପାନୀକୁ କାର୍ଯ୍ୟାରମ୍ଭର ଅନୁମତି ପତ୍ର ( Certificate for the Commencement of Business ) ପ୍ରଦାନ କରିପାରନ୍ତି । କେବଳ ଏହି ପତ୍ର ପାଇବା ପରେ ଗୋଟିଏ ସାଧାରଣ କମ୍ପାନୀ କାର୍ଯ୍ୟାରମ୍ଭ କରିପାରେ ।

**ପ୍ରବର୍ତ୍ତକ** ( Promoter )—ଏ ଯୁଗର ଅଧିକାଂଶ ବୃହଦାକାର ବ୍ୟବସାୟ ଯୌଥ ମୂଳଧନୀ କମ୍ପାନୀଦ୍ୱାରା ପରିଚାଳିତ ହୋଇଥାଏ । କୌଣସି ଗୋଟିଏ କ୍ଷେତ୍ରରେ ଏକ ବୃହଦାକାର ବ୍ୟବସାୟର ସମ୍ଭାବନା ରହିଛି ତାହା ପ୍ରବର୍ତ୍ତକ ତାଙ୍କର ଅଭିଜ୍ଞତା ଓ ଦୂରଦୃଷ୍ଟି ଦ୍ୱାରା ସ୍ଥିର କରନ୍ତି ଓ ତାହାର ଏକ ପରିକଳ୍ପନା ପ୍ରସ୍ତୁତ କରନ୍ତି । ପରୀକ୍ଷା ନିରୀକ୍ଷା ପରେ ଏହା ଏକ ଲାଭଜନକ ବ୍ୟବସାୟ ହୋଇପାରିବ—ଏ ବିଷୟରେ ନିଶ୍ଚିତ ହେବା ପରେ ପ୍ରବର୍ତ୍ତକ ସେହିପରି କଳ୍ପନାକୁ ବାସ୍ତବରେ ପରିଣତ କରିବାକୁ ଉଦ୍ୟୋଗୀ ହୁଅନ୍ତି । ଏହି ପ୍ରବର୍ତ୍ତକ ବା ପ୍ରବର୍ତ୍ତକମାନେ କମ୍ପାନୀ ଗଠନ କରିବା ପାଇଁ ସମସ୍ତ ଆନୁଷ୍ଠାନିକତା ପାଳନ କରନ୍ତି । ପ୍ରବର୍ତ୍ତକ ଜଣେ ବ୍ୟକ୍ତି ହୋଇପାରନ୍ତି ଅଥବା କେତେକ ବ୍ୟକ୍ତିଙ୍କର ସମଷ୍ଟି ହୋଇପାରେ ଅଥବା ଗୋଟିଏ ପ୍ରତିଷ୍ଠାନ ମଧ୍ୟ ହୋଇପାରେ । ଗୋଟିଏ କମ୍ପାନୀ ଗଠନ ଦିଗରେ ପ୍ରବର୍ତ୍ତକଙ୍କର ଅବଦାନ ଅତି ତାତ୍ପର୍ଯ୍ୟପୂର୍ଣ୍ଣ ଅଟେ । ସାଧାରଣତଃ ଏହି ପ୍ରବର୍ତ୍ତକମାନେ କମ୍ପାନୀର ପ୍ରଥମ ନିର୍ଦ୍ଦେଶକମଣ୍ଡଳୀ ଗଠନ କରନ୍ତି । କମ୍ପାନୀ ଚାଲୁ ହେବା ପରେ ସେମାନେ ତହିଁରେ ସଂଯୁକ୍ତ ରହିପାରନ୍ତି ଅଥବା ତାଙ୍କର ଅଂଶ ବିକ୍ରୟ କରି ଦେଇପାରନ୍ତି । ପୂର୍ବେ ମ୍ୟାନେଜିଂ ଏଜେନ୍‌ସି ବହୁ ବୃହଦାକାର କମ୍ପାନୀଗୁଡ଼ିକର ପ୍ରବର୍ତ୍ତକ ହୋଇଥିଲେ । ଅବଶ୍ୟ ଅଧୁନା ଏହି ପ୍ରତିଷ୍ଠାନ ବିଲୁପ୍ତ ହୋଇଛି ।

## **ପରିମେଳ ବନ୍ଧ** ( Memorandum of Association )

ଏହି ପରିମେଳ ବନ୍ଧ ବା ସଂସ୍ଥାଜ୍ଞାପକ ପତ୍ର ଯୌଥ ମୂଳଧନୀ କମ୍ପାନୀର ସନନ୍ଦ ଅଟେ । ଏଥିରେ କମ୍ପାନୀର ନାମ, ଉଦ୍ଦେଶ୍ୟ, ପରିସର, ଅବସ୍ଥାନ, ପୁଞ୍ଜିର ଗଠନ, ଅଂଶଧାରୀମାନଙ୍କର ଦାୟ, ଦାୟିତ୍ୱ ଇତ୍ୟାଦି ସମସ୍ତ ଗୁରୁତ୍ୱପୂର୍ଣ୍ଣ ବିଷୟର ଉଲ୍ଲେଖ ଥାଏ । କମ୍ପାନୀର କାର୍ଯ୍ୟାବଳୀ ଏହି ଦଲିଲର ଧାରାଗୁଡ଼ିକଦ୍ୱାରା ସୀମିତ କୌଣସି କାର୍ଯ୍ୟ ଏହି ସୀମା

କାର୍ଯ୍ୟଭୁକ୍ତ ହେଲେ ତାହା ଅସିଦ୍ଧ ବୋଲି ଘୋଷିତ ହୁଏ । ଏହାର କେତେକ ଉଲ୍ଲେଖ-ଯୋଗ୍ୟ ଧାରା ନିମ୍ନରେ ପ୍ରଦତ୍ତ ହେଲା ।

(୧) ନାମକରଣ—କମ୍ପାନୀ ଏହାର ଇଚ୍ଛାନୁଯାୟୀ ଯେ କୌଣସି ନାମ ଗ୍ରହଣ କରି-ପାରେ । କିନ୍ତୁ ଏହା ବର୍ତ୍ତମାନ ଥିବା ଅନ୍ୟ ଏକ କମ୍ପାନୀର ନାମର ଅନୁରୂପ ନାମ ଗ୍ରହଣ କରିପାରିବ ନାହିଁ । କେନ୍ଦ୍ରୀୟ ସରକାରଙ୍କର ବିବେଚନାରେ ଯେଉଁ ନାମ ଅବାଞ୍ଛନୀୟ ସେପରି ନାମ ମଧ୍ୟ କମ୍ପାନୀ ଗ୍ରହଣ କରିପାରେ ନାହିଁ । କମ୍ପାନୀ ଆଇନର ୧୩ (୧) ଧାରା ଅନୁଯାୟୀ ଗୋଟିଏ ସାଧାରଣ କମ୍ପାନୀର ନାମ ଶେଷରେ 'ଲିମିଟେଡ୍' ଶବ୍ଦଟି ସଂଯୁକ୍ତ ହୁଏ ଓ ଘରୋଇ କମ୍ପାନୀ ନାମ ଶେଷରେ 'ପ୍ରାଇଭେଟ୍ ଲିମିଟେଡ୍' ଏହି ଶବ୍ଦ ଦୁଇଟି ସଂଯୁକ୍ତ ହେବା ଆବଶ୍ୟକ ।

(୨) ଅବସ୍ଥାନ—କମ୍ପାନୀ କେଉଁ ରାଜ୍ୟରେ ଅବସ୍ଥିତ ତାହା ଏହି ଦଲିଲରେ ପ୍ରକାଶିତ ହୁଏ । ଯେଉଁ ସହରରେ ଏହାର କାର୍ଯ୍ୟାଳୟ ଅବସ୍ଥାପିତ ହେବ, ତାହାର ନାମ ଲେଖିବା ବାଧ୍ୟତାମୂଳକ ନୁହେଁ ।

(୩) ଉଦ୍ଦେଶ୍ୟ—କମ୍ପାନୀର ଉଦ୍ଦେଶ୍ୟ ସ୍ପଷ୍ଟ ଓ ସବିସ୍ତର ଭାବରେ ବର୍ଣ୍ଣିତ ହେବା ଆବଶ୍ୟକ । କମ୍ପାନୀ ଯେଉଁ ଧରଣର ବ୍ୟବସାୟ ଚଳାଇବ ଅଥବା ଯେଉଁ ଶିଳ୍ପ ପ୍ରତିଷ୍ଠିତ କରିବ ତାହା ଏହି ଧାରାରେ ବର୍ଣ୍ଣିତ ହୁଏ । ଭବିଷ୍ୟତ୍ ସମ୍ଭାବନା ପ୍ରତି ଦୃଷ୍ଟି ରଖି ଏହାର ପରିସରକୁ ବ୍ୟାପକ ରଖାଯାଏ । ସୁତରାଂ ପ୍ରୟୋଜନ ଅନୁଯାୟୀ ସେହି ପରିସର ମଧ୍ୟରେ ଥାଇ କମ୍ପାନୀ ସୁବିଧା ଅନୁସାରେ ବ୍ୟବସାୟର ପରିବର୍ତ୍ତନ କରିପାରେ ।

(୪) ଦାୟ କମ୍ପାନୀର ଅଂଶଧାରୀମାନଙ୍କର ଦାୟ ଅସୀମ ଅଥବା ସସୀମ ଏବଂ ସସୀମ ହେଲେ ତାହା ଅଂଶ ମୂଲ୍ୟଦ୍ୱାରା ସୀମିତ ଅଥବା ପ୍ରତିଶ୍ରୁତିଦ୍ୱାରା ସୀମିତ ଏହି ଦଲିଲରେ ତାହା ସୂଚିତ ହେବା ଆବଶ୍ୟକ । ଅଂଶ ମୂଲ୍ୟଦ୍ୱାରା ଦାୟ ସୀମିତ ହୋଇଥିଲେ ଅଂଶଧାରୀମାନେ ତାଙ୍କ ଅଂଶ ପତ୍ର ବାବଦ କେବଳ ଅଦେୟ ପରିମାଣ ପର୍ଯ୍ୟନ୍ତ ଦାୟୀ ବୋଲି ବ୍ୟକ୍ତ କରାଯିବା ଆବଶ୍ୟକ ।

(୫) ମୂଳଧନ—କମ୍ପାନୀର ସର୍ବାଧିକ ମୂଳଧନ କେତେ ଓ ତାହା କେତେ ମୂଲ୍ୟର କେତେଗୋଟି ଅଂଶରେ ବିଭକ୍ତ ତାହା ଏହି ଧାରାରେ ବର୍ଣ୍ଣିତ ହୋଇଥାଏ । ଏହି ମୂଳଧନକୁ ଅନୁମୋଦିତ ମୂଳଧନ ( Authorised Capital ) କୁହାଯାଏ । କମ୍ପାନୀ ସର୍ବାଧିକ ଏହି ପରିମାଣର ଅଂଶ ବଣ୍ଟନ କରିପାରେ; ଏହା ଅପେକ୍ଷା ଅଧିକ ନୁହେଁ ।

ଭବିଷ୍ୟତ୍‌ରେ କମ୍ପାନୀ ଯେଉଁ ପରିମାଣରେ ମୂଳଧନ ଉପଯୋଗ କରିବାର ସମ୍ଭାବନା ଥାଏ ଏଠାରେ ସେହି ପରିମାଣ ଦିଆଯାଏ ।

କାରବାର ସଙ୍ଗଠନରେ ସ୍ୱୀକୃତ – ପରିମେଳ ବନ୍ଧର ଶେଷ ଅଂଶରେ ଗୋଟିଏ ଘୋଷଣା ଅନ୍ତର୍ଭୁକ୍ତ ହୋଇଥାଏ । ଏହି ଘୋଷଣାର ମର୍ମ ହେଲା ଏହା ଯେ ଏହି ଦଲିଲ ଅନୁଯାୟୀ କମ୍ପାନୀ ସଙ୍ଗଠିତ ହେଲେ ଏହି ଦଲିଲର ସ୍ୱାକ୍ଷରକାରୀମାନେ ( ପ୍ରାଇଭେଟ୍ କମ୍ପାନୀ କ୍ଷେତ୍ରରେ ଅନ୍ୟୂନ ଦୁଇ ଜଣ ଓ ପବ୍ଲିକ୍ କମ୍ପାନୀ କ୍ଷେତ୍ରରେ ଅନ୍ୟୂନ ସାତ ଜଣ ) ତାଙ୍କ ବାମ ପାର୍ଶ୍ୱରେ ଲେଖାଥିବା ସଂଖ୍ୟାର ଅଂଶ କ୍ରୟ କରିବା ପାଇଁ ସମ୍ମତ ହୋଇଛନ୍ତି ।

**ପରିମେଳ ବନ୍ଧର ପରିବର୍ତ୍ତନ**—ଏହି ଦଲିଲ କମ୍ପାନୀର ଗଠନତନ୍ତ୍ର ଅଟେ । କମ୍ପାନୀ ଏହାର ସର୍ତ୍ତାବଳୀ ଅନୁଯାୟୀ ପରିଚାଳିତ ହୁଏ । ତେଣୁ ଏହାର ସର୍ତ୍ତଗୁଡ଼ିକ କମ୍ପାନୀ ପକ୍ଷରେ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଅଟେ । ଏଥି ନିମନ୍ତେ ଏହି ସର୍ତ୍ତଗୁଡ଼ିକ ବାରମ୍ବାର ପରିବର୍ତ୍ତନ କରାଗଲେ ତାହା କମ୍ପାନୀ ପକ୍ଷରେ କ୍ଷତିକାରକ ହୁଏ । ଏହି ପରିବର୍ତ୍ତନକୁ ସୀମିତ କରିବା ଉଦ୍ଦେଶ୍ୟରେ କମ୍ପାନୀ ଆଇନର ୧୬ ଧାରା ପରିମେଳ ବନ୍ଧରେ କୌଣସି ପରିବର୍ତ୍ତନ ଆଣିବା ପାଇଁ ନିମ୍ନଲିଖିତ ଆଇନଗତ ପଦ୍ଧତି ନିର୍ଦ୍ଦିଷ୍ଟ କରିଛି ।

କମ୍ପାନୀର **ନାମରେ ପରିବର୍ତ୍ତନ** ଆଣିବା ପ୍ରୟୋଜନ ହେଲେ ଅଂଶଧାରୀମାନେ ଗୋଟିଏ ବିଶେଷ ପ୍ରସ୍ତାବ ଅନୁମୋଦନ କରନ୍ତି ଏବଂ ତାହାକୁ ସରକାରଙ୍କର **ଅନୁମତି** ସକାଶେ ପ୍ରେରଣ କରନ୍ତି । ସରକାରଙ୍କର ଲିଖିତ ଅନୁମତି ପାଇଲା ପରେ କମ୍ପାନୀର ନାମ ପରିବର୍ତ୍ତନ କରାଯାଇପାରେ ।

କମ୍ପାନୀର **ଉଦ୍ଦେଶ୍ୟ ପରିବର୍ତ୍ତନ** କରିବାକୁ ହେଲେ ଅଂଶଧାରୀମାନଙ୍କୁ ଗୋଟିଏ ବିଶେଷ ପ୍ରସ୍ତାବ ପାସ କରିବାକୁ ହେବ ଓ ବିଚାରାଳୟର ଅନୁମୋଦନ ଆଣିବାକୁ ହେବ । ବିଚାରାଳୟଠାରୁ ନିର୍ଦ୍ଦେଶ ପାଇବା ପରେ ପାଉଣାଦାରମାନଙ୍କର ସମ୍ମତି ସଂଗ୍ରହ କରିବାକୁ ହେବ ଅଥବା ସେମାନଙ୍କର ପାଉଣା ପରିଶୋଧ କରିବାକୁ ହେବ ଅଥବା ସେମାନଙ୍କ ପାଉଣା ପରିମାଣ ସକାଶେ ଜାମିନ ଦେବାକୁ ହେବ । ଏହା ପରେ କମ୍ପାନୀର ଉଦ୍ଦେଶ୍ୟରେ ପରିବର୍ତ୍ତନ କରାଯାଇପାରିବ ।

**କାର୍ଯ୍ୟାଳୟର ସ୍ଥାନାନ୍ତର** କରିବାକୁ ହେଲେ ଯଦି କାର୍ଯ୍ୟାଳୟ ଯେଉଁ ସହରରେ ଅବସ୍ଥିତ ସେହି ସହର ମଧ୍ୟରେ ଅନ୍ୟ ସ୍ଥାନକୁ ସ୍ଥାନାନ୍ତରିତ କରାଯାଏ ଅଥବା ସେହି ରାଜ୍ୟସ୍ଥିତ ଅନ୍ୟ କୌଣସି ସହରକୁ ସ୍ଥାନାନ୍ତରିତ କରାଯାଏ, ତାହାହେଲେ ଏଭଳି ସ୍ଥାନାନ୍ତରଣର ୨୪ ଦିନ ମଧ୍ୟରେ କମ୍ପାନୀ ନିବନ୍ଧକଙ୍କୁ ଗୋଟିଏ ନୋଟିସ ବା ସୂଚନା

ଦେବା ଆବଶ୍ୟକ ହୁଏ । ମାତ୍ର ଯଦି କାର୍ଯ୍ୟାଳୟକୁ ଅନ୍ୟ କୌଣସି ରାଜ୍ୟକୁ ସ୍ଥାନାନ୍ତରିତ କରିବା ଉଦ୍ଦେଶ୍ୟ ଥାଏ, ତାହାହେଲେ ଉଦ୍ଦେଶ୍ୟ ପରିବର୍ତ୍ତନ ସକାଶେ ଯେଉଁ ପଦ୍ଧତି ଲିଖିତ ହୋଇଛି, ଉକ୍ତ ପଦ୍ଧତି ଅନୁସରଣ କରିବା ପ୍ରୟୋଜନ ହୁଏ ।

କମ୍ପାନୀର **ମୂଳଧନ ପରିବର୍ତ୍ତନ** କେବଳ ସେତିକବେଳେ ସମ୍ଭବ ହୋଇପାରିବ, ଯେତେବେଳେ କମ୍ପାନୀର ପରିମେଳ ନିୟମାବଳୀ ଏଥି ନିମନ୍ତେ କମ୍ପାନୀକୁ କ୍ଷମତା ପ୍ରଦାନ କରିଥାଏ । ଏ ସମ୍ବନ୍ଧୀୟ ପ୍ରସ୍ତାବ ଅଂଶଧାରୀମାନଙ୍କର ସାଧାରଣ ସଭାରେ ଗୃହୀତ ହେବା ଆବଶ୍ୟକ । ଏହି ପ୍ରସ୍ତାବ ସାଧାରଣ ହେବ କି ବିଶେଷ ହେବ ତାହା ପରିମେଳ ନିୟମାବଳୀରେ ପ୍ରକାଶିତ ହୋଇଥାଏ । ଯଦି ମୂଳଧନର ପରିମାଣକୁ ହ୍ରାସ କରିବାର ଅଭିପ୍ରାୟ ଥାଏ, ତାହାହେଲେ କମ୍ପାନୀ ଆଇନର ୧୦୦ ଧାରା ଅନୁଯାୟୀ ସାଧାରଣ ସଭାରେ ଏକ ବିଶେଷ ପ୍ରସ୍ତାବ ପାସ କରାଇବା ଆବଶ୍ୟକ ହୁଏ ଏବଂ ଏହା ବିଚାରାଳୟଙ୍କର ଅନୁମୋଦନ-ସାପେକ୍ଷ ମଧ୍ୟ ହୋଇଥାଏ ।

**ପରିମେଳ ନିୟମାବଳୀ**— ପରିମେଳ ନିୟମାବଳୀ କମ୍ପାନୀର ଆଭ୍ୟନ୍ତରୀଣ ପରିଚାଳନା ସଂକ୍ରାନ୍ତ ଏକ ଗୁରୁତ୍ୱପୂର୍ଣ୍ଣ ଦଲିଲ । ପରିମେଳ ବନ୍ଧ କମ୍ପାନୀର ସନନ୍ଦ, ତେଣୁ ପରିମେଳ ନିୟମାବଳୀର କୌଣସି ନିୟମ ଏହି ସନନ୍ଦ ବହିର୍ଭୂତ ହୋଇ ନ ପାରେ ଅଥବା ଏହାର କୌଣସି ନିୟମ ପରିମେଳ ବନ୍ଧ ସହିତ ସଂଘର୍ଷ ସୃଷ୍ଟି କରି ନ ପାରେ । ଏହା କେବଳ କମ୍ପାନୀର ଆଭ୍ୟନ୍ତରୀଣ ପରିଚାଳନାକୁ ଶୃଙ୍ଖଳିତ କରିବାର ଏକ ଉପାୟ । ଯେହେତୁ ଗୋଟିଏ ପବ୍ଲିକ କମ୍ପାନୀ ମୁଷ୍ଟିମେୟ ନିର୍ଦ୍ଦେଶକଙ୍କଦ୍ୱାରା ପରିଚାଳିତ ହୁଏ, ତେଣୁ ଏହି ନିୟମଗୁଡ଼ିକ ଅଂଶଧାରୀମାନଙ୍କଦ୍ୱାରା ପ୍ରସ୍ତୁତ କରାଯାଇ ସେମାନଙ୍କର ପରିଚାଳନାକୁ ସହଜସାଧ୍ୟ କରେ ତଥା ସେମାନଙ୍କର କ୍ଷମତାକୁ ସୀମାବଦ୍ଧ କରେ ।

କମ୍ପାନୀ ଆଇନର Table A ରେ ୯୯ଟି ଆଦର୍ଶ ପରିମେଳ ନିୟମାବଳୀ ଅନ୍ତର୍ଭୁକ୍ତ କରାଯାଇଛି । ଏଥି ମଧ୍ୟରୁ ପବ୍ଲିକ କମ୍ପାନୀ ଯେ କୌଣସି ଗୋଟିଏ ପରିମେଳ ନିୟମାବଳୀକୁ ସଂଶୋଧନ, ପରିବର୍ତ୍ତନ ଅଥବା ପରିବର୍ଦ୍ଧନ କରି ଗ୍ରହଣ କରିପାରେ ଅଥବା ସମ୍ପୂର୍ଣ୍ଣ ନୂତନ ପରିମେଳ ବନ୍ଧ ପ୍ରସ୍ତୁତ କରିପାରେ । କମ୍ପାନୀ ଆଇନର ୨୪ ଧାରା ଅନୁଯାୟୀ ପରିମେଳ ନିୟମାବଳୀ ନିବନ୍ଧନ ବାଧ୍ୟତାମୂଳକ ନୁହେଁ ।

ସୀମାହୀନ ଦାୟିତ୍ୱସମ୍ପନ୍ନ କମ୍ପାନୀ, ପ୍ରତ୍ୟାଭୂତିଦ୍ୱାରା ସୀମାବଦ୍ଧ କମ୍ପାନୀ ଏବଂ ଅଂଶଦ୍ୱାରା ସୀମାବଦ୍ଧ ପ୍ରାଇଭେଟ୍ କମ୍ପାନୀ ପକ୍ଷରେ ପରିମେଳ ନିୟମାବଳୀ କମ୍ପାନୀ ନିବନ୍ଧକଙ୍କ ନିକଟରେ ଦାଖଲ କରିବା ବାଧ୍ୟତାମୂଳକ ଅଟେ । ପ୍ରାଇଭେଟ୍ କମ୍ପାନୀକୁ ଏହାର ପରିମେଳ ନିୟମାବଳୀରେ ସଭ୍ୟ ସଂଖ୍ୟାକୁ ୫୦ ଜଣରେ ସୀମାବଦ୍ଧ କରିବା ଆବଶ୍ୟକ ହୁଏ । ଅଂଶ ହସ୍ତାନ୍ତର ନିୟନ୍ତ୍ରଣ ଓ ଜନସାଧାରଣଙ୍କୁ ଏହାର ଅଂଶ ଓ ଋଣପତ୍ର

କ୍ରୟ କରିବାକୁ ଆହ୍ୱାନର ନିଶ୍ଚିତକରଣ ସଂକ୍ରାନ୍ତ କେତେଗୋଟି ଧାରା ତହିଁରେ ଅନ୍ତର୍ଭୁକ୍ତ କରିବା ମଧ୍ୟ ଆବଶ୍ୟକ ହୁଏ ।

ପରିମେଳ ନିୟମାବଳୀରେ ସାଧାରଣତଃ ନିମ୍ନଲିଖିତ ବିଷୟଗୁଡ଼ିକର ଉଲ୍ଲେଖ ଥାଏ ।

(୧) ଅଂଶ-ପୁଞ୍ଜି ଓ ତାହାର ଶ୍ରେଣୀବିଭାଗ ।

(୨) ଅଂଶ ସକାଶେ ଆବେଦନ, ଏହାର ଆବଣ୍ଟନ, ଏ ସଂକ୍ରାନ୍ତ ଅର୍ଥ ଆହ୍ୱାନ ଓ ଅଂଶ ବାଜ୍ୟାପ୍ତକରଣ ସଂକ୍ରାନ୍ତ ନିୟମାବଳୀ ।

(୩) ଅଂଶ ହସ୍ତାନ୍ତର ଓ ଆଇନ ବଳରେ ଅଂଶ ହସ୍ତାନ୍ତର ।

(୪) ଅଂଶଧାରୀମାନଙ୍କର ଭୋଟ୍ ଦେବାର ଅଧିକାର ।

(୫) ଅଂଶଧାରୀମାନଙ୍କର ଅଧିକାର ।

(୬) ନିର୍ଦ୍ଦେଶକମାନଙ୍କର ସଂଖ୍ୟା, ପାରିଶ୍ରମିକ, ଯୋଗ୍ୟତା, ଅପସାରଣ ପ୍ରଭୃତି ।

(୭) ବିଭିନ୍ନ ପ୍ରକାର ସଭା ଓ ତତ୍ ସଂକ୍ରାନ୍ତ ନିୟମାବଳୀ ।

(୮) କମ୍ପାନୀର ଋଣ-ଗ୍ରହଣ କ୍ଷମତା ।

(୯) ହିସାବ ରକ୍ଷଣ, ହିସାବ ପୁସ୍ତକ ସଂରକ୍ଷଣ ଓ ହିସାବ ସମୀକ୍ଷା ସଂକ୍ରାନ୍ତ ନିୟମାବଳୀ ।

(୧୦) ଲଭ୍ୟାଂଶ, ସଞ୍ଚିତ ଓ ଲାଭର ମୂଳଧନୀକରଣ ।

(୧୧) କମ୍ପାନୀର ସିଲ୍‌ମୋହର ଓ ଏହାର ବ୍ୟବହାର ।

(୧୨) ସୂଚନା ସମ୍ବନ୍ଧୀୟ ନିୟମାବଳୀ ।

(୧୩) କମ୍ପାନୀର ସମାପନ ।

**ପରିମେଳ ନିୟମାବଳୀରେ ପରିବର୍ତ୍ତନ**—ଏଭଳି ପରିବର୍ତ୍ତନ କରିବା ସକାଶେ ସାଧାରଣ ସଭାରେ ବିଶେଷ ପ୍ରସ୍ତାବ ପାସ କରାଇବା ଆବଶ୍ୟକ ହୁଏ ।

**ଅନୁଷ୍ଠାନ ପତ୍ର**—କମ୍ପାନୀ ନିବନ୍ଧିତ ହେବା ପରେ ମୂଳଧନ ସଂଗ୍ରହର ଉଦ୍ଦେଶ୍ୟ ଓ ଏହାର ଭବିଷ୍ୟତ୍ କାରବାର ସଂକ୍ରାନ୍ତ ସମସ୍ତ ତଥ୍ୟ ଲିପିବଦ୍ଧ କରି ଜନସାଧାରଣଙ୍କୁ କମ୍ପାନୀର ଅଂଶ ଓ ଋଣପତ୍ର କ୍ରୟ କରିବା ଉଦ୍ଦେଶ୍ୟରେ ଆବେଦନପତ୍ର ଦାଖଲ କରିବା ପାଇଁ ଏହା ଆହ୍ୱାନ ଜଣାଏ । ଏହାର ଉଦ୍ଦେଶ୍ୟ ହେଉଛି, କମ୍ପାନୀର ବର୍ତ୍ତମାନ ଅବସ୍ଥା ଓ ଭବିଷ୍ୟତ୍ ପରିକଳ୍ପନା ବିଷୟରେ ଜନସାଧାରଣଙ୍କୁ ଏକ ସଠିକ୍ ଧାରଣା

ଦେବା ଓ ସେମାନଙ୍କୁ କମ୍ପାନୀର ଅଂଶ ଓ ଋଣପତ୍ର କ୍ରୟ କରିବା ପାଇଁ ଆହ୍ୱାନ ଜଣାଇବା ।

ଅନୁଷ୍ଠାନ ପତ୍ରରେ ଅନ୍ତର୍ଭୁକ୍ତ ବିଭିନ୍ନ ବିଷୟ ମଧ୍ୟରୁ ନିମ୍ନଲିଖିତ ବିଷୟଗୁଡ଼ିକ ବିଶେଷ ଉଲ୍ଲେଖଯୋଗ୍ୟ ।

(୧) ପରିମେଳ ବନ୍ଧର ବିଷୟବସ୍ତୁ;

(୨) ଅଂଶ ସଂଖ୍ୟା ଓ ଏହାର ଶ୍ରେଣୀ ବିଭାଗ;

(୩) ଅଂଶଧାରୀମାନଙ୍କର ଭୋଟ୍ ଦେବା ଅଧିକାର ଓ କମ୍ପାନୀର ଲଭ ଓ ପରିସମ୍ପତ୍ତିରେ ସେମାନଙ୍କର ସ୍ୱାର୍ଥ;

(୪) ନିର୍ଦ୍ଦେଶକମାନଙ୍କର ଯୋଗ୍ୟତାସୂଚକ ନ୍ୟୂନତମ ଅଂଶ ସଂଖ୍ୟା ଓ ସେମାନଙ୍କର ପାରିଶ୍ରମିକ;

(୫) ନିର୍ଦ୍ଦେଶ, (ପରିଚାଳନା ପ୍ରତିନିଧି), ପରିଚାଳକମାନଙ୍କର ନାମ, ଠିକଣା, ପେଶା, ପାରିଶ୍ରମିକ ଓ ସେମାନଙ୍କ ସହିତ ଯଦି କୌଣସି ଚୁକ୍ତି ସମ୍ପାଦିତ ହୋଇଥାଏ, ତାହାହେଲେ ତାହାର ବିଶଦ ବିବରଣୀ;

(୬) ନ୍ୟୂନତମ ପୁଞ୍ଜି ସଂଗ୍ରହର ପରିମାଣ;

(୭) ଅଂଶ ନିମନ୍ତେ ଆବେଦନ ଓ ଏହାର ଆବଣ୍ଟନ ସକାଶେ ଦେୟ ଅର୍ଥର ପରିମାଣ;

(୮) ଅଂଶ କ୍ରୟ କରିବା ପାଇଁ ଆବେଦନପତ୍ର ଦେବାର ଶେଷ ତାରିଖ;

(୯) କମ୍ପାନୀ ପ୍ରବର୍ତ୍ତନର ପ୍ରାଥମିକ ଖର୍ଚ୍ଚ;

(୧୦) ଅଂଶ ବିକ୍ରୟର କମିଶନ ଓ ଅଂଶ ବିକ୍ରୟ ଦାୟଗ୍ରହଣ ବାବଦ ଦେୟ କମିଶନର ପରିମାଣ;

(୧୧) ବିଭିନ୍ନ ଶ୍ରେଣୀର ଅଂଶଧାରୀମାନଙ୍କର ଭୋଟ ଦେବା ଅଧିକାର, ସେମାନଙ୍କର ଲାଭାଂଶ ଓ ମୂଳଧନରେ ଅଧିକାର ।

(୧୨) କମ୍ପାନୀର ହିସାବ ସମୀକ୍ଷକଙ୍କର ନାମ ଓ ଠିକଣା;

(୧୩) ଯଦି କୌଣସି ପରିସମ୍ପତ୍ତି କ୍ରୟ କରାଯାଇଥାଏ, ତାହାହେଲେ ତାହାର ପୂର୍ଣ୍ଣ ବିବରଣୀ;

(୧୪) କମ୍ପାନୀର ପ୍ରବର୍ତ୍ତକମାନଙ୍କର ପାରିଶ୍ରମିକର ପରିମାଣ ଓ କାର୍ଯ୍ୟକଳାପ;

**(୧୫)** ଯଦି ପୂର୍ବରୁ ପ୍ରତିଷ୍ଠିତ କୌଣସି କମ୍ପାନୀ ଅନୁଷ୍ଠାନପତ୍ର ପ୍ରଚ୍ଛର କରେ, ତାହାହେଲେ ଗତ ୫ ବର୍ଷର ସମାହିତ ହିସାବ ( ବୃତ୍ତାନ୍ତ ) ଏବଂ ସେହି ସମୟରେ ପ୍ରଦତ୍ତ ଲଭ୍ୟାଂଶର ହାର;

(୧୬) ଯଦି କମ୍ପାନୀର ଅଧୀନସ୍ଥ ଅନ୍ୟ କୌଣସି ସହକାରୀ କମ୍ପାନୀ ବିଦ୍ୟମାନ ଥାଏ, ତାହାହେଲେ ତାହାର ପୂର୍ଣ୍ଣ ବିବରଣ ।

ନିର୍ଦ୍ଦେଶକମାନଙ୍କଦ୍ୱାରା ସ୍ୱାକ୍ଷରିତ ଏହି ଅନୁଷ୍ଠାନପତ୍ର କମ୍ପାନୀ ନିବନ୍ଧକଙ୍କ ନିକଟରେ ଉପସ୍ଥାପିତ କରାଯିବା ଆବଶ୍ୟକ । ଏହି ଅନୁଷ୍ଠାନପତ୍ର ଉପସ୍ଥାପିତ କରିବାର ୧୦ ଦିନ ମଧ୍ୟରେ ଏହା ପ୍ରଚ୍ଛର କରାଯିବା ଆବଶ୍ୟକ । ଅନୁଷ୍ଠାନପତ୍ରରେ କୌଣସି ମିଥ୍ୟା ବିବରଣ ଅଥବା ତଥ୍ୟ ପ୍ରକାଶ କରାଯାଇଥିଲେ ତାହା କମ୍ପାନୀ ଆଇନ ଅନୁଯାୟୀ ଦଣ୍ଡନୀୟ ଅଟେ ।

**ଅନୁଷ୍ଠାନପତ୍ରର ବିକଳ୍ପ ବିବୃତ**—ପବ୍ଲିକ କମ୍ପାନୀ ପକ୍ଷରେ ଅନୁଷ୍ଠାନପତ୍ର ପ୍ରଚ୍ଛର କରିବା ଅତ୍ୟାବଶ୍ୟକ ଅଟେ; କାରଣ ଏହି କମ୍ପାନୀକୁ ଜନସାଧାରଣଙ୍କୁ ଅଂଶ ବିକ୍ରୟ କରି ପୁଞ୍ଜି ସଂଗ୍ରହ କରିବାକୁ ହୁଏ । ଯଦି ଏହି ଅନୁଷ୍ଠାନପତ୍ର ପ୍ରସ୍ତୁତ କରାଯାଇ ପ୍ରଚ୍ଛର କରାଯାଇ ନ ଥାଏ, ତାହାହେଲେ ଅଂଶ ଆବଣ୍ଟନର ଅନ୍ତତଃ ୩ ଦିନ ପୂର୍ବରୁ କମ୍ପାନୀ ଆଇନର ତୃତୀୟ ତଫସିଲରେ ପ୍ରଦତ୍ତ ପ୍ରତିରୂପ ଅନୁଯାୟୀ ଅନୁଷ୍ଠାନପତ୍ରର ବିକଳ୍ପ ବିବୃତ ପ୍ରସ୍ତୁତ କରି କମ୍ପାନୀ ନିବନ୍ଧକଙ୍କ ନିକଟରେ ଦାଖଲ କରିବାକୁ ହୁଏ । ଏହି ବିବୃତ କମ୍ପାନୀର ନିର୍ଦ୍ଦେଶକମାନଙ୍କଦ୍ୱାରା ସ୍ୱାକ୍ଷରିତ ହୋଇଥିବା ଆବଶ୍ୟକ । ପ୍ରାଇଭେଟ୍ କମ୍ପାନୀ ପକ୍ଷରେ ଅନୁଷ୍ଠାନପତ୍ର ପ୍ରଚ୍ଛର କରିବା ଅନାବଶ୍ୟକ; କାରଣ ଏଭଳି କମ୍ପାନୀ ଏହାର ଅଂଶ ବିକ୍ରୟ କରିବା ଉଦ୍ଦେଶ୍ୟରେ ଜନସାଧାରଣଙ୍କୁ ଆହ୍ୱାନ କରିପାରନ୍ତି ନାହିଁ ।

**ନ୍ୟୂନତମ ପୁଞ୍ଜି (Minimum Subscription)**—କମ୍ପାନୀର କାର୍ଯ୍ୟାରମ୍ଭ କରିବା ନିମନ୍ତେ କେତେକ ବ୍ୟୟ ଅନିବାର୍ଯ୍ୟ ହୋଇଥାଏ । ଏହି ବ୍ୟୟର ପରିମାଣ ନିର୍ଦ୍ଦେଶକଗଣ ଅଥବା ପ୍ରବର୍ତ୍ତକମାନଙ୍କଦ୍ୱାରା ସ୍ଥିରୀକୃତ କରାଯାଇ ପରିମେଳ ନିୟମାବଳୀରେ ଓ ଅନୁଷ୍ଠାନ ପତ୍ରରେ ଅନ୍ତର୍ଭୁକ୍ତ କରାଯାଇଥାଏ । ଏହି ପରିମାଣକୁ ଆବଣ୍ଟନଯୋଗ୍ୟ ନ୍ୟୂନତମ ପୁଞ୍ଜି କୁହାଯାଏ । ଏହି ପରିମାଣ ପୁଞ୍ଜି ଅଂଶ କ୍ରୟ ସକାଶେ ଆବେଦନ ଓ ଆବଣ୍ଟନ ଅର୍ଥ ରୂପେ ସଂଗୃହୀତ ହୋଇ ନ ପାରିଲେ ନିର୍ଦ୍ଦେଶକମାନେ ଅଂଶ ଆବଣ୍ଟନ କରିପାରନ୍ତି ନାହିଁ । ଏହି ପୁଞ୍ଜିର ପରିମାଣ ସାଧାରଣତଃ ନିମ୍ନଲିଖିତ ବ୍ୟୟଗୁଡ଼ିକ ଉପରେ ନିର୍ଭର କରେ :

(୧) କମ୍ପାନୀର କୌଣସି ପରିସମ୍ପତ୍ତି କ୍ରୟ କରିବା ପାଇଁ ଆବଶ୍ୟକ ଅର୍ଥ ଅଥବା ପରିସମ୍ପତ୍ତି କ୍ରୟ କରିବା ନିମନ୍ତେ ସଂଗୃହୀତ ଋଣ ପରିଶୋଧ କରିବା ପାଇଁ ଆବଶ୍ୟକ ଅର୍ଥ;

(୨) କମ୍ପାନୀର ପ୍ରାଥମିକ ବା ପ୍ରାରମ୍ଭିକ ଓ ଗଠନ ସମ୍ବନ୍ଧୀୟ ବ୍ୟୟ;

(୩) କମ୍ପାନୀର ଅଂଶ ବିକ୍ରୟକାରୀ ଦଲାଲଙ୍କ କମିଶନ ଅଥବା ଅଂଶ ବିକ୍ରୟ ସକାଶେ ଦାୟିତ୍ୱ ଗ୍ରହଣକାରୀ ପ୍ରତିଷ୍ଠାନର କମିଶନ୍;

(୪) କମ୍ପାନୀର କାର୍ଯ୍ୟ ପରିଚାଳନା ନିମନ୍ତେ ଅନ୍ତତଃ ବର୍ଷକ ସକାଶେ ଆବଶ୍ୟକ କାର୍ଯ୍ୟକାରୀ ମୂଳଧନ; ଓ

(୫) କମ୍ପାନୀର ପ୍ରକୃତି ଓ ଉଦ୍ଦେଶ୍ୟ ଅନୁଯାୟୀ ଆବଶ୍ୟକ ଅନ୍ୟ କୌଣସି ବ୍ୟୟ।

ଅଂଶ ବିକ୍ରୟ ବାବଦ ସଂଗୃହୀତ ନ୍ୟୂନତମ ପୁଞ୍ଜି କୌଣସି ଏକ ତଫସିଲଭୁକ୍ତ ବ୍ୟାଙ୍କ୍‌ରେ ଜମା କରାଯିବା ଆବଶ୍ୟକ। ଅନୁଷ୍ଠାନପତ୍ର ପ୍ରକାଶିତ ହେବା ତାରିଖଠାରୁ ୧୨୦ ଦିନ ମଧ୍ୟରେ ଯଦି ନ୍ୟୂନତମ ପୁଞ୍ଜି ସଂଗୃହୀତ ନ ହୋଇପାରେ ତାହାହେଲେ ୧୨୦ ଦିନରୁ ୧୩୦ ଦିନ ମଧ୍ୟରେ ଅର୍ଥପ୍ରେରକମାନଙ୍କୁ ( ବିନା ସୁଧରେ ) ଏହି ଅର୍ଥ ଫେରସ୍ତ ଦିଆଯାଏ। ୧୩୦ ଦିନ ପରେ ଫେରସ୍ତ ଦିଆଗଲେ ପ୍ରତ୍ୟେକ ଅଧିକା ଦିନ ସକାଶେ ଶତକଡ଼ା ୬ ହାରରେ ସୁଧ ସମେତ ଏହି ଅର୍ଥ ଫେରସ୍ତ ଦେବା ପାଇଁ କମ୍ପାନୀର ନିର୍ଦ୍ଦେଶକ-ମାନେ ଯୌଥ ଓ ପୃଥକ୍ ଭାବରେ ଦାୟୀ ଅଟନ୍ତି।

**ଅଂଶ ଆବଣ୍ଟନ** ( Allotment of share )—ଅନୁଷ୍ଠାନପତ୍ର ପ୍ରଚାର କରିବାଦ୍ୱାରା କମ୍ପାନୀ ଏହାର ଅଂଶ କ୍ରୟ କରିବା ନିମନ୍ତେ ଜନସାଧାରଣଙ୍କୁ ଆହ୍ୱାନ ଜଣାନ୍ତି। ଅଂଶକ୍ରୟେଚ୍ଛୁ ବ୍ୟକ୍ତିମାନେ ନିର୍ଦ୍ଦିଷ୍ଟ ଦେୟ ଅର୍ଥ ସହିତ ଅଂଶ କ୍ରୟ କରିବା ନିମନ୍ତେ ଆବେଦନ ଜଣାନ୍ତି। ଏହା ସେମାନଙ୍କ ତରଫରୁ ଅଂଶ କ୍ରୟ କରିବା ନିମନ୍ତେ ଏକ ପ୍ରସ୍ତାବ ଅଟେ। ନିର୍ଦ୍ଦେଶକମାନେ ଏହି ପ୍ରସ୍ତାବ ଗ୍ରହଣ କରିପାରନ୍ତି ଅଥବା ପ୍ରତ୍ୟାଖ୍ୟାନ କରିପାରନ୍ତି। ଆବେଦନକାରୀଙ୍କ ନାମ, ଧାମ, ପେଶା ଇତ୍ୟାଦି ବିଷୟ ବିବେଚନା କରି ନିର୍ଦ୍ଦେଶକମାନେ ଯାହାଙ୍କର ଆବେଦନ ମଞ୍ଜୁର କରନ୍ତି ତାଙ୍କୁ ଅଂଶ ଆବଣ୍ଟନ କରାଯାଏ। କେତେକ ଆବେଦନକାରୀ ଯେତେ ସଂଖ୍ୟାର ଅଂଶ କ୍ରୟ କରିବା ପାଇଁ ଆବେଦନ ଜଣାଇ-ଥାଆନ୍ତି, ତାଙ୍କୁ ତାହାଠାରୁ ଊଣା ସଂଖ୍ୟାର ଅଂଶ ଆବଣ୍ଟନ କରାଯାଇପାରେ। ପୁଣି କେତେକ କ୍ଷେତ୍ରରେ ନିର୍ଦ୍ଦେଶକମାନେ ଆବେଦନକାରୀଙ୍କୁ ଆଦୌ କୌଣସି ଅଂଶ ଆବଣ୍ଟନ କରନ୍ତି ନାହିଁ। ଏହି କ୍ଷେତ୍ରରେ ନିର୍ଦ୍ଦେଶକଙ୍କର ନିଷ୍ପତ୍ତି ପତ୍ରଦ୍ୱାରା ଆବେଦନକାରୀଙ୍କୁ ଜଣାଇ ଦିଆଯାଏ। ଯେଉଁମାନଙ୍କର ଆବେଦନ ପ୍ରତ୍ୟାଖ୍ୟାତ ହୁଏ ତାଙ୍କୁ ତାଙ୍କଠାରୁ ପ୍ରାପ୍ତ ଅର୍ଥ ଫେରସ୍ତ ଦିଆଯାଏ। ଏକ ନିର୍ଦ୍ଦିଷ୍ଟ ତାରିଖ ମଧ୍ୟରେ ଅଂଶ ଆବଣ୍ଟିତ ନ ହେଲେ ଆବେଦନକାରୀମାନେ ତାଙ୍କ ପ୍ରସ୍ତାବ ଫେରାଇ ଦେଇପାରନ୍ତି।

**ପ୍ରାରମ୍ଭିକ ବ୍ୟୟ** ( Preliminary Expenses )—କମ୍ପାନୀର ଗଠନ ସମ୍ବନ୍ଧୀୟ ଯେତେ ପ୍ରକାର ବ୍ୟୟ ହୁଏ, ସେଗୁଡ଼ିକୁ ପ୍ରାରମ୍ଭିକ ବ୍ୟୟ କୁହାଯାଏ। ତନ୍ମଧ୍ୟରେ

ପରମେଲ ପତ୍ର, ପରମେଲ ନିୟମାବଳୀ, ଅନୁଷ୍ଠାନ ପତ୍ର ପ୍ରଭୃତି ଦଲିଲ ପ୍ରସ୍ତୁତ କରିବା ଖର୍ଚ୍ଚ, କୌଣସି ଚୁକ୍ତି ପତ୍ର (ବ୍ୟବସାୟ ବିକ୍ରେତା ଅଥବା ପ୍ରବର୍ତ୍ତିକମାନଙ୍କ ସହିତ) ପ୍ରସ୍ତୁତ କରିବା ବ୍ୟୟ, ନିବନ୍ଧନ ବ୍ୟୟ, ଷ୍ଟାମ୍ପର ମୂଲ୍ୟ, ଆଇନ ପରାମର୍ଶଦାତାଙ୍କ ପାରିଶ୍ରମିକ, ହିସାବ ପରୀକ୍ଷକଙ୍କର ପାରିଶ୍ରମିକ, ଅଂଶ ବିକ୍ରୟ କରିବା ସମ୍ବନ୍ଧୀୟ ଦସ୍ତୁର ଓ କମିଶନ୍ ପ୍ରଭୃତି ବ୍ୟୟ ଅନ୍ତର୍ଭୁକ୍ତ । ଏହି ସମସ୍ତ ବ୍ୟୟକୁ ପ୍ରାରମ୍ଭିକ ବ୍ୟୟ ହିସାବ ନାମକ ଏକ ହିସାବରୁ ଦାୟୀ ପାର୍ଶ୍ୱକୁ ନିଆଯାଏ । ଏହି ବ୍ୟୟ ପୁଞ୍ଜିଗତ ବ୍ୟୟ ରୂପେ ବିବେଚିତ ହୁଏ ଓ ଏହା ଉଦ୍‌ବୃତ୍ତ ପତ୍ରର ପରିସମ୍ପତ୍ତି ପାର୍ଶ୍ୱରେ ଅନ୍ତର୍ଭୁକ୍ତ ହୁଏ । ନିର୍ଦ୍ଦେଶକମାନେ ଇଚ୍ଛାକଲେ ପ୍ରତି ବର୍ଷ ଏହାର କେତେକାଂଶକୁ ନିଟ୍ ଲାଭ ଓ କ୍ଷତି ହିସାବକୁ ସ୍ଥାନାନ୍ତରିତ କରି ପ୍ରାରମ୍ଭିକ ବ୍ୟୟର ମୋଟ ବାକିକୁ ହ୍ରାସ କରିପାରନ୍ତି ଅଥବା ଶୂନ୍ୟରେ ପରିଣତ କରି-ପାରନ୍ତି ।

**କମ୍ପାନୀର ଶ୍ରେଣୀବିଭାଗ**—ଭାରତୀୟ କମ୍ପାନୀଗୁଡ଼ିକୁ ପ୍ରଧାନତଃ ଦୁଇଟି ଶ୍ରେଣୀରେ ବିଭକ୍ତ କରାଯାଇଛି, ଯଥା—(କ) ଘରୋଇ କଂପାନୀ ଓ (ଖ) ସର୍ବସାଧାରଣ କଂପାନୀ ।

(କ) ସେହି କଂପାନୀକୁ ଘରୋଇ କଂପାନୀ କୁହାଯାଏ, ଯାହାର ପରିମେଳ ନିୟମାବଳୀଦ୍ୱାରା (୧) ସଭ୍ୟମାନଙ୍କର ଅଂଶ ହସ୍ତାନ୍ତରକରଣ ଅଧିକାରକୁ ସୀମାବଦ୍ଧ କରେ, (୨) କର୍ମଚାରୀମାନଙ୍କ ବ୍ୟତୀତ ସଭ୍ୟ ସଂଖ୍ୟାକୁ ୫୦ ଜଣରେ ସୀମିତ କରେ ଓ (୩) ଜନସାଧାରଣଙ୍କୁ ଏହାର ଅଂଶ ପତ୍ର ଓ ଋଣ ପତ୍ର କ୍ରୟ କରିବାକୁ ନିଷିଦ୍ଧ କରେ । ଏହି କଂପାନୀର ଦାୟ ଅଂଶଦ୍ୱାରା ଅଥବା ପ୍ରତ୍ୟାଭୂତିଦ୍ୱାରା ସୀମାବଦ୍ଧ ହୋଇପାରେ । ଏହି କଂପାନୀ କଦାପି ଅସୀମ ଦାୟବିଶିଷ୍ଟ ହୋଇପାରେ ନାହିଁ ।

(ଖ) ଘରୋଇ କଂପାନୀକୁ ବାଦ୍ ଦେଲେ ଅନ୍ୟ ସମସ୍ତ କଂପାନୀ ସର୍ବସାଧାରଣ କଂପାନୀ ନାମରେ ଅଭିହିତ ହୁଅନ୍ତି ।

**ସର୍ବସାଧାରଣ ଓ ଘରୋଇ କମ୍ପାନୀ ମଧ୍ୟରେ ପାର୍ଥକ୍ୟ—**

୧୯୧୩ ସାଲର ଭାରତୀୟ କଂପାନୀ ଆଇନ ପାସ୍ ହେବା ପୂର୍ବରୁ ଏହି ଦୁଇ ଶ୍ରେଣୀର କଂପାନୀ ମଧ୍ୟରେ କୌଣସି ପାର୍ଥକ୍ୟ ନ ଥିଲା । ଏହି ଆଇନ ସର୍ବପ୍ରଥମେ ଏହି ଦୁଇ ଶ୍ରେଣୀର କଂପାନୀ ମଧ୍ୟରେ ପାର୍ଥକ୍ୟ ସୃଷ୍ଟି କରିଥିଲା । ଉଭୟ କଂପାନୀର ପୂର୍ବ ପ୍ରଦତ୍ତ ସଂଜ୍ଞା ଓ ଉପରୋକ୍ତ ଆଇନର ବିଭିନ୍ନ ଧାରା ପ୍ରଣିଧାନ କଲେ ଏହି ଦୁଇ ଶ୍ରେଣୀର କଂପାନୀ ମଧ୍ୟରେ ନିମ୍ନଲିଖିତ ପାର୍ଥକ୍ୟମାନ ପରିଦୃଷ୍ଟ ହୁଏ :

(୧) ଘରୋଇ କଂପାନୀର ନ୍ୟୂନତମ ସଭ୍ୟ ସଂଖ୍ୟା ୨ ଓ କର୍ମଚାରୀଙ୍କ ବ୍ୟତୀତ ସର୍ବୋଚ୍ଚ ସଭ୍ୟ ସଂଖ୍ୟା ୫୦ରେ ସୀମିତ ଅଟେ । ମାତ୍ର ସର୍ବସାଧାରଣ କଂପାନୀର

ନ୍ୟୂନତମ ସଭ୍ୟ ସଂଖ୍ୟା ୭ ଓ ସର୍ବୋଚ୍ଚ ସଭ୍ୟ ସଂଖ୍ୟା ଅଂଶ ପତ୍ରଦ୍ୱାରା ସୀମିତ ହୋଇଥାଏ ।

(୨) ଘରୋଇ କଂପାନୀର ନାମ ଶେଷରେ 'ପ୍ରାଇଭେଟ୍ ଲିମିଟେଡ୍' (Private Limited) ଏହି ଶବ୍ଦ ଦୁଇଟି ଲେଖାଯାଏ । ମାତ୍ର ସର୍ବସାଧାରଣ କଂପାନୀର ନାମ ଶେଷରେ କେବଳ 'ଲିମିଟେଡ୍' ଏହି ଶବ୍ଦଟି ଲେଖାଯାଏ ।

(୩) ସର୍ବସାଧାରଣ କଂପାନୀ ଅନୁଷ୍ଠାନ ପତ୍ର ପ୍ରଚାର କରିବାଦ୍ୱାରା ଜନସାଧାରଣଙ୍କୁ ଏହାର ଅଂଶ ପତ୍ର ଓ ଋଣ ପତ୍ର କ୍ରୟ କରିବା ପାଇଁ ଆବେଦନ କରିପାରେ; କିନ୍ତୁ ଘରୋଇ କଂପାନୀର ପରିମେଳ ନିୟମାବଳୀ ଏହାର ଅଂଶ ପତ୍ର ଅଥବା ଋଣ ପତ୍ର ଜନସାଧାରଣଙ୍କୁ କ୍ରୟ କରିବାକୁ ନିଷିଦ୍ଧ କରେ । ତେଣୁ ଏହିପରି କଂପାନୀ ପକ୍ଷରେ ଅନୁଷ୍ଠାନ ପତ୍ର ପ୍ରସ୍ତୁତ କରି ନିବନ୍ଧକଙ୍କ ନିକଟରେ ଉପସ୍ଥାପିତ କରିବା ଅନାବଶ୍ୟକ ।

(୪) ସର୍ବସାଧାରଣ କଂପାନୀର ପରିଚାଳନା ନିମନ୍ତେ ନ୍ୟୂନ ପକ୍ଷେ ୩ ଜଣ ନିର୍ଦ୍ଦେଶକ ରହିବା ଆବଶ୍ୟକ; ମାତ୍ର ଘରୋଇ କଂପାନୀର ପରିଚାଳନା ନିମନ୍ତେ ନିର୍ଦ୍ଦେଶକଙ୍କର ନ୍ୟୂନତମ ସଂଖ୍ୟା ୨ ।

(୫) ସର୍ବସାଧାରଣ କଂପାନୀ ପକ୍ଷରେ ବାଧ୍ୟବଦ୍ଧ ସଭା ( Statutory meeting ) ଅହ୍ୱାନ କରିବା ଓ ବାଧ୍ୟବଦ୍ଧ ବିବରଣୀ ( Statutory Report ) ଦାଖଲ କରିବା ବାଧ୍ୟତାମୂଳକ ଅଟେ । କିନ୍ତୁ ଘରୋଇ କଂପାନୀ ପକ୍ଷରେ ଏହା ନିଷ୍ପ୍ରୟୋଜନ ।

(୬) ଘରୋଇ କଂପାନୀ କଂପାନୀ ନିବନ୍ଧକଙ୍କଠାରୁ ନିବନ୍ଧନ ପତ୍ର ( Certificate of Incorporation ) ପାଇବା ପରେ କାର୍ଯ୍ୟ ଆରମ୍ଭ କରିପାରେ; କିନ୍ତୁ ସର୍ବସାଧାରଣ କଂପାନୀ କାର୍ଯ୍ୟାରମ୍ଭର ଅନୁମତି ପତ୍ର (Certificate of Commencement of Business ) ନ ପାଇବା ପର୍ଯ୍ୟନ୍ତ କାର୍ଯ୍ୟାରମ୍ଭ କରିପାରେ ନାହିଁ ।

(୭) ଘରୋଇ କଂପାନୀର ପରିମେଳ ନିୟମାବଳୀ ସଭ୍ୟମାନଙ୍କର ଅଂଶ ହସ୍ତାନ୍ତର ଅଧିକାରକୁ ସୀମାବଦ୍ଧ କରେ । କିନ୍ତୁ ସର୍ବସାଧାରଣ କଂପାନୀ କ୍ଷେତ୍ରରେ ଏହା କରାଯାଏ ନାହିଁ ଓ ନିର୍ଦ୍ଦେଶକମାନେ ଅଂଶ ହସ୍ତାନ୍ତର କରିବା ସକାଶେ ଅଂଶଧାରୀମାନଙ୍କର ଆବେଦନ ଅନୁମୋଦନ କରନ୍ତି ।

(୮) ସର୍ବସାଧାରଣ କଂପାନୀର ନିର୍ଦ୍ଦେଶକମଣ୍ଡଳୀର ⅓ ଅଂଶ ପାଳି କରି ଅବସର ଗ୍ରହଣ କରନ୍ତି ଓ ବାର୍ଷିକ ସାଧାରଣ ସଭାରେ ପ୍ରତିବର୍ଷ ⅓ ଅଂଶ ଅବସର ଗ୍ରହଣ କରନ୍ତି । ଘରୋଇ କଂପାନୀ ପ୍ରତି ଏହି ନିୟମ ପ୍ରଯୁଜ୍ୟ ନୁହେଁ ।

(୯) ସର୍ବସାଧାରଣ କଂପାନୀର ସଂସ୍ଥାପନର ମୋଟ ପାରଶ୍ରମିକ କଂପାନୀ ଲାଭର ଶତକଡ଼ା ୧୧ ଅଂଶରୁ ଅଧିକ ହୋଇପାରିବ ନାହିଁ; କିନ୍ତୁ ଏହି ନିୟମ ଘରୋଇ କଂପାନୀ ପ୍ରତି ପ୍ରଯୁଜ୍ୟ ନୁହେଁ ।

(୧୦) ଘରୋଇ କଂପାନୀର ସାଧାରଣ ଓ ଅଗ୍ରାଧିକାରଯୁକ୍ତ ଅଂଶ ବ୍ୟତୀତ ବିଶେଷ ଭୋଟାଧିକାର ଓ ଅନ୍ୟାନ୍ୟ ସୁବିଧାବିଶିଷ୍ଟ ଅଂଶ ଥାଇପାରେ; ମାତ୍ର ସର୍ବସାଧାରଣ କଂପାନୀରେ ଏପରି ଅଂଶ ରହେ ନାହିଁ ।

**ଘରୋଇ କମ୍ପାନୀର ବିଶେଷ ସୁବିଧାସମୂହ—**

୧୯୫୬ ସାଲର କଂପାନୀ ଆଇନ ଓ ତାହାର ପରବର୍ତ୍ତୀ ସଂଶୋଧନସମୂହ ଘରୋଇ କଂପାନୀକୁ କେତେକ ସୁବିଧା ପ୍ରଦାନ କରିଛି । ସେଗୁଡ଼ିକ ନିମ୍ନରେ ପ୍ରଦତ୍ତ ହେଲ :

(୧) ଘରୋଇ କଂପାନୀ ପକ୍ଷରେ ଅନୁଷ୍ଠାନ ପତ୍ର ଅଥବା ଏତଦ୍ ପରିବର୍ତ୍ତେ ବିବରଣୀ ପତ୍ର ନିବନ୍ଧକଙ୍କ ନିକଟରେ ଦାଖଲ କରିବା ଅନାବଶ୍ୟକ ।

(୨) ସଭ୍ୟ ସଂଖ୍ୟା ୨ ଜଣ ହେଲେ ଘରୋଇ କଂପାନୀ ପ୍ରତିଷ୍ଠିତ ହୋଇପାରିବ ।

(୩) ଘରୋଇ କଂପାନୀ ନିବନ୍ଧନ ପତ୍ର ପାଇବା ମାତ୍ରେ ବ୍ୟବସାୟ ଆରମ୍ଭ କରିପାରେ ।

(୪) ଏହି କଂପାନୀ ପକ୍ଷରେ ବିଧିବଦ୍ଧ ସଭା ଆହ୍ୱାନ କରିବା ଓ ବିଧିବଦ୍ଧ ବିବରଣୀ ପ୍ରସ୍ତୁତ କରି ନିବନ୍ଧକଙ୍କ ନିକଟରେ ଦାଖଲ କରିବା ଅନାବଶ୍ୟକ ଅଟେ ।

(୫) ନିବନ୍ଧକଙ୍କ ନିକଟରେ ଦାଖଲ କରାଯାଇଥିବା ଏହି କଂପାନୀର ଲାଭ କ୍ଷତି ହିସାବ ଓ ଉଦ୍‌ବୃତ୍ତ ପତ୍ର ଏହି କଂପାନୀର ସଭ୍ୟମାନଙ୍କ ବ୍ୟତୀତ ଅନ୍ୟ କେହି ଦେଖି-ପାରିବେ ନାହିଁ ।

(୬) ୧୯୫୬ ସାଲର କଂପାନୀ ଆଇନର ୨୭୪ ଧାରା (ନିର୍ଦ୍ଦେଶକମାନଙ୍କର ନିଯୁକ୍ତି ଓ ବିଜ୍ଞାପନ ସମ୍ବନ୍ଧୀୟ) ଘରୋଇ କଂପାନୀ ପ୍ରତି ପ୍ରଯୁଜ୍ୟ ନୁହେଁ ।

(୭) ୧୯୬୨ ମସିହା ଅପ୍ରେଲ ୧ ତାରିଖରୁ ଏହିଭଳି କଂପାନୀରେ ଆଜୀବନ ସକାଶେ ନିଯୁକ୍ତ କୌଣସି ନିର୍ଦ୍ଦେଶକଙ୍କୁ ଅପସାରିତ କରାଯାଇ ପାରିବ ନାହିଁ ।

**ବିଭିନ୍ନ ଧରଣର କମ୍ପାନୀ—**ଉଭୟ ଘରୋଇ ଓ ସର୍ବସାଧାରଣ କମ୍ପାନୀ ପୁଣି ବିଭିନ୍ନ ଧରଣର ହୋଇପାରେ । ବର୍ତ୍ତମାନ ସାଧାରଣତଃ ନିମ୍ନଲିଖିତ ଧରଣର କମ୍ପାନୀର ପ୍ରଚଳନ ଦେଖାଯାଏ :

(କ) **ସରକାରୀ କମ୍ପାନୀ** କେନ୍ଦ୍ରୀୟ ସରକାର ଅଥବା କୌଣସି ରାଜ୍ୟ ସରକାର ଅଥବା ରାଜ୍ୟ ସରକାରସମୂହ ଅଥବା କେନ୍ଦ୍ରୀୟ ସରକାର ଓ ଏକ ବା ଏକାଧିକ ରାଜ୍ୟ ସରକାର ଯୌଥ ଭାବରେ ଯଦି କୌଣସି କମ୍ପାନୀର ଅଦାୟୀକୃତ ମୂଳଧନର ଶତକଡ଼ା ୫୧ ଭାଗର ମାଲିକ ହୋଇଥାଆନ୍ତି, ତାହାହେଲେ ସେହି କମ୍ପାନୀକୁ ସରକାରୀ କମ୍ପାନୀ ନାମରେ ଅଭିହିତ କରାଯାଏ । ଏହି କମ୍ପାନୀ ଏହାର ନିଜସ୍ୱ ହିସାବ ସମୀକ୍ଷକ ନିଯୁକ୍ତ କରିପାରିବ ନାହିଁ । କେନ୍ଦ୍ର ସରକାର ଭାରତୀୟ କମ୍ପ୍ଟ୍ରୋଲର ଓ ଅଡ଼ିଟର ଜେନେରାଲ୍‌ଙ୍କ ପରାମର୍ଶ ଅନୁଯାୟୀ ସମୀକ୍ଷକ ନିଯୁକ୍ତ କରନ୍ତି । କେନ୍ଦ୍ରୀୟ ସରକାର ଗେଜେଟ୍‌ରେ ପ୍ରକାଶିତ ବିଜ୍ଞପ୍ତି ଦ୍ୱାରା ଭାରତୀୟ କମ୍ପାନୀ ଆଇନର ଯେ କୌଣସି ଧାରାରୁ ସରକାରୀ କମ୍ପାନୀକୁ ଅବ୍ୟାହତି ଦେଇପାରନ୍ତି ।

(ଖ) **ବୈଧାନିକ କମ୍ପାନୀ**—ରାଜ୍ୟ ବିଧାନସଭା ଅଥବା ଲୋକସଭା କୌଣସି ଏକ ସ୍ୱତନ୍ତ୍ର କ୍ଷେତ୍ରରେ ଆଇନ ପ୍ରଣୟନଦ୍ୱାରା ଯେଉଁ କମ୍ପାନୀ ସୃଷ୍ଟି କରନ୍ତି ତାହାକୁ ବୈଧାନିକ କମ୍ପାନୀ କୁହାଯାଏ । ଏହାର ଗଠନ, ଉଦ୍ଦେଶ୍ୟ, ପରିସର ଓ ପରିଚାଳନା ପ୍ରଭୃତି ବିଷୟ ଏହି ଆଇନରେ ଲିପିବଦ୍ଧ ହୋଇଥାଏ ।

(ଗ) **ସୂତ୍ରଧାରୀ କମ୍ପାନୀ**—ଯଦି ଗୋଟିଏ କମ୍ପାନୀ ଅନ୍ୟ ଗୋଟିଏ କମ୍ପାନୀର ମୂଳଧନର ଶତକଡ଼ା ୫୧ ଭାଗ ଯୋଗାଏ ଅଥବା ସେହି କଂପାନୀର ନିର୍ଦ୍ଦେଶକମଣ୍ଡଳୀଙ୍କୁ ନିଯୁକ୍ତ କରିବାର ଅଧିକାର ଲାଭ କରେ, ତାହାହେଲେ ସେପରି କଂପାନୀକୁ ସୂତ୍ରଧାରୀ କଂପାନୀ କୁହାଯାଏ । ଅଧୀନସ୍ଥ କଂପାନୀର ଅଂଶପତ୍ରଗୁଡ଼ିକ ଯଦି ଅନ୍ୟ କୌଣସି କଂପାନୀ ନିକଟରେ ଜାମିନ ସ୍ୱରୂପ ଗଚ୍ଛିତ ରଖାଯାଇଥାଏ ତାହାହେଲେ ଏହି କଂପାନୀକୁ ସୂତ୍ରଧାରୀ କଂପାନୀ ବୋଲି କୁହାଯାଏ ନାହିଁ । ଏହି ସୂତ୍ରଧାରୀ କଂପାନୀର ଚୂଡ଼ାନ୍ତ ହିସାବ ପ୍ରସ୍ତୁତ କରିବା ସମୟରେ ଏହାର ଲାଭ-କ୍ଷତି ହିସାବ ଓ ଉଦ୍‌ବୃତ୍ତ ପତ୍ର ସହିତ ଅଧୀନସ୍ଥ କଂପାନୀର ଲାଭ-କ୍ଷତି ହିସାବ ଓ ଉଦ୍‌ବୃତ୍ତ ପତ୍ର ସଂଯୁକ୍ତ ରହିବା ଆବଶ୍ୟକ ।

(ଘ) **ଅଧୀନସ୍ଥ କମ୍ପାନୀ**—କଂପାନୀ ଆଇନର ୪ ଧାରା ଅନୁଯାୟୀ ନିମ୍ନଲିଖିତ ଅବସ୍ଥାରେ ଥିବା କଂପାନୀକୁ ଅଧୀନସ୍ଥ କଂପାନୀ କୁହାଯିବ : (୧) ଯଦି ଅନ୍ୟ ଗୋଟିଏ କଂପାନୀ ଏହାର ନିର୍ଦ୍ଦେଶକମଣ୍ଡଳୀ ଗଠନ ନିୟନ୍ତ୍ରଣ କରେ; (୨) ଯଦି ଅପର ଗୋଟିଏ କଂପାନୀ ଏହାର ଲିଖିତ ମୂଲ୍ୟର ଅର୍ଦ୍ଧେକରୁ ଅଧିକ ଇକ୍ୱିଟି ଅଥବା ସାଧାରଣ ଅଂଶ ପତ୍ରର ଅଧିକାରୀ ଥାଏ; (୩) ଯଦି ଏହି କଂପାନୀର ଇକ୍ୱିଟି ଓ ଅଗ୍ରାଧିକାର ଅଂଶଧାରୀମାନଙ୍କର ଭୋଟାଧିକାର ସମାନ ଥାଏ ଓ ଅପର ଗୋଟିଏ କଂପାନୀ ଏହାର ମୋଟ ଭୋଟର ଅର୍ଦ୍ଧେକର ଅଧିକ ସଂଖ୍ୟକ ଭୋଟ ନିୟନ୍ତ୍ରଣ କରେ; ଓ (୪) ଯଦି ସୂତ୍ରଧାରୀ କଂପାନୀ ଅନ୍ୟ ଏକ କଂପାନୀର ଅଧୀନସ୍ଥ କଂପାନୀ ହୋଇଥାଏ ।

(ଡ) **ବିଦେଶୀ କମ୍ପାନୀ**—ଭାରତୀୟ କଂପାନୀ ଆଇନ ଅନୁଯାୟୀ ଯେଉଁ କଂପାନୀ ଭାରତ ବାହାରେ ନିବନ୍ଧିତ ହୋଇଛି ତାହାକୁ ବିଦେଶୀ କଂପାନୀ କୁହାଯାଏ । ଭାରତୀୟ କଂପାନୀ ଆଇନ ଏହି କଂପାନୀଗୁଡ଼ିକୁ ଦୁଇ ଶ୍ରେଣୀରେ ବିଭକ୍ତ କରିଛି, **ଯଥା :** (୧) ୧୯୫୬ ମସିହାର ଭାରତୀୟ କଂପାନୀ ଆଇନ ପାସ ହୋଇ ଚାଲୁହେବା ପୂର୍ବରୁ ଯେଉଁ ବିଦେଶୀ କଂପାନୀଗୁଡ଼ିକ ଭାରତରେ କାରବାର କରୁଥିଲେ ଓ (୨) ଯେଉଁ ବିଦେଶୀ କଂପାନୀଗୁଡ଼ିକ ଏହି ଆଇନ ପାସ ହୋଇ ଚାଲୁ ହେବା ପରେ କାରବାର ଆରମ୍ଭ କରିଛନ୍ତି । କଂପାନୀ ଆଇନର ୫୮୪, ୫୯୨, ୫୯୫ ଏବଂ ୬୦୩ ଓ ୬୦୮ ଧାରାଗୁଡ଼ିକରେ ଏହି ବିଦେଶୀ କଂପାନୀଗୁଡ଼ିକର ଦଲିଲ ପତ୍ର ପ୍ରଦର୍ଶିତ ନାମ, ତାଲିକା ବହି, ଅନୁଷ୍ଠାନପତ୍ର ଓ ଅବସାନ ସମ୍ବନ୍ଧୀୟ ନିୟମାବଳୀ ବର୍ଣ୍ଣିତ ହୋଇଛି ।

**କମ୍ପାନୀର ପରିଚାଳନା**—ଯଦିଓ ଆଇନ ଦୃଷ୍ଟିରୁ କଂପାନୀର ସ୍ୱତନ୍ତ୍ର ସତ୍ତା ରହିଛି ଏବଂ ଗୋଟିଏ ବ୍ୟକ୍ତି ରୂପେ ପରିଗଣିତ ହୁଏ, ତଥାପି ଏହି ବ୍ୟକ୍ତି କୃତ୍ରିମ ଅଟେ । ରକ୍ତମାଂସବିଶିଷ୍ଟ ବ୍ୟକ୍ତି ସଦୃଶ ଏହା କୌଣସି କାର୍ଯ୍ୟ ନିଜେ ସଂପାଦନ କରିପାରେ ନାହିଁ । ଯେଉଁମାନେ ଏହାର ପରିଚାଳନାଭାର ଗ୍ରହଣ କରନ୍ତି ସେମାନେ ନିର୍ଦ୍ଦେଶକ ନାମରେ ଅଭିହିତ ହୁଅନ୍ତି ଏବଂ ନିର୍ଦ୍ଦେଶକମଣ୍ଡଳୀ (Board of Directors) କଂପାନୀ ପରିଚାଳନାରେ ଏକ କେନ୍ଦ୍ରୀୟ ସ୍ଥାନ ଦଖଲ କରିଥାଏ ।

**ନିର୍ଦ୍ଦେଶକମାନଙ୍କର ନିଯୁକ୍ତି**—ସାଧାରଣତଃ କଂପାନୀର ପ୍ରବର୍ତ୍ତକମାନେ କଂପାନୀର ପ୍ରଥମ ନିର୍ଦ୍ଦେଶକମାନଙ୍କୁ ନିଯୁକ୍ତ କରନ୍ତି ଓ ସେମାନଙ୍କର ନାମ, ଧାମ ଓ ପେଶା ଇତ୍ୟାଦି ପରିମେଳ ନିୟମାବଳୀରେ ପ୍ରଦତ୍ତ ହୋଇଥାଏ । ଯଦି ଏହି ଦଲିଲରେ ଏହାର ଉଲ୍ଲେଖ ନ ଥାଏ ତାହାହେଲେ ପରିମେଳ ବନ୍ଧରେ ସ୍ୱାକ୍ଷରକାରୀମାନେ କଂପାନୀର ନିର୍ଦ୍ଦେଶକ ରୂପେ ବିବେଚିତ ହୁଅନ୍ତି । ଅଂଶଧାରୀମାନଙ୍କଦ୍ୱାରା ସାଧାରଣ ସଭାରେ ନୂତନ ନିର୍ଦ୍ଦେଶକମାନେ ନିଯୁକ୍ତ ନ ହେବା ପର୍ଯ୍ୟନ୍ତ ପୂର୍ବୋକ୍ତ ବ୍ୟକ୍ତିମାନେ ନିର୍ଦ୍ଦେଶକ ହୋଇଥାଅନ୍ତି ।

ଅଂଶଧାରୀମାନଙ୍କର ବାର୍ଷିକ ସାଧାରଣ ସଭାରେ ନିର୍ଦ୍ଦେଶକମାନଙ୍କର ନିର୍ବାଚନ ନିର୍ଦ୍ଦେଶକ ନିଯୁକ୍ତିର ସ୍ୱାଭାବିକ ପଦ୍ଧତି ଅଟେ । ଏହି ନିର୍ବାଚନର କାର୍ଯ୍ୟଧାରା ପରିମେଳ ନିୟମାବଳୀରେ ବର୍ଣ୍ଣିତ ହୋଇଥାଏ ।

**ନିର୍ଦ୍ଦେଶକମାନଙ୍କର ପାରିଶ୍ରମିକ**—ପରିମେଳ ନିୟମାବଳୀଦ୍ୱାରା ଅନୁମୋଦିତ ହୋଇଥିଲେ ଅଥବା ଅଂଶଧାରୀମାନଙ୍କର ସାଧାରଣ ସଭାରେ ଗୃହୀତ କୌଣସି ପ୍ରସ୍ତାବଦ୍ୱାରା ଅନୁମୋଦିତ ହୋଇଥିଲେ ନିର୍ଦ୍ଦେଶକମାନେ ପାରିଶ୍ରମିକ ପାଇପାରନ୍ତି । ସାଧାରଣ ନିର୍ଦ୍ଦେଶକଗଣ ନିର୍ଦ୍ଦେଶକମଣ୍ଡଳୀଙ୍କର ସଭାରେ ଉପସ୍ଥିତ ପାଇଁ

ଏକ ନିର୍ଦ୍ଦିଷ୍ଟ ଫିସ୍ ଆକାରରେ ସେମାନଙ୍କର ପାରିଶ୍ରମିକ ଲାଭ କରନ୍ତି । ପରିଚାଳନା ନିର୍ଦ୍ଦେଶକ ସର୍ବକ୍ଷଣ କମ୍ପାନୀରେ ରହି ଏହାର ପରିଚାଳନା କରୁଥିବାରୁ ସେ ମାସିକ ପାରିଶ୍ରମିକ ପାଆନ୍ତି ଅଥବା କମ୍ପାନୀର ନିଟ୍ ଲାଭର ଶତକଡ଼ା କେତେକ ଅଂଶ ପାରିଶ୍ରମିକ ରୂପେ ପାଇଥାଆନ୍ତି । କେନ୍ଦ୍ରୀୟ ସରକାରଙ୍କର ଅନୁମତି ବିନା ପ୍ରତ୍ୟେକ ନିର୍ଦ୍ଦେଶକଙ୍କର ପାରିଶ୍ରମିକ କମ୍ପାନୀ ନିଟ୍ ଲାଭର ଶତକଡ଼ା ୫ ଅଂଶ ଓ ସବୁ ନିର୍ଦ୍ଦେଶକଙ୍କର ମିଳିତ ପାରିଶ୍ରମିକ କମ୍ପାନୀ ଲାଭର ଶତକଡ଼ା ୧୦ ଅଂଶରୁ ଅଧିକ ହୋଇପାରେ ନାହିଁ । କେତେକ କ୍ଷେତ୍ରରେ ନିର୍ଦ୍ଦେଶକମାନଙ୍କୁ କମିଶନ୍‌ରୂପେ ପାରିଶ୍ରମିକ ଦେବାର ବ୍ୟବସ୍ଥା ମଧ୍ୟ କମ୍ପାନୀ ଆଇନରେ ଅନ୍ତର୍ଭୁକ୍ତ ଅଛି ।

**ନିର୍ଦ୍ଦେଶକମାନଙ୍କର ଯୋଗ୍ୟତା**—ନିର୍ଦ୍ଦେଶକ ହେବା ପାଇଁ ନିମ୍ନଲିଖିତ ଯୋଗ୍ୟତା ଥିବା ଆବଶ୍ୟକ :

(୧) କମ୍ପାନୀ ଆଇନର ୨୭୩ ଧାରା ଅନୁଯାୟୀ ଯେ କୌଣସି ବ୍ୟକ୍ତି ମୋଟରେ ୨୦ଟିରୁ ଅଧିକ କମ୍ପାନୀର ନିର୍ଦ୍ଦେଶକ ହୋଇପାରିବେ ନାହିଁ ।

(୨) କମ୍ପାନୀ ଆଇନର 'ଟେବଲ୍ ଏ'ର ୬୬ ଧାରା ଅନୁଯାୟୀ ପ୍ରତ୍ୟେକ ନିର୍ଦ୍ଦେଶକଙ୍କୁ କମ୍ପାନୀର ଅନ୍ତତଃ ଗୋଟିଏ ଅଂଶ କ୍ରୟ କରିବାକୁ ହେବ; ମାତ୍ର ପରିମେଳ ନିୟମାବଳୀ ନିର୍ଦ୍ଦେଶକ ରୂପେ ନିଯୁକ୍ତ ହେବା ନିମନ୍ତେ ଅନ୍ୟୂନ କେତେଗୋଟି ଅଂଶ କ୍ରୟ କରିବା ବାଧ୍ୟତାମୂଳକ କରିପାରେ ।

(୩) ଏହି ଯୋଗ୍ୟତାସୂଚକ ଅଂଶର ଲିଖିତ ମୂଲ୍ୟ ୫,୦୦୦ ଟଙ୍କାରୁ ଅଧିକ ହୋଇପାରିବ ନାହିଁ । ନିର୍ଦ୍ଦେଶକ ରୂପେ ନିଯୁକ୍ତ ହେବାର ୨ ମାସ ମଧ୍ୟରେ ନିର୍ଦ୍ଦେଶକଙ୍କୁ ତାଙ୍କର ଯୋଗ୍ୟତାସୂଚକ କ୍ରୟ କରିବାକୁ ହୁଏ ଏବଂ କ୍ରୟ କରିବା ପରେ ଏ ସମ୍ବନ୍ଧୀୟ ବିବରଣୀ ନିବନ୍ଧକଙ୍କ ନିକଟରେ ଦାଖଲ କରିବାକୁ ହୁଏ ।

(୪) ଆଇନ ଅନୁଯାୟୀ ଏଭଳି ବ୍ୟକ୍ତି ଯେପରି ଅନ୍ୟ କାରଣରୁ ଅଯୋଗ୍ୟ ନ ହୁଅନ୍ତି ।

ନିମ୍ନଲିଖିତ ବ୍ୟକ୍ତିମାନେ କମ୍ପାନୀର ନିର୍ଦ୍ଦେଶକ ହେବାକୁ ଯୋଗ୍ୟ ବୋଲି ବିବେଚିତ ହେବେ ନାହିଁ :

(୧) ଯେଉଁ ବ୍ୟକ୍ତି ବିଚାରାଳୟଙ୍କଦ୍ୱାରା ବିକୃତମସ୍ତିଷ୍କ ବୋଲି ଘୋଷିତ ହୋଇଛନ୍ତି;

(୨) ଯେଉଁ ବ୍ୟକ୍ତି ବିଚାରାଳୟଙ୍କଦ୍ୱାରା ଦେବାଳିଆ ଘୋଷିତ ହୋଇଛନ୍ତି ଅଥବା ଦେବାଳିଆ ତାଲିକାରୁ ତାଙ୍କ ନାମ ବାଦ୍ ଦେବା ସକାଶେ ତାଙ୍କର ଆବେଦନ ବିଚାରାଧୀନ ଅଛି;

(ଙ) ଗତ ୫ ବର୍ଷ ମଧ୍ୟରେ ଯେଉଁ ବ୍ୟକ୍ତି ନୈତିକ ଅପରାଧରେ ଅଭିଯୁକ୍ତ ହୋଇ ଅନ୍ତତଃ ୬ ମାସ କାରାଦଣ୍ଡ ଭୋଗ କରିଛନ୍ତି ।

(ଚ) ଯେଉଁ ବ୍ୟକ୍ତି ସେହି କମ୍ପାନୀର ଏକକ ଭାବେ ଅଥବା ଯୌଥ ଭାବେ କ୍ରୀତ ଅଂଶର ତଳବୀ ଅର୍ଥାତ୍ ଅଦ୍ଧ ତ ଅର୍ଥ ପ୍ରଦାନ କରିବାର ନିର୍ଦ୍ଦିଷ୍ଟ ଦିବସ ଗତ ହେବାର ୬ ମାସ ମଧ୍ୟରେ ସୁଦ୍ଧା ଏହି ଅର୍ଥ ପ୍ରଦାନ କରି ନାହାନ୍ତି; ଓ

(ଛ) ଯେଉଁ ବ୍ୟକ୍ତି କମ୍ପାନୀର ନିର୍ଦ୍ଦେଶକ ହେବାକୁ ଅଯୋଗ୍ୟ ବୋଲି ବିଚାରାଳୟଙ୍କ-ଦ୍ୱାରା ବିବେଚିତ ହୋଇଛନ୍ତି ।

**ନିର୍ଦ୍ଦେଶକମାନଙ୍କର କ୍ଷମତା**— ନିର୍ଦ୍ଦେଶକମାନେ କମ୍ପାନୀର ପରିମେଳ ନିୟମାବଳୀ, କମ୍ପାନୀ ଆଇନ ଏବଂ ଅଂଶଧାରୀମାନଙ୍କର ସଭାରୁ ସେମାନଙ୍କର କ୍ଷମତା ଲାଭ କରନ୍ତି । ମାତ୍ର ଏହି କ୍ଷମତା ନିର୍ଦ୍ଦେଶକମାନଙ୍କର ଯୌଥ କ୍ଷମତା ଅଟେ । ଏହାକୁ ସେମାନେ ଏକକ ରୂପେ ଅଥବା ପୃଥକ୍ ଭାବରେ ବ୍ୟବହାର କରିପାରନ୍ତି ନାହିଁ । ଏହି କ୍ଷମତା ବ୍ୟବହାର କରିବା ସମୟରେ ସେମାନେ ପରିମେଳ ବନ୍ଧରେ ଉଲ୍ଲିଖିତ ଉଦ୍ଦେଶ୍ୟଗୁଡ଼ିକର ବିରୁଦ୍ଧାଚରଣ କରିପାରିବେ ନାହିଁ । ନିର୍ଦ୍ଦେଶକମଣ୍ଡଳୀ କମ୍ପାନୀ ତରଫରୁ ନିମ୍ନଲିଖିତ କ୍ଷମତାଗୁଡ଼ିକ ବ୍ୟବହାର କରି-ପାରନ୍ତି : (କ) ପ୍ରଚଳିତ ଅଂଶ ଦାବିଦ୍ଧ ବିକେୟା ଦେୟ ଅର୍ଥ ଆହ୍ୱାନ କରିବା; (ଖ) ଋଣ ପତ୍ର ବଣ୍ଟନ ଓ ପ୍ରଚଳନ କରିବା; (ଗ) ଋଣ ପତ୍ର ବ୍ୟତୀତ ଅନ୍ୟ ଉପାୟରେ ଋଣ ସଂଗ୍ରହ କରିବା (ବ୍ୟାଂକିଂ କମ୍ପାନୀ ପ୍ରତି ଏହା ଲାଗୁ ନୁହେଁ); (ଘ) କମ୍ପାନୀର ଅର୍ଥ ବିନିଯୋଗ କରିବା; ଓ (ଙ) ଋଣ ପ୍ରଦାନ କରିବା ।

**ପରିଚାଳନା ନିର୍ଦ୍ଦେଶକ**—କମ୍ପାନୀ ସହିତ କୌଣସି ଚୁକ୍ତି ଫଳରେ ଅଥବା ଅଂଶଧାରୀମାନଙ୍କର ସାଧାରଣ ସଭା ଅଥବା ନିର୍ଦ୍ଦେଶକମଣ୍ଡଳୀଙ୍କର ସଭାରେ ଗୃହୀତ କୌଣସି ପ୍ରସ୍ତାବ ଫଳରେ ଅଥବା ପରିମେଳ ବନ୍ଧ ଅଥବା ପରିମେଳ ନିୟମାବଳୀର କୌଣସି ଧାରା ବଳରେ ଯଦି କୌଣସି ନିର୍ଦ୍ଦେଶକ ଏଭଳି କୌଣସି ବିଶେଷ କ୍ଷମତାର ଅଧିକାରୀ ହୁଅନ୍ତି, ଯାହା ସେ ଅନ୍ୟଥା ଲାଭ କରିପାରି ନ ଥାଆନ୍ତେ, ତାହାହେଲେ ତାହାଙ୍କୁ ପରିଚାଳନା ନିର୍ଦ୍ଦେଶକ କୁହାଯାଏ । ଅବଶ୍ୟ ସେ ବିଭିନ୍ନ ନାମରେ ଅଭିହିତ ହୋଇପାରନ୍ତି । କମ୍ପାନୀ ଆଇନର ୧୯୬୦ ସାଲର ସଂଶୋଧନୀ ଆଇନରେ କୁହାଯାଇଛି ଯେ ପରିଚାଳନା ନିର୍ଦ୍ଦେଶକଙ୍କ କ୍ଷମତା ନିର୍ଦ୍ଦେଶକମଣ୍ଡଳୀଙ୍କର ତତ୍ତ୍ୱାବଧାନ, ନିୟନ୍ତ୍ରଣ ଓ ନିର୍ଦ୍ଦେଶାପେକ୍ଷ ଅଟେ ।

ପରିଚାଳନା ନିର୍ଦ୍ଦେଶକଙ୍କ ନିଯୁକ୍ତିର ନିୟମାବଳୀ ନିମ୍ନରେ ପ୍ରଦତ୍ତ ହେଲା :

(୧) ଗୋଟିଏ କମ୍ପାନୀର ନିର୍ଦ୍ଦେଶକ ହିଁ କେବଳ ସେହି କମ୍ପାନୀର ପରିଚାଳନା ନିର୍ଦ୍ଦେଶକ ରୂପେ ନିଯୁକ୍ତ ହୋଇପାରିବେ । (୨) କେନ୍ଦ୍ରୀୟ ସରକାରଙ୍କର ଅନୁମୋଦନ ବିନା ସର୍ବସାଧାରଣ କମ୍ପାନୀରେ ପରିଚାଳନା ନିର୍ଦ୍ଦେଶକଙ୍କର ପ୍ରଥମ ନିଯୁକ୍ତି କାର୍ଯ୍ୟକାରୀ ହୋଇପାରିବ ନାହିଁ । (୩) ପରିଚାଳନା ନିର୍ଦ୍ଦେଶକଙ୍କର ନିଯୁକ୍ତି ଓ ପୁନର୍ନିଯୁକ୍ତି ସଂକ୍ରାନ୍ତ ନିୟମାବଳୀର ପରିବର୍ତ୍ତନ କେନ୍ଦ୍ରୀୟ ସରକାରଙ୍କର ଅନୁମୋଦନସାପେକ୍ଷ ଅଟେ ।

କମ୍ପାନୀ ଆଇନରେ ନିର୍ଦ୍ଦେଶ ଅଛି ଯେ ପରିଚାଳନା ନିର୍ଦ୍ଦେଶକ ଏକାଦିକ୍ରମେ ପାଞ୍ଚ ବର୍ଷ ପର୍ଯ୍ୟନ୍ତ ନିଯୁକ୍ତ ହେବେ । ତାଙ୍କ ମିଆଦ ଶେଷ ହେବାର ଦୁଇ ବର୍ଷ ମଧ୍ୟରେ ତାଙ୍କୁ ପୁଣି ପାଞ୍ଚ ବର୍ଷ ନିମନ୍ତେ ପୁନର୍ନିଯୁକ୍ତି ଦିଆଯାଇପାରେ ।

ପରିଚାଳନା ନିର୍ଦ୍ଦେଶକଙ୍କୁ ମାସିକ ବେତନ ଆକାରରେ ଅଥବା ନିଟ୍ ଲାଭର କମିଶନ୍ ଆକାରରେ ପାରିଶ୍ରମିକ ଦିଆଯାଇପାରେ । ଯେତେବେଳେ କମିଶନ ଆକାରରେ ପାରିଶ୍ରମିକ ଦିଆଯାଏ ତାହା କେନ୍ଦ୍ରୀୟ ସରକାରଙ୍କର ଅନୁମୋଦନ ନିଟ୍ ଲାଭର ବିନା ଶତକଡ଼ା ୫ ଅଂଶରୁ ଅଧିକ ହୋଇପାରିବ ନାହିଁ । ଯଦି ଏକାଧିକ ପରିଚାଳନା ନିର୍ଦ୍ଦେଶକ ନିଯୁକ୍ତ ହୋଇଥାଆନ୍ତି, ତାହାହେଲେ ତାଙ୍କର ମୋଟ ପାରିଶ୍ରମିକ ନିଟ୍ ଲାଭର ଶତକଡ଼ା ୧୦ ଅଂଶରୁ ଅଧିକ ହୋଇପାରିବ ନାହିଁ । ଏହିଭଳି ପାରିଶ୍ରମିକ ଲାଭ କରୁଥିବା ପରିଚାଳନା ନିର୍ଦ୍ଦେଶକ ଏହି କମ୍ପାନୀର ଅଧୀନସ୍ଥ କମ୍ପାନୀରୁ ଅନ୍ୟ କୌଣସି ପାରିଶ୍ରମିକ ପାଇପାରିବେ ନାହିଁ ।

**ପରିଚାଳକ**—ଯେଉଁ ବ୍ୟକ୍ତି ପରିଚାଳନା ପ୍ରତିନିଧି ନୁହନ୍ତି ତାଙ୍କ ସହିତ ଚୁକ୍ତି କରିଯାଇ ବା ଅନ୍ୟ ଭାବରେ ତାଙ୍କୁ ପରିଚାଳକ ରୂପେ ନିଯୁକ୍ତ କରିଯାଇପାରେ । ସେ ନିର୍ଦ୍ଦେଶକମଣ୍ଡଳୀଙ୍କର ସମିତିର ନିୟନ୍ତ୍ରଣ, ପର୍ଯ୍ୟବେକ୍ଷଣ ଓ ନିର୍ଦ୍ଦେଶାଧୀନ ଥାଇ କମ୍ପାନୀ ପରିଚାଳନାର ସମସ୍ତ ଦାୟିତ୍ୱ ଗ୍ରହଣ କରନ୍ତି । କିନ୍ତୁ କୌଣସି ଅଂଶୀଦାରୀ ପ୍ରତିଷ୍ଠାନ ଅଥବା କମ୍ପାନୀ ଅଥବା ସମିତିକୁ କୌଣସି ସର୍ବସାଧାରଣ କମ୍ପାନୀ ପରିଚାଳକ ରୂପେ ନିଯୁକ୍ତ କରିପାରିବେ ନାହିଁ । କୌଣସି ବ୍ୟକ୍ତି ହିଁ କେବଳ ପରିଚାଳକ ରୂପେ ନିଯୁକ୍ତ ପାଇପାରନ୍ତି । ତାଙ୍କ ନିଯୁକ୍ତିର ମିଆଦ ୫ ବର୍ଷରୁ ଅଧିକ ହୋଇପାରିବ ନାହିଁ ଓ ତାଙ୍କର ପାରିଶ୍ରମିକ ନିଟ୍ ଲାଭର ଶତକଡ଼ା ୫ରୁ ଅଧିକ ହୋଇପାରିବ ନାହିଁ ।

**ପରିଚାଳନା ପ୍ରତିନିଧି**—୧୯୭୦ ମସିହା ଅପ୍ରେଲ ୩ ତାରିଖ ପୂର୍ବରୁ ପରିଚାଳନା ପ୍ରତିନିଧି ନିଯୁକ୍ତି ପ୍ରଥା ପ୍ରଚଳିତ ଥିଲା । କିନ୍ତୁ ନାନାଦି ସଂଶୋଧନୀ ଆଇନଦ୍ୱାରା ଏହି ପ୍ରଥାର ଦୋଷତ୍ରୁଟି ଦୂରୀଭୂତ ହୋଇ ନ ପାରିବାରୁ ଉକ୍ତ ତାରିଖରେ ଏହି ପ୍ରଥାର ସମ୍ପୂର୍ଣ୍ଣ ବିଲୋପସାଧନ କରିଯାଇଛି ।

**କମ୍ପାନୀର ସଭା**—ଗୋଟିଏ କମ୍ପାନୀର ପରିଚାଳନା ଗଣତାନ୍ତ୍ରିକ ନୀତି ଅନୁସରଣ କରେ । ପରିଚାଳନାର ଯାବତୀୟ କ୍ଷମତା ଅଂଶଧାରୀମାନଙ୍କ ଉପରେ ନ୍ୟସ୍ତ; ମାତ୍ର ଯେହେତୁ ସେମାନଙ୍କ ପକ୍ଷରେ କମ୍ପାନୀର ପରିଚାଳନା ଦାୟିତ୍ୱ ବହନ କରିବା ଅସମ୍ଭବ, ତେଣୁ ସେମାନେ ସେମାନଙ୍କର ପ୍ରତିନିଧି ସ୍ୱରୂପ ନିର୍ଦ୍ଦିଷ୍ଟ ସଂଖ୍ୟକ ବ୍ୟକ୍ତିଙ୍କୁ ନିର୍ଦ୍ଦେଶକ ରୂପେ ନିଯୁକ୍ତ କରନ୍ତି । ସୁତରାଂ ନିର୍ଦ୍ଦେଶକମାନେ ଯେଉଁ ସମସ୍ତ ଗୁରୁତ୍ୱପୂର୍ଣ୍ଣ ନିଷ୍ପତ୍ତି ଗ୍ରହଣ କରନ୍ତି ସେଗୁଡ଼ିକ ଅଂଶଧାରୀମାନଙ୍କଦ୍ୱାରା ଅନୁମୋଦିତ ହେବା ଆବଶ୍ୟକ । ଏଥି ନିମନ୍ତେ କମ୍ପାନୀ ଆଇନରେ ତିନି ପ୍ରକାର ସଭାର ବ୍ୟବସ୍ଥା ରହିଛି । ଏହି ସଭାରେ ବିଭିନ୍ନ ପ୍ରକାର ପ୍ରସ୍ତାବ ଉପସ୍ଥାପିତ କରିବାର ମଧ୍ୟ ବ୍ୟବସ୍ଥା ଅଛି । ଏହି ସଭାଗୁଡ଼ିକ ହେଉଛି— (୧) ବିଧିବଦ୍ଧ ସଭା, (୨) ବାର୍ଷିକ ସାଧାରଣ ସଭା ଓ (୩) ବିଶେଷ ସାଧାରଣ ସଭା । ଏହି ସଭା ସମ୍ବନ୍ଧରେ ଜ୍ଞାତବ୍ୟ ବିଷୟଗୁଡ଼ିକ ନିମ୍ନରେ ବର୍ଣ୍ଣିତ ହେଲା ।

**(୧) ବିଧିବଦ୍ଧ ସଭା**—କାର୍ଯ୍ୟ ଆରମ୍ଭ କରିବାର ଏକ ମାସ ପରେ ଓ ଛଅ ମାସ ମଧ୍ୟରେ ପ୍ରତ୍ୟେକ ସର୍ବସାଧାରଣ କମ୍ପାନୀକୁ ଏକ ବିଧିବଦ୍ଧ ସଭା ଆହ୍ୱାନ କରିବାକୁ ହୁଏ । ଘରୋଇ କମ୍ପାନୀ ପ୍ରତି ଏହି ନିୟମ ପ୍ରଯୁଜ୍ୟ ନୁହେଁ । କମ୍ପାନୀର ସମ୍ପାଦକ ଏହି ସଭାରେ ଉପସ୍ଥାପିତ କରାଯିବା ସକାଶେ ଗୋଟିଏ ବିଧିବଦ୍ଧ ବିବରଣୀ ପ୍ରସ୍ତୁତ କରନ୍ତି । ଏହି ବିବରଣୀର ସତ୍ୟତା ପ୍ରମାଣ କରିବା ପାଇଁ ଏହା ଅନ୍ୟୁନ ଦୁଇ ଜଣ ନିର୍ଦ୍ଦେଶକ ଓ ହିସାବ ପରୀକ୍ଷକଙ୍କ-ଦ୍ୱାରା ସ୍ୱାକ୍ଷରିତ ହେବା ଆବଶ୍ୟକ । ସଭା ବସିବାର ନିର୍ଦ୍ଦିଷ୍ଟ ତାରିଖର ଅନ୍ୟୁନ ୨୧ ଦିନ ପୂର୍ବରୁ ଏହି ବିବରଣୀ ଏକ ପ୍ରତିଲିପି ଓ ସଭା ବିଷୟକ ବିଜ୍ଞପ୍ତି ପ୍ରତି ସଦସ୍ୟଙ୍କୁ ପ୍ରେରିତ ହେବା ଆବଶ୍ୟକ । ଏହି ସଭାରେ କମ୍ପାନୀ ପ୍ରବର୍ତ୍ତନ ସମ୍ବନ୍ଧୀୟ ଯେ କୌଣସି ବିଷୟ ଆଲୋଚିତ ହୋଇପାରେ । କିନ୍ତୁ ଏହି ସଭାରେ ଏପରି କୌଣସି ବିଷୟ ଆଲୋଚିତ ହୋଇ-ପାରିବ ନାହିଁ, ଯାହାର ବିଜ୍ଞପ୍ତି ସଦସ୍ୟମାନଙ୍କୁ ପୂର୍ବରୁ ପ୍ରେରିତ ହୋଇ ନାହିଁ । ନିର୍ଦ୍ଦିଷ୍ଟ ସମୟ ମଧ୍ୟରେ ଏହି ସଭା ଆହୂତ ନ ହେଲେ କମ୍ପାନୀର ଅବସାନ ଘଟିପାରେ ଏବଂ ପ୍ରତ୍ୟେକ ନିର୍ଦ୍ଦେଶକଙ୍କୁ ତାଙ୍କର ଖିଲାପ ସକାଶେ ପାଞ୍ଚ ଶତ ଟଙ୍କା ପର୍ଯ୍ୟନ୍ତ ଜୋରିମାନା ହୋଇପାରେ ।

**ବିଧିବଦ୍ଧ ବିବରଣୀ**—ପୂର୍ବରୁ କୁହାଯାଇଛି ଯେ ଏହି ବିଧିବଦ୍ଧ ବିବରଣୀ କମ୍ପାନୀ ସମ୍ପାଦକ ପ୍ରସ୍ତୁତ କରନ୍ତି ଓ ଅନ୍ୟୁନ ଦୁଇ ଜଣ ନିର୍ଦ୍ଦେଶକ ଓ ହିସାବ ପରୀକ୍ଷକ ଏହାକୁ ଅନୁମୋଦନ କରିବା ଆବଶ୍ୟକ । ଯଦି କମ୍ପାନୀରେ ପରିଚାଳନା ନିର୍ଦ୍ଦେଶକ ନିଯୁକ୍ତ ହୋଇଥାଆନ୍ତି ତାହାହେଲେ ଉପରୋକ୍ତ ଦୁଇ ଜଣ ନିର୍ଦ୍ଦେଶକଙ୍କ ମଧ୍ୟରୁ ସେ ଜଣେ ହେବେ । ବିଧିବଦ୍ଧ ସଭା ଅନୁଷ୍ଠିତ ହେବା ପୂର୍ବରୁ ଏହି ବିଧିବଦ୍ଧ ବିବରଣୀର ଏକ ପ୍ରତିଲିପି କମ୍ପାନୀ ନିବନ୍ଧକଙ୍କ ନିକଟରେ ଉପସ୍ଥାପିତ ହେବା ଆବଶ୍ୟକ । ଏହି ବିବରଣୀରେ ନିମ୍ନଲିଖିତ ବିଷୟ-ଗୁଡ଼ିକର ଅନ୍ତର୍ଭୁକ୍ତି ବାଧ୍ୟତାମୂଳକ :

(୧) ଆବଣ୍ଟିତ ଅଂଶର ପୂର୍ଣ୍ଣ ମୂଲ୍ୟ ଓ ଆଂଶିକ ମୂଲ୍ୟ ଅଦାୟୀକୃତ ବର୍ଣ୍ଣିତ ଅଂଶର ସଂଖ୍ୟା ଓ ବିକ୍ରୟଲବ୍ଧ ଅର୍ଥର ପରିମାଣ ।

(୨) ବିବରଣୀ ପ୍ରସ୍ତୁତ ହେବାର ୭ ଦିନ ପୂର୍ବ ପର୍ଯ୍ୟନ୍ତ ବିଭିନ୍ନ କାରଣରେ ପ୍ରାପ୍ତ ଓ ପ୍ରଦତ୍ତ ଅର୍ଥର ପରିମାଣ ।

(୩) ପ୍ରାଥମିକ ବ୍ୟୟର ଆନୁମାନିକ ହିସାବ ଓ ଅଂଶ ବିକ୍ରୟ ବାବଦ କମିଶନର ପରିମାଣ ।

(୪) ନିର୍ଦ୍ଦେଶକବର୍ଗ, ହିସାବ ସମୀକ୍ଷକ, ପରିଚାଳକ ଅଥବା ପରିଚାଳନା-ନିର୍ଦ୍ଦେଶକଙ୍କ ନାମ, ଠିକଣା ଓ ପେଶା ।

(୫) ଯଦି କୌଣସି ଚୁକ୍ତିର ସଂଶୋଧନ ପ୍ରସ୍ତାବ ସେହି ସଭାରେ ଆଲୋଚିତ ହେବାକୁ ଥାଏ, ତାହାହେଲେ ସେହି ଚୁକ୍ତିର ବିଶଦ ବିବରଣୀ ।

(୬) ଦାୟିତ୍ୱ-ଗ୍ରହଣକାରୀଙ୍କର କାର୍ଯ୍ୟ କେତେଦୂର ଅଗ୍ରସର ହୋଇଛି ତାହାର ପୂର୍ଣ୍ଣ ବିବରଣ ଓ ଯଦି ସମ୍ପୂର୍ଣ୍ଣରୂପେ ସମ୍ପାଦିତ ନ ହୋଇଥାଏ ତାହାହେଲେ ତାହାର କାରଣ ।

(୭) ନିର୍ଦ୍ଦେଶକ ଓ ପରିଚାଳକ ନିର୍ଦ୍ଦେଶକଙ୍କ ନିକଟ ଯଦି ଆହୂତ ଅର୍ଥ ମିଳି ନ ଥାଏ, ତାହାହେଲେ ସେ ସମ୍ବନ୍ଧୀୟ ବିବରଣ ।

(୮) ଅଂଶ ବିକ୍ରୟ ବାବଦ କୌଣସି ନିର୍ଦ୍ଦେଶକ ଓ ପରିଚାଳନା ନିର୍ଦ୍ଦେଶକଙ୍କୁ ଯଦି କମିଶନ ଦିଆଯାଇଥାଏ, ତାହାହେଲେ ତାହାର ପୂର୍ଣ୍ଣ ବିବରଣୀ ।

**(୨) ବାର୍ଷିକ ସାଧାରଣ ସଭା** – ବିଧିବଦ୍ଧ ସଭା ବ୍ୟତୀତ ପ୍ରତ୍ୟେକ କମ୍ପାନୀକୁ ପ୍ରତି ବର୍ଷ ଏକ ବାର୍ଷିକ ସାଧାରଣ ସଭା ଆହ୍ୱାନ କରିବାକୁ ପଡ଼େ । ଏହି ସଭା ଆହ୍ୱାନ କରିବା ପାଇଁ ଯେଉଁ ସୂଚନା ଦିଆଯାଏ ତହିଁରେ ଏହି ସଭାକୁ ବାର୍ଷିକ ସାଧାରଣ ସଭା ବୋଲି ଉଲ୍ଲେଖ କରିଯିବା ଆବଶ୍ୟକ । କମ୍ପାନୀ ଆଇନରେ ପ୍ରଦତ୍ତ ଏହି ସଭା ସମ୍ବନ୍ଧୀୟ ନିୟମଗୁଡ଼ିକ ନିମ୍ନରେ ବର୍ଣ୍ଣିତ ହେଲା :

(କ) କମ୍ପାନୀ ନିବନ୍ଧିତ ହେବାର ଅନଧିକ ୧୮ ମାସ ମଧ୍ୟରେ ଏହି ସଭା ଆହୂତ ହେବା ଆବଶ୍ୟକ । ଉକ୍ତ ନିର୍ଦ୍ଦିଷ୍ଟ ସମୟ ମଧ୍ୟରେ ଏହି ସଭା ଆହୂତ ହେଲେ ନିବନ୍ଧନ ବର୍ଷ ଅଥବା ତତ୍ପର ବର୍ଷରେ ପୁଣି ବାର୍ଷିକ ସଭା ଆହ୍ୱାନ କରିବା ଆବଶ୍ୟକ ହୁଏ ନାହିଁ ।

ଉପରୋକ୍ତ ନିୟମାବଳୀ ପାଳନ କରି ପ୍ରତ୍ୟେକ କମ୍ପାନୀ ପ୍ରତି ବର୍ଷ ବାର୍ଷିକ ସାଧାରଣ ସଭା ଆହ୍ୱାନ କରିବ । ପୂର୍ବବର୍ତ୍ତୀ ବାର୍ଷିକ ସାଧାରଣ ସଭାର ଅନଧିକ ୧୫ ମାସ ମଧ୍ୟରେ ପରବର୍ତ୍ତୀ ବାର୍ଷିକ ସାଧାରଣ ସଭା ଆହୂତ ହେବା ଆବଶ୍ୟକ । ନିବନ୍ଧକ ଇଚ୍ଛା

କଲେ ବିଶେଷ କାରଣ ସକାଶେ ସଭା ଆହ୍ୱାନ କରିବାର ଏହି ସମୟକୁ ୩ ମାସ ବଢ଼ାଇ ଦେଇପାରନ୍ତି । ସାଧାରଣ ଛୁଟି ଦିନ ବ୍ୟତୀତ ଅନ୍ୟ ଯେ କୌଣସି କାର୍ଯ୍ୟ ଦିବସ ଓ ବ୍ୟବସାୟ ସମୟ ମଧ୍ୟରେ କମ୍ପାନୀର ନିବନ୍ଧନଭୁକ୍ତ କାର୍ଯ୍ୟାଳୟ ଅଥବା ଏହି କାର୍ଯ୍ୟାଳୟ ଅବସ୍ଥିତ ଥିବା ସହର, ନଗର ଅଥବା ଗ୍ରାମରେ ଅନୁଷ୍ଠିତ ହେବା ବାଧ୍ୟତାମୂଳକ ।

କମ୍ପାନୀର ବାର୍ଷିକ ସାଧାରଣ ଅଧିବେଶନରେ ସାଧାରଣତଃ ନିମ୍ନଲିଖିତ କାର୍ଯ୍ୟଗୁଡ଼ିକ ସମ୍ପାଦିତ ହୋଇଥାଏ :

(୧) ନିର୍ଦ୍ଦେଶକ ଓ ହିସାବ-ସମୀକ୍ଷକଙ୍କର ବିବୃତିର ଆଲୋଚନା ଓ ଗ୍ରହଣ;

(୨) ବାର୍ଷିକ ହିସାବର ଆଲୋଚନା ଓ ଗ୍ରହଣ;

(୩) ନିର୍ଦ୍ଦେଶକ ଓ ହିସାବ-ସମୀକ୍ଷକଙ୍କ ନିଯୁକ୍ତି;

(୪) ଲଭ୍ୟାଂଶ ଅନୁମୋଦନ କରିବା; ଓ

(୫) ହିସାବ-ସମୀକ୍ଷକଙ୍କର ପାରିଶ୍ରମିକ ନିର୍ଦ୍ଧାରଣ କରିବା ।

(୩) **ବିଶେଷ ସାଧାରଣ ସଭା**—ଆଗାମୀ ବାର୍ଷିକ ସାଧାରଣ ସଭା ପୂର୍ବରୁ କୌଣସି ଗୁରୁତ୍ୱପୂର୍ଣ୍ଣ ଜରୁରୀ କାର୍ଯ୍ୟ ସମ୍ପାଦନ ଉଦ୍ଦେଶ୍ୟରେ ଅଂଶଧାରୀମାନଙ୍କର ଅନୁରୋଧ କ୍ରମେ ନିର୍ଦ୍ଦେଶକମଣ୍ଡଳୀ ଏହି ବିଶେଷ ସାଧାରଣ ଅଧିବେଶନ ଆହ୍ୱାନ କରନ୍ତି । ଏହି ସଭା ସଂକ୍ରାନ୍ତ ନିୟମାବଳୀ ନିମ୍ନରେ ପ୍ରଦତ୍ତ ହେଲା :

(୧) ପରିମେଳ ନିୟମାବଳୀରେ ଏଭଳି ବିଧାନ ଥିଲେ ଆଦାୟୀକୃତ ପୁଞ୍ଜିର $\frac{1}{10}$ ଅଂଶର ଅଧିକାରୀ ଅଥବା ମୋଟ ଭୋଟର $\frac{1}{10}$ ଭୋଟର ଅଧିକାରୀମାନେ ଏହିଭଳି ସଭା ଆହ୍ୱାନ କରିବା ପାଇଁ ନିର୍ଦ୍ଦେଶକମଣ୍ଡଳୀଙ୍କ ନିକଟରେ ଦାବୀ ଉପସ୍ଥାପିତ କରିପାରନ୍ତି ।

(୨) ଏହି ସଭା ଆହ୍ୱାନ କରିବା ଦାବୀ ପତ୍ରରେ ଏହି ସଭାର ଆଲୋଚ୍ୟ ବିଷୟ ଉଲ୍ଲିଖିତ ଥିବା ଆବଶ୍ୟକ ।

(୩) ଏହି ସଭା ଦାବୀ ପତ୍ରକୁ କମ୍ପାନୀର ରେଜିଷ୍ଟ୍ରି କାର୍ଯ୍ୟାଳୟରେ ଜମା ଦିଆଯିବା ଆବଶ୍ୟକ ।

(୪) ସଭା-ଦାବୀ ପତ୍ର ପାଇବାର ୨୧ ଦିନ ମଧ୍ୟରେ ସଭା ଆହ୍ୱାନ କରିବାର ନୋଟିସ ଦେବାକୁ ହୁଏ ଏବଂ ଦାବୀ ପତ୍ର ମିଳିବାର ୪୫ ଦିନ ମଧ୍ୟରେ ନିର୍ଦ୍ଦେଶକମଣ୍ଡଳୀଙ୍କୁ ଏହି ସଭା ଅନୁଷ୍ଠିତ କରିବାକୁ ହୁଏ । ନିର୍ଦ୍ଦେଶକମଣ୍ଡଳୀ ଯଦି ଏହି ସଭା ଆହ୍ୱାନ ନ କରନ୍ତି ତାହାହେଲେ ଦାବୀ ପତ୍ର ତାରିଖର ୩ ମାସ ମଧ୍ୟରେ ଅନୁରୋଧକାରୀ ଅଂଶଧାରୀମାନେ ନିଜେ ନିଜେ ଏହି ସଭା ଆହ୍ୱାନ କରିପାରନ୍ତି ।

ଅନୁରୋଧକାରୀମାନଙ୍କଦ୍ୱାରା ଅାହୂତ ଏହି ସଭାରେ ଯଦି ଯଥାଯଥ ରୂପେ କୌଣସି ପ୍ରସ୍ତାବ ଗୃହୀତ ହୁଏ, ତାହା କମ୍ପାନୀକୁ ନୂତନଙ୍କ ସର୍ତ୍ତରେ ଆବଦ୍ଧ କରେ । ଏହି ସଭା ଆହ୍ୱାନ କରିବାର ଯାବତୀୟ ବ୍ୟୟ କମ୍ପାନୀକୁ ବହନ କରିବାକୁ ପଡ଼େ ଓ କମ୍ପାନୀ ତାହା ନିର୍ଦ୍ଦେଶକମାନଙ୍କଠାରୁ ପରେ ଆଦାୟ କରିପାରେ ।

**ପ୍ରସ୍ତାବ**—୧୯୫୬ ମସିହା କମ୍ପାନୀ ଆଇନ ପୂର୍ବରୁ ତିନି ପ୍ରକାର ପ୍ରସ୍ତାବ, ଯଥା—ସାଧାରଣ, ବିଶେଷ ଓ ଅତିରିକ୍ତ ପ୍ରସ୍ତାବ ସକାଶେ ବ୍ୟବସ୍ଥା ଥିଲା; କିନ୍ତୁ ଏହି ଆଇନ ପାସ୍ ହେବା ପରେ ବର୍ତ୍ତମାନ କେବଳ ସାଧାରଣ ଓ ବିଶେଷ ପ୍ରସ୍ତାବ ସକାଶେ ବ୍ୟବସ୍ଥା ରହିଛି ।

(କ) ବିଶେଷ ପ୍ରସ୍ତାବ—କୌଣସି ଗୁରୁତ୍ୱପୂର୍ଣ୍ଣ ବିଷୟରେ ସିଦ୍ଧାନ୍ତ ଗ୍ରହଣ ନିମନ୍ତେ ବିଶେଷ ପ୍ରସ୍ତାବ ଗୃହୀତ ହୁଏ । କମ୍ପାନୀ ଆଇନରେ ଯେଉଁ ସମସ୍ତ ବିଷୟରେ ବିଶେଷ ପ୍ରସ୍ତାବ ଗ୍ରହଣ କରିବାର ନିର୍ଦ୍ଦେଶ ଦିଆଯାଇଛି : ତନ୍ମଧ୍ୟରେ ନିମ୍ନଲିଖିତ ବିଷୟଗୁଡ଼ିକ ଅନ୍ତର୍ଭୁକ୍ତ,

(୧) କେନ୍ଦ୍ରୀୟ ସରକାରଙ୍କର ମତାନୁସାରେ କମ୍ପାନୀର ନାମ ପରିବର୍ତ୍ତନ; (୨) ରିଜିଷ୍ଟ୍ରାରଙ୍କର ଅନୁମୋଦନସାପେକ୍ଷ କମ୍ପାନୀର ପରିମେଳ ବନ୍ଧର ପରିବର୍ତ୍ତନ; (୩) ପରିମେଳ ନିୟମାବଳୀର ପରିବର୍ତ୍ତନ; (୪) ପୁଞ୍ଜି ହ୍ରାସ; (୫) ଅନାହୂତ ପୁଞ୍ଜିର କୌଣସି ଅଂଶକୁ ସଞ୍ଚିତ ପୁଞ୍ଜିରେ ପରିଣତ କରିବା; (୬) ସ୍ୱେଚ୍ଛାରେ କମ୍ପାନୀର ଅବସାନ ଘଟାଇବା; (୭) କେନ୍ଦ୍ରୀୟ ସରକାରଙ୍କଦ୍ୱାରା ନିଯୁକ୍ତ କମ୍ପାନୀ ପରିଦର୍ଶକଙ୍କଦ୍ୱାରା କମ୍ପାନୀର କାର୍ଯ୍ୟକଳାପ ତଦନ୍ତ କରିବା, ଇତ୍ୟାଦି ।

ବିଶେଷ ପ୍ରସ୍ତାବ ଗ୍ରହଣର ପଦ୍ଧତି—ବିଶେଷ ପ୍ରସ୍ତାବ ଗ୍ରହଣ କରିବାର ପଦ୍ଧତି ସମ୍ବନ୍ଧରେ କମ୍ପାନୀ ଆଇନରେ ନିମ୍ନରୂପ କଟକଣା ରହିଛି :

(୧) ସାଧାରଣ ସଭା ନିମନ୍ତେ ଯେଉଁ ସୂଚନା ଦିଆଯାଏ ତହିଁରେ ଏହି ପ୍ରସ୍ତାବ ସମ୍ବନ୍ଧରେ ଉଲ୍ଲେଖ ରହିବା ଆବଶ୍ୟକ ଓ (୨) ¾ ଅଂଶ ଭୋଟଦ୍ୱାରା ଏହି ପ୍ରସ୍ତାବ ଗୃହୀତ ହେବା ଆବଶ୍ୟକ ।

(ଖ) ସାଧାରଣ ପ୍ରସ୍ତାବ—ଯେଉଁ ବିଷୟଗୁଡ଼ିକର ସିଦ୍ଧାନ୍ତ ବିଶେଷ ପ୍ରସ୍ତାବଦ୍ୱାରା ଗୃହୀତ ହେବା ଆବଶ୍ୟକ ବୋଲି କମ୍ପାନୀ ଆଇନରେ ନିର୍ଦ୍ଦେଶ ଦିଆଯାଇଛି, ସେହି ସମସ୍ତ ବିଷୟ ବ୍ୟତୀତ ଅନ୍ୟ ସବୁ ବିଷୟର ସିଦ୍ଧାନ୍ତ ସାଧାରଣ ପ୍ରସ୍ତାବଦ୍ୱାରା ଗୃହୀତ ହୁଏ । ଅଂଶଧାରୀମାନଙ୍କ ସଭାରେ ସାଧାରଣ ଭୋଟାଧିକ୍ୟଦ୍ୱାରା ଏହି ସାଧାରଣ ପ୍ରସ୍ତାବ ଗୃହୀତ ହୁଏ । ଏହିଭଳି ପ୍ରସ୍ତାବ ଉଭୟ ନିର୍ଦ୍ଦେଶକମଣ୍ଡଳୀଙ୍କଦ୍ୱାରା ଓ ଅଂଶଧାରୀମାନଙ୍କ-ଦ୍ୱାରା ଉତ୍ଥାପିତ ହୋଇପାରେ । ଅଂଶଧାରୀମାନଙ୍କଦ୍ୱାରା ଉତ୍ଥାପିତ ପ୍ରସ୍ତାବକୁ ସଦସ୍ୟ-ମାନଙ୍କର ପ୍ରସ୍ତାବ ବୋଲି କୁହାଯାଏ । ଅଂଶଧାରୀମାନଙ୍କଦ୍ୱାରା କୌଣସି ପ୍ରସ୍ତାବ ଆଗତ କରିବାକୁ ହେଲେ ନିମ୍ନଲିଖିତ ପଦ୍ଧତି ଅନୁସରଣ କରିବା ଆବଶ୍ୟକ ହୁଏ:

(୧) ଅଂଶଧାରୀଙ୍କୁ ଏହି ପ୍ରସ୍ତାବର ନକଲକୁ ଅଧିବେଶନର ଅନ୍ତତଃ ଦୁଇ ସପ୍ତାହ ପୂର୍ବରୁ କମ୍ପାନୀରେ ଜମା ଦେବାକୁ ହୁଏ । ଯଦି ଏହି ପ୍ରସ୍ତାବ ସାଧାରଣରେ ବିଜ୍ଞାପିତ ଆବଶ୍ୟକ ହୁଏ, ତାହାହେଲେ ତାହା ଅଧିବେଶନ ଦିବସର ଅନ୍ତତଃ ୬ ସପ୍ତାହ ପୂର୍ବରୁ ଦାଖଲ କରାଯିବା ଆବଶ୍ୟକ । ଉଭୟ କ୍ଷେତ୍ରରେ ଏକ ଲିଖିତ ଦାବୀ ପତ୍ର ସହିତ ଏହି ପ୍ରସ୍ତାବର ନକଲ କମ୍ପାନୀ କାର୍ଯ୍ୟାଳୟକୁ ପ୍ରେରିତ ହେବା ଆବଶ୍ୟକ ।

(୨) ଏହି ଦାବୀପତ୍ର ମୋଟ ଭୋଟ ସଂଖ୍ୟାର ଅନ୍ତତଃ ୧/୨୦ ଅଂଶ ଭୋଟାଧିକାରୀ ଅଥବା ୧ ଲକ୍ଷ ଟଙ୍କାର ଅଦାୟୀକୃତ ପୁଞ୍ଜିର ମାଲିକ ଏହିଭଳି ଅନ୍ତତଃ ୧୦୦ ଜଣ ଅଂଶଧାରୀଙ୍କଦ୍ୱାରା ସ୍ୱାକ୍ଷରିତ ହେବା ଆବଶ୍ୟକ ।

(୩) ସଭ୍ୟମାନଙ୍କ ମଧ୍ୟରେ ପ୍ରଚାରିତ ହେବା ଉଦ୍ଦେଶ୍ୟରେ ଏହି ପ୍ରସ୍ତାବ ସମ୍ପର୍କରେ ଅନଧିକ ୧୦୦୦ ଶବ୍ଦସମ୍ବଳିତ ଏକ ବିବୃତି ଦାବୀ ପତ୍ର ସହିତ ସଂଯୁକ୍ତ ଥାଇପାରେ ।

(୪) ଏହି ପ୍ରସ୍ତାବର ସୂଚନା ଓ ପ୍ରସ୍ତାବର ବ୍ୟାଖ୍ୟାମୂଳକ ବିବୃତିର ପ୍ରଚାର ନିମନ୍ତେ ଆବଶ୍ୟକ ବ୍ୟୟ ଦାବୀକାରୀମାନେ ବହନ କରିବା ଆବଶ୍ୟକ ।

ମାତ୍ର ନିମ୍ନଲିଖିତ କ୍ଷେତ୍ରରେ ପ୍ରସ୍ତାବର ବ୍ୟାଖ୍ୟାମୂଳକ ବିବୃତି ପ୍ରଚାରିତ ହେବ ନାହିଁ :

(୧) ଯଦି କମ୍ପାନୀ ବ୍ୟାଙ୍କିଙ୍ଗ୍ ବ୍ୟବସାୟ କରୁଥାଏ ଏବଂ ନିର୍ଦ୍ଦେଶକମଣ୍ଡଳୀ ସ୍ଥିର କରନ୍ତି ଯେ ଏଭଳି ପ୍ରଚାରଦ୍ୱାରା ବ୍ୟବସାୟର ସ୍ୱାର୍ଥହାନି ଘଟିପାରେ ;

(୨) ଯଦି କମ୍ପାନୀ ଅଥବା ଅନ୍ୟ କୌଣସି କ୍ଷତିଗ୍ରସ୍ତ ବ୍ୟକ୍ତିଙ୍କର ଆବେଦନ କ୍ରମେ ଏଭଳି ପ୍ରଚାର ବାଞ୍ଛନୀୟ ନୁହେଁ ବୋଲି ବିଚାରାଳୟ ରାୟ ଦିଅନ୍ତି ।

(ଗ) **ବିଶେଷ ନୋଟିସଦ୍ୱାରା ଆନୀତ ପ୍ରସ୍ତାବ**—ନିମ୍ନଲିଖିତ କେତେ-ଗୋଟି ବିଷୟ ସମ୍ବନ୍ଧରେ ପ୍ରସ୍ତାବ ଆନୀତ ହେଲେ ବିଶେଷ ନୋଟିସର ପ୍ରୟୋଜନ ହୁଏ ।

(୧) ବିଦାୟୀ ହିସାବ ସମୀକ୍ଷକଙ୍କ ପରିବର୍ତ୍ତେ ଅନ୍ୟ କୌଣସି ବ୍ୟକ୍ତିଙ୍କୁ ହିସାବ ସମୀକ୍ଷକ ରୂପେ ନିଯୁକ୍ତ କରିବା ।

(୨) ବିଦାୟୀ ହିସାବ ସମୀକ୍ଷକଙ୍କୁ ସେହି ପଦରେ ପୁନର୍ନିଯୁକ୍ତ ଦିଆଯିବ ନାହିଁ, ଏଭଳି ସିଦ୍ଧାନ୍ତ ।

(୩) ଯେଉଁମାନେ ନିର୍ଦ୍ଦେଶକ ରୂପେ ନିଯୁକ୍ତ ପାଇବାକୁ ଯୋଗ୍ୟ ନୁହନ୍ତି, ସେଭଳି ବ୍ୟକ୍ତିଙ୍କୁ ନିର୍ଦ୍ଦେଶକ ରୂପେ ନିଯୁକ୍ତ କରିବା ।

(୪) କୌଣସି ବିଶେଷ ନିର୍ଦ୍ଦେଶକଙ୍କ ପ୍ରତି ୬୫ ବର୍ଷ ବୟଃସୀମା ପ୍ରଯୁଜ୍ୟ ହେବ ନାହିଁ, ଏହି ମର୍ମରେ ସିଦ୍ଧାନ୍ତ ଗ୍ରହଣ ।

(ଚ) କୌଣସି ନିର୍ଦ୍ଦେଶକଙ୍କର କାର୍ଯ୍ୟକାଳ ସମାପ୍ତ ହେବା ପୂର୍ବରୁ ତାଙ୍କୁ ସେହି ପଦରୁ ଅପସାରଣ ଓ ସେହି ଶୂନ୍ୟ ସ୍ଥାନ ପୂରଣ ।

କୌଣସି ଅଂଶଧାରୀ ଏଭଳି ପ୍ରସ୍ତାବ ଆଗତ କରିବାକୁ ଇଚ୍ଛାକଲେ ସେ କମ୍ପାନି ସମ୍ପାଦକଙ୍କ ନିକଟକୁ ପ୍ରସ୍ତାବର ନକଲ ସହିତ ଅଧିବେଶନର ଅନ୍ତତଃ ୧୪ ଦିନ ପୂର୍ବରୁ ତାହା ଲେଖି ଜଣାଇଦେ ଓ କମ୍ପାନି ଏହି ପ୍ରସ୍ତାବର ନକଲ ସବୁ ଅଂଶଧାରୀଙ୍କୁ ଅଧିବେଶନର ଅନ୍ୟୁନ ୭ ଦିନ ପୂର୍ବରୁ ନୋଟିସଦ୍ୱାରା ଜଣାଇଦେ । ଯଦି କୌଣସି କାରଣରୁ କମ୍ପାନି ପକ୍ଷରେ ପ୍ରତି ସଦସ୍ୟଙ୍କ ନିକଟକୁ ଚିଠି ଦେବା ସମ୍ଭବ ନ ହୁଏ, ତାହାହେଲେ ସ୍ଥାନୀୟ ସମ୍ବାଦପତ୍ରରେ ଏହାର ବିଜ୍ଞପ୍ତି ଦେବା ଆବଶ୍ୟକ ହୁଏ । ଏହି ପ୍ରସ୍ତାବ ସାଧାରଣତଃ ¾ ଅଂଶ ଭୋଟଦ୍ୱାରା ଗୃହୀତ ହେବା ଆବଶ୍ୟକ ।

**ବାର୍ଷିକ ବିବରଣୀ**—ପ୍ରତ୍ୟେକ ଅଂଶ ପୁଞ୍ଜିବିଶିଷ୍ଟ କମ୍ପାନି ପକ୍ଷରେ ବାର୍ଷିକ ସାଧାରଣ ସଭାର ଅଧିବେଶନର ୪୨ ଦିନ ମଧ୍ୟରେ ନିମ୍ନଲିଖିତ ବିଷୟଗୁଡ଼ିକ ସମ୍ବନ୍ଧରେ ଏକ ବିବରଣୀ ନିବନ୍ଧକଙ୍କ ନିକଟରେ ଦାଖଲ କରିବା ବାଧ୍ୟତାମୂଳକ । ଏହାକୁ ବାର୍ଷିକ ବିବରଣୀ କୁହାଯାଏ । ଯେଉଁ ବିଷୟଗୁଡ଼ିକ ସମ୍ବନ୍ଧରେ ବିବରଣୀ ଦିଆଯାଏ ସେଗୁଡ଼ିକ ହେଉଛି—ବାର୍ଷିକ ସାଧାରଣ ଅଧିବେଶନ ତାରିଖରେ (କ) କମ୍ପାନିର ଅଂଶଧାରୀମାନଙ୍କର ନାମ ତାଲିକା; (ଖ) କମ୍ପାନିର ଋଣ ପତ୍ରଧାରୀମାନଙ୍କର ନାମ ତାଲିକା; (ଗ) ବିକ୍ରିତ ଅଂଶର ପରିମାଣ; (ଘ) ବିକ୍ରିତ ଋଣ ପତ୍ରର ପରିମାଣ; (ଙ) କମ୍ପାନି ଗ୍ରହଣ କରିଥିବା ଋଣର ପରିମାଣ (ଚ) ବର୍ତ୍ତମାନ ଓ ଅତୀତ ଅଂଶଧାରୀ ଓ ଋଣ ପତ୍ରଧାରୀଙ୍କର ସଂଖ୍ୟା; (ଛ) ଏହାର ବର୍ତ୍ତମାନ ଓ ଅତୀତ ନିର୍ଦ୍ଦେଶକ, ପରିଚାଳନା-ନିର୍ଦ୍ଦେଶକ, ପରିଚାଳକ; ସମ୍ପାଦକଙ୍କ ସମ୍ବନ୍ଧରେ ଆଇନ ଅନୁଯାୟୀ ଆବଶ୍ୟକ ବିବରଣୀ ଠିକ୍ ଦୁଇ ବର୍ଷ ପୂର୍ବରେ ବାର୍ଷିକ ବିବରଣୀ ତୁଳନାରେ ଉପସ୍ଥିତ ଅଂଶଧାରୀମାନଙ୍କର ନାମ, ଠିକଣା, ପେଶା ଇତ୍ୟାଦିରେ ଯଦି କୌଣସି ପରିବର୍ତ୍ତନ ଘଟିଥାଏ, ତାହାହେଲେ ସେହି ପରିବର୍ତ୍ତନଗୁଡ଼ିକ ବିବରଣୀରେ ଅନ୍ତର୍ଭୁକ୍ତ କରାଯିବ । ଏହି ବାର୍ଷିକ ବିବରଣୀ ସବୁ ନିର୍ଦ୍ଦେଶକ ଅଥବା ପରିଚାଳନା ନିର୍ଦ୍ଦେଶକଙ୍କ ସମେତ ଦୁଇ ଜଣ ନିର୍ଦ୍ଦେଶକଙ୍କଦ୍ୱାରା ସ୍ୱାକ୍ଷରିତ ହେବା ଆବଶ୍ୟକ ।

**କମ୍ପାନୀର ଅଂଶ ଓ ଋଣ ପତ୍ର**—କମ୍ପାନୀର ବ୍ୟବସାୟ ଚଳାଇବା ଉଦ୍ଦେଶ୍ୟରେ କମ୍ପାନି ଅଂଶ ବିକ୍ରୟପୂର୍ବକ ପୁଞ୍ଜି ସଂଗ୍ରହ କରେ । ଆଇନ ଦୃଷ୍ଟିରୁ ବିଭିନ୍ନ ପର୍ଯ୍ୟାୟରେ ଏହି ପୁଞ୍ଜି ବିଭିନ୍ନ ନାମରେ ଅଭିହିତ ହୁଏ । ସେଗୁଡ଼ିକ ନିମ୍ନରେ ବର୍ଣ୍ଣିତ ହେଲ ।

(୧) ଅନୁମୋଦିତ ଅଥବା ନିବନ୍ଧିତ ଅଥବା ଆକ୍ଷରିକ ପୁଞ୍ଜି ( Authorised, Registered or Nominal Capital )– କମ୍ପାନି ମୋଟରେ କେତେ ପୁଞ୍ଜି

ସଂଗ୍ରହ କରିପାରିବ ତାହା ପରିମେଳ ନିୟମରେ ନିର୍ଦ୍ଦିଷ୍ଟୀକୃତ ହୋଇଥାଏ । କମ୍ପାନୀ ନିବନ୍ଧିତ ହେବା ସଙ୍ଗେ ସଙ୍ଗେ ଏହି ପରିମାଣର ପୁଞ୍ଜି ମଧ୍ୟ ନିବନ୍ଧିତ ହୋଇଥାଏ । ଏହାକୁ ଅନୁମୋଦିତ, ନିବନ୍ଧିତ ଅଥବା ଅକ୍ଷରିକ ପୁଞ୍ଜି କୁହାଯାଏ ।

(୨) ବିକ୍ରୟଯୋଗ୍ୟ ବା ପ୍ରଚଳିତ ପୁଞ୍ଜି ( Issued Capital )—ଅନୁମୋଦିତ ପୁଞ୍ଜିର ଯେଉଁ ଅଂଶ ଜନସାଧାରଣଙ୍କୁ ବିକ୍ରୟ କରିବା ପାଇଁ ଉପସ୍ଥାପିତ କରାଯାଏ ତାହାକୁ ବିକ୍ରୟଯୋଗ୍ୟ ଅଥବା ପ୍ରଚଳିତ ପୁଞ୍ଜି କୁହାଯାଏ ।

(୩) ବିକ୍ରିତ ପୁଞ୍ଜି—ଉପରୋକ୍ତ ପ୍ରଚଳିତ ପୁଞ୍ଜି ମଧ୍ୟରୁ ଜନସାଧାରଣ ଯେଉଁ ପରିମାଣର ପୁଞ୍ଜି ପ୍ରକୃତରେ କ୍ରୟ କରନ୍ତି ତାହାକୁ ବିକ୍ରିତ ପୁଞ୍ଜି କୁହାଯାଏ ।

(୪) ଆଦାୟୀକୃତ ପୁଞ୍ଜି—ବିକ୍ରିତ ପୁଞ୍ଜି ମଧ୍ୟରୁ ଜନସାଧାରଣଙ୍କଠାରୁ ଯେଉଁ ପରିମାଣର ଅର୍ଥ ପ୍ରକୃତରେ ମିଳିଥାଏ ତାହାକୁ ଆଦାୟୀକୃତ ପୁଞ୍ଜି କୁହାଯାଏ ।

ବିକ୍ରିତ ଅଂଶ ପତ୍ରର ପୂର୍ଣ୍ଣ ଦେୟ ଅର୍ଥ କ୍ୱଚିତ୍ ଏକକାଳୀନ ଆଦାୟ ହୁଏ । ଏହାର କେତେକ ପରିମାଣ ଆବେଦନ ସହ, କେତେକ ପରିମାଣ ଆବଣ୍ଟନ ସହ ଆଦାୟ ହୁଏ ଓ ଅବଶିଷ୍ଟ ଅର୍ଥ ଆହ୍ୱାନ କରାଗଲେ ମିଳେ । ଯେଉଁ ଅର୍ଥ ସକାଶେ ଆହ୍ୱାନ ଦିଆଯାଏ ତାହାକୁ ଆହୂତ ପୁଞ୍ଜି (Caused up Capital) କୁହାଯାଏ । ଅଂଶ ପତ୍ରର ପୂର୍ଣ୍ଣ ଦେୟ ଅର୍ଥରୁ ଆହୂତ ପୁଞ୍ଜି ବାଦ୍ ଦେଲେ ଅବଶିଷ୍ଟ ଅର୍ଥକୁ ଅନାହୂତ ପୁଞ୍ଜି ( Uncalled Capital ) କୁହାଯାଏ ।

(୫) ସଂରକ୍ଷିତ ପୁଞ୍ଜି ( Reserved Capital )—କମ୍ପାନୀ ଆଇନର ୯୯ ଧାରାରେ ବିଧାନ ଅଛି ଯେ କୌଣସି ସୀମାବଦ୍ଧ ଦାୟଯୁକ୍ତ କମ୍ପାନୀ ବିଶେଷ ପ୍ରସ୍ତାବଦ୍ୱାରା ଏହାର ଅନାହୂତ ପୁଞ୍ଜିର କେତେକ ଅଂଶକୁ କେବଳ କମ୍ପାନୀର ଅବସାନ ବ୍ୟତୀତ ଅନ୍ୟ ସମୟରେ ଆଦାୟ କରାଯିବ ନାହିଁ ବୋଲି ଏକ ସିଦ୍ଧାନ୍ତ ଗ୍ରହଣ କରିପାରନ୍ତି । ଏହାକୁ ସଂରକ୍ଷିତ ପୁଞ୍ଜି କୁହାଯାଏ ।

(୬) ଅ-ନଗଦୀ ପୁଞ୍ଜି ( Watered Capital )—ବିନା ଅର୍ଥ ବିନିମୟରେ ଯେଉଁ ପୁଞ୍ଜି ପ୍ରଚଳିତ ହୁଏ, ତାହାକୁ ଅ-ନଗଦୀ ପୁଞ୍ଜି କୁହାଯାଏ । ଉଦାହରଣ ସ୍ୱରୂପ ବୋନସ୍ ଅଂଶ ପ୍ରତିଷ୍ଠାତାଙ୍କ ପୁଞ୍ଜିର ନାମ ଉଲ୍ଲେଖ କରାଯାଇପାରେ ।

**ଅଂଶପତ୍ରର ଶ୍ରେଣୀବିଭାଗ**—କମ୍ପାନୀର ପ୍ରଚଳିତ ପୁଞ୍ଜିକୁ କ୍ଷୁଦ୍ର କ୍ଷୁଦ୍ର ସମାନ ଏକକରେ ବିଭକ୍ତ କରି ଜନସାଧାରଣଙ୍କୁ ବିକ୍ରୟ କରାଯାଏ । ଏହି ପ୍ରତ୍ୟେକ ଏକକକୁ ଅଂଶ

କୁହାଯାଏ ଓ ଏହାର ପ୍ରମାଣ ପତ୍ରକୁ ଅଂଶ ପତ୍ର କୁହାଯାଏ । ଏଥିରେ ଲିଖିତ ସଂଖ୍ୟାଦ୍ୱାରା ଗୋଟିଏ ଅଂଶ ପତ୍ରକୁ ଅନ୍ୟଠାରୁ ପୃଥକ୍ କରାଯାଏ । ଏହି ଅଂଶ ପତ୍ର ଯେଉଁମାନେ କ୍ରୟ କରନ୍ତି ତାଙ୍କୁ ଅଂଶଧାରୀ କୁହାଯାଏ । ଏହିଭଳି ଅଂଶ ପତ୍ର କ୍ରୟ କରିବାଦ୍ୱାରା ଅଂଶଧାରୀମାନେ କମ୍ପାନୀର ଆଂଶିକ ମାଲିକାନା ସ୍ୱତ୍ୱ ଲାଭ କରନ୍ତି । ଫଳାନୁସାରୀ ସେମାନେ କମ୍ପାନୀର ପରିଚାଳନାରେ ଅଂଶଗ୍ରହଣ କରିପାରନ୍ତି, କମ୍ପାନୀର ଲାଭର ଆନୁପାତିକ ଅଂଶ ବା ଲାଭାଂଶ (Dividend) ପାଇବାର ଅଧିକାର ଲାଭ କରନ୍ତି ଓ କମ୍ପାନୀର ଅବସାନ ହେଲେ ସେମାନେ ଆନୁପାତିକ ହାରରେ ସେମାନଙ୍କର ଅଂଶ ବାବଦ ଅର୍ଥ ଫେରସ୍ତ ପାଇବାର ଅଧିକାର ଲାଭ କରନ୍ତି ।

୧୯୫୬ ମସିହା କମ୍ପାନୀ ଆଇନ କେବଳ ଦୁଇ ଶ୍ରେଣୀର ଅଂଶପତ୍ର ସ୍ୱୀକାର କରିଛି (୮୬ ଧାରା ଅନୁସାରେ); ଯଥା—(୧) ଅଗ୍ରାଧିକାର ଅଂଶ ଓ (୨) ଇକ୍ୱିଟି ବା ସାଧାରଣ ଅଂଶ ।

(୧) ଅଗ୍ରାଧିକାର ଅଂଶ—ଏଭଳି ଅଂଶ ପତ୍ରର ମାଲିକମାନେ ପ୍ରତିବର୍ଷ ସାଧାରଣ ଅଂଶଧାରୀଙ୍କ ପୂର୍ବରୁ ପୂର୍ବନିର୍ଦ୍ଦିଷ୍ଟ ହାରରେ ଲାଭାଂଶ ପାଆନ୍ତି ଓ ସାଧାରଣ ଅଂଶଧାରୀମାନଙ୍କୁ କେତେକ ହାରରେ ଲାଭାଂଶ ନେବା ପରେ ଯାହା ଯାହା ଅବଶିଷ୍ଟ ରହେ ତାହାର ମଧ୍ୟ କେତେକ ଅଂଶ ଲାଭ କରନ୍ତି । ଏହା ବ୍ୟତୀତ କମ୍ପାନୀର ଅବସାନ ଘଟିଲେ କମ୍ପାନୀର ସମସ୍ତ ଦେଣା ପରିଶୋଧ କରିଦିବା ପରେ ଅବଶିଷ୍ଟ ପରି ସମ୍ପତ୍ତିରୁ ସେମାନଙ୍କର ମୂଳଧନର ଆନୁପାତିକ ଅଂଶ ପ୍ରଥମେ ଫେରସ୍ତ ପାଆନ୍ତି । ତାଙ୍କ ପରେ ସାଧାରଣ ଅଂଶଧାରୀମାନଙ୍କୁ ଆନୁପାତିକ ହାରରେ ତାଙ୍କର ମୂଳଧନ ଫେରସ୍ତ ପାଆନ୍ତି । ଏହି ଦୁଇ କ୍ଷେତ୍ରରେ ଏହି ଅଂଶଧାରୀଙ୍କର ଅଗ୍ରାଧିକାର ଥିବାରୁ ଏହିଭଳି ଅଂଶକୁ ଅଗ୍ରାଧିକାର ଅଂଶ କୁହାଯାଏ । ଅବଶ୍ୟ ଶେଷୋକ୍ତ ଦୁଇ କ୍ଷେତ୍ରରେ ଅର୍ଥାତ୍ ଉଦ୍‌ବୃତ୍ତ ଲାଭାଂଶ ଓ ମୂଳଧନ ଫେରସ୍ତରେ ଅଗ୍ରାଧିକାର ପରିମେଳ ନିୟମାବଳୀର ବିଧାନସାପେକ୍ଷ ଅଟେ । କମ୍ପାନୀର ଅଗ୍ରାଧିକାର ଅଂଶକୁ ଦୁଇଗୋଟି ଶ୍ରେଣୀରେ ବିଭକ୍ତ କରାଯାଇଛି, ଯଥା—(କ) ସଞ୍ଚୟୀ ଅଗ୍ରାଧିକାର ଅଂଶ, ଓ (ଖ) ଅ-ସଞ୍ଚୟୀ ଅଗ୍ରାଧିକାର ଅଂଶ ।

(କ) ସଞ୍ଚୟୀ ଅଗ୍ରାଧିକାର ଅଂଶ—ଏହି ଶ୍ରେଣୀର ଅଂଶଧାରୀମାନଙ୍କର ଲାଭାଂଶରେ ଅଗ୍ରାଧିକାର କେବଳ ସେତେବେଳେ ପ୍ରଯୁଜ୍ୟ ଯେତେବେଳେ କମ୍ପାନୀ ଲାଭାଂଶ ଦେବା ପାଇଁ ସ୍ଥିର କରେ । ଯେଉଁ ବର୍ଷ ଯଥେଷ୍ଟ ପରିମାଣର ଲାଭ ହୁଏ ନାହିଁ, କମ୍ପାନୀ ସେ ବର୍ଷ ଲାଭାଂଶ ନ ଦେବା ପାଇଁ ସ୍ଥିର କରିପାରେ । ସେପରି କ୍ଷେତ୍ରରେ ଅଗ୍ରାଧିକାର ଅଂଶଧାରୀମାନେ ମଧ୍ୟ କୌଣସି ଲାଭାଂଶ ପାଇପାରନ୍ତି ନାହିଁ । ଏହି ଅସୁବିଧା ଦୂର କରିବା ଉଦ୍ଦେଶ୍ୟରେ ସଞ୍ଚୟୀ ଅଗ୍ରାଧିକାର ଅଂଶ ପରିକଳ୍ପିତ ହୋଇଛି । ଯେଉଁ ବର୍ଷ କମ୍ପାନୀ ଲାଭାଂଶ ଘୋଷଣା କରେ ନାହିଁ, ସେ ବର୍ଷର ଲାଭାଂଶ ଏହି ଅଂଶଧାରୀମାନଙ୍କୁ ଦିଆ ନ ଗଲେ

ମଧ୍ୟ ତାହା ତାଙ୍କ ହିସାବରେ ଜମା ରହେ ଏବଂ କମ୍ପାନୀ ଯେଉଁ ବର୍ଷ ଲଭ୍ୟାଂଶ ଘୋଷଣା କରିବାକୁ ସମର୍ଥ ହୁଏ, ସେ ବର୍ଷ ଏହି ଅଂଶଧାରୀମାନେ ପୂର୍ବନିର୍ଦ୍ଦିଷ୍ଟ ହାରରେ ସେମାନଙ୍କର ବକେୟା ଲଭ୍ୟାଂଶ ଏକକାଳୀନ ଲାଭ କରନ୍ତି । ଏହି ଶ୍ରେଣୀର ଅଂଶଧାରୀମାନେ ତାଙ୍କର ବକେୟା ଓ ଚଳନ୍ତି ଲଭ୍ୟାଂଶ ପାଇବା ପରେ ସାଧାରଣ ଅଂଶଧାରୀମାନେ ତାଙ୍କର ଲଭ୍ୟାଂଶ ପାଆନ୍ତି ।

(ଖ) ଅ-ସଞ୍ଚୟୀ ଅଗ୍ରାଧିକାର ଅଂଶ—ଯେଉଁ ବର୍ଷ କମ୍ପାନୀ ଲଭ୍ୟାଂଶ ଘୋଷଣା କରେ କେବଳ ସେହି ବର୍ଷ ଏହି ଶ୍ରେଣୀର ଅଂଶଧାରୀମାନେ ଲଭ୍ୟାଂଶ ପାଇବାରେ ଅଗ୍ରାଧିକାର ଲାଭ କରନ୍ତି । କିନ୍ତୁ ଯେଉଁ ବର୍ଷ କମ୍ପାନୀ ଲଭ୍ୟାଂଶ ଘୋଷଣା କରିବାକୁ ଅସମର୍ଥ ହୁଏ, ଏହି ଶ୍ରେଣୀର ଅଂଶଧାରୀମାନେ ସେ ବର୍ଷର ଲଭ୍ୟାଂଶ ଆଉ ପାଇପାରନ୍ତି ନାହିଁ ଏବଂ ଅ-ସଞ୍ଚୟୀ ହୋଇଥିବାରୁ ଭବିଷ୍ୟତରେ ମଧ୍ୟ ସେମାନେ ସେହି ବର୍ଷର ଲଭ୍ୟାଂଶ ଆଉ ପାଇପାରନ୍ତି ନାହିଁ ।

ଏହି ଅଗ୍ରାଧିକାର ଅଂଶର ଅନ୍ୟ ଭାବରେ ମଧ୍ୟ ଏକ ଶ୍ରେଣୀ ବିଭାଗ କରାଯାଏ, ଯଥା—(କ) ପ୍ରତ୍ୟର୍ପଣଯୋଗ୍ୟ ଅଗ୍ରାଧିକାର ଅଂଶ, ଓ (ଖ) ଅ-ପ୍ରତ୍ୟର୍ପଣଯୋଗ୍ୟ ଅଗ୍ରାଧିକାର ଅଂଶ । (କ) ଯଦିଓ ସାଧାରଣତଃ ଅଂଶର ମୂଲ୍ୟ ଫେରସ୍ତ ଦିଆଯାଏ ନାହିଁ, ତଥାପି କମ୍ପାନୀ ଆଇନର ୮୦ ଧାରାରେ ଏହା କୁହାଯାଇଛି ଯେ ଅଂଶଦ୍ୱାରା ସୀମାବଦ୍ଧ ଦାୟଯୁକ୍ତ କମ୍ପାନୀର ପରିମେଳ ନିୟମାବଳୀରେ ବିଧାନ ଥିଲେ ଏହି ପ୍ରକାର କମ୍ପାନୀ ମୂଲ୍ୟ ପ୍ରତ୍ୟର୍ପଣ ସର୍ତ୍ତ ସହ ଅଗ୍ରାଧିକାର ଅଂଶ ପ୍ରଚଳନ କରିପାରିବ । ଏକ ନିର୍ଦ୍ଦିଷ୍ଟ ସମୟ ପରେ କମ୍ପାନୀ ଏହି ଶ୍ରେଣୀର ଅଂଶଧାରୀମାନଙ୍କୁ ତାଙ୍କ ଅଂଶ ବାବଦ ମୂଲ୍ୟ ଫେରସ୍ତ ଦିଏ ।

(ଖ) ଅ-ପ୍ରତ୍ୟର୍ପଣଯୋଗ୍ୟ ଅଗ୍ରାଧିକାର ଅଂଶ—ଯେଉଁ ଅଗ୍ରାଧିକାର ଅଂଶର ମୂଲ୍ୟ ପ୍ରତ୍ୟର୍ପଣଯୋଗ୍ୟ ନୁହେଁ ତାହାକୁ ଅ-ପ୍ରତ୍ୟର୍ପଣଯୋଗ୍ୟ ଅଗ୍ରାଧିକାର ଅଂଶ କୁହାଯାଏ । ଏହି ଶ୍ରେଣୀର ଅଂଶଧାରୀମାନେ କମ୍ପାନୀର ଅବସାନ ଘଟିଲେ ତାଙ୍କର ଅଂଶ ମୂଲ୍ୟ ଫେରସ୍ତ ପାଆନ୍ତି ।

ପୁଣି ଅନ୍ୟ ଏକ ଭାବରେ ମଧ୍ୟ ଅଗ୍ରାଧିକାର ଅଂଶକୁ ଶ୍ରେଣୀଭୁକ୍ତ କରାଯାଇପାରେ, ଯଥା—(କ) ଅଂଶଗ୍ରହଣକାରୀ ଅଗ୍ରାଧିକାର ଅଂଶ, ଓ (ଖ) ଅଣ-ଅଂଶଗ୍ରହଣକାରୀ ଅଗ୍ରାଧିକାର ଅଂଶ ।

(କ) ଅଂଶଗ୍ରହଣକାରୀ ଅଗ୍ରାଧିକାର ଅଂଶ—ଏହି ଶ୍ରେଣୀର ଅଂଶଧାରୀଗଣ ନିର୍ଦ୍ଦିଷ୍ଟ ହାରରେ ଲଭ୍ୟାଂଶ ପାଇବା ପରେ ମଧ୍ୟ ଅବଶିଷ୍ଟ ବଣ୍ଟନଯୋଗ୍ୟ ଲାଭରେ ଅଂଶ ଗ୍ରହଣ କରିବା ପାଇଁ ଅଧିକାରୀ ହୁଅନ୍ତି । ଅବଶ୍ୟ ଏହି ମର୍ମରେ ପରିମେଳ ନିୟମାବଳୀରେ ବିଧାନ ଥିବା ଆବଶ୍ୟକ ।

(ଖ) ଅଣ-ଅଂଶଗ୍ରହଣକାରୀ ଅଗ୍ରାଧିକାର ଅଂଶ—ଏହି ଶ୍ରେଣୀର ଅଂଶଧାରୀମାନେ କେବଳ ନିର୍ଦ୍ଦିଷ୍ଟ ହାରରେ ଲଭ୍ୟାଂଶ ପାଇବା ପାଇଁ ଅଧିକାରୀ ଅଟନ୍ତି । ଅବଶିଷ୍ଟ ବଣ୍ଟନ-ଯୋଗ୍ୟ ଲାଭରେ ସେମାନେ ଅଂଶ ଗ୍ରହଣ କରନ୍ତି ନାହିଁ ।

(୨) ସାଧାରଣ ଅଥବା ଇକ୍ୱିଟି ଅଂଶ—ଅଗ୍ରାଧିକାର ଅଂଶ ବ୍ୟତୀତ ଅନ୍ୟ ସମସ୍ତ ଅଂଶକୁ ସାଧାରଣ ଅଂଶ ବୋଲି କୁହାଯାଏ । ଅଗ୍ରାଧିକାର ଅଂଶଧାରୀମାନେ ନିର୍ଦ୍ଦିଷ୍ଟ ହାରରେ ଲଭ୍ୟାଂଶ ପାଇବା ପରେ ଏହି ଶ୍ରେଣୀର ଅଂଶଧାରୀମାନେ ଅବଶିଷ୍ଟ ବଣ୍ଟନଯୋଗ୍ୟ ଲଭ୍ୟାଂଶରୁ ତାଙ୍କ ଅଂଶର ମୂଲ୍ୟ ଅନୁପାତରେ ଲଭ୍ୟାଂଶ ପାଆନ୍ତି । ଏହି ଜାତୀୟ ଅଂଶଧାରୀ-ମାନେ କମ୍ପାନୀ ପରିଚାଳନାର ସମସ୍ତ ବିଷୟରେ ଅଂଶ ଗ୍ରହଣ କରିପାରନ୍ତି ଓ ଭୋଟାଧିକାର ଲାଭ କରନ୍ତି । ସେମାନଙ୍କର ଅଧିକାରସମୂହ କମ୍ପାନୀ ଆଇନ ଓ ପରିମେଳ ନିୟମାବଳୀରେ ଲିପିବଦ୍ଧ ହୋଇଥାଏ ।

**ଅଂଶପତ୍ର** (Share Certificate)—ଅଂଶ ଆବଣ୍ଟନ ଅଥବା ଅଂଶ ହସ୍ତାନ୍ତରର ୩ ମାସ ମଧ୍ୟରେ ଅଂଶଧାରୀମାନଙ୍କୁ ପ୍ରଦାନ କରିବା ନିମନ୍ତେ ଅଂଶ ପତ୍ର ପ୍ରସ୍ତୁତ କରି ରଖିବା ବାଧ୍ୟତାମୂଳକ ଅଟେ । ଏହି ଅଂଶ ପତ୍ରରେ କ୍ରମିକ ନମ୍ବର ଓ କମ୍ପାନୀର ସିଲ୍‌ମୋହର ଥିବା ଅପରିହାର୍ଯ୍ୟ । କ୍ରୀତ ଅଂଶ ଉପରେ କ୍ରେତାଙ୍କର ମାଲିକାନା ଏହି ଅଂଶ ପତ୍ରଦ୍ୱାରା ପ୍ରମାଣିତ ହୁଏ ।

କୌଣସି ଅଂଶ ପତ୍ର ହଜିଗଲେ, ବିନଷ୍ଟ, ଛିନ୍ନ ଅଥବା ବିକୃତ ହେଲେ କମ୍ପାନୀ ସଶ୍ଳିଷ୍ଟ ଅଂଶଧାରୀଙ୍କୁ ଏହି ଅଂଶ ପତ୍ରର ଏକ ଅନୁଲିପି ଅଥବା ନୂତନ ଅଂଶପତ୍ର ପ୍ରଦାନ କରନ୍ତି । କିନ୍ତୁ ଏଭଳି ଅଂଶ ପତ୍ର ପ୍ରଦାନ ଯଦି ପ୍ରତାରଣାମୂଳକ ହୋଇଥାଏ ତାହାହେଲେ କମ୍ପାନୀ ଓ ତାହାର ପଦସ୍ଥ କର୍ମଚାରୀମାନଙ୍କୁ ୧୦,୦୦୦ ଟଙ୍କା ପର୍ଯ୍ୟନ୍ତ ଜୋରିମାନା ଓ ୬ ମାସ କାରାଦଣ୍ଡ ଅଥବା ଉଭୟ ଦଣ୍ଡରେ ଦଣ୍ଡିତ କରାଯାଇପାରେ ।

କମ୍ପାନୀ ଅଂଶଧାରୀଙ୍କୁ ଏହି ଅଂଶ ପତ୍ର ପ୍ରଦାନ କରିବା ପରେ ଏହା ଏହାର ଅନୁଷ୍ଠାନ ପତ୍ର, ପରିମେଳ ବନ୍ଧ ଓ ପରିମେଳ ନିୟମାବଳୀରେ ବର୍ଣ୍ଣିତ ସର୍ତ୍ତାବଳୀଦ୍ୱାରା ଆବଦ୍ଧ ହୁଏ ।

**ଅଂଶ ପରୱାନା** (Share Warrant)—ପରିମେଳ ନିୟମାବଳୀ ଏପରି ବିଧାନ ଥିଲେ ଓ କେନ୍ଦ୍ରୀୟ ସରକାରଙ୍କର ପୂର୍ବାନୁମତିକ୍ରମେ ପୂର୍ଣ୍ଣ ମୂଲ୍ୟ ଆଦାୟୀକୃତ ଅଂଶ ପରିବର୍ତ୍ତେ କମ୍ପାନୀ ଅଂଶ ପରୱାନା ପ୍ରଦାନ କରିପାରେ । ଏହି ପରୱାନା ସହିତ ସାଧାରଣତଃ କେତେଗୁଡ଼ିଏ କୁପନ୍ ଦିଆଯାଏ । ଏହି କୁପନ ଉପସ୍ଥାପିତ କଲେ କମ୍ପାନୀ ଲଭ୍ୟାଂଶ ପ୍ରଦାନ କରେ । ଏହି ପରୱାନା କେବଳ ହସ୍ତାନ୍ତର କରିଗଲେ ଏହାର ସ୍ୱତ୍ୱ ହସ୍ତାନ୍ତରିତ ହୁଏ ।

ଅଂଶ ପରୱାନା ପ୍ରଦାନ କରାଗଲେ ଅଂଶଧାରୀମାନଙ୍କର ତାଲିକା ବହିରୁ ଅଂଶଧାରୀଙ୍କର ନାମ କାଟି ଦିଆଯାଏ ଓ ତାହା ପରିବର୍ତ୍ତେ ଯେଉଁ ଅଂଶପତ୍ରଗୁଡ଼ିକ ପରିବର୍ତ୍ତେ ପରୱାନା ପ୍ରଦତ୍ତ ହୋଇଛି ସେଗୁଡ଼ିକର କ୍ରମିକ ନମ୍ବର ଓ ପରୱାନା ଦେବାର ତାରିଖ ଲିପିବଦ୍ଧ କରାଯାଏ । ଏହି ପରୱାନାର ସ୍ୱତ୍ୱାଧିକାରୀ ଇଚ୍ଛା କଲେ ଆବଶ୍ୟକ ଫିସ ଦାଖଲ କରି ପରୱାନା ପରିବର୍ତ୍ତେ ପୁଣି ଅଂଶ ପତ୍ର ପାଇପାରନ୍ତି । ସାଧାରଣତଃ ପରୱାନାର ସ୍ୱତ୍ୱାଧିକାରୀମାନେ କମ୍ପାନୀ ପରିଚାଳନାରେ ଅଂଶ ଗ୍ରହଣ କରିପାରନ୍ତି ନାହିଁ କିମ୍ବା ଭୋଟ ମଧ୍ୟ ପ୍ରଦାନ କରିପାରନ୍ତି ନାହିଁ । ଅବଶ୍ୟ ପରିମେଳ ନିୟମାବଳୀରେ ବିଧାନ ଥିଲେ ଉକ୍ତ ଅଧିକାର ଦିଆଯାଇପାରେ ।

**ଧନାଂଶ (Stock)**—ଅଂଶର ପୂର୍ଣ୍ଣ ମୂଲ୍ୟ ଆଦାୟ ହେବା ପରେ ତାହାକୁ ଧନାଂଶରେ ପରିଣତ କରାଯାଇପାରେ । ଅବଶ୍ୟ ଏ ସମ୍ପର୍କରେ ପରିମେଳ ନିୟମାବଳୀରେ ବିଧାନ ଥିବା ଆବଶ୍ୟକ । ସାଧାରଣତଃ ଅଂଶଧନକୁ କେତେଗୁଡ଼ିଏ ସମମୂଲ୍ୟର ଏକକରେ ପରିଣତ କରାଯାଏ । ଏହାକୁ ଅଂଶ କୁହାଯାଏ । ଏହି ଅଂଶର ଲିଖିତ ମୂଲ୍ୟ ନିର୍ଦ୍ଦିଷ୍ଟ ଏବଂ ଏହାକୁ ଭଗ୍ନାଂଶରେ ବିକ୍ରୟ କରିହେବ ନାହିଁ । ଯଦି ଗୋଟିଏ ଅଂଶର ମୂଲ୍ୟ ୧୦୦ ଟଙ୍କା ହୁଏ ତାହାହେଲେ ୫୦ ଟଙ୍କା ଦେଇ ଏହାର ଅର୍ଦ୍ଧାଂଶ ଅଥବା ୨୫ ଟଙ୍କା ଦେଇ ଏହାର ଏକ-ଚତୁର୍ଥାଂଶ ବିକ୍ରୟ କରିହେବ ନାହିଁ; ଏହାକୁ କେବଳ ପୂର୍ଣ୍ଣାଙ୍ଗରେ ବିକ୍ରୟ କରାଯାଇପାରେ । ମାତ୍ର ପୂର୍ଣ୍ଣ ମୂଲ୍ୟ ଆଦାୟୀକୃତ କେତେକ ଅଂଶର ଏକତ୍ରୀକରଣଦ୍ୱାରା ଯେଉଁ ଧନାଂଶର ସୃଷ୍ଟି ହୁଏ ତାହାର ଯେ କୌଣସି ଭଗ୍ନାଂଶ ବିକ୍ରୟ କରାଯାଇପାରେ । ଏଥିରେ କୌଣସି ନିର୍ଦ୍ଦିଷ୍ଟ କ୍ରମିକ ନମ୍ବର ନ ଥାଏ । ଅଂଶ ଧନାଂଶରେ ପରିଣତ ହେବାର ୧ ମାସ ମଧ୍ୟରେ ନିବନ୍ଧକଙ୍କୁ ଉକ୍ତ ମର୍ମରେ ନୋଟିସ ଦେବାକୁ ହୁଏ । ଏହା ପରେ ପରିବର୍ତ୍ତିତ ଅଂଶଗୁଡ଼ିକର ସ୍ୱତ୍ୱାଧିକାରୀଙ୍କ ନାମ କଟାଯାଇ ଧନାଂଶର ସ୍ୱତ୍ୱାଧିକାରୀଙ୍କ ନାମ ସଭ୍ୟ ତାଲିକା ବହିରେ ଲିପିବଦ୍ଧ କରାଯାଏ । ଏହି ପ୍ରକାର ପରିବର୍ତ୍ତନ ଫଳରେ ଧନାଂଶଧାରୀମାନଙ୍କର କୌଣସି ଅଧିକାର କ୍ଷୁଣ୍ଣ ହେବ ନାହିଁ ।

**ଅଂଶ ହସ୍ତାନ୍ତର**—କମ୍ପାନୀର ପରିମେଳ ନିୟମାବଳୀରେ ଲିପିବଦ୍ଧ ହୋଇଥିବା ପଦ୍ଧତି ଅନୁଯାୟୀ ଅଂଶ ହସ୍ତାନ୍ତର କରିବା ଆବଶ୍ୟକ । ଅଂଶ ହସ୍ତାନ୍ତର କରିବା ପ୍ରତ୍ୟେକ ଅଂଶଧାରୀଙ୍କର ଏକ ସ୍ୱାଭାବିକ ଅଧିକାର । କମ୍ପାନୀ ଆଇନର ୮୨ ଧାରା ଅଂଶକୁ ଏକ ଅସ୍ଥାବର ସମ୍ପତ୍ତି ରୂପେ ଗଣନା କରିବାକୁ ନିର୍ଦ୍ଦେଶ ଦେଇଛି । ଅଂଶ ହସ୍ତାନ୍ତର କରିବା ନିମନ୍ତେ କମ୍ପାନୀ ଆଇନରେ ନିମ୍ନଲିଖିତ ବିଷୟଗୁଡ଼ିକର ଉଲ୍ଲେଖ ଅଛି :

(୧) କମ୍ପାନୀ ନିକଟରେ ନିମ୍ନଲିଖିତ ଦଲିଲଗୁଡ଼ିକ ଦାଖଲ କରିବା ଆବଶ୍ୟକ :

(କ) ଅଂଶ ହସ୍ତାନ୍ତରକାରୀଙ୍କୁ ଉପଯୁକ୍ତ ଷ୍ଟାମ୍ପ ସହ ଅଂଶ ହସ୍ତାନ୍ତର ଦଲିଲ ପ୍ରସ୍ତୁତ କରିବାକୁ ହେବ । ତହିଁରେ ଅଂଶଗ୍ରହୀତାଙ୍କର ନାମ, ଠିକଣା ଓ ପେଶା ଉଲ୍ଲିଖିତ ହେବା ଆବଶ୍ୟକ ।

(ଖ) ଅଂଶ ପତ୍ର ଅଥବା କମ୍ପାନୀର ଅଂଶ ଆବଣ୍ଟନ ପତ୍ର କମ୍ପାନୀ ନିକଟରେ ଦାଖଲ କରାଯିବା ଆବଶ୍ୟକ ।

ଯଦି ଅଂଶ ହସ୍ତାନ୍ତର ଦଲିଲ ହଜିଯାଏ, ତାହାହେଲେ ପରିଚାଳକମାନେ ଯେ କୌଣସି କ୍ଷତିପୂରଣ ସର୍ତ୍ତରେ ଅଂଶର ହସ୍ତାନ୍ତର ପାଇଁ ମତ ଦେଇପାରନ୍ତି ।

କୌଣସି ଆଇନ ବଳରେ ଯଦି ଅଂଶ ପତ୍ର ଜଣଙ୍କ ନିକଟରୁ ଅନ୍ୟ ଜଣଙ୍କ ନିକଟକୁ ହସ୍ତାନ୍ତରିତ ହୁଏ, ତେବେ ତାହାକୁ ସ୍ୱତ୍ୱାନ୍ତର (Share Transmission) କୁହାଯାଏ । କମ୍ପାନୀକୁ ନ ଜଣାଇ ଏହା କରାଯାଇପାରେ । ସାଧାରଣତଃ ଉତ୍ତରାଧିକାର ସୂତ୍ରରେ ଅଂଶ ସ୍ୱତ୍ୱାନ୍ତର ଘଟେ । ଏ ସମ୍ପର୍କୀୟ ନିୟମାବଳୀ ସାଧାରଣତଃ ପରିମେଳ ନିୟମାବଳୀରେ ଲିପିବଦ୍ଧ ହୋଇଥାଏ । ତାହା ନ ହୋଇଥିଲେ ଟେବୁଲ 'A'ର ୨୫ରୁ ୨୮ ନିୟମାବଳୀଦ୍ୱାରା ସ୍ୱତ୍ୱାନ୍ତର ନିୟନ୍ତ୍ରିତ ହୁଏ । ଅଂଶ ସ୍ୱତ୍ୱାନ୍ତର କ୍ଷେତ୍ରରେ ଅଂଶ ହସ୍ତାନ୍ତର ଦଲିଲ ପ୍ରସ୍ତୁତ କରିବା ଆବଶ୍ୟକ ହୁଏ ନାହିଁ ।

(୨) କୌଣସି ଅଂଶଧାରୀଙ୍କର ମୃତ୍ୟୁ ହେଲେ ତାଙ୍କର ଆଇନସଙ୍ଗତ ପ୍ରତିନିଧି ଅଂଶ ବା ଅଂଶଗୁଡ଼ିକ ନିଜ ନାମରେ ଅଥବା ଅନ୍ୟ କାହାରି ନାମରେ ହସ୍ତାନ୍ତର କରି-ପାରିବେ ।

(୩) ହସ୍ତାନ୍ତରକାରୀ ଅଥବା ହସ୍ତାନ୍ତରଗ୍ରହୀତା ଏ ଦୁହିଁଙ୍କ ମଧ୍ୟରୁ ଯେ କୌଣସି ବ୍ୟକ୍ତି କମ୍ପାନୀ ନିକଟରେ ହସ୍ତାନ୍ତର ସକାଶେ ଆବେଦନ କରିପାରନ୍ତି । ଆଂଶିକ ମୂଲ୍ୟ ପ୍ରଦତ୍ତ ଅଂଶ ପତ୍ର କ୍ଷେତ୍ରରେ ଅଂଶ ହସ୍ତାନ୍ତରକାରୀଙ୍କ ନିକଟରୁ ଆବେଦନ ପତ୍ର ପାଇଲେ କମ୍ପାନୀ ହସ୍ତାନ୍ତରଗ୍ରହୀତାଙ୍କ ନିକଟକୁ ଡାକ ଯୋଗେ ନୋଟିସ ପଠାଇବେ । ନୋଟିସ ପଠାଇବାର ଦୁଇ ସପ୍ତାହ ମଧ୍ୟରେ ହସ୍ତାନ୍ତରଗ୍ରହୀତାଙ୍କଠାରୁ କୌଣସି ପତ୍ର ନ ପାଇଲେ ହସ୍ତାନ୍ତର କାର୍ଯ୍ୟ ସମ୍ପାଦିତ କରାଯାଇପାରେ ।

(୪) ଅଂଶ ହସ୍ତାନ୍ତର ଆବେଦନ ପତ୍ର ଅଗ୍ରାହ୍ୟ କରିବାର ଚୂଡ଼ାନ୍ତ କ୍ଷମତା ପରିମେଳ ନିୟମାବଳୀ ପରିଚାଳକମଣ୍ଡଳୀ ଉପରେ ନ୍ୟସ୍ତ କରିଥାଏ ।

(୫) ଅଂଶ ହସ୍ତାନ୍ତର ଆବେଦନ ଅଗ୍ରାହ୍ୟ ହେବାର ୨ ମାସ ମଧ୍ୟରେ କେନ୍ଦ୍ରୀୟ ସରକାରଙ୍କ ନିକଟରେ ଏହାର ଅପିଲ କରାଯାଇପାରେ ।

(୬) ଯଦି କୌଣସି ଦେବାଳିଆ ବ୍ୟକ୍ତିଙ୍କର ଅଂଶ ଅନ୍ୟ କୌଣସି ବ୍ୟକ୍ତିଙ୍କୁ ହସ୍ତାନ୍ତରିତ ହୁଏ ତାହାହେଲେ ଉକ୍ତ ଅଂଶ ହସ୍ତାନ୍ତରର କ୍ଷମତା ସରକାରୀ ସ୍ୱତ୍ୱନିୟୋଗୀ (Official Assignee) ଙ୍କ ଉପରେ ନ୍ୟସ୍ତ କରା ହୁଏ ।

**ଋଣ ପତ୍ର**—ସ୍ୱଳ୍ପ ଦୀର୍ଘ ଓ ଦୀର୍ଘମିଆଦୀ ଋଣ ଆବଶ୍ୟକ ହେଲେ କମ୍ପାନୀ ଋଣ ପତ୍ର ( Debenture ) ବିକ୍ରୟ କରି ଋଣ ସଂଗ୍ରହ କରେ । ଯେଉଁ ଦଲିଲରେ ଋଣ ପତ୍ରର ମାଲିକ ଅଥବା ଋଣପତ୍ରଧାରୀଙ୍କଠାରୁ ସଂଗୃହୀତ ଅର୍ଥର ସ୍ୱୀକୃତି ଲିପିବଦ୍ଧ ହୋଇଥାଏ, ତାହାକୁ ଋଣ ପତ୍ର କୁହାଯାଏ । ଉକ୍ତ ଦଲିଲରେ କମ୍ପାନୀର ନାମ ଓ ଏହାର ସିଲମୋହର ଦିଆଯାଇଥିବା ଆବଶ୍ୟକ । ଉକ୍ତ ଦଲିଲରେ ଋଣ ପ୍ରତ୍ୟର୍ପଣ ଓ ପ୍ରଦେୟ ସୁଧ ସମ୍ବନ୍ଧୀୟ ସର୍ତ୍ତଗୁଡ଼ିକ ଲିପିବଦ୍ଧ ହୋଇଥିବା ଆବଶ୍ୟକ । ଏଥିରେ କମ୍ପାନୀଦ୍ୱାରା ପ୍ରଦତ୍ତ ଜାମିନର ପ୍ରକୃତିର ମଧ୍ୟ ଉଲ୍ଲେଖ ଥାଏ । ଏହି ଋଣ ପତ୍ର ସଂଜ୍ଞା ସମ୍ପର୍କରେ କମ୍ପାନୀ ଅଧିନରେ କୁହାଯାଇଛି ଯେ କମ୍ପାନୀର ସମ୍ପତ୍ତି ଉପରେ ଦାବୀଯୁକ୍ତ ଅଥବା ଦାବୀହୀନ ଡିବେଞ୍ଚର ଷ୍ଟକ୍, ବଣ୍ଡ୍ ଅଥବା ଅନ୍ୟ ଯେ କୌଣସି ପ୍ରକାର ଲଗ୍ନିପତ୍ର ( Security )କୁ ଋଣ ପତ୍ର ବୋଲି ଗଣ୍ୟ କରାଯାଏ ।

**ଋଣ ପତ୍ରର ଶ୍ରେଣୀ ବିଭାଗ**—ପ୍ରଦତ୍ତ ଜାମିନ ଅନୁଯାୟୀ ଋଣ ପତ୍ରକୁ ଦୁଇଟି ଶ୍ରେଣୀରେ ବିଭକ୍ତ କରାଯାଏ :

(କ) ସାଧାରଣ ଋଣପତ୍ର ( Simple or Naked Debenture ) କମ୍ପାନୀର କୌଣସି ବିଶେଷ ସମ୍ପତ୍ତିକୁ ବନ୍ଧକ ଅଥବା ଜାମିନ ରୂପେ ନ ରଖି ଏହି ଋଣ ପତ୍ର ବିକ୍ରୟ କରାଯାଏ । ଏହି ଜାତୀୟ ଋଣ ପତ୍ରର ମୂଳ ଅର୍ଥ ପ୍ରତ୍ୟର୍ପଣ ଓ ସୁଧ ପ୍ରଦାନ ସମ୍ପର୍କରେ କୌଣସି ନିଶ୍ଚିତତାର ଅଭାବ ହେତୁ ଏହା ତେତେ ଜନପ୍ରିୟ ନୁହେଁ । ଏହି ଜାତୀୟ ଋଣ ପତ୍ରଧାରୀଙ୍କୁ କମ୍ପାନୀର ଜାମିନହୀନ ପାଉଣାଦାର (Unsecured creditors) ବୋଲି କୁହାଯାଏ ।

(ଖ) ବନ୍ଧକୀ ଋଣପତ୍ର (Mortgage Debenture)—କମ୍ପାନୀର କୌଣସି ବିଶେଷ ସମ୍ପତ୍ତିକୁ ଜାମିନ ରଖି କମ୍ପାନୀ ଯେଉଁ ଋଣପତ୍ର ବିକ୍ରୟ କରେ ତାହାକୁ ବନ୍ଧକୀ ଋଣ କୁହାଯାଏ । କମ୍ପାନୀର ଅବସାନ ଘଟିଲେ ଉକ୍ତ ସମ୍ପତ୍ତିର ବିକ୍ରୟଲବ୍ଧ ଅର୍ଥଦ୍ୱାରା ସର୍ବାଗ୍ରେ ଏହି ଜାତୀୟ ଋଣପତ୍ରଧାରୀଙ୍କର ଋଣ ପରିଶୋଧ କରାଯାଏ । ମୂଳ ଅର୍ଥର ପ୍ରତ୍ୟର୍ପଣ ଓ ପ୍ରଦେୟ ସୁଧ ସମ୍ବନ୍ଧରେ ନିଶ୍ଚିତତା ଥିବା ହେତୁ ଏହା ଜନସାଧାରଣଙ୍କଦ୍ୱାରା ଆଦୃତ ହୋଇଥାଏ । ଏହି ଜାତୀୟ ଋଣ ପତ୍ରଧାରୀଙ୍କୁ କମ୍ପାନୀର ଜାମିନଯୁକ୍ତ ପାଉଣାଦାର (Secured creditors) କୁହାଯାଏ ।

ଋଣ ପରିଶୋଧ ଦୃଷ୍ଟିରୁ ଋଣ ପତ୍ରର ଅନ୍ୟ ଏକ ପ୍ରକାର ଶ୍ରେଣୀବିଭାଗ ମଧ୍ୟ ପ୍ରଚଳିତ ଅଛି; ଯଥା :

(କ) ପରିଶୋଧ୍ୟ ଋଣ ପତ୍ର ( Redumable Debenture)—ଯେଉଁ ଋଣ ପତ୍ର ନିର୍ଦ୍ଦିଷ୍ଟ ସମୟାନ୍ତେ ପରିଶୋଧ୍ୟ ତାହା ପରିଶୋଧ୍ୟ ଋଣ ପତ୍ର ନାମରେ ଅଭିହିତ ହୁଏ ।

ସାଧାରଣତଃ ଏହି ପ୍ରକାର ଋଣ ପତ୍ର ବାବଦ ଅର୍ଥ ପରିଶୋଧ କରିବା ନିମନ୍ତେ ଏକ ସ୍ୱତନ୍ତ୍ର ଋଣପତ୍ର ପରିଶୋଧ ନିଧି ( Debenture Redumptions Fund ) ଅଥବା ପ୍ରତିପୂରକ ନିଧି ( Sinking Fund ) ର ବ୍ୟବସ୍ଥା କରାଯାଏ । ଏହାର ବିକଳ୍ପ ବ୍ୟବସ୍ଥା ହେଉଛି ନୂତନ ଋଣ ପତ୍ର ବିକ୍ରୟ କରି ସେହି ବିକ୍ରୟଲବ୍ଧ ଅର୍ଥଦ୍ୱାରା ଏହି ପରିଶୋଧ ଋଣ ପତ୍ର ବାବଦ ଅର୍ଥ ପରିଶୋଧ କରିବା ।

(ଖ) ସ୍ଥାୟୀ ବା ଅପରିଶୋଧ୍ୟ ଋଣ ପତ୍ର (Irredumable Debenture)— ଏହି ଜାତୀୟ ଋଣ ପତ୍ର ବାବଦ ଅର୍ଥ କମ୍ପାନୀ ଚାଲିଥିବା ପର୍ଯ୍ୟନ୍ତ ଶୋଧ କରାଯାଏ ନାହିଁ । ଏହା କେବଳ କମ୍ପାନୀ ଅବସାନବେଳେ ପରିଶୋଧ କରାଯାଏ । ଅବଶ୍ୟ ଋଣ ପତ୍ର-ଧାରୀମାନେ ନିର୍ଦ୍ଦିଷ୍ଟ ସମୟରେ ସେମାନଙ୍କର ପ୍ରାପ୍ୟ ସୁଧ ପାଆନ୍ତି ।

ଋଣ ପତ୍ର ଓ ଋଣାଂଶ ( Debenture stock ) ମଧ୍ୟରେ ଥିବା ପାର୍ଥକ୍ୟ ଅଂଶ ଓ ଧନାଂଶ ମଧ୍ୟରେ ଥିବା ପାର୍ଥକ୍ୟର ଅନୁରୂପ ଅଟେ । ଯଥା—

(୧) ଋଣ ପତ୍ର ଋଣ ପତ୍ରଧାରୀଙ୍କଠାରେ କମ୍ପାନୀଦ୍ୱାରା ଋଣର ଏକ ସ୍ୱୀକୃତି ଅଟେ । ଏହା ଭଗ୍ନାଂଶରେ ବର୍ଣ୍ଣିତ ହୁଏ ନାହିଁ । କିନ୍ତୁ ଋଣାଂଶ ଭଗ୍ନାଂଶରେ ବର୍ଣ୍ଣିତ ହୋଇପାରେ ।

(୨) ଋଣ ପତ୍ର କ୍ଷେତ୍ରରେ କ୍ରମିକ ସଂଖ୍ୟା ଥିବା ପ୍ରମାଣ ପତ୍ର ବା ଋଣ ପତ୍ର ଋଣ ପତ୍ର-ଧାରୀଙ୍କୁ ଦିଆଯାଏ; କିନ୍ତୁ ଋଣାଂଶ କ୍ଷେତ୍ରରେ ଏହାର ପ୍ରମାଣ ପତ୍ରରେ କୌଣସି କ୍ରମିକ ସଂଖ୍ୟା ନ ଥାଏ ।

## ଋଣ ପତ୍ରଧାରୀ ଓ ଅଂଶଧାରୀଙ୍କ ମଧ୍ୟରେ ପାର୍ଥକ୍ୟ—

(୧) ଅଂଶଧାରୀମାନେ କମ୍ପାନୀର ଆଂଶିକ ମାଲିକ, କିନ୍ତୁ ଋଣପତ୍ରଧାରୀମାନେ କମ୍ପାନୀର ପାଉଣାଦାର ।

(୨) ଅଂଶଧାରୀମାନେ କମ୍ପାନୀ ପରିଚାଳନାରେ ଅଂଶ ଗ୍ରହଣ କରିପାରନ୍ତି; କିନ୍ତୁ ଋଣ ପତ୍ରଧାରୀଙ୍କର ଏଭଳି ଅଧିକାର ନ ଥାଏ ।

(୩) ସାଧାରଣ ଅଂଶଧାରୀମାନେ ଭୋଟର ଅଧିକାରୀ, କିନ୍ତୁ ଋଣପତ୍ରଧାରୀଙ୍କର ଏଭଳି ଅଧିକାର ନ ଥାଏ ।

(୪) ଋଣପତ୍ରଧାରୀମାନେ କମ୍ପାନୀର ଲାଭାର୍ଜନ ନିର୍ବିଶେଷରେ କମ୍ପାନୀଠାରୁ ନିର୍ଦ୍ଦିଷ୍ଟ ହାରରେ ସୁଧ ପାଆନ୍ତି । କିନ୍ତୁ ଅଂଶଧାରୀମାନେ ପର୍ଯ୍ୟାପ୍ତ ପରିମାଣରେ ଲାଭ ହେଲେ ତାଙ୍କର ଅଂଶ ବାବଦ ପ୍ରଦତ୍ତ ଅର୍ଥ ଅନୁପାତରେ ଲଭାଂଶ ପାଆନ୍ତି ।

(୫) ସାଧାରଣତଃ ଋଣ ପତ୍ର ବାବଦ ଅର୍ଥ ପରିଶୋଧ ଦିଆଯାଏ; କିନ୍ତୁ ଅଗ୍ରାଧିକାର ଅଂଶ ବ୍ୟତୀତ ସାଧାରଣ ଅଂଶ ବାବଦ ଅର୍ଥ କେବଳ କମ୍ପାନୀ ଅବସାନ କାଳରେ ଆନୁପାତିକ ହାରରେ ଫେରସ୍ତ ଦିଆଯାଏ, ତାହା ପୂର୍ବରୁ ନୁହେଁ ।

(୬) ଅପରିଶୋଧ୍ୟ ବା ସ୍ଥାୟୀ ଋଣପତ୍ରଧାରୀମାନଙ୍କର ଅର୍ଥ ଅଂଶଧାରୀମାନଙ୍କ ପୂର୍ବରୁ କମ୍ପାନୀ ଅବସାନ ସମୟରେ ପ୍ରଥମେ ଦିଆଯାଏ । ସମସ୍ତ ଋଣ ଓ ଦେଣା ପରିଶୋଧ ଦିଆଯିବା ପରେ ଯଦି କିଛି ଅବଶିଷ୍ଟ ସମ୍ପତ୍ତି ବିଦ୍ୟମାନ ଥାଏ, ତାହାହେଲେ ଅଂଶଧାରୀ-ମାନଙ୍କୁ ତାଙ୍କ ଅଂଶ ବାବଦ ଅର୍ଥ ଆନୁପାତିକ ହାରରେ ପରିଶୋଧ କରାଯାଏ । ବିଧିବଦ୍ଧ ଓ ପରିସଂଖ୍ୟାନ ସମ୍ବନ୍ଧୀୟ ବହିସମୂହ ( Statutory & Statistical Books ) କମ୍ପାନୀ ଆଇନର ବିଧାନ ଅନୁଯାୟୀ ପ୍ରତି କମ୍ପାନୀକୁ କେତେକ ଆବଶ୍ୟକ ତଥ୍ୟ ଯୋଗାଇବା ପାଇଁ ବହି ( Register ) ରଖିବାକୁ ହୁଏ । ଏହାକୁ ବିଧିବଦ୍ଧ ବହି କୁହାଯାଏ । ଏହି ବହିଗୁଡ଼ିକ ମଧ୍ୟରୁ ନିମ୍ନଲିଖିତ ବହିଗୁଡ଼ିକ ଉଲ୍ଲେଖଯୋଗ୍ୟ :

(୧) ସଭ୍ୟମାନଙ୍କର ତାଲିକା ବହି— କମ୍ପାନୀ ଆଇନର ୧୫୦ ଧାରା ଅନୁଯାୟୀ ପ୍ରତ୍ୟେକ କମ୍ପାନୀକୁ ଏହାର ସଭ୍ୟମାନଙ୍କର ତାଲିକା ବହି ରଖିବାକୁ ହୁଏ । ପ୍ରତ୍ୟେକ ଶ୍ରେଣୀର ସଭ୍ୟ ବା ଅଂଶଧାରୀମାନଙ୍କ ସକାଶେ ସ୍ୱତନ୍ତ୍ର ତାଲିକା ବହି ରଖିବା ବାଧ୍ୟତା-ମୂଳକ ଅଟେ । ଏହି ବହିରେ ନିମ୍ନଲିଖିତ ବିଷୟଗୁଡ଼ିକ ରହିବା ଏକାନ୍ତ ପ୍ରୟୋଜନ :

(କ) ସଭ୍ୟମାନଙ୍କର ନାମ, ଠିକଣା ଓ ପେଶା ।

(ଖ) ପ୍ରତ୍ୟେକ ସଭ୍ୟଙ୍କର ଅଂଶ ସଂଖ୍ୟା, ଅଂଶର ନମ୍ବର ଓ ଅଂଶ ବାବଦ ପ୍ରଦତ୍ତ ଅଥବା ପ୍ରଦେୟ ଅର୍ଥର ପରିମାଣ ।

(ଗ) ସଭ୍ୟ ହେବା ତାରିଖ ଓ ସଭ୍ୟ ବହିରେ ନାମ ଲିପିବଦ୍ଧ ହେବା ତାରିଖ ।

(ଘ) ସଭ୍ୟପଦ ତ୍ୟାଗ କରିବା ତାରିଖ ।

କମ୍ପାନୀ ସମ୍ପାଦକ ଅଥବା ନିର୍ଦ୍ଦେଶକମଣ୍ଡଳୀଙ୍କଦ୍ୱାରା କ୍ଷମତାପ୍ରାପ୍ତ ବ୍ୟକ୍ତିଙ୍କ-ଦ୍ୱାରା ତାଲିକା ବହିର ପ୍ରତ୍ୟେକ ଲେଖା ସ୍ୱାକ୍ଷରିତ ହେବା ଆବଶ୍ୟକ ।

(୨) **ସଭ୍ୟମାନଙ୍କର ନାମର ସୂଚୀପତ୍ର**—କମ୍ପାନୀ ଆଇନର ୧୫୧ ଧାରା ଅନୁଯାୟୀ ସଭ୍ୟ ସଂଖ୍ୟା ୫୦ରୁ ଊର୍ଦ୍ଧ୍ୱ ଥିବା କମ୍ପାନୀରେ ସଭ୍ୟମାନଙ୍କର ନାମର ଏକ ସୂଚୀପତ୍ର ଏହାର ନିବନ୍ଧିତ କାର୍ଯ୍ୟାଳୟରେ ରଖିବା ଆବଶ୍ୟକ । ଏହା ସଭ୍ୟମାନଙ୍କର ତାଲିକା ବହିରେ ମଧ୍ୟ ସଂଯୁକ୍ତ ଥାଇପାରେ ।

(୩) **ଋଣପତ୍ରଧାରୀଙ୍କର ତାଲିକା ବହି**—କମ୍ପାନୀ ଆଇନର ୧୫୨ ଧାରା ଅନୁଯାୟୀ ଯେଉଁ କମ୍ପାନୀ ଋଣ ପତ୍ର ମାଧ୍ୟମରେ ଋଣ ସଂଗ୍ରହ କରେ ତାହାକୁ ଋଣ-ପତ୍ରଧାରୀଙ୍କର ଏକ ତାଲିକା ବହି ରଖିବାକୁ ହୁଏ । ଅବଶ୍ୟ ଏହା କମ୍ପାନୀର ନିବନ୍ଧିତ

କାର୍ଯ୍ୟାଳୟରେ ରଖାଯିବ । ଏହି ବହିରେ ଋଣପତ୍ରଧାରୀଙ୍କର ନାମ, ଠିକଣା, ପେଶା, ଋଣପତ୍ରର ସଂଖ୍ୟା ଓ କ୍ରମିକ ନମ୍ବର, ଋଣ ପତ୍ରର ବିବରଣୀ ଓ ପରିଶୋଧ କରିବାର ତାରିଖ ଓ ପ୍ରତ୍ୟେକ ଋଣ ପତ୍ର ବାବଦ ଆଦାୟୀକୃତ ଅର୍ଥର ପରିମାଣ ଲିଖିତ ହେବା ଆବଶ୍ୟକ । ଏହି ବହିର ପ୍ରତ୍ୟେକ ପ୍ରବିଷ୍ଟି କମ୍ପାନୀର ସମ୍ପାଦକ ଅଥବା ନିର୍ଦ୍ଦେଶକମଣ୍ଡଳୀଙ୍କଦ୍ୱାରା ନିଯୁକ୍ତ ଅନ୍ୟ କୌଣସି ବ୍ୟକ୍ତିଙ୍କଦ୍ୱାରା ସ୍ୱାକ୍ଷରିତ ହେବା ଆବଶ୍ୟକ ।

**(୪) ଋଣପତ୍ରଧାରୀଙ୍କ ନାମର ସୂଚୀପତ୍ର**—କମ୍ପାନୀ ଆଇନର ୧୫୨ (୩) ଧାରା ଅନୁଯାୟୀ ଋଣପତ୍ରଧାରୀଙ୍କର ସଂଖ୍ୟା ୫୦ ରୁ ଊର୍ଦ୍ଧ୍ୱ ହେଲେ କମ୍ପାନୀ ପକ୍ଷରେ ଋଣ-ପତ୍ରଧାରୀଙ୍କ ନାମର ଏକ ସୂଚୀପତ୍ର କମ୍ପାନୀର ନିବନ୍ଧିତ କାର୍ଯ୍ୟାଳୟରେ ରଖିବା ଆବଶ୍ୟକ ।

**(୫) ବିଦେଶୀ ଅଂଶଧାରୀ ଅଥବା ଋଣପତ୍ରଧାରୀଙ୍କର ତାଲିକା ବହି**—କମ୍ପାନୀ ଆଇନର ୧୫୭ ଧାରା ଅନୁଯାୟୀ କମ୍ପାନୀର ପରିମେଳ ନିୟମାବଳୀଦ୍ୱାରା ଅନୁମୋଦିତ ହୋଇଥିଲେ ବିଦେଶୀ ଅଂଶଧାରୀ ଓ ଋଣପତ୍ରଧାରୀଙ୍କର ଏକ ତାଲିକା ବହି କମ୍ପାନୀର ନିବନ୍ଧିତ କାର୍ଯ୍ୟାଳୟ ଭିନ୍ନ ଅନ୍ୟ କୌଣସି ରାଜ୍ୟ ଅଥବା ବିଦେଶରେ ଗୋଟିଏ ଶାଖା ତାଲିକା ବହି ରଖିପାରେ । ଏଥିରେ ସେହି ରାଜ୍ୟ ବା ବିଦେଶର ସଭ୍ୟ ବା ଋଣ-ପତ୍ରଧାରୀଙ୍କର ନାମ ଲେଖା ଥାଏ । ଏହି ବହି ଖୋଲିଯିବାର ଏକ ମାସ ମଧ୍ୟରେ ଏହି ବିଷୟ କମ୍ପାନୀ ନିବନ୍ଧକଙ୍କୁ ଜଣାଇବା ଆବଶ୍ୟକ ହୁଏ ଓ ଉକ୍ତ ରାଜ୍ୟ ବା ବିଦେଶର ଠିକଣା ଦେବାକୁ ହୁଏ । ଏହି ବହିର ଏକ ପ୍ରତିଲିପି କମ୍ପାନୀର ନିବନ୍ଧିତ କାର୍ଯ୍ୟାଳୟରେ ଅଂଶଧାରୀ ବା ଋଣପତ୍ରଧାରୀଙ୍କର ତାଲିକା ବହିରେ ଏକ ଅଂଶ ରୂପେ ସଂଶ୍ଳିଷ୍ଟ ରଖିବାକୁ ହୁଏ ।

**(୬) ବାର୍ଷିକ ବିବରଣୀ (Annual Return)**—କମ୍ପାନୀ ଆଇନର ୧୫୯ ଧାରା ଅନୁଯାୟୀ ଗୋଟିଏ କମ୍ପାନୀକୁ ତାହାର ସଭ୍ୟମାନଙ୍କର ଏକ ସମ୍ପୂର୍ଣ୍ଣ ତାଲିକା ଓ ଦୁଇଟି ସାଧାରଣ ସଭାର ମଧ୍ୟବର୍ତ୍ତୀକାଳରେ ଘଟିଥିବା ସମସ୍ତ ପରିବର୍ତ୍ତନ ଲିପିବଦ୍ଧ କରି କମ୍ପାନୀର ସାଧାରଣ ସଭାର ୬୦ ଦିନ ମଧ୍ୟରେ କମ୍ପାନୀ ନିବନ୍ଧକଙ୍କ ନିକଟକୁ ପଠାଇବାକୁ ହୁଏ । କମ୍ପାନୀ ଆଇନର ପଞ୍ଚମ ତଫସିଲ ପ୍ରଥମ ଅଂଶରେ ବର୍ଣ୍ଣିତ ବିଷୟଗୁଡ଼ିକ ଏହି ବାର୍ଷିକ ବିବରଣୀରେ ଲିପିବଦ୍ଧ କରିବାକୁ ହୁଏ । ଯଦି କମ୍ପାନୀରେ ବିଭିନ୍ନ ଶ୍ରେଣୀର ଅଂଶଧାରୀ ଥାଆନ୍ତି ତାହାହେଲେ ପ୍ରତ୍ୟେକ ଶ୍ରେଣୀର ଅଂଶଧାରୀମାନଙ୍କ ନିକାଶେ ସ୍ୱତନ୍ତ୍ର ତାଲିକା ଦେବାକୁ ହୁଏ । କମ୍ପାନୀର ସାଧାରଣ ସଭା ଅନୁଷ୍ଠିତ ହେବା ମସୃଦିନଠାରୁ ଗୋଟିଏ ନୂତନ ସଭ୍ୟତାଲିକା ବହି ଖୋଲାଯିବ ଏବଂ ତାହା ପରବର୍ତ୍ତୀ ସାଧାରଣ ସଭା ଦିନ ବନ୍ଦ କରାଯିବ । ସାଧାରଣ ସଭା ଦିନ କମ୍ପାନୀର ଅଂଶଧାରୀ ଓ ଷ୍ଟକ୍‌ଧାରୀଙ୍କର ମାଲିକମାନଙ୍କର ଏକ ତାଲିକା ଏଥିରେ ଲିପିବଦ୍ଧ ହେବ । ଗତ ସାଧାରଣ ସଭା ଦିନ ଏବଂ କମ୍ପାନୀର ନିବନ୍ଧନ ଦିବସଠାରୁ ଯେଉଁମାନେ ଅଂଶଧାରୀ ଓ ଷ୍ଟକ୍‌ଧାରୀ ଥିଲେ ସେମାନଙ୍କର

ନାମର ମଧ୍ୟ ଏକ ତାଲିକା ଏଥିରେ ଲିପିବଦ୍ଧ କରାଯିବ । କମ୍ପାନୀର ବାର୍ଷିକ ବିବରଣ ସହିତ ଏହି ତାଲିକାଗୁଡ଼ିକର ନକଲ କମ୍ପାନୀର ନିବନ୍ଧକଙ୍କ ନିକଟରେ ଦାଖଲ କରାଯିବ ।

**(୭) ସଭାର କାର୍ଯ୍ୟ ବିବରଣୀ ବହି (Minute Book)** – କମ୍ପାନୀ ଆଇନର ୧୯୩ ଧାରା ଅନୁଯାୟୀ ପ୍ରତ୍ୟେକ କମ୍ପାନୀକୁ ଏହାର ନିର୍ଦ୍ଦେଶକମଣ୍ଡଳୀମାନଙ୍କର ସଭାର କାର୍ଯ୍ୟ ବିବରଣୀ ଓ ସାଧାରଣ ସଭାର କାର୍ଯ୍ୟ ବିବରଣୀ ଲିପିବଦ୍ଧ କରିବାକୁ ହୁଏ । ଏହା ଏକ କ୍ରମିକ ନମ୍ବରବିଶିଷ୍ଟ ବନ୍ଧେଇ ଖାତାରେ ରଖାଯିବା ଆବଶ୍ୟକ । ତାରିଖ କ୍ରମରେ ଏହି ବିବରଣୀ ଲେଖାଯିବ ଓ ସଭାର ସଭାପତିଙ୍କଦ୍ୱାରା ଏହା ସ୍ୱାକ୍ଷରିତ ହେବା ଆବଶ୍ୟକ । ଏହି ବହି କମ୍ପାନୀର ନିବନ୍ଧିତ କାର୍ଯ୍ୟାଳୟରେ ରଖାଯିବା ଆବଶ୍ୟକ ।

**(୮) ଯେଉଁ ଚୁକ୍ତିରେ ନିର୍ଦ୍ଦେଶକମାନଙ୍କର ସ୍ୱାର୍ଥ ଜଡ଼ିତ ସେହି ସମସ୍ତ ଚୁକ୍ତି ଅନ୍ତର୍ଭୁକ୍ତ ଥିବା ବହି**—ନିର୍ଦ୍ଦେଶକମାନେ ଯେଉଁ ଅଂଶୀଦାରି ବ୍ୟବସାୟର ଅଂଶୀଦାର ଅଥବା ଯେଉଁ ସମସ୍ତ କମ୍ପାନୀର ନିର୍ଦ୍ଦେଶକ ସେଭଳି ଅଂଶୀଦାରି ବ୍ୟବସାୟ ଅଥବା କମ୍ପାନୀ ସହିତ ଅଥବା ପରିଚାଳକମାନଙ୍କର ଆତ୍ମୀୟ ସଂଶ୍ଳିଷ୍ଟ ଥିବା ବ୍ୟବସାୟ ପ୍ରତିଷ୍ଠାନ ଅଥବା କମ୍ପାନୀ ସହିତ ସମ୍ପାଦିତ ଚୁକ୍ତିଗୁଡ଼ିକ ଏହି ବହିରେ ଲିପିବଦ୍ଧ ହୋଇଥାଏ ।

**(୯) ନିର୍ଦ୍ଦେଶକ, ପରିଚାଳନା ନିର୍ଦ୍ଦେଶକ ପ୍ରଭୃତିଙ୍କ ବହି**—ଏହି ବହିରେ କମ୍ପାନୀର ନିର୍ଦ୍ଦେଶକ, ପରିଚାଳନା ନିର୍ଦ୍ଦେଶକ, ସମ୍ପାଦକ, ପରିଚାଳକ ପ୍ରଭୃତିଙ୍କର ପୂର୍ଣ୍ଣ ବିବରଣୀ ଲିପିବଦ୍ଧ ହେବା ଆବଶ୍ୟକ । ପ୍ରତ୍ୟେକଙ୍କ ସମ୍ବନ୍ଧରେ ନିମ୍ନଲିଖିତ ବିବରଣ ତହିଁରେ ଲିପିବଦ୍ଧ ହେବ; ଯଥା—(କ) ନିର୍ଦ୍ଦେଶକଙ୍କର ପୂର୍ଣ୍ଣ ନାମ ଓ ପଦବୀ, (ଖ) ପୂର୍ବତନ ପୂର୍ଣ୍ଣ ନାମ ଓ ପଦବୀ, (ଗ) ପିତା ବା ସ୍ୱାମୀଙ୍କର ନାମ ଓ ପଦବୀ, (ଘ) ସାଧାରଣ ବାସସ୍ଥାନର ଠିକଣା, (ଙ) ବର୍ତ୍ତମାନ ନାଗରିକତ୍ୱ ଓ ପ୍ରାକ୍ତନ ନାଗରିକତ୍ୱ ଭିନ୍ନ ହୋଇଥିଲେ ତାହାର ନାମ, (ଚ) ପେଶା, (ଛ) ଅନ୍ୟ କୌଣସି କମ୍ପାନୀରେ ଏହି ପଦ ଅଧିକାର କରିଥିଲେ ସେହି କମ୍ପାନୀର ନାମ ଓ ବିବରଣ, (ଜ) ଜନ୍ମ ତାରିଖ (କେବଳ ପବ୍ଲିକ କମ୍ପାନୀ ଓ ତାହାର ଅଧୀନସ୍ଥ କମ୍ପାନୀ କ୍ଷେତ୍ରରେ) ।

**(୧୦) ନିର୍ଦ୍ଦେଶକମାନଙ୍କର ଅଂଶ କ୍ରୟ ତାଲିକା ବହି**—କମ୍ପାନୀ ଆଇନର ୩୦୭ ଧାରା ଅନୁସାରେ ପ୍ରତି କମ୍ପାନୀକୁ ଏହାର ନିବନ୍ଧିତ କାର୍ଯ୍ୟାଳୟରେ ଏହି ବହିଟି ଥିବା ଆବଶ୍ୟକ । ଏହି ବହିରେ ପ୍ରତ୍ୟେକ ନିର୍ଦ୍ଦେଶକଙ୍କର ନାମ ଓ ସେମାନେ କ୍ରୟ କରିଥିବା ଅଂଶ ପତ୍ର ଓ ଋଣ ପତ୍ରର ସଂଖ୍ୟା ଲିପିବଦ୍ଧ କରାଯିବ । ଯଦି ପରେ ସେ ତାହା ଅନ୍ୟ କାହାରିକୁ ବିକ୍ରୟ କରନ୍ତି ତାହାହେଲେ ତାଙ୍କର ନାମ ଓ ବିକ୍ରିତ ମୂଲ୍ୟ ମଧ୍ୟ ଏଠାରେ ଲିପିବଦ୍ଧ କରାଯିବ ।

(୧୧) ସମ୍ପତ୍ତି ଉପରେ ଦାୟର ତାଲିକା ବହି (Register of charges)—କମ୍ପାନୀ ଆଇନର ୧୪୩ ଧାରା ଅନୁସାରେ ପ୍ରତି କମ୍ପାନୀକୁ ଏହାର ନିବନ୍ଧିତ କାର୍ଯ୍ୟାଳୟରେ ଏହି ବହି ରଖିବା ଆବଶ୍ୟକ । ଏଥିରେ କମ୍ପାନୀର ସମ୍ପତ୍ତିଗୁଡ଼ିକ ଉପରେ ଦାୟର ବିବରଣ ଲିପିବଦ୍ଧ ହେବା ଆବଶ୍ୟକ । ଯେଉଁ ସମ୍ପତ୍ତିକୁ ବନ୍ଧକ ଦିଆଯାଇଛି ତାହାର ବିବରଣ, ବନ୍ଧକର ପରିମାଣ ଓ ଯାହାଙ୍କଠାରେ ବନ୍ଧକ ଦିଆଯାଇଛି ତାଙ୍କର ନାମ ଏହି ବହିରେ ଲିପିବଦ୍ଧ ହେବା ଆବଶ୍ୟକ । ଯଦି କୌଣସି ସମ୍ପୃକ୍ତ ଅଧିକାରୀ ଜ୍ଞାତସାରରେ କୌଣସି ବନ୍ଧକ ବିଷୟ ଏହି ବହିରେ ଲିପିବଦ୍ଧ ନ କରନ୍ତି ତାହାହେଲେ ତାଙ୍କୁ ୫୦୦ ଟଙ୍କା ପର୍ଯ୍ୟନ୍ତ ଜୋରିମାନା ହୋଇପାରେ । କମ୍ପାନୀର ପାଉଣାଦାରମାନଙ୍କ ସ୍ୱାର୍ଥରେ ଏହି ବହି ରଖାଯିବାର ବ୍ୟବସ୍ଥା ହୋଇଛି ।

ଏହା ବ୍ୟତୀତ କମ୍ପାନୀକୁ ଅନ୍ୟ କେତେକ ପ୍ରୟୋଜନୀୟ ବହି ରଖିବାକୁ ହୁଏ ଯଥା—କମ୍ପାନୀର ସିଲମୋହର ଦିଆଯାଇଥିବା ଦଲିଲର ବହି, ବିନିଯୋଗ ତାଲିକା ବହି, ଅନ୍ୟମାନଙ୍କ ନାମରେ ରକ୍ଷିତ ବିନିଯୋଗର ତାଲିକା ବହି ପ୍ରଭୃତି ।

**ପରିସଂଖ୍ୟାନ ସଂକ୍ରାନ୍ତ ବହି** (Statistical Books)—ବ୍ୟବସାୟ ସଂକ୍ରାନ୍ତ ସାଧାରଣ ହିସାବ ବହି ବ୍ୟତୀତ ପ୍ରତି କମ୍ପାନୀକୁ କେତେଗୋଟି ଅତିରିକ୍ତ ବିବରଣୀ ବହି (Memorandum Book) ରଖିବାକୁ ହୁଏ । ସାଧାରଣତଃ ଅଂଶଧାରୀ ଓ ଋଣପତ୍ରଧାରୀଙ୍କ ସ୍ୱାର୍ଥରେ ଏହି ବହିଗୁଡ଼ିକ ରଖାଯାଏ । ଏଥିମଧ୍ୟରୁ କେତେ-ଗୋଟି ବହିର ବିବରଣୀ ନିମ୍ନରେ ପ୍ରଦତ୍ତ ହେଲା—

### (୧) ଅଂଶ ସକାଶେ ଆବେଦନ ଓ ଅଂଶ ଆବଣ୍ଟନ ବହି
### ( Share Application & Allotment Book )

କୌଣସି କମ୍ପାନୀର ଅଂଶ କ୍ରୟ କରିବା ପାଇଁ କମ୍ପାନୀର ନିର୍ଦ୍ଦିଷ୍ଟ ଫର୍ମରେ ଆବେଦନ କରିବାକୁ ହୁଏ । ଏଥିରେ ଆବେଦନକାରୀଙ୍କ ନାମ, ଠିକଣା, ପେଶା, କ୍ରୟ କରିବା ପାଇଁ ଆବେଦନ କରୁଥିବା ଅଂଶର ସଂଖ୍ୟା, ଆବେଦନ ପତ୍ର ସହିତ ପ୍ରଦତ୍ତ ଅର୍ଥର ପରିମାଣ ଏଥିରେ ଲିପିବଦ୍ଧ ହୋଇଥାଏ । କେଉଁ ଆବେଦନକାରୀଙ୍କୁ କୌଣସି ଅଂଶ ଆବଣ୍ଟନ କରାଯିବ କି ନାହିଁ ଏବଂ ଯଦି କରାଯାଏ ତାହାହେଲେ ଆବଣ୍ଟିତ ଅଂଶର ସଂଖ୍ୟା, ପ୍ରଦେୟ ଅର୍ଥର ପରିମାଣ ଓ ଏହା ଜମା ଦେବାର ଶେଷ ତାରିଖ ଏହି ଆବଣ୍ଟନ ପତ୍ରରେ ଲିପିବଦ୍ଧ ହୋଇଥାଏ । ଉଲ୍ଲେଖ କରିବା ପାଇଁ ସୁବିଧା ଦୃଷ୍ଟିରୁ କ୍ରମିକ ସଂଖ୍ୟା ଅନୁଯାୟୀ ସଜାଇ ଏହି ଆବେଦନ ପତ୍ର ଓ ଆବଣ୍ଟନ ପତ୍ର ସଂକ୍ରାନ୍ତ ତଥ୍ୟ ବିଷୟ ଗୋଟିଏ ବହିରେ ଲିପିବଦ୍ଧ କରାଯାଏ । ଏହାକୁ ଅଂଶ ଆବେଦନ ଓ ଆବଣ୍ଟନ ବହି କୁହାଯାଏ ।

ଏହାର ଏକ ନମୁନା ନିମ୍ନରେ ପ୍ରଦତ୍ତ ହେଲା :

# ଓଡ଼ିଶା ଜୁଟ୍ ମିଲସ୍ ଲିମିଟେଡ୍

( ପ୍ରଚଳିତ ପୁଞ୍ଜି ଟ ୧,୦୦,୦୦୦ )

ସାଧାରଣ ଅଂଶ ଅବେଦନ ଓ ଆବଣ୍ଟନ ବହି

ଆବେଦନ — ଆବଣ୍ଟନ

ଅଙ୍କିତ ମୂଲ୍ୟ : ଅଂଶ ପ୍ରତି ଟ ୧୦୦ ଅଂଶ ପ୍ରତି ଟ ୫ ଦେୟ ତାରିଖ ୨୫-୧୦-୧୯୭୦ ଅଂଶ ପ୍ରତି ଟ ୧୫ ଦେୟ ୨୫-୧୨-୧୯୭୦ ମଧ୍ୟେ

| ଅବେଦନ କ୍ରମିକ ନମ୍ବର | ଅବେଦନ ତାରିଖ | ଅବେଦନକାରୀଙ୍କର ନାମ | ଠିକଣା | ପେଶା | ଆବେଦନ କରାଯାଇଥିବା ଅଂଶର ସଂଖ୍ୟା | ଅବେଦନ ସହ ପ୍ରଦତ୍ତ ଅର୍ଥ | ରେକର୍ଡ଼ ବହି ପୃଷ୍ଠା | ଆବଣ୍ଟନ ପତ୍ରର ନମ୍ବର | ଆବଣ୍ଟନ ତାରିଖ | ଆବଣ୍ଟିତ ଅଂଶର ସଂଖ୍ୟା | କ୍ରମିକ ସଂଖ୍ୟା | ଆବଣ୍ଟନ ବାବଦ ଦେୟ ଅର୍ଥ | ଫେରସ୍ତଯୋଗ୍ୟ ଅର୍ଥ | କେବେ ଦେଲେ ଅଥବା ଡାକ୍ରେ ଫେରସ୍ତ ଦିଆଗଲା | ରେକର୍ଡ ବହି ପୃଷ୍ଠା | ସଭ୍ୟ ବହି ପୃଷ୍ଠା | ଅଂଶ ପତ୍ର ନମ୍ବର | ଅଂଶ ପତ୍ର ଦେବା ତାରିଖ | ମନ୍ତବ୍ୟ |
|---|---|---|---|---|---|---|---|---|---|---|---|---|---|---|---|---|---|---|---|
| ୧ | ୨ | ୩ | ୪ | ୫ | ୬ | ୭ | ୮ | ୯ | ୧୦ | ୧୧ | ୧୨ | ୧୩ | ୧୪ | ୧୫ | ୧୬ | ୧୭ | ୧୮ | ୧୯ | ୨୦ |
| ୧ | ୧୦-୧୦-୭୦ | ଶାନ୍ତନୁ ମିଶ୍ର | ବକ୍ସିବଜାର, କଟକ | ଶିକ୍ଷକ | ୮ | ଟଙ୍କା ୪୦ | ୧୧ | ୧ | ୫-୧୧-୭୦ | ୮ | ୧-୮ | ଟଙ୍କା ୧୨୦ | | ୧-୧୨ | — | ୨୪ | ୧ | | |
| ୨ | ୧୨-୧୦-୭୦ | ବିଜୟ ମହାନ୍ତ | ବାପୂଜୀନଗର, ଭୁବନେଶ୍ୱର | ଓକିଲ | ୯ | ୪୫ | ୧୪ | ୨ | ,, | ୮ | ୯-୧୬ | ୧୧୫ | — | ୫-୧୨ | — | ୨୮ | ୨ | | |
| ୩ | ୧୫-୧୦-୭୦ | ଶ୍ରୀକାନ୍ତ ସାହୁ | ନିମଚଉଡ଼ି, କଟକ | ବ୍ୟବସା | ୬ | ୩୦ | ୨୦ | ୩ | ,, | ୪ | ୧୭-୨୦ | ୫୦ | — | ୧୦-୧୨ | — | ୪୨ | ୩ | | |

## ଅଂଶ ଆହ୍ୱାନ ବହି

ଅଂଶ ପ୍ରତି ୧୫-୨-୧୯୬୧ରେ ଦିଆଯାଇଥିବା ପ୍ରଥମ ଆହ୍ୱାନ ବାବଦ ଟ ୧୦ ୧୫-୩-୧୯୬୧ ମଧ୍ୟେ ଦେୟ

| ନାମ | ଠିକଣା | ସଭ୍ୟ ବହି ପୃଷ୍ଠା | କ୍ରୀତ ଅଂଶର ସଂଖ୍ୟା | ଦେୟ ଅର୍ଥ | ପ୍ରଦତ୍ତ ଅର୍ଥ | ରେକଡ଼ ବହି ପୃଷ୍ଠା | ଆହ୍ୱାନ ବାବଦ ଅପ୍ରଦତ୍ତ ଅର୍ଥ | | | | | ଅଗ୍ରିମ ପ୍ରଦତ୍ତ ଆହ୍ୱାନ ବାବଦ ଅର୍ଥ | ମନ୍ତବ୍ୟ |
|---|---|---|---|---|---|---|---|---|---|---|---|---|---|
| | | | | | | | ଦେୟ ଅର୍ଥ | ଦିବସ | ସୁଧ | ଅର୍ଥ ପରିମାଣ | ରେକଡ଼ ବହି ପୃଷ୍ଠା | | |
| ଶାନ୍ତନୁ ମିଶ୍ର | ବକ୍ସିବଜାର, କଟକ | ୧୪ | ୮ | ଟଙ୍କା | | | ଟଙ୍କା | | ଟଙ୍କା | ଟଙ୍କା | | | |
| ବିଜୟ ମହାନ୍ତି | ବାପୁଜୀନଗର, | ୧୮ | ୮ | ୧୬୦ | ୧୬୦ | ୪୧ | | | | | | | |
| | ଭୁବନେଶ୍ୱର | | | ୧୬୦ | ୧୬୦ | ୫୦ | | | | | | | |
| ଶ୍ରୀକାନ୍ତ ସାହୁ | ନିମଚଉଡ଼ି, କଟକ | ୪୧ | ୪ | ୮୦ | | | ୮୦ | | | | | | |

**(୨) ଅଂଶ ଆହ୍ୱାନ ବହି** (Share Call Book)—ଆଂଶିକ ମୂଲ୍ୟରେ ଅଂଶ ଆବଣ୍ଟିତ ହେଲେ କମ୍ପାନୀର ଇଚ୍ଛା ଓ ଆବଶ୍ୟକତା ଅନୁଯାୟୀ ଏହା ଅଂଶର **ଅବଶିଷ୍ଟ** ମୂଲ୍ୟ ଗୋଟିଏ ଅଥବା ଏକାଧିକ କିସ୍ତିରେ ଆହ୍ୱାନ କରିପାରେ । ଏହାକୁ ଆହ୍ୱାନ-ଅର୍ଥ ( call money ) କୁହାଯାଏ । ଏହି ଅର୍ଥ ଦେବା ପାଇଁ ଯେତେବେଳେ କମ୍ପାନୀ ଆହ୍ୱାନ ଦିଏ ସେତେବେଳେ ଅଂଶଧାରୀମାନେ କମ୍ପାନୀକୁ ଏହି ଅର୍ଥ ଦେବା ପାଇଁ ଦାୟବଦ୍ଧ ହୁଅନ୍ତି । ଯେଉଁ ବହିରେ ଏହି ଆହୂତ ଅର୍ଥ ଓ ଏହାର ପ୍ରାପ୍ତି ସମ୍ବନ୍ଧରେ ସମସ୍ତ ତଥ୍ୟ ଲିପିବଦ୍ଧ କରାଯାଏ ତାହାକୁ ଅଂଶ ଆହ୍ୱାନ ବହି କୁହାଯାଏ । ଏହି ବହିର ଏକ ନମୁନା ପୂର୍ବ ପୃଷ୍ଠାରେ ପ୍ରଦତ୍ତ ହେଲା ।

**(୩) ଅଂଶ ହସ୍ତାନ୍ତର ତାଲିକା ବହି** ( Register of Share Transfer )—କୌଣସି ଅଂଶଧାରୀ ଅନ୍ୟ ଏକ ବ୍ୟକ୍ତିଙ୍କୁ ତାଙ୍କର ଅଂଶ ହସ୍ତାନ୍ତର କରିବାକୁ ଚାହିଁଲେ ତାହାଙ୍କୁ ଗୋଟିଏ ଅଂଶ ହସ୍ତାନ୍ତର ଫର୍ମରେ ସ୍ୱାକ୍ଷର କରିବାକୁ ହୁଏ । ଏହି ସ୍ୱାକ୍ଷରିତ ଫର୍ମ ଓ ଅଂଶ ପତ୍ରକୁ କମ୍ପାନୀ ନିକଟକୁ ପ୍ରେରଣ କଲେ କମ୍ପାନୀ ଅଂଶ ହସ୍ତାନ୍ତର ସଂକ୍ରାନ୍ତ ସମସ୍ତ ତଥ୍ୟ ଏହି ବହିରେ ଲିପିବଦ୍ଧ କରେ ।

**(୪) ଅଂଶଧାରୀଙ୍କର ଲଭ୍ୟାଂଶ ବହି** (Shareholders' Dividend)-କମ୍ପାନୀ ଲଭ୍ୟାଂଶ ଘୋଷଣା କଲେ ପ୍ରତ୍ୟେକ ଅଂଶଧାରୀଙ୍କର ମୋଟ ଲଭ୍ୟାଂଶ ଓ ଦେୟ ଆୟକର ଓ ପ୍ରତ୍ୟେକ ଅଂଶଧାରୀଙ୍କର ପ୍ରାପ୍ୟ ନିଟ୍ ଲଭ୍ୟାଂଶ ଏହି ବହିରେ ଲିପିବଦ୍ଧ କରାଯାଏ ।

**(୫) ଋଣ ପତ୍ର ଆବେଦନ ଓ ଆବଣ୍ଟନ ବହି** ( Debenture Application and Allotment Book )—କୌଣସି କମ୍ପାନୀ ଜନସାଧାରଣଙ୍କୁ ଋଣପତ୍ର ବିକ୍ରୟ କଲେ ଏହାର ଆବେଦନ ଓ ଆବଣ୍ଟନ ସଂକ୍ରାନ୍ତ ସମସ୍ତ ତଥ୍ୟ ଏହି ବହିରେ ଲିପିବଦ୍ଧ କରାଯାଏ । ଏହି ବହି ଅଂଶ ଆବେଦନ ଓ ଆବଣ୍ଟନ ବହିର ଅନୁରୂପ ଅଟେ ।

**(୬) ଋଣପତ୍ର ଆହ୍ୱାନ ବହି** ( Debenture Call Book )—ଋଣପତ୍ରର ମୂଲ୍ୟ ଯଦି ଆଂଶିକ ରୂପେ ଆଦାୟ କରାଯାଇଥାଏ ତାହାହେଲେ କମ୍ପାନୀ ଋଣପତ୍ର ବାବଦ ଅବଶିଷ୍ଟ ଅର୍ଥ ସଂଗ୍ରହ କରିବା ପାଇଁ ଏକ ବା ଏକାଧିକ କିସ୍ତିରେ ଆହ୍ୱାନ ଜଣାଇ ପାରେ । ଏହି ଆହୂତ ଅର୍ଥ ଓ ଏହାର ପ୍ରାପ୍ତି ସଂକ୍ରାନ୍ତ ସମସ୍ତ ତଥ୍ୟ ଯେଉଁ ବହିରେ ଲିପିବଦ୍ଧ କରାଯାଏ, ତାହାକୁ ଋଣପତ୍ର ଆହ୍ୱାନ ବହି କୁହାଯାଏ । ଏହା ଅଂଶ ଆହ୍ୱାନ ବହିର ଅନୁରୂପ ଅଟେ ।

**(୭) ଋଣପତ୍ର ହସ୍ତାନ୍ତର ତାଲିକା ବହି** (Debenture Transfer Book )—କୌଣସି ଋଣପତ୍ରଧାରୀ ଅନ୍ୟ କାହାରିକୁ ଋଣପତ୍ର ହସ୍ତାନ୍ତର କରିବାକୁ ଇଚ୍ଛା କଲେ ସେ ଋଣପତ୍ର ଓ ସ୍ୱାକ୍ଷରିତ ଋଣପତ୍ର ହସ୍ତାନ୍ତର ଫର୍ମ କମ୍ପାନୀ ନିକଟକୁ ପ୍ରେରଣ କରନ୍ତି । ଏ ସଂକ୍ରାନ୍ତ ତଥ୍ୟ ଯେଉଁ ବହିରେ ଲିପିବଦ୍ଧ କରାଯାଏ ତାହାକୁ ଋଣପତ୍ର

ହସ୍ତାନ୍ତର ତାଲିକା ବହି କୁହାଯାଏ । ଅଂଶ ହସ୍ତାନ୍ତର ତାଲିକା ବହି ସଦୃଶ ଏହି ବହିଟି ଲେଖାଯାଏ ।

**(୮) ଋଣ ପତ୍ରର ସୁଧ ବହି** ( Debenture Interest Book ) ଋଣପତ୍ର ବାବଦ ଲଭ୍ୟାଂଶ ପରିବର୍ତ୍ତେ କମ୍ପାନୀକୁ ନିର୍ଦ୍ଦିଷ୍ଟ ହାରରେ ସୁଧ ଦେବାକୁ ହୁଏ । ଋଣପତ୍ରଧାରୀଙ୍କର ପ୍ରାପ୍ୟ ସୁଧ ସଂକ୍ରାନ୍ତ ଯାବତୀୟ ତଥ୍ୟ ଏହି ବହିରେ ଲିପିବଦ୍ଧ କରାଯାଏ । ଏହା ଅଂଶଧାରୀଙ୍କର ଲଭ୍ୟାଂଶ ବହି ସଦୃଶ ଲେଖାଯାଏ ।

**(୯) କାର୍ଯ୍ୟସୂଚୀ ବହି** ( Agenda Book )—କମ୍ପାନୀର ବିଭିନ୍ନ ସଭାର କାର୍ଯ୍ୟସୂଚୀ ଏହି ବହିରେ ଲିପିବଦ୍ଧ କରାଯାଏ ।

ଏହା ବ୍ୟତୀତ ଅନ୍ୟାନ୍ୟ କେତେକ ବହି, ଯେପରି (୧୦) ସିଲ୍ ମୋହର ପଡ଼ିଥିବା ଦଲିଲର ତାଲିକା ବହି, (୧୧) ଅଂଶ କ୍ଷମତା ସମର୍ଥନ ପତ୍ରର ତାଲିକା ବହି ( Share Warrant Register ), (୧୨) ଅଂଶ ପତ୍ର ତାଲିକା ବହି, (୧୩) କ୍ଷମତା ସମର୍ପଣର ତାଲିକା ବହି ( Register of Powers of Attorney) ମଧ୍ୟ ଆବଶ୍ୟକ ଅନୁଯାୟୀ କମ୍ପାନୀ ଖୋଲିପାରନ୍ତି ।

**କମ୍ପାନୀର ହିସାବ ବହି**—କମ୍ପାନୀ ଆଇନର ୨୦୯ ଧାରା ଅନୁଯାୟୀ ପ୍ରତି କମ୍ପାନୀକୁ ଏପରି ଭାବରେ ହିସାବ ରଖିବାକୁ ହୁଏ ଯେପରି ସେହି ସମସ୍ତ ବହିରେ (କ) ନଗଦ ଅର୍ଥର ପ୍ରାପ୍ତି ଓ ଖର୍ଚ୍ଚ ଲେଖା ହୁଏ, (ଖ) କ୍ରୟ ଓ ବିକ୍ରୟର ହିସାବ ଲେଖା ହୁଏ, (ଗ) ଯାବତୀୟ ଦାୟ ଓ ସମ୍ପତ୍ତିର ହିସାବ ଲେଖା ହୁଏ ଏବଂ (ଘ) ଉତ୍ପାଦନକାରୀ ବ୍ୟବସାୟରେ କଞ୍ଚାମାଲ, ମଜୁରୀ ଓ ଉତ୍ପାଦନ ଖର୍ଚ୍ଚର ହିସାବ ଲେଖା ହୁଏ । ଏହା ବ୍ୟତୀତ ପ୍ରତ୍ୟେକ କମ୍ପାନୀକୁ ଏହାର ଅଂଶ ସଂକ୍ରାନ୍ତ ଯାବତୀୟ ନେଣ ଦେଣର ହିସାବ ଲେଖିବା ବାଧ୍ୟତାମୂଳକ ଅଟେ । ଅଂଶ ସଂକ୍ରାନ୍ତ ନେଣ ଦେଣର ହିସାବରକ୍ଷଣ ପଦ୍ଧତି ନିମ୍ନରେ ଆଲୋଚିତ ହେଲା ।

**ଅଂଶ ପ୍ରବର୍ତ୍ତନ** (Issue of Shares) ଜନସାଧାରଣଙ୍କୁ କମ୍ପାନୀ ଯେଉଁ ସମସ୍ତ ଅଂଶ ବିକ୍ରୟ କରେ କମ୍ପାନୀ ସେହି ଅଂଶର ପୂର୍ଣ୍ଣ ମୂଲ୍ୟ କ୍ୱଚିତ୍ ଏକକାଳୀନ ଆଦାୟ କରେ । ସାଧାରଣତଃ ଏହି ଅଂଶଗୁଡ଼ିକର ମୂଲ୍ୟ ବିଭିନ୍ନ କିସ୍ତିରେ କମ୍ପାନୀ ଆଦାୟ କରେ । ଏହି କିସ୍ତିଗୁଡ଼ିକର ନାମ ଆବେଦନ, ଆବଣ୍ଟନ, ପ୍ରଥମ ଆହ୍ୱାନ, ଦ୍ୱିତୀୟ ଆହ୍ୱାନ ଓ ସର୍ବଶେଷ କିସ୍ତିକୁ ଶେଷ ଆହ୍ୱାନ କୁହାଯାଏ ।

**ଆବେଦନ**—କମ୍ପାନୀର ଅଂଶ କ୍ରୟ କରିବା ନିମନ୍ତେ କୌଣସି ବ୍ୟକ୍ତି ଆବେଦନ କରିବା ସମୟରେ କମ୍ପାନୀର ନିର୍ଦ୍ଦେଶ ଅନୁଯାୟୀ ଅଂଶର ମୋଟ ମୂଲ୍ୟର ଶତକଡ଼ା ୫ ରୁ ଊଣା ହୋଇପାରିବ ନାହିଁ । ଏହି ଅର୍ଥ ମିଳିଲେ କମ୍ପାନୀ ନିମ୍ନଲିଖିତ ରୂପେ ଏହାର ହିସାବ ରଖେ :

| | | |
|---|---|---|
| ନଗଦ ଓହ୍ବଲ/ବ୍ୟାଙ୍କ୍ ହିସାବ ଦାୟୀ<br>ଅଂଶ ଆବେଦନ ହିସାବ ବାବଦ<br>( ଅଂଶ ପ୍ରତି···ଟଙ୍କା ହାରରେ<br>···ସଂଖ୍ୟକ ଅଂଶ ବାବଦ<br>ଆବେଦନ ଅର୍ଥ ମିଳିଲା ) | } | ଆବେଦନ ପତ୍ର ସହିତ ମିଳିଥିବା ଅର୍ଥ ସକାଶେ |

**ଅବଣ୍ଟନ**—ଜନସାଧାରଣଙ୍କଠାରୁ ମିଳିଥିବା ଏହି ସମସ୍ତ ଆବେଦନ ପତ୍ର ନିର୍ଦ୍ଦେଶକମଣ୍ଡଳୀଙ୍କର ସଭାରେ ବିଚାର କରାଯାଏ । ଯେଉଁ ଆବେଦନକାରୀଙ୍କ ଆବେଦନ ମଞ୍ଜୁର ହୁଏ ସେମାନେ କମ୍ପାନୀର ଅଂଶଧାରୀ ରୂପେ ପରିଗଣିତ ହୁଅନ୍ତି । କମ୍ପାନୀ ଏହି ଅଂଶଧାରୀମାନଙ୍କୁ କେତେ ସଂଖ୍ୟକ ଅଂଶ କ୍ରୟ କରିବା ପାଇଁ ମଞ୍ଜୁର କରାଗଲା ତାହା ଗୋଟିଏ ପତ୍ରରେ ଜଣାଇଦିଏ ଏବଂ ଅଂଶର ମୂଲ୍ୟ ବାବଦ ଦ୍ୱିତୀୟ କିସ୍ତିରେ କେତେ ଅର୍ଥ କେତେ ତାରିଖ ସୁଦ୍ଧା ଦେବାକୁ ହେବ ତାହା ଜଣାଇଦିଏ । ଏହି ପତ୍ରକୁ ଆବଣ୍ଟନ ପତ୍ର ଓ ଦ୍ୱିତୀୟ କିସ୍ତିର ଅର୍ଥକୁ ଆବଣ୍ଟନ ଅର୍ଥ କୁହାଯାଏ । ଏଠାରେ ସ୍ମରଣ କରାଇ ଦିଆଯାଇ-ପାରେ ଯେ ନ୍ୟୂନତମ ପୁଞ୍ଜି ( Minimum Subscription ) ଆଦାୟ ନ ହେବା ପର୍ଯ୍ୟନ୍ତ ନିର୍ଦ୍ଦେଶକମଣ୍ଡଳୀ ଅଂଶ ଆବଣ୍ଟନ କରିପାରନ୍ତି ନାହିଁ ।

ଅଂଶ ଆବଣ୍ଟନ ସଂକ୍ରାନ୍ତ ପ୍ରସ୍ତାବ ନିର୍ଦ୍ଦେଶକମଣ୍ଡଳୀଙ୍କର ସଭାରେ ଗୃହୀତ ହେବା ପରେ ହିସାବରକ୍ଷକଙ୍କୁ ଏକକାଳୀନ ହିସାବ ବହିରେ ଦୁଇଟି ପ୍ରବିଷ୍ଟି କରିବାକୁ ହୁଏ; ଯଥା—

| | | | |
|---|---|---|---|
| (୧) | ଅଂଶ ଆବେଦନ ହିସାବ ଦାୟୀ<br>ଅଂଶ ମୂଳଧନ ହିସାବ ବାବଦ | } | ଯେଉଁ ସମସ୍ତ ଆବେଦନକାରୀଙ୍କ ଆବେଦନ ମଞ୍ଜୁର ହୋଇଛି ତାଙ୍କର ଆବେଦନ ଅର୍ଥ ସକାଶେ |

( ଅଂଶ ପ୍ରତି ··· ଟଙ୍କା ହାରରେ
··· ସଂଖ୍ୟକ ଅଂଶ ବାବଦ
ଆବେଦନ ଅର୍ଥ ନିର୍ଦ୍ଦେଶକମଣ୍ଡଳୀଙ୍କର
ଅଂଶ ମୂଳଧନ ହିସାବକୁ ସ୍ଥାନାନ୍ତରିତ ହେଲା )

(୨) ନିର୍ଦ୍ଦେଶକମଣ୍ଡଳୀ ଅଂଶ ଆବଣ୍ଟନ କରିବା ସଙ୍ଗେ ସଙ୍ଗେ ହିସାବରକ୍ଷକଙ୍କୁ ନିମ୍ନଲିଖିତ ଜାବେଦା ଲେଖିବାକୁ ହୁଏ । ଏହା ଆବଣ୍ଟନ ଅର୍ଥ ପାଇବା ପୂର୍ବରୁ ଲେଖାଯିବା ଆବଶ୍ୟକ ।

ଅଂଶ ଆବଣ୍ଟନ ହିସାବ ଦାୟୀ
ଅଂଶ ମୂଳଧନ ହିସାବ ବାବଦ
( ଅଂଶ ପ୍ରତି.. ଟଙ୍କା ହାରରେ...
ସଂଖ୍ୟକ ଅଂଶ ବାବଦ ଆବଣ୍ଟନ
ଅର୍ଥ ନିର୍ଦ୍ଦେଶକମଣ୍ଡଳୀଙ୍କର...
ତାରିଖର ପ୍ରସ୍ତାବ ଅନୁଯାୟୀ
ଅଂଶଧାରୀମାନଙ୍କଠାରୁ ପ୍ରାପ୍ୟ ହେଲା )

ଏହାପରେ ଅଂଶଧାରୀମାନଙ୍କଠାରୁ ଆବଣ୍ଟନ ଅର୍ଥ ମିଳିଲା ପରେ ନିମ୍ନଲିଖିତ ପ୍ରବିଷ୍ଟି କରାଯିବ :

ନଗଦ ତହବିଲ/ବ୍ୟାଙ୍କ୍ ହିସାବ ଦାୟୀ
ଅଂଶ ଆବଣ୍ଟନ ହିସାବ ବାବଦ
( ... ସଂଖ୍ୟକ ଅଂଶ ବାବଦ
ଆବଣ୍ଟନ ଅର୍ଥ ମିଳିଲା )

ଯେଉଁ ଆବେଦନକାରୀଙ୍କ ଆବେଦନ ନାମଞ୍ଜୁର କରାହୁଏ କମ୍ପାନୀକୁ ସେମାନେ ଦେଇଥିବା ଆବେଦନ ଅର୍ଥକୁ ଫେରସ୍ତ ଦେବାକୁ ହୁଏ । ସେଥି ନିମନ୍ତେ ନିମ୍ନଲିଖିତ ପ୍ରବିଷ୍ଟି ଆବଶ୍ୟକ ।

ଅଂଶ ଆବେଦନ ହିସାବ ଦାୟୀ
ନଗଦ ତହବିଲ/ବ୍ୟାଙ୍କ୍ ହିସାବ ବାବଦ
( ଅଂଶ ପ୍ରତି...ଟଙ୍କା ହାରରେ ...
ସଂଖ୍ୟକ ଅଂଶ ବାବଦ ଆବେଦନ
ଅର୍ଥ ନିର୍ଦ୍ଦେଶକମଣ୍ଡଳୀଙ୍କର...
ତାରିଖର ପ୍ରସ୍ତାବ ଅନୁଯାୟୀ
ଫେରସ୍ତ ଦିଆଗଲା )

ଯେଉଁ ଆବେଦନକାରୀଙ୍କର ଆବେଦନ ଆଂଶିକ ରୂପେ ମଞ୍ଜୁର ହୁଏ ସେମାନଙ୍କର ବଳକା ଆବେଦନ ଅର୍ଥ ଅଂଶ ଆବଣ୍ଟନ ହିସାବକୁ ସ୍ଥାନାନ୍ତରିତ ହୁଏ ।

ଅଂଶ ଆବେଦନ ହିସାବ ଦାୟୀ
ଅଂଶ ଆବଣ୍ଟନ ହିସାବ ବାବଦ
(ଅଂଶ ପ୍ରତି...ଟଙ୍କା ହାରରେ
ମଞ୍ଜୁର ନ ହୋଇଥିବା...ସଂଖ୍ୟକ
ଆବେଦନର ଆବେଦନ ଅର୍ଥ
ନିର୍ଦ୍ଦେଶକମଣ୍ଡଳୀଙ୍କର...ତାରିଖର
ପ୍ରସ୍ତାବକ୍ରମେ ଅଂଶ ଆବଣ୍ଟନ ହିସାବକୁ
ସ୍ଥାନାନ୍ତରିତ ହେଲା)

**ଆହ୍ୱାନ**—ପୂର୍ବରୁ କୁହାଯାଇଛି ଯେ ଆବେଦନ ଓ ଆବଣ୍ଟନ ବ୍ୟତୀତ ଅଂଶର ଅବଶିଷ୍ଟ ମୂଲ୍ୟ ଯେଉଁ କିସ୍ତିଗୁଡ଼ିକରେ ଆଦାୟ ହୁଏ ତାହାକୁ ଆହ୍ୱାନ କୁହାଯାଏ । କେତେଗୋଟି କିସ୍ତିରେ ଓ ପ୍ରତି କିସ୍ତିରେ କେତେ ଟଙ୍କା ଆଦାୟ କରାଯିବ ତାହା ପରିମେଳ ନିୟମାବଳୀରେ ଲିପିବଦ୍ଧ କରାଯାଇଥାଏ । ଯଦି ତାହା କରାଯାଇ ନ ଥାଏ, ତାହାହେଲେ ନିର୍ଦ୍ଦେଶକମଣ୍ଡଳୀ ତାହା ସ୍ଥିର କରନ୍ତି । ଏଠାରେ ସ୍ମରଣ ରଖିବାକୁ ହେବ ଯେ ନିର୍ଦ୍ଦେଶକମଣ୍ଡଳୀ ଏପରି କରିବା ସମୟରେ କମ୍ପାନୀ ଆଇନର ନିମ୍ନଲିଖିତ ବିଧାନ ପ୍ରତି ଦୃଷ୍ଟି ଦେବେ :

(କ) ପୂର୍ବବର୍ତ୍ତୀ କୌଣସି ଆହ୍ୱାନର ତାରିଖଠାରୁ ଏକ ମାସ ସମୟ ଅତିବାହିତ ନ ହେବା ପର୍ଯ୍ୟନ୍ତ ଏହାର ପରବର୍ତ୍ତୀ ଆହ୍ୱାନ ବାବଦ ଟଙ୍କା ପରିଶୋଧ କରିବା ପାଇଁ କମ୍ପାନୀ ଅଂଶଧାରୀମାନଙ୍କୁ ନିର୍ଦ୍ଦେଶ ଦେଇପାରିବ ନାହିଁ ।

(ଖ) କୌଣସି ଆହ୍ୱାନ ଅର୍ଥ ଅଂଶର ଅଙ୍କିତ ମୂଲ୍ୟର ଏକ-ଚତୁର୍ଥାଂଶଠାରୁ ଅଧିକ ହୋଇପାରିବ ନାହିଁ ।

ପ୍ରଥମ ଆହ୍ୱାନ ଅର୍ଥ ଦେବା ପାଇଁ ନିର୍ଦ୍ଦେଶକମଣ୍ଡଳୀ ପ୍ରସ୍ତାବ ଗ୍ରହଣ କରିବା ସଙ୍ଗେ ସଙ୍ଗେ ହିସାବରକ୍ଷକ ନିମ୍ନଲିଖିତ ଜାବଦା ଲେଖିବେ :

ଅଂଶ ପ୍ରଥମ ଆହ୍ୱାନ ହିସାବ ଦାୟୀ
ଅଂଶ ମୂଳଧନ ହିସାବ ବାବଦ

(ଅଂଶ ପ୍ରତି...ଟଙ୍କା ହାରରେ...ସଂଖ୍ୟକ ଅଂଶର ପ୍ରଥମ ଆହ୍ୱାନ ଅର୍ଥ ନିର୍ଦ୍ଦେଶକମଣ୍ଡଳୀଙ୍କର...ତାରିଖର ପ୍ରସ୍ତାବକ୍ରମେ ଅଂଶଧାରୀଙ୍କଠାରୁ ପ୍ରାପ୍ୟ ହେଲା)

ପ୍ରଥମ ଆହ୍ୱାନ ଅର୍ଥ ମିଳିଲା ପରେ ନିମ୍ନଲିଖିତ ପ୍ରବିଷ୍ଟି ଆବଶ୍ୟକ :

ନଗଦ ତହବିଲ/ବ୍ୟାଙ୍କ ହିସାବ ଦାୟୀ
ଅଂଶ ପ୍ରଥମ ଆହ୍ୱାନ ହିସାବ ବାବଦ

(ଅଂଶ ପ୍ରତି...ଟଙ୍କା ହାରରେ...ସଂଖ୍ୟକ ଅଂଶର ପ୍ରଥମ ଆହ୍ୱାନ ଅର୍ଥ ମିଳିଲା)

କେତେକ କ୍ଷେତ୍ରରେ ଅଂଶଧାରୀ ଭବିଷ୍ୟତରେ ଆହ୍ୱାନ ବାବଦ ଅର୍ଥ ଦେବା ଦାୟିତ୍ୱରୁ ମୁକ୍ତ ପାଇବା ପାଇଁ ଆହ୍ୱାନ ଅର୍ଥ ଅଗ୍ରିମ ପ୍ରଦାନ କରନ୍ତି । ସେପରି କ୍ଷେତ୍ରରେ ପ୍ରାପ୍ତ ଅର୍ଥ ସକାଶେ ନଗଦ ତହବିଲ ଅଥବା ବ୍ୟାଙ୍କ ହିସାବକୁ ଦାୟୀ କରାଯାଇ ଅଗ୍ରିମ ପ୍ରାପ୍ତ ଆହ୍ୱାନ ହିସାବକୁ ଦାତା କରାଯିବ । ଯେତେ ଦିନ ପର୍ଯ୍ୟନ୍ତ ଆହ୍ୱାନ ଦିଆଯାଇ ନ ଥାଏ ସେତେ ଦିନ ପର୍ଯ୍ୟନ୍ତ ଏହି ଅଗ୍ରିମ ପ୍ରାପ୍ତ ଆହ୍ୱାନ ହିସାବ ଉଦ୍ୱର୍ତ୍ତ ପତ୍ରର ମୂଳଧନ ଓ ଦାୟ ପାର୍ଶ୍ୱରେ ଅନ୍ତର୍ଭୁକ୍ତ ହେବ । ଯଦି ପରିମେଳ ନିୟମାବଳୀରେ ସେଭଳି ବିଧାନ ଥାଏ ତାହାହେଲେ ଏହି ଅଗ୍ରିମପ୍ରାପ୍ତ ଆହ୍ୱାନ ଅର୍ଥ ଉପରେ ଶତକଡ଼ା ୬ ହାରରେ ସୁଧ ଦିଆଯାଇପାରେ । ଯେତେବେଳେ ଆହ୍ୱାନ ଅର୍ଥ ତଲବ କରାଯାଏ

ସେତେବେଳେ ଏହି ହିସାବକୁ ଦାୟୀ କରି ଅଂଶ ଆହ୍ୱାନ ହିସାବକୁ ଜମା କରାଯିବ ।

କେତେକ ସମୟରେ କେତେକ ବ୍ୟକ୍ତି ଯେତେ ସଂଖ୍ୟକ ଅଂଶ କ୍ରୟ କରିବେ ବୋଲି ଆବେଦନ ଅର୍ଥ ପ୍ରଦାନ କରିଥାଆନ୍ତି ତାଙ୍କୁ ତାହା ତୁଳନାରେ ଯଥେଷ୍ଟ ଅଳ୍ପ ସଂଖ୍ୟାର ଅଂଶ ଆବଣ୍ଟନ କରାଯାଏ । ସେପରି କ୍ଷେତ୍ରରେ ସେମାନଙ୍କର ବଳକା ଟଙ୍କା ପ୍ରଥମେ ଆବଣ୍ଟନ ହିସାବରେ ସମାଯୋଜିତ ହୁଏ । ତାହାପରେ ମଧ୍ୟ ଯଦି କିଛି ବଳକା ଥାଏ ତାହାହେଲେ ତାହା ଅଗ୍ରିମ ପ୍ରାପ୍ତ ଆହ୍ୱାନ ହିସାବକୁ ସ୍ଥାନାନ୍ତରିତ କରାଯାଏ । ସେଥିପାଇଁ ନିମ୍ନଲିଖିତ ଜାବଦା ଲେଖାଯାଏ ।

ଅଂଶ ଆବେଦନ ହିସାବ ଦାୟୀ
ଅଗ୍ରିମ ପ୍ରାପ୍ତ ଆହ୍ୱାନ ହିସାବ ବାବଦ
(ଆବେଦନ ସହିତ ପ୍ରାପ୍ତ ଅର୍ଥରୁ ଆବେଦନ ଓ ଆବଣ୍ଟନ
ବାବଦ ଆବଶ୍ୟକ ଅର୍ଥ ବାଦ ଦିଆଯାଇ ଅବଶିଷ୍ଟ ଅର୍ଥ
ଅଗ୍ରିମ ପ୍ରାପ୍ତ ଆହ୍ୱାନ ହିସାବକୁ ସ୍ଥାନାନ୍ତରିତ
କରାଗଲା)

ଅଂଶ ପ୍ରଚଳନ ସମ୍ବନ୍ଧୀୟ ହିସାବରକ୍ଷଣ ପ୍ରଣାଳୀର କେତେକ ଦୃଷ୍ଟାନ୍ତ ନିମ୍ନରେ ପ୍ରଦତ୍ତ ହେଲା ।

ଦୃଷ୍ଟାନ୍ତ (୧)

କଳ୍ପତରୁ କମ୍ପାନୀ ଲିମିଟେଡ୍‌ର ପ୍ରାଧିକୃତ ମୂଳଧନର ପରିମାଣ ଟ ୧,୦୦,୦୦୦ ଥିଲା ଓ ଏହା ଟ ୧୦ ବିଶିଷ୍ଟ ୧୦,୦୦୦ ସାଧାରଣ ଅଂଶରେ ବିଭକ୍ତ ହୋଇଥିଲା । କମ୍ପାନୀ ସବୁଗୁଡ଼ିକ ଅଂଶ ପ୍ରଚଳିତ କରିଥିଲା ଏବଂ ପ୍ରତି ଅଂଶର ମୂଲ୍ୟ ନିମ୍ନଲିଖିତମତେ ଦେବା ପାଇଁ ଧାର୍ଯ୍ୟ ହୋଇଥିଲା :

| | |
|---|---|
| ଆବେଦନ ସହିତ | ଟ ୨ |
| ଆବଣ୍ଟନ ପରେ | ଟ ୩ |
| ପ୍ରଥମ ଆହ୍ୱାନ ବେଳେ | ଟ ୨ |
| ସର୍ବଶେଷ ଆହ୍ୱାନ ବେଳେ | ଟ ୩ |

ଜନସାଧାରଣ ସବୁଗୁଡ଼ିକ ଅଂଶ କ୍ରୟ କରିଥିଲେ ଏବଂ କମ୍ପାନୀ ସବୁ ଅଂଶ ବାବଦ ଅର୍ଥ ଉପରୋକ୍ତ କିସ୍ତିମତେ ପାଇଥିଲା । କମ୍ପାନୀର ହିସାବ ବହିରେ ଉପରୋକ୍ତ ନେଣଦେଣ ପ୍ରକାଶେ ଆବଶ୍ୟକ ଜାବଦା ଓ ଖତିୟାନ ହିସାବ ପ୍ରସ୍ତୁତ କର ଓ କମ୍ପାନୀର ଉଦ୍‌ବୃତ୍ତି ପତ୍ର ଦର୍ଶାଅ ।

## ସମାଧାନ

କଲ୍ପତରୁ କମ୍ପାନୀ ଲିମିଟେଡ୍

| | ଜାବ୍‌ଦା | ଦାୟୀ<br>ଟଙ୍କା | ଦାତା<br>ଟଙ୍କା |
|---|---|---|---|
| (୧) | ବ୍ୟାଙ୍କ୍ ହିସାବ ଦାୟୀ<br>ଅଂଶ ଆବେଦନ ହିସାବ ବାବଦ<br>(ଅଂଶ ପ୍ରତି ଟ ୨ ହାରରେ ୧୦,୦୦୦ ଅଂଶର ଆବେଦନ ଅର୍ଥ ମିଳିଲା) | ୨୦,୦୦୦ | ୨୦,୦୦୦ |
| (୨) | ଅଂଶ ଆବେଦନ ହିସାବ ଦାୟୀ<br>ଅଂଶ ମୂଳଧନ ହିସାବ ବାବଦ<br>(ଅଂଶ ପ୍ରତି ଟ ୨ ହାରରେ ୧୦,୦୦୦ ଅଂଶର ଆବେଦନ ଅର୍ଥ ନିର୍ଦ୍ଦେଶକମଣ୍ଡଳୀଙ୍କର · ତାରିଖର ପ୍ରସ୍ତାବକ୍ରମେ ଅଂଶ ମୂଳଧନ ହିସାବକୁ ସ୍ଥାନାନ୍ତରିତ ହେଲା) | ୨୦,୦୦୦ | ୨୦,୦୦୦ |
| (୩) | ଅଂଶ ଆବଣ୍ଟନ ହିସାବ ଦାୟୀ<br>ଅଂଶ ମୂଳଧନ ହିସାବ ବାବଦ<br>(ନିର୍ଦ୍ଦେଶକମଣ୍ଡଳୀଙ୍କର···ତାରିଖର ପ୍ରସ୍ତାବକ୍ରମେ ଅଂଶ ପ୍ରତି ଟ ୩ ହାରରେ ୧୦,୦୦୦ ଅଂଶ ବାବଦ ଟଙ୍କା ପ୍ରାପ୍ୟ ହେଲା) | ୩୦,୦୦୦ | ୩୦,୦୦୦ |
| (୪) | ବ୍ୟାଙ୍କ ହିସାବ ଦାୟୀ<br>ଅଂଶ ଆବଣ୍ଟନ ହିସାବ ବାବଦ<br>(ଅଂଶ ପ୍ରତି ଟ ୩ ହାରରେ ୧୦,୦୦୦ ଅଂଶର ଆବଣ୍ଟନ ଅର୍ଥ ମିଳିଲା) | ୩୦,୦୦୦ | ୩୦,୦୦୦ |
| (୫) | ଅଂଶ ପ୍ରଥମ ଆହ୍ୱାନ ହିସାବ ଦାୟୀ<br>ଅଂଶ ମୂଳଧନ ହିସାବ ବାବଦ<br>(ନିର୍ଦ୍ଦେଶକମଣ୍ଡଳୀଙ୍କର...ତାରିଖର ପ୍ରସ୍ତାବକ୍ରମେ ଅଂଶ ପ୍ରତି ଟ ୨ ହାରରେ ୧୦,୦୦୦ ଅଂଶ ବାବଦ ପ୍ରଥମ ଆହ୍ୱାନ ଅର୍ଥ ପ୍ରାପ୍ୟ ହେଲା) | ୨୦,୦୦୦ | ୨୦,୦୦୦ |

| | | ଦାୟୀ | ଦାତା |
|---|---|---|---|
| | | ଟଙ୍କା | ଟଙ୍କା |
| (୬) | ବ୍ୟାଙ୍କ୍ ହିସାବ ଦାୟୀ<br>ଅଂଶ ପ୍ରଥମ ଆହ୍ୱାନ ହିସାବ ବାବଦ<br>( ଅଂଶ ପ୍ରତି ଟ ୨ ହାରରେ ୧୦,୦୦୦ ଅଂଶର ପ୍ରଥମ ଆହ୍ୱାନ ଅର୍ଥ ମିଳିଲା ) | ୨୦,୦୦୦ | ୨୦,୦୦୦ |
| (୭) | ଅଂଶ ସର୍ବଶେଷ ଆହ୍ୱାନ ହିସାବ ଦାୟୀ<br>ଅଂଶ ମୂଳଧନ ହିସାବ ବାବଦ<br>( ନର୍ଦ୍ଦେଶକମଣ୍ଡଳୀଙ୍କର...ତାରିଖର ପ୍ରସ୍ତାବକ୍ରମେ ଅଂଶ ପ୍ରତି ଟ ୩ ହାରରେ ୧୦,୦୦୦ ଅଂଶ ବାବଦ ସର୍ବଶେଷ ଆହ୍ୱାନ ଅର୍ଥ ପ୍ରାପ୍ୟ ହେଲା ) | ୩୦,୦୦୦ | ୩୦,୦୦୦ |
| (୮) | ବ୍ୟାଙ୍କ୍ ହିସାବ ଦାୟୀ<br>ଅଂଶ ସର୍ବଶେଷ ଆହ୍ୱାନ ହିସାବ ବାବଦ<br>( ଅଂଶ ପ୍ରତି ଟ ୩ ହାରରେ ୧୦,୦୦୦ ଅଂଶ ବାବଦ ସର୍ବଶେଷ ଆହ୍ୱାନ ଅର୍ଥ ମିଳିଲା ) | ୩୦,୦୦୦ | ୩୦,୦୦୦ |

## ଖତିୟାନ

ଦାୟୀ — ବ୍ୟାଙ୍କ୍ ହିସାବ — ଦାତା

| | ଟଙ୍କା | | ଟଙ୍କା |
|---|---|---|---|
| ଅଂଶ ଆବେଦନ ହି: ବାବଦ | ୨୦,୦୦୦ | ବାକି ଗଡ଼ିଲା | ୧,୦୦,୦୦୦ |
| ଅଂଶ ଆବଣ୍ଟନ ହି: ବାବଦ | ୩୦,୦୦୦ | | |
| ଅଂଶ ପ୍ରଥମ ଆହ୍ୱାନ ହି : | ୨୦,୦୦୦ | | |
| ଅଂଶ ସର୍ବଶେଷ ଆହ୍ୱାନ ହି : | ୩୦,୦୦୦ | | |
| | ୧,୦୦,୦୦୦ | | ୧,୦୦,୦୦୦ |
| ପୂର୍ବ ବାକି ବାବଦ | ୧,୦୦,୦୦୦ | | |

| ଦାୟୀ | ଅଂଶ ମୂଳଧନ ହିସାବ | | ଦାତା |
|---|---|---|---|
| | ଟଙ୍କା | | ଟଙ୍କା |
| ବାକି ଗଡ଼ିଲ | ୧,୦୦,୦୦୦ | ଅଂଶ ଆବେଦନ ହି : ବାବଦ | ୨୦,୦୦୦ |
| | | ଅଂଶ ଆବଣ୍ଟନ ହି : ,, | ୩୦,୦୦୦ |
| | | ଅଂଶ ପ୍ରଥମ ଆହ୍ୱାନ ହି:,, | ୨୦,୦୦୦ |
| | | ଅଂଶ ସର୍ବଶେଷ ଆହ୍ୱାନ ହି: | ୩୦,୦୦୦ |
| | ୧,୦୦,୦୦୦ | | ୧,୦୦,୦୦୦ |
| | | ପୂର୍ବ ବାକି ବାବଦ | ୧,୦୦,୦୦୦ |

| ଦାୟୀ | ଅଂଶ ଆବେଦନ ହିସାବ | | ଦାତା |
|---|---|---|---|
| | ଟଙ୍କା | | ଟଙ୍କା |
| ଅଂଶ ମୂଳଧନ ହିସାବ ବାବଦ | ୨୦,୦୦୦ | ବ୍ୟାଙ୍କ୍ ହିସାବ ବାବଦ | ୨୦,୦୦୦ |

| ଦାୟୀ | ଅଂଶ ଆବଣ୍ଟନ ହିସାବ | | ଦାତା |
|---|---|---|---|
| | ଟଙ୍କା | | ଟଙ୍କା |
| ଅଂଶ ମୂଳଧନ ହିସାବ ବାବଦ | ୩୦,୦୦୦ | ବ୍ୟାଙ୍କ୍ ହିସାବ ବାବଦ | ୩୦,୦୦୦ |

| ଦାୟୀ | ଅଂଶ ପ୍ରଥମ ଆହ୍ୱାନ ହିସାବ | | ଦାତା |
|---|---|---|---|
| | ଟଙ୍କା | | ଟଙ୍କା |
| ଅଂଶ ମୂଳଧନ ହିସାବ ବାବଦ | ୨୦,୦୦୦ | ବ୍ୟାଙ୍କ୍ ହିସାବ ବାବଦ | ୨୦,୦୦୦ |

| ଦାୟୀ | ଅଂଶ ସର୍ବଶେଷ ଆହ୍ୱାନ ହିସାବ | | ଦାତା |
|---|---|---|---|
| | ଟଙ୍କା | | ଟଙ୍କା |
| ଅଂଶ ମୂଳଧନ ହିସାବ ବାବଦ | ୩୦,୦୦୦ | ବ୍ୟାଙ୍କ୍ ହିସାବ ବାବଦ | ୩୦,୦୦୦ |

## କଳ୍ପତରୁ କମ୍ପାନୀ ଲିମିଟେଡ୍

### ୧୯...ମସିହା...ତାରିଖର ଉଦ୍ବର୍ତ୍ତ ପତ୍ର

| ଦାୟ | ଟଙ୍କା | ପରିସମ୍ପତ୍ତି | ଟଙ୍କା |
|---|---|---|---|
| ପ୍ରାଧିକୃତ ମୂଳଧନ : | | ଚଳନ୍ତି ପରିସମ୍ପତ୍ତି | |
| ଅଂଶ ପ୍ରତି ଟ ୧୦ ହାରରେ | | ବ୍ୟାଙ୍କ୍‌ରେ ଗଚ୍ଛିତ ତହବିଲ | ୧,୦୦,୦୦୦ |
| ୧୦,୦୦୦ ସାଧାରଣ ଅଂଶ | ୧,୦୦,୦୦୦ | | |
| ପ୍ରଚଳିତ ଓ କ୍ରୀତ ମୂଳଧନ : | | | |
| ଅଂଶ ପ୍ରତି ଟ ୧୦ ହାରରେ | | | |
| ୧୦,୦୦୦ ସାଧାରଣ ଅଂଶ | | | |
| — ପୂର୍ଣ୍ଣ ପ୍ରଦତ୍ତ | ୧,୦୦,୦୦୦ | | |
| | ୧,୦୦,୦୦୦ | | ୧,୦୦,୦୦୦ |

ମନ୍ତବ୍ୟ :—ଏହି ଦୃଷ୍ଟାନ୍ତରେ ବିଭିନ୍ନ କିସ୍ତିରେ ମିଳିଥିବା ଅଂଶର ମୂଲ୍ୟକୁ ଜାବଦା ଆକାରରେ ଦର୍ଶାଯାଇଛି; କିନ୍ତୁ ପ୍ରକୃତ ବ୍ୟାବହାରିକ କ୍ଷେତ୍ରରେ ନିମ୍ନୋକ୍ତ ଜାବଦାଗୁଡ଼ିକ ପ୍ରକାଶିତ ନ ହୋଇ ରେକଡ଼ ବହିର ବ୍ୟାଙ୍କ୍ କକ୍ଷରେ ଲିପିବଦ୍ଧ କରାଯାଏ । ସେପରି କରାଗଲେ କେବଳ (୧), (୪), (୭) ଓ (୮) ନମ୍ବର ଜାବ୍‌ଦା ରେକଡ଼ ବହିରେ ଲିପିବଦ୍ଧ କରାଯିବ ।

### ଦୃଷ୍ଟାନ୍ତ (୨)

ଶୁଭ୍ରା କମ୍ପାନୀ ଲିମିଟେଡ୍‌ର ପ୍ରାଧିକୃତ ମୂଳଧନର ପରିମାଣ ଟ ୩୦,୦୦୦ ଥିଲା ଓ ଏହା ଅଂଶ ପ୍ରତି ଟ ୧୦ ହାରରେ ୩,୦୦୦ ସାଧାରଣ ଅଂଶରେ ବିଭକ୍ତ ହୋଇଥିଲା । କମ୍ପାନୀ ଟ ୨୦,୦୦୦ ମୂଲ୍ୟର ଅଂଶ ପ୍ରଚଳିତ କରିଥିଲେ । ଅଂଶର ମୂଲ୍ୟ ନିମ୍ନ ପ୍ରକାରରେ ଦେୟ ଥିଲା :

| | |
|---|---|
| ଆବେଦନ ସହିତ | ଟ ୨ |
| ଆବଣ୍ଟନ ବେଳେ | ଟ ୨ |
| ପ୍ରଥମ ଅଂଶ ଆହ୍ୱାନ ବେଳେ | ଟ ୩ |
| ସର୍ବଶେଷ ଅଂଶ ଆହ୍ୱାନ ବେଳେ | ଟ ୩ |

କମ୍ପାନୀ ଅଂଶ ବିକ୍ରୟ କରିବା ପାଇଁ ବିଜ୍ଞପ୍ତି ଦେଲେ । ଜନସାଧାରଣ ୨,୫୦୦ ଅଂଶ ସକାଶେ ଆବେଦନ କରିଥିଲେ । କମ୍ପାନୀ ୨,୦୦୦ ଅଂଶ ଆବଣ୍ଟନ କରିଥିଲେ ଏ

ଦଳକା ୫୦୦ ଅଂଶର ଆବେଦନକାରୀଙ୍କୁ କୌଣସି ଅଂଶ ଆବଣ୍ଟନ କରାଯାଇ ପାରିଲା ନାହିଁ ବୋଲି ଆକ୍ଷେପ କରି ପତ୍ର ଦିଆଗଲା ଓ ସେମାନଙ୍କର ଆବେଦନ ଅର୍ଥ ଫେରସ୍ତ ଦିଆଗଲା । ଆବଣ୍ଟନ ଅର୍ଥସବୁ ଅଂଶଧାରୀମାନଙ୍କଠାରୁ ଯଥା ସମୟରେ ମିଳିଲା । ଅବଶିଷ୍ଟ ଅର୍ଥ ସକାଶେ କମ୍ପାନୀ ପରେ ଆହ୍ୱାନ ଦେବେ ବୋଲି ନିଷ୍ପତ୍ତି ନେଇଥିଲେ ।

ଉପରୋକ୍ତ ନେଣ ଦେଣଗୁଡ଼ିକ ସକାଶେ ଜାବଦା, ରୋକଡ଼ ବହି, ଖତିୟାନ ଓ ଉଦ୍‌ବୃତ୍ତ ପତ୍ର ପ୍ରସ୍ତୁତ କର ।

## ସମାଧାନ

ରୋଜନାମା

| | ଦାୟୀ | ଦାତା |
|---|---|---|
| | ଟଙ୍କା | ଟଙ୍କା |
| ଅଂଶ ଆବେଦନ ହିସାବ ଦାୟୀ | ୪,୦୦୦ | |
| ଅଂଶ ମୂଳଧନ ହିସାବ ବାବଦ | | ୪,୦୦୦ |
| (ଅଂଶ ପ୍ରତି ଟ ୨ ହାରରେ ୨,୦୦୦ ଅଂଶ ବାବଦ ଆବେଦନ ଅର୍ଥ ଅଂଶ ମୂଳଧନ ହିସାବକୁ ନିର୍ଦ୍ଦେଶକ-ମଣ୍ଡଳୀଙ୍କର...ର ପ୍ରସ୍ତାବ ଅନୁଯାୟୀ ସ୍ଥାନାନ୍ତରିତ ହେଲା ) | | |
| ଅଂଶ ଆବଣ୍ଟନ ହିସାବ ଦାୟୀ | ୪,୦୦୦ | |
| ଅଂଶ ମୂଳଧନ ହିସାବ ବାବଦ | | ୪,୦୦୦ |
| (ଅଂଶ ପ୍ରତି ଟ ୨ ହାରରେ ୨,୦୦୦ ଅଂଶ ବାବଦ ଆବଣ୍ଟନ ଅର୍ଥ ନିର୍ଦ୍ଦେଶକମଣ୍ଡଳୀଙ୍କର... ତାରିଖର ପ୍ରସ୍ତାବକ୍ରମେ ଅଂଶଧାରୀମାନଙ୍କଠାରୁ ପ୍ରାପ୍ୟ ହେଲା ) | | |

ରୋକଡ଼ ବହି (ବ୍ୟାଙ୍କ ସ୍ତମ୍ଭ)

| ଦାୟୀ | ଟଙ୍କା | ଦାତା | ଟଙ୍କା |
|---|---|---|---|
| ଅଂଶ ଆବେଦନ ହିସାବ ବାବଦ ( ଅଂଶ ପ୍ରତି ଟ ୨ ହାରରେ ୨,୫୦୦ ଅଂଶ ବାବଦ ) | ୫,୦୦୦ | ଅଂଶ ଆବେଦନ ହିସାବ ବାବଦ (ଅଂଶ ପ୍ରତି ଟ ୨ ହାରରେ ୫୦୦ ଅଂଶ ବାବଦ ଟଙ୍କା ଫେରସ୍ତ ଦିଆଗଲା) | ୧,୦୦୦ |
| ଅଂଶ ଆବଣ୍ଟନ ହିସାବ ବାବଦ (ଅଂଶ ପ୍ରତି ଟ ୨ ହାରରେ ୨,୦୦୦ ଅଂଶ ବାବଦ) | ୪,୦୦୦ | ବାକୀ ଗଡ଼ିଲା | ୮,୦୦୦ |
| | ୯,୦୦୦ | | ୯,୦୦୦ |
| ପୂର୍ବ ବାକୀ ବାବଦ | ୮,୦୦୦ | | |

## ଖତିୟାନ

| ଦାୟୀ | ଅଂଶ ଆବେଦନ ହିସାବ | | ଦାତା |
|---|---|---|---|
| | ଟଙ୍କା | | ଟଙ୍କା |
| ଅଂଶ ମୂଳଧନ ହିସାବ ବାବଦ | ୪,୦୦୦ | ବ୍ୟାଙ୍କ ହିସାବ ବାବଦ | ୫,୦୦୦ |
| ବ୍ୟାଙ୍କ ହିସାବ ବାବଦ | ୧,୦୦୦ | | |
| | ୫,୦୦୦ | | ୫,୦୦୦ |

| ଦାୟୀ | ଅଂଶ ଆବଣ୍ଟନ ହିସାବ | | ଦାତା |
|---|---|---|---|
| | ଟଙ୍କା | | ଟଙ୍କା |
| ଅଂଶ ମୂଳଧନ ହିସାବ ବାବଦ | ୪,୦୦୦ | ବ୍ୟାଙ୍କ ହିସାବ ବାବଦ | ୪,୦୦୦ |

| ଦାୟୀ | ଅଂଶ ମୂଳଧନ ହିସାବ | | ଦାତା |
|---|---|---|---|
| | ଟଙ୍କା | | ଟଙ୍କା |
| ବାକି ଗଡ଼ନ୍ତି | ୮,୦୦୦ | ଅଂଶ ଆବେଦନ ହି : ବାବଦ | ୪,୦୦୦ |
| | | ଅଂଶ ଆବଣ୍ଟନ ହି : ବାବଦ | ୪,୦୦୦ |
| | ୮,୦୦୦ | | ୮,୦୦୦ |
| | | ପୂର୍ବ ବାକି ବାବଦ | ୮,୦୦୦ |

## ଶୁଭ୍ରା କମ୍ପାନୀ ଲିମିଟେଡ୍
### ୧୯···ମସିହା···ତାରିଖର ଉଦ୍ବୃତ୍ତ ପତ୍ର

| ଦାୟ ଓ ମୂଳଧନ | ଟଙ୍କା | ପରିସମ୍ପତ୍ତି | ଟଙ୍କା |
|---|---|---|---|
| ଅଂଶ ମୂଳଧନ : | | ଚଳନ୍ତି ପରିସମ୍ପତ୍ତି | |
| ପ୍ରାଧିକୃତ ମୂଳଧନ | | ବ୍ୟାଙ୍କରେ ଗଚ୍ଛିତ ତହବିଲ | ୮,୦୦୦ |
| ଅଂଶ ପ୍ରତି ଟ ୧୦ ହାରରେ | | | |
| ୩,୦୦୦ ସାଧାରଣ ଅଂଶ | ୩୦,୦୦୦ | | |
| ପ୍ରଚଳିତ ମୂଳଧନ | | | |
| ଅଂଶ ପ୍ରତି ଟ ୧୦ ହାରରେ | | | |
| ୨,୦୦୦ ସାଧାରଣ ଅଂଶ | ୨୦,୦୦୦ | | |
| ବର୍ଜିତ ମୂଳଧନ | | | |
| ଅଂଶ ପ୍ରତି ଟ ୧୦ ହାରରେ | | | |
| ୨,୦୦୦ ସାଧାରଣ ଅଂଶ, | | | |
| ଅଂଶ ପ୍ରତି ଟ ୪ ଆହୂତ | ୮,୦୦୦ | | |
| | ୮,୦୦୦ | | ୮,୦୦୦ |

### ଦୃଷ୍ଟାନ୍ତ (୩)

ମହାଲକ୍ଷ୍ମୀ କମ୍ପାନୀ ଲିମିଟେଡ୍‌ର ପ୍ରାଧିକୃତ ମୂଳଧନର ପରିମାଣ ଟ ୧,୦୦,୦୦୦ ଥିଲା । ଏହା ଅଂଶ ପ୍ରତି ଟ ୧୦୦ ହାରରେ ୧,୦୦୦ ସାଧାରଣ ଅଂଶରେ ବିଭକ୍ତ ହୋଇଥିଲା । କମ୍ପାନୀ ୫୦୦ ଅଂଶ ପ୍ରଚଳିତ କରିବା ପାଇଁ ବିଜ୍ଞପ୍ତି ଦେଇଥିଲା । ଅଂଶର ମୂଲ୍ୟ ଆବେଦନ ସହିତ ଟ ୨୦, ଆବଣ୍ଟନ ସମୟରେ ଟ୩୦ ଓ ୧ମ ଅଂଶ ଆହ୍ୱାନ ବେଳେ ଟ ୨୫ ଓ ଶେଷ ଆହ୍ୱାନ ସମୟରେ ଟ ୨୫ ଦେୟ ଥିଲା । ୭୦୦ ଅଂଶ ସକାଶେ ଆବେଦନ ଅର୍ଥ ମିଳିଥିଲା । କମ୍ପାନୀ ୧୦୦ ଅଂଶ ପାଇଁ ଆବେଦନ କରିଥିବା ବ୍ୟକ୍ତିଙ୍କୁ କୌଣସି ଅଂଶ ଆବଣ୍ଟନ କରି ନ ଥିଲେ ଓ ତାଙ୍କର ଆବେଦନ ଅର୍ଥ ଫେରସ୍ତ ଦେଇଥିଲେ । ୧୦୦ଟି ଅଂଶ ବାବଦ ଆବେଦନ ଅର୍ଥ ଆବଣ୍ଟନ ହିସାବକୁ ନିଆଯାଇଥିଲା । ୫୦ଟି ଅଂଶର ଜଣେ ଅଂଶଧାରୀ ଆବଣ୍ଟନ ଅର୍ଥ ସହିତ ଅଂଶର ବକେୟା ପୂର୍ଣ୍ଣ ମୂଲ୍ୟ ଦେଇଥିଲେ, ଯାହା ଅଗ୍ରିମ ପ୍ରାପ୍ତ ଆହ୍ୱାନ ଅର୍ଥ ହିସାବକୁ ନିଆଯିବ ବୋଲି ନିର୍ଦ୍ଦେଶକମଣ୍ଡଳୀ ସ୍ଥିର କରିଥିଲେ । ଆବଣ୍ଟନ ଅର୍ଥ ଅନ୍ୟ ଅଂଶଧାରୀମାନଙ୍କଠାରୁ ଯଥା ସମୟରେ ମିଳିଥିଲା । ପରବର୍ତ୍ତୀ କିସ୍ତି ପାଇଁ ପ୍ରଥମ ଆହ୍ୱାନ ୧ ବର୍ଷ ପରେ ଦିଆଯିବାର ସ୍ଥିର ହୋଇଥିଲା ।

ଏହି ନେଣ ଦେଣଗୁଡ଼ିକ ସକାଶେ ଜାବ୍‌ଦା, ରୋକଡ଼ ବହି, ଖତିୟାନ ହିସାବ ଓ ଉଦ୍‌ବର୍ତ୍ତ ପତ୍ର ପ୍ରସ୍ତୁତ କର ।

## ସମାଧାନ

### ଜାବ୍‌ଦା

| | ଦାୟୀ | ଦାତା |
|---|---|---|
| | ଟଙ୍କା | ଟଙ୍କା |
| ଅଂଶ ଆବେଦନ ହିସାବ ଦାୟୀ<br>ଅଂଶ ମୂଳଧନ ହିସାବ ବାବଦ<br>(ଅଂଶ ପ୍ରତି ଟ ୨୦ ହାରରେ ୫୦୦ ଅଂଶ ବାବଦ ଆବେଦନ ଅର୍ଥ ନିର୍ଦ୍ଦେଶକମଣ୍ଡଳୀଙ୍କର...ତାରିଖର ପ୍ରସ୍ତାବକ୍ରମେ ଅଂଶ ମୂଳଧନ ହିସାବକୁ ସ୍ଥାନାନ୍ତରିତ ହେଲା ।) | ୧୦,୦୦୦ | ୧୦,୦୦୦ |
| ଅଂଶ ଆବଣ୍ଟନ ହିସାବ ଦାୟୀ<br>ଅଂଶ ଆବଣ୍ଟନ ହିସାବ ବାବଦ<br>(ଅଂଶ ପ୍ରତି ଟ ୨୦ ହାରରେ ୧୦୦ଟି ଅଂଶର ଆବେଦନ ଅର୍ଥ ନିର୍ଦ୍ଦେଶକମଣ୍ଡଳୀଙ୍କର...ତାରିଖର ପ୍ରସ୍ତାବକ୍ରମେ ଅଂଶ ଆବଣ୍ଟନ ହିସାବକୁ ସ୍ଥାନାନ୍ତରିତ ହେଲା ।) | ୨,୦୦୦ | ୨,୦୦୦ |

| | | | |
|---|---|---|---|
| ଅଂଶ ଆବଣ୍ଟନ ହିସାବ | ଦାୟୀ | ୧୫,୦୦୦ | |
| ଅଂଶ ମୂଳଧନ ହିସାବ ବାବଦ | | | ୧୫,୦୦୦ |
| ( ଅଂଶ ପ୍ରତି ଟ ୩୦ ହାରରେ ୫୦୦ ଅଂଶ ବାବଦ ଅଂଶ ଆବଣ୍ଟନ ଅର୍ଥ ନିର୍ଦ୍ଦେଶକମଣ୍ଡଳୀଙ୍କର...ତାରିଖର ପ୍ରସ୍ତାବକ୍ରମେ ଅଂଶଧାରୀମାନଙ୍କଠାରୁ ପ୍ରାପ୍ୟ ହେଲ ) | | | |
| ଅଂଶ ଆବଣ୍ଟନ ହିସାବ | ଦାୟୀ | ୨,୫୦୦ | |
| ଅଗ୍ରିମ ପ୍ରାପ୍ତ ଅଂଶ ଆହ୍ୱାନ ହିସାବ ବାବଦ | | | ୨,୫୦୦ |
| ( ଅଂଶ ପ୍ରତି ଟ ୫୦ ହାରରେ ୫୦ଟି ଅଂଶ କ୍ରୟ କରିଥିବା ଜଣେ ଅଂଶଧାରୀ ଅଂଶ ଆହ୍ୱାନ ବାବଦ ଦେଇଥିବା ଅର୍ଥ ନିର୍ଦ୍ଦେଶକମଣ୍ଡଳୀଙ୍କର...ତାରିଖର ପ୍ରସ୍ତାବକ୍ରମେ ଅଗ୍ରିମ ପ୍ରାପ୍ତ ଅଂଶ ଆହ୍ୱାନ ହିସାବକୁ ସ୍ଥାନାନ୍ତରିତ ହେଲ ) | | | |

ଦାୟୀ ରୋକଡ଼ ବହି ( ବ୍ୟାଙ୍କ୍ ସ୍ତମ୍ଭ ) ଦାତା

| ଦାୟୀ | ଟଙ୍କା | ଦାତା | ଟଙ୍କା |
|---|---|---|---|
| ଅଂଶ ଆବେଦନ ହି: ବାବଦ (ଅଂଶ ପ୍ରତି ଟ ୨୦ ହାରରେ ୭୦୦ ଅଂଶର ଆବେଦନ ଅର୍ଥ ମିଳିଲ ) | ୧୪,୦୦୦ | ଅଂଶ ଆବେଦନ ହି : ବାବଦ (ଅଂଶ ପ୍ରତି ଟ ୨୦ ହାରରେ ୧୦୦ଟି ଅଂଶର ଟଙ୍କା ଫେରସ୍ତ ଦିଆଗଲ ) | ୨,୦୦୦ |
| ଅଂଶ ଆବଣ୍ଟନ ହିସାବ ବାବଦ ( ଅଂଶ ପ୍ରତି ଟ ୩୦ ହାରରେ ୩୫୦ ଅଂଶର, ଟ୧୦ ହାରରେ ୧୦୦ ଅଂଶର ଓ ଟ ୮୦ ହାରରେ ୫୦ ଗୋଟି ଅଂଶ ବାବଦ ଅର୍ଥ ମିଳିଲା । | ୧୫,୫୦୦ | ବାକି ଗଡ଼ିଲ | ୨୭,୫୦୦ |
| | ୨୯,୫୦୦ | | ୨୯,୫୦୦ |
| ପୂର୍ବ ବାକି ବାବଦ | ୨୭,୫୦୦ | | |

## ଖତିୟାନ

**ଦାୟୀ — ଅଂଶ ଆବେଦନ ହିସାବ — ଦାତା**

| | ଟଙ୍କା | | ଟଙ୍କା |
|---|---|---|---|
| ଅଂଶ ମୂଳଧନ ହିସାବ ବାବଦ | ୧୦,୦୦୦ | ନଗଦ ତହବିଲ ହି : ବାବଦ | ୧୪,୦୦୦ |
| ନଗଦ ତହବିଲ ହିସାବ ବାବଦ | ୨,୦୦୦ | | |
| ଅଂଶ ଅବେଦନ ହି : ବାବଦ | ୨,୦୦୦ | | |
| | ୧୪,୦୦୦ | | ୧୪,୦୦୦ |

**ଦାୟୀ — ଅଂଶ ଆବଣ୍ଟନ ହିସାବ — ଦାତା**

| | ଟଙ୍କା | | ଟଙ୍କା |
|---|---|---|---|
| ଅଂଶ ମୂଳଧନ ହି : ବାବଦ | ୧୫,୦୦୦ | ଅଂଶ ଅବେଦନ ହି : ବାବଦ | ୨,୦୦୦ |
| ଅଗ୍ରିମ ପ୍ରାପ୍ତ ଅଂଶ ଅହ୍ୱାନ ହିସାବ ବାବଦ | ୨,୫୦୦ | ନଗଦ ତହବିଲ ହି : ବାବଦ | ୧୫,୫୦୦ |
| | ୧୭,୫୦୦ | | ୧୭,୫୦୦ |

**ଦାୟୀ — ଅଂଶ ମୂଳଧନ ହିସାବ — ଦାତା**

| | ଟଙ୍କା | | ଟଙ୍କା |
|---|---|---|---|
| ବାକି ଗଡ଼ିଲ | ୨୫,୦୦୦ | ଅଂଶ ଆବେଦନ ହି : ବାବଦ | ୧୦,୦୦୦ |
| | | ଅଂଶ ଆବଣ୍ଟନ ହି : ବାବଦ | ୧୫,୦୦୦ |
| | ୨୫,୦୦୦ | | ୨୫,୦୦୦ |
| | | ପୂର୍ବ ବାକି ବାବଦ | ୨୫,୦୦୦ |

**ଦାୟୀ — ଅଗ୍ରିମ ପ୍ରାପ୍ତ ଅଂଶ ଅହ୍ୱାନ ହିସାବ — ଦାତା**

| | ଟଙ୍କା | | ଟଙ୍କା |
|---|---|---|---|
| ବାକି ଗଡ଼ିଲ | ୨,୫୦୦ | ଅଂଶ ଆବଣ୍ଟନ ହି : ବାବଦ | ୨,୫୦୦ |
| | | ପୂର୍ବ ବାକି ବାବଦ | ୨,୫୦୦ |

୧୯...ମସିହା...ତାରିଖର

ଉଦ୍ବର୍ତ୍ତ ପତ୍ର

| ଦାୟ ଓ ମୂଳଧନ | ଟଙ୍କା | ପରିସମ୍ପତ୍ତି | ଟଙ୍କା |
|---|---|---|---|
| ଅଂଶ ମୂଳଧନ : | | ଚଳନ୍ତି ପରିସମ୍ପତ୍ତି : | |
| ପ୍ରାଧିକୃତ ମୂଳଧନ | | ବ୍ୟାଙ୍କ୍‌ରେ ଗଚ୍ଛିତ ତହବିଲ | ୨୭,୫୦୦ |
| ପ୍ରତି ଅଂଶ ଟ ୧୦୦ ହାରରେ | | | |
| ୧,୦୦୦ ସାଧାରଣ ଅଂଶ | ୧,୦୦,୦୦୦ | | |
| ପ୍ରଚଳିତ ମୂଳଧନ | | | |
| ପ୍ରତି ଅଂଶ ଟ ୧୦୦ ହାରରେ | | | |
| ୫୦୦ ସାଧାରଣ ଅଂଶ | ୫୦,୦୦୦ | | |
| ଆଦାୟୀକୃତ ମୂଳଧନ | | | |
| ପ୍ରତି ଅଂଶ ଟ ୫୦ ହାରରେ | | | |
| ୫୦୦ ସାଧାରଣ ଅଂଶ | ୨୫,୦୦୦ | | |
| ଅଗ୍ରିମ ପ୍ରାପ୍ତ ଅଂଶ | | | |
| ଆହ୍ୱାନ ହିସାବ | ୨,୫୦୦ | | |
| | ୨୭,୫୦୦ | | ୨୭,୫୦୦ |

ସମ୍ମିଳିତ ଆବେଦନ ଓ ଆବଣ୍ଟନ ହିସାବ—କେତେକ ସମୟରେ ହିସାବରକ୍ଷକ ଅଂଶ ଆବେଦନ ଓ ଅଂଶ ଆବଣ୍ଟନ ସକାଶେ ଗୋଟିଏ ସଂଯୁକ୍ତ ହିସାବ ଖୋଲନ୍ତି । ଏହାର ସୁବିଧା ହେଉଛି ଏହା ଯେ କମ୍ପାନୀ ଯେତେ ଅଂଶ ପ୍ରଚଳିତ କରନ୍ତି ତାହା ଅପେକ୍ଷା ଅଧିକ ସଂଖ୍ୟକ ଅଂଶ ପାଇଁ ଯଦି ଆବେଦନ ଅର୍ଥ ମିଳେ ଏବଂ ନିର୍ଦ୍ଦେଶକମଣ୍ଡଳୀ ଆବେଦନକାରୀଙ୍କ ଆବେଦନ କରିଥିବା ଅଂଶ ସଂଖ୍ୟା ଅପେକ୍ଷା ନ୍ୟୂନ ସଂଖ୍ୟକ ଅଂଶ ଆବଣ୍ଟନ କରନ୍ତି ତାହାହେଲେ ଅଂଶ ଆବେଦନ ହିସାବରୁ କେତେକ ପରିମାଣର ଅର୍ଥ ଅଂଶ ଆବଣ୍ଟନ ହିସାବକୁ ସ୍ଥାନାନ୍ତରିତ କରିବାକୁ ହୁଏ ନାହିଁ । ଏହାର ଏକ ଦୃଷ୍ଟାନ୍ତ ନିମ୍ନରେ ପ୍ରଦତ୍ତ ହେଲା ।

ଦୃଷ୍ଟାନ୍ତ (୪)

ଭୁବନେଶ୍ୱର ଷ୍ଟିଲ୍ କମ୍ପାନୀ ଲିମିଟେଡ଼୍‌ଙ୍କର ପ୍ରାଧିକୃତ ମୂଳଧନର ପରିମାଣ ଟ ୧୦,୦୦,୦୦୦ ଥିଲା ଓ ଏହା ଅଂଶ ପ୍ରତି ଟ ୧୦ ହାରରେ ୧,୦୦,୦୦୦ ସାଧାରଣ ଅଂଶରେ ବିଭକ୍ତ ହୋଇଥିଲା । ଏହି ଅର୍ଥ ନିମ୍ନରୂପେ ଦେୟ ଥିଲା :

ଆବେଦନ ସହିତ ଟ ୨
ଆବଣ୍ଟନ ବେଳେ ଟ ୩
ଅବଶିଷ୍ଟ ଟଙ୍କା ବର୍ଷକ ପରେ ଆହ୍ୱାନ ବେଳେ ଦେୟ।

କମ୍ପାନି ୫୦,୦୦୦ ଅଂଶ ପ୍ରଚଳିତ କରିବା ପାଇଁ ବିଜ୍ଞାପକ ପତ୍ର ( Prospectus ) ରେ ପ୍ରଚାର କରିଥିଲେ । ୭୦,୦୦୦ ଅଂଶ ସକାଶେ ଆବେଦନ ଅର୍ଥ ମିଳିଥିଲା । ନିର୍ଦ୍ଦେଶକମଣ୍ଡଳୀ ନିମ୍ନରୂପେ ଅଂଶ ଆବଣ୍ଟନ କରିଥିଲେ ।

୩୦,୦୦୦ ଅଂଶର ଆବେଦନକାରୀଙ୍କୁ—ପୂର୍ଣ୍ଣ ଆବଣ୍ଟନ କରିଥିଲେ
୩୫,୦୦୦ ଅଂଶର ଆବେଦନକାରୀଙ୍କୁ—୨୦,୦୦୦ ଅଂଶ ଆବଣ୍ଟନ କରିଥିଲେ
୫,୦୦୦ ଅଂଶର ଆବେଦନକାରୀଙ୍କୁ—କୌଣସି ଅଂଶ ଆବଣ୍ଟନ କରି ନ ଥିଲେ
କମ୍ପାନୀଙ୍କର ଜାବ୍ଦା ଓ ରୋକଡ଼ ବହି ପ୍ରସ୍ତୁତ କର ।

**ସମାଧାନ**

| ଜାବ୍ଦା | ଦାୟୀ | ଦାତା |
|---|---|---|
| | ଟଙ୍କା | ଟଙ୍କା |
| ଅଂଶ ଆବେଦନ ଓ ଆବଣ୍ଟନ ହିସାବ ଦାୟୀ | ୨,୫୦,୦୦୦ | |
| ଅଂଶ ମୂଳଧନ ହିସାବ ବାବଦ | | ୨,୫୦,୦୦୦ |
| (ଅଂଶ ପ୍ରତି ଟ ୨ ହାରରେ ଆବେଦନ ଅର୍ଥ ଓ ଟ ୩ ହାରରେ ଆବଣ୍ଟନ ଅର୍ଥ ସକାଶେ ନିର୍ଦ୍ଦେଶକମଣ୍ଡଳୀଙ୍କର ତାରିଖର ପ୍ରସ୍ତାବକ୍ରମେ ଅଂଶ ମୂଳଧନ ହିସାବକୁ ଦାତା କରାଗଲା ।) | | |

ଦାୟୀ ରୋକଡ଼ ବହି ଦାତା

| | ଟଙ୍କା | | ଟଙ୍କା |
|---|---|---|---|
| ଅଂଶ ଆବେଦନ ଓ ଆବଣ୍ଟନ ହିସାବ ବାବଦ (ଅଂଶ ପ୍ରତି ଟ ୨ ହାରରେ ୭୦,୦୦୦ ଅଂଶ ବାବଦ ) | ୧,୨୦,୦୦୦ | ଅଂଶ ଆବେଦନ ଓ ଆବଣ୍ଟନ ହିସାବ ବାବଦ (ଅଂଶ ପ୍ରତି ଟ ୨ ହାରରେ ପ୍ରତ୍ୟାଖ୍ୟାତ ହୋଇଥିବା ୫,୦୦୦ ଆବେଦନ ବାବଦ ଅର୍ଥ ଆବେଦନକାରୀଙ୍କୁ ଫେରସ୍ତ ଦିଆଗଲା ) | ୧୦,୦୦୦ |
| ଅଂଶ ଆବେଦନ ଓ ଆବଣ୍ଟନ ହିସାବ ବାବଦ (ଆବଣ୍ଟନ ବାବଦ ପ୍ରାପ୍ୟ ବାକୀ ଅର୍ଥ ମିଳିଲା ) | ୧,୪୦,୦୦୦ | ବାକୀ ଗଡ଼ିଲା | ୨,୫୦,୦୦୦ |
| | ୨,୭୦,୦୦୦ | | ୨,୭୦,୦୦୦ |
| ପୂର୍ବ ବାକୀ ବାବଦ | ୨,୫୦,୦୦୦ | | |

**ଦୁଇ ଶ୍ରେଣୀର ଅଂଶ**—ପୂର୍ବରୁ କୁହାଯାଇଛି ଯେ କମ୍ପାନୀ ସାଧାରଣ ଅଂଶ ବ୍ୟତୀତ ଅଗ୍ରାଧିକାର ଅଂଶ ମଧ୍ୟ ପ୍ରଚଳିତ କରିପାରେ । ଯେଉଁଠାରେ ଏହି ଉଭୟ ଶ୍ରେଣୀର ଅଂଶ ପ୍ରଚଳିତ ହୁଏ ସେଠାରେ ପ୍ରତ୍ୟେକ ଶ୍ରେଣୀର ଅଂଶ ସକାଶେ ପୃଥକ୍ ଆବେଦନ, ଆବଣ୍ଟନ ଓ ଆହ୍ୱାନ ଅଂଶ ମୂଳଧନ ହିସାବ ଖୋଲିବା ଆବଶ୍ୟକ ହୁଏ । ଉଦ୍‌ବୃତ୍ତ ପତ୍ରରେ ମଧ୍ୟ ଅଂଶ ମୂଳଧନ ଶିରୋନାମା ନିମ୍ନରେ ଉଭୟବିଧ ଅଂଶ ମୂଳଧନ ହିସାବର ବାକି ପରିମାଣ ଦର୍ଶାଇବା ଆବଶ୍ୟକ ହୁଏ । ଏହାର ଏକ ଦୃଷ୍ଟାନ୍ତ ନିମ୍ନରେ ପ୍ରଦତ୍ତ ହେଲା ।

ଦୃଷ୍ଟାନ୍ତ (୫)

କୋଣାର୍କ କେମିକାଲସ୍ ଲିମିଟେଡ୍ ପ୍ରତି ଅଂଶ ଟ ୧୦ ହାରରେ ୧,୦୦୦ ସାଧାରଣ ଅଂଶ ଓ ପ୍ରତି ଅଂଶ ଟ ୧୦୦ ହାରରେ ଶତକଡ଼ା ୭ ଲାଭାଂଶବିଶିଷ୍ଟ ୧,୦୦୦ ଅଗ୍ରାଧିକାର ଅଂଶ ପ୍ରଚଳିତ କରିଥିଲା । ଏହି ଦ୍ୱିବିଧ ଅଂଶ ବାବଦ ଅର୍ଥ ନିମ୍ନ ପ୍ରକାରେ ଦେୟ ଥିଲା ।

| | ସାଧାରଣ ଅଂଶ | ଶତକଡ଼ା ୭ ଲାଭାଂଶବିଶିଷ୍ଟ ଅଗ୍ରାଧିକାର ଅଂଶ |
|---|---|---|
| | ଟଙ୍କା | ଟଙ୍କା |
| ଆବେଦନ ସମୟରେ | ୨ | ୩୦ |
| ଆବଣ୍ଟନ ସମୟରେ | ୩ | ୩୦ |
| ପ୍ରଥମ ଆହ୍ୱାନ ସମୟରେ | ୨.୫୦ | ୨୦ |
| ଶେଷ ଆହ୍ୱାନ ସମୟରେ | ୨.୫୦ | ୨୦ |

ଏହି ଉଭୟବିଧ ଅଂଶ ସମ୍ପୂର୍ଣ୍ଣରୂପେ ବର୍ଣ୍ଣିତ ହୋଇଥିଲା ଏବଂ ଆବଣ୍ଟନ ଓ ଆହ୍ୱାନ ବାବଦ ଅର୍ଥ ଯଥା ସମୟରେ ଓ ଯଥାଯଥ ଭାବରେ ମିଳିଥିଲା । ଏହି କେଣ ଦେଣଗୁଡ଼ିକ ସକାଶେ ଜାବେଦା, ରୋକଡ଼ ବହି, ଖତିୟାନ ହିସାବ ପ୍ରସ୍ତୁତ କର ଓ ଶେଷ ଅହ୍ୱାନ ବାବଦ ଅର୍ଥ ମିଳିବା ପରେ ବିଭିନ୍ନ ହିସାବଗୁଡ଼ିକ ଉଦ୍‌ବୃତ୍ତ ପତ୍ରରେ କିପରି ପ୍ରକାଶିତ ହେବ ତାହା ଦର୍ଶାଅ ।

**ସମାଧାନ**

| | ଦାୟୀ | ଦାତା |
|---|---|---|
| | ଟଙ୍କା | ଟଙ୍କା |
| ସାଧାରଣ ଅଂଶ ଆବେଦନ ହିସାବ ଦାୟୀ | ୧,୦୦୦ | |
| ସାଧାରଣ ଅଂଶ ମୂଳଧନ ହିସାବ ବାବଦ | | ୧,୦୦୦ |
| ( ଅଂଶ ପ୍ରତି ଟ ୧ ହାରରେ ୧,୦୦୦ ସାଧାରଣ ଅଂଶର ଆବେଦନ ଅର୍ଥ ସାଧାରଣ ଅଂଶ ମୂଳଧନ ହିସାବକୁ ନର୍ଦ୍ଦେଶକମଣ୍ଡଳୀଙ୍କର···ତାରଖର ପ୍ରସ୍ତାବକ୍ରମେ ସ୍ଥାନାନ୍ତରିତ ହେଲା) | | |
| ୭% ଅଗ୍ରାଧିକାର ଅଂଶ ଆବେଦନ ହିସାବ ଦାୟୀ | ୩୦,୦୦୦ | |
| ୭% ଅଗ୍ରାଧିକାର ଅଂଶ ମୂଳଧନ ହିସାବ ବାବଦ | | ୩୦,୦୦୦ |
| (ଅଂଶ ପ୍ରତି ଟ ୩୦ ହାରରେ ୧,୦୦୦ ୭% ଅଗ୍ରାଧିକାର ଅଂଶର ଆବେଦନ ଅର୍ଥ ୭% ଅଗ୍ରାଧିକାର ଅଂଶ ମୂଳଧନ ହିସାବକୁ ନର୍ଦ୍ଦେଶକମଣ୍ଡଳୀଙ୍କର···ତାରଖର ପ୍ରସ୍ତାବକ୍ରମେ ସ୍ଥାନାନ୍ତରିତ ହେଲା) | | |
| ସାଧାରଣ ଅଂଶ ଆବଣ୍ଟନ ହିସାବ ଦାୟୀ | ୩,୦୦୦ | |
| ସାଧାରଣ ଅଂଶ ମୂଳଧନ ହିସାବ ବାବଦ | | ୩,୦୦୦ |
| (ଅଂଶ ପ୍ରତି ଟ ୩ ହାରରେ ୧,୦୦୦ ସାଧାରଣ ଅଂଶ ବାବଦ ଆବଣ୍ଟନ ଅର୍ଥ ନର୍ଦ୍ଦେଶକମଣ୍ଡଳୀଙ୍କର···ତାରଖର ପ୍ରସ୍ତାବକ୍ରମେ ପ୍ରାପ୍ୟ ହେଲା) | | |

| | ଦାୟୀ | ଦାତା |
|---|---|---|
| | ଟଙ୍କା | ଟଙ୍କା |
| ୭% ଅଗ୍ରାଧିକାର ଅଂଶ ଆବଣ୍ଟନ ହିସାବ ଦାୟୀ | ୩୦,୦୦୦, | |
| ୭% ଅଗ୍ରାଧିକାର ଅଂଶ ମୂଳଧନ ହିସାବ ବାବଦ | | ୩୦,୦୦୦ |
| ( ଅଂଶ ପ୍ରତି ଟ ୩୦ ହାରରେ ୧,୦୦୦ ୭% ଅଗ୍ରାଧିକାର ଅଂଶ ଆବଣ୍ଟନ ଅର୍ଥ ନର୍ଦ୍ଦେଶକମଣ୍ଡଳୀଙ୍କର···ତାରଖର ପ୍ରସ୍ତାବକ୍ରମେ ପ୍ରାପ୍ୟ ହେଲା । ) | | |
| ସାଧାରଣ ଅଂଶ ପ୍ରଥମ ଅହ୍ୱାନ ହିସାବ ଦାୟୀ | ୧,୫୦୦ | |
| ସାଧାରଣ ଅଂଶ ମୂଳଧନ ହିସାବ ବାବଦ | | ୧,୫୦୦ |
| (ଅଂଶ ପ୍ରତି ଟ ୧ ୫୦ ପଇସା ହାରରେ ୧,୦୦୦ ଅଂଶ ବାବଦ ପ୍ରଥମ ଅଂଶ ଅହ୍ୱାନ ୧ଅ ନର୍ଦ୍ଦେଶକମଣ୍ଡଳୀଙ୍କର ···ତାରଖର ପ୍ରସ୍ତାବକ୍ରମେ ପ୍ରାପ୍ୟ ହେଲା ) | | |

| | | |
|---|---|---|
| ୭% ଅଗ୍ରାଧିକାର ଅଂଶ ପ୍ରଥମ ଆହ୍ୱାନ ହିସାବ ଦାୟୀ | ୧୦,୦୦୦ | |
| ୭% ଅଗ୍ରାଧିକାର ଅଂଶ ମୂଳଧନ ହିସାବ ବାବଦ | | ୧୦,୦୦୦ |
| (ଅଂଶ ପ୍ରତି ଟ ୧୦ ହାରରେ ୧,୦୦୦ ୭% ଅଗ୍ରାଧିକାର ଅଂଶର ପ୍ରଥମ ଆହ୍ୱାନ ବାବଦ ଅର୍ଥ ନିର୍ଦ୍ଦେଶକମଣ୍ଡଳୀଙ୍କର ...ତାରିଖର ପ୍ରସ୍ତାବକ୍ରମେ ପ୍ରାପ୍ୟ ହେଲା ) | | |
| ସାଧାରଣ ଅଂଶ ଶେଷ ଆହ୍ୱାନ ହିସାବ ଦାୟୀ | ୨,୫୦୦ | |
| ସାଧାରଣ ଅଂଶ ମୂଳଧନ ହିସାବ ବାବଦ | | ୨,୫୦୦ |
| (ଅଂଶ ପ୍ରତି ଟ ୨.୫୦ ପଇସା ହାରରେ ୧,୦୦୦ ସାଧାରଣ ଅଂଶ ବାବଦ ଶେଷ ଆହ୍ୱାନ ଅର୍ଥ ନିର୍ଦ୍ଦେଶକମଣ୍ଡଳୀଙ୍କର... ତାରିଖର ପ୍ରସ୍ତାବକ୍ରମେ ପ୍ରାପ୍ୟ ହେଲା ) | | |
| ୭% ଅଗ୍ରାଧିକାର ଅଂଶ ଶେଷ ଆହ୍ୱାନ ହିସାବ ଦାୟୀ | ୧୦,୦୦୦ | |
| ୭% ଅଗ୍ରାଧିକାର ଅଂଶ ମୂଳଧନ ହିସାବ ବାବଦ | | ୧୦,୦୦୦ |
| (ଅଂଶ ପ୍ରତି ଟ ୧୦ ହାରରେ ୧,୦୦୦ ୭% ଅଗ୍ରାଧିକାର ଅଂଶ ବାବଦ ଶେଷ ଆହ୍ୱାନ ଅର୍ଥ ନିର୍ଦ୍ଦେଶକମଣ୍ଡଳୀଙ୍କର... ତାରିଖର ପ୍ରସ୍ତାବକ୍ରମେ ପ୍ରାପ୍ୟ ହେଲା ) | | |

ଦାୟୀ — ରୋକଡ଼ ବହି (ବ୍ୟାଙ୍କ୍ ସ୍ତମ୍ଭ) — ଦାତା

| | ଟଙ୍କା | | ଟଙ୍କା |
|---|---|---|---|
| ସାଧାରଣ ଅଂଶ ଆବେଦନ ହିସାବ ବାବଦ ( ଅଂଶ ପ୍ରତି ଟ ୨ ହାରରେ ୧,୦୦୦ ସାଧାରଣ ଅଂଶ ବାବଦ ଆବେଦନ ଅର୍ଥ ) | ୨,୦୦୦ | | |
| ୭% ଅଗ୍ରାଧିକାର ଅଂଶ ଆବେଦନ ହିସାବ ବାବଦ (ଅଂଶ ପ୍ରତି ଟ ୩୦ ହାରରେ ୧,୦୦୦ ୭% ଅଗ୍ରାଧିକାର ଅଂଶ ବାବଦ ଆବେଦନ ଅର୍ଥ ) | ୩୦,୦୦୦ | | |

( ଶ୍ୱେକଡ଼ ବନ୍ଧର ବଳକା ଅଂଶ )

| ଦାର୍ଯ୍ୟା | ଟଙ୍କା | | ଦାତା ଟଙ୍କା |
|---|---|---|---|
| ସାଧାରଣ ଅଂଶ ଆବେଦନ ହିସାବ ବାବଦ (ଅଂଶ ପ୍ରତି ଟ ୩ ହାରରେ ୧,୦୦୦ ସାଧାରଣ ଅଂଶ ବାବଦ ଆବେଦନ ଅର୍ଥ | ୩,୦୦୦ | ବାଙ୍କ ଗଚ୍ଛିତ | ୧,୧୦,୦୦୦ |
| ୭% ଅଗ୍ରାଧିକାର ଅଂଶ ଆବେଦନ ହିସାବ ବାବଦ ( ଅଂଶ ପ୍ରତି ଟ ୩୦ ହାରରେ ୧,୦୦୦ ୭% ଅଗ୍ରାଧିକାର ଅଂଶ ବାବଦ ଆବେଦନ ଅର୍ଥ | ୩୦,୦୦୦ | | |
| ସାଧାରଣ ଅଂଶ ପ୍ରଥମ ଆହ୍ୱାନ ହିସାବ ବାବଦ (ଅଂଶ ପ୍ରତି ଟ ୧.୫୦ ପ. ହାରରେ ୧,୦୦୦ ସାଧାରଣ ଅଂଶ ବାବଦ ପ୍ରଥମ ଆହ୍ୱାନ ଅର୍ଥ ) | ୧,୫୦୦ | | |
| ୭% ଅଗ୍ରାଧିକାର ଅଂଶ ପ୍ରଥମ ଆହ୍ୱାନ ହି : ବାବଦ ( ଅଂଶ ପ୍ରତି ଟ ୧୦ ହାରରେ ୧,୦୦୦ ୭% ଅଗ୍ରାଧିକାର ଅଂଶ ବାବଦ ପ୍ରଥମ ଆହ୍ୱାନ ଅର୍ଥ ) | ୧୦,୦୦୦ | | |
| ସାଧାରଣ ଅଂଶ ଶେଷ ଆହ୍ୱାନ ହିସାବ ବାବଦ (ଅଂଶ ପ୍ରତି ଟ ୧-୫୦ ପ. ହାରରେ ୧,୦୦୦ ସାଧାରଣ ଅଂଶ ବାବଦ ଶେଷ ଆହ୍ୱାନ ଅର୍ଥ) | ୧,୫୦୦ | | |
| ୭% ଅଗ୍ରାଧିକାର ଅଂଶ ଶେଷ ଆହ୍ୱାନ ହି : ବାବଦ (ଅଂଶ ପ୍ରତି ଟ ୧୦ ହାରରେ ୧,୦୦୦ ୭% ଅଗ୍ରାଧିକାର ଅଂଶ ବାବଦ ଶେଷ ଆହ୍ୱାନ ଅର୍ଥ ) | ୧୦,୦୦୦ | | |
| | ୧,୧୦,୦୦୦ | | ୧,୧୦,୦୦୦ |
| ପୂର୍ବ ବାଙ୍କ ବାବଦ | ୧,୧୦,୦୦୦ | | |

# ଖତିୟାନ

**ଦାୟୀ — ସାଧାରଣ ଅଂଶ ଆବେଦନ ହିସାବ — ଦାତା**

| | ଟଙ୍କା | | ଟଙ୍କା |
|---|---|---|---|
| ସାଧାରଣ ଅଂଶ ମୂଳଧନ ହିସାବ ବାବଦ | ୨,୦୦୦ | ବ୍ୟାଙ୍କ୍ ହିସାବ ବାବଦ | ୨,୦୦୦ |

**ଦାୟୀ — ୬% ଅଗ୍ରାଧିକାର ଅଂଶ ଆବେଦନ ହିସାବ — ଦାତା**

| | ଟଙ୍କା | | ଟଙ୍କା |
|---|---|---|---|
| ୬% ଅଗ୍ରାଧିକାର ଅଂଶ ମୂଳଧନ ହିସାବ ବାବଦ | ୩୦,୦୦୦ | ବ୍ୟାଙ୍କ୍ ହିସାବ ବାବଦ | ୩୦,୦୦୦ |

**ଦାୟୀ — ସାଧାରଣ ଅଂଶ ଆବଣ୍ଟନ ହିସାବ — ଦାତା**

| | ଟଙ୍କା | | ଟଙ୍କା |
|---|---|---|---|
| ସାଧାରଣ ଅଂଶ ମୂଳଧନ ହିସାବ ବାବଧ | ୩,୦୦୦ | ବ୍ୟାଙ୍କ୍ ହିସାବ ବାବଦ | ୩,୦୦୦ |

**ଦାୟୀ — ୬% ଅଗ୍ରାଧିକାର ଅଂଶ ଆବଣ୍ଟନ ହିସାବ — ଦାତା**

| | ଟଙ୍କା | | ଟଙ୍କା |
|---|---|---|---|
| ୬% ଅଗ୍ରାଧିକାର ଅଂଶ ମୂଳଧନ ହିସାବ ବାବଦ | ୩ ,୦୦୦ | ବ୍ୟାଙ୍କ୍ ହିସାବ ବାବଦ | ୩୦,୦୦୦ |

**ଦାୟୀ — ସାଧାରଣ ଅଂଶ ପ୍ରଥମ ଆହ୍ୱାନ ହିସାବ — ଦାତା**

| | ଟଙ୍କା | | ଟଙ୍କା |
|---|---|---|---|
| ସାଧାରଣ ଅଂଶ ମୂଳଧନ ହିସାବ ବାବଦ | ୨,୫୦୦ | ବ୍ୟାଙ୍କ୍ ହିସାବ ବାବଦ | ୨,୫୦୦ |

**ଦାୟୀ — ୬% ଅଗ୍ରାଧିକାର ଅଂଶ ପ୍ରଥମ ଆହ୍ୱାନ ହିସାବ — ଦାତା**

| | ଟଙ୍କା | | ଟଙ୍କା |
|---|---|---|---|
| ୬% ଅଗ୍ରାଧିକାର ଅଂଶ ମୂଳଧନ ହିସାବ ବାବଦ | ୨୦,୦୦୦ | ବ୍ୟାଙ୍କ୍ ହିସାବ ବାବଦ | ୨୦,୦୦୦ |

| ଦାୟୀ | ସାଧାରଣ ଅଂଶ ଶେଷ ଆହ୍ୱାନ ହିସାବ | | ଦାତା |
|---|---|---|---|
| | ଟଙ୍କା | | ଟଙ୍କା |
| ସାଧାରଣ ଅଂଶ ମୂଳଧନ ହିସାବ ବାବଦ | ୨,୫୦୦ | ବ୍ୟାଙ୍କ୍ ହିସାବ ବାବଦ | ୨,୫୦୦ |

| ଦାୟୀ | ୭% ଅଗ୍ରାଧିକାର ଅଂଶ ଶେଷ ଆହ୍ୱାନ ହିସାବ | | ଦାତା |
|---|---|---|---|
| | ଟଙ୍କା | | ଟଙ୍କା |
| ୭% ଅଗ୍ରାଧିକାର ଅଂଶ ମୂଳଧନ ହିସାବ ବାବଦ | ୨୦,୦୦୦ | ବ୍ୟାଙ୍କ୍ ହିସାବ ବାବଦ | ୨୦,୦୦୦ |

| ଦାୟୀ | ସାଧାରଣ ଅଂଶ ମୂଳଧନ ହିସାବ | | ଦାତା |
|---|---|---|---|
| | ଟଙ୍କା | | ଟଙ୍କା |
| ବାକି ଗଡ଼ଲ | ୧୦,୦୦୦ | ସାଧାରଣ ଅଂଶ ଆବେଦନ ହିସାବ ବାବଦ | ୨,୦୦୦ |
| | | ସାଧାରଣ ଅଂଶ ଆବଣ୍ଟନ ହିସାବ ବାବଦ | ୩,୦୦୦ |
| | | ସାଧାରଣ ଅଂଶ ପ୍ରଥମ ଆହ୍ୱାନ ହିସାବ ବାବଦ | ୨,୫୦୦ |
| | | ସାଧାରଣ ଅଂଶ ଶେଷ ଆହ୍ୱାନ ହିସାବ ବାବଦ | ୨,୫୦୦ |
| | ୧୦,୦୦୦ | | ୧୦,୦୦୦ |
| | | ପୂର୍ବ ବାକି ବାବଦ | ୧୦,୦୦୦ |

| ଦାୟୀ | ୭% ଅଗ୍ରାଧିକାର ଅଂଶ ମୂଳଧନ ହିସାବ | | ଦାତା |
|---|---|---|---|
| | ଟଙ୍କା | | ଟଙ୍କା |
| ବାକି ଗଡ଼ଲ | ୧,୦୦,୦୦୦ | ୭% ଅଗ୍ରାଧିକାର ଅଂଶ ଆବେଦନ ହିସାବ ବାବଦ | ୩୦,୦୦୦ |
| | | ୭% ଅଗ୍ରାଧିକାର ଅଂଶ ଆବଣ୍ଟନ ହିସାବ ବାବଦ | ୩୦,୦୦୦ |
| | | ୭% ଅଗ୍ରାଧିକାର ଅଂଶ ପ୍ରଥମ ଆହ୍ୱାନ ହି : ବାବଦ | ୨୦,୦୦୦ |
| | | ୭% ଅଗ୍ରାଧିକାର ଅଂଶ ଶେଷ ଆହ୍ୱାନ ହି : ବାବଦ | ୨୦,୦୦୦ |
| | ୧,୦୦,୦୦୦ | | ୧,୦୦,୦୦୦ |
| | | ପୂର୍ବ ବାକି ବାବଦ | ୧,୦୦,୦୦୦ |

୧୯...ମସିହା... ... ତାରିଖର ଉଦ୍‌ବୃତ୍ତ ପତ୍ର

| ମୂଳଧନ ଓ ଦାୟ | ଟଙ୍କା | ପରିସମ୍ପତ୍ତି | ଟଙ୍କା |
|---|---|---|---|
| **ଅଂଶ ମୂଳଧନ :** | | ଚଳନ୍ତି ସମ୍ପତ୍ତି : | |
| ପ୍ରାଧିକୃତ ମୂଳଧନ | | ବ୍ୟାଙ୍କରେ ଗଚ୍ଛିତ ତହବିଲ | ୧,୧୦,୦୦୦ |
| ଅଂଶ ପ୍ରତି ଟ ୧୦ ହାରରେ | | | |
| ୧,୦୦୦ ସାଧାରଣ ଅଂଶ | ୧୦,୦୦୦ | | |
| ଅଂଶ ପ୍ରତି ଟ ୧୦୦ ହାରରେ | | | |
| ୧,୦୦୦ ୭% ଅଗ୍ରାଧିକାର ଅଂଶ | ୧,୦୦,୦୦୦ | | |
| ପ୍ରଚଳିତ ଓ ବର୍ଣ୍ଟିତ ମୂଳଧନ | | | |
| ଅଂଶ ପ୍ରତି ଟ ୧୦ ହାରରେ | | | |
| ୧,୦୦୦ ସାଧାରଣ ଅଂଶ | ୧୦,୦୦୦ | | |
| ଅଂଶ ପ୍ରତି ଟ ୧୦୦ ହାରରେ | | | |
| ୧,୦୦୦ ୭% ଅଗ୍ରାଧିକାର ଅଂଶ | ୧,୦୦,୦୦୦ | | |
| | ୧,୧୦,୦୦୦ | | ୧,୧୦,୦୦୦ |

**ଅଧିହାରରେ ଅଂଶ ପ୍ରଚଳନ—**

କମ୍ପାନୀ ଆଇନ ଅନୁସାରେ ଗୋଟିଏ ଯୌଥ କମ୍ପାନୀ ଅଂଶର ଅଙ୍କିତ ମୂଲ୍ୟ ଅପେକ୍ଷା ଅଧିକ ମୂଲ୍ୟରେ ଅଂଶ ପ୍ରଚଳନ କରିପାରେ । ଏହିପରି ସ୍ଥଳରେ ପ୍ରଚଳିତ ଅଂଶକୁ ଅଧିହାରରେ ପ୍ରଚଳିତ ଅଂଶ କୁହାଯାଏ । ଏହିପରି ଅଧିହାରରେ ବର୍ଣ୍ଟିତ ଅଂଶରୁ ଲବ୍ଧ ଅଙ୍କିତ ମୂଲ୍ୟ ଅପେକ୍ଷା ଅଧିକା ଅର୍ଥକୁ ଅଂଶ ଅଧିହାର ହିସାବ ( Share Premium Accoun )କୁ ସ୍ଥାନାନ୍ତରିତ କରାଯାଏ । ଏହା ଉଦ୍‌ବୃତ୍ତ ପତ୍ରରେ 'ସଞ୍ଚିତ ଓ ବଳକା' (Reserve and Surplus ) ଶିରୋନାମା ଅଧୀନରେ ସ୍ୱତନ୍ତ୍ର ରୂପେ ଅଙ୍କିତ ହୁଏ ।

କମ୍ପାନୀ ଆଇନର ୭୮ ଧାରା ଅନୁଯାୟୀ ଏହି ଅଧିହାର ଲବ୍ଧ ଅର୍ଥ ନିମ୍ନରୂପେ ବ୍ୟବହୃତ କରାଯାଇପାରେ :

(୧) କମ୍ପାନୀର ଅଂଶଧାରୀମାନଙ୍କୁ ପୂର୍ଣ୍ଣ ଆଦାୟୀକୃତ ବୋନସ ଅଂଶ ବଣ୍ଟନ କରିବାରେ (Issue of Fully Paid Bonus Shares);

(୨) ପ୍ରାରମ୍ଭ କ ବ୍ୟୟ ଅବଲୋପନ କରିବାରେ;

(ଙ) ଅଂଶ ଅଥବା ଋଣ ପତ୍ର ପ୍ରଚଳନ କରିବା ସମୟରେ କମ୍ପାନୀ ଯଦି କୌଣସି କମିଶନ ପ୍ରଦାନ କରିଥାଏ ଅଥବା ବଟ୍ଟା ଦେଇଥାଏ, ତାହାହେଲେ ତାହାର ଅବଲୋପନ କରିବାରେ; ଓ

(ଚ) କମ୍ପାନୀ ଯଦି ଏପରି କୌଣସି ଅଗ୍ରାଧିକାର ଅଂଶ ଅଥବା ଋଣ ପତ୍ର ପ୍ରଚଳିତ କରିଥାଏ ଯାହାର ଅର୍ଥ ଅଧିହାରରେ ପ୍ରତ୍ୟର୍ପଣ କରିବାକୁ ହୁଏ, ତାହାହେଲେ ସେହି ଅଧିହାରରେ ଦେୟ ଅର୍ଥର ବ୍ୟବସ୍ଥା କରିବାରେ ।

ମାତ୍ର ଉପରୋକ୍ତ କୌଣସି ଉଦ୍ଦେଶ୍ୟରେ ଏହି ଅର୍ଥ ବ୍ୟବହୃତ ନ ହୁଏ, ତାହାହେଲେ ଏହା କମ୍ପାନୀର ଆଦାୟୀକୃତ ମୂଳଧନ ସ୍ୱରୂପ ବିବେଚିତ ହେବ ।

ଅଧିହାରରେ ପ୍ରଚଳିତ ଅଂଶ ସମ୍ପୃକ୍ତ ନେଣଦେଣଗୁଡ଼ିକ ନିମ୍ନଲିଖିତ ରୂପେ ହିସାବ ବହିରେ ଲିପିବଦ୍ଧ କରାଯିବ । ଯଦିଓ ଏହି ଅଧିହାର ଅର୍ଥ ଅଂଶ ବାବଦ ଦେୟ ଯେ କୌଣସି କିସ୍ତି ସହିତ ଆଦାୟ କରାଯାଇପାରେ, ତଥାପି ଏହା ସାଧାରଣତଃ ଅଂଶ ଆବଣ୍ଟନ ବେଳେ ଆଦାୟ କରାଯାଇଥାଏ ।

| | |
|---|---|
| ଅଂଶ ଆବଣ୍ଟନ ହିସାବ | ଦାୟୀ |
| | (ଅଧିହାର ସମେତ ମୋଟ ପରିମାଣ ସକାଶେ) |
| ଅଂଶ ମୂଳଧନ ହିସାବ ବାବଦ | (ଅଂଶର ଅଙ୍କିତ ମୂଲ୍ୟ ସକାଶେ ) |
| ଅଂଶ ଅଧିହାର ହିସାବ ବାବଦ | (ଅଧିହାର ପରିମାଣ ସକାଶେ) |

ଏହି ପ୍ରକାର ଅଂଶ ପ୍ରଚଳନର ଗୋଟିଏ ଦୃଷ୍ଟାନ୍ତ ନିମ୍ନରେ ପ୍ରଦତ୍ତ ହେଲା ।

## ଦୃଷ୍ଟାନ୍ତ (୭)

ଉତ୍କଳ ଟାଓ୍ୱାର୍ସ ଲିମିଟେଡ୍‌ର ପ୍ରାଧିକୃତ ମୂଳଧନର ପରିମାଣ ଟ ୧,୦୦,୦୦୦ ଥିଲା ଓ ଏହା ପ୍ରତି ଅଂଶ ଟ ୧୦ ହାରରେ ୧୦,୦୦୦ ସାଧାରଣ ଅଂଶରେ ବିଭକ୍ତ ହୋଇଥିଲା । କମ୍ପାନୀ କେବଳ ୫,୫୦୦ ଅଂଶ ଟ ୩ ଅଧିହାରରେ ପ୍ରଚଳିତ କରିଥିଲା । ଅଂଶ ବାବଦ ଅର୍ଥ ନିମ୍ନଲିଖିତ ରୂପେ ଦେୟ ଥିଲା :

| | | |
|---|---|---|
| ଆବେଦନ ସହିତ | ଟ ୨ | |
| ଆବଣ୍ଟନ ବେଳେ | ଟ ୫ | (ଅଧିହାର ସମେତ) |
| ପ୍ରଥମ ଆହ୍ୱାନ ବେଳେ | ଟ ୩ | |
| ଶେଷ ଆହ୍ୱାନ ବେଳେ | ଟ ୩ | |

କେବଳ ୫,୦୦୦ ଅଂଶ ବଣ୍ଟିତ ହୋଇଥିଲା । ଏହି ସଂଖ୍ୟକ ଅଂଶ ବାବଦ ଆବଣ୍ଟନ ଅର୍ଥ ଯଥା ସମୟରେ ମିଳିଥିଲା । ପ୍ରଥମ ଓ ଶେଷ ଆହ୍ୱାନ ବର୍ତ୍ତକ ପରେ ଦିଆ-ଯାଇଥିଲା ।

ଉପରୋକ୍ତ କାରବାରଗୁଡ଼ିକ ସକାଶେ ଜାବ୍ଦା, ରୋକଡ଼ ବହି, ଖତିୟାନ ହିସାବ ପ୍ରସ୍ତୁତ କର ଓ କମ୍ପାନୀର ପ୍ରାରମ୍ଭିକ ଉଦ୍‌ବୃତ୍ତ ପତ୍ର ଦର୍ଶାଅ ।

## ସମାଧାନ

ଜାବ୍ଦା

| | ଦାୟୀ | ଦାତା |
|---|---|---|
| | ଟଙ୍କା | ଟଙ୍କା |
| ଅଂଶ ଆବେଦନ ହିସାବ ଦାୟୀ | ୧୦,୦୦୦ | |
| ଅଂଶ ମୂଳଧନ ହିସାବ ବାବଦ | | ୧୦,୦୦୦ |
| (ଅଂଶ ପ୍ରତି ଟ ୨ ହାରରେ ୫,୦୦୦ ସାଧାରଣ ଅଂଶ ସକାଶେ ଆବେଦନ ଅର୍ଥ ଅଂଶ ମୂଳଧନ ହିସାବକୁ ସ୍ଥାନାନ୍ତରିତ ହେଲା—ନିର୍ଦ୍ଦେଶକମଣ୍ଡଳୀଙ୍କର...ତାରିଖର ପ୍ରସ୍ତାବକ୍ରମେ ) | | |
| ଅଂଶ ଆବଣ୍ଟନ ହିସାବ ଦାୟୀ | ୨୫,୦୦୦ | |
| ଅଂଶ ମୂଳଧନ ହିସାବ ବାବଦ | | ୧୦,୦୦୦ |
| ଅଂଶ ଅଧିହାର ହିସାବ ବାବଦ | | ୧୫,୦୦୦ |
| (ନିର୍ଦ୍ଦେଶକମଣ୍ଡଳୀଙ୍କର...ତାରିଖର ପ୍ରସ୍ତାବ ଅନୁଯାୟୀ ଆବଣ୍ଟନ କରାଯିବାରୁ ଅଂଶ ପ୍ରତି ଟ ୨ ହାରରେ ମୂଳଧନ ଓ ଅଂଶ ପ୍ରତି ଟ ୩ ହାରରେ ଅଂଶ ଅଧିହାର ଅର୍ଥ ୫,୦୦୦ ସାଧାରଣ ଅଂଶ ବାବଦ ପ୍ରାପ୍ୟ ହେଲା ।) | | |

ଦାସ୍ତୀ — ଷ୍ଟେଟଡ଼ ବହି (ବ୍ୟାଙ୍କ୍ ସ୍ତମ୍ଭ) — ଦାତା

| | ଟଙ୍କା | | ଟଙ୍କା |
|---|---|---|---|
| ଅଂଶ ଆବେଦନ ହି: ବାବଦ (ଅଂଶ ପ୍ରତି ଟ ୨ ହାରରେ ୫,୦୦୦ ସାଧାରଣ ଅଂଶର ଆବେଦନ ଅର୍ଥ ମିଳିଲା) | ୧୦,୦୦୦ | ବାକୀ ଗଡ଼ିଲା | ୩୫,୦୦୦ |
| ଅଂଶ ଆବଣ୍ଟନ ହି: ବାବଦ (ଅଂଶ ପ୍ରତି ଟ ୫ ହାରରେ ୫,୦୦୦ ସାଧାରଣ ଅଂଶ ବାବଦ ଆବଣ୍ଟନ ଅର୍ଥ ମିଳିଲା) | ୨୦,୦୦୦ | | |
| | ୩୫,୦୦୦ | | ୩୫,୦୦୦ |
| ପୂର୍ବ ବାକୀ ବାବଦ | ୩୫,୦୦୦ | | |

ଖତିୟାନ

ଦାସ୍ତୀ — ଅଂଶ ଆବେଦନ ହିସାବ — ଦାତା

| | ଟଙ୍କା | | ଟଙ୍କା |
|---|---|---|---|
| ଅଂଶ ମୂଳଧନ ହିସାବ ବାବଦ | ୧୦,୦୦୦ | ବ୍ୟାଙ୍କ୍ ହିସାବ ବାବଦ | ୧୦,୦୦୦ |

ଦାସ୍ତୀ — ଅଂଶ ଆବଣ୍ଟନ ହିସାବ — ଦାତା

| | ଟଙ୍କା | | ଟଙ୍କା |
|---|---|---|---|
| ଅଂଶ ମୂଳଧନ ହିସାବ ବାବଦ | ୧୦,୦୦୦ | ବ୍ୟାଙ୍କ୍ ହିସାବ ବାବଦ | ୨୫,୦୦୦ |
| ଅଂଶ ଅଧିହାର ହିସାବ ବାବଦ | ୧୫,୦୦୦ | | |
| | ୨୫,୦୦୦ | | ୨୫,୦୦୦ |

ଅଂଶ ଅଧିହାର ହିସାବ — ଦାତା

| | ଟଙ୍କା | | ଟଙ୍କା |
|---|---|---|---|
| ବାକୀ ଗଡ଼ିଲା | ୧୫,୦୦୦ | ଅଂଶ ଆବଣ୍ଟନ ହି: ବାବଦ | ୧୫,୦୦୦ |
| | | ପୂର୍ବ ବାକୀ ବାବଦ | ୧୫,୦୦୦ |

| | | ଅଂଶ ମୂଳଧନ ହିସାବ | ଦାତା |
|---|---|---|---|
| | ଟଙ୍କା | | ଟଙ୍କା |
| ବାକି ଗଡ଼ିଲ | ୨୦,୦୦୦ | ଅଂଶ ଆବେଦନ ହି: ବାବଦ | ୧୦,୦୦୦ |
| | | ଅଂଶ ଆବଣ୍ଟନ ହି: ବାବଦ | ୧୦,୦୦୦ |
| | | | ୨୦,୦୦୦ |
| | | ପୂର୍ବ ବାକି ବାବଦ | ୨୦,୦୦୦ |
| | ୨୦,୦୦୦ | | |

ଉତ୍କଳ ଟାୟାର୍ସ ଲିମିଟେଡ୍‌ର
୧୯...ମସିହା...ତାରିଖର ଉଦ୍‌ବୃତ୍ତ ପତ୍ର

| ମୂଳଧନ ଓ ଦାୟ | ଟଙ୍କା | | ଟଙ୍କା |
|---|---|---|---|
| ଅଂଶ ମୂଳଧନ : | | ପରିସମ୍ପତ୍ତି | |
| ପ୍ରାଧିକୃତ ମୂଳଧନ : | | ଚଳନ୍ତି ପରିସମ୍ପତ୍ତି : | |
| ଅଂଶ ପ୍ରତି ଟ ୧୦ ହାରରେ | | ବ୍ୟାଙ୍କରେ ଗଚ୍ଛିତ ତହବିଲ | ୩୫,୦୦୦ |
| ୧,୦୦୦ ସାଧାରଣ ଅଂଶ | ୧,୦୦,୦୦୦ | | |
| ପ୍ରଚଳିତ ମୂଳଧନ | | | |
| ଅଂଶ ପ୍ରତି ଟ ୧୦ ହାରରେ | ୫୫,୦୦୦ | | |
| ୫,୫୦୦ ସାଧାରଣ ଅଂଶ | | | |
| ବିକ୍ରିତ ମୂଳଧନ | | | |
| ଅଂଶ ପ୍ରତି ଟ ୪ ହାରରେ | | | |
| ଆହୂତ ୫,୦୦୦ ସାଧାରଣ ଅଂଶ | ୨୦,୦୦୦ | | |
| ସଞ୍ଚିତି ଓ ବଳକା | | | |
| ଅଂଶ ଅଧିହାର ହିସାବ | ୧୫,୦୦୦ | | |
| | ୩୫,୦୦୦ | | ୩୫,୦୦୦ |

**ଅବହାରରେ ଅଂଶ ପ୍ରଚଳନ** ( Issue of Shares at a Discount ) ସାଧାରଣତଃ ବାଜ୍ୟାପ୍ତ କରାଯାଇଥିବା ଅଂଶ ( ମଦର ଅଲୋଚନ ଦେଖନ୍ତୁ ) ଓ ସମର୍ପିତ ଅଂଶକୁ ଅବହାରରେ ପ୍ରଚଳିତ କରାଯାଇଥାଏ । ଏହାର ଅର୍ଥ ହେଉଛି ଅଂଶର ଅଙ୍କିତ ମୂଲ୍ୟ ଅପେକ୍ଷା ନ୍ୟୂନତର ମୂଲ୍ୟରେ ଅଂଶ ବିକ୍ରୟ କରିବା । କମ୍ପାନୀ ଆଇନର ୭୯ ଧାରା ଅନୁଯାୟୀ କମ୍ପାନୀ ଏହାର ଅଂଶର ଅଙ୍କିତ ମୂଲ୍ୟଠାରୁ କମ ମୂଲ୍ୟରେ ଅଂଶ ପ୍ରଚଳିତ

କରିପାରେ । କିନ୍ତୁ ଏପରି କ୍ଷେତ୍ରରେ ଏହାକୁ ନିମ୍ନଲିଖିତ ସର୍ତ୍ତାବଳୀଗୁଡ଼ିକ ପାଳନ କରିବାକୁ ହୁଏ ।

(୧) ଅବହାରରେ ଅଂଶ ପ୍ରଚଳିତ କରିବା ପ୍ରସ୍ତାବ କମ୍ପାନୀର ସଭ୍ୟମାନଙ୍କଦ୍ୱାରା ସାଧାରଣ ସଭାରେ ଗୃହୀତ ହେବା ଆବଶ୍ୟକ ।

(୨) ଅଂଶର ଏଭଳି ପ୍ରଚଳନ ବିଚାରାଳୟର ଅନୁମୋଦନସାପେକ୍ଷ । ଏଭଳି ଅନୁମୋଦନ ପାଇବାର ୨ ମାସ ମଧ୍ୟରେ ଅଥବା ବିଚାରାଳୟଦ୍ୱାରା ଅନୁମୋଦିତ ବର୍ଦ୍ଧିତ ସମୟ ମଧ୍ୟରେ ଏହା ପ୍ରଚଳିତ ହେବା ଆବଶ୍ୟକ ।

(୩) କମ୍ପାନୀର କାର୍ଯ୍ୟାରମ୍ଭ ତାରିଖଠାରୁ ଏକ ବର୍ଷ ପରେ ଅଂଶ ଅବହାରରେ ପ୍ରଚଳିତ ହୋଇପାରେ ।

(୪) ଏହି ଅବହାରରେ ପରିମାଣ ଅଥବା ଶତକଡ଼ା ହାର ସାଧାରଣ ସଭାରେ ଅନୁମୋଦିତ ପ୍ରସ୍ତାବରେ ଲିପିବଦ୍ଧ ହେବା ଆବଶ୍ୟକ । ମାତ୍ର ଏହା ଶତକଡ଼ା ୧୦ରୁ ଊର୍ଦ୍ଧ୍ୱ ହୋଇପାରିବ ନାହିଁ । କେବଳ କେନ୍ଦ୍ରୀୟ ସରକାର ଶତକଡ଼ା ୧୦ରୁ ଊର୍ଦ୍ଧ୍ୱ ହାରରେ ଅଂଶ ପ୍ରଚଳନ କରିବା ପାଇଁ ଅନୁମତି ଦେଇପାରନ୍ତି ।

ଅଂଶ ବିକ୍ରୟ କରିବା ଉଦ୍ଦେଶ୍ୟରେ ଯେତେବେଳେ ଅନୁଷ୍ଠାନପତ୍ର ପତ୍ର ପ୍ରସ୍ତୁତ ହୁଏ ସେତେବେଳେ ବିଲୋପସାଧନ କରାଯାଇ ନ ଥିବା ଏହି ଅବହାରର ମୋଟ ପରିମାଣ ସମ୍ବନ୍ଧରେ ଏଥିରେ ବିବରଣ ରହିବା ଆବଶ୍ୟକ ।

କିନ୍ତୁ ଯେତେବେଳେ ବାଜ୍ୟାପ୍ତ କରାଯାଇଥିବା ଅଥବା ସମର୍ପିତ ଅଂଶକୁ ଅବହାରରେ ପୁନଃ ପ୍ରଚଳିତ କରାଯାଏ ସେତେବେଳେ ତାହା ପ୍ରତି ଉପରୋକ୍ତ ସର୍ତ୍ତାବଳୀଗୁଡ଼ିକ ପ୍ରଯୁଜ୍ୟ ହୁଏ ନାହିଁ ।

ଅବହାରରେ ଅଂଶ ପ୍ରଚଳନ କରାଗଲେ ତାହାର ହିସାବ ସ୍ୱତନ୍ତ୍ର ରୂପେ ଲିପିବଦ୍ଧ ହେବା ଆବଶ୍ୟକ । ଏହା ଲିପିବଦ୍ଧ କରିବା ପାଇଁ ଏକ ନୂତନ ହିସାବ ଖୋଲାଯାଏ, ଯାହାକୁ ଅଂଶ ଅବହାର ହିସାବ (Discount on Shares Account) କୁହାଯାଏ । ଏହା କମ୍ପାନୀର ଏକ କ୍ଷତି; ତେଣୁ ଅବହାର ପରିମାଣ ସକାଶେ ଏହି ହିସାବକୁ ଦାୟୀ କରାଯାଏ । ସାଧାରଣତଃ ଆବଣ୍ଟନ ସମୟରେ ଏହାର ସମାଯୋଜନ କରାଯାଏ । ଅବଶ୍ୟ ଶେଷ ଆହ୍ୱାନ ସମୟରେ ମଧ୍ୟ ଏହି ସମାଯୋଜନ କରାଯାଇପାରେ । ଏହି ପରିମାଣର ଅବଲେପନ ସକାଶେ କମ୍ପାନୀ ଆଇନରେ କୌଣସି ଉଲ୍ଲେଖ ନ ଥିଲେ ସୁଦ୍ଧା ବିଜ୍ଞ ନିର୍ଦ୍ଦେଶକମଣ୍ଡଳୀ ଏହାକୁ

କ୍ରମେ ଅବଲେପନ କରିବାର ବ୍ୟବସ୍ଥା କରନ୍ତି । ଅବଲୁପ୍ତ ନ ହୋଇଥିବା ଅବହାର ପରିମାଣ ଉଦ୍‌ବୃତ୍ତ ପତ୍ରର ବିବିଧ ବ୍ୟୟ ଶିରୋନାମା ଅଧୀନରେ ଏକ ସ୍ୱତନ୍ତ୍ର ବିଷୟ ରୂପେ ପ୍ରକାଶ କରାଯାଏ । ଏହାର ଅବଲେପନ ସମୟରେ ନିର୍ଦ୍ଦିଷ୍ଟ ପରିମାଣ ନିଟ ଲାଭ ଓ କ୍ଷତି ହିସାବର ଦାୟୀ ପାର୍ଶ୍ୱକୁ ସ୍ଥାନାନ୍ତରିତ କରାଯାଏ ।

ଏହିପରି ଅଂଶ ପ୍ରଚଳନର ଏକ ଦୃଷ୍ଟାନ୍ତ ନିମ୍ନରେ ପ୍ରଦତ୍ତ ହେଲା ।

ଦୃଷ୍ଟାନ୍ତ (୭)

କୋଣାର୍କ ଷ୍ଟିଲ୍‌ସ ଲିମିଟେଡ୍ ଅଂଶ ପ୍ରତି ଟ ୧୦୦ ହାରରେ ୧,୦୦୦ ସାଧାରଣ ଅଂଶ ୮% ଅବହାରରେ ପ୍ରଚଳନ କରିବା ପାଇଁ ଆବେଦନ ପତ୍ର ଆହ୍ୱାନ କରିଥିଲା । ଅବହାର ବାବଦ ପରିମାଣ ଆବଣ୍ଟନ ସହିତ ସମାଯୋଜିତ ହେବ । ଏହି ଅଂଶ ବାବଦ ଅର୍ଥ ନିମ୍ନ ପ୍ରକାରରେ ଦେୟ ଥିଲା :

| | ଟଙ୍କା |
|---|---|
| ଆବେଦନ ସହିତ | ୨୦ |
| ଆବଣ୍ଟନ ସହିତ | ୨୨ |
| ପ୍ରଥମ ଆହ୍ୱାନ ବେଳେ | ୨୫ |
| ଶେଷ ଆହ୍ୱାନ ବେଳେ | ୨୫ |

୧,୦୦୦ ଅଂଶ ସକାଶେ ଆବେଦନ ପତ୍ର ମିଳିଥିଲା ଓ କମ୍ପାନୀ ସମ୍ପୃକ୍ତକ ଆବେଦନ ପତ୍ର ମଞ୍ଜୁର କରିଥିଲା । ବିଭିନ୍ନ କିସ୍ତି ବାବଦ ଅର୍ଥ ଯଥା ସମୟରେ ମିଳିଥିଲା ।

ଉପରୋକ୍ତ ନେଣ ଦେଣଗୁଡ଼ିକ ସକାଶେ ଜାବ୍‌ଦା, ରୋକଡ଼ ବହି ଓ ଖତିୟାନ ହିସାବ ପ୍ରସ୍ତୁତ କର । କମ୍ପାନୀର ପ୍ରାରମ୍ଭିକ ଉଦ୍‌ବୃତ୍ତ ପତ୍ର ମଧ୍ୟ ଦର୍ଶାଅ ।

## ସମାଧାନ

ଜାବ୍‌ଦା

| | | ଦାୟୀ ଟଙ୍କା | ଦାତା ଟଙ୍କା |
|---|---|---|---|
| ଅଂଶ ଆବେଦନ ହିସାବ | ଦାୟୀ | ୨୦,୦୦୦ | |
| ଅଂଶ ମୂଳଧନ ହିସାବ ବାବଦ | | | ୨୦,୦୦୦ |
| ( ନିର୍ଦ୍ଦେଶକମଣ୍ଡଳୀଙ୍କର...ତାରିଖର ପ୍ରସ୍ତାବ ଅନୁଯାୟୀ ଅଂଶ ପ୍ରତି ଟ ୨୦ ହାରରେ ୧,୦୦୦ ସାଧାରଣ ଅଂଶର ଆବେଦନ ଅର୍ଥ ଅଂଶ ମୂଳଧନ ହିସାବକୁ ସ୍ଥାନାନ୍ତରିତ ହେଲା) | | | |

| ବିବରଣୀ | ଦାୟୀ | ଦାତା |
|---|---|---|
| ଅଂଶ ଆବଣ୍ଟନ ହିସାବ ଦାୟୀ | ୨୨,୦୦୦ | |
| ଅଂଶ ଅବହାର ହିସାବ ଦାୟୀ | ୮,୦୦୦ | |
| ଅଂଶ ମୂଳଧନ ହିସାବ ବାବଦ | | ୩୦,୦୦୦ |
| ( ନିର୍ଦ୍ଦେଶକମଣ୍ଡଳୀଙ୍କର···ତାରିଖର ପ୍ରସ୍ତାବ ଅନୁଯାୟୀ ଅଂଶ ପ୍ରତି ଟ ୨୨ ହାରରେ ୧,୦୦୦ ସାଧାରଣ ଅଂଶର ଆବଣ୍ଟନ ଅର୍ଥ ସକାଶେ ଅଂଶ ମୂଳଧନ ହିସାବକୁ ଦାତା କରାଗଲା ଓ ଅଂଶ ପ୍ରତି ୮% ହାରରେ ଅବହାରକୁ ହିସାବଭୁକ୍ତ କରାଗଲା । | | |
| ଅଂଶ ପ୍ରଥମ ଆହ୍ୱାନ ହିସାବ ଦାୟୀ | ୨୫,୦୦୦ | |
| ଅଂଶ ମୂଳଧନ ହିସାବ ବାବଦ | | ୨୫,୦୦୦ |
| ( ନିର୍ଦ୍ଦେଶକମଣ୍ଡଳୀଙ୍କର···ତାରିଖର ପ୍ରସ୍ତାବ ଅନୁଯାୟୀ ଅଂଶ ପ୍ରତି ଟ ୨୫ ହାରରେ ୧୦୦୦ ସାଧାରଣ ଅଂଶ ବାବଦ ପ୍ରଥମ ଆହ୍ୱାନ ଅର୍ଥ ପାଇଁ ଅଂଶ ମୂଳଧନ ହିସାବକୁ ଦାତା କରାଗଲା ।) | | |
| ଅଂଶ ଶେଷ ଆହ୍ୱାନ ହିସାବ ଦାୟୀ | ୨୫,୦୦୦ | |
| ଅଂଶ ମୂଳଧନ ହିସାବ ବାବଦ | | ୨୫,୦୦୦ |
| ( ନିର୍ଦ୍ଦେଶକମଣ୍ଡଳୀଙ୍କର···ତାରିଖର ପ୍ରସ୍ତାବ ଅନୁଯାୟୀ ଅଂଶ ପ୍ରତି ଟ ୨୫ ହାରରେ ୧,୦୦୦ ସାଧାରଣ ଅଂଶର ଶେଷ ଆହ୍ୱାନ ଅର୍ଥ ସକାଶେ ଅଂଶ ମୂଳଧନ ହିସାବକୁ ଦାତା କରାଗଲା ।) | | |

| ଦାୟୀ | | ରୋକଡ଼ ବହି | ଦାତା |
|---|---|---|---|
| ଅଂଶ ଆବେଦନ ହିସାବ ବାବଦ | ଟଙ୍କା | | ଟଙ୍କା |
| (ଅଂଶ ପ୍ରତି ଟ ୨୦ ହାରରେ ୧,୦୦୦ ସାଧାରଣ ଅଂଶର ଆବେଦନ ଅର୍ଥ ମିଳିଲା) | ୨୦,୦୦୦ | | |
| ଅଂଶ ଆବଣ୍ଟନ ହିସାବ ବାବଦ (ଅଂଶ ପ୍ରତି ଟ ୨୨ ହାରରେ ୧,୦୦୦ ସାଧାରଣ ଅଂଶର ଆବଣ୍ଟନ ଅର୍ଥ ମିଳିଲା ) | ୨୨,୦୦୦ | | |

| ଦାୟୀ | | | ଦାତା |
|---|---|---|---|
| | ଟଙ୍କା | | ଟଙ୍କା |
| ଅଂଶ ପ୍ରଥମ ଆହ୍ୱାନ ହିସାବ ବାବଦ (ଅଂଶ ପ୍ରତି ଟ ୨୬ ହାରରେ ୧,୦୦୦ ସାଧାରଣ ଅଂଶର ପ୍ରଥମ ଆହ୍ୱାନ ଅର୍ଥ ମିଳିଲା ) | ୨୬,୦୦୦ | ବାକି ଗଡ଼ିଲା | ୫୨,୦୦୦ |
| ଅଂଶ ଶେଷ ଆହ୍ୱାନ ହିସାବ ବାବଦ (ଅଂଶ ପ୍ରତି ଟ ୨୬ ହାରରେ ୧,୦୦୦ ସାଧାରଣ ଅଂଶ ବାବଦ ଶେଷ ଆହ୍ୱାନ ଅର୍ଥ ମିଳିଲା ) | ୨୬,୦୦୦ | | |
| | ୫୨,୦୦୦ | | ୫୨,୦୦୦ |
| ପୂର୍ବ ବାକି ବାବଦ | ୫୨,୦୦୦ | | |

ଖତିୟାନ

| ଦାୟୀ | ଅଂଶ ଆବେଦନ ହିସାବ | | ଦାତା |
|---|---|---|---|
| | ଟଙ୍କା | | ଟଙ୍କା |
| ଅଂଶ ମୂଳଧନ ହି : ବାବଦ | ୨୦,୦୦୦ | ବ୍ୟାଙ୍କ୍ ହିସାବ ବାବଦ | ୨୦,୦୦୦ |

| ଦାୟୀ | ଅଂଶ ଆବଣ୍ଟନ ହିସାବ | | ଦାତା |
|---|---|---|---|
| | ଟଙ୍କା | | ଟଙ୍କା |
| ଅଂଶ ମୂଳଧନ ହିସାବ ବାବଦ | ୨୨,୦୦୦ | ବ୍ୟାଙ୍କ୍ ହିସାବ ବାବଦ | ୨୨,୦୦୦ |

| ଦାୟୀ | ଅଂଶ ପ୍ରଥମ ଆହ୍ୱାନ ହିସାବ | | ଦାତା |
|---|---|---|---|
| | ଟଙ୍କା | | ଟଙ୍କା |
| ଅଂଶ ମୂଳଧନ ହିସାବ ବାବଦ | ୨୬,୦୦୦ | ବ୍ୟାଙ୍କ୍ ହିସାବ ବାବଦ | ୨୬,୦୦୦ |

**ଦାୟୀ ଅଂଶ ଶେଷ ଆହ୍ୱାନ ହିସାବ ଦାତା**

| | ଟଙ୍କା | | ଟଙ୍କା |
|---|---|---|---|
| ଅଂଶ ମୂଳଧନ ହିସାବ ବାବଦ | ୨୫,୦୦୦ | ବ୍ୟାଙ୍କ୍ ହିସାବ ବାବଦ | ୨୫,୦୦୦ |

**ଦାୟୀ ଅଂଶ ଅବହାର ହିସାବ ଦାତା**

| | ଟଙ୍କା | | ଟଙ୍କା |
|---|---|---|---|
| ଅଂଶ ମୂଳଧନ ହିସାବ ବାବଦ | ୮,୦୦୦ | ବାକି ଗଡ଼ିଲା | ୮,୦୦୦ |
| ପୂର୍ବ ବାକି ବାବଦ | ୮,୦୦୦ | | |

**ଦାୟୀ ସାଧାରଣ ଅଂଶ ମୂଳଧନ ହିସାବ ଦାତା**

| | ଟଙ୍କା | | ଟଙ୍କା |
|---|---|---|---|
| ବାକି ଗଡ଼ିଲା | ୧,୦୦,୦୦୦ | ଅଂଶ ଆବେଦନ ହି: ବାବଦ | ୨୦,୦୦୦ |
| | | ଅଂଶ ଆବଣ୍ଟନ ହି: ବାବଦ | ୨୨,୦୦୦ |
| | | ଅଂଶ ଅବହାର ହି: ବାବଦ | ୮,୦୦୦ |
| | | ଅଂଶ ପ୍ରଥମ ଆହ୍ୱାନ ହିସାବ ବାବଦ | ୨୫,୦୦୦ |
| | | ଅଂଶ ଶେଷ ଆହ୍ୱାନ ହି:ବାବଦ | ୨୫,୦୦୦ |
| | ୧,୦୦,୦୦୦ | | ୧,୦୦,୦୦୦ |
| | | ପୂର୍ବ ବାକି ବାବଦ | ୧,୦୦,୦୦୦ |

**୧୯.........ତାରିଖର ଉଦ୍‌ବୃତ୍ତ ପତ୍ର**

| ମୂଳଧନ ଓ ଦାୟ | ଟଙ୍କା | ପରିସମ୍ପତ୍ତି | ଟଙ୍କା |
|---|---|---|---|
| ଅଂଶ ମୂଳଧନ : | | ବ୍ୟାଙ୍କରେ ଗଚ୍ଛିତ ତହବିଲ | ୯୨,୦୦୦ |
| ପ୍ରାଧିକୃତ ମୂଳଧନ | | ଅଂଶ ପ୍ରତି ଟ ୮ ହାରରେ ୧,୦୦୦ ସାଧାରଣ ଅଂଶର ଅବହାର | ୮,୦୦୦ |
| ପ୍ରଚଳିତ ମୂଳଧନ ( ପୂର୍ବ ପ୍ରଚଳିତ ଅଂଶ ସମେତ ) | | | |
| ଅଂଶ ପ୍ରତି ଟ ୧୦୦ ହାରରେ ୧,୦୦୦ ସାଧାରଣ ଅଂଶ— ପୂର୍ଣ୍ଣ ଆଦାୟୀକୃତ | ୧,୦୦,୦୦୦ | | |
| | ୧,୦୦,୦୦୦ | | ୧,୦୦,୦୦୦ |

**ବକେୟା ଅହ୍ୱାନ ଅର୍ଥ** (Calls in Arrear)—

କମ୍ପାନୀ ଆବଣ୍ଟନ ଓ ବିଭିନ୍ନ ଆହ୍ୱାନ ମାଧ୍ୟମରେ ଅଂଶ ବାବଦ ଅବଶିଷ୍ଟ ମୂଲ୍ୟ ଅଂଶଧାରୀମାନଙ୍କଠାରୁ ଆଦାୟ କରେ । କିନ୍ତୁ କେତେକ କ୍ଷେତ୍ରରେ ବିଭିନ୍ନ କାରଣ ଯୋଗୁ କେତେକ ଅଂଶଧାରୀ ଆବଣ୍ଟନ ଅଥବା ଆହ୍ୱାନ ବାବଦ ଅର୍ଥ ଯଥା ସମୟରେ ଦେବାକୁ ଅକ୍ଷମ ହୁଅନ୍ତି । ଏହାକୁ ବକେୟା ଆହ୍ୱାନ ଅର୍ଥ କୁହାଯାଏ । ଯେଉଁ ପରିମାଣର ଆବଣ୍ଟନ ଅର୍ଥ ଅଥବା ଆହ୍ୱାନ ଅର୍ଥ ମିଳେ ନାହିଁ ତାହା ସେହି ସେହି ହିସାବମାନଙ୍କରେ ଦାୟୀ ବାକି ରୂପେ ରହିଯାଏ । ଯେତେବେଳେ ଉଦ୍‌ବୃତ୍ତ ପତ୍ର ପ୍ରସ୍ତୁତ କରାଯାଏ ସେତେବେଳେ ଏହି ଦାୟୀ ବାକିକୁ ଉଦ୍‌ବୃତ୍ତ ପତ୍ରର ପରିସମ୍ପତ୍ତି ପାର୍ଶ୍ୱରେ ଲେଖା ନ ଯାଇ ଅଂଶ ବାବଦ ଆଦାୟକୃତ ଅର୍ଥରୁ ବିୟୁକ୍ତ କରି ଦେଖାଇବାକୁ ହୁଏ । କମ୍ପାନୀ ଆଇନ ଅନୁଯାୟୀ କମ୍ପାନୀ ଏହି ବକେୟା ଆହ୍ୱାନ ଅର୍ଥ ଉପରେ ଶତକଡ଼ା ୫ ହାରରେ ସୁଧ ଆଦାୟ କରିପାରେ । ମାତ୍ର ଯଦି କମ୍ପାନୀର ପରିମେଳ ନିୟମାବଳୀରେ ଅନ୍ୟ ନିର୍ଦ୍ଦେଶ ଥାଏ ତାହାହେଲେ ତାହା ହିଁ ଅଗ୍ରାଧିକାର ଲଭ କରିବ । ଏହାର ଏକ ଦୃଷ୍ଟାନ୍ତ ନିମ୍ନରେ ପ୍ରଦତ୍ତ ହେଲା ।

ଦୃଷ୍ଟାନ୍ତ (୮)

କଖଗ କମ୍ପାନୀ ଲିମିଟେଡ଼ର ପ୍ରାଧିକୃତ ଅର୍ଥ ଟ ୫୦,୦୦୦ ଥିଲା ଓ ଏହା ଅଂଶ ପ୍ରତି ଟ ୧୦ ହାରରେ ୫,୦୦୦ ସାଧାରଣ ଅଂଶରେ ବିଭକ୍ତ ହୋଇଥିଲା । ଏହାର ଅଂଶ ବାବଦ ଅର୍ଥ ନିମ୍ନଲିଖିତ ରୂପେ ଦେୟ ଥିଲା :

| | |
|---|---|
| ଆବେଦନ ପତ୍ର ସହିତ | ୨୦% |
| ଆବଣ୍ଟନ ବେଳେ | ୩୦% |
| ପ୍ରଥମ ଆହ୍ୱାନବେଳେ | ୨୫% |
| ଶେଷ ଆହ୍ୱାନବେଳେ | ୨୫% |

କମ୍ପାନୀ ସବୁଗୁଡ଼ିକ ଅଂଶ ପ୍ରଚଳନ ପାଇଁ ଜନସାଧାରଣଙ୍କୁ ଆହ୍ୱାନ କରିଥିଲା ଏବଂ ସବୁ ଅଂଶ ବଣ୍ଟିତ ହୋଇଥିଲା । ସବୁଗୁଡ଼ିକ ଅଂଶ ବାବଦ ଆବଣ୍ଟନ ଅର୍ଥ ପ୍ରଥମ ଓ ଶେଷ ଆହ୍ୱାନ ଅର୍ଥ ମିଳିଲା କେବଳ ୧୦୦ ଗୋଟି ଅଂଶ ବାବଦ ପ୍ରଥମ ଆହ୍ୱାନ ଅର୍ଥ ଓ ୨୦୦ ଅଂଶ ବାବଦ ଶେଷ ଆହ୍ୱାନ ଅର୍ଥ ମିଳିଲା ନାହିଁ ।

ଆବଶ୍ୟକ ଜାବ୍‌ଦା, ରେକଡ଼ ବହି, ଖତିୟାନ ହିସାବ ପ୍ରସ୍ତୁତ କର ଓ କମ୍ପାନୀର ପ୍ରାରମ୍ଭିକ ଉଦ୍‌ବୃତ୍ତ ପତ୍ର ମଧ୍ୟ ଦର୍ଶାଅ ।

**ସମାଧାନ**

| ଜାବ୍ଦା | ଦାୟୀ | ଦାତା |
|---|---|---|
| | ଟଙ୍କା | ଟଙ୍କା |
| ଅଂଶ ଆବେଦନ ହିସାବ ଦାୟୀ | ୧୦,୦୦୦ | |
| ଅଂଶ ମୂଳଧନ ହିସାବ ବାବଦ | | ୧୦,୦୦୦ |
| (ଅଂଶ ପ୍ରତି ଟ୨ ହାରରେ ୫,୦୦୦ ସାଧାରଣ ଅଂଶର ଆବେଦନ ଅର୍ଥ ଅଂଶ ମୂଳଧନ ହିସାବକୁ ସ୍ଥାନାନ୍ତରିତ ହେଲା ନିର୍ଦ୍ଦେଶକମଣ୍ଡଳୀଙ୍କର···ତାରିଖ ପ୍ରସ୍ତାବକ୍ରମେ ) | | |
| ଅଂଶ ଆବଣ୍ଟନ ହିସାବ ଦାୟୀ | ୧୫,୦୦୦ | |
| ଅଂଶ ମୂଳଧନ ହିସାବ ବାବଦ | | ୧୫,୦୦୦ |
| (ଅଂଶ ପ୍ରତି ଟ୩ ହାରରେ ୫,୦୦୦ ସାଧାରଣ ଅଂଶର ଆବଣ୍ଟନ ଅର୍ଥ ନିର୍ଦ୍ଦେଶକମଣ୍ଡଳୀଙ୍କର···ତାରିଖର ପ୍ରସ୍ତାବ ଅନୁଯାୟୀ ପ୍ରାପ୍ୟ ହେଲା ।) | | |
| ଅଂଶ ପ୍ରଥମ ଆହ୍ୱାନ ହିସାବ ଦାୟୀ | ୧୨,୫୦୦ | |
| ଅଂଶ ମୂଳଧନ ହିସାବ ବାବଦ | | ୧୨,୫୦୦ |
| (ଅଂଶ ପ୍ରତି ଟ୨.୫୦ ପ. ହାରରେ ୫,୦୦୦ ସାଧାରଣ ଅଂଶର ପ୍ରଥମ ଆହ୍ୱାନ ଅର୍ଥ ନିର୍ଦ୍ଦେଶକମଣ୍ଡଳୀଙ୍କର...ତାରିଖର ପ୍ରସ୍ତାବକ୍ରମେ ପ୍ରାପ୍ୟ ହେଲା । ) | | |
| ଅଂଶ ଶେଷ ଆହ୍ୱାନ ହିସାବ ଦାୟୀ | ୧୨,୫୦୦ | |
| ଅଂଶ ମୂଳଧନ ହିସାବ ବାବଦ | | ୧୨,୫୦୦ |
| (ଅଂଶ ପ୍ରତି ଟ୨.୫୦ ପ. ହାରରେ ୫,୦୦୦ ସାଧାରଣ ଅଂଶ ବାବଦ ଶେଷ ଆହ୍ୱାନ ଅର୍ଥ ନିର୍ଦ୍ଦେଶକମଣ୍ଡଳୀଙ୍କର···· ତାରିଖର ପ୍ରସ୍ତାବକ୍ରମେ ପ୍ରାପ୍ୟ ହେଲା ) | | |

## ରୋକଡ଼ ବହି (ବ୍ୟାଙ୍କସ୍ତମ୍ଭ)

| ଡାଯ୍ନୀ | ଟଙ୍କା | ଜମା | ଟଙ୍କା |
|---|---|---|---|
| ଅଂଶ ଆବେଦନ ହି: ବାବଦ (ଅଂଶ ପ୍ରତି ଟ ୨ ହାରରେ ୫,୦୦୦ ସାଧାରଣ ଅଂଶର ଆବେଦନ ଅର୍ଥ ମିଳିଲା) | ୧୦,୦୦୦ | ବାକୀ ଗଡ଼ିଲା | ୪୯,୨୫୦ |
| ଅଂଶ ଆବଣ୍ଟନ ହି: ବାବଦ (ଅଂଶ ପ୍ରତି ଟ ୩ ହାରରେ ୫,୦୦୦ ସାଧାରଣ ଅଂଶର ଆବଣ୍ଟନ ଅର୍ଥ ମିଳିଲା) | ୧୫,୦୦୦ | | |
| ଅଂଶ ପ୍ରଥମ ଆହ୍ୱାନ ହି: ବାବଦ (ଅଂଶ ପ୍ରତି ଟ ୨.୫୦ ପ. ହାରରେ ୪,୯୦୦ ଅଂଶର ପ୍ରଥମ ଆହ୍ୱାନ ଅର୍ଥ ମିଳିଲା) | ୧୨,୨୫୦ | | |
| ଅଂଶ ଶେଷ ଆହ୍ୱାନ ହି: ବାବଦ (ଅଂଶ ପ୍ରତି ଟ ୨.୫୦ ପ. ହାରରେ ୪,୮୦୦ ଅଂଶର ଶେଷ ଆହ୍ୱାନ ଅର୍ଥ ମିଳିଲା) | ୧୨,୦୦୦ | | |
| | ୪୯,୨୫୦ | | ୪୯,୨୫୦ |
| ପୂର୍ବ ବାକୀ ବାବଦ | ୪୯,୨୫୦ | | |

### ଖତିୟାନ

### ଅଂଶ ଆବେଦନ ହିସାବ

| ଡାଯ୍ନୀ | ଟଙ୍କା | ଜମା | ଟଙ୍କା |
|---|---|---|---|
| ଅଂଶ ମୂଳଧନ ହି: ବାବଦ | ୧୦,୦୦୦ | ବ୍ୟାଙ୍କ ହି: ବାବଦ | ୧୦,୦୦୦ |

### ଦାୟୀ — ଅଂଶ ଆବଣ୍ଟନ ହିସାବ — ଦାତା

| ଦାୟୀ | ଟଙ୍କା | ଦାତା | ଟଙ୍କା |
|---|---|---|---|
| ଅଂଶ ମୂଳଧନ ହି: ବାବଦ | ୧୫,୦୦୦ | ବ୍ୟାଙ୍କ୍ ହିସାବ ବାବଦ | ୧୫,୦୦୦ |

### ଦାୟୀ — ଅଂଶ ପ୍ରଥମ ଆହ୍ୱାନ ହିସାବ — ଦାତା

| ଦାୟୀ | ଟଙ୍କା | ଦାତା | ଟଙ୍କା |
|---|---|---|---|
| ଅଂଶ ମୂଳଧନ ହି: ବାବଦ | ୧୨,୫୦୦ | ବ୍ୟାଙ୍କ୍ ହି: ବାବଦ | ୧୨,୨୫୦ |
| | | ବାକୀ ଗଡ଼ିଲ | ୨୫୦ |
| | ୧୨,୫୦୦ | | ୧୨,୫୦୦ |
| ପୂର୍ବ ବାକୀ ବାବଦ | ୨୫୦ | | |

### ଦାୟୀ — ଅଂଶ ଶେଷ ଆହ୍ୱାନ ହିସାବ — ଦାତା

| ଦାୟୀ | ଟଙ୍କା | ଦାତା | ଟଙ୍କା |
|---|---|---|---|
| ଅଂଶ ମୂଳଧନ ହି: ବାବଦ | ୧୨,୫୦୦ | ବ୍ୟାଙ୍କ୍ ହି: ବାବଦ | ୧୨,୦୦୦ |
| | | ବାକୀ ଗଡ଼ିଲ | ୫୦୦ |
| | ୧୨,୫୦୦ | | ୧୨,୫୦୦ |
| ପୂର୍ବ ବାକୀ ବାବଦ | ୫୦୦ | | |

### ଦାୟୀ — ଅଂଶ ମୂଳଧନ ହିସାବ — ଦାତା

| ଦାୟୀ | ଟଙ୍କା | ଦାତା | ଟଙ୍କା |
|---|---|---|---|
| ବାକୀ ଗଡ଼ିଲ | ୫୦,୦୦୦ | ଅଂଶ ଆବେଦନ ହି: ବାବଦ | ୧୦,୦୦୦ |
| | | ଅଂଶ ଆବଣ୍ଟନ ହି: ବାବଦ | ୧୫,୦୦୦ |
| | | ଅଂଶ ପ୍ରଥମ ଆହ୍ୱାନ ହି: ବାବଦ | ୧୨,୫୦୦ |
| | | ଅଂଶ ଶେଷ ଆହ୍ୱାନ ହି: ବାବଦ | ୧୨,୫୦୦ |
| | ୫୦,୦୦୦ | | ୫୦,୦୦୦ |
| | | ପୂର୍ବ ବାକୀ ବାବଦ | ୫୦,୦୦୦ |

## କଖଗ କମ୍ପାନୀ ଲିମିଟେଡ୍‌ର

### ୧୯...ମସିହା...ତାରିଖର ଉଦ୍‌ବୃତ୍ତ ପତ୍ର

| ମୂଳଧନ ଓ ଦାୟ | ଟଙ୍କା | ଟଙ୍କା | ପରିସମ୍ପତ୍ତି | ଟଙ୍କା |
|---|---|---|---|---|
| ଅଂଶ ମୂଳଧନ : | | | ଚଳନ୍ତି ସମ୍ପତ୍ତି | |
| ପ୍ରାଧିକୃତ ମୂଳଧନ | | | ବ୍ୟାଙ୍କ୍‌ରେ ଗଚ୍ଛିତ ତହବିଲ | ୪୯,୨୫୦ |
| ଅଂଶ ପ୍ରତି ଟ୧୦ ହାରରେ ୫,୦୦୦ | | | | |
| ସାଧାରଣ ଅଂଶ | | ୫୦,୦୦୦ | | |
| ପ୍ରଚଳିତ ଓ ବାଣ୍ଟିତ ମୂଳଧନ | | | | |
| ଅଂଶ ପ୍ରତି ଟ୧୦ ହାରରେ | | | | |
| ୫,୦୦୦ ସାଧାରଣ ଅଂଶ— | | | | |
| ସମ୍ପୂର୍ଣ୍ଣ ଆହୂତ | ୫୦,୦୦୦ | | | |
| ବିଯୁକ୍ତ : ବକେୟା ଆହ୍ୱାନ | | | | |
| ଅର୍ଥ | ୭୫୦ | ୪୯,୨୫୦ | | |
| | | ୪୯,୨୫୦ | | ୪୯,୨୫୦ |

କେତେକ ହିସାବରକ୍ଷକ ବକେୟା ଆହ୍ୱାନକୁ ହିସାବଭୁକ୍ତ କରିବା ପାଇଁ ବକେୟା ଆହ୍ୱାନ ହିସାବ ନାମକ ଏକ ହିସାବ ଖୋଲନ୍ତି । ତାହା କରିଗଲେ ବକେୟା ଥିବା ଆବଣ୍ଟନ ଅଥବା ପ୍ରଥମ ଆହ୍ୱାନ ଅଥବା ଶେଷ ଆହ୍ୱାନ ଅର୍ଥ ସେହି ସେହି ହିସାବଗୁଡ଼ିକର ଦାୟୀ ବାକି ରୂପେ ପ୍ରକାଶିତ ନ ହୋଇ ଏହି ନୂତନ ହିସାବକୁ ସ୍ଥାନାନ୍ତରିତ କରିଯାଏ । ସୁତରାଂ ଆବଣ୍ଟନ ଅଥବା ପ୍ରଥମ ଆହ୍ୱାନ ଅଥବା ଶେଷ ଆହ୍ୱାନ ହିସାବରେ କୌଣସି ବାକି ରହେ ନାହିଁ ଓ ଉକ୍ତ ହିସାବଗୁଡ଼ିକ ବନ୍ଦ ହୋଇଯାଏ । ବକେୟା ଆହ୍ୱାନ ହିସାବର ଦାୟୀ ବାକି ଉଦବୃତ୍ତ ପତ୍ରରେ ପୂର୍ବବତ୍ ମୋଟ ଆହୂତ ଅର୍ଥରୁ ବାଦ ଦିଆଯାଏ ଓ ନେଟ୍ ଆଦାୟୀକୃତ ଅର୍ଥ ଉଦ୍‌ବୃତ୍ତ ପତ୍ରର ବହିଃସ୍ଥ ସ୍ତମ୍ଭରେ ପ୍ରକାଶିତ ହୁଏ ।

ଏହି ପ୍ରଣାଳୀ ଅନୁଯାୟୀ ଉପରୋକ୍ତ ଦୃଷ୍ଟାନ୍ତର ସମାଧାନ କରିଗଲେ ଦୁଇଟି ଅଧିକା ଜାବ୍‌ଦା ପ୍ରସ୍ତୁତ କରିଯିବା ଆବଶ୍ୟକ । ତାହା ନିମ୍ନରେ ପ୍ରଦତ୍ତ ହେଲା ।

| ଜାବ୍ଦା | ଦାୟୀ | ଦାତା |
|---|---|---|
| | ଟଙ୍କା | ଟଙ୍କା |
| ବକେୟା ଆହ୍ୱାନ ହିସାବ ଦାୟୀ | ୨୫୦ | |
| ଅଂଶ ପ୍ରଥମ ଆହ୍ୱାନ ହିସାବ ବାବଦ | | ୨୫୦ |
| (ଅଂଶ ପ୍ରତି ଟ ୨.୫୦ ପ. ହାରରେ ୧୦୦ ସାଧାରଣ ଅଂଶର ପ୍ରଥମ ଆହ୍ୱାନ ଅର୍ଥ ନ ମିଳିବା ହେତୁ ତାହା ପାଇଁ ବକେୟା ଆହ୍ୱାନ ହିସାବକୁ ଦାୟୀ କରାଗଲା) | | |
| ବକେୟା ଆହ୍ୱାନ ହିସାବ ଦାୟୀ | ୫୦୦ | |
| ଅଂଶ ଶେଷ ଆହ୍ୱାନ ହିସାବ ବାବଦ | | ୫୦୦ |
| (ଅଂଶ ପ୍ରତି ଟ ୨.୫୦ ପ. ହାରରେ ୨୦୦ ସାଧାରଣ ଅଂଶର ଶେଷ ଆହ୍ୱାନ ଅର୍ଥ ନ ମିଳିବାରୁ ସେଥି ସକାଶେ ବକେୟା ଆହ୍ୱାନ ହିସାବକୁ ଦାୟୀ କରାଗଲା) | | |

ଅବଶ୍ୟ ଏହି ଦୁଇଟି ଜାବ୍ଦାକୁ ଗୋଟିଏ ଜାବ୍ଦାରେ ଏକତ୍ରିତ କରାଯାଇପାରେ, ଯଥା—

| | ଟଙ୍କା | ଟଙ୍କା |
|---|---|---|
| ବକେୟା ଆହ୍ୱାନ ହିସାବ ଦାୟୀ | ୭୫୦ | |
| ଅଂଶ ପ୍ରଥମ ଆହ୍ୱାନ ହିସାବ ବାବଦ | | ୨୫୦ |
| ଅଂଶ ଶେଷ ଆହ୍ୱାନ ହିସାବ ବାବଦ | | ୫୦୦ |

ଏହି ଜାବ୍ଦା ଲେଖାଯିବା ଫଳରେ ପ୍ରଥମ ଆହ୍ୱାନ ହିସାବ ଓ ଶେଷ ଆହ୍ୱାନ ହିସାବରେ ନିମ୍ନଲିଖିତ ପରିବର୍ତ୍ତନ ହେବ ଓ ବକେୟା ଆହ୍ୱାନ ହିସାବ ନିମ୍ନୋକ୍ତ ପ୍ରକାରରେ ପ୍ରସ୍ତୁତ କରାଯିବ :

ଦାୟୀ ଅଂଶ ପ୍ରଥମ ଆହ୍ୱାନ ହିସାବ ଦାତା

| | ଟଙ୍କା | | ଟଙ୍କା |
|---|---|---|---|
| ଅଂଶ ମୂଳଧନ ହି: ବାବଦ | ୧୨,୫୦୦ | ବ୍ୟାଙ୍କ୍ ହିସାବ ବାବଦ | ୧୨,୨୫୦ |
| | | ବକେୟା ଆହ୍ୱାନ ହି: ବାବଦ | ୨୫୦ |
| | ୧୨,୫୦୦ | | ୧୨,୫୦୦ |

| ଦାୟୀ | ଅଂଶ ଶେଷ ଆହ୍ୱାନ ହିସାବ | | ଦାତା |
|---|---|---|---|
| | ଟଙ୍କା | | ଟଙ୍କା |
| ଅଂଶ ମୂଳଧନ ହିଃ ବାବଦ | ୧୨,୫୦୦ | ବ୍ୟାଙ୍କ୍ ହିସାବ ବାବଦ | ୧୨,୦୦୦ |
| | | ବକେୟା ଆହ୍ୱାନ ହିଃ ବାବଦ | ୫୦୦ |
| | ୧୨,୫୦୦ | | ୧୨,୫୦୦ |

| ଦାୟୀ | ବକେୟା ଆହ୍ୱାନ ହିସାବ | | ଦାତା |
|---|---|---|---|
| | ଟଙ୍କା | | ଟଙ୍କା |
| ଅଂଶ ପ୍ରଥମ ଆହ୍ୱାନ ହିଃ ବାବଦ | ୨୫୦ | ବାକୀ ଗଡ଼ିଲା | ୭୫୦ |
| ଅଂଶ ଶେଷ ଆହ୍ୱାନ ହିଃ ବାବଦ | ୫୦୦ | | |
| | ୭୫୦ | | ୭୫୦ |
| ପୂର୍ବ ବାକୀ ବାବଦ | ୭୫୦ | | |

**ଅଂଶ ବାଜ୍ୟାପ୍ତ କରଣ** (Forfeiture of Share)—

ଯଦି କୌଣସି ଅଂଶଧାରୀ ଅଂଶ ବାବଦ ତାଙ୍କର ଦେୟ ଅର୍ଥ ଆବଣ୍ଟନ ପରେ ଅଥବା କୌଣସି ଆହ୍ୱାନ ପରେ ଦେବାକୁ ଅକ୍ଷମ ହୁଅନ୍ତି, ତାହାହେଲେ କମ୍ପାନୀ ଆଇନ ଅନୁଯାୟୀ ସେହି ଅନାଦାୟୀ ଅଂଶଗୁଡ଼ିକୁ ବାଜ୍ୟାପ୍ତ କରିପାରେ । କୌଣସି ଅଂଶ ବା ଅଂଶ-ସମୂହ ବାଜ୍ୟାପ୍ତ କରାଗଲେ ଅଂଶଧାରୀଙ୍କର ନାମ ସଭ୍ୟତାଲିକାରୁ ଅପସାରିତ କରାଯାଏ । ଅଂଶଧାରୀ ସେହି ଅଂଶ ବାବଦ ଦେଇଥିବା ଅର୍ଥ ଉପରେ ତାଙ୍କର ଆଉ କୌଣସି ଦାବୀ ରହେ ନାହିଁ । ଏହି ଅର୍ଥ କମ୍ପାନୀ ନିଧିରେ ଜମା ହୁଏ । ଅବଶ୍ୟ କମ୍ପାନୀର ପରିମେଳ ବନ୍ଧରେ ଅଂଶ ବାଜ୍ୟାପ୍ତକରଣ ସମ୍ବନ୍ଧରେ ଉଲ୍ଲେଖ ନ ଥିଲେ କମ୍ପାନୀ ତାହା କରିପାରିବ ନାହିଁ । ଏଭଳି ବିଧାନ ଥିଲେ ମଧ୍ୟ କମ୍ପାନୀ ଆଇନର ୨୨ ଧାରାଅନୁଯାୟୀ ଅଂଶ ବାଜ୍ୟାପ୍ତ କରିବା ପୂର୍ବରୁ କମ୍ପାନୀକୁ ନିମ୍ନଲିଖିତ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବାକୁ ହେବ ।

ନିର୍ଦ୍ଦେଶକମଣ୍ଡଳୀ ଉକ୍ତ ଅଂଶଧାରୀଙ୍କୁ ସୁଧ ସମେତ ତାଙ୍କର ଅଂଶ ବାବଦ ବକେୟା ଆବଣ୍ଟନ ଅଥବା ଆହ୍ୱାନ ଅର୍ଥ ଏକ ନିର୍ଦ୍ଦିଷ୍ଟ ତାରିଖ ମଧ୍ୟରେ ପରିଶୋଧ କରିବା ପାଇଁ ଏକ ସୂଚନା ଦେବେ । ଏହି ନିର୍ଦ୍ଦିଷ୍ଟ ତାରିଖ ସୂଚନାର ତାରିଖଠାରୁ ନ୍ୟୂନ ପକ୍ଷେ ୧୪ ଦିନ ପରେ ହେବା ଆବଶ୍ୟକ । ସେହି ସୂଚନାରେ ଏହା ମଧ୍ୟ ଉକ୍ତ ହେବା ଆବଶ୍ୟକ ଯେ ନିର୍ଦ୍ଦିଷ୍ଟ ତାରିଖରେ ଅଥବା ତାହା ପୂର୍ବରୁ ସୁଧ ସମେତ ବକେୟା ଆବଣ୍ଟନ ଅଥବା ଆହ୍ୱାନ ଅର୍ଥ ନ ମିଳିଲେ ସଂଶ୍ଳିଷ୍ଟ ଅଂଶ ଅଥବା ଅଂଶସମୂହ ବାଜ୍ୟାପ୍ତ କରାଯିବ । ନିର୍ଦ୍ଦିଷ୍ଟ ତାରିଖ

ଟଙ୍କ ଦେବା ପରେ ଯଦି ଏହି ବକେୟା ଅର୍ଥ ନ ମିଳେ ତାହାହେଲେ ଅଂଶ ବା ଅଂଶଗୁଡ଼ିକ ବାଜ୍ୟାପ୍ତ କରାଯିବ ।

ଅଂଶ ବାଜ୍ୟାପ୍ତ କରାଗଲେ ହିସାବ ବହିରେ ନିମ୍ନଲିଖିତ ପ୍ରବିଷ୍ଟି କରାଯିବା ଆବଶ୍ୟକ :

| | | |
|---|---|---|
| ଅଂଶ ମୂଳଧନ ହିସାବ | ଦାୟୀ | (ଅଦିତ୍ତ ହୋଇଥିବା ଅର୍ଥ ସକାଶେ) |
| ଅଂଶ ଆବଣ୍ଟନ ହିସାବ ବାବଦ | | (ଅଂଶ ପ୍ରତି ଆବଣ୍ଟନ ଅର୍ଥ ହାରରେ) |
| ଅଂଶ ପ୍ରଥମ ଆହ୍ୱାନ ହିସାବ ବାବଦ | | (ଅଂଶ ପ୍ରତି ପ୍ରଥମ ଆହ୍ୱାନ ଅର୍ଥ ହାରରେ) |
| ଅଂଶ ଶେଷ ଆହ୍ୱାନ ହିସାବ ବାବଦ | | (ଅଂଶ ପ୍ରତି ଶେଷ ଆହ୍ୱାନ ଅର୍ଥ ହାରରେ) |
| ବାଜ୍ୟାପ୍ତ ଅଂଶ ହିସାବ ବାବଦ | | (ଆଦାୟୀକୃତ ଅର୍ଥ ସକାଶେ) |

ଯଦି ଅଂଶ ଆବଣ୍ଟନ, ପ୍ରଥମ ଆହ୍ୱାନ ଓ ଶେଷ ଆହ୍ୱାନ ବନ୍ଦ କରାଯାଇ ଉକ୍ତ ହିସାବଗୁଡ଼ିକର ଦାୟୀ ବାକିକୁ ବକେୟା ଆହ୍ୱାନ ହିସାବକୁ ସ୍ଥାନାନ୍ତରିତ କରାଯାଇଥାଏ, ତାହାହେଲେ ନିମ୍ନଲିଖିତ ଜାବ୍ଦା ପ୍ରସ୍ତୁତ କରାଯିବ :

| | |
|---|---|
| ଅଂଶ ମୂଳଧନ ହିସାବ | ଦାୟୀ |
| ବକେୟା ଆହ୍ୱାନ ହିସାବ ବାବଦ | |

ଏହାର ଦୃଷ୍ଟାନ୍ତ ନିମ୍ନରେ ପ୍ରଦତ୍ତ ହେଲା ।

### ଦୃଷ୍ଟାନ୍ତ (୧)

ଓଡ଼ିଶା ମେଟାଲସ୍ ଲିମିଟେଡ୍ ଅଂଶ ପ୍ରତି ଟ ୧୦୦ ହାରରେ ୧,୦୦୦ ସାଧାରଣ ଅଂଶ ସକାଶେ ଆବେଦନପତ୍ର ଆହ୍ୱାନ କରିଥିଲେ । ଅଂଶର ମୂଲ୍ୟ ନିମ୍ନୋକ୍ତମତେ ଦେୟ ଥିଲା :

| | |
|---|---|
| ଆବେଦନ ସହିତ | ଟ ୨୦ |
| ଆବଣ୍ଟନ ହେଲେ | ଟ ୪୦ |
| ପ୍ରଥମ ଆହ୍ୱାନ ଦିଆଗଲେ | ଟ ୨୦ |
| ଶେଷ ଆହ୍ୱାନ ଦିଆଗଲେ | ଟ ୨୦ |

ସବୁଗୁଡ଼ିକ ଅଂଶ ବଣ୍ଟିତ ହୋଇଥିଲା ଓ ୧୦୦ ଗୋଟି ଅଂଶ ବ୍ୟତୀତ ଅନ୍ୟ ସମସ୍ତ ଅଂଶ ବାବଦ ଅର୍ଥ ଆଦାୟ ହୋଇଥିଲା । ଏହି ୧୦୦ ଗୋଟି ଅଂଶ ବାବଦ ଶେଷ ଆହ୍ୱାନ ଅର୍ଥ ମିଳି ନ ଥିଲା । କମ୍ପାନି ଏହି ୧୦୦ ଗୋଟି ଅଂଶକୁ ବାଜ୍ୟାପ୍ତ କରିଥିଲେ ।

ବାଜ୍ୟାପ୍ତକରଣ ସମ୍ବନ୍ଧୀୟ ଜାବ୍ଦା ଲେଖ ।

## ସମାଧାନ

ଜାବ୍ଦା

| | | ଦାୟୀ | ଦାତା |
|---|---|---|---|
| | | ଟଙ୍କା | ଟଙ୍କା |
| ଅଂଶ ମୂଳଧନ ହିସାବ | ଦାୟୀ | ୧୦,୦୦୦ | |
| ଅଂଶ ଶେଷ ଆହ୍ୱାନ ହିସାବ ବାବଦ | | | ୨,୦୦୦ |
| ବାଜ୍ୟାପ୍ତ ଅଂଶ ହିସାବ ବାବଦ | | | ୮,୦୦୦ |
| (ଅଂଶ ପ୍ରତି ଟ ୨୦ ହାରରେ ୧୦୦ ଗୋଟି ସାଧାରଣ ଅଂଶ ବାବଦ ଅଂଶ ଶେଷ ଆହ୍ୱାନ ଅର୍ଥ ନ ମିଳିବାରୁ ନିର୍ଦ୍ଦେଶକ-ମଣ୍ଡଳୀଙ୍କର · ତାରଖର ପ୍ରସ୍ତାବକ୍ରମେ ୧୦୦ ଗୋଟି ଅଂଶ ବାଜ୍ୟାପ୍ତ କରାଗଲା । ) | | | |

### ଦୃଷ୍ଟାନ୍ତ (୧୦)

ଚନ୍ଦ୍ରଜ କମ୍ପାନୀ ଲିମିଟେଡ୍ ଅଂଶ ପ୍ରତି ଟ ୧୦ ହାରରେ ୧୦,୦୦୦ ସାଧାରଣ ଅଂଶ ପୁଞ୍ଜି ପ୍ରଚଳିତ କରିଥିଲେ । ଏହି ଅଂଶର ମୂଲ୍ୟ ଆବେଦନ ସହିତ ଟ ୨, ଆବଣ୍ଟନ ସମୟରେ ଟ ୪, ପ୍ରଥମ ଆହ୍ୱାନ ସମୟରେ ଟ ୨ ଓ ଶେଷ ଆହ୍ୱାନ ସମୟରେ ଟ ୨ ଦେୟ ଥିଲା । ସବୁଗୁଡ଼ିକ ଅଂଶ ବର୍ଣ୍ଟିତ ହୋଇଥିଲା ଓ ୨୦୦ ଅଂଶର ଶେଷ ଆହ୍ୱାନ ଅର୍ଥ ବ୍ୟତୀତ ଅନ୍ୟ ସମସ୍ତ ଅର୍ଥ ଯଥା ସମୟରେ ମିଳିଥିଲା । କମ୍ପାନୀ ପରେ ଏହି ୨୦୦ ଗୋଟି ଅଂଶ ବାଜ୍ୟାପ୍ତ କରିଥିଲେ ।

ଉପରୋକ୍ତ ନେଣ ଦେଣ ସକାଶେ ଜାବ୍ଦା, ରୋକଡ଼ ବହି, ଖତିୟାନ ହିସାବ ଓ ପ୍ରାରମ୍ଭିକ ଉଦ୍ବୃତ୍ତ ପତ୍ର ପ୍ରସ୍ତୁତ କର ।

## ସମାଧାନ

### ଜାବ୍‌ଦା

| | ଦାୟୀ ଟଙ୍କା | ଦାତା ଟଙ୍କା |
|---|---|---|
| ଅଂଶ ଆବେଦନ ହିସାବ ଦାୟୀ | ୨୦,୦୦୦ | |
| ଅଂଶ ମୂଳଧନ ହିସାବ ବାବଦ | | ୨୦,୦୦୦ |
| (ଅଂଶ ପ୍ରତି ଟ ୨ ହାରରେ ୧୦,୦୦୦ ସାଧାରଣ ଅଂଶର ଆବେଦନ ଅର୍ଥ ଅଂଶ ମୂଳଧନ ହିସାବକୁ ନିର୍ଦ୍ଦେଶକମଣ୍ଡଳୀଙ୍କର…ତାରିଖର ପ୍ରସ୍ତାବ ଅନୁଯାୟୀ ସ୍ଥାନାନ୍ତରିତ ହେଲା । ) | | |
| ଅଂଶ ଆବଣ୍ଟନ ହିସାବ ଦାୟୀ | ୪୦,୦୦୦ | |
| ଅଂଶ ମୂଳଧନ ହିସାବ ବାବଦ | | ୪୦,୦୦୦ |
| (ଅଂଶ ପ୍ରତି ଟ ୪ ହାରରେ ୧୦,୦୦୦ ସାଧାରଣ ଅଂଶର ଆବଣ୍ଟନ ଅର୍ଥ ନିର୍ଦ୍ଦେଶକମଣ୍ଡଳୀଙ୍କର…ତାରିଖର ପ୍ରସ୍ତାବକ୍ରମେ ପ୍ରାପ୍ୟ ହେଲା । ) | | |

| | ଦାୟୀ ଟଙ୍କା | ଦାତା ଟଙ୍କା |
|---|---|---|
| ଅଂଶ ପ୍ରଥମ ଆହ୍ୱାନ ହିସାବ ଦାୟୀ | ୨୦,୦୦୦ | |
| ଅଂଶ ମୂଳଧନ ହିସାବ ବାବଦ | | ୨୦,୦୦୦ |
| ( ଅଂଶ ପ୍ରତି ଟ ୨ ହାରରେ ନିର୍ଦ୍ଦେଶକମଣ୍ଡଳୀଙ୍କର… …ତାରିଖର ପ୍ରସ୍ତାବ ଅନୁଯାୟୀ ୧୦,୦୦୦ ସାଧାରଣ ଅଂଶର ପ୍ରଥମ ଆହ୍ୱାନ ଅର୍ଥ ପ୍ରାପ୍ୟ ହେଲା । ) | | |
| ଅଂଶ ଶେଷ ଆହ୍ୱାନ ହିସାବ ଦାୟୀ | ୨୦,୦୦୦ | |
| ଅଂଶ ମୂଳଧନ ହିସାବ ବାବଦ | | ୨୦,୦୦୦ |
| (ଅଂଶ ପ୍ରତି ଟ ୨ ହାରରେ ନିର୍ଦ୍ଦେଶକମଣ୍ଡଳୀଙ୍କର… ତାରିଖର ପ୍ରସ୍ତାବ ଅନୁଯାୟୀ ୧୦,୦୦୦ ସାଧାରଣ ଅଂଶର ଶେଷ ଆହ୍ୱାନ ଅର୍ଥ ପ୍ରାପ୍ୟ ହେଲା ) | | |
| ଅଂଶ ମୂଳଧନ ହିସାବ ଦାୟୀ | ୨,୦୦୦ | |
| ଅଂଶ ଶେଷ ଆହ୍ୱାନ ହିସାବ ବାବଦ | | ୪୦୦ |
| ବାଜ୍ୟାପ୍ତ ଅଂଶ ହିସାବ ବାବଦ | | ୧,୬୦୦ |
| ( ଅଂଶ ପ୍ରତି ଟ ୨ ହାରରେ ୨୦୦ ସାଧାରଣ ଅଂଶର ଶେଷ ଆହ୍ୱାନ ଅର୍ଥ ନ ମିଳିବାରୁ ନିର୍ଦ୍ଦେଶକମଣ୍ଡଳୀଙ୍କର…… ତାରିଖର ପ୍ରସ୍ତାବ ଅନୁଯାୟୀ ୨୦୦ ଅଂଶ ବାଜ୍ୟାପ୍ତ କରାଗଲା । ) | | |

ଦାୟୀ — ରୋକଡ଼ ବହି (ବ୍ୟାଙ୍କ ସ୍ତମ୍ଭ) — ଦାତା

| | ଟଙ୍କା | | ଟଙ୍କା |
|---|---|---|---|
| ଅଂଶ ଆବେଦନ ହିସାବ ବାବଦ (ଅଂଶ ପ୍ରତି ଟ ୨ ହାରରେ ୧୦,୦୦୦ ସାଧାରଣ ଅଂଶର ଆବେଦନ ଅର୍ଥ ମିଳିଲା) | ୨୦,୦୦୦ | ବାକି ଗଡ଼ିଲା | ୯୯,୬୦୦ |
| ଅଂଶ ଆବଣ୍ଟନ ହିସାବ ବାବଦ (ଅଂଶ ପ୍ରତି ଟ ୪ ହାରରେ ୧୦,୦୦୦ ସାଧାରଣ ଅଂଶର ଆବଣ୍ଟନ ଅର୍ଥ ମିଳିଲା) | ୪୦,୦୦୦ | | |
| ଅଂଶ ପ୍ରଥମ ଆହ୍ୱାନ ହିସାବ ବାବଦ (ଅଂଶ ପ୍ରତି ଟ ୨ ହାରରେ ୧୦,୦୦୦ ସାଧାରଣ ଅଂଶର ପ୍ରଥମ ଆହ୍ୱାନ ଅର୍ଥ ମିଳିଲା) | ୨୦,୦୦୦ | | |
| ଅଂଶ ଶେଷ ଆହ୍ୱାନ ହିସାବ ବାବଦ (ଅଂଶ ପ୍ରତି ଟ ୨ ହାରରେ ୯,୮୦୦ ସାଧାରଣ ଅଂଶର ଶେଷ ଆହ୍ୱାନ ଅର୍ଥ ମିଳିଲା) | ୧୯,୬୦୦ | | |
| | ୯୯,୬୦୦ | | ୯୯,୬୦୦ |
| ପୂର୍ବ ବାକି ବାବଦ | ୯୯,୬୦୦ | | |

ଖତିଆନ

ଦାୟୀ — ଅଂଶ ଆବେଦନ ହିସାବ — ଦାତା

| | ଟଙ୍କା | | ଟଙ୍କା |
|---|---|---|---|
| ଅଂଶ ମୂଳଧନ ହିସାବ ବାବଦ | ୨୦,୦୦୦ | ବ୍ୟାଙ୍କ ହିସାବ ବାବଦ | ୨୦,୦୦୦ |

### ଦାସ୍ତୀ — ଅଂଶ ଆବଣ୍ଟନ ହିସାବ — ଦାତା

| | ଟଙ୍କା | | ଟଙ୍କା |
|---|---|---|---|
| ଅଂଶ ମୂଳଧନ ହିସାବ ବାବଦ | ୪୦,୦୦୦ | ବ୍ୟାଙ୍କ ହିସାବ ବାବଦ | ୪୦,୦୦୦ |

### ଦାସ୍ତୀ — ଅଂଶ ପ୍ରଥମ ଆହ୍ୱାନ ହିସାବ — ଦାତା

| | ଟଙ୍କା | | ଟଙ୍କା |
|---|---|---|---|
| ଅଂଶ ମୂଳଧନ ହିସାବ ବାବଦ | ୨୦,୦୦୦ | ବ୍ୟାଙ୍କ ହିସାବ ବାବଦ | ୨୦,୦୦୦ |

### ଦାସ୍ତୀ — ଅଂଶ ଶେଷ ଅହ୍ୱାନ ହିସାବ — ଦାତା

| | ଟଙ୍କା | | ଟଙ୍କା |
|---|---|---|---|
| ଅଂଶ ମୂଳଧନ ହିସାବ ବାବଦ | ୨୦,୦୦୦ | ବ୍ୟାଙ୍କ ହିସାବ ବାବଦ | ୧୯,୬୦୦ |
| | | ଅଂଶ ମୂଳଧନ ହିସାବ ବାବଦ | ୪୦୦ |

### ଦାସ୍ତୀ — ଅଂଶ ମୂଳଧନ ହିସାବ — ଦାତା

| | ଟଙ୍କା | | ଟଙ୍କା |
|---|---|---|---|
| ଅଂଶ ଶେଷ ଅହ୍ୱାନ ହି : ବାବଦ | ୪୦୦ | ଅଂଶ ଆବଣ୍ଟନ ହି: ବାବଦ | ୨୦,୦୦୦ |
| ବାଜ୍ୟାପ୍ତ ଅଂଶ ହିସାବ ବାବଦ | ୧୯,୬୦୦ | ଅଂଶ ଆବଣ୍ଟନ ହି : ବାବଦ | ୪୦,୦୦୦ |
| ବାକି ଗଡ଼ନ୍ତ | ୮୦,୦୦୦ | ଅଂଶ ପ୍ରଥମ ଆହ୍ୱାନ ହି:ବାବଦ | ୨୦,୦୦୦ |
| | | ଅଂଶ ଶେଷ ଆହ୍ୱାନ ହି: ବାବଦ | ୨୦,୦୦୦ |
| | ୧,୦୦,୦୦୦ | | ୧,୦୦,୦୦୦ |
| | | ପୂର୍ବ ବାକି ବାବଦ | ୮୦,୦୦୦ |

### ଦାସ୍ତୀ — ବାଜ୍ୟାପ୍ତ ଅଂଶ ହିସାବ — ଦାତା

| | ଟଙ୍କା | | ଟଙ୍କା |
|---|---|---|---|
| ବାକି ଗଡ଼ନ୍ତ | ୧,୬୦୦ | ଅଂଶ ମୂଳଧନ ହିସାବ ବାବଦ | ୧,୬୦୦ |

### ଚଉଳ କମ୍ପାନୀ ଲିମିଟେଡ୍‌ର
### ୧୯...ମସିହା...ତାରିଖର ଉଦ୍‌ବୃତ୍ତ ପତ୍ର

| ଦେଣା ଓ ମୂଳଧନ | ଟଙ୍କା | ଟଙ୍କା | ପରିସମ୍ପତ୍ତି | ଟଙ୍କା |
|---|---|---|---|---|
| ଅଂଶ ମୂଳଧନ : | | | ଚଳନ୍ତି ସମ୍ପତ୍ତି : | |
| ପ୍ରାଧିକୃତ ମୂଳଧନ : | | | ବ୍ୟାଙ୍କରେ ଗଚ୍ଛିତ ତହବିଲ | ୯୯,୭୦୦ |
| ଅଂଶ ପ୍ରତି ଟ ୧୦ ହାରରେ... | | | | |
| ସାଧାରଣ ଅଂଶ | | — | | |
| ପ୍ରଚଳିତ ମୂଳଧନ : | | | | |
| ଅଂଶ ପ୍ରତି ଟ ୧୦ ହାରରେ | | | | |
| ୧୦,୦୦୦ ସାଧାରଣ ଅଂଶ | | ୧,୦୦,୦୦୦ | | |
| ବଣ୍ଟିତ ମୂଳଧନ : | | | | |
| ଅଂଶ ପ୍ରତି ଟ ୧୦ ହାରରେ | | | | |
| ୯,୮୦୦ ସାଧାରଣ ଅଂଶ | | | | |
| —ପୂର୍ଣ୍ଣ ଆଦାୟୀକୃତ | ୯୮,୦୦୦ | | | |
| ଯୁକ୍ତ ବାଜ୍ୟାପ୍ତ ଅଂଶ | ୧,୭୦୦ | ୯୯,୭୦୦ | | ୯୯,୭୦୦ |
| | | ୯୯,୭୦୦ | | |

### ଦୃଷ୍ଟାନ୍ତ (୧୧)

ଉତ୍କଳ କେମିକାଲସ୍ ଲିମିଟେଡ୍ ଅଂଶ ପ୍ରତି ଟ ୧୦ ହାରରେ ୧,୦୦,୦୦୦ ସାଧାରଣ ଅଂଶକୁ ଅଂଶ ପ୍ରତି ଟ ୧୨ ହାରରେ ବିକ୍ରୟ ନିମନ୍ତେ ବିଜ୍ଞାପନ ଦେଇଥିଲେ । ଏହି ଅଂଶ ବାବଦ ମୂଲ୍ୟ ଆବେଦନ ପତ୍ର ସହିତ ଟ ୨, ଆବଣ୍ଟନ ସମୟରେ ଟ ୫ (ଟ ୨ ହାରରେ ଅଧିମୂଲ୍ୟ ସମେତ), ପ୍ରଥମ ଆହ୍ୱାନ ସମୟରେ ଟ ୨.୫୦ ପ. ଓ ଶେଷ ଆହ୍ୱାନ ସମୟରେ ଟ ୨.୫୦ ପ. ଦେୟ ଥିଲା ।

୧,୭୦,୦୦୦ ଅଂଶ ସକାଶେ ଆବେଦନ ପତ୍ର (୩୧-୩-୭୪ ସୁଦ୍ଧା) ମିଳିଥିଲା । ୧୫-୪-୭୪ ତାରିଖରେ ନିର୍ଦ୍ଦେଶକମଣ୍ଡଳୀ ପ୍ରତ୍ୟେକ ୩ ଗୋଟି ଅଂଶର ଆବେଦନକାରୀଙ୍କୁ

୨ ଗୋଟି ଅଂଶ ଆବଣ୍ଟନ କରିଥିଲେ ଓ ୧୦,୦୦୦ ଅଂଶର ଆବେଦନ ଅର୍ଥ ଫେରନ୍ତ ଦେବା ପାଇଁ ନିଷ୍ପତ୍ତି ଗ୍ରହଣ କଲେ । ଏହି ଅର୍ଥ ୩୦-୪-୭୪ ତାରିଖ ସୁଦ୍ଧା ପ୍ରାପ୍ୟ ଅର୍ଥ ମିଳିଲା ଓ ଦେୟ ଅର୍ଥ ଫେରନ୍ତ ଦିଆଗଲା । ଅଂଶ ଆବଣ୍ଟନ ତାରିଖର ୩ ମାସ ପରେ ପ୍ରଥମ ଆହ୍ୱାନ ଓ ୭ ମାସ ପରେ ଶେଷ ଆହ୍ୱାନ ଦିଆଗଲା । ୨,୦୦୦ ଅଂଶର ଶେଷ ଆହ୍ୱାନ ଅର୍ଥ ବ୍ୟତୀତ ଅନ୍ୟ ସମସ୍ତ ଅର୍ଥ ଯଥା ସମୟରେ ଆହ୍ୱାନର ୧ ମାସ ମଧ୍ୟରେ ମିଳିଥିଲା । ୩୧-୧୨-୭୪ ତାରିଖରେ ନିର୍ଦ୍ଦେଶକମଣ୍ଡଳୀ ଏହି ୨,୦୦୦ ଅଂଶକୁ ବାଜ୍ୟାପ୍ତ କଲେ ।

ଆବଶ୍ୟକ ଜାବ୍ଦା (ନଗଦ ତହବିଲ ସମେତ) ଓ ଉଦ୍‌ବୃତ୍ତ ପତ୍ର ପ୍ରସ୍ତୁତ କର ।

## ସମାଧାନ

ଜାବ୍ଦା

| | | ଦାୟୀ | ଦାତା |
|---|---|---|---|
| | | ଟଙ୍କା | ଟଙ୍କା |
| ୧୯୭୪ ମାର୍ଚ୍ଚ-୩୧ | ବ୍ୟାଙ୍କ୍ ହିସାବ ଦାୟୀ | ୩,୨୦,୦୦୦ | |
| | ସାଧାରଣ ଅଂଶ ଆବେଦନ ହିସାବ ବାବଦ | | ୩,୨୦,୦୦୦ |
| | ( ଅଂଶ ପ୍ରତି ଟ ୨ ହାରରେ ୧,୬୦,୦୦୦ ସାଧାରଣ ଅଂଶର ଆବେଦନ ଅର୍ଥ ମିଳିଲା । ) | | |

| | | ଦାୟୀ | ଦାତା |
|---|---|---|---|
| | | ଟଙ୍କା | ଟଙ୍କା |
| ୧୯୭୪ ମାର୍ଚ୍ଚ-୩୧ | ସାଧାରଣ ଅଂଶ ଆବେଦନ ହିସାବ୍ ଦାୟୀ | ୨,୦୦,୦୦୦ | |
| | ସାଧାରଣ ଅଂଶ ମୂଳଧନ ହିସାବ ବାବଦ | | ୨,୦୦,୦୦୦ |
| | (ଅଂଶ ପ୍ରତି ଟ ୨ ହାରରେ ୧,୦୦,୦୦୦ ସାଧାରଣ ଅଂଶର ଆବେଦନ ଅର୍ଥ ଅଂଶ ମୂଳଧନ ହିସାବକୁ ସ୍ଥାନାନ୍ତରିତ ହେଲା ।) | | |

| ତାରିଖ | ବିବରଣୀ | | ଡେବିଟ୍ | କ୍ରେଡିଟ୍ |
|---|---|---|---|---|
| ଅପ୍ରେଲ ୧୫ | ସାଧାରଣ ଅଂଶ ଆବଣ୍ଟନ ହିସାବ | ଦାୟୀ | ୫,୦୦,୦୦୦ | |
| | ସାଧାରଣ ଅଂଶ ମୂଳଧନ ହିସାବ ବାବଦ | | | ୩,୦୦,୦୦୦ |
| | ଅଂଶ ଅଧିମୂଲ୍ୟ ହିସାବ ବାବଦ | | | ୨,୦୦,୦୦୦ |
| | (ନିର୍ଦ୍ଦେଶକମଣ୍ଡଳୀଙ୍କର ଅପ୍ରେଲ ୧୫ ତାରିଖର ପ୍ରସ୍ତାବ ଅନୁଯାୟୀ ପ୍ରତ୍ୟେକ ଆବେଦନକାରୀଙ୍କୁ ୩ : ୨ ଅନୁପାତରେ ୧,୦୦,୦୦୦ ସାଧାରଣ ଅଂଶ ଆବଣ୍ଟିତ ହେବାରୁ ଅଂଶ ପ୍ରତି ଟ ୩ ହାରରେ ଆବଣ୍ଟନ ଅର୍ଥ ଓ ଟ ୨ ହାରରେ ଅଧିମୂଲ୍ୟ ବାବଦ ଅର୍ଥ ଅଂଶଧାରୀମାନଙ୍କଠାରୁ ପ୍ରାପ୍ୟ ହେଲା ।) | | | |
| ୩୦ | ସାଧାରଣ ଅଂଶ ଆବେଦନ ହିସାବ | ଦାୟୀ | ୨୦,୦୦୦ | |
| | ବ୍ୟାଙ୍କ୍ ହିସାବ ବାବଦ | | | ୨୦,୦୦୦ |
| | (ନିର୍ଦ୍ଦେଶକମଣ୍ଡଳୀଙ୍କର ଅପ୍ରେଲ ୧୫ ତାରିଖର ପ୍ରସ୍ତାବ ଅନୁସାରେ ଅଂଶ ପ୍ରତି ଟ ୨ ହାରରେ ୧୦,୦୦୦ ସାଧାରଣ ଅଂଶ ବାବଦ ଆବେଦନକାରୀଙ୍କୁ ଫେରସ୍ତ ଦିଆଗଲା ।) | | | |
| ୩୦ | ସାଧାରଣ ଅଂଶ ଆବେଦନ ହିସାବ | ଦାୟୀ | ୧,୦୦,୦୦୦ | |
| | ବ୍ୟାଙ୍କ୍ ହିସାବ | ଦାୟୀ | ୪,୦୦,୦୦୦ | |
| | ସାଧାରଣ ଅଂଶ ଆବଣ୍ଟନ ହିସାବ ବାବଦ | | | ୫,୦୦,୦୦୦ |
| | (ସାଧାରଣ ଅଂଶ ଆବେଦନ ହିସାବର ବଳକା ୧,୦୦,୦୦୦ ଟଙ୍କା ଓ ଅଂଶ ଆବଣ୍ଟନ ବାବଦ ମିଳିଥିବା ନଗଦ ୪,୦୦,୦୦୦ ଟଙ୍କା ସାଧାରଣ ଅଂଶ ଆବଣ୍ଟନ ହିସାବକୁ ସ୍ଥାନାନ୍ତରିତ ହେଲା ।) | | | |
| ଜୁଲାଇ ୧୫ | ସାଧାରଣ ଅଂଶ ପ୍ରଥମ ଆହ୍ୱାନ ହିସାବ | ଦାୟୀ | ୨,୫୦,୦୦୦ | |
| | ସାଧାରଣ ଅଂଶ ମୂଳଧନ ହିସାବ ବାବଦ | | | ୨,୫୦,୦୦୦ |
| | ( ନିର୍ଦ୍ଦେଶକମଣ୍ଡଳୀଙ୍କର ୧୫-୭-୭୪ ତାରିଖର ପ୍ରସ୍ତାବ ଅନୁଯାୟୀ ଅଂଶ ପ୍ରତି ଟ ୨.୫୦ ପ. ହାରରେ ୧,୦୦,୦୦୦ ଅଂଶ ବାବଦ ପ୍ରଥମ ଆହ୍ୱାନ ଅର୍ଥ ଅଂଶଧାରୀମାନଙ୍କଠାରୁ ପ୍ରାପ୍ୟ ହେଲା ।) | | | |

| | | ଦାୟୀ | ଦାତା |
|---|---|---|---|
| | | ଟଙ୍କା | ଟଙ୍କା |
| ଅଗଷ୍ଟ ୧୫ | ବ୍ୟାଙ୍କ୍ ହିସାବ ଦାୟୀ | ୨,୫୦,୦୦୦ | |
| | ସାଧାରଣ ଅଂଶ ପ୍ରଥମ ଆହ୍ୱାନ ହି: ବାବଦ<br>(ଅଂଶ ପ୍ରତି ଟ ୨.୫୦ ପ. ହାରରେ ୧,୦୦,୦୦୦ ଅଂଶର ପ୍ରଥମ ଆହ୍ୱାନ ଅର୍ଥ ମିଳିଲା । ) | | ୨,୫୦,୦୦୦ |
| ଅକ୍ଟୋବର ୧୫ | ସାଧାରଣ ଅଂଶ ଶେଷ ଆହ୍ୱାନ ହିସାବ ଦାୟୀ | ୨,୫୦,୦୦୦ | |
| | ସାଧାରଣ ଅଂଶ ମୂଳଧନ ହିସାବ ବାବଦ<br>ନିର୍ଦ୍ଦେଶକମଣ୍ଡଳୀଙ୍କର ୧୫-୧୦-୭୪ ତାରିଖର ପ୍ରସ୍ତାବ ଅନୁଯାୟୀ ଅଂଶ ପ୍ରତି ଟ ୨.୫୦ ପ. ହାରରେ ୧,୦୦,୦୦୦ ସାଧାରଣ ଅଂଶର ଶେଷ ଆହ୍ୱାନ ଅର୍ଥ ଅଂଶଧାରୀମାନଙ୍କଠାରୁ ପ୍ରାପ୍ୟ ହେଲା । ) | | ୨,୫୦,୦୦୦ |
| ନଭେମ୍ବର ୧୫ | ବ୍ୟାଙ୍କ୍ ହିସାବ ଦାୟୀ | ୨,୪୫,୦୦୦ | |
| | ସାଧାରଣ ଅଂଶ ଶେଷ ଆହ୍ୱାନ ହିସାବ ବାବଦ<br>(ଅଂଶ ପ୍ରତି ଟ ୨.୫୦ ପ. ହାରରେ ୯୮,୦୦୦ ସାଧାରଣ ଅଂଶର ଶେଷ ଆହ୍ୱାନ ଅର୍ଥ ମିଳିଲା ।) | | ୨,୪୫,୦୦୦ |
| ଡିସେମ୍ବର ୩୧ | ସାଧାରଣ ଅଂଶ ମୂଳଧନ ହିସାବ ଦାୟୀ | ୨୦,୦୦୦ | |
| | ସାଧାରଣ ଅଂଶ ଶେଷ ଆହ୍ୱାନ ହି: ବାବଦ | | ୫,୦୦୦ |
| | ବାଜ୍ୟାପ୍ତ ଅଂଶ ହିସାବ ବାବଦ<br>( ନିର୍ଦ୍ଦେଶକମଣ୍ଡଳୀଙ୍କର ୩୧-୧୨-୭୪ ତାରିଖର ପ୍ରସ୍ତାବ ଅନୁଯାୟୀ ୨,୦୦୦ ସାଧାରଣ ଅଂଶ ବାଜ୍ୟାପ୍ତ କରାଗଲା । ) | | ୧୫,୦୦୦ |

ଉତ୍କଳ କେମିକ୍ୟାଲସ୍ ଲିମିଟେଡ୍‌ର

୧୯୭୪ ମସିହା ଡିସେମ୍ବର ୩୧ ତାରିଖର ଉଦ୍‌ବୃତ୍ତ ପତ୍ର

| | ଟଙ୍କା | | ଟଙ୍କା |
|---|---|---|---|
| **ମୂଳଧନ ଓ ଦେଣା** | | **ପରିସମ୍ପତ୍ତି** | |
| ଅଂଶ ମୂଳଧନ : | | ବ୍ୟାଙ୍କ୍‌ରେ ଗଚ୍ଛିତ ତହବିଲ | ୧୧,୯୫,୦୦୦ |
| ପ୍ରାଧିକୃତ ମୂଳଧନ | | | |
| ଅଂଶ ପ୍ରତି ଟ୧୦ ହାରରେ···ଅଂଶ | | | |
| ପ୍ରଚଳିତ ମୂଳଧନ : | | | |
| ଅଂଶ ପ୍ରତି ଟ ୧୦ ହାରରେ | | | |
| ୧,୦୦,୦୦୦ ସାଧାରଣ ଅଂଶ | ୧୦,୦୦,୦୦୦ | | |
| ବଣ୍ଟିତ ମୂଳଧନ | | | |
| ଅଂଶ ପ୍ରତି ଟ ୧୦ ହାରରେ | | | |
| ୯୮,୦୦୦ ସାଧାରଣ ଅଂଶ— | | | |
| ପୂର୍ଣ୍ଣ ପ୍ରଦତ୍ତ | ୯,୮୦,୦୦୦ | | |
| ଅଂଶ ବାଜ୍ୟାପ୍ତ ହିସାବ | ୧୫,୦୦୦ | | |
| ସଞ୍ଚିତ ଓ ବଳକା : | | | |
| (ଅଂଶ ପ୍ରତି ଟ ୨ ହାରରେ | | | |
| ଅଂଶ ବାବଦ) ଅଂଶ ଅଧିମୂଲ୍ୟ ହିସାବ | ୨,୦୦,୦୦୦ | | |
| | ୧୧,୯୫,୦୦୦ | | ୧୧,୯୫,୦୦୦ |

## ବାଜ୍ୟାପ୍ତ ଅଂଶର ପୁନର୍ପ୍ରଚଳନ

ବାଜ୍ୟାପ୍ତହୋଇଥିବା ଅଂଶକୁ କମ୍ପାନୀ ପୁନର୍ପ୍ରଚଳିତ କରିବା ବିଷୟରେ କମ୍ପାନୀ ଆଇନରେ କୌଣସିବାଧା ନାହିଁ । ଏହା ଅଂଶର ଲିଖିତ ମୂଲ୍ୟ ଅପେକ୍ଷା ଊଣା ମୂଲ୍ୟରେ ମଧ୍ୟ ପ୍ରଚଳିତ ହୋଇପାରେ; କିନ୍ତୁ ଏହି ବଟା ବା ଅବମୂଲ୍ୟର ପରିମାଣ ବାଜ୍ୟାପ୍ତ କରାଯାଇଥିବା ଅଂଶ ବାବଦ ଆଦାୟୀକୃତ ଅର୍ଥର ପରିମାଣ ଅପେକ୍ଷା ଊଣା ହୋଇପାରିବ ନାହିଁ । ଉଦାହରଣ ସ୍ୱରୂପ ଉପରୋକ୍ତ ଦୃଷ୍ଟାନ୍ତଟି ବିଚାର କରାଯାଉ । ୨,୦୦୦ ଅଂଶ ବାଜ୍ୟାପ୍ତ କରାଯାଇଛି ଏବଂ ଏହା ବାବଦ ଟ୧୫,୦୦୦ ଆଦାୟୀକୃତ ହୋଇଛି, ଅର୍ଥାତ୍ ଏହି ଅଂଶ ବାବଦ ଟ୫,୦୦୦ ଊଣା ଆଦାୟ ହୋଇଛି । ସୁତରାଂ ଏହି ବାଜ୍ୟାପ୍ତ ଅଂଶକୁ ଟ ୫,୦୦୦ ରୁ ଊଣା ପରିମାଣ ରିହାତିରେ ବିକ୍ରୟ କରାଯାଇପାରିବ ନାହିଁ । ଅନ୍ୟ ଭାବରେ

କହିଲେ ଆଦାୟୀକୃତ ଅର୍ଥ ଓ ପୁନର୍ପ୍ରଚଳନ ଫଳରେ ପ୍ରାପ୍ତ ଅର୍ଥ ସମୁକ୍ତ ହେଲେ ତାହା ଯେପରି ଏହି ଅଂଶଗୁଡ଼ିକର ଅଙ୍କିତ ବା ଲିଖିତ ମୂଲ୍ୟଠାରୁ ଊଣା ନ ହୁଏ, ଅଧିକ ହେଲେ ତହିଁରେ କୌଣସି କ୍ଷତି ନାହିଁ ।

ବାଜ୍ୟାପ୍ତ ଅଂଶର ପୁନର୍ପ୍ରଚଳନ ନିମନ୍ତେ ନିମ୍ନଲିଖିତ ପ୍ରବିଷ୍ଟିଗୁଡ଼ିକ ଆବଶ୍ୟକ ହୁଏ ।

(୧) ଆହୂତ ଅର୍ଥର ସମପରିମାଣରେ ବାଜ୍ୟାପ୍ତ ଅଂଶ ପୁନର୍ପ୍ରଚଳିତ ହେଲେ :

| | | |
|---|---|---|
| ନଗଦ ତହବିଲ/ବ୍ୟାଙ୍କ୍ ହିସାବ | ଦାୟୀ | ପ୍ରାପ୍ତ ମୋଟ ଅର୍ଥ ନିମନ୍ତେ ଅଂଶର ସଂଖ୍ୟା × ପ୍ରତି ଅଂଶର ଆହୂତ ଅର୍ଥ । |
| ଅଂଶ ମୂଳଧନ ହିସାବ ବାବଦ | | |

(୨) ଆହୂତ ଅର୍ଥ ଅପେକ୍ଷା ଊଣା ପରିମାଣରେ ବାଜ୍ୟାପ୍ତ ଅଂଶ ପୁନର୍ପ୍ରଚଳିତ ହେଲେ :

| | | |
|---|---|---|
| (କ) ନଗଦ ତହବିଲ / ବ୍ୟାଙ୍କ୍ ହିସାବ | ଦାୟୀ | ପ୍ରାପ୍ତ ମୋଟ ଅର୍ଥ ନିମନ୍ତେ ବଟ୍ଟାର ପରିମାଣ ନିମନ୍ତେ ଅଂଶର ସଂଖ୍ୟା × ପ୍ରତି ଅଂଶର ଆହୂତ ମୂଲ୍ୟ |
| ବାଜ୍ୟାପ୍ତ ଅଂଶ ହିସାବ | ଦାୟୀ | |
| ଅଂଶ ମୂଳଧନ ହିସାବ ବାବଦ | | |

(ଖ) ବାଜ୍ୟାପ୍ତ ଅଂଶ ପୁନର୍ପ୍ରଚଳିତ ହେବା ପରେ ସଂଶ୍ଲିଷ୍ଟ ଅଂଶ ବାଜ୍ୟାପ୍ତ ହିସାବରେ ଯଦି କୌଣସି ଦାତା ବାକି ଅବଶିଷ୍ଟ ରହେ, ତାହାହେଲେ ତାହା ପୁଞ୍ଜିଗତ ସଞ୍ଚିତ ହିସାବକୁ ସ୍ଥାନାନ୍ତରିତ ହେବ;

| | |
|---|---|
| ବାଜ୍ୟାପ୍ତ ଅଂଶ ହିସାବ | ଦାୟୀ |
| ପୁଞ୍ଜିଗତ ସଞ୍ଚିତ ହିସାବ ବାବଦ | |

(୩) ଆହୂତ ଅର୍ଥ ପରିମାଣ ଅପେକ୍ଷା ଅଧିମୂଲ୍ୟରେ ବାଜ୍ୟାପ୍ତ ଅଂଶ ପୁନର୍ପ୍ରଚଳିତ ହେଲେ, ତାହା ନିମନ୍ତେ—

| | | |
|---|---|---|
| ନଗଦ ତହବିଲ / ବ୍ୟାଙ୍କ୍ ହିସାବ | ଦାୟୀ | ପ୍ରାପ୍ତ ଅର୍ଥ ସକାଶେ ଅଂଶର ସଂଖ୍ୟା × ପ୍ରତି ଅଂଶର ଆହୂତ ଅର୍ଥ ମୋଟ ଅଧିମୂଲ୍ୟ । |
| ଅଂଶ ମୂଳଧନ ହିସାବ ବାବଦ | | |
| ଅଂଶ ଅଧିମୂଲ୍ୟ ହିସାବ ବାବଦ | | |

## ଦୃଷ୍ଟାନ୍ତ (୧୨)

ପୁସ୍ତକ କମ୍ପାନୀ ଲିମିଟେଡ଼ର ପ୍ରଚଳିତ ମୂଳଧନର ପରିମାଣ ଟ ୫୦,୦୦୦ ଥିଲା ଓ ପ୍ରତ୍ୟେକ ଅଂଶର ମୂଲ୍ୟ ଟ ୧୦ ଥିଲା । କମ୍ପାନୀ ଅଂଶ ପ୍ରତି ଟ ୮ ଆହ୍ୱାନ କରିଥିଲା । ୫୦୦ ଅଂଶର ଅଂଶ ପ୍ରତି ୨ ହାରରେ ପ୍ରଥମ ଆହ୍ୱାନ ବାବଦ ଟଙ୍କା ବ୍ୟତୀତ ଅନ୍ୟ ସମସ୍ତ ଟଙ୍କା ଆଦାୟ ହୋଇଥିଲା । ଏହି ଅଂଶଗୁଡ଼ିକ ବାଜ୍ୟାପ୍ତ କରିଯାଇ ଟ ୨,୫୦୦ ଟଙ୍କାରେ ପୁନର୍ପ୍ରଚଳିତ କରିଯାଇଥିଲା । ଆବଶ୍ୟକୀୟ ଜାବ୍‌ଦା ଲେଖ ।

**ସମାଧାନ**

| | | ଦାୟୀ | ଦାତା |
|---|---|---|---|
| | | ଟଙ୍କା | ଟଙ୍କା |
| ସାଧାରଣ ଅଂଶ ମୂଳଧନ ହିସାବ | ଦାୟୀ | ୪,୦୦୦ | |
| ବକେୟା ଆହ୍ୱାନ ହିସାବ ବାବଦ | | | ୧,୦୦୦ |
| ବାଜ୍ୟାପ୍ତ ଅଂଶ ହିସାବ ବାବଦ | | | ୩,୦୦୦ |
| ( ନିର୍ଦ୍ଦେଶକମଣ୍ଡଳୀଙ୍କର···ତାରିଖର ପ୍ରସ୍ତାବ ଅନୁଯାୟୀ ୫୦୦ ଅଂଶ ବାବଦ ଅଂଶ ପ୍ରତି ଟ ୨ ହାରରେ ପ୍ରଥମ ଆହ୍ୱାନ ଅର୍ଥ ନ ମିଳିବାରୁ ବାଜ୍ୟାପ୍ତ କରିଗଲା ) | | | |
| ବ୍ୟାଙ୍କ୍ ହିସାବ | ଦାୟୀ | ୨,୫୦୦ | |
| ବାଜ୍ୟାପ୍ତ ଅଂଶ ହିସାବ | ଦାୟୀ | ୧,୫୦୦ | |
| ସାଧାରଣ ଅଂଶ ମୂଳଧନ ହିସାବ ବାବଦ | | | ୪,୦୦୦ |
| ( ନିର୍ଦ୍ଦେଶକମଣ୍ଡଳୀଙ୍କର......ତାରିଖର ପ୍ରସ୍ତାବ ଅନୁଯାୟୀ ୫୦୦ ସାଧାରଣ ଅଂଶ ଟ ୨,୫୦୦ରେ ପୁନର୍ପ୍ରଚଳିତ ହେଲା ) | | | |
| ବାଜ୍ୟାପ୍ତ ଅଂଶ ହିସାବ | ଦାୟୀ | ୧,୫୦୦ | |
| ପୁଞ୍ଜିଗତ ସଞ୍ଚିତ ହିସାବ ବାବଦ | | | ୧,୫୦୦ |
| (ବାଜ୍ୟାପ୍ତ ଅଂଶ ହିସାବର ବଳକା ଅର୍ଥ ପୁଞ୍ଜିଗତ ସଞ୍ଚିତ ହିସାବକୁ ସ୍ଥାନାନ୍ତରିତ କରିଗଲା ) | | | |

## ଦୃଷ୍ଟାନ୍ତ (୧୩)

ପ୍ରୋପ ଷ୍ଟୋର୍ସ ଲିମିଟେଡ୍ ଅଂଶ ପ୍ରତି ଟ ୧୦ ହାରରେ ୧୦,୦୦୦ ସାଧାରଣ ଅଂଶ ପ୍ରଚଳନ କରିଥିଲା । ଏହାର ମୂଲ୍ୟ ପୂର୍ଣ୍ଣ ମାତ୍ରାରେ ଆହୂତ ହୋଇଥିଲା ଓ ଅଂଶ ପ୍ରତି ଟ ୨.୫୦ ହାରରେ ଅଂଶ ଶେଷ ଆହ୍ୱାନ ୧,୦୦୦ ଅଂଶ କ୍ରୟ କରିଥିବା ଜଣେ

ଅଂଶଧାରୀଙ୍କଠାରୁ ମିଳି ନ ଥିଲା । ଅନ୍ୟ ସମସ୍ତ ଅଂଶ ବାବଦ ସମସ୍ତ ଆହୂତ ଅର୍ଥ ଯଥା ସମୟରେ ମିଳିଥିଲା । ନିର୍ଦ୍ଦିଷ୍ଟ ଦିବସ ପରେ ନିର୍ଦ୍ଦେଶକମଣ୍ଡଳୀ ଏହି ୧,୦୦୦ ସାଧାରଣ ଅଂଶ ବାଜ୍ୟାପ୍ତ କରି ସେଗୁଡ଼ିକୁ ଟ ୧୨,୦୦୦ରେ ବିକ୍ରୟ କରିଥିଲେ । ଆବଶ୍ୟକ ଜାବ୍ଦା ପ୍ରସ୍ତୁତ କର ।

## ସମାଧାନ

| ଜାବ୍ଦା | | ଦାୟୀ | ଦାତା |
|---|---|---|---|
| | | ଟଙ୍କା | ଟଙ୍କା |
| ସାଧାରଣ ଅଂଶ ମୂଳଧନ ହିସାବ | ଦାୟୀ | ୧୦,୦୦୦ | |
| ବକେୟା ଆହ୍ୱାନ ହିସାବ ବାବଦ | | | ୨,୫୦୦ |
| ବାଜ୍ୟାପ୍ତ ଅଂଶ ହିସାବ ବାବଦ | | | ୭,୫୦୦ |
| (ଅଂଶ ପ୍ରତି ଟ ୨.୫୦ ପ. ହାରରେ ୧,୦୦୦ ସାଧାରଣ ଅଂଶର ଶେଷ ଆହ୍ୱାନ ଅର୍ଥ ନ ମିଳିବାରୁ ନିର୍ଦ୍ଦେଶକମଣ୍ଡଳୀଙ୍କର···ତାରିଖର ପ୍ରସ୍ତାବକ୍ରମେ ଏହି ଅଂଶ, ଗୁଡ଼ିକ ବାଜ୍ୟାପ୍ତ କରାଗଲା ) | | | |
| ବ୍ୟାଙ୍କ୍ ହିସାବ | ଦାୟୀ | ୧୨,୦୦୦ | |
| ସାଧାରଣ ଅଂଶ ଆହ୍ୱାନ ହିସାବ ବାବଦ | | | ୧୦,୦୦୦ |
| ଅଂଶ ଅଧିମୂଲ୍ୟ ହିସାବ ବାବଦ | | | ୨,୦୦୦ |
| (ଅଂଶ ପ୍ରତି ଟ ୧୨ ହାରରେ ୧,୦୦୦ ସାଧାରଣ ଅଂଶ ନିର୍ଦ୍ଦେଶକମଣ୍ଡଳୀଙ୍କର ତାରିଖର ପ୍ରସ୍ତାବକ୍ରମେ ପୁନର୍ପ୍ରଚଳିତ ହେଲା ) | | | |
| ବାଜ୍ୟାପ୍ତ ଅଂଶ ହିସାବ | ଦାୟୀ | ୭,୫୦୦ | |
| ପୁଞ୍ଜିଗତ ସଞ୍ଚିତ ହିସାବ ବାବଦ | | | ୭,୫୦୦ |
| (ବାଜ୍ୟାପ୍ତ ଅଂଶ ହିସାବର ଦାତା ବାକୀ ପୁଞ୍ଜିଗତ ସଞ୍ଚିତ ହିସାବକୁ ସ୍ଥାନାନ୍ତରିତ ହେଲା ) | | | |

### ଦୃଷ୍ଟାନ୍ତ (୧୪)

ରାଜଧାନୀ ହାର୍ଡ଼ଓୟାର ଲିମିଟେଡ୍ ଅଂଶ ପ୍ରତି ଟ ୨୦ ହାରରେ ୧୫,୦୦୦ ସାଧାରଣ ଅଂଶ ଟ ୨ ଅଧିମୂଲ୍ୟରେ ପ୍ରଚଳନ କଲେ । ଅଂଶ ବାବଦ ଅର୍ଥ ଆବେଦନ ସମୟରେ ଟ ୭, ଅଂଶ ଆବଣ୍ଟିତ ହେଲେ ଟ ୫ ଓ ପ୍ରତି ଆହ୍ୱାନ ସମୟରେ ଟ ୫ ଦେୟ ଥିଲା । ସବୁଗୁଡ଼ିକ ଅଂଶର ଆବେଦନ ଓ ଆବଣ୍ଟନ ଅର୍ଥ ୧୯୭୫ ମସିହା ଅପ୍ରେଲ ୩୦ ତାରିଖ ସୁଦ୍ଧା ମିଳିଥିଲା । ୧୯୭୫ ମସିହା ସେପ୍ଟେମ୍ବର ୧ ତାରିଖରେ ଅଂଶ ପ୍ରତି ଟ ୫

ହାରରେ ପ୍ରଥମ ଆହ୍ୱାନ ଦିଆଯାଇଥିଲା । ୧୦୦୦ ସାଧାରଣ ଅଂଶ କ୍ରୟ କରିଥିବା ହରିବନ୍ଧୁ ସାହୁ ଯଥା ସମୟରେ ପ୍ରଥମ ଆହ୍ୱାନ ଅର୍ଥ ଦେଇପାରି ନ ଥିଲେ । ନିର୍ଦ୍ଦେଶକ-ମଣ୍ଡଳୀ ନଭେମ୍ବର ୧ ତାରିଖରେ ଏହି ଅଂଶଗୁଡ଼ିକ ବାଜ୍ୟାପ୍ତ କରିଥିଲେ ଓ ଡିସେମ୍ବର ୧ ତାରିଖରେ ଏହି ଅଂଶଗୁଡ଼ିକୁ ଲିଙ୍ଗରାଜ ମିଶ୍ରଙ୍କୁ ଟ ୧୪,୫୦୦ ରେ ବିକ୍ରୟ କଲେ । ( ଅଧିମୂଲ୍ୟ ଆବଣ୍ଟନ ସହିତ ଆଦାୟ ହୋଇଥିଲା । )

ନଗଦ ତହବିଲ ସମେତ ସବୁଗୁଡ଼ିକ ଦେଣ ନେଣକୁ କମ୍ପାନୀର ଜାବ୍‌ଦାରେ ଲିପିବଦ୍ଧ କର ।

## ସମାଧାନ

ଜାବ୍‌ଦା

| | | ଦାୟୀ | ଦାତା |
|---|---|---|---|
| ୧୯୭୫ | | ଟଙ୍କା | ଟଙ୍କା |
| ଅପ୍ରେଲ ୩୦ | ବ୍ୟାଙ୍କ୍ ହିସାବ ଦାୟୀ | ୧,୦୫,୦୦୦ | |
| | ସାଧାରଣ ଅଂଶ ଆବେଦନ ହିସାବ ବାବଦ | | ୧,୦୫,୦୦୦ |
| | (ଅଂଶ ପ୍ରତି ଟ ୭ ହାରରେ ୧୫,୦୦୦ ସାଧାରଣ ଅଂଶର ଆବେଦନ ଅର୍ଥ ମିଳିଲା) | | |
| ୩୦ | ସାଧାରଣ ଅଂଶ ଆବେଦନ ହିସାବ ଦାୟୀ | ୧,୦୫,୦୦୦ | |
| | ସାଧାରଣ ଅଂଶ ମୂଳଧନ ହିସାବ ବାବଦ | | ୧,୦୫,୦୦୦ |
| | (ଅଂଶ ଆବେଦନ ଅର୍ଥ ନିର୍ଦ୍ଦେଶକମଣ୍ଡଳୀଙ୍କର··· ତାରିଖର ପ୍ରସ୍ତାବକ୍ରମେ ସାଧାରଣ ଅଂଶ ମୂଳଧନ ହିସାବକୁ ସ୍ଥାନାନ୍ତରିତ ହେଲା) | | |
| ୩୦ | ସାଧାରଣ ଅଂଶ ଆବଣ୍ଟନ ହିସାବ ଦାୟୀ | ୭୫,୦୦୦ | |
| | ସାଧାରଣ ଅଂଶ ମୂଳଧନ ହିସାବ ବାବଦ | | ୪୫,୦୦୦ |
| | ଅଂଶ ଅଧିମୂଲ୍ୟ ହିସାବ ବାବଦ | | ୩୦,୦୦୦ |
| | ( ନିର୍ଦ୍ଦେଶକମଣ୍ଡଳୀଙ୍କର···ତାରିଖର ପ୍ରସ୍ତାବକ୍ରମେ ୧୫,୦୦୦ ସାଧାରଣ ଅଂଶର ଅଂଶ ମୂଳଧନ ବାବଦ ଟ ୩ ହାରରେ ଓ ଅଂଶ ଅଧିମୂଲ୍ୟ ବାବଦ ଟ ୨ ହାରରେ ଟ ୭୫,୦୦୦ ପ୍ରାପ୍ୟ ହେଲା) | | |
| ୩୦ | ବ୍ୟାଙ୍କ୍ ହିସାବ ଦାୟୀ | ୭୫,୦୦୦ | |
| | ସାଧାରଣ ଅଂଶ ଆବଣ୍ଟନ ହିସାବ ବାବଦ | | ୭୫,୦୦୦ |
| | (ଅଂଶ ପ୍ରତି ଟ ୫ ହାରରେ ଆବଣ୍ଟନ ଅର୍ଥ ମିଳିଲା) | | |

| ବିବରଣ | | ଡେବିଟ୍ | କ୍ରେଡିଟ୍ |
|---|---|---|---|
| ସେପ୍ଟେ- ସାଧାରଣ ଅଂଶ ପ୍ରଥମ ଆହ୍ୱାନ ହି: | ଦାୟୀ | ୭୫,୦୦୦ | |
| ମ୍ବର-୧ ସାଧାରଣ ଅଂଶ ମୂଳଧନ ହିସାବ ବାବଦ | | | ୭୫,୦୦୦ |
| (ଅଂଶ ପ୍ରତି ଟ ୫ ହାରରେ ୧୫,୦୦୦ ସାଧାରଣ ଅଂଶର ପ୍ରଥମ ଆହ୍ୱାନ ଅର୍ଥ ନିର୍ଦ୍ଦେଶକମଣ୍ଡଳୀଙ୍କର ...ତାରିଖର ପ୍ରସ୍ତାବକ୍ରମେ ପ୍ରାପ୍ୟ ହେଲା । ) | | | |
| ୧ ବ୍ୟାଙ୍କ୍ ହିସାବ | ଦାୟୀ | ୭୦,୦୦୦ | |
| ସାଧାରଣ ଅଂଶ ପ୍ରଥମ ଆହ୍ୱାନ ହିସାବ ବାବଦ | | | ୭୦,୦୦୦ |
| (ଅଂଶ ପ୍ରତି ଟ ୫ ହାରରେ ୧୪,୦୦୦ ସାଧାରଣ ଅଂଶର ପ୍ରଥମ ଆହ୍ୱାନ ଅର୍ଥ ମିଳିଲା ।) | | | |
| ନଭେମ୍ବର ସାଧାରଣ ଅଂଶ ମୂଳଧନ ହିସାବ | ଦାୟୀ | ୧୫,୦୦୦ | |
| ୧ ସାଧାରଣ ଅଂଶ ପ୍ରଥମ ଆହ୍ୱାନ ହିସାବ ବାବଦ | | | ୫,୦୦୦ |
| ବାଜ୍ୟାପ୍ତ ଅଂଶ ହିସାବ ବାବଦ | | | ୧୦,୦୦୦ |
| ( ନିର୍ଦ୍ଦେଶକମଣ୍ଡଳୀଙ୍କର...ତାରିଖର ପ୍ରସ୍ତାବକ୍ରମେ ୧,୦୦୦ ସାଧାରଣ ଅଂଶ, ନଂ...ରୁ...ନଂ... ପର୍ଯ୍ୟନ୍ତ, ହରବନ୍ଧ ସାହୁଙ୍କଠାରୁ ଅଂଶ ପ୍ରତି ଟ ୫ ହାରରେ ପ୍ରଥମ ଆହ୍ୱାନ ଅର୍ଥ ନ ମିଳିବାରୁ ବାଜ୍ୟାପ୍ତ କରାଗଲା ।) | | | |
| ଡିସେମ୍ବର ବ୍ୟାଙ୍କ ହିସାବ | ଦାୟୀ | ୧୪,୫୦୦ | |
| ୧ ବାଜ୍ୟାପ୍ତ ଅଂଶ ହିସାବ ବାବଦ | ଦାୟୀ | ୫୦୦ | |
| ସାଧାରଣ ଅଂଶ ମୂଳଧନ ହିସାବ ବାବଦ | | | ୧୫,୦୦୦ |
| (ପୂର୍ବରୁ ବାଜ୍ୟାପ୍ତ କରାଯାଇଥିବା ୧,୦୦୦ ସାଧାରଣ ଅଂଶ, ଯାହାର ଟ ୨୦ ରୁ ଟ ୧୫ ଆହୃତ ହୋଇଛି, ତାହା ନିର୍ଦ୍ଦେଶକମଣ୍ଡଳୀଙ୍କର...ତାରିଖର ପ୍ରସ୍ତାବକ୍ରମେ ଲିଙ୍ଗରାଜ ମିଶ୍ରଙ୍କୁ ଟ ୧୪,୫୦୦ ରେ ବିକ୍ରୀ କରାଗଲା ।) | | | |
| ୧ ବାଜ୍ୟାପ୍ତ ଅଂଶ ହିସାବ | ଦାୟୀ | ୯,୫୦୦ | |
| ମୂଳଧନ ସଞ୍ଚିତ ହିସାବ ବାବଦ | | | ୯,୫୦୦ |
| ( ବାଜ୍ୟାପ୍ତ କରାଯାଇଥିବା ୧,୦୦୦ ସାଧାରଣ ଅଂଶ ପୁନର୍ପ୍ରଚଳିତ ହେବା ଫଳରେ ଅବଶିଷ୍ଟ ଲାଭ ମୂଳଧନ ସଞ୍ଚିତ ହିସାବକୁ ସ୍ଥାନାନ୍ତରିତ ହେଲା ।) | | | |

## ଦୃଷ୍ଟାନ୍ତ (୧୫)

କ୍ୟାପିଟେଲ ଫ୍ୟାବ୍ରିକେଟାର୍ସ ଲିମିଟେଡ଼ ପ୍ରତି ଅଂଶ ଟ ୧୦ ହାରରେ ଓ ଅଧିମୂଲ୍ୟ ଟ ୨ ହାରରେ ୪,୦୦୦ ସାଧାରଣ ଅଂଶ ପ୍ରଚଳନ କରିଥିଲେ । ଏହି ଅଂଶ ବାବଦ ମୂଲ୍ୟ ନିମ୍ନ ପ୍ରକାରେ ଦେୟ ଥିଲା :

| | |
|---|---|
| ଆବେଦନ ସମୟରେ | ଟ ୨ |
| ଆବଣ୍ଟନ ସମୟରେ | ଟ ୫ (ଅଧିମୂଲ୍ୟ ସମେତ) |
| ପ୍ରଥମ ଆହ୍ୱାନ ବେଳେ | ଟ ୩ |
| ଦ୍ୱିତୀୟ ଓ ଶେଷ ଆହ୍ୱାନ ବେଳେ | ଟ ୨ |
| | ଟ ୧୨ |

୬,୦୦୦ ଅଂଶ ସକାଶେ ଆବେଦନପତ୍ର ମିଳିଥିଲା ଓ ନିର୍ଦ୍ଦେଶକମଣ୍ଡଳୀ ଆନୁପାତିକ ହାରରେ ୫,୦୦୦ ଅଂଶର ଆବେଦନକାରୀଙ୍କୁ ଅଂଶ ଆବଣ୍ଟନ କରିବା ପାଇଁ ପ୍ରସ୍ତାବ ଗ୍ରହଣ କଲେ । ଅଧିକା ଆବେଦନ ଅର୍ଥ ଆବଣ୍ଟନ ଅର୍ଥ ରୂପେ ବ୍ୟବହୃତ ହୋଇଥିଲା ।

୧୦୦ ଗୋଟି ଅଂଶ କ୍ରୟ କରିଥିବା ବିନୋଦ ଆବଣ୍ଟନ ଅର୍ଥ ଓ ପ୍ରଥମ ଆହ୍ୱାନ ଅର୍ଥ ଦେବାକୁ ଅସମର୍ଥ ହେବାରୁ କମ୍ପାନୀ ଏହି ଅଂଶଗୁଡ଼ିକୁ ବାଜ୍ୟାପ୍ତ କଲେ । ୬୦ ଗୋଟି ଅଂଶର ମାଲିକ ପ୍ରମୋଦ ପ୍ରଥମ ଓ ଦ୍ୱିତୀୟ ଆହ୍ୱାନ ଅର୍ଥ ଦେବାକୁ ଅସମର୍ଥ ହେବାରୁ କମ୍ପାନୀ ଏହି ଅଂଶଗୁଡ଼ିକ ମଧ୍ୟ ବାଜ୍ୟାପ୍ତ କଲେ । ପରେ ରାମଲାଲଙ୍କୁ କମ୍ପାନୀ ୧୨୦ଟି ଅଂଶକୁ ପୂର୍ଣ୍ଣ ପ୍ରଦତ୍ତ ଅଂଶ ରୂପେ ଅଂଶ ପ୍ରତି ଟ ୯ ହାରରେ ବିକ୍ରୟ କଲେ । (ଏଥିରେ ବିନୋଦଙ୍କ ବାଜ୍ୟାପ୍ତ ଅଂଶ ଅନ୍ତର୍ଭୁକ୍ତ ଥିଲା ।)

ଉପରୋକ୍ତ ନେଣଦେଣଗୁଡ଼ିକ ସକାଶେ ଆବଶ୍ୟକ ଜାବ୍‌ଦା ଓ ଲେଜର ବହି ଲେଖ ଓ କମ୍ପାନୀର ଉଦ୍‌ବୃତ୍ତ ପତ୍ର ମଧ୍ୟ ପ୍ରସ୍ତୁତ କର ।

## ସମାଧାନ

| ଜାବ୍ଦା | | ଦାସ୍ତୀ | ଜମା |
|---|---|---|---|
| | | ଟଙ୍କା | ଟଙ୍କା |
| ସାଧାରଣ ଅଂଶ ଅବେଦନ ହିସାବ | ଦାସ୍ତୀ | ୮,୦୦୦ | |
| ସାଧାରଣ ଅଂଶ ମୂଳଧନ ହିସାବ ବାବଦ | | | ୮,୦୦୦ |
| (ନିର୍ଦ୍ଦେଶକମଣ୍ଡଳୀଙ୍କର···ତାରଖର ପ୍ରସ୍ତାବ ଅନୁଯାୟୀ ୬,୦୦୦ ସ୍ଥଳେ ୪,୦୦୦ ସାଧାରଣ ଅଂଶ ୩:୨ ଅନୁପାତରେ ଆବେଦନକାରୀଙ୍କୁ ଆବଣ୍ଟିତ ହେଲା ।) | | | |
| ସାଧାରଣ ଅଂଶ ଆବଣ୍ଟନ ହିସାବ | ଦାସ୍ତୀ | ୨୦,୦୦୦ | |
| ସାଧାରଣ ଅଂଶ ମୂଳଧନ ହିସାବ ବାବଦ | | | ୧୨,୦୦୦ |
| ଅଂଶ ଅଧିମୂଲ୍ୟ ହିସାବ ବାବଦ | | | ୮,୦୦୦ |
| (ନିର୍ଦ୍ଦେଶକମଣ୍ଡଳୀଙ୍କର···ତାରଖର ପ୍ରସ୍ତାବ ଅନୁଯାୟୀ ୪,୦୦୦ ସାଧାରଣ ଅଂଶ ବାବଦ ଅଂଶ ପ୍ରତି ଟ ୫ [ମୂଳଧନ ବାବଦ ଟ ୩ ଓ ଅଧିମୂଲ୍ୟ ବାବଦ ଟ ୨] ହାରରେ ଆବଣ୍ଟନ ଅର୍ଥ ପ୍ରାପ୍ୟ ହେଲା ।) | | | |
| ସାଧାରଣ ଅଂଶ ଆବେଦନ ହିସାବ | ଦାସ୍ତୀ | ୨,୦୦୦ | |
| ସାଧାରଣ ଅଂଶ ଆବଣ୍ଟନ ହିସାବ ବାବଦ | | | ୨,୦୦୦ |
| (୬,୦୦୦ ଅଂଶ ଆବେଦନକାରୀଙ୍କୁ ୪,୦୦୦ ଅଂଶ ଆବଣ୍ଟିତ ହୋଇଥିବାରୁ ଅଧିକା ଅର୍ଥ ଆବଣ୍ଟନ ହିସାବକୁ ସ୍ଥାନାନ୍ତରିତ ହେଲା ।) | | | |
| ସାଧାରଣ ଅଂଶ ପ୍ରଥମ ଆହ୍ୱାନ ହିସାବ | ଦାସ୍ତୀ | ୧୨,୦୦୦ | |
| ସାଧାରଣ ଅଂଶ ମୂଳଧନ ହିସାବ ବାବଦ | | | ୧୨,୦୦୦ |
| (ନିର୍ଦ୍ଦେଶକମଣ୍ଡଳୀଙ୍କର···ତାରଖର ପ୍ରସ୍ତାବକ୍ରମେ ଅଂଶ ପ୍ରତି ଟ ୩ ହାରରେ ୪,୦୦୦ ସାଧାରଣ ଅଂଶ ପ୍ରଥମ ଆହ୍ୱାନ ଅର୍ଥ ପ୍ରାପ୍ୟ ହେଲା ।) | | | |

| ବିବରଣୀ | | |
|---|---|---|
| ସାଧାରଣ ଅଂଶ ମୂଳଧନ ହିସାବ ଦାୟୀ | ୮୦୦ | |
| ଅଂଶ ଅଧିମୂଲ୍ୟ ହିସାବ ଦାୟୀ | ୨୦୦ | |
| ସାଧାରଣ ଅଂଶ ଆବଣ୍ଟନ ହିସାବ ବାବଦ | | ୪୫୦ |
| ସାଧାରଣ ଅଂଶ ପ୍ରଥମ ଆହ୍ୱାନ ହିସାବ ବାବଦ | | ୩୦୦ |
| ବାଜ୍ୟାପ୍ତ ଅଂଶ ହିସାବ ବାବଦ | | ୨୫୦ |
| (ନିର୍ଦ୍ଦେଶକମଣ୍ଡଳୀଙ୍କର···ତାରିଖର ପ୍ରସ୍ତାବ ଅନୁଯାୟୀ ବିନୋଦ କ୍ରୟ କରିଥିବା ୧୦୦ ଅଂଶ ବାବଦ ଆବଣ୍ଟନ ଅର୍ଥ ଓ ପ୍ରଥମ ଆହ୍ୱାନ ଅର୍ଥ ନ ମିଳିବାରୁ ସେହି ଅଂଶଗୁଡ଼ିକ ବାଜ୍ୟାପ୍ତ କରାଗଲା । ସାଧାରଣ ଅଂଶ ମୂଳଧନ ହିସାବକୁ ଆହୂତ ଅର୍ଥ ସହାଶେ ଦାୟୀ କରାଗଲା ।) (୩) | | |
| ସାଧାରଣ ଅଂଶ ଦ୍ୱିତୀୟ ଓ ଶେଷ ଆହ୍ୱାନ ହି: ଦାୟୀ | ୨,୮୦୦ | |
| ସାଧାରଣ ଅଂଶ ମୂଳଧନ ହିସାବ ବାବଦ | | ୨,୮୦୦ |
| (ନିର୍ଦ୍ଦେଶକମଣ୍ଡଳୀଙ୍କର···ତାରିଖର ପ୍ରସ୍ତାବ ଅନୁଯାୟୀ ୩,୯୦୦ ସାଧାରଣ ଅଂଶର ଅଂଶ ପ୍ରତି ଟ୧ ହାରରେ ଦ୍ୱିତୀୟ ଓ ଶେଷ ଆହ୍ୱାନ ଅର୍ଥ ପ୍ରାପ୍ୟ ହେଲା ।) | | |
| ସାଧାରଣ ଅଂଶ ମୂଳଧନ ହିସାବ ଦାୟୀ | ୬୦୦ | |
| ସାଧାରଣ ଅଂଶ ପ୍ରଥମ ଆହ୍ୱାନ ହିସାବ ବାବଦ | | ୧୮୦ |
| ସାଧାରଣ ଅଂଶ ଦ୍ୱିତୀୟ ଓ ଶେଷ ଆହ୍ୱାନ ହି: ବାବଦ | | ୧୨୦ |
| ବାଜ୍ୟାପ୍ତ ଅଂଶ ହିସାବ ବାବଦ | | ୩୦୦ |
| (ନିର୍ଦ୍ଦେଶକମଣ୍ଡଳୀଙ୍କର···ତାରିଖର ପ୍ରସ୍ତାବ ଅନୁଯାୟୀ ପ୍ରମୋଦ କ୍ରୟ କରିଥିବା ୬୦ ଗୋଟି ସାଧାରଣ ଅଂଶ ବାବଦ ପ୍ରଥମ ଓ ଦ୍ୱିତୀୟ ଆହ୍ୱାନ ଅର୍ଥ ନ ମିଳିବାରୁ ସେହି ଅଂଶଗୁଡ଼ିକ ବାଜ୍ୟାପ୍ତ କରାଗଲା ।) | | |
| ବାଜ୍ୟାପ୍ତ ଅଂଶ ହିସାବ ଦାୟୀ | ୧୨୦ | |
| ସାଧାରଣ ଅଂଶ ମୂଳଧନ ହିସାବ ବାବଦ | | ୧୨୦ |
| (ପୁନର୍ପ୍ରଚଳିତ ୧୨୦ଟି ଅଂଶ ଅବହାରରେ ବିକ୍ରି ନ ହୋଇଥିବାରୁ ଟ୧ ହାରରେ ଟ୧୨୦ ବଟା ଦିଆଗଲା ।) | | |
| ବାଜ୍ୟାପ୍ତ ଅଂଶ ହିସାବ ଦାୟୀ | ୨୩୦ | |
| ମୂଳଧନ ସଞ୍ଚିତ ହିସାବ ବାବଦ | | ୨୩୦ |
| (ବାଜ୍ୟାପ୍ତ ଅଂଶ ହିସାବରେ ଟ୫ ହାରରେ ଅପ୍ରଚଳିତ ୪୦ଟି ଅଂଶ ସହାଶେ ଟ୨୦୦ ରଖି ଅବଶିଷ୍ଟ ଟ୨୩୦ କୁ ମୂଳଧନ ସଞ୍ଚିତ ହିସାବକୁ ସ୍ଥାନାନ୍ତରିତ କରାଗଲା ।) (୪) | | |

## ଶେୟାର୍ ବହି

| ଦାୟୀ | ଟଙ୍କା | ଦାତା | ଟଙ୍କା |
|---|---|---|---|
| ସାଧାରଣ ଅଂଶ ଆବେଦନ ହିସାବ ବାବଦ (ଅଂଶ ପ୍ରତି ଟ ୨ ହାରରେ ୬,୦୦୦ ଅଂଶ ସକାଶେ ଆବେଦନ ଅର୍ଥ ମିଳିଲା) | ୧୨,୦୦୦ | ସାଧାରଣ ଅଂଶ ଆବେଦନ ହିସାବ ବାବଦ (ଅଂଶ ପ୍ରତି ଟ ୨ ହାରରେ ୧,୦୦୦ ଆବେଦନକାରୀଙ୍କ ଅର୍ଥ ଫେରସ୍ତ ଦିଆଗଲା) (୧) | ୨,୦୦୦ |
| ସାଧାରଣ ଅଂଶ ଆବଣ୍ଟନ ହିସାବ ବାବଦ (ବିନୋଦଙ୍କର ୧୦୦ଟି ଅଂଶ ବାବଦ ଟଙ୍କା ବାଦ ଅନ୍ୟ ସମସ୍ତଙ୍କଠାରୁ ଆବଣ୍ଟନ ଅର୍ଥ ମିଳିଲା) (୧) | ୧୭,୫୫୦ | ବାକି ଗଡ଼ିଲା | ୪୭,୮୩୦ |
| ସାଧାରଣ ଅଂଶ ପ୍ରଥମ ଆହ୍ୱାନ ହିସାବ ବାବଦ (ବିନୋଦଙ୍କର ୧୦୦ଟି ଓ ପ୍ରମୋଦଙ୍କର ୬୦ଟି ଅଂଶ ବାଦ ଅନ୍ୟ ସମସ୍ତଙ୍କର ଅର୍ଥାତ୍ ୪,୦୦୦ – ୧୬୦ = ୩,୮୪୦ଟି ଅଂଶର ପ୍ରଥମ ଆହ୍ୱାନ ଅର୍ଥ ମିଳିଲା) | ୧୧,୫୨୦ | | |
| ସାଧାରଣ ଅଂଶ ଦ୍ୱିତୀୟ ଆହ୍ୱାନ ହିସାବ ବାବଦ (୧୬୦ଟି ଅଂଶ ବ୍ୟତୀତ ୩,୮୪୦ଟି ଅଂଶ ବାବଦ ଦ୍ୱିତୀୟ ଆହ୍ୱାନ ଅର୍ଥ ମିଳିଲା) | ୭,୬୮୦ | | |
| ସାଧାରଣ ଅଂଶ ମୂଳଧନ ହିସାବ ବାବଦ (୧୨୦ଟି ଅଂଶ ପ୍ରତି ଅଂଶ ଟ ୯ ହାରରେ ରାମଲାଲଙ୍କୁ ବିକ୍ରିତ ହେଲା) | ୧,୦୮୦ | | |
| | ୪୯,୮୩୦ | | ୪୯,୮୩୦ |
| ପୂର୍ବ ବାକି ବାବଦ | ୪୭,୮୩୦ | | |

## କ୍ୟାପିଟେଲ ଫ୍ୟାବ୍ରିକେଟର୍ସଙ୍କର

### ୧୯···ମସିହା···ତାରିଖର ଉଦ୍ବର୍ତ୍ତ ପତ୍ର

| ମୂଳଧନ ଓ ଦାୟ | | ଟଙ୍କା | ପରିସମ୍ପତ୍ତି | ଟଙ୍କା |
|---|---|---|---|---|
| ଅଂଶ ମୂଳଧନ : | | | ଚଳନ୍ତି ସମ୍ପତ୍ତି : | |
| ପ୍ରାଧିକୃତ ମୂଳଧନ | | | ବ୍ୟାଙ୍କରେ ଗଚ୍ଛିତ ତହବିଲ | ୪୬,୮୩୦ |
| ···ଅଂଶ ପ୍ରତି ଟ ୧୦ ହାରରେ | | | | |
| ପ୍ରଚଳିତ ମୂଳଧନ | | | | |
| ୪,୦୦୦ ସାଧାରଣ ଅଂଶ ପ୍ରତି ଅଂଶ | | | | |
| ଟ ୧୦ ହାରରେ | | ୪୦,୦୦୦ | | |
| ବର୍ଣ୍ଟିତ ମୂଳଧନ : | | | | |
| ୩,୯୬୦ ସାଧାରଣ ଅଂଶ | | | | |
| ଟ ୧୦ ହାରରେ | ୩୯,୬୦୦ | ୩୯,୮୦୦ | | |
| ଯୁକ୍ତ ବାଜ୍ୟାପ୍ତ ଅଂଶ | ୨୦୦ | | | |
| ସଞ୍ଚିତ ଓ ବଳକା : | | | | |
| ମୂଳଧନ ସଞ୍ଚିତ | | ୨୩୦ | | |
| ଅଂଶ ଅଧିମୂଲ୍ୟ ହିସାବ | | ୬,୮୦୦ | | |
| | | ୪୬,୮୩୦ | | ୪୬,୮୩୦ |

ନୋଟ : (୧) ୬,୦୦୦ ଅଂଶ ସକାଶେ ଆବେଦନ ଅର୍ଥ ମିଳିଥିଲା; କିନ୍ତୁ ୫,୦୦୦ ଅଂଶ ପାଇଁ ଆବେଦନ କରିଥିବା ଆବେଦନକାରୀଙ୍କୁ ୪,୦୦୦ ଅଂଶ ଆବଣ୍ଟିତ ହୋଇଥିଲା । ତେଣୁ ଯେଉଁ ୧,୦୦୦ ଆବେଦନକାରୀଙ୍କୁ କୌଣସି ଅଂଶ ଆବଣ୍ଟିତ ହୋଇ ନ ଥିଲା ସେମାନଙ୍କୁ ୧,୦୦୦ × ଟ୨ = ଟ ୨,୦୦୦ ଫେରନ୍ତ ଦିଆଗଲା ।

(୨) ବିନୋଦ ଆବଣ୍ଟନ ଅର୍ଥ ଦେଇ ନ ଥିଲେ । ତାଙ୍କୁ ୧୦୦ଟି ଅଂଶ ଆବଣ୍ଟିତ ହୋଇଥିଲା ସତ, କିନ୍ତୁ ସେ ଆବେଦନ କରିଥିଲେ ୧୦୦ × ୫/୪ = ୧୨୫ଟି ଅଂଶ ସକାଶେ (କାରଣ ୫:୪ ଅନୁପାତରେ ଅଂଶ ଆବଣ୍ଟିତ ହୋଇଥିଲା ।) ତେଣୁ ତାଙ୍କର ୨୫ × ଟ ୨ = ଟ ୫୦ ଆବେଦନ ଅର୍ଥରୁ କମ୍ପାନୀ ନିକଟରେ ରହିଛି । ତେଣୁ ଆବଣ୍ଟନ ବାବଦ ତାଙ୍କଠାରୁ ୧୦୦ × ଟ୫ = ଟ ୫୦୦ ପରିବର୍ତ୍ତେ (ଟ୫୦୦ − ଟ ୫୦) = ଟ ୪୫୦ ପ୍ରାପ୍ୟ ଥିଲା । ତେଣୁ କମ୍ପାନୀକୁ ଆବଣ୍ଟନ ଅର୍ଥ ବାବଦ ମୋଟ ମିଳିଲା :

| | |
|---|---|
| ୫ ହାରରେ ୪,୦୦୦ ଅଂଶ ସକାଶେ | ଟ ୨୦,୦୦୦ |
| (ବିଯୁକ୍ତ) ୧,୦୦୦ ଆବେଦନକାରୀଙ୍କଠାରୁ ଟ ୨ ହାରରେ ମିଳିଥିବା ଅଧିକା ଟଙ୍କା | ଟ ୨,୦୦୦ |
| | ଟ ୧୮,୦୦୦ |
| (ବିଯୁକ୍ତ) ବିନୋଦଙ୍କଠାରୁ ୧୦୦ଟି ଅଂଶ ବାବଦ ମିଳି ନ ଥିବା | ଟ ୪୫୦ |
| | ଟ ୧୭୫୫୦ |

(୩) ଯେହେତୁ ବିନୋଦଙ୍କଠାରୁ ଆବଣ୍ଟନ ଅର୍ଥ ବାବଦ ଟ ୪୫୦ ପ୍ରାପ୍ୟ ଥିଲା ତେଣୁ ତାଙ୍କର ଟ ୧୦୦ ଅଂଶ ବାଜ୍ୟାପ୍ତ କରିବା ସମୟରେ ଅଂଶ ଅବଣ୍ଟନ ହିସାବକୁ ଟ ୪୫୦ ପାଇଁ ଓ ବାଜ୍ୟାପ୍ତ ଅଂଶ ହିସାବକୁ ଟ ୨୫୦ ସକାଶେ (ଆବେଦନ ସହିତ ୧୨୫ଟି ଅଂଶ ପାଇଁ ମିଳିଥିବା ଅର୍ଥ ସକାଶେ) ଦାବୀ କରାଯାଇଛି ।

(୪) ବାଜ୍ୟାପ୍ତ ଅଂଶ ହିସାବରେ ଟ (୨୫୦+୩୦୦ – ୧୨୦ =) ୪୩୦ ଦାବୀ ବାକୀ ଥିଲା ଓ ସେହି ମୋଟ ଟଙ୍କା ମୂଳଧନ ସଞ୍ଚିତ ହିସାବକୁ ସ୍ଥାନାନ୍ତରିତ ହୋଇପାରିଥାଆନ୍ତା; କିନ୍ତୁ ଯେହେତୁ ୪୦ଟି (୧୬୦ – ୧୨୦) ଅଂଶ ପୁନଃ ପ୍ରଚଳିତ ହେବାକୁ ଅବଶିଷ୍ଟ ଅଛି, ତେଣୁ ସେ ବାବଦ ଆଶଙ୍କିତ କ୍ଷତି ସକାଶେ ଅଂଶ ପ୍ରତି ଟ ୫ ହାରରେ (୪୦ × ଟ୫)=ଟ ୨୦୦ ଅବଶିଷ୍ଟ ରଖି ବଳକା ଟ ୨୩୦କୁ ମୂଳଧନ ସଞ୍ଚିତ ହିସାବକୁ ସ୍ଥାନାନ୍ତରିତ କରାଯାଇଛି ।

**ବୋନସ୍ ଅଥବା ଲଭ ଉପଜାତ ଅଂଶ ପତ୍ର**—ଅନେକ ସମୟରେ କମ୍ପାନୀ ପ୍ରଚୁର ପରିମାଣର ଲଭ ଅର୍ଜନ କରେ; କିନ୍ତୁ ନଗଦ ଅର୍ଥ ଅଭାବରୁ ନଗଦ ଅର୍ଥ ଆକାରରେ ଏହାର ଅଂଶଧାରୀମାନଙ୍କୁ ଲଭାଂଶ (ଡିଭିଡେଣ୍ଡ) ବଣ୍ଟନ କରିବାକୁ ସମର୍ଥ ହୁଏ ନାହିଁ । ସେତେବେଳେ କମ୍ପାନୀ ଏହାର ଉପସ୍ଥିତ ଅଂଶଧାରୀମାନଙ୍କୁ ଅଂଶପତ୍ର ଆକାରରେ ଲଭାଂଶ ବଣ୍ଟନ କରେ । ଏହାକୁ ବୋନସ୍ ଅଂଶ ପତ୍ରର ପ୍ରଚଳନ କୁହାଯାଏ । କେତେକ ସମୟରେ କମ୍ପାନୀର ସାଧାରଣ ସଞ୍ଚିତର ପରିମାଣ ପ୍ରୟୋଜନାତିରିକ୍ତ ହୋଇଥାଏ । ଏହାର ପରିମାଣକୁ ଆବଶ୍ୟକତାନୁଯାୟୀ ରଖି ବଳକା ପରିମାଣକୁ ମଧ୍ୟ କମ୍ପାନୀ ବୋନସ୍ ଅଂଶ ଆକାରରେ ଏହାକୁ ଉପସ୍ଥିତ ଅଂଶୀଦାରମାନଙ୍କୁ ବଣ୍ଟନ କରିଥାଏ । ଏପରିସ୍ଥଳେ କେବଳ ସଞ୍ଚିତର ପରିମାଣ ହ୍ରାସ ପାଏ ଓ ଅନୁରୂପ ପରିମାଣ ମୂଳଧନରେ ସଂଯୁକ୍ତ ହୁଏ । ଏହାକୁ ସଞ୍ଚିତର ମୂଳଧନାୟନ (Capitalization of Reserve) କୁହାଯାଏ ।

**ବୋନସ୍ ଅଂଶପତ୍ର ପ୍ରଚଳନ କରିବାର ସୁବିଧା ଓ ଅସୁବିଧା**—ବୋନସ ଅଂଶପତ୍ର ପ୍ରଚଳନ କରିବାର ସୁବିଧା ଓ ଅସୁବିଧାଗୁଡ଼ିକୁ ଦୁଇଟି ଦୃଷ୍ଟିକୋଣରୁ

ବିଚାର କରିଯାଇପାରେ, ଯେପରି କମ୍ପାନୀର ଦୃଷ୍ଟିକୋଣରୁ ଓ ଅଂଶଧାରୀମାନଙ୍କ ଦୃଷ୍ଟିକୋଣରୁ । ଏହି ସୁବିଧା ଓ ଅସୁବିଧାମାନ ନିମ୍ନରେ ବର୍ଣ୍ଣିତ ହେଲା ।

କମ୍ପାନୀର ଦୃଷ୍ଟିକୋଣରୁ :

(୧) ଅନେକ ସମୟରେ କମ୍ପାନୀ ଯଥେଷ୍ଟ ପରିମାଣର ଲାଭ ଅର୍ଜନ କରିପାରେ; କିନ୍ତୁ ନଗଦ ଅର୍ଥ ଅଭାବରୁ ନଗଦ ଆକାରରେ ଲାଭାଂଶ ବଣ୍ଟନ କରିବାକୁ କମ୍ପାନୀ ଅକ୍ଷମ ହୁଏ । ଏପରି କ୍ଷେତ୍ରରେ ବୋନସ ଅଂଶ ପତ୍ର ଆକାରରେ ଲାଭାଂଶ ବଣ୍ଟନ କରାଗଲେ କମ୍ପାନୀ ପକ୍ଷରେ ନଗଦ ଅର୍ଥ ଆବଶ୍ୟକ ହୁଏ ନାହିଁ, ଅଥଚ ଅଂଶଧାରୀମାନେ ସନ୍ତୁଷ୍ଟ ହୁଅନ୍ତି ।

(୨) କେତେକ ସମୟରେ କମ୍ପାନୀ ନିକଟରେ ପର୍ଯ୍ୟାପ୍ତ ନଗଦ ଅର୍ଥ ଥିଲେ ମଧ୍ୟ କମ୍ପାନୀର ପ୍ରସାରଣ ଦୃଷ୍ଟିରୁ ଅଥବା କାର୍ଯ୍ୟକାରୀ ମୂଳଧନର ତାତ୍କାଳିକ ପ୍ରୟୋଜନୀୟତା ଦୃଷ୍ଟିରୁ କମ୍ପାନୀ ଏହି ନଗଦ ଅର୍ଥର ପରିମାଣକୁ ଲାଭାଂଶ ଆକାରରେ ବ୍ୟୟ କରିବା ସମୀଚୀନ ମନେ କରେ ନାହିଁ । ସେପରି କ୍ଷେତ୍ରରେ କମ୍ପାନୀ ବୋନସ ଅଂଶ ପତ୍ର ଆକାରରେ ଲାଭାଂଶ ବଣ୍ଟନ କରିବାଦ୍ୱାରା ଏହାର ଅଂଶଧାରୀମାନଙ୍କୁ ସନ୍ତୁଷ୍ଟ ରଖେ ।

(୩) କେତେକ ସମୟରେ କମ୍ପାନୀର ଲାଭର ପରିମାଣ ଯଦି ଅତିରିକ୍ତ ହୋଇଥାଏ ଏବଂ ସଞ୍ଚିତର ପରିମାଣ ମଧ୍ୟ ପ୍ରୟୋଜନାତିରିକ୍ତ ହୋଇଥାଏ, ତାହାହେଲେ ଲାଭାଂଶ ବଣ୍ଟନ କଲେ ମୂଳଧନ ପ୍ରତି ଲାଭାଂଶର ଅନୁପାତ ମାତ୍ରାତିରିକ୍ତ ହୋଇପାରେ । ତାହାହେଲେ ଲାଭାଂଶର ମୂଳଧନ ପ୍ରତି ଉଚ୍ଚହାର ସେହି ବ୍ୟବସାୟ କ୍ଷେତ୍ରକୁ ବହୁ ପ୍ରତିଯୋଗୀଙ୍କୁ ଆକୃଷ୍ଟ କରେ । ପ୍ରତିଯୋଗୀଙ୍କ ସଂଖ୍ୟା ବୃଦ୍ଧି ପାଇଲେ ଭବିଷ୍ୟତରେ କମ୍ପାନୀ ପକ୍ଷରେ ପୂର୍ବ ବର୍ଷଗୁଡ଼ିକରେ ଅର୍ଜିତ ଲାଭ ପରିମାଣର ଅନୁରୂପ ଲାଭ ଅର୍ଜନ କରିବା ଦୁଃସାଧ୍ୟ ହୁଏ । ଦ୍ୱିତୀୟତଃ ଏହି ଉଚ୍ଚହାରର ଲାଭ କର୍ମଚାରୀମାନଙ୍କ ମନରେ ବିକ୍ଷୋଭ ସୃଷ୍ଟି କରେ ଏବଂ ସେମାନେ ଅଧିକ ପରିମାଣର ବେତନ, ମଜୁରି ଓ ପାରିତୋଷିକ ଦାବୀ କରନ୍ତି । ଏଭଳି ପରିସ୍ଥିତି ମଧ୍ୟ କମ୍ପାନୀ ପକ୍ଷରେ ଅନୁକୂଳ ନୁହେଁ । ତେଣୁ କମ୍ପାନୀ ସାଧାରଣ ସଞ୍ଚିତରୁ ବୋନସ ଅଂଶ ପ୍ରଚଳନ କରି ମୂଳଧନର ପରିମାଣ ବୃଦ୍ଧି କରନ୍ତି । ଫଳତଃ ମୂଳଧନ ପ୍ରତି ଲାଭାଂଶର ହାର ହ୍ରାସ ପାଏ ।

ଉଦାହରଣ ସ୍ୱରୂପ ମନେ କରାଯାଉ ଯେ କମ୍ପାନୀର ମୂଳଧନର ପରିମାଣ ଟ ୧୫,୦୦,୦୦୦; ସାଧାରଣ ସଞ୍ଚିତର ପରିମାଣ ଟ ୨୫,୦୦,୦୦୦ ଓ ନିଟ୍ ଲାଭର ପରିମାଣ ଟ ୭,୦୦,୦୦୦ । କିନ୍ତୁ ବ୍ୟାଙ୍କରେ ଗଚ୍ଛିତ ଅର୍ଥର ପରିମାଣ ଟ ୧,୦୦,୦୦୦ । ଏପରି କ୍ଷେତ୍ରରେ ଯଦି ଟ ୭,୦୦,୦୦୦ କୁ ଲାଭାଂଶ ଆକାରରେ ବଣ୍ଟନ କରାଯାଏ

ତାହାହେଲେ ଏହି ମୂଳଧନ ସହିତ ଏହାର ଅନୁପାତ ୪୦ ଶତାଂଶ ହୁଏ । କିନ୍ତୁ ଯଦି ସଞ୍ଚିତ ପରିମାଣକୁ ମୂଳଧନ ସ୍ୱରୂପ ବିବେଚନା କରାଯାଏ, ତାହାହେଲେ ଏହି ଅନୁପାତ ୧୬ ଶତାଂଶକୁ ହ୍ରାସ ପାଇବ । ଫଳତଃ ୧୬ ଶତାଂଶ ଲଭ୍ୟାଂଶ ପ୍ରତିଯୋଗୀ ଅଥବା କର୍ମଚାରୀମାନଙ୍କୁ ଆକୃଷ୍ଟ କରିବ ନାହିଁ ।

ବୋନସ ଅଂଶ ପ୍ରଚଳନ କରିବାର ଗୋଟିଏ ଅସୁବିଧା ହେଉଛି ଏହା ଯେ ବୋନସ ଅଂଶ ପ୍ରଚଳନ ପୂର୍ବରୁ କମ୍ପାନୀର ଅଂଶଧାରୀମାନେ ଯେଉଁ ହାରରେ ଲଭ୍ୟାଂଶ ପାଇଥାଆନ୍ତି ଏହି ବୋନସ ଅଂଶର ପ୍ରଚଳନ ପରେ ଅଂଶର ସଂଖ୍ୟା ଏତେ ବୃଦ୍ଧି ପାଏ ଯେ କମ୍ପାନୀ ପକ୍ଷରେ ଲଭ୍ୟାଂଶର ପୂର୍ବ ହାର ବଜାୟ ରଖିବା ସମ୍ଭବ ହୁଏ ନାହିଁ । ଏତଦ୍ୱାରା ଅଂଶଧାରୀମାନେ ଅସନ୍ତୁଷ୍ଟ ହୁଅନ୍ତି ।

ଅଂଶଧାରୀମାନଙ୍କର ଦୃଷ୍ଟିକୋଣରୁ :

(୧) ବୋନସ ଅଂଶ ପ୍ରଚଳିତ ହେଲେ ଅଂଶଧାରୀମାନେ ଯେଉଁ ଲଭ୍ୟାଂଶ ବୋନସ ଅଂଶ ଆକାରରେ ପାଆନ୍ତି ତାହା ଉପରେ ସେମାନଙ୍କୁ ଆୟକର ଦେବାକୁ ପଡ଼େ ନାହିଁ, ଯଦିଓ କମ୍ପାନୀକୁ ଏହି ବାବଦରେ ଶତକଡ଼ା ଟ ୧୨.୫୦ ପଇସା ଆୟକର ଦେବାକୁ ପଡ଼େ ।

(୨) ଅଂଶଧାରୀମାନେ ବିନା ମୂଲ୍ୟରେ ଅଧିକ ସଂଖ୍ୟକ ଅଂଶପତ୍ରର ମାଲିକ ହୁଅନ୍ତି । ଭବିଷ୍ୟତରେ ଲଭ୍ୟାଂଶର ହାର ହ୍ରାସ ପାଇଲେ ମଧ୍ୟ ଅଂଶଧାରୀମାନେ ପୂର୍ବ ତୁଳନାରେ ଅଧିକ ଅଂଶପତ୍ରର ଅଧିକାରୀ ହୋଇଥିବାରୁ ତାଙ୍କର ଲଭ୍ୟାଂଶର ମୋଟ ପରିମାଣ ପୂର୍ବାପେକ୍ଷା ଅଧିକ ହୁଏ ।

ଅଂଶଧାରୀମାନଙ୍କ ପକ୍ଷରେ ଅସୁବିଧା ଏହା ହୋଇପାରେ ଯେ କମ୍ପାନୀ ବୋନସ୍ ଅଂଶ ପ୍ରଚଳିତ କରିବା ପରେ ଅଂଶର ସଂଖ୍ୟା ବୃଦ୍ଧି ପାଏ, କିନ୍ତୁ ଯେହେତୁ କାର୍ଯ୍ୟକାରୀ ମୂଳଧନର ପରିମାଣ ବୃଦ୍ଧି ପାଏ ନାହିଁ । ତେଣୁ ସାଧାରଣତଃ କମ୍ପାନୀ ପକ୍ଷରେ ପୂର୍ବ ବର୍ଷ ତୁଳନାରେ ଲଭର ପରିମାଣ ବୃଦ୍ଧି କରିବା ସମ୍ଭବ ହୁଏ ନାହିଁ । ଫଳତଃ ଲଭ୍ୟାଂଶର ହାର ହ୍ରାସ ପାଏ । ଅଂଶ ବିକ୍ରୟ ବଜାରରେ ଏହାର ପ୍ରତିକ୍ରିୟା ଏହା ହୁଏ ଯେ ଉକ୍ତ କମ୍ପାନୀର ଅଂଶର ମୂଲ୍ୟ ହ୍ରାସ ପାଇପାରେ ।

**ବୋନସ ଅଂଶ ପ୍ରଚଳନର ପ୍ରଣାଳୀ :**

ବୋନସ ଅଂଶ ପ୍ରଚଳନ କରିବା ପାଇଁ କମ୍ପାନୀକୁ ନିର୍ଦ୍ଦେଶକମଣ୍ଡଳୀଙ୍କର ସୁପାରିଶକ୍ରମେ ଏଭଳି ଗୋଟିଏ ପ୍ରସ୍ତାବ ଅଂଶଧାରୀମାନଙ୍କର ଗୋଟିଏ ସାଧାରଣ ସଭାରେ ଅନୁମୋଦନ କରାଇବାକୁ ହୁଏ । ଏହି ପ୍ରସ୍ତାବ ଅନୁମୋଦିତ ହେବା ପରେ ବୋନସ ଅଂଶ

ଲିଖିତ ମୂଲ୍ୟରେ ଅଥବା ଅଧିହାରରେ ପ୍ରଚଳିତ କରାଯାଇପାରେ । ଏହା ସ୍ମରଣ ରଖିବାକୁ ହେବ ଯେ ପୂର୍ଣ୍ଣ ଆଦାୟୀକୃତ ଅଂଶ ରୂପେ ଏହି ବୋନସ ଅଂଶ ସର୍ବଦା ପ୍ରଚଳିତ ହୁଏ ।

ଆଂଶିକ ଆଦାୟୀକୃତ ଅଂଶ ମୂଲ୍ୟର ଅନାଦାୟୀ ଅଂଶକୁ ପରିଶୋଧ କରିବା ପାଇଁ ମଧ୍ୟ ଅଂଶଧାରୀମାନଙ୍କୁ ବୋନସ ଦିଆଯାଇପାରେ । ଏଭଳି ବୋନସ ପ୍ରଦାନ ନଗଦ ବୋନସ ଦେବାର ସମତୁଲ ଅଟେ । କାରଣ ଅଂଶଧାରୀମାନେ ଅଂଶ ମୂଲ୍ୟର ବକେୟା ପରିମାଣ ଦେବାରୁ ଅବ୍ୟାହତି ପାଆନ୍ତି । କିନ୍ତୁ ଏଠାରେ ସ୍ମରଣ ରଖିବାକୁ ହେବ ଯେ 'ଅଂଶ ଅଧିହାର ହିସାବ' ଓ 'ମୂଳଧନ ପରିଶୋଧ ସଞ୍ଚିତି ହିସାବ'ର ଦାତା ବାକିରୁ ପୂର୍ଣ୍ଣ ପ୍ରଦତ୍ତ ବୋନସ ଅଂଶ ଦିଆଯାଇପାରେ, ଆଂଶିକ ଆଦାୟୀକୃତ ଅଂଶକୁ ପୂର୍ଣ୍ଣ ପ୍ରଦତ୍ତ ଅଂଶରେ ପରିଣତ କରିବା ପାଇଁ ବ୍ୟବହୃତ ହୋଇପାରେ ନାହିଁ ।

ନିମ୍ନଲିଖିତ ଆବଣ୍ଟିତ ଲାଭ ଓ ସଞ୍ଚିତିରୁ ବୋନସ ଅଂଶ ଦିଆଯାଇପାରେ :

(୧) ନିଟ୍ ଲାଭ ଓ କ୍ଷତି ହିସାବର ଦାତା ବାକି ;

(୨) ଆବଣ୍ଟିତ ଲାଭରୁ ଯଦି ସାଧାରଣ ସଞ୍ଚିତି ଅଥବା ଅନ୍ୟ କୌଣସି ସଞ୍ଚିତି ଗଢ଼ାଯାଇଥାଏ ତାହାର ଦାତା ବାକିରୁ;

(୩) ଋଣ ପତ୍ର ବାବଦ ଅର୍ଥ ପରିଶୋଧ କରିବା ପରେ 'ଋଣ ପତ୍ର ପରିଶୋଧ ପାଣ୍ଠି ହିସାବ'ରେ ବଳକା ଥିବା ଦାତା ବାକିରୁ;

(୪) ମୂଳଧନ ଜାତୀୟ ଲାଭ ଓ ସଞ୍ଚିତିରୁ;

(୫) ଅଗ୍ରାଧିକାର ଅଂଶ ବାବଦ ଅର୍ଥ ପରିଶୋଧ କରିବା ସମୟରେ ମୂଳଧନ ପରିଶୋଧ ସଞ୍ଚିତିକୁ ଯେଉଁ ପରିମାଣ ସ୍ଥାନାନ୍ତରିତ ହୋଇଥାଏ, ତହିଁରୁ;

(୬) ଅଧିହାରରେ ଅଂଶ ପ୍ରଚଳନ କରିବାଦ୍ୱାରା ଅଂଶର ଲିଖିତ ମୂଲ୍ୟ ଅପେକ୍ଷା ଯେଉଁ ଅଧିକା ଅର୍ଥ ମିଳିଥାଏ, ତହିଁରୁ ।

**ବୋନସ ଅଂଶ ପ୍ରଚଳନ କରିବା ସମୟରେ ଆବଶ୍ୟକ ଜାବଦା :**

(୧) ସମହାରରେ ବୋନସ ଅଂଶର ପ୍ରଚଳନ :

(କ) ଲାଭ ଅଥବା ସଞ୍ଚିତିର ଅଙ୍କକୁ ବୋନସ ହିସାବକୁ ସ୍ଥାନାନ୍ତରିତ କରିବା ପାଇଁ :

| | | |
|---|---|---|
| ଲାଭ ଓ କ୍ଷତି ବଣ୍ଟନ ହିସାବ | ଦାୟୀ | ବୋନସ ଅଂଶଲୁଣ୍ଠକର ଲିଖିତାଙ୍କ ସକାଶେ |
| ବା | | |
| ସାଧାରଣ ସଞ୍ଚିତି ହିସାବ | ଦାୟୀ | |
| ବା | | |
| ଅଂଶ ଅଧିହାର ହିସାବ | ଦାୟୀ | |
| ବା | | |
| ମୂଳଧନ ପରିଶୋଧ ସଞ୍ଚିତି ହିସାବ | ଦାୟୀ | |
| ଅଂଶଧାରୀମାନଙ୍କୁ ବୋନସ ହିସାବ ବାବଦ | | |

(ଖ) ବୋନସ ଅଂଶଗୁଡ଼ିକର ମୋଟ ଅଙ୍କିତ ମୂଲ୍ୟକୁ ଅଂଶ ମୂଳଧନ ହିସାବକୁ ସ୍ଥାନାନ୍ତରିତ କରିବା ସକାଶେ :

| | | |
|---|---|---|
| ଅଂଶଧାରୀମାନଙ୍କ ବୋନସ ହିସାବ ଦାୟୀ<br>ଅଂଶ ମୂଳଧନ ହିସାବ ବାବଦ | } | ବୋନସ ଅଂଶ-ଗୁଡ଼ିକର ଲିଖିତାଙ୍କ ସକାଶେ |

(୨) ଅଧିହାରରେ ବୋନସ ଅଂଶର ପ୍ରଚଳନ :

(କ) ଉପରୋକ୍ତ (୧) (କ) ର ଅନୁରୂପ ଜାବ୍‌ଦା କରାଯିବ ।

(ଖ) ବୋନସ ହିସାବର ଅଙ୍କକୁ ଅଂଶ ମୂଳଧନ ହିସାବ ଓ ଅଂଶ ଅଧିହାର ହିସାବକୁ ସ୍ଥାନାନ୍ତରିତ କରିବା ସକାଶେ

| | |
|---|---|
| ଅଂଶଧାରୀମାନଙ୍କ ବୋନସ ହିସାବ ଦାୟୀ<br>ଅଂଶ ମୂଳଧନ ହିସାବ ବାବଦ<br>ଅଂଶ ଅଧିହାର ହିସାବ ବାବଦ | ବୋନସ ଅଂଶଗୁଡ଼ିକର ଲିଖିତାଙ୍କ ସକାଶେ<br>ଯେଉଁ ପରିମାଣ ଅଂଶ ମୂଳଧନ ହିସାବକୁ ଯିବ ତାହା ସକାଶେ ମୋଟ ଅଧିହାର ପରିମାଣ ସକାଶେ |

(୩) ଆଂଶିକ ଅଦାୟୀକୃତ ଅଂଶକୁ ପୂର୍ଣ୍ଣ ପ୍ରଦତ୍ତ ଅଂଶରେ ପରିଣତ କରିବା ସକାଶେ :

(କ) ଆହ୍ୱାନ ଅର୍ଥକୁ ଅଂଶ ମୂଳଧନ ହିସାବକୁ ସ୍ଥାନାନ୍ତରିତ କରିବା ସକାଶେ :

| | | |
|---|---|---|
| ଅଂଶ ଆହ୍ୱାନ ହିସାବ ଦାୟୀ<br>ଅଂଶ ମୂଳଧନ ହିସାବ ବାବଦ | } | ଆହ୍ୱାନ ବାବଦ ପ୍ରାପ୍ୟ ଅର୍ଥ ସକାଶେ |

(ଖ) ଲାଭ ଅଥବା ସଞ୍ଚିତର ଅଙ୍କକୁ ବୋନସ ହିସାବକୁ ସ୍ଥାନାନ୍ତରିତ କରିବା ପାଇଁ :

| | | |
|---|---|---|
| ଲାଭ ଓ କ୍ଷତି ବଣ୍ଟନ ହିସାବ ଦାୟୀ<br>ବା<br>ସାଧାରଣ ସଞ୍ଚିତ ହିସାବ ଦାୟୀ<br>ଅଂଶଧାରୀମାନଙ୍କ ବୋନାସ ହିସାବ ବାବଦ | } | ମୋଟ ବୋନସ ପରିମାଣ ସକାଶେ |

(ଗ) ମୋଟ ବୋନସ ଅଙ୍କକୁ ଆହ୍ୱାନ ହିସାବକୁ ସ୍ଥାନାନ୍ତରିତ କରିବା ସକାଶେ :

ଅଂଶଧାରୀମାନଙ୍କ ବୋନସ ହିସାବ ଦାୟୀ
ଅଂଶ ଆହ୍ୱାନ ହିସାବ ବାବଦ

## ପ୍ରଚଳିତ ବୋନସ ଅଂଶକୁ ଉଦ୍‌ବୃତ୍ତ ପତ୍ରରେ ଦର୍ଶାଇବା ପ୍ରଣାଳୀ

କମ୍ପାନୀ ଆଇନରେ ବିଧାନ ଅଛି (କମ୍ପାନୀ ଆଇନ ୧୯୫୬ର ଅନୁସୂଚୀ VI ର ଅଂଶ I ଦ୍ରଷ୍ଟବ୍ୟ) ଯେ ଯେଉଁସବୁ କମ୍ପାନୀ ବୋନସ ଅଂଶ ପ୍ରଚଳିତ କରନ୍ତି ସେମାନଙ୍କୁ ଉଦ୍‌ବୃତ୍ତ ପତ୍ରର ଅଂଶ ମୂଳଧନ ଉପବିଭାଗର ପ୍ରଚଳିତ ଓ ବଣ୍ଟିତ ଅଂଶ ମୂଳଧନର ନିମ୍ନରେ ଏହି ବୋନସ ଅଂଶ ଲଭ ଅଥବା ସଞ୍ଚିତି ଅଥବା ଅଂଶ ଅଧିହାର ହିସାବ କେଉଁଥିରୁ ଦିଆଯାଇଛି ତାହାର ଉଲ୍ଲେଖ ରହିବା ଆବଶ୍ୟକ ।

ବୋନସ ଅଂଶ ପ୍ରଚଳନର କେତେକ ଦୃଷ୍ଟାନ୍ତ ନିମ୍ନରେ ପ୍ରଦତ୍ତ ହେଲା ।

ଦୃଷ୍ଟାନ୍ତ (୧୭)

ୟୁନାଇଟେଡ୍ ଏଣ୍ଟରପ୍ରାଇଜ୍ ଲିମିଟେଡ୍‌ର ପୂର୍ଣ୍ଣ ପ୍ରଦତ୍ତ ଅଂଶ ମୂଳଧନର ପରିମାଣ ଟ ୫୦,୦୦୦ ଥିଲା ଓ ଏହା ଅଂଶ ପ୍ରତି ଟ ୧୦ ହାରରେ ୫,୦୦୦ ସାଧାରଣ ଅଂଶରେ ବିଭକ୍ତ ହୋଇଥିଲା । ଏହି କମ୍ପାନୀର ସାଧାରଣ ସଞ୍ଚିତିର ପରିମାଣ ଟ ୨୦,୦୦୦ ଥିଲା । କମ୍ପାନୀ ଅଂଶ ପ୍ରତି ଟ ୧୦ ହାରରେ ୧,୦୦୦ ପୂର୍ଣ୍ଣ ପ୍ରଦତ୍ତ ବୋନସ ଅଂଶ ପ୍ରଚଳନ କରିଥିଲା । ୫ ଗୋଟି ସାଧାରଣ ଅଂଶ ଥିବା ଅଂଶଧାରୀଙ୍କୁ ଗୋଟିଏ ବୋନସ ଅଂଶ ଦିଆଯାଇଥିଲା ।

ଉପରୋକ୍ତ ନେଣ ଦେଣ ସକାଶେ ଆବଶ୍ୟକ ଜାବ୍‌ଦା, ଖତିୟାନ ହିସାବ ପ୍ରସ୍ତୁତ କର ଓ ଏହା କିପରି ଉଦ୍‌ବୃତ୍ତ ପତ୍ରରେ ପ୍ରଦର୍ଶିତ ହେବ ତାହା ମଧ୍ୟ ଦର୍ଶାଅ ।

### ସମାଧାନ

ଏଠାରେ ଲକ୍ଷଣୀୟ ଯେ 'ଅଂଶ ଅଧିହାର ହିସାବ' ଓ 'ମୂଳଧନ ପରିଶୋଧ ସଞ୍ଚିତି ହିସାବ'କୁ ଏଠାରେ ଦାୟୀ କରାଯାଇ ନାହିଁ । 'ଆହ୍ୱାନ ହିସାବ'କୁ ଦାତା କରିବା ଉଦ୍ଦେଶ୍ୟରେ, ଅର୍ଥାତ୍ ଆଂଶିକ ଆଦାୟୀକୃତ ଅଂଶକୁ ପୂର୍ଣ୍ଣ ପ୍ରଦତ୍ତ କରିବା ଉଦ୍ଦେଶ୍ୟରେ ଉପରୋକ୍ତ ହିସାବ ଦୁଇଟିକୁ ଦାୟୀ କରିବା ଆଇନବିରୋଧୀ ଅଟେ ।

ଜାବ୍‌ଦା

| | | ଟଙ୍କା | ଟଙ୍କା |
|---|---|---|---|
| ସାଧାରଣ ସଞ୍ଚିତି ହିସାବ | ଦାୟୀ | ୧୦,୦୦୦ | |
| ଅଂଶଧାରୀମାନଙ୍କ ବୋନସ ହିସାବ ବାବଦ | | | ୧୦,୦୦୦ |
| ( ସାଧାରଣ ସଭାର···ତାରିଖର ··· ନମ୍ବର ପ୍ରସ୍ତାବ-କ୍ରମେ ବୋନସ ବାବଦ ଟ ୧୦,୦୦୦ ଅନୁମୋଦିତ ହେଲା ) | | | |
| ଅଂଶଧାରୀମାନଙ୍କ ବୋନସ ହିସାବ | ଦାୟୀ | ୧୦,୦୦୦ | |
| ଅଂଶ ମୂଳଧନ ହିସାବ ବାବଦ | | | ୧୦,୦୦୦ |
| (ସାଧାରଣ ସଭାର ··· ତାରିଖର···ନମ୍ବର ପ୍ରସ୍ତାବ ଅନୁଯାୟୀ ଉପସ୍ଥିତ ଅଂଶଧାରୀମାନଙ୍କୁ ଅଂଶ ପ୍ରତି ଟ ୧୦ ହାରରେ ୧,୦୦୦ ବୋନସ ଅଂଶ ଦିଆଗଲା ) | | | |

## ଖତିୟାନ

**ଦାୟୀ — ସାଧାରଣ ଅଂଶ ମୂଳଧନ ହିସାବ — ଦାତା**

| | ଟଙ୍କା | | ଟଙ୍କା |
|---|---|---|---|
| ବାକି ଗଣ୍ଡଳ | ୬୦,୦୦୦ | ପୂର୍ବ ବାକି ବାବଦ | ୫୦,୦୦୦ |
| | | ଅଂଶଧାରୀମାନଙ୍କ ବୋନସ ହିସାବ ବାବଦ | ୧୦,୦୦୦ |
| | ୬୦,୦୦୦ | | ୬୦,୦୦୦ |
| | | ପୂର୍ବ ବାକି ବାବଦ | ୬୦,୦୦୦ |

**ଦାୟୀ — ସାଧାରଣ ସଞ୍ଚିତ ହିସାବ — ଦାତା**

| | ଟଙ୍କା | | ଟଙ୍କା |
|---|---|---|---|
| ଅଂଶଧାରୀମାନଙ୍କ ବୋନସ ହିସାବ ବାବଦ | ୧୦,୦୦୦ | ପୂର୍ବ ବାକି ବାବଦ | ୨୦,୦୦୦ |
| ବାକି ଗଣ୍ଡଳ | ୧୦,୦୦୦ | | |
| | ୨୦,୦୦୦ | | ୨୦,୦୦୦ |
| | | ପୂର୍ବ ବାକି ବାବଦ | ୧୦,୦୦୦ |

**ଦାୟୀ — ଅଂଶଧାରୀମାନଙ୍କ ବୋନସ ହିସାବ — ଦାତା**

| | ଟଙ୍କା | | ଟଙ୍କା |
|---|---|---|---|
| ସାଧାରଣ ଅଂଶ ମୂଳଧନ ହିସାବ ବାବଦ | ୧୦,୦୦୦ | ସାଧାରଣ ସଞ୍ଚିତ ହି: ବାବଦ | ୧୦,୦୦୦ |

ୟୁନାଇଟେଡ୍ ଏଣ୍ଟରପ୍ରାଇଜ ଲିମିଟେଡ୍‌ର

୧୯.. ମସିହା...ତାରିଖର ଉଦ୍‌ବୃତ୍ତ ପତ୍ର

| ଦାୟ ଓ ମୂଳଧନ | ଟଙ୍କା | ପରିସମ୍ପତ୍ତି | ଟଙ୍କା |
|---|---|---|---|
| ପ୍ରାଧିକୃତ ମୂଳଧନ<br>ଅଂଶ ପ୍ରତି ଟ ୧୦ ହାରରେ...<br>ସାଧାରଣ ଅଂଶ | | | |
| ପ୍ରଚଳିତ ଓ ବିକ୍ରିତ ମୂଳଧନ :<br>ଅଂଶ ପ୍ରତି ଟ ୧୦ ହାରରେ<br>୬,୦୦୦ ସାଧାରଣ ଅଂଶ—<br>ପୂର୍ଣ୍ଣ ପ୍ରଦତ୍ତ | ୬୦,୦୦୦ | | |
| ( ଏଥି ମଧ୍ୟରୁ ପୂର୍ଣ୍ଣ ପ୍ରଦତ୍ତ<br>୧,୦୦୦ ଅଂଶ ସାଧାରଣ<br>ସଞ୍ଚିତରୁ ବୋନସ ରୂପେ<br>ଦିଆଯାଇଛି ) | | | |
| ସଞ୍ଚିତ ଓ ବଳକା :<br>ସାଧାରଣ ସଞ୍ଚିତ | ୧୦,୦୦୦ | | |

## ଦୃଷ୍ଟାନ୍ତ (୧୭)

ଜେନେରାଲ ଟ୍ରେଡ଼ିଂ କମ୍ପାନୀ ଲିମିଟେଡ଼ର ପୂର୍ଣ୍ଣ ପ୍ରଦତ୍ତ ଅଂଶ ମୂଳଧନର ପରିମାଣ ୪,୨୦,୦୦୦ ଟଙ୍କା ଥିଲା । ଏହା ଅଂଶ ପ୍ରତି ଟ ୧୦ ହାରରେ ୪୦,୦୦୦ ଅଂଶରେ ବିଭକ୍ତ ହୋଇଥିଲା । କମ୍ପାନୀର ସାଧାରଣ ସଞ୍ଚିତର ପରିମାଣ ଟ ୧,୨୦,୦୦୦ ଥିଲା । କମ୍ପାନୀ ଏହାର ମୂଳଧନର ଶତକଡ଼ା ୨୫ ଭାଗ ବୋନସ ଅଂଶ ରୂପେ ଉପସ୍ଥିତ ଅଂଶଧାରୀମାନଙ୍କୁ ଦେବା ପାଇଁ ପ୍ରସ୍ତାବ ଅନୁମୋଦନ କରିଥିଲା । ଏହି ସାଧାରଣ ଅଂଶ-ଗୁଡ଼ିକର ବଜାର ଦର ଟ ୨୫ ଥିବାରୁ କମ୍ପାନୀ ବୋନସ ଅଂଶଗୁଡ଼ିକୁ ଟ ୧୫ ଅଧିହାରରେ ପ୍ରଚଳିତ କରିବାକୁ ସ୍ଥିର କରିଥିଲା ଏବଂ ପ୍ରତ୍ୟେକ ଦଶଗୋଟି ଅଂଶ କ୍ରୟ କରିଥିବା ଅଂଶଧାରୀଙ୍କୁ ଗୋଟିଏ ବୋନସ ଅଂଶ ଦେବା ପାଇଁ ସ୍ଥିର କରିଥିଲା ।

ଉପରୋକ୍ତ ନେଣ ଦେଣଗୁଡ଼ିକ ସକାଶେ ଆବଶ୍ୟକ ଜାବ୍‌ଦା ପ୍ରସ୍ତୁତ କର ।

## ସମାଧାନ

ଜାବ୍‌ଦା

| | ଦାୟୀ | ଦାତା |
|---|---|---|
| | ଟଙ୍କା | ଟଙ୍କା |
| ସାଧାରଣ ସଞ୍ଚିତ ହିସାବ ଦାୟୀ | ୧,୦୦,୦୦୦ | |
| ଅଂଶଧାରୀମାନଙ୍କ ବୋନସ ହିସାବ ବାବଦ | | ୧,୦୦,୦୦୦ |
| ( ସାଧାରଣ ସଭାର ... ତାରିଖର ... ନମ୍ବର ପ୍ରସ୍ତାବକ୍ରମେ ଅନୁମୋଦିତ ବୋନସର ପରିମାଣ ସଜାଣେ ) | | |
| ଅଂଶଧାରୀମାନଙ୍କ ବୋନସ ହିସାବ ଦାୟୀ | ୧,୦୦,୦୦୦ | |
| ସାଧାରଣ ଅଂଶ ମୂଳଧନ ହିସାବ ବାବଦ | | ୪୦,୦୦୦ |
| ଅଂଶ ଅଧିହାର ହିସାବ ବାବଦ | | ୬୦,୦୦୦ |
| (୪,୦୦୦ ପୂର୍ଣ୍ଣ ପ୍ରଦତ୍ତ ବୋନସ ଅଂଶ ଅଂଶ ପ୍ରତି ଟ ୧୫ ଅଧିହାରରେ ପ୍ରତି ୧୦ ଗୋଟି ଅଂଶର ଅଂଶଧାରୀଙ୍କୁ ୧ ଗୋଟି ଅନୁପାତରେ ଦିଆଗଲା ) | | |

### ଦୃଷ୍ଟାନ୍ତ (୧୮)

କ ଖ ଗ କମ୍ପାନୀ ଲିମିଟେଡ଼ ଅଂଶ ପ୍ରତି ଟ ୧୦ ହାରରେ ୧୦,୦୦୦ ସାଧାରଣ ଅଂଶ ପ୍ରଚଳିତ କରିଛି । ଏହି ଅଂଶ ବାବଦ ଅଂଶ ପ୍ରତି ଟ ୨ ହାରରେ ଶେଷ ଆହ୍ୱାନ ଦିଆଯାଇ ନାହିଁ । କମ୍ପାନୀର ସଞ୍ଚିତ ପରିମାଣ ଯଥେଷ୍ଟ ଥିବା ଦୃଷ୍ଟିରୁ କମ୍ପାନୀ ଏହି ଆଂଶିକ ଆଦାୟୀକୃତ ଅଂଶଗୁଡ଼ିକ ପୂର୍ଣ୍ଣ ପ୍ରଦତ୍ତ ଅଂଶରେ ପରିଣତ କରିବା ପାଇଁ ସଞ୍ଚିତରୁ ଟ ୨୦,୦୦୦ ବୋନସ ରୂପେ ଦେବାକୁ ପ୍ରସ୍ତାବ ଗ୍ରହଣ କରିଥିଲା ।

ଏଥି ନିମନ୍ତେ ଆବଶ୍ୟକ ଜାବ୍‌ଦା ପ୍ରସ୍ତୁତ କର ।

## ସମାଧାନ

ଜାବ୍‌ଦା

| | | ଦାୟୀ | ଦାତା |
|---|---|---|---|
| | | ଟଙ୍କା | ଟଙ୍କା |
| ସାଧାରଣ ଅଂଶ ଶେଷ ଆହ୍ୱାନ ହିସାବ | ଦାୟୀ | ୨୦,୦୦୦ | |
| ସାଧାରଣ ଅଂଶ ମୂଳଧନ ହିସାବ ବାବଦ | | | ୨୦,୦୦୦ |
| ( ଅଂଶ ପ୍ରତି ଟ ୨ ହାରରେ ୧୦,୦୦୦ ସାଧାରଣ ଅଂଶର ଶେଷ ଆହ୍ୱାନ ଅର୍ଥ ନିର୍ଦ୍ଦେଶକମଣ୍ଡଳୀଙ୍କର ... ତାରିଖର ପ୍ରସ୍ତାବ ଅନୁଯାୟୀ ପ୍ରାପ୍ୟ ହେଲା । ) | | | |
| ସଞ୍ଚିତ ହିସାବ | ଦାୟୀ | ୨୦,୦୦୦ | |
| ଅଂଶଧାରୀମାନଙ୍କ ବୋନସ ହି : ବାବଦ | | | ୨୦,୦୦୦ |
| ( ସାଧାରଣ ସଭାର ... ତାରିଖର ... ପ୍ରସ୍ତାବ ଅନୁଯାୟୀ ଟ ୨୦,୦୦୦ ଟଙ୍କାର ବୋନସ ଅନୁମୋଦିତ ହେଲା ) | | | |
| ଅଂଶଧାରୀମାନଙ୍କ ବୋନସ ହି : | ଦାୟୀ | ୨୦,୦୦୦ | |
| ସାଧାରଣ ଅଂଶ ଶେଷ ଆହ୍ୱାନ ହି : ବାବଦ | | | ୨୦,୦୦୦ |
| (ସାଧାରଣ ସଭାର ତାରିଖର ନମ୍ବର ପ୍ରସ୍ତାବ ଅନୁଯାୟୀ ଆଂଶିକ ଆଦାୟୀକୃତ ଅଂଶକୁ ପୂର୍ଣ୍ଣ ପ୍ରଦତ୍ତ କରିବା ପାଇଁ ବୋନସର ଉପଯୋଗ କରାଗଲା ) | | | |

### ଦୃଷ୍ଟାନ୍ତ (୧୯)

ଚ ଛ ଜ କମ୍ପାନୀ ଲିମିଟେଡ୍ ଅଂଶ ପ୍ରତି ଟ ୧୦୦ ହାରରେ ୨୦,୦୦୦ ସାଧାରଣ ଅଂଶ ପ୍ରଚଳନ କରିଥିଲେ; ମାତ୍ର ଏହି ଅଂଶ ବାବଦ ଅଂଶ ପ୍ରତି ଟ ୨୦ ହାରରେ ଶେଷ ଆହ୍ୱାନ ଦିଆଯାଇ ନ ଥିଲା । କମ୍ପାନୀର ସଞ୍ଚିତିର ପରିମାଣ ଟ ୭,୫୦,୦୦୦ ଥିଲା । ଏହି ସଞ୍ଚିତି ପରିମାଣ ଆବଶ୍ୟକତା ଅନୁପାତରେ ଯଥେଷ୍ଟ ଅଧିକ ଥିବା ଦୃଷ୍ଟିରୁ କମ୍ପାନୀର ନିର୍ଦ୍ଦେଶକମଣ୍ଡଳୀ ନିମ୍ନଲିଖିତ ସୁପାରିଶ କରିଥିଲେ ।

(୧) ଅଂଶଧାରୀମାନଙ୍କଠାରୁ କୌଣସି ଅର୍ଥ ସଂଗ୍ରହ ନ କରି ଏହି ଆଂଶିକ ରୂପେ ଆଦାୟୀକୃତ ଅଂଶଗୁଡ଼ିକୁ ପୂର୍ଣ୍ଣ ପ୍ରଦତ୍ତ ଅଂଶରେ ପରିଣତ କରାଯାଉ ।

(୨) ସଞ୍ଚିତିରେ ଥିବା ଅବଶିଷ୍ଟ ପରିମାଣ ଅଂଶଧାରୀମାନଙ୍କୁ ଆନୁପାତିକ ହାରରେ ପୂର୍ଣ୍ଣ ପ୍ରଦତ୍ତ ବୋନସ ଅଂଶ ରୂପେ ବଣ୍ଟନ କରାଯାଉ ।

(ଗ) କମ୍ପାନୀର ସାଧାରଣ ଅଂଶଗୁଡ଼ିକର ବଜାର ଦର ଦୃଷ୍ଟିରୁ ଏହି ବୋନସ ଅଂଶଗୁଡ଼ିକୁ ଅଂଶ ପ୍ରତି ଟ ୧୫ ଅଧିହାରରେ ପ୍ରଚଳନ କରାଯାଉ ।

ନିର୍ଦ୍ଦେଶକମଣ୍ଡଳୀଙ୍କର ଉପରୋକ୍ତ ସୁପାରିଶଗୁଡ଼ିକ କମ୍ପାନୀର ସାଧାରଣ ସଭାରେ ପ୍ରସ୍ତାବ ରୂପେ ଗୃହୀତ ହେଲା । ଏହା ଅନୁମାନ କରି ଆବଶ୍ୟକ ଜାବ୍‌ଦା ପ୍ରସ୍ତୁତ କର ।

## ସମାଧାନ

ଜାବ୍‌ଦା

| | ଦାୟୀ | ଦାତା |
|---|---|---|
| | ଟଙ୍କା | ଟଙ୍କା |
| ସାଧାରଣ ଅଂଶ ଶେଷ ଆହ୍ୱାନ ହିସାବ ଦାୟୀ | ୪,୦୦,୦୦୦ | |
| ସାଧାରଣ ଅଂଶ ମୂଳଧନ ହିସାବ ବାବଦ | | ୪,୦୦,୦୦୦ |
| ( ନିର୍ଦ୍ଦେଶକମଣ୍ଡଳୀଙ୍କର ··· ତାରିଖର ପ୍ରସ୍ତାବ ଅନୁଯାୟୀ ଅଂଶ ପ୍ରତି ଟ ୧୦ ହାରରେ ୧୦,୦୦୦ ସାଧାରଣ ଅଂଶର ଶେଷ ଆହ୍ୱାନ ବାବଦ ଅର୍ଥ ପ୍ରାପ୍ୟ ହେଲା । ) | | |
| ସଞ୍ଚିତ ହିସାବ ଦାୟୀ | ୬,୫୦,୦୦୦ | |
| ଅଂଶଧାରୀଙ୍କ ବୋନସ ହିସାବ ବାବଦ | | ୬,୫୦,୦୦୦ |
| (ସାଧାରଣ ସଭାର···ତାରିଖର ··ନମ୍ବର ପ୍ରସ୍ତାବ ଅନୁଯାୟୀ ଟ ୬,୫୦,୦୦୦ର ବୋନସ ଅନୁମୋଦିତ ହେଲା । ) | | |
| ଅଂଶଧାରୀମାନଙ୍କ ବୋନସ ହିସାବ ଦାୟୀ | ୪,୦୦,୦୦୦ | |
| ସାଧାରଣ ଅଂଶ ଶେଷ ଆହ୍ୱାନ ହି : ବାବଦ | | ୪,୦୦,୦୦୦ |
| ( ସାଧାରଣ ସଭାର···ତାରିଖର···ନମ୍ବର ପ୍ରସ୍ତାବ ଅନୁଯାୟୀ ୧୦,୦୦୦ ଆଂଶିକ ଅଦାୟୀକୃତ ସାଧାରଣ ଅଂଶକୁ ପୂର୍ଣ୍ଣ ପ୍ରଦତ୍ତ କରିବା ପାଇଁ ବୋନସ ଉପଯୋଗ କରାଗଲା । ) | | |
| ଅଂଶଧାରୀମାନଙ୍କ ବୋନସ ହିସାବ ଦାୟୀ | ୧,୫୦,୦୦୦ | |
| ସାଧାରଣ ଅଂଶ ମୂଳଧନ ହିସାବ ବାବଦ | | ୧,୫୦,୦୦୦ |
| ଅଂଶ ଅଧିହାର ହିସାବ ବାବଦ | | |
| ( ସାଧାରଣ ସଭାର ତାରିଖର ନମ୍ବର ପ୍ରସ୍ତାବ ଅନୁଯାୟୀ ଅବଶିଷ୍ଟ ବୋନସ ଟ ୧,୫୦,୦୦୦ କୁ ଅଂଶ ପ୍ରତି ଟ ୧୦୦ ହାରରେ ୧,୦୦୦ ବୋନସ ଅଂଶକୁ ଅଂଶ ପ୍ରତି ଟ ୧୫ ଅଧିହାରରେ ପ୍ରଚଳିତ କରିବା ପାଇଁ ଉପଯୋଗ କରାଗଲା । ) | | |

ମନ୍ତବ୍ୟ : ଅଧିହାର ସମେତ ଅଂଶ ପ୍ରତି ଟ ୧୨୫ ହାରରେ ( ୨,୫୦,୦୦୦ ÷ ୧୨୫ = ) ୨,୦୦୦ ବୋନସ ଅଂଶ ପ୍ରଚଳିତ ହୋଇଥିଲା । ସୁତରାଂ ପ୍ରତି ୧୦ ଗୋଟି ସାଧାରଣ ଅଂଶୀଧାରୀଙ୍କୁ ଗୋଟିଏ ଲେଖାଏଁ ବୋନସ ଅଂଶ ଦିଆଯିବ । ଯଦି କୌଣସି ଅଂଶଧାରୀ ବୋନସ ଅଂଶର ଭଗ୍ନାଂଶ ପାଇବାର ଅଧିକାରୀ ହୁଅନ୍ତି, ତାହାହେଲେ ତାଙ୍କୁ ଆଂଶିକ କୁପନ ଦିଆଯାଏ ।

## ଆଶ୍ୱାସୀଙ୍କଦ୍ୱାରା ଦାୟ ଗ୍ରହଣ

୮. ଯଦି କୌଣସି ନବପ୍ରତିଷ୍ଠିତ କମ୍ପାନୀର ଅଂଶ ଅଥବା ଋଣପତ୍ର ସମ୍ପୂର୍ଣ୍ଣ ଅଥବା ଆଂଶିକ ରୂପେ ବିକ୍ରୟ କରିବା ପାଇଁ ଯଦି କୌଣସି ବ୍ୟକ୍ତି ଦାୟିତ୍ୱ ଗ୍ରହଣ କରେ, ତାହାହେଲେ ସେହି ବ୍ୟକ୍ତି ବା ପ୍ରତିଷ୍ଠାନକୁ ଆଶ୍ୱାସୀ କୁହାଯାଏ । ଏହି କାର୍ଯ୍ୟକୁ ଦାୟ ଗ୍ରହଣ କୁହାଯାଏ । ଯଦି ଆଶ୍ୱାସୀ ଏହି ଅଂଶ ଅଥବା ଋଣ ପତ୍ର ବିକ୍ରୟ କରିବାକୁ ଅସମର୍ଥ ହୁଅନ୍ତି ତାହାହେଲେ ଚୁକ୍ତି ଅନୁଯାୟୀ ଆଶ୍ୱାସୀଙ୍କୁ ଏହି ଅବଣ୍ଟିତ ଅଂଶ ପତ୍ର ଅଥବା ଋଣ ପତ୍ର କ୍ରୟ କରିବାକୁ ପଡ଼େ । ଏହି ଚୁକ୍ତିକୁ ଦାୟ ଗ୍ରହଣ ଚୁକ୍ତି କୁହାଯାଏ । କମ୍ପାନୀ ପରିମେଳ ନିୟମାବଳୀରେ ଯଦି ଏଭଳି ଚୁକ୍ତି ବିଷୟ ଉଲ୍ଲେଖ ଥାଏ, ତାହାହେଲେ ଏପରି ନେଣ ଦେଣ ହୋଇପାରେ ।

ଏହି ପ୍ରକାର ଦାୟଗ୍ରହଣ ସକାଶେ ଆଶ୍ୱାସୀଙ୍କୁ ଦାୟ ଗ୍ରହଣ ଦସ୍ତୁରି ଦେବାକୁ ପଡ଼େ । କମ୍ପାନୀ ଆଇନର ୭୬ ଧାରା ଅନୁଯାୟୀ ଆଶ୍ୱାସୀଙ୍କର ଦସ୍ତୁରି ଅଂଶ ପତ୍ର କ୍ଷେତ୍ରରେ ପ୍ରଚଳିତ ଅଂଶ ମୂଲ୍ୟର ଶତକଡ଼ା ୫ ଓ ଋଣପତ୍ର କ୍ଷେତ୍ରରେ ବଣ୍ଟିତ ଋଣ ପତ୍ରର ଶତକଡ଼ା ୨½ ଭାଗରୁ ଅଧିକ ଅଥବା ପରିମେଳ ନିୟମାବଳୀରେ ଯଦି ଏହା ଅପେକ୍ଷା ନ୍ୟୂନତର ହାର ଧାର୍ଯ୍ୟ କରାଯାଇଥାଏ, ତାହାହେଲେ ତାହା ଅପେକ୍ଷା ଅଧିକ ହୋଇପାରିବ ନାହିଁ । ସୂଚନା-ଜ୍ଞାପକ ପତ୍ରରେ ଆଶ୍ୱାସୀଙ୍କୁ ଦେୟ ଦସ୍ତୁରିର ହାର ସୁସ୍ପଷ୍ଟ ରୂପେ ବ୍ୟକ୍ତ କରାଯିବା ଆବଶ୍ୟକ ।

ଏହି ଦାୟଗ୍ରହଣ ଚୁକ୍ତି ପ୍ରଚଳିତ ଅଂଶର ସମ୍ପୂର୍ଣ୍ଣ ଅଥବା ଆଂଶିକ ପରିମାଣ ସକାଶେ ସମ୍ପାଦିତ ହୋଇପାରେ । ଦାୟଗ୍ରହଣ ଦସ୍ତୁରିକୁ ବିଳମ୍ବିତ ଅର୍ଥ-ପୂଞ୍ଜି ଜାତୀୟ ବ୍ୟୟ ରୂପେ ବିବେଚନା କରାଯାଏ ଓ ଏହା ଉଦ୍‌ବୃତ୍ତି ପତ୍ରର ପରିସମ୍ପତ୍ତି ପାର୍ଶ୍ୱରେ ବିବିଧ ବ୍ୟୟ ନାମକ ଉପ-ବିଭାଗରେ ପ୍ରଦର୍ଶିତ ହୁଏ ।

**ଦଲାଲ**—ଦାୟ ଗ୍ରାହକ ବା ଆଶ୍ୱାସୀମାନଙ୍କ ସଦୃଶ ଯେଉଁ ବ୍ୟକ୍ତି ବା ପ୍ରତିଷ୍ଠାନ କମ୍ପାନୀର ପ୍ରଚଳିତ ଅଂଶ ବିକ୍ରୟ କରନ୍ତି ସେମାନଙ୍କୁ ଦଲାଲ କୁହାଯାଏ ଓ ସେମାନଙ୍କୁ ଯେଉଁ ପାରିଶ୍ରମିକ ଦିଆଯାଏ ତାହାକୁ ଦଲାଲି କୁହାଯାଏ । ଏହାର ହାର ଦାୟ ଗ୍ରାହକଙ୍କର ଦସ୍ତୁରି ସଦୃଶ କମ୍ପାନୀ ଆଇନର ୭୬ ଧାରା ଅନୁଯାୟୀ ପ୍ରଶାସିତ ହୁଏ ।

ଦାୟିତ୍ୱ ଗ୍ରହଣକାରୀ ଓ ଦଲାଲଙ୍କ ମଧ୍ୟରେ ପାର୍ଥକ୍ୟ ହେଉଛି ଏହା ଯେ ଦାୟିତ୍ୱଗ୍ରହଣକାରୀମାନେ ଜନସାଧାରଣଙ୍କୁ ଅଂଶ ବିକ୍ରୟ କରିବାକୁ ଅସମର୍ଥ ହେଲେ ଚୁକ୍ତି ଅନୁଯାୟୀ ତାଙ୍କୁ ଅବିକ୍ରିତ ଅଂଶଗୁଡ଼ିକ କ୍ରୟ କରିବାକୁ ପଡ଼େ; ମାତ୍ର ଦଲାଲଙ୍କ ସହିତ ସେଭଳି କୌଣସି ଚୁକ୍ତି ସମ୍ପାଦିତ ହୁଏ ନାହିଁ ।

**ଅଂଶ ସମର୍ପଣ—**

ଆଂଶିକ ପ୍ରଦତ୍ତ ଅଂଶର ଅଂଶଧାରୀ ଯଦି ଅଂଶ ବାବଦ ଆହ୍ୱାନ ଅର୍ଥ ଦେବାକୁ ଅସମର୍ଥ ହୁଅନ୍ତି, ତାହାହେଲେ ସେ ସେହି ଅଂଶଗୁଡ଼ିକ କମ୍ପାନୀକୁ ସମର୍ପଣ କରିପାରନ୍ତି । ଅବଶ୍ୟ ସମର୍ପିତ ଅଂଶଗୁଡ଼ିକର ମୂଲ୍ୟ ବାବଦ ଅଂଶଧାରୀ କମ୍ପାନୀଠାରୁ କୌଣସି ଅର୍ଥ ଲାଭ କରନ୍ତି ନାହିଁ । କିନ୍ତୁ ତାଙ୍କର ଏତିକି ମାତ୍ର ସୁବିଧା ହୁଏ ଯେ ଥରେ ଅଂଶ ବାବଦ ସ୍ୱତଃ ସମର୍ପଣକୁ କମ୍ପାନୀ ସ୍ୱୀକାର କଲେ ଭବିଷ୍ୟତ ଆହ୍ୱାନ ଅର୍ଥ ଦେବା ଦାୟିତ୍ୱରୁ ଅଂଶଧାରୀ ଅବ୍ୟାହତି ପାଆନ୍ତି ।

ଅଂଶ ବାଜ୍ୟାପ୍ତ କରାଗଲେ ଯେଉଁ ଜାବ୍ଦା ପ୍ରସ୍ତୁତ କରାଯାଏ, ଅଂଶ ସମର୍ପଣରେ ମଧ୍ୟ ଅନୁରୂପ ଜାବ୍ଦା ପ୍ରସ୍ତୁତ କରାଯାଏ ।

**ଅଧିକାର ଅଂଶର ପ୍ରଚଳନ—**

ଯଦି ବିଦ୍ୟମାନ ଥିବା କୌଣସି କମ୍ପାନୀ ଅଧିକା ଅଂଶ ପ୍ରଚଳନ କରି ଅଂଶ ମୂଳଧନକୁ ବୃଦ୍ଧି କରିବାକୁ ଚାହାନ୍ତି, ତାହାହେଲେ ପ୍ରଚଳନଯୋଗ୍ୟ ଅଂଶଗୁଡ଼ିକୁ ପ୍ରଥମେ ଉପସ୍ଥିତ ଅଂଶଧାରୀମାନଙ୍କୁ କ୍ରୟ କରିବା ନିମନ୍ତେ କମ୍ପାନୀ ଆହ୍ୱାନ କରିବେ । ଉପସ୍ଥିତ ଅଂଶଧାରୀମାନେ ସେମାନଙ୍କର ସାଧାରଣ ଅଂଶର ପ୍ରଦତ୍ତ ମୂଲ୍ୟ ଅନୁପାତରେ ଏହି ନୂତନ ଅଂଶ କ୍ରୟ କରିବା ପାଇଁ ଅଧିକାରୀ ହୁଅନ୍ତି ବୋଲି ଏହି ଅଂଶଗୁଡ଼ିକୁ ଅଧିକାର ଅଂଶ କୁହାଯାଏ ।

କୌଣସି ସାଧାରଣ ଅଂଶର ଅଂଶଧାରୀ ଇଚ୍ଛାକଲେ ଏହି ଅଧିକାର ଅଂଶ ନିଜେ କ୍ରୟ ନ କରି ଅନ୍ୟ ବ୍ୟକ୍ତିଙ୍କର ନାମ ମନୋନୀତ କରିପାରନ୍ତି । ଯଦି କୌଣସି ଅଂଶଧାରୀ ଏଭଳି ଅଂଶ କ୍ରୟ କରିବା ନିମନ୍ତେ ଆଗ୍ରହ ପ୍ରକାଶ କରନ୍ତି ନାହିଁ, ତାହାହେଲେ ସେହି ଅଧିକାର ଅଂଶକୁ କମ୍ପାନୀ ଅନ୍ୟ ବ୍ୟକ୍ତିଙ୍କୁ ବିକ୍ରୟ କରିପାରନ୍ତି ।

ଏଭଳି ଅଂଶ ପ୍ରଚଳନ କରାଗଲେ ଆବଶ୍ୟକ ଜାବ୍ଦା ଲିଖନର ପ୍ରଣାଳୀ ସାଧାରଣ ଅଂଶ ପ୍ରଚଳନଜନିତ ଜାବ୍ଦା ଲିଖନପ୍ରଣାଳୀର ଅନୁରୂପ ହୋଇଥାଏ ।

**ନଗଦ ଅର୍ଥ ବିନା ଅନ୍ୟ ପ୍ରତିଦାନ ବିନିମୟରେ ଅଂଶ ପ୍ରଦାନ—**

କୌଣସି ଅଧିକୃତ ସମ୍ପତ୍ତି ବିନିମୟରେ ଅଥବା ପ୍ରାପ୍ତ ସେବା ବିନିମୟରେ ସଂଶ୍ଳିଷ୍ଟ ବ୍ୟକ୍ତି ବା ପ୍ରତିଷ୍ଠାନକୁ କମ୍ପାନୀ ଅଂଶ ପ୍ରଦାନ କରିପାରନ୍ତି । କିନ୍ତୁ ଏହି ଅଂଶ ସର୍ବଦା ପୂର୍ଣ୍ଣ ପ୍ରଦତ୍ତ ଅଂଶ ହେବା ଆବଶ୍ୟକ । ଏଭଳି ଅଂଶ ପ୍ରଚଳିତ ହୋଇଥିଲେ କମ୍ପାନୀର ଉଦ୍‌ବୃତ୍ତ ପତ୍ରରେ ଅଂଶ ମୂଳଧନ ଉପ-ବିଭାଗ ନିମ୍ନରେ ଏହାକୁ ସ୍ୱତନ୍ତ୍ରଭାବେ ଲେଖାଯିବା ଆବଶ୍ୟକ । ନିବନ୍ଧକଙ୍କ ନିକଟକୁ ବାର୍ଷିକ ବିବରଣୀ ପେଶ କରିବା ସମୟରେ ମଧ୍ୟ ଏଭଳି ଅଂଶ ପ୍ରଚଳନର ବିବରଣୀ ଦେବାକୁ ହୁଏ ।

ଏ ସମ୍ବନ୍ଧୀୟ ନେଣଦେଣକୁ ହିସାବଭୁକ୍ତ କରିବା ପାଇଁ ନିମ୍ନଲିଖିତ ଜାବ୍‌ଦା ପ୍ରସ୍ତୁତ କରିବାକୁ ହୁଏ :

| | |
|---|---|
| ବିବିଧ ସମ୍ପତ୍ତି ହିସାବ | ଦାୟୀ |
| ବିକ୍ରେତାଙ୍କ ହିସାବ ବାବଦ | |

| | |
|---|---|
| ବିକ୍ରେତାଙ୍କ ହିସାବ | ଦାୟୀ |
| ଅଂଶ ମୂଳଧନ ହିସାବ ବାବଦ | |

ଯଦି ଏଭଳି ଅଂଶ ଅଧିମୂଲ୍ୟରେ ବିକ୍ରୟ କରାଯାଏ, ତାହାହେଲେ ନିମ୍ନଲିଖିତ ଜାବ୍‌ଦା ପ୍ରସ୍ତୁତ କରାଯାଏ :

| | |
|---|---|
| ବିକ୍ରେତାଙ୍କ ହିସାବ | ଦାୟୀ |
| ଅଂଶ ମୂଳଧନ ହିସାବ ବାବଦ | |
| ଅଂଶ ଅଧିମୂଲ୍ୟ ହିସାବ ବାବଦ | |

ଯଦି କମ୍ପାନୀ ପ୍ରବର୍ତ୍ତିକଙ୍କୁ ତାଙ୍କର ସେବା ବିନିମୟରେ କୌଣସି ଅଂଶ ପ୍ରଦାନ କରାଯାଏ, ତାହାହେଲେ ତାହା ନିମନ୍ତେ ନିମ୍ନପ୍ରକାର ଜାବ୍‌ଦା ପ୍ରସ୍ତୁତ କରାଯିବ :

| | |
|---|---|
| ସୁନାମ ହିସାବ | ଦାୟୀ |
| ଅଂଶ ମୂଳଧନ ହିସାବ ବାବଦ | |

**ପ୍ରାକ୍-ନିବନ୍ଧନ ଲାଭ—**

ନିବନ୍ଧନ ହେବା ପୂର୍ବରୁ କୌଣସି କମ୍ପାନୀର ଆଇନତଃ ଜନ୍ମ ହୋଇପାରେ ନାହିଁ । ମାତ୍ର କେତେକ କ୍ଷେତ୍ରରେ କମ୍ପାନୀର ପ୍ରବର୍ତ୍ତିକମାନେ ଗୋଟିଏ ଚଳନ୍ତି ବ୍ୟବସାୟ ପ୍ରତିଷ୍ଠାନକୁ କ୍ରୟ କରି ତାହାକୁ ଗୋଟିଏ ସାଧାରଣ କମ୍ପାନୀରେ ପରିଣତ କରିବା ପାଇଁ ସମସ୍ତ ପ୍ରାରମ୍ଭିକ ବ୍ୟବସ୍ଥା ଗ୍ରହଣ କରିପାରନ୍ତି । ତେଣୁ କମ୍ପାନୀର ନିବନ୍ଧନ ହେବା ପୂର୍ବରୁ ଏହି ଚଳନ୍ତି ବ୍ୟବସାୟରୁ ଲାଭ ହୋଇପାରେ । ଯେହେତୁ ଏହି ଲାଭ କମ୍ପାନୀର ପ୍ରାକ୍-ନିବନ୍ଧନ କାଳର ଲାଭ, ତେଣୁ କମ୍ପାନୀ ଆଇନ ଅଥବା ପରିମେଳ ନିୟମାବଳୀରେ

ଏହାର ଉଲ୍ଲେଖ ରହିବା ଆଶା କରାଯାଏ ନାହିଁ; ତଥାପି ବ୍ୟାବସାୟିକ ଅଭିଜ୍ଞତା ଦୃଷ୍ଟିରୁ କମ୍ପାନୀର ନିର୍ଦ୍ଦେଶକମାନେ ସାଧାରଣତଃ ଏହି ଲାଭକୁ କମ୍ପାନୀର ପ୍ରକୃତ ଲାଭ ବୋଲି ବିବେଚନା କରନ୍ତି ନାହିଁ ଏବଂ ଯେହେତୁ ଏହି ଲାଭ କମ୍ପାନୀ ନିବନ୍ଧିତ ହେବା ପୂର୍ବରୁ ଅର୍ଜିତ ହୋଇଥାଏ, ତେଣୁ ଏହାକୁ କମ୍ପାନୀର ଅଂଶଧାରୀମାନଙ୍କୁ ଲାଭାଂଶ ରୂପେ ବଣ୍ଟନ କରିବା ପାଇଁ ମଧ୍ୟ ସୁପାରିଶ ଦିଅନ୍ତି ନାହିଁ ।

ସାଧାରଣତଃ ଏହି ଲାଭ ପୁଞ୍ଜିକାଣ୍ଠୀୟ ରୂପେ ବିବେଚିତ ହୋଇ ମୂଳଧନ ସଞ୍ଚିତ ହିସାବଭୁକ୍ତ କରାଯାଏ । କମ୍ପାନୀ ଗଠନର ପ୍ରାରମ୍ଭିକ ବ୍ୟୟ, ଅଂଶ ବିକ୍ରୟ ବାବଦ ଦଲାଲି, କମିଶନ, ସୁନାମର ମୂଲ୍ୟ ପ୍ରଭୃତି ବାକିକୁ ଉପରୋକ୍ତ ମୂଳଧନ ସଞ୍ଚିତ ହିସାବରେ ଦାୟୀ ପାର୍ଶ୍ୱକୁ ନିଆଯାଏ । ଏଭଳି ପଦକ୍ଷେପ ନିଆଗଲେ ତାହା କମ୍ପାନୀର ଆର୍ଥିକ ଅବସ୍ଥାକୁ ଅଧିକ ଉନ୍ନତ ଓ ଶକ୍ତିଶାଳୀ କରେ ।

ଏହି ଲାଭ ନିର୍ଦ୍ଧାରଣ କରିବା ନିମନ୍ତେ ପ୍ରଥମେ ପ୍ରାକ୍-ନିବନ୍ଧନ କାଳ ଓ ନିବନ୍ଧନ ପରବର୍ତ୍ତୀ କାଳ ଅର୍ଥାତ୍ ପୂର୍ଣ୍ଣ କାଳ ସକାଶେ ଏକତ୍ର ଗୋଟିଏ ମୋଟ ଲାଭ ଓ କ୍ଷତି ହିସାବ ପ୍ରସ୍ତୁତ କରାଯିବ । ତତ୍ପରେ ବିକ୍ରୟ ଭିତ୍ତିରେ ଅଥବା ତାହା ସମ୍ଭବ ନ ହେଲେ ସମୟ ଭିତ୍ତିରେ ମୋଟ ଲାଭକୁ ଉଭୟ କାଳ ମଧ୍ୟରେ ଭାଗ କରାଯିବ । ତତ୍ପରେ ନିବନ୍ଧନର ପୂର୍ବବର୍ତ୍ତୀ ଓ ପରବର୍ତ୍ତୀକାଳ ସକାଶେ ଦୁଇଟି ସ୍ୱତନ୍ତ୍ର ନିଟ୍ ଲାଭ ଓ କ୍ଷତି ହିସାବ ପ୍ରସ୍ତୁତ କରାଯିବ । ସ୍ଥିର ବ୍ୟୟଗୁଡ଼ିକୁ ସମୟ ଅନୁପାତରେ ଓ ପରିବର୍ତ୍ତନଶୀଳ ବ୍ୟୟଗୁଡ଼ିକୁ ବିକ୍ରୟ ଅନୁପାତରେ ଦୁଇ ହିସାବ ମଧ୍ୟରେ ବଣ୍ଟନ କରାଯିବ । କମ୍ପାନୀ ସମ୍ବନ୍ଧୀୟ ବ୍ୟୟ (ଯେପରି ନିର୍ଦ୍ଦେଶକମାନଙ୍କର ଫିସ୍, ପ୍ରାରମ୍ଭିକ ବ୍ୟୟ, ଦାୟ ଗ୍ରହଣକାରୀଙ୍କ ଦେୟ ପ୍ରଭୃତି) ନିବନ୍ଧନ ପରବର୍ତ୍ତୀ ହିସାବକୁ ଦାୟୀ କରାଯିବ। ନିବନ୍ଧନ ପୂର୍ବବର୍ତ୍ତୀ ଲାଭକୁ ମୂଳଧନ ସଞ୍ଚିତ ହିସାବକୁ ସ୍ଥାନାନ୍ତରିତ କରାଯିବ ।

ଏହାର ଏକ ଦୃଷ୍ଟାନ୍ତ ନିମ୍ନରେ ପ୍ରଦତ୍ତ ହେଲା ।

### ଦୃଷ୍ଟାନ୍ତ (୨୦)

ବିଶାଳ ଇଣ୍ଡଷ୍ଟ୍ରିଜ ଲିମିଟେଡ୍ ୧୯୭୫ ମସିହା ଅପ୍ରେଲ ୧ ତାରିଖରେ ଏକ ପ୍ରାଇଭେଟ ଲିମିଟେଡ୍ କମ୍ପାନୀ ରୂପେ ନିବନ୍ଧିତ ହୋଇଥିଲା । ଏହା ବିଶାଳ ଏଣ୍ଡ୍ କୋ.ଙ୍କର ୧୯୭୫ ମସିହା ଜାନୁୟାରୀ ୧ ତାରିଖରେ ବିଦ୍ୟମାନ ଥିବା ବ୍ୟବସାୟକୁ କ୍ରୟ କରିବ ।

ନିମ୍ନଲିଖିତ ବାକିଗୁଡ଼ିକ ବିଶାଳ ଇଣ୍ଡଷ୍ଟ୍ରିଜ୍‌ଙ୍କର ବ୍ୟବସାୟ ଖାତାରୁ ୩୧-୧୨-୧୯୭୫ ତାରିଖରେ ନିଆଯାଇଛି :

| | ଟଙ୍କା |
|---|---|
| ବିକ୍ରୟ | ୧,୨୦,୦୦୦ |
| (ନିବନ୍ଧନ ପରବର୍ତ୍ତୀକାଳର ବିକ୍ରୟ ପରିମାଣ ଟ ୮୦,୦୦୦ ଥିଲା) | |
| ମୋଟ ଲାଭ | ୪୮,୦୦୦ |
| (ନିବନ୍ଧନ ପରବର୍ତ୍ତୀକାଳର ମୋଟ ଲାଭ ଟ ୩୦,୦୦୦ ଥିଲା) | |
| ନିର୍ଦ୍ଦେଶକମାନଙ୍କର ଫିସ | ୬୦୦ |
| ପ୍ରାରମ୍ଭିକ ବ୍ୟୟ | ୨,୫୦୦ |
| ଘରଭଡ଼ା | ୨,୪୦୦ |
| ବେତନ | ୩,୬୦୦ |
| ବୀମା ପ୍ରିମିୟମ | ୩୦୦ |
| ହିସାବ ସମୀକ୍ଷକଙ୍କ ଫିସ | ୫୦୦ |
| ଯନ୍ତ୍ରର ମୂଲ୍ୟହ୍ରାସ | ୨୪୦ |

ପ୍ରାକ୍-ନିବନ୍ଧନ ଓ କମ୍ପାନୀ କାଳର ନିଟ୍ ଲାଭ ପୃଥକ୍ ଭାବରେ ନିର୍ଣ୍ଣୟ କର ।

## ସମାଧାନ

ବିଶାଳ ଇଣ୍ଡଷ୍ଟ୍ରିଜ ଲିମିଟେଡ୍

୩୧-୧୨-୧୯୭୫ ତାରିଖରେ ଶେଷ ହେଉଥିବା ବର୍ଷର ନିଟ୍ ଲାଭ ଓ କ୍ଷତି ହିସାବ

ଦାୟୀ | ଦାତା

| | ପ୍ରାକ୍-ନିବନ୍ଧନ | ନିବନ୍ଧନ ପରବର୍ତ୍ତୀ | ମୋଟ | | ପ୍ରାକ୍-ନିବନ୍ଧନ | ନିବନ୍ଧନ ପରବର୍ତ୍ତୀ | ମୋଟ |
|---|---|---|---|---|---|---|---|
| | ଟଙ୍କା | ଟଙ୍କା | ଟଙ୍କା | | ଟଙ୍କା | ଟଙ୍କା | ଟଙ୍କା |
| ଘରଭଡ଼ା ବାବଦ | ୬୦୦ | ୧,୮୦୦ | ୨,୪୦୦ | ମୋଟ ଲାଭ | | | |
| ବେତନ ବାବଦ | ୯୦୦ | ୨,୭୦୦ | ୩,୬୦୦ | ବାବଦ | ୧୮,୦୦୦ | ୩୦,୦୦୦ | ୪୮,୦୦୦ |
| ବୀମା ପ୍ରିମିୟମ | ୭୫ | ୨୨୫ | ୩୦୦ | | | | |
| ଯନ୍ତ୍ରର ମୂଲ୍ୟ ହ୍ରାସ | ୬୦ | ୧୮୦ | ୨୪୦ | | | | |
| ନିର୍ଦ୍ଦେଶକଙ୍କର ଫିସ | — | ୬୦୦ | ୬୦୦ | | | | |
| ପ୍ରାରମ୍ଭିକ ବ୍ୟୟ | — | ୨,୫୦୦ | ୨,୫୦୦ | | | | |
| ହିସାବ ସମୀକ୍ଷକଙ୍କର ଫିସ ବାବଦ | | ୫୦୦ | ୫୦୦ | | | | |
| ମୂଳଧନ ସଞ୍ଚିତ ହିଃ ବାବଦ ସ୍ଥାନାନ୍ତରଣ | ୧୬,୭୬୫ | | ୧୬,୭୬୫ | | | | |
| ଲାଭ ବାବଦ | | ୨୧,୪୯୫ | ୩୯,୪୯୫ | | | | |
| | ୧୮,୦୦୦ | ୩୦,୦୦୦ | ୪୮,୦୦୦ | | ୧୮,୦୦୦ | | |

ମନ୍ତବ୍ୟ :—ଉପରୋକ୍ତ ଦୃଷ୍ଟାନ୍ତରେ ପ୍ରାକ୍-ନିବନ୍ଧନ ଓ ନିବନ୍ଧନ ପରବର୍ତ୍ତୀକାଳର ମୋଟ ଲାଭକୁ ଦୁଇଟି କାଳର ବିକ୍ରୟ ଅନୁପାତ, ଅର୍ଥାତ୍ ୩ : ୫ ଅନୁପାତରେ ଭାଗ କରାଯାଇଛି । ଅନ୍ୟାନ୍ୟ ସ୍ଥିର ବ୍ୟୟ, ଯଥା—ଘରଭଡ଼ା, ବୀମା ପ୍ରିମିୟମ, ମୂଲ୍ୟ ହ୍ରାସ ପ୍ରଭୃତି ବ୍ୟୟକୁ ଦୁଇଟି କାଳ, ଅର୍ଥାତ୍ ୩ ମାସ ଓ ୯ ମାସ ଅର୍ଥାତ୍ ୧ : ୩ ଅନୁପାତରେ ଭାଗ କରାଯାଇଛି । କମ୍ପାନି ଗଠନ ସମ୍ପୃକ୍ତ ସମସ୍ତ ବ୍ୟୟକୁ ନିବନ୍ଧନ ପରବର୍ତ୍ତୀ କାଳର ମୋଟ ଲାଭରୁ ବାଦ୍ ଦିଆଯାଇଛି, ଅର୍ଥାତ୍ ସେଗୁଡ଼ିକୁ ସେହି କାଳର ହିସାବକୁ ଦାୟୀ କରାଯାଇଛି ।

## ପ୍ରାକ୍-ନିବନ୍ଧନ କ୍ଷତି

ଗୋଟିଏ ଚଳନ୍ତି ବ୍ୟବସାୟରୁ ସର୍ବଦା ଯେ କେବଳ ଲାଭ ହେବ, ଏଭଳି କୌଣସି ନିଶ୍ଚୟତା ନାହିଁ । କେତେକ ସମୟ ନିବନ୍ଧନ-ପୂର୍ବ କାଳରେ ବ୍ୟବସାୟର କ୍ଷତି ମଧ୍ୟ ହୋଇପାରେ । ସେପରି କ୍ଷେତ୍ରରେ ସେହି କ୍ଷତିକୁ ପ୍ରାକ୍-ନିବନ୍ଧନ କ୍ଷତି ବୋଲି କୁହାଯିବ । ଯଦି ଚଳନ୍ତି ବ୍ୟବସାୟକୁ କ୍ରୟ କରିବା ନିମନ୍ତେ କମ୍ପାନିକୁ ବ୍ୟବସାୟର ସୁନାମ ବାବଦ କିଛି ଅର୍ଥ ଦେୟ ଥିବ, ତାହାହେଲେ ଉପରୋକ୍ତ କ୍ଷତିକୁ ସେହି ସୁନାମ ପରିମାଣ ସହିତ ଯୋଗ କରାଯିବ । ଯଦି ସୁନାମ ବାବଦ ଚୁକ୍ତି ଅନୁଯାୟୀ କୌଣସି ଅର୍ଥ ଦେୟ ନ ଥିବ, ତାହାହେଲେ ଏହି କ୍ଷତି ପରିମାଣ ସକାଶେ ଏକ ସୁନାମ ହିସାବ ଖୋଲାଯାଇ ତାହାକୁ ଦାୟୀ କରାଯିବ ଓ ଗୋଟିଏ 'ଅନିଷ୍ଟିତ ହିସାବ' (Suspense A/c) କୁ ଦାତା କରାଯିବ । ଏତଦ୍ୱାରା ଉପରୋକ୍ତ କ୍ଷତି ପରିମାଣକୁ ମୂଳଧନାୟନ କରାଯିବ । ପରେ କୌଣସି ପ୍ରକାର ପୁଞ୍ଜିଗତ ଲାଭ, ଯେପରି ଅଧିହାରରେ ଅଂଶ ବିକ୍ରୟ ଅଥବା / ଏବଂ ଅଧିହାରରେ ଋଣ ପତ୍ର ବିକ୍ରୟ ଅଥବା / ଏବଂ ଅଂଶ ବାଜ୍ୟାପ୍ତ ବାବଦ ଲାଭ ସହିତ ଏହି ଅନିଷ୍ଟିତ ହିସାବର ବାକିକୁ ସମାଯୋଜିତ କରାଯିବ । ଅବଶ୍ୟ କମ୍ପାନିର ପରିମେଳ ନିୟମାବଳୀରେ ଯଦି ଏ ସମ୍ବନ୍ଧରେ ଅନ୍ୟ କୌଣସି ପ୍ରକାର ନିର୍ଦ୍ଦେଶ ଥାଏ, ତାହାହେଲେ ସେହି ପଦ୍ଧତି ଅନୁସୃତ ହେବ ।

## ଋଣ-ପତ୍ରର ପ୍ରଚଳନ

କୌଣସି କମ୍ପାନିର ଅତିରିକ୍ତ ମୂଳଧନ ଆବଶ୍ୟକ ହେଲେ ଜନସାଧାରଣଙ୍କଠାରୁ ଋଣ ଗ୍ରହଣ କରିବାର ବନ୍ଦୋବସ୍ତ କରାଯାଏ । କମ୍ପାନି ଋଣପତ୍ର ପ୍ରଦାନ କରି ଏହି ଋଣ କରନ୍ତି । ଏହି ଋଣପତ୍ରଗୁଡ଼ିକ ମଧ୍ୟ ଅଂଶପତ୍ର ତୁଲ୍ୟ ହସ୍ତାନ୍ତରଯୋଗ୍ୟ ଅଟେ ।

ଅଂଶପତ୍ର ସହିତ ଋଣପତ୍ରର ମୂଳଗତ ପାର୍ଥକ୍ୟ ଥିଲେ ମଧ୍ୟ ଉଭୟ କ୍ଷେତ୍ରରେ ପ୍ରଚଳନ ପ୍ରଣାଳୀ ପ୍ରାୟ ଅନୁରୂପ । ଋଣପତ୍ର ମଧ୍ୟ ସମହାରରେ, ଅଧିହାରରେ ଓ ଅବହାରରେ ପ୍ରଚଳିତ ହୋଇପାରେ । ଅବଶ୍ୟ ଅବହାରରେ ଋଣପତ୍ର ପ୍ରଚଳିତ ହେଲେ ଏହି ବଟ୍ଟା ପରିମାଣର କୌଣସି ସୀମା କମ୍ପାନୀ ଆଇନରେ ନିର୍ଦ୍ଦିଷ୍ଟ କରାଯାଇ ନାହିଁ ।

ଅଂଶ ପ୍ରଚଳନ କରିବା ସମୟରେ ଯେପରି କରାଯାଏ, ଋଣପତ୍ର ପ୍ରଚଳନ ସମୟରେ ମଧ୍ୟ କମ୍ପାନୀକୁ ନିବନ୍ଧକଙ୍କ ନିକଟରେ ପ୍ରସ୍ତାବକ ପତ୍ର ଅଥବା ବିକଳ୍ପ ବିବରଣୀ ଦାଖଲ କରିବାକୁ ପଡ଼େ ଏବଂ ଜନସାଧାରଣଙ୍କଠାରୁ ଆବେଦନପତ୍ର ଆହ୍ୱାନ କରାଯାଇ ତାହା ଜନସାଧାରଣଙ୍କ ନିକଟରେ ପ୍ରଚାର କରାଯାଏ । ଆବେଦନପତ୍ର ସହିତ ଆବେଦନକାରୀଙ୍କୁ ଆବେଦନ ଅର୍ଥ ଦେବାକୁ ହୁଏ ଏବଂ ଅବଶିଷ୍ଟ ଅର୍ଥ ଆବଣ୍ଟନ ପରେ ଦିଆଯାଏ ।

ଅଧିହାରରେ ଋଣପତ୍ର ପ୍ରଚଳନ କରାଗଲେ ଅଧିହାର ବାବଦ ଅର୍ଥ ସାଧାରଣତଃ ଆବଣ୍ଟନ ସମୟରେ ଦେୟ ହୁଏ ଓ ତାହା ସକାଶେ ଋଣପତ୍ର ଅଧିହାର ହିସାବକୁ ଦାତା କରାଯାଏ । ଏହି ଅର୍ଥ ପ୍ରଥମତଃ ଋଣପତ୍ର ପ୍ରଚଳନ ପାଇଁ ପ୍ରଦତ୍ତ କମିଶନ୍, ବଟ୍ଟା ଅଥବା ଦଲିଲଜନିତ ବ୍ୟୟର ଭରଣା କରିବାରେ ବ୍ୟବହୃତ ହୁଏ । ଏହା ପରେ ଅଧିହାର ହିସାବରେ ଯଦି କୌଣସି ଦାତା ବାକି ଅବଶିଷ୍ଟ ଥାଏ, ତାହା ମୂଳଧନ ସଞ୍ଚିତି ହିସାବକୁ ସ୍ଥାନାନ୍ତରିତ ହୁଏ ଓ ଏହି ହିସାବ କମ୍ପାନୀର ଉଦ୍ବର୍ତ୍ତ ପତ୍ରରେ 'ସଞ୍ଚିତି ଓ ବଳକା' ଉପ-ବିଭାଗରେ ପ୍ରଦର୍ଶିତ ହୁଏ । ଅବଶ୍ୟ ଏହି ପ୍ରକାର ଲାଭ ବ୍ୟବସାୟପ୍ରସୂତ ନ ହୋଇଥିବାରୁ ଏହାକୁ ଲାଭାଂଶ ରୂପେ ଅଂଶଧାରୀମାନଙ୍କୁ ବଣ୍ଟନ କରିବା ସମୀଚୀନ ନୁହେଁ; କିନ୍ତୁ କମ୍ପାନୀର ପରିମେଳ ନିୟମାବଳୀରେ ତଦ୍ରୂପ ନିର୍ଦ୍ଦେଶ ଥିଲେ ତାହା ଲାଭାଂଶ ରୂପେ ବଣ୍ଟିତ ହୋଇପାରେ ।

ଋଣପତ୍ର ପ୍ରଚଳନ ସମୟରେ କମିଶନ, ବଟ୍ଟା, ଦଲିଲ ବାବଦ ଯେଉଁ ଅର୍ଥ ବ୍ୟୟିତ ହୁଏ, ଅବହାରରେ ପ୍ରଚଳିତ କରାଗଲେ ଯେଉଁ ବଟ୍ଟା ଦିଆଯାଏ ଏବଂ ଋଣପତ୍ରକୁ ଯଦି ଅଧିହାରରେ ପରିଶୋଧ କରାଯାଏ, ତାହାହେଲେ ତଜ୍ଜନିତ କ୍ଷତି ସକାଶେ 'ଋଣପତ୍ର

ପ୍ରଚଳନଜନିତ କ୍ଷତି ହିସାବ' ନାମକ ଏକ ହିସାବକୁ ଦାୟୀ କରାଯାଏ । ଏହି ହିସାବର ବାକିକୁ ଯଥା ଶୀଘ୍ର ନିଟ୍ ଲାଭ ଓ କ୍ଷତି ହିସାବକୁ ଅଥବା ଋଣପତ୍ର ଅଧିହାର ହିସାବକୁ ସ୍ଥାନାନ୍ତରିତ କରାଯାଇ ଅବଲୋପନ କରାଯାଏ । ଯେତେ କାଳ ଯାବତ୍ 'ଋଣପତ୍ର ପ୍ରଚଳନ-ଜନିତ କ୍ଷତି ହିସାବ' ସମ୍ପୂର୍ଣ୍ଣ ଅବଲୁପ୍ତ ନ ହୋଇଛି, ତାହାର ବାକିକୁ କମ୍ପାନି ଉଦ୍ବୃତ୍ତ ପତ୍ରର ପରିସମ୍ପତ୍ତି ଦିଗରେ 'ବିବିଧ ବ୍ୟୟ' ନାମକ ଉପ-ବିଭାଗ ଶିରୋନାମା ତଳେ ପ୍ରଦର୍ଶିତ କରାଯାଏ ।

କମ୍ପାନିର ପରିମେଳ ନିୟମାବଳୀରେ ଯଦି ସେଭଳି ନିର୍ଦ୍ଦେଶ ଥାଏ, ତାହାହେଲେ କମ୍ପାନି ଋଣପତ୍ର ପ୍ରଚଳନ କରିବା ପାଇଁ କମିଶନ୍ ଅଥବା ଦଲାଲି ବାବଦ ଋଣପତ୍ରର ଲିଖିତ ମୂଲ୍ୟର ସର୍ବୋଚ୍ଚ ଶତକଡ଼ା ୨½ ପର୍ଯ୍ୟନ୍ତ ବ୍ୟୟ କରିପାରିବେ ।

## ଋଣପତ୍ର ବାବଦ ଦେୟ ସୁଧ

ଋଣପତ୍ର ଉପରେ ଦେୟ ସୁଧ ନିମନ୍ତେ ନିଟ୍ ଲାଭ ଓ କ୍ଷତି ହିସାବକୁ ପ୍ରଭାବିତ କରାହୁଏ । ଋଣପତ୍ରର ସୁଧ ସାଧାରଣତଃ ଛଅ ମାସ ଅନ୍ତରରେ ଅଥବା ବାର୍ଷିକ ହାରରେ ପ୍ରଦତ୍ତ ହୁଏ । ଏହି ସୁଧ ପ୍ରଦାନ କରିବା ପୂର୍ବ ଋଣପତ୍ର ବନ୍ଧା ହିସାବକୁ ଦେୟ ସୁଧର ପରିମାଣ ସକାଶେ ଦାୟୀ କରାଯାଏ । ବର୍ଷ ଶେଷରେ ଏହି ହିସାବର ଦାୟୀ ବାକି ନିଟ୍ ଲାଭ ଓ କ୍ଷତି ହିସାବକୁ ସ୍ଥାନାନ୍ତରିତ କରାଯାଏ ।

ଋଣପତ୍ର ପ୍ରଚଳନର କେତେକ ଦୃଷ୍ଟାନ୍ତ ନିମ୍ନରେ ପ୍ରଦତ୍ତ ହେଲା ।

### ଦୃଷ୍ଟାନ୍ତ (୨୧)

ବିରଜା ଇଣ୍ଡଷ୍ଟ୍ରିଜ୍ ଲିମିଟେଡ୍‌ଙ୍କର ଆର୍ଥିକ ଅସୁବିଧା ଦୂର କରିବା ନିମନ୍ତେ କମ୍ପାନି ଋଣପତ୍ର ପ୍ରତି ଟ ୧୦୦ ହାରରେ ୬% ସୁଧରେ ୧,୦୦୦ ଋଣପତ୍ର ପ୍ରଚଳନ କରିଥିଲେ । ଏହି ଋଣପତ୍ର ବାବଦ ଦେୟ ଅର୍ଥ ଆବେଦନ ସମୟରେ ଟ ୨୦ ଓ ଅବଶିଷ୍ଟ ପରିମାଣ ଆବଣ୍ଟନ ସହିତ ଦେୟ ଥିଲା ।

୨,୦୦୦ ଋଣପତ୍ର ସକାଶେ ଆବେଦନ ମିଳିଥିଲା । କମ୍ପାନି ୮୦୦ ଋଣପତ୍ରର ଆବେଦନକାରୀଙ୍କୁ ପୂର୍ଣ୍ଣ ମାତ୍ରାରେ ଆବଣ୍ଟନ କରିଥିଲେ । ୧,୦୦୦ ଋଣପତ୍ରର ଆବେଦନକାରୀଙ୍କୁ ୨୦୦ ଋଣପତ୍ର ଆବଣ୍ଟନ କରିଥିଲେ ଏବଂ ୨୦୦ ଋଣପତ୍ରର ଆବେଦନ-କାରୀଙ୍କର ଆବେଦନ ପ୍ରତ୍ୟାଖ୍ୟାନ କରିଥିଲେ । ପ୍ରାପ୍ୟ ସମସ୍ତ ଅର୍ଥ ଯଥା ସମୟରେ ମିଳିଥିଲା ।

ଆବଶ୍ୟକ ଜାବଦା ଓ କମ୍ପାନିର ଉଦ୍ବୃତ୍ତ ପତ୍ର ପ୍ରସ୍ତୁତ କର ।

ବରଜା ଇଣ୍ଡଷ୍ଟ୍ରିଜ୍ ଲିମିଟେଡ୍‌ଙ୍କର
ଜାବ୍‌ଦା

## ସମାଧାନ

| | | ଦାୟୀ ଟଙ୍କା | ଦାତା ଟଙ୍କା |
|---|---|---|---|
| ବ୍ୟାଙ୍କ୍ ହିସାବ | ଦାୟୀ | ୪୦,୦୦୦ | |
| ୬% ଋଣପତ୍ର ଆବେଦନ ହିସାବ ବାବଦ | | | ୪୦,୦୦୦ |
| ( ଋଣପତ୍ର ପ୍ରତି ଟ ୨୦ ହାରରେ ୨,୦୦୦ ଋଣପତ୍ରର ଆବେଦନ ଅର୍ଥ ମିଳିଲା ) | | | |
| ୬% ଋଣପତ୍ର ଆବେଦନ ହିସାବ | ଦାୟୀ | ୪୦,୦୦୦ | |
| ୬% ଋଣପତ୍ର ହିସାବ ବାବଦ | | | ୨୦,୦୦୦ |
| ୬% ଋଣପତ୍ର ଆବଣ୍ଟନ ହି : ବାବଦ | | | ୧୬,୦୦୦ |
| ବ୍ୟାଙ୍କ୍ ହିସାବ ବାବଦ | | | ୪,୦୦୦ |
| (ନିର୍ଦ୍ଦେଶକମଣ୍ଡଳୀଙ୍କର ··· ତାରିଖର ପ୍ରସ୍ତାବକ୍ରମେ ୮୦୦ ଋଣପତ୍ରର ଆବେଦନକାରୀଙ୍କୁ ପୂର୍ଣ୍ଣ ମାତ୍ରାରେ, ୧,୦୦୦ ଋଣପତ୍ରର ଆବେଦନକାରୀଙ୍କୁ ୨୦୦ ଋଣପତ୍ର ଆବଣ୍ଟନ କଲେ ଓ ୨୦୦ ଋଣପତ୍ରର ଆବେଦନକାରୀଙ୍କର ଆବେଦନ ଅର୍ଥ ଫେରସ୍ତ ଦିଆଗଲା ) | | | |
| ୬% ଋଣପତ୍ର ଆବଣ୍ଟନ ହି : | ଦାୟୀ | ୮୦,୦୦୦ | |
| ୬% ଋଣପତ୍ର ହିସାବ ବାବଦ | | | ୮୦,୦୦୦ |
| (ନିର୍ଦ୍ଦେଶକମଣ୍ଡଳୀଙ୍କର···ତାରିଖର ପ୍ରସ୍ତାବକ୍ରମେ ଋଣପତ୍ର-ପ୍ରତି ଟ ୮୦ ହାରରେ ୧,୦୦୦ ଋଣପତ୍ର ଆବଣ୍ଟନ ଅର୍ଥ ପ୍ରାପ୍ୟ ହେଲା ) | | | |
| ବ୍ୟାଙ୍କ୍ ହିସାବ | ଦାୟୀ | ୬୪,୦୦୦ | |
| ୬% ଋଣପତ୍ର ଆବଣ୍ଟନ ହି : ବାବଦ | | | ୬୪,୦୦୦ |
| (ଆବଣ୍ଟନ ଅର୍ଥ ବାବଦ ଅବଶିଷ୍ଟ ଟଙ୍କା ମିଳିଲା ) | | | |

ବରଜା ଇଣ୍ଡଷ୍ଟ୍ରିଜଙ୍କର...ମସିହା...ତାରିଖର
ଉଦ୍‌ବୃତ୍ତ ପତ୍ର

| ଦେଣା | ଟଙ୍କା | ପରିସମ୍ପତ୍ତି | ଟଙ୍କା |
|---|---|---|---|
| ୬% ଋଣ ପତ୍ର | ୧,୦୦,୦୦୦ | ବ୍ୟାଙ୍କରେ ଗଚ୍ଛିତ ତହବିଲ | ୧,୦୦,୦୦୦ |

ଋଣପତ୍ର ଅଧିହାରରେ ପ୍ରଚଳିତ ହୋଇ ସମହାରରେ ପରିଶୋଧ ହୋଇପାରେ, ସମହାରରେ ପ୍ରଚଳିତ ହୋଇ ଅଧିହାରରେ ପରିଶୋଧ ହୋଇପାରେ ଅଥବା ଅବହାରରେ ପ୍ରଚଳିତ ହୋଇ ସମହାରରେ ପରିଶୋଧ ହୋଇପାରେ ଅଥବା ଅବହାରରେ ପ୍ରଚଳିତ ହୋଇ ଅଧିହାରରେ ପରିଶୋଧ ହୋଇପାରେ । ମୋଟ ଉପରେ କେତେକ କ୍ଷେତ୍ରରେ ଋଣପତ୍ର ବାବଦ ଯେତେ ଅର୍ଥ ମିଳିଥାଏ ତାହା ଅପେକ୍ଷା ଅଧିକ ପରିମାଣରେ ଅର୍ଥ ପରିଶୋଧ କରିବାକୁ ହୁଏ । ଏହା ସେତେବେଳେ କରାଯାଏ ଯେତେବେଳେ କମ୍ପାନୀର ଅର୍ଥ ବିଶେଷ ପ୍ରୟୋଜନ ଥାଏ ଏବଂ ଜନସାଧାରଣ ଏହି କମ୍ପାନୀର ଋଣପତ୍ର କ୍ରୟ କରିବାକୁ ବିଶେଷ ଆଗ୍ରହୀ ନୁହନ୍ତି । ତାଙ୍କର ଆଗ୍ରହ ସୃଷ୍ଟି କରିବା ନିମନ୍ତେ କମ୍ପାନୀକୁ ଏହି କ୍ଷତି ସହିବାକୁ ପଡ଼େ । ଏହି କ୍ଷତିକୁ ହିସାବଭୁକ୍ତ କରିବା ନିମନ୍ତେ 'ଋଣପତ୍ର ପ୍ରଚଳନ-ଜନିତ କ୍ଷତି ହିସାବ' ନାମକ ଏକ ନୂତନ ହିସାବ ଖୋଲାଯାଇ କ୍ଷତିର ପରିମାଣ ସକାଶେ ଏହି ହିସାବକୁ ଦାୟୀ କରାଯାଏ । ସର୍ବାଧିକ କ୍ଷତି କ୍ଷେତ୍ରରେ ନିମ୍ନ ପ୍ରକାର ଜାବେଦା ଆବଶ୍ୟକ ହୁଏ ।

| | | |
|---|---|---|
| ବ୍ୟାଙ୍କ୍ ହିସାବ | ଦାୟୀ | ନଗଦ ଅର୍ଥପ୍ରାପ୍ତି ପାଇଁ |
| ଋଣପତ୍ର ପ୍ରଚଳନଜନିତ କ୍ଷତି ହିସାବ | ଦାୟୀ | ଅବହାରରେ ପ୍ରଚଳନ ଓ |
| ଋଣପତ୍ର ହିସାବ ବାବଦ | | ଅଧିହାରରେ ପରିଶୋଧ |
| ଅଧିହାରରେ ପରିଶୋଧ୍ୟ | | ବାବଦ କ୍ଷତି ପାଇଁ ଋଣ- |
| ଋଣପତ୍ର ହିସାବ ବାବଦ | | ପତ୍ରର ଅଙ୍କିତ ମୂଲ୍ୟ ପାଇଁ |
| | | ଅଧିହାରରେ ପରିଶୋଧ |
| | | ପରିମାଣ ପାଇଁ |

ଏହାର ଏକ ଦୃଷ୍ଟାନ୍ତ ନିମ୍ନରେ ପ୍ରଦତ୍ତ ହେଲା ।

### ଦୃଷ୍ଟାନ୍ତ (୨୨)

କ କମ୍ପାନୀ ଲିମିଟେଡ୍ ପ୍ରତି ଋଣପତ୍ର ଟ ୧୦୦ ହାରରେ ୧,୦୦୦ ୬% ଋଣ-ପତ୍ର ପ୍ରଚଳନ କରିଥିଲେ :

(କ) (i) ଯଦି ସମହାରରେ ପ୍ରଚଳନ କରନ୍ତି, ଯାହା ସମହାରରେ ପରିଶୋଧ

(ii) ଯଦି ୫% ଅବହାରରେ ପ୍ରଚଳନ କରନ୍ତି ,, ,,

(iii) ଯଦି ୫% ଅଧିହାରରେ ପ୍ରଚଳନ କରନ୍ତି ,, ,,

(ଖ) (i) ଯଦି ସମହାରରେ ପ୍ରଚଳନ କରି ୫% ଅଧିହାରରେ ପରିଶୋଧ କରନ୍ତି ।

(ii) ଯଦି ୫% ଅବହାରରେ ପ୍ରଚଳନ କରି ୫% ଅଧିହାରରେ ପରିଶୋଧ କରନ୍ତି ।

ଉପରୋକ୍ତ ପ୍ରତ୍ୟେକ ନେଣଦେଣ ସକାଶେ ଜାବ୍ଦା ପ୍ରସ୍ତୁତ କର ।

## ସମାଧାନ

ଜାବ୍ଦା

| ସମହାରରେ ପରିଶୋଧ ଋଣପତ୍ର | | ଦାୟୀ | ଦାତା |
|---|---|---|---|
| | | ଟଙ୍କା | ଟଙ୍କା |
| (କ) (i) ସମହାରରେ ପ୍ରଚଳିତ | | | |
| ବ୍ୟାଙ୍କ୍ ହିସାବ | ଦାୟୀ | ୧,୦୦,୦୦୦ | |
| ୬% ଋଣପତ୍ର ହିସାବ ବାବଦ | | | ୧,୦୦,୦୦୦ |
| (ଋଣପତ୍ର ପ୍ରତି ଟ ୧୦୦ ହାରରେ ୧,୦୦୦ ୬% ଋଣପତ୍ର ପ୍ରଚଳିତ ହୋଇଥିଲା ଯାହା ସମହାରରେ ପରିଶୋଧ) | | | |
| (ii) ଅବହାରରେ ପ୍ରଚଳିତ | | | |
| ବ୍ୟାଙ୍କ୍ ହିସାବ | ଦାୟୀ | ୯୫,୦୦୦ | |
| ଋଣପତ୍ର ବଟା ହିସାବ | ଦାୟୀ | ୫,୦୦୦ | |
| ୬% ଋଣପତ୍ର ହିସାବ ବାବଦ | | | ୧,୦୦,୦୦୦ |
| (ଋଣପତ୍ର ପ୍ରତି ଟ ୧୦୦ ହାରରେ ୧,୦୦୦ ୬% ଋଣପତ୍ର ୫% ଅବହାରରେ ପ୍ରଚଳିତ ହୋଇଥିଲା ଯାହା ସମହାରରେ ପରିଶୋଧ) | | | |
| (iii) ଅଧିହାରରେ ପ୍ରଚଳିତ | | | |
| ବ୍ୟାଙ୍କ ହିସାବ | ଦାୟୀ | ୧,୦୫,୦୦୦ | |
| ୬% ଋଣପତ୍ର ହିସାବ ବାବଦ | | | ୧,୦୦,୦୦୦ |
| ଋଣପତ୍ର ଅଧିହାର ହିସାବ ବାବଦ | | | ୫,୦୦୦ |
| (ଋଣପତ୍ର ପ୍ରତି ଟ ୧୦୦ ହାରରେ ୧,୦୦୦ ୬% ଋଣପତ୍ର ୫% ଅଧିହାରରେ ପ୍ରଚଳିତ ହୋଇଥିଲା ଯାହା ସମହାରରେ ପରିଶୋଧ) | | | |

### ଅଧିହାରରେ ପରିଶୋଧ ଋଣପତ୍ର

| ଜାବ୍‌ଦା | | ଦାୟୀ | ଦାତା |
|---|---|---|---|
| | | ଟଙ୍କା | ଟଙ୍କା |
| (ଖ) (i) ସମହାରରେ ପ୍ରଚଳିତ<br>ବ୍ୟାଙ୍କ୍ ହିସାବ | ଦାୟୀ | ୧,୦୦,୦୦୦ | |
| ଋଣପତ୍ର ପ୍ରଚଳନଜନିତ କ୍ଷତି ହିସାବ | | ୫,୦୦୦ | |
| ୬% ଋଣପତ୍ର ହିସାବ ବାବଦ | | | ୧,୦୦,୦୦୦ |
| ଅଧିହାରରେ ପରିଶୋଧଜନିତ ଋଣପତ୍ର ହି: ବାବଦ<br>(ଋଣପତ୍ର ପ୍ରତି ଟ ୧୦୦ ହାରରେ ୧,୦୦୦ ୬% ଋଣପତ୍ର ସମହାରରେ ପ୍ରଚଳିତ ହୋଇଥିଲା ଯାହା ୫% ଅଧିହାରରେ ପରିଶୋଧ) | | | ୫,୦୦୦ |
| (ii) ୫% ଅବହାରରେ ପ୍ରଚଳିତ<br>ବ୍ୟାଙ୍କ ହିସାବ | ଦାୟୀ | ୯୫,୦୦୦ | |
| ଋଣପତ୍ର ପ୍ରଚଳନଜନିତ କ୍ଷତି ହିସାବ | ଦାୟୀ | ୧୦,୦୦୦ | |
| ୬% ଋଣପତ୍ର ହିସାବ ବାବଦ | | | ୧,୦୦,୦୦୦ |
| ଅଧିହାରରେ ପରିଶୋଧଜନିତ ଋଣପତ୍ର ହି: ବାବଦ<br>(ଋଣପତ୍ର ପ୍ରତି ଟ ୧୦୦ ହାରରେ ୧,୦୦୦ ୬% ଋଣପତ୍ର ଅବହାରରେ ପ୍ରଚଳିତ ହୋଇଥିଲା ଯାହା ୫% ଅଧିହାରରେ ପରିଶୋଧ) | | | ୫,୦୦୦ |

**ଋଣପତ୍ର ପ୍ରଚଳନଜନିତ ବଟା ଓ କ୍ଷତି ପ୍ରଭୃତିର ବିଲୋପସାଧନ—**

ଋଣପତ୍ର ପ୍ରଚଳନ କରିବା ନିମନ୍ତେ ଯେଉଁ ବଟା, କମିଶନ ପ୍ରଭୃତି ବ୍ୟୟ ହୁଏ ଏବଂ ଯେଉଁ କ୍ଷତି ସଂଘଟିତ ହୁଏ ତାହା ନିମନ୍ତେ ଋଣପତ୍ର ପ୍ରଚଳନଜନିତ କ୍ଷତି ହିସାବକୁ ଦାୟୀ କରାଯାଏ । ଏହି ଦାୟୀ ବାକିକୁ ଯଥାସମ୍ଭବ ଶୀଘ୍ର ବିଲୋପ କରାଯିବା ଉଚିତ । ଯେହେତୁ ଏହି ପରିମାଣ ସାଧାରଣତଃ ଅଧିକ ପରିମାଣର ହୋଇଥାଏ, ତେଣୁ ତାହା ଗୋଟିଏ ବର୍ଷର ନିଟ୍ ଲଭ ଓ କ୍ଷତି ହିସାବକୁ ସ୍ଥାନାନ୍ତରିତ କରିବା ପରିବର୍ତ୍ତେ ଆନୁପାତିକ ହାରରେ ସ୍ଥାନାନ୍ତରିତ କରାଯାଏ । ଏହା ଏପରି କରାଯିବା ଆବଶ୍ୟକ ଯେପରି ଏହି ଦାୟୀ ବାକି ଋଣପତ୍ରର ସ୍ଥିତିକାଳ ମଧ୍ୟରେ ବିଲୋପ ହୋଇପାରେ । ମନେକର ୫୦,୦୦୦ ଟଙ୍କାର ଋଣପତ୍ର ପ୍ରଚଳନ କରିବା ପାଇଁ ମୋଟ କ୍ଷତିର ପରିମାଣ ୧,୦୦୦ ଟଙ୍କା ହୋଇଛି ଏବଂ ଏହି ଋଣପତ୍ର ୫ ବର୍ଷରେ ପରିଶୋଧ । ତାହାହେଲେ ପ୍ରତି ବର୍ଷ ଟ ୧,୦୦୦ ÷ ୫ = ଟ ୨୦୦ ହାରରେ ଏହି ମୋଟ ପରିମାଣର ବିଲୋପସାଧନ

କରାଯିବ। ଅବଶିଷ୍ଟ ଥିବା ଏହି ଟ ୧,୦୦୦ – ଟ ୨୦୦ = ଟ ୮୦୦ ଉଦ୍‌ବୃତ୍ତ ପତ୍ରର ପରିସମ୍ପତ୍ତି ପାର୍ଶ୍ୱରେ ବିବିଧ ବ୍ୟୟ ନାମକ ଉପବିଭାଗ ନିମ୍ନରେ ପ୍ରଦର୍ଶିତ ହେବ ।

**ଅତିରିକ୍ତ ଜାମିନସ୍ୱରୂପ ପ୍ରଚଳିତ ଋଣପତ୍ର—**

ସାଧାରଣତଃ କମ୍ପାନୀ କୌଣସି ବ୍ୟାଙ୍କରୁ ଅଥବା ଅନ୍ୟ କୌଣସି ଋଣଦାତାଙ୍କଠାରୁ ଋଣ ସଂଗ୍ରହ କରିବା ସମୟରେ କୌଣସି ସମ୍ପତ୍ତି ବନ୍ଧକ ରଖନ୍ତି । କେତେକ କ୍ଷେତ୍ରରେ ଋଣଦାତାଙ୍କୁ ଅଧିକ ନିଶ୍ଚିନ୍ତ କରିବା ନିମନ୍ତେ କମ୍ପାନୀଙ୍କୁ ସମପରିମାଣର ଋଣପତ୍ର ମଧ୍ୟ ପ୍ରଚଳିତ କରିବାକୁ ପଡ଼େ । ଏ କ୍ଷେତ୍ରରେ ଜାମିନ ରଖାଯାଇଥିବା ସମ୍ପତ୍ତିକୁ ମୁଖ୍ୟ ଜାମିନ କୁହାଯାଏ ଏବଂ ଏହି ଋଣପତ୍ରକୁ ଅତିରିକ୍ତ ଜାମିନ କୁହାଯାଏ ।

ଋଣଦାତାଙ୍କ ସହିତ ଏପରି ବନ୍ଦୋବସ୍ତ କରାଯାଇଥାଏ ଯେ ଯଦି କମ୍ପାନୀ ଯଥାସମୟରେ ସୁଧ ସମେତ ଋଣ ପରିଶୋଧ କରିଦିଅନ୍ତି ତାହାହେଲେ ଏହି ଋଣପତ୍ର ଫଳପ୍ରଦ ହୁଏ ନାହିଁ । ମାତ୍ର ଯଦି କମ୍ପାନୀ ଚୁକ୍ତି ଅନୁଯାୟୀ ସୁଧ ଓ ମୂଳ ପରିଶୋଧ କରିବାକୁ ଅସମର୍ଥ ହୁଅନ୍ତି, ସେତେବେଳେ ଏହି ପ୍ରକାର ଋଣପତ୍ର ପ୍ରକୃତ ଋଣପତ୍ରରେ ପରିଣତ ହୁଏ ଓ ଏଥି ବାବଦ ଋଣର ପରିମାଣକୁ କମ୍ପାନୀଙ୍କୁ ପରିଶୋଧ କରିବାକୁ ପଡ଼େ ।

ଅତିରିକ୍ତ ଜାମିନ୍ ସ୍ୱରୂପ ପ୍ରଚଳିତ ହୋଇଥିବା ଋଣପତ୍ର ନିମନ୍ତେ କୌଣସି ଜାବ୍‌ଦା ଲେଖିବାର ପ୍ରୟୋଜନ ହୁଏ ନାହିଁ । କେବଳ ଋଣଗ୍ରହଣ ସମୟରେ ଯେଉଁ ସାଧାରଣ ଜାବ୍‌ଦା କରାଯାଏ, ତାହା ହିଁ ପ୍ରସ୍ତୁତ କରାଯାଏ । ଯଥା ନଗଦ ତହବିଲ/ବ୍ୟାଙ୍କ୍ ହିସାବକୁ ଦାୟୀ କରାଯାଇ ଋଣ ହିସାବକୁ ଦାତା କରାଯାଏ । ଏପରି କ୍ଷେତ୍ରରେ କେବଳ ଉଦ୍‌ବୃତ୍ତ ପତ୍ର ପ୍ରସ୍ତୁତ କରିବା ସମୟରେ ଏହି ଋଣ ଦଫା ନିମ୍ନରେ ବନ୍ଧନୀ ମଧ୍ୟରେ ନିମ୍ନଲିଖିତ ବିଷୟ ଲେଖାଯାଏ 'ଅତିରିକ୍ତ ଜାମିନ ସ୍ୱରୂପ ଟ...ର ଋଣପତ୍ର ପ୍ରଚଳିତ କରାଯାଇଛି ।' ଉଦ୍‌ବୃତ୍ତ ପତ୍ରରେ ଏହା ନିମ୍ନଲିଖିତ ରୂପେ ଲେଖାଯିବ :

୧୯......ମସିହା.. ...ତାରିଖର
ଉଦ୍‌ବୃତ୍ତ ପତ୍ର

| ଦେଣା | ଟଙ୍କା | ପରିସମ୍ପତ୍ତି | ଟଙ୍କା |
|---|---|---|---|
| ଋଣ<br>(ଅତିରିକ୍ତ ଜାମିନ ସ୍ୱରୂପ<br>ଟ...ର ଋଣପତ୍ର ପ୍ରଚଳିତ<br>କରାଯାଇଛି ।) | ... | | |

ମାତ୍ର ଯଦି କୌଣସି ହିସାବରକ୍ଷକ ଏହି ନେଣଦେଣକୁ ହିସାବଭୁକ୍ତ କରିବାକୁ ଇଚ୍ଛା କରନ୍ତି, ତାହାହେଲେ ଉକ୍ତ ଋଣର ପରିମାଣ ସକାଶେ ଋଣପତ୍ର ଅନିଶ୍ଚିତ ହିସାବକୁ ଦାୟୀ କରି ଋଣପତ୍ର ହିସାବକୁ ଦାକା କରିପାରନ୍ତି । ଋଣ ପରିଶୋଧ ନ ହେବା ପର୍ଯ୍ୟନ୍ତ ଏହି ଋଣପତ୍ର ହିସାବ ଉଦ୍‌ବୃତ୍ତ ପତ୍ରର ଦେଣା ପାର୍ଶ୍ୱରେ ଓ ଋଣପତ୍ର ଅନିଶ୍ଚିତ ହିସାବ ପରିସମ୍ପତ୍ତି ପାର୍ଶ୍ୱରେ ପ୍ରଦର୍ଶିତ ହୁଏ । ଋଣ ପରିଶୋଧ ହେବା ପରେ ବିପରୀତ ଜାବ୍‌ଦା କରିଯାଇ ଏହି ଦୁଇଟି ହିସାବ ବନ୍ଦ କରିଯାଏ ।

**ଅଗ୍ରାଧିକାର ଅଂଶ ପରିଶୋଧ—**

ପୂର୍ବରୁ କୁହାଯାଇଛି ଯେ କମ୍ପାନୀ ଅଗ୍ରାଧିକାର ଅଂଶପତ୍ର ପ୍ରଚଳନ କରିପାରନ୍ତି । ଏଭଳି ଅଂଶପତ୍ରଧାରୀମାନଙ୍କୁ ସାଧାରଣ ଅଂଶଧାରୀମାନଙ୍କୁ ଲଭ୍ୟାଂଶ ବଣ୍ଟନ କରିବା ପୂର୍ବରୁ ନିର୍ଦ୍ଦିଷ୍ଟ ହାରରେ ଲଭ୍ୟାଂଶ ବଣ୍ଟନ କରିଯାଏ ଏବଂ/ଅଥବା କମ୍ପାନୀର ବିଲୋପ ସାଧନ ସମୟରେ ଏହି ଶ୍ରେଣୀର ଅଂଶଧାରୀମାନଙ୍କୁ ପ୍ରଥମେ ସେମାନଙ୍କର ଅଂଶପତ୍ର ବାବଦ ଅର୍ଥ ଫେରସ୍ତ ଦିଆଯାଏ ।

ଯଦିଓ କମ୍ପାନୀ ଚାଲୁଥିବା ପର୍ଯ୍ୟନ୍ତ ଅଂଶଧାରୀମାନଙ୍କର ଅଂଶପତ୍ର ବାବଦ ମୂଳଧନ ସାଧାରଣତଃ ଫେରସ୍ତ ଦିଆଯାଏ ନାହିଁ, ତଥାପି ଅଗ୍ରାଧିକାର ଅଂଶଧାରୀମାନଙ୍କର ପୁଞ୍ଜି ଫେରସ୍ତ ଦେବା ନିମନ୍ତେ ୧୯୫୬ ମସିହାର କମ୍ପାନୀ ଆଇନର ୮୦ ଧାରାରେ ବ୍ୟବସ୍ଥା କରିଯାଇଛି । ଯଦି କମ୍ପାନୀର ପରିମେଳ ନିୟମାବଳୀରେ ଏହି ବ୍ୟବସ୍ଥା ଅନ୍ତର୍ଭୁକ୍ତ ଥାଏ, ତାହାହେଲେ କମ୍ପାନୀ ଅଗ୍ରାଧିକାର ଅଂଶଧାରୀମାନଙ୍କର ପୁଞ୍ଜିକୁ ଫେରସ୍ତ ଦେଇ-ପାରନ୍ତି । ଏହି ପୁଞ୍ଜି ପରିଶୋଧ କରିବା ସମ୍ପର୍କରେ କମ୍ପାନୀ ଆଇନରେ ନିମ୍ନଲିଖିତ ସର୍ତ୍ତଗୁଡ଼ିକ ଅନ୍ତର୍ଭୁକ୍ତ ଅଛି ।

(୧) ପରିଶୋଧ ଅଗ୍ରାଧିକାର ଅଂଶର ମୂଲ୍ୟ ଫେରସ୍ତ ଦେବା ପୂର୍ବରୁ ସେଗୁଡ଼ିକର ମୂଲ୍ୟ ପୂର୍ଣ୍ଣ ଆଦାୟୀକୃତ ହୋଇଥିବା ଆବଶ୍ୟକ ।

(୨) କମ୍ପାନୀର ଯେଉଁ ଲଭରୁ ଲଭ୍ୟାଂଶ ବର୍ଣ୍ଟିତ ହୁଏ କେବଳ ସେହି ଲଭ ପରିମାଣରୁ ଏହି ପୁଞ୍ଜି ଫେରସ୍ତ ଦିଆଯାଇପାରେ ଏବଂ / ଅଥବା ଏଥିନିମନ୍ତେ ନୂତନ ସାଧାରଣ ଅଂଶ ପ୍ରଚଳନ କରି ସେହି ଅର୍ଥରୁ ଏହି ପୁଞ୍ଜି ପରିଶୋଧ କରିଯାଇ-ପାରିବ ।

(୩) ଯଦି ଅଧିହାରରେ ଏହି ଅଗ୍ରାଧିକାର ଅଂଶ ପରିଶୋଧ ହୋଇଥାଏ, ତାହାହେଲେ ଏହି ଅଧିହାର ବାବଦ ଅର୍ଥ ବଣ୍ଟନଯୋଗ୍ୟ ଲଭ ଏବଂ / ଅଥବା ଅଂଶ ଅଧିମୂଲ୍ୟ ହିସାବରେ ଜମାଥିବା ଅର୍ଥରୁ ବ୍ୟବସ୍ଥା କରିଯିବା ଆବଶ୍ୟକ ।

(୪) ଯେଉଁ କ୍ଷେତ୍ରରେ ଏହି ପୁଞ୍ଜିର ପ୍ରତ୍ୟର୍ପଣ ନୂତନ ସାଧାରଣ ଅଂଶ ପ୍ରଚଳନଲବ୍ଧ ଅର୍ଥରୁ କରା ନ ଯାଇ ଅନ୍ୟ ଉପାୟରେ କରାଯାଏ, ସେ କ୍ଷେତ୍ରରେ ପରିଶୋଧ ପରିମାଣକୁ ମୂଳଧନ ପରିଶୋଧ ସଞ୍ଚିତ ହିସାବକୁ ସ୍ଥାନାନ୍ତରିତ କରାଯିବା ଆବଶ୍ୟକ ।

(୫) ମୂଳଧନ ପରିଶୋଧ ସଞ୍ଚିତ ହିସାବର ଦାତା ବାକିକୁ କେବଳ ବୋନସ ଅଂଶ ପ୍ରଦାନ କରିବା ନିମନ୍ତେ ଉପଯୋଗ କରାଯାଇପାରେ । ଏହା ବ୍ୟତୀତ ଅନ୍ୟ କୌଣସି ବ୍ୟବହାର ନିମନ୍ତେ ବିଚାରାଳୟର ଅନୁମତି ଆବଶ୍ୟକ ହୁଏ ।

ଅଧିହାରରେ ପରିଶୋଧ ଅଗ୍ରାଧିକାର ଅଂଶର ପୁଞ୍ଜି ପ୍ରତ୍ୟର୍ପଣ କରିବା ସମୟରେ ଯେଉଁ ଅଧିହାର ପରିମାଣ ସଞ୍ଚିତ ହିସାବ ଅଥବା ଅଂଶ ଅଧିମୂଲ୍ୟ ହିସାବରୁ ସଙ୍କୁଳାନ କରାଯାଏ, ସେହି ପରିମାଣକୁ ମୂଳଧନ ପରିଶୋଧ ସଞ୍ଚିତ ହିସାବକୁ ସ୍ଥାନାନ୍ତରିତ କରିବା ଆବଶ୍ୟକ ହୁଏ ନାହିଁ ।

ଅଗ୍ରାଧିକାର ଅଂଶ ମୂଳଧନକୁ ନିଟ୍ ଲାଭ ଓ କ୍ଷତି ହିସାବ ଅଥବା ଅଂଶ ଅଧିମୂଲ୍ୟ ହିସାବର ଦାତା ବାକିରୁ ପରିଶୋଧ କରିବା ନିମନ୍ତେ ନିମ୍ନଲିଖିତ ଜାବଦା ପ୍ରସ୍ତୁତ କରିବା ଆବଶ୍ୟକ ।

(କ) ନିଟ୍ ଲାଭ ଓ କ୍ଷତି ହିସାବ / ଅଂଶ ଅଧିମୂଲ୍ୟ ହିସାବ ଦାୟୀ<br>
ମୂଳଧନ ପରିଶୋଧ ସଞ୍ଚିତ ହିସାବ ବାବଦ } ଅଗ୍ରାଧିକାର ଅଂଶର ଲିଖିତ ପରିମାଣ ସକାଶେ

(ଖ) ଅଗ୍ରାଧିକାର ଅଂଶ ମୂଳଧନ ହିସାବ ଦାୟୀ<br>
ଅଗ୍ରାଧିକାର ଅଂଶଧାରୀମାନଙ୍କ ହିଃ ବାବଦ } ,,

(ଗ) ଅଗ୍ରାଧିକାର ଅଂଶଧାରୀମାନଙ୍କ ହିଃ ଦାୟୀ<br>
ନଗଦ ତହବିଲ / ବ୍ୟାଙ୍କ୍ ହିସାବ ବାବଦ

ନୂତନ ସାଧାରଣ ଅଂଶ ପ୍ରଚଳନ କରିବାଦ୍ୱାରା ପରିଶୋଧ ଅଗ୍ରାଧିକାର ଅଂଶ ମୂଳଧନ ପ୍ରତ୍ୟର୍ପଣ କରିବା ନିମନ୍ତେ ନିମ୍ନଲିଖିତ ଜାବଦା ପ୍ରସ୍ତୁତ କରାଯାଏ ।

(କ) ନଗଦ ତହବିଲ / ବ୍ୟାଙ୍କ୍ ହିସାବ ଦାୟୀ<br>
ସାଧାରଣ ଅଂଶ ମୂଳଧନ ହିସାବ ବାବଦ

(ଖ) ଅଗ୍ରାଧିକାର ଅଂଶ ମୂଳଧନ ହି: ଦାୟୀ
ଅଗ୍ରାଧିକାର ଅଂଶଧାରୀମାନଙ୍କର ହି: ବାବଦ

(ଗ) ଅଗ୍ରାଧିକାର ଅଂଶଧାରୀମାନଙ୍କର ହିସାବ ଦାୟୀ
ନଗଦ ତହବିଲ / ବ୍ୟାଙ୍କ୍ ହିସାବ ବାବଦ

### ଦୃଷ୍ଟାନ୍ତ (୨୩)

କ କମ୍ପାନୀ ଲିମିଟେଡ୍‌ଙ୍କର ମୂଳଧନର କେତେକାଂଶ ପ୍ରତି ଅଂଶ ଟ ୧୦୦ ହାରରେ ୫୦୦ ୬% ପରିଶୋଧ ଅଗ୍ରାଧିକାର ଅଂଶ ପଞ୍ଚ ବର୍ଷପୂର୍ବରୁ ମିଳିଥିଲା । କମ୍ପାନୀ ଏହାର ସଞ୍ଚିତ ହିସାବର ବାକି ଟ ୧,୦୦,୦୦୦ରୁ ପରିଶୋଧ କରିବା ପାଇଁ ନିଷ୍ପତ୍ତି ଗ୍ରହଣ କରିଥିଲେ ।

ଆବଶ୍ୟକ ଜାବ୍‌ଦା ପ୍ରସ୍ତୁତ କର ।

## ସମାଧାନ

| ଜାବ୍‌ଦା | | ଦାୟୀ | ଦାତା |
|---|---|---|---|
| | | ଟଙ୍କା | ଟଙ୍କା |
| ସଞ୍ଚିତ ହିସାବ | ଦାୟୀ | ୫୦,୦୦୦ | |
| ମୂଳଧନ ପରିଶୋଧ ସଞ୍ଚିତ ହି: ବାବଦ | | | ୫୦,୦୦୦ |
| (ପରିଶୋଧ ଅଗ୍ରାଧିକାର ଅଂଶର ପରିଶୋଧ ନିମନ୍ତେ ଆବଶ୍ୟକ ଅର୍ଥ ବଣ୍ଟନଯୋଗ୍ୟ ଲାଭରୁ ସ୍ୱତନ୍ତ୍ର କରାଗଲା । ) | | | |
| ପରିଶୋଧ ଅଗ୍ରାଧିକାର ଅଂଶ ମୂଳଧନ ହିସାବ | ଦାୟୀ | ୫୦,୦୦୦ | |
| ପରିଶୋଧ ଅଗ୍ରାଧିକାର ଅଂଶଧାରୀମାନଙ୍କର ହିସାବ ବାବଦ | | | ୫୦,୦୦୦ |
| ( ଅଗ୍ରାଧିକାର ଅଂଶ ମୂଳଧନର ପରିଶୋଧ ପୂର୍ବରୁ ସ୍ଥାନାନ୍ତରଣ ଜାବ୍‌ଦା କରାଗଲା । ) | | | |
| ପରିଶୋଧ ଅଗ୍ରାଧିକାର ଅଂଶଧାରୀମାନଙ୍କର ହିସାବ | ଦାୟୀ | ୫୦,୦୦୦ | |
| ବ୍ୟାଙ୍କ ହିସାବ ବାବଦ | | | ୫୦,୦୦୦ |
| ( ପରିଶୋଧ ଅଗ୍ରାଧିକାର ଅଂଶଧାରୀମାନଙ୍କୁ ସେମାନଙ୍କର ଅଂଶ ବାବଦ ଅର୍ଥ ପ୍ରତ୍ୟର୍ପଣ କରାଗଲା । ) | | | |

## ଦୃଷ୍ଟାନ୍ତ (୨୪)

ଶ୍ରୀରାମ କଟନ୍ ମିଲସ୍ ଲିମିଟେଡ୍‌ଙ୍କର କେତେକାଂଶର ମୂଳଧନ ଅଂଶ ପ୍ରତି ଟ ୧୦୦ ହାରରେ ୬୦୦ ୬% ପରିଶୋଧ ଅଗ୍ରାଧିକାର ଅଂଶପତ୍ରର [ବିକ୍ରୟରୁ ଲାଭ କରିଥିଲେ । ଏହି ଅଂଶଗୁଡ଼ିକର ମୂଲ୍ୟ ବାବଦ ଅର୍ଥ ପରିଶୋଧ କରିବାର ପୂର୍ବନିର୍ଦ୍ଧାରିତ ସମୟ ଉପସ୍ଥିତ ହେବାରୁ କମ୍ପାନୀ ଅଂଶ ପ୍ରତି ଟ ୧୦ ହାରରେ ଆବଶ୍ୟକ ସଂଖ୍ୟକ ସାଧାରଣ ଅଂଶ ପ୍ରଚଳନ କରି ଏହି ଅଗ୍ରାଧିକାର ଅଂଶ ପରିଶୋଧ କରିବା ପାଇଁ ନିଷ୍ପତ୍ତି ଗ୍ରହଣ କଲେ । ଆବଶ୍ୟକ ଜାବ୍‌ଦା ଲେଖ ।

## ସମାଧାନ

ଜାବ୍‌ଦା

| | | ଦାୟୀ | ଦାତା |
|---|---|---|---|
| | | ଟଙ୍କା | ଟଙ୍କା |
| ବ୍ୟାଙ୍କ୍ ହିସାବ | ଦାୟୀ | ୬୦,୦୦୦ | |
| ସାଧାରଣ ଅଂଶ ମୂଳଧନ ହିସାବ ବାବଦ (ନିର୍ଦ୍ଦେଶକମଣ୍ଡଳୀଙ୍କର ... ତାରିଖର ପ୍ରସ୍ତାବ ଅନୁଯାୟୀ ଅଂଶ ପ୍ରତି ଟ ୧୦ ହାରରେ ପୂର୍ଣ୍ଣ ଆଦାୟୀକୃତ ୬,୦୦୦ ସାଧାରଣ ଅଂଶ ପ୍ରଚଳିତ ହେଲା ।) | | | ୬୦,୦୦୦ |
| ପରିଶୋଧ ଅଗ୍ରାଧିକାର ଅଂଶ ମୂଳଧନ ହିଃ | ଦାୟୀ | ୬୦,୦୦୦ | |
| ପରିଶୋଧ ଅଗ୍ରାଧିକାର ଅଂଶଧାରୀମାନଙ୍କର ହିଃ ବାବଦ (ପରିଶୋଧ ଅଗ୍ରାଧିକାର ଅଂଶ ମୂଳଧନର ପରିଶୋଧ ପୂର୍ବରୁ ଆବଶ୍ୟକ ସ୍ଥାନାନ୍ତରଣ ଜାବ୍‌ଦା ଲେଖାଗଲା ।) | | | ୬୦,୦୦୦ |
| ପରିଶୋଧ ଅଗ୍ରାଧିକାର ଅଂଶଧାରୀମାନଙ୍କର ହିଃ | ଦାୟୀ | ୬୦,୦୦୦ | |
| ବ୍ୟାଙ୍କ୍ ହିସାବ ବାବଦ (ପରିଶୋଧ ଅଗ୍ରାଧିକାର ଅଂଶଧାରୀମାନଙ୍କୁ ସେମାନଙ୍କର ଅଂଶର ମୂଲ୍ୟ ବାବଦ ଅର୍ଥ ପ୍ରତ୍ୟର୍ପଣ କରାଗଲା ।) | | | ୬୦,୦୦୦ |

## ଦୃଷ୍ଟାନ୍ତ (୨୫)

ରାୟଗଡ଼ା ପେପର ମିଲସ୍ ଲିମିଟେଡ୍‌ଙ୍କର ମୂଳଧନର କେତେକାଂଶ ଅଂଶ ପ୍ରତି ଟ ୧୦୦ ହାରରେ ୫୦୦ ୬% ପରିଶୋଧ ଅଗ୍ରାଧିକାର ଅଂଶପତ୍ର ବିକ୍ରୟରୁ ମିଳିଥିଲା ।

ଏହି ଅଗ୍ରାଧିକାର ଅଂଶଗୁଡ଼ିକର ପରିଶୋଧ କରିବାର ସମୟ ଉପସ୍ଥିତ ହେବା ସମୟରେ ଏହା ଦେଖାଯାଇଥିଲା ଯେ କମ୍ପାନୀର ସଞ୍ଚିତ ପାଣ୍ଠିରେ ଟ ୫୦,୦୦୦ ରହିଛି । କମ୍ପାନୀର ନିର୍ଦ୍ଦେଶକମଣ୍ଡଳୀ ଏହି ପାଣ୍ଠିରୁ ଟ ୩୦,୦୦୦ ଏଥି ନିମନ୍ତେ ଉପଯୋଗ କରିବା ପାଇଁ ନିଷ୍ପତ୍ତି ଗ୍ରହଣ କରିଥିଲେ । ଅବଶିଷ୍ଟ ଟ ୨୦,୦୦୦ ଅଂଶ ପ୍ରତି ଟ ୧୦ ହାରରେ ୨,୦୦୦ ସାଧାରଣ ଅଂଶ ପ୍ରଚଳନ କରି ସଂଗ୍ରହ କରିବାକୁ ସ୍ଥିରୀକୃତ ହୋଇଥିଲା ।

ଏହି ନେଣଦେଣଗୁଡ଼ିକ ସକାଶେ ଜାବଦା ପ୍ରସ୍ତୁତ କର ।

## ସମାଧାନ

| | ଦାୟୀ | ଦାତା |
|---|---|---|
| | ଟଙ୍କା | ଟଙ୍କା |
| ବ୍ୟାଙ୍କ ହିସାବ ... ଦାୟୀ | ୨୦,୦୦୦ | |
| ସାଧାରଣ ଅଂଶ ମୂଳଧନ ହିସାବ ବାବଦ | | ୨୦,୦୦୦ |
| (ନିର୍ଦ୍ଦେଶକମଣ୍ଡଳୀଙ୍କର ··ତାରିଖର ପ୍ରସ୍ତାବ ଅନୁଯାୟୀ ଅଂଶ ପ୍ରତି ଟ ୧୦ ହାରରେ ପୂର୍ଣ୍ଣ ଆଦାୟୀକୃତ ୨,୦୦୦ ସାଧାରଣ ଅଂଶର ମୂଲ୍ୟ ବାବଦ ଅର୍ଥ ମିଳିଲା ।) | | |
| ପରିଶୋଧ ୬% ଅଗ୍ରାଧିକାର ଅଂଶ ମୂଳଧନ ହି: ... ଦାୟୀ | ୫୦,୦୦୦ | |
| ପରିଶୋଧ ୬% ଅଗ୍ରାଧିକାର ଅଂଶଧାରୀମାନଙ୍କର ହି: ବାବଦ | | ୫୦,୦୦୦ |
| (ଅଗ୍ରାଧିକାର ଅଂଶ ପରିଶୋଧ କରିବା ପୂର୍ବରୁ ସ୍ଥାନାନ୍ତରଣ ପ୍ରବିଷ୍ଟି କରାଗଲା ।) | | |
| ସଞ୍ଚିତ ପାଣ୍ଠି ହିସାବ ... ଦାୟୀ | ୩୦,୦୦୦ | |
| ମୂଳଧନ ପରିଶୋଧ ସଞ୍ଚିତ ହିସାବ ବାବଦ | | ୩୦,୦୦୦ |
| (ନିର୍ଦ୍ଦେଶକମଣ୍ଡଳୀଙ୍କର···ତାରିଖର ପ୍ରସ୍ତାବ ଅନୁଯାୟୀ ଟ ୩୦,୦୦୦ ପ୍ରଥମୋକ୍ତ ହିସାବରୁ ଦ୍ୱିତୀୟ ହିସାବକୁ ସ୍ଥାନାନ୍ତରିତ ହେଲା ।) | | |
| ପରିଶୋଧ ୬% ଅଗ୍ରାଧିକାର ଅଂଶଧାରୀମାନଙ୍କର ହିସାବ ... ଦାୟୀ | ୫୦,୦୦୦ | |
| ବ୍ୟାଙ୍କ ହିସାବ ବାବଦ | | ୫୦,୦୦୦ |
| (ଅଗ୍ରାଧିକାର ଅଂଶଧାରୀମାନଙ୍କୁ ସେମାନଙ୍କର ଅଂଶର ମୂଲ୍ୟ ବାବଦ ଅର୍ଥ ପ୍ରତ୍ୟର୍ପଣ କରାଗଲା ।) | | |

## ଦୃଷ୍ଟାନ୍ତ (୭)

ନିମ୍ନରେ କୋଣାର୍କ ଇଲେକ୍ଟ୍ରନିକ୍ସ ଲିମିଟେଡ଼ଙ୍କର ୩୧-୧୨-୧୯୭୫ ତାରିଖର ଉଦ୍ବୃତ୍ତ ପତ୍ର ପ୍ରଦତ୍ତ ହେଲା :

| ଦାୟ ଓ ମୂଳଧନ | ଟଙ୍କା | ପରିସମ୍ପତ୍ତି | ଟଙ୍କା |
|---|---|---|---|
| ଅଂଶ ମୂଳଧନ : | | ବିବିଧ ପରିସମ୍ପତ୍ତି | ୧,୩୦,୦୦୦ |
| ଅଂଶ ପ୍ରତି ଟ ୧୦ ହାରରେ ୧୦,୦୦୦ ପୂର୍ଣ୍ଣ ଆଦାୟୀକୃତ ସାଧାରଣ ଅଂଶ | ୧,୦୦,୦୦୦ | ବ୍ୟାଙ୍କରେ ଗଚ୍ଛିତ ତହବିଲ | ୧,୨୦,୦୦୦ |
| ଅଂଶ ପ୍ରତି ଟ ୧୦୦ ହାରରେ ୫୦୦ ୭% ପରିଶୋଧ ଅଗ୍ରାଧିକାର ଅଂଶ—ପୂର୍ଣ୍ଣ ଆଦାୟୀକୃତ | ୫୦,୦୦୦ | | |
| ସାଧାରଣ ସଞ୍ଚିତ | ୮୦,୦୦୦ | | |
| ବିବିଧ ମହାଜନ | ୨୦,୦୦୦ | | |
| | ୨,୫୦,୦୦୦ | | ୨,୫୦,୦୦୦ |

ଉକ୍ତ ତାରିଖରେ କମ୍ପାନୀ ୫% ଅଧିହାରରେ ୭% ପରିଶୋଧ ଅଗ୍ରାଧିକାର ଅଂଶର ମୂଲ୍ୟ ପରିଶୋଧ କରିବା ପାଇଁ ସ୍ଥିର କଲେ । ଆବଶ୍ୟକ ଜାବ୍ଦା ଓ ପରିବର୍ତ୍ତିତ ଉଦ୍ବୃତ୍ତ ପତ୍ର ପ୍ରସ୍ତୁତ କର ।

## ସମାଧାନ

| ଜାବ୍ଦା | | ଦାୟୀ | ଦାତା |
|---|---|---|---|
| | | ଟଙ୍କା | ଟଙ୍କା |
| ସାଧାରଣ ସଞ୍ଚିତ ହିସାବ | ଦାୟୀ | ୫୨,୫୦୦ | |
| ଅଗ୍ରାଧିକାର ଅଂଶ ପରିଶୋଧ ଅଧିମୂଲ୍ୟ ହିସାବ ବାବଦ | | | ୨,୫୦୦ |
| ମୂଳଧନ ପରିଶୋଧ ସଞ୍ଚିତ ହିସାବ ବାବଦ | | | ୫୦,୦୦୦ |
| (ନିର୍ଦ୍ଦେଶକମଣ୍ଡଳୀଙ୍କର···ତାରିଖର ପ୍ରସ୍ତାବ ଅନୁଯାୟୀ ପରିଶୋଧ ଅଗ୍ରାଧିକାର ଅଂଶ ମୂଳଧନକୁ ୫% ଅଧିହାରରେ ପରିଶୋଧ କରିବା ନିମନ୍ତେ ଆବଶ୍ୟକ ଅର୍ଥ ସକାଶେ ସାଧାରଣ ସଞ୍ଚିତ ହିସାବକୁ ଦାୟୀ କରାଗଲା ।) | | | |

| ଜାବ୍ଦା | | ଦାୟୀ | ଦାତା |
|---|---|---|---|
| | | ଟଙ୍କା | ଟଙ୍କା |
| ପରିଶୋଧ ଅଗ୍ରାଧିକାର ଅଂଶ ମୂଳଧନ ହିସାବ | ଦାୟୀ | ୫୦,୦୦୦ | |
| ଅଗ୍ରାଧିକାର ଅଂଶ ପରିଶୋଧ ଅଧିମୂଲ୍ୟ ହିସାବ | ଦାୟୀ | ୨,୫୦୦ | |
| ପରିଶୋଧ ଅଗ୍ରାଧିକାର ଅଂଶଧାରୀମାନଙ୍କର ହିସାବ ବାବଦ | | | ୫୨,୫୦୦ |
| (ଅଗ୍ରାଧିକାର ଅଂଶ ମୂଳଧନର ପରିଶୋଧ ପୂର୍ବରୁ ସ୍ଥାନାନ୍ତରଣ ପ୍ରବିଷ୍ଟି କରାଗଲା ।) | | | |
| ପରିଶୋଧ ଅଗ୍ରାଧିକାର ଅଂଶଧାରୀମାନଙ୍କର ହିସାବ | ଦାୟୀ | ୫୨,୫୦୦ | |
| ବ୍ୟାଙ୍କ ହିସାବ ବାବଦ | | | ୫୨,୫୦୦ |
| (ଅଗ୍ରାଧିକାର ଅଂଶଧାରୀମାନଙ୍କୁ ସେମାନଙ୍କର ଅଂଶ ମୂଲ୍ୟ ଓ ୫% ହାରରେ ଅଧିମୂଲ୍ୟ ବାବଦ ଅର୍ଥ ପ୍ରତ୍ୟର୍ପଣ କରାଗଲା ।) | | | |

କୋଣାର୍କ ଇଲେକ୍ଟ୍ରୋନିକ୍ସ ଲିମିଟେଡ୍

୧୯୭୫ ମସିହା ଡିସେମ୍ବର ୩୧ ତାରିଖର ଉଦ୍ବୃତ୍ତ ପତ୍ର

| ଦାୟିତ୍ୱ ଓ ମୂଳଧନ | ଟଙ୍କା | ପରିସମ୍ପତ୍ତି | ଟଙ୍କା |
|---|---|---|---|
| ଅଂଶ ମୂଳଧନ : | | ସ୍ଥିର ପରିସମ୍ପତ୍ତି | ୧,୩୦,୦୦୦ |
| ଅଂଶ ପ୍ରତି ଟ ୧୦ ହାରରେ ୧୦,୦୦୦ | | ବ୍ୟାଙ୍କରେ ଗଚ୍ଛିତ ତହବିଲ | ୬୭,୫୦୦ |
| ପୂର୍ଣ୍ଣ ଆଦାୟୀକୃତ ସାଧାରଣ ଅଂଶ | ୧,୦୦,୦୦୦ | | |
| ମୂଳଧନ ପରିଶୋଧ ସଞ୍ଚିତ ହିସାବ | ୫୦,୦୦୦ | | |
| ସାଧାରଣ ସଞ୍ଚିତ | ୨୭,୫୦୦ | | |
| ବିବିଧ ମହାଜନ | ୨୦,୦୦୦ | | |
| | ୧,୯୭,୫୦୦ | | ୧,୯୭,୫୦୦ |

ଦୃଷ୍ଟାନ୍ତ (୨୭)

କଳିଙ୍ଗ ରୋଲିଂ ମିଲସ୍ ଲିମିଟେଡ୍‌ର ୧୯୭୫ ମସିହା ଡିସେମ୍ବର ୩୧ ତାରିଖର ଉଦ୍ବୃତ୍ତ ପତ୍ର ନିମ୍ନରେ ପ୍ରଦତ୍ତ ହେଲା ।

ଉଦ୍‌ବୃତ୍ତ ପତ୍ର

| ମୂଳଧନ ଓ ଦେଣା | ଟଙ୍କା | ପରିସମ୍ପତ୍ତି | ଟଙ୍କା |
|---|---|---|---|
| ପ୍ରାଧିକୃତ ମୂଳଧନ : | | ବିବିଧ ପରିସମ୍ପତ୍ତି | ୧,୯୦,୦୦୦ |
| ଅଂଶ ପ୍ରତି ଟ ୧୦୦ ହାରରେ | | ବ୍ୟାଙ୍କରେ ଗଚ୍ଛିତ | |
| ଅଗ୍ରାଧିକାର ଅଂଶ | | ତହବିଲ | ୧୦,୦୦୦ |
| ଅଂଶ ପ୍ରତି ଟ ୧୦ ହାରରେ | | | |
| ସାଧାରଣ ଅଂଶ | | | |
| ପ୍ରଚଳିତ ଓ ବଣ୍ଟିତ ମୂଳଧନ : | | | |
| ଅଂଶ ପ୍ରତି ଟ ୧୦୦ ହାରରେ | | | |
| ପୂର୍ଣ୍ଣ ଆଦାୟୀକୃତ ୫୦୦ | | | |
| ୬% ପରିଶୋଧ ଅଗ୍ରାଧିକାର | | | |
| ଅଂଶ | ୫୦,୦୦୦ | | |
| ଅଂଶ ପ୍ରତି ଟ ୧୦ ହାରରେ | | | |
| ପୂର୍ଣ୍ଣ ଆଦାୟୀକୃତ ୧୦,୦୦୦ | | | |
| ସାଧାରଣ ଅଂଶ | ୧,୦୦,୦୦୦ | | |
| ଅଂଶ ଅଧିମୂଲ୍ୟ | ୨୦,୦୦୦ | | |
| ଲଭ ଓ କ୍ଷତି ହିସାବ | ୨୦,୦୦୦ | | |
| ବିବିଧ ମହାଜନ | ୧୦,୦୦୦ | | |
| | ୨,୦୦,୦୦୦ | | ୨,୦୦,୦୦୦ |

ପରିଶୋଧ ୬% ଅଗ୍ରାଧିକାର ଅଂଶ ୧-୧-୧୯୭୬ ରେ ପରିଶୋଧ୍ୟ । ଏହି ଅଗ୍ରାଧିକାର ଅଂଶ ୫% ଅଧିହାରରେ ପରିଶୋଧ କରାଯିବ । ଯେହେତୁ ଲଭ ଓ କ୍ଷତି ହିସାବର ବାକି ଅଗ୍ରାଧିକାର ଅଂଶର ପ୍ରତ୍ୟର୍ପଣ ସକାଶେ ଯଥେଷ୍ଟ ନୁହେ, ତେଣୁ କମ୍ପାନୀ ଅଂଶ ପ୍ରତି ଟ ୧୦୦ ହାରରେ ୬% ୫୦୦ ଅଗ୍ରାଧିକାର ଅଂଶ ପ୍ରଚଳନ କରିବାକୁ ସ୍ଥିର କରିଥିଲେ । ଏହି ଅଂଶର ମୂଲ୍ୟ ବାବଦ ଅର୍ଥ ଆବେଦନ ସମୟରେ ଟ ୨୫, ଆବଣ୍ଟିତ ହେଲେ ଟ ୫୦ ଓ ଅବଶିଷ୍ଟ ଅର୍ଥ ଆହ୍ୱାନ ସମୟରେ ଦେୟ ଥିଲା । ଏହି ଅଥ ଯଥା ସମୟରେ ସଂଗୃହୀତ ହୋଇଥିଲା ଏବଂ ୬% ଅଗ୍ରାଧିକାର ଅଂଶର ମୂଲ୍ୟ ପ୍ରତ୍ୟର୍ପିତ ହୋଇଥିଲା । ମାତ୍ର ୨୫ଟି ଅଗ୍ରାଧିକାର ଅଂଶର ଅଂଶଧାରୀ ନିର୍ଦ୍ଧିଷ୍ଟ ସମୟ ମଧ୍ୟରେ ତାଙ୍କର ଅର୍ଥ ଦାବୀ କରି ନ ଥିଲେ । ସୁତରାଂ ତାଙ୍କୁ ଦେୟ ଅର୍ଥ ଦିଆଯାଇ ପାରି ନ ଥିଲା ।

ତତ୍ପରେ କମ୍ପାନୀ ପ୍ରତ୍ୟେକ ୫ଗୋଟି ସାଧାରଣ ଅଂଶର ଅଂଶଧାରୀମାନଙ୍କୁ ୧ ଗୋଟି ବୋନସ ଅଂଶ ପ୍ରଦାନ କରିବାକୁ ସ୍ଥିର କରିଥିଲେ ।

ନଗଦ ତହବିଲ ସମେତ ପ୍ରତି ନେଣ ଦେଣ ସକାଶେ ଜାବ୍‌ଦା ପ୍ରସ୍ତୁତ କର ଓ ସଂକ୍ଷିପ୍ତ ଆକାରରେ ପରିବର୍ତ୍ତିତ ଉଦ୍‌ବୃତ୍ତ ପତ୍ର ଦର୍ଶାଅ ।

## ସମାଧାନ

| | ଜାବ୍ଦା | ଦାୟୀ | ଦାତା |
|---|---|---|---|
| | | ଟଙ୍କା | ଟଙ୍କା |
| ୧୯୭୭ ଜାନୁ-୧ | ବ୍ୟାଙ୍କ୍ ହିସାବ ଦାୟୀ<br>୭% ଅଗ୍ରାଧିକାର ଅଂଶ ଆବେଦନ ହି : ବାବଦ<br>(୫୦୦ ୭% ଅଗ୍ରାଧିକାର ଅଂଶର ପ୍ରତି ଅଂଶ ଟ ୨୫ ହାରରେ ଆବେଦନ ଅର୍ଥ ମିଳିଲା । ) | ୧୨,୫୦୦ | ୧୨,୫୦୦ |
| ୧ | ୭% ଅଗ୍ରାଧିକାର ଅଂଶ ଆବେଦନ ହିସାବ ଦାୟୀ<br>୭% ଅଗ୍ରାଧିକାର ଅଂଶ ମୂଳଧନ ହି: ବାବଦ<br>( ନିର୍ଦ୍ଦେଶକମଣ୍ଡଳୀଙ୍କର ... ତାରିଖର... ନମ୍ବର ପ୍ରସ୍ତାବ ଅନୁଯାୟୀ ଅଗ୍ରାଧିକାର ଅଂଶର ଆବେଦନ ଅର୍ଥ ଅଗ୍ରାଧିକାର ଅଂଶ ମୂଳଧନ ହିସାବକୁ ସ୍ଥାନାନ୍ତରିତ ହେଲା ।) | ୧୨,୫୦୦ | ୧୨,୫୦୦ |
| ୧ | ୭% ଅଗ୍ରାଧିକାର ଅଂଶ ଆବଣ୍ଟନ ହିସାବ ଦାୟୀ<br>୭% ଅଗ୍ରାଧିକାର ଅଂଶ ମୂଳଧନ ହି : ବାବଦ<br>( ନିର୍ଦ୍ଦେଶକମଣ୍ଡଳୀଙ୍କର ... ତାରିଖର ... ନମ୍ବର ପ୍ରସ୍ତାବ ଅନୁଯାୟୀ ୭% ଅଗ୍ରାଧିକାର ଅଂଶଧାରୀମାନଙ୍କଠାରୁ ଅଂଶ ପ୍ରତି ଟ ୫୦ ହାରରେ ଆବଣ୍ଟନ ଅର୍ଥ ପ୍ରାପ୍ୟ ହେଲା । ) | ୨୫,୦୦୦ | ୨୫,୦୦୦ |
| ୧ | ବ୍ୟାଙ୍କ୍ ହିସାବ ଦାୟୀ<br>୭% ଅଗ୍ରାଧିକାର ଅଂଶ ଆବଣ୍ଟନ ହି : ବାବଦ<br>(ଅଗ୍ରାଧିକାର ଅଂଶ ପ୍ରତି ଟ ୫୦ ହାରରେ ୫୦୦ ଅଗ୍ରାଧିକାର ଅଂଶ ବାବଦ ଆବଣ୍ଟନ ଅର୍ଥ ମିଳିଲା ।) | ୨୫,୦୦୦ | ୨୫,୦୦୦ |
| ୧ | ୭% ଅଗ୍ରାଧିକାର ଅଂଶ ଆହ୍ୱାନ ହିସାବ ଦାୟୀ<br>୭% ଅଗ୍ରାଧିକାର ଅଂଶ ମୂଳଧନ ହି : ବାବଦ<br>( ନିର୍ଦ୍ଦେଶକମଣ୍ଡଳୀଙ୍କର ... ତାରିଖର ନମ୍ବର ପ୍ରସ୍ତାବ ଅନୁଯାୟୀ ଅଗ୍ରାଧିକାର ଅଂଶ ପ୍ରତି ଟ ୨୫ ହାରରେ ୫୦୦ ଅଗ୍ରାଧିକାର ଅଂଶର ଆହ୍ୱାନ ଅର୍ଥ ପ୍ରାପ୍ୟ ହେଲା ।) | ୧୨,୫୦୦ | ୧୨,୫୦୦ |

| | ଜାବ୍‌ଦା | ଦାୟୀ | ଦାତା |
|---|---|---|---|
| | | ଟଙ୍କା | ଟଙ୍କା |
| ୧୯୭୭ ଜାନୁ-୧ | ବ୍ୟାଙ୍କ୍ ହିସାବ ଦାୟୀ | ୧୨,୫୦୦ | |
| | ୭% ଅଗ୍ରାଧିକାର ଅଂଶ ଆହ୍ୱାନ ହି : ବାବଦ | | ୧୨,୫୦୦ |
| | (ଅଗ୍ରାଧିକାର ଅଂଶ ପ୍ରତି ଟ ୨୫ ହାରରେ ୫୦୦ ଅଗ୍ରାଧିକାର ଅଂଶର ଆହ୍ୱାନ ବାବଦ ଅର୍ଥ ମିଳିଲା ।) | | |

| | | ଦାୟୀ | ଦାତା |
|---|---|---|---|
| | | ଟଙ୍କା | ଟଙ୍କା |
| ୧୯୭୭ ଜାନୁ-୧ | ଅଂଶ ଅଧିମୂଲ୍ୟ ହିସାବ ଦାୟୀ | ୨,୫୦୦ | |
| | ୭% ଅଗ୍ରାଧିକାର ଅଂଶ ପରିଶୋଧ ଅଧିମୂଲ୍ୟ ହିସାବ ବାବଦ | | ୨,୫୦୦ |
| | ( ୫୦୦ ୭% ଅଗ୍ରାଧିକାର ଅଂଶର ୫% ଅଧିମୂଲ୍ୟ ବାବଦ ଅର୍ଥ ପ୍ରଥମୋକ୍ତ ହିସାବରୁ ବ୍ୟବସ୍ଥା କରାଗଲା ।) | | |
| ୧ | ୭% ଅଗ୍ରାଧିକାର ଅଂଶ ମୂଳଧନ ହିସାବ ଦାୟୀ | ୫୦,୦୦୦ | |
| | ୭% ଅଗ୍ରାଧିକାର ଅଂଶ ପରିଶୋଧ ଅଧିମୂଲ୍ୟ ହିସାବ ଦାୟୀ | ୨,୫୦୦ | |
| | ୭% ଅଗ୍ରାଧିକାର ଅଂଶଧାରୀମାନଙ୍କର ହିସାବ ବାବଦ | | ୫୨,୫୦୦ |
| | (ପରିଶୋଧ ପୂର୍ବ ସ୍ଥାନାନ୍ତରଣ ପ୍ରବେଷ୍ଟି ସକାଶେ) | | |
| ୧ | ୭% ଅଗ୍ରାଧିକାର ଅଂଶଧାରୀମାନଙ୍କର ହିସାବ ଦାୟୀ | ୪୯,୮୭୫ | |
| | ବ୍ୟାଙ୍କ୍ ହିସାବ ବାବଦ | | ୪୯,୮୭୫ |
| | (୪୭୫ ଅଗ୍ରାଧିକାର ଅଂଶଧାରୀମାନଙ୍କୁ ୫% ଅଧିମୂଲ୍ୟ ସମେତ ଅଂଶମୂଲ୍ୟ ପ୍ରତ୍ୟର୍ପଣ କରାଗଲା ।) | | |
| ୧ | ଲାଭ ଓ କ୍ଷତି ବଣ୍ଟନ ହିସାବ ଦାୟୀ | ୧୦,୦୦୦ | |
| | ଅଂଶଧାରୀମାନଙ୍କ ବୋନସ ହିସାବ ବାବଦ | | ୧୦,୦୦୦ |
| | (ସାଧାରଣ ସଭାରେ ଗୃହୀତ ତାରିଖର... ନମ୍ବର ପ୍ରସ୍ତାବ ଅନୁଯାୟୀ ସାଧାରଣ ଅଂଶଧାରୀମାନଙ୍କୁ ବୋନସ ପରିମାଣ ଅନୁମୋଦିତ ହେଲା ।) | | |

| | | | ଦାୟୀ | ଦାତା |
|---|---|---|---|---|
| ଜାନୁ-୧ | ଅଂଶଧାରୀମାନଙ୍କ ବୋନସ ହିସାବ ସାଧାରଣ ଅଂଶ ମୂଳଧନ ହିସାବ ବାବଦ (ଅଂଶ ପ୍ରତି ଟ ୧୦ ହାରରେ କମ୍ପାନୀର ଉପସ୍ଥିତ ଅଂଶଧାରୀମାନଙ୍କୁ ୫:୧ ଅନୁପାତରେ ୨,୦୦୦ ବୋନସ ଅଂଶ ବଣ୍ଟିତ ହେଲା ।) | ଦାୟୀ | ୨୦,୦୦୦ | ୨୦,୦୦୦ |

କଳିଙ୍ଗ ରୋଲିଂ ମିଲସ୍ ଲିମିଟେଡ୍

୧୯୭୭ ମସିହା ଜାନୁୟାରୀ ୧ ତାରିଖର

ଉଦ୍‌ବୃତ୍ତ ପତ୍ର

| ଦାୟ | ଟଙ୍କା | ଟଙ୍କା | ପରିସମ୍ପତ୍ତି | ଟଙ୍କା | ଟଙ୍କା |
|---|---|---|---|---|---|
| ଅଂଶ ମୂଳଧନ : | | | ବିବିଧ ପରିସମ୍ପତ୍ତି | | ୧,୯୦,୦୦୦ |
| ପ୍ରାଧିକୃତ : | | | ବ୍ୟାଙ୍କରେ ଗଚ୍ଛିତ | | ୧୦,୧୨୫ |
| ଅଂଶ ପ୍ରତି ଟ ୧୦୦ ହାରରେ…ଅଗ୍ରାଧିକାର ଅଂଶ……… | | | | | |
| ଅଂଶ ପ୍ରତି ଟ ୧୦ ହାରରେ…ସାଧାରଣ ଅଂଶ… … | | | | | |
| ପ୍ରଚଳିତ ଓ ବଣ୍ଟିତ : | | | | | |
| ଅଂଶ ପ୍ରତି ଟ ୧୦୦ ହାରରେ ୫୦୦ ୭% ଅଗ୍ରାଧିକାର ଅଂଶ | ୫୦,୦୦୦ | | | | |
| ଅଂଶ ପ୍ରତି ଟ ୧୦ ହାରରେ ୧୨,୦୦୦ ସାଧାରଣ ଅଂଶ | ୧,୨୦,୦୦୦ | ୧,୭୦,୦୦୦ | | | |
| ଉପରୋକ୍ତ ସାଧାରଣ ଅଂଶ ମଧ୍ୟରୁ ଲଭ ଓ କ୍ଷତି ବଣ୍ଟନ ହିସାବରୁ | | | | | |

| | | | | |
|---|---|---|---|---|
| ୧,୦୦୦ ବୋନସ | | | | |
| ଅଂଶ ପ୍ରଚଳିତ | | | | |
| କରାଯାଇଛି । | | | | |
| ସଞ୍ଚିତ ଓ ବଳକା : | | | | |
| ଅଂଶ ଅଧିମୂଲ୍ୟ ହିସାବ | | | | |
| ପୂର୍ବ ବାକି | | ୧୦,୦୦୦ | | |
| ବାଦ୍ : ୬% ଅଗ୍ରାଧିକାର ଅଂଶ | | | | |
| ଉପରେ ୫% ଅଧିମୂଲ୍ୟ | | | | |
| ପ୍ରଦାନ ସକାଶେ | | | | |
| ବ୍ୟବହୃତ | ୧,୫୦୦ | ୨୬,୫୦୦ | | |
| ଲାଭ ଓ କ୍ଷତି ହିସାବ | | | | |
| ପୂର୍ବ ବାକି | ୧୦,୦୦୦ | | | |
| ବାଦ୍ : ବୋନସ ଅଂଶ | | | | |
| ପ୍ରଚଳନ ପାଇଁ | | | | |
| ବ୍ୟବହୃତ | ୧୦,୦୦୦ | | | |
| ଚଳନ୍ତି ଦାୟ ଓ ସଞ୍ଚିତ : | | | | |
| ବିବିଧ ମହାଜନ | ୨୦,୦୦୦ | | | |
| ୬% ଅଗ୍ରାଧିକାର | | | | |
| ଅଂଶଧାରୀ | ୧,୬୧୫ | ୨୧,୬୧୫ | | |
| | | ୧,୦୦,୨୧୫ | | ୧,୦୦,୨୧୫ |

## ଅଗ୍ରାଧିକାର ଅଂଶ ପରିଶୋଧ ନିମନ୍ତେ ପ୍ରତିପୂରକ ପାଣ୍ଠି

ଅଗ୍ରାଧିକାର ଅଂଶର ମୂଲ୍ୟ ପ୍ରତ୍ୟର୍ପଣ କରିବା ନିମନ୍ତେ ନଗଦ ଅର୍ଥର ପ୍ରୟୋଜନୀୟତା ସହଜରେ ଅନୁମେୟ । ଏହି ନଗଦ ଅର୍ଥର ବ୍ୟବସ୍ଥା କରିବା ନିମନ୍ତେ କେତେକ ସମୟରେ ଏକ ପ୍ରତିପୂରକ ପାଣ୍ଠି ଗଢ଼ାଯାଏ । ପ୍ରତି ବର୍ଷର ବଣ୍ଟନଯୋଗ୍ୟ ଲାଭରୁ କେତେକାଂଶ ପୃଥକ୍ କରାଯାଇ ଏହି ପାଣ୍ଠି ଗଢ଼ାଯାଏ ଓ ସମପରିମାଣର ଅର୍ଥକୁ ପ୍ରତିଷ୍ଠାନ ବାହାରେ ସରକାରୀ ଋଣପତ୍ର ଅଥବା ଅନ୍ୟ କୌଣସି ଦ୍ରୁତ ବିକ୍ରୟଯୋଗ୍ୟ କମ୍ପାନୀ ଅଂଶ, ଋଣପତ୍ର ଇତ୍ୟାଦିରେ ବିନିଯୋଗ କରାଯାଏ । ପ୍ରତି ବର୍ଷର ନିର୍ଦ୍ଦିଷ୍ଟ ଲାଭ ପରିମାଣ ଓ ଋଣପତ୍ରର ସୁଧରୁ ପ୍ରାପ୍ତ ଅର୍ଥକୁ କ୍ରମାଗତ ଭାବରେ ବିନିଯୋଗ କରାଯାଏ । ନିର୍ଦ୍ଦିଷ୍ଟ କାଳ ଶେଷରେ ବିନିଯୁକ୍ତ ଅର୍ଥରେ କ୍ରୀତ ଋଣପତ୍ର ପ୍ରଭୃତିକୁ ବିକ୍ରୟ କରି ଯେଉଁ

ନଗଦ ଅର୍ଥ ଲଭ କରାଯାଏ, ତାହାକୁ ଅଗ୍ରାଧିକାର ଅଂଶର ମୂଲ୍ୟ ପ୍ରତ୍ୟର୍ପଣ କରିବା ନିମନ୍ତେ ଉପଯୋଗ କରାଯାଏ ।

ଏ ସମ୍ବନ୍ଧୀୟ ଜାବଦା କିପରି ପ୍ରସ୍ତୁତ କରାଯାଏ ତାହା ଏକ ପୂର୍ବବର୍ତ୍ତୀ ପରିଚ୍ଛେଦରେ ବର୍ଣ୍ଣିତ ହୋଇଛି । ତନ୍ମଧ୍ୟରେ ଋଣପତ୍ର ବାବଦ ଅର୍ଥ ପରିଶୋଧ କରିବା ନିମନ୍ତେ ଏହି ପାଣ୍ଠି କିପରି ଗଢ଼ାଯାଏ ସେ ସମ୍ବନ୍ଧୀୟ ଜାବଦା ଲେଖିବାର ପ୍ରଣାଳୀ ବର୍ଣ୍ଣିତ ହୋଇଛି । ଏ କ୍ଷେତ୍ରରେ ମଧ୍ୟ ଅନୁରୂପ ପ୍ରଣାଳୀ ପ୍ରଯୁଜ୍ୟ । ଏକମାତ୍ର ପାର୍ଥକ୍ୟ ହେଉଛି ଏହା ଯେ ଋଣପତ୍ର ବାବଦ ଅର୍ଥ ପରିଶୋଧ ସମୟରେ ପ୍ରତିପୂରକ ପାଣ୍ଠିର ଟଙ୍କା ସାଧାରଣ ସଞ୍ଚିତ ହିସାବକୁ ସ୍ଥାନାନ୍ତରିତ ହେଉଥିବା ସ୍ଥଳରେ ଅଗ୍ରାଧିକାର ଅଂଶ ମୂଲ୍ୟର ପ୍ରତ୍ୟର୍ପଣ ସମୟରେ ଏହି ଟଙ୍କା କମ୍ପାନୀ ଆଇନ ଅନୁଯାୟୀ ମୂଳଧନ ପରିଶୋଧ ସଞ୍ଚିତ ହିସାବକୁ ସ୍ଥାନାନ୍ତରିତ ହୁଏ । ଏହାର ଏକ ଦୃଷ୍ଟାନ୍ତ ନିମ୍ନରେ ପ୍ରଦତ୍ତ ହେଲା ।

## ଦୃଷ୍ଟାନ୍ତ (୨୮)

ବିଗ୍ରଟ କମ୍ପାନୀ ଲିମିଟେଡ଼ ୧୯୭୪ ମସିହା ଜାନୁୟାରୀ ୧ ତାରିଖରେ ୩ ବର୍ଷ ପରେ ସମହାରରେ ପରିଶୋଧ ପ୍ରତି ଅଂଶ ଟ ୧୦୦ ହାରରେ ୩୦୦ ୬% ପରିଶୋଧ ଅଗ୍ରାଧିକାର ଅଂଶ ପ୍ରଚଳନ କରିଥିଲେ । ନିର୍ଦ୍ଦିଷ୍ଟ ସମୟରେ ଏହି ଅଂଶମୂଲ୍ୟ ପ୍ରତ୍ୟର୍ପଣ କରିବା ଦିଗରେ ସୁନିଶ୍ଚିତ ହେବା କମ୍ପାନୀ ଏକ ପ୍ରତିପୂରକ ପାଣ୍ଠି ଗଢ଼ିବା ପାଇଁ ବ୍ୟବସ୍ଥା କରିଥିଲେ ଏବଂ ଶତକଡ଼ା ୫ ଚକ୍ରବୃଦ୍ଧି ହାରରେ ଯେପରି ନିଟ୍ ସୁଧ ମିଳିବ ସେଥି ନିମନ୍ତେ ଆବଶ୍ୟକ ପରିମାଣ ବିନିଯୋଗ କରିଥିଲେ । ୧୯୭୬ ମସିହା ଡିସେମ୍ବର ୩୧ ତାରିଖରେ ବିନିଯୁକ୍ତ ଅର୍ଥରେ କ୍ରୀତ ଋଣପତ୍ର ପ୍ରଭୃତି ବିନା ଲଭ ଅଥବା କ୍ଷତିରେ ବିକ୍ରିତ ହୋଇଥିଲା ଏବଂ ସେହି ଅର୍ଥରେ ଅଗ୍ରାଧିକାର ଅଂଶର ମୂଲ୍ୟ ପ୍ରତ୍ୟର୍ପିତ ହୋଇଥିଲା ।

ଆବଶ୍ୟକ ଖତିୟାନ ହିସାବଗୁଡ଼ିକ ଦର୍ଶାଅ ।

ପ୍ରତିପୂରକ ପାଣ୍ଠି ଟେବୁଲ ୩ ବର୍ଷ ପର୍ଯ୍ୟନ୍ତ ଶତକଡ଼ା ବାର୍ଷିକ ୫ ହାରରେ ବାର୍ଷିକ କିସ୍ତିର ପରିମାଣ ଟ୧ ପର୍ଯ୍ୟନ୍ତ ଟ ୦.୩୧୭୨୦୮ ଥିଲା ।

## ସମାଧାନ

ବାର୍ଷିକ କିସ୍ତି = ଟ ୦.୩୧୭୨୦୮ × ୩୦,୦୦୦ = ଟ ୯,୫୧୬ (ଆନୁମାନିକ)

## ଖତିୟାନ

### ୭% ପରିଶୋଧ ଅଗ୍ରାଧିକାର ଅଂଶ ମୂଳଧନ ହିସାବ

| ଦାସ୍ତୀ | | ଟଙ୍କା | ଦାତା | | ଟଙ୍କା |
|---|---|---|---|---|---|
| ୧୯୭୪ | | | ୧୯୭୪ | | |
| ଡିସେ-୩୧ | ବାକି ଗଡ଼ିଲ | ୩୦,୦୦୦ | ଜାନୁ-୧ | ବ୍ୟାଙ୍କ ହିସାବ ବାବଦ | ୩୦,୦୦୦ |
| ୧୯୭୫ | | | ୧୯୭୫ | | |
| ଡିସେ-୩୧ | ବାକି ଗଡ଼ିଲ | ୩୦,୦୦୦ | ଜାନୁ-୧ | ପୂର୍ବ ବାକି ବାବଦ | ୩୦,୦୦୦ |
| ୧୯୭୬ | | | ୧୯୭୬ | | |
| ଡିସେ-୩୧ | ୭% ପରିଶୋଧ ଅଗ୍ରାଧିକାର ଅଂଶଧାରୀମାନଙ୍କର ହିସାବ ବାବଦ | ୩୦,୦୦୦ | ଜାନୁ-୧ | ପୂର୍ବ ବାକି ବାବଦ | ୩୦,୦୦୦ |

### ୭% ପରିଶୋଧ ଅଗ୍ରାଧିକାର ଅଂଶ ପରିଶୋଧ ପାଣ୍ଠି ହିସାବ

| ଦାସ୍ତୀ | | ଟଙ୍କା | ଦାତା | | ଟଙ୍କା |
|---|---|---|---|---|---|
| ୧୯୭୪ | | | ୧୯୭୪ | | |
| ଡିସେ-୩୧ | ବାକି ଗଡ଼ିଲ | ୯,୫୧୬ | ଡିସେ-୩୧ | ଲାଭ ଓ କ୍ଷତି ବଣ୍ଟନ ହି: ବାବଦ | ୯,୫୧୬ |
| ୧୯୭୫ | | | ୧୯୭୫ | | |
| ଡିସେ-୩୧ | ବାକି ଗଡ଼ିଲ | ୧୯,୫୦୭ | ଜାନୁ-୧ | ପୂର୍ବ ବାକି ବାବଦ | ୯,୫୧୬ |
| | | | ଡିସେ-୩୧ | ବ୍ୟାଙ୍କ୍ ହି: ବାବଦ (ସୁଧ) | ୪୭୫ |
| | | | ଡିସେ-୩୧ | ଲାଭ ଓ କ୍ଷତି ବଣ୍ଟନ ହିସାବ ବାବଦ | ୯,୫୧୬ |
| | | ୧୯,୫୦୭ | | | ୧୯,୫୦୭ |
| ୧୯୭୬ | | | ୧୯୭୬ | | |
| ଡିସେ-୩୧ | ମୂଳଧନ ପରିଶୋଧ ସଞ୍ଚିତ ହି: ବାବଦ | ୩୦,୦୦୦ | ଜାନୁ-୧ | ପୂର୍ବ ବାକି ବାବଦ | ୧୯,୫୦୭ |
| | | | ଡିସେ-୩୧ | ବ୍ୟାଙ୍କ୍ ହି: ବାବଦ (ସୁଧ) | ୯୭୫ |
| | | | ଡିସେ-୩୧ | ଲାଭ ଓ କ୍ଷତି ବଣ୍ଟନ ହିସାବ ବାବଦ | ୯,୫୧୮ |
| | | ୩୦,୦୦୦ | | | ୩୦,୦୦୦ |

| ଦାସ୍ତୀ | ୭% ପରିଶୋଧ ଅଗ୍ରାଧିକାର ଅଂଶଧାରୀମାନଙ୍କର ହିସାବ | | ଦାତା |
|---|---|---|---|
| ୧୯୭୬ | ଟଙ୍କା | ୧୯୭୬ | ଟଙ୍କା |
| ଡିସେ-୩୧ ବ୍ୟାଙ୍କ୍ ହି: ବାବଦ | ୩୦,୦୦୦ | ଡିସେ-୩୧ ୭% ପରିଶୋଧ ଅଗ୍ରାଧିକାର ଅଂଶ ମୂଳଧନ ହି. ବାବଦ | ୩୦,୦୦୦ |

### ୭% ପରିଶୋଧ ଅଗ୍ରାଧିକାର ଅଂଶ ପରିଶୋଧ ପାଣ୍ଠି ବିନିଯୋଗ ହିସାବ

| ଦାସ୍ତୀ | | | ଦାତା |
|---|---|---|---|
| ୧୯୭୪ | ଟଙ୍କା | ୧୯୭୪ | ଟଙ୍କା |
| ଡିସେ-୩୧ ବ୍ୟାଙ୍କ୍ ହି: ବାବଦ | ୯,୫୧୬ | ଡିସେ-୩୧ ବାକୀ ଗଡ଼ିଲା | ୯,୫୧୬ |
| ୧୯୭୫ | | ୧୯୭୫ | |
| ଜାନୁ-୧ ପୂର୍ବ ବାକୀ ବାବଦ | ୯,୫୧୬ | ଡିସେ-୩୧ ବାକୀ ଗଡ଼ିଲା | ୧୯,୫୦୭ |
| ଡିସେ-୩୧ ବ୍ୟାଙ୍କ୍ ହି: ବାବଦ | ୯,୯୯୧ | | |
| | ୧୯,୫୦୭ | | ୧୯,୫୦୭ |
| ୧୯୭୬ | | ୧୯୭୬ | |
| ଜାନୁ-୧ ପୂର୍ବ ବାକୀ ବାବଦ | ୧୯,୫୦୭ | ଡିସେ-୩୧ ବ୍ୟାଙ୍କ ହି: ବାବଦ | ୧୯,୫୦୭ |
| | ୧୯,୫୦୭ | | ୧୯,୫୦୭ |

### ମୂଳଧନ ପରିଶୋଧ ସଞ୍ଚିତ ହିସାବ

| ଦାସ୍ତୀ | | | ଦାତା |
|---|---|---|---|
| ୧୯୭୬ | ଟଙ୍କା | ୧୯୭୬ | ଟଙ୍କା |
| ଡିସେ-୩୧ ବାକୀ ଗଡ଼ିଲା | ୩୦,୦୦୦ | ଡିସେ-୩୧ ୭% ପରିଶୋଧ ଅଗ୍ରାଧିକାର ଅଂଶ ପରିଶୋଧ ପାଣ୍ଠି ହିସାବ ବାବଦ | ୩୦,୦୦୦ |
| | | ୧୯୭୬ | |
| | | ଜାନୁ-୧ ପୂର୍ବ ବାକୀ ବାବଦ | ୩୦,୦୦୦ |

## ଋଣପତ୍ରର ପରିଶୋଧ

ପୂର୍ବରୁ କୁହାଯାଇଛି ଯେ କମ୍ପାନୀ ଦୁଇ ପ୍ରକାର ଋଣପତ୍ର ପ୍ରଚଳିତ କରିପାରେ, ଯଥା—ଅପରିଶୋଧ୍ୟ ଋଣପତ୍ର ଓ ପରିଶୋଧ୍ୟ ଋଣପତ୍ର । ଅପରିଶୋଧ୍ୟ ଋଣପତ୍ର ବାବଦ କମ୍ପାନୀକୁ କେବଳ ନିର୍ଦ୍ଦିଷ୍ଟ ସମୟରେ ସୁଧ ଦେବାକୁ ପଡ଼େ ଏବଂ କେବଳ କମ୍ପାନୀର ଅବସାନ ସମୟରେ ଏହି ଋଣପତ୍ର ବାବଦ ଅର୍ଥ ପରିଶୋଧ କରାଯାଏ । ମାତ୍ର ପରିଶୋଧ୍ୟ ଋଣପତ୍ର ବାବଦ ଅର୍ଥ କମ୍ପାନୀକୁ ସର୍ତ୍ତ ଅନୁଯାୟୀ ନିର୍ଦ୍ଦିଷ୍ଟ ସମୟରେ ସମହାରରେ ଅଥବା ଅଧିହାରରେ ପରିଶୋଧ କରିବାକୁ ପଡ଼େ । କମ୍ପାନୀ ଚାରିଗୋଟି ପ୍ରଣାଳୀରେ ଏହି ଅର୍ଥ ପରିଶୋଧ କରିପାରେ । ଏହି ପ୍ରଣାଳୀଗୁଡ଼ିକ ନିମ୍ନରେ ବର୍ଣ୍ଣିତ ହେଲା ।

(୧) କମ୍ପାନୀ ପ୍ରତିବର୍ଷ ଋଣପତ୍ର ପରିମାଣର କେତେକାଂଶ ପରିଶୋଧ କରିପାରେ । କେଉଁ ନିର୍ଦ୍ଦିଷ୍ଟ ଋଣପତ୍ରଗୁଡ଼ିକ ଏହି ଉଦ୍ଦେଶ୍ୟରେ ବଚ୍ଛିବ ତାହା ଲଟାରିଦ୍ୱାରା ସାବ୍ୟସ୍ତ କରାଯାଏ । ଏହାକୁ ବାର୍ଷିକ ଲଟାରିଦ୍ୱାରା ଋଣପତ୍ର ପରିଶୋଧ ପଦ୍ଧତି କୁହାଯାଏ ।

ଏହିପରି ପରିଶୋଧର ଗୋଟିଏ ସୁବିଧା ହେଉଛି ଏହା ଯେ ଏହି ପ୍ରକାର ପରିଶୋଧ କରାଗଲେ କମ୍ପାନୀର ଆର୍ଥିକ ଅବସ୍ଥା ଉପରେ ବିଶେଷ ଚାପ ପଡ଼େ ନାହିଁ ଏବଂ କମ୍ପାନୀର ବଣ୍ଟନଯୋଗ୍ୟ ଲାଭରୁ କୌଣସି ପରିମାଣ ଉପଯୋଗ କରାଯାଉ ନ ଥିବାରୁ ଲଭ୍ୟାଂଶ ହାରରେ କୌଣସି ପରିବର୍ତ୍ତନ ଘଟେ ନାହିଁ ଓ ଏତଦ୍ୱାରା କମ୍ପାନୀର ଅଂଶଧାରୀମାନେ ପ୍ରକାରାନ୍ତରେ ଉପକୃତ ହୁଅନ୍ତି ।

(୨) ଖୋଲା ବଜାରରୁ ଅଥବା ଷ୍ଟକ୍ ବିନିମୟ ବଜାରରୁ କମ୍ପାନୀ ତାହାର ନିଜ ଋଣପତ୍ରଗୁଡ଼ିକ କ୍ରୟ କରିବାଦ୍ୱାରା ଋଣପତ୍ର ବାବଦ ଅର୍ଥ ପରିଶୋଧ କରେ । ସାଧାରଣତଃ ଯେତେବେଳେ ଖୋଲା ବଜାରରେ ଏହି ଋଣପତ୍ରଗୁଡ଼ିକ ସର୍ବନିମ୍ନ ଦରରେ ଏବଂ କେତେକ ସମୟରେ ଏହାର ଲିଖିତ ମୂଲ୍ୟଠାରୁ ଊଣା ମୂଲ୍ୟରେ ବିକ୍ରିତ ହୁଏ, କମ୍ପାନୀ ସେହି ସମୟରେ ଏହି ଋଣପତ୍ରଗୁଡ଼ିକ କ୍ରୟ କରେ । କମ୍ପାନୀ ଏହି ଋଣପତ୍ରଗୁଡ଼ିକୁ ଏକ ବିନିଯୋଗ ରୂପେ ହିସାବ ଖାତାରେ ଦର୍ଶାଇପାରେ ଅଥବା ଉପଯୁକ୍ତ ଋଣପତ୍ରଗୁଡ଼ିକ ହିସାବରୁ ବାଦ୍ ଦେଇପାରେ ।

ଏହାର ସୁବିଧା ହେଉଛି ଏହା ଯେ କମ୍ପାନୀ ଅନେକ ସମୟରେ ଋଣପତ୍ରର ଲିଖିତ ମୂଲ୍ୟ ଅପେକ୍ଷା ଊଣା ମୂଲ୍ୟରେ ଏଗୁଡ଼ିକ କ୍ରୟ କରୁଥିବାରୁ ଋଣପତ୍ରର ପରିଶୋଧ ନିମନ୍ତେ କମ୍ପାନୀର ଅପେକ୍ଷାକୃତ ଅଳ୍ପ ପରିମାଣର ଅର୍ଥ ପ୍ରୟୋଜନ ହୁଏ ଏବଂ କମ୍ପାନୀର ସୁବିଧା ସମୟରେ କମ୍ପାନୀ ଏହି ଋଣପତ୍ରଗୁଡ଼ିକ କ୍ରୟ କରିପାରେ ।

(୩) ନିର୍ଦ୍ଦିଷ୍ଟ କାଳ ପରେ ପରିଶୋଧ ଋଣପତ୍ର ବାବଦ ଅର୍ଥ ପାଇଁ ବ୍ୟବସ୍ଥା କରିବା ନିମନ୍ତେ କେତେକ ସମୟରେ କମ୍ପାନୀ ଏକ ପ୍ରତିପୂରକ ପାଣ୍ଠି ଗଠନ କରିପାରେ । ଏହି ପଦ୍ଧତି ଅନୁଯାୟୀ କମ୍ପାନୀ ପ୍ରତିବର୍ଷ ଏକ ନିର୍ଦ୍ଦିଷ୍ଟ ପରିମାଣର ଅର୍ଥ ବଣ୍ଟନଯୋଗ୍ୟ ଲାଭରୁ ପୃଥକ୍ କରି ଏହି ପାଣ୍ଠିରେ ଜମା କରେ ଏବଂ ସମପରିମାଣର ଅର୍ଥଦ୍ୱାରା ସରକାରୀ ଋଣପତ୍ର ଅଥବା ଅନ୍ୟ କୌଣସି ଦୃଢ଼ ବିନିମୟ ଅଂଶପତ୍ର, ଋଣପତ୍ର ଅଥବା ସ୍ୱର୍ଣ୍ଣସମ କାଗଜ କ୍ରୟ କରେ । ବର୍ଷ ଶେଷରେ ଏହି ବିନିଯୋଗର ସୁଧ ଓ ବାର୍ଷିକ କିସ୍ତିର ଅର୍ଥ ମଧ୍ୟ ଉପରୋକ୍ତ ପ୍ରଣାଳୀରେ ବିନିଯୋଗ କରେ । ଚକ୍ରବୃଦ୍ଧି ହାରରେ ଏହାର ସୁଧ ଓ ପ୍ରତି କିସ୍ତିର ଅର୍ଥ ବିନିଯୁକ୍ତ ହେବା ଫଳରେ ନିର୍ଦ୍ଦିଷ୍ଟ ସମୟ ବେଳକୁ ବିନିଯୁକ୍ତ କାଗଜ ବା ସିକ୍ୟୁରିଟିଗୁଡ଼ିକ ଯଥେଷ୍ଟ ବୃଦ୍ଧି ପାଏ ଏବଂ ନିର୍ଦ୍ଦିଷ୍ଟ ସମୟରେ ଏଗୁଡ଼ିକ ବିକ୍ରୟ କରାଯାଇ ଋଣପତ୍ର ପରିଶୋଧ କରିବା ନିମନ୍ତେ ଆବଶ୍ୟକ ନଗଦ ଅର୍ଥ ସଂଗୃହୀତ ହୁଏ । ଏହି ପଦ୍ଧତିକୁ ପ୍ରତିପୂରକ ପାଣ୍ଠି ବିନିଯୋଗ ପଦ୍ଧତି କୁହାଯାଏ ।

ଏହି ପଦ୍ଧତିର ଗୋଟିଏ ସୁବିଧା ହେଉଛି ଏହା ଯେ ଋଣ ପତ୍ରର ପରିଶୋଧ ନିମନ୍ତେ କମ୍ପାନୀର କାର୍ଯ୍ୟକାରୀ ମୂଳଧନ ବ୍ୟବହୃତ ହୁଏ ନାହିଁ । ବାହାରୁ ମିଳିଥିବା ନଗଦ ଅର୍ଥ ସାହାଯ୍ୟରେ ଋଣପତ୍ରଗୁଡ଼ିକର ନିର୍ଦ୍ଦିଷ୍ଟ ଦିବସରେ ପରିଶୋଧ କରିବା ପାଇଁ କମ୍ପାନୀର କୌଣସି ଅସୁବିଧା ହୁଏ ନାହିଁ । ଅନ୍ୟ ଗୋଟିଏ ସୁବିଧା ହେଉଛି ଏହା ଯେ ନିତାନ୍ତ ପ୍ରୟୋଜନ ହେଲେ କମ୍ପାନୀ ଏହି ସରକାରୀ ଋଣପତ୍ରଗୁଡ଼ିକୁ ବନ୍ଧକ ରଖି ସାମୟିକ ଋଣ ସଂଗ୍ରହ କରିପାରେ ।

ମାତ୍ର ଏହାର ଅସୁବିଧା ହେଉଛି ଏହା ଯେ ଏହି ଋଣପତ୍ର ପ୍ରତିଭୂତିରୁ କମ୍ପାନୀ ଯେଉଁ ପରିମାଣର ସୁଧ ପାଏ, ତାହା ସେହି ପରିମାଣର ଅର୍ଥ କମ୍ପାନୀରେ ବିନିଯୋଗ କରାଗଲେ ଯେଉଁ ହାରରେ ଲାଭ ମିଳି ପାରିଥାଆନ୍ତା, ତାହାଠାରୁ ଅପେକ୍ଷାକୃତ ନ୍ୟୂନତର ହୋଇଥାଏ । ପୁନଶ୍ଚ ଯଦି ବିନିଯୋଗ କରାଯାଇଥିବା କାଗଜ ବା ସିକ୍ୟୁରିଟିଗୁଡ଼ିକର ବଜାର ଦର ନିମ୍ନଗାମୀ ହୁଏ, ତାହାହେଲେ କମ୍ପାନୀକୁ ସେହି କ୍ଷତି ସହିବାକୁ ପଡ଼େ । ଅଧିକନ୍ତୁ ପ୍ରତିବର୍ଷ ନିର୍ଦ୍ଦିଷ୍ଟ ପରିମାଣର ଅର୍ଥ ବଣ୍ଟନଯୋଗ୍ୟ ଲାଭରୁ ବାହାର ଯାଉଥିବାରୁ ଲଭ୍ୟାଂଶର ହାର ଅପେକ୍ଷାକୃତ ନ୍ୟୂନତର ହୋଇପାରେ ।

(୪) ପ୍ରତିପୂରକ ପାଣ୍ଠି ସାହାଯ୍ୟରେ ଯେପରି ଭାବରେ ଋଣପତ୍ର ପରିଶୋଧ କରାଯାଏ, ବୀମାପତ୍ର ପଦ୍ଧତିରେ ମଧ୍ୟ ସେହିପରି ଋଣ ପତ୍ରର ପରିଶୋଧ କରାଯାଇପାରେ, ଏହି ଦୁଇଟି ପଦ୍ଧତି ମଧ୍ୟରେ ପାର୍ଥକ୍ୟ ହେଉଛି ଏହା ଯେ ପ୍ରତିପୂରକ ପାଣ୍ଠିର ଅର୍ଥଦ୍ୱାରା

ସରକାରୀ ଋଣପତ୍ର ପ୍ରଭୃତି କ୍ରୟ କରି ନ ଯାଇ ତାହା ବୀମାପତ୍ରର ପ୍ରିମିୟମ ରୂପେ ବ୍ୟବହୃତ ହୁଏ ।

ଏହି ପଦ୍ଧତିର ସୁବିଧା ହେଉଛି ଏହା ଯେ କମ୍ପାନୀକୁ ଲୋକସାନ ସହିବାକୁ ପଡ଼େ ନାହିଁ ଏବଂ ବୀମା କମ୍ପାନୀଠାରୁ ବୀମାକୃତ ଅର୍ଥ ପାଇବାରେ କୌଣସି ଅସୁବିଧା ହୁଏ ନାହିଁ । କିନ୍ତୁ ଏହାର ପ୍ରାଥମିକ ଅବସ୍ଥାରେ ବୀମା ପତ୍ରର ପ୍ରତ୍ୟର୍ପଣ ମୂଲ୍ୟ ପ୍ରଦତ୍ତ ପ୍ରିମିୟମ ତୁଳନାରେ ଯଥେଷ୍ଟ ଅଳ୍ପ ଥାଏ ଏବଂ ଯଦି ସେହି ସମୟରେ ବୀମାର ପ୍ରିମିୟମ ବନ୍ଦ କରିଦିଆଯାଏ, ତାହାହେଲେ କମ୍ପାନୀକୁ ଯଥେଷ୍ଟ ପରିମାଣର କ୍ଷତି ସହିବାକୁ ପଡ଼େ ।

ଉପରୋକ୍ତ ପଦ୍ଧତିଗୁଡ଼ିକ ପର୍ଯ୍ୟାଲୋଚନା କଲେ ଦେଖାଯିବ ଯେ ପ୍ରତିପୂରକ ପାଣ୍ଠି ବିନିଯୋଗ ପଦ୍ଧତି ସର୍ବାପେକ୍ଷା ଅଧିକ ସୁବିଧାଜନକ ଅଟେ । ତେଣୁ ଏହି ପଦ୍ଧତି ବହୁଳ ଭାବରେ ପ୍ରଚଳିତ ହୁଏ ।

## ଋଣପତ୍ର ପରିଶୋଧ ସଂକ୍ରାନ୍ତ ନେଣ ଦେଣର ହିସାବ ଖାତାରେ ଲିପିବଦ୍ଧକରଣ

ଋଣପତ୍ର ବାବଦ ଅର୍ଥ ପରିଶୋଧ କରିବା ନିମନ୍ତେ ମାତ୍ର ଦୁଇଟି ଜାବ୍ଦା ଆବଶ୍ୟକ ହୁଏ, ଯଥା—ଋଣପତ୍ର ହିସାବର ଦାତା ବାକିକୁ ଋଣପତ୍ରଧାରୀମାନଙ୍କର ହିସାବକୁ ସ୍ଥାନାନ୍ତରିତ କରିଯାଏ । ଯେତେବେଳେ ଋଣପତ୍ରଧାରୀଙ୍କୁ ଅର୍ଥ ପ୍ରଦାନ କରିଯାଏ, ସେତେବେଳେ ସେମାନଙ୍କ ହିସାବକୁ ଦାୟୀ କରିଯାଇ ବ୍ୟାଙ୍କ୍ ଅଥବା ନଗଦ ତହବିଲ ହିସାବକୁ ଦାତା କରିଯାଏ । ମାତ୍ର ଅଧିକାଂଶ ସମୟରେ ଏହି ଋଣପତ୍ରଗୁଡ଼ିକୁ ଅଧିହାରରେ ପରିଶୋଧ କରିବାକୁ ପଡ଼େ । ପୁନଶ୍ଚ ଏହି ଋଣପତ୍ରଗୁଡ଼ିକୁ ପରିଶୋଧ କରିବା ସମୟରେ କମ୍ପାନୀ ଉପରେ ଯେଉଁ ଆର୍ଥିକ ଚାପ ପଡ଼େ ତାହାକୁ ଏଡ଼ାଇବା ପାଇଁ କମ୍ପାନୀ ସାଧାରଣତଃ କ୍ରମାନ୍ୱୟରେ ଅଳ୍ପ ଅଳ୍ପ ପରିମାଣରେ ବିଭିନ୍ନ କିସ୍ତିରେ ଏହି ଋଣ ପରିଶୋଧ କରିବା ପାଇଁ ବ୍ୟବସ୍ଥା କରନ୍ତି ଅଥବା ପ୍ରତିପୂରକ ପାଣ୍ଠି ବିନିଯୋଗ ପଦ୍ଧତି ଅଥବା ବୀମାପତ୍ର ପଦ୍ଧତି ଅବଲମ୍ବନ କରନ୍ତି । ଏପରି କରିବାଦ୍ୱାରା ହିସାବ ରକ୍ଷଣରେ ନାନାଦି ଜଟିଳତା ସୃଷ୍ଟି ହୁଏ । ଏହି ହିସାବ ରକ୍ଷଣ ପ୍ରଣାଳୀର କେତେକ ଦୃଷ୍ଟାନ୍ତ ନିମ୍ନରେ ପ୍ରଦର୍ଶିତ ହେଲା ।

## ଅଧିହାରରେ ଋଣପତ୍ର ବାବଦ ଅର୍ଥ ପରିଶୋଧ

ଯଦି ଲିଖିତ ମୂଲ୍ୟ ଅପେକ୍ଷା ଅଧିକ ପରିମାଣର ଅର୍ଥ ପ୍ରଦାନ କରି ଋଣପତ୍ର ବାବଦ ଅର୍ଥ ପରିଶୋଧ କରିବା ଆବଶ୍ୟକ ହୁଏ, ତାହାହେଲେ ସେ ସମ୍ବନ୍ଧୀୟ ପ୍ରବିଷ୍ଟି ଋଣପତ୍ରର ପ୍ରଚଳନ ବେଳେ ଲିପିବଦ୍ଧ କରାଯାଏ । ଲିଖିତ ମୂଲ୍ୟଠାରୁ ଅଧିକ ଅର୍ଥ ସକାଶେ 'ଋଣପତ୍ର ପ୍ରଚଳନଜନିତ କ୍ଷତି ହିସାବ'କୁ ଦାୟୀ କରାଯାଇ ଋଣପତ୍ର ପରିଶୋଧ ଅଧିମୂଲ୍ୟ ହିସାବ'କୁ ଦାତା କରାଯାଏ ।

ଯଦି ଲିଖିତ ମୂଲ୍ୟ ଅପେକ୍ଷା ଊଣା ମୂଲ୍ୟରେ ଅର୍ଥାତ୍ ଅବହାରରେ ଋଣପତ୍ର ପ୍ରଚଳିତ ହୁଏ, ତାହାହେଲେ ଊଣା ପରିମାଣ ସକାଶେ ଋଣପତ୍ର ପ୍ରଚଳନଜନିତ କ୍ଷତି ହିସାବକୁ ଦାୟୀ ଓ ନଗଦ ତହବିଲ ଅଥବା ବ୍ୟାଙ୍କ୍ ହିସାବକୁ ଦାୟୀ କରାଯାଇ ଋଣପତ୍ର ହିସାବକୁ ଦାତା କରାଯାଏ । ଋଣ ପତ୍ର ପ୍ରଚଳନରେ ଏହି ବଟା, କମିଶନ୍, ଦଲାଲି ପ୍ରଭୃତି ପାଇଁ ଯେଉଁ ଅର୍ଥ ବ୍ୟୟିତ ହୁଏ ତାହା ସକାଶେ ଉପରୋକ୍ତ କ୍ଷତି ହିସାବକୁ ଦାୟୀ କରାଯାଏ । ଏହି ହିସାବର ଦାୟୀ ବାକିକୁ କେତେକ ଅଂଶକୁ କର୍ତ୍ତିଓ୍ୱାର ପ୍ରତି ବର୍ଷର ନିଟ୍ ଲାଭ-କ୍ଷତି ହିସାବକୁ ସ୍ଥାନାନ୍ତରିତ କରାଯାଏ । ଏପରି କରିବାର ଉଦ୍ଦେଶ୍ୟ ହେଉଛି ଏହି ଋଣପତ୍ର ପ୍ରଚଳନଜନିତ କ୍ଷତି ହିସାବକୁ ସମ୍ପୂର୍ଣ୍ଣରୂପେ ଅବଲୋପନ କରିବା । ମାତ୍ର ଯେ ପର୍ଯ୍ୟନ୍ତ ଏହା ସମ୍ପୂର୍ଣ୍ଣରୂପେ ଅବଲୁପ୍ତ ନ ହୋଇଥାଏ ସେତେ କାଳ ପର୍ଯ୍ୟନ୍ତ ଏହି ହିସାବର ଦାୟୀ ବାକି କମ୍ପାନୀର ଉଦ୍‌ବୃତ୍ତ ପତ୍ରର ପରିସମ୍ପତ୍ତି ପାର୍ଶ୍ୱରେ ପ୍ରକାଶିତ ହୁଏ ।

ଋଣପତ୍ର ପରିଶୋଧ ଅଧିମୂଲ୍ୟ ହିସାବର ଦାତା ବାକି ଋଣ ପତ୍ର ପରିଶୋଧର ପୂର୍ବ ବର୍ଷ ପର୍ଯ୍ୟନ୍ତ ଉଦ୍‌ବୃତ୍ତ ପତ୍ରର ଦେଣା ଓ ମୂଳଧନ ପାର୍ଶ୍ୱରେ ପ୍ରଦର୍ଶିତ ହୁଏ । ଯେଉଁ ବର୍ଷ ଋଣ ପତ୍ର ପରିଶୋଧ କରାଯାଏ, ପରିଶୋଧ କରିବା ପୂର୍ବରୁ ଏହି ହିସାବର ବାକି ଓ ଋଣପତ୍ର ହିସାବର ବାକି ଋଣପତ୍ରଧାରୀଙ୍କର ହିସାବକୁ ସ୍ଥାନାନ୍ତରିତ କରାଯାଏ । ତତ୍ପରେ ଋଣପତ୍ର-ଧାରୀଙ୍କର ହିସାବକୁ ଦାୟୀ କରାଯାଇ ନଗଦ ତହବିଲ/ବ୍ୟାଙ୍କ୍ ହିସାବକୁ ଦାତା କରାଯାଏ ।

### ଦୃଷ୍ଟାନ୍ତ (୨୭)

କ କମ୍ପାନୀ ଲିମିଟେଡ୍ ୧୯୭୦ ମସିହା ଜାନୁଆରୀ ୧ ତାରିଖରେ ପ୍ରତି ଋଣପତ୍ର ଟ ୧୦୦ ହାରରେ ୩ ବର୍ଷ ପରେ ପରିଶୋଧ୍ୟ ୫୦୦ ୭% ଋଣପତ୍ର ପ୍ରଚଳନ କରିଥିଲେ । ଏହି ଋଣପତ୍ର ୫% ଅଧିହାରରେ ପରିଶୋଧ । ଏହି ଋଣପତ୍ର ପ୍ରଚଳନ କରିବା ସମୟରେ କମ୍ପାନୀ କମିଶନ୍ ବାବଦ ଟ ୫୦୦ ଖର୍ଚ୍ଚ କରିଥିଲେ । ଆବଶ୍ୟକ ଜାବ୍‌ଦା ପ୍ରସ୍ତୁତ କର । ମନେକର ଯେ କମ୍ପାନୀ ପ୍ରତିବର୍ଷ ଡିସେମ୍ବର ୩୧ ତାରିଖରେ ତାଙ୍କର ହିସାବ ପ୍ରସ୍ତୁତ କରନ୍ତି ।

## ସମାଧାନ

| | ଜାବ୍‌ଦା | | ଦାୟୀ | ଦାତା |
|---|---|---|---|---|
| ୧୯୭୦ | | | ଟଙ୍କା | ଟଙ୍କା |
| ଜାନୁ-୧ | ବ୍ୟାଙ୍କ୍ ହିସାବ | ଦାୟୀ | ୫୦,୦୦୦ | |
| | ଋଣପତ୍ର ପ୍ରଚଳନଜନିତ କ୍ଷତି ହିସାବ | ଦାୟୀ | ୨,୫୦୦ | |
| | ଋଣପତ୍ର ହିସାବ ବାବଦ | | | ୫୦,୦୦୦ |
| | ଋଣପତ୍ର ପରିଶୋଧ ଅଧିମୂଲ୍ୟ ହି: ବାବଦ | | | ୨,୫୦୦ |
| | (ସମହାରରେ ପ୍ରଚଳିତ ମାତ୍ର ୫% ଅଧିହାରରେ ପରିଶୋଧ ଋଣପତ୍ରର ପ୍ରଚଳନ ନିମନ୍ତେ) | | | |
| ୧ | ଋଣପତ୍ର ପ୍ରଚଳନଜନିତ କ୍ଷତି ହିସାବ | ଦାୟୀ | ୫୦୦ | |
| | ବ୍ୟାଙ୍କ୍ ହିସାବ ବାବଦ | | | ୫୦୦ |
| | (ଋଣପତ୍ରର ପ୍ରଚଳନ ସମୟରେ ପ୍ରଦତ୍ତ କମିଶନ ସକାଶେ) | | | |
| ଡିସେ-୩୧ | ନିଟ୍ ଲଭ-କ୍ଷତି ହିସାବ | ଦାୟୀ | ୧,୦୦୦ | |
| | ଋଣପତ୍ର ପ୍ରଚଳନଜନିତ କ୍ଷତି ହି: ବାବଦ | | | ୧,୦୦୦ |
| | (ଋଣପତ୍ର ପ୍ରଚଳନଜନିତ ମୋଟ କ୍ଷତିର ଦାୟୀ ବାକିର ଏକ-ତୃତୀୟାଂଶ ନିଟ୍ ଲଭ-କ୍ଷତି ହିସାବକୁ ସ୍ଥାନାନ୍ତରିତ ହେଲା ।) | | | |

| | ଜାବ୍‌ଦା | | ଦାୟୀ | ଦାତା |
|---|---|---|---|---|
| ୧୯୭୧ | | | ଟଙ୍କା | ଟଙ୍କା |
| ଡିସେ-୩୧ | ନିଟ୍ ଲଭ-କ୍ଷତି ହିସାବ | ଦାୟୀ | ୧,୦୦୦ | |
| | ଋଣପତ୍ର ପ୍ରଚଳନଜନିତ କ୍ଷତି ହି: ବାବଦ | | | ୧,୦୦୦ |
| | (ଋଣପତ୍ର ପ୍ରଚଳନଜନିତ ମୋଟ କ୍ଷତିର ଏକ-ତୃତୀୟାଂଶ ନିଟ୍ ଲଭ-କ୍ଷତି ହିସାବକୁ ସ୍ଥାନାନ୍ତରିତ କରାଗଲା ।) | | | |

| ଜାବ୍‌ଦା | | | ଦାଖଲ | ଜମା |
|---|---|---|---|---|
| | | | ଟଙ୍କା | ଟଙ୍କା |
| ୧୯୭୨ | | | | |
| ଡିସେ-୩୧ | ନିଟ୍ ଲଭ-କ୍ଷତି ହିସାବ | ଦାଖଲ | ୧,୦୦୦ | |
| | ଋଣପତ୍ର ପ୍ରଚଳନଜନିତ କ୍ଷତି ହି: ବାବଦ | | | ୧,୦୦୦ |
| | (ଋଣପତ୍ର ପ୍ରଚଳନଜନିତ କ୍ଷତି ହିସାବର ଅବଶିଷ୍ଟ ଦାଖଲ ବାକି ନିଟ୍ ଲଭ-କ୍ଷତି ହିସାବକୁ ସ୍ଥାନାନ୍ତରିତ ହେଲା ।) | | | |
| ୩୧ | ଋଣପତ୍ର ହିସାବ | ଦାଖଲ | ୫୦,୦୦୦ | |
| | ଋଣପତ୍ର ପରିଶୋଧ ଅଧିମୂଲ୍ୟ ହି: | ଦାଖଲ | ୨,୫୦୦ | |
| | ଋଣପତ୍ରଧାରୀମାନଙ୍କର ହିସାବ ବାବଦ | | | ୫୨,୫୦୦ |
| | (ଋଣପତ୍ର ପରିଶୋଧ ପୂର୍ବରୁ ପ୍ରଥମୋକ୍ତ ଦୁଇଟି ହିସାବର ବାକିକୁ ଋଣପତ୍ରଧାରୀଙ୍କ ହିସାବକୁ ସ୍ଥାନାନ୍ତରିତ କରାଗଲା ।) | | | |
| ୩୧ | ଋଣପତ୍ରଧାରୀଙ୍କର ହିସାବ | ଦାଖଲ | ୫୨,୫୦୦ | |
| | ବ୍ୟାଙ୍କ୍ ହିସାବ ବାବଦ | | | ୫୨,୫୦୦ |
| | ଋଣପତ୍ରଧାରୀଙ୍କୁ ୫% ଅଧିହାରରେ ସେମାନଙ୍କର ଋଣପତ୍ର ବାବଦ ଅର୍ଥ ପରିଶୋଧ କରାଗଲା । ) | | | |

### ଦୃଷ୍ଟାନ୍ତ (୨୮)

କ କମ୍ପାନୀ ଲିମିଟେଡ୍ ୧୯୭୦ ମସିହା ଜାନୁୟାରୀ ୧ ତାରିଖରେ ୩ ବର୍ଷ ପରେ ୫% ଅଧିହାରରେ ପରିଶୋଧ ଓ ୪% ଅବହାରରେ ପ୍ରତି ଋଣପତ୍ର ଟ ୧୦୦ ହାରରେ ୫୦୦ ୭% ଋଣପତ୍ର ପ୍ରଚଳନ କରିଥିଲେ । ଆବଶ୍ୟକ ଜାବ୍‌ଦା ପ୍ରସ୍ତୁତ କର ।

ମନେକର ଯେ କମ୍ପାନୀ ପ୍ରତି ବର୍ଷ ଡିସେମ୍ବର ୩୧ ତାରିଖରେ ତାଙ୍କର ବାର୍ଷିକ ହିସାବ ପ୍ରସ୍ତୁତ କରନ୍ତି ।

## ସମାଧାନ

| | ଜାବ୍‌ଦା | | ଦାୟୀ | ଦାତା |
|---|---|---|---|---|
| ୧୯୭୦ | | | ଟଙ୍କା | ଟଙ୍କା |
| ଜାନୁ-୧ | ବ୍ୟାଙ୍କ ହିସାବ | ଦାୟୀ | ୪୮,୦୦୦ | |
| | ଋଣପତ୍ର ପ୍ରଚଳନଜନିତ କ୍ଷତି ହିସାବ | ଦାୟୀ | ୪,୫୦୦ | |
| | ଋଣପତ୍ର ହିସାବ ବାବଦ | | | ୫୦,୦୦୦ |
| | ଋଣପତ୍ର ପରିଶୋଧ ଅଧିମୂଲ୍ୟ ହିସାବ ବାବଦ (୫% ଅଧିହାରରେ ପରିଶୋଧ ମାତ୍ର ୪% ଅବହାରରେ ପ୍ରଚଳିତ ପ୍ରତି ଋଣପତ୍ର ଟ ୧୦୦ ହାରରେ ୫୦୦ ୭% ଋଣପତ୍ର ପ୍ରଚଳିତ ହେଲ ।) | | | ୨,୫୦୦ |
| ଡିସେ-୩୧ | ନିଟ୍ ଲଭ-କ୍ଷତି ହିସାବ | ଦାୟୀ | ୧,୫୦୦ | |
| | ଋଣପତ୍ର ପ୍ରଚଳନଜନିତ କ୍ଷତି ହିସାବ ବାବଦ (ଋଣପତ୍ର ପ୍ରଚଳନଜନିତ ମୋଟ କ୍ଷତିର ଏକ-ତୃତୀୟାଂଶ ନିଟ୍ ଲଭ-କ୍ଷତି ହିସାବକୁ ସ୍ଥାନାନ୍ତରିତ କରଗଲା ।) | | | ୧,୫୦୦ |

| | ଜାବ୍‌ଦା | | ଦାୟୀ | ଦାତା |
|---|---|---|---|---|
| ୧୯୭୧ | | | ଟଙ୍କା | ଟଙ୍କା |
| ଡିସେ-୩୧ | ନିଟ୍ ଲଭ-କ୍ଷତି ହିସାବ | ଦାୟୀ | ୧,୫୦୦ | |
| | ଋଣପତ୍ର ପ୍ରଚଳନଜନିତ କ୍ଷତି ହିସାବ ବାବଦ ( ଋଣପତ୍ର ପ୍ରଚଳନଜନିତ କ୍ଷତିର ଏକ-ତୃତୀୟାଂଶ ନିଟ୍ ଲଭ-କ୍ଷତି ହିସାବକୁ ସ୍ଥାନାନ୍ତରିତ ହେଲ ।) | | | ୧,୫୦୦ |

| | ଜାବ୍‌ଦା | | ଡାଏଁ | ଡାଡା |
|---|---|---|---|---|
| ୧୯୭୨ | | | ଟଙ୍କା | ଟଙ୍କା |
| ଡିସେ- | ନଟ୍ ଲଭ-କ୍ଷତି ହିସାବ | ଡାଏଁ | ୧,୫୦୦ | |
| ୩୧ | ଋଣପତ୍ର ପ୍ରଚଳନଜନିତ କ୍ଷତି ହି: ବାବଦ | | | ୧,୫୦୦ |
| | ( ଋଣପତ୍ର ପ୍ରଚଳନଜନିତ କ୍ଷତିର ଅବଶିଷ୍ଟାଂଶ ନଟ୍ ଲଭ-କ୍ଷତି ହିସାବକୁ ସ୍ଥାନାନ୍ତରିତ ହେଲ । ) | | | |
| ୩୧ | ଋଣପତ୍ର ହିସାବ | ଡାଏଁ | ୫୦,୦୦୦ | |
| | ଋଣପତ୍ର ପରିଶୋଧ ଅଧିମୂଲ୍ୟ ହି: | ଡାଏଁ | ୨,୫୦୦ | |
| | ଋଣପତ୍ରଧାରୀଙ୍କ ହିସାବ ବାବଦ | | | ୫୨,୫୦୦ |
| | ( ଋଣପତ୍ର ପରିଶୋଧ ପୂର୍ବରୁ ପ୍ରଥମୋକ୍ତ ଦୁଇଟି ହିସାବର ବାକି ଋଣପତ୍ରଧାରୀଙ୍କ ହିସାବକୁ ସ୍ଥାନାନ୍ତରିତ ହେଲ । ) | | | |
| ୩୧ | ଋଣପତ୍ରଧାରୀଙ୍କ ହିସାବ | ଡାଏଁ | ୫୨,୫୦୦ | |
| | ବ୍ୟାଙ୍କ ହିସାବ ବାବଦ | | | ୫୨,୫୦୦ |
| | ( ୫% ଅଧିହାରରେ ୫୦୦ ୬% ଋଣପତ୍ର ବାବଦ ଅର୍ଥ ଋଣପତ୍ରଧାରୀମାନଙ୍କୁ ପରିଶୋଧ କରାଗଲ । ) | | | |

## ଦୃଷ୍ଟାନ୍ତ (୨୯)

କ କମ୍ପାନୀ ଲିମିଟେଡ୍ ୧୯୭୦ ମସିହା ଜାନୁଆରୀ ୧ ତାରିଖରେ ୩% ଅଧିହାରରେ ପ୍ରତି ଋଣପତ୍ର ୫ ୧୦୦ ହାରରେ ୫୦୦ ୫% ଋଣପତ୍ର ପ୍ରଚଳନ କରିଥିଲେ ଯାହା ୩ ବର୍ଷ ପରେ ୬% ଅଧିହାରରେ ପରିଶୋଧ ।

୩ ବର୍ଷର ଆବଶ୍ୟକ ଜାବ୍‌ଦା ପ୍ରସ୍ତୁତ କର । ମନେକର ଯେ କମ୍ପାନୀ ପ୍ରତି ବର୍ଷ ଡିସେମ୍ବର ୩୧ ତାରିଖରେ ତାଙ୍କର ବାର୍ଷିକ ହିସାବ ପ୍ରସ୍ତୁତ କରନ୍ତି ।

## ସମାଧାନ

| | ଜାବ୍‌ଦା | | ଦାୟୀ | ଦାତା |
|---|---|---|---|---|
| ୧୯୭୦ | | | ଟଙ୍କା | ଟଙ୍କା |
| ଜାନୁ-୧ | ବ୍ୟାଙ୍କ ହିସାବ | ଦାୟୀ | ୫୧,୫୦୦ | |
| | ଋଣପତ୍ର ପ୍ରଚଳନଜନିତ କ୍ଷତି ହିସାବ | ଦାୟୀ | ୩,୦୦୦ | |
| | ଋଣପତ୍ର ହିସାବ ବାବଦ | | | ୫୦,୦୦୦ |
| | ଋଣପତ୍ର ପ୍ରଚଳନ ଅଧିମୂଲ୍ୟ ହି: ବାବଦ | | | ୧,୫୦୦ |
| | ଋଣପତ୍ର ପରିଶୋଧ ଅଧିମୂଲ୍ୟ ହି: ବାବଦ | | | ୩,୦୦୦ |
| | (୭% ଅଧିହାରରେ ପରିଶୋଧ ଋଣପତ୍ର ପ୍ରତି ଟ ୧୦୦ ହାରରେ ୫୦୦ ୫% ଋଣପତ୍ର ୩% ଅଧିହାରରେ ପ୍ରଚଳିତ ହେଲା ।) | | | |
| ଡିସେ- | | | ଟଙ୍କା | ଟଙ୍କା |
| ୩୧ | ଋଣପତ୍ର ପ୍ରଚଳନ ଅଧିମୂଲ୍ୟ ହିସାବ | ଦାୟୀ | ୧,୫୦୦ | |
| | ଋଣପତ୍ର ପ୍ରଚଳନଜନିତ କ୍ଷତି ହି: ବାବଦ | | | ୧,୫୦୦ |
| | (ଋଣପତ୍ର ପ୍ରଚଳନ ଅଧିମୂଲ୍ୟ ହିସାବରେ ବାକି ଋଣପତ୍ର ପ୍ରଚଳନଜନିତ କ୍ଷତି ହିସାବକୁ ସ୍ଥାନାନ୍ତରିତ କରାଗଲା । ) | | | |
| ୩୧ | ନିଟ୍ ଲଭ-କ୍ଷତି ହିସାବ | ଦାୟୀ | ୫୦୦ | |
| | ଋଣପତ୍ର ପ୍ରଚଳନଜନିତ କ୍ଷତି ହି: ବାବଦ | | | ୫୦୦ |
| | (ଋଣପତ୍ର ପ୍ରଚଳନଜନିତ ଅବଶିଷ୍ଟ କ୍ଷତିର ଏକ-ତୃତୀୟାଂଶ (୩,୦୦୦—୧,୫୦୦ ÷ ୩) ନିଟ୍ ଲଭ-କ୍ଷତି ହିସାବକୁ ସ୍ଥାନାନ୍ତରିତ କରାଗଲା । ) | | | |

| | ଜାବ୍‌ଦା | | ଦାୟୀ | ଦାତା |
|---|---|---|---|---|
| ୧୯୭୧ | | | ଟଙ୍କା | ଟଙ୍କା |
| ଡିସେ- | ନିଟ୍ ଲଭ-କ୍ଷତି ହିସାବ | ଦାୟୀ | ୫୦୦ | |
| ୩୧ | ଋଣପତ୍ର ପ୍ରଚଳନଜନିତ କ୍ଷତି ହି: ବାବଦ | | | ୫୦୦ |
| | ( ଋଣପତ୍ର ପ୍ରଚଳନଜନିତ କ୍ଷତିର ଏକ-ତୃତୀୟାଂଶ ନିଟ୍ ଲଭ-କ୍ଷତି ହିସାବକୁ ସ୍ଥାନାନ୍ତରିତ କରାଗଲା । ) | | | |

| | ଜାବ୍‌ଦା | ଦାୟୀ | ଦାତା |
|---|---|---|---|
| | | ଟଙ୍କା | ଟଙ୍କା |
| ୧୯୭୨ ଡିସେ-୩୧ | ନିଟ୍ ଲଭ-କ୍ଷତି ହିସାବ ଦାୟୀ<br>ଋଣପତ୍ର ପ୍ରଚଳନଜନିତ କ୍ଷତି ହି: ବାବଦ<br>( ଋଣପତ୍ର ପ୍ରଚଳନଜନିତ କ୍ଷତି ହିସାବର ଅବଶିଷ୍ଟ ବାକି ନିଟ୍ ଲଭ-କ୍ଷତି ହିସାବକୁ ସ୍ଥାନାନ୍ତରିତ ହେଲ ।) | ୫୦୦ | ୫୦୦ |
| ୩୧ | ଋଣପତ୍ର ହିସାବ ଦାୟୀ<br>ଋଣପତ୍ର ପରିଶୋଧ ଅଧିମୂଲ୍ୟ ହି: ଦାୟୀ<br>ଋଣପତ୍ରଧାରୀଙ୍କ ହିସାବ ବାବଦ<br>( ଋଣପତ୍ର ପରିଶୋଧ ପୂର୍ବରୁ ପ୍ରଥମୋକ୍ତ ଦୁଇଟି ହିସାବର ବାକି ଋଣପତ୍ରଧାରୀଙ୍କ ହିସାବକୁ ସ୍ଥାନାନ୍ତରିତ ହେଲ ।) | ୫୦,୦୦୦<br>୩,୦୦୦ | ୫୩,୦୦୦ |
| ୩୧ | ଋଣପତ୍ରଧାରୀଙ୍କ ହିସାବ ଦାୟୀ<br>ବ୍ୟାଙ୍କ୍ ହିସାବ ବାବଦ<br>(୭% ଅଧିହାରରେ ୫% ଋଣପତ୍ର ପରିଶୋଧ କରାଗଲ ।) | ୫୩,୦୦୦ | ୫୩,୦୦୦ |

## ବାର୍ଷିକ ଲଟାରୀ ପଦ୍ଧତିରେ ଋଣପତ୍ର ପରିଶୋଧ

ପୂର୍ବରୁ କୁହାଯାଇଛି ଯେ ଏକକାଳୀନ ଋଣପତ୍ର ବାବଦ ସମସ୍ତ ପରିମାଣ ଅର୍ଥ ପରିଶୋଧ କରାଗଲେ କମ୍ପାନୀର ଆର୍ଥିକ ଅବସ୍ଥା ଉପରେ ଯେଉଁ ଚାପ ପଡ଼େ ତାହାକୁ ଏଡ଼ାଇବା ନିମନ୍ତେ କେତେକ ସମୟରେ କମ୍ପାନୀ କେତେଗୋଟି ବାର୍ଷିକ କିସ୍ତିରେ ଏହି ଋଣପତ୍ର ପରିଶୋଧ କରନ୍ତି । ଯେତେ ପରିମାଣର ଅର୍ଥ ପ୍ରତି ବର୍ଷ ଦେୟ ହୁଏ ସେହି ପରିମାଣର ଅର୍ଥ ସକାଶେ ଲଭ ଓ କ୍ଷତି ବଣ୍ଟନ ହିସାବକୁ ଦାୟୀ କରାଯାଇ ସାଧାରଣ ସଞ୍ଚିତ ହିସାବକୁ ଦାତା କରାଯାଏ । ଏପରି କରିବାଦ୍ୱାରା କାର୍ଯ୍ୟକାରୀ ପୁଞ୍ଜି ଉପରେ ବିଶେଷ ଚାପ ପଡ଼େ ନାହିଁ । ଯଦି ଏହି ଋଣପତ୍ର ଅଧିହାରରେ ପରିଶୋଧ ହୁଏ ଅଥବା ଅବହାରରେ ପ୍ରଚଳିତ ହୋଇ ସମହାରରେ ଅଥବା ଅଧିହାରରେ ପ୍ରଚଳିତ ହୁଏ, ତାହାହେଲେ ଏହି କ୍ଷତି ପରିମାଣ ସକାଶେ ଋଣପତ୍ର ପ୍ରଚଳନଜନିତ କ୍ଷତି ହିସାବକୁ ଦାୟୀ କରାଯାଏ ଏବଂ ଏହାକୁ ଆନୁପାତିକ ହାରରେ ଋଣପତ୍ରର ପ୍ରଚଳନ କାଳ ମଧ୍ୟରେ ନିଟ୍ ଲଭ ଓ କ୍ଷତି ହିସାବକୁ ଦାୟୀ କରାଯାଇ ଅବଲେପନ କରାଯାଏ ।

### ଦୃଷ୍ଟାନ୍ତ (୩୦)

କ କମ୍ପାନୀ ଲିମିଟେଡ୍ ପ୍ରତି ଋଣପତ୍ର ଟ ୧୦୦ ହାରରେ ୪୫୦ ୫% ଋଣପତ୍ର ୧୯୭୦ ମସିହା ଜାନୁୟାରୀ ୧ ତାରିଖରେ ପ୍ରଚଳନ କରିଥିଲେ ଓ ଏହା ୩ ବର୍ଷ ମଧ୍ୟରେ ୪% ଅଧିହାରରେ ୩ ଗୋଟି ବାର୍ଷିକ କିସ୍ତିରେ ପରିଶୋଧ୍ୟ । ଆବଶ୍ୟକ ଜାବ୍ଦା ପ୍ରସ୍ତୁତ କର । ମନେକର ଯେ କମ୍ପାନୀ ଡିସେମ୍ବର ୩୧ ତାରିଖରେ ପ୍ରତି ବର୍ଷ ତାଙ୍କର ବାର୍ଷିକ ହିସାବ ପ୍ରସ୍ତୁତ କରନ୍ତି ଏବଂ କେଉଁ ନିର୍ଦ୍ଦିଷ୍ଟ ଋଣପତ୍ର ପରିଶୋଧ କରାଯିବ ତାହା ଲଟାରୀ-ଦ୍ୱାରା ସାବ୍ୟସ୍ତ କରନ୍ତି ।

ଜାବ୍ଦା

ଦାୟୀ ଦାତା

**ସମାଧାନ**

| | | | ଟଙ୍କା | ଟଙ୍କା |
|---|---|---|---|---|
| ୧୯୭୦ | ବ୍ୟାଙ୍କ୍ ହିସାବ | ଦାୟୀ | ୪୫,୦୦୦ | |
| ଜାନୁ-୧ | ଋଣପତ୍ର ପ୍ରଚଳନଜନିତ କ୍ଷତି ହିସାବ | ଦାୟୀ | ୧,୮୦୦ | |
| | ଋଣପତ୍ର ହିସାବ ବାବଦ | | | ୪୫,୦୦୦ |
| | ଋଣପତ୍ର ପରିଶୋଧ ଅଧିମୂଲ୍ୟ ହି: ବାବଦ | | | ୧,୮୦୦ |
| | ( ଋଣପତ୍ର ପ୍ରତି ଟ ୧୦୦ ହାରରେ ୪୫୦ ୫% ଋଣପତ୍ର ସମହାରରେ ପ୍ରଚଳିତ ହେଲା ଯାହା ୪% ଅଧିହାରରେ ପରିଶୋଧ୍ୟ ।) | | | |

| | | | ଟଙ୍କା | ଟଙ୍କା |
|---|---|---|---|---|
| ୧୯୭୦ | ନିଟ୍ ଲାଭ ଓ କ୍ଷତି ହିସାବ | ଦାୟୀ | ୯୦୦ | |
| ଡିସେ-୩୧ | ଋଣପତ୍ର ପ୍ରଚଳନଜନିତ କ୍ଷତି ହିସାବ ବାବଦ | | | ୯୦୦ |
| | ( ଋଣପତ୍ର ପ୍ରଚଳନଜନିତ କ୍ଷତିର ୩/୬ ଅଂଶ ନିଟ୍ ଲାଭ ଓ କ୍ଷତି ହିସାବକୁ ସ୍ଥାନାନ୍ତରିତ ହେଲା ।) | | | |
| ୩୧ | ଋଣପତ୍ର ହିସାବ | ଦାୟୀ | ୧୫,୦୦୦ | |
| | ଋଣପତ୍ର ପରିଶୋଧ ଅଧିମୂଲ୍ୟ ହିସାବ | ଦାୟୀ | ୬୦୦ | |
| | ଋଣପତ୍ରଧାରୀଙ୍କ ହିସାବ ବାବଦ | | | ୧୫,୬୦୦ |
| | ଋଣପତ୍ର ପରିଶୋଧ ପୂର୍ବରୁ ପ୍ରଥମୋକ୍ତ ହିସାବ ଦୁଇଟିର ବାକୀ ଋଣପତ୍ରଧାରୀଙ୍କ ହିସାବକୁ ସ୍ଥାନାନ୍ତରିତ ହେଲା ।) | | | |

ଜାବ୍ଦା

| | | ଦାୟୀ | ଦାତା |
|---|---|---|---|
| ୩୧ | ଋଣପତ୍ରଧାରୀଙ୍କ ହିସାବ ଦାୟୀ<br>ବ୍ୟାଙ୍କ ହିସାବ ବାବଦ<br>( ଏକ-ତୃତୀୟାଂଶ ଋଣପତ୍ରଧାରୀଙ୍କୁ ୪% ଅଧିହାରରେ ଋଣପତ୍ର ବାବଦ ଅର୍ଥ ଦିଆଗଲା ।) | ୧୫,୬୦୦ | ୧୫,୬୦୦ |
| ୩୧ | ଲାଭ ଓ କ୍ଷତି ବଣ୍ଟନ ହିସାବ ଦାୟୀ<br>ସାଧାରଣ ସଞ୍ଚିତ ହିସାବ ବାବଦ<br>( ଋଣପତ୍ର ପରିଶୋଧ ବାବଦ ଅର୍ଥ ସାଧାରଣ ସଞ୍ଚିତ ହିସାବକୁ ସ୍ଥାନାନ୍ତରିତ କରାଗଲା ।) | ୧୫,୦୦୦ | ୧୫,୦୦୦ |

ଜାବ୍ଦା

| | | ଦାୟୀ | ଦାତା |
|---|---|---|---|
| | | ଟଙ୍କା | ଟଙ୍କା |
| ୧୯୭୧<br>ଡିସେ-୩୧ | ନିଟ୍ ଲାଭ ଓ କ୍ଷତି ହିସାବ ଦାୟୀ<br>ଋଣପତ୍ର ପ୍ରଚଳନଜନିତ କ୍ଷତି ହିଃ ବାବଦ<br>( ଋଣପତ୍ର ପ୍ରଚଳନଜନିତ କ୍ଷତିର ⅓ ଅଂଶ ନିଟ୍ ଲାଭ ଓ କ୍ଷତି ହିସାବକୁ ସ୍ଥାନାନ୍ତରିତ ହେଲା ।) | ୬୦୦ | ୬୦୦ |
| ୩୧ | ଋଣପତ୍ର ହିସାବ ଦାୟୀ<br>ଋଣପତ୍ର ପରିଶୋଧ ଅଧିମୂଲ୍ୟ ହିସାବ ଦାୟୀ<br>ଋଣପତ୍ରଧାରୀଙ୍କ ହିସାବ ବାବଦ<br>( ଋଣପତ୍ର ପରିଶୋଧ ପୂର୍ବରୁ ପ୍ରଥମୋକ୍ତ ହିସାବ ଦୁଇଟିର ବାକି ଋଣପତ୍ରଧାରୀଙ୍କ ହିସାବକୁ ସ୍ଥାନାନ୍ତରିତ ହେଲା ।) | ୧୫,୦୦୦<br>୬୦୦ | <br><br>୧୫,୬୦୦ |
| ୩୧ | ଋଣପତ୍ରଧାରୀଙ୍କ ହିସାବ ଦାୟୀ<br>ବ୍ୟାଙ୍କ ହିସାବ ବାବଦ<br>( ଏକ-ତୃତୀୟାଂଶ ଋଣପତ୍ର ୪% ଅଧିହାରରେ ଋଣପତ୍ରଧାରୀଙ୍କୁ ପରିଶୋଧ କରାଗଲା । ) | ୧୫,୬୦୦ | ୧୫,୬୦୦ |

| | | ଦାୟୀ | ଦାତା |
|---|---|---|---|
| | | ଟଙ୍କା | ଟଙ୍କା |
| ୩୧ | ଲାଭ ଓ କ୍ଷତି ବଣ୍ଟନ ହିସାବ ଦାୟୀ | ୧୫,୦୦୦ | |
| | ସାଧାରଣ ସଞ୍ଚିତି ହିସାବ ବାବଦ | | ୧୫,୦୦୦ |
| | ( ଋଣପତ୍ର ପରିଶୋଧ ବାବଦ ଅର୍ଥ ସାଧାରଣ ସଞ୍ଚିତି ହିସାବକୁ ସ୍ଥାନାନ୍ତରିତ ହେଲା ।) | | |

ଜାବ୍‌ଦା

| | | ଦାୟୀ | ଦାତା |
|---|---|---|---|
| | | ଟଙ୍କା | ଟଙ୍କା |
| ୧୯୭୨ | ନିଟ୍ ଲାଭ ଓ କ୍ଷତି ହିସାବ ଦାୟୀ | ୩୦୦ | |
| ଡିସେ-୩୧ | ଋଣପତ୍ର ପ୍ରଚଳନଜନିତ କ୍ଷତି ହିଃ ବାବଦ | | ୩୦୦ |
| | ( ଋଣପତ୍ର ପ୍ରଚଳନଜନିତ କ୍ଷତିର ୧/୬ ଅଂଶ ନିଟ୍ ଲାଭ ଓ କ୍ଷତି ହିସାବକୁ ସ୍ଥାନାନ୍ତରିତ ହେଲା ।) | | |
| ୩୧ | ଋଣପତ୍ର ହିସାବ ଦାୟୀ | ୧୫,୦୦୦ | |
| | ଋଣପତ୍ର ପରିଶୋଧ ଅଧିମୂଲ୍ୟ ହିସାବ ଦାୟୀ | ୬୦୦ | |
| | ଋଣପତ୍ରଧାରୀଙ୍କ ହିସାବ ବାବଦ | | ୧୫,୬୦୦ |
| | (ଋଣପତ୍ର ପରିଶୋଧ ପୂର୍ବରୁ ଦ୍ରୁଥମୋକ୍ତ ହିସାବ ଦୁଇଟିର ବାକୀ ଋଣପତ୍ରଧାରୀଙ୍କ ହିସାବକୁ ସ୍ଥାନାନ୍ତରିତ ହେଲା ।) | | |
| ୩୧ | ଋଣପତ୍ରଧାରୀଙ୍କ ହିସାବ ଦାୟୀ | ୧୫,୬୦୦ | |
| | ବ୍ୟାଙ୍କ୍ ହିସାବ ବାବଦ | | ୧୫,୬୦୦ |
| | ( ଅବଶିଷ୍ଟ ଋଣପତ୍ର ୪% ଅଧିହାରରେ ଋଣପତ୍ରଧାରୀଙ୍କୁ ପରିଶୋଧ କରାଗଲା ।) | | |
| ୩୧ | ଲାଭ ଓ କ୍ଷତି ବଣ୍ଟନ ହିସାବ ଦାୟୀ | ୧୫,୦୦୦ | |
| | ସାଧାରଣ ସଞ୍ଚିତି ହିସାବ ବାବଦ | | ୧୫,୦୦୦ |
| | ( ଋଣପତ୍ର ପରିଶୋଧ ବାବଦ ଅର୍ଥ ସାଧାରଣ ସଞ୍ଚିତି ହିସାବକୁ ସ୍ଥାନାନ୍ତରିତ ହେଲା ।) | | |

## ପ୍ରତପୂରକ ପାଣ୍ଠି ପଦ୍ଧତରେ ଋଣପତ୍ର ପରିଶୋଧ

### ଦୃଷ୍ଟାନ୍ତ (୩୧)

କ କମ୍ପାନୀ ଲିମିଟେଡ୍ ୧୯୭୦ ମସିହା ଜାନୁୟାରୀ ୧ ତାରିଖରେ ପ୍ରତ ଋଣପତ୍ର ଟ ୧୦୦ ହାରରେ ୪୦୦ ଋଣପତ୍ର ସମହାରରେ ପ୍ରଚଳନ କରିଥିଲେ । ଏହି ଋଣପତ୍ର-ମୂଳଧନ ୩ ବର୍ଷ ପରେ ସମହାରରେ ପରିଶୋଧ ।

ଋଣପତ୍ର ପରିଶୋଧ ନିମନ୍ତେ ନଗଦ ଅର୍ଥର ବ୍ୟବସ୍ଥା କରିବା ଉଦ୍ଦେଶ୍ୟରେ କମ୍ପାନୀ ଏକ ପ୍ରତପୂରକ ପାଣ୍ଠି ଗଢ଼ିଥିଲେ ଓ ଆବଶ୍ୟକ ପରିମାଣ ଅର୍ଥ ପ୍ରତିବର୍ଷ ଚକ୍ରବୃଦ୍ଧି ହାରରେ ବାର୍ଷିକ ନଟ୍ ୫% ସୁଧ ଆଦାୟ ଦେଉଥିବା ସରକାରୀ କାଗଜରେ ବିନିଯୋଗ କରିଥିଲେ । ୧୯୭୨ ମସିହା ଡିସେମ୍ବର ୩୧ ତାରିଖରେ ଏହି ସରକାରୀ କାଗଜପତ୍ର ବିନା ଲାଭ ଅଥବା କ୍ଷତିରେ ବର୍ଜିତ ହୋଇଥିଲା ଓ କମ୍ପାନୀ ସେହି ତାରିଖରେ ଋଣପତ୍ର ପରିଶୋଧ କରିଥିଲେ । ତିନି ବର୍ଷର ଆବଶ୍ୟକ ଖତିୟାନ ହିସାବ ପ୍ରସ୍ତୁତ କର ।

ପ୍ରତିପୂରକ ପାଣ୍ଠି ଟେବୁଲ ଅନୁଯାୟୀ ବାର୍ଷିକ ଶତକଡ଼ା ୫ ହାର ସୁଧରେ ଟ ୧ ସକାଶେ ବାର୍ଷିକ କିସ୍ତିର ପରିମାଣ ଟ ୦.୩୧୭୨୦୮ ଅଟେ ।

ଖତିୟାନ ହିସାବ

**ସମାଧାନ**

ଦାୟୀ ଋଣପତ୍ର ହିସାବ ଦାତା

| ୧୯୭୦ | | ଟଙ୍କା | ୧୯୭୦ | | ଟଙ୍କା |
|---|---|---|---|---|---|
| ଡିସେ-୩୧ | ବାଙ୍କ ଗଡ଼ଲ | ୪୦,୦୦୦ | ଜାନୁ-୧ | ବ୍ୟାଙ୍କ୍ ହିସାବ ବାବଦ | ୪୦,୦୦୦ |
| ୧୯୭୧ | | | ୧୯୭୧ | | |
| ଡିସେ-୩୧ | ବାକ୍ସି ଗଡ଼ଲ | ୪୦,୦୦୦ | ଜାନୁ-୧ | ପୂର୍ବ ବାକି ବାବଦ | ୪୦,୦୦୦ |
| ୧୯୭୨ | | | ୧୯୭୨ | | |
| ଡିସେ-୩୧ | ଋଣପତ୍ରଧାରୀଙ୍କ ହିସାବ ବାବଦ | ୪୦,୦୦୦ | ଜାନୁ-୧ | ପୂର୍ବ ବାକି ବାବଦ | ୪୦,୦୦୦ |

## ପ୍ରତିପୂରକ ପାଣ୍ଠି ହିସାବ

| ଦାୟୀ | | ଟଙ୍କା | ଦାତା | | ଟଙ୍କା |
|---|---|---|---|---|---|
| ୧୯୭୦ | | | ୧୯୭୦ | | |
| ଡିସେ-୩୧ | ବାକି ଗଡ଼ିଲ | ୧୨,୬୩୮ | ଡିସେ-୩୧ | ଲାଭ ଓ କ୍ଷତି ବଣ୍ଟନ ହିସାବ ବାବଦ | ୧୨,୬୩୮ |
| | | | | | ୧୨,୬୩୮ |
| ଡିସେ-୩୧ | ବାକି ଗଡ଼ିଲ | ୨୭,୦୧୦ | ୧୯୭୧ | | |
| | | | ଜାନୁ-୧ | ପୂର୍ବ ବାକି ବାବଦ | ୭୩୪ |
| | | | ଡିସେ-୩୧ | ବ୍ୟାଙ୍କ ହିସାବ ବାବଦ | |
| | | | ,, | ଲାଭ ଓ କ୍ଷତି ବଣ୍ଟନ ହିସାବ ବାବଦ | ୧୨,୬୩୮ |
| | | ୨୭,୦୧୦ | | | ୨୭,୦୧୦ |
| ୧୯୭୨ | | | ୧୯୭୨ | | |
| ଡିସେ-୩୧ | ସାଧାରଣ ସଞ୍ଚିତି ହିସାବ ବାବଦ | ୪୦,୦୦୦ | ଜାନୁ-୧ | ପୂର୍ବ ବାକି ବାବଦ | ୨୭,୦୧୦ |
| | | | ଡିସେ-୩୧ | ବ୍ୟାଙ୍କ ହିସାବ ବାବଦ | ୧,୩୦୦ |
| | | | ,, | ଲାଭ ଓ କ୍ଷତି ବଣ୍ଟନ ହିସାବ ବାବଦ | ୧୨,୬୯୦ |
| | | ୪୦,୦୦୦ | | | ୪୦,୦୦୦ |

## ପ୍ରତିପୂରକ ପାଣ୍ଠି ବିନିଯୋଗ ହିସାବ

| ଦାୟୀ | | ଟଙ୍କା | ଦାତା | | ଟଙ୍କା |
|---|---|---|---|---|---|
| ୧୯୭୦ | | | ୧୯୭୦ | | |
| ଡିସେ-୩୧ | ବ୍ୟାଙ୍କ ହିସାବ ବାବଦ | ୧୨,୬୩୮ | ଡିସେ-୩୧ | ବାକି ଗଡ଼ିଲ | ୧୨,୬୩୮ |
| ୧୯୭୧ | | | ଡିସେ-୩୧ | ବାକି ଗଡ଼ିଲ | ୨୭,୦୧୦ |
| ଜାନୁ-୧ | ପୂର୍ବ ବାକି ବାବଦ | ୧୨,୬୩୮ | | | |
| ଡିସେ-୩୧ | ବ୍ୟାଙ୍କ ହିସାବ ବାବଦ | ୧୩,୩୨୨ | | | |
| | | ୨୭,୦୧୦ | | | ୨୭,୦୧୦ |
| ୧୯୭୨ | | | ୧୯୭୨ | | |
| ଜାନୁ-୧ | ପୂର୍ବ ବାକି ବାବଦ | ୨୭,୦୧୦ | ଡିସେ-୩୧ | ବ୍ୟାଙ୍କ ହିସାବ ବାବଦ | ୨୭,୦୧୦ |

| ଡାହ୍ଣୀ | ସାଧାରଣ ସଞ୍ଚିତ ହିସାବ | | ଦାତା |
|---|---|---|---|
| | ଟଙ୍କା | ୧୯୭୨ | ଟଙ୍କା |
| | | ଡିସେ-୩୧ ପ୍ରତିପୂରକ ପାଣ୍ଠି ହି: ବାବଦ | ୪୦,୦୦୦ |

| ଡାହ୍ଣୀ | ଋଣପତ୍ରଧାରୀଙ୍କ ହିସାବ | | ଦାତା |
|---|---|---|---|
| ୧୯୭୨ | ଟଙ୍କା | ୧୯୭୨ | ଟଙ୍କା |
| ଡିସେ-୩୧ ବ୍ୟାଙ୍କ୍ ହିସାବ ବାବଦ | ୪୦,୦୦୦ | ଡିସେ-୩୧ ଋଣପତ୍ର ହି: ବାବଦ | ୪୦,୦୦୦ |

ଦୃଷ୍ଟାନ୍ତ (୩୨)

କ କମ୍ପାନୀ ଲିମିଟେଡ୍ ୧୯୭୦ ମସିହା ଜାନୁୟାରୀ ୧ ତାରିଖରେ ପ୍ରତି ଋଣପତ୍ର ଟ ୧୦୦ ହାରରେ ୩୦୦ ଋଣପତ୍ର ସମହାରରେ ପ୍ରଚଳନ କରିଥିଲେ । ଏହି ଋଣପତ୍ର-ଗୁଡ଼ିକ ୫% ଅଧିହାରରେ ୩ ବର୍ଷ ପରେ ପରିଶୋଧ ଥିଲା ।

ଋଣପତ୍ର ପରିଶୋଧ ନିମନ୍ତେ ନଗଦ ଅର୍ଥର ବ୍ୟବସ୍ଥା କରିବା ଉଦ୍ଦେଶ୍ୟରେ କମ୍ପାନୀ ପ୍ରତିପୂରକ ପାଣ୍ଠି ପଦ୍ଧତି ଅନୁଯାୟୀ ଏକ ଋଣପତ୍ର ପରିଶୋଧ ପାଣ୍ଠି ଗଢ଼ିବା ପାଇଁ ନିଷ୍ପତ୍ତି ଗ୍ରହଣ କରିଥିଲେ ଓ ଆବଶ୍ୟକ ପରିମାଣର ଅର୍ଥ ପ୍ରତିବର୍ଷ ଚକ୍ରବୃଦ୍ଧି ହାରରେ ବାର୍ଷିକ ନିଟ୍ ୪% ସୁଧ ଆଦାୟ ଦେଉଥିବା ସରକାରୀ କାଗଜରେ ବିନିଯୋଗ କରିବାକୁ ସ୍ଥିର କରିଥିଲେ । ୧୯୭୨ ମସିହା ଡିସେମ୍ବର ୩୧ ତାରିଖରେ ଋଣପତ୍ର ପରିଶୋଧ ବିନିଯୋଗ ବିକ୍ରୟରୁ ଟ ୧୯,୫୯୫ ମିଳିଥିଲା ।

ଉପ୍ରୁକ୍ତ ୩ ବର୍ଷର ଖତିୟାନ ହିସାବଗୁଡ଼ିକ ପ୍ରସ୍ତୁତ କର ।

ଶତକଡ଼ା ବାର୍ଷିକ ୪% ଚକ୍ରବୃଦ୍ଧି ସୁଧରେ ୩ ବର୍ଷ ପରେ ଟ୧ ପାଇବା ନିମନ୍ତେ ପ୍ରତିପୂରକ ପାଣ୍ଠି ଟେବୁଲ ଅନୁଯାୟୀ ପ୍ରତି ବର୍ଷ ଟ ୦.୩୨୦୩୪୮ ବିନିଯୋଗ କରିବା ଆବଶ୍ୟକ ।

## ସମାଧାନ

| ଡାହ୍ଣୀ | ଋଣପତ୍ର ହିସାବ | | ଦାତା |
|---|---|---|---|
| ୧୯୭୦ | ଟଙ୍କା | ୧୯୭୦ | ଟଙ୍କା |
| ଡିସେ-୩୧ ବାକୀ ଗଡ଼ିଲା | ୩୦,୦୦୦ | ଜାନୁ-୧ ବ୍ୟାଙ୍କ୍ ହି: ବାବଦ | ୩୦,୦୦୦ |
| ୧୯୭୧ | | ୧୯୭୧ | |
| ଡିସେ-୩୧ ବାକୀ ଗଡ଼ିଲା | ୩୦,୦୦୦ | ଜାନୁ-୧ ପୂର୍ବ ବାକୀ ବାବଦ | ୩୦,୦୦୦ |
| ୧୯୭୨ | | ୧୯୭୨ | |
| ଡିସେ-୩୧ ଋଣପତ୍ରଧାରୀଙ୍କ ହି: ବାବଦ | ୩୦,୦୦୦ | ଜାନୁ-୧ ପୂର୍ବ ବାକୀ ବାବଦ | ୩୦,୦୦୦ |

ଦାସ୍ତୀ ଋଣପତ୍ର ପରିଶୋଧ ଅଧିମୂଲ୍ୟ ହିସାବ ଦାତା

| | ଟଙ୍କା | | ଟଙ୍କା |
|---|---|---|---|
| ୧୯୭୦ | | ୧୯୭୦ | |
| ଡିସେ-୩୧ ବାକୀ ଗଡ଼ିଲା | ୧,୫୦୦ | ଜାନୁ-୧ ଋଣପତ୍ର ପ୍ରଚଳନଜନିତ କ୍ଷତି ହିସାବ ବାବଦ | ୧,୫୦୦ |
| ୧୯୭୧ | | ୧୯୭୧ | |
| ଡିସେ-୩୧ ବାକୀ ଗଡ଼ିଲା | ୧,୫୦୦ | ଜାନୁ-୧ ପୂର୍ବ ବାକୀ ବାବଦ | ୧,୫୦୦ |
| ୧୯୭୨ | | ୧୯୭୨ | |
| ଡିସେ-୩୧ ଋଣପତ୍ରଧାରୀଙ୍କ ହି: ବାବଦ | ୧,୫୦୦ | ଜାନୁ-୧ ପୂର୍ବ ବାକୀ ବାବଦ | ୧,୫୦୦ |

ଦାସ୍ତୀ ଋଣପତ୍ର ପ୍ରଚଳନଜନିତ କ୍ଷତି ହିସାବ ଦାତା

| | ଟଙ୍କା | | ଟଙ୍କା |
|---|---|---|---|
| ୧୯୭୦ | | ୧୯୭୦ | |
| ଜାନୁ-୧ ଋଣପତ୍ର ପରିଶୋଧ ଅଧିମୂଲ୍ୟ ହି: ବାବଦ | ୧,୫୦୦ | ଡିସେ-୩୧ ନିଟ୍ ଲାଭ ଓ କ୍ଷତି ହି: ବାବଦ | ୫୦୦ |
| | | ୩୧ ବାକୀ ଗଡ଼ିଲା | ୧,୦୦୦ |
| | ୧,୫୦୦ | | ୧,୫୦୦ |
| ୧୯୭୧ | | ୧୯୭୧ | |
| ଜାନୁ-୧ ପୂର୍ବ ବାକୀ ବାବଦ | ୧,୦୦୦ | ଡିସେ-୩୧ ନିଟ୍ ଲାଭ ଓ କ୍ଷତି ହି: ବାବଦ | ୫୦୦ |
| | | ୩୧ ବାକୀ ଗଡ଼ିଲା | ୫୦୦ |
| | ୧,୦୦୦ | | ୧,୦୦୦ |
| ୧୯୭୨ | | ୧୯୭୨ | |
| ଜାନୁ-୧ ପୂର୍ବ ବାକୀ ବାବଦ | ୫୦୦ | ଡିସେ-୩୧ ନିଟ୍ ଲାଭ ଓ କ୍ଷତି ହି: ବାବଦ | ୫୦୦ |

## ଋଣପତ୍ର ପରିଶୋଧ ପାଣ୍ଠି ହିସାବ

| ଦାୟୀ | ଟଙ୍କା | ଦାତା | ଟଙ୍କା |
|---|---|---|---|
| ୧୯୭୦ | | ୧୯୭୦ | |
| ଡିସେ-୩୧ ବାକି ଗଡ଼ିଲା | ୯,୬୧୦ | ଡିସେ-୩୧ ଲାଭ ଓ କ୍ଷତି ବଣ୍ଟନ ହି: ବାବଦ | ୯,୬୧୦ |
| ୧୯୭୧ | | ୧୯୭୧ | |
| ଡିସେ-୩୧ ବାକି ଗଡ଼ିଲା | ୧୯୬୦୫ | ଜାନୁ-୧ ପୂର୍ବ ବାକି ବାବଦ | ୯,୬୧୦ |
| | | ଡିସେ-୩୧ ବ୍ୟାଙ୍କ୍ ହି: ବାବଦ (ସୁଧ) | ୩୮୫ |
| | | ୩୧ ଲାଭ ଓ କ୍ଷତି ବଣ୍ଟନ ହି: ବାବଦ | ୯,୬୧୦ |
| | ୧୯୬୦୫ | | ୧୯,୬୦୫ |
| ୧୯୭୨ | | ୧୯୭୨ | |
| ଡିସେ-୩୧ ଋଣପତ୍ର ପରିଶୋଧ ପାଣ୍ଠି ବିନିଯୋଗ ହି: ବାବଦ | ୧୦ | ଜାନୁ-୧ ପୂର୍ବ ବାକି ବାବଦ | ୧୯୬୦୫ |
| ୩୧ ସାଧାରଣ ସଞ୍ଚିତ ହି: ବାବଦ | ୨୯,୯୯୦ | ଡିସେ-୩୧ ବ୍ୟାଙ୍କ୍ ହି: ବାବଦ (ସୁଧ) | ୭୮୫ |
| | | ୩୧ ଲାଭ ଓ କ୍ଷତି ବଣ୍ଟନ ହି: ବାବଦ | ୯,୬୧୦ |
| | ୩୦,୦୦୦ | | ୩୦,୦୦୦ |

## ଋଣପତ୍ର ପରିଶୋଧ ପାଣ୍ଠି ବିନିଯୋଗ ହିସାବ

| ଦାୟୀ | ଟଙ୍କା | ଦାତା | ଟଙ୍କା |
|---|---|---|---|
| ୧୯୭୦ | | ୧୯୭୦ | |
| ଡିସେ-୩୧ ବ୍ୟାଙ୍କ୍ ହିସାବ ବାବଦ | ୯,୬୧୦ | ଡିସେ-୩୧ ବାକି ଗଡ଼ିଲା | ୯,୬୧୦ |
| ୧୯୭୧ | | ୧୯୭୧ | |
| ଜାନୁ-୧ ପୂର୍ବବାକି ବାବଦ | ୯,୬୧୦ | ଡିସେ-୩୧ ବାକି ଗଡ଼ିଲା | ୧୯,୬୦୫ |
| ଡିସେ-୩୧ ବ୍ୟାଙ୍କ୍ ହି: ବାବଦ | ୯,୯୯୫ | | |
| | ୧୯,୬୦୫ | | ୧୯,୬୦୫ |
| ୧୯୭୨ | | ୧୯୭୨ | |
| ଜାନୁ-୧ ପୂର୍ବ ବାକି ବାବଦ | ୧୯,୬୦୫ | ଡିସେ-୩୧ ବ୍ୟାଙ୍କ୍ ହି: ବାବଦ | ୧୯,୫୯୫ |
| | | ୩୧ ଋଣପତ୍ର ପରିଶୋଧ ପାଣ୍ଠି ହିସାବ ବାବଦ— (ବିନିଯୋଗ ବିକ୍ରୟରୁ କ୍ଷତି ସ୍ଥାନାନ୍ତରିତ ହେଲା) | ୧୦ |
| | ୧୯୬୦୫ | | ୧୯,୬୦୫ |

ଡେବିଟ୍ ... 

| ଡାକ୍ତୀ | | ଋଣପତ୍ରଧାରୀଙ୍କ ହିସାବ | ଡାକ୍ତା |
|---|---|---|---|
| ୧୯୭୨ | ଟଙ୍କା | ୧୯୭୨ | ଟଙ୍କା |
| ଡିସେ-୩୧ ବ୍ୟାଙ୍କ୍ ହି: ବାବଦ | ୩୧,୫୦୦ | ଡିସେ-୩୧ ଋଣପତ୍ର ହି. ବାବଦ | ୩୦,୦୦୦ |
| | | ୩୧ ଋଣପତ୍ର ପରିଶୋଧ ଅଧିମୂଲ୍ୟ ହି: ବାବଦ | ୧,୫୦୦ |
| | ୩୧,୫୦୦ | | ୩୧,୫୦୦ |

| ଡାକ୍ତୀ | ସାଧାରଣ ସଞ୍ଚିତ ହିସାବ | | ଡାକ୍ତା |
|---|---|---|---|
| | ଟଙ୍କା | ୧୯୭୨ | ଟଙ୍କା |
| | | ଡିସେ-୩୧ ଋଣପତ୍ର ପରିଶୋଧ ପାଣ୍ଠି ହି. ବାବଦ | ୨୯,୯୧୦ |

## ବୀମାପତ୍ର ସାହାଯ୍ୟରେ ଋଣପତ୍ର ପରିଶୋଧ

(କ) ବୀମାପତ୍ରର ମିଆଦ ପୂର୍ତ୍ତି ନ ହେବା ପର୍ଯ୍ୟନ୍ତ ନିମ୍ନଲିଖିତ ଜାବ୍ଦାଗୁଡ଼ିକ ପ୍ରତିବର୍ଷ ଆବଶ୍ୟକ ହୁଏ—

(୧) ଋଣପତ୍ର ପରିଶୋଧ ପାଣ୍ଠି ଗଢ଼ିବା ପାଇଁ ପ୍ରତିବର୍ଷ ବଣ୍ଟନଯୋଗ୍ୟ ଲାଭରୁ ଆବଶ୍ୟକ ପରିମାଣ ପୃଥକ୍ କରିବା ପାଇଁ—

ଲାଭ ଓ କ୍ଷତି ବଣ୍ଟନ ହିସାବ . ଡାକ୍ତୀ
ଋଣପତ୍ର ପରିଶୋଧ ପାଣ୍ଠି ହିସାବ ବାବଦ

(୨) ବୀମା କମ୍ପାନୀକୁ ପ୍ରତିବର୍ଷ ପ୍ରିମିୟମ ଦେବା ପାଇଁ—

ଋଣପତ୍ର ପରିଶୋଧ ବୀମାପତ୍ର ହିସାବ ଡାକ୍ତୀ
ନଗଦ ତହବିଲ/ବ୍ୟାଙ୍କ୍ ହିସାବ ବାବଦ

(୩) ବୀମାପତ୍ର ପରିମାଣ ବାବଦ ସୁଧକୁ ହିସାବଭୁକ୍ତ କରିବା ପାଇଁ—

ଋଣପତ୍ର ପରିଶୋଧ ବୀମାପତ୍ର ହିସାବ ଡାକ୍ତୀ
ଋଣପତ୍ର ପରିଶୋଧ ପାଣ୍ଠି ହିସାବ ବାବଦ

(ଖ) ବୀମାପତ୍ରର ମିଆଦ ପୂର୍ତ୍ତି ହେଲେ—

(୧) ବୀମା କମ୍ପାନୀଠାରୁ ବୀମାପତ୍ର ବାବଦ ଅର୍ଥ ମିଳିଲେ—

ନଗଦ ତହବିଲ/ବ୍ୟାଙ୍କ ହିସାବ ଦାୟୀ

ଋଣପତ୍ର ପରିଶୋଧ ବୀମାପତ୍ର ହିସାବ ବାବଦ

(୨) ଋଣପତ୍ର ପରିଶୋଧ ପାଣ୍ଠି ହିସାବର ବାଳ୍କିକୁ ସାଧାରଣ ସଞ୍ଚିତ ହିସାବକୁ ସ୍ଥାନାନ୍ତରିତ କରିବା ପାଇଁ—

ଋଣପତ୍ର ପରିଶୋଧ ପାଣ୍ଠି ହିସାବ ଦାୟୀ

ସାଧାରଣ ସଞ୍ଚିତ ହିସାବ ବାବଦ

(୩) ଋଣପତ୍ର ହିସାବର ବାଳ୍କିକୁ ଋଣପତ୍ରଧାରୀଙ୍କ ହିସାବକୁ ସ୍ଥାନାନ୍ତରିତ କରିବା ପାଇଁ –

ଋଣପତ୍ର ହିସାବ ଦାୟୀ

ଋଣପତ୍ରଧାରୀଙ୍କ ହିସାବ ବାବଦ

(୪) ଋଣପତ୍ରଧାରୀଙ୍କୁ ଅର୍ଥ ପ୍ରଦାନ କରିବା ପାଇଁ—

ଋଣପତ୍ରଧାରୀଙ୍କ ହିସାବ ଦାୟୀ

ନଗଦ ତହବିଲ/ବ୍ୟାଙ୍କ ହିସାବ ବାବଦ

ଉଦ୍ବୃତ୍ତ ପତ୍ରର ଦାୟ ଓ ଦେଣା ପାର୍ଶ୍ୱରେ ଏହା ନିମ୍ନଲିଖିତ ରୂପେ ପ୍ରଦର୍ଶିତ ହେବ—

| ଦାୟ ଓ ଦେଣା | ଟଙ୍କା | ଟଙ୍କା |
|---|---|---|
| ଋଣପତ୍ର ... ... | | |
| ବିଯୁକ୍ତ ପରିଶୋଧିତ ପରିମାଣ | ... | |

## ଦୃଷ୍ଟାନ୍ତ (୩୨)

୧୯୭୦ ମସିହା ଜାନୁୟାରୀ ୧ ତାରିଖରେ ସାରଥି ଏଣ୍ଡ୍ କୋ: ଲିମିଟେଡ୍ ପ୍ରତି ଋଣପତ୍ର ଟ ୧୦୦ ହାରରେ ୨୦୦ ୫% ଋଣପତ୍ର ସମହାରରେ ପ୍ରଚଳନ କରିଥିଲେ । ଏହି ଋଣପତ୍ର ୩ ବର୍ଷ ପରେ ସମହାରରେ ପରିଶୋଧ । କମ୍ପାନୀ ଏହି ଋଣପତ୍ରର ପରିଶୋଧ ନିମନ୍ତେ ଏକ ଋଣପତ୍ର ପରିଶୋଧ ହିସାବ ପ୍ରସ୍ତୁତ କରିଥିଲେ ଓ ପ୍ରତିବର୍ଷ ଆବଶ୍ୟକ ପରିମାଣର ଅର୍ଥ ବଣ୍ଟନଯୋଗ୍ୟ ଲଭରୁ ପୃଥକ୍ କରିଥିଲେ । ସମପରିମାଣର ଅର୍ଥ ପ୍ରତିବର୍ଷ ପ୍ରିମିୟମ ରୂପେ ଏକ ବୀମା କମ୍ପାନୀକୁ ଦିଆଯାଉଥିଲା । ପ୍ରତିପୂରକ ପାଣ୍ଠି ଟେବୁଲ ଅନୁଯାୟୀ ବାର୍ଷିକ ଶତକଡ଼ା ୩% ଚକ୍ରବୃଦ୍ଧି ସୁଧ ହାରରେ ପ୍ରତିବର୍ଷ ଟ ୬,୮୨.୧୨ ପ୍ରିମିୟମ ରୂପେ ଦେୟ ଥିଲା ।

ତିନି ବର୍ଷର ଖତିୟାନ ହିସାବ ପ୍ରସ୍ତୁତ କର ।

# ସମାଧାନ

ଦାସ୍ତୀ — ଋଣପତ୍ର ହିସାବ — ଦାତା

| ତାରିଖ | ବିବରଣୀ | ଟଙ୍କା | ତାରିଖ | ବିବରଣୀ | ଟଙ୍କା |
|---|---|---|---|---|---|
| ୧୯୭୦ | | | ୧୯୭୦ | | |
| ଡିସେ-୩୧ | ବାଙ୍କୀ ଗଡ଼ାଇଲ | ୧୦,୦୦୦ | ଜାନୁ-୧ | ବ୍ୟାଙ୍କ୍ ହିସାବ ବାବଦ | ୧୦,୦୦୦ |
| ୧୯୭୧ | | | ୧୯୭୧ | | |
| ଡିସେ-୩୧ | ବାଙ୍କୀ ଗଡ଼ାଇଲ | ୧୦,୦୦୦ | ଜାନୁ-୧ | ପୂର୍ବ ବାଙ୍କୀ ବାବଦ | ୧୦,୦୦୦ |
| ୧୯୭୨ | | | ୧୯୭୨ | | |
| ଡିସେ-୩୧ | ଋଣପତ୍ରଧାରୀଙ୍କ ହିସାବ ବାବଦ | ୧୦,୦୦୦ | ଜାନୁ-୧ | ପୂର୍ବ ବାଙ୍କୀ ବାବଦ | ୧୦,୦୦୦ |

ଦାସ୍ତୀ — ଋଣପତ୍ରଧାରୀଙ୍କ ହିସାବ — ଦାତା

| ତାରିଖ | ବିବରଣୀ | ଟଙ୍କା | ତାରିଖ | ବିବରଣୀ | ଟଙ୍କା |
|---|---|---|---|---|---|
| ୧୯୭୨ | | | ୧୯୭୨ | | |
| ଡିସେ-୩୧ | ବ୍ୟାଙ୍କ୍ ହିସାବ ବାବଦ | ୧୦,୦୦୦ | ଡିସେ-୩୧ | ଋଣପତ୍ର ହିସାବ ବାବଦ | ୧୦,୦୦୦ |

ଋଣପତ୍ର ପରିଶୋଧ ହିସାବ

| ତାରିଖ | ବିବରଣୀ | ଟଙ୍କା | ତାରିଖ | ବିବରଣୀ | ଟଙ୍କା |
|---|---|---|---|---|---|
| ୧୯୭୦ | | | ୧୯୭୦ | | |
| ଡିସେ-୩୧ | ବାଙ୍କୀ ଗଡ଼ାଇଲ | ୬,୪୭୦.୫୮ | ଡିସେ-୩୧ | ଲାଭ କ୍ଷତି ବଣ୍ଟନ ହିସାବ ବାବଦ | ୬,୨୮୨.୧୨ |
| | | | ୩୧ | ଋଣପତ୍ର ପରିଶୋଧ ସୀମାପତ୍ର ହିସାବ ବାବଦ (ଟ ୬,୨୮୨.୧୨ ର ଶତକଡ଼ା ୩% ହାରରେ ସୁଧ ) | ୧୮୮.୪୬ |
| | | ୬,୪୭୦.୫୮ | | | ୬,୪୭୦.୫୮ |

## ଋଣପତ୍ର ପରିଶୋଧ ହିସାବ

| | | ଟଙ୍କା | | | ଟଙ୍କା |
|---|---|---|---|---|---|
| ୧୯୭୧ | | | ୧୯୭୧ | | |
| ଡିସେ-୩୧ | ବାକି ଗଡ଼ିଲା | ୧୩,୧୩୫.୨୮ | ଜାନୁ-୧ | ପୂର୍ବ ବାକି ବାବଦ | ୬,୪୭୦.୭୮ |
| | | | ଡିସେ-୩୧ | ଲଭ ଓ କ୍ଷତି ବଣ୍ଟନ ହିସାବ ବାବଦ | ୬,୨୮୨.୧୨ |
| | | | ୩୧ | ଋଣପତ୍ର ପରିଶୋଧ ବୀମାପତ୍ର ହିସାବ (ଟ ୧୨,୭୫୨.୭୦ର ସୁଧ) | ୩୮୨.୫୮ |
| | | ୧୩,୧୩୫.୨୮ | | | ୧୩,୧୩୫.୨୮ |
| ୧୯୭୨ | | | ୧୯୭୨ | | |
| ଡିସେ-୩୧ | ସାଧାରଣ ସଞ୍ଚିତ ହି: ବାବଦ | ୨୦,୦୦୦ | ଜାନୁ-୧ | ପୂର୍ବ ବାକି ବାବଦ | ୧୩,୧୩୫.୨୮ |
| | | | ଡିସେ-୩୧ | ଲଭ ଓ କ୍ଷତି ବଣ୍ଟନ ବାବଦ | ୬,୨୮୨.୧୨ |
| | | | ୩୧ | ଋଣପତ୍ର ପରିଶୋଧ ବୀମାପତ୍ର ହି:ବାବଦ (ଟ ୧୯,୪୧୭.୪୦ର ସୁଧ) | ୫୮୨.୬୦ |
| | | ୨୦,୦୦୦ | | | ୨୦,୦୦୦,୦୦ |

## ଋଣପତ୍ର ପରିଶୋଧ ବୀମାପତ୍ର ହିସାବ

| ଡାହାଣି | | | | | ଧାରା |
|---|---|---|---|---|---|
| ୧୯୭୦ | | ଟଙ୍କା | ୧୯୭୦ | | ଟଙ୍କା |
| ଜାନୁ-୧ | ବ୍ୟାଙ୍କ ହିସାବ ବାବଦ (ପ୍ରିମିୟମ) | ୬,୨୮୨.୧୨ | ଡିସେ-୩୧ | ବାକୀ ଗଡ଼ିଲା | ୬,୪୭୦.୫୮ |
| ଡିସେ-୩୧ | ଋଣପତ୍ର ପରିଶୋଧ ହିସାବ ବାବଦ (ସୁଧ) | ୧୮୮.୪୬ | | | |
| | | ୬,୪୭୦.୫୮ | | | ୬,୪୭୦.୫୮ |
| ୧୯୭୧ | | | ୧୯୭୧ | | |
| ଜାନୁ-୧ | ପୂର୍ବ ବାକୀ ବାବଦ | ୬,୪୭୦.୫୮ | ଡିସେ-୩୧ | ବାକୀ ଗଡ଼ିଲା | ୧୩,୧୩୫.୧୮ |
| ୧ | ବ୍ୟାଙ୍କ ହିସାବ ବାବଦ (ପ୍ରିମିୟମ) | ୬,୨୮୨.୧୨ | | | |
| ଡିସେ-୩୧ | ଋଣପତ୍ର ପରିଶୋଧ ହିସାବ ବାବଦ (ସୁଧ) | ୩୮୨.୫୮ | | | |
| | | ୧୩,୧୩୫.୧୮ | | | ୧୩,୧୩୫.୧୮ |
| ୧୯୭୨ | | | ୧୯୭୨ | | |
| ଜାନୁ-୧ | ପୂର୍ବ ବାକୀ ବାବଦ | ୧୩,୧୩୫.୧୮ | ଡିସେ-୩୧ | ବ୍ୟାଙ୍କ ହିସାବ ବାବଦ (ବୀମାପତ୍ର ବାବଦ ଅର୍ଥ ମିଳିଲା ) | ୧୦,୦୦୦ |
| ୧ | ବ୍ୟାଙ୍କ ହିସାବ ବାବଦ (ପ୍ରିମିୟମ) | ୬,୨୮୨.୧୨ | | | |
| ଡିସେ ୩୧ | ଋଣପତ୍ର ପରିଶୋଧ ହିସାବ ବାବଦ(ସୁଧ) | ୫୮୨.୬୦ | | | |
| | | ୧୦,୦୦୦.୦୦ | | | ୧୦,୦୦୦.୦୦ |

## ସାଧାରଣ ସଞ୍ଚିତ ହିସାବ

| ଡାହାଣି | | | | | ଧାରା |
|---|---|---|---|---|---|
| | | ଟଙ୍କା | ୧୯୭୨ | | ଟଙ୍କା |
| | | | ଡିସେ-୩୧ | ଋଣପତ୍ର ପରିଶୋଧ ପାଣ୍ଠି ହିସାବ ବାବଦ | ୧୦,୦୦୦ |

| ଦାୟୀ | ରେକଡ଼ ବନ୍ଧ (ଋଣପତ୍ର ପରିଶୋଧ ସଂକ୍ରାନ୍ତ) | | | | ଦାତା |
|---|---|---|---|---|---|
| ୧୯୭୨ | | ଟଙ୍କା | ୧୯୭୨ | | ଟଙ୍କା |
| ଡିସେ-୩୧ | ଋଣପତ୍ର ପରିଶୋଧ ସମାପନ ହିସାବ ବାବଦ | ୧୦,୦୦୦ | ଡିସେ-୩୧ | ଋଣପତ୍ରଧାରୀଙ୍କ ହିସାବ ବାବଦ | ୧୦,୦୦୦ |

**ନିଜ ଋଣପତ୍ର କ୍ରୟ :—**

କେତେକ ସମୟରେ କମ୍ପାନୀ ନିଜ ଋଣପତ୍ରକୁ ଖୋଲା ବଜାରରୁ କ୍ରୟ କରିପାରନ୍ତି । ଏହି ଋଣପତ୍ର ଦୁଇ ପ୍ରକାର କ୍ରୟ କରାଯାଇପାରେ, ଯଥା—(କ) ସୁଧ ବାଦ ଓ (ଖ) ସୁଧ ସମେତ । (କ) ଯେତେବେଳେ ଋଣପତ୍ର ସୁଧ ବାଦ କ୍ରୟ କରାଯାଏ, ସେତେବେଳେ କ୍ରୟ ତାରିଖ ସୁଦ୍ଧା ଋଣପତ୍ର ବାବଦ ପ୍ରଦେୟ ସୁଧ ବିକ୍ରେତାଙ୍କୁ ଋଣପତ୍ରର ମୂଲ୍ୟ ବ୍ୟତୀତ ଅଧିକା ଦେବାକୁ ହୁଏ । (ଖ) ସୁଧ ସମେତ ଋଣପତ୍ର କ୍ରୟ କ୍ଷେତ୍ରରେ କ୍ରୟମୂଲ୍ୟ ସହିତ ଅଦ୍ୟାବଧିକ ପ୍ରଦେୟ ସୁଧ ଋଣପତ୍ରର ମୂଲ୍ୟରେ ଅନ୍ତର୍ଭୁକ୍ତ ଥାଏ । ବିକ୍ରେତାଙ୍କୁ ସୁଧ ବାବଦ ଅଧିକା କିଛି ଦେବାକୁ ପଡ଼େ ନାହିଁ । ଏହାର ଦୁଇଟି ଦୃଷ୍ଟାନ୍ତ ନିମ୍ନରେ ପ୍ରଦତ୍ତ ହେଲା ।

ଦୃଷ୍ଟାନ୍ତ (୩୩)

କ କମ୍ପାନୀ ବହୁ ପୂର୍ବରୁ ପ୍ରତି ଋଣପତ୍ର ଟ ୧୦୦ ହାରରେ ୧,୦୦୦ ୭% ଋଣପତ୍ର ପ୍ରଚଳନ କରିଥିଲେ । ଏହି ଋଣପତ୍ର ବାବଦ ସୁଧ ପ୍ରତି ବର୍ଷ ଜୁନ୍ ୩୦ ତାରିଖରେ ଓ ଡିସେମ୍ବର ୩୧ ତାରିଖରେ ଦେୟ । କମ୍ପାନୀ ୧୯୭୫ ମସିହା ଅକ୍ଟୋବର ୧ ତାରିଖରେ ୩୦୦ ଋଣପତ୍ର ଖୋଲା ବଜାରରୁ ପ୍ରତି ଋଣପତ୍ର ଟ ୯୭ ହାରରେ କ୍ରୟ କରିଥିଲେ ।

ମନେକର ଯେ ଏହି ଋଣପତ୍ରଗୁଡ଼ିକ (କ) ସୁଧ ବାଦ କ୍ରୟ କରାଯାଇଥିଲା ଓ (ଖ ସୁଧ ସମେତ କ୍ରୟ କରାଯାଇଥିଲା । ଆବଶ୍ୟକ ଜାବ୍‌ଦା ପ୍ରସ୍ତୁତ କର । କମ୍ପାନୀ ଡିସେମ୍ବର ୩୧ ତାରିଖରେ ବାର୍ଷିକ ହିସାବ ପ୍ରସ୍ତୁତ କରନ୍ତି ।

## ସମାଧାନ

(କ) ସୁଧ ବାଦ୍

ଜାବ୍ଦା

| ତାରିଖ | ବିବରଣୀ | | ଦାୟୀ ଟଙ୍କା | ଦାତା ଟଙ୍କା |
|---|---|---|---|---|
| ୧୯୬୫ | | | | |
| ଅକ୍ଟୋବର-୧ | ନିଜ ଋଣପତ୍ର ହିସାବ | ଦାୟୀ | ୨୮,୮୦୦ | |
| | ଋଣପତ୍ର ସୁଧ ହିସାବ | ଦାୟୀ | ୪୫୦ | |
| | ବ୍ୟାଙ୍କ୍ ହିସାବ ବାବଦ | | | ୨୯,୨୫୦ |
| | (ଟ ୧୦୦ ର ପ୍ରତି ଋଣପତ୍ର ଟ ୯୬ ମୂଲ୍ୟରେ ୩୦୦ ଋଣପତ୍ର କ୍ରୟ କରାଗଲା ଓ ତିନି ମାସର, ଅର୍ଥାତ୍ ଜୁଲାଇ, ଅଗଷ୍ଟ ଓ ସେପ୍ଟେମ୍ବର ମାସର ସୁଧ ଅଧିକା ଦିଆଗଲା ।) | | | |
| ଡିସେ-୩୧ | ଋଣପତ୍ର ସୁଧ ହିସାବ | ଦାୟୀ | ୪୫୦ | |
| | ନିଟ୍ ଲାଭ ଓ କ୍ଷତି ହିସାବ ବାବଦ | | | ୪୫୦ |
| | (କମ୍ପାନୀ ନିକଟରେ ଥିବା ୩୦୦ ଋଣପତ୍ର ବାବଦ ୧ ଅକ୍ଟୋବରଠାରୁ ୩୧ ଡିସେମ୍ବର ପର୍ଯ୍ୟନ୍ତ ଏହି ତିନି ମାସର ସୁଧ ଦେୟ ହେଲା ।) | | | |

(ଖ) ସୁଧ ସମେତ

ଜାବ୍‌ଦା

| | | | ଦାୟୀ | ଦାତା |
|---|---|---|---|---|
| ୧୯୬୫ | | | ଟଙ୍କା | ଟଙ୍କା |
| ଅକ୍ଟୋବର-୧ | ନିଜ ଋଣପତ୍ର ହିସାବ | ଦାୟୀ | ୨୮,୩୫୦ | |
| | ଋଣପତ୍ର ସୁଧ ବାବଦ | ଦାୟୀ | ୪୫୦ | |
| | ବ୍ୟାଙ୍କ୍ ହିସାବ ବାବଦ | | | ୨୮,୮୦୦ |
| | (ପ୍ରତି ଟ ୧୦୦ ମୂଲ୍ୟର ଋଣପତ୍ର ଟ ୯୬ ହାରରେ ୩୦୦ ଋଣପତ୍ର ସୁଧ ସମେତ କ୍ରୟ କରାଗଲା ।) | | | |
| ଡିସେ-୩୧ | ଋଣପତ୍ର ସୁଧ ହିସାବ | ଦାୟୀ | ୪୫୦ | |
| | ନଟ୍ ଲାଭ ଓ କ୍ଷତି ହିସାବ ବାବଦ | | | ୪୫୦ |
| | (କମ୍ପାନୀଦ୍ୱାରା କ୍ରୀତ ୩୦୦ ଋଣପତ୍ର ବାବଦ ୧ ଅକ୍ଟୋବରଠାରୁ ୩୧ ଡିସେମ୍ବର, ଏହି ତିନି ମାସର ଶତକଡ଼ା ୬% ହାରରେ ସୁଧ ଦେୟ ହେଲା ।) | | | |

**ନିଜ ଋଣପତ୍ର ବାତିଲ କରିବା**

କେତେକ ସମୟରେ କମ୍ପାନୀ ଖୋଲା ବଜାରରୁ ନିଜ ଋଣପତ୍ର କ୍ରୟ କରି ସେଗୁଡ଼ିକ ବାତିଲ କରି ଋଣପତ୍ର ହିସାବରୁ ବାଦ୍ ଦିଅନ୍ତି । ଏହା ଦୁଇ ପ୍ରକାରରେ ସମ୍ପାଦନ କରାଯାଇପାରେ; ଯଥା—(କ) ଏହି ଋଣପତ୍ରଗୁଡ଼ିକୁ କ୍ରୟ କରିବା ପରେ କିଛି ଦିନ ନିଜ ନିକଟରେ ରଖି ତପରେ ବାତିଲ କରନ୍ତି ଓ (ଖ) ଏହି ଋଣପତ୍ରଗୁଡ଼ିକ କ୍ରୟ କରିବା ସଙ୍ଗେ ସଙ୍ଗେ ସେଗୁଡ଼ିକୁ ବାତିଲ କରନ୍ତି ।

ଦୃଷ୍ଟାନ୍ତ (୩୪)

(କ) ମନେକର ଦୃଷ୍ଟାନ୍ତ (୩୩)ରେ ପ୍ରଦତ୍ତ ପ୍ରଶ୍ନ ଅନୁଯାୟୀ କମ୍ପାନୀ ନିଜର ଋଣପତ୍ର କ୍ରୟ କଲେ ଓ ୧୯୬୫ ମସିହା ଡିସେମ୍ବର ୩୧ ତାରିଖରେ ସେଗୁଡ଼ିକ ବାତିଲ କଲେ । ଆବଶ୍ୟକ ଜାବ୍‌ଦା ପ୍ରସ୍ତୁତ କର ।

## ସମାଧାନ

ଯଦି ସୁଧ ବାଦେ କ୍ରୟ କରାଯାଇଥାଏ, ତାହାହେଲେ (୩୩) (କ) ରେ ପ୍ରଦତ୍ତ ଜାବଦା ପରେ ନିମ୍ନଲିଖିତ ଅଧିକା ଜାବଦା କରାଯିବ ।

| | | ଦାୟୀ | ଦାତା |
|---|---|---|---|
| ୧୯୭୫ | | ଟଙ୍କା | ଟଙ୍କା |
| ଡିସେ-୩୧ | ୬% ଋଣପତ୍ର ହିସାବ ଦାୟୀ | ୩୦,୦୦୦ | |
| | ନିଜ ଋଣପତ୍ର ହିସାବ ବାବଦ | | ୨୮,୮୦୦ |
| | ଋଣପତ୍ର ବାତିଲଜନିତ ଲାଭ ହିସାବ ବାବଦ (ପ୍ରତି ଋଣପତ୍ର ଟ ୧୦୦ ହାରରେ ୩୦୦ ୬% ଋଣପତ୍ର ବାତିଲ କରାଗଲା ଓ ସେଥି ବାବଦ ଲାଭ ହିସାବଭୁକ୍ତ କରାଗଲା ।) | | ୧,୨୦୦ |

ଯଦି ଋଣପତ୍ରଗୁଡ଼ିକ ସୁଧ ସମେତ କ୍ରୟ କରାଯାଇଥାଏ, ତାହାହେଲେ ଦୃଷ୍ଟାନ୍ତ (୩୩) (ଖ) ରେ ଥିବା ଜାବଦା ପରେ ନିମ୍ନଲିଖିତ ଜାବଦାଟି ମଧ୍ୟ ପ୍ରସ୍ତୁତ କରାଯିବ ।

| | | ଦାୟୀ | ଦାତା |
|---|---|---|---|
| ୧୯୭୫ | | ଟଙ୍କା | ଟଙ୍କା |
| ଡିସେ-୩୧ | ୬% ଋଣପତ୍ର ହିସାବ ଦାୟୀ | ୩୦,୦୦୦ | |
| | ନିଜ ଋଣପତ୍ର ହିସାବ ବାବଦ | | ୨୮,୩୫୦ |
| | ଋଣପତ୍ର ବାତିଲଜନିତ ଲାଭ ହିସାବ ବାବଦ (ପ୍ରତି ଋଣପତ୍ର ଟ ୧୦୦ ହାରରେ ୩୦୦ ୬% ଋଣପତ୍ର ବାତିଲ କରାଗଲା ଓ ଏଥି ବାବଦ ଲାଭକୁ ହିସାବଭୁକ୍ତ କରାଗଲା ।) | | ୧,୬୫୦ |

(ଖ) ନିଜ ଋଣପତ୍ର କ୍ରୟ କରିବା ସଙ୍ଗେ ସଙ୍ଗେ ତାହା ବାତିଲ କରିବା

### ଦୃଷ୍ଟାନ୍ତ (୩୫)

କ କମ୍ପାନୀ ଲିମିଟେଡ୍ ୧୯୭୫ ମସିହା ଅକ୍ଟୋବର ୧ ତାରିଖରେ ପୂର୍ବରୁ ପ୍ରତି ଋଣପତ୍ର ଟ ୧୦୦ ହାରରେ ପ୍ରଚଳିତ ହୋଇଥିବା ୬% ଋଣପତ୍ର ମଧ୍ୟରୁ ୨୦୦ ଋଣପତ୍ର ଖୋଲାବଜାରରୁ ପ୍ରତି ଋଣପତ୍ର ଟ ୯୬ ହାରରେ କ୍ରୟ କରିବା ସଙ୍ଗେ ସଙ୍ଗେ ସେଗୁଡ଼ିକୁ ବାତିଲ କରିଥିଲା । କମ୍ପାନୀ ଏହି ଋଣପତ୍ର ବାବଦ ସୁଧ ଜୁନ୍ ୩୦ ତାରିଖ ଓ ଡିସେମ୍ବର ୩୧ ତାରିଖରେ ଦିଏ ।

ଆବଶ୍ୟକ ଜାବେଦା ପ୍ରସ୍ତୁତ କର । (୧) ଯଦି ଋଣପତ୍ରଗୁଡ଼ିକ ସୁଧ ବାଦେ କ୍ରୟ କରାଯାଏ ଓ (୨) ଯଦି ଋଣପତ୍ର ସୁଧ ସମେତ କ୍ରୟ କରାଯାଏ ।

(୧) ସୁଧ ବାଦେ କ୍ରୟ କରାଯାଇଥିଲେ—

| | | | ଦାୟୀ | ଦାତା |
|---|---|---|---|---|
| ୧୯୭୫ | | | ଟଙ୍କା | ଟଙ୍କା |
| ଅକ୍ଟୋ-୧ | ୬% ଋଣପତ୍ର ହିସାବ | ଦାୟୀ | ୨୦,୦୦୦ | |
| | ଋଣପତ୍ର ସୁଧ ହିସାବ | ଦାୟୀ | ୩୦୦ | |
| | ବ୍ୟାଙ୍କ୍ ହିସାବ ବାବଦ | | | ୧୯,୫୦୦ |
| | ଋଣପତ୍ର ବାତିଲଜନିତ | | | |
| | ଲାଭ ହିସାବ ବାବଦ | | | ୮୦୦ |
| | (ଟ ୧୦୦ ମୂଲ୍ୟର ପ୍ରତି ଋଣପତ୍ରକୁ ସୁଧ ବାଦେ ଟ ୯୬ ମୂଲ୍ୟରେ କମ୍ପାନୀ ୨୦୦ ଋଣପତ୍ର ବାତିଲ କରିବା ନିମନ୍ତେ କ୍ରୟ କଲେ । ସେଥି ବାବଦ ଶତକଡ଼ା ବାର୍ଷିକ ୬% ହାରରେ ପ୍ରଦତ୍ତ ସୁଧ ଓ ଲାଭ ହିସାବଭୁକ୍ତ କରାଗଲା । ) | | | |

(୨) ସୁଧ ସମେତ କ୍ରୟ କରାଯାଇଥିଲେ—

| | | | ଦାୟୀ | ଦାତା |
|---|---|---|---|---|
| ୧୯୭୫ | | | ଟଙ୍କା | ଟଙ୍କା |
| ଅକ୍ଟୋ-୧ | ୬% ଋଣପତ୍ର ହିସାବ | ଦାୟୀ | ୨୦,୦୦୦ | |
| | ଋଣପତ୍ର ସୁଧ ହିସାବ | ଦାୟୀ | ୩୦୦ | |
| | ବ୍ୟାଙ୍କ୍ ହିସାବ ବାବଦ | | | ୧୯,୨୦୦ |
| | ଋଣପତ୍ର ବାତିଲଜନିତ ଲଭ ହି: ବାବଦ | | | ୧,୧୦୦ |
| | (ଟ ୧୦୦ ମୂଲ୍ୟର ପ୍ରତି ଋଣପତ୍ରକୁ ସୁଧ ସମେତ ଟ ୯୬ରେ ୨୦୦ ଋଣ ବାତିଲ କରିବା ନିମନ୍ତେ କ୍ରୟ କରାଗଲା । ଶତକଡ଼ା ବାର୍ଷିକ ସୁଧ ୬% ହାରରେ ସୁଧ ଓ ଲଭକୁ ମଧ୍ୟ ହିସାବଭୁକ୍ତ କରାଗଲା । ) | | | |

## ନିଜ ଋଣପତ୍ରକୁ ବିନିଯୋଗ ରୂପେ ରଖିବା

କେତେକ ସମୟରେ କମ୍ପାନୀ ନିଜ ଋଣପତ୍ରକୁ ଖୋଲା ବଜାରରୁ କ୍ରୟ କରି ବିନିଯୋଗ ରୂପେ ରଖିପାରନ୍ତି । ଏଥି ନିମନ୍ତେ 'ନିଜ ଋଣପତ୍ର ବିନିଯୋଗ ହିସାବ' ନାମକ ଏକ ହିସାବ ଖୋଲିବା ଆବଶ୍ୟକ ହୁଏ । କ୍ରୀତ ମୂଲ୍ୟର ପରିମାଣ ସକାଶେ, ତାହା ସୁଧ ବାଦେ ହୋଇଥାଉ ଅଥବା ସୁଧ ସମେତ ହେଉ, ଏହି ହିସାବକୁ ଦାୟୀ କରାଯାଏ ଓ ନିର୍ଦ୍ଦିଷ୍ଟ ଦିବସରେ ଋଣପତ୍ର ସୁଧ ହିସାବ ବାବଦ ଦାତା କରାଯାଏ । ଏହାର ଏକ ଦୃଷ୍ଟାନ୍ତ ନିମ୍ନରେ ପ୍ରଦର୍ଶିତ ହେଲା ।

ଦୃଷ୍ଟାନ୍ତ (୩୬)

କ କମ୍ପାନୀ ଲିମିଟେଡ଼ ତାଙ୍କର ବନ୍ଧୁ ପୂର୍ବରୁ ପ୍ରଚଳିତ ପ୍ରତି ଋଣପତ୍ର ଟ୧୦୦ ମୂଲ୍ୟର ୩୦ଟି ୬% ଋଣପତ୍ର ଅପ୍ରେଲ ୧,୧୯୭୫ ତାରିଖରେ ସୁଧ ବାଦେ ପ୍ରତି ଋଣପତ୍ର ଟ ୯୮ ମୂଲ୍ୟରେ ଖୋଲା ବଜାରରୁ ବିନିଯୋଗ ଉଦ୍ଦେଶ୍ୟରେ କ୍ରୟ କଲେ ।

ଅକ୍ଟୋବର ୧ ତାରିଖରେ ପ୍ରତି ଋଣପତ୍ର ଟ ୧୦୦ ମୂଲ୍ୟର ୫୦ଟି ୬% ଋଣପତ୍ର ସୁଧ ସମେତ ଟ ୧୦୦ ମୂଲ୍ୟରେ କ୍ରୟ କଲେ । ଏହି ଋଣପତ୍ର ବାବଦ ସୁଧ ପ୍ରତି ବର୍ଷ ଜୁନ୍

୩୦ ତାରିଖରେ ଓ ଡିସେମ୍ବର ୩୧ ତାରିଖରେ ଦେୟ । କମ୍ପାନୀ ଡିସେମ୍ବର ୩୧ ତାରିଖରେ ଏହାର ବାର୍ଷିକ ହିସାବ ପ୍ରସ୍ତୁତ କରେ । କମ୍ପାନୀଙ୍କ ଖାତାରେ ନିଜ ଋଣପତ୍ର ବିନିଯୋଗ ହିସାବ ପ୍ରସ୍ତୁତ କର ଏବଂ ତନ୍ମଧ୍ୟରେ ଅଙ୍କିତ ମୂଲ୍ୟ, ସୁଧ ଓ ବିନିମୁକ୍ତ ଅର୍ଥର ପରିମାଣ ଦର୍ଶାଅ ।

## ସମାଧାନ

ଦାୟୀ | ନିଜ ଋଣପତ୍ର ବିନିଯୋଗ ହିସାବ | ଦାତା

| ତାରିଖ | ବିବରଣୀ | ଅଙ୍କିତ ମୂଲ୍ୟ | ସୁଧ | ବିନିମୁକ୍ତ ଅର୍ଥ | ତାରିଖ | ବିବରଣୀ | ଅଙ୍କିତ ମୂଲ୍ୟ | ସୁଧ | ବିନିମୁକ୍ତ ଅର୍ଥ |
|---|---|---|---|---|---|---|---|---|---|
| ୧୯୭୫ | | ଟଙ୍କା | ଟଙ୍କା | ଟଙ୍କା | ୧୯୭୫ | | ଟଙ୍କା | ଟଙ୍କା | ଟଙ୍କା |
| ଅପ୍ରେଲ ୧ | ବ୍ୟାଙ୍କ୍ ହି : ବାବଦ (ସୁଧ ବାଦେ ୩୦ଟି ଋଣପତ୍ର ଟ ୯୮ ଦରରେ କ୍ରୟ କରାଗଲା) | ୩,୦୦୦ | ୪୫ | ୨,୯୪୦ | ଜୁନ୍ ୩୦ | ଋଣପତ୍ର ସୁଧ ହିସାବ ବାବଦ (ଟ ୩,୦୦୦ ର ଶତକଡ଼ା ବାର୍ଷିକ ୬ ହାରରେ ୬ ମାସର ସୁଧ ) | | ୯୦ | |
| ଅକ୍ଟୋ ୧ | ବ୍ୟାଙ୍କ୍ ହି: ବାବଦ (ସୁଧ ସମେତ ୫୦ଟି ଋଣପତ୍ର ଟ ୧୦୦ ଦରରେ କ୍ରୟ କରାଗଲା) | ୫,୦୦୦ | ୭୫ | ୪,୯୨୫ | ଡିସେ ୩୧ | ଋଣପତ୍ର ସୁଧ ହିସାବ ବାବଦ (ଟ ୫,୦୦୦ ର ବାର୍ଷିକ ୬% ହାରରେ ୬ ମାସର ସୁଧ) | | ୧୫୦ | |
| ଡିସେ ୩୧ | ନଫଟ୍ ଲଭ ଓ କ୍ଷତ ହିସାବ ବାବଦ— ସ୍ଥାନାନ୍ତରଣ | | ୧୨୦ | | ୩୧ | ବାକୀ ଗଢ଼ିଲ | ୮,୦୦୦ | | ୭,୮୬୫ |
| | | ୮,୦୦୦ | ୨୪୦ | ୭,୮୬୫ | | | ୮,୦୦୦ | ୨୪୦ | ୭,୮୬୫ |
| ୧୯୭୬ ଜାନୁ ୧ | ପୂର୍ବ ବାକୀ ବାବଦ | ୮,୦୦୦ | | ୭,୮୬୫ | | | | | |

ବ୍ୟବସାୟ ପ୍ରତିଷ୍ଠାନକୁ କମ୍ପାନୀରେ ରୂପାନ୍ତରଣ

ଅଥବା

କମ୍ପାନୀଦ୍ୱାରା ବ୍ୟବସାୟ ପ୍ରତିଷ୍ଠାନର କ୍ରୟ

ଗୋଟିଏ କମ୍ପାନୀ ଗଠିତ ହେବା ପରେ ଏହା ନୂତନ ବ୍ୟବସାୟ ଆରମ୍ଭ କରିପାରେ ଅଥବା ଏକ ଚଳନ୍ତି ବ୍ୟବସାୟ ପ୍ରତିଷ୍ଠାନକୁ କ୍ରୟ କରିପାରେ । ଏପରି କ୍ରୟ କରିବା ସମୟରେ ବ୍ୟବସାୟ ପ୍ରତିଷ୍ଠାନର ସମ୍ପତ୍ତି ଓ ଦେଣାରୁ ଏହାର ନିଟ୍ ମୂଲ୍ୟ ନିର୍ଣ୍ଣୟ କରାଯାଇ କ୍ରୟ ପ୍ରତିଦାନ ସ୍ଥିରୀକୃତ କରାଯାଏ । କ୍ରୟ ପ୍ରତିଦାନ ଯଦି ନିଟ୍ ମୂଲ୍ୟ ଅପେକ୍ଷା ଅଧିକ ହୁଏ ତାହାହେଲେ ଏହି ପାର୍ଥକ୍ୟ ସୁନାମ ବୋଲି ବିବେଚିତ ହୁଏ ଓ ଯଦି କ୍ରୟ ପ୍ରତିଦାନ ନିଟ୍ ମୂଲ୍ୟଠାରୁ ଊଣା ହୁଏ, ତାହାହେଲେ ଏହି ପାର୍ଥକ୍ୟ କମ୍ପାନୀର ମୂଳଧନ ଜାତୀୟ ଲଭ ରୂପେ ବିବେଚିତ ହୋଇ ମୂଳଧନ ସଞ୍ଚିତ ହିସାବର ଦାତା ପାର୍ଶ୍ୱକୁ ନିଆଯାଏ । କମ୍ପାନୀ ବ୍ୟବସାୟ ବିକ୍ରେତାଙ୍କୁ ତାଙ୍କର ପ୍ରାପ୍ୟ କ୍ରୟ ପ୍ରତିଦାନ ନଗଦ ତହବିଲ ଆକାରରେ ଅଥବା କମ୍ପାନୀର ଅଂଶପତ୍ର ଆକାରରେ ଅଥବା ଆଂଶିକ ରୂପେ ନଗଦ ତହବିଲ ଆକାରରେ ଓ ଅବଶିଷ୍ଟ ପରିମାଣ ଅଂଶପତ୍ର ଆକାରରେ ପ୍ରଦାନ କରିପାରେ ।

କମ୍ପାନୀ ସାଧାରଣତଃ ଏହି ବ୍ୟବସାୟ ପ୍ରତିଷ୍ଠାନର ଯାବତୀୟ ସମ୍ପତ୍ତି ଓ ଦେଣା କ୍ରୟ କରେ ଏବଂ ଏହାକୁ ଏକ ଜାବ୍‌ଦା ମାଧ୍ୟମରେ ହିସାବଭୁକ୍ତ କରେ ।

ଯେଉଁ ବ୍ୟବସାୟ ପ୍ରତିଷ୍ଠାନ ବିକ୍ରିତ ହୁଏ ତାହାର ସମ୍ପତ୍ତି ଓ ଦେଣା ବା ଦାୟିତ୍ୱଗୁଡ଼ିକର ହିସାବ ମଧ୍ୟ ବନ୍ଦ କରାଯାଏ । ଏଥି ସକାଶେ ଏହି ପ୍ରତିଷ୍ଠାନର ହିସାବ ଖାତାରେ ଆଦାୟକରଣ ହିସାବ ଖୋଲିବା ଆବଶ୍ୟକ ହୁଏ । ଏହି ହିସାବ ଖୋଲିଗଲେ ସ୍ୱତଃ ସମସ୍ତ ସମ୍ପତ୍ତି ଓ ଦାୟିତ୍ୱ ହିସାବ ବନ୍ଦ ହୁଏ ଓ ଆଦାୟକରଣରେ ଲଭ ଅଥବା କ୍ଷତି ନିରୂପିତ ହୁଏ । ଏହାର ଏକ ଦୃଷ୍ଟାନ୍ତ ନିମ୍ନରେ ପ୍ରଦତ୍ତ ହେଲା ।

ଦୃଷ୍ଟାନ୍ତ (୩୭)

ବାହାଦୁର କମ୍ପାନୀ ଲିମିଟେଡ୍ ୧୯୭୫ ମସିହା ଅପ୍ରେଲ ୧ ତାରିଖରେ ସମରେନ୍ଦ୍ର ଜେନେରାଲ୍ ଷ୍ଟୋର୍ସ ବ୍ୟବସାୟ ପ୍ରତିଷ୍ଠାନକୁ କ୍ରୟ କରିବା ନିମନ୍ତେ ଗଠିତ ହୋଇଥିଲା । ଏହି କମ୍ପାନୀର ପ୍ରାଧିକୃତ ମୂଳଧନର ପରିମାଣ ଟ ୧୨,୦୦,୦୦୦ ଥିଲା ଓ ଏହା ପ୍ରତି ଅଂଶ ଟ ୧୦ ହାରରେ ୧,୦୦,୦୦୦ ସାଧାରଣ ଅଂଶ ଓ ଅଂଶ ପ୍ରତି ଟ ୧୦୦ ହାରରେ ୨,୦୦୦ ୮% ଅଗ୍ରାଧିକାର ଅଂଶରେ ବିଭକ୍ତ ହୋଇଥିଲା ।

ସମରେନ୍ଦ୍ର ଜେନେରାଲ୍ ଷ୍ଟୋର୍ସର ୧୯୭୫ ମସିହା ମାର୍ଚ୍ଚ ୩୧ ତାରିଖର ଉଦ୍‌ବୃତ୍ତ ପତ୍ର ନିମ୍ନରେ ପ୍ରଦତ୍ତ ହେଲା ।

| | ଟଙ୍କା | | ଟଙ୍କା |
|---|---|---|---|
| ମୂଳଧନ ହିସାବ : | | ଭୂମି ଓ ଭବନ | ୧,୦୦,୦୦୦ |
| ସମରେନ୍ଦ୍ର ପୃଷ୍ଟି | ୩,୦୦,୦୦୦ | ଯନ୍ତ୍ର | ୧,୫୦,୦୦୦ |
| ମହାଜନ | ୧,୨୦,୦୦୦ | ମହଜୁଦ୍ ପଣ୍ୟ | ୧,୩୬ ୪୦୦ |
| ଇଣ୍ଡିଆନ୍ ଓଭରସିଜ୍ | | ଖାତକ | ୧,୧୩,୦୦୦ |
| ବ୍ୟାଙ୍କ୍‌ରେ ଅଧିଉଠାଣ | ୭୯,୪୦୦ | | |
| | ୪,୯୯,୪୦୦ | | ୪,୯୯,୪୦୦ |

କମ୍ପାନୀ ଏହି ବ୍ୟବସାୟ ପ୍ରତିଷ୍ଠାନର ଯାବତୀୟ ସମ୍ପତ୍ତି ଓ ଦେଣା କ୍ରୟ କରିଥିଲେ ଏବଂ କ୍ରୟ ପ୍ରତିଦାନ ଟ ୪,୦୦,୦୦୦ରେ ଧାର୍ଯ୍ୟ ହୋଇଥିଲା । ଏହା ଧାର୍ଯ୍ୟ କରିବା ସମୟରେ ଭୂମି ଓ ଭବନର ମୂଲ୍ୟ ଟ୨,୦୦,୦୦୦ରେ; ଯନ୍ତ୍ରର ମୂଲ୍ୟ ଟ୧,୨୦,୦୦୦ରେ; ମହଜୁଦ୍ ପଣ୍ୟର ମୂଲ୍ୟ ଟ ୧,୩୦,୦୦୦ ରେ ଗଣନା କରାଯାଇଥିଲା ଓ ଅନାଦାୟୀ ଋଣ ବାବଦ ୫% ହାରରେ ଖାତକ ପରିମାଣରୁ ବାଦ୍ ଦିଆଯାଇଥିଲା । ଇଣ୍ଡିଆନ୍ ଓଭରସିଜ୍ ବ୍ୟାଙ୍କ୍ ଅଧିଉଠାଣ ବାବଦ ଋଣକୁ ସମରେନ୍ଦ୍ର ପୃଷ୍ଟିଙ୍କ ନାମରୁ ନିମ୍ନଲିଖିତ ସର୍ତ୍ତ ଅନୁଯାୟୀ କମ୍ପାନୀଙ୍କ ନାମକୁ ସ୍ଥାନାନ୍ତରିତ କରିବା ପାଇଁ ସ୍ୱୀକୃତ ହୋଇଥିଲା, ଯଥା—ଅତିରିକ୍ତ ଜାମିନ ସ୍ୱରୂପ କମ୍ପାନୀ ଟ ୧,୦୦,୦୦୦ ଟଙ୍କାର ଋଣପତ୍ର ବ୍ୟାଙ୍କ୍‌କୁ ପ୍ରଦାନ କରିବେ ଓ ଏହି ଋଣପତ୍ରର ପ୍ରତ୍ୟାଭୂତି ରୂପେ ଭୂମି ଓ ଭବନ ବନ୍ଧକ ରହିବ ।

ସମରେନ୍ଦ୍ର ପୃଷ୍ଟିଙ୍କୁ ସମହାରରେ ପ୍ରଚଳିତ କମ୍ପାନୀର ୩୫,୦୦୦ ସାଧାରଣ ଅଂଶ ଓ ୩୦୦ ଅଗ୍ରାଧିକାର ଅଂଶ ଓ ଅବଶିଷ୍ଟ ନଗଦ ତହବିଲ ଆକାରରେ ଦିଆଯାଇ କ୍ରୟ ପ୍ରତିଦାନ ପରିଶୋଧ କରାଯିବ । କ୍ୟାପିଟାଲ ଅଣ୍ଡରରାଇଟର୍ସ ଲିମିଟେଡ୍ ଅବଶିଷ୍ଟ ୬୫,୦୦୦ ସାଧାରଣ ଅଂଶ ସମହାରରେ ନଗଦ ମୂଲ୍ୟରେ କ୍ରୟ କରିବାକୁ ସ୍ୱୀକୃତ ହେଲେ ଏବଂ ଏହି ଅଂଶଗୁଡ଼ିକ ପୂର୍ଣ୍ଣ ପ୍ରଦତ୍ତ ଅଂଶ ରୂପେ ତାଙ୍କୁ ଅପ୍ରେଲ ୧,୧୯୭୫ରେ ବିକ୍ରୟ କରାଗଲା । କମ୍ପାନୀ ଗଠନ ଖର୍ଚ୍ଚ ରୂପେ ବାହାଦୁର କମ୍ପାନୀ ଲିମିଟେଡ୍ ଟ ୧୦,୦୦୦ ବ୍ୟୟ କଲେ ।

ସମରେନ୍ଦ୍ର ଜେନେରାଲ୍ ଷ୍ଟୋର୍ସର ହିସାବଗୁଡ଼ିକ ବନ୍ଦ କରିବା ପାଇଁ ନଗଦ ତହବିଲ ସମେତ ସମସ୍ତ ନେଣ ଦେଣର ଜାବଦା ପ୍ରସ୍ତୁତ କର ଓ ବାହାଦୁର କମ୍ପାନୀ ଲିମିଟେଡ୍‌ଙ୍କର ପ୍ରାରମ୍ଭିକ ଉଦ୍‌ବୃତ୍ତ ପତ୍ର ଦର୍ଶାଅ ।

## ସମାଧାନ

| ଜାବେଦା | ଦାୟୀ | ଦାତା |
|---|---|---|
| ୧୯୭୫ | ଟଙ୍କା | ଟଙ୍କା |
| ଅପ୍ରେଲ-୧ ଆଦାୟକରଣ ହିସାବ ଦାୟୀ | ୪,୯୯,୪୦୦ | |
| ଭୂମି ଓ ଭବନ ହିସାବ ବାବଦ | | ୧,୦୦,୦୦୦ |
| ଯନ୍ତ୍ର ହିସାବ ବାବଦ | | ୧,୫୦,୦୦୦ |
| ମହଜୁଦ୍ ପଣ୍ୟ ହିସାବ ବାବଦ | | ୧,୩୬,୪୦୦ |
| ଖାତକ ହିସାବ ବାବଦ | | ୧,୧୩,୦୦୦ |
| (ବିଭିନ୍ନ ସମ୍ପତ୍ତି ଆଦାୟକରଣ ହିସାବକୁ ସ୍ଥାନାନ୍ତରିତ ହେଲା।) | | |
| ୧ ମହାଜନ ହିସାବ ଦାୟୀ | ୧,୨୦,୦୦୦ | |
| ଇ. ଓ. ବ୍ୟାଙ୍କ୍ ଅଧିଉଠାଣ ହିସାବ ଦାୟୀ | ୭୯,୪୦୦ | |
| ଆଦାୟକରଣ ହିସାବ ବାବଦ | | ୧,୯୯,୪୦୦ |
| (ବିଭିନ୍ନ ଦେଣା ଆଦାୟକରଣ ହିସାବକୁ ସ୍ଥାନାନ୍ତରିତ ହେଲା।) | | |
| ୧ ବାହାଦୁର କମ୍ପାନୀ ଲିମିଟେଡ୍ ହିସାବ ଦାୟୀ | ୪,୦୦,୦୦୦ | |
| ଆଦାୟକରଣ ହିସାବ ବାବଦ | | ୪,୦୦,୦୦୦ |
| (ସ୍ୱୀକୃତ କ୍ରୟ ପ୍ରତିଦାନ ନିମନ୍ତେ କମ୍ପାନୀ ହିସାବକୁ ଦାୟୀ କରାଗଲା।) | | |
| ୧ ଆଦାୟକରଣ ହିସାବ ଦାୟୀ | ୧,୦୦,୦୦୦ | |
| ସମରେନ୍ଦ୍ର ପୃଷ୍ଟିଙ୍କର ମୂଳଧନ ହିସାବ ବାବଦ | | ୧,୦୦,୦୦୦ |
| (ଆଦାୟକରଣ ହିସାବର ଲାଭ ପ୍ରଥମୋକ୍ତରୁ ଦ୍ୱିତୀୟ ହିସାବକୁ ସ୍ଥାନାନ୍ତରିତ ହେଲା।) | | |
| ୧ ବାହାଦୁର କମ୍ପାନୀ ଲିମିଟେଡ୍‌ରେ ସାଧାରଣ ଅଂଶ ହିସାବ ଦାୟୀ | ୩,୬୦,୦୦୦ | |
| ବାହାଦୁର କମ୍ପାନୀ ଲିଃ ରେ ଅଗ୍ରାଧିକାର ଅଂଶ ହିସାବ ଦାୟୀ | ୩୦,୦୦୦ | |
| ବ୍ୟାଙ୍କ୍ ହିସାବ ଦାୟୀ | ୧୦,୦୦୦ | |
| ବାହାଦୁର କମ୍ପାନୀ ଲିଃ ଙ୍କ ହିଃ ବାବଦ | | ୪,୦୦,୦୦୦ |

| | ବିବରଣୀ | | ଟଙ୍କା | ଟଙ୍କା |
|---|---|---|---|---|
| | (ଅଂଶ ପ୍ରତି ଟ ୧୦ ହାରରେ ୩୫,୦୦୦ ସାଧାରଣ ଅଂଶ, ଅଂଶ ପ୍ରତି ଟ ୧୦୦ ହାରରେ ୩୦୦ ଅଗ୍ରାଧିକାର ଅଂଶ ପୂର୍ଣ୍ଣ ଆଦାୟୀକୃତ ଅଂଶ ରୂପେ ଓ ଅବଶିଷ୍ଟ ନଗଦ ତହବିଲ ରୂପେ ବାହାଦୁର କମ୍ପାନୀଙ୍କଠାରୁ କ୍ରୟ ପ୍ରତିଦାନ ଅର୍ଥ ମିଳିଲା ।) | | | |
| ୧ | ସମରେନ୍ଦ୍ର ପୃଷ୍ଟିଙ୍କର ମୂଳଧନ ହିସାବ | ଦାୟୀ | ୪,୦୦,୦୦୦ | |
| | ବାହାଦୁର କୋ: ଲି: ରେ ସାଧାରଣ ଅଂଶ ହିସାବ ବାବଦ | | | ୩,୫୦,୦୦୦ |
| | ବାହାଦୁର କୋ: ଲି: ରେ ଅଗ୍ରାଧିକାର ଅଂଶ ହିସାବ ବାବଦ | | | ୩୦,୦୦୦ |
| | ବ୍ୟାଙ୍କ ହିସାବ ବାବଦ | | | ୨୦,୦୦୦ |
| | ( ବ୍ୟବସାୟର ବିଲୋପସାଧନରେ ମାଲିକଙ୍କୁ ଉପରୋକ୍ତ ଅଂଶଗୁଡ଼ିକ ଓ ବ୍ୟାଙ୍କ୍‌ରେ ଗଚ୍ଛିତ ଅର୍ଥ ଦିଆଗଲା ।) | | | |

ବାହାଦୁର କମ୍ପାନୀ ଲିମିଟେଡ଼ଙ୍କର
୧୯୭୫ ମସିହା ଅପ୍ରେଲ ୧ ତାରିଖର ଉଦ୍‌ବୃତ୍ତ ପତ୍ର

| ଦାୟ ଓ ଦେଣା | ଟଙ୍କା | ଟଙ୍କା | ପରିସମ୍ପତ୍ତି | ଟଙ୍କା | ଟଙ୍କା |
|---|---|---|---|---|---|
| ଅଂଶ ମୂଳଧନ : | | | ସ୍ଥାବର ସମ୍ପତ୍ତି : | | |
| ପ୍ରାଧିକୃତ : | | | ସୁନାମ | ୪୨,୦୫୦ | |
| ଅଂଶ ପ୍ରତି | | | ଭୂମି ଓ ଭବନ | ୨,୦୦,୦୦୦ | |
| ଟ୧୦୦ ହାରରେ | | | ଯନ୍ତ୍ର | ୧,୨୦,୦୦୦ | ୩,୬୨,୦୫୦ |
| ୨,୦୦୦ ୮% | | | ଚଳନ୍ତି ସମ୍ପତ୍ତି, | | |
| ଅଗ୍ରାଧିକାର ଅଂଶ | ୨,୦୦,୦୦୦ | | ପ୍ରଦତ୍ତ ଋଣ ଓ ଅଗ୍ରିମ | | |
| ଅଂଶ ପ୍ରତି ଟ ୧୦ | | | ପ୍ରଭୃତି : | | |
| ହାରରେ୧,୦୦,୦୦୦ | | | ଚଳନ୍ତି ସମ୍ପତ୍ତି | | |
| ସାଧାରଣ ଅଂଶ | ୧୦,୦୦,୦୦୦ | ୧୨,୦୦,୦୦୦ | ମହଜୁଦ୍ ପଣ୍ୟ | ୧,୩୦,୦୦୦ | |
| ପ୍ରଚଳିତ ଓ ବଣ୍ଟିତ: | | | ବିବିଧ ଖାତକ | | |
| ଅଂଶ ପ୍ରତି ଟ ୧୦୦ | | | | ଟ୧,୧୩,୦୦୦ | |
| ହାରରେ ୩୦୦ | | | ବିମୁକ୍ତ : ଅନାଦାୟ | | |
| ୮% ଅଗ୍ରାଧିକାର | | | ଋଣ ଟ ୫,୬୫୦ | ୧,୦୭,୩୫୦ | |
| ଅଂଶ—ପୂର୍ଣ୍ଣ ପ୍ରଦତ୍ତ | | | ବ୍ୟାଙ୍କ୍‌ରେ ଗଚ୍ଛିତ | | |
| | | | ତହବିଲ | ୬,୨୦,୦୦୦ | ୮,୫୭,୩୫୦ |

| | | | | |
|---|---|---|---|---|
| ( ନଗଦ ଡିବେଞ୍ଚର ପରିବର୍ତ୍ତେ ବ୍ୟବସାୟ ବିକ୍ରେତାଙ୍କୁ କ୍ରୟ-ପ୍ରତିଦାନ ରୂପେ ଦିଆଯାଇଛି ।) | ୩୦,୦୦୦ | | ବିବିଧ ବ୍ୟୟ : | |
| ଅଂଶ ପ୍ରତି ଟ ୧୦ ହାରରେ ୧,୦୦,୦୦୦ ସାଧାରଣ ଅଂଶ, ପ୍ରତ୍ୟେକଟି ପୂର୍ଣ୍ଣ ପ୍ରଦତ୍ତ | ୧୦,୦୦,୦୦୦ | ୧୦,୩୦,୦୦୦ | ପ୍ରାରମ୍ଭିକ ବ୍ୟୟ | ୧୦,୦୦୦ |
| (ଏଥିମଧ୍ୟରୁ ବ୍ୟବସାୟ ବିକ୍ରେତାଙ୍କୁ ପୂର୍ଣ୍ଣ ପ୍ରଦତ୍ତ ୩୫,୦୦୦ ସାଧାରଣ ଅଂଶ ନଗଦ ଅର୍ଥ ପରିବର୍ତ୍ତେ କ୍ରୟ ପ୍ରତିଦାନ ରୂପେ ଦିଆଯାଇଛି ।) | | | | |
| ବନ୍ଧକ ଋଣ : | | | | |
| ବ୍ୟାଙ୍କରୁ ଅଧିଉଠାଣି ( ଭୂମି ଓ ଭବନକୁ ବନ୍ଧକ ରଖି ଜାମିନ୍ ସ୍ୱରୂପ କମ୍ପାନୀର ଟ ୧,୦୦,୦୦୦ର ଋଣପତ୍ର ବ୍ୟାଙ୍କକୁ ଦିଆଯାଇଛି ।) | | ୭୯,୪୦୦ | | |
| ଚଳନ୍ତି ଦେଣା ଓ ସଞ୍ଚିତ : | | | | |
| ଚଳନ୍ତି ଦେଣା : | | | | |
| ବ୍ୟବସାୟ—ମହାଜନ | | ୧,୨୦,୦୦୦ | | |
| | | ୧୨,୨୯,୪୦୦ | | ୧୨,୨୯,୪୦୦ |

## ଦୃଷ୍ଟାନ୍ତ (୩୮)

କ, ଖ ଓ ଗଙ୍କର ଅଂଶୀଦାରୀ ବ୍ୟବସାୟକୁ ୧୯୭୬ ମସିହା ଡିସେମ୍ବର ୩୧ ତାରିଖର ଉଦ୍‌ବୃତ୍ତ ପତ୍ର ଭିତ୍ତିରେ ଏକ ଚଳନ୍ତି ବ୍ୟବସାୟ ରୂପେ କ୍ରୟ କରିବା ନିମନ୍ତେ ଦୁର୍ଗାଦେବୀ ଷ୍ଟୋର୍ସ ଲିମିଟେଡ୍ ୧୯୭୭ ମସିହା ଜାନୁୟାରୀ ୧ ତାରିଖରେ ଗଠିତ ହୋଇଥିଲା । ଏହି କମ୍ପାନୀର ପ୍ରାଧିକୃତ ମୂଳଧନର ପରିମାଣ ଟ ୫,୦୦,୦୦୦ ଥିଲା ଓ ଏହା ଅଂଶ ପ୍ରତି ଟ ୧୦୦ ହାରରେ ୫,୦୦୦ ସାଧାରଣ ଅଂଶରେ ବିଭକ୍ତ ହୋଇଥିଲା ।

ଅଂଶୀଦାରୀ ବ୍ୟବସାୟର ୩୧-୧୨-୧୯୭୬ ତାରିଖରେ ଉଦ୍‌ବୃତ୍ତ ପତ୍ର ନିମ୍ନରୂପ ଥିଲା :

| ଦାୟ ଓ ଦେଣା | | ଟଙ୍କା | ପରିସମ୍ପତ୍ତି | ଟଙ୍କା |
|---|---|---|---|---|
| ମୂଳଧନ ହିସାବ : ଟଙ୍କା | | | ଇମାରତ୍ | ୭୦,୦୦୦ |
| କ | ୮୦,୦୦୦ | | ଯନ୍ତ୍ର | ୫୦,୦୦୦ |
| ଖ | ୪୦,୦୦୦ | | ବିବିଧ ଖାତକ | ୪୦,୦୦୦ |
| ଗ | ୨୦,୦୦୦ | ୧,୪୦,୦୦୦ | ମହଜୁଦ୍ ପଣ୍ୟ | ୩୦,୦୦୦ |
| ଋଣ ହିସାବ | | ୨୦,୦୦୦ | ନଗଦ ତହବିଲ | ୫,୦୦୦ |
| ବିବିଧ ମହାଜନ | | ୩୫,୦୦୦ | | |
| | | ୧,୯୫,୦୦୦ | | ୧,୯୫,୦୦୦ |

କମ୍ପାନୀ ସମସ୍ତ ଦେଣା ଓ ପରିସମ୍ପତ୍ତିକୁ ବହି ମୂଲ୍ୟରେ କ୍ରୟ କରି ଟ ୧,୫୦,୦୦୦ କ୍ରୟ ପ୍ରତିଦାନ ରୂପେ ଦେବାକୁ ସ୍ୱୀକୃତ ହୋଇଥିଲେ । ଏଥି ମଧ୍ୟରୁ ଟ ୧,୨୦,୦୦୦ ପୂର୍ଣ୍ଣ ପ୍ରଦତ୍ତ ସାଧାରଣ ଅଂଶ ଆକାରରେ ଓ ଅବଶିଷ୍ଟ ନଗଦ ତହବିଲରେ ଦେବା ପାଇଁ ଚୁକ୍ତି ହୋଇଥିଲା । କମ୍ପାନୀ ଜନସାଧାରଣଙ୍କୁ ପ୍ରତି ଅଂଶ ଟ ୧୦୦ ହାରରେ ୧,୮୦୦ ସାଧାରଣ ଅଂଶ ବିକ୍ରୟ କରିଥିଲେ ଓ ଏଥି ବାବଦ ଅଂଶ ପ୍ରତି ଆବେଦନପତ୍ର ସହିତ ଟ ୨୫, ଆବଣ୍ଟିତ ହେଲେ ଟ ୩୫ ଓ ପ୍ରଥମ ଆହ୍ୱାନ ସମୟରେ ଟ ୨୦ ଲାଭ କରିଥିଲେ ।

ଦୁର୍ଗାଦେବୀ ଷ୍ଟୋର୍ସ ଲିମିଟେଡ଼ଙ୍କ ହିସାବ ଖାତାରେ ଆବଶ୍ୟକ ପ୍ରାରମ୍ଭିକ ଜାବ୍‌ଦା ପ୍ରସ୍ତୁତ କର ।

## ସମାଧାନ

| | | | ଡାସ୍ତି | ଡାଭା |
|---|---|---|---|---|
| ୧୯୭୬ | | | ଟଙ୍କା | ଟଙ୍କା |
| ଜାନୁ-୧ | ଇମାରତ୍ ହିସାବ | ଡାସ୍ତି | ୭୦,୦୦୦ | |
| | ଯନ୍ତ୍ର ହିସାବ | ଡାସ୍ତି | ୫୦,୦୦୦ | |
| | ବିବିଧ ଖାତକ ହିସାବ | ଡାସ୍ତି | ୪୦,୦୦୦ | |
| | ମହଜୁଦ ପଣ୍ୟ ହିସାବ | ଡାସ୍ତି | ୩୦,୦୦୦ | |
| | ନଗଦ ତହବିଲ ହିସାବ | ଡାସ୍ତି | ୫,୦୦୦ | |
| | ସୁନାମ ହିସାବ | ଡାସ୍ତି | ୧୦,୦୦୦ | |
| | ଋଣ ହିସାବ ବାବଦ | | | ୨୦,୦୦୦ |
| | ବିବିଧ ମହାଜନ ହିସାବ ବାବଦ | | | ୩୫,୦୦୦ |
| | (କ ଖ ଗ) ବିକ୍ରେତାଙ୍କ ହିସାବ ବାବଦ | | | ୧,୫୦,୦୦୦ |
| | ( ସମ୍ପତ୍ତି ଓ ଦାୟିତ୍ୱଗୁଡ଼ିକୁ ହିସାବଭୁକ୍ତ କରାଗଲା ଓ ସେଥିନିମନ୍ତେ ଦେୟ କ୍ରୟ ପ୍ରତିଦାନକୁ ହିସାବଭୁକ୍ତ କରାଗଲା ।) | | | |
| | ବ୍ୟାଙ୍କ୍ ହିସାବ | ଡାସ୍ତି | ୪୫,୦୦୦ | |
| | ଅଂଶ ଆବେଦନ ହିସାବ ବାବଦ | | | ୪୫,୦୦୦ |
| | (ଅଂଶ ପ୍ରତି ଟ ୨୫ ହାରରେ ୧,୮୦୦ ଅଂଶର ଆବେଦନ ଅର୍ଥ ମିଳିଲା ।) | | | |
| | ଅଂଶ ଆବେଦନ ହିସାବ | ଡାସ୍ତି | ୪୫,୦୦୦ | |
| | ଅଂଶ ମୂଳଧନ ହିସାବ ବାବଦ | | | ୪୫,୦୦୦ |
| | (ଅଂଶ ଆବେଦନ ହିସାବର ବଳକା ଅଂଶ ମୂଳଧନ ହିସାବକୁ ସ୍ଥାନାନ୍ତରିତ ହେଲା ।) | | | |
| | ଅଂଶ ଆବଣ୍ଟନ ହିସାବ | ଡାସ୍ତି | ୬୩,୦୦୦ | |
| | ଅଂଶ ମୂଳଧନ ହିସାବ ବାବଦ | | | ୬୩,୦୦୦ |
| | ( ଅଂଶ ପ୍ରତି ଟ ୩୫ ହାରରେ ୧,୮୦୦ ଅଂଶର ଆବଣ୍ଟନ ଅର୍ଥ ଅଂଶଧାରୀମାନଙ୍କଠାରୁ ପ୍ରାପ୍ୟ ହେଲା | | | |

| | ଦାୟୀ ଟଙ୍କା | ଦାତା ଟଙ୍କା |
|---|---|---|
| ବ୍ୟାଙ୍କ୍ ହିସାବ ଦାୟୀ | ୬୩,୦୦୦ | |
| ଅଂଶ ଆବେଦନ ହିସାବ ବାବଦ | | ୬୩,୦୦୦ |
| (ଅଂଶ ପ୍ରତି ଟ ୩୫ ହାରରେ ୧,୮୦୦ ଅଂଶର ଆବେଦନ ଅର୍ଥ ମିଳିଲା ।) | | |
| ଅଂଶ ପ୍ରଥମ ଆହ୍ୱାନ ହିସାବ ଦାୟୀ | ୩୬,୦୦୦ | |
| ଅଂଶ ମୂଳଧନ ହିସାବ ବାବଦ | | ୩୬,୦୦୦ |
| (ଅଂଶ ପ୍ରତି ଟ ୨୦ ହାରରେ ୧,୮୦୦ ଅଂଶ ବାବଦ ପ୍ରଥମ ଆହ୍ୱାନ ଅର୍ଥ ଅଂଶଧାରୀମାନଙ୍କଠାରୁ ପ୍ରାପ୍ୟ ହେଲା ।) | | |
| ବ୍ୟାଙ୍କ୍ ହିସାବ ଦାୟୀ | ୩୬,୦୦୦ | |
| ଅଂଶ ପ୍ରଥମ ଆହ୍ୱାନ ହିସାବ ବାବଦ | | ୩୬,୦୦୦ |
| (ଅଂଶ ପ୍ରଥମ ଆହ୍ୱାନ ବାବଦ ଅର୍ଥ ମିଳିଲା) | | |
| ବିକ୍ରେତାଙ୍କ ହିସାବ ଦାୟୀ | ୧,୫୦,୦୦୦ | |
| ଅଂଶ ମୂଳଧନ ହିସାବ ବାବଦ | | ୧,୨୦,୦୦୦ |
| ବ୍ୟାଙ୍କ୍ ହିସାବ ବାବଦ | | ୩୦,୦୦୦ |
| ( ବିକ୍ରେତାମାନଙ୍କୁ ଅଂଶ ପ୍ରତି ଟ ୧୦୦ ହାରରେ ୧,୨୦୦ ପୂର୍ଣ୍ଣ ପ୍ରଦତ୍ତ ଅଂଶ ଓ ଅବଶିଷ୍ଟ ଚେକ୍ ଆକାରରେ ବକେୟା ପ୍ରତିଦାନ ଅର୍ଥ ପରିଶୋଧ କରାଗଲା । ) | | |

## ବଣ୍ଟନଯୋଗ୍ୟ ଲାଭ

କମ୍ପାନୀର ବାର୍ଷିକ ଅଣ-ପୁଞ୍ଜି ଜାତୀୟ ଲାଭରୁ ଅଣ-ପୁଞ୍ଜି ଜାତୀୟ ବ୍ୟୟ ବାଦ୍ ଦିଆଯାଇ ଏବଂ ମୂଲ୍ୟ ହ୍ରାସ ଓ ଅନ୍ୟାନ୍ୟ ସଞ୍ଚିତ ସକାଶେ ବ୍ୟବସ୍ଥା କରାଯିବା ପରେ ଯାହା ଅବଶିଷ୍ଟ ରହେ ତାହାକୁ ନିଟ୍ ଲାଭ କୁହାଯାଏ । କମ୍ପାନୀ ଆଇନ ଅନୁଯାୟୀ ଏଥିମଧ୍ୟରୁ ଯେଉଁ ଅଂଶ କମ୍ପାନୀର ଅଂଶଧାରୀମାନଙ୍କୁ ବଣ୍ଟିତ ହୁଏ ତାହାକୁ ବଣ୍ଟନଯୋଗ୍ୟ ଲାଭ କୁହାଯାଏ । ଏ ସମ୍ବନ୍ଧରେ ୧୯୬୦ ମସିହାରେ କମ୍ପାନୀ ଆଇନ୍‌ରେ କେତେକ ସଂଶୋଧନ କରାଯିବା ଫଳରେ ଇଂଲଣ୍ଡର ବିଚାରାଳୟରେ ମାନ୍ୟବର ବିଚାରପତିମାନଙ୍କଦ୍ୱାରା ବିଭିନ୍ନ ମକଦ୍ଦମାରେ ପ୍ରଦତ୍ତ ରାୟଗୁଡ଼ିକ ଭାରତୀୟ କମ୍ପାନୀଗୁଡ଼ିକ ପ୍ରତି ଆଉ ପ୍ରଯୁଜ୍ୟ ନୁହେଁ ।

**ଲାଭାଂଶ**—କମ୍ପାନୀର ଅଂଶଧାରୀମାନେ ଆଇନତଃ ନିଟ୍ ଲାଭର ଯେଉଁ ଅଂଶ ଲାଭ କରନ୍ତି ତାହାକୁ **ଲାଭାଂଶ** କୁହାଯାଏ । ଏହି ଲାଭାଂଶ କମ୍ପାନୀର ନିର୍ଦ୍ଦେଶକମଣ୍ଡଳୀଙ୍କଦ୍ୱାରା ସୁପାରିଶ କରାଯାଏ ଓ ଅଂଶଧାରୀମାନଙ୍କର ବାର୍ଷିକ ସାଧାରଣ ସଭାରେ ଶତକଡ଼ା କେତେ ହାରରେ ଲାଭାଂଶ ବଣ୍ଟନ କରାଯିବ ତାହା ଅନୁମୋଦିତ ହୁଏ । ଯେହେତୁ ଲାଭାଂଶ ଲାଭର ବଣ୍ଟନ ଅଟେ, ତେଣୁ ପ୍ରଦେୟ ଲାଭାଂଶ ପରିମାଣ ସକାଶେ ଲାଭ ଓ କ୍ଷତି ବଣ୍ଟନ ହିସାବକୁ ଦାୟୀ କରାଯାଏ । ପରିମେଲ ନିୟମାବଳୀରେ ଅନ୍ୟ ନିର୍ଦ୍ଦେଶ ନ ଥିଲେ କେବଳ ଅଂଶଧାରୀମାନଙ୍କଠାରୁ ଆଦାୟୀକୃତ ଅଂଶଧନ ଉପରେ ଲାଭାଂଶ ହିସାବ କରାଯାଏ । ଯଦି କୌଣସି ଅଂଶଧାରୀ ଅାହ୍ୱାନ ଅର୍ଥ ଅଗ୍ରିମ ଦେଇଥାଆନ୍ତି, ତାହାହେଲେ ଅଂଶଧାରୀ ଅଗ୍ରିମ ପ୍ରଦତ୍ତ ଅର୍ଥ ବାବଦ ଲାଭାଂଶ ପାଆନ୍ତି ନାହିଁ । କେବଳ କମ୍ପାନୀ ଖାତାରେ ରେଜିଷ୍ଟ୍ରିଭୁକ୍ତ ଅଂଶଧାରୀମାନେ ହିଁ କେବଳ ଏହି ଲାଭାଂଶ ପାଇପାରିବେ । ଅଂଶ କ୍ଷମତା ସମର୍ଥନ ପତ୍ର ବା ସେୟାର ଓ୍ୟାରେଣ୍ଟର ବାହକମାନଙ୍କୁ ଏହି ଲାଭାଂଶ ଦିଆଯାଏ । କମ୍ପାନୀ ଆଇନର ୨୦୫ ଧାରାରେ ଲାଭାଂଶ, ପ୍ରଦାନ ସମ୍ପର୍କୀୟ ନିୟମାବଳୀ ପ୍ରଦତ୍ତ ହୋଇଛି । କମ୍ପାନୀ ଆଇନର ୨୦୭ ଧାରାରେ ନିର୍ଦ୍ଦେଶ ଦିଆଯାଇଛି ଯେ ଲାଭାଂଶ ଘୋଷିତ ହେବାର ୪୨ ଦିନ ମଧ୍ୟରେ ଏହା ଅଂଶଧାରୀମାନଙ୍କୁ ବଣ୍ଟିତ ହେବା ଆବଶ୍ୟକ ।

ଲାଭାଂଶ ବଣ୍ଟନ ସଂକ୍ରାନ୍ତ ନେଣଦେଣଗୁଡ଼ିକ ହିସାବ ଖାତାରେ ନିମ୍ନଲିଖିତ ରୂପେ ଲିପିବଦ୍ଧ କରାଯିବ :

ଲାଭ ଓ କ୍ଷତି ବଣ୍ଟନ ହିସାବ ଦାୟୀ
ଅଗ୍ରାଧିକାର ଅଂଶ ଲାଭାଂଶ ହିସାବ ବାବଦ
ସାଧାରଣ ଅଂଶ ଲାଭାଂଶ ହିସାବ ବାବଦ
(ଅଂଶ ପ୍ରତି···ଟଙ୍କା ହାରରେ···ଅଗ୍ରାଧିକାର
ଅଂଶ ବାବଦ···% ଓ ଅଂଶ ପ୍ରତି···ଟଙ୍କା
ହାରରେ···ସାଧାରଣ ଅଂଶ ବାବଦ···%
ଲାଭାଂଶର ସମାଯୋଜନ କରାଗଲା । )

ଅଂଶଧାରୀମାନଙ୍କୁ ଲାଭାଂଶ ବାବଦ ଅର୍ଥ ପ୍ରଦାନ କରିବା ପୂର୍ବରୁ ପ୍ରତ୍ୟେକଙ୍କ ପ୍ରାପ୍ୟରୁ ଆୟକର ବାବଦ ଦେୟକୁ କାଟି ରଖି ଅବଶିଷ୍ଟ ପରିମାଣର ଅର୍ଥ ପ୍ରଦାନ କରାଯାଏ । ହିସାବ ରଖିବାର ସୁବିଧା ଦୃଷ୍ଟିରୁ ଲାଭାଂଶ ବାବଦ ଦେୟ ଅର୍ଥକୁ ବ୍ୟାଙ୍କରେ ଗଚ୍ଛିତ ଥିବା ସାଧାରଣ ହିସାବରୁ ଦିଆ ନ ଯାଇ ଲାଭାଂଶ ହିସାବକୁ ସ୍ଥାନାନ୍ତରିତ କରାଯାଇ ତହିଁରୁ ପ୍ରଦାନ କରାଯାଏ । ଅଂଶଧାରୀମାନଙ୍କୁ ସାଧାରଣତଃ ଚେକ୍ ଅଥବା ଲାଭାଂଶ ଓ୍ୟାରେଣ୍ଟ ଆକାରରେ ଏହି ହିସାବର ଲାଭାଂଶ ଦିଆଯାଏ ।

**ମଧ୍ୟବର୍ତ୍ତୀକାଳୀନ ଲଭ୍ୟାଂଶ—**

ସାଧାରଣତଃ ହିସାବ ବର୍ଷ ମଧ୍ୟରେ ଲଭ୍ୟାଂଶ ଘୋଷଣା କରିବା ପାଇଁ କମ୍ପାନୀର ପରିମେଳ ନିୟମାବଳୀ ନିର୍ଦ୍ଦେଶକମଣ୍ଡଳୀଙ୍କୁ କ୍ଷମତା ପ୍ରଦାନ କରିଥାଏ । ମାତ୍ର ଯେହେତୁ ହିସାବ ବର୍ଷ ମଧ୍ୟରେ ନିର୍ଭରଯୋଗ୍ୟ ରୂପେ ନିଟ୍ ଲଭ ନିର୍ଣ୍ଣୟ କରିବା ସହଜ ହୁଏ ନାହିଁ, ତେଣୁ ଅନୁମାନିକ ଲଭ ଭିତ୍ତିରେ ଲଭ୍ୟାଂଶ ଘୋଷଣା କରିବାରେ ବିପଦର ଭୟ ଥାଏ । କାରଣ ବର୍ଷ ଶେଷରେ ଯଦି ଦେଖାଯାଏ ଯେ ଲଭ୍ୟାଂଶ ବଣ୍ଟନ କରିବା ସକାଶେ ନିଟ୍ ଲଭର ପରିମାଣ ଯଥେଷ୍ଟ ନ ଥିଲା, ତାହାହେଲେ ଲଭ୍ୟାଂଶ ମୂଳଧନରୁ ଦିଆଯାଇଛି ବୋଲି ବିବେଚିତ ହେବ । ଏପରି କ୍ଷେତ୍ରରେ ନିର୍ଦ୍ଦେଶକମାନେ ଆଇନତଃ ବର୍ଣ୍ଣିତ ଲଭ୍ୟାଂଶ ପରିମାଣକୁ ଭରଣା କରିବା ନିମନ୍ତେ ବ୍ୟକ୍ତିଗତ ଭାବରେ ଦାୟୀ ହେବେ । ଏଥିନିମନ୍ତେ ଅନ୍ତର୍ବର୍ତ୍ତୀ ଲଭ୍ୟାଂଶ ଘୋଷଣା କରିବା ପୂର୍ବରୁ ନିର୍ଦ୍ଦେଶକମାନେ ଯଥେଷ୍ଟ ସାବଧାନତାର ସହିତ ହିସାବ ପରୀକ୍ଷା କରନ୍ତି । ପ୍ରଥମ ୬ ମାସ ମଧ୍ୟରେ ଯଦି ଯଥେଷ୍ଟ ଲଭ ଅର୍ଜିତ ହୋଇଛି ଏବଂ ପରବର୍ତ୍ତୀ ୬ ମାସ ମଧ୍ୟରେ କ୍ଷତି ହେବାର କୌଣସି ସମ୍ଭାବନା ନାହିଁ ବୋଲି ନିର୍ଦ୍ଦେଶକମାନଙ୍କର ହୃଦ୍‌ବୋଧ ହୁଏ, ତେବେ ସେମାନେ ଅନ୍ତର୍ବର୍ତ୍ତୀ ଲଭ୍ୟାଂଶ ଘୋଷଣା କରନ୍ତି, ନଚେତ୍ ନୁହେଁ ।

ଯେତେବେଳେ ମଧ୍ୟବର୍ତ୍ତୀକାଳୀନ ଲଭ୍ୟାଂଶ ଘୋଷିତ ହୁଏ ସେତେବେଳେ ମଧ୍ୟବର୍ତ୍ତୀ-କାଳୀନ ଲଭ୍ୟାଂଶ ହିସାବକୁ ଦାୟୀ କରାଯାଏ । ଯେତେବେଳେ ଚୂଡ଼ାନ୍ତ ଲଭ୍ୟାଂଶ ଘୋଷିତ ହୁଏ ସେତେବେଳେ ଉଭୟ ପ୍ରକାର ଲଭ୍ୟାଂଶ ଲଭ ଓ କ୍ଷତି ବଣ୍ଟନ ହିସାବକୁ ସ୍ଥାନାନ୍ତରିତ କରାଯାଏ ।

**ଲଭ୍ୟାଂଶ ସମତା ବିଧାନ ପାଣ୍ଠି—**

ଯଦି ବିଭିନ୍ନ ବର୍ଷ ବିଭିନ୍ନ ହାରରେ ଲଭ୍ୟାଂଶ ବଣ୍ଟିତ ହୁଏ, ତାହାହେଲେ ତାହାର କେତେକ କୁଫଳ ଦେଖାଯାଏ । ପୂର୍ବ ବର୍ଷ ତୁଳନାରେ ଚଳିତ ବର୍ଷ ଏବଂ ତତ୍‌ପରବର୍ତ୍ତୀ ବର୍ଷମାନଙ୍କରେ ଯଦି ଲଭ୍ୟାଂଶର ହାର କ୍ରମାଗତ ବୃଦ୍ଧି ପାଉଥାଏ, ତାହାହେଲେ କୌଣସି ଅସୁବିଧା ହୁଏ ନାହିଁ । ମାତ୍ର ଏହି ହାର ହ୍ରାସ ପାଇଲେ ଅଂଶଧାରୀମାନେ ଯେ କେବଳ ଅସନ୍ତୁଷ୍ଟ ହୁଅନ୍ତି ତାହା ନୁହେଁ, କମ୍ପାନୀର ଅଂଶଗୁଡ଼ିକର ମୂଲ୍ୟ ମଧ୍ୟ ଷ୍ଟକ୍ ବିନିମୟ ବିପଣିରେ ହ୍ରାସ ପାଏ ଏବଂ କମ୍ପାନୀ ପ୍ରଶାସନର ଅପଟୁତା ଚତୁର୍ଦ୍ଦିଗରେ ବିଘୋଷିତ ହୁଏ । ତେଣୁ କମ୍ପାନୀ ଲଭ୍ୟାଂଶର ପୂର୍ବ ହାର ବଜାୟ ରଖିବା ପାଇଁ ସର୍ବଦା ପ୍ରୟାସ କରନ୍ତି । ଏଥିନିମନ୍ତେ ଲଭ୍ୟାଂଶ ସମତା ବିଧାନ ପାଣ୍ଠି ନାମକ ଏକ ପାଣ୍ଠି ଖୋଲାଯାଏ ଏବଂ ବଣ୍ଟନ-ଯୋଗ୍ୟ ଲଭର କେତେକ ପରିମାଣ ପ୍ରତି ବର୍ଷ ଏହି ପାଣ୍ଠିରେ ଜମା କରାଯାଏ । ଯେଉଁ

ବର୍ଷ ଲାଭର ପରିମାଣ ହ୍ରାସ ପାଏ ସେହି ବର୍ଷ ଏହି ପାଣ୍ଠିରୁ କେତେକ ପରିମାଣ ଲାଭ ଓ କ୍ଷତି ବଣ୍ଟନ ହିସାବକୁ ସ୍ଥାନାନ୍ତରିତ କରାଯାଇ ଲାଭାଂଶର ପୂର୍ବ ହାର ବଜାୟ ରଖାଯାଏ । ଏହି ହିସାବର ବଳକା ସର୍ବଦା ଉଦ୍‌ବୃତ୍ତି ପତ୍ରର ଦାୟ ଓ ଦେଣା ପାର୍ଶ୍ୱରେ ପ୍ରଦର୍ଶିତ ହୁଏ ।

## ଲାଭାଂଶ ଉପରେ ଆୟକର—

ଭାରତୀୟ ଆୟକର ଅନୁସାରେ ଅଂଶଧାରୀମାନଙ୍କୁ ଲାଭାଂଶ ବଣ୍ଟନ କରାଯିବା ପୂର୍ବରୁ କମ୍ପାନୀକୁ ତହିଁରୁ ନିର୍ଦ୍ଦିଷ୍ଟ ହାରରେ ଆୟକର କାଟି ରଖି ନେଟ୍ ଲାଭାଂଶ ଦେବାକୁ ହୁଏ । ଯେଉଁ ପରିମାଣର ଆୟକର କାଟି ରଖାଯାଉଛି ତାହାର ଏକ ପ୍ରମାଣପତ୍ର କମ୍ପାନୀ ତରଫରୁ ପ୍ରତ୍ୟେକ ଅଂଶଧାରୀଙ୍କୁ ଦେବାକୁ ପଡ଼େ । ଆବଶ୍ୟକ କ୍ଷେତ୍ରରେ ଏହି ପ୍ରମାଣପତ୍ର ଦାଖଲ କରି ଅଂଶଧାରୀମାନେ ଆୟକର ବିଭାଗରୁ କଟାଯାଇଥିବା ଆୟକର ପରିମାଣରୁ କେତେକ ଅଂଶ ଫେରସ୍ତ ପାଆନ୍ତି । ଋଣପତ୍ରର ସୁଧ ଦେବା ସମୟରେ ମଧ୍ୟ କମ୍ପାନୀ ତହିଁରୁ ଆୟକର ବାବଦ ଅର୍ଥ କାଟିରଖନ୍ତି । ଲାଭାଂଶ ବଣ୍ଟନ କରିବାର ଏକ ସପ୍ତାହ ପରେ କମ୍ପାନୀକୁ ଆୟକର ବାବଦ କାଟି ରଖିଥିବା ଅର୍ଥ ଆୟକର ବିଭାଗରେ ଜମା କରିବାକୁ ହୁଏ । କମ୍ପାନୀ ଯଦି ଆୟକରରହିତ ଲାଭାଂଶ ଘୋଷଣା କରନ୍ତି ତାହାହେଲେ ମୋଟ ଲାଭାଂଶ ପରିମାଣ ଉପରେ ଦେୟ ଆୟକର କମ୍ପାନୀକୁ ନିଜ ତହବିଲରୁ ଦେବାକୁ ପଡ଼େ ।

## ମୂଳଧନ ଉପରେ ସୁଧ ପ୍ରଦାନ—

ସାଧାରଣତଃ କମ୍ପାନୀ ଯଥେଷ୍ଟ ପରିମାଣର ଲାଭ ଅର୍ଜନ ନ କରିବା ପର୍ଯ୍ୟନ୍ତ ଲାଭାଂଶ ଘୋଷଣା କରନ୍ତି ନାହିଁ । କିନ୍ତୁ କେତେକ କ୍ଷେତ୍ରରେ ଏହାର ବ୍ୟତିକ୍ରମ ଦେଖାଯାଏ । କେତେକ ପ୍ରକାର ଶିଳ୍ପ ଅଥବା ବ୍ୟବସାୟରେ ଉତ୍ପାଦନ ଆରମ୍ଭ କରିବା ପୂର୍ବରୁ ନିର୍ମାଣ କାର୍ଯ୍ୟ, ଯନ୍ତ୍ର ଉପକରଣାଦି କ୍ରୟ କରି ସେଗୁଡ଼ିକର ସଂସ୍ଥାପନ ପ୍ରଭୃତି ସକାଶେ ଦୀର୍ଘ ସମୟ ଆବଶ୍ୟକ ହୋଇପାରେ । ଏପରି କ୍ଷେତ୍ରରେ ଅଂଶଧାରୀମାନେ ଯଦି ଦୀର୍ଘକାଳ ଯାବତ୍ କମ୍ପାନୀ ଅଂଶ ବାବଦ କୌଣସି ଲାଭାଂଶ ନ ପାଆନ୍ତି ତାହାହେଲେ ସେମାନେ ଏଭଳି ଶିଳ୍ପ ଅଥବା ବ୍ୟବସାୟରେ ପୁଞ୍ଜି ଖଟାଇବାକୁ ପଶ୍ଚାତ୍‌ପଦ ହେବା ସ୍ୱାଭାବିକ । ତେଣୁ ଅଂଶଧାରୀମାନଙ୍କୁ ସନ୍ତୁଷ୍ଟ କରିବା ଉଦ୍ଦେଶ୍ୟରେ କମ୍ପାନୀକୁ ମୂଳଧନରୁ ଆଦାୟୀକୃତ ଅଂଶଧନ ଉପରେ ସୁଧ ଦେବାର ବ୍ୟବସ୍ଥା କରିବାକୁ ହୁଏ । ଅବଶ୍ୟ ଏଭଳି ସୁଧ ପ୍ରଦାନ କମ୍ପାନୀ ଆଇନର ୨୦୮ ଧାରା ଅନୁଯାୟୀ କେତେକ ସର୍ତ୍ତସାପେକ୍ଷ । ଏହି ସର୍ତ୍ତଗୁଡ଼ିକ ନିମ୍ନରେ ପ୍ରଦତ୍ତ ହେଲ :

(୧) କମ୍ପାନୀର ପରିମେଳ ନିୟମାବଳୀରେ ଏହି ପ୍ରକାର ସୁଧ ପ୍ରଦାନ କରିବା ପାଇଁ କମ୍ପାନୀର ଯେଉଁ ଅଧିକାର ଅଛି ତାହା ଲିପିବଦ୍ଧ ହୋଇଥିବା ଆବଶ୍ୟକ । ଯଦି

ପରିମେଲ ନିୟମାବଳୀରେ ଏହାର ଉଲ୍ଲେଖ ନ ଥାଏ, ତାହାହେଲେ ବିଶେଷ ପ୍ରସ୍ତାବ କରିଅରେ କମ୍ପାନୀକୁ ଏହି କ୍ଷମତା ଲାଭ କରିବାକୁ ହେବ ।

(୨) କେନ୍ଦ୍ରୀୟ ସରକାରଙ୍କର ପୂର୍ବ ଅନୁମୋଦନ ବ୍ୟତୀତ ଏଭଳି ସୁଧ ଦିଆଯାଇପାରିବ ନାହିଁ ।

(୩) କେନ୍ଦ୍ରୀୟ ସରକାର ଯେଉଁ ନିର୍ଦ୍ଦିଷ୍ଟ ସମୟ ମଧ୍ୟରେ ଏଭଳି ସୁଧ ପ୍ରଦାନ କରିବା ପାଇଁ ଅନୁମତି ଦେଇଥିବେ କେବଳ ସେହି ସମୟ ପର୍ଯ୍ୟନ୍ତ ଏହା ଦିଆଯାଇପାରିବ । କେନ୍ଦ୍ରୀୟ ସରକାର ଏହି ପ୍ରକାର ଅନୁମତି ଦେବା ପୂର୍ବରୁ କମ୍ପାନୀ ବ୍ୟୟରେ କମ୍ପାନୀର ଆର୍ଥିକ ଅବସ୍ଥାର ଅନୁସନ୍ଧାନ କରାଇପାରନ୍ତି ।

ଯେଉଁ ଆର୍ଥିକ ବର୍ଷରେ କମ୍ପାନୀର ନିର୍ମାଣ କାର୍ଯ୍ୟ ସମାପ୍ତ ହୁଏ ତାହାର ପରବର୍ତ୍ତୀ ଆର୍ଥିକ ବର୍ଷଠାରୁ ଅଉ ଏଭଳି ସୁଧ ଦିଆଯାଇ ପାରିବ ନାହିଁ ।

(୪) କେନ୍ଦ୍ରୀୟ ସରକାରଙ୍କର ଅନ୍ୟ ନିର୍ଦ୍ଦେଶ ନ ଥିଲେ ଏହି ସୁଧର ଶତକଡ଼ା ହାର ୪ରୁ ଅଧିକ ହେବ ନାହିଁ ।

ମୂଳଧନରୁ ପ୍ରଦତ୍ତ ସୁଧର ପରିମାଣ କମ୍ପାନୀର ଉଦ୍‌ବୃତ୍ତ ପତ୍ରର ପରିସମ୍ପତ୍ତି ପାର୍ଶ୍ୱରେ ବିବିଧ ବ୍ୟୟ ଶିରୋନାମା ନିମ୍ନରେ ପ୍ରଦର୍ଶିତ ହେବ ।

**କାଳାନ୍ତିକ ହିସାବ—**

ଏକ ମାଲିକାନା ଓ ଅଂଶୀଦାରୀ ବ୍ୟବସାୟରେ ହିସାବ ରଖିବା ସମ୍ପର୍କରେ କୌଣସି ଆଇନଗତ ବାଧ୍ୟ ବାଧ୍ୟ ନାହିଁ; କିନ୍ତୁ କମ୍ପାନୀର ହିସାବ ରକ୍ଷଣ କମ୍ପାନୀ ଆଇନର ୨୦୯ ଧାରାଦ୍ୱାରା ନିୟନ୍ତ୍ରିତ ହୁଏ । ଏହି ଧାରା ଅନୁସାରେ କମ୍ପାନୀକୁ ପ୍ରତି ବର୍ଷ ତାହାର ହିସାବ ନିକାଶ କରି ଆଇନରେ ବର୍ଣ୍ଣିତ ପଦ୍ଧତି ଅନୁସାରେ ନିଟ୍ ଲାଭ ଓ କ୍ଷତି ହିସାବ ଏବଂ ଉଦ୍‌ବୃତ୍ତ ପତ୍ର ପ୍ରସ୍ତୁତ କରିବାକୁ ହୁଏ । କମ୍ପାନୀ ଆଇନର ୨୧୦ରେ ଏହି ହିସାବ ଓ ଉଦ୍‌ବୃତ୍ତ ପତ୍ର ପ୍ରସ୍ତୁତ କରିବାର ନିୟମାବଳୀ ବର୍ଣ୍ଣିତ ହୋଇଛି ।

ଉକ୍ତ ଧାରାରେ କୁହାଯାଇଛି ଯେ କମ୍ପାନୀ ତାହାର ବାର୍ଷିକ ସାଧାରଣ ସଭାରେ (କ) କୌଣସି ନିର୍ଦ୍ଦିଷ୍ଟ ସମୟ ସାଧାରଣତଃ ଗୋଟିଏ ବର୍ଷର ଶେଷରେ ଏକ ନିର୍ଦ୍ଦିଷ୍ଟ ଦିବସର ଉଦ୍‌ବୃତ୍ତ ପତ୍ର ଏବଂ (ଖ) ଉକ୍ତ ବର୍ଷର ଏକ ନିଟ୍ ଲାଭ ଓ କ୍ଷତି ହିସାବ ଉପସ୍ଥାପିତ କରିବେ । ଲାଭ ଉଦ୍ଦେଶ୍ୟରେ ଯଦି ଏହି କମ୍ପାନୀ ଗଠିତ ହୋଇ ନ ଥାଏ, ତାହାହେଲେ

ନଟ୍ ଲଭ ଓ କ୍ଷତି ହିସାବ ପରବର୍ତ୍ତୀ ଆୟ ଓ ବ୍ୟୟ ହିସାବ ଉପସ୍ଥାପିତ କରାଯିବ । ଏହି ଆଇନରେ କିନ୍ତୁ ମୋଟ ଲଭ ଓ କ୍ଷତି ହିସାବର କୌଣସି ଉଲ୍ଲେଖ ନାହିଁ । ମାତ୍ର ଯେହେତୁ ମୋଟ ଲଭ ଓ କ୍ଷତି ହିସାବ ପ୍ରସ୍ତୁତ ନ କରି ନଟ୍ ଲଭ ଓ କ୍ଷତି ହିସାବ ପ୍ରସ୍ତୁତ କରିବା ଅସମ୍ଭବ, ତେଣୁ ଏହାକୁ ନଟ୍ ଲଭ ଓ କ୍ଷତି ହିସାବର ପ୍ରଥମାଂଶରେ ଲେଖାଯିବ ।

କମ୍ପାନୀର ନଟ୍ ଲଭ ଓ କ୍ଷତି ହିସାବ ଓ ଉଦ୍‌ବୃତ୍ତ ପତ୍ର ଯେଉଁ ସମୟ ସକାଶେ ପ୍ରସ୍ତୁତ କରାଯାଏ ତାହାକୁ କମ୍ପାନୀର ଆର୍ଥିକ ବର୍ଷ କୁହାଯାଏ । ଏହି ସମୟ ୧୨ ମାସରୁ ଊଣା ଅଥବା ଅଧିକ ହୋଇପାରେ; ମାତ୍ର କୌଣସି କ୍ଷେତ୍ରରେ ଏହି ସମୟ ୧୫ ମାସରୁ ଅଧିକ ହେବ ନାହିଁ । କେବଳ ନୂତନ ଗଠିତ କମ୍ପାନୀ କ୍ଷେତ୍ରରେ ଏହି ଆର୍ଥିକ ବର୍ଷ ୧୨ ମାସରୁ ଊଣା ବା ଅଧିକ ହୋଇପାରେ; କିନ୍ତୁ ପରବର୍ତ୍ତୀ ବର୍ଷର ହିସାବ ୧୨ ମାସ ସକାଶେ ପ୍ରସ୍ତୁତ କରାଯିବ ।

କମ୍ପାନୀ ଆଇନ ଅନୁଯାୟୀ ଆର୍ଥିକ ବର୍ଷ ଶେଷ ହେବାର ଶେଷ ଦିବସଠାରୁ ୬ ମାସ ମଧ୍ୟରେ କମ୍ପାନୀର ନିର୍ଦ୍ଦେଶକମାନଙ୍କୁ କମ୍ପାନୀର ହିସାବ ପତ୍ର ଅଂଶଧାରୀମାନଙ୍କର ବାର୍ଷିକ ସାଧାରଣ ସଭାରେ ଉପସ୍ଥାପିତ କରିବାକୁ ହୁଏ । କମ୍ପାନୀ ନିବନ୍ଧକ ଇଚ୍ଛା କଲେ ଏହି ସାଧାରଣ ସଭା ଆହ୍ୱାନ କରିବା ପାଇଁ ଅତିରିକ୍ତ ୩ ମାସ ସମୟ ଦେଇପାରନ୍ତି ।

**ନଟ ଲଭ ଓ କ୍ଷତି ହିସାବ—**

କମ୍ପାନୀର ପ୍ରତିଟି ଲଭ ଓ କ୍ଷତି ହିସାବ କମ୍ପାନୀର ଉପଯୁକ୍ତ ଆର୍ଥିକ ବର୍ଷର ସଠିକ ଲଭ ବା କ୍ଷତିର ଅବସ୍ଥା ବର୍ଣ୍ଣନା କରିବା ଆବଶ୍ୟକ ଏବଂ କମ୍ପାନୀ ଆଇନର ଅନୁସୂଚୀ VI ଭାଗ II ରେ ପ୍ରଦତ୍ତ ନିୟମାବଳୀ ଅନୁଯାୟୀ ରଚିତ ହେବା ଆବଶ୍ୟକ । ଯଦିଓ କମ୍ପାନୀ ଆଇନରେ କେବଳ ନଟ୍ ଲଭ ଓ କ୍ଷତି ହିସାବ ପ୍ରସ୍ତୁତ କରିବା ପାଇଁ କୁହାଯାଇଛି ତଥାପି ଅଂଶଧାରୀମାନଙ୍କର ବୁଝିବାର ସୁବିଧା ଦୃଷ୍ଟିରୁ ଏହି ହିସାବକୁ ତିନି ଅଥବା ଅଂଶରେ ବିଭକ୍ତ କରି ପ୍ରସ୍ତୁତ କରନ୍ତି, ଯଥା—ଉତ୍ପାଦନ ହିସାବ, ମୋଟ ଲଭ ଓ କ୍ଷତି ହିସାବ, ନଟ୍ ଲଭ ଓ କ୍ଷତି ହିସାବ ଏବଂ ଲଭ ଓ କ୍ଷତି ବଣ୍ଟନ ହିସାବ । ଏହି ହିସାବଗୁଡ଼ିକ ପ୍ରସ୍ତୁତ କରିବାର ପ୍ରଣାଳୀ ପୂର୍ବରୁ ଯେପରି ବର୍ଣ୍ଣିତ ହୋଇଛି ଏହାର ପ୍ରଣାଳୀ ତାହାର ଅନୁରୂପ ଅଟେ ।

ଦ୍ୱିତୀୟତଃ, କମ୍ପାନୀ ଆଇନ ଅନୁଯାୟୀ ନଟ୍ ଲଭ ଓ କ୍ଷତି ହିସାବର ଦାୟୀ ଓ ଦାତା ଉଭୟ ପାର୍ଶ୍ୱରେ ଗୋଟିଏ ଅଧିକା ସ୍ତମ୍ଭରେ ପ୍ରତି ବିଷୟ ସମ୍ବନ୍ଧୀୟ ପୂର୍ବତନ ଆର୍ଥିକ ବର୍ଷର ଅଙ୍କଗୁଡ଼ିକ ଲେଖାଯିବ । ଏହି ସ୍ତମ୍ଭ ସାଧାରଣତଃ ଉଭୟ ପାର୍ଶ୍ୱରେ ବିବରଣୀ

ସ୍ତମ୍ଭର ବାମ ପାର୍ଶ୍ୱରେ ରଖାଯାଏ । ତୃତୀୟତଃ, ଏହି ହିସାବର ପ୍ରତ୍ୟେକଟି ବିଷୟ ସୁସମ୍ପୂର୍ଣ୍ଣ ହେବା ପ୍ରୟୋଜନ । ଯଦି କୌଣସି ବିଷୟ ହିସାବ ରକ୍ଷଣର ମୂଳ ନୀତିଠାରୁ ବିଚ୍ୟୁତ ହୋଇଥାଏ, ତାହାହେଲେ ସେ ସମ୍ପର୍କରେ ଏକ ଟୀକା ବା ମନ୍ତବ୍ୟ ରହିବା ପ୍ରୟୋଜନ । ଚତୁର୍ଥତଃ, ପରିଚାଳନା ନିର୍ଦ୍ଦେଶକ, ନିର୍ଦ୍ଦେଶକ ଓ ପରିଚାଳକଙ୍କୁ ପ୍ରଦତ୍ତ ଅର୍ଥ ସ୍ୱତନ୍ତ୍ର ଭାବରେ ପ୍ରଦର୍ଶିତ ହେବା ଆବଶ୍ୟକ । ପଞ୍ଚମତଃ, ନିଟ୍ ଲାଭ ଓ କ୍ଷତି ହିସାବ ଏପରି ଭାବରେ ପ୍ରସ୍ତୁତ କରାଯିବା ଆବଶ୍ୟକ, ଯାହା କମ୍ପାନୀର ଲାଭ-କ୍ଷତିର ସଠିକ ଓ ସୁସ୍ପଷ୍ଟ ଅବସ୍ଥା ପ୍ରକାଶ କରିବାକୁ ସମର୍ଥ ହେବ । ଏହା ପ୍ରସ୍ତୁତ କରିବା ସମୟରେ ହିସାବ ରକ୍ଷଣ ଶାସ୍ତ୍ରର ସବୁ ନୀତି ପାଳିତ ହେବା ଆବଶ୍ୟକ । ଏହି ହିସାବ ଏପରି କରାଯିବା ଉଦ୍ଦେଶ୍ୟ ଯଦ୍ଦ୍ୱାରା କମ୍ପାନୀର ପ୍ରକୃତ ଆର୍ଥିକ ଅବସ୍ଥା ଯାହା ତାହା ଅପେକ୍ଷା ଯେପରି ଅତିରଞ୍ଜିତ ନ ହୁଏ । ପୁନଶ୍ଚ ଏଥିରେ କୌଣସି ଗୁପ୍ତ ସଞ୍ଚିତ ରଖାଯିବ ନାହିଁ । ଷଷ୍ଠତଃ, ଯେଉଁ ହିସାବର ଅଙ୍କଗୁଡ଼ିକ ଅଧିକ ହୋଇଥିବାରୁ କମ୍ପାନୀର ଲାଭ ଓ କ୍ଷତିର ଅଙ୍କ ପ୍ରଭାବିତ ହୁଏ, ସେଗୁଡ଼ିକୁ ହିସାବରେ ପୃଥକ୍ ଭାବରେ ପ୍ରକାଶ କରାଯିବ । ଏ ସମ୍ପର୍କରେ କମ୍ପାନୀ ଆଇନର ଅନୁସୂଚୀ VI ଅଂଶ II ରେ ବର୍ଣ୍ଣିତ ନିର୍ଦ୍ଦେଶଗୁଡ଼ିକ ପାଳିତ ହେବା ଆବଶ୍ୟକ ।

**ଉଦ୍‌ବୃତ୍ତ ପତ୍ର—**

କମ୍ପାନୀ ଆଇନର ୨୧୦ ଧାରା ଅନୁଯାୟୀ କମ୍ପାନୀର ଆର୍ଥିକ ବର୍ଷ ଅନ୍ତେ ଗୋଟିଏ ଉଦ୍‌ବୃତ୍ତ ପତ୍ର ପ୍ରସ୍ତୁତ କରାଯିବା ପ୍ରୟୋଜନ । କମ୍ପାନୀ ଆଇନର ୨୧୧ ଧାରାରେ ଏହି ଉଦ୍‌ବୃତ୍ତ ପତ୍ରର ନମୁନା ଓ ପ୍ରସ୍ତୁତ ପ୍ରଣାଳୀ ବର୍ଣ୍ଣିତ ହୋଇଛି । କମ୍ପାନୀ ଆଇନର ଅନୁସୂଚୀ VI ଅଂଶ I ରେ ପ୍ରଦତ୍ତ ଫର୍ମ ଅନୁଯାୟୀ ଏହି ଉଦ୍‌ବୃତ୍ତ ପତ୍ର ପ୍ରସ୍ତୁତ କରାଯିବ । କେନ୍ଦ୍ରୀୟ ସରକାର ଇଚ୍ଛାକଲେ କୌଣସି କମ୍ପାନୀକୁ ଏହି ଫର୍ମ ବ୍ୟବହାରରୁ ଅବ୍ୟାହତି ଦେଇପାରନ୍ତି ।

କମ୍ପାନୀର ଉଦ୍‌ବୃତ୍ତ ପତ୍ର ପ୍ରସ୍ତୁତ କରିବା ସମୟରେ ଏଥିପ୍ରତି ଲକ୍ଷ୍ୟ ରଖିବା ଉଚିତ ଯେପରି ଏହା କମ୍ପାନୀର ସାମଗ୍ରିକ ଅବସ୍ଥାର ସଠିକ ଓ ସୁସ୍ପଷ୍ଟ ରୂପ ପ୍ରକାଶ କରିବ । ଏହା ଏପରି ଭାବରେ ପ୍ରସ୍ତୁତ କରାଯିବା ଆବଶ୍ୟକ ଯଦ୍ଦ୍ୱାରା କମ୍ପାନୀର ପ୍ରକୃତ ଅବସ୍ଥା ଅତିରଞ୍ଜିତ ହେବ ନାହିଁ କିମ୍ବା ଗୁପ୍ତ ସଞ୍ଚିତ ହେତୁ ନିକୃଷ୍ଟତର ରୂପେ ପ୍ରଦର୍ଶନ କରାଯିବ ନାହିଁ ।

କମ୍ପାନୀ ଉଦ୍‌ବୃତ୍ତ ପତ୍ରର ଉଭୟ ପାର୍ଶ୍ୱରେ, ଅର୍ଥାତ୍ ଦାୟ ଓ ଦେଣା ଏବଂ ପରିସମ୍ପତ୍ତିର ବିବରଣୀ ସ୍ତମ୍ଭର ବାମ ପାର୍ଶ୍ୱରେ ପୂର୍ବବର୍ତ୍ତୀ ବର୍ଷର ସଂଶ୍ଳିଷ୍ଟ ଅଙ୍କଗୁଡ଼ିକ ପ୍ରଦର୍ଶନ କରିବାକୁ ପଡ଼ିବ ।

ଯେଉଁ କ୍ଷେତ୍ରରେ କୌଣସି ବିଷୟ ଉଦ୍‌ବୃତ୍ତ ପତ୍ରରେ ବିସ୍ତାରିତ ଭାବରେ ପ୍ରଦର୍ଶନ କରିବା ସମ୍ଭବ ହୁଏ ନାହିଁ, ସେଠାରେ ତାହାକୁ ଏକ ପୃଥକ୍ ତାଲିକାରେ ଦେଖାଇବାକୁ ପଡ଼ିବ ଏବଂ ସେହି ତାଲିକାଗୁଡ଼ିକ ଉଦ୍‌ବୃତ୍ତ ପତ୍ରର ଏକ ଅଂଶ ହୋଇ ରହିବ । କମ୍ପାନୀ ଆଇନର ଅନୁସୂଚୀ VI ଅଂଶ I ର ପ୍ରଦତ୍ତ ଉଦ୍‌ବୃତ୍ତ ପତ୍ରର ଏକ ନମୁନା ନିମ୍ନରେ ପ୍ରଦର୍ଶିତ ହେଲା ।

କମ୍ପାନୀ ଆଇନର ୨୧୭ ଧାରାରେ କୁହାଯାଇଛି ଯେ କମ୍ପାନୀର ଉଦ୍‌ବୃତ୍ତ ପତ୍ର ସହିତ ନିର୍ଦ୍ଦେଶକଙ୍କର ଏକ ବିବୃତି ସଂଯୁକ୍ତ ରହିବ । ସେହି ବିବୃତିରେ କମ୍ପାନୀର ବର୍ତ୍ତମାନ ଅବସ୍ଥା, ଲାଭ ଓ କ୍ଷତିର ଅବସ୍ଥା ଓ ଲାଭାଂଶ, ହିସାବ ସମ୍ବନ୍ଧୀୟ ବ୍ୟାଖ୍ୟା, ବ୍ୟବସାୟର ପରିବର୍ତ୍ତନ ଓ ଆର୍ଥିକ ଅବସ୍ଥା ପ୍ରଭୃତି ଲିପିବଦ୍ଧ ଥାଏ ।

କମ୍ପାନୀର ଉଦ୍‌ବୃତ୍ତ ପତ୍ରର ଆଇନସମ୍ମତ ଫର୍ମ ନିମ୍ନରେ ପ୍ରଦତ୍ତ ହେଲା ।

## ଅନୁସୂଚୀ VI

### ପ୍ରଥମ ଭାଗ—କମ୍ପାନୀ ଉଦ୍‌ବୃତ୍ତ ପତ୍ରର ଫର୍ମ

### କମ୍ପାନୀ ଲିମିଟେଡ଼ର......ତାରିଖର ଉଦ୍‌ବୃତ୍ତ ପତ୍ର

| ପୂର୍ବ ବର୍ଷର ଅଙ୍କ | ଦାୟ ଓ ଦେଣା | ଚଳିତ ବର୍ଷର ଅଙ୍କ |
|---|---|---|
| ଟଙ୍କା | ଅଂଶ ମୂଳଧନ : | ଟଙ୍କା |
| | ପ୍ରତି ଅଂଶ...ଟଙ୍କା ହାରରେ...ପ୍ରାଧିକୃତ ଅଂଶ | |
| | ପ୍ରତି ଅଂଶ...ଟଙ୍କା ହାରରେ...ପ୍ରଚଳିତ ଅଂଶ | |
| | ପ୍ରତି ଅଂଶ...ଟଙ୍କା ହାରରେ...ବିକ୍ରିତ ଅଂଶ | |
| | (ବିଭିନ୍ନ ଶ୍ରେଣୀର ଅଂଶ ମୂଳଧନ ମଧ୍ୟରେ ପାର୍ଥକ୍ୟ ଦର୍ଶାଅ ପ୍ରତି ଶ୍ରେଣୀ ସମ୍ବନ୍ଧରେ ନିମ୍ନଲିଖିତ ନିର୍ଦ୍ଦିଷ୍ଟ ବିବରଣୀ ଦିଅ । ) | |
| | (କ) ଉପରୋକ୍ତ ଅଂଶଗୁଡ଼ିକ ମଧ୍ୟରୁ...ଅଂଶ ଚୁକ୍ତି ଅନୁଯାୟୀ ...କୁ ବିନା ନଗଦ ମୂଲ୍ୟରେ ପୂର୍ଣ୍ଣ ଅଦାୟୀକୃତ ଅଂଶ ରୂପେ ପ୍ରଚଳିତ କରାଯାଇଛି । | |
| | (ଖ) ଉପରୋକ୍ତ ଅଂଶଗୁଡ଼ିକ ମଧ୍ୟରୁ...ଅଂଶ ପୂର୍ଣ୍ଣ ଅଦାୟୀକୃତ ଅଂଶ ରୂପେ ବୋନସ ଅଂଶ ସ୍ୱରୂପ ଦିଆଯାଇଛି । | |
| | ବାଦ୍ : ଅପ୍ରାପ୍ତ ଆହ୍ୱାନ ଅର୍ଥ : | |

<table>
<tr><th>ପୂର୍ବ ବର୍ଷର ଅଙ୍କ</th><th>ଦାୟ ଓ ଦେଣା</th><th>ଚଳିତ ବର୍ଷର ଅଙ୍କ</th></tr>
<tr><td>ଟଙ୍କା</td><td>(i) ପରିଚାଳନା ପ୍ରତିନିଧି ଅଥବା ସମ୍ପାଦକ ଏବଂ କୋଷାଧ୍ୟକ୍ଷଙ୍କଠାରୁ ଏବଂ ଯଦି ପରିଚାଳନା ପ୍ରତିନିଧି ଅଥବା ସମ୍ପାଦକ ଏବଂ କୋଷାଧ୍ୟକ୍ଷ ଗୋଟିଏ ଅଂଶୀଦାରୀ ପ୍ରତିଷ୍ଠାନ ହୁଏ, ତାହାହେଲେ ତାହାର ଅଂଶୀଦାର-ମାନଙ୍କଠାରୁ ଏବଂ ଯଦି ପରିଚାଳନା ପ୍ରତିନିଧି ଅଥବା ସମ୍ପାଦକ ଏବଂ କୋଷାଧ୍ୟକ୍ଷ ଗୋଟିଏ ପ୍ରାଇଭେଟ୍ କମ୍ପାନୀ ହୋଇଥାଏ ତାହାହେଲେ ତାହାର ନିର୍ଦ୍ଦେଶକମାନଙ୍କଠାରୁ<br>(ii) ନିର୍ଦ୍ଦେଶକମାନଙ୍କଠାରୁ<br>(iii) ଅନ୍ୟାନ୍ୟମାନଙ୍କଠାରୁ<br>ଯୁକ୍ତ : ବାଜ୍ୟାପ୍ତ ହୋଇଥିବା ଅଂଶ ( ଏଥିରୁ ପ୍ରଥମେ ପ୍ରାପ୍ତ ଅର୍ଥ )<br>ସଞ୍ଚିତ ଓ ବଳକା :<br>(୧) ମୂଳଧନ ସଞ୍ଚିତ<br>(୨) ମୂଳଧନ ପରିଶୋଧ ସଞ୍ଚିତ<br>(୩) ଅଂଶ ଅଧିମୂଲ୍ୟ ହିସାବ<br>(୪) ଅନ୍ୟାନ୍ୟ ସଞ୍ଚିତ ( ପ୍ରତି ସଞ୍ଚିତିର ପ୍ରକୃତି ଓ ପରିମାଣ ବ୍ୟକ୍ତ କର ।)<br>ବାଦ୍ : ନିଟ୍ ଲାଭ ଓ କ୍ଷତି ହିସାବର ଦାୟୀ ବାକି (ଯଦି ଥାଏ)<br>(୫) ବଳକା, ଅର୍ଥାତ୍ ପ୍ରସ୍ତାବିତ ଆବଣ୍ଟନ, ଯଥା—ଲଭ୍ୟାଂଶ, ବୋନସ ଅଥବା ସଞ୍ଚିତ ବାଦେ ନିଟ୍ ଲାଭ ଓ କ୍ଷତି ହିସାବର ବଳକା ଦାତା ବାକି<br>(୬) ସଞ୍ଚିତ ବାବଦ ଏ ବର୍ଷର ପ୍ରସ୍ତାବିତ ଅର୍ଥ<br>(୭) ପ୍ରତିପୂରକ ପାଣ୍ଠି<br>ସୁରକ୍ଷିତ ଋଣ :<br>(୧) ଋଣପତ୍ର<br>(୨) ବ୍ୟାଙ୍କରୁ ପ୍ରାପ୍ତ ଋଣ<br>(୩) ସହକାରୀ କମ୍ପାନୀରୁ ପ୍ରାପ୍ତ ଋଣ<br>(୪) ଅନ୍ୟ ସୂତ୍ରରୁ ପ୍ରାପ୍ତ ଋଣ</td><td>ଟଙ୍କା</td></tr>
</table>

| ପୂର୍ବ ବର୍ଷର ଅଙ୍କ | ଦାୟ ଓ ଦେଣା | ଚଳିତ ବର୍ଷର ଅଙ୍କ |
|---|---|---|
| ଟଙ୍କା | ଅରକ୍ଷିତ ଋଣ : | ଟଙ୍କା |
| | (୧) ସ୍ଥାୟୀ ଗଚ୍ଛିତ | |
| | (୨) ସହକାରୀ କମ୍ପାନୀରୁ ପ୍ରାପ୍ତ ଋଣ | |
| | (୩) ସ୍ୱଳ୍ପମିଆଦୀ ଋଣ | |
| | (କ) ବ୍ୟାଙ୍କରୁ | |
| | (ଖ) ଅନ୍ୟମାନଙ୍କଠାରୁ | |
| | (୪ ଅନ୍ୟାନ୍ୟ ସୂତ୍ରରୁ ପ୍ରାପ୍ତ ଋଣ | |
| | (କ) ଚଳନ୍ତି ଦାୟ ଓ ବ୍ୟବସ୍ଥା : | |
| | (୧) ସ୍ୱୀକୃତ | |
| | (୨) ବିବିଧ ମହାଜନ | |
| | (୩) ସହକାରୀ କମ୍ପାନୀ | |
| | (୪) ଅଗ୍ରିମ ପ୍ରାପ୍ତ ଅର୍ଥ ଯାହା ବିନିମୟରେ ଏ ପର୍ଯ୍ୟନ୍ତ ମୂଲ୍ୟ ପ୍ରଦତ୍ତ ହୋଇ ନାହିଁ ଓ ଅନର୍ଜିତ ବଟା | |
| | (୫) ଦାବୀରହିତ ଲଭ୍ୟାଂଶ | |
| | (୬) ଅନ୍ୟାନ୍ୟ ଦାୟ (ଯଦି ବିଦ୍ୟମାନ ଥାଏ) | |
| | (୭) ଅର୍ଜିତ ମାତ୍ର ଅପ୍ରାପ୍ତ ଋଣ ବାବଦ ସୁଧ | |
| | (ଖ) ବ୍ୟବସ୍ଥା : | |
| | (୮) ଆୟକର ବାବଦ ବ୍ୟବସ୍ଥା | |
| | (୯) ପ୍ରସ୍ତାବିତ ଲଭ୍ୟାଂଶ | |
| | (୧୦) ପ୍ରୋଭିଡେଣ୍ଟ ଫଣ୍ଡ ଯୋଜନା ସକାଶେ | |
| | (୧୧) କର୍ମଚାରୀଙ୍କ ହିତାର୍ଥେ ବୀମା, ପେନ୍ସନ ଓ ଅନୁରୂପ ଯୋଜନା ସକାଶେ | |
| | (୧୨) ଅନ୍ୟାନ୍ୟ ବ୍ୟବସ୍ଥା ସକାଶେ | |

| ପୂର୍ବ ବର୍ଷର ସଂଖ୍ୟା | ପରିସମ୍ପତ୍ତି : | ଚଳିତ ବର୍ଷର ସଂଖ୍ୟା |
|---|---|---|
| ଟଙ୍କା | | ଟଙ୍କା |

ସ୍ଥାୟୀ ସମ୍ପତ୍ତି :

ଯେତେଦୂର ସମ୍ଭବ ନିମ୍ନଲିଖିତ ସମ୍ପତ୍ତିଗୁଡ଼ିକ ବାବଦ ଖର୍ଚ୍ଚକୁ ପୃଥକ୍ ଭାବରେ ଦର୍ଶାଇବାକୁ ହେବ । (କ) ସୁନାମ (ଖ) ଭୂମି (ଗ) ଇମାରତ (ଘ) ପଟ୍ଟା ନିଆଯାଇଥିବା ଭୂମି (ଙ) କମ୍ପାନୀ ହତା ମଧ୍ୟକୁ ଅଣାଯାଇଥିବା ରେଳ ଲାଇନ୍ (ଚ) ସଂଯନ୍ତ୍ର ଓ ଯନ୍ତ୍ର (ଛ) ଆସବାବ୍‌ପତ୍ର (ଜ) ସମ୍ପତ୍ତିର ବିକାଶସାଧନ (ଝ) ପେଟେଣ୍ଟ (ଞ) ବ୍ୟବସାୟ ସଙ୍କେତ ଓ ନକ୍ସା (ଟ) ଗୋ, ମହିଷ, ଘୋଟକାଦି ଓ (ଠ) ମଟରଗାଡ଼ି ପ୍ରଭୃତି ବିନିଯୋଗ :—

(୧) ସରକାରୀ ଓ ନ୍ୟାସ ଋଣ ପତ୍ରରେ ବିନିଯୋଗ

(୨) କମ୍ପାନୀ ଅଂଶ ପତ୍ର, ଋଣ ପତ୍ର ଓ ବଣ୍ଡରେ ବିନିଯୋଗ (ପୂର୍ଣ୍ଣ ପ୍ରଦତ୍ତ ଓ ଆଂଶିକ ପ୍ରଦତ୍ତ ଅଂଶ ଓ ବିଭିନ୍ନ ଶ୍ରେଣୀର ଅଂଶ ପୃଥକ୍ ଭାବରେ ଦେଖାଇବାକୁ ହେବ ଓ ସହକାରୀ କମ୍ପାନୀର ଅଂଶପତ୍ର, ଋଣପତ୍ର ଓ ବଣ୍ଡ୍ ସଂକ୍ରାନ୍ତରେ ଅନୁରୂପ ବିଭିନ୍ନତା ଦର୍ଶାଇବାକୁ ହେବ ।)

(୩) ସ୍ଥାବର ସମ୍ପତ୍ତି

ଚଳନ୍ତି ସମ୍ପତ୍ତି, ପ୍ରଦତ୍ତ ଋଣ ଓ ଅଗ୍ରିମ :

(କ) ଚଳନ୍ତି ସମ୍ପତ୍ତି :

(୧) ବିନିଯୋଗ ସଂକ୍ରାନ୍ତ ଅର୍ଜିତ ସୁଧ

(୨) ସାମଗ୍ରୀ ଓ ଯନ୍ତ୍ରାଂଶ

(୩) ସାଜସରଞ୍ଜାମ

(୪) ମହଜୁଦ୍ ମାଲ

(୫) ପ୍ରକ୍ରିୟାରତ କାର୍ଯ୍ୟ

(୬) ବିବିଧ ଖାତକ

(କ) ୬ ମାସରୁ ଊର୍ଦ୍ଧ୍ୱ କାଳ ସକାଶେ ବାକୀ ଥିବା ଋଣ

(ଖ) ଅନ୍ୟାନ୍ୟ ଋଣ

ବାଦ୍ : ଅନାଦାୟୀ ଋଣର ସଞ୍ଚିତ

(୭) (କ) ନଗଦ ତହବିଲ

(ଖ) ବ୍ୟାଙ୍କ୍‌ରେ ଗଚ୍ଛିତ ତହବିଲ

| ପୂର୍ବ ବର୍ଷର ସଂଖ୍ୟା | ଧନସମ୍ପତ୍ତି : | ଚଳିତ ବର୍ଷର ସଂଖ୍ୟା |
|---|---|---|
| | (କ) ତଫସିଲଭୁକ୍ତ ବ୍ୟାଙ୍କ୍‌ରେ ଗଚ୍ଛିତ ଥିବା ତହବିଲ | |
| | (ଖ) ଅନ୍ୟାନ୍ୟ ବ୍ୟାଙ୍କ୍‌ରେ ଗଚ୍ଛିତ ଥିବା ତହବିଲ | |
| | ଖ ପ୍ରଦତ୍ତ ଋଣ ଓ ଅଗ୍ରିମ ପ୍ରଦତ୍ତ ଅର୍ଥ | |
| | (୮) ସହକାରୀ କମ୍ପାନୀକୁ ଦିଆଯାଇଥିବା ଋଣ ଓ ଅଗ୍ରିମ | |
| | (୯) ପ୍ରାପ୍ୟ ହୁଣ୍ଡି | |
| | (୧୦) ନଗଦ ଅଥବା ବସ୍ତୁ ବା ସେବା ଆକାରରେ ଆଦାୟ-ଯୋଗ୍ୟ ଅଗ୍ରିମ (ଯେପରି କର, ଟିକସ୍, ବୀମା ପ୍ରଭୃତି) | |
| | (୧୧) ଚଳନ୍ତି ହିସାବ ବାବଦ ପରିଚାଳନା ପ୍ରତିନିଧି, ସମ୍ପାଦକ ଅଥବା କୋଷାଧ୍ୟକ୍ଷଙ୍କଠାରୁ ପ୍ରାପ୍ୟ ଅର୍ଥ । | |
| | (୧୨) କଷ୍ଟମସ୍, ପୋର୍ଟ ଟ୍ରଷ୍ଟ ପ୍ରଭୃତିଙ୍କ ନିକଟରେ ଥିବା ଅର୍ଥ (ଯାହା ଦାବୀ ମାତ୍ରେ ପ୍ରାପ୍ୟ) | |
| | ବିବିଧ ବ୍ୟୟ : | |
| | (୧) ପ୍ରାରମ୍ଭିକ ବ୍ୟୟ | |
| | (୨) ଅଂଶ ପତ୍ର ଅଥବା ଋଣ ପତ୍ରର ବିକ୍ରୟ ସଂକ୍ରାନ୍ତ ପ୍ରଦତ୍ତ କମିଶନ୍, ଦଲାଲି ସମେତ ଅନ୍ୟାନ୍ୟ ବ୍ୟୟ | |
| | (୩) ଅବହାରରେ ପ୍ରଚଳିତ ଅଂଶପତ୍ର ଅଥବା ଋଣପତ୍ର-ଜନିତ କ୍ଷତି | |
| | (୪) ନିର୍ମାଣ ସମୟରେ ମୂଳଧନରୁ ପ୍ରଦତ୍ତ ସୁଧ (ଏଠାରେ ସୁଧର ଶତକଡ଼ା ବାର୍ଷିକ ହାର ମଧ୍ୟ ଉଲ୍ଲେଖ କରାଯିବ) | |
| | (୫) ଅସମାଯୋଜିତ ବିକାଶମୂଳକ ବ୍ୟୟ | |
| | (୬) ଅନ୍ୟାନ୍ୟ ବିଷୟ (ଏହାର ପ୍ରକୃତି ବ୍ୟକ୍ତ କରାଯିବ) | |
| | ନଟ୍ ଲାଭ ଓ କ୍ଷତି ହିସାବ : | |
| | ଉପାର୍ଜିତ ନ ହୋଇଥିବା ସଞ୍ଚିତ ଯଦି ଥାଏ ତାହା ବାଦ୍ ଦେବା ପରେ ନଟ୍ ଲାଭ ଓ କ୍ଷତି ହିସାବର ବାକ୍ସୀ | |

ବାକୀ କମ୍ପାନୀର ଚୂଡ଼ାନ୍ତ ହିସାବର କେତେକ ଦୃଷ୍ଟାନ୍ତ ନିମ୍ନରେ ପ୍ରଦତ୍ତ ହେଲା ।

## ଦୃଷ୍ଟାନ୍ତ (୩୯)

ନିମ୍ନଲିଖିତ ବିବରଣୀରୁ କ କମ୍ପାନୀ ଲିମିଟେଡ୍‌ଙ୍କର ୩୧-୧୨-୧୯୭୫ରେ ଶେଷ ହେଉଥିବା ବର୍ଷର ନିଟ୍ ଲଭ ଓ କ୍ଷତି ହିସାବ ଏବଂ ଲଭ ଓ କ୍ଷତି ବଣ୍ଟନ ହିସାବ ପ୍ରସ୍ତୁତ କର :

ଏହି ବର୍ଷର ମୋଟ ଲଭ ଟ ୨୫,୫୦୭; ନିର୍ଦ୍ଦେଶକମାନଙ୍କର ଫିସ୍ ଟ ୨,୪୦୦; ଅନାଦାୟୀ ଋଣ ଟ ୫୦୦; ପ୍ରାପ୍ତ ବଟା ଟ ୫୩୦; ପ୍ରଦତ୍ତ ବଟା ଟ ୨୩୦; ଗଚ୍ଛିତ ଖର୍ଚ୍ଚ ଟ ୨,୪୦୦; ସାଧାରଣ ଖର୍ଚ୍ଚ ଟ ୩,୫୦୦; ପୂର୍ଣ୍ଣ ବର୍ଷର ଋଣ ପତ୍ରର ସୁଧ ଟ ୨,୦୦୦; ବେତନ ଟ ୫,୫୦୦; ମୂଲ୍ୟ ହ୍ରାସ ଟ ୩୪୦ ଏବଂ ନିଟ୍ ଲଭ ଓ କ୍ଷତିର ଦାତା ବାକି (ପୂର୍ବ ବର୍ଷର) ଟ ୫,୦୦୦ ।

କମ୍ପାନୀର ବର୍ଣ୍ଣିତ ମୂଳଧନ ନିମ୍ନପ୍ରକାର ଥିଲା :

ସାଧାରଣ ଅଂଶ ମୂଳଧନ ଟ ୨୦,୦୦୦ ଓ ୬% ଅଗ୍ରାଧିକାର ଅଂଶ ମୂଳଧନ ଟ ୧୫,୦୦୦ । ବକେୟା ଆହ୍ୱାନ ଅର୍ଥ ଟ ୫୦୦ ।

ପୂର୍ଣ୍ଣ ପ୍ରଦତ୍ତ ସାଧାରଣ ଅଂଶ ଉପରେ ଶତକଡ଼ା ୧୦ ହାରରେ ଓ ଅଗ୍ରାଧିକାର ଅଂଶ ଉପରେ ଶତକଡ଼ା ୬ ହାରରେ ଲଭ୍ୟାଂଶ ପ୍ରଦାନ କରାଯାଉଥିଲା । ଟ ୨,୦୦୦ ସାଧାରଣ ସଞ୍ଚିତ ହିସାବକୁ ସ୍ଥାନାନ୍ତରିତ କରାଯାଇଥିଲା ।

### ସମାଧାନ

କ କମ୍ପାନୀ ଲିମିଟେଡ୍

୩୧-୧୨-୧୯୭୫ ତାରିଖରେ ଶେଷ ହେଉଥିବା ବର୍ଷର ନିଟ୍ ଲଭ ଓ କ୍ଷତି ହିସାବ

| ଦାୟୀ | ଟଙ୍କା | ଦାତା | ଟଙ୍କା |
|---|---|---|---|
| ନିର୍ଦ୍ଦେଶକମାନଙ୍କର ଫିସ ବାବଦ | ୨,୪୦୦ | ମୋଟ ଲଭ ବାବଦ | ୨୫,୫୦୭ |
| ଅନାଦାୟୀ ଋଣ ବାବଦ | ୫୦୦ | ପ୍ରାପ୍ତ ବଟା ବାବଦ | ୫୩୦ |
| ପ୍ରଦତ୍ତ ବଟା ବାବଦ | ୨୩୦ | | |
| ଗଚ୍ଛିତ ଖର୍ଚ୍ଚ ବାବଦ | ୨,୪୦୦ | | |
| ସାଧାରଣ ଖର୍ଚ୍ଚ ବାବଦ | ୩,୫୦୦ | | |
| ଋଣପତ୍ରର ସୁଧ ବାବଦ | ୨,୦୦୦ | | |
| ବେତନ ବାବଦ | ୫,୫୦୦ | | |
| ମୂଲ୍ୟହ୍ରାସ ବାବଦ | ୩୪୦ | | |
| ନିଟ୍ ଲଭ—ଲଭ ଓ କ୍ଷତି ବଣ୍ଟନ ହିସାବକୁ ସ୍ଥାନାନ୍ତରିତ ହେଲା । | ୯,୧୬୭ | | |
| | ୨୬,୦୩୭ | | ୨୬,୦୩୭ |

### ୩୧-୧୨-୧୯୭୫ ତାରିଖରେ ଶେଷ ହେଉଥିବା ବର୍ଷର ଲଭ ଓ କ୍ଷତି ବଣ୍ଟନ ହିସାବ

| ଦାୟୀ | ଟଙ୍କା | ଦାତା | ଟଙ୍କା |
|---|---|---|---|
| ଲଭାଂଶ ବାବଦ : | ୧,୯୫୦ | ପୂର୍ବ ବର୍ଷର ଲଭ ବାବଦ | ୫,୦୦୦ |
| ଅଂଶ ଅଗ୍ରାଧିକାର ଅଂଶ | ୯୦୦ | ଏହି ବର୍ଷର ଲଭ ବାବଦ | ୯,୧୬୭ |
| ସାଧାରଣ ସଞ୍ଚିତ ବାବଦ | ୨,୦୦୦ | | |
| ବାକି ଗଲା | ୯,୩୧୭ | | ୧୪,୧୬୭ |
| | ୧୪,୧୬୭ | ପୂର୍ବ ବାକି ବାବଦ | ୯,୩୧୭ |

### ଦୃଷ୍ଟାନ୍ତ (୪୦)

ରାଧାକାନ୍ତ ଓ କମଳାକାନ୍ତ ଇନ୍ଦ୍ରାଣୀ ଅୟେଲ ମିଲସ୍ ଲିମିଟେଡ୍‌ରେ ୧୯୭୫ ମସିହା ଜାନୁୟାରି ୧ ତାରିଖରେ ଯଥାକ୍ରମେ ଦପ୍ତର ପରିଚାଳକ ଓ କାରଖାନା ପରିଚାଳକ ରୂପେ ନିଯୁକ୍ତ ହୋଇଥିଲେ । ରାଧାକାନ୍ତ କମଳାକାନ୍ତଙ୍କୁ କମିଶନ୍ ଦେବା ପରେ ଅବଶିଷ୍ଟ ନିଟ୍ ଲଭର ଶତକଡ଼ା ୫ ଓ କମଳାକାନ୍ତ ରାଧାକାନ୍ତଙ୍କୁ କମିଶନ୍ ଦେବା ପରେ ଅବଶିଷ୍ଟ ନିଟ୍ ଲଭର ଶତକଡ଼ା ୫ କମିଶନ୍ ପାଇବେ ।

୧୯୭୫ ମସିହା ଡିସେମ୍ବର ୩୧ ତାରିଖରେ ଶେଷ ହେଉଥିବା ବର୍ଷର ନିଟ୍ ଲଭ ଓ କ୍ଷତି ହିସାବ ଉପରୋକ୍ତ ଦୁଇ କର୍ମଚାରୀଙ୍କୁ କମିଶନ୍ ଦେବା ପୂର୍ବରୁ ଟ ୮,୦୦,୦୦୦ ଦର୍ଶାଉଥିଲା ।

ଉପରୋକ୍ତ କର୍ମଚାରୀ ଦୁହିଁଙ୍କୁ କମିଶନ୍ ଦେବା ପରେ କମ୍ପାନୀ ଆୟକର ବାବଦ ଟ ୨,୦୦,୦୦୦, ସାଧାରଣ ସଞ୍ଚିତ ବାବଦ ଟ ୨,୦୦,୦୦୦ ଏବଂ କମ୍ପାନୀର ପୂର୍ଣ୍ଣ ଅଦାୟୀକୃତ ମୂଳଧନ ଟ ୧୨,୦୦,୦୦୦ ଉପରେ ଶତକଡ଼ା ୧୦ ହାରରେ ଲଭାଂଶ ବଣ୍ଟନ କରିବା ପାଇଁ ସ୍ଥିର କରିଥିଲେ ।

ପୂର୍ବ ବର୍ଷର ଅବଣ୍ଟିତ ନିଟ୍ ଲଭର ପରିମାଣ ଟ ୧୦,୦୦୦ ଥିଲା ।

ରାଧାକାନ୍ତ ଓ କମଳାକାନ୍ତଙ୍କୁ ଦେୟ କମିଶନ୍ ନିର୍ଦ୍ଧାରଣ କର ୧୯୭୫ ମସିହା ଡିସେମ୍ବର ୩୧ ତାରିଖରେ ଶେଷ ହେଉଥିବା ବର୍ଷର ଏହି କମ୍ପାନୀର ଲଭ ଓ କ୍ଷତି ବଣ୍ଟନ ହିସାବ ପ୍ରସ୍ତୁତ କର ।

## ସମାଧାନ

ଇନ୍ଦ୍ରାଣୀ ଅଏଲ୍ ମିଲସ୍ ଲିମିଟେଡ୍
୧୯୭୫ ମସିହା ଡିସେମ୍ବର ୩୧ ତାରିଖରେ ଶେଷ ହେଉଥିବା ବର୍ଷର
ଲଭ ଓ କ୍ଷତି ବଣ୍ଟନ ହିସାବ

| ଦାୟୀ | ଟଙ୍କା | ଦାତା | ଟଙ୍କା |
|---|---|---|---|
| ପରିଚାଳକମାନଙ୍କର କମିଶନ୍ ବାବଦ : | | ନିଟ୍ ଲଭ ବାବଦ | ୮,୦୦,୦୦୦ |
| ରାଧାକାନ୍ତ | ୩୮,୪୭୭ | | |
| କମଳାକାନ୍ତ | ୩୦,୪୬୧ | | |
| ଆୟକର ବ୍ୟବସ୍ଥା ବାବଦ | ୨,୦୦,୦୦୦ | | |
| ସ୍ଥାନାନ୍ତରିତ ଲଭ | ୫,୩୧,୦୬୨ | | |
| | ୮,୦୦,୦୦୦ | | ୮,୦୦,୦୦୦ |
| ସାଧାରଣ ସଞ୍ଚିତି ହିସାବ ବାବଦ : | | ପୂର୍ବ ବାକି ବାବଦ | ୫,୩୧,୦୬୨ |
| ସ୍ଥାନାନ୍ତରଣ | ୨,୦୦,୦୦୦ | ପୂର୍ବ ବର୍ଷର ବାକି ବାବଦ | ୧୦,୦୦୦ |
| ପ୍ରସ୍ତାବିତ ଲଭାଂଶ : ୧୦% ହାରରେ ଟ ୧୨,୦୦,୦୦୦ ଉପରେ —ଆୟକର ବାଦ୍ ଦେବା ପୂର୍ବରୁ | ୧,୨୦,୦୦୦ | | |
| ପରବର୍ତ୍ତୀ ବର୍ଷକୁ ସ୍ଥାନାନ୍ତରିତ ବଳକା | ୨,୨୧,୦୬୨ | | |
| | ୫,୪୧,୦୬୨ | | ୫,୪୧,୦୬୨ |

ନୋଟ : ରାଧାକାନ୍ତ ଓ କମଳାକାନ୍ତଙ୍କର କମିଶନ୍ ଦ୍ୱିଘାତ ସମୀକରଣ (quadratic equation) ସାହାଯ୍ୟରେ ନିମ୍ନଲିଖିତ ରୂପେ ନିର୍ଣ୍ଣୟ କରାଯାଇପାରିବ ।

ରାଧାକାନ୍ତଙ୍କ କମିଶନ୍‌କୁ x ଓ କମଳାକାନ୍ତଙ୍କ କମିଶନ୍‌କୁ y ଧରାଯାଉ । ତାହାହେଲେ—

$$x = \frac{୫}{୧୦୦}(୮,୦୦,୦୦୦ - y) \text{ ବା } ୪୦,୦୦୦ - \frac{y}{୨୦} \cdots i)$$

ଏବଂ $y = \frac{୪}{୧୦୦}$ (୮,୦୦,୦୦୦ − x) ବା ୩୨,୦୦୦ − $\frac{x}{୨୫}$ …(ii)

ଉପରୋକ୍ତ (i) ରେ y ର ମାନ ବସାଇଲେ—

$x = ୪୦,୦୦୦ - \frac{୧}{୨୦}\left(୩୨,୦୦୦ - \frac{x}{୨୫}\right)$

ବା ୪୦,୦୦୦ − ୧୬,୦୦୦ + $\frac{x}{୫୦୦}$

ବା ୩୮,୪୦୦ + $\frac{x}{୫୦୦}$

ବା x − $\frac{x}{୫୦୦}$ = ୩୮,୪୦୦

ବା ୫୦୦ x − x = ୧,୯୨,୦୦,୦୦୦ ବା ୪୯୯ x = ୧,୯୨,୦୦,୦୦୦

ବା x = ୩୮,୪୭୭ (ନିକଟବର୍ତ୍ତୀ)

ଉପରୋକ୍ତ (ii) ରେ x ର ମାନ ବସାଇଲେ—

$y = ୩୨,୦୦୦ - \frac{୧}{୨୦}\left(୪୦,୦୦୦ - \frac{y}{୨୦}\right)$

ବା ୩୨,୦୦୦ − ୧,୬୦୦ + $\frac{y}{୫୦୦}$

ବା y − $\frac{y}{୫୦୦}$ = ୩୦,୪୦୦

ବା ୪୯୯ y = ୧,୫୨,୦୦,୦୦୦

ବା y = ୩୦,୪୬୧ (ନିକଟବର୍ତ୍ତୀ)

## ଦୃଷ୍ଟାନ୍ତ (୪୦)

କ କମ୍ପାନୀ ଲିମିଟେଡ୍‌ର ନିବନ୍ଧିତ ମୂଳଧନର ପରିମାଣ ଟ ୨,୦୦,୦୦୦ ଥିଲା ଓ ଏହା ଅଂଶ ପ୍ରତି ଟ ୧୦ ହାରରେ ୨୦,୦୦୦ ସାଧାରଣ ଅଂଶରେ ବିଭକ୍ତ ହୋଇଥିଲା । ଏଥି ମଧ୍ୟରୁ ୧୦,୦୦୦ ଅଂଶ ପ୍ରଚଳିତ ହୋଇଥିଲା ।

୧୯୭୫ ମସିହା ଡିସେମ୍ବର ୩୧ ତାରିଖରେ କମ୍ପାନୀର ଲେଡଗ୍ଧାନରୁ ନିମ୍ନଲିଖିତ ବାକିଗୁଡ଼ିକ ଉଦ୍ଧୃତ ହୋଇଛି—

| | ଟଙ୍କା | | ଟଙ୍କା |
|---|---|---|---|
| ବିକ୍ରିତ ମୂଳଧନ : | | ଆସବାବ୍ | ୩,୦୦୦ |
| ପ୍ରତି ଅଂଶ ଟ ୧୦ | | କ୍ରୟ | ୧୮,୦୦୦ |
| ହାରରେ ୫,୦୦୦ | | ବିକ୍ରୟ | ୩୦,୦୦୦ |
| ସାଧାରଣ ଅଂଶ | ୫୦,୦୦୦ | ପ୍ରଦତ୍ତ ବଟା | ୨୦୦ |
| ଜମି ଓ କୋଠା | ୨୮,୦୦୦ | ପ୍ରାପ୍ତ ବଟା | ୩୦୦ |
| ଯନ୍ତ୍ର | ୧୫,୦୦୦ | ୬% ଋଣପତ୍ର (ସୁରକ୍ଷିତ) | ୧୦,୦୦୦ |

| | ଟଙ୍କା | | ଟଙ୍କା |
|---|---|---|---|
| ପ୍ରଦତ୍ତ ମଧ୍ୟବର୍ତ୍ତୀ-କାଳୀନ ଲଭ୍ୟାଂଶ (୩୦-୬-୧୯୭୫) | ୮୫୦ | ମହଜୁଦ୍ ମାଲ (୧-୧-୧୯୭୫) | ୪,୫୦୦ |
| ଟିକସ୍ | ୧୫୦ | ବୀମା | ୧୫୦ |
| ବେତନ | ୨,୪୦୦ | ଟେଲିଫୋନ | ୧୨୫ |
| | | ବଳେୟା ଆହ୍ୱାନ ଅର୍ଥ | ୨୦୦ |
| ଋଣପତ୍ରର ସୁଧ | ୩୦୦ | ଖାତକ | ୩,୦୦୦ |
| ଅନ୍ତର୍ମୁଖୀ ଗାଡ଼ିଭଡ଼ା | ୧୨୫ | ମହାଜନ | ୧,୪୦୦ |
| ସାଧାରଣ ଖର୍ଚ୍ଚ | ୧,୭୦୦ | ବ୍ୟାଙ୍କରେ ଗଚ୍ଛିତ ତହବିଲ | ୧୪,୩୦୦ |
| | | ଲାଭ ଓ କ୍ଷତି ହିସାବର ପୂର୍ବ ବାକି (ଦାତା) | ୩୦୦ |

ନିମ୍ନଲିଖିତ ସମାଯୋଜନଗୁଡ଼ିକ ଆବଶ୍ୟକ : ୧୯୭୫ ମସିହା ଡିସେମ୍ବର ୩୧ ତାରିଖରେ ମହଜୁଦ ମାଲର ପରିମାଣ ଟ ୭,୩୦୦; ଟିକସ ବାକି ଅଛି ଟ ୩୦; ଅଗ୍ରିମ ପ୍ରଦତ୍ତ ବୀମା ଟ ୨୫; ୬ ମାସର ଋଣପତ୍ରର ସୁଧ ବାକି ଅଛି; ଶତକଡ଼ା ୫ ହାରରେ ଯନ୍ତ୍ରର ମୂଲ୍ୟ ହ୍ରାସ କରାଯିବ; ଟେଲିଫୋନ ବାବଦ ଟ ୨୫ ବାକି ଅଛି । ନିର୍ଦ୍ଦେଶକମଣ୍ଡଳୀ ଲଭ୍ୟାଂଶ ବଣ୍ଟନ ନିମନ୍ତେ କୌଣସି ପ୍ରସ୍ତାବ ଆଣି ନାହାନ୍ତି ।

ଉପରୋକ୍ତ ସମାଯୋଜନଗୁଡ଼ିକ ସକାଶେ ବ୍ୟବସ୍ଥା କରି ୧୯୭୫ ମସିହା ଡିସେମ୍ବର ୩୧ ତାରିଖରେ ଶେଷ ହେଉଥିବା ବର୍ଷର ନିଟ୍ ଲାଭ ଓ କ୍ଷତି ହିସାବ ଏବଂ ଉକ୍ତ ତାରିଖର ଉଦ୍ବର୍ତ୍ତ ପତ୍ର ପ୍ରସ୍ତୁତ କର ।

## ସମାଧାନ

୧୯୭୫ ମସିହା ଡିସେମ୍ବର ୩୧ ତାରିଖରେ ଶେଷ ହେଉଥିବା ବର୍ଷର ନିଟ୍ ଲାଭ ଓ କ୍ଷତି ହିସାବ

ଦାୟୀ — ଦାତା

| ଦାୟୀ | ଟଙ୍କା | ଟଙ୍କା | ଦାତା | ଟଙ୍କା |
|---|---|---|---|---|
| ଆଦ୍ୟ ମହଜୁଦ୍ ମାଲ ବାବଦ | | ୪,୫୦୦ | ବିକ୍ରୟ ବାବଦ | ୩୦,୦୦୦ |
| କ୍ରୟ ବାବଦ | | ୧୮,୦୦୦ | ଅନ୍ତ୍ୟ ମହଜୁଦ୍ ମାଲ ବାବଦ | ୬,୩୦୦ |
| ଅନ୍ତର୍ମୁଖୀ ଗାଡ଼ିଭଡ଼ା ବାବଦ | | ୧୨୫ | | |
| ମୋଟ ଲାଭ ବାବଦ : | | | | |
| ତଳକୁ ନିଆଗଲା | | ୧୩,୭୭୫ | | |
| | | ୩୬,୩୦୦ | | ୩୬,୩୦୦ |
| ପ୍ରଦତ୍ତ ବଟ୍ଟା ବାବଦ | | ୨୦୦ | | |
| ଟିକସ୍ ବାବଦ | ଟ ୧୫୦ | | | |
| ଯୁକ୍ତ : ଦେୟ | ଟ ୩୦ | ୧୮୦ | | |
| ବୀମା ବାବଦ | ୧୫୦ | | ପୂର୍ବ ବାକୀ ବାବଦ | ୧୩,୭୭୫ |
| ବାଦ୍ : ଅଗ୍ରିମ ପ୍ରଦତ୍ତ | ୨୫ | ୧୨୫ | ପ୍ରାପ୍ତ ବଟ୍ଟା ବାବଦ | ୩୦୦ |
| ବେତନ ବାବଦ | | ୨,୪୦୦ | | |
| ଋଣପତ୍ରର ସୁଧ | ୩୦୦ | | | |
| ଯୁକ୍ତ : ଦେୟ | ୩୦୦ | ୬୦୦ | | |
| ସାଧାରଣ ଖର୍ଚ୍ଚ ବାବଦ | | ୧,୭୦୦ | | |
| ଟେଲିଫୋନ ବାବଦ | ୧୨୫ | | | |
| ଯୁକ୍ତ : ଦେୟ | ୨୫ | ୧୫୦ | | |
| ମୂଲ୍ୟ ହ୍ରାସ ବାବଦ : | | | | |
| ଯନ୍ତ୍ର | | ୭୫୦ | | |
| ନିଟ୍ ଲାଭ ବାବଦ—ଲାଭ ଓ | | | | |
| କ୍ଷତି ବଣ୍ଟନ ହିସାବକୁ ନିଆଗଲା | | ୭,୮୭୦ | | |
| | | ୧୩,୯୭୫ | | ୧୩, [illegible] |

## ୧୯୭୫ ମସିହା ଡିସେମ୍ବର ୩୧ ତାରିଖରେ ଶେଷ ହେଉଥିବା ବର୍ଷର
## ଲଭ ଓ କ୍ଷତି ବଣ୍ଟନ ହିସାବ

| ଦାୟୀ | ଟଙ୍କା | ଦାତା | ଟଙ୍କା |
|---|---|---|---|
| ମଧ୍ୟବର୍ତ୍ତୀକାଳୀନ ଲଭ୍ୟାଂଶ ବାବଦ | ୮୫୦ | ପୂର୍ବ ବାକୀ ବାବଦ (ଗତ ବର୍ଷରୁ ଆନୀତ ) | ୩୦୦ |
| ବାକୀ ଗଡ଼ନ୍ତି | ୭,୩୨୦ | ନିଟ୍ ଲଭ ବାବଦ (ଏ ବର୍ଷର) | ୭,୮୭୦ |
| | ୮,୧୭୦ | | ୮,୧୭୦ |

## କ କମ୍ପାନୀ ଲିମିଟେଡ୍
## ୧୯୭୫ ମସିହା ଡିସେମ୍ବର ୩୧ ତାରିଖର ଉଦ୍‌ବୃତ୍ତ ପତ୍ର

| ଦାୟ ଓ ଦେଣା | | ଟଙ୍କା |
|---|---|---|
| ଅଂଶ ମୂଳଧନ : | | |
| ନିବନ୍ଧିତ ମୂଳଧନ : | | |
| ପ୍ରତି ଅଂଶ ଟ ୧୦ ହାରରେ ୨୦,୦୦୦ ସାଧାରଣ ଅଂଶ | | ୨,୦୦,୦୦୦ |
| ପ୍ରଚଳିତ ମୂଳଧନ : | | |
| ପ୍ରତି ଅଂଶ ଟ୧୦ ହାରରେ ୧୦,୦୦୦ ସାଧାରଣ ଅଂଶ | | ୧,୦୦,୦୦୦ |
| ବର୍ଦ୍ଧିତ ମୂଳଧନ : | | |
| ପ୍ରତି ଅଂଶ ଟ ୧୦ ହାରରେ, ୫,୦୦୦ ସାଧାରଣ ଅଂଶ | | |
| ପୂର୍ଣ୍ଣ ଆହୂତ | ୫୦,୦୦୦ | |
| ବାଦ୍ : ବକେୟା ଆହ୍ୱାନ ଅର୍ଥ | ୨୦୦ | ୪୯,୮୦୦ |
| ସଞ୍ଚିତ ଓ ବଳକା : | | |
| ନିଟ୍ ଲଭ ଓ କ୍ଷତି ହିସାବର ବାକୀ | | ୭,୩୨୦ |
| ସୁରକ୍ଷିତ ଋଣ : | | |
| ୭% ଋଣପତ୍ର | | ୧୦,୦୦୦ |

| ପରିସମ୍ପତ୍ତି : | ଟଙ୍କା | ଟଙ୍କା |
|---|---|---|
| ସ୍ଥାୟୀ ସମ୍ପତ୍ତି : | | |
| ଜମି ଓ କୋଠା | | ୨୮,୦୦୦ |
| ଯନ୍ତ୍ର | ୧୫,୦୦୦ | |
| ବାଦ୍ : ମୂଲ୍ୟ ହ୍ରାସ | ୭୫୦ | ୧୪,୨୫୦ |
| ଆସବାବ୍ | | ୩,୦୦୦ |
| ଚଳନ୍ତି ସମ୍ପତ୍ତି, ପ୍ରଦତ୍ତ ଋଣ ଓ ଅଗ୍ରିମ : | | |
| କ ଚଳନ୍ତି ସମ୍ପତ୍ତି : | | |
| ମହଜୁଦ୍ ମାଲ | ୬,୩୦୦ | |
| ଖାତକ | ୩,୦୦୦ | |
| ବ୍ୟାଙ୍କ୍‌ରେ ଗଚ୍ଛିତ | ୧୪,୩୦୦ | ୨୩,୬୦୦ |
| ଖ ପ୍ରଦତ୍ତ ଋଣ ଓ ଅଗ୍ରିମ : | | |
| ଅଗ୍ରିମ ପ୍ରଦତ୍ତ ଖର୍ଚ୍ଚ : | | |
| ବୀମା | | ୨୫ |

| | ଟଙ୍କା | ଟଙ୍କା | | ଟଙ୍କା |
|---|---|---|---|---|
| ଚଳନ୍ତି ଦେଣା ଓ ବ୍ୟବସ୍ଥା : | | | | |
| କ ଚଳନ୍ତି ଦେଣା : | | | | |
| ବିବିଧ ମହାଜନ | | | | |
| ମାଲ ସକାଶେ | | ୧,୪୦୦ | | |
| ଖର୍ଚ୍ଚ ସକାଶେ : | | | | |
| ଟିକସ | ୩୦ | | | |
| ଟେଲିଫୋନ | ୨୫ | | | |
| ଋଣର ସୁଧ | ୩୦୦ | ୩୫୫ | | |
| | | ୭୮,୮୭୫ | | ୭୮,୮୭୫ |

ମନ୍ତବ୍ୟ—କମ୍ପାନୀ ଆଇନ ଅନୁଯାୟୀ ନିଟ୍ ଲାଭ ଓ କ୍ଷତି ହିସାବ ଏବଂ ଉଦ୍‌ବର୍ତ୍ତ ପତ୍ରର ଉଭୟ ପାର୍ଶ୍ୱରେ ପୂର୍ବ ବର୍ଷର ବଳକା ଦର୍ଶାଇବା ବିଧେୟ; କିନ୍ତୁ ଏହି ଦୃଷ୍ଟାନ୍ତରେ ପୂର୍ବ ବର୍ଷର କୌଣସି ଅଙ୍କ ପ୍ରଦତ୍ତ ନ ଥିବାରୁ ତାହା ପ୍ରଦର୍ଶିତ ହୋଇ ନାହିଁ।

ଦୃଷ୍ଟାନ୍ତ (୪୧)

କ ଖ ଗ କମ୍ପାନୀ ଲିମିଟେଡ଼ର ପ୍ରାଧିକୃତ ମୂଳଧନ ଟ୧,୫୦,୦୦୦ ଥିଲା । ଏହା ପ୍ରତି ଅଂଶ ଟ ୧୦୦ ହାରରେ ୨୦୦ ୭% ଅଗ୍ରାଧିକାର ଅଂଶ ଓ ପ୍ରତି ଅଂଶ ଟ ୧୦ ହାରରେ ୧୩, ୦୦ ସାଧାରଣ ଅଂଶରେ ବିଭକ୍ତ ଥିଲା । ଏଥି ମଧ୍ୟରୁ କମ୍ପାନୀ ସବୁଗୁଡ଼ିକ ଅଗ୍ରାଧିକାର ଅଂଶ ଓ ୮,୦୦୦ ସାଧାରଣ ଅଂଶ ପ୍ରଚଳିତ କରିଥିଲା । ନିମ୍ନଲିଖିତ ବିବରଣୀରୁ କମ୍ପାନୀର ୧୯୭୫ ମସିହା ଡିସେମ୍ବର ୩୧ ତାରିଖରେ ଶେଷ ହେଉଥିବା ବର୍ଷର ଉତ୍ପାଦନ ହିସାବ ଏବଂ ଲାଭ ଓ କ୍ଷତି ହିସାବ ଏବଂ ଉକ୍ତ ତାରିଖର ଉଦ୍‌ବର୍ତ୍ତ ପତ୍ର ପ୍ରସ୍ତୁତ କର ।

୧୯୭୫ ମସିହା ଡିସେମ୍ବର ୩୧ ତାରିଖର ରେଓୟା ମେଳ

| ଦାୟୀ | ଟଙ୍କା | ଦାବି | ଟଙ୍କା |
|---|---|---|---|
| ଅଦ୍ୟ ସମ୍ଭାର : | | ନିଟ୍ ବିକ୍ରୟ | ୧,୮୦,୦୦୦ |
| କଞ୍ଚା ମାଲ ଓ | | ବିବିଧ ଆୟ | ୨,୫୦୦ |
| ସାମଗ୍ରୀ | ୨୦,୦୦୦ | ପ୍ରଚଳିତ ଓ ବିକ୍ରିତ | |
| ପ୍ରକ୍ରିୟାଧୀନ ମାଲ | ୫,୦୦୦ | ଅଂଶ : | |
| ପରିରୂପିତ ଦ୍ରବ୍ୟ | ୩୦,୦୦୦ | ପ୍ରତି ଅଂଶ ଟ ୧୦ | |
| | | ହାରରେ ସମ୍ପୂର୍ଣ୍ଣ | |
| | | ଅଦାୟୀକୃତ | |

| ଦାୟୀ | | ଦାତା | |
|---|---|---|---|
| କଞ୍ଚାମାଲ ଓ ସାମଗ୍ରୀର କ୍ରୟ | ୭୦,୦୦୦ | ୮,୦୦୦ ସାଧାରଣ ଅଂଶ | ୮୦,୦୦୦ |
| ଅନ୍ତର୍ମୁଖୀ ପଣ୍ୟବହନ ଓ ଶୁଳ୍କ | ୮,୪୦୦ | ଅଂଶ ପ୍ରତି ଟ ୧୦୦ ହାରରେ ୬% ୨୦୦ ଅଗ୍ରାଧିକାର ଅଂଶ —ପୂର୍ଣ୍ଣ ଆଦାୟୀକୃତ | ୨୦,୦୦୦ |
| ବିଦ୍ୟୁତ୍, ଶକ୍ତି ଓ ଜାଳେଣି | ୪,୨୦୦ | ସାଧାରଣ ସଞ୍ଚିତ | ୧୫,୦୦୦ |
| ବେତନ, ମଜୁରି ଓ ବୋନସ | ୨୪,୯୦୦ | ଲଭ୍ୟାଂଶ ସମୀକରଣ ପାଣ୍ଠି | ୫,୦୦୦ |
| ଦପ୍ତର ଭଡ଼ା ଓ ଟିକସ୍ | ୧,୫୦୦ | ସୁରକ୍ଷିତ ଋଣ (ସ୍ଥାୟୀ ସମ୍ପତ୍ତି ଜାମିନରେ) | ୧୦,୦୦୦ |
| ବୀମା : | | ବ୍ୟାଙ୍କରୁ ଅଧିଉଠାଣ (ସୁରକ୍ଷିତ) | ୧୫,୦୦୦ |
| ଦପ୍ତର | ୨୦୦ | ବିବିଧ ମହାଜନ | ୧୨,୦୦୦ |
| କାରଖାନା | ୫୦୦ | ଆୟକର ସକାଶେ ବ୍ୟବସ୍ଥା | ୨,୫୦୦ |
| ନିର୍ଦ୍ଦେଶକମାନଙ୍କର ପାରିଶ୍ରମିକ | ୧,୪୦୦ | ଅପ୍ରଦତ୍ତ ଲଭ୍ୟାଂଶ | ୧୦,୩୦୦ |
| ସୁଧ | ୨,୦୦୦ | ଲଭ ଓ କ୍ଷତି ହିସାବର ଦାତା ବାକି | ୨,୭୦୦ |
| ବିବିଧ ବ୍ୟୟ— | | | |
| ଦପ୍ତର | ୧୦,୮୦୦ | | |
| ବକେୟା ଆହ୍ୱାନ ଅର୍ଥ : | | | |
| ସାଧାରଣ ଅଂଶ | ୫୦୦ | | |
| ଅଗ୍ରାଧିକାର ଅଂଶ | ୨୦୦ | | |
| ବିବିଧ ଖାତକ | ୨୮,୦୦୦ | | |
| ବ୍ୟାଙ୍କରେ ଗଚ୍ଛିତ | ୧୨,୨୦୦ | | |
| କାରଖାନା ଜମି ଓ କୋଠା (୧-୧-୧୯୭୫) | ୪୫,୦୦୦ | | |
| ଯନ୍ତ୍ର | ୬୦,୦୦୦ | | |
| କାରଖାନାର ଅନ୍ୟାନ୍ୟ ସମ୍ପତ୍ତି | ୧୮,୨୦୦ | | |
| ଦପ୍ତର ଅସବାବ୍ | ୨,୦୦୦ | | |
| | ୩,୫୫,୦୦୦ | | ୩,୫୫,୦୦୦ |

ନିମ୍ନଲିଖିତ ଅଧିକା ତଥ୍ୟ ମିଳିଛି :

(କ) ଅନ୍ତ୍ୟ ସମ୍ଭାର : କଞ୍ଚାମାଲ ଓ ସାମଗ୍ରୀ—ଟ ୩୨,୦୦୦; ପ୍ରକ୍ରିୟାଧୀନ ମାଲ ଟ ୭,୦୦୦; ପରିପୂରିତ ଦ୍ରବ୍ୟ ଟ ୪୫,୦୦୦ ।

(ଖ) ମୂଲ୍ୟହ୍ରାସ ଆବଶ୍ୟକ : କାରଖାନା ଜମି ଓ କୋଠାରୁ ୨% ହାରରେ; ଯନ୍ତ୍ରରୁ ୧୦% ହାରରେ; କାରଖାନାର ଅନ୍ୟାନ୍ୟ ସମ୍ପତ୍ତିରୁ ୪% ହାରରେ ଓ ଆସବାବ୍‌ରୁ ୭% ହାରରେ ।

(ଗ) ବକେୟା ଖର୍ଚ୍ଚ : ସୁରକ୍ଷିତ ଋଣର ସୁଧ ଟ ୫୦୦; ଦପ୍ତର ଭଡ଼ା ଓ ଟିକସ୍ ଟ ୧୦୦; ହିସାବ ସମୀକ୍ଷକଙ୍କର ଫିସ୍ ଟ ୭୦୦ ।

(ଘ) ଦପ୍ତର ବୀମା ଟ୫୦ ଅଗ୍ରିମ ଦିଆଯାଇଛି ।

(ଙ) ବିଦ୍ୟୁତ୍, ଶକ୍ତି ଓ ଜାଳେଣି, ବେତନ, ମଜୁରି ଓ ବୋନସ୍ କାରଖାନା ଓ ଦପ୍ତର ମଧ୍ୟରେ ୨:୧ ଅନୁପାତରେ ଭାଗ କରାଯିବ ।

(ଚ) ବୃତ୍ତାନ୍ତ ହିସାବରେ ନିମ୍ନଲିଖିତ ବିଷୟ ଏକାଠେ ବ୍ୟବସ୍ଥା କରାଯିବ : ଆୟକର ବାବଦ ଟ ୫,୪୪୦; ସାଧାରଣ ସଞ୍ଚିତ ହିସାବକୁ ଟ ୧୨,୦୦୦ ସ୍ଥାନାନ୍ତରିତ ହେବ; ସାଧାରଣ ଅଂଶ ଉପରେ ଆଦାସ୍ୱୀକୃତ ମୂଳଧନ ବାବଦ ୧୨% ହାରରେ ଓ ଅଗ୍ରାଧିକାର ଅଂଶ ବାବଦ ୭% ହାରରେ ଲଭ୍ୟାଂଶ ଘୋଷଣା କରିବା ପାଇଁ ପ୍ରସ୍ତାବ ଦିଆଯାଇଛି ।

(ଛ) ବିବିଧ ଖାତକ ପରିମାଣରୁ ଟ ୫୦୦ ସନ୍ଦେହଜନକ ବିବେଚିତ ହୋଇଥିଲା । ଅବଶିଷ୍ଟ ପରିମାଣ ସୁରକ୍ଷିତ ନ ହୋଇଥିଲେ ମଧ୍ୟ ଉତ୍ତମ ବୋଲି ବିବେଚିତ ହୋଇଥିଲା । ମୋଟ ଖାତକ ପରିମାଣର ୩% ହାରରେ ଅନାଦାୟୀ ଋଣ ସଞ୍ଚିତି ଚଳାଯିବ । ନିର୍ଦ୍ଦେଶକ ଓ ଅଧିକାରୀମାନଙ୍କଠାରୁ କମ୍ପାନୀର କୌଣସି ପ୍ରାପ୍ୟ ନ ଥିଲା ।

(ଜ) ନିର୍ଦ୍ଦେଶକମାନଙ୍କଠାରେ ଅଂଶ ଆହ୍ୱାନ ବାବଦ କୌଣସି ଅର୍ଥ ପାଉଣା ନ ଥିଲା ।

(ଝ) କମ୍ପାନୀ ବିରୁଦ୍ଧରେ ବିଚାରାଳୟରେ ଟ ୮,୦୦୦ ସକାଶେ ଏକ ମକଦ୍ଦମା ବିଚାରାଧୀନ ଥିଲା ।

## ସମାଧାନ

### କ ଖ ଗ କମ୍ପାନୀ ଲିମିଟେଡ୍
### ୧୯୭୪ ମସିହା ଡିସେମ୍ବର ୩୧ ତାରିଖରେ ଶେଷ ହେଉଥିବା ବର୍ଷର
### ଉତ୍ପାଦନ ହିସାବ

| ଦାୟୀ | ଟଙ୍କା | ଟଙ୍କା | ଦାତା | ଟଙ୍କା | ଟଙ୍କା |
|---|---|---|---|---|---|
| ଆଦ୍ୟ ସମ୍ଭାର ବାବଦ : | | | ଅନ୍ତ୍ୟ ସମ୍ଭାର ବାବଦ : | | |
| କଞ୍ଚାମାଲ ଓ ସାମଗ୍ରୀ | ୧୦,୦୦୦ | | କଞ୍ଚାମାଲ ଓ ସାମଗ୍ରୀ | ୩୧,୦୦୦ | |
| ପ୍ରକ୍ରିୟାଧୀନ ମାଲ | ୫,୦୦୦ | ୧୫,୦୦୦ | ପ୍ରକ୍ରିୟାଧୀନ ମାଲ | ୭,୦୦୦ | ୩୮,୦୦୦ |
| କଞ୍ଚାମାଲ ଓ ସାମଗ୍ରୀର କ୍ରୟ ବାବଦ | | ୭୦,୦୦୦ | | | |
| ଅନ୍ତର୍ମୁଖୀ ପରିବହନ ଓ ଶୁଳ୍କ ବାବଦ | | ୮,୪୦୦ | | | |
| ବିଦ୍ୟୁତ୍, ଶକ୍ତି ଓ ଜାଳେଣି ବାବଦ (୨/୩ ଅଂଶ) | | ୧,୮୦୦ | | | |
| ବେତନ, ମଜୁରି ଓ ବୋନସ ବାବଦ (୨/୩ ଅଂଶ) | | ୨୭,୭୦୦ | | | |
| ବୀମା ବାବଦ | | ୫୦୦ | | | |
| ମୂଲ୍ୟହ୍ରାସ ବାବଦ : | | | ଉତ୍ପାଦନ ପରିବ୍ୟୟ ବାବଦ | | |
| ଯନ୍ତ୍ର | ୭,୦୦୦ | | ଲାଭ ଓ କ୍ଷତି ହିସାବକୁ | | |
| ଜମି ଓ କୋଠା | ୯୦୦ | | ସ୍ଥାନାନ୍ତରିତ ହେଲା | | ୯୩,୯୧୮ |
| କାରଖାନାର | | | | | |
| ଅନ୍ୟାନ୍ୟ ପରିସମ୍ପତ୍ତି | ୭୧୮ | ୮,୬୧୮ | | | |
| | | ୧,୩୧,୯୧୮ | | | ୧,୩୧,୯୧୮ |

## କ ଖ ଗ କମ୍ପାନୀ ଲିମିଟେଡ୍
### ୧୯୭୫ ମସିହା ଡିସେମ୍ବର ୩୧ ତାରିଖରେ ଶେଷ ହେଉଥିବା ବର୍ଷର
### ଲାଭ ଓ କ୍ଷତି ହିସାବ

**ଦାୟୀ**

| | ଟଙ୍କା | ଟଙ୍କା |
|---|---|---|
| ଆଦ୍ୟ ସମ୍ଭାର ବାବଦ : | | |
| ପରିରୂପିତ ଦ୍ରବ୍ୟ | | ୩୦,୦୦୦ |
| ଉତ୍ପାଦନ ପରିବ୍ୟୟ ବାବଦ | | |
| —ଉତ୍ପାଦନ ହିସାବରୁ ଆନୀତ | | ୯୩,୯୨୮ |
| ମୋଟ ଲାଭ ବାବଦ— | | |
| ତଳକୁ ନିଆଗଲା | | ୧,୦୧,୦୭୨ |
| | | ୨,୨୫,୦୦୦ |
| ବେତନ, ମଜୁରି, ବୋନସ ବାବଦ (½) | | ୮,୩୦୦ |
| ଦପ୍ତର ଭଡ଼ା ଓ ଟିକସ ବାବଦ | ୧,୫୦୦ | |
| ଯୁକ୍ତ : ବକେୟା | ୧୦୦ | ୧,୬୦୦ |
| ବିଦ୍ୟୁତ୍, ଶକ୍ତି ଓ ଜାଳେଣି ବାବଦ (½ ଅଂଶ) | | ୧,୪୦୦ |
| ବୀମା ବାବଦ | ୨୦୦ | |
| ବାଦ୍ : ଅଗ୍ରିମ ପ୍ରଦତ୍ତ | ୫୦ | ୧୫୦ |
| ନିର୍ଦ୍ଦେଶକମାନଙ୍କର ପାରିଶ୍ରମିକ ବାବଦ | | ୧,୪୦୦ |
| ସୁଧ ବାବଦ | ୨,୦୦୦ | |
| ଯୁକ୍ତ : ବକେୟା | ୫୦୦ | ୨,୫୦୦ |
| ହିସାବ ସମୀକ୍ଷକଙ୍କର ଫିସ୍ ବାବଦ | | ୬୦୦ |
| ଅନାଦାୟୀ ଋଣର ସଞ୍ଚିତ ବାବଦ—୩% ହାରରେ | | ୮୪୦ |

**ଦାତା**

| | ଟଙ୍କା | ଟଙ୍କା |
|---|---|---|
| ବିକ୍ରୟ ବାବଦ | | ୧,୮୦,୦୦୦ |
| ଅନ୍ତ୍ୟ ସମ୍ଭାର ବାବଦ : | | |
| ପରିରୂପିତ ଦ୍ରବ୍ୟ | | ୪୫,୦୦୦ |
| | | ୨,୨୫,୦୦୦ |
| ମୋଟ ଲାଭ ବାବଦ : | | |
| ଉପରୁ ଆନୀତ | | ୧,୦୧,୦୭୨ |
| ବିବିଧ ଆୟ ବାବଦ | | ୨,୫୦୦ |
| | | ୧,୦୩,୫୭୨ |

| | | | |
|---|---|---|---|
| ଦପ୍ତର ଆସବାବ୍‌ର ମୂଲ୍ୟ ହ୍ରାସ ବାବଦ | ୧୪୦ | | |
| ବିବିଧ ବ୍ୟୟ ବାବଦ | ୧୦,୮୦୦ | | |
| ନିଟ୍ ଲାଭ ବାବଦ— ତଳକୁ ନିଆଗଲା | ୭୫,୮୪୧ | | |
| | ୧,୦୩,୫୭୧ | | |
| ଆୟକର ସକାଶେ ବ୍ୟବସ୍ଥା ବାବଦ | ୫,୪୪୦ | ଲାଭ ଓ କ୍ଷତି ହିସାବର ପୂର୍ବ ବାକି | ୨,୭୦୦ |
| ପ୍ରସ୍ତାବିତ ଲଭ୍ୟାଂଶ ବାବଦ : | | ନିଟ୍ ଲାଭ ବାବଦ— | |
| ସାଧାରଣ ଅଂଶ ଉପରେ ୧୦% ହାରରେ | ୯,୫୪୦ | ଉପରୁ ଆନୀତ | ୭୫,୮୪୧ |
| ଅଗ୍ରାଧିକାର ଅଂଶ ଉପରେ ୭% ହାରରେ | ୧,୧୮୮ | | |
| ସାଧାରଣ ସଞ୍ଚିତ | ୧୨,୦୦୦ | | |
| ବାକି ଗଡ଼ିଲା | ୫୦,୩୭୪ | | ୭୮,୫୪୧ |
| | ୭୮,୫୪୧ | ପୂର୍ବ ବାକି ବାବଦ | ୫୦,୩୭୪ |

କ ଖ ଗ କମ୍ପାନୀ ଲିମିଟେଡ଼୍‌ର

୧୯୭୫ ମସିହା ଡିସେମ୍ବର ୩୧ ତାରିଖର ଉଦ୍‌ବୃତ୍ତ ପତ୍ର

| ପୂର୍ବ ବର୍ଷର ଅଙ୍କ | ଦାୟ ଓ ଦେଣା | | ପରିମାଣ | ପୂର୍ବ ବର୍ଷର ଅଙ୍କ | ପରିସମ୍ପତ୍ତି | | ପରିମାଣ |
|---|---|---|---|---|---|---|---|
| ଟଙ୍କା | | ଟଙ୍କା | ଟଙ୍କା | ଟଙ୍କା | | ଟଙ୍କା | ଟଙ୍କା |
| | ଅଂଶ ମୂଳଧନ : | | | | ସ୍ଥାୟୀ ସମ୍ପତ୍ତି : | | |
| | ପ୍ରାଧିକୃତ : | | | | କାରଖାନା, ଜମି ଓ କୋଠା | ୪୫,୦୦୦ | |
| | ପ୍ରତି ଅଂଶ ଟ ୧୦ ହାରରେ ୧୩,୦୦୦ ସାଧାରଣ ଅଂଶ | | ୧,୩୦,୦୦୦ | | ବାଦ୍ : ମୂଲ୍ୟ ହ୍ରାସ | ୯୦୦ | ୪୪,୧୦୦ |
| | ପ୍ରତି ଅଂଶ ଟ ୧୦୦ ହାରରେ ୨୦୦ ୭% ଅଗ୍ରାଧିକାର ଅଂଶ | | ୨୦,୦୦୦ | | ଯନ୍ତ୍ର | ୭୦,୦୦୦ | |
| | | | ୧,୫୦,୦୦୦ | | ବାଦ୍:ମୂଲ୍ୟହ୍ରାସ | ୭,୦୦୦ | ୬୩,୦୦୦ |
| | | | | | କାରଖାନାର ଅନ୍ୟାନ୍ୟ ସମ୍ପତ୍ତି | ୧୮,୨୦୦ | |
| | | | | | ବାଦ୍: ମୂଲ୍ୟ ହ୍ରାସ | ୭୨୮ | ୧୭,୪୭୨ |

ଟଙ୍କା ଟଙ୍କା ଟଙ୍କା

ପ୍ରଚଳିତ ଓ ବର୍ଣ୍ଣିତ :
ପ୍ରତି ଅଂଶ ଟ ୧୦ ହାରରେ
୮,୦୦୦ ସାଧାରଣ
ଅଂଶ—ପୂର୍ଣ୍ଣ ଆହୂତ
୮୦,୦୦୦
ବାଦ୍ : ବକେୟା
ଆହ୍ୱାନ ଅର୍ଥ
ନିର୍ଦ୍ଦେଶକଙ୍କଠାରୁ—
ଅନ୍ୟାନ୍ୟଙ୍କଠାରୁ
୫୦୦ ୫୦୦ ୭୯,୫୦୦
ପ୍ରତି ଅଂଶ ଟ୧୦୦
ହାରରେ ୨୦୦
୬% ଅଗ୍ରାଧିକାର
ଅଂଶ ୨୦,୦୦୦
ବାଦ୍ : ବକେୟା ୨୦୦ ୧୯,୮୦୦

ସଞ୍ଚିତ ଓ ବଳକା :
ସାଧାରଣ ସଞ୍ଚିତ ୨୭,୦୦୦
ଲଭ୍ୟାଂଶ ସମୀକରଣ ପାଣ୍ଠି
୫,୦୦୦
ଲଭ ଓ କ୍ଷତିର ଦାତା
ବାକୀ ୫୦,୩୭୪ ୮୨,୩୭୪
ସୁରକ୍ଷିତ ଋଣ :
ବ୍ୟାଙ୍କ୍ ଅଧିଉଠାଣ
୧୫,୦୦୦
ସ୍ଥାୟୀ ସମ୍ପତ୍ତିଦ୍ୱାରା
ସୁରକ୍ଷିତ ଋଣ ୧୦,୦୦୦ ୨୫,୦୦୦
ଅରକ୍ଷିତ ଋଣ
ଚଳନ୍ତି ଦେଣା ଓ ବ୍ୟବସ୍ଥା :

ଟଙ୍କା ଟଙ୍କା ଟଙ୍କା

ଦପ୍ତର ଆସବାବ୍ ୨,୦୦୦
ବାଦ୍ : ମୂଲ୍ୟହ୍ରାସ ୧୪୦ ୧,୮୬୦
୧,୨୭,୪୩୨
ବିନିଯୋଗ ...
ଚଳନ୍ତି ସମ୍ପତ୍ତି
ଋଣ ଓ ଅଗ୍ରିମ :
(କ) ଚଳନ୍ତି ସମ୍ପତ୍ତି
ଅନ୍ୟ କଞ୍ଚାମାଲ ଓ
ସାମଗ୍ରୀ ୩୨,୦୦୦
ପ୍ରକ୍ରିୟାଧୀନ ମାଲ
୬,୦୦୦
ଅନ୍ୟ ପଣ୍ୟରୂପିତ
୪୫,୦୦୦
ବିବିଧ ଖାତକ ୨୮,୦୦୦
ବାଦ : ଅନାଦାୟୀ
ଋଣର ସଞ୍ଚିତ ୮୪୦ ୨୭,୧୬୦

ମୋଟ ଋଣ ମଧ୍ୟରୁ
(୧) ବିବେଚିତ ହେଉଥିବା
ଉତ୍ତମ ଖାତକ ଯାହା
ସକାଶେ ଖାତକମାନଙ୍କର
ବ୍ୟକ୍ତିଗତ ଜାମିନ
ବ୍ୟତୀତ ଅନ୍ୟ ଜାମିନ
ନାହିଁ ୨୭,୬୬୦
(୨) ସନ୍ଦେହଜନକ
ବିବେଚିତ ହେଉଥିବା
ଖାତକ ୫୦୦
(୩) ନିର୍ଦ୍ଦେଶକମାନଙ୍କ-
ଠାରୁ ପ୍ରାପ୍ୟ ଅର୍ଥ

| ଟଙ୍କା | | ଟଙ୍କା | ଟଙ୍କା | ଟଙ୍କା | | ଟଙ୍କା | ଟଙ୍କା |
|---|---|---|---|---|---|---|---|
| | (କ) ଚଳନ୍ତି ଦେଣା : | | | | (୪) ଏକ ପରିଚାଳନା | | |
| | ବିବିଧ ମହାଜନ ୧୨,୦୦୦ | | | | ଅଧୀନ ଅନ୍ୟ | | |
| | (ଖ) ବ୍ୟବସ୍ଥା : | | | | କମ୍ପାନୀଠାରୁ | | |
| | ଆୟକର ସକାଶେ | | | | ପ୍ରାପ୍ୟ ଅର୍ଥ··· | | |
| | ବ୍ୟବସ୍ଥା ୭,୯୪୦ | | | | ନଗଦ ଓ ବ୍ୟାଙ୍କରେ | | |
| | ପ୍ରସ୍ତାବିତ ଲଭ୍ୟାଂଶ : | | | | ଗଚ୍ଛିତ ତହବିଲ ୧୨,୨୦୦ | | |
| | ସାଧାରଣ ଅଂଶ ୧୨% | | | | (ଖ) ପ୍ରଦତ୍ତ ଋଣ ଓ | | |
| | ୯,୫୪୦ | | | | ଅଗ୍ରିମ ଅର୍ଥ : | | |
| | ଅଗ୍ରାଧିକାର ଅଂଶ ୬% | | | | ଅଗ୍ରିମ ପ୍ରଦତ୍ତ ବୀମା | | |
| | ୧,୧୮୮ | | | | | ୫୦ | ୧,୨୨,୪୧୦ |
| | ଅପ୍ରଦତ୍ତ ଲଭ୍ୟାଂଶ ୧୦,୩୦୦ | | | | | | |
| | ବକେୟା ସୁଧ | | | | | | |
| | (ସୁରକ୍ଷିତ ଋଣର) ୫୦୦ | | | | | | |
| | ବକେୟା ଅର୍ଥ ବାବଦ | | | | | | |
| | ଦାୟ | ୭୦୦ | ୪୨,୧୬୮ | | | | |
| | ଅବଧେୟ : ସମ୍ଭାବ୍ୟ ଦାୟ: | | | | | | |
| | କମ୍ପାନୀ ବିରୁଦ୍ଧରେ ରୁଜୁ | | | | | | |
| | ହୋଇଥିବା ଏକ ମକଦ୍ଦମା | | | | | | |
| | ବାବଦ ଦାୟ ଯାହା ସକାଶେ | | | | | | |
| | ବ୍ୟବସ୍ଥା କରାଯାଇ ନାହିଁ | | | | | | |
| | | ୭୮,୦୦୦ | ୨,୪୮,୮୪୨ | | | | ୨,୪୮,୮୪୨ |

ମନ୍ତବ୍ୟ : କମ୍ପାନୀ ଆଇନର ଅନୁସୂଚୀ VI ର ଭାଗ I ର ନିର୍ଦ୍ଦେଶ ଅନୁଯାୟୀ (ଯାହାର ନମୁନା ପୂର୍ବେ ପ୍ରଦତ୍ତ ହୋଇଛି) କମ୍ପାନୀର ଏହି ଉଦ୍ୱର୍ତ୍ତ ପତ୍ର ପ୍ରସ୍ତୁତ କରାଯାଇଛି ।

## ଅନୁଶୀଳନୀ (୨୩)

୧ । ଯୌଥ କମ୍ପାନୀ କହିଲେ କ'ଣ ବୁଝ ? ୧୯୫୬ ମସିହା କମ୍ପାନୀ ଆଇନ ଅନୁଯାୟୀ କେତେ ପ୍ରକାର କମ୍ପାନୀ ଗଠିତ ହୋଇପାରେ ? ବିଭିନ୍ନ ପ୍ରକାର କମ୍ପାନୀ ମଧ୍ୟରେ ଥିବା ପ୍ରଧାନ ପ୍ରଭେଦଗୁଡ଼ିକ ବର୍ଣ୍ଣନ କର ।

୨ । ଏକ ପବ୍ଲିକ୍ ଯୌଥ କମ୍ପାନୀ କିପରି ଗଠିତ ହୁଏ ତାହାର ବିଭିନ୍ନ ପର୍ଯ୍ୟାୟ ବର୍ଣ୍ଣନା କର ।

୩ । ପ୍ରାଇଭେଟ୍ ଯୌଥ କମ୍ପାନୀ କାହାକୁ କହନ୍ତି ? ଏହା ପବ୍ଲିକ୍ ଯୌଥ କମ୍ପାନୀଠାରୁ କିପରି ପୃଥକ୍ ?

୪ । ଗୋଟିଏ ଅଂଶୀଦାରୀ ବ୍ୟବସାୟ ଗୋଟିଏ କମ୍ପାନୀଠାରୁ ନିମ୍ନଲିଖିତ ବିଷୟଗୁଡ଼ିକରେ କିପରି ପୃଥକ୍ ତାହା ବୁଝାଅ :

(କ) ସଭ୍ୟସଂଖ୍ୟା; (ଖ) ସଭ୍ୟଙ୍କର ଆର୍ଥିକ ଦାୟିତ୍ୱ; (ଗ) ନୂତନ ସଭ୍ୟଙ୍କର ଯୋଗଦାନ; (ଘ) ହିସାବ ସମୀକ୍ଷା ଓ (ଙ) ବିଲୋପସାଧନ ।

୫ । ନିମ୍ନଲିଖିତ ବିଷୟଗୁଡ଼ିକର ବ୍ୟାଖ୍ୟା ଲେଖ :

(କ) ପରିମେଳ ବନ୍ଧ; (ଖ) ପରିମେଳ ନିୟମାବଳୀ; (ଗ) କାର୍ଯ୍ୟ ଆରମ୍ଭ କରିବାର ପ୍ରମାଣ ପତ୍ର; (ଘ) ଅଂଶ ଖଣ୍ଡଆନ୍; (ଙ) ଅଂଶ ଗ୍ରହଣକାରୀ ଅଗ୍ରାଧିକାର ଅଂଶ ଓ (ଚ) ବନ୍ଧକୀ ଋଣ

୬ । ପ୍ରସ୍ତାବକ ପତ୍ରରେ କେଉଁ ବିଷୟମାନ ଅନ୍ତର୍ଭୁକ୍ତ ଥାଏ ? ଯୌଥ କମ୍ପାନୀ କେତେବେଳେ ଏହା ପ୍ରକାଶ କରେ ? ଯେତେବେଳେ ଗୋଟିଏ ପବ୍ଲିକ୍ ଯୌଥ କମ୍ପାନୀ ଏହା ପ୍ରକାଶ କରେ ନାହିଁ ସେତେବେଳେ କ'ଣ ହୁଏ ?

୭ । ବୈଧାନିକ ବିବରଣୀ କହିଲେ କ'ଣ ବୁଝ ? ଗୋଟିଏ ପବ୍ଲିକ୍ ଯୌଥ କମ୍ପାନୀର ବୈଧାନିକ ବିବରଣୀ କେଉଁ ବିଷୟମାନ ପ୍ରକାଶ କରେ ?

୮ । ଆଇନ ଅନୁଯାୟୀ କମ୍ପାନୀ କେଉଁ ସମସ୍ତ ବୈଧାନିକ ଓ ପରିସଂଖ୍ୟାନଗତ ବହି ସଂରକ୍ଷଣ କରେ ? ପ୍ରତ୍ୟେକ ବହିର ଉଦ୍ଦେଶ୍ୟ ବୁଝାଇ ଗୋଟିଏ ଗୋଟିଏ ନମୁନା ଦର୍ଶାଅ ।

୯ । ନିମ୍ନଲିଖିତ ବିଷୟଗୁଡ଼ିକ ସମ୍ବନ୍ଧରେ ଟିପ୍ପଣୀ ଲେଖ :

(କ) ପ୍ରାଧିକୃତ ମୂଳଧନ; (ଖ) ପ୍ରଚଳିତ ମୂଳଧନ; (ଗ) ବିକ୍ରିତ ମୂଳଧନ; (ଘ) ଆହୂତ ମୂଳଧନ; (ଙ) ଆଦାୟୀକୃତ ମୂଳଧନ; (ଚ) ସଞ୍ଚିତ ମୂଳଧନ; (ଛ) ବକେୟା ଆହ୍ୱାନ ଅର୍ଥ ଓ (ଜ) ଅଭ୍ୟର୍ପିତ ଅଂଶ ।

୧୦ । ପବ୍ଲିକ୍ ଯୌଥ କମ୍ପାନୀର ଅଂଶ କହିଲେ କ'ଣ ବୁଝ ? ଅଂଶଧାରୀଙ୍କର ଅଧିକାର, ଦାୟ ଓ ଦାୟିତ୍ୱ ବର୍ଣ୍ଣନା କର । କମ୍ପାନୀ କେତେ ପ୍ରକାର ଅଂଶ ପ୍ରଚଳନ କରିପାରେ ?

୧୧ । ନିମ୍ନଲିଖିତ ବିଷୟଗୁଡ଼ିକ ମଧ୍ୟରେ ଥିବା ପାର୍ଥକ୍ୟ ବୁଝାଅ—

(କ) ଅଂଶ ଓ ଷ୍ଟକ୍; (ଖ) ଅଂଶ ପତ୍ର ଓ ଋଣ ପତ୍ର; (ଗ) ଲାଭାଂଶ ଓ ସୁଧ ।

୧୨ । ନିମ୍ନଲିଖିତ ବିଷୟଗୁଡ଼ିକ ସମ୍ବନ୍ଧରେ ସଂକ୍ଷିପ୍ତ ଟିପ୍ପଣୀ ଲେଖ : (୧) କାର୍ଯ୍ୟ ବିବରଣୀ ପୁସ୍ତକ; (୨) ପ୍ରାକ୍ ନିଗମନ ଲାଭ; (୩) ଆଣ୍ଡାରରାଇଟିଂ କମିଶନ୍

୧୩ । ନିମ୍ନଲିଖିତ ବିଷୟଗୁଡ଼ିକ ମଧ୍ୟରେ ପାର୍ଥକ୍ୟ ଦର୍ଶାଅ :
ସାଧାରଣ ଅଂଶଧାରୀ, ଅଗ୍ରାଧିକାର ଅଂଶଧାରୀ ଓ ଋଣପତ୍ରଧାରୀ ।

୧୪ । ଚୂଡ଼ାନ୍ତ ହିସାବ କରିବା ସମୟରେ ନିମ୍ନଲିଖିତ ବିଷୟଗୁଡ଼ିକୁ କିପରି ହିସାବଭୁକ୍ତ କରାଯାଏ :

(କ) ପ୍ରାକ ନିଗମନ ଲାଭ; (ଖ) ଆଣ୍ଡାରରାଇଟିଂ କମିଶନ୍; (ଗ) ପ୍ରାରମ୍ଭିକ ବ୍ୟୟ; (ଘ) ଅଧିହାରରେ ଅଂଶ ପ୍ରଚଳନଜନିତ ପ୍ରିମିୟମ୍ ।

୧୫ । ବ୍ୟାଖ୍ୟା କର : (୧) ନିମ୍ନତମ ଅଂଶ ବିକ୍ରୟ; (ଖ) ଅଂଶ ଆବେଦନ ଅର୍ଥ; (ଗ) ଅଂଶ ଆବଣ୍ଟନ; (ଘ) ଅଂଶ ଆହ୍ୱାନ ଅର୍ଥ ।

୧୬ । ଅଂଶ ବାଜ୍ୟାପ୍ତୀକରଣ କହିଲେ କ'ଣ ବୁଝ ? ଅଂଶ ବାଜ୍ୟାପ୍ତୀକରଣ ଓ ବାଜ୍ୟାପ୍ତ କରାଯାଇଥିବା ଅଂଶ ପୁନଃପ୍ରଚଳନ ସମ୍ବନ୍ଧରେ କମ୍ପାନୀ ଆଇନର ନିୟମାବଳୀ ବର୍ଣ୍ଣନା କର ।

୧୭ । ନିମ୍ନଲିଖିତ ବିଷୟଗୁଡ଼ିକର ଅର୍ଥ ଲେଖ ଏବଂ ଚୂଡ଼ାନ୍ତ ହିସାବ କରିବା ସମୟରେ ସେଗୁଡ଼ିକ କ'ଣ କରାଯାଏ ତାହା ବୁଝାଅ—

(କ) ଋଣପତ୍ର ବାବଦ ପ୍ରିମିୟମ୍; (ଖ) ବାଜ୍ୟାପ୍ତ ଅଂଶ ହିସାବ; (ଗ) ଅଂଶ ବିକ୍ରୟ ବାବଦ ଦଲାଲି ।

୧୮ । ଅଂଶ ବାଜ୍ୟାପ୍ତ କରିବା ଓ ସେଗୁଡ଼ିକୁ ପୁନଃପ୍ରଚଳନ କରିବା ନିମନ୍ତେ ଆବଶ୍ୟକ ଜାବଦା ଲେଖ ।

୧୯ । (କ) ଅବହାରରେ ଅଂଶ ପ୍ରଚଳିତ କରିବା ସମ୍ବନ୍ଧରେ କମ୍ପାନୀ ଆଇନର ନିୟମାବଳୀ ବର୍ଣ୍ଣନା କର ।

(ଖ) ଲଭ୍ୟାଂଶ ପରିବର୍ତ୍ତେ ଅଂଶଧାରୀମାନଙ୍କୁ କି ପରିସ୍ଥିତିରେ କମ୍ପାନୀ ସୁଧ ଦେଇ-ପାରେ ? ଏ ସମ୍ବନ୍ଧରେ କମ୍ପାନୀ ଆଇନର ବିଧିନିଷେଧ ବର୍ଣ୍ଣନା କର ।

୨୦ । 'ସମ୍ପତ୍ତିର ଧନାୟନ' କହିଲେ କ'ଣ ବୁଝ ? ଏହା କେତେବେଳେ ଓ କି ପରିସ୍ଥିତିରେ କରାଯାଏ ? ଏହାକୁ କାର୍ଯ୍ୟକାରୀ କରିବା ନିମନ୍ତେ ଆବଶ୍ୟକ ଜାବ୍‌ଦା ଲେଖ ।

୨୧ । ବୋନସ୍ ଅଂଶ ସମ୍ବନ୍ଧରେ ଟିପ୍‌ପଣୀ ଲେଖ । ସାଧାରଣତଃ କେଉଁ ପାଣ୍ଠିଗୁଡ଼ିକ ଏହି ଅଂଶ ପ୍ରଚଳିତ କରିବା ପାଇଁ ବ୍ୟବହୃତ ହୁଏ ?

୨୨ । ବୋନସ୍ ଅଂଶ ପ୍ରଚଳନ କରିବାଦ୍ୱାରା କମ୍ପାନୀ କି କି ସୁବିଧା ଲାଭ କରେ ? ଅଂଶଧାରୀମାନେ କି ସୁବିଧା ଲାଭ କରନ୍ତି ?

୨୩ । ପ୍ରତ୍ୟର୍ପଣଯୋଗ୍ୟ ଅଗ୍ରାଧିକାର ଅଂଶ କହିଲେ କ'ଣ ବୁଝ ? ଏହି ଅର୍ଥ କେବେ ପ୍ରତ୍ୟର୍ପିତ ହୁଏ ? ଏହି ଅର୍ଥ ପ୍ରତ୍ୟର୍ପଣ କରିବା ପୂର୍ବରୁ କମ୍ପାନୀକୁ ଯେଉଁ ପଦକ୍ଷେପ-ମାନ ଗ୍ରହଣ କରିବାକୁ ହୁଏ ଓ ସର୍ତ୍ତଗୁଡ଼ିକ ପାଳନ କରିବାକୁ ହୁଏ, ତାହା ବର୍ଣ୍ଣନା କର ।

୨୪ । (କ) ପ୍ରତ୍ୟର୍ପଣଯୋଗ୍ୟ ଋଣପତ୍ରର ଅର୍ଥ କ'ଣ ?

(ଖ) ଋଣପତ୍ରର ପ୍ରତ୍ୟର୍ପଣ ନିମନ୍ତେ ପ୍ରକୃଷ୍ଟ ପନ୍ଥା କେଉଁଟି ବୋଲି ତୁମେ ମନେ କର ? କାହିଁକି ?

୨୫ । ବ୍ୟାଖ୍ୟା କର—(କ) ଲଭ୍ୟାଂଶ ସମୀକରଣ ପାଣ୍ଠି; (ଖ) ଦେଣା ପରିଶୋଧ ନିମନ୍ତେ ପରିପୂରକ ପାଣ୍ଠି (Sinking Fund) ଓ (ଗ) ସହାୟକ ଜାମିନ ରୂପେ ପ୍ରଚଳିତ ଋଣ ପତ୍ର ।

୨୬ । କମ୍ପାନୀ ଆଇନ ଅନୁଯାୟୀ ଏକ ଦର୍ଶନାର୍ଥେ ବା ପ୍ରୋଫର୍ମା ଉଦ୍‌ବୃତ୍ତ ପତ୍ର ପ୍ରସ୍ତୁତ କର ଓ ଏହାର ପ୍ରଧାନ ବିଭାଗଗୁଡ଼ିକ କାଳ୍ପନିକ ଅଙ୍କଦ୍ୱାରା ପୂରଣ କର ।

୨୭ । ଗୋପାଳ ଅୟେଲ୍ ମିଲସ୍ ଲିମିଟେଡ୍ ପ୍ରତି ଅଂଶ ଟ ୧୦ ହାରରେ ୩୦,୦୦୦ ସାଧାରଣ ଅଂଶ ପ୍ରଚଳନ କରିଥିଲେ । ପ୍ରତି ଅଂଶ ନିମ୍ନରୂପେ ଦେୟ ଥିଲା :–

ଅଂଶ ଆବେଦନ ସହିତ ଟ ୨

ଅଂଶ ଆବଣ୍ଟନ ବେଳେ ଟ ୩

ଅଂଶ ପ୍ରଥମ ଆହ୍ୱାନ ବେଳେ ଟ ୨.୫୦

ଅଂଶ ଶେଷ ଅହ୍ୱାନ ବେଳେ ଟ ୨.୫୦

ଉପରୋକ୍ତ ଅଂଶଗୁଡ଼ିକ ଯଥା ସମୟରେ ବଣ୍ଟିତ ହୋଇଥିଲା ଓ ଅଂଶଧାରୀ-ମାନଙ୍କଠାରୁ ଯଥାକାଳୀନ ଅର୍ଥ ମିଳିଥିଲା ।

ଉପରୋକ୍ତ ଦେଣ ନେଣଗୁଡ଼ିକ ସକାଶେ ଆବଶ୍ୟକ ଜାବ୍‌ଦା, ରୋକଡ଼ ବହି ଓ ଖତିୟାନ ହିସାବ ପ୍ରସ୍ତୁତ କର । ଏକ ଉଦ୍‌ବୃତ୍ତ ପତ୍ର ମଧ୍ୟ ପ୍ରସ୍ତୁତ କରି ତହିଁରେ ଆବଶ୍ୟକ ବଳକାଗୁଡ଼ିକ ଦର୍ଶାଅ ।

(ଉତ୍ତର : ବ୍ୟାଙ୍କରେ ଗଚ୍ଛିତ ଟ ୩,୦୦,୦୦୦; ଅଂଶ ମୂଳଧନ ହିସାବର ଦାତା ବାକି ଟ ୩,୦୦,୦୦୦)

୨୮ । ବିଶ୍ୱାଟ କମ୍ପାନୀ ଲିମିଟେଡ୍‌ଙ୍କର ପ୍ରାଧିକୃତ ମୂଳଧନ ଟ ୨,୦୦,୦୦୦ ଥିଲା ଓ ଏହା ପ୍ରତି ଅଂଶ ଟ ୧୦ ହାରରେ ୨୦,୦୦୦ ସାଧାରଣ ଅଂଶରେ ବିଭକ୍ତ ହୋଇଥିଲା । କମ୍ପାନୀ ତନ୍ମଧ୍ୟରୁ ୧୫,୦୦୦ ସାଧାରଣ ଅଂଶ ପ୍ରଚଳନ କରିଥିଲେ । ଅଂଶ ବାବଦ ଅର୍ଥ ନିମ୍ନଲିଖିତ ରୂପେ ଦେୟ ଥିଲା: ଅଂଶ ଆବେଦନ ସହିତ ଟ ୨, ଅଂଶ ଆବଣ୍ଟିତ ହେଲେ ଟ ୩, ଅଂଶ ପ୍ରଥମ ଆହ୍ୱାନ ବେଳେ ଟ ୩ ଓ ଅଂଶ ଶେଷ ଆହ୍ୱାନ ବେଳେ ଟ ୨ ।

ଜନସାଧାରଣଙ୍କଠାରୁ ୧୭,୦୦୦ ଅଂଶ ସକାଶେ ଆବେଦନ ଅର୍ଥ ମିଳିଥିଲା । କମ୍ପାନୀ ୧,୦୦୦ ଅଂଶର ଆବେଦନକାରୀଙ୍କୁ କୌଣସି ଅଂଶ ଆବଣ୍ଟନ ନ କରି ତାଙ୍କ ଅର୍ଥ ଫେରସ୍ତ ଦେଇଥିଲେ ଓ ଅବଶିଷ୍ଟ ୧,୦୦୦ ଅଂଶ ବାବଦ ପ୍ରାପ୍ତ ଅର୍ଥ ଅଂଶ ଆବଣ୍ଟନ ହିସାବକୁ ସ୍ଥାନାନ୍ତରିତ କରିଥିଲେ ।

ଆବଶ୍ୟକ ଅଂଶ ଆବଣ୍ଟନ, ପ୍ରଥମ ଆହ୍ୱାନ ଓ ଶେଷ ଆହ୍ୱାନ ବାବଦ ଅର୍ଥ ଯଥା ସମୟରେ ମିଳିଥିଲା । ଆବଶ୍ୟକ ଜାବ୍‌ଦା, ରୋକଡ଼ ବହି ଓ ଖତିୟାନ ହିସାବ ପ୍ରସ୍ତୁତ କର ଏବଂ କମ୍ପାନୀର ପ୍ରାରମ୍ଭିକ ଉଦ୍‌ବୃତ୍ତ ପତ୍ର ମଧ୍ୟ ଦର୍ଶାଅ ।

(ଉତ୍ତର : ନଗଦ ତହବିଲ ଟ ୧,୫୦,୦୦୦ ; ଅଂଶ ମୂଳଧନ ହିସାବର ଦାତା ବାକି ଟ ୧,୫୦,୦୦୦ ।)

୨୯ । ପଟ୍ଟନାୟକ ଏଣ୍ଡ୍ କମ୍ପାନୀ ଲିମିଟେଡ୍ ପ୍ରତି ଅଂଶ ଟ ୧୦ ହାରରେ ୧୦,୦୦୦ ସାଧାରଣ ଅଂଶ ପ୍ରଚଳନ କରିଥିଲେ । ଅଂଶ ବାବଦ ଅର୍ଥ ଅଂଶ ଆବେଦନ ସହିତ ଟ ୨, ଆବଣ୍ଟନ ବେଳେ ଟ ୪ ଓ ଅବଶିଷ୍ଟ ଅର୍ଥ ଦୁଇ ମାସ ପରେ ଦେୟ ଥିଲା । କମ୍ପାନୀ ୧୦,୦୦୦ ଅଂଶ ପ୍ରଚଳନ କରିଥିଲେ ; ମାତ୍ର ୮,୦୦୦ ଅଂଶ ବାବଦ ଆବେଦନ ଅର୍ଥ ମିଳିଥିଲା । କମ୍ପାନୀ ୮,୦୦୦ ଅଂଶ ଆବଣ୍ଟନ କରିଥିଲେ ଓ ଯଥା ସମୟରେ ସବୁ ଅର୍ଥ ମିଳିଥିଲା ।

ଆବଶ୍ୟକ ଜାବଦା, ରୋକଡ଼ ବହି, ଖତିୟାନ ହିସାବ ଓ ଉଦ୍‌ବୃତ୍ତ ପତ୍ର ପ୍ରସ୍ତୁତ କର ।

(ଉତ୍ତର : ନଗଦ ତହବିଲ ଟ ୮୦,୦୦୦; ଅଂଶ ମୂଳଧନ ହିସାବର ଦାଖଲା ବାକି ଟ ୮୦,୦୦୦ ଓ ଉଦ୍‌ବୃତ୍ତ ପତ୍ରର ମୋଟ ପରିମାଣ ଟ ୮୦,୦୦୦)

୩୦ । ଦି ପ୍ରାଚୀ ଟ୍ରେଡ଼ର୍ସ ଲିମିଟେଡ୍ ପ୍ରତି ଅଂଶ ୨୦ ହାରରେ ୧୦,୦୦୦ ସାଧାରଣ ଅଂଶ ପ୍ରଚଳନ କରିଥିଲା । ୧୧,୪୦୦ ଅଂଶ ସକାଶେ ଅଂଶ ଆବେଦନ ଅର୍ଥ ମିଳିଥିଲା । ମାତ୍ର କମ୍ପାନୀ ୧୦,୦୦୦ ସାଧାରଣ ଅଂଶ ଆବଣ୍ଟନ କରିଥିଲା । ଏହି ଅଂଶ ବାବଦ ଅର୍ଥ, ଆବେଦନ ସହିତ ଟ ୫, ଆବଣ୍ଟନ ସହିତ ଟ ୮, ପ୍ରଥମ ଆହ୍ୱାନ ବେଳେ ଟ ୩.୫୦ ଓ ଶେଷ ଆହ୍ୱାନ ବେଳେ ଟ ୩.୫୦ ଦେୟ ଥିଲା । କମ୍ପାନୀ ୪୦୦ ଅଂଶ ବାବଦ ଆବେଦନ ଅର୍ଥ ଫେରସ୍ତ ଦେଇଥିଲା ।

କମ୍ପାନୀ ଅଂଶ ଆବେଦନ ପତ୍ର ଆହ୍ୱାନ କରି ୧-୨-୧୯୭୫ରେ ପତ୍ରିକା ଜ୍ଞାପକ ପତ୍ର ପ୍ରଚାର କରିଥିଲା, ୧-୨-୧୯୭୫ରେ ଅଂଶ ଆବଣ୍ଟନ କରିଥିଲା ଓ ୧-୪-୧୯୭୫ରେ ପ୍ରଥମ ଆହ୍ୱାନ ସକାଶେ ଅର୍ଥ ଦାବୀ କରିଥିଲା । ୪୦୦ ଅଂଶର ପ୍ରଥମ ଅଂଶ ଆହ୍ୱାନ ଅର୍ଥ ବ୍ୟତୀତ ଅନ୍ୟ ସମସ୍ତ ଅର୍ଥ ଯଥା ସମୟରେ ମିଳିଥିଲା । ୩୦-୬-୧୯୭୫ ସୁଦ୍ଧା ଶେଷ ଆହ୍ୱାନ ଦିଆଯାଇ ନ ଥିଲା ।

ଆବଶ୍ୟକ ଜାବଦା, ରୋକଡ଼ ବହି ଓ ଖତିୟାନ ହିସାବ ଲେଖ ଓ ୩୦-୬-୧୯୭୫ ତାରିଖର ଉଦ୍‌ବୃତ୍ତ ପତ୍ର ପ୍ରସ୍ତୁତ କର ।

(ଉତ୍ତର : ନଗଦ ତହବିଲ ଟ ୧,୬୩,୬୦୦; ଅଂଶ ମୂଳଧନ ହିସାବର ଦାଖଲା ବାକି ଟ ୧,୬୫,୦୦୦ ଓ ଉଦ୍‌ବୃତ୍ତ ପତ୍ରର ମୋଟ ପରିମାଣ ଟ ୧,୬୩,୪୦୦)

୩୧ । ଉତ୍କଳ ଫ୍ୟାବ୍ରିକେଟର୍ସ ଲିମିଟେଡ୍‌ଙ୍କର ନଥିଭୁକ୍ତ ମୂଳଧନର ପରିମାଣ ଟ ୨,୦୦,୦୦୦ ଥିଲା ଓ ଏହା ଅଂଶ ପ୍ରତି ଟ ୧୦ ହାରରେ ୧୦,୦୦୦ ସାଧାରଣ

ଅଂଶ ଓ ଅଂଶ ପ୍ରତି ଟ ୧୦୦ ହାରରେ ୧,୦୦୦ ୬% ଅଗ୍ରାଧିକାର ଅଂଶରେ ବିଭକ୍ତ ହୋଇଥିଲା । ପ୍ରତି ଅଂଶ ବାବଦ ଅର୍ଥ ଆବେଦନ ସମୟରେ ୨୫%, ଆବଣ୍ଟନ ସମୟରେ ୫୦% ଏବଂ ପ୍ରଥମ ଓ ଶେଷ ଆହ୍ୱାନ ସମୟରେ ୨୫% ଦେୟ ଥିଲା ।

କମ୍ପାନୀ ୫,୦୦୦ ସାଧାରଣ ଅଂଶ ଓ ସମସ୍ତ ଅଗ୍ରାଧିକାର ଅଂଶ ପ୍ରଚଳନ କରିଥିଲେ । ସବୁଗୁଡ଼ିକ ପ୍ରଚଳିତ ଅଂଶ ବଣ୍ଟିତ ହୋଇଥିଲା ଓ ସେଥି ବାବଦ ଅର୍ଥ ଯଥା ସମୟରେ ମିଳିଥିଲା । ଏହି ନେଣଦେଣଗୁଡ଼ିକ ସକାଶେ ଜାବ୍‌ଦା ଓ ପ୍ରାରମ୍ଭିକ ଉଦ୍‌ବୃତ୍ତ ପତ୍ର ପ୍ରସ୍ତୁତ କର ।

(ଉତ୍ତର : ନଗଦ ତହବିଲ ଟ ୧,୫୦,୦୦୦; ଉଦ୍‌ବୃତ୍ତ ପତ୍ରର ମୋଟ ପରିମାଣ ଟ ୧,୫୦,୦୦୦)

୩୨ । କମଳା ଟ୍ରେଡ଼ର୍ସ ଲିମିଟେଡ଼୍ ପ୍ରତି ଅଂଶ ଟ ୧୦ ହାରରେ ୧୦,୦୦୦ ସାଧାରଣ ଅଂଶ ପ୍ରଚଳିତ କରିଥିଲା । ଏହି ଅଂଶ ବାବଦ ଅର୍ଥ ନିମ୍ନରୂପେ ଦେୟ ଥିଲା :

ଆବେଦନ ପତ୍ର ସହିତ ଟ ୨

ଅଂଶ ଆବଣ୍ଟିତ ହେଲେ ଟ ୫

ପ୍ରଥମ ଓ ଶେଷ ଆହ୍ୱାନ ସମୟରେ ଟ ୩

ଜନସାଧାରଣଙ୍କଠାରୁ କେବଳ ୯,୦୦୦ ଅଂଶ ସକାଶେ ଅଂଶ ଆବେଦନ ଅର୍ଥ ମିଳିଥିଲା । କମ୍ପାନୀ ୯,୦୦୦ ଅଂଶ ଆବଣ୍ଟନ କରିଥିଲା । ମାତ୍ର ୮,୦୦୦ ଅଂଶ ବାବଦ ଆବଣ୍ଟନ ଅର୍ଥ ମିଳିଥିଲା । ୩ ମାସ ପରେ ଯେତେବେଳେ ଅଂଶ ପ୍ରଥମ ଓ ଶେଷ ଆହ୍ୱାନ ଦିଆଯାଇଥିଲା ସେତେବେଳେ କେବଳ ୭,୮୦୦ ଅଂଶ ବାବଦ ଅର୍ଥ ମିଳିଥିଲା ।

ଉପରୋକ୍ତ ନେଣ ଦେଣଗୁଡ଼ିକ ସକାଶେ ଜାବ୍‌ଦା, ରୋକଡ଼ ବହି, ଖତିୟାନ ହିସାବ ଓ ଉଦ୍‌ବୃତ୍ତ ପତ୍ର ପ୍ରସ୍ତୁତ କର ।

(ଉତ୍ତର : ନଗଦ ତହବିଲ ଟ ୮୧,୪୦୦; ଅଂଶ ମୂଳଧନ ହିସାବର ଦାତା ବାକୀ ଟ ୯୦,୦୦୦ ଓ ଉଦ୍‌ବୃତ୍ତ ପତ୍ରର ମୋଟ ପରିମାଣ ଟ ୮୧,୪୦୦ ।)

୩୩ । କଂଟଗ କମ୍ପାନୀ ଲିମିଟେଡ଼୍ ଅଂଶ ପ୍ରତି ଟ ୨.୫୦ ଅଧିହାର ସହିତ ଟ ୧୦ ହାରରେ ୫,୦୦,୦୦୦ ସାଧାରଣ ଅଂଶ ପ୍ରଚଳନ କରିବା ଉଦ୍ଦେଶ୍ୟରେ ସୂଚୀପତ୍ର ପତ୍ର

ପ୍ରସ୍ତୁତ କରି ଜନସାଧାରଣଙ୍କଠାରୁ ଆବେଦନ ପତ୍ର ଆହ୍ୱାନ କରିଥିଲେ । ପ୍ରତି ଅଂଶ ବାବଦ ଅର୍ଥ ଆବେଦନ ସମୟରେ ଅଧିହାର ସମେତ ଟ ୭.୫୦ ପଇସା, ଆବଣ୍ଟନ ବେଳେ ଟ ୨ ଏବଂ ଅଂଶ ପ୍ରଥମ ଓ ଶେଷ ଆହ୍ୱାନ ସମୟରେ ଟ ୩ ଦେୟ ଥିଲା ।

ଆବେଦନ ଅର୍ଥ ସହିତ ୭,୭୦,୦୦୦ ସାଧାରଣ ଅଂଶ ସକାଶେ ଆବେଦନ ପତ୍ର ମିଳିଥିଲା । ନିର୍ଦ୍ଦେଶକମାନେ ୫,୦୦,୦୦୦ ସାଧାରଣ ଅଂଶ ଆବଣ୍ଟନ କରିଥିଲେ, ୨,୫୦,୦୦୦ ଅଂଶ ସକାଶେ ଆବେଦନକାରୀଙ୍କର ଆବେଦନ ପ୍ରତ୍ୟାଖ୍ୟାନ କରି ସେମାନଙ୍କର ଆବେଦନ ଅର୍ଥ ଫେରସ୍ତ ଦେଇଥିଲେ ଓ ୧୦,୦୦୦ ଅଂଶ ପାଇଁ ଆବେଦନ କରିଥିଲା । ଆବେଦନକାରୀଙ୍କର ଅଧିହାର ସମେତ ଆବେଦନ ଅର୍ଥକୁ ଆବଣ୍ଟନ ଅର୍ଥ ସହିତ ସମାଯୋଜନ କରିବା ଉଦ୍ଦେଶ୍ୟରେ ଜମା ରଖିଥିଲେ । ସବୁ-ଗୁଡ଼ିକ ଅଂଶ ବାବଦ ଆବଶ୍ୟକ ଅଂଶ ଆବଣ୍ଟନ ଅର୍ଥ ମିଳିଥିଲା । ପ୍ରଥମ ଓ ଶେଷ ଆହ୍ୱାନ ହୋଇଥିବାରୁ ୨୦,୦୦୦ ଅଂଶ ବାବଦ ଅଂଶ ଆହ୍ୱାନ ଅର୍ଥ ବ୍ୟତୀତ ଅନ୍ୟ ଅଂଶଗୁଡ଼ିକର ଅଂଶ ଆହ୍ୱାନ ଅର୍ଥ ଯଥାବିଧି ମିଳିଥିଲା ।

ଆବଶ୍ୟକ ଜାବ୍ଦା, ରୋକଡ଼ ବହି ଓ ପ୍ରାରମ୍ଭିକ ଉଦ୍ବୃତ୍ତ ପତ୍ର ପ୍ରସ୍ତୁତ କର ।

**( C. U. B. Com. 1961ରୁ ଗୃହୀତ )**

(ଉତ୍ତର : ନଗଦ ତହବିଲ ଟ ୬୧,୯୦,୦୦୦; ଅଂଶ ମୂଳଧନ ହିସାବର ବାକି ଟ ୫୦,୦୦,୦୦୦; ଉଦ୍ବୃତ୍ତ ପତ୍ରର ମୋଟ ପରିମାଣ ଟ ୬୧,୯୦,୦୦୦)

## ଅଂଶର ବାଜ୍ୟାପ୍ତୀକରଣ ଓ ପୁନଃପ୍ରଚଳନ

୩୪ । କାଞ୍ଚନ କମ୍ପାନୀ ଲିମିଟେଡ଼୍ ଅଂଶ ପ୍ରତି ଟ ୨୦ ହାରରେ ୧,୦୦୦ ସାଧାରଣ ଅଂଶ ପ୍ରଚଳନ କରିଥିଲେ । ଏହି ଅଂଶଗୁଡ଼ିକ ବାବଦ ଅର୍ଥ ପୂର୍ଣ୍ଣରୂପେ ଆହୂତ ହୋଇ-ଥିଲା । ପ୍ରତି ଅଂଶ ବାବଦ ପ୍ରଥମ ଓ ଶେଷ ଆହ୍ୱାନ ବେଳେ ଟ ୫ ଦେୟ ଥିଲା । ୧୮୦ ଗୋଟି ଅଂଶ ବାବଦ ଅଂଶ ପ୍ରଥମ ଓ ଶେଷ ଆହ୍ୱାନ ଅର୍ଥ ନ ମିଳିଥିବାରୁ ନିର୍ଦ୍ଦେଶକଗଣ ଏହି ଅଂଶଗୁଡ଼ିକ ବାଜ୍ୟାପ୍ତ କରିଥିଲେ ।
ଆବଶ୍ୟକ ଜାବ୍ଦା ଓ ରୋକଡ଼ ବହି ପ୍ରସ୍ତୁତ କର ।

୩୫ । ଉତ୍କଳ ଫୋମ୍ ଲେଦର ଇଣ୍ଡଷ୍ଟ୍ରିଜ୍ ଲିମିଟେଡ଼୍ ପ୍ରତି ଅଂଶ ଟ ୨୦ ହାରରେ ୫,୦୦୦ ସାଧାରଣ ଅଂଶ ପ୍ରଚଳନ କରିଥିଲେ । ପ୍ରତି ଅଂଶ ବାବଦ ଅର୍ଥ ଆବେଦନ

ସମୟରେ ଟ ୩, ଆବଣ୍ଟନ ସମୟରେ ଟ ୫, ଅଂଶ ପ୍ରଥମ ଆହ୍ୱାନ ସମୟରେ ଟ ୭ ଓ ଅଂଶ ଶେଷ ଆହ୍ୱାନ ବେଳେ ଅବଶିଷ୍ଟ ଟଙ୍କା ଦେୟ ଥିଲା । ସବୁଗୁଡ଼ିକ ଅଂଶ ବିକ୍ରି ହୋଇଥିଲା ଓ ପୂର୍ଣ୍ଣ ପରିମାଣରେ ଅନ୍ତୁ ହୋଇଥିଲା । ଶେଷ ଆହ୍ୱାନ ସମୟରେ ୧୨୦ଟି ଅଂଶ କ୍ରୟ କରିଥିବା ଜଣେ ଅଂଶଧାରୀ ଅଂଶ ଶେଷ ଆହ୍ୱାନ ଅର୍ଥ ଦେବାକୁ ଅକ୍ଷମ ହୋଇଥିଲେ । ଅନ୍ୟ ସମସ୍ତ ଅର୍ଥ ଯଥାବିଧି ମିଳିଥିଲା ।

ସବୁ ବିଧି ପାଳିତ ହେବା ପରେ ନିର୍ଦ୍ଦେଶକମାନେ ଏହି ୧୨୦ଟି ଅଂଶ ବାଜ୍ୟାପ୍ତ କରିଥିଲେ ଓ ସେଗୁଡ଼ିକୁ ପୁନଃପ୍ରଚଳନ କରିଥିଲେ । ଜଣେ ବ୍ୟକ୍ତି ପ୍ରତି ଅଂଶ ଟ ୧୦ ହାରରେ ୧୨୦ଟି ଅଂଶ କ୍ରୟ କରି ନଗଦ ଅର୍ଥ ପ୍ରଦାନ କରିଥିଲେ ।
ଆବଶ୍ୟକ ଜାବ୍ଦା ଲେଖ ।

୩୭ । କଳିଙ୍ଗା ଟ୍ରେଡ଼ର୍ସ ଲିମିଟେଡ୍ ଶତକଡ଼ା ୫ ଅବହାରରେ ପ୍ରତି ଅଂଶ ଟ ୧୦୦ ହାରରେ ୫୦୦ ସାଧାରଣ ଅଂଶ ପ୍ରଚଳନ କରିଥିଲେ । ଏହି ଅଂଶ ବାବଦ ଅର୍ଥ ନିମ୍ନପ୍ରକାରେ ଦେୟ ଥିଲା ।

ଆବେଦନ ସମୟରେ ଟ ୩୦, ଅଂଶ ଆବଣ୍ଟନ ବେଳେ ଟ ୪୦ (ଅବହାର ସମେତ) ଓ ଅଂଶ ପ୍ରଥମ ଓ ଶେଷ ଆହ୍ୱାନ ସମୟରେ ଟ ୨୫ ।

୪୫୦ଟି ଅଂଶ ସକାଶେ ଆବେଦନ ମିଳିଥିଲା ।

ନିର୍ଦ୍ଦେଶକମଣ୍ଡଳୀ ୪୫୦ଟି ଅଂଶ ଆବଣ୍ଟନ କରିଥିଲେ । ଅଂଶ ଆବଣ୍ଟନ ଅର୍ଥ ଓ ୨୦ ଗୋଟି ଅଂଶ ବାବଦ ଅଂଶ ପ୍ରଥମ ଓ ଶେଷ ଆହ୍ୱାନ ଅର୍ଥ ବ୍ୟତୀତ ଅନ୍ୟ ସମସ୍ତ ଯଥା ସମୟରେ ମିଳିଥିଲା । ସମସ୍ତ ବିଧି ପାଳନ କରିବା ପରେ ନିର୍ଦ୍ଦେଶକମଣ୍ଡଳୀ ଏହି ୨୦ଟି ଅଂଶକୁ ବାଜ୍ୟାପ୍ତ କରିଥିଲେ ଓ ତନ୍ମଧ୍ୟରୁ ୧୦ ଗୋଟି ଅଂଶକୁ ପୂର୍ଣ୍ଣ ଆଦାୟୀକୃତ ଅଂଶ ରୂପେ ପ୍ରତି ଅଂଶ ଟ ୯୦ ହାରରେ ପୁନଃପ୍ରଚଳନ କରିଥିଲେ ।

ଆବଶ୍ୟକ ଜାବ୍ଦା ଓ ରୋକଡ଼ ବହି ଲେଖ ଓ ଏହି ନେଣଦେଣଗୁଡ଼ିକ ଉଦ୍‌ବୃତ୍ତ ପତ୍ରରେ କିପରି ପ୍ରକାଶିତ ହେବ ତାହା ଦର୍ଶାଅ ।

(ଉତ୍ତର : ନଗଦ ତହବିଲ ଟ ୪୩୧୫୦; ଅଂଶ ମୂଳଧନ ହିସାବର ବାକି ଟ ୪୪,୦୦୦ ଓ ଉଦ୍‌ବୃତ୍ତ ପତ୍ରର ମୋଟ ପରିମାଣ ଟ ୪୫,୩୦୦)

୩୭ । ବର୍ମା ଜେନେରାଲ୍ ଷ୍ଟୋର୍ସ ଲିମିଟେଡ୍‌ଙ୍କର ନିବନ୍ଧିତ ମୂଳଧନ ଅଂଶ ପ୍ରତି ଟ ୧୦ ହାରରେ ୧,୦୦୦ ସାଧାରଣ ଅଂଶ ଓ ଅଂଶ ପ୍ରତି ଟ ୨୦ ହାରରେ ୧,୦୦୦ ଅଗ୍ରାଧିକାର ଅଂଶରେ ବିଭକ୍ତ ଥିଲା । କମ୍ପାନୀ ସବୁଗୁଡ଼ିକ ପ୍ରଚଳନ କରିଥିଲା ଓ ସେଗୁଡ଼ିକ ବର୍ଣ୍ଟିତ ମଧ୍ୟ ହୋଇଥିଲା । ପ୍ରତି ଅଂଶ ବାବଦ ଅର୍ଥ ନିମ୍ନରୂପେ ଦେୟ ଥିଲା :

| | ସାଧାରଣ ଅଂଶ | ଅଗ୍ରାଧିକାର ଅଂଶ |
|---|---|---|
| | ଟଙ୍କା | ଟଙ୍କା |
| ଆବେଦନ ସହିତ | ୨ | ୪ |
| ଆବଣ୍ଟନ ସମୟରେ | ୫ | ୧୦ |
| ପ୍ରଥମ ଓ ଶେଷ ଆହ୍ୱାନ ସମୟରେ | ୩ | ୬ |

ନିମ୍ନଲିଖିତ ଦୁଇ ଜଣ ଅଂଶଧାରୀଙ୍କ ବ୍ୟତୀତ ଅନ୍ୟ ସମସ୍ତେ ତାଙ୍କର ଦେୟ ଅର୍ଥ ଯଥା ସମୟରେ ପ୍ରଦାନ କରିଥିଲେ; ୧୨୦ ଗୋଟି ସାଧାରଣ ଅଂଶର ଅଂଶଧାରୀ ଅନିରୁଦ୍ଧ ଶେଷ ଆହ୍ୱାନ ବାବଦ ଅର୍ଥ ଦେବାକୁ ଅକ୍ଷମ ହୋଇଥିଲେ ଏବଂ ୧୦୦ ଗୋଟି ଅଗ୍ରାଧିକାର ଅଂଶର ଅଂଶଧାରୀ ରମାକାନ୍ତ ଅଂଶ ଆବଣ୍ଟନ ଓ ଅଂଶ ପ୍ରଥମ ଓ ଶେଷ ଆହ୍ୱାନ ବାବଦ ଅର୍ଥ ଦେବାକୁ ଅକ୍ଷମ ହୋଇଥିଲେ । ଯଥାବିଧି ନୋଟିସ ପରେ ନିର୍ଦ୍ଦେଶକମଣ୍ଡଳୀ ୧୨୦ ଗୋଟି ସାଧାରଣ ଅଂଶ ଓ ୧୦୦ ଗୋଟି ଅଗ୍ରାଧିକାର ଅଂଶକୁ ବାଜ୍ୟାପ୍ତ କରିଥିଲେ ଓ ଉଭୟ ପ୍ରକାର ଅଂଶକୁ ବିଧାକାନ୍ତଙ୍କୁ ଅଂଶ ପ୍ରତି ଯଥାକ୍ରମେ ଟ ୮ ଓ ଟ ୧୮ ହାରରେ ନଗଦ ମୂଲ୍ୟରେ ବିକ୍ରୟ କରିଥିଲେ ।

ଉପରୋକ୍ତ ନେଣଦେଣଗୁଡ଼ିକ ସକାଶେ ଜାବ୍‌ଦା ଓ ରୋକଡ଼ ବହି ଲେଖ ।

୩୮ । ମେସର୍ସ ସନ୍‌ସାଇନ ଲିମିଟେଡ୍ ଟ ୨ ଅଧିହାରରେ ଅଂଶ ପ୍ରତି ଟ ୧୦ ହାରରେ ୧,୦୦,୦୦୦ ସାଧାରଣ ଅଂଶ ସକାଶେ ଆବେଦନ ପତ୍ର ଆହ୍ୱାନ କରିଥିଲେ । ଏହି ଅଂଶ ବାବଦ ଅର୍ଥ ଆବେଦନ ସମୟରେ ଟ ୨.୫୦ ପଇସା, ଆବଣ୍ଟନ ସମୟରେ ଅଧିହାର ସମେତ ଟ ୪.୫୦ ପଇସା, ପ୍ରଥମ ଆହ୍ୱାନ ସମୟରେ ଟ ୨.୫୦ ପଇସା ଓ ଶେଷ ଆହ୍ୱାନ ସମୟରେ ଟ ୨.୫୦ ପଇସା ଦେୟ ଥିଲା ।

୧,୫୦,୦୦୦ ଅଂଶ ସକାଶେ ଆବେଦନ ପତ୍ର ମିଳିଥିଲା । ୧,୨୦,୦୦୦ ଅଂଶ ସକାଶେ ଆବେଦନକାରୀଙ୍କୁ ଆନୁପାତିକ ହାରରେ ୧,୦୦,୦୦୦ ସାଧାରଣ ଅଂଶ ବର୍ଣ୍ଟିତ ହୋଇଥିଲା ଓ ଅବଶିଷ୍ଟ ଆବେଦନପତ୍ରଗୁଡ଼ିକୁ ପ୍ରତ୍ୟାଖ୍ୟାନ କରାଯାଇଥିଲା । ଆବେଦନ ପତ୍ର ସହିତ ମିଳିଥିବା ଅଧିକା ଅର୍ଥ ଅଂଶ ଆବଣ୍ଟନ ଅର୍ଥ ସହିତ ସମାଯୋଜିତ ହୋଇଥିଲା ।

କ, ଯାହାଙ୍କୁ ୨୦୦ ସାଧାରଣ ଅଂଶ ଆବର୍ଣ୍ଟିତ ହୋଇଥିଲା, ଅଂଶ ଆବଣ୍ଟନ ଅର୍ଥ ଦେବାକୁ ଅକ୍ଷମ ହୋଇଥିଲେ । ସେ ଅଂଶ ପ୍ରଥମ ଆହ୍ୱାନ ଅର୍ଥ ମଧ୍ୟ ଦେଇ ନ ପାରିବାରୁ ତାଙ୍କ ଅଂଶଗୁଡ଼ିକ ବାଜ୍ୟାପ୍ତ କରାଯାଇଥିଲା ।

/

୩୦୦ ସାଧାରଣ ଅଂଶର ଅଂଶଧାରୀ ଖ ଅଂଶ ପ୍ରଥମ ଓ ଶେଷ ଆହ୍ୱାନ ଅର୍ଥ ଦେବାକୁ ଅକ୍ଷମ ହେବାରୁ ତାଙ୍କ ଅଂଶଗୁଡ଼ିକୁ ମଧ୍ୟ ବାଜ୍ୟାପ୍ତ କରାଯାଇଥିଲା ।

କମ୍ପାନୀ ଜାବ୍‌ଦା ବହିରେ ଏହି ନେଣଦେଣଗୁଡ଼ିକ ଲିପିବଦ୍ଧ କର ।

(C. A., May, 1963ରୁ ଗୃହୀତ)

## ବୋନସ୍ ଅଂଶ

୩୯ । କ ଖ ଗ କମ୍ପାନୀ ମୁଦ୍ରା ଅଂଶ ଟ ୨୫ ହାରରେ ୧୦,୦୦୦ ସାଧାରଣ ଅଂଶ ପ୍ରଚଳନ କରିବା ନିମନ୍ତେ ପ୍ରାଧିକାର ଲାଭ କରିଥିଲା । ଏଥିମଧ୍ୟରୁ କମ୍ପାନୀ ୫,୦୦୦ ସାଧାରଣ ଅଂଶ ପୂର୍ଣ୍ଣ ଅଦାୟୀକୃତ ଅଂଶ ରୂପେ ପ୍ରଚଳନ କରିଥିଲେ । ଏହି ଅଂଶଗୁଡ଼ିକ ବର୍ଣ୍ଟିତ ହୋଇଥିଲା । କମ୍ପାନୀର ନିର୍ଦ୍ଦେଶକମଣ୍ଡଳୀ ଉପସ୍ଥିତ ଅଂଶଧାରୀମାନଙ୍କୁ ଆନୁପାତିକ ହାରରେ ୧,୦୦୦ ସାଧାରଣ ଅଂଶକୁ ପୂର୍ଣ୍ଣ ପ୍ରଦତ୍ତ ଅଂଶ ରୂପେ ବଣ୍ଟନ କରିବାକୁ ସ୍ଥିର କରିଥିଲେ ଓ ଏଥି ନିମନ୍ତେ କମ୍ପାନୀର ସାଧାରଣ ସଞ୍ଚିତ ହିସାବରେ ଥିବା ଟ ୩,୦୦,୦୦୦ କୁ ଆଂଶିକ ରୂପେ ବ୍ୟବହାର କରିବାକୁ ନିଷ୍ପତ୍ତି ଗ୍ରହଣ କରିଥିଲେ ।

ଏଥିନିମନ୍ତେ ଆବଶ୍ୟକ ଜାବ୍‌ଦା ଲେଖ ।

୪୦ । ଗୋପାଳ ଅଏଲ୍ ମିଲସ୍ ଲିମିଟେଡ୍‌ଙ୍କର ପ୍ରାଧିକୃତ ମୂଳଧନର ପରିମାଣ ଟ ୧,୦୦,୦୦୦ ଥିଲା । ଏହା ଅଂଶ ପ୍ରତି ଟ ୧୦ ହାରରେ ୧୦,୦୦୦ ସାଧାରଣ ଅଂଶରେ ବିଭକ୍ତ ଥିଲା । କମ୍ପାନୀ ଏହି ଅଂଶଗୁଡ଼ିକ ପ୍ରଚଳିତ ଓ ବଣ୍ଟିତ କରି ଅଂଶ ପ୍ରତି ଟ ୮ ଆହ୍ୱାନ କରିସାରିଥିଲେ । ଅଂଶ ପ୍ରତି ପ୍ରାପ୍ୟ ଟ ୮ ବଳିଷ୍ଠ ଏହି ସାଧାରଣ ଅଂଶଗୁଡ଼ିକୁ ପୂର୍ଣ୍ଣ ଆଦାୟୀକୃତ ଅଂଶରେ ପରିଣତ କରିବା ଉଦ୍ଦେଶ୍ୟରେ ଅଂଶ ପ୍ରତି ଆଦାୟୀକୃତ ଅର୍ଥର ଶତକଡ଼ା ୨୫ ଭାଗ ବୋନସ ରୂପେ ଦେବା ପାଇଁ କମ୍ପାନୀ ନିଷ୍ପତ୍ତି ଗ୍ରହଣ କରିଥିଲେ । ଏଥି ନିମନ୍ତେ କମ୍ପାନୀର ସଞ୍ଚିତ ହିସାବର ବାକି ବ୍ୟବହୃତ ହେବ ବୋଲି ସ୍ଥିର ହୋଇଥିଲା ।

କମ୍ପାନୀ ହିସାବ ଖାତାରେ ଆବଶ୍ୟକ ଜାବ୍‌ଦା ପ୍ରସ୍ତୁତ କର ।

୪୧ । ଗୋଟିଏ କମ୍ପାନୀର ସଞ୍ଚିତ ହିସାବରେ ବହୁ ପରିମାଣର ଅର୍ଥ ସଞ୍ଚିତ ହୋଇଥିଲା ଏବଂ କମ୍ପାନୀର ନିର୍ଦ୍ଦେଶକମଣ୍ଡଳୀ ନିଷ୍ପତ୍ତି ଗ୍ରହଣ କରିଥିଲେ ଯେ କମ୍ପାନୀର ସ୍ୱଚ୍ଛଳ ଆର୍ଥିକ ଅବସ୍ଥା କମ୍ପାନୀର ମୂଳଧନ ହିସାବରେ ପ୍ରତିଫଳିତ କରିବା ଉଦ୍ଦେଶ୍ୟରେ ଏହି ସଞ୍ଚିତ ହିସାବର କିଛି ଅର୍ଥ ବ୍ୟବହୃତ ହେବା ଉଚିତ ।

କମ୍ପାନୀର ଆଦାୟୀକୃତ ମୂଳଧନ ଟ ୧୦,୦୦,୦୦୦ ଥିଲା ଓ ଏହା ପ୍ରତି ଅଂଶ ଟ ୧୦ ହାରରେ ୯୦,୦୦୦ ସାଧାରଣ ଅଂଶ ଓ ଅଂଶ ପ୍ରତି ଟ ୧୦ ହାରରେ ( ଅଂଶ ପ୍ରତି ଟ ୫ ଆଦାୟୀକୃତ ) ୨୦,୦୦୦ ସାଧାରଣ ଅଂଶରେ ବିଭକ୍ତ ଥିଲା । ବୋନସ ଅଂଶର ଆବଣ୍ଟନ ସମୟରେ ସାଧାରଣ ଅଂଶର ବଜାରଦର ଅଂଶ ପ୍ରତି ଟ ୩୩ ଥିଲା । ଟ ୧୦ ଅଧିହାରରେ ପ୍ରତ୍ୟେକ ପୂର୍ଣ୍ଣ ଆଦାୟୀକୃତ ଅଂଶ ପଛକାଣେ ଗୋଟିଏ ଲେଖାଏଁ ବୋନସ ଅଂଶ ଦେବା ପାଇଁ ଏବଂ ଆଂଶିକ ରୂପେ ଆଦାୟୀକୃତ ଅଂଶକୁ ପୂର୍ଣ୍ଣ ଆଦାୟୀକୃତ ଅଂଶରେ ପରିଣତ କରିବା ପାଇଁ ନିର୍ଦ୍ଦେଶକମଣ୍ଡଳୀ ନିଷ୍ପତ୍ତି ଗ୍ରହଣ କରିଥିଲେ ।

ଆବଶ୍ୟକ ଜାବ୍‌ଦା ପ୍ରସ୍ତୁତ କର ।

(C. U. B. Com. 1956 ରୁ ଗୃହୀତ)

୪୨ । X ଲିମିଟେଡ୍‌ର ୧୯୬୨ ମସିହା ଡିସେମ୍ବର ୩୧ ତାରିଖର ଉଦ୍ବୃତ୍ତ ପତ୍ର (ଖସଡ଼ା)ର କେତେକ ଅଂଶ ନିମ୍ନରେ ପ୍ରଦତ୍ତ ହେଲା :

| | ଟଙ୍କା |
|---|---|
| ପ୍ରାଧିକୃତ ମୂଳଧନ : | |
| ପ୍ରତି ଅଂଶ ଟ ୧ ହାରରେ | |
| ୧,୦୦,୦୦୦ ସାଧାରଣ ଅଂଶ | ୧,୦୦,୦୦୦ |
| ପ୍ରଚଳିତ ଓ ବଣ୍ଟିତ ମୂଳଧନ : | |
| ପ୍ରତି ଅଂଶ ଟ ୧ ହାରରେ | |
| ୫୦,୦୦୦ ସାଧାରଣ ଅଂଶ | ୫୦,୦୦୦ |
| (ପୂର୍ଣ୍ଣ ଆଦାୟୀକୃତ) | |
| ସଞ୍ଚିତ ପାଣ୍ଠି | ୩୦,୦୦୦ |
| ନିଟ୍ ଲଭ ଓ କ୍ଷତି ହିସାବ | ୧୫,୦୦୦ |

ସାଧାରଣ ଅଂଶର ଶତକଡ଼ା ୨୦ ଅଂଶ ବୋନସ ଅଂଶ ରୂପେ ପ୍ରଦାନ କରିବା ପାଇଁ ଗୋଟିଏ ପ୍ରସ୍ତାବ ଗୃହୀତ ହୋଇଥିଲା । ଏଥି ମଧ୍ୟରୁ ଟ ୭,୦୦୦ ସଞ୍ଚିତ ପାଣ୍ଠିରୁ ଓ ଅବଶିଷ୍ଟ ଅର୍ଥ ନିଟ୍‌ଲଭ ଓ କ୍ଷତି ହିସାବରୁ ବ୍ୟବସ୍ଥା କରାଯିବା କଥା ମଧ୍ୟ ସେହି ପ୍ରସ୍ତାବରେ ଅନ୍ତର୍ଭୁକ୍ତ ଥିଲା । ଏହି ବୋନସ୍ ନିମ୍ନ ପ୍ରକାରେ ପ୍ରଦାନ କରାଯିବା ପାଇଁ ସ୍ଥିର ହୋଇଥିଲା :

ପାଞ୍ଚଗୋଟି ସାଧାରଣ ଅଂଶର ଅଂଶଧାରୀଙ୍କୁ ଗୋଟିଏ ପୂର୍ଣ୍ଣ ଆଦାୟୀକୃତ ସାଧାରଣ ଅଂଶ ଦିଆଯିବ ।

ପ୍ରସ୍ତାବଟିକୁ କାର୍ଯ୍ୟକାରୀ କରିବା ନିମନ୍ତେ ଆବଶ୍ୟକ ଜାବଦା ପ୍ରସ୍ତୁତ କର ଏବଂ ତାହା ଫଳରେ ଉଦ୍ବୃତ୍ତ ପତ୍ର କପରି ପ୍ରଭାବିତ ହେବ ତାହା ଦର୍ଶାଅ ।

( C. A. May, 1963ରୁ ଗୃହୀତ )

## ପ୍ରାକ୍ ନିଗମନ ଲଭ

୪୩ । ୧୯୬୫ ମସିହା ଜାନୁୟାରୀ ୧ ତାରିଖରୁ ଗୋଟିଏ ଚଳନ୍ତି ବ୍ୟବସାୟକୁ କ୍ରୟ କରିବା ନିମନ୍ତେ କ ଖ ଗ କମ୍ପାନୀ ଲିମିଟେଡ୍ ୧୯୬୫ ମସିହା ଅପ୍ରେଲ ୧ ତାରିଖରେ ଗଠିତ ହୋଇଥିଲା । ଏହା ସ୍ଥିରୀକୃତ ହୋଇଥିଲା ଯେ ନିଗମନ ପୂର୍ବ ଲଭ କମ୍ପାନୀ ତହିଁରେ ନିୟୋଜିତ ହେବ । ବ୍ୟବସାୟର ବିକ୍ରେତାମାନେ କ୍ରୟମୂଲ୍ୟ ଟ ୭୦,୦୦୦

ସକାଶେ ବାର୍ଷିକ ଶତକଡ଼ା ୬ ହାରରେ ନିସ୍ଥମୂଲ୍ୟ ବାବଦ ଅର୍ଥ ପରିଶୋଧ ଦିନମ ପର୍ଯ୍ୟନ୍ତ ସୁଧ ପାଇବେ । ଏହି ଅର୍ଥ ୧୯୭୫ ମସିହା ଜୁନ୍ ୩୦ ତାରିଖରେ ପରିଶୋଧ କରାଯାଇଥିଲା ।

୧୯୭୫ ମସିହା ଡିସେମ୍ବର ୩୧ ତାରିଖରେ ଶେଷ ହେଉଥିବା ବର୍ଷର ନିଟ୍ ଲାଭ ଓ କ୍ଷତିର ବିବରଣୀ ନିମ୍ନରେ ପ୍ରଦତ୍ତ ହେଲା :

| | ଟଙ୍କା | | ଟଙ୍କା |
|---|---|---|---|
| ପରିଚାଳନ ବ୍ୟୟ | ୩,୫୦୦ | ମୋଟ ଲାଭ | ୨୫,୨୦୦ |
| ଅନାଦାୟୀ ଋଣ | ୩୦୦ | | |
| ନିର୍ଦ୍ଦେଶକମାନଙ୍କର ଫିସ୍ | ୧,୨୦୦ | | |
| ବିକ୍ରେତାଙ୍କୁ ପ୍ରଦତ୍ତ ସୁଧ | ୧,୮୦୦ | | |
| ବାଦ୍ ଦିଆଯାଇଥିବା | | | |
| ପ୍ରାରମ୍ଭିକ ବ୍ୟୟ | ୬୦୦ | | |
| ମୂଲ୍ୟ ହ୍ରାସ | ୧,୫୦୦ | | |
| ନିଟ୍ ଲାଭ | ୧୬,୩୦୦ | | |
| | ୨୫,୨୦୦ | | ୨୫,୨୦୦ |

ଅନାଦାୟୀ ଋଣ ମଧ୍ୟରୁ ଟ ୨୦୦ ନିଗମନ ପୂର୍ବ କାଳ ପ୍ରତି ପ୍ରଯୁଜ୍ୟ ଥିଲା । ପଣ୍ୟ ବିକ୍ରୟର ହାର ବର୍ଷ ସାରା ଏକରୂପ ଥିଲା । ଅର୍ଜିତ ଲାଭ ପ୍ରାକ୍ ନିଗମନ ଓ ନିଗମନ ପରବର୍ତ୍ତୀ କାଳ ମଧ୍ୟରେ ବଣ୍ଟନ କର ।

(ଉତ୍ତର : ମୂଳଧନ ସଞ୍ଚିତି ଟ ୩,୩୫୦; ନିଟ୍ ଲାଭ ଟ ୧୨,୯୫୦)

**ଋଣ ପତ୍ର ପ୍ରଚଳନ – ଋଣ ପତ୍ର ବଟା ହିସାବ**

୪୪ । ଗୋଟିଏ କମ୍ପାନୀ ପ୍ରତି ଋଣ ପତ୍ର ଟ ୧୦୦ ହାରରେ ୫% ଅବହାରରେ ୧୦,୦୦୦ ୮% ଋଣପତ୍ର ପ୍ରଚଳନ କରିଥିଲେ । ଏହି ଋଣପତ୍ର ବାବଦ ସମସ୍ତ ଅର୍ଥ ଆବେଦନ ସହିତ ଦେୟ ଥିଲା ।

ଏହି ନେଣଦେଣଗୁଡ଼ିକ (ନଗଦ ତହବିଲ ସମେତ) କିପରି କମ୍ପାନୀ ଖାତାରେ ଜାବ୍ଦାଭୁକ୍ତ ହେବ ତାହା ଦର୍ଶାଅ ।

୪୫ । ଭବାନୀ କଟନ ମିଲସ୍ ଲିମିଟେଡ୍ ପ୍ରତି ଋଣ ପତ୍ର ବଣ୍ଡ୍ ଟ ୧,୦୦୦ ହାରରେ ୪୦୦ ୬% ଋଣ ପତ୍ର ବଣ୍ଡ ସମହାରରେ ପ୍ରଚଳିତ କରିଥିଲେ । ଏହି ଋଣ ପତ୍ର ବଣ୍ଡ୍ ୪ ବର୍ଷ ପରେ ୪% ଅଧିହାରରେ ପରିଶୋଧ ଥିଲା ।

ଉପରୋକ୍ତ ନେଣଦେଣଗୁଡ଼ିକ କମ୍ପାନୀ ବହିରେ ଲିପିବଦ୍ଧ କରିବା ନିମନ୍ତେ ଆବଶ୍ୟକ ଜାବଦା ପ୍ରସ୍ତୁତ କର ।

୪୬ । କ କମ୍ପାନୀ ଲିମିଟେଡ୍ ଟ ୧,୦୦୦ ମୂଲ୍ୟର ପ୍ରତି ଋଣ ପତ୍ରର ୫୦୦ ଋଣ ପତ୍ର ୧୦% ଅଧିହାରରେ ପ୍ରଚଳନ କରିଥିଲେ ଓ ସେଗୁଡ଼ିକ ୧୦ ବର୍ଷ ପରେ ସମହାରରେ ପରିଶୋଧ ଥିଲା । ଋଣ ପତ୍ର ବାବଦ ଅର୍ଥର ୨୦% ଆବେଦନ ସହିତ, ୩୦% (ଅଧିହାର ସମେତ) ଆବଣ୍ଟନ ବେଳେ ଏବଂ ଅବଶିଷ୍ଟ ଅର୍ଥ ପ୍ରଥମ ଅହ୍ୱାନ ବେଳେ ଦେୟ ଥିଲା । ଋଣପତ୍ରଧାରୀଙ୍କଠାରୁ ଋଣପତ୍ର ବାବଦ ଅର୍ଥ ଯଥାଯଥ ରୂପେ ମିଳିଥିଲା ।

କମ୍ପାନୀ ଖାତାରେ ଉପରୋକ୍ତ ନେଣଦେଣଗୁଡ଼ିକ ସକାଶେ ଜାବ୍‌ଦା ଲେଖ । ଏହି ନେଣଦେଣଗୁଡ଼ିକ ଭିତ୍ତିରେ ଏକ ରେଓସ୍ଥା ମେଳ ଓ ଉଦ୍‌ବୃତ୍ତ ପତ୍ର ପ୍ରସ୍ତୁତ କର ।

(C. U. B. Com., 1955 ପ୍ରଶ୍ନପତ୍ରରୁ ସଂଗୃହୀତ)

୪୭ । ଗୋଟିଏ କମ୍ପାନୀ ଟ ୧,୦୦,୦୦୦ ଅଙ୍କିତ ମୂଲ୍ୟର ଋଣପତ୍ର ୭% ଅବହାରରେ ପ୍ରଚଳନ କରିଥିଲେ । ଏହି ଋଣପତ୍ରଗୁଡ଼ିକ ମଧ୍ୟରୁ ପ୍ରତି ବର୍ଷ ଟ ୨୦,୦୦୦ର ଋଣପତ୍ର ପରିଶୋଧ ଥିଲା । ଋଣପତ୍ର ପ୍ରଚଳନ ବାବଦ ବଟାକୁ ତୁମେ ହିସାବରେ କିପରି ଦର୍ଶାଇବ ?

ଋଣପତ୍ରଗୁଡ଼ିକର ସ୍ଥିତିକାଳ ମଧ୍ୟରେ ବଟା ହିସାବ ଖତିୟାନରେ କିପରି ଲିପିବଦ୍ଧ କରାଯିବ ତାହା ଦର୍ଶାଅ ।

(C. A November, 1964 ପ୍ରଶ୍ନପତ୍ରରୁ ସଂଗୃହୀତ )

**ଅଗ୍ରାଧିକାର ଅଂଶ ପରିଶୋଧ**

୪୮ । ଦମା ଜେନେରାଲ ଷ୍ଟୋର୍ସ ଲିମିଟେଡ୍‌ଙ୍କର ମୂଳଧନର ଗୋଟିଏ ଅଂଶ ପ୍ରତି ଅଗ୍ରାଧିକାର ଅଂଶ ଟ୧୦୦ ହାରରେ ୧,୦୦୦ ପରିଶୋଧ ଅଗ୍ରାଧିକାର ଅଂଶ

ବନ୍ଦସ୍ଵରୁ ମିଳିଥିଲା । ଏହି ଅଂଶଗୁଡ଼ିକ ପୂର୍ଣ୍ଣ ଆଦାୟୀକୃତ ହୋଇଥିଲା । ଏହି ଅଂଶଗୁଡ଼ିକର ପରିଶୋଧ ସମସ୍ୟା ଉପସ୍ଥିତ ହୋଇଛି । କେବଳ ଏହି ଅଗ୍ରାଧିକାର ଅଂଶଗୁଡ଼ିକ ପରିଶୋଧ କରିବା ଉଦ୍ଦେଶ୍ୟରେ କମ୍ପାନୀ ପ୍ରତି ଅଂଶ ଟ ୧୦ ହାରରେ ୮,୦୦୦ ସାଧାରଣ ଅଂଶ ଗୋଟିଏ କିସ୍ତିରେ ନଗଦ ମୂଲ୍ୟ ବନ୍ଦସ୍ଵରେ ପ୍ରଚଳନ କରିଥିଲେ । ଅବଶିଷ୍ଟ ଅର୍ଥ ସାଧାରଣ ସଞ୍ଚିତ ପାଣ୍ଠିରୁ ଭରଣା କରାଯିବ ବୋଲି ସ୍ଥିର ହୋଇଥିଲା । ଏହି ପାଣ୍ଠିରେ ଟ ୫୦,୦୦୦ ଗଚ୍ଛିତ ଥିଲା ।

ଏହି ଅଗ୍ରାଧିକାର ଅଂଶଗୁଡ଼ିକର ପରିଶୋଧ ନିମନ୍ତେ ଆବଶ୍ୟକ ଜାବଦା ପ୍ରସ୍ତୁତ କର ।

୪୯ । ଗୋଟିଏ କମ୍ପାନୀର ଅଂଶ ପ୍ରତି ଟ ୧୦୦ ହାରରେ ୩,୦୦୦ ୫% ଅଗ୍ରାଧିକାର ଅଂଶ ଥିଲା । ଏହି ଅଂଶଗୁଡ଼ିକ ପୂର୍ଣ୍ଣ ଆଦାୟୀକୃତ ଥିଲା । କମ୍ପାନୀ ଏହି ଅଂଶଗୁଡ଼ିକୁ ୧୯୭୫ ମସିହା ଡିସେମ୍ବର ୩୧ ତାରିଖରେ ୫% ଅଧିହାରରେ ପରିଶୋଧ କରିବା ନିମନ୍ତେ ସ୍ଥିର କଲେ । ଏଥିନିମନ୍ତେ କମ୍ପାନୀ ୩୦,୦୦୦ ଟ ୧୦ ମୂଲ୍ୟର ପ୍ରତି ସାଧାରଣ ଅଂଶକୁ ୧୦% ଅଧିହାରରେ ପ୍ରଚଳନ କରିଥିଲେ । ସବୁଗୁଡ଼ିକ ଅଂଶ ବଣ୍ଟିତ ହୋଇଥିଲା, ଅଂଶ ବାବଦ ଅର୍ଥ ଯଥା ସମୟରେ ମିଳିଥିଲା ଓ ଅଗ୍ରାଧିକାର ଅଂଶଗୁଡ଼ିକ ବାବଦ ଅର୍ଥ ପରିଶୋଧ କରାଯାଇଥିଲା ।

ଏହି ନେଣଦେଣଗୁଡ଼ିକ ସକାଶେ ଜାବଦା ଲେଖ ।

୫୦ । ଶୋଭା ଫର୍ଣ୍ଣିଚର ଲିମିଟେଡ୍‌ଙ୍କର ମୂଳଧନ ମଧ୍ୟରେ ଅଂଶ ପ୍ରତି ଟ ୧୦୦ ହାରରେ ୬,୦୦୦ ୫% ଅଗ୍ରାଧିକାର ଅଂଶ ବାବଦ ଅର୍ଥ ଅନ୍ତର୍ଭୁକ୍ତ ଥିଲା । କମ୍ପାନୀଙ୍କର ପରିମେଳ ନିୟମାବଳୀ ଅନୁଯାୟୀ ଏହି ଅଗ୍ରାଧିକାର ଅଂଶ ୫% ଅଧିହାରରେ ପରିଶୋଧ । ଏହା ସ୍ଥିର ହୋଇଥିଲା ଯେ ପରିଶୋଧ ନିମନ୍ତେ ଆବଶ୍ୟକ ଅର୍ଥର ୫୦% ସଞ୍ଚିତ ପାଣ୍ଠିରେ ଥିବା ଟ୩,୦୦,୦୦୦ ରୁ ବ୍ୟୟ କରାଯିବ ଏବଂ ଅବଶିଷ୍ଟ ଅର୍ଥ ସକାଶେ ଅଂଶ ପ୍ରତି ଟ ୧୦ ହାରରେ ଆବଶ୍ୟକ ସଂଖ୍ୟକ ସାଧାରଣ ଅଂଶ ପ୍ରଚଳିତ କରାଯିବ । ଅଧିହାର ବାବଦ ଅର୍ଥ ସେହି ବର୍ଷର ନିଟ୍ ଲାଭ ଓ କ୍ଷତି ବଣ୍ଟନ ହିସାବରୁ ବ୍ୟୟିତ ହେବ ।

ଉପରୋକ୍ତ ନେଣଦେଣ ସକାଶେ ଜାବଦା ଲେଖ ଓ ନେଣଦେଣଗୁଡ଼ିକ ସମ୍ପନ୍ନ ହେବା ପରେ ଖତିୟାନରେ ସେଗୁଡ଼ିକର ପ୍ରବିଷ୍ଟି ଦର୍ଶାଅ ।

୫୦। କଟକ ଟେକ୍ସଟାଇଲ ମିଲସ୍ ଲିମିଟେଡ୍ ଅଂଶ ପ୍ରତି ଟ ୧୦୦ ହାରରେ ୫,୦୦୦ ୭% ପରିଶୋଧ ଅଗ୍ରାଧିକାର ଅଂଶ ପ୍ରଚଳନ କରିଥିଲେ। ଏହି ଅଂଶଗୁଡ଼ିକ ପୂର୍ଣ୍ଣ ଆଦାୟୀକୃତ ହୋଇଥିଲା। କମ୍ପାନୀ ଏହି ଅଂଶଗୁଡ଼ିକ ୫% ଅଧିହାରରେ ୧୯୭୭ ମସିହା ଡିସେମ୍ବର ୩୧ ତାରିଖରେ ପରିଶୋଧ କରିବାକୁ ଚାହାନ୍ତି। କମ୍ପାନୀଙ୍କର ଲାଭ୍ ଲଭ ଓ କ୍ଷତି ହିସାବରେ ଆବଶ୍ୟକ ପରିମାଣ ରହିଛି; କିନ୍ତୁ ଅଂଶଧାରୀମାନଙ୍କୁ ସେମାନଙ୍କର ଅର୍ଥ ଫେରସ୍ତ ଦେବା ପାଇଁ ପର୍ଯ୍ୟାପ୍ତ ପରିମାଣର ନଗଦ ତହବିଲ କିମ୍ବା ବ୍ୟାଙ୍କରେ ଗଚ୍ଛିତ ତହବିଲ ନାହିଁ। ଏହି ନଗଦ ତହବିଲ ସଂଗ୍ରହ କରିବା ଉଦ୍ଦେଶ୍ୟରେ କମ୍ପାନୀ ନିମ୍ନଲିଖିତ ସାଧାରଣ ଅଂଶ ଓ ଋଣପତ୍ର ପ୍ରଚଳନ କରିବାକୁ ସ୍ଥିର କଲେ :

(କ) ପ୍ରତି ଅଂଶ ଟ ୧୦୦ ଅଙ୍କିତ ମୂଲ୍ୟର ୨,୦୦୦ ସାଧାରଣ ଅଂଶ ୧୦% ଅଧିହାରରେ; ଓ

(ଖ) ପ୍ରତି ଋଣ ପତ୍ର ଟ ୧୦୦ ହାରରେ ୨,୦୦୦ ୭% ଋଣପତ୍ର।

ଉପରୋକ୍ତ ସାଧାରଣ ଅଂଶ ଓ ଋଣପତ୍ରଗୁଡ଼ିକ ଯଥାଯଥ ରୂପେ ବଣ୍ଟିତ ହୋଇଥିଲା ଏବଂ ସେଥି ବାବଦ ସମସ୍ତ ଅର୍ଥ ଯଥା ସମୟରେ କମ୍ପାନୀର ହସ୍ତଗତ ହୋଇଥିଲା। କମ୍ପାନୀ ନିର୍ଦ୍ଦିଷ୍ଟ ତାରିଖରେ ଅଗ୍ରାଧିକାର ଅଂଶଧାରୀମାନଙ୍କୁ ସେମାନଙ୍କର ଅର୍ଥ ଫେରସ୍ତ ଦେଇଥିଲେ।

ଉପରୋକ୍ତ ନେଣଦେଣ ସକାଶେ ଜାବେଦା ଲେଖ।

୫୨। ହିଟାଚି ଲିମିଟେଡ୍‌ର ପ୍ରାଧିକୃତ ମୂଳଧନ ଟ ୨୫,୦୦,୦୦୦ ଥିଲା। ଏହା ପ୍ରତି ଅଂଶ ଟ ୧୦ ହାରରେ ୫୦,୦୦୦ ୭% ପରିଶୋଧ ସଞ୍ଚୟୀ ଅଗ୍ରାଧିକାର ଅଂଶ ଓ ଅଂଶ ପ୍ରତି ଟ ୧୦ ହାରରେ ୨,୦୦,୦୦୦ ସାଧାରଣ ଅଂଶରେ ବିଭକ୍ତ ହୋଇଥିଲା।

ଅଗ୍ରାଧିକାର ଅଂଶଗୁଡ଼ିକ ପ୍ରତି ଅଂଶ ଟ ୧୧ ହାରରେ ୧୯୭୫ ମସିହା ଜୁଲାଇ ୧ ତାରିଖରେ ପରିଶୋଧ ଥିଲା। ୧୯୭୪ ମସିହା ଡିସେମ୍ବର ୩୧ ତାରିଖରେ କମ୍ପାନୀର ସଂକ୍ଷିପ୍ତ ଉଦ୍‌ବର୍ତ୍ତ ପତ୍ର ନିମ୍ନରେ ପ୍ରଦତ୍ତ ହେଲା :

| | ଟଙ୍କା | ଟଙ୍କା |
|---|---|---|
| ସ୍ଥାୟୀ ସମ୍ପତ୍ତି | ୧୯,୬୭,୦୦୦ | |
| ବିନିଯୋଗ | ୧,୪୦,୦୦୦ | |
| ବ୍ୟାଙ୍କରେ ଗଚ୍ଛିତ | ୨,୮୦,୦୦୦ | ୨୩,୮୭,୦୦୦ |
| ବାଦ୍ ମହାଜନ | | ୧,୭୭,୦୦୦ |
| | | ୨୨,୧୦,୦୦୦ |

ଏହା ନିମ୍ନଲିଖିତରୂପେ ପ୍ରତିନିଧିତ ହୋଇଥିଲା :

ପ୍ରଚଳିତ ଓ ପୂର୍ଣ୍ଣ ଆଦାୟୀକୃତ ମୂଳଧନ :

| | |
|---|---|
| ସାଧାରଣ | ୧୦,୦୦,୦୦୦ |
| ଅଗ୍ରାଧିକାର | ୫,୦୦,୦୦୦ |
| | ୧୫,୦୦,୦୦୦ |
| ମୂଳଧନ ସଞ୍ଚିତ | ୯୫,୦୦୦ |
| ସାଧାରଣ ସଞ୍ଚିତ | ୨,୦୦,୦୦୦ |
| ନିଟ୍ ଲାଭ ଓ କ୍ଷତି ହିସାବ | ୪,୧୫,୦୦୦ |
| | ୨୨,୧୦,୦୦୦ |

ଆବଶ୍ୟକ ପ୍ରସ୍ତାବଗୁଡ଼ିକ ସ୍ୱୀକୃତ ହୋଇଥିଲା ଓ ନିମ୍ନଲିଖିତ ନେଣଦେଣଗୁଡ଼ିକ ସଂଘଟିତ ହୋଇଥିଲା :

(କ) ୧୯୭୫ ମସିହା ମଇ ୩୧ ତାରିଖରେ ଅଗ୍ରାଧିକାର ଅଂଶ ବାବଦ ଅର୍ଥ ସଂଗ୍ରହ କରିବା ଉଦ୍ଦେଶ୍ୟରେ (୧) ସମସ୍ତ ବିନିଯୋଗ ଟ ୧,୮୦,୦୦୦ ମୂଲ୍ୟରେ ବିକ୍ରିତ ହୋଇଥିଲା ଏବଂ (୨) ଟ ୧୦ ଅଙ୍କିତ ମୂଲ୍ୟର ପ୍ରତି ଅଂଶର ୨୦,୦୦୦ ସାଧାରଣ ଅଂଶଗୁଡ଼ିକ ଅଂଶଧାରୀମାନଙ୍କୁ ପ୍ରତି ଅଂଶ ଟ ୧୫ ହାରରେ ବିକ୍ରିତ କରାଯାଇଥିଲା । ଏହି ଅଂଶ ବାବଦ ସମସ୍ତ ଅର୍ଥ ତତ୍‌କ୍ଷଣାତ୍ ଦେୟ ଥିଲା । ସବୁ ଅଂଶଧାରୀମାନେ ସେମାନଙ୍କର ଦେୟ ଅର୍ଥ ପ୍ରଦାନ କରିଥିଲେ ଏବଂ (ଖ) ୧୯୭୫ ମସିହା ଜୁଲାଇ ୧ ତାରିଖରେ ଅଗ୍ରାଧିକାର ଅଂଶଗୁଡ଼ିକ ଯଥାଯଥ ରୂପେ

ପରିଶୋଧିତ ହୋଇଥିଲେ । (ନଗଦ ଚଳନ୍ତି ସମେତ) ସମ୍ପୃକ୍ତ ନେଣ ଦେଣ ସକାଶେ ଜାବ୍‌ଦା ପ୍ରସ୍ତୁତ କର ।

(C.U. Three-year Degree Course, B. Com. Adv. 1966 ପ୍ରଶ୍ନପତ୍ରରୁ ଗୃହୀତ)

## ଋଣପତ୍ରର ପରିଶୋଧ

୫୩ । ଗୋଟିଏ କମ୍ପାନୀ ୧୯୭୪ ମସିହା ଫେବୃଆରୀ ୧ ତାରିଖରେ ନିଜ କମ୍ପାନୀର ପ୍ରତି ଋଣପତ୍ର ଟ ୧୦୦ ମୂଲ୍ୟରେ ୭୦ ଗୋଟି ୭% ଋଣପତ୍ର ପ୍ରତି ଋଣପତ୍ର ଟ ୯୭ ହାରରେ କ୍ରୟ କରିଥିଲେ । ଏହି ଋଣପତ୍ରର ସୁଧ ପ୍ରତିବର୍ଷ ସେପ୍ଟେମ୍ବର ୩୦ ତାରିଖ ଓ ମାର୍ଚ୍ଚ ୩୧ ତାରିଖରେ ଦେୟ ଥିଲା । ଏହି ଋଣପତ୍ରଗୁଡ଼ିକ ୧୯୭୫ ମସିହା ମାର୍ଚ୍ଚ ୩୧ ତାରିଖରେ ବିଲୁପ୍ତ କରାଯାଇଥିଲା । ଏହି କମ୍ପାନୀର ବାର୍ଷିକ ହିସାବ ମାର୍ଚ୍ଚ ୩୧ ତାରିଖରେ ପ୍ରସ୍ତୁତ କରାଯାଏ, ଏହା ଅନୁମାନ କରି କମ୍ପାନୀ ଖାତାରେ ଜାବ୍‌ଦା ଲେଖ । ଆୟକର ଉପେକ୍ଷା କର ।

୫୪ । ଗୋଟିଏ କମ୍ପାନୀ ୧୯୭୦ ମସିହା ଜାନୁୟାରୀ ୧ ତାରିଖରେ ପ୍ରତି ଋଣପତ୍ର ଟ ୧୦୦ ହାରରେ ୫,୦୦୦ ଋଣପତ୍ର ୫% ଅବହାରରେ ପ୍ରଚଳନ କରିଥିଲେ ।

ଏହି ଋଣପତ୍ରଗୁଡ଼ିକ ୧୯୭୪ ମସିହା ଡିସେମ୍ବର ୩୧ ତାରିଖରେ ସମହାରରେ ପରିଶୋଧ ଥିଲା ।

ଏଥି ନିମନ୍ତେ କମ୍ପାନୀ ଏକ ପ୍ରତିପୂରକ ପାଣ୍ଠି ଖୋଲିଥିଲେ ଏବଂ ପ୍ରତିବର୍ଷ ଡିସେମ୍ବର ୩୧ ତାରିଖରେ ନିଟ୍ ଲାଭରୁ ସମପରିମାଣର ଅର୍ଥ ପୃଥକ୍ କରି ଚକ୍ରବୃଦ୍ଧି ହାରରେ ବିନିଯୋଗ କରୁଥିଲେ । ବାର୍ଷିକ ଟ ୧୮,୦୯୮ ନିଟ୍ ଲାଭରୁ ପୃଥକ୍ କରାଯାଇ ଶତକଡ଼ା ବାର୍ଷିକ ୫ ଚକ୍ରବୃଦ୍ଧି ସୁଧ ହାରରେ ବିନିଯୋଗ କରାଯାଏ, ଏହା ଅନୁମାନ କରି ପ୍ରତିପୂରକ ପାଣ୍ଠି ହିସାବ ଓ ବିନିଯୋଗ ହିସାବ ୧୯୭୨ ମସିହା ଡିସେମ୍ବର ୩୧ ତାରିଖରେ ଶେଷ ହେଉଥିବା ୩ ବର୍ଷ ସକାଶେ କମ୍ପାନୀ ହିସାବ ଖାତାରେ କିପରି ପ୍ରକାଶିତ ହେବ ତାହା ଦର୍ଶାଅ ।

୫୫ । ଗୋଟିଏ କମ୍ପାନୀ ପ୍ରତି ଋଣପତ୍ର ଟ ୧୦୦ ହାରରେ ଟ ୨,୦୦,୦୦୦ ମୂଲ୍ୟର ୫% ଋଣପତ୍ର ପ୍ରଚଳନ କରିଥିଲେ । ଏହି ଋଣପତ୍ରଗୁଡ଼ିକ ୫ ବର୍ଷ ଶେଷରେ ୭%

ଅବହାରରେ ପରିଶୋଧ । ଏହି ଋଣପତ୍ରଗୁଡ଼ିକର ପରିଶୋଧ ନିମନ୍ତେ ଗୋଟିଏ ପ୍ରତିପୂରକ ପାଣ୍ଠି ଖୋଲାଯାଇଥିଲା ଏବଂ ପ୍ରତିବର୍ଷ ଶେଷରେ ଆବଶ୍ୟକ ପରିମାଣରେ ଅର୍ଥ ଏହି ପାଣ୍ଠିକୁ ସ୍ଥାନାନ୍ତରିତ ହେଉଥିଲା ଓ ଶତକଡ଼ା ବାର୍ଷିକ ୪ ଚକ୍ରବୃଦ୍ଧି ସୁଧ ହାରରେ ଏହା ସେହିଦିନ ବିନିଯୁକ୍ତ ହେଉଥିଲା । ପାଞ୍ଚ ବର୍ଷ ପର୍ଯ୍ୟନ୍ତ ଋଣପତ୍ର ପରିଶୋଧ ପାଣ୍ଠି ହିସାବ ପ୍ରସ୍ତୁତ କର ।

(ବାର୍ଷିକ ୪% ଚକ୍ରବୃଦ୍ଧି ସୁଧ ହାରରେ ପ୍ରତିବର୍ଷ ଟ ୧ ବିନିଯୁକ୍ତ ହେଲେ ତାହା ୫ ବର୍ଷ ପରେ ଟ ୫·୪୧୬୩ ହୁଏ ।)

(C. U. B. Com. Adv. 1952 ପ୍ରଶ୍ନପତ୍ରରୁ ଗୃହୀତ)

## ଗୋଟିଏ ବ୍ୟବସାୟକୁ କମ୍ପାନୀରେ ପରିଣତ କରିବା

୫୬ । କ, ଖ ଓ ଗ ଯେତେବେଳେ ତାଙ୍କର ଅଂଶୀଦାରୀ ବ୍ୟବସାୟକୁ ଗୋଟିଏ ନବଗଠିତ ଯୌଥ କମ୍ପାନିକୁ ବିକ୍ରି କଲେ ସେତେବେଳେ ସେମାନଙ୍କର ବ୍ୟବସାୟର ଉଦ୍‌ବୃତ୍ତ ପତ୍ର ନିମ୍ନରୂପ ଥିଲା :

| ଦାୟ ଦାୟିତ୍ୱ | ଟଙ୍କା | ସମ୍ପତ୍ତି | ଟଙ୍କା |
|---|---|---|---|
| ବିବିଧ ମହାଜନ | ୧୬,୦୦୦ | ବିବିଧ ଖାତକ | ୩୬,୦୦୦ |
| ମୂଳଧନ : | | ପ୍ରାପ୍ୟ ହୁଣ୍ଡି | ୨୪,୦୦୦ |
| କ | ୯୦,୦୦୦ | ମହଜୁଦ୍ ମାଲ | ୫୨,୦୦୦ |
| ଖ | ୬୦,୦୦୦ | ନଗଦ | ୨୮,୦୦୦ |
| ଗ | ୩୦,୦୦୦ | ଜମି ଓ କୋଠା | ୫୬,୦୦୦ |
| | ୧,୯୬,୦୦୦ | | ୧,୯୬,୦୦୦ |

ଏହି ଯୌଥ କମ୍ପାନି ଟ ୪,୦୦,୦୦୦ ମୂଳଧନରେ କାର୍ଯ୍ୟ ଆରମ୍ଭ କରିବେ ବୋଲି ସ୍ଥିର କରିଥିଲେ ଓ ଏହା ପ୍ରତି ଅଂଶ ଟ ୧୦୦ ହାରରେ ୨,୦୦୦ ସାଧାରଣ ଅଂଶରେ ବିଭକ୍ତ ହୋଇଥିଲା । ଏହି କମ୍ପାନି ଟ ୨,୦୦,୦୦୦ ଟଙ୍କାର ଋଣପତ୍ର ମଧ୍ୟ ଶତକଡ଼ା ୫ ଅବହାରରେ ପ୍ରଚଳିତ କରିବେ ବୋଲି ସ୍ଥିର କରିଥିଲେ । କ, ଖ ଓ ଗ ଙ୍କର ସମସ୍ତ ବ୍ୟବସାୟଟିକୁ କମ୍ପାନି କ୍ରୟ କରିବାକୁ ସ୍ୱୀକୃତ ହୋଇଥିଲେ । କ୍ରୟ ମୂଲ୍ୟ ସ୍ୱରୂପ କମ୍ପାନି ୪୮୦ଟି ପୂର୍ଣ୍ଣ ପ୍ରଦତ୍ତ ସାଧାରଣ

ଅଂଶ ବାବଦ ଟ ୧୬,୦୦୦ ଓ ନଗଦ ଉହ୍ବିଲ ଆକାରରେ ଟ ୧୬,୦୦୦ ଦେବାକୁ ସ୍ୱୀକୃତ ହୋଇଥିଲେ ।

ସମସ୍ତ ଋଣପତ୍ର ଓ ଅବଶିଷ୍ଟ ସାଧାରଣ ଅଂଶଗୁଡ଼ିକ ଜନସାଧାରଣଙ୍କୁ ବଣ୍ଟି କରିଥିଲେ । ଏହି ସାଧାରଣ ଅଂଶ ଓ ଋଣପତ୍ର ବାବଦ ଅର୍ଥ ଗୋଟିଏ ବ୍ୟତିକ୍ରମ ବ୍ୟତୀତ ସବୁ ଆଦାୟ ହୋଇଥିଲା । ବ୍ୟତିକ୍ରମଟି ୨୦୦ ଅଂଶର ଅଂଶଧାରୀ ତ ସମ୍ବନ୍ଧରେ ଥିଲା । ସେ ଅଂଶ ପ୍ରତି ଟ ୮୦ ହାରରେ ଶେଷ ଆହ୍ୱାନ ଅର୍ଥ ଦେବାକୁ ଅସମର୍ଥ ହୋଇଥିଲେ । କମ୍ପାନୀ ଏହି ଅଂଶଗୁଡ଼ିକୁ ବାଜ୍ୟାପ୍ତ କରି ଅଂଶ ପ୍ରତି ଟ ୪୦ ବଟ୍ଟାରେ ପୁନଃପ୍ରଚଳିତ କରିଥିଲେ । କମ୍ପାନୀ ପ୍ରାରମ୍ଭିକ ବ୍ୟୟ ସ୍ୱରୂପ ଟ ୨,୦୦୦ ଖର୍ଚ୍ଚ କରିଥିଲେ । ବାଜ୍ୟାପ୍ତ ଅର୍ଥ ପ୍ରଥମେ ପ୍ରାରମ୍ଭିକ ବ୍ୟୟ ବାବଦ ବ୍ୟବହୃତ ହୋଇଥିଲା ଓ ତତ୍ପରେ ଋଣପତ୍ର ପ୍ରଚଳନଜନିତ ବଟ୍ଟା ବାବଦ ସମ୍ପୂର୍ଣ୍ଣ କ୍ଷତି ପୂରଣ କରିବାରେ ଏବଂ ଅବଶିଷ୍ଟ ସୁନାମ ବାବଦ ବ୍ୟବହୃତ ହୋଇଥିଲା ।

କମ୍ପାନୀ ହିସାବ ଖାତାରେ ଆବଶ୍ୟକ ଜାବ୍‌ଦା ଲେଖ ଓ ପ୍ରାରମ୍ଭିକ ଉଦ୍‌ବୃତ୍ତ ପତ୍ର ପ୍ରସ୍ତୁତ କର ।

( ଉତ୍ତର—ଉଦ୍‌ବୃତ୍ତ ପତ୍ରର ମୋଟ ପରିମାଣ : ଟ ୬,୧୬,୦୦୦ )

(B. U. B. Com. Hons. 1974 S ପ୍ରଶ୍ନପତ୍ରରୁ ଗୃହୀତ)

*୭ । କ, ଖ ଓ ଗ ଗୋଟିଏ ଅଂଶୀଦାରୀ କାରବାରର ଅଂଶୀଦାର ରୂପେ ଲାଭ ଓ କ୍ଷତିର ଯଥାକ୍ରମେ $\frac{3}{5}$, $\frac{1}{5}$ ଓ $\frac{1}{5}$ ଅଂଶ ଭୋଗ କରୁଥିଲେ । ସେମାନଙ୍କର ୧୯୭୫ ମସିହା ଡିସେମ୍ବର ୩୧ ତାରିଖର ଉଦ୍‌ବୃତ୍ତ ପତ୍ର ନିମ୍ନରେ ପ୍ରଦତ୍ତ ହେଲା :

ଉଦ୍‌ବୃତ୍ତ ପତ୍ର

| | ଟଙ୍କା | ଟଙ୍କା | | | ଟଙ୍କା |
|---|---|---|---|---|---|
| ମୂଳଧନ ଓ ଦାୟ | | | | | |
| ମୂଳଧନ ହିସାବ : | | | ସମ୍ପତ୍ତି | | |
| କ | ୩୦,୦୦୦ | | କାରଖାନା | | ୩୦,୦୦୦ |
| ଖ | ୨୦,୦୦୦ | | ମହଜୁଦ୍ ପଣ୍ୟ | | ୨୦,୦୦୦ |
| ଗ | ୧୦,୦୦୦ | ୬୦,୦୦୦ | ଖାତକ | ୨୫,୦୦୦ | |
| ମହାଜନ | | ୧୫,୦୦୦ | ବାଦ୍ ଅ : ଋ | | |
| | | | ସଞ୍ଚିତି | ୧,୦୦୦ | ୨୪,୦୦୦ |
| | | | ନଗଦ ତହବିଲ | | ୧,୦୦୦ |
| | | ୭୫,୦୦୦ | | | ୭୫,୦୦୦ |

ଅଂଶୀଦାରମାନେ ଏହି ବ୍ୟବସାୟକୁ ଗୋଟିଏ ପବ୍ଲିକ ଯୌଥ କମ୍ପାନୀକୁ ବିକ୍ରୟ କରିବାକୁ ସ୍ୱୀକୃତ ହୋଇଥିଲେ । ଏହି କମ୍ପାନୀର ପ୍ରାଧିକୃତ ମୂଳଧନ ଅଂଶ ପ୍ରତି ଟ ୧୦ ହାରରେ ୪୦,୦୦୦ ଅଂଶରେ ବିଭକ୍ତ ଥିଲ । ଏହି କମ୍ପାନୀ ବ୍ୟବସାୟକୁ ଏହାର ବହି ମୂଲ୍ୟ ଯୁକ୍ତ ଟ ୬,୦୦୦ (ସୁନାମ ବାବଦ) ଅଧିକା ଦେଇ କ୍ରୟ କରିବାକୁ ଓ ବ୍ୟବସାୟର ଋଣ ମଧ୍ୟ ପରିଶୋଧ କରିବାକୁ ସ୍ୱୀକୃତ ହୋଇଥିଲେ । ଅଂଶୀଦାରମାନେ କ୍ରୟ ମୂଲ୍ୟର ଶତକଡ଼ା ୫୦ ଭାଗ ନଗଦ ତହବିଲରେ ଏବଂ ଅବଶିଷ୍ଟ ପୂର୍ଣ୍ଣ ପ୍ରଦତ୍ତ ଅଂଶରେ ଗ୍ରହଣ କରିବାକୁ ସ୍ୱୀକୃତ ହୋଇଥିଲେ । ଅବଶିଷ୍ଟ ଅଂଶଗୁଡ଼ିକ କ୍ରୟ କରିବା ନିମନ୍ତେ ଜନସାଧାରଣଙ୍କୁ ଆହ୍ୱାନ କରାଯାଇଥିଲା । ଏହି ଅଂଶଗୁଡ଼ିକ ବଣ୍ଟିତ ହୋଇଥିଲା ଓ ୧୦୦ ଅଂଶର ଜଣେ ଅଂଶୀଧାରୀଙ୍କ ବ୍ୟତୀତ ଅନ୍ୟ ସମସ୍ତେ ସେମାନଙ୍କର ଦେୟ ଟଙ୍କା ପ୍ରଦାନ କରିଥିଲେ । ଏହି ଅଂଶୀଦାର ଆବେଦନ ପତ୍ର ସହିତ ଅଂଶ ପ୍ରତି ଟ ୩ ହାରରେ ଓ ଅଂଶ ଆବଣ୍ଟିତ ହେବାରୁ ଅଂଶ ପ୍ରତି ଟ ୨ ହାରରେ ତାଙ୍କର ଦେୟ ଅର୍ଥ ପ୍ରଦାନ କରିଥିଲେ; ମାତ୍ର ଅଂଶ ପ୍ରଥମ ଆହ୍ୱାନ ସମୟରେ ଅଂଶ ପ୍ରତି ଟ୩ ଓ ଅଂଶ ଶେଷ ଆହ୍ୱାନ ସମୟରେ ଅଂଶ ପ୍ରତି ଟ ୨ ହାରରେ ତାଙ୍କର ଦେୟ ଦେବା ପାଇଁ ଅସମର୍ଥ ହୋଇଥିଲେ ।

ଅଂଶୀଦାରୀ ବ୍ୟବସାୟର ହିସାବ ବନ୍ଦ କର, କମ୍ପାନୀଙ୍କ ହିସାବ ଖାତାରେ ଆବଶ୍ୟକ ଜାବ୍ଦା ଲେଖ ଓ କମ୍ପାନୀର ପ୍ରାରମ୍ଭିକ ଉଦ୍‌ବୃତ୍ତ ପତ୍ର ପ୍ରସ୍ତୁତ କର ।

(C. U. B. Com. 1957)

(ଉତ୍ତର : ପ୍ରାରମ୍ଭିକ ଉଦ୍‌ବୃତ୍ତ ପତ୍ରର ମୋଟ ପରିମାଣ ଟ ४,୯୯,୫୦୦ ।)

## ଚୂଡ଼ାନ୍ତ ହିସାବ

୫୮ । ନିମ୍ନଲିଖିତ ବିବରଣୀରୁ ପ୍ରାଚୀ ଟ୍ରେଡ଼ର୍ସ ଲିମିଟେଡ଼୍‌ଙ୍କର ୧୯୭୫ ମସିହା ଜୁନ୍ ୩୦ ତାରିଖରେ ଶେଷ ହେଉଥିବା ବର୍ଷର ସ୍ଥୂଳ ଲାଭ ଓ କ୍ଷତି ହିସାବ, ନିଟ୍ ଲାଭ ଓ କ୍ଷତି ହିସାବ ଓ ଉକ୍ତ ତାରିଖର ଉଦ୍‌ବୃତ୍ତ ପତ୍ର ପ୍ରସ୍ତୁତ କର । କମ୍ପାନୀଙ୍କର ପ୍ରାଧିକୃତ ମୂଳଧନ ଅଂଶ ପ୍ରତି ଟ ୧୦୦ ହାରରେ ୨,୦୦୦ ଅଗ୍ରାଧିକାର ଅଂଶ ଓ ଅଂଶ ପ୍ରତି ଟ ୧୦ ହାରରେ ୫୦,୦୦୦ ସାଧାରଣ ଅଂଶରେ ବିଭକ୍ତ ଥିଲା । କମ୍ପାନୀ ଏଥିମଧ୍ୟରୁ ୧,୦୦୦ ଅଗ୍ରାଧିକାର ଅଂଶ ଓ ୩୫,୦୦୦ ସାଧାରଣ ଅଂଶ ପ୍ରଚଳିତ କରି ଏହା ବାବଦ ପୂର୍ଣ୍ଣ ଅର୍ଥ ପାଇ ସାରିଥିଲେ ।

| | ଟଙ୍କା | | ଟଙ୍କା |
|---|---|---|---|
| ଅନ୍ତ୍ୟ ମହଜୁଦ୍ ମାଲ : | | ବ୍ୟାଙ୍କରେ ସ୍ଥାୟୀ ଗଚ୍ଛିତ | ୮,୦୦୦ |
| କଞ୍ଚାମାଲ | ୪୦,୦୦୦ | ଚଳନ୍ତି ହିସାବରେ ଗଚ୍ଛିତ | ୫୭,୫୫୦ |
| ପରିରୂପିତ ପଣ୍ୟ | ୧୫,୦୦୦ | ନଗଦ ତହବିଲ | ୨,୫୫୦ |
| ମଜୁରି | ୪୨,୩୦୦ | ଭୂମି | ୯୦,୦୦୦ |
| ଅନ୍ତର୍ମୁଖୀ ଗାଡ଼ିଭଡ଼ା | ୩,୪୦୦ | କୋଠା | ୨,୫୦,୦୦୦ |
| ବହିର୍ମୁଖୀ ଗାଡ଼ିଭଡ଼ା | ୪,୫୦୦ | ଯନ୍ତ୍ର | ୩,୨୦,୦୦୦ |
| କମିଶନ (ଦାୟୀ) | ୭,୨୦୦ | ଅସବାବ୍ ପତ୍ର | ୧୫,୦୦୦ |
| ନିର୍ଦ୍ଦେଶକମାନଙ୍କର ଫିସ୍ | ୧,୫୦୦ | ମଟରଗାଡ଼ି | ୨୦,୦୦୦ |
| ବେତନ | ୭୨,୪୦୦ | ଖାତକ | ୩୩,୨୦୦ |
| ଛପା ଓ ଷ୍ଟେସନାରି | ୨,୧୦୦ | କଞ୍ଚାମାଲ ଖରିଦ | ୧୦,୨୨,୧୫୦ |
| ଡାକ ଓ ତାର ଖର୍ଚ୍ଚ | ୭୦୦ | ବିକ୍ରୟ | ୧୫,୨୫,୩୦୦ |
| ଭଡ଼ା, ଶୁଳ୍କ ଓ ଟିକସ | ୧,୪୫୦ | ଅପ୍ରଦତ୍ତ ଲଭ୍ୟାଂଶ | ୪,୨୦୦ |
| | | ବିବିଧ ମହାଜନ | ୧୮,୫୦୦ |

ଅନ୍ତ୍ୟ ମହଜୁଦ ମାଲ : କଞ୍ଚା ମାଲ ଟ ୧୧,୩୦୦ ଏବଂ ପରିରୂପିତ ପଣ୍ୟ ଟ ୧୭,୮୦୦ । ବେତନ ବାବଦ ବକେୟା ଟ ୨,୩୦୦; ଟିକସ ବାବଦ ବକେୟା ଟ ୧୫୦; ହିସାବ ସମୀକ୍ଷା ବାବଦ ପାରିଶ୍ରମିକ ବାକି ଟ ୮୦୦ । ସ୍ଥାୟୀ ଗଚ୍ଛିତ ବାବଦ ସୁଧ ପ୍ରାପ୍ୟ ଟ ୫୭୦ ; ମୂଲ୍ୟ ହ୍ରାସ ବାବଦ ବାଦ୍ ଦିଅ : କୋଠା ପରିମାଣର ୫%, ଯନ୍ତ୍ର ପରିମାଣର ୭%, ଅସବାବ୍ ପରିମାଣର ୧୦% ଓ ମଟରଗାଡ଼ି ପରିମାଣରେ ୨୦% । ଖାତକ ପରିମାଣରେ ୫% ହାରରେ ଅନାଦାୟୀ ଋଣପାଣ୍ଠି ଗଢ଼ାଯିବ ।

(ଉତ୍ତର : ସ୍ଥୂଳ ଲଭ ଟ ୪,୩୦,୫୫୦; ନିଟ୍ ଲଭ ଟ ୩,୦୭,୯୫୦ ଓ ଉଦ୍ବୃତ୍ତ ପତ୍ରର ମୋଟ ପରିମାଣ ଟ ୭,୮୨,୯୦୦ ।)

୫୯ । ନଭି ସୋସାଇଟି ଲିମିଟେଡ୍ ଅଂଶ ପ୍ରତି ଟ ୧୦ ହାରରେ ୫୦,୦୦୦ ସାଧାରଣ ଅଂଶ ପ୍ରଚଳିତ କରିବା ନିମନ୍ତେ ଅଧିକୃତ ହୋଇଥିଲା । ଏଥି ମଧ୍ୟରୁ କମ୍ପାନୀ ୪୦,୦୦୦ ଅଂଶ ପ୍ରଚଳିତ କରିବା ଉଦ୍ଦେଶ୍ୟରେ ଜନସାଧାରଣଙ୍କୁ ଆହ୍ୱାନ ଜଣାଇଥିଲେ । ମାତ୍ର ଜନସାଧାରଣ ୩୦,୦୦୦ ଅଂଶ କ୍ରୟ କରିଥିଲେ ଓ

ଏଥି ବାବଦ ପ୍ରଦେୟ ଅର୍ଥ ପ୍ରଦାନ କରିଥିଲେ । କମ୍ପାନୀର ୧୯୫୭ ମସିହା ଡିସେମ୍ବର ୩୧ ତାରିଖର ରେଓୟା ମେଳ ନିମ୍ନରେ ଉଦ୍ଧୃତ ହେଲା :

ରେଓୟା ମେଳ

| | ଟଙ୍କା | | ଟଙ୍କା |
|---|---|---|---|
| ନିଜସ୍ୱ ଜମି | ୧,୭୫,୦୦୦ | ଅଂଶ ମୂଳଧନ | ୩,୦୦,୦୦୦ |
| ଯନ୍ତ୍ରାଂଶ ଓ ଯନ୍ତ୍ର | ୮୦,୦୦୦ | ବିବିଧ ମହାଜନ | ୪୫,୦୦୦ |
| ସାଜ, ସରଞ୍ଜାମ | ୨୦,୦୦୦ | ଦେୟ ହୁଣ୍ଡି | ୨୦,୦୦୦ |
| ଆଦ୍ୟ ମହଜୁଦ ମାଲ | ୭୫,୦୦୦ | ବିକ୍ରୟ | ୩,୦୦,୦୦୦ |
| ବିବିଧ ଖାତକ | ୮୦,୦୦୦ | ବହିର୍ମୁଖୀ ଫେରନ୍ତ | ୧,୯୫୦ |
| ଅନ୍ତର୍ମୁଖୀ ଗାଡ଼ିଭଡ଼ା | ୧,୫୦୦ | | |
| ବହିର୍ମୁଖୀ ଗାଡ଼ିଭଡ଼ା | ୧,୬୫୦ | | |
| ଘରଭଡ଼ା, ଶୁଳ୍କ ଓ ଟିକସ | ୨,୧୦୦ | | |
| ବେତନ | ୧୬,୦୦୦ | | |
| କ୍ରୀତ କଞ୍ଚାମାଲ | ୭୫,୦୦୦ | | |
| ମରାମତି | ୨,୫୦୦ | | |
| ଆସବାବ୍‌ପତ୍ର | ୧୫,୦୦୦ | | |
| ପ୍ରାପ୍ୟ ହୁଣ୍ଡି | ୩୦,୦୦୦ | | |
| ଭ୍ରମଣ ଓ ଷ୍ଟେସନାରୀ | ୧,୨୦୦ | | |
| ଅନାଦାୟୀ ଋଣ | ୨,୯୫୦ | | |
| ଗ୍ୟାସ ଓ ଜଳ | ୬୫୦ | | |
| କୋଇଲା ଓ ପୋଡ଼ା କୋଇଲା | ୪,୯୫୦ | | |
| ତେଲ, ଚର୍ବି ଓ ଅପଚୟ | ୯୫୦ | | |
| ବ୍ୟାଙ୍କ୍‌ରେ ଗଚ୍ଛିତ ତହବିଲ | ୮୦,୦୦୦ | | |
| ନଗଦ ତହବିଲ | ୨,୫୦୦ | | |
| | ୬,୬୬,୯୫୦ | | ୬,୬୬,୯୫୦ |

୧୯୫୭ ମସିହା ଡିସେମ୍ବର ୩୧ ତାରିଖରେ ଶେଷ ହେଉଥିବା ବର୍ଷର ସ୍ଥୂଳ ଓ ଓ ନିଟ୍ ଲାଭ ଓ କ୍ଷତି ହିସାବ ଓ ଉକ୍ତ ତାରିଖର ଉଦ୍‌ବୃତ୍ତ ପତ୍ର ମଧ୍ୟ ପ୍ରସ୍ତୁତ କର । (ଯେଉଁ ସଂଖ୍ୟା ଏହି ରେଓୟା ମେଳରେ ନାହିଁ ବୋଲି ତୁମେ ମନେ କର ତାହା

ତୁମେ ଅନୁମାନ କର।) ନିମ୍ନଲିଖିତ ସମାଯୋଜନଗୁଡ଼ିକ ଆବଶ୍ୟକ। (୧) ଅନ୍ୟ ମହଜୁଦ୍ ମାଲ ଟ୭୮,୦୦୦; (୨) ସଂଯନ୍ତ୍ର ଓ ଯନ୍ତ୍ର ପରିମାଣରୁ ୬% ହାରରେ ଓ ଆସବାବ୍‌ପତ୍ର ପରିମାଣରୁ ୧୦% ହାରରେ ମୂଲ୍ୟ ହ୍ରାସ ବାଦ୍ ଦିଅ ; (୩) ବକେୟା ଖର୍ଚ୍ଚ ସକାଶେ ବ୍ୟବସ୍ଥା କର। ଘରଭଡ଼ା, ଶୁଳ୍କ ଓ ଟିକସ—ଟ ୧,୫୦୦; ବେତନ—ଟ ୨,୦୦୦; (୪) ଅନାଦାୟୀ ଋଣ ପାଣ୍ଠି ବିବିଧ ଖାତକ ପରିମାଣର ଶତକଡ଼ା ୨½ ରେ ରଖାଯିବ; (୫) ନିଟ୍ ଲାଭର ୧୦% ସଞ୍ଚିତ ହିସାବକୁ ନିଆଯିବ ଏବଂ ଅବଶିଷ୍ଟ ପରିମାଣର ୫୦% ଲାଭାଂଶ ରୂପେ ଦିଆଯିବା ପାଇଁ ପ୍ରସ୍ତାବିତ ହୋଇଛି। ବାକୀ ନିଟ୍ ଲାଭ ପରିମାଣ ପରବର୍ତ୍ତୀ ବର୍ଷର ହିସାବକୁ ନୀତ ହେବ।

(C. U. B. Com., 1959)

(ଉତ୍ତର : ସ୍ଥୂଳ ଲାଭ ଟ ୧,୭୧,୮୦୦; ନିଟ୍ ଲାଭ ଟ ୧,୩୨,୨୦୦; ଉଦ୍ବୃତ୍ତ ପତ୍ରର ମୋଟ ପରିମାଣ ଟ ୬,୧୫,୭୦୦; ଏହା ଅନୁମାନ କରାଯାଇଛି ଯେ : ମଜୁଦ୍ ଟ ୫୦,୦୦୦; ସୁରକ୍ଷିତ ଋଣ ଟ ୩୫,୦୦୦; ଅରକ୍ଷିତ ଋଣ ଟ୩୦,୦୦୦; ବନ୍ଧଯୋଗ—ଟ ୪୦,୦୦୦ ଏବଂ ପ୍ରଦତ୍ତ ଋଣ ଓ ଅଗ୍ରିମ ଅର୍ଥ—ଟ ୨୫,୦୦୦।)

---